# ସାରସ୍ୱତ
# ବିଶ୍ୱବିଦ୍ୟାଳୟ ପ୍ରବନ୍ଧମାଳା

ଡକ୍ଟର କୃଷ୍ଣଚନ୍ଦ୍ର ପ୍ରଧାନ



ସତ୍ୟନାରାୟଣ ବୁକ୍ ଷ୍ଟୋର

# ସାରସ୍ୱତ
# ବିଶ୍ୱବିଦ୍ୟାଳୟ ପ୍ରବନ୍ଧମାଳା

(ଉତ୍କଳ, ବ୍ରହ୍ମପୁର ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟର ଛାତ୍ରଛାତ୍ରୀ ଏବଂ
ସମସ୍ତ ପ୍ରତିଯୋଗିତାମୂଳକ ପରୀକ୍ଷା ପାଇଁ)

ଡଃ କୃଷ୍ଣଚନ୍ଦ୍ର ପ୍ରଧାନ
ଏମ୍.ଏ., ଏମ୍.ଫିଲ୍., ପିଏଚ୍.ଡି., ଡି.ଲିଟ୍.
ପ୍ରଫେସର
ସ୍ନାତକୋତ୍ତର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ସମ୍ବଲପୁର ବିଶ୍ୱବିଦ୍ୟାଳୟ
ଜ୍ୟୋତିବିହାର, ବୁର୍ଲା



ସତ୍ୟନାରାୟଣ ବୁକ୍ ଷ୍ଟୋର
ବିନୋଦବିହାରୀ, କଟକ - ୨

# ସାରସ୍ୱତ ବିଶ୍ୱବିଦ୍ୟାଳୟ ପ୍ରବନ୍ଧମାଳା

ଲେଖକ :
**ଡଃ କୃଷ୍ଣଚନ୍ଦ୍ର ପ୍ରଧାନ**

ପ୍ରକାଶକ :
**ସତ୍ୟନାରାୟଣ ବୁକ୍ ଷ୍ଟୋର**
ବିନୋଦ ବିହାରୀ, କଟକ-୨

ନୂତନ ସଂସ୍କରଣ : ୨୦୨୦

ଡି.ଟି.ପି. :
**ୟୁନିଟେକ୍,**
ଚୌଧୁରୀ ବଜାର, କଟକ

ମୁଦ୍ରଣ :
**ଦେବୀ ଗ୍ରାଫିକ୍ସ**
କଟକ

ମୂଲ୍ୟ :
୧୫୦ ଟଙ୍କା ମାତ୍ର

**Saraswata Biswavidyalaya Prabandhamala**

Written by :
**Dr. Krushna Chandra Pradhan**

Published by :
**Satyanarayan Book Store**
Binod Bihari, Cuttack-2

**New Edition : 2020**

D.T.P. :
**UNITECH**
Choudhury Bazar, Cuttack

Printed at :
**Devi Graphics**
Cuttack

Price :
**Rs. 150/-** only

# ନିଜ ତରଫରୁ

ପ୍ରବନ୍ଧ ବିଶେଷ ବିଚାରବୋଧର ଅପେକ୍ଷା ରଖେ । ଏହି ଦୃଷ୍ଟିରୁ ସାହିତ୍ୟର ଅନ୍ୟାନ୍ୟ ବିଭାଗ ତୁଳନାରେ ପ୍ରବନ୍ଧ ରଚନା ଅପେକ୍ଷାକୃତ କଷ୍ଟସାଧ୍ୟ । ଜଣେ ପ୍ରାବନ୍ଧିକଙ୍କୁ ବହୁ ବିଷୟରେ ଜ୍ଞାନାର୍ଜ୍ଜନ କରିବାର ଆବଶ୍ୟକତା ରହିଛି । ଅର୍ଥନୀତିଠାରୁ ଆରମ୍ଭ କରି ବିଜ୍ଞାନ ପର୍ଯ୍ୟନ୍ତ—ବିଭିନ୍ନ ବିଷୟରେ ଧାରଣା ନ ଥିଲେ ଜଣେ ପ୍ରବନ୍ଧ ରଚନା କରିପାରିବ ନାହିଁ । ସେହି କାରଣରୁ ପ୍ରବନ୍ଧଗୁଡ଼ିକୁ ଲେଖିବା ସମୟରେ ମୁଁ କେତେକ ଅସୁବିଧାର ସମ୍ମୁଖୀନ ହୋଇଛି । ଏହା ସତ୍ତ୍ୱେ ଏଥିରୁ ମୁଁ ଯେଉଁ ବିମଳ ଆନନ୍ଦ ଲାଭ କରିଛି, ତା'ର ତୁଳନା ନାହିଁ ।

ସମ୍ପ୍ରତି ମହାବିଦ୍ୟାଳୟ, ବିଶ୍ୱବିଦ୍ୟାଳୟ ଓ ବିଭିନ୍ନ ପ୍ରତିଯୋଗିତାମୂଳକ ପରୀକ୍ଷାରେ ପ୍ରବନ୍ଧ ଏକ ବାଧ୍ୟତାମୂଳକ ବିଷୟ ରୂପେ ଗୃହୀତ ହେଉଛି । ଛାତ୍ର ଏବଂ ପ୍ରତିଯୋଗୀ ଏ କ୍ଷେତ୍ରରେ ବିଶେଷ ଅସୁବିଧାର ସମ୍ମୁଖୀନ ହେଉଥିବା ବିଷୟ ମୁଁ ବହୁକ୍ଷେତ୍ରରେ ଉପଲବ୍ଧି କରିଛି । ତେଣୁ ଗୋଟିଏ ପ୍ରବନ୍ଧ ପୁସ୍ତକ ରଚନା କରିବା ନିମିତ୍ତ ବହୁପୂର୍ବରୁ ପରିକଳ୍ପନା କରିଥିଲି । ସମୟ ଏବଂ ସୁଯୋଗର ଅଭାବରୁ ଏହା ସମ୍ଭବ ହୋଇପାରି ନ ଥିଲା । ସତ୍ୟନାରାୟଣ ବୁକ୍ ଷ୍ଟୋର୍‌ର ସ୍ୱତ୍ୱାଧିକାରୀ ସତ୍ୟବାବୁ ଓ ବନୁବାବୁଙ୍କ ଅନୁରୋଧ ତଥା ବ୍ୟଗ୍ରତା ଯୋଗୁଁ ଏପରି ଏକ ପୁସ୍ତକ ରଚନା କରିବାକୁ ନିଷ୍ପତ୍ତି ନେଲି । ମାତ୍ର ସମୟର ସ୍ୱଳ୍ପତା ମୋର ଉଦ୍ଦେଶ୍ୟକୁ ଯଥାଯଥ ପରିପୂରଣ କରିପାରିଲା ନାହିଁ । ପ୍ରବନ୍ଧଗୁଡ଼ିକ ଯେପରି ହେବା କଥା, ତରତର ହୋଇ ଲେଖିବା ଯୋଗୁଁ କେତେଗୁଡ଼ିଏ ପ୍ରବନ୍ଧ ଠିକ୍ ସେହିପରି ହୋଇପାରିଲା ନାହିଁ । ପରବର୍ତ୍ତୀ ସଂସ୍କରଣ ସମୟରେ ସେହି ଅଭାବବୋଧ ପରିପୂରଣ ହୋଇପାରିବ ବୋଲି ଦୃଢ଼ ଆଶା ଓ ବିଶ୍ୱାସ ।

ପୁସ୍ତକଟି ପ୍ରକାଶ ଦିଗରେ ବନୁବାବୁ ବିଶେଷ ଆଗ୍ରହ ପ୍ରକାଶ କରିଥିବାରୁ ତାଙ୍କ ନିକଟରେ ମୁଁ କୃତଜ୍ଞ । ବିଭିନ୍ନ ସ୍ତରରେ ଛାତ୍ରଛାତ୍ରୀ ତଥା ପ୍ରତିଯୋଗୀମାନଙ୍କର ଆଶା ତଥା ଆକାଙ୍‌କ୍ଷାକୁ ଏହି ପୁସ୍ତକ କିଛି ପରିମାଣରେ ପୂରଣ କରିପାରିଲେ ନିଜକୁ ମୁଁ ଧନ୍ୟ ମନେକରିବି । ଗଠନମୂଳକ ପରାମର୍ଶ ତଥା ତ୍ରୁଟିବିଚ୍ୟୁତିର ସୂଚନା ପାଇଲେ ପରବର୍ତ୍ତୀ ସଂସ୍କରଣରେ ତା'ର ସଂଶୋଧନ ନିମିତ୍ତ ପ୍ରୟାସ କରିବି ।

**କୃଷ୍ଣଚନ୍ଦ୍ର ପ୍ରଧାନ**

# ସୂଚିପତ୍ର

| ବିଷୟ | | ପୃଷ୍ଠା |
|---|---|---|

| ବିଷୟ | ପୃଷ୍ଠା |
|---|---|

**ବିବିଧ ପ୍ରବନ୍ଧ :**

# ପ୍ରବନ୍ଧର ସଂଜ୍ଞା, ସ୍ୱରୂପ ଓ ପ୍ରକାରଭେଦ

ଆଧୁନିକ ଯୁଗ ଗଦ୍ୟର ଯୁଗ । ଗଦ୍ୟ ରଚନାରୁ ସ୍ରଷ୍ଟାର ବ୍ୟକ୍ତିତ୍ୱ, ବିଦ୍‌ବତ୍ତା ଓ ବହୁଶାସ୍ତ୍ରଦର୍ଶିତାର ପ୍ରମାଣ ମିଳିଥାଏ । ସେଥିପାଇଁ ପ୍ରସିଦ୍ଧ ଆଳଙ୍କାରିକ ବାମନାଚାର୍ଯ୍ୟ କହିଥିଲେ, 'ଗଦ୍ୟଂ କବୀନାଂ ନିକଷଂ ବଦନ୍ତି' । 'ପ୍ର' ଉପସର୍ଗ 'ବନ୍ଧ୍' ଧାତୁରେ 'ଅ' ପ୍ରତ୍ୟୟ ଯୋଗରେ 'ପ୍ରବନ୍ଧ', ଶବ୍ଦର ସୃଷ୍ଟି । ଏହାର ଅର୍ଥ ପ୍ରକୃଷ୍ଟ ବନ୍ଧନ । ଅତୀତରେ ପ୍ରବନ୍ଧ ମଧ୍ୟରେ ସାହିତ୍ୟର ସମସ୍ତ ବିଭାଗ ଅନ୍ତର୍ଭୁକ୍ତ ଥିଲା । କାବ୍ୟ ମଧ୍ୟ ଥିଲା 'ପ୍ରବନ୍ଧ'ର ଅନ୍ତର୍ଭୁକ୍ତ । ଜୟଦେବ ସେଥିପାଇଁ 'ଗୀତଗୋବିନ୍ଦ'ର ପ୍ରଥମ ସର୍ଗରେ ଲେଖିଥିଲେ—

ଶ୍ରୀ ବାସୁଦେବ ରତିକେଳି କଥା ସମେତ—
ମେତଂ କରୋତି ଜୟଦେବ କବିଃ ପ୍ରବନ୍ଧମ୍ ।

'ଭାଗବତ'ରେ ଏହି ଅର୍ଥରେ 'ପ୍ରବନ୍ଧ' ଶବ୍ଦ ବ୍ୟବହୃତ—

କହଇ ବିପ୍ର ଜଗନ୍ନାଥ
ଭାଷା ପ୍ରବନ୍ଧେ ଭାଗବତ ।

ବ୍ରଜନାଥ ବଡ଼ଜେନା 'ପ୍ରବନ୍ଧ'ର ସଂଜ୍ଞା ନିର୍ଦ୍ଦେଶ କରି 'ଚତୁରବିନୋଦ'ରେ ଲେଖିଛନ୍ତି—

ମିଥ୍ୟା ଗ୍ରନ୍ଥ ପ୍ରବନ୍ଧେନ ମନୋହରତି ଯା ଭୃଶଂ
ନାନା କୌତୁକ ହାସାଦ୍ୟୈଃ ସା କଥେତ୍ୟଭିଧୀୟତେ ।

ଅତୀତରେ ଛନ୍ଦୋବଦ୍ଧ ଶୃଙ୍ଖଳିତ କାବ୍ୟକୁ ପ୍ରବନ୍ଧର ଆଖ୍ୟା ପ୍ରଦାନ କରାଯାଇଥିଲେ ହେଁ, ବର୍ତ୍ତମାନ ବ୍ୟବହୃତ 'ପ୍ରବନ୍ଧ' ଶବ୍ଦର ଅର୍ଥ ଅତ୍ୟନ୍ତ ବ୍ୟାପକ । ଇଂରାଜୀ ଶିକ୍ଷାର ବିସ୍ତାର ପରେ ପରେ ଓଡ଼ିଆ ଓ ଭାରତୀୟ ସାହିତ୍ୟରେ ପ୍ରବନ୍ଧର ଅର୍ଥ ବଦଳିଯାଇଛି ଲାଗିଲା । ପ୍ରବନ୍ଧର ଇଂରାଜୀ ପ୍ରତିଶବ୍ଦ 'Essay' । ଏହା ଫରାସୀ Essis ଶବ୍ଦରୁ ସୃଷ୍ଟିଲାଭ କରିଛି, ଯାହାର ଅର୍ଥ ପ୍ରଯତ୍ନ । ଡଃ ଜନ୍‌ସନ୍‌ଙ୍କ ମତରେ ପ୍ରବନ୍ଧ ହେଉଛି—ଏକ କ୍ରମବିହୀନ, ଅସଂଲଗ୍ନ, ଅସମ୍ପୂର୍ଣ୍ଣ, ନିୟମବିହୀନ ବିଶୃଙ୍ଖଳିତ ରଚନା—'A loose sally of the mind, an irregular, indigestive piece, not a regular and orderly performance.' ବେନ୍‌ସନ ପ୍ରବନ୍ଧକୁ ଏକ ବ୍ୟକ୍ତିଗତ ରଚନା ଭାବରେ ଗ୍ରହଣ କରିବା ସଙ୍ଗେ ସଙ୍ଗେ ଏଥିରେ ବିଷୟବସ୍ତୁ ଅପେକ୍ଷା ବ୍ୟକ୍ତିତ୍ୱର ଗୁରୁତ୍ୱ ଅଧିକ ବୋଲି ମତପ୍ରଦାନ କରିଛନ୍ତି—'An essay is a thing which someone does himself and the point of the essay is not the subject for any subject will suffice, but the charm of personality.' ଆଲେକ୍‌ଜାଣ୍ଡାର ସ୍ମିଥ୍ ପ୍ରବନ୍ଧରେ ଗୀତିକବିତାର ଲକ୍ଷଣ ଲକ୍ଷ୍ୟ କରି କହିଛନ୍ତି—'The essay as a literary form, resembles the lyric, in so far as it is moulded by some central mood-whimsical, serious or satirical. Give the mood,

and the essay, from the first sentence to the last, grows around it as the cocoon grows around the silkworm.' ଏତଦ୍‌ବ୍ୟତୀତ 'The New Oxford Dictionary'ରେ ପ୍ରବନ୍ଧ ସମ୍ପର୍କରେ କୁହାଯାଇଛି–"A composition of moderate length on a particular subject; originally implying want of finish, but now said of a composition more or less elaborate in style though limited in range." 'The Reader's companion to World Literature'ରେ କୁହାଯାଇଛି–"A short piece of expository prose which attempts to shed some light on a restricted subject of discussion." ଅଧିକାଂଶ ଆଲୋଚକ ପ୍ରବନ୍ଧକୁ ଭାବପ୍ରକାଶର ଶ୍ରେଷ୍ଠ ମାଧ୍ୟମ ରୂପେ ଗ୍ରହଣ କରିଥାନ୍ତି । ଏହା ଏକ ଯୁକ୍ତିନିଷ୍ଠ ଓ ବୁଦ୍ଧିଦୀପ୍ତ କଳା । ଜ୍ଞାନର ବିକାଶ ଓ ବୁଦ୍ଧିକୁ ଶାଣିତ କରିବା କ୍ଷେତ୍ରରେ ଏହାର ଅବଦାନ ସ୍ୱୀକାର୍ଯ୍ୟ । ଚିନ୍ତାଧାରାର ସଂଯତ ବିନ୍ୟାସ ତଥା ଭାବର ବଳିଷ୍ଠ ପରିପ୍ରକାଶ ଉପରେ ଏହାର ସଫଳତା ନିର୍ଭର କରେ । ପ୍ରବନ୍ଧର ବିକାଶ କ୍ଷେତ୍ରରେ ବିଜ୍ଞାନର ପ୍ରଗତି, ପତ୍ରପତ୍ରିକାର ପ୍ରକାଶନ, ମନସ୍ତତ୍ତ୍ୱର ବିକାଶ, ମୁଦ୍ରାଯନ୍ତ୍ରର ପ୍ରତିଷ୍ଠା ତଥା ଶିକ୍ଷାର ବିସ୍ତାରର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ ।

**ପ୍ରବନ୍ଧର ଗଠନରୀତି**–ପ୍ରବନ୍ଧ ଏକ ଗଦ୍ୟରଚନା । ପୁନରାୟ ଏହା ମଧ୍ୟ ଯୁକ୍ତିସିଦ୍ଧ ସ୍ୱୟଂସମ୍ପୂର୍ଣ୍ଣ କଳା । ଯୁକ୍ତିର ଶାଣିତତା, ବୁଦ୍ଧିର ତୀକ୍ଷ୍ଣତା ଓ ଶୃଙ୍ଖଳିତ ପ୍ରକାଶଭଙ୍ଗୀ ଏହାର ମୁଖ୍ୟ ବିଭବ । ଭାବଗାମ୍ଭୀରତା ଯୋଗୁଁ କେତେକ ଏହାକୁ ନୀରସ ରଚନା ରୂପେ ଗ୍ରହଣ କରିଥାନ୍ତି । ମାତ୍ର ବାସ୍ତବରେ ଏହା ସତ୍ୟ ନୁହେଁ । ତାତ୍ତ୍ୱିକ ବିଚାରଧାରା, ଦାର୍ଶନିକତା ଓ ବୁଦ୍ଧି ଏହାକୁ ବହୁପରିମାଣରେ ନିୟନ୍ତ୍ରିତ କରୁଥିବାରୁ ଶୁଷ୍କ ମନେ ହୋଇଥାଏ । କିନ୍ତୁ ସାହିତ୍ୟର ସମସ୍ତ ବିଭବ ତୁଳନାରେ ଏହା ଏକମାତ୍ର ବୁଦ୍ଧିଦୀପ୍ତ ରଚନା ରୂପେ ଗୃହୀତ । ଅନାବଶ୍ୟକ ପଦାର୍ଥ ପ୍ରବନ୍ଧର କଳେବର ମଣ୍ଡନ କରିବାକୁ ଅସମର୍ଥ । ବାକ୍‌ଆଡ଼ମ୍ବରକୁ ଏହା ପ୍ରଶ୍ରୟ ଦିଏ ନାହିଁ । ଶୃଙ୍ଖଳିତ ଓ ସାରଗର୍ଭକ ଶବ୍ଦାବଳୀ ଏହାର ଶରୀର ମଣ୍ଡନ କରିଥାଏ । ଭାବର ଗଭୀରତା ଓ ଭାଷାର ତୀକ୍ଷ୍ଣତା ଏହାକୁ ସୁଷମାମଣ୍ଡିତ କରିଥାଏ । ବିଭିନ୍ନ ଚିନ୍ତା-ଚେତନା, ବୈଜ୍ଞାନିକ ଉଦ୍ଭାବନ, ମନସ୍ତାତ୍ତ୍ୱିକ ବିଚାରଧାରା, ତଥ୍ୟ ବିଶ୍ଳେଷଣରେ ଯୌକ୍ତିକତା ସର୍ବୋପରି ଉପସ୍ଥାପନାରେ ଚମତ୍କାରିତା ପ୍ରବନ୍ଧର ବିଶିଷ୍ଟ ଲକ୍ଷଣ ରୂପେ ଗୃହୀତ । ଭାବ ପ୍ରକାଶରେ ଶୃଙ୍ଖଳା ଏବଂ ଚିନ୍ତାଧାରାରେ ସମତା ରକ୍ଷା ଏହାର ଅନ୍ୟତମ ବୈଶିଷ୍ଟ୍ୟ । ଆଲୋଚକଗଣ ଉଚ୍ଚକୋଟୀର ପ୍ରବନ୍ଧର ପାଞ୍ଚୋଟି ବୈଶିଷ୍ଟ୍ୟ ନିର୍ଦ୍ଧାରଣ କରିଛନ୍ତି । ସେଗୁଡ଼ିକ ହେଲା ସମତା (Balance), ଏକତ୍ୱ (Uniformity), ସଂକ୍ଷିପ୍ତତା (Precision), ସଠିକତା (Accuracy) ଏବଂ ପ୍ରକାଶଭଙ୍ଗୀରେ ସାବଲୀଳତା (Regularity) । ବିଷୟବସ୍ତୁର ବର୍ଣ୍ଣନାରେ ସମାନତା ରକ୍ଷା କରିବାକୁ ସମତା କୁହାଯାଏ । ଏହାଦ୍ୱାରା ଘଟଣା, ବର୍ଣ୍ଣିତ ବିଷୟ ଏବଂ ଉଦ୍ଦେଶ୍ୟ ମଧ୍ୟରେ ସମାନ ଯୋଗସୂତ୍ର ରକ୍ଷା କରାଯାଇଥାଏ । ପ୍ରବନ୍ଧର କଳେବର ମଧ୍ୟରେ ବହୁ ବିଷୟର ଅବତାରଣା କରାଗଲେ ମଧ୍ୟ ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ସାଧନ ଏହାର ଲକ୍ଷ୍ୟ ହେବା ଉଚିତ । ଏକମୁଖୀ ଲକ୍ଷ୍ୟ ପୂରଣରେ ଯାହା ସହାୟତା

ପ୍ରଦାନ କରେ ତାହାହିଁ ଏକତ୍ୱ । ପ୍ରବନ୍ଧକୁ ଗମ୍ଭୀର ଓ ଯୁକ୍ତିନିଷ୍ଠ କରିବା କ୍ଷେତ୍ରରେ ସଂକ୍ଷିପ୍ତତାର ଅବଦାନ ସ୍ୱୀକାର୍ଯ୍ୟ । ଏହା ଅଯଥା ବର୍ଣ୍ଣନା ଓ କଳାହାନିତାକୁ ପ୍ରଶ୍ରୟ ଦିଏ ନାହିଁ । ପ୍ରବନ୍ଧକୁ ବାସ୍ତବଧର୍ମୀ, ତତ୍ତ୍ୱମୂଳକ ଓ ଶ୍ରେୟ କରିବା ଦିଗରେ ସଠିକତାର ଭୂମିକା ମହତ୍ତ୍ୱପୂର୍ଣ୍ଣ । ଅଯଥା କଳ୍ପନାବିଳାସ, ରୋମାଞ୍ଚକର ବର୍ଣ୍ଣନା, ଗାଲୁଚିନ୍ତାଧାରା କିମ୍ବା ଅନାବଶ୍ୟକ ବିଷୟକୁ ସଠିକତା ବାଧା ଦେଇଥାଏ । ପ୍ରବନ୍ଧକୁ ମନୋରମ, ଚିତ୍ତାକର୍ଷକ, ମୁଗ୍ଧକର ଓ ଜନପ୍ରିୟ କରାଇବାରେ ଯାହା ସାହାଯ୍ୟ କରିଥାଏ, ତାହାହିଁ ସାବଲୀଳତା ।

ଜଣେ ପ୍ରାବନ୍ଧିକ ବହୁପାଠୀ ହେବା ଆବଶ୍ୟକ । କାରଣ ମାନବ ଜୀବନର ବିସ୍ତୃତ ଦିଗ ପ୍ରବନ୍ଧର କଳେବର ମଣ୍ଡନ କରୁଥିବାରୁ ଏହାର ସ୍ରଷ୍ଟା ସେହିପରି ବହୁ ବିଷୟରେ ପାରଙ୍ଗମ ହେବା ବିଧେୟ । ଭାଷା ପ୍ରୟୋଗରେ ପରିମିତତା ଓ ଜୀବନର ରହସ୍ୟକୁ ଉପଲବ୍ଧି କରିବାରେ ଆନ୍ତରିକତା ପ୍ରାବନ୍ଧିକଙ୍କର ଶ୍ରେୟ ହେବା ଉଚିତ । ଅନ୍ୟଥା ବାଗାଡ଼ମ୍ବର ଓ ବିଷୟବସ୍ତୁର ଗୁରୁତ୍ୱହୀନତା ପ୍ରବନ୍ଧକୁ ଶୁଷ୍କ ଓ ନୀରସ କରିଥାଏ । ଯୁକ୍ତି ଓ ସମୀକ୍ଷା ମାଧ୍ୟମରେ ନିଜ ଚିନ୍ତାଧାରାକୁ ବିକ୍ଷିପ୍ତ ନ କରି ବରଂ ସଂକ୍ଷିପ୍ତ ହେଲେ ହେଁ କେନ୍ଦ୍ରାଭିମୁଖୀ ଦିଗକୁ ଅଗ୍ରସର କରାଇବା ପ୍ରାବନ୍ଧିକର କର୍ତ୍ତବ୍ୟ । ଘଟଣା ଓ ବର୍ଣ୍ଣନା ମଧ୍ୟରେ ସଂହତି ରକ୍ଷା କରି ଲେଖକ ଭାବର ଧାରାବାହିକତାକୁ ରକ୍ଷା କରିବା ଉଚିତ । ପ୍ରବନ୍ଧର ଭାଷା ସମ୍ବନ୍ଧରେ କୌଣସି କଟକଣା ନ ଥିଲେ ହେଁ, ଯେହେତୁ ଏହା ଏକ ଭାବୋଦ୍ଦୀପ୍ତ ରଚନା, ସେହି କାରଣରୁ ଏହାର ଭାଷା ଇଙ୍ଗିତାତ୍ମକ ବା ପ୍ରତୀକାତ୍ମକ ହେବା ବିଧେୟ । ବ୍ୟକ୍ତିନିଷ୍ଠ ପ୍ରବନ୍ଧର ଭାଷା ଅପେକ୍ଷା ବସ୍ତୁନିଷ୍ଠ ପ୍ରବନ୍ଧର ଭାଷା ଅଧିକ ଗମ୍ଭୀର ଓ ଚିନ୍ତାଧର୍ମୀ ହେବା ଉଚିତ । ତଥାପି ଭାବ ଏବଂ ପ୍ରକାଶଭଙ୍ଗୀ ମଧ୍ୟରେ ଭାଷା ଯୋଗସୂତ୍ର ରକ୍ଷାକରିବା ଆବଶ୍ୟକ । ଭାବକୁ ଶାଣିତ ଓ ଯୁକ୍ତିପୂର୍ଣ୍ଣ କରିବା କ୍ଷେତ୍ରରେ ପ୍ରାବନ୍ଧିକ ଦୃଷ୍ଟି ପ୍ରଦାନ କରିବା ଉଚିତ ।

**ପ୍ରବନ୍ଧର ପ୍ରକାରଭେଦ**—ପ୍ରବନ୍ଧର ବିଭାଗୀକରଣ ସମ୍ବନ୍ଧରେ ଭିନ୍ନ ଭିନ୍ନ ମତ ପରିଲକ୍ଷିତ ହେଲେହେଁ, ଏହାର ସ୍ୱରୂପ ଓ ପ୍ରକୃତିକୁ ଦୃଷ୍ଟି ଆଗରେ ରଖି ଆଲୋଚକଗଣ ମୁଖ୍ୟତଃ ଏହାକୁ ଦୁଇଭାଗରେ ବିଭକ୍ତ କରିଛନ୍ତି । ତାହା ହେଲା ବସ୍ତୁନିଷ୍ଠ ବା ତନ୍ମୟ (Subjective or Impersonal or Informative) ଏବଂ ବ୍ୟକ୍ତିନିଷ୍ଠ ବା ମନ୍ମୟ (Personal) । ବସ୍ତୁନିଷ୍ଠ ପ୍ରବନ୍ଧ ମୁଖ୍ୟତଃ ଭାବ ଉପରେ ଗୁରୁତ୍ୱ ଦେଉଥିବାରୁ ଏହା ଭାବପ୍ରଧାନ । ଏହା ଜ୍ଞାନର ପରିସୀମାକୁ ବୃଦ୍ଧି କରେ । ବସ୍ତୁନିଷ୍ଠ ପ୍ରବନ୍ଧ ନୈର୍ବ୍ୟକ୍ତିକ ଶୈଳୀରେ ରଚିତ ଏବଂ ପାଣ୍ଡିତ୍ୟପ୍ରଧାନ ଓ ବୁଦ୍ଧିଦୀପ୍ତ । ଜ୍ଞାନୀ, ପଣ୍ଡିତ ବ୍ୟକ୍ତିମାନଙ୍କ ନିକଟରେ ଏ ପ୍ରକାର ପ୍ରବନ୍ଧର ଆଦର ଅଧିକ । ବିଷୟ ବା ଘଟଣା ଉପରେ ଏଥିରେ ଗୁରୁତ୍ୱ ପ୍ରଦାନ କରାଯାଉଥିବାରୁ ବିଷୟବସ୍ତୁକୁ ସଂଯତ ତଥା ଶୃଙ୍ଖଳିତ କରିବା କ୍ଷେତ୍ରରେ ଅଧିକ ଯତ୍ନ ନିଆଯାଇଥାଏ । ଏହି ପ୍ରକାର ପ୍ରବନ୍ଧ ପାଠ୍ୟଦ୍ୱାରା ବୁଦ୍ଧି ଶାଣିତ ଓ ଜ୍ଞାନର ଦିଗନ୍ତ ପ୍ରସାରିତ ହୋଇଥାଏ । ବିଷୟବସ୍ତୁ ମଧ୍ୟରେ ଭାବସଂହତି ଏବଂ ଐକ୍ୟସ୍ଥାପନ ଏହାର ଅନ୍ୟତମ ବିଶେଷତ୍ୱ । ଏଥିରେ ନିର୍ଦ୍ଦିଷ୍ଟ ଚିନ୍ତାଧାରା ଅପେକ୍ଷା ସାର୍ବଜନୀନ ଚିନ୍ତାଧାରା ଅଧିକ ଗୁରୁତ୍ୱପୂର୍ଣ୍ଣ । ବସ୍ତୁନିଷ୍ଠ ପ୍ରବନ୍ଧର କଥାବସ୍ତୁ ଓ ପରିସରକୁ ଲକ୍ଷ୍ୟ କରାଯାଇ ଏହାକୁ ଅନ୍ୟ କେତେକ

ବିଭାଗରେ ମଧ୍ୟ ବିଭକ୍ତ କରାଯାଇଛି । ସେହି ବିଭାଗଗୁଡ଼ିକ ମଧ୍ୟରୁ ମୁଖ୍ୟ ହେଉଛି—ବର୍ଣ୍ଣନାତ୍ମକ, ଚିନ୍ତାତ୍ମକ, ବିବରଣାତ୍ମକ, ସମୀକ୍ଷାତ୍ମକ, ଆବେଗିକ, ତତ୍ତ୍ୱମୂଳକ, ଜୀବନୀମୂଳକ, ଦାର୍ଶନିକ ଇତ୍ୟାଦି ।

ମନ୍ମୟ ପ୍ରବନ୍ଧରେ ପ୍ରାବନ୍ଧିକର ବ୍ୟକ୍ତିତ୍ୱ ଓ ଅନୁଭୂତି ପ୍ରାଧାନ୍ୟ ଲାଭ କରିଥାଏ । ବସ୍ତୁନିଷ୍ଠ ପ୍ରବନ୍ଧର ସମ୍ପର୍କ ମସ୍ତିଷ୍କ ସହିତ ରହିଥିବା ସମୟରେ ବ୍ୟକ୍ତିନିଷ୍ଠ ବା ମନ୍ମୟ ପ୍ରବନ୍ଧର ସମ୍ପର୍କ ହୃଦୟ ସହିତ । ପ୍ରାବନ୍ଧିକଙ୍କର ବ୍ୟକ୍ତିଗତ ଅନୁଭୂତି, ଚିନ୍ତାଧାରା, ଜଗତକୁ ଦେଖିବାର ଦୃଷ୍ଟିଭଙ୍ଗୀ କଳାତ୍ମକ ରୀତିରେ ଏଥିରେ ପ୍ରକାଶଲାଭ କରିଥାଏ । ପ୍ରାବନ୍ଧିକ ଏଥିରେ ସୌନ୍ଦର୍ଯ୍ୟ ସୃଷ୍ଟି ପ୍ରତି ଏବଂ ରସଚେତନାର ପ୍ରକାଶ ନିମିତ୍ତ ଅଧିକ ଗୁରୁତ୍ୱ ଦେଇଥାନ୍ତି । ପାଠକ ସହିତ ଲେଖକର ଏକ ଅନ୍ତରଙ୍ଗ ସମ୍ପର୍କ ସ୍ଥାପନ ପାଇଁ ଏଥିରେ ସୁଯୋଗ ରହିଛି । ଏଥିରେ ଏକ ନିର୍ଦ୍ଦିଷ୍ଟ ବିଷୟ ପ୍ରତି ମଧ୍ୟ ଗୁରୁତ୍ୱ ଆରୋପ କରାଯାଇଥାଏ । ମୁଖ୍ୟତଃ ପାଠକ ମନରେ ରସଚେତନା ସୃଷ୍ଟି କରିବା ମନ୍ମୟ ପ୍ରବନ୍ଧର ଲକ୍ଷ୍ୟ ହୋଇଥିବାରୁ ବସ୍ତୁନିଷ୍ଠ ପ୍ରବନ୍ଧ ତୁଳନାରେ ଏହାର ଆଦର ଅଧିକ । ଏହା ଗାମ୍ଭୀର୍ଯ୍ୟପୂର୍ଣ୍ଣ କିମ୍ବା ତତ୍ତ୍ୱନିଷ୍ଠ ନୁହେଁ । ପ୍ରଜ୍ଞା ନୁହେଁ ହୃଦୟ; ପାଣ୍ଡିତ୍ୟ ନୁହେଁ ଭାବ ହେଉଛି ଏହି ପ୍ରକାର ପ୍ରବନ୍ଧର ଉପଜୀବ୍ୟ ଉପାଦାନ । ନିଜକୁ ସରଳ ଭାବରେ ପ୍ରାବନ୍ଧିକ ଏଥିରେ ପ୍ରକାଶ କରୁଥିବାରୁ ପାଠକ ସହିତ ଏକ ସଖ୍ୟ ସମ୍ପର୍କ ସହଜରେ ପ୍ରତିଷ୍ଠିତ ହୋଇଥାଏ । ସମସ୍ୟା ମଧ୍ୟରେ ପାଠକକୁ ନିମଜ୍ଜିତ କରିବା ପରିବର୍ତ୍ତେ, ସମସ୍ୟାର ସମାଧାନ ନିମିତ୍ତ ଏଥିରେ ଉପାଦାନ ଭରି ରହିଥାଏ । ମନ୍ମୟ ପ୍ରବନ୍ଧରେ ପ୍ରାବନ୍ଧିକର ହୃଦୟରୁ ଉତ୍ସାରିତ ଭାବ ଓ ରସ ପାଠକ ପ୍ରାଣକୁ ସଞ୍ଚରିଯାଇ ତାକୁ ଏକ ଅଲୌକିକ ରସାନନ୍ଦରେ ବିହ୍ୱଳିତ କରେ । ସେଥିପାଇଁ ବସ୍ତୁନିଷ୍ଠ ପ୍ରବନ୍ଧ ଅପେକ୍ଷା ବ୍ୟକ୍ତିନିଷ୍ଠ ପ୍ରବନ୍ଧ ପାଠକର ସଂଖ୍ୟା ଅଧିକ । ଓଡ଼ିଆ ସାହିତ୍ୟରେ ଏହି ଦୁଇପ୍ରକାର ପ୍ରବନ୍ଧର ବହୁଳ ପ୍ରଚାର ଲକ୍ଷ୍ୟ କରାଯାଇଥାଏ ।

**ପ୍ରବନ୍ଧ ରଚନାର କେତେକ ବୈଶିଷ୍ଟ୍ୟ**—ଯାହା ଲେଖାଯାଏ, ତାହା ପ୍ରବନ୍ଧ ନୁହେଁ; କିମ୍ବା ସମସ୍ତ ଗଦ୍ୟ ମଧ୍ୟ ପ୍ରବନ୍ଧ ଅନ୍ତର୍ଭୁକ୍ତ ନୁହେଁ । ପ୍ରତ୍ୟେକ ପ୍ରବନ୍ଧର କେତେକ ବୈଶିଷ୍ଟ୍ୟ ରହିଛି । ରଚନାର ଏହି ବିଶିଷ୍ଟତାରୁ ପ୍ରବନ୍ଧର ସ୍ୱରୂପ ସମ୍ବନ୍ଧରେ ଜାଣି ହୋଇଥାଏ । ସେଗୁଡ଼ିକ ହେଲା :

୧ । ପ୍ରବନ୍ଧ ଯଥାସମ୍ଭବ ମୌଳିକ ଓ ଶୃଙ୍ଖଳିତ ଭାବରେ ରଚିତ ହେବା ଉଚିତ ।

୨ । ପ୍ରବନ୍ଧର ବିଷୟବସ୍ତୁ ଅନୁଯାୟୀ ତଥ୍ୟମାନଙ୍କର ସନ୍ନିବେଶ କରିବାର ଆବଶ୍ୟକ ହୋଇଥାଏ ।

୩ । ପ୍ରବନ୍ଧରେ ଅନାବଶ୍ୟକ ବିଷୟ ବା ତଥ୍ୟର ସଂଯୋଗ କରିବା ଅନାବଶ୍ୟକ ।

୪ । ପ୍ରତ୍ୟେକ ପ୍ରବନ୍ଧର ତିନୋଟି ବିଭାଗ ରହିବା ବାଞ୍ଛନୀୟ, ଯଥା—ଉପକ୍ରମ, ବିଷୟବସ୍ତୁ ଓ ଉପସଂହାର । ଉପକ୍ରମରେ ବିଷୟବସ୍ତୁ ସମ୍ପର୍କରେ ପ୍ରାରମ୍ଭିକ ସୂଚନା ପ୍ରଦାନ କରାଯାଇଥାଏ । ପ୍ରବନ୍ଧର ଏହା ଭିତ୍ତିଭୂମି ସ୍ୱରୂପ । କୌଣସି ବିଶେଷ ମତ ବା ଉଦାହରଣରୁ ମଧ୍ୟ ଏହାର ଆରମ୍ଭ ହୋଇପାରେ । ବିଷୟବସ୍ତୁ ପର୍ଯ୍ୟାୟରେ ଯଥାସମ୍ଭବ

ବିଷୟବସ୍ତୁକୁ ତଥ୍ୟନିଷ୍ଠ ଓ ଯୁକ୍ତିପୂର୍ଣ୍ଣଭାବେ ଉପସ୍ଥାପନା କରିବା ବିଧେୟ । ଆବଶ୍ୟକସ୍ଥଳେ ବିଷୟବସ୍ତୁର ଗଭୀରତାକୁ ଲକ୍ଷ୍ୟ କରି ଏହାକୁ ଅନ୍ୟ କେତେକ ବିଭାଗରେ ବିଭକ୍ତ କରାଯାଇପାରେ । ଉପସଂହାରରେ ପ୍ରାବନ୍ଧିକଙ୍କ ମୌଳିକ ମତାମତ ରହିବା ଉଚିତ । ବିଷୟବସ୍ତୁର ସାରାଂଶ ଉପରେ ଏହି ପର୍ଯ୍ୟାୟରେ ଯଥାସମ୍ଭବ ନିରପେକ୍ଷ ମତାମତ ପ୍ରଦାନ କରାଯିବା ଆବଶ୍ୟକ ।

୫ । ପ୍ରବନ୍ଧକୁ ଶୃଙ୍ଖଳିତ ଓ ଭାବକୁ ଗମ୍ଭୀର କରିବା ନିମିତ୍ତ ଆବଶ୍ୟକତା ଅନୁଯାୟୀ ସୂଚନା-ସୂଚୀ ପ୍ରଦାନ କରାଯାଇପାରେ ।

୬ । ଯେଉଁ ବିଷୟରେ ପ୍ରବନ୍ଧ ଲେଖାଯିବ, ତାହା ଯଥାସମ୍ଭବ ଯଥାର୍ଥ ଏବଂ ପ୍ରାମାଣିକ ହେବା ବିଧେୟ ।

୭ । ପ୍ରବନ୍ଧ ରଚନା ପୂର୍ବରୁ ସେ ସମ୍ପର୍କରେ ଗଭୀର ଅନୁଶୀଳନ କରି ଯେତିକି ଆବଶ୍ୟକ, ସେତିକି ଲେଖିବା ଉଚିତ । ଅନାବଶ୍ୟକ ବିଷୟ ପ୍ରବନ୍ଧର ଗୌରବହାନି କରିବା ସଙ୍ଗେ ସଙ୍ଗେ ତାକୁ ମୂଲ୍ୟହୀନ କରିଥାଏ ।

୮ । ପ୍ରବନ୍ଧକୁ ଅଯଥା ବିସ୍ତାରିତ ଭାବରେ ଲେଖିବା ଅନୁଚିତ । ପ୍ରବନ୍ଧ ଯେତିକି ପରିମାଣରେ ସଂକ୍ଷିପ୍ତ ହେବ, ତା'ର ବିଷୟବସ୍ତୁ ସେହି ପରିମାଣରେ ଭାବଗର୍ଭକ ହୋଇପାରିବ ।

୯ । ଏହାର ଆରମ୍ଭ ଚିତ୍ତାକର୍ଷକ ହେଲେ ପାଠକ ମନରେ ଏକ ଚିରନ୍ତନ ପ୍ରଭାବ ବିସ୍ତାର କରିବାକୁ ସମର୍ଥ ହୋଇଥାଏ ।

୧୦ । ବିଷୟବସ୍ତୁ ମଧ୍ୟରେ ପ୍ରଦତ୍ତ ଘଟଣା ବା ଉପାଦାନ ମଧ୍ୟରେ ଐକ୍ୟ ଓ ସଂହତି ପ୍ରତିଷ୍ଠିତ ହେବା ଉଚିତ ।

୧୧ । ପ୍ରବନ୍ଧ ବହୁପରିମାଣରେ ତଥ୍ୟନିଷ୍ଠ ଓ ବିବରଣୀପୂର୍ଣ୍ଣ ହେଲେ, ପାଠକର ଆଗ୍ରହ ସୃଷ୍ଟି କରିବାକୁ ଅସମର୍ଥ ହୋଇଥାଏ ।

୧୨ । କୌଣସି ବିଷୟ ବିବାଦମୂଳକ ହୋଇଥିଲେ, ତାକୁ ବିଷୟବସ୍ତୁରୁ ବାଦ୍ ଦେବା ଉଚିତ । ନଚେତ୍ ଯଥାଯୁକ୍ତ ପ୍ରମାଣ ଅନୁଯାୟୀ ଏହାକୁ ଉପସ୍ଥାପିତ୍ କରିବା ବିଧେୟ ।

୧୩ । କୌଣସି ବିଷୟକୁ ବାରମ୍ବାର ଉଲ୍ଲେଖ ବା ପୁନରାବୃତ୍ତି କରିବା ଅନୁଚିତ୍ । କାରଣ ଏହା ପାଠକର ମନରେ ବିରକ୍ତିଭାବ ସୃଷ୍ଟି କରିଥାଏ ।

୧୪ । ପ୍ରବନ୍ଧକୁ ଶୁଷ୍କ ବା ନୀରସ ନ କରି ବିଭିନ୍ନ ଉଦାହରଣ, ସରଳ ଭାଷା ଦ୍ୱାରା ତାହାକୁ ରସସିକ୍ତ ଓ ଆନନ୍ଦଦାୟକ କରିବା ଆବଶ୍ୟକ ।

**ବିଶ୍ୱ ସାହିତ୍ୟରେ ପ୍ରବନ୍ଧ**—ଅନୁମାନ କରାଯାଏ ଜ୍ଞାନର ଉନ୍ମେଷ ପରେ ପ୍ରବନ୍ଧ ସାହିତ୍ୟର ଜନ୍ମ । ସାହିତ୍ୟର ଅନ୍ୟାନ୍ୟ ବିଭାଗ ତୁଳନାରେ ଏହା ଅଧିକ ଯୁକ୍ତିନିଷ୍ଠ, ତତ୍ତ୍ୱପୂର୍ଣ୍ଣ ଓ

ଜ୍ଞାନଗର୍ଭକ । ସେଥିପାଇଁ ପ୍ରବନ୍ଧ ରଚନା କରିବା ଏକ କଷ୍ଟସାଧ ବ୍ୟାପାର । ବହୁ ବିଷୟରେ ଜ୍ଞାନ ନ ଥିଲେ, ଜଣେ ପ୍ରାବନ୍ଧିକ ହେବା ସମ୍ଭବ ନୁହେଁ । ବିଶ୍ୱ ସାହିତ୍ୟରେ ମଣ୍ଟେନ (Montaigne)ଙ୍କୁ ପ୍ରବନ୍ଧ ସାହିତ୍ୟର ଆଦ୍ୟ ସ୍ରଷ୍ଟାର ସମ୍ମାନ ପ୍ରଦର୍ଶନ କରାଯାଇଥାଏ । Encyclopaedia Britanicaରେ ୧୫୭୧ ମସିହା ବେଳକୁ ପ୍ରବନ୍ଧ ସୃଷ୍ଟିଲାଭ କରିଥିବାର ସୂଚନା ରହିଛି । ୧୫୮୦ ମସିହାରେ ମଣ୍ଟେନ୍‌ଙ୍କର ପ୍ରବନ୍ଧଗୁଡ଼ିକ 'Essais' ନାମରେ ପ୍ରକାଶିତ ହୋଇଥିଲା । ସେ ତାଙ୍କର 'ଡାଏରୀ'କୁ 'Essais' ନାମ ଦେଇ ପ୍ରକାଶ କରିଥିଲେ । ଇଂରାଜୀ ସାହିତ୍ୟରେ ଫ୍ରାନ୍‌ସିସ୍ ବେକନ ହେଉଛନ୍ତି ପ୍ରବନ୍ଧ ସାହିତ୍ୟର ଆଦ୍ୟସ୍ରଷ୍ଟା । ଇଂରାଜୀ ସାହିତ୍ୟର ଅନ୍ୟତମ ଶକ୍ତିଶାଳୀ ପ୍ରାବନ୍ଧିକ ଆବ୍ରାହମ କାଓଲି ଇଂରାଜୀ ପ୍ରବନ୍ଧ ସାହିତ୍ୟକୁ ବହୁପରିମାଣରେ ସମୃଦ୍ଧ କରିଛନ୍ତି । ଜୋସେଫ ଅଡ଼ିସନ୍, ଲ୍ୟାମ୍ବ, ଜନସନ୍, ରିଚାର୍ଡ଼ ଷ୍ଟିଲ୍, ଚେଷ୍ଟରଟନ୍, ହଣ୍ଟ, ଗୋଲଡସ୍ମିଥ୍, ଜୋନାଥନ୍ ସୁଇଫ୍ଟ, ଲାସ୍କି, ରସେଲ, କାର୍ଲାଇଲ୍, ଷ୍ଟିଭେନସନ୍, ମାଥ୍ୟୁ ଆର୍‌ନୋଲ୍‌ଡ, ମିଲ୍, ପେଟାର, ରସ୍‌କିନ୍ ଆଦି ପ୍ରାବନ୍ଧିକ ପରବର୍ତ୍ତୀ ସମୟରେ ଇଂରାଜୀ ପ୍ରବନ୍ଧ ସାହିତ୍ୟକୁ ସମୃଦ୍ଧ କରିବାରେ ପ୍ରମୁଖ ଭୂମିକା ଗ୍ରହଣ କରିଛନ୍ତି । ଇଂରାଜୀ ସାହିତ୍ୟରେ ପ୍ରବନ୍ଧ ବିକାଶଲାଭ କରିବା ପରେ ପରେ ବିଶ୍ୱର ଅନ୍ୟାନ୍ୟ ସାହିତ୍ୟକୁ ଏହା ସଞ୍ଚରିତ ହୋଇଥିଲା ଏବଂ ସାହିତ୍ୟର ଏକ ଶ୍ରେଷ୍ଠ ବିଭାଗ ରୂପେ ପ୍ରତିଷ୍ଠିତ ହେଲା ।

**ଓଡ଼ିଆ ସାହିତ୍ୟରେ ପ୍ରବନ୍ଧର ବିକାଶ**—ଓଡ଼ିଆ ସାହିତ୍ୟରେ ପ୍ରବନ୍ଧ ସାହିତ୍ୟର ଯଥାର୍ଥ ବିକାଶ ହୋଇଛି ଓଡ଼ିଶାରେ ଇଂରାଜୀ ଶିକ୍ଷାର ବିସ୍ତାର ପରେ । ଏ କ୍ଷେତ୍ରରେ ଇଂରାଜୀ ମିସ୍‌ନାରୀମାନଙ୍କର ଅବଦାନ ସର୍ବାଦୌ ସ୍ମରଣୀୟ । ଧର୍ମପ୍ରଚାର ଉଦ୍ଦେଶ୍ୟରେ ସେମାନଙ୍କର ଆଗମନ ହୋଇଥିଲେହେଁ, ସେମାନଙ୍କ ଦ୍ୱାରା ଯେଉଁ ଗଦ୍ୟସାହିତ୍ୟର ସୃଷ୍ଟି ହେଲା, ତଦ୍ଦ୍ୱାରା ପ୍ରବନ୍ଧ ସାହିତ୍ୟ ବିକାଶଲାଭ କରିବାର ସୁଯୋଗ ପାଇଲା । ବିଭିନ୍ନ ଅନୁବାଦ ଦ୍ୱାରା ଗଦ୍ୟସାହିତ୍ୟର ବିକାଶ ନିମିତ୍ତ ସେହି ମିସ୍‌ନାରୀଗଣ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ସ୍କୁଲ ଓ କଲେଜର ପ୍ରତିଷ୍ଠା ଦ୍ୱାରା ପାଠ୍ୟପୁସ୍ତକ ରୂପେ ଗଦ୍ୟସାହିତ୍ୟର ଅନୁବାଦ ଓ ଲିଖନ ହେଲା । ସଟନ୍, ଲେସି ପ୍ରଭୃତି ପାଠ୍ୟପୁସ୍ତକ ରଚନା କରି ଏହାକୁ ବିକାଶ ପଥରେ ଅଗ୍ରସର କରାଇଲେ । ଓଡ଼ିଶାରେ ପତ୍ରପତ୍ରିକାର ପ୍ରକାଶନ ପରେ ପ୍ରବନ୍ଧ ସାହିତ୍ୟ ବିଶେଷଭାବେ ବିକଶିତ ହେଲା । ପ୍ରବନ୍ଧ ସାହିତ୍ୟର ବିକାଶରେ ଯେଉଁ ପତ୍ରପତ୍ରିକାଗୁଡ଼ିକ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ, ତନ୍ମଧ୍ୟରୁ ଜ୍ଞାନାରୁଣ (୧୮୪୯), ପ୍ରବୋଧ ଚନ୍ଦ୍ରିକା (୧୮୫୫), ଅରୁଣୋଦୟ (୧୮୬୧), ଉତ୍କଳ ଦୀପିକା (୧୮୬୬), ବୋଧଦାୟିନୀ (୧୮୬୮), ଉତ୍କଳ ଶୁଭଙ୍କରୀ (୧୮୬୯), ଉତ୍କଳ ହିତୈଷିଣୀ (୧୮୬୯), ଉତ୍କଳ ଦର୍ପଣ (୧୮୭୩), ଉତ୍କଳପୁତ୍ର (୧୮୭୩), ପୁରୁଷୋତ୍ତମ ଚନ୍ଦ୍ରିକା (୧୮୭୪), ଉତ୍କଳ ମଧୁପ (୧୮୭୮), ସେବକ (୧୮୮୩), ତାରକା (୧୮୮୫), ନବସମ୍ବାଦ (୧୮୮୭), ସାମ୍ୟବାଦୀ (୧୮୮୮), ସାହିତ୍ୟ ସମ୍ମିଳନୀ (୧୮୮୯), ସମ୍ବଲପୁର ହିତୈଷିଣୀ (୧୮୮୯), ଉତ୍କଳପ୍ରଭା (୧୮୯୧), ଇନ୍ଦ୍ରଧନୁ (୧୮୯୨), ବିଜୁଳି (୧୮୯୩), ଆଶା (୧୮୯୨), ବ୍ରାହ୍ମ (୧୮୯୪), ଉତ୍କଳବନ୍ଧୁ (୧୮୯୬), ଉତ୍କଳ ସାହିତ୍ୟ (୧୮୯୭),

ଆଲୋଚନା (୧୯୦୦), ଗଡ଼ଜାତ ବାସିନୀ (୧୯୦୨), ମୁକୁର (୧୯୦୬), ଆଶା (୧୯୧୩), ସତ୍ୟବାଦୀ (୧୯୧୫), ସହକାର (୧୯୧୯), ଯୁଗବାଣୀ (୧୯୨୮), ବାରୁଣୀ (୧୯୨୮), ପ୍ରାଚୀ (୧୯୨୮), ଯୁଗବୀଣା (୧୯୩୩), ନବଭାରତ (୧୯୩୪), ଡଗର (୧୯୩୬), ନିଆଁଖୁଣ୍ଟା (୧୯୩୮), ମୀନାବଜାର (୧୯୪୮), ଝଙ୍କାର (୧୯୪୯) ଆଦି ପ୍ରଧାନ । ପତ୍ରପତ୍ରିକାର ପ୍ରକାଶ, ଛାପାଖାନା ପ୍ରତିଷ୍ଠା ଓ ଇଂରାଜୀ ଶିକ୍ଷାର ବିସ୍ତାର ଦ୍ୱାରା ଓଡ଼ିଆ ସାହିତ୍ୟରେ ବହୁପରିମାଣରେ ପ୍ରବନ୍ଧ ରଚିତ ହେଲା । ରାଧାନାଥ ରାୟଙ୍କ ୧୮୭୩ ମସିହାରେ 'ଉତ୍କଳ ଦର୍ପଣ'ରେ ପ୍ରକାଶିତ 'ବିବେକୀ' ପ୍ରବନ୍ଧକୁ ପ୍ରଥମ ପ୍ରବନ୍ଧର ସମ୍ମାନ ପ୍ରଦର୍ଶନ କରାଯାଇଥାଏ ।

ଓଡ଼ିଆ ପ୍ରବନ୍ଧ ସାହିତ୍ୟର ଆଦ୍ୟଭାଗରେ ଯେଉଁ ପ୍ରାବନ୍ଧିକଗଣ ଓଡ଼ିଆ ପ୍ରବନ୍ଧ ସାହିତ୍ୟକୁ ସମୃଦ୍ଧ କରିଛନ୍ତି, ସେମାନଙ୍କ ମଧ୍ୟରେ ରାଧାନାଥ ରାୟ, ଫକୀରମୋହନ ସେନାପତି, ମଧୁସୂଦନ ରାଓ, ନୀଳମଣି ବିଦ୍ୟାରତ୍ନ, ବିଶ୍ୱନାଥ କର ଆଦି ପ୍ରଧାନ । ଏହି ପ୍ରାବନ୍ଧିକଗଣ ପ୍ରଥମରୁ ଓଡ଼ିଶାର ସମାଜ, ସଂସ୍କୃତି ଏବଂ ଐତିହ୍ୟ ଉପରେ ଗୁରୁତ୍ୱ ଆରୋପ କରିଥିଲେ । ଓଡ଼ିଆ ପ୍ରବନ୍ଧ ସାହିତ୍ୟର ମଧ୍ୟଭାଗ ଅତ୍ୟନ୍ତ ସମୃଦ୍ଧିଶାଳୀ । ଏହି ସମୟରେ ପ୍ରବନ୍ଧର ଦିଗନ୍ତ ବିସ୍ତୃତି ଲାଭ କରିଛି । ବହୁ ପ୍ରାବନ୍ଧିକଙ୍କ ଆବିର୍ଭାବ ଦ୍ୱାରା ଓଡ଼ିଆ ପ୍ରବନ୍ଧସାହିତ୍ୟ ସମୃଦ୍ଧ ହୋଇଛି । ମଧ୍ୟଭାଗରେ ଯେଉଁ ପ୍ରାବନ୍ଧିକମାନଙ୍କ ଦ୍ୱାରା ଓଡ଼ିଆ ପ୍ରବନ୍ଧସାହିତ୍ୟ ଏକ ନୂତନ ଦିଗନ୍ତ ଉନ୍ମୋଚନ କରିଥିଲା, ସେମାନଙ୍କ ମଧ୍ୟରେ କୃଷ୍ଣପ୍ରସାଦ ଚୌଧୁରୀ, ଚନ୍ଦ୍ରଶେଖର ନନ୍ଦ, ଶ୍ରୀବତ୍ସ ପଣ୍ଡା, ନନ୍ଦକିଶୋର ବଳ, ଗୋପାଳ ଚନ୍ଦ୍ର ପ୍ରହରାଜ, ପଣ୍ଡିତ ମୃତ୍ୟୁଞ୍ଜୟ ରଥ, ଶଶିଭୂଷଣ ରାୟ, ଜଗବନ୍ଧୁ ସିଂହ, ଜଳନ୍ଧର ଦେବ, ମୋହିନୀମୋହନ ସେନାପତି, ଗୋପବନ୍ଧୁ ଦାଶ, ନୀଳକଣ୍ଠ ଦାଶ, ପଣ୍ଡିତ ଗୋଦାବରୀଶ ମିଶ୍ର, କୃପାସିନ୍ଧୁ ମିଶ୍ର, ପଣ୍ଡିତ ବାସୁଦେବ ମହାପାତ୍ର ଆଦିଙ୍କ ନାମ ଉଲ୍ଲେଖଯୋଗ୍ୟ । ଏହି ସମୟ ମଧ୍ୟରେ ପ୍ରବନ୍ଧର ବିଷୟବସ୍ତୁ ବୈଚିତ୍ର୍ୟ ଲାଭ କରିଛି । ପ୍ରତ୍ନତତ୍ତ୍ୱ, ସମାଲୋଚନା, ଇତିହାସ, ଭାଷା, ସାହିତ୍ୟ, ଶିକ୍ଷା, କଳା, ସମାଜନୀତି, ରାଜନୀତି, ଅର୍ଥନୀତି, ସଂସ୍କୃତି, ଦର୍ଶନ ଆଦିକୁ ଉପଜୀବ୍ୟ କରି ପ୍ରବନ୍ଧମାନ ରଚିତ ହୋଇଛି । ଜୀବନୀମୂଳକ ପ୍ରବନ୍ଧ ରଚନା ଏହି ସମୟର ଅନ୍ୟତମ ଉଲ୍ଲେଖଯୋଗ୍ୟ ପ୍ରୟାସ । ଏହି ସମୟରେ ରଚିତ ପ୍ରବନ୍ଧମାନଙ୍କର ଭାଷା ଏବଂ ଭାବରେ ମଧ୍ୟ ପରିବର୍ତ୍ତନ ଲକ୍ଷ୍ୟ କରାଯାଏ । ପ୍ରବନ୍ଧସାହିତ୍ୟର ଅନ୍ୟତମ ବିଭାଗ ରମ୍ୟରଚନା ମଧ୍ୟ ଏହି ସମୟରେ ବଳିଷ୍ଠ ହୋଇଛି । ତତ୍ସମ ଶବ୍ଦ, କାବ୍ୟିକ ଭାଷା ଓ ଗାଉଁଲି ଭାଷା—ଏହି ତିନୋଟିର ଅପୂର୍ବ ସମନ୍ୱୟ ମଧ୍ୟପର୍ବର ପ୍ରବନ୍ଧମାନଙ୍କରେ ପରିଲକ୍ଷିତ । ଜାତୀୟ ଜୀବନକୁ ସଙ୍ଗଠିତ, ସମୃଦ୍ଧିଶାଳୀ କରିବା କ୍ଷେତ୍ରରେ ଏହି ସମୟର ପ୍ରାବନ୍ଧିକଗଣଙ୍କର ଗୁରୁତ୍ୱପୂର୍ଣ୍ଣ ସହଯୋଗ ରହିଛି ।

ଓଡ଼ିଆ ପ୍ରବନ୍ଧସାହିତ୍ୟର ଆଧୁନିକ ପର୍ବ ବୈଚିତ୍ର୍ୟମୟ । ପ୍ରକାଶଭଙ୍ଗୀରେ ଅପୂର୍ବତା ଓ ପରୀକ୍ଷାଧର୍ମିତାକୁ ଏହା ଆଦରି ନେଇଛି । ଏହି ସମୟରେ ବହୁ ନୂତନ ଶିକ୍ଷିତ ଗୋଷ୍ଠୀ ଆବିର୍ଭୂତ ହୋଇଛନ୍ତି । ରମ୍ୟରଚନା, ଭ୍ରମଣ ସାହିତ୍ୟ, ଆତ୍ମଜୀବନୀ, ଜୀବନୀମୂଳକ ପ୍ରବନ୍ଧ, ସମାଲୋଚନା ଆଦି ବହୁବିଭାଗରେ ଏହା ହୋଇଛି ବୈଚିତ୍ର୍ୟମୟ । ପ୍ରବନ୍ଧ, ଆତ୍ମଜୀବନୀ, ଭ୍ରମଣସାହିତ୍ୟ,

ସମାଲୋଚନା ଆଦି କ୍ଷେତ୍ରରେ ଯେଉଁ ବିଶିଷ୍ଟ ବ୍ୟକ୍ତିଗଣ ଏହି ସମୟରେ ଲେଖନୀ ଚାଳନା କରିଛନ୍ତି ସେମାନଙ୍କ ମଧ୍ୟରେ ରତ୍ନାକର ପତି, ବିପିନବିହାରୀ ରାୟ, ଡଃ ବ୍ରଜବିହାରୀ ମହାନ୍ତି, କାଳିନ୍ଦୀଚରଣ ପାଣିଗ୍ରାହୀ, ଗୋବିନ୍ଦ ଚନ୍ଦ୍ର ତ୍ରିପାଠୀ, ଡଃ ମାୟାଧର ମାନସିଂ, କାଳିଆ ପାଣିଗ୍ରାହୀ, ଡଃ ହରେକୃଷ୍ଣ ମହତାବ, ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଡଃ କୁଞ୍ଜବିହାରୀ ଦାଶ, ଡଃ ଗୋଲୋକବିହାରୀ ଧଳ, ସୁରେନ୍ଦ୍ର ମହାନ୍ତି, ଡଃ ସଦାଶିବ ମିଶ୍ର, ଡଃ ନବୀନକୁମାର ସାହୁ, ଡଃ ଶ୍ରୀରାମ ଚନ୍ଦ୍ର ଦାସ, ଚିତ୍ତରଞ୍ଜନ ଦାସ, ଚନ୍ଦ୍ରଶେଖର ରଥ, ଡଃ ବୈଦ୍ୟନାଥ ମିଶ୍ର, ବାମାଚରଣ ମିତ୍ର, ଚିନ୍ତାମଣି ମିଶ୍ର, କୃଷ୍ଣପ୍ରସାଦ ବସୁ, ଗୋପୀନାଥ ମହାନ୍ତି, ପରମାନନ୍ଦ ଆଚାର୍ଯ୍ୟ, କେଦାରନାଥ ମହାପାତ୍ର, ଡଃ ରାଧାନାଥ ରଥ, ଡଃ ବିଦ୍ୟାଧର ପାଢ଼ୀ, ଗୋକୁଳାନନ୍ଦ ମହାପାତ୍ର, ଶାନ୍ତନୁକୁମାର ଆଚାର୍ଯ୍ୟ, ଦେବକାନ୍ତ ମିଶ୍ର, ବିନୋଦ କାନୁନ୍‌ଗୋ, ଶ୍ରଦ୍ଧାକର ସୁପକାର, ଡଃ ନଟବର ସାମନ୍ତରାୟ, ଗୋପୀନାଥ ନନ୍ଦଶର୍ମା, ଶ୍ୟାମସୁନ୍ଦର ରାଜଗୁରୁ, ଆର୍ତ୍ତବଲ୍ଲଭ ମହାନ୍ତି, ଡଃ ବଂଶୀଧର ମହାନ୍ତି, ପ୍ରହ୍ଲାଦ ପ୍ରଧାନ, ଡଃ କାହ୍ନୁ ଚରଣ ମିଶ୍ର, ଡଃ ଗୋପାଳଚନ୍ଦ୍ର ମିଶ୍ର, ଗୌରୀକୁମାର ବ୍ରହ୍ମା, ଡଃ ବେଣୀମାଧବ ପାଢ଼ୀ, ଡଃ ଜାନକୀବଲ୍ଲଭ ମହାନ୍ତି, ପଠାଣି ପଟ୍ଟନାୟକ, ବେଣୁଧର ରାଉତ, ଚିନ୍ତାମଣି ବେହେରା, ଡଃ କୃଷ୍ଣଚରଣ ସାହୁ, ସଚ୍ଚିଦାନନ୍ଦ ରାଉତରାୟ, ଡଃ ଦେବୀପ୍ରସନ୍ନ ପଟ୍ଟନାୟକ, ଡଃ ଦାଶରଥି ଦାସ, ଡଃ ଗଙ୍ଗାଧର ବଳ, ସୁଧାକର ପଟ୍ଟନାୟକ, ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା, ଡଃ ଧନେଶ୍ୱର ମହାପାତ୍ର, ଡଃ କୃଷ୍ଣଚରଣ ବେହେରା, ପଣ୍ଡିତ ନୀଳମଣି ମିଶ୍ର, ଡଃ ଦୀନବନ୍ଧୁ ରଥ, ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ଡଃ ନରେନ୍ଦ୍ରନାଥ ମିଶ୍ର, ଡଃ ଶ୍ୟାମସୁନ୍ଦର ମହାପାତ୍ର, ଡଃ ଖଗେଶ୍ୱର ମହାପାତ୍ର, ଡଃ ଅସିତ କବି, ଡଃ କ୍ଷେତ୍ରବାସୀ ନାୟକ, ଡଃ ଆଶୁତୋଷ ପଟ୍ଟନାୟକ, ଡଃ ବାସୁଦେବ ସାହୁ, ଡଃ ବୈଷ୍ଣବ ଚରଣ ସାମଲ, ଡଃ ଶରତଚନ୍ଦ୍ର ପ୍ରଧାନ, ଡଃ ଦେବେନ୍ଦ୍ର ମହାନ୍ତି, ଡଃ ନିତ୍ୟାନନ୍ଦ ଶତପଥୀ, ଡଃ ସୁଦର୍ଶନ ଆଚାର୍ଯ୍ୟ, ଡଃ ନୀଳାଦ୍ରିଭୂଷଣ ହରିଚନ୍ଦନ, ଡଃ ବୈରାଗୀଚରଣ ଜେନା ଆଦି ପ୍ରଧାନ । ଏହି ସମୟସୀମା ମଧ୍ୟରେ ପ୍ରତ୍ନତାତ୍ତ୍ୱିକ, ଐତିହାସିକ, ରାଜନୀତିକ, ଆର୍ଥନୀତିକ, ବୈଜ୍ଞାନିକ, ସାମାଜିକ, ନନ୍ଦନତାତ୍ତ୍ୱିକ, ଆତ୍ମଜୀବନୀମୂଳକ, ଆଧ୍ୟାତ୍ମିକ ତଥା ସମାଲୋଚନାତ୍ମକ ଆଦି ବହୁପ୍ରକାର ପ୍ରବନ୍ଧ ରଚିତ ହୋଇଛି । ସମ୍ପ୍ରତି ପ୍ରବନ୍ଧ ସାହିତ୍ୟର ଦିଗନ୍ତ ଆହୁରି ବୈଚିତ୍ର୍ୟମୟ ହୋଇଉଠିଛି । ବହୁ ନୂତନ ତରୁଣ ସାହିତ୍ୟ, କଳା, ଶିକ୍ଷା, ଧର୍ମ, ପ୍ରତ୍ନତତ୍ତ୍ୱ, ବାଣିଜ୍ୟ, ରାଜନୀତି, ଅର୍ଥନୀତି, ବିଜ୍ଞାନ ଆଦି ବହୁ ବିଷୟରେ ପ୍ରବନ୍ଧ ରଚନା କରି ଓଡ଼ିଆ ପ୍ରବନ୍ଧ ସାହିତ୍ୟକୁ ସମୃଦ୍ଧ କରୁଛନ୍ତି । ଓଡ଼ିଆ ପ୍ରବନ୍ଧସାହିତ୍ୟର ଭବିଷ୍ୟତ ଯେ ଉଜ୍ଜ୍ୱଳମୟ ଏଥିରେ ଆଦୌ ସନ୍ଦେହ ନାହିଁ ।



# ଏକବିଂଶ ଶତାବ୍ଦୀର ଭାରତ

(ଉପକ୍ରମ, ଭାରତର ଅତୀତ ଐତିହ୍ୟ ଓ ସଂସ୍କୃତି, ସାଂପ୍ରତିକ ସ୍ଥିତି, ସୁବର୍ଣ୍ଣଜୟନ୍ତୀର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ, ଭାରତର ସାଂପ୍ରତିକ, ସାମାଜିକ, ରାଜନୈତିକ, ଆର୍ଥନୀତିକ ଅବସ୍ଥା, ବିଜ୍ଞାନ ଓ ବୈଷୟିକ ଜ୍ଞାନ, ସମସ୍ୟା ଘେରରେ ଭାରତ, ଭାରତର ଭବିଷ୍ୟତ, ଉପସଂହାର)

ସମଗ୍ର ବିଶ୍ୱରେ ଭାରତବର୍ଷର ଗୌରବର ପଟାନ୍ତର ନାହିଁ । ବିଭିନ୍ନ ଧର୍ମ, ଏକାଧିକ ଭାଷା, ବିପୁଳ ଐଶ୍ୱର୍ଯ୍ୟ ଓ ଦର୍ଶନର ମନୋଜ୍ଞ ସମନ୍ୱୟ ଭାରତ । ଏହାର ସଭ୍ୟତା ଯେପରି ପ୍ରାଚୀନ, ପରମ୍ପରା ସେହିପରି ସ୍ୱତନ୍ତ୍ର । ଶାସକ ଭାବରେ ଏହି ମାଟିରେ ପ୍ରବେଶ କରିଛନ୍ତି ଶକ, ହୁନ, କୁଶାଣ, ଆଫଗାନ, ମୋଗଲ ଓ ଇଂରେଜ । ମାତ୍ର ସମୟକ୍ରମେ ସେମାନଙ୍କ ଶାସନର ବିଲୟ ଘଟିଛି । ଭାରତୀୟ ସଂସ୍କୃତିକୁ ଶତଚେଷ୍ଟା ସତ୍ତ୍ୱେ ଏମାନେ ପଦାନତ କରିପାରି ନାହାନ୍ତି; ପରନ୍ତୁ ଏହି ସଂସ୍କୃତିର ମହାନତା ନିକଟରେ ମଥାନତ କରିଛନ୍ତି । ଅନୈକ୍ୟ ମଧ୍ୟରେ ଐକ୍ୟ ଏହାର ମହତ୍ତ୍ୱ; ବୈଷମ ମଧ୍ୟରେ ସାମ୍ୟ ଏହାର ବିଶେଷତ୍ୱ । ଇତିହାସର ଅନେକ ଢ଼େଉ ଅତିକ୍ରମ କରିଛି ଏହି ଭାରତବର୍ଷ । ୧୧୯୨ ଖ୍ରୀ.ର ଦ୍ୱିତୀୟ ତିରୋରୀ ଯୁଦ୍ଧରେ ପୃଥ୍ୱୀରାଜ ଚୌହାନଙ୍କ ପରାଜୟ ଓ ନିଧନ ପରେ ଭାରତର ସ୍ୱାଧୀନତା ରବି ଅସ୍ତମିତ ହୋଇଯାଇଛି । ଏହି ଶେଷ ସ୍ୱାଧୀନ ନରପତିଙ୍କ ପରାଜୟ ଭାରତର ଭାଗ୍ୟାକାଶରେ ବହୁ ପରିବର୍ତ୍ତନ ଆଣିଛି । ୧୧୯୨ ଖ୍ରୀ. ଠାରୁ ପରାଧୀନତାର ଶୃଙ୍ଖଳରେ ବନ୍ଦୀ ହୋଇଥିବା ଭାରତ ମୁକ୍ତିଲାଭ କରିଛି ୧୯୪୭ ମସିହା ଅଗଷ୍ଟମାସ ୧୪ ତାରିଖ ମଧ୍ୟରାତ୍ରରେ; ପୁଣି ବିଖଣ୍ଡିତ ରୂପରେ । ଏହି ସ୍ୱାଧୀନତା ପଛରେ କେତେ ଯେ ସ୍ୱାଧୀନତା ସଂଗ୍ରାମୀ ଆତ୍ମବଳି ଦେଇଛନ୍ତି; କେତେ ଫାଶିଖୁଣ୍ଟରେ ଝୁଲିଛନ୍ତି ତା'ର ଠିକ୍ ହିସାବ ଇତିହାସ ମଧ୍ୟ ଦେବାକୁ ଅସମର୍ଥ । ତଥାପି ଅହିଂସାର ଅସ୍ତ୍ରରେ ଭାରତ ଯେପରି ତା'ର ଅପହୃତ ସ୍ୱାଧୀନତା ଫେରିପାଇଛି, ବିଶ୍ୱ ଇତିହାସରେ ତା'ର ପ୍ରମାଣ ବିରଳ । ବିଂଶ ଶତାବ୍ଦୀର ଅବସାନ ଘଟି ଅନ୍ୟ ଏକ ନୂତନ ଶତାବ୍ଦୀର ଅୟମାରମ୍ଭ ହୋଇଛି । ଏକବିଂଶ ଶତାବ୍ଦୀରେ ଭାରତ ଆମ ଆଖି ଆଗରେ କିପରି ସ୍ୱପ୍ନର ସାମ୍ରାଜ୍ୟ ଧରି ଉଭାହେବ, ତା'ର ଏକ ଆନୁମାନିକ ଆକଳନ ପ୍ରସ୍ତୁତ କରିବା ଉକ୍ତ ପ୍ରବନ୍ଧର ଉଦ୍ଦେଶ୍ୟ ।

ଭାରତର ଐତିହ୍ୟ ଓ ସଂସ୍କୃତି ବହୁ ପ୍ରାଚୀନ । ସାତହଜାର ବର୍ଷର ପ୍ରାଚୀନ ଐତିହ୍ୟ ଏହାର ସଭ୍ୟତାକୁ ବିକାଶ ଦିଗରେ ସହାୟତା ପ୍ରଦାନ କରିଛି । ତପୋବନ ଓ ଗୁରୁକୁଳ ଆଶ୍ରମରୁ ଏହି ସଭ୍ୟତାର ଅୟମାରମ୍ଭ । ବହିଃଶତ୍ରୁ ଆକ୍ରମଣରେ ବାରମ୍ବାର କ୍ଷତବିକ୍ଷତ ହେଲେହେଁ କୌଣସି ସମୟରେ ତା'ର ଆତ୍ମା ଓ ମୂଲ୍ୟବୋଧରେ ପରିବର୍ତ୍ତନ ଆସି ନାହିଁ । ଆଧ୍ୟାତ୍ମିକ ଶକ୍ତି ବଳରେ ବଳୀୟାନ ଏହାର ଆତ୍ମା ରହିଛି ଚିର ଅକ୍ଷତ ଓ ଜାଜ୍ଜ୍ୱଲ୍ୟମାନ । ସମଗ୍ର ବିଶ୍ୱରେ ଭାରତର ଶିକ୍ଷା, ସଭ୍ୟତା ଓ ସଂସ୍କୃତି ଉଚ୍ଚତର ସ୍ଥାନ ଲାଭ କରିଛି । ବହୁ ବିଦେଶୀ ପଣ୍ଡିତ ଏହାର ଆତ୍ମାର ଅନୁଶୀଳନ

ତଥା ସଂସ୍କୃତି ସମ୍ବନ୍ଧରେ ଗବେଷଣା କରିବାକୁ ଭାରତ ଆଗମନ କରିଛନ୍ତି । ବୈଦିକ ସଭ୍ୟତାର ଉଦାର ଦୃଷ୍ଟିଭଙ୍ଗୀ ସମଗ୍ର ବିଶ୍ୱକୁ ଚମକୃତ କରିଛି । ଭାରତୀୟ ସଂସ୍କୃତି ଗୋଟିଏ ଦିନର ନୁହେଁ; ଯୁଗଯୁଗ ଧରି ସଞ୍ଚିତ ଭାରତୀୟ ଆତ୍ମାର ଯଥାର୍ଥ ପରିପ୍ରକାଶ । ଯଜୁର୍ବେଦର ୭/୧୪ ମନ୍ତ୍ରରେ ''ସା ପ୍ରଥମା ସଂସ୍କୃତି ବିଶ୍ୱବାରା'' ବୋଲି ଭାରତୀୟ ସଂସ୍କୃତିକୁ କୁହାଯାଇଛି । ଏହାର ଅର୍ଥ ଭାରତୀୟ ସଂସ୍କୃତି ବିଶ୍ୱରେ ସର୍ବପ୍ରଥମ ଓ ସର୍ବଶ୍ରେଷ୍ଠ ଏବଂ ସମଗ୍ର ବିଶ୍ୱ ପାଇଁ ବରଣୀୟ । ଏହାର ପୃଷ୍ଠଭୂମି ଯେପରି ବିରାଟ, ତା'ର ଆଦର୍ଶ ମଧ୍ୟ ସେହିପରି ମହତ୍ । ଏ ଦେଶର ମୁନିଋଷିମାନେ ଦେଖାଇଛନ୍ତି ତ୍ୟାଗର ପଥ । ସନ୍ଧାନ ଦେଇଛନ୍ତି ଆଦର୍ଶ ଜୀବନର ଏବଂ ଶିଖାଇଛନ୍ତି ମୈତ୍ରୀର ଭାବ । ଭାରତୀୟ ସଂସ୍କୃତି ବିକାଶର ପୃଷ୍ଠଭୂମିରେ ରହିଛି ରାମ, କୃଷ୍ଣ, ବ୍ୟାସ, ବୁଦ୍ଧ, ଶଙ୍କରାଚାର୍ଯ୍ୟ, ଚୈତନ୍ୟ, ନାନକ, ଅରବିନ୍ଦ, ବିବେକାନନ୍ଦ ଆଦି ମହାପୁରୁଷମାନଙ୍କର ପ୍ରୟାସ । ଅନେକ ମଧ୍ୟରେ ଐକ୍ୟ ଓ ବିଶ୍ୱଜନୀନତା ଏହାର ଆଦର୍ଶ । ସେଥିପାଇଁ ବେଦରେ ଘୋଷଣା କରାଯାଇଛି—

ସମାନୋ ମନ୍ତ୍ରଃ ସମିତିଃ ସମାନୀ ।। ସମାନଂ ମନଃ ସହଚିତ୍ତମେଷାମ୍
ସମାନଂ ମନ୍ତ୍ରଂ ଅଭିମନ୍ତ୍ରୟେ ବଃ ।। ସମାନେନ ବୋ ହବିଷାଜୁହୋମି
ସମାନୀ ବ ଆକୂତିଃ ସମାନୋ ହୃଦୟାନି ବଃ ।। ସମାନ୍ ମସ୍ତୁ ବୋ ମନଃ ।
ଯଥା ବଃ ସୁ ସହାସତି ।

ଭାରତୀୟ ସଂସ୍କୃତିର ମହାନତା, ପବିତ୍ରତା ଓ ସରଳତା ବିଶ୍ୱର ଅନ୍ୟ ସଂସ୍କୃତିରେ ବିରଳ । ସେଥିପାଇଁ ଭାରତୀୟ ସଂସ୍କୃତିର ତପୋବନର ମହିମା ଲକ୍ଷ୍ୟ କରି ଗେଟେ ଭାବପ୍ରବଣ ହୋଇ କହିଥିଲେ— "Wouldst thou the year's blossoms and the fruits of its decline. And all by which the soul is charmed, enraptured, feasted and fed would thou the Earth and Heaven itself on one soul name combine ? I name thee, O' Sacontala, and all at once is said" ଶାନ୍ତିପୂର୍ଣ୍ଣ ସହାବସ୍ଥାନ ନୀତିରେ ଏହା ବିଶ୍ୱାସୀ । ଭାରତୀୟ ସଂସ୍କୃତି ଓ ଐତିହ୍ୟର ବିଶେଷତ୍ୱ ହେଉଛି ତା'ର ଉଦାରବାଦୀ ଦୃଷ୍ଟିଭଙ୍ଗୀ । ଜୀବେଦୟା ନୀତିରେ ବିଶ୍ୱାସୀ ଭାରତୀୟ ଅହିଂସା ଅସ୍ତ୍ରରେ ବଣିକ ଜାତି ଇଂରେଜମାନଙ୍କୁ ପରାସ୍ତ କରିଛନ୍ତି । ପାଶ୍ଚାତ୍ୟ ସଭ୍ୟତାର ମହତ୍ତର ଗୁଣଗୁଡ଼ିକୁ ଗ୍ରହଣ କରିବାକୁ ଏହା କେବେ ପରାଙ୍ମୁଖ ହୋଇ ନାହିଁ । ଚିକାଗୋ ଧର୍ମସଭାରେ ବିବେକାନନ୍ଦ ଭାରତୀୟ ଆତ୍ମା ତଥା ଧର୍ମଦର୍ଶନର ପରିଚୟ ପ୍ରଦାନ କରି ବିଶ୍ୱବାସୀଙ୍କୁ ଚମକୃତ କରିଛନ୍ତି । ଗାନ୍ଧିଜୀଙ୍କ ଅହିଂସା ଆନ୍ଦୋଳନ ବିଶ୍ୱରାଜନୀତିକୁ ନୂତନ ମୋଡ଼ ପ୍ରଦାନ କରିଛି । ଏହିପରି ଏକ ମହାନ୍ ସଂସ୍କୃତି ଓ ଐତିହ୍ୟର ଦେଶ ଭାରତବର୍ଷ ।

ଭାରତର ସାଂପ୍ରତିକ ସ୍ଥିତି ବିଷୟରେ ଆଲୋଚନା କଲେ ଅନେକ ଅସହାୟର ବୁଢ଼ିଆଣୀ ସୂତା ଜାଲ ଘେରାଇଦିଏ । ରାଜନୀତି, ଅର୍ଥନୀତି, ସମାଜନୀତି– ପ୍ରତି କ୍ଷେତ୍ରରେ ଭାରତ ଆଶାନୁରୂପ ଅଗ୍ରଗତି କରି ପାରି ନାହିଁ । ଅତୀତରେ ଭାରତର ସଂସ୍କୃତି ବିଶ୍ୱର ଥିଲା

ଆଦର୍ଶ । ବର୍ତ୍ତମାନ ବିଭିନ୍ନ କ୍ଷେତ୍ରରେ ଭାରତ ଅନ୍ୟମାନଙ୍କୁ ଅନୁସରଣ କରୁଛି । ଏକବିଂଶ ଶତାବ୍ଦୀର ଭାରତ କି ପ୍ରକାର ରୂପରେଖ ଗ୍ରହଣ କରିବ; ତାହା ଏବେ ବି ଅସଂଖ୍ୟ ପ୍ରଶ୍ନବାଚୀ ଟେକି ଠିଆ ହୋଇଛି । ବିଶ୍ୱ ରାଜନୀତିରେ ଭାରତର ସ୍ଥିତି ଅତ୍ୟନ୍ତ ଦୟନୀୟ । ଶୋଷଣ, ଦୁର୍ନୀତି, ଅନ୍ୟାୟ, ଅତ୍ୟାଚାର, ଧର୍ଷଣ– ପ୍ରତି କ୍ଷେତ୍ରରେ ଭାରତ ଅଗ୍ରଗତି ଲାଭ କରିଛି । ଅତୀତରେ ଆମର ସାମାଜିକ ଜୀବନରେ ନାରୀମାନଙ୍କର ଭୂମିକା ଥିଲା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ନାରୀମାନଙ୍କୁ ସମ୍ମାନ ଦେଲେ ସାମାଜିକ ଜୀବନ ସୁସ୍ଥ ଓ ସୁନ୍ଦର ହୁଏ ବୋଲି ଆମର ପୂର୍ବପୁରୁଷଗଣ ସତର୍କ କରାଇ ଦେଇଥିଲେ । ''ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ, ରମ୍ୟତେ ତତ୍ର ଦେବତା''– ଏପରି ଏକ ବିଶ୍ୱାସ ଆମ ସମାଜରେ ବଳବତ୍ତର ରହିଥିଲା । ଭାରତୀୟ ସାମାଜିକ ଜୀବନର ଏହି ମହତ୍ ଆଦର୍ଶ ଆଜି ସଂପୂର୍ଣ୍ଣ ବିଡ଼ମ୍ବିତ । ଆଜି ନାରୀ ଏକ ଭୋଗ୍ୟବସ୍ତୁର ସାମଗ୍ରୀରେ ପରିଣତ ହୋଇଛନ୍ତି । ସଂପ୍ରତି ଆମର ନୈତିକ ଜୀବନରେ ମଧ୍ୟ ଅଧୋପତନ ଘଟିଛି । ଆଦର୍ଶର ପ୍ରତିଷ୍ଠା ପାଇଁ କେହି ସଂଗ୍ରାମ କରୁନାହାନ୍ତି । ବରଂ ନିଜର ବ୍ୟକ୍ତିଗତ ସ୍ୱାର୍ଥ ସାଧନ ନିମିତ୍ତ ସମସ୍ତେ ସଚେଷ୍ଟ । ରାଜନୀତି ଏକ ଘୃଣ୍ୟ ନୀତିରେ ପରିଣତ ହୋଇଛି । ଅତୀତରେ ଆଦର୍ଶବାଦୀ ବ୍ୟକ୍ତିତ୍ୱ ରାଜନୀତିରେ ପ୍ରମୁଖ ଭୂମିକା ଗ୍ରହଣ କରୁଥିଲେ ; ବର୍ତ୍ତମାନ କଳାବଜାରୀ, ଗୁଣ୍ଡା, ବଦ୍‌ମାସ ଓ ଅସାମାଜିକ ବ୍ୟକ୍ତିତ୍ୱ ରାଜନୀତିକୁ ମାଡ଼ିବସିଛି । ଚାଣକ୍ୟଙ୍କ ପରି ବୁଦ୍ଧିଜୀବୀ ରାଜନୀତିଜ୍ଞ ସରକାରୀ ଅର୍ଥରେ ବ୍ୟକ୍ତିଗତ ସେବା କରିବାକୁ କୁଣ୍ଠା ପ୍ରକାଶ କରୁଥିଲେ । ବର୍ତ୍ତମାନ ରାଜନୀତିଜ୍ଞଗଣ ସରକାରୀ ଅର୍ଥରେ କେବଳ ନିଜର ନୁହେଁ; ପରିବାର ତଥା ବନ୍ଧୁବାନ୍ଧବମାନଙ୍କର ସେବା କରିବାକୁ କୁଣ୍ଠିତ ହେଉନାହାନ୍ତି । ସରକାରୀ ତହବିଲକୁ ଶୋଷଣ କରି ନିଜ ବ୍ୟାଙ୍କ୍ ବାଲାନ୍‌ସ ବୃଦ୍ଧି କରୁଛନ୍ତି । ପ୍ରଜାମାନଙ୍କର ତୋଷଣ ନୁହେଁ; ପ୍ରଜା ଶୋଷଣ ହୋଇଛି ଆଜି ରାଜନୈତିକ ନେତାମାନଙ୍କର ଆଦର୍ଶ । ନିଜ ସ୍ୱାର୍ଥ ପାଇଁ ଦେଶର ସ୍ୱାର୍ଥକୁ ବିକ୍ରିକରିବାରେ ସେମାନେ ତିଳେମାତ୍ର ଦ୍ୱିଧା ପ୍ରକାଶ କରୁନାହାନ୍ତି । 'ଗରିବି ହଟାଓ' କେବଳ ଏକ ସ୍ଲୋଗାନ୍‌ରେ ପରିଣତ ହୋଇଛି । 'ଜୟ ଜବାନ୍, ଜୟ କିଶାନ୍'– କେବଳମାତ୍ର ଶ୍ରୁତିରୋଚକ ଶବ୍ଦାବଳୀ । 'ଜୟହିନ୍ଦ୍'– କେବଳମାତ୍ର ଶବ୍ଦବାଣ । ପ୍ରତିମୁହୂର୍ତ୍ତରେ ଏ ଦେଶର ନିରୀହ ଜନସାଧାରଣ ସ୍ୱପ୍ନଭଙ୍ଗ ମଧ୍ୟଦେଇ ଗତିଶୀଳ । ସ୍ୱାଧୀନତା ସଂଗ୍ରାମୀ ଭାରତର ସାଂପ୍ରତିକ ସ୍ଥିତି ଉପଲବ୍ଧି କରି ଲଜ୍ଜା ଓ କ୍ଷୋଭରେ ମୂହ୍ୟମାନ । ସ୍ୱାଧୀନତା ସଂଗ୍ରାମର ସମସ୍ତ ଆଦର୍ଶ ଭୂଲୁଣ୍ଠିତ । ଗାନ୍ଧିଜୀଙ୍କ ମାନବିକତା, ଅରବିନ୍ଦଙ୍କ ଆଧ୍ୟାତ୍ମିକ ଦର୍ଶନ, ବିବେକାନନ୍ଦଙ୍କ ଦୂରଦୃଷ୍ଟି, ବୈଦିକ ଋଷିଙ୍କ ବିଶ୍ୱଜନପ୍ରୀତି, ଗୋପବନ୍ଧୁଙ୍କ ଦରିଦ୍ରନାରାୟଣ ସେବା, ଜନକଙ୍କର ପ୍ରଜାପ୍ରୀତି, ଭରତଙ୍କର ଭ୍ରାତୃପ୍ରେମ ସବୁ ଯେପରି ଅନ୍ତର୍ହିତ ହୋଇଯାଇଛି ଭାରତୀୟଙ୍କ ମନରୁ । ପବିତ୍ର ରାଜନୀତିର ଅମୃତ ଭାଣ୍ଡରେ ବିଷର ଉଦ୍‌ଗୀରଣ ହେଉଛି । ଅବିଶ୍ୱାସର ବାତାବରଣ ମଧ୍ୟରେ ପ୍ରତ୍ୟେକଟି ମଣିଷ ଆଜି ସନ୍ତୁଳିତ । ଭାରତୀୟମାନେ ଶାରୀରିକ ପରାଧୀନତାରୁ ମୁକ୍ତିଲାଭ କରିଥିଲେ ହେଁ, ମାନସିକ ପରାଧୀନତାରୁ ମୁକ୍ତ ନୁହନ୍ତି । ତଥାପି ଆମେ ସ୍ୱପ୍ନ ଦେଖୁଛୁ ଏକବିଂଶ ଶତାବ୍ଦୀ ଆମ ପାଇଁ ଅନେକ ଆଶା ଏବଂ ଆଶ୍ୱାସନାର ବାର୍ତ୍ତାନେଇ ଆସିବବୋଲି ।

୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଭାରତ ସ୍ୱାଧୀନହେଲା । ୧୯୯୭ ମସିହା ଅଗଷ୍ଟ ପନ୍ଦର ତାରିଖ ଦିନ ଭାରତ ବହୁ ଆଡ଼ମ୍ବରରେ ତା'ର ସ୍ୱାଧୀନତାର ସୁବର୍ଣ୍ଣଜୟନ୍ତୀ ପାଳନ କଲା । ଅତୀତରେ ଭାରତର ସ୍ୱାଧୀନତା ସଂଗ୍ରାମରେ ଝାସଦେଇ ଏ ଦେଶର ବହୁ ସ୍ୱାଧୀନଚେତା ଓ ଦେଶପ୍ରେମୀ ଆତ୍ମବଳି ଦେଇଛନ୍ତି । ପରାଧୀନତାର ଶୃଙ୍ଖଳରୁ ମୁକ୍ତିଲାଭ ପାଇଁ ସେମାନଙ୍କର ଆତ୍ମବଳି ଆଜି କେବଳ ଇତିହାସର ପୃଷ୍ଠା ମଣ୍ଡନ କରିଛି । ଏ ଦେଶର ଜନସାଧାରଣ, ବିଶେଷକରି ରାଜନୀତିକ ନେତାମାନଙ୍କ ମନରେ ସେମାନଙ୍କ ସଂଗ୍ରାମର କାହାଣୀ କୌଣସି ପ୍ରତିକ୍ରିୟା ସୃଷ୍ଟି କରିପାରି ନାହିଁ । ଦେଶ ସ୍ୱାଧୀନ ହେବା ପୂର୍ବରୁ ଭାରତୀୟଙ୍କ ମନରେ କେତେ ସ୍ୱପ୍ନ ଥିଲା । ଉପନିବେଶବାଦୀଙ୍କ ଅତ୍ୟାଚାରରୁ ମୁକ୍ତି ମିଳିବ, ଆର୍ଥିକସ୍ଥିତି ସମୃଦ୍ଧିଶାଳୀ ହେବ, ଶୋଷଣ ଓ କଷଣର ଅବସାନ ଘଟିବ, ଜାତି-ଧର୍ମ-ବର୍ଣ୍ଣ-ଲିଙ୍ଗ ନିର୍ବିଶେଷରେ ସମସ୍ତେ ସମଅଧିକାର ଲାଭ କରିବେ, ଅମର ଶହୀଦମାନଙ୍କର ଆତ୍ମବଳିଦାନ ବ୍ୟର୍ଥ ହେବ ନାହିଁ, ଶିକ୍ଷାର ଆଲୋକରେ ସମସ୍ତେ ହେବେ ଆଲୋକିତ, ରାଜା ଓ ପ୍ରଜା ମଧ୍ୟରେ ସୃଷ୍ଟି ହୋଇଥିବା ପ୍ରାଚୀର ଭାଙ୍ଗିପଡ଼ିବ, ଦୁର୍ନୀତି ଓ ଶୋଷଣ ବିଲୟ ଭଜିବ, ଯୁଗ ଯୁଗ ଧରି ରହିଆସିଥିବା ଖଟିଖିଆ ଓ ମାଲିକର ପ୍ରଭେଦ ରେଖା ଦୂର ହେବ, ଅସ୍ପୃଶ୍ୟତା, ଦାରିଦ୍ର୍ୟ ଓ ନିରକ୍ଷରତା ଲୋପ ହେବ, ଏକ ଶାନ୍ତିପୂର୍ଣ୍ଣ ସହାବସ୍ଥାନର ବାତାବରଣ ମଧ୍ୟରେ ସମସ୍ତ ଭାରତୀୟ ଜୀବନ ଅତିବାହିତ କରିବେ — ଏହିପରି ଅନେକ ସ୍ୱପ୍ନ ସେତେବେଳେ ଭାରତୀୟମାନଙ୍କୁ ଉଚ୍ଚାଟିତ କରିଥିଲା । ଭାରତୀୟ ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ସାରଥି ପଣ୍ଡିତ ଜବାହରଲାଲ ନେହେରୁ ଘୋଷଣା କରିଥିଲେ, 'ଭାରତ ସ୍ୱାଧୀନତା ଲାଭ କଲେ କଳାବଜାରୀମାନଙ୍କୁ ନିକଟତମ ଲ୍ୟାମ୍ପପୋଷ୍ଟରେ ଫାଶି ଦିଆଯିବ ।' ସ୍ୱାଧୀନତା ପରେ ଜଣେହେଲେ କଳାବଜାରୀ ଫାଶି ପାଇବା ତ ଦୂରର କଥା; ଭାରତର ରାଜନୀତି କଳାବଜାରୀମାନଙ୍କ ଦ୍ୱାରା ନିୟନ୍ତ୍ରିତ ହୋଇଛି କହିଲେ ଭୁଲ୍ ହେବ ନାହିଁ । ସ୍ୱଦେଶପ୍ରାଣତା, ଶୃଙ୍ଖଳା, ସାଧୁତା, ନିଷ୍ଠା, କର୍ତ୍ତବ୍ୟପରାୟଣତା, ସ୍ୱାର୍ଥହୀନତା ଆଦି ଶବ୍ଦଗୁଡ଼ିକ ରାଜନୀତିର ଅଭିଧାନରୁ ସମ୍ପୂର୍ଣ୍ଣ ନିର୍ବାସିତ ହୋଇଛି । ଆତ୍ମମର୍ଯ୍ୟାଦାର ସହିତ ଜୀବନଯାପନ କରିବା କେବଳ ସ୍ୱପ୍ନ ହୋଇ ରହିଯାଇଛି । ଭାରତ ସୁବର୍ଣ୍ଣ ଜୟନ୍ତୀ ପାଳନ କରୁଥିବା ସମୟରେ କେତେ ଯେ ଅର୍ଦ୍ଧାହାର, ଅନାହାରରେ ପ୍ରାଣ ବିସର୍ଜନ କରୁଛନ୍ତି, କେତେ ଶିଶୁ ପୁଷ୍ଟିକର ଖାଦ୍ୟାଭାବରୁ ମୃତ୍ୟୁମୁଖରେ ପଡୁଛନ୍ତି ବା ଶିଶୁ ଶ୍ରମିକ ରୂପେ ଜୀବନ ଅତିବାହିତ କରୁଛନ୍ତି, ଦୁର୍ନୀତି ଓ ଶୋଷଣ କିପରି ଗୋଟିଏ ଉଦ୍‌ବେଗଜନକ ଅବସ୍ଥାରେ ପହଞ୍ଚିଛି — ସେ ସମ୍ପର୍କରେ କେହି ତିଳେମାତ୍ର ଚିନ୍ତା କରୁନାହାନ୍ତି । ଦାରିଦ୍ର୍ୟର ବିଲୋପ ପାଇଁ ପ୍ରତ୍ୟେକ ରାଜନୈତିକ ନେତା ଆହ୍ୱାନ ଦେଉଥିବା ସମୟରେ ଜାତିସଙ୍ଘର ମାନବିକ ଉନ୍ନୟନ ରିପୋର୍ଟ ଅନୁଯାୟୀ ୧୯୫୧ ମସିହାରେ ଭାରତରେ ଦରିଦ୍ରମାନଙ୍କର ସଂଖ୍ୟା ୧୬୪ ନିୟୁତ ଥିବା ସମୟରେ ୧୯୯୩-୯୪ ମସିହାରେ ଏହା ୩୧୨ ନିୟୁତରେ ପହଞ୍ଚିଛି । ବର୍ତ୍ତମାନ ଭାରତରେ ପୁଷ୍ଟିହୀନ ଶିଶୁଙ୍କ ସଂଖ୍ୟା ସାତକୋଟିରୁ ଅଧିକ । International Labour Organisation ର ସମୀକ୍ଷା ଅନୁଯାୟୀ ଭାରତରେ ସର୍ବାଧିକ ଶିଶୁ ଶ୍ରମିକ ରହିଛନ୍ତି । ବହୁ ଶିଶୁ ଶ୍ରମିକଙ୍କୁ ମଧ୍ୟପ୍ରାଚ୍ୟ ଓ ଆରବ ରାଷ୍ଟ୍ରମାନଙ୍କରେ ବିକ୍ରୟ

କରାଯାଉଛି । ୟୁନିସେଫ୍ ରିପୋର୍ଟ ଅନୁଯାୟୀ ଭାରତରେ ପ୍ରତିବର୍ଷ ୨· କୋଟି ୫୦ ଲକ୍ଷ ଶିଶୁ ଜନ୍ମ ଲାଭ କରୁଥିବା ସମୟରେ ପ୍ରାୟ ୨୦ ଲକ୍ଷ ୬୦ ହଜାର ଶିଶୁ ପାଞ୍ଚ ବର୍ଷ ସମ୍ପୂର୍ଣ୍ଣ ହେବା ପୂର୍ବରୁ ପ୍ରାଣ ହରାଇଥାନ୍ତି । ୟୁନିସେଫ୍ ର ଅନ୍ୟ ଏକ ରିପୋର୍ଟରୁ ଜଣାଯାଏ ପୃଥିବୀରେ ଶିଶୁ ଜନ୍ମ ସମୟରେ ପ୍ରାଣ ହରାଉଥିବା ମହିଳାମାନଙ୍କ ମଧ୍ୟରୁ ଶତକଡ଼ା ୨୫ ଭାଗ କେବଳ ଭାରତରେ ଦେଖାଯାଇଥାଏ । ଟ୍ରାନ୍ସପାରେନ୍ସି ଇଣ୍ଟରନେସ୍‌ନାଲ୍ ସଂସ୍ଥା ପୃଥିବୀର ଭ୍ରଷ୍ଟାଚାର ଓ ଦୁର୍ନୀତିଗ୍ରସ୍ତ ଦେଶମାନଙ୍କ ସମ୍ପର୍କରେ ସମୀକ୍ଷା କରି ଯେଉଁ ବିବରଣୀ ପ୍ରଦାନ କରିଛନ୍ତି, ସେଥିରୁ ଜଣାଯାଏ ପୃଥିବୀର ଭ୍ରଷ୍ଟ ଓ ଦୁର୍ନୀତିଗ୍ରସ୍ତ ଦେଶମାନଙ୍କ ତାଲିକାରେ ଭାରତର ସ୍ଥାନ ହେଉଛି ଅଷ୍ଟମରେ । ବର୍ତ୍ତମାନ ରାଜନୀତି କରୁଥିବା ବ୍ୟକ୍ତି (ବିଧାନସଭା, ବିଧାନପରିଷଦ ବା ପାର୍ଲାମେଣ୍ଟର ସଦସ୍ୟ)ଙ୍କ ମଧ୍ୟରୁ ପ୍ରାୟ ୫୦ ଭାଗରୁ ଊର୍ଦ୍ଧ୍ୱ ବ୍ୟକ୍ତିଙ୍କ ନାମରେ ଅନେକ ମାମଲା ବିଭିନ୍ନ ଅଦାଲତ ବା ଥାନାରେ ପଡ଼ିରହିଛି । ଭୋରା କମିଟି ରିପୋର୍ଟରୁ ମଧ୍ୟ ଭାରତୀୟ ରାଜନୀତିରେ କିପରି ଅପରାଧୀକରଣ ବୃଦ୍ଧି ପାଉଛି ତା'ର ସୂଚନା ରହିଛି । ଏହାସତ୍ତ୍ୱେ ଖୁବ୍ ଆଡ଼ମ୍ବର ସହକାରେ ଗରମ ଭାଷଣ ଦ୍ୱାରା ସ୍ୱାଧୀନତାର ସୁବର୍ଣ୍ଣଜୟନ୍ତୀ ପାଳନ କରିଛୁ । କୋଟି କୋଟି ଟଙ୍କା ଖର୍ଚ୍ଚ କରି ଗରିବ ଭାରତୀୟଙ୍କ ଉପରେ ଆଉ କିଛି ଋଣର ବୋଝ ଲଦିଦେଇଛୁ । ମାତ୍ର ଦେଢ଼ବର୍ଷ ମଧ୍ୟରେ ଦୁଇ ଦୁଇଟି ନିର୍ବାଚନ କରି ରାଜକୋଷରୁ ଅଧିକ ଏକହଜାର କୋଟି ଟଙ୍କା ଖର୍ଚ୍ଚ କରିଦେଇଛୁ । ଯେଉଁ ମୁଷ୍ଟିମେୟ କେତେଜଣ ଭାରତୀୟ ସ୍ୱାଧୀନତା ସଂଗ୍ରାମୀ ଏବେବି ଜୀବିତ, ସାମ୍ପ୍ରତିକ ଭାରତର ସ୍ଥିତି ସନ୍ଦର୍ଶନରେ ସେମାନେ ମୂହ୍ୟମାନ । ଏହା ସତ୍ତ୍ୱେ ସୁବର୍ଣ୍ଣଜୟନ୍ତୀ ବର୍ଷରେ ଭାରତର ଭବିଷ୍ୟତ ନେଇ ଆମେ ଏବେବି ଆଶାବାଦୀ । ସ୍ୱାଧୀନତା ପରେ ଭାରତ ଯେ ବିଭିନ୍ନ କ୍ଷେତ୍ରରେ ପ୍ରଗତି କରି ନାହିଁ ତାହା ନୁହେଁ । ମାତ୍ର ପ୍ରଗତି ପରିମାଣରେ ଅଧୋଗତି ଅଧିକ । ତଥାପି ଆର୍ଥିକ କ୍ଷେତ୍ରରେ ନଅଟି ପଞ୍ଚବାର୍ଷିକ ଯୋଜନା ଦ୍ୱାରା ଆମେ କିଛ ପରିମାଣରେ ଉପକୃତ ହୋଇଛୁ । ବିଦ୍ୟୁତ୍‌କରଣ କ୍ଷେତ୍ରରେ ଆମେ ଯଥେଷ୍ଟ ଅଗ୍ରଗତି କରିଛୁ । ପ୍ରତିରକ୍ଷା କ୍ଷେତ୍ରରେ ବହୁପରିମାଣରେ ସ୍ୱାବଲମ୍ବନଶୀଳ ହୋଇପାରିଛୁ । ବୈଦେଶିକ ନୀତିରେ ସମୀକ୍ଷା କରି ବଙ୍ଗଳାଦେଶ, ଚୀନ, ଆମେରିକା ଆଦି ଦେଶମାନଙ୍କ ସହିତ ସୁସମ୍ପର୍କ ସ୍ଥାପନ କରିପାରିଛୁ । ଶିଳ୍ପ, କୃଷି, ଯୋଜନା, ଶିକ୍ଷା, ଚିକିତ୍ସା ଶାସ୍ତ୍ର, ଦୂରଦର୍ଶନ, ବେତାର, ଚଳଚ୍ଚିତ୍ର ଆଦି କ୍ଷେତ୍ରରେ ମଧ୍ୟ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ହୋଇଛି । ଏହାର ଭବିଷ୍ୟତ ମଧ୍ୟ ଅଧିକ ଉଜ୍ଜ୍ୱଳମୟ ବୋଲି ଅନୁମିତ ହୁଏ । ଆଶା କରାଯାଏ, ଏହିସବୁ କ୍ଷେତ୍ରରେ ଭାରତ ଏକବିଂଶ ଶତାବ୍ଦୀରେ ଆହୁରି ଅଗ୍ରଗତି କରିବ ଓ ଜନସାଧାରଣଙ୍କ ଆଶା ସାକାର କରିପାରିବ ।

ଭାରତର ସାଂପ୍ରତିକ ସ୍ଥିତି ବିଭିନ୍ନ ଦୃଷ୍ଟିରୁ ନୈରାଶ୍ୟଜନକ ମନେହୁଏ । ସାମାଜିକ ସ୍ଥାଣୁତା ଅନେକ କ୍ଷେତ୍ରରେ ଭାରତର ପ୍ରଗତିକୁ ରୁଦ୍ଧ କରିଦେଇଛି । ସମାଜ-ଜୀବନରେ ମାନବିକ ମୂଲ୍ୟବୋଧରେ ସଙ୍କଟ ଦେଖାଦେଇଛି । ସନ୍ତ୍ରାସବାଦୀ କାର୍ଯ୍ୟକଳାପ ଭାରତର ସାମାଜିକ ସ୍ଥିତିକୁ ବିପନ୍ନ କରିଛି । ଇନ୍ଦିରାଗାନ୍ଧି ଓ ରାଜୀବ ଗାନ୍ଧିଙ୍କ ପରି ଦୁଇଜଣ ପ୍ରଧାନମନ୍ତ୍ରୀ ସନ୍ତ୍ରାସବାଦୀଙ୍କର ଶିକାର ହୋଇଛନ୍ତି । ପାକିସ୍ଥାନ ପ୍ରୋତ୍ସାହନରେ ଭାରତରେ ସନ୍ତ୍ରାସବାଦୀ

କାର୍ଯ୍ୟକଳାପ ବୃଦ୍ଧି ପାଇବାରେ ଲାଗିଛି । ଅତୀତରେ ପଞ୍ଜାବରେ ରାଜନୈତିକ ଅସ୍ଥିରତା ସୃଷ୍ଟି କରିବା ଉଦ୍ଦେଶ୍ୟରେ ଏହାର ପ୍ରୟୋଗ ହୋଇଥିବା ସମୟରେ ବର୍ତ୍ତମାନ ଜାମ୍ମୁ ଓ କାଶ୍ମୀରରେ ଅରାଜକତା ସୃଷ୍ଟି କରିଛି । ଆସାମ, ନାଗାଲାଣ୍ଡ, ମଣିପୁର ଆଦିରେ ଉଗ୍ରପନ୍ଥୀଗଣ ସକ୍ରିୟ ହୋଇ ଉଠିଛନ୍ତି । ଆସାମରେ ବୋଡ଼ୋ ଉଲ୍‌ଫା ସମସ୍ୟା ତୀବ୍ରରୂପ ଧାରଣ କରିଛି । ଗୋର୍ଖାଲ୍ୟାଣ୍ଡ ଦାବି ମଧ୍ୟରେ ଏହି ସାମାଜିକ ଅସ୍ଥିରତାର ସୂଚନା ମିଳେ । ହାଇଦ୍ରାବାଦର ବୋମା ବିସ୍ଫୋରଣ, ତାମିଲନାଡୁର ବୋମା ଆତଙ୍କ, ଆନ୍ଧ୍ରପ୍ରଦେଶ ଓ ଓଡ଼ିଶାରେ ନକ୍ସାଲପନ୍ଥୀଙ୍କ ଅମାନବୀୟ କାର୍ଯ୍ୟକଳାପ, ମୁମ୍ବାଇର ହତ୍ୟାକାଣ୍ଡ, ଦିଲ୍ଲୀ ଚଳଚ୍ଚିତ୍ର ପ୍ରେକ୍ଷାଳୟରେ ଅଗ୍ନିକାଣ୍ଡ, ଝାଡ଼ଖଣ୍ଡ ଆନ୍ଦୋଳନ, ନିରୀହ ସ୍କୁଲଛାତ୍ରଙ୍କ ଅପହରଣ ଓ ହତ୍ୟା, ସୀମାନ୍ତ ପ୍ରଦେଶମାନଙ୍କରେ ବାରମ୍ବାର ଗୁଳିକାଣ୍ଡ ଆଦି ବହୁ ଘଟଣାରୁ ସନ୍ତ୍ରାସବାଦୀଙ୍କ ଅମାନବୀୟ କାର୍ଯ୍ୟକଳାପର ପରିଚୟ ମିଳିବା ସଙ୍ଗେ ସଙ୍ଗେ ଭାରତୀୟ ସାମାଜିକ ସ୍ଥିତିରେ ପ୍ରଶ୍ନବାଚୀ ଉଙ୍କିମାରିଛି । ଏତଦ୍‌ବ୍ୟତୀତ ପ୍ରାକୃତିକ ବିପର୍ଯ୍ୟୟ, ଜନବିସ୍ଫୋରଣ ଭାରତର ସାମାଜିକ ଓ ଆର୍ଥିକ ସ୍ଥିତିକୁ ଦୁର୍ବଳ କରିଦେଉଛି । ସମାଜରେ ନୈତିକତା ଓ ମୂଲ୍ୟବୋଧରେ ଦ୍ରୁତ ଅବକ୍ଷୟ ଘଟୁଛି । ଜାତିଆଣଭାବ, ଭେଦଭାବ ପ୍ରଥା, ସଂରକ୍ଷଣ ବ୍ୟବସ୍ଥା, ବେକାରୀମାନଙ୍କର ସଂଖ୍ୟାବୃଦ୍ଧି ଆଦି ଯୋଗୁଁ ସାମାଜିକ ସ୍ଥିରତା ରକ୍ଷା କରିବା ସମ୍ଭବପର ହୋଇପାରୁ ନାହିଁ । ଭାରତର ପ୍ରକୃତ ଆତ୍ମା ଗାଁଗହଳିରେ ଲୁକ୍କାୟିତ ଥିଲେ ହେଁ ପଲ୍ଲୀର ଉନ୍ନତି ନିମିତ୍ତ ଉପଯୁକ୍ତ ପଦକ୍ଷେପ ଗ୍ରହଣ କରାଯାଇ ପାରୁନଥିବାରୁ ସାମାଜିକ ବୈଷମ୍ୟ ସୃଷ୍ଟି ହେଉଛି । ଦାରିଦ୍ର୍ୟ, ଧାର୍ମିକ ସଂଘର୍ଷ ଯୋଗୁଁ ସାମାଜିକ ବୈଷମ୍ୟ ସୃଷ୍ଟି ହେଉଥିବାରୁ ଦେଶର ପ୍ରଗତି ବାଧାପ୍ରାପ୍ତ ହେଉଛି । ରାଜନୈତିକ ଅସ୍ଥିରତା ଦେଶ ପ୍ରଗତିର ପରିପନ୍ଥୀ । ଆଜି ଭାରତର ରାଜନୈତିକ ନେତାଗଣ ଦେଶର ସ୍ୱାର୍ଥ ଅପେକ୍ଷା ନିଜର ସ୍ୱାର୍ଥ ପ୍ରତି ଅଧିକ ଗୁରୁତ୍ୱ ପ୍ରଦାନ କରୁଛନ୍ତି । ରାଜନୀତିରେ ଅପରାଧୀକରଣ, ଦୁର୍ନୀତି ତା'ର କାୟା ବିସ୍ତାର କରିବାକୁ ଲାଗିଛି । ଆଜି ଦେଶର ନେତାଗଣ ବିଭିନ୍ନ ଅନୈତିକ କାର୍ଯ୍ୟରେ ଲିପ୍ତ । ବୋଫର୍ସ କମାଣ କିଣା କାରବାର, ଜର୍ମାନ ସବ୍‌ମେରିନ୍ କ୍ରୟ ବ୍ୟାପାରରେ ଲାଞ୍ଚ କାରବାର ଯୋଗୁଁ ଭାରତୀୟ ରାଜନୈତିକ ନେତାମାନଙ୍କର ନିର୍ମଳ ଭାବମୂର୍ତ୍ତି ଉପରେ ପ୍ରଶ୍ନବାଚୀ ସୃଷ୍ଟି କରିଛି । ଏତଦ୍‌ବ୍ୟତୀତ ହାୱାଲା ମାମଲାରେ ଜୈନ ଡ଼ାଏରୀ ପ୍ରକାଶ, ନରସିଂହ ରାଓ ଓ ଚନ୍ଦ୍ରସ୍ୱାମୀଙ୍କ ବିରୋଧରେ ଲାଖୁଭାଇ ପାଠକଙ୍କ ଅଭିଯୋଗ, ଗୋଖାଦ୍ୟ ଦୁର୍ନୀତିରେ ଲାଲୁ ଯାଦବଙ୍କ ପ୍ରତ୍ୟକ୍ଷ ଅଂଶଗ୍ରହଣ, ତାମିଲନାଡୁର ପୂର୍ବତନ ମୁଖ୍ୟମନ୍ତ୍ରୀ ସୁଶ୍ରୀ ଜୟଲଳିତାଙ୍କ ବିରୋଧରେ ବିଭିନ୍ନ ଅଭିଯୋଗ, ଉତ୍ତରପ୍ରଦେଶ ଓ ଗୁଜୁରାଟର ରାଜନୈତିକ ହଟଚମଟ, ରାଜନୀତିକ ନେତାମାନଙ୍କର ନୈତିକ ସ୍ଖଳନ ଆଦିରୁ ଭାରତୀୟ ରାଜନୀତିର ଅନ୍ଧକାର ଦିଗ ସୂଚିତ । ନିରାପତ୍ତା ପରିଷଦର ଅସ୍ଥାୟୀ ସଦସ୍ୟ ନିର୍ବାଚନରେ ଭାରତର ଅପମାନଜନକ ପରିସ୍ଥିତିର ସମ୍ମୁଖୀନ ହେବା ଅତୀବ ବେଦନାଦାୟକ । ଗ୍ୟାଟ୍ ରାଜିନାମାରେ ବାଧହୋଇ ଭାରତର ସ୍ୱାକ୍ଷର ପ୍ରଦାନ ରାଜନୈତିକ ଅପରିପକ୍ୱତାର ଅନ୍ୟତମ ଦୃଷ୍ଟାନ୍ତ । ତଥାପି ବିଂଶ ଶତାବ୍ଦୀରେ ରାଜନୈତିକ କ୍ଷେତ୍ରରେ ଭାରତ କେତେକ ଉଲ୍ଲେଖଯୋଗ୍ୟ ସଫଳତା ହାସଲ କରିଛି । ନିର୍ବାଚନ ସଂସ୍କାର କ୍ଷେତ୍ରରେ ପୂର୍ବତନ

ନିର୍ବାଚନ କମିଶନର ଟି. ଏନ୍. ଶେଷାନ୍‌ଙ୍କର ସମୟୋଚିତ ପଦକ୍ଷେପ କେତେକ କ୍ଷେତ୍ରରେ ରାଜନୀତିରେ ଅପରାଧ ଦୂରୀକରଣକୁ ବାଧାଦେବାରେ ସମର୍ଥ ହୋଇପାରିଛି । ଗଙ୍ଗାଜଳ ବଣ୍ଟନ କ୍ଷେତ୍ରରେ ବଙ୍ଗଳାଦେଶ ଓ ଭାରତର ରାଜିନାମା ଅନ୍ୟତମ ଉଲ୍ଲେଖଯୋଗ୍ୟ ଘଟଣା । କାଶ୍ମୀର ପ୍ରଶ୍ନ ଉପରେ ଚୀନ ଏବଂ ଆମେରିକାର ନୀତିରେ ପରିବର୍ତ୍ତନ ଭାରତର ବୈଦେଶିକ ନୀତିର ଅନ୍ୟତମ ଉଲ୍ଲେଖନୀୟ ସଫଳତା । ଇତିମଧ୍ୟରେ ଆମେରିକା ଓ ରୁଷ ସହିତ ଭାରତର ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ସୃଷ୍ଟି ହୋଇଛି । ସି. ଟି. ବି.ଟି.ରେ ସ୍ୱାକ୍ଷର ନ କରି ଭାରତ ତା'ର ରାଜନୈତିକ ପରିପକ୍ୱତାର ପରିଚୟ ପ୍ରଦାନ କରିଛି । ଶ୍ରୀଲଙ୍କା ଓ ନେପାଳ ସହିତ ସମ୍ପର୍କରେ ଉନ୍ନତି ଘଟିଛି । ବର୍ତ୍ତମାନ ଶ୍ରୀଲଙ୍କାର ତାମିଲ୍ ସମସ୍ୟାର ସମାଧାନ ନିମିତ୍ତ ଶ୍ରୀଲଙ୍କା ସରକାର ଭାରତର ସହାୟତା କାମନା କରିଛି । ବିଂଶ ଶତକରେ ଭାରତର ବୈଦେଶିକ ନୀତି ଉତ୍‌ଥାନ ପତନ ମଧ୍ୟଦେଇ ଗତିଶୀଳ ହେଲେହେଁ ତଥାପି ସମୟକୁ ଅପେକ୍ଷା କରିବାକୁ ପଡ଼ିବ । ବିଂଶ ଶତାବ୍ଦୀରେ ଭାରତୀୟ ଅର୍ଥନୀତି ବହୁପରିମାଣରେ ବିପର୍ଯ୍ୟସ୍ତ ହୋଇଛି । ଆର୍ଥନୀତିକ ଦୃଷ୍ଟିକୋଣରୁ କେନ୍ଦ୍ର ଏସିଆ, ଚୀନ୍ ଓ ଇରାନ ସହିତ ଆମର ସମ୍ପର୍କ ଦୃଢ଼ ହୋଇଥିଲେ ହେଁ ସେଥିରେ ଆଶ୍ୱସ୍ତ ହେବାର କୌଣସି କାରଣ ନାହିଁ । ଭାରତୀୟ ଅର୍ଥନୀତିର ଦେବାଳିଆ ଅବସ୍ଥା ଲକ୍ଷ୍ୟ କରି ତତ୍କାଳୀନ ଅର୍ଥମନ୍ତ୍ରୀ ଡ଼ଃ ମନମୋହନ ସିଂହ ୧୯୯୧ ମସିହାରେ ଉଦାରୀକରଣ ଅର୍ଥନୀତି ପାଇଁ ଦ୍ୱାର ଉନ୍ମୁକ୍ତ କଲେ । ଏହି ନୂତନ ଶିଳ୍ପ ଓ ଆର୍ଥିକ ନୀତି ସଂସଦରେ ସମର୍ଥନ ଲାଭକଲା । ଦେଶୀ ଓ ବିଦେଶୀ କମ୍ପାନୀମାନଙ୍କ ଉପରେ ଥିବା କଟକଣା ଉଠିଗଲା । ବୈଦେଶିକ ବିନିମୟ ମୁଦ୍ରା ଉପରେ ରହିଆସିଥିବା ଆଇନ୍‌ର କୋହଳ କରାଗଲା । ବିକଶିତ ରାଷ୍ଟ୍ରଗୁଡ଼ିକ ବିକାଶଶୀଳ ରାଷ୍ଟ୍ରର କଞ୍ଚାମାଲ ଓ ଶ୍ରମଶକ୍ତିର ଶୋଷଣ କରି ସେଥିରୁ ଉତ୍ପାଦିତ ପଦାର୍ଥକୁ ବହୁମୂଲ୍ୟରେ ବିକାଶଶୀଳ ରାଷ୍ଟ୍ରମାନଙ୍କୁ ବିକ୍ରୟ କରୁଛନ୍ତି । କୋହଳ ଅର୍ଥନୀତି ଯୋଗୁଁ ଭାରତୀୟ ବ୍ୟାଙ୍କ୍‌ଗୁଡ଼ିକ ଆର୍ଥିକ ସଙ୍କଟର ସମ୍ମୁଖୀନ ହୋଇଛନ୍ତି । ଦେଶ ମାନ୍ଦାବସ୍ଥା ଦିଗକୁ ଧାଇଁଛି । ବର୍ତ୍ତମାନ ବଜାର ଅର୍ଥନୀତିକୁ କିମ୍ବା ଅର୍ଥନୀତି ବଜାରକୁ ନିୟନ୍ତ୍ରଣ କରିବ, ତାହା ସ୍ଥିର ହେଇପାରୁ ନାହିଁ । ତୈଳପାଣି ନିଅଣ୍ଟିଆ ପରିସ୍ଥିତି ମଧ୍ୟଦେଇ ଗତିକରୁଛି । ପେଟ୍ରୋଲ ବା ଡ଼ିଜେଲ କ୍ରୟ କ୍ଷେତ୍ରରେ ପ୍ରଚୁର ଅର୍ଥ ବ୍ୟୟକଲେ, ବାଣିଜ୍ୟ ଭାରସାମ୍ୟ କ୍ଷେତ୍ରରେ ଶୋଚନୀୟ ଆଲୋଡ଼ନ ସୃଷ୍ଟି ହୋଇପାରେ । ଜଗତୀକରଣ ପ୍ରକ୍ରିୟା ଦ୍ୱାରା ଧନୀ-ନିର୍ଦ୍ଧନର ତାରତମ୍ୟ ବୃଦ୍ଧିପାଇଛି । ବହୁରାଷ୍ଟ୍ରୀୟ କମ୍ପାନୀଗୁଡ଼ିକ ବହୁପରିମାଣରେ ଲାଭବାନ୍ ହୋଇଛନ୍ତି । ଭାରତର ଋଣର ପରିମାଣ ଧୀରେ ଧୀରେ ବୃଦ୍ଧି ପାଉଛି । ବିଶ୍ୱବ୍ୟାଙ୍କ୍ ଏଥିରେ ଭାରତକୁ ସତର୍କ କରାଇ ଦେଇସାରିଲାଣି । ସ୍ୱାଧୀନତା ପରବର୍ତ୍ତୀ ସମୟରେ ଆର୍ଥିକ ଦୃଷ୍ଟିକୋଣରୁ ଭାରତ ଏଯାବତ୍ ସମ୍ପୂର୍ଣ୍ଣ ଭାବରେ ସ୍ୱାବଲମ୍ବନଶୀଳ ହୋଇପାରି ନାହିଁ । ଷ୍ଟକ୍ ମାର୍କେଟର ଶୋଚନୀୟ ଅଧୋଗତି ଭାରତୀୟ ଅର୍ଥନୀତିର ପ୍ରତିକୂଳତାକୁ ସୂଚାଇ ଦେଇଛି । ଭାରତ ନିଜର ଅର୍ଥନୀତିକୁ ସ୍ୱଚ୍ଛଳ ନ କଲେ ଏକବିଂଶ ଶତାବ୍ଦୀରେ ଏହା ଏକ ଶୋଚନୀୟ ଆର୍ଥିକ ସଙ୍କଟର ସମ୍ମୁଖୀନ ହେବା ସଙ୍ଗେ ସଙ୍ଗେ ଦେବାଳିଆ ଅବସ୍ଥାକୁ ପ୍ରାପ୍ତ ହେବାର ବହୁ ସମ୍ଭାବନା ରହିଛି ।

ବିଜ୍ଞାନ ଓ ବୈଷୟିକ କ୍ଷେତ୍ରରେ ଭାରତର ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ସାଧିତ ହୋଇଛି । ବିଜ୍ଞାନ କ୍ଷେତ୍ରରେ ବିଶ୍ୱରେ ଭାରତର ବୈଜ୍ଞାନିକଙ୍କ ସଂଖ୍ୟା ଦ୍ୱିତୀୟରେ । କମ୍ପ୍ୟୁଟର୍ ନିର୍ମାଣ କ୍ଷେତ୍ରରେ ଭାରତର ସ୍ଥାନ ବିଶ୍ୱରେ ବହୁ ଉର୍ଦ୍ଧ୍ୱରେ । ଏବେ ଭାରତ ଏସିଆର ବୃହତ୍ତମ ସୁପର କମ୍ପ୍ୟୁଟର ପରମ-୧୦,୦୦୦ ଉନ୍ମୋଚନ କରିଛି । ଏହାଦ୍ୱାରା ଭାରତ ସୁପର କମ୍ପ୍ୟୁଟର ଦକ୍ଷତା ହାସଲ କରିଥିବା ଦେଶମାନଙ୍କର ଅନ୍ତର୍ଭୁକ୍ତ ହୋଇପାରିଛି । ପ୍ରତିରକ୍ଷା କ୍ଷେତ୍ରରେ ଭାରତ ବହୁପରିମାଣରେ ସ୍ୱାବଲମ୍ବନଶୀଳ । ସେ ପରମାଣୁ ଶକ୍ତିର ଅଧିକାରୀ ହେବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ବହୁ ଉନ୍ନତଧରଣର ଅସ୍ତ୍ରଶସ୍ତ୍ର ନିର୍ମାଣ କରିବାର କ୍ଷମତା ଅର୍ଜନ କରିପାରିଛି । ମହାକାଶକୁ ଯାନ ପ୍ରେରଣ କରିବାର ନିଜସ୍ୱ ଜ୍ଞାନ ଭାରତ ହାସଲ କରିପାରିଛି । ପୃଥ୍ୱୀ, ତ୍ରିଶୂଳ, ଅଗ୍ନି ଆଦି କ୍ଷେପଣାସ୍ତ୍ର ନିର୍ମାଣ କ୍ଷେତ୍ରରେ ଭାରତ ନିଜର ପରାକାଷ୍ଠା ପ୍ରଦର୍ଶନ କରିପାରିଛି । ୧୨୫୦ ମାଇଲ୍ ଦୂରଗାମୀ ଅଗ୍ନି କ୍ଷେପଣାସ୍ତ୍ର ନିର୍ମାଣ କରିବାର ସମସ୍ତ କ୍ଷମତା ଭାରତ ହାସଲ କରିପାରିଛି । ଏତଦ୍‌ବ୍ୟତୀତ ବିଜ୍ଞାନର ଅନ୍ୟାନ୍ୟ କ୍ଷେତ୍ରରେ ମଧ୍ୟ ଭାରତ ଉଲ୍ଲେଖଯୋଗ୍ୟ ଅଗ୍ରଗତି ଲାଭ କରିପାରିଛି । ଆଜି ଭାରତର ବୈଜ୍ଞାନିକମାନେ ବିଶ୍ୱର ଅଧିକାଂଶ ବିକଶିତ ରାଷ୍ଟ୍ରରେ ସମ୍ମାନାସ୍ପଦ ଆସନ ଲାଭ କରିବାକୁ ସମର୍ଥ ହୋଇପାରିଛନ୍ତି । ଭାରତୀୟ ରେଣୁକା ଚାଓ୍ୱାଲା ଓ ସୁନୀତା ଉଇଲିୟମ୍‌ସ ମହାକାଶକୁ ଯାଇ ଫେରି ଆସିଲେଣି । ସେମାନେ ବର୍ତ୍ତମାନ ଭାରତୀୟ ନାଗରିକ ନ ହେଲେ ମଧ୍ୟ ଭାରତରେ ଜନ୍ମଗ୍ରହଣ କରିଥିବାରୁ ତାଙ୍କ ସଫଳତାରେ ଆମର ଗୌରବାନ୍ୱିତ ହେବାର ବହୁ କାରଣ ରହିଛି । ଦୁଃଖର ବିଷୟ ଭାରତର ବହୁ ପ୍ରତିଭା ଅନ୍ୟ ଦେଶମାନଙ୍କୁ ଚାଲିଯାଉଛନ୍ତି । ଭାରତ ପ୍ରତିଭାମାନଙ୍କର ଉପଯୁକ୍ତ ସମ୍ମାନ ଓ ପରିବେଶ ଯୋଗାଇଦେବାରେ ଅସମର୍ଥ ହେଉଥିବାରୁ ନିଜ ପ୍ରତିଭାର ବିକାଶ ନିମିତ୍ତ ସେମାନେ ବାଧହୋଇ ଅନ୍ୟ ଦେଶକୁ ଚାଲିଯାଉଛନ୍ତି । ବିଶେଷକରି ଭାରତର ବୈଜ୍ଞାନିକ, ଡ଼ାକ୍ତର, ଇଞ୍ଜିନିୟର ଆଦି ବହୁପରିମାଣରେ ଆମେରିକା, ଇଂଲଣ୍ଡ, ଜର୍ମାନ୍, ଅଷ୍ଟ୍ରେଲିଆ, ଜାପାନ, ଇଟାଲୀ, ରୁଷିଆ ପ୍ରଭୃତି ଦେଶକୁ ଯାଇ ସେଠାରେ ନିଜ ପ୍ରତିଭାର ଯଥାର୍ଥ ପରିଚୟ ପ୍ରଦାନ କରିଛନ୍ତି । ତେଣୁ ଭାରତର ପ୍ରତିଭାମାନଙ୍କର ଏହି ଚାଲାଣକୁ ରୋକିବା ବର୍ତ୍ତମାନ ଜରୁରୀ ହୋଇପଡ଼ିଛି ।

ବିଭିନ୍ନ ସମସ୍ୟାର ବୁଢ଼ିଆଣୀ ଜାଲରେ ଭାରତ ଏବେ ରୁଦ୍ଧଶ୍ୱାସ । ଏକପାର୍ଶ୍ୱରେ ଚୀନ ଓ ଅପରପାର୍ଶ୍ୱରେ ପାକିସ୍ଥାନ ସହିତ ଏପର୍ଯ୍ୟନ୍ତ ସୀମା ବିବାଦର ଶାନ୍ତିପୂର୍ଣ୍ଣ ସମାଧାନ ହୋଇପାରି ନାହିଁ । ୧୯୬୨ ମସିହାର ଚୀନ ଭାରତ ଯୁଦ୍ଧ ସମୟରେ ଭାରତର ଯେତିକି ଅଞ୍ଚଳ ଚୀନଦ୍ୱାରା ଅଧିକୃତ ହୋଇଥିଲା, ତାହା ଏପର୍ଯ୍ୟନ୍ତ ଭାରତ ଫେରିପାଇ ନାହିଁ । ଜାମ୍ମୁ ଓ କାଶ୍ମୀରକୁ ନେଇ ଭାରତ ଏବଂ ପାକିସ୍ଥାନ ମଧ୍ୟରେ ଶୀତଳ ଯୁଦ୍ଧ ଲାଗିରହିଛି । ଏହି ଦୁଇ ପଡ଼ୋଶୀ ଦେଶଙ୍କ ସହିତ ଭାରତର ସମ୍ପର୍କ ସନ୍ଦେହାଚ୍ଛନ୍ନ ରହିଯାଇଛି । ଏପର୍ଯ୍ୟନ୍ତ ଭାରତ ଏକ ସ୍ୱାବଲମ୍ବନଶୀଳ ଅର୍ଥନୀତି ଗ୍ରହଣ କରିପାରି ନ ଥିବାରୁ ବହୁ ସମୟରେ ଆର୍ଥିକ ଦୁର୍ଗତିର ସମ୍ମୁଖୀନ ହେଉଛି । ଟଙ୍କା ମୂଲ୍ୟର ହ୍ରାସବୃଦ୍ଧି ଯୋଗୁଁ ଦରଦାମ୍ ସ୍ଥିର ରହିପାରୁ ନାହିଁ । ସେଥିପାଇଁ ଅନ୍ୟ ଦେଶରୁ ବିଭିନ୍ନ ପଦାର୍ଥର ଆମଦାନୀ କ୍ଷେତ୍ରରେ ପ୍ରଭୂତ କ୍ଷତିର ସମ୍ମୁଖୀନ ହେଉଛୁ । ପେଟ୍ରୋଲଜାତ ପଦାର୍ଥର ଆମଦାନୀ

ପାଇଁ ଭାରତକୁ ବହୁ ଅର୍ଥ ଖର୍ଚ୍ଚ କରିବାକୁ ପଡୁଛି । ଉଦାରୀକରଣ ଅର୍ଥନୀତି ଯୋଗୁଁ ବହୁ ଦେଶୀୟ କମ୍ପାନୀଗୁଡ଼ିକ ଫାଇଦା ଉଠାଉଥିବା ସମୟରେ, ଭାରତ ସେମାନଙ୍କ ସହିତ ପାଦ ମିଳାଇ ଚାଲିପାରୁ ନାହିଁ । ପ୍ରତିବର୍ଷ ଭାରତର ବୈଦେଶିକ ଋଣ ବୃଦ୍ଧିଲାଭ କରୁଥିବାରୁ ଏକ ଆର୍ଥନୀତିକ ସଙ୍କଟ ମଧ୍ୟକୁ ଆମେ ଟାଣିହୋଇ ଚାଲିଛୁ । ଏତଦ୍‌ବ୍ୟତୀତ ପାକିସ୍ଥାନ, ଚୀନ ଆଦି ପଡ଼ୋଶୀ ଦେଶଗୁଡ଼ିକ ସେମାନଙ୍କ ପ୍ରତିରକ୍ଷା ବିଭାଗ ପାଇଁ ଯେଉଁ ପରିମାଣରେ ଅର୍ଥ ବ୍ୟୟ କରୁଛନ୍ତି, ତାଙ୍କ ସହିତ ପାଦ ମିଳାଇ ଆମକୁ ମଧ୍ୟ ପ୍ରତିରକ୍ଷା ଖର୍ଚ୍ଚ ବୃଦ୍ଧି କରିବାକୁ ପଡୁଛି । ଏହି ଆର୍ଥନୀତିକ ସମସ୍ୟା ଭାରତର ମୁଣ୍ଡବ୍ୟଥାର କାରଣ ହୋଇଛି । ଜନ ବିସ୍ଫୋରଣ ଭାରତର ଅନ୍ୟ ଏକ ବିରାଟ ସମସ୍ୟା ହୋଇ ଦେଖାଦେଇଛି । ବର୍ତ୍ତମାନ ଭାରତର ଲୋକସଂଖ୍ୟା ଏକଶହ ଦଶ କୋଟି ପାଖାପାଖି । ଲୋକସଂଖ୍ୟା ବୃଦ୍ଧି ଅନୁଯାୟୀ ଖାଦ୍ୟ ବୃଦ୍ଧି ଓ ମାନବସମ୍ବଳର ଉପଯୁକ୍ତ ବିନିଯୋଗ ନ ଘଟିଲେ ବେକାରୀ ସମସ୍ୟା ତଥା ଖାଦ୍ୟ ସମସ୍ୟା ସୃଷ୍ଟି ହେବା ସ୍ୱାଭାବିକ । ଏହି କାରଣରୁ ଜଙ୍ଗଲ କଟାଯାଇ ଶିଳ୍ପ ପ୍ରତିଷ୍ଠା ହେଉଛି ଏବଂ ଜଙ୍ଗଲ କ୍ଷୟ ଯୋଗୁଁ ପରିବେଶ ପ୍ରଦୂଷଣ ହେଉଛି । ବିଚ୍ଛିନ୍ନତାବାଦ୍ ଭାରତର ସାର୍ବଭୌମତ୍ୱ କ୍ଷେତ୍ରରେ ଅନ୍ୟ ଏକ ସମସ୍ୟାର ରୂପନେଇ ମୁଣ୍ଡ ଟେକିଛି । କେତେକ ବୈଦେଶିକ ଶକ୍ତି ଏହାର ଫାଇଦା ଉଠାଇବା ନିମିତ୍ତ ଜାଲପାତି ବସିଛନ୍ତି । କାଶ୍ମୀର, ପଞ୍ଜାବ, ଆନ୍ଧ୍ରପ୍ରଦେଶ, ତାମିଲନାଡୁ, ଆସାମ, ଦାର୍ଜିଲିଂ, ବିହାର ଆଦି ପ୍ରଦେଶମାନଙ୍କରେ ଏହି ବିଚ୍ଛିନ୍ନତାବାଦୀ କାର୍ଯ୍ୟକଳାପ ବୃଦ୍ଧି ପାଇବାରେ ଲାଗିଛି । ଏହାର ଆଶୁ ସମାଧାନ ହୋଇ ନ ପାରିଲେ ଭାରତର ଆଭ୍ୟନ୍ତରୀଣ ସଙ୍କଟ ଏହାକୁ ଅଧିକ ବିପଦାପନ୍ନ କରିବ । ଏତଦ୍‌ବ୍ୟତୀତ ସାମାଜିକ ମୂଲ୍ୟବୋଧରେ ସଙ୍କଟ ଓ ନୈତିକ ସ୍ଖଳନ ଯୋଗୁଁ ବ୍ୟକ୍ତିଗତ ସ୍ୱାର୍ଥ-ସାମୂହିକ ସ୍ୱାର୍ଥକୁ ବ୍ୟାହତ କରୁଛି । ଦୁର୍ନୀତିର ଚେର ଭିତରକୁ ମାଡ଼ିଯିବାରେ ଲାଗିଛି । ରାଜନୈତିକ ଅପରାଧୀକରଣ ଯୋଗୁଁ ନୈତିକ ମୂଲ୍ୟବୋଧର ଅପମୃତ୍ୟୁ ଘଟୁଛି । ଖାଦ୍ୟ ଅପମିଶ୍ରଣ ଯୋଗୁଁ ରୋଗବ୍ୟାଧି ବୃଦ୍ଧିଲାଭ କରିଛି । ବିଭିନ୍ନ ଯୋଜନାର କାର୍ଯ୍ୟକାରିତାର ଅଭାବ ଯୋଗୁଁ ଦାରିଦ୍ର୍ୟ ବୃଦ୍ଧି ପାଉଛି ଓ ବେକାର ସମସ୍ୟା ସୃଷ୍ଟି ହେଉଛି । ଗୁଣାତ୍ମକ ଶିକ୍ଷାର ଅଭାବରୁ ଶ୍ରେଣୀ ସଂଘର୍ଷ ତଥା ସ୍ୱାବଲମ୍ବନଶୀଳତାର ଅଭାବ ଦେଖାଯାଉଛି । ଉପରୋକ୍ତ ସମସ୍ୟାଗୁଡ଼ିକର ଯଥାର୍ଥ ସମାଧାନ ହୋଇପାରିଲେ ଭାରତର ପ୍ରଗତିର ଗତିରୋଧ କେହି କରିପାରନ୍ତେ ନାହିଁ ।

ଏହା ସତ୍ତ୍ୱେ ଏକବିଂଶ ଶତାବ୍ଦୀରେ ଭାରତ ବିଶ୍ୱରେ ଏକ ପ୍ରମୁଖ ସ୍ଥାନ ଅଧିକାର କରିବାକୁ ଯାଉଛି । କମ୍ପ୍ୟୁଟର କ୍ଷେତ୍ରରେ ନିଶ୍ଚିତଭାବେ ଏହା ବିଶ୍ୱକୁ ଦିଗ୍‌ଦର୍ଶନ ଦେବ । ପ୍ରତିରକ୍ଷା ସାମଗ୍ରୀ ଉତ୍ପାଦନ କ୍ଷେତ୍ରରେ ସ୍ୱାବଲମ୍ବନଶୀଳ ହେବ । ଭାରତର ବିଜ୍ଞାନର ଜୟଯାତ୍ରା ଅବ୍ୟାହତ ରହିବ । ଶିଳ୍ପର ବିକାଶ ଏବଂ ମାନବସମ୍ବଳର ଉପଯୁକ୍ତ ବ୍ୟବହାର ଯୋଗୁଁ ଦାରିଦ୍ର୍ୟ ସମ୍ପୂର୍ଣ୍ଣ ଭାବରେ ନ ହେଲେ ମଧ୍ୟ ଆଂଶିକ ଦୂରୀକରଣ ହୋଇପାରିବ । ବିଦେଶରେ ମଧ୍ୟ ଭାରତର ମହତ୍ତ୍ୱ ବୃଦ୍ଧିଲାଭ କରିବାର ଆଶା ରହିଛି । ଶ୍ରୀଲଙ୍କା, ବଙ୍ଗଳାଦେଶ, ନେପାଳ, ଚୀନ ଆଦି ପଡ଼ୋଶୀ ଦେଶମାନଙ୍କ ସହିତ ଭାରତ ଉତ୍ତମ ସମ୍ପର୍କ ପ୍ରତିଷ୍ଠା କରିପାରିଛି । ଆପୋଷ କଥାବାର୍ତ୍ତା ମାଧ୍ୟମରେ ପାକିସ୍ଥାନ

ସହିତ ସମ୍ପର୍କର ଅଭିବୃଦ୍ଧି ଘଟିଲେ ଭାରତର ବୈଦେଶିକ ନୀତି ଚରମ ସଫଳତା ଅର୍ଜନ କରିବ । ଇତିମଧ୍ୟରେ ଭାରତ ପ୍ରତି ଆମେରିକା ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆସିଛି । ଏକବିଂଶ ଶତାବ୍ଦୀରେ ଏହି ସମ୍ପର୍କ ଅଧିକ ଦୃଢ଼ ହେବ ବୋଲି ଆଶା କରାଯାଏ । ରୁଷ ସହିତ ମଧ୍ୟ ଭାରତର ଆତ୍ମିକ ସମ୍ପର୍କରେ ପୁନରାୟ ଉନ୍ନତି ଘଟିଛି । ବର୍ତ୍ତମାନର ସରକାର ଆଣବିକ କାର୍ଯ୍ୟକ୍ରମକୁ ଯେପରି ଆଗେଇ ନେଉଛନ୍ତି, ତଦ୍ୱାରା ଭାରତର ପ୍ରତିରକ୍ଷା ଅଧିକ ସୁଦୃଢ଼ ହେବ ଏବଂ ଅନ୍ୟମାନଙ୍କର ଭାରତ ପ୍ରତି ଥିବା ନାଲିଆଖି ଫିକା ପଡ଼ିଯିବ । ନବମ ଓ ଦଶମ ପଞ୍ଚବାର୍ଷିକ ଯୋଜନାର ସଫଳ ରୂପାୟନ ହୋଇପାରିଲେ ଶିକ୍ଷା, ଦାରିଦ୍ର୍ୟ ଦୂରୀକରଣ ଓ ବେକାର ସମସ୍ୟା ବହୁପରିମାଣରେ ହ୍ରାସ ପାଇବ । ଭାରତର ଲୋକସଂଖ୍ୟା ବୃଦ୍ଧି ଏହାର ଗୁଣାତ୍ମକ ବିକାଶର ପ୍ରଧାନ ଅନ୍ତରାୟ । ତେଣୁ ଭାରତ ଜନ୍ମନିୟନ୍ତ୍ରଣ ବ୍ୟବସ୍ଥାକୁ କଡ଼ାକଡ଼ି ପାଳନ କରିପାରିଲେ, ଏକବିଂଶ ଶତାବ୍ଦୀରେ ଏହା ଏକ ସମସ୍ୟା ହୋଇ ଦେଖାଦେବ ନାହିଁ । ଆଶା କରାଯାଏ, ବାଣିଜ୍ୟ କ୍ଷେତ୍ରରେ ମଧ୍ୟ ଭାରତ ଆଶାନୁରୂପ ସଫଳତା ହାସଲ କରିବ । କୃଷି ଉତ୍ପାଦନ ବୃଦ୍ଧି ଯୋଗୁଁ ଖାଦ୍ୟ ସମସ୍ୟା ବହୁପରିମାଣରେ ଦୂରୀଭୂତ ହୋଇପାରିବ । ଶିକ୍ଷାନୀତିର ପୁନର୍ବିନ୍ୟାସ ଦ୍ୱାରା ଗୁଣାତ୍ମକ ଶିକ୍ଷାର ବିକାଶ ହୋଇପାରିବ । ସଙ୍ଗଠିତ ଉଦ୍ୟମ ଦ୍ୱାରା ବିଭେଦକାରୀ ଶକ୍ତିମାନଙ୍କୁ ପରାଜିତ କରାଯାଇପାରିବ । ଟି. ଏନ୍. ଶେଷାନ୍ ନିର୍ବାଚନ କ୍ଷେତ୍ରରେ ଯେଉଁ ସଂସ୍କାର ପ୍ରୟାସ ଆରମ୍ଭ କରିଛନ୍ତି, ତାହା ଜାରି ରହିଲେ ରାଜନୀତିରୁ ବହୁପରିମାଣରେ ଅପରାଧୀକରଣକୁ ରୋକାଯାଇପାରିବ । ବ୍ୟକ୍ତିମାନଙ୍କର ନୈତିକ ମୂଲ୍ୟବୋଧର ବୃଦ୍ଧି ତଥା ସାମାଜିକ ମୂଲ୍ୟବୋଧର ପରିବର୍ତ୍ତନ ପାଇଁ କାର୍ଯ୍ୟପନ୍ଥା ଗୃହୀତ ହେଲେ ସାମାଜିକ ସ୍ଥିରତା ଓ ରାଜନୈତିକ ସ୍ଥିରତା ସୃଷ୍ଟି ହୋଇପାରିବ । ସ୍ୱଦେଶୀ ଓ ଜାତୀୟବାଦୀ ମନୋବୃତ୍ତିର ବିକାଶ ହେଲେ ଆର୍ଥିକ ସଙ୍କଟ ମଧ୍ୟ ଦୂରୀଭୂତ ହୋଇପାରିବ । ଆଧ୍ୟାତ୍ମିକ ଶକ୍ତିରେ ବଳୀୟାନ ଭାରତବର୍ଷ ଏକବିଂଶ ଶତାବ୍ଦୀରେ ବିଶ୍ୱକୁ ଅନେକ କ୍ଷେତ୍ରରେ ନେତୃତ୍ୱ ଦେବାକୁ ସମର୍ଥ ହୋଇପାରିବ ।

ଆଶା ଏବଂ ବିଶ୍ୱାସକୁ ନେଇ ମଣିଷ ବଞ୍ଚିରହେ । ଭାରତର ଆଧ୍ୟାତ୍ମିକ ଭାବନା ମଧ୍ୟ ଆଶାବାଦ ଉପରେ ଆସ୍ଥାଶୀଳ । ଆଜି ଭାରତରେ ଦେଖା ଦେଇଥିବା ଅନ୍ଧକାର ରାତ୍ରିର ଅବସାନ ଘଟିଛି ଏବଂ ନୂତନ ଆଲୋକରେ ଆଲୋକିତ ହୋଇ ଉଠିଛି ଏହାର ପ୍ରାଚୀଦିଗ । ଅତୀତରେ ଭାରତ ଯେପରି ନିଜର ସାଂସ୍କୃତିକ, ଆଧ୍ୟାତ୍ମିକ ମୂଲ୍ୟବୋଧ ଯୋଗୁଁ ବିଶ୍ୱରେ ପ୍ରସିଦ୍ଧିଲାଭ କରିଥିଲା, ଏକବିଂଶ ଶତାବ୍ଦୀରେ ମଧ୍ୟ ଭାରତ ତା'ର ଆଧ୍ୟାତ୍ମିକ ଚିନ୍ତାଧାରାର ପୁନଃ ଅଭ୍ୟୁଦୟ କରାଇ ସମଗ୍ର ବିଶ୍ୱକୁ ଗୋଟିଏ ଭ୍ରାତୃତ୍ୱର ବନ୍ଧନରେ ବାନ୍ଧି ରଖିବା କ୍ଷେତ୍ରରେ ନେତୃତ୍ୱ ନେଇପାରିବ । ବିଜ୍ଞାନ, ଆଧ୍ୟାତ୍ମିକ, ସାଂସ୍କୃତିକ, ଆର୍ଥନୀତିକ, ରାଜନୀତିକ ପ୍ରତ୍ୟେକ କ୍ଷେତ୍ରରେ ବିପ୍ଳବ ସାଧନ କରି ଭାରତ ହେବ ବିଶ୍ୱର ସବୁଠାରୁ ପ୍ରଗତିଶୀଳ ଦେଶ । ତେଣୁ ଏକବିଂଶ ଶତାବ୍ଦୀ ଭାରତ ପାଇଁ ଏକ ନୂତନ ବାର୍ତ୍ତାନେଇ ପ୍ରବେଶ କରିବ । ଭାରତର ବୈଦେଶିକ ନୀତି ବିଶ୍ୱକୁ ନେତୃତ୍ୱ ଦେବ । ଏହି ଆଶା ଏବଂ ବିଶ୍ୱାସ ନେଇ ଆମକୁ ଏକବିଂଶ ଶତାବ୍ଦୀ ଭାରତବର୍ଷର କାର୍ଯ୍ୟକ୍ରମକୁ ଅପେକ୍ଷା କରିବାକୁ ପଡ଼ିବ ।

●

# ଭାରତର ସାମ୍ପ୍ରତିକ ପରିସ୍ଥିତିରେ ଗଣତନ୍ତ୍ରର ଭବିଷ୍ୟତ

**(ଉପକ୍ରମ, ଭାରତୀୟ ଗଣତନ୍ତ୍ରର ରୂପରେଖ, ସାମ୍ପ୍ରତିକ ସାମାଜିକ ଅବସ୍ଥା, ରାଜନୀତିକ ଅବସ୍ଥା, ଆର୍ଥନୀତିକ ଅବସ୍ଥା, ସାମ୍ବିଧାନିକ ଅଚଳାବସ୍ଥା ଓ ସଂଶୋଧନର ଆବଶ୍ୟକତା, ଭାରତୀୟ ଗଣତନ୍ତ୍ରର ଭବିଷ୍ୟତ, ଉପସଂହାର)**

ବିଶ୍ୱର ବିଶାଳ ଗଣତନ୍ତ୍ରର ଦେଶ ଭାରତବର୍ଷ । ବିଭିନ୍ନ ଭାଷା, ଧର୍ମ, ସଂସ୍କୃତିର ମିଳନପୀଠ ଭାରତ । ବହୁ ବୈସାଦୃଶ୍ୟ ମଧ୍ୟରେ ସାଦୃଶ୍ୟ, ଅନେକ ମଧ୍ୟରେ ଐକ୍ୟ ଏହାର ଆଦର୍ଶ । ରୁଚି, ଆଚାର, ଚାଲିଚଳଣ, ପୋଷାକ ପ୍ରତ୍ୟେକ କ୍ଷେତ୍ରରେ ବିଭିନ୍ନତା ରହିଥିଲେହେଁ ସମସ୍ତଙ୍କୁ ଗୋଟିଏ ସୂତ୍ରରେ ଯାହା ଗ୍ରଥିତ କରିପାରିଛି ତାହା ହେଉଛି ଭାରତବର୍ଷର ଭ୍ରାତୃଭାବ ଓ ମହାନ୍ ପରମ୍ପରା । ସମୟକ୍ରମେ ବୈଦେଶିକ ଆକ୍ରମଣରେ ଦେଶ ଖଣ୍ଡବିଖଣ୍ଡିତ ହୋଇଛି । ତା'ର ଐତିହ୍ୟ ଓ ସଂସ୍କୃତିକୁ ପରିବର୍ତ୍ତନ କରିବା ନିମିତ୍ତ ବିଭିନ୍ନ ପଦକ୍ଷେପ ଗ୍ରହଣ କରାଯାଇଛି । ବୈଦିକ ଓ ତପୋବନର ଆଦର୍ଶକୁ ଭୂଲୁଣ୍ଠିତ କରିବାର ପ୍ରୟାସ ହୋଇଛି; ମାତ୍ର ଭାରତର ମହାନୁଭବତା ନିକଟରେ ସବୁକିଛି ପରାଜୟ ସ୍ୱୀକାର କରିଛି । ଆଫଗାନ, ମୋଗଲ, ଇଂରେଜ—ପ୍ରତ୍ୟେକ ଚାହିଁଛନ୍ତି ଏହାର ପରମ୍ପରା ଓ ସଂସ୍କୃତିକୁ ବିପଥଗାମୀ କରିବାକୁ । ସର୍ବଶେଷରେ ଭାରତୀୟମାନଙ୍କର ଦୁର୍ବଳତା ଓ ସଂକୀର୍ଣ୍ଣ ସ୍ୱାର୍ଥର ସୁଯୋଗ ନେଇ ଇଂରେଜ ଜାତି ଭାରତକୁ ଖଣ୍ଡବିଖଣ୍ଡିତ କରିଛନ୍ତି । ମୁସଲମାନ ଓ ହିନ୍ଦୁ—ଯେଉଁମାନେ କିଛିଦିନ ପୂର୍ବରୁ ଭାଇ-ଭାଇ ରୂପେ କୋଳାଗ୍ରତ ହେଉଥିଲେ, ସେମାନେ ପରିଣତ ହୋଇଛନ୍ତି ପରସ୍ପରର ଶତ୍ରୁରେ । ଭାଇ ରକ୍ତରେ ହୋରି ଖେଳିଛି ଭାଇ । ଭାରତର ଆଦର୍ଶ ଓ ମହାନୁଭବତା ପରିଣତ ହୋଇଛି ସଂକୀର୍ଣ୍ଣ ସ୍ୱାର୍ଥପରତାରେ । ସ୍ୱାଧୀନତା ଲାଭ ପରେ ଖଣ୍ଡିତ ଭାରତ ପରିଣତ ହେଲା ବିଶାଳ ଗଣତନ୍ତ୍ର ରାଷ୍ଟ୍ରରେ । ୧୯୯୭ ମସିହା ଅଗଷ୍ଟ ୧୫ ତାରିଖରେ ଭାରତ ତା'ର ସ୍ୱାଧୀନତାର ସୁବର୍ଣ୍ଣଜୟନ୍ତୀ ପାଳନ କରିଛି ବହୁ ଆଡ଼ମ୍ବରରେ । ମାତ୍ର ଭାରତର ସାମ୍ପ୍ରତିକ ଅବସ୍ଥା ପ୍ରତି ଦୃଷ୍ଟିଦେଲେ କ୍ଷୋଭ ଓ ଅନୁଶୋଚନାରେ ମଥାନତ ହୋଇଯାଏ । ପ୍ରଶ୍ନ ଉଠେ, ଭାରତର ଗଣତାନ୍ତ୍ରିକ ମୂଲ୍ୟବୋଧକୁ ଆମେ ଯଥାର୍ଥ ସମ୍ମାନ ପ୍ରଦର୍ଶନ କରିପାରୁଛେ କି ? ଆମେ ବାସ୍ତବରେ ଏକ ଗଣତନ୍ତ୍ର ରାଷ୍ଟ୍ରରେ ବସବାସ କରୁଛେ କି ? ଏହି ବିଶାଳ ଗଣତନ୍ତ୍ର ରାଷ୍ଟ୍ରର ଭବିଷ୍ୟତ କ'ଣ ହେବ, ସେ ସମ୍ପର୍କରେ ଆମେ ସାମାନ୍ୟ ମାତ୍ର ସଚେତନ କି ? ବହୁ ସନ୍ଦେହର କୁହେଳିକା ମଧ୍ୟରେ ଭାରତବର୍ଷର ଗଣତନ୍ତ୍ର ବର୍ତ୍ତମାନ ବିପନ୍ନ ଅବସ୍ଥାରେ । ଏଥିପାଇଁ କିଏ ଦାୟୀ—ତାହା ବଡ଼ ପ୍ରଶ୍ନ ନୁହେଁ; ମାତ୍ର ସେହି ଗଣତନ୍ତ୍ରର କିପରି ସୁରକ୍ଷା କରାଯାଇପାରିବ, ତାହାହିଁ ଆମ ନିକଟରେ ଆଜି ସବୁଠାରୁ ବଡ଼ ସମସ୍ୟା ।

ଗଣତନ୍ତ୍ରର ସଂଜ୍ଞା ଓ ସ୍ୱରୂପ ସମ୍ବନ୍ଧରେ ବୁଦ୍ଧିଜୀବୀ ନିଜ ଦୃଷ୍ଟିକୋଣରୁ ଭିନ୍ନ ଭିନ୍ନ ମତପ୍ରଦାନ କରିଛନ୍ତି । ଆମେରିକାର ପୂର୍ବତନ ରାଷ୍ଟ୍ରପତି ଗଣତନ୍ତ୍ରକୁ ଲୋକମାନଙ୍କର, ଲୋକମାନଙ୍କ ଦ୍ୱାରା ଏବଂ ଲୋକମାନଙ୍କ ପାଇଁ ଏକ ସରକାର ବୋଲି କହିଛନ୍ତି (of the people, by the people and for the people) । ମହାତ୍ମା ଗାନ୍ଧି ଗଣତନ୍ତ୍ରକୁ 'ଶକ୍ତିଶାଳୀ ପରି ଦୁର୍ବଳ ବ୍ୟକ୍ତିଙ୍କର ସମ ସୁଯୋଗର ସରକାର' ବୋଲି ମତ ପ୍ରଦାନ କରିଛନ୍ତି । ବର୍ତ୍ତମାନ ବିଶ୍ୱର ପ୍ରତ୍ୟେକ ବ୍ୟକ୍ତି ଗଣତନ୍ତ୍ରର ସୁଫଳ ଲାଭ ପାଇଁ ବ୍ୟାକୁଳ । ଭାରତବାସୀ ନିଜର ଗଣତାନ୍ତ୍ରିକ ଅଧିକାର ଲାଭ ଉଦ୍ଦେଶ୍ୟରେ ଇଂରେଜମାନଙ୍କ ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ । ସ୍ୱାଧୀନତା ଲାଭପରେ ଭାରତରେ ସ୍ୱତଃ ଏକ ଗଣତନ୍ତ୍ର ସରକାର ପ୍ରତିଷ୍ଠିତ ହେଲା । ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ବିଶ୍ୱାସ କରୁଥିଲେ; ଗଣତନ୍ତ୍ର ହେଉଛି ସର୍ବଶ୍ରେଷ୍ଠ ସଭ୍ୟ ଉପାୟ, ଯଦ୍ୱାରା ଆଲୋଚନା, ଯୁକ୍ତି ଏବଂ ନିଷ୍ପତ୍ତି ମାଧ୍ୟମରେ ଏକ ଅନୁକୂଳ ସିଦ୍ଧାନ୍ତରେ ପହଞ୍ଚି ହୋଇଥାଏ । ସେଥିପାଇଁ ଭାରତୀୟ ସମ୍ବିଧାନର ପ୍ରସ୍ତାବନାରେ କୁହାଯାଇଛି— "We the people of India, having Solemnly resolved to constitute India into a sovereign Democratic Republic..." ଆମ ଦେଶ ପାଇଁ ଗଣତନ୍ତ୍ରକୁ ଆମେ ଏକ ସରକାରର ମାଧ୍ୟମ ରୂପେ ଗ୍ରହଣ କରିଛୁ । ପୁନରାୟ ଏହାର ପ୍ରସ୍ତାବନାରେ ଭାରତୀୟ ଜନସାଧାରଣଙ୍କୁ ଏହା ସାମାଜିକ, ଆର୍ଥନୀତିକ ଏବଂ ରାଜନୀତିକ ସୁରକ୍ଷା ପ୍ରଦାନ କରିବା ସଙ୍ଗେ ସଙ୍ଗେ ସମଅଧିକାର ଏବଂ ଚିନ୍ତାଧାରାକୁ ସ୍ୱାଧୀନ ଭାବରେ ପ୍ରକାଶ କରିବାକୁ ବାକ୍ ଅଧିକାର ଦେବ ବୋଲି ଘୋଷଣା କରାଯାଇଛି । ଗୋଟିଏ ଆଧୁନିକ ଗଣତାନ୍ତ୍ରିକ ସରକାରର ମୂଳ ଲକ୍ଷ୍ୟ ହେଉଛି, ଜନସାଧାରଣଙ୍କ ମଙ୍ଗଳ ପାଇଁ କାର୍ଯ୍ୟ କରିବା । ଇତିମଧ୍ୟରେ ଭାରତୀୟ ଗଣତନ୍ତ୍ର ଚଉଦଟି ନିର୍ବାଚନ ରଣାଙ୍ଗନ ଅତିକ୍ରମ କରିସାରିଛି । ମୁଖ୍ୟତଃ ଦୁଇଟି ନିର୍ବାଚନ ତା'ର କାର୍ଯ୍ୟକାଳ ପାଞ୍ଚବର୍ଷ ପରିପୂରଣ ପାଇଁ ସମର୍ଥ ହୋଇପାରି ନାହିଁ । ରାଜନୈତିକ ବାଧ୍ୟବାଧକତାରେ ଅନିଚ୍ଛା ସତ୍ତ୍ୱେ ଦୁଇଟି ନିର୍ବାଚନକୁ ଏ ଦେଶର ଜନସାଧାରଣ ଗ୍ରହଣ କରିନେଲେ । ଭାରତରେ ଗଣତନ୍ତ୍ର କେତୋଟି କାରଣ ପାଇଁ ବିଡ଼ମ୍ବିତ ହେବାରେ ଲାଗିଛି । ପ୍ରଥମ କାରଣ ହେଉଛି—ଜନସାଧାରଣଙ୍କ ଅଜ୍ଞତା ଓ ଶିକ୍ଷାର ଅଭାବ । ଜନସାଧାରଣଙ୍କ ମଧ୍ୟରୁ ପ୍ରାୟ ୬୦ ଭାଗ ଅଶିକ୍ଷିତ ଥିବାରୁ ଗଣତନ୍ତ୍ରର ମୌଳିକ ତତ୍ତ୍ୱ ଓ ଆଦର୍ଶ ବୁଝିବାକୁ ସେମାନେ ଅସମର୍ଥ । ସେମାନେ ତାଙ୍କର ମତ ବା ଭୋଟ୍‌ର ପ୍ରକୃତ ମୂଲ୍ୟ ବୁଝିବାକୁ ଅକ୍ଷମ । ସେଥିପାଇଁ ଅନେକ ସମୟରେ ଶସ୍ତା ପ୍ରଚାର, ସ୍ଲୋଗାନ ଓ ମିଥ୍ୟା ପ୍ରତିଶ୍ରୁତିରେ ଭୁଲିଯାଇ ଅବାଞ୍ଛିତ ବ୍ୟକ୍ତିଙ୍କ ସପକ୍ଷରେ ମତାଧିକାର ସାବ୍ୟସ୍ତ କରିଥା'ନ୍ତି । ଧୂର୍ତ୍ତ ରାଜନୀତିଜ୍ଞ ସେମାନଙ୍କର ସରଳତା, ଭାବପ୍ରବଣତା ତଥା ଅଶିକ୍ଷାକୁ ଶୋଷଣ କରିବାର ସୁଯୋଗ ଲାଭ କରିଥା'ନ୍ତି । ଭାରତୀୟ ଗଣତନ୍ତ୍ରର ଦ୍ୱିତୀୟ ତ୍ରୁଟି ହେଉଛି—ଏ ଦେଶର ଜନସାଧାରଣ ଆଞ୍ଚଳିକତାବାଦ, ସଂକୀର୍ଣ୍ଣ ଜାତିଆଣଭାବ ବା ସାମ୍ପ୍ରଦାୟିକତାଭାବ ଦ୍ୱାରା ପ୍ରଭାବିତ ହୋଇ ବ୍ୟକ୍ତିତ୍ୱ ପରିବର୍ତ୍ତେ ବ୍ୟକ୍ତିର ସମ୍ପ୍ରଦାୟ ଓ ଅଞ୍ଚଳ ପ୍ରତି ଭୋଟାଧିକାର ସାବ୍ୟସ୍ତ କରନ୍ତି । ଯାହାଦ୍ୱାରା ଉପଯୁକ୍ତ ପ୍ରାର୍ଥୀଙ୍କ ଅପେକ୍ଷା ଅଯୋଗ୍ୟ ପ୍ରାର୍ଥୀ ନିର୍ବାଚନରେ ଜୟଯୁକ୍ତ ହେବାର ସୁଯୋଗ ପାଇଥାନ୍ତି ।

ଭାରତୀୟ ନିର୍ବାଚନର ଅନେକ କ୍ଷେତ୍ରରେ ବାହୁବଳ ଓ ଅର୍ଥବଳର ଜୟଲାଭ ହୋଇଥାଏ । ଅର୍ଥଚାନ୍ଦା ଭାବରେ ଦେଉଥିବା ବ୍ୟକ୍ତିଙ୍କ ସ୍ୱାର୍ଥରକ୍ଷା ପାଇଁ ରାଜନୀତି ବ୍ୟକ୍ତିବିଶେଷ ତତ୍ପର ହୋଇଉଠନ୍ତି; ଯେଉଁଥିପାଇଁ ସର୍ବସାଧାରଣଙ୍କ ସ୍ୱାର୍ଥ ବ୍ୟାହତ ହୋଇଥାଏ । ସାମ୍ପ୍ରତିକ କାଳରେ ଶକ୍ତିଶାଳୀ ବିରୋଧୀଦଳର ଅଭାବ, ଆଞ୍ଚଳିକ ଦଳର ଅଭ୍ୟୁଦୟ, ଦଙ୍ଗା, ଅର୍ଥଶକ୍ତି, ରାଜନୈତିକ ଦୃଷ୍ଟିଭଙ୍ଗୀର ଅଭାବ ଓ ଅପରାଧୀ ବ୍ୟକ୍ତିଙ୍କର ରାଜନୀତିରେ ପ୍ରମୁଖ ଭୂମିକା ଗ୍ରହଣ, ସର୍ବୋପରି ଶୋଷଣ ଏବଂ ଦୁର୍ନୀତି ଭାରତୀୟ ଗଣତନ୍ତ୍ରକୁ ବିପର୍ଯ୍ୟସ୍ତ କରିଦେଇଛି । ସେହି କାରଣରୁ ଏହାର ଭବିଷ୍ୟତ ସଂଶୟାଚ୍ଛନ୍ନ ହୋଇପଡ଼ିବା ସଙ୍ଗେ ସଙ୍ଗେ ଗଣର ସ୍ୱାର୍ଥ ଅପେକ୍ଷା ଜଣର ସ୍ୱାର୍ଥ ଅଧିକ ଗୁରୁତ୍ୱ ଲାଭ କରିଛି ।

ସାମ୍ପ୍ରତିକ ଭାରତର ସାମାଜିକ ଅବସ୍ଥା ଅତ୍ୟନ୍ତ ଉଦ୍‌ବେଗଜନକ । ନୈତିକ ମୂଲ୍ୟବୋଧର ଅବକ୍ଷୟ ଯୋଗୁଁ ସାମୂହିକ ସ୍ୱାର୍ଥ ଅପେକ୍ଷା ବ୍ୟକ୍ତିଗତ ସ୍ୱାର୍ଥ ଉପରେ ଅଧିକ ଗୁରୁତ୍ୱ ଦିଆଯାଉଛି । ସାମାଜିକ ଜୀବନର ଦ୍ରୁତ କ୍ଷୟଶୀଳତା ରାଷ୍ଟ୍ରୀୟ ଜୀବନକୁ ବ୍ୟାପିଯାଇଛି । ଅତୀତରେ ଭାରତୀୟ ସାମାଜିକ ବ୍ୟବସ୍ଥା ମୁଖ୍ୟତଃ ଭ୍ରାତୃତ୍ୱ ଓ ସୌହାର୍ଦ୍ଦ୍ୟ ଉପରେ ପ୍ରତିଷ୍ଠିତ ଥିଲା । ବର୍ତ୍ତମାନ ଏହି ଶବ୍ଦଗୁଡ଼ିକ କେବଳ ଅଭିଧାନର କଳେବର ମଣ୍ଡନ କରିଛି । ନାରୀମାନଙ୍କ ପ୍ରତି ଭୋଗବାଦୀ ଦୃଷ୍ଟିଭଙ୍ଗୀ, ଧର୍ଷଣ, ଦୁର୍ନୀତି ସମାଜକୁ କଳୁଷିତ କରୁଛି । ନୈତିକତାର ଅଭାବ ଯୋଗୁଁ ଗୁଣ୍ଡାଶ୍ରେଣୀୟ ବ୍ୟକ୍ତି ସମାଜରେ ପ୍ରତିଷ୍ଠା ଅର୍ଜନ କରୁଛନ୍ତି । ରାଜନୈତିକ ପ୍ରୋତ୍ସାହନ ଯୋଗୁଁ ଦିନକୁଦିନ ଏମାନେ ସମାଜର ସମସ୍ତ ନୀତିନିୟମକୁ ପଦାଘାତ କରିଚାଲିଛନ୍ତି । ଭଣ୍ଡାମି, ଗୁଣ୍ଡାମି, ଅତ୍ୟାଚାର ଓ ଶୋଷଣ ସାମାଜିକ ବିଧି-ବ୍ୟବସ୍ଥାକୁ ନିୟନ୍ତ୍ରଣ କରୁଛି । ଭାରତୀୟ ସାମାଜିକ ଜୀବନରେ ବହୁଦିନରୁ ରହିଆସିଥିବା ପରସ୍ପର ପ୍ରତି ସ୍ନେହ, ପ୍ରୀତି ଓ ମୈତ୍ରୀ ଭାବର ଅବସାନ ଘଟିଛି । ଦ୍ୱେଷ ଓ ଆତ୍ମିକସ୍ୱାର୍ଥ ମଣିଷକୁ କଳୁଷିତ କରିଛି । ଗଣତନ୍ତ୍ରର ମୁଖ୍ୟ ଲକ୍ଷ୍ୟ—ଜାତି, ଧର୍ମ, ବର୍ଣ୍ଣ ଓ ଲିଙ୍ଗ ନିର୍ବିଶେଷରେ ସମସ୍ତଙ୍କର ସମାନ ସାମାଜିକ ଅଧିକାର ଉପଭୋଗ ପାଇଁ ସୁଯୋଗ ସୃଷ୍ଟି କରିବା । ଧନୀ, ଦରିଦ୍ର ନିର୍ବିଶେଷରେ ମତାଧିକାର ଓ ମତବ୍ୟକ୍ତ କରିବାର ସମାନ ଅଧିକାର । ମାତ୍ର ସାମ୍ପ୍ରତିକ ଭାରତର ଗଣତନ୍ତ୍ରର ପୋଷାକ ତଳେ ରାଜତନ୍ତ୍ରର ଆଧିପତ୍ୟ ଚାଲିଛି । ସାମାଜିକ ଜୀବନର ଚଳଚଞ୍ଚଳତାର ଅବସାନ ଘଟିଥିବାରୁ ସ୍ଥାଣୁତ୍ୱର ରାଜତ୍ୱ ଆରମ୍ଭ ହୋଇଛି । ଭାରତୀୟ ଗଣତନ୍ତ୍ର ପାଇଁ ଏପରି ପରିସ୍ଥିତି ଆଦୌ ଶୁଭପ୍ରଦ ନୁହେଁ ।

ସମ୍ପ୍ରତି ଭାରତର ରାଜନୈତିକ ଅବସ୍ଥା ଅତ୍ୟନ୍ତ ଶୋଚନୀୟ । କୌଣସି ନିର୍ଦ୍ଦିଷ୍ଟ ଦଳ ସଂଖ୍ୟାଗରିଷ୍ଠତା ଲାଭ କରିବାରେ ସମର୍ଥ ହୋଇପାରୁ ନାହିଁ । ଏକାଦଶ ଲୋକସଭା ନିର୍ବାଚନରେ ଭାରତୀୟ ଜନତାଦଳ ଏକକ ସଂଖ୍ୟାଗରିଷ୍ଠ ଦଳ ରୂପେ ସ୍ୱୀକୃତି ଲାଭ କରିଥିଲେହେଁ ପାର୍ଲାମେଣ୍ଟରେ ସଂଖ୍ୟାଗରିଷ୍ଠତା ପ୍ରତିପାଦନ କରିବାକୁ ସମର୍ଥ ନ ହେବାରୁ ମାତ୍ର ୧୩ଦିନ ମଧ୍ୟରେ ଏହି ସରକାରର ପତନ ଘଟିଲା । ଦ୍ୱିତୀୟ ସଂଖ୍ୟାଗରିଷ୍ଠ ଦଳ କଂଗ୍ରେସ ବାହାରୁ ସମର୍ଥନ ଦେବାକୁ ପ୍ରତିଶ୍ରୁତି ଦେବାରୁ ସମ୍ମିଳିତ ମୋର୍ଚ୍ଚା ସରକାର ଏଚ୍.ଡ଼ି. ଦେବଗୌଡ଼ାଙ୍କ ନେତୃତ୍ୱରେ ସରକାର ଗଠନ କଲା । ମାତ୍ର ୧୧ ମାସ ପରେ କଂଗ୍ରେସ ତା'ର ସମର୍ଥନ ପ୍ରତ୍ୟାହାର କରିବାରୁ ସରକାର

ଭୁଷୁଡ଼ି ପଡ଼ିଲା । ପୁନରାୟ କଂଗ୍ରେସର କ୍ରୀଡ଼ନକ ରୂପେ ଇନ୍ଦର କୁମାର ଗୁଜୁରାଲଙ୍କ ନେତୃତ୍ୱରେ ସଂଯୁକ୍ତମୋର୍ଚ୍ଚା ସରକାର ଗଠିତ ହେଲା ଏବଂ ୭ ମାସ ପରେ ବ୍ୟକ୍ତିଗତ ଆକ୍ରୋଶର ଶିକାର ହୋଇ ଏହି ସରକାରର ପତନ ହେଲା । ରାଷ୍ଟ୍ରପତି ଦ୍ୱାରା ଦ୍ୱାଦଶ ସାଧାରଣ ନିର୍ବାଚନ ପାଇଁ ବିଜ୍ଞପ୍ତି ପ୍ରକାଶ ପାଇବା ପରେ ଯେଉଁ ନିର୍ବାଚନ ଅନୁଷ୍ଠିତ ହେଲା, ସେଥିରେ ମଧ୍ୟ କୌଣସି ଏକକ ଦଳ ଲୋକସଭାରେ ସଂଖ୍ୟାଗରିଷ୍ଠତା ଲାଭ କରିପାରିଲା ନାହିଁ । ଏକକ ବୃହତ୍ ଦଳରୂପେ ୧୮୦ଟି ସ୍ଥାନ ଅଧିକାର କରି ଭାରତୀୟ ଜନତାଦଳ ନିଜର ସ୍ଥିତି ଜାହିର କଲା । ସେ ତା'ର ସହଯୋଗୀ ଦଳ ଶିରୋମଣି ଅକାଳୀ, ସ୍ୱାଧୀନ ଅକାଳୀ, ହରିୟାନା ବିକାଶପାର୍ଟି, ହରିୟାନା ଲୋକଦଳ, ସମତା ପାର୍ଟି, ଲୋକଶକ୍ତି, ଏ.ଆଇ.ଏ.ଡି.ଏମ୍.କେ., ପି.ଏମ୍.କେ., ଏମ୍.ଡି.ଏମ୍.କେ., ଟି.ଡ଼ି.ପି., ଜନତାପାର୍ଟି, ଶିବସେନା, ବି.ଜେ.ଡ଼ି., ତୃଣମୂଳ କଂଗ୍ରେସ ଆଦିଙ୍କ ସହାୟତାରେ ଶ୍ରୀଯୁକ୍ତ ଅଟଳବିହାରୀ ବାଜପେୟୀଙ୍କ ନେତୃତ୍ୱରେ ସରକାର ଗଠନ କଲା । ତେଲ୍‌ଗୁଦେଶମ୍ ପାର୍ଟି ଏହି ସରକାରକୁ ବାହାରୁ ସମର୍ଥନ ଦେବାପାଇଁ ସପକ୍ଷରେ ଭୋଟ୍ ଦେବା ସମୟରେ ନେସ୍‌ନାଲ୍ କନ୍‌ଫରେନ୍‌ସ ଭୋଟ୍ ଦାନରୁ ବିରତ ରହିଥିଲେ । ତଥାପି ଅନେକ ସନ୍ଦେହ ଓ ଅବିଶ୍ୱାସ ମଧ୍ୟରେ ବି.ଜେ.ପି. ଓ ତା'ର ସହଯୋଗୀ ଦଳ ୧୩ ମାସ ଶାସନ କଲା; ମାତ୍ର ଏ.ଆଇ.ଏ.ଡି.ଏମ୍.କେ ତା'ର ସମର୍ଥନ ପ୍ରତ୍ୟାହାର କରିବାରୁ ପୁନଶ୍ଚ ତ୍ରୟୋଦଶ ଲୋକସଭା ଆମ ଆଗରେ ଦଣ୍ଡାୟମାନ ହେଲା । ମାତ୍ର ବି.ଜେ.ପି. ନିଜର କେତେକ ସହଯୋଗୀ ଦଳଙ୍କ ସମର୍ଥନରେ ସରକାର ଗଠନକଲା । ଯେଉଁ ଆଞ୍ଚଳିକ ଦଳ ଏଥିରେ ସାମିଲ୍ ହେଲେ, ସେମାନଙ୍କ ମତିଗତି ଶେଷପର୍ଯ୍ୟନ୍ତ ଅସ୍ପଷ୍ଟ ଥିଲା । ଚତୁର୍ଦ୍ଦଶ ଲୋକସଭା ନିର୍ବାଚନରେ କୌଣସି ଦଳ ସଂଖ୍ୟା ଗରିଷ୍ଠତା ନପାଇବାରୁ କଂଗ୍ରେସ ତା'ର ସହଯୋଗୀ ଦଳ ଓ କମ୍ୟୁନିଷ୍ଟ ଦଳର ସର୍ତ୍ତମୂଳକ ସମର୍ଥନରେ ସରକାର ଗଠନ କରିଛନ୍ତି । ସୁସ୍ଥ ଗଣତନ୍ତ୍ରର ପରିଚାଳନା କ୍ଷେତ୍ରରେ ଭାରତର ଏହି ରାଜନୈତିକ ଅସ୍ଥିରତା ନିଶ୍ଚିତ ବିପଦ ସୃଷ୍ଟି କରିବ । ସେଥିପାଇଁ ବର୍ତ୍ତମାନ ଭାରତୀୟ ଗଣତନ୍ତ୍ର ଏକ ସଙ୍କଟଜନକ ପରିସ୍ଥିତି ଦେଇ ଗତି କରୁଛି । ରାଜନୈତିକ ଅସ୍ଥିରତା ଭାରତର ପ୍ରଗତିକୁ ପ୍ରତି କ୍ଷେତ୍ରରେ ବାଧା ଦେଉଛି । ଅତୀତରେ ମଧ୍ୟ ରାଜନୀତିକ ଅସ୍ଥିରତା ଯୋଗୁଁ ବହୁ ସମସ୍ୟା ସୃଷ୍ଟି ହୋଇଛି । ସରକାର ଗଠନରେ ଆଞ୍ଚଳିକ ଦଳଗୁଡ଼ିକ ପ୍ରମୁଖ ଭୂମିକା ଗ୍ରହଣ କରୁଥିବାର ଜାତୀୟସ୍ତରରେ ଆଞ୍ଚଳିକତାର ପ୍ରଭାବ ବୃଦ୍ଧି ପାଇବାରେ ଲାଗିଛି । ପ୍ରତ୍ୟେକ ଦଳ ନିଜ ଅଞ୍ଚଳ ପ୍ରତି ଗୁରୁତ୍ୱପ୍ରଦାନ କରୁଥିବାରୁ ଜାତୀୟ କାର୍ଯ୍ୟସୂଚୀ ବାଧାପ୍ରାପ୍ତ ହେଉଛି । ଭାରତୀୟ ହେବା ପରିବର୍ତ୍ତେ ଏହି ଆଞ୍ଚଳିକ ଦଳ ଅଧିକ ପରିମାଣରେ ପଞ୍ଜାବୀ, ଓଡ଼ିଆ, ମହାରାଷ୍ଟ୍ରୀ, ତେଲ୍‌ଗୁ, ଗୁଜୁରାଟୀ, ବଙ୍ଗାଳୀ ହେବାକୁ ଶ୍ରେୟସ୍କର ମନେ କରୁଛନ୍ତି । ସେହି କାରଣରୁ ଜାତୀୟ ସ୍ୱାର୍ଥ ବାଧାପ୍ରାପ୍ତ ହେଉଛି । ରାଜନୈତିକ ଦଳ ମଧ୍ୟରେ ଦ୍ୱନ୍ଦ୍ୱ ଓ ସଂଘର୍ଷ ଭାରତର ପ୍ରଗତିକୁ ତ୍ୱରାନ୍ୱିତ କରିପାରୁ ନାହିଁ । ଅନ୍ୟାନ୍ୟ ରାଜ୍ୟର ଆଞ୍ଚଳିକ ସମସ୍ୟା ମଧ୍ୟ ଜାତୀୟସ୍ତରରେ ପ୍ରମୁଖ ଭୂମିକା ଗ୍ରହଣ କରିବାକୁ ବାଧ ହେଉଛି । ପଞ୍ଜାବ ସମସ୍ୟା କେତେକାଂଶରେ ସମାଧାନ ହୋଇଥିଲେହେଁ ଅତୀତରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କୁ ଏଥିପାଇଁ ପ୍ରାଣବଳି ଦେବାକୁ ପଡ଼ିଥିଲା । ସନ୍ତ୍ରାସବାଦର

କୁତ୍ସିତ ରୂପ ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀଙ୍କ ମୃତ୍ୟୁରେ ପ୍ରମାଣିତ ହୋଇଛି । ଏତଦ୍‌ବ୍ୟତୀତ ବହୁ ବୁଦ୍ଧିଜୀବୀ, ପ୍ରଶାସକ, ନିରୀହ ଜନସାଧାରଣ ସନ୍ତ୍ରାସବାଦର ଶିକାର ହେଉଛନ୍ତି । ଏହାଦ୍ୱାରା ମଧ୍ୟ ରାଜନୈତିକ ଅସ୍ଥିରତା ସୃଷ୍ଟି ହେଉଛି । ଆମର କେତେକ ପଡ଼ୋଶୀ ଦେଶ ଭାରତରେ ସନ୍ତ୍ରାସବାଦର କାର୍ଯ୍ୟକଳାପକୁ ଜାରି ରଖିଛନ୍ତି । ଏପର୍ଯ୍ୟନ୍ତ କାଶ୍ମୀର ସମସ୍ୟା ସମାଧାନ ହୋଇପାରିନଥିବାରୁ ଅକାଳରେ ବହୁ ବ୍ୟକ୍ତି ପ୍ରାଣ ହରାଉଛନ୍ତି । ଆସାମର ନାଗରିକ ସମସ୍ୟା ଓ ଅନ୍ୟ କେତେକ ସମସ୍ୟା ମଧ୍ୟ ଏଯାବତ୍ ସମାଧିତ ହୋଇପାରି ନାହିଁ । ବୋଡ଼ୋ ଉଗ୍ରପନ୍ଥୀଙ୍କ କାର୍ଯ୍ୟକଳାପ ବୃଦ୍ଧି ପାଇବାରେ ଲାଗିଛି । ଉଲ୍‌ଫା ସନ୍ତ୍ରାସବାଦୀ ନିର୍ମମ ଭାବରେ ହତ୍ୟାର ତାଣ୍ଡବଲୀଳା ସୃଷ୍ଟି କରିଚାଲିଛନ୍ତି । ଅପହରଣ ଓ ହତ୍ୟା ସେଠାରେ ଏକ ସାଧାରଣ କର୍ମସୂଚୀରେ ପରିଣତ ହୋଇଛି । ପଶ୍ଚିମବଙ୍ଗର ଉତ୍ତରପୂର୍ବ ଇଲାକାସ୍ଥିତ ଦାର୍ଜିଲିଂରେ ବସବାସ କରୁଥିବା ନେପାଳୀ ଭାଷାଭାଷୀମାନେ ଗୋର୍ଖାଲ୍ୟାଣ୍ଡ ଦାବି କରୁଛନ୍ତି । ଆନ୍ଧ୍ରପ୍ରଦେଶରେ ନକ୍‌ସାଲପନ୍ଥୀ ସେମାନଙ୍କର ଅମାନବିକ କାର୍ଯ୍ୟକଳାପ ଜାରି ରଖିଛନ୍ତି । ଏତଦ୍‌ବ୍ୟତୀତ ଦିଲ୍ଲୀ, ମୁମ୍ବାଇ, ହାଇଦ୍ରାବାଦ, କୋଇମ୍ବାଟୁର ଆଦି ସ୍ଥାନରେ ବାରମ୍ବାର ବୋମାବିସ୍ଫୋରଣ ଦେଶର ସାର୍ବଭୌମତ୍ୱ ପ୍ରତି ପ୍ରଶ୍ନବାଚୀ ତୋଳିଛି । ଏହି ସନ୍ତ୍ରାସବାଦୀ କାର୍ଯ୍ୟକଳାପ ଯୋଗୁଁ ରାଜନୀତିକ ଅସ୍ଥିରତା ଲାଗିରହିଛି । ସଂକୀର୍ଣ୍ଣ ଆଞ୍ଚଳିକତାବୋଧ, ଜାତିଆଣଭାବ ଓ ବ୍ୟକ୍ତିସ୍ୱାର୍ଥ ରାଜନୀତିକୁ କଳୁଷିତ କରୁଛି । ଆଜି ଦେଶ ନୁହେଁ, ଅଞ୍ଚଳର ସ୍ୱାର୍ଥ ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ ଭାରତୀୟତାର ବିକାଶ ହୋଇପାରୁ ନାହିଁ । କେନ୍ଦ୍ରରେ ସ୍ଥିର ସରକାର ଗଠିତ ହେଲେ, ରାଜନୀତିକ ଅସ୍ଥିରତା ତଥା ବିଭିନ୍ନ ସମସ୍ୟାକୁ ବହୁପରିମାଣରେ ଦୂରୀଭୂତ କରାଯାଇପାରନ୍ତା । ଜାତିର ନୈତିକ ଅଧୋପତନ ମଧ୍ୟ ଅସ୍ଥିର ରାଜନୀତି ପାଇଁ ବହୁପରିମାଣରେ ଦାୟୀ । ରାଜନୈତିକ ବ୍ୟକ୍ତିବିଶେଷଙ୍କ ସାଧୁତା ଓ ସଚ୍ଚୋଟତା ଏବେ ଅନ୍ୟ ଏକ ପ୍ରଶ୍ନବାଚୀ ହୋଇ ଠିଆ ହୋଇଛି । ଦେଶର ଜନସାଧାରଣ ଯେଉଁମାନଙ୍କୁ ସେମାନଙ୍କର ପ୍ରତିନିଧିରୂପେ ନିର୍ବାଚିତ କରୁଛନ୍ତି, ବିଭିନ୍ନ ଦୁର୍ନୀତି ବ୍ୟାପାରରେ ସେହିମାନେ ହିଁ ପ୍ରମୁଖ ଭୂମିକା ଗ୍ରହଣ କରୁଛନ୍ତି । ନିର୍ବାଚିତ ହେବାପରେ ସାମୂହିକ ସ୍ୱାର୍ଥ ଅପେକ୍ଷା ବ୍ୟକ୍ତିଗତ ସ୍ୱାର୍ଥ ପ୍ରତି ସେମାନେ ଅଧିକ ମନୋନିବେଶ କରୁଛନ୍ତି । ବିରାଟ ବ୍ୟାଙ୍କ୍ ସ୍କାମ, ଗୋଖାଦ୍ୟ ଦୁର୍ନୀତି, ବୋଫର୍ସ ଓ ବୁଡ଼ାଜାହାଜ ଦୁର୍ନୀତି, ହାୱାଲା ଆଦି ବ୍ୟାପାରରେ ଏମାନେ ପ୍ରତ୍ୟକ୍ଷ ଭାବରେ ଜଡ଼ିତ । ନିର୍ବାଚନ ରଣାଙ୍ଗନ ପାରିହେବାକୁ ଏମାନେ ବହୁତଳକୁ ଖସିଯାଉଛନ୍ତି । ନିଜେ ଅପରାଧ କରିବା ସଙ୍ଗେ ସଙ୍ଗେ ଅପରାଧୀମାନଙ୍କୁ ସମର୍ଥନ ଦେଉଛନ୍ତି । ଭାରତରେ ଏବେ ଏକ ଅବାଧ ନିର୍ବାଚନ କରିବା କଷ୍ଟକର ହୋଇପଡୁଛି । ରାଜନୈତିକ ବ୍ୟକ୍ତିବିଶେଷଙ୍କର ଚାରିତ୍ରିକ ସ୍ଖଳନ ଯୋଗୁଁ ଜନସାଧାରଣ କୌଣସି ଦଳକୁ ସ୍ପଷ୍ଟ ଜନାଦେଶ ଦେଇ ପାରୁନାହାନ୍ତି । ଭାରତରେ ଏବେ ଯେତୋଟି ରାଜନୈତିକ ଦଳ ମୁଣ୍ଡ ଟେକିଛନ୍ତି, କୌଣସି ଗୋଟିଏ ଦଳ ସମ୍ପୂର୍ଣ୍ଣରୂପେ କଳଙ୍କମୁକ୍ତ ନୁହନ୍ତି । ରାଜନୈତିକ ଅସ୍ଥିରତା ପାଇଁ ଏହିପରି ବ୍ୟକ୍ତିବିଶେଷ ବହୁପରିମାଣରେ ଦାୟୀ ଓ ସେହି କାରଣରୁ ଭାରତର ଗଣତନ୍ତ୍ର ଆଜି ବିପଦାପନ୍ନ ।

ଭାରତର ସାମ୍ପ୍ରତିକ ଅର୍ଥନୀତି ସଙ୍କଟାପନ୍ନ ଅବସ୍ଥା ଦେଇ ଗତିକରୁଛି । ରାଜନୈତିକ ଅସ୍ଥିରତା ଏଥିପାଇଁ ବହୁପରିମାଣରେ ଦାୟୀ । ସ୍ଥିର ସରକାର ଅଭାବରୁ ଦରଦାମ୍ ନିୟନ୍ତ୍ରଣ

କରାଯାଇପାରୁ ନାହିଁ । ଭାରତୀୟ ଷ୍ଟକ୍‌ମାର୍କେଟରେ ମାନ୍ଦା ଅବସ୍ଥା ସୃଷ୍ଟି ହୋଇଛି । ଆମେରିକୀୟ ଡ଼ଲାର ତୁଳନାରେ ଟଙ୍କାର ମୂଲ୍ୟ ହ୍ରାସ ପାଉଛି । ଦେଶର ଶିଳ୍ପ ଉପାଦାନ ହ୍ରାସ ପାଉଛି । ରପ୍ତାନୀ କ୍ଷେତ୍ରରେ ମଧ ଉଲ୍ଲେଖଯୋଗ୍ୟ ଉନ୍ନତି ପରିଲକ୍ଷିତ ହେଉ ନାହିଁ । ବାରମ୍ୱାର ନିର୍ବାଚନ ଯୋଗୁଁ ବୈଦେଶିକ ମୁଦ୍ରା ମଧ ହ୍ରାସ ପାଇବାରେ ଲାଗିଛି । ଅର୍ଥନୀତିର ଉଦାରୀକରଣ ଯୋଗୁଁ ବହୁଦେଶୀୟ କମ୍ପାନୀମାନେ ପ୍ରଚୁର ପରିମାଣରେ ଲାଭବାନ୍ ହୋଇଛନ୍ତି । ମାତ୍ର ଭାରତର ଗରିବ ଅଧିକ ଗରିବ ହୋଇଛନ୍ତି । ଅସ୍ଥିର ରାଜନୀତି ସ୍ଥିର ଅର୍ଥନୀତି ଦେବାକୁ ସମର୍ଥ ହେଉନଥିବାରୁ ଆର୍ଥନୀତିକ ସଙ୍କଟ ଲାଗି ରହିବାକୁ ବାଧ ହେଉଛି । ବିକଶିତ ରାଷ୍ଟ୍ରମାନଙ୍କ ସହିତ ଭାରତପରି ଏକ ବିକାଶଶୀଳ ରାଷ୍ଟ୍ର ପ୍ରତିଯୋଗିତା କରିବାକୁ ସମର୍ଥ ହୋଇପାରୁ ନାହିଁ । ବିଶ୍ୱବ୍ୟାଙ୍କର ଋଣର ସୁଧ ବଢ଼ି ବଢ଼ି ଚାଲିଛି । ୧୯୯୨ ମସିହା ବେଳକୁ ଭାରତର ଅର୍ଥନୀତି ଦେବାଳିଆ ଅବସ୍ଥା ଆଡ଼କୁ ଗତି କରୁଥିଲା । ଡ଼ଃ ମନମୋହନ ସିଂଙ୍କ ଆଶୁପଦକ୍ଷେପ ଯୋଗୁଁ ଏଥିରୁ ଭାରତ ରକ୍ଷା ପାଇଯାଇଥିଲେହେଁ, ତା'ର ଅର୍ଥନୀତିକୁ ସମୃଦ୍ଧିଶାଳୀ କରିପାରି ନାହିଁ । ବାରମ୍ୱାର ନିର୍ବାଚନ ଯୋଗୁଁ ଅନାବଶ୍ୟକ ଭାବେ ନିର୍ବାଚନ ଖର୍ଚ୍ଚ ବୃଦ୍ଧି ପାଉଛି । ଦୁର୍ନୀତିର ଚେର ଗଭୀରରୁ ଗଭୀରତର ହେବାରେ ଲାଗିଛି । ବ୍ୟକ୍ତିଗତ ସ୍ୱାର୍ଥ ପାଇଁ ଭାରତର ରାଜନୀତିକ ନେତାଗଣ ବିଦେଶୀମାନଙ୍କ ସହିତ ଯୋଗସୂତ୍ର ରକ୍ଷାକରି ଭାରତର ଅର୍ଥନୀତିକୁ ଶୋଷଣ କରିଚାଲିଛନ୍ତି । କମିଶନି କାରବାର ଯୋଗୁଁ ଆବଶ୍ୟକ ନଥିଲେ ମଧ ଦେଶ ବାହାରୁ ବିଭିନ୍ନ ପଦାର୍ଥ କ୍ରୟ କରାଯାଉଛି । ଦେଶର ଅର୍ଥନୀତି ଭୁଶୁଡ଼ିପଡ଼ିଲେ, ଗଣତନ୍ତ୍ର ସ୍ୱାଭାବିକଭାବେ ଦୁର୍ବଳ ହୋଇପଡ଼ିଥାଏ । ଗଣତନ୍ତ୍ରର ସୁସ୍ଥ ବିକାଶ ନିମିତ୍ତ ଆର୍ଥନୀତିକ ସମୃଦ୍ଧି ଅତ୍ୟନ୍ତ ଜରୁରୀ । ଭାରତର ଋଣ ପ୍ରତିବର୍ଷ ଯେପରି ବୃଦ୍ଧି ପାଉଛି, କେଉଁ ମୁହୂର୍ତ୍ତରେ ଭାରତର ଗଣତନ୍ତ୍ର ସାମ୍ରାଜ୍ୟବାଦୀଙ୍କ ଶିକାର ହେବ, କହିହେବ ନାହିଁ । ତେଣୁ ସାମ୍ପ୍ରତିକ ପରିପ୍ରେକ୍ଷୀରେ ଭାରତ ପାଇଁ ଏକ ସୁଦୃଢ଼ ଅର୍ଥନୀତିର ଆବଶ୍ୟକ ରହିଛି ।

ଭାରତରେ ସମୟେ ସମୟେ ଏପରି ରାଜନୈତିକ ଅସ୍ଥିରତା ସୃଷ୍ଟି ହେଉଛି, ଯାହା ଦ୍ୱାରା ସାମ୍ବିଧାନିକ ସଙ୍କଟ ପରିଲକ୍ଷିତ ହେଉଛି । ଇଂଲଣ୍ଡର ସମ୍ବିଧାନକୁ ଅନୁସରଣ କରି ଭରତରେ ସଂସଦୀୟ ଗଣତନ୍ତ୍ର ପ୍ରଚଳନ ହୋଇଛି । ମାତ୍ର ଇଂଲଣ୍ଡରେ ସଂସଦୀୟ ଗଣତନ୍ତ୍ର ଯେପରି ଦ୍ୱି-ଦଳୀୟ, ଭାରତରେ ତାହା ନୁହେଁ । ଯଦି ସମ୍ବିଧାନ ପ୍ରଣୟନ ସମୟରେ ଏହି ଦ୍ୱି-ଦଳୀୟ ସଂସଦୀୟ ଗଣତନ୍ତ୍ରର ନୀତିକୁ ଗ୍ରହଣ କରାଯାଇଥାନ୍ତା, ସାମ୍ପ୍ରତିକ ପରିପ୍ରେକ୍ଷୀରେ ଯେପରି କୌଣସି ଦଳ ନିରଙ୍କୁଶ ସଂଖ୍ୟାଗରିଷ୍ଠତା ଅର୍ଜନ କରିବାକୁ ଅସମର୍ଥ ହେଉଛନ୍ତି, ସେପରି ପରିସ୍ଥିତି କଦାପି ସୃଷ୍ଟି ହୋଇନଥାନ୍ତା କିମ୍ବା ଝୁଲା ସଂସଦ ଗଠନର ଆବଶ୍ୟକତା ପଡ଼ିନଥାନ୍ତା । ଦ୍ୱି-ଦଳୀୟ ସଂସଦୀୟ ଗଣତନ୍ତ୍ରରେ ଗୋଟିଏ ଦଳ ଶାସନ କ୍ଷମତାରେ ରହିଥାନ୍ତା ଓ ଅନ୍ୟ ଗୋଟିଏ ଦଳ ବିରୋଧୀ ଦଳ ଭୂମିକାରେ ଅବତୀର୍ଣ୍ଣ ହୋଇ ସରକାରଙ୍କ ଜନ-ପରିପନ୍ଥୀ କାର୍ଯ୍ୟକୁ ସମାଲୋଚନା କରି ଜନସାଧାରଣଙ୍କୁ ସଚେତନ କରାଇଥାନ୍ତା । ଭାରତୀୟ ଗଣତନ୍ତ୍ରରେ ବହୁଦଳ ନିର୍ବାଚନ ରଣାଙ୍ଗନରେ ଅବତୀର୍ଣ୍ଣ ହେଉଥିବାରୁ ଏକ ସୁସ୍ଥ ଗଣତାନ୍ତ୍ରିକ ବାତାବରଣ ସୃଷ୍ଟି ହୋଇପାରୁ ନାହିଁ । ଭାରତର ସମ୍ବିଧାନ ପ୍ରଣୟନ ସମୟରେ ଭବିଷ୍ୟତରେ ଏପରି ଏକ ପରିସ୍ଥିତି ସୃଷ୍ଟି ହେବ, ସମ୍ବିଧାନ

ପ୍ରଣେତାଗଣ ଏହା କେବେ ସ୍ୱପ୍ନରେ ସୁଦ୍ଧା ଚିନ୍ତା କରିନଥିଲେ । ଆଜି ଭାରତୀୟ ଗଣତନ୍ତ୍ରର ଏହି ଦୁର୍ବଳତାର ସୁଯୋଗ ନେଇ ଆଞ୍ଚଳିକତାବାଦ ସୃଷ୍ଟି ହୋଇଛି ଏବଂ ଏହି କାରଣରୁ ଆଞ୍ଚଳିକ ଦଳଗୁଡ଼ିକ ଜାତୀୟସ୍ତରର ଦଳଗୁଡ଼ିକୁ ପ୍ରଭାବିତ କରିଚାଲିଛନ୍ତି । ଯଦି ସମ୍ବିଧାନରେ ପ୍ରଥମରୁ ଦ୍ୱି-ଦଳୀୟ ବ୍ୟବସ୍ଥା ଥା'ନ୍ତା, ତେବେ ଆଞ୍ଚଳିକ ଦଳ ସୃଷ୍ଟି ହୋଇନଥାନ୍ତା କିମ୍ବା ସାମ୍ପ୍ରଦାୟିକତା ଓ ଧର୍ମ ନିରପେକ୍ଷତାର ଦୋହାଇ ଦେଇ ବିଭିନ୍ନ ଦଳ ରାଜନୈତିକ ଅସ୍ଥିରତା ସୃଷ୍ଟି କରିବାକୁ ସମର୍ଥ ହୋଇପାରି ନ ଥାନ୍ତେ । ଆମର ପଚାଶ ବର୍ଷ ଶାସନରେ ଧର୍ମନିରପେକ୍ଷ ନୀତି ଓ ଜାତୀୟ କାର୍ଯ୍ୟସୂଚୀ ବିଫଳ ହୋଇଥିବାରୁ ସାମ୍ପ୍ରଦାୟିକତା ଓ ଆଞ୍ଚଳିକବାଦ ଜନ୍ମ ନେଇଛି କହିଲେ ଭୁଲ ହେବ ନାହିଁ । ସଂଖ୍ୟାଲଘୁ ତୁଷ୍ଟିକରଣ, ରାଜନୈତିକ ନେତାମାନଙ୍କର ଅଦୂରଦର୍ଶିତା, ଭୋଟବ୍ୟାଙ୍କ୍ ରାଜନୀତି ଯୋଗୁଁ ହିଁ ସମ୍ପ୍ରଦାୟବାଦ ଓ ଆଞ୍ଚଳିକବାଦ ଭାରତୀୟ ରାଜନୀତିକୁ ନିୟନ୍ତ୍ରଣ କରିବାକୁ ବାଧ୍ୟ ହୋଇଛି । ଆଜି ଯେଉଁମାନେ ସାମ୍ପ୍ରଦାୟିକବାଦର ଦୋହାଇଦେଇ ଏକକ ସଂଖ୍ୟାଗରିଷ୍ଠ ଦଳକୁ ରାଜନୈତିକ ଅସ୍ପୃଶ୍ୟ ବୋଲି କହି ବୁଲୁଛନ୍ତି, ଏଥିପାଇଁ ସେହିମାନେ ହିଁ ବହୁ ପରିମାଣରେ ଦାୟୀ । ବର୍ତ୍ତମାନ ଭାରତୀୟ ସମ୍ବିଧାନରେ 'ଧର୍ମ ନିରପେକ୍ଷ' ଓ 'ସମାଜବାଦୀ' ପରି ଯେଉଁ ଶବ୍ଦ ଦୁଇଟି ଉପରେ ବିଶେଷ ଗୁରୁତ୍ୱ ଦିଆଯାଉଛି, ସମ୍ବିଧାନ ପ୍ରଣୟନ ସମୟରେ ଏହି ଶବ୍ଦଦ୍ୱୟ ସ୍ଥାନ ପାଇନ ଥିଲା । ଇନ୍ଦିରାଗାନ୍ଧୀ ପ୍ରଧାନମନ୍ତ୍ରୀ ଥିବା ସମୟରେ ସମ୍ବିଧାନ ସଂଶୋଧନ କରାଯାଇ ପ୍ରସ୍ତାବନାରେ ଏହି ଦୁଇଟି ଶବ୍ଦକୁ ରଖାଗଲା ରାଜନୈତିକ ଆବଶ୍ୟକତା ଦୃଷ୍ଟିରୁ । ମାତ୍ର ରାଜନୈତିକ ଦଳ ଏହାର ତର୍ଜମା ଭିନ୍ନ ଭାବରେ କରୁଥିବାର ଦେଖାଯାଏ । ସାମ୍ପ୍ରତିକ ରାଜନୈତିକ ଅବସ୍ଥା ଦୃଷ୍ଟିରୁ ପୁନରାୟ ସମ୍ବିଧାନ ସଂଶୋଧନ କରିବାର ଆବଶ୍ୟକତା ଦେଖାଦେଇଛି । କାରଣ ଯଦି ଏହିପରି ରାଜନୈତିକ ଅସ୍ଥିରତା ଲାଗିରହେ, ଦେଶର ଅର୍ଥନୀତିକୁ ତାହା ଗଭୀର ଭାବରେ ପ୍ରଭାବିତ କରିବ । ବିପନ୍ନ ଅର୍ଥନୀତି ସୁସ୍ଥ ଗଣତନ୍ତ୍ରର ପରିପନ୍ଥୀ । ଅତୀତରେ ରାଜନୀତିକ ନେତାଗଣ ଆଦର୍ଶ ପାଇଁ ନିର୍ବାଚନ ଲଢୁଥିଲେ । ବର୍ତ୍ତମାନ ବ୍ୟକ୍ତିଗତ ସ୍ୱାର୍ଥ ବା ଦଳୀୟ ସ୍ୱାର୍ଥ ପାଇଁ ନେତାଗଣ ନିର୍ବାଚନ ଲଢୁଛନ୍ତି । ଆଦର୍ଶ ଓ ନୈତିକତା ରାଜନୀତିରୁ ଅନ୍ତର୍ହିତ ହୋଇଯାଇଛି । ବ୍ୟକ୍ତିସ୍ୱାର୍ଥ ଓ କ୍ଷମତାର ମୋହ ଅଧିକ ଉଗ୍ର ହୋଇଉଠିଛି । ତେଣୁ ବର୍ତ୍ତମାନ ପରିପ୍ରେକ୍ଷୀରେ ସମ୍ବିଧାନ ସଂଶୋଧନ କରାଯାଇ ଭାରତରେ ଦ୍ୱିଦଳୀୟ ସଂସଦୀୟ ଗଣତନ୍ତ୍ର ନିମିତ୍ତ ବ୍ୟବସ୍ଥା କରାଯାଉ, ନଚେତ୍ ଏକ ଜାତୀୟ କାର୍ଯ୍ୟସୂଚୀ ପ୍ରସ୍ତୁତ କରାଯାଇ ଏକକ ବୃହତ୍ ଦଳକୁ ନିର୍ଦ୍ଦିଷ୍ଟ ସମୟ ପାଇଁ କାର୍ଯ୍ୟ କରିବାର ସୁଯୋଗ ପ୍ରଦାନ କରାଯାଉ; ଅଥବା ଦଳର ସଂଖ୍ୟାନୁପାତରେ ଏକ ସର୍ବନିମ୍ନ କାର୍ଯ୍ୟସୂଚୀ ଅନୁଯାୟୀ ସର୍ବଦଳୀୟ ସରକାର ଗଠନ ପାଇଁ ବ୍ୟବସ୍ଥା ହେଉ । ଏହା ହୋଇ ନ ପାରିଲେ ଜନମତ ଯେପରି ବିଭ୍ରାନ୍ତ ହେଉଛି ଓ ରାଜନୈତିକ ଦଳର ସ୍ୱାର୍ଥ ଯେଉଁପରି ଉଗ୍ରରୂପ ଧାରଣ କରୁଛି ଭାରତୀୟ ଗଣତନ୍ତ୍ର ସମ୍ପୂର୍ଣ୍ଣ ରୂପେ ଭୁଷୁଡ଼ି ପଡ଼ିବ । ତେଣୁ ବର୍ତ୍ତମାନ ଦଳମତ ନିର୍ବିଶେଷରେ ସମ୍ବିଧାନର ସଂଶୋଧନ କରାଯାଇ ଭାରତକୁ ଗୋଟିଏ ସୁସ୍ଥ ଗଣତନ୍ତ୍ର ରାଷ୍ଟ୍ରରେ ପରିଣତ କରାଯିବା ଉଚିତ ।

ଭାରତ ଏକ ସଙ୍କଟମୟ ରାଜନୈତିକ ଅସ୍ଥିରତା ମଧ୍ୟ ଦେଇ ଗତି କରୁଥିବାରୁ ଏହାର ଭବିଷ୍ୟତ ନେଇ ବହୁ ସଂଶୟ ମନରେ ସୃଷ୍ଟି ହେବା ସ୍ୱାଭାବିକ । ହୁଏତ ଏହି ସଙ୍କଟଜନକ ପରିସ୍ଥିତିରୁ ଅନ୍ୟ ଦେଶମାନେ ବେଶ୍ ଫାଇଦା ଉଠାଇ ପାରନ୍ତି । ଗଣତନ୍ତ୍ରର ସୁରକ୍ଷାର ଦାୟିତ୍ୱ କେବଳ ରାଜନୈତିକ ବ୍ୟକ୍ତିବିଶେଷଙ୍କର ନୁହେଁ; ପରନ୍ତୁ ଏ ଦେଶର ଜନସାଧାରଣ ଏ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିପାରିବେ । ବର୍ତ୍ତମାନ ଦଳମତ ନିର୍ବିଶେଷରେ ବ୍ୟକ୍ତିସ୍ୱାର୍ଥ ଅପେକ୍ଷା ରାଷ୍ଟ୍ରୀୟ ସ୍ୱାର୍ଥ ଅଧିକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଗ୍ରହଣ କରିବା ଉଚିତ । ଭାରତ ଏକ ସଭ୍ୟ ଓ ସଂସ୍କୃତିସମ୍ପନ୍ନ ଦେଶ । ଅନ୍ୟ ଦେଶରେ ଏହାର ଗୋଟିଏ ସ୍ୱତନ୍ତ୍ର ମର୍ଯ୍ୟାଦା ଓ ସମ୍ମାନ ରହିଛି । ମାତ୍ର ଆଜିର କଳୁଷିତ ରାଜନୀତି ତା'ର ସମସ୍ତ ମର୍ଯ୍ୟାଦାକୁ ଭୂଲୁଣ୍ଠିତ କରୁଛି । ଏ କ୍ଷେତ୍ରରେ ଜନସାଧାରଣ ବିଶେଷ ଭାବରେ ସଚେତନ ହେବା ଆବଶ୍ୟକ । ଭାରତ ବିଶ୍ୱାସ କରେ ଆଶାବାଦରେ । ସାଂପ୍ରତିକ ପରିସ୍ଥିତିରେ ନିଶ୍ଚିତ ପରିବର୍ତ୍ତନ ହେବ । ପୁଣି ଏ ଦେଶରେ ପୂର୍ବର ସ୍ଥିତାବସ୍ଥା ଫେରିଆସିବ । ଏହାର ଗଣତନ୍ତ୍ରର ନବ ମୂଲ୍ୟାୟନ ହେବ । ଯେଉଁମାନେ ଗଣତନ୍ତ୍ର ପାଇଁ ବିପଦ ସୃଷ୍ଟି କରୁଛନ୍ତି, ସେମାନେ ଉପଯୁକ୍ତ ଶାସ୍ତି ପାଇବେ । ବିଶ୍ୱରେ ଭାରତୀୟ ଗଣତନ୍ତ୍ରେ ପୁନରାୟ ତା'ର ପୂର୍ବ ମର୍ଯ୍ୟାଦା ଫେରିପାଇବ । ଏହାର ଭବିଷ୍ୟତ ନିଶ୍ଚିତ ଉଜ୍ଜ୍ୱଳମୟ; ଏଥିରେ ଦ୍ୱିମତ ହେବାର କିଛି ନାହିଁ ।

ବିଶ୍ୱରେ ଭାରତର ସର୍ବଶ୍ରେଷ୍ଠ ଗଣତନ୍ତ୍ର ପ୍ରଚଳିତ ବୋଲି ବହୁ ବିଶେଷଜ୍ଞ ମତପ୍ରଦାନ କରନ୍ତି । ମାତ୍ର ବ୍ୟକ୍ତି ଚରିତ୍ରରେ ସଙ୍କଟ ଓ ମୂଲ୍ୟବୋଧରେ ଅବକ୍ଷୟ ଦେଖାଦେଲେ ଗଣତନ୍ତ୍ରରେ ମଧ୍ୟ ସଙ୍କଟ ଦେଖା ଦେଇଥାଏ । ବିଗତ କେତେବର୍ଷ ହେବ ଭାରତର ଗଣତନ୍ତ୍ର ଏହିପରି ଏକ ସଙ୍କଟଜନକ ପରିସ୍ଥିତି ଦେଇ ଗତିଶୀଳ । ଭାରତର ଜନସାଧାରଣ ଯେପରି ଭାବେ ସେମାନଙ୍କର ଜନାଦେଶ ସାବ୍ୟସ୍ତ କରୁଛନ୍ତି; ସେଥିରେ କୌଣସି ରାଜନୀତିକ ଦଳ ଆଶ୍ୱସ୍ତ ହୋଇପାରୁ ନାହାନ୍ତି । ବର୍ତ୍ତମାନ ସେମାନେ ନିଜର ଚରିତ୍ରକୁ ବିଶ୍ଳେଷଣ କରିବା ଉଚିତ । ବ୍ୟକ୍ତିସ୍ୱାର୍ଥ ଉଗ୍ର ହେଲେ ଦଳୀୟ ସ୍ୱାର୍ଥ କିପରି ବିପନ୍ନ ହୁଏ; ତାହା ସେମାନେ ଅନୁଭବ କରିବା ଉଚିତ । ବର୍ତ୍ତମାନ ଆତ୍ମବିଶ୍ଳେଷଣର ସମୟ । ପ୍ରତ୍ୟେକ ରାଜନୀତିକ ଦଳ ଓ ଦଳୀୟ ବ୍ୟକ୍ତିବିଶେଷ ନିଜର ଆତ୍ମସମୀକ୍ଷା କରିବା ସଙ୍ଗେ ସଙ୍ଗେ ସୁସ୍ଥ ଗଣତନ୍ତ୍ର ପାଇଁ ହିଂସା, ଦ୍ୱେଷ ଭୁଲି ଗୋଟିଏ ଛତ୍ରତଳେ ସମବେତ ହେବା ଆବଶ୍ୟକ । ମନେରଖିବା ଉଚିତ ରାଷ୍ଟ୍ରୀୟ ସ୍ୱାର୍ଥ ଅପେକ୍ଷା ବଡ଼ ସ୍ୱାର୍ଥ ଆଉ କିଛି ନାହିଁ । ରାଜତନ୍ତ୍ରରୁ ମୁକ୍ତିପାଇ ଆମେ ଗଣତନ୍ତ୍ରକୁ ଉପଭୋଗ କରୁଛୁ । ଆମର ନୈତିକ ମୂଲ୍ୟବୋଧରେ ପରିବର୍ତ୍ତନ ନ ଘଟିଲେ ଏହି ଗଣତନ୍ତ୍ର ପୁନରାୟ ଅନ୍ୟ କିଛିରେ ପରିବର୍ତ୍ତନ ହୋଇଯିବାର ସମ୍ଭାବନାକୁ ଅସ୍ୱୀକାର କରାଯାଇ ନ ପାରେ । ଭାରତୀୟତାର ମର୍ଯ୍ୟାଦା ନେଇ ବଞ୍ଚିବା ପ୍ରତ୍ୟେକ ଭାରତୀୟଙ୍କ ପାଇଁ ଏକ ସମ୍ମାନର ବିଷୟ । ତେଣୁ ଏ ଦେଶର ରାଜନୈତିକ ଦଳ, ବ୍ୟକ୍ତିବିଶେଷ ଆଗାମୀ ଦିନମାନଙ୍କରେ ଭାରତର ଗଣତନ୍ତ୍ରକୁ ବଞ୍ଚାଇବା ନିମିତ୍ତ ଏକ ସୁସ୍ଥ ଗଣତାନ୍ତ୍ରିକ ପରିବେଶ ସୃଷ୍ଟି କରିବେ ବୋଲି ଆଶା ଓ ବିଶ୍ୱାସ ।

# ସ୍ୱାଧୀନତାର ସୁବର୍ଣ୍ଣଜୟନ୍ତୀ

**(ଉପକ୍ରମ, ସ୍ୱାଧୀନତାର ସ୍ୱପ୍ନ, ସୁବର୍ଣ୍ଣଜୟନ୍ତୀ ଅନୁଚିନ୍ତା, ସୁବର୍ଣ୍ଣଜୟନ୍ତୀ ଅବକାଶରେ ସଂସଦର ସ୍ୱତନ୍ତ୍ର ଅଧିବେଶନ, ପଚାଶବର୍ଷର କେତୋଟି ବିଶେଷ ମୁହୂର୍ତ୍ତ, ବିବର୍ଣ୍ଣ ଭାରତ, ସଫଳତା, ଭାରତୀୟ କର୍ତ୍ତବ୍ୟ, ଉପସଂହାର)**

ଅନେକ ସ୍ୱପ୍ନ, ବହୁ ପ୍ରତୀକ୍ଷାର ଅବସାନ ଘଟାଇ ଅବଶେଷରେ ୧୯୪୭ ମସିହା ଅଗଷ୍ଟ ୧୪ ମଧ୍ୟରାତ୍ରିରେ ଭାରତ ସ୍ୱାଧୀନ ହେଲା । ଏ ମାଟିରୁ ଉପନିବେଶବାଦର ବିଲୋପ ଘଟିଲା । ଆମେ ହେଲୁ ଆମର ରକ୍ଷାକର୍ତ୍ତା ଓ ଶାସନକର୍ତ୍ତା । ଭାରତର ସ୍ୱାଧୀନତା ପ୍ରାପ୍ତି ବିଶ୍ୱ ଇତିହାସରେ ଆରମ୍ଭ କଲା ଏକ ନୂତନ ଅଧ୍ୟାୟ । ବିନା ରକ୍ତପାତରେ ଗୋଟିଏ ଦେଶ ସ୍ୱାଧୀନ ହୋଇପାରେ; ବୋଧହୁଏ ତାହା ଥିଲା ସେ ସମୟରେ ସମ୍ପୂର୍ଣ୍ଣ କଳ୍ପନାତୀତ । ଅହିଂସାର ତରବାରିରେ ସେଦିନ ଭାରତ ସ୍ୱାଧୀନତା ଲାଭ କଲା । ସମଗ୍ର ବିଶ୍ୱବାସୀ ଚକିତ ହୋଇଉଠିଥିଲେ । ଇତିହାସର ରକ୍ତାକ୍ତ ପୃଷ୍ଠା ଉପରେ ଭାରତର ସ୍ୱାଧୀନତା ଲେଖିଦେଲା ଶ୍ୱେତ ଅକ୍ଷରର ଗରିମାମୟ ଅଧ୍ୟାୟ । ଶାନ୍ତିର ଦେଶ ଭାରତର ସ୍ୱାଧୀନତା ପ୍ରାପ୍ତିର ସବୁଠାରୁ କରୁଣମୟ କାହାଣୀ ଥିଲା ଭାରତର ବିଭାଜନ । ଅଖଣ୍ଡ ଭାରତ ଅଗଷ୍ଟ ୧୪ ତାରିଖରେ ଖଣ୍ଡ ଖଣ୍ଡ ହୋଇଗଲା । ତଥାପି ଆମେ ସ୍ୱାଧୀନତାର ଉତ୍ସବ ପାଳନ କଲୁ । ଆମେ ହେଲୁ ଆମର ଭାଗ୍ୟବିଧାତା । ଭାରତ ସ୍ୱାଧୀନତା ପ୍ରାପ୍ତିର ପଚାଶ ବର୍ଷ ପୂର୍ତ୍ତି ଉପଲକ୍ଷେ ତା'ର ସୁବର୍ଣ୍ଣଜୟନ୍ତୀ ପାଳନ କରିଛି । ତେବେ ମନରେ ସ୍ୱତଃ ପ୍ରଶ୍ନ ଜାଗ୍ରତ ହେବା ସ୍ୱାଭାବିକ—ଆମେ କ'ଣ ବର୍ତ୍ତମାନର ଏହି ଭାରତକୁ ଦେଖିବା ପାଇଁ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲୁ ? ଏଇଥିପାଇଁ ଥିଲା ସେଦିନ ଏତେ କୃଚ୍ଛ୍ର ସାଧନା ? ସ୍ୱାଧୀନତା ପ୍ରାପ୍ତି ଅପେକ୍ଷା ତା'ର ସୁରକ୍ଷା ସବୁଠାରୁ ବଡ଼ ଆହ୍ୱାନ । ଏହି ଆହ୍ୱାନ ଏଯାବତ୍ କେତେକାଂଶରେ ପରିପୂର୍ତ୍ତି ହୋଇଛି ଏବଂ ଏ କ୍ଷେତ୍ରରେ ଆମେ କେତେଦୂର ସଫଳତା ଲାଭ କରିଛୁ, ତାହା ଆଲୋଚନା କରିବା ଏହି ପ୍ରବନ୍ଧର ଉଦ୍ଦେଶ୍ୟ ।

୧୮୫୭ର ସିପାହୀ ବିଦ୍ରୋହଠାରୁ ଭାରତ ଇତିହାସରେ ଯେଉଁ ସ୍ୱାଧୀନତା ସଂଗ୍ରାମର ପ୍ରଥମ ବୀଜଟି ରୋପଣ କରାଯାଇଥିଲା, ୧୯୪୭ ଅଗଷ୍ଟ ୧୫ରେ ତାହା ଏକ ବିରାଟ ମହୀଦ୍ରୁମରେ ପରିଣତ ହେଲା । ଏଥିପାଇଁ ଭାରତକୁ କମ୍ ବଳିଦାନ ଦେବାକୁ ପଡ଼ି ନାହିଁ । ବହୁ ସ୍ୱାଧୀନତା ସଂଗ୍ରାମୀଙ୍କ କବର୍ ଉପରେ ଆଜି ପ୍ରତିଷ୍ଠା ଲାଭ କରିଛି ସ୍ୱାଧୀନ ଭାରତ । ଲାଲ୍ ବାଲ୍ ପାଲ୍‌ଙ୍କ ପରି ଚରମପନ୍ଥୀ, ମହାତ୍ମାଗାନ୍ଧିଙ୍କ ପରି ନରମପନ୍ଥୀ, ସୁଭାଷଙ୍କ ପରି କଠୋରପନ୍ଥୀ ବ୍ୟକ୍ତିଗଣ ଭାରତର ସ୍ୱାଧୀନତା ପାଇଁ କଠୋର ସାଧନା କରିଯାଇଛନ୍ତି । ଏମାନଙ୍କ ସହିତ ଯୋଗଦାନ କରିଛନ୍ତି ପଣ୍ଡିତ ଜବାହରଲାଲ ନେହେରୁ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ଲାଲବାହାଦୁର ଶାସ୍ତ୍ରୀ, ସର୍ବପଲ୍ଲୀ ରାଧାକୃଷ୍ଣନ୍, ଡ଼ଃ. ରାଜେନ୍ଦ୍ରପ୍ରସାଦ, ସୀମାନ୍ତ ଗାନ୍ଧି, ଗୋପବନ୍ଧୁ ଦାଶ, ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର, ଗୋପବନ୍ଧୁ ଚୌଧୁରୀ, ଡ଼ଃ ହରେକୃଷ୍ଣ ମହତାବ

ଆଦିଙ୍କ ପରି ବହୁ ମହାମାନବ । ଭାରତକୁ ସ୍ୱାଧୀନତା ନ ଦେବାର ସମସ୍ତ ଚକ୍ରାନ୍ତ ପଣ୍ଡ ହୋଇଥିଲା ଉପନିବେଶବାଦୀଙ୍କର । ଭାରତ ସ୍ୱାଧୀନ ହେବ, ଏହାର ନେତୃତ୍ୱ ନେବେ ଭାରତୀୟ, କ୍ରୀତଦାସ ଭାବରେ ଜୀବନଯାପନ କରିବାକୁ ପଡ଼ିବ ନାହିଁ, ଇଂରେଜମାନଙ୍କ ଦ୍ୱାରା ଆଉ ଅତ୍ୟାଚାରିତ ଓ ନିର୍ଯାତୀତ ହେବାକୁ ହେବ ନାହିଁ; କ୍ଷୀର ଓ ମହୁରେ ଦେଶ ଭାସିବ, କାୟ, ମନ ଏବଂ ବାକ୍ୟରେ ଆମେ ହେବୁ ସ୍ୱାଧୀନ—ଏହାହିଁ ଥିଲା ସେଦିନ ସ୍ୱାଧୀନତା ସଂଗ୍ରାମୀଙ୍କ ଭାରତର ସ୍ୱାଧୀନତାର ସ୍ୱପ୍ନ । ଜେଲ୍, ବେତ ଓ ଚାବୁକ୍ ମାଡ଼, ବୁଲେଟ୍ ଆକ୍ରମଣ—ସବୁକୁ ବେଖାତିର କରି ଏ ଦେଶର ବରପୁତ୍ରଗଣ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । ସେହିମାନଙ୍କର ସାଧନା ଯୋଗୁଁ ଭାରତ ସ୍ୱାଧୀନ ହେଲା । ନୂତନ ଆକାଶର ସ୍ୱପ୍ନ ଦେଖୁଥିବା ଏହି କରିତ୍‌କର୍ମା ସାଧକମାନଙ୍କର ସ୍ୱପ୍ନ ମଧ ସାର୍ଥକ ହେଲା । ମାତ୍ର ସ୍ୱାଧୀନତାର ସ୍ୱପ୍ନ ବ୍ୟତୀତ ସେମାନଙ୍କର ଅନ୍ୟ ସମସ୍ତ ସ୍ୱପ୍ନ, କେବଳ ସ୍ୱପ୍ନ ଭାବରେ ରହିଯାଇଛି । ରଙ୍ଗ ଓ ଜାତିର ପରିବର୍ତ୍ତନ ହୋଇଛି କେବଳ । ମାନସିକତାର ପରିବର୍ତ୍ତନ ଏଯାବତ୍ ହୋଇପାରି ନାହିଁ । ସେଥିପାଇଁ କେତେଜଣ ସଚେତନ ବ୍ୟକ୍ତି ଏବେ ମଧ କ୍ଷୋଭପ୍ରକାଶ କରନ୍ତି, ଏହି ସ୍ୱାଧୀନତାକୁ କ'ଣ ଆମେ କିମ୍ୱା ଆମର ପୂର୍ବପୁରୁଷ ସ୍ୱପ୍ନରେ ଦେଖିଥିଲେ ? ତଥାପି ଆମେ ସ୍ୱାଧୀନ—ଏହାହିଁ କେବଳ ଆମର ସାନ୍ତ୍ୱନା ।

ଆଜି ଭାରତ ସ୍ୱାଧୀନତାପ୍ରାପ୍ତି ପୂର୍ତ୍ତିର ପଚାଶବର୍ଷ ପାଳନ କରିସାରିଛି । ଗୋଟିଏ ଜାତି ପକ୍ଷରେ ଏହି ପଚାଶବର୍ଷର ଇତିହାସ କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ । ଆଜିର ଭାରତକୁ ଦେଖିଲେ ଆଖି ଆଗରେ ଭାସିଉଠେ ସେଦିନର ସେହି ପରାଧୀନ ଭାରତର ଶେଷଦିନଟି । ମଧ୍ୟରାତ୍ରିରେ ଭାରତ ସ୍ୱାଧୀନତା ଲାଭକଲା । ୟୁନିୟନ୍ ଜ୍ୟାକ୍ ପରିବର୍ତ୍ତେ ଉଡ଼ିଲା ତ୍ରିରଙ୍ଗ ପତାକା । ପାର୍ଲାମେଣ୍ଟର କେନ୍ଦ୍ରୀୟ ହଲ୍‌ରେ ଭାଇସ୍‌ରାୟଙ୍କ କାର୍ଯ୍ୟକାରିଣୀ ପରିଷଦର ଉପସଭାପତି ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ରୂପେ ଶପଥ ଗ୍ରହଣ କଲେ ପଣ୍ଡିତ ଜବାହରଲାଲ ନେହେରୁ । ସେଦିନ ପାର୍ଲାମେଣ୍ଟର କେନ୍ଦ୍ରୀୟ ହଲ୍ 'ମହାତ୍ମା ଗାନ୍ଧି କି ଜୟ, ନେହେରୁ କି ଜୟ, ମାଉଣ୍ଟ ବ୍ୟାଟେନ୍ କି ଜୟ' ନାଦରେ ମୁଖରିତ ହୋଇଉଠିଥିଲା । ଭାଇସ୍‌ରାୟ ମାଉଣ୍ଟ ବ୍ୟାଟେନ୍ ହୋଇଥିଲେ ସ୍ୱାଧୀନ ଭାରତର ପ୍ରଥମ ଗଭର୍ଣ୍ଣର ଜେନେରାଲ । ସ୍ୱାଧୀନତାପ୍ରାପ୍ତି ମୁହୂର୍ତ୍ତରେ ଜବାହରଲାଲ ନେହେରୁ ପ୍ରଦାନ କରିଥିଲେ ତାଙ୍କର ପ୍ରଖ୍ୟାତ ଭାଷଣ ''ଟ୍ରାଏଷ୍ଟ ଉଇଥ୍ ଡ଼େଷ୍ଟନୀ'' । ସୁଚେତା କୃପାଳିନୀଙ୍କ କଣ୍ଠରୁ ଭାସିଆସିଥିଲା 'ବନ୍ଦେ ମାତରମ୍' ଧ୍ୱନି । ରାଜେନ୍ଦ୍ରପ୍ରସାଦଙ୍କ ସଂକ୍ଷିପ୍ତ ଅଭିଭାଷଣ ପରେ ପଣ୍ଡିତ ନେହେରୁ କହିଥିଲେ, ''× × ଭାରତରୁ ବିଦେଶୀ ଶାସନ ହଟିଯିବା ବଡ଼କଥା ନୁହେଁ, ଯଦି ସମସ୍ତ ଭାରତୀୟ ସ୍ୱାଧୀନତାର ପ୍ରକୃତ ଆନନ୍ଦକୁ ଉପଭୋଗ ନ କରନ୍ତି, ତା'ର ଦୁଃଖ ଦୁର୍ଦ୍ଦଶାର ଅନ୍ତ ନ ହୁଏ, ସେ ନିଜର ବିକାଶପଥରେ ଅଗ୍ରଗତି ନ କରେ, ତେବେ ଆମର ଏହି କାର୍ଯ୍ୟ ପୂର୍ଣ୍ଣ ହୋଇଛି ବୋଲି କଦାପି କୁହାଯାଇ ପାରିବ ନାହିଁ ।'' ଆଜି ସୁବର୍ଣ୍ଣଜୟନ୍ତୀ ଅବକାଶରେ ପଣ୍ଡିତ ନେହେରୁଙ୍କର ସେଦିନର ଐତିହାସିକ ଭାଷଣକୁ ସ୍ମରଣ କଲେ ଆମେ ଲଜ୍ଜିତ ହେବା ସ୍ୱାଭାବିକ । ଭାରତ ସ୍ୱାଧୀନ ହୋଇଛି; କିନ୍ତୁ ବିଶ୍ୱବ୍ୟାଙ୍କର ଋଣଭାରରେ ପରାଧୀନ । ବିକାଶ ଉଦ୍ଦେଶ୍ୟରେ ଆସୁଥିବା ଅର୍ଥ ସାମୂହିକ କାର୍ଯ୍ୟରେ ଖର୍ଚ୍ଚ ନ ହୋଇ, ବ୍ୟକ୍ତିବିଶେଷଙ୍କ ସ୍ୱାର୍ଥ

ଉଦ୍ଦେଶ୍ୟରେ ବ୍ୟୟିତ ହେଉଛି । ଦରିଦ୍ର ସଂଖ୍ୟା ବଢ଼ି ବଢ଼ି ଚାଲିଛି । ପ୍ରତି ମୁହୂର୍ତ୍ତରେ ଏକ ସ୍ୱପ୍ନଭଙ୍ଗ ମଧ୍ୟଦେଇ ଆମେ ଗତିକରୁଛୁ । ପ୍ରାୟ ସତୁରି ଦଶକ ପରେ ଆମର ନୈତିକ ମୂଲ୍ୟବୋଧରେ ସଙ୍କଟ ଦେଖାଦେଇଛି । ଏବେ ନୈତିକତା ଉପରେ କେହି ଗୁରୁତ୍ୱ ଦେଉନାହାନ୍ତି । ଭାରତର ସାମୂହିକ ଉନ୍ନତି ନିମିତ୍ତ କେହି ସଚେତନ ନୁହନ୍ତି । ଜାତିର ଦୁର୍ଦ୍ଦଶା ଦେଖି ଯେଉଁ ମହାତ୍ମାଗାନ୍ଧି କାନ୍ଦି ପକାଉଥିଲେ, ଆଜି ରାଜନୀତିକ ନେତାଗଣ ସେହି ଜାତିକୁ ଶୋଷଣ କରି ପୈଶାଚିକ ଆନନ୍ଦ ଲାଭ କରୁଛନ୍ତି । ଆଜିର ରାଜନୀତି ଏକ ସଫଳ ବ୍ୟବସାୟରେ ପରିଣତ ହୋଇଛି । ଭବିଷ୍ୟତର ନାଗରିକ ଆଜିର ଶିଶୁ ମୃତ୍ୟୁ ଯନ୍ତ୍ରଣାରେ ଚିତ୍କାର କରୁଛି । ଅଖାଦ୍ୟ ବା ଖାଦ୍ୟାଭାବରେ ବହୁ ଗରିବ ଅସହାୟ ଆର୍ତ୍ତଚିତ୍କାର ଛାଡୁଛନ୍ତି । ସ୍ୱାଧୀନତା ସମୟର ସମସ୍ତ ଶପଥ ସମ୍ବିଧାନର ପୃଷ୍ଠା ମଧ୍ୟରେ ଆତ୍ମଗୋପନ କରିଛି । ପ୍ରଶାସନିକ ସ୍ଥାଣୁତା ସୀମାସ୍ପର୍ଶ କରିଯାଇଛି । ରାଜନୀତିରେ ଅପରାଧୀକରଣ ଆଜି ଏକ ସମସ୍ୟା ନ ହୋଇ ଉପାଦାନ ରୂପେ ଗୃହୀତ ହୋଇଛି । ପଚାଶବର୍ଷ ପୂର୍ବେ ମହିଳାମାନଙ୍କ ତରଫରୁ ଜାତୀୟ ପତାକା ହଂସ ମେହେଟ୍ଟା ଡ଼କ୍ଟର ରାଜେନ୍ଦ୍ରପ୍ରସାଦଙ୍କୁ ଅର୍ପଣ କରିଥିଲେ । ଭାରତରେ ନାରୀଙ୍କର ମହତ୍ତ୍ୱ ପ୍ରତିପାଦନ ଓ ପୁରୁଷ ସହିତ ନାରୀଙ୍କର ସମଅଧିକାର ଥିଲା ଏହାର ବିଶେଷତ୍ୱ । ମାତ୍ର ପଚାଶ ବର୍ଷ ପରେ ମଧ୍ୟ ଭାରତରେ ନାରୀ ସେମାନଙ୍କର ଯଥାର୍ଥ ଅଧିକାର ପାଇନାହାନ୍ତି । କେଉଁଠାରେ ନାରୀ ଭୋଗବିଳାସର ପ୍ରତୀକ ଭାବରେ ତ ଅନ୍ୟ କେଉଁଠାରେ ନିର୍ଯାତନାର ପ୍ରତୀକ ଭାବରେ ଗୃହୀତ ହୋଇଛନ୍ତି । ଆଦର୍ଶ, ନୈତିକତା ଓ ନିଷ୍ଠା ପରିବର୍ତ୍ତେ ଶୋଷଣ, ଭଣ୍ଡାମି ଏବଂ ସ୍ୱାର୍ଥ ଆଜି ରାଜନୀତିର ମୁଖ୍ୟ ଉପଜୀବ୍ୟ ହୋଇଛି । ଦୁର୍ନୀତିର ଚେର ଗଭୀରରୁ ଗଭୀରତାକୁ ପ୍ରବେଶ କରୁଛି । ସବୁ କ୍ଷେତ୍ରରେ ଏକ ଅସହାୟତାବୋଧ ଭାରତୀୟ ଜନମାନସକୁ ଆକ୍ରାନ୍ତ କରିଛି । ସୁବର୍ଣ୍ଣଜୟନ୍ତୀରେ ବିବର୍ଣ୍ଣ ଭାରତର କଥା ଚିନ୍ତାକଲେ ଦୁଃଖ ଯେତିକି ନ ଲାଗେ, ତା'ଠାରୁ ଅଧିକ ଲାଗେ ଲଜ୍ଜା ।

ସୁବର୍ଣ୍ଣଜୟନ୍ତୀ ଅବକାଶରେ ସଂସଦର ସ୍ୱତନ୍ତ୍ର ଅଧିବେଶନ ଆହୂତ ହୋଇଥିଲା । ସବୁ ସ୍ତରରେ ଏହାର ପାଳନ ନିମିତ୍ତ ଆବେଗପୂର୍ଣ୍ଣ ଆହ୍ୱାନ ଦିଆଯାଇଥିଲା । ମଧ୍ୟରାତ୍ରରେ ରାଷ୍ଟ୍ରପତି ଶୋଭାଯାତ୍ରାରେ ପାର୍ଲାମେଣ୍ଟରେ ପ୍ରବେଶ କରିଥିଲେ । ୧୨ଟା ୧ ମିନିଟ୍‌ରେ ଜାତୀୟ ସଙ୍ଗୀତ ଗାନ କରାଯାଇଥିଲା । ଭୀମସେନ ଯୋଷୀ 'ବନ୍ଦେ ମାତରମ୍' ଏବଂ ଲତା ମଙ୍ଗେସ୍‌କର 'ସାରେ ଯହାଁ ସେ ଆଚ୍ଛା' ଗାନ କରିଥିଲେ । ଦୂରଦର୍ଶନ, ବେତାର ତଥା ବିଭିନ୍ନ ଗଣମାଧ୍ୟମ ଦ୍ୱାରା ଭାରତୀୟ ଜନତାଙ୍କୁ ବିଭିନ୍ନ ଭାବରେ ସୁବର୍ଣ୍ଣଜୟନ୍ତୀ ସମ୍ପର୍କରେ ଅବଗତ କରାଇବା ନିମିତ୍ତ ଉଦ୍ୟମ ହୋଇଛି । ସୁବର୍ଣ୍ଣଜୟନ୍ତୀ ଉପଲକ୍ଷେ କେନ୍ଦ୍ର ସରକାର ୨୫୦କୋଟି ଟଙ୍କା ଖର୍ଚ୍ଚ କରିବେ ବୋଲି ଅଟକଳ ହୋଇଥିଲା । ବିଭିନ୍ନ ସାଂସ୍କୃତିକ ତଥା ଅନ୍ୟାନ୍ୟ କାର୍ଯ୍ୟକ୍ରମରେ କୋଟି କୋଟି ଟଙ୍କା ବ୍ୟୟ କରାଯାଇଛି । ସ୍ୱତନ୍ତ୍ର ଅଧିବେଶନରେ ଭାରତର ବିଭିନ୍ନ ସମସ୍ୟା ସମ୍ପର୍କରେ ଆଲୋଚନା କରାଯିବା ସଙ୍ଗେ ସଙ୍ଗେ ସମାଧାନ ନିମିତ୍ତ ଆଲୋଚନା ହୋଇଛି । ବିଚ୍ଛିନ୍ନତାବାଦର ଦୂରୀକରଣ, ଆର୍ଥିକ ସ୍ୱଚ୍ଛଳତା, ନାଗରିକର ଦାୟିତ୍ୱବୋଧ, ନିରାପତ୍ତା ବ୍ୟବସ୍ଥା, ପ୍ରତିରକ୍ଷା, ସନ୍ତ୍ରାସବାଦୀ କାର୍ଯ୍ୟକଳାପ, ସ୍ୱାବଲମ୍ବନଶୀଳତା, ରାଜନୈତିକ ଅପରାଧୀକରଣ, ଦୁର୍ନୀତି, ଶିକ୍ଷୀକରଣ ଆଦି

ବହୁ ବିଷୟରେ ଆଲୋଚନା କରାଯାଇ ଏହାର ନିଦାନ ସମ୍ବନ୍ଧରେ କେତେକ ପଦକ୍ଷେପ ନେବାକୁ ସ୍ଥିରୀକୃତ ହୋଇଛି । ଏହା କେତେ ପରିମାଣରେ ଫଳବତୀ ହେବ, ତାହା କେବଳ ଭବିଷ୍ୟତ ହିଁ କହିବ । ବୈଜ୍ଞାନିକ ଗବେଷଣା ଉପରେ ଗୁରୁତ୍ୱ ପ୍ରଦାନ କରାଯାଇ ଦେଶର ସାମୂହିକ ସ୍ୱାର୍ଥକୁ ଅଗ୍ରାଧିକାର ଦିଆଯିବ ବୋଲି ପ୍ରସ୍ତାବ ଗୃହୀତ ହୋଇଛି । ସୁଖର ବିଷୟ ଆମର ସାଂସଦ ସମସ୍ୟା ସମ୍ପର୍କରେ ସମ୍ପୂର୍ଣ୍ଣ ସଚେତନ । ଦୁଃଖର ବିଷୟ ସେହି ସମସ୍ୟାର ସମାଧାନ ନିମିତ୍ତ ସେମାନଙ୍କର ଯଥାର୍ଥ ମନୋବୃତ୍ତିର ଅଭାବ । ଗାନ୍ଧିଜୀଙ୍କ ଦୃଷ୍ଟିକୋଣ ଓ ବିଚାରଧାରା ଉପରେ ଆଲୋଚନା କରାଯାଇଥିଲେ ହେଁ ତା'ର କାର୍ଯ୍ୟକାରିତା ପାଇଁ ଉଲ୍ଲେଖଯୋଗ୍ୟ ପଦକ୍ଷେପ ଗ୍ରହଣ କରାଯାଇଥିବା ପରି ମନେହୁଏ ନାହିଁ । ବେକାରୀ ସମସ୍ୟା, ଦାରିଦ୍ର୍ୟ, ଆର୍ଥିକ ସମସ୍ୟା, ବିଭିନ୍ନ ଋଣ, ଟଙ୍କାର ମୂଲ୍ୟହ୍ରାସ, ଦରଦାମ୍ ବୃଦ୍ଧି ଆଦି ବିଷୟରେ ଉଦ୍‌ବେଗ ପ୍ରକାଶ କରାଯାଇଛି । ମାତ୍ର ଏହି ସମସ୍ୟାର ଦୂରୀକରଣ ନିମିତ୍ତ ଆଖିଦୃଶିଆ ପଦକ୍ଷେପ ନିଆଯାଇ ପାରି ନାହିଁ । ମାନବସମ୍ବଳର ଉପଯୁକ୍ତ ବିନିଯୋଗ ନିମିତ୍ତ କୌଣସି ଦୃଢ଼ ନିଷ୍ପତ୍ତି ନାହିଁ । ଆନ୍ତର୍ଜାତିକ ସ୍ତରରେ ଭାରତର ସ୍ଥିତିକୁ ଜାହିର ନିମିତ୍ତ ଉଦ୍ୟମ ନାହିଁ । ସ୍ୱାଧୀନତାର ସୁବର୍ଣ୍ଣଜୟନ୍ତୀ ଅବକାଶରେ ବହୁ ସ୍ୱାଧୀନତା ସଂଗ୍ରାମୀଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଛି, ଏହା ନିଶ୍ଚିତଭାବେ ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ । ଯେଉଁ ଉଦ୍ଦେଶ୍ୟ ସାଧନ ଉଦ୍ଦେଶ୍ୟରେ ଏହି ସ୍ୱତନ୍ତ୍ର ଅଧିବେଶନର ଆହ୍ୱାନ, ବାସ୍ତବରେ ଯଦି ତାହା କାର୍ଯ୍ୟକାରୀ ହୋଇପାରେ ଏବଂ ପ୍ରତ୍ୟେକ ସାଂସଦ ଆତ୍ମସମୀକ୍ଷା କରି ସମଗ୍ର ଭାରତର ସାମୂହିକ ଉନ୍ନତି ନିମିତ୍ତ ଶପଥ ନେଇଥାନ୍ତି, ତେବେ ଉକ୍ତ ସ୍ୱତନ୍ତ୍ର ଅଧିବେଶନର କିଛି ମହତ୍ତ୍ୱ ରହିଛି ବୋଲି ସ୍ୱୀକାର କରିବାକୁ ହେବ । ନଚେତ୍ କୋଟି କୋଟି ଟଙ୍କା ଅପବ୍ୟୟ କରି କେନ୍ଦ୍ର ସରକାର ଯେଉଁ ଆଡ଼ମ୍ବରପୂର୍ଣ୍ଣ ସୁବର୍ଣ୍ଣଜୟନ୍ତୀ ପାଳନ କଲେ, ଗରିବ ଭାରତୀୟଙ୍କ ମୁଣ୍ଡ ଉପରେ ଆଉ କେତେ କୋଟି ଟଙ୍କାର ଋଣ ଯେ ଲଦିଦେଲେ, କହିବା ଆଦୌ ଭୁଲ ହେବ ନାହିଁ ।

ପଚାଶ ବର୍ଷର ସ୍ୱାଧୀନ ଭାରତ; ଜାତି ଇତିହାସରେ ୫୦ ଟି ଅଲିଭା ଗାର । ଅର୍ଦ୍ଧଶତାବ୍ଦୀ ସ୍ୱାଧୀନତାର ଗରିମାମୟ ଇତିହାସରେ ଆମେ ହରାଇଛୁ ଅନେକ ଓ ପାଇଛୁ ମଧ୍ୟ ଅନେକ । ସେହି ଅତୀତର କେତୋଟି ମଧୁର ଓ ତିକ୍ତ ସ୍ମୃତିରୁ ଚେନାଏ ଏଠାରେ ଆଲୋଚନା କରାଯାଇପାରେ । ୧୯୪୭ ଅଗଷ୍ଟ ୧୫ରେ ଭାରତର ସ୍ୱାଧୀନତା ଲାଭ ଓ ପଣ୍ଡିତ ନେହେରୁ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ । ୧୯୪୮ ଜାନୁଆରୀ ୩୦ ତାରିଖରେ ନାଥୁରାମ ଗଡ଼ସେଙ୍କ ଦ୍ୱାରା ମହାତ୍ମାଗାନ୍ଧିଙ୍କର ନିଧନ । ୧୯୫୦ ମସିହା ଜାନୁଆରୀ ୨୬ ରେ ଭାରତର ନୂତନ ସମ୍ବିଧାନ ଗ୍ରହଣ ଏବଂ ଏକ ସାଧାରଣତନ୍ତ୍ର ରାଷ୍ଟ୍ରରୂପେ ସ୍ୱୀକୃତ । ମାର୍ଚ୍ଚ ମାସରେ ପାଞ୍ଚବର୍ଷିଆ ଯୋଜନା ଖସଡ଼ା ପ୍ରସ୍ତୁତ । ୧୯୫୧-୫୨ ଅକ୍ଟୋବର ୨୫ ଏବଂ ଫେବୃଆରୀ ୨୧ ରେ ପ୍ରଥମ ସାଧାରଣ ନିର୍ବାଚନରେ କଂଗ୍ରେସର ସଂଖ୍ୟାଗରିଷ୍ଠତା ଲାଭ । ୧୯୫୪ ମସିହାରେ ପଞ୍ଚଶୀଳ ନୀତି ଉପରେ ଚୀନ୍ ଏବଂ ଭାରତର ଚୁକ୍ତି ସ୍ୱାକ୍ଷର । ୧୯୫୬ ମସିହାରେ ସରକାରୀ ଉଦ୍ୟୋଗରେ ପୁଞ୍ଜି ବିନିଯୋଗ କରି ଭାରି ଯନ୍ତ୍ରପାତି ତଥା ଇସ୍ପାତର ଉତ୍ପାଦନ ନିମିତ୍ତ ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନାର ବିଚାର । ୧୯୫୭ ଫେବୃଆରୀ ୨୪ ଏବଂ ଜୁନ୍ ୯ ର ଦ୍ୱିତୀୟ ସାଧାରଣ ନିର୍ବାଚନରେ କଂଗ୍ରେସର

ସଂଖ୍ୟାଗରିଷ୍ଠତା ଲାଭ । ୧୯୫୯ ଅକ୍ଟୋବରରେ ଅକ୍‌ସାଇ ଚୀନ୍ ଅଞ୍ଚଳରେ ଭାରତ ଏବଂ ଚୀନ୍ ସୈନ୍ୟଙ୍କ ମଧ୍ୟରେ ମୁହାଁମୁହିଁ ଓ ଯୁଦ୍ଧ । ୧୯୬୨ ତୃତୀୟ ସାଧାରଣ ନିର୍ବାଚନରେ କଂଗ୍ରେସର ସଂଖ୍ୟା ଗରିଷ୍ଠତା ଲାଭ, ସୀମାନ୍ତ ଯୁଦ୍ଧରେ ଚୀନଠାରୁ ଭାରତର ପରାଜୟ । ୧୯୬୪ ମେ ୨୭ ତାରିଖରେ ନେହେରୁଙ୍କର ପରଲୋକ ଗମନ । ଜୁନ୍ ୯ ତାରିଖରେ ପ୍ରଧାନମନ୍ତ୍ରୀ ରୂପେ ଲାଲ୍ ବାହାଦୁର ଶାସ୍ତ୍ରୀଙ୍କର ଅଧିଷ୍ଠାନ । ୧୯୬୫ ସେପ୍‌ଟେମ୍ବର ୧ ତାରିଖରେ କାଶ୍ମୀର ଅଧିକାର ନିମିତ୍ତ ପାକିସ୍ଥାନର ଆକ୍ରମଣ, ଭାରତର ବିଜୟ ଲାଭ । ୧୯୬୬ ଜାନୁଆରୀ ୪ ତାରିଖରୁ ୧୦ ତାରିଖ ମଧ୍ୟରେ ପାକିସ୍ଥାନର ନେତା ଆୟୁବ୍ ଖାଁ, ଶାସ୍ତ୍ରୀ ଏବଂ କୋସିଜିନ୍‌ଙ୍କ ମଧ୍ୟରେ ତାସ୍‌କେଣ୍ଟ ସମ୍ମିଳନୀ, ଜାନୁଆରୀ ୧୦ ତାରିଖରେ ଚୁକ୍ତି ସ୍ୱାକ୍ଷରିତ, ୧୧ ତାରିଖରେ ଶାସ୍ତ୍ରୀଙ୍କର ପରଲୋକ, ୧୯୬୬ ଜାନୁଆରୀ ୨୪ ତାରିଖରେ ଇନ୍ଦିରାଗାନ୍ଧୀଙ୍କ ପ୍ରଧାନମନ୍ତ୍ରୀତ୍ୱ । ୧୯୬୭ ଫେବୃଆରୀ ୧୫ ରୁ ୨୮ ମଧ୍ୟରେ ଚତୁର୍ଥ ସାଧାରଣ ନିର୍ବାଚନ ଓ କଂଗ୍ରେସର ସଂଖ୍ୟାଗରିଷ୍ଠତା । ୧୯୬୯ ଜୁଲାଇ ୧୯ ତାରିଖରେ ୧୪ ଟି ବ୍ୟାଙ୍କ୍‌ର ଜାତୀୟକରଣ । ୧୯୭୧ ମାର୍ଚ୍ଚ ୧ ରୁ ୧୩ ତାରିଖ ମଧ୍ୟରେ ପଞ୍ଚମ ସାଧାରଣ ନିର୍ବାଚନ, କଂଗ୍ରେସର ସଂଖ୍ୟାଗରିଷ୍ଠତା । ଡ଼ିସେମ୍ବରରେ ପୂର୍ବ ପାକିସ୍ଥାନ୍‌ରେ ଭାରତୀୟ ସାମରିକ ବାହିନୀର ହସ୍ତକ୍ଷେପ, ପାକିସ୍ଥାନୀ ସୈନ୍ୟଙ୍କ ଆତ୍ମସମର୍ପଣ । ୧୯୭୪ ମେ ୧୮ ତାରିଖରେ ରାଜସ୍ଥାନର ପୋଖରାନ୍ ମରୁଭୂମିରେ ଭାରତର ନିଉକ୍ଲିୟର ବିସ୍ଫୋରଣ । ୧୯୭୫ ଜୁନ୍ ୨୬ ତାରିଖରେ ଜରୁରୀ ପରିସ୍ଥିତି ଘୋଷଣା, ବହୁ ଜାତୀୟସ୍ତରର ନେତାଙ୍କୁ ଗିରଫ । ୧୯୭୭ ମାର୍ଚ୍ଚ ୧୬ ରୁ ୨୦ ଷଷ୍ଠ ସାଧାରଣ ନିର୍ବାଚନ, ଜନତାପାର୍ଟିର ସଂଖ୍ୟାଗରିଷ୍ଠତା ଲାଭ । ମୋରାର୍‌ଜୀ ଦେଶାଇଙ୍କ ନେତୃତ୍ୱରେ ଅଣକଂଗ୍ରେସୀ ସରକାର ଗଠନ । ୧୯୭୯ରେ ମୋରାର୍‌ଜୀଙ୍କ ଇସ୍ତଫା, ଜନତାଦଳରେ ବିଭାଜନ, ଚରଣସିଂହଙ୍କ ପ୍ରଧାନମନ୍ତ୍ରୀତ୍ୱ ଓ ସପ୍ତାହ ମଧ୍ୟରେ ଇସ୍ତଫା ତଥା ରାଷ୍ଟ୍ରପତିଙ୍କ ନିର୍ବାଚନ ଘୋଷଣା । ୧୯୮୦ ଜାନୁଆରୀ ୩ ରୁ ୬ ମଧ୍ୟରେ ସପ୍ତମ ସାଧାରଣ ନିର୍ବାଚନ, କଂଗ୍ରେସର ସଂଖ୍ୟାଗରିଷ୍ଠତା । ଜାନୁଆରୀ ୧୪ ରେ ଇନ୍ଦିରାଗାନ୍ଧୀ ପୁନଃ ପ୍ରଧାନମନ୍ତ୍ରୀ । ୧୯୮୩ ମସିହାରେ କପିଳଦେବଙ୍କ ଅଧିନାୟକତ୍ୱରେ ଭାରତ ବିଶ୍ୱକପ୍ କ୍ରିକେଟ୍ ବିଜେତା । ୧୯୮୪ ଅକ୍ଟୋବର ୩୧ ତାରିଖରେ ଦେହରକ୍ଷୀଙ୍କ ଦ୍ୱାରା ଇନ୍ଦିରାଗାନ୍ଧୀ ନିହତ । ରାଜୀବ ଗାନ୍ଧିଙ୍କ ଜୁଲାଇ ମାସରେ ପ୍ରଧାନମନ୍ତ୍ରୀ ରୂପେ ଶପଥ ଗ୍ରହଣ । ଡ଼ିସେମ୍ବର ୨୪ ରୁ ୨୮ ଅଷ୍ଟମ ସାଧାରଣ ନିର୍ବାଚନରେ କଂଗ୍ରେସର ସଂଖ୍ୟାଗରିଷ୍ଠତା ଲାଭ, ରାଜୀବଗାନ୍ଧି ପ୍ରଧାନମନ୍ତ୍ରୀ । ୧୯୮୫ ରେ ରାଜୀବଗାନ୍ଧିଙ୍କ ଦ୍ୱାରା ଅର୍ଥନୈତିକ ସଂସ୍କାର କାର୍ଯ୍ୟକ୍ରମ ପ୍ରଚଳନ, ଡ଼ିସେମ୍ବରରେ ଢ଼ାକାଠାରେ ଦକ୍ଷିଣ ଏସୀୟ ଆଞ୍ଚଳିକ ସହଯୋଗ ସଂଘ ଉଦ୍‌ଘାଟନ । ୧୯୮୭ ଜାନୁଆରୀ ମାସରେ ରାଜୀବଗାନ୍ଧିଙ୍କ ବିରୋଧରେ ବୋଫର୍ସ ଜାଲିଆତି ଅଭିଯୋଗ । ୧୯୮୯ ନଭେମ୍ବର ୨୨ ରୁ ୨୬ ନବମ ସାଧାରଣ ନିର୍ବାଚନ । ଡ଼ିସେମ୍ବର ୨ ରେ ଜନତାଦଳର ଭି.ପି.ସିଂହଙ୍କ ପ୍ରଧାନମନ୍ତ୍ରୀତ୍ୱରେ ସଂଖ୍ୟାଲଘୁ ସରକାର ଗଠନ । ୧୯୯୦ ରେ ମଣ୍ଡଳ କମିଶନଙ୍କ ସୁପାରିସକୁ କାର୍ଯ୍ୟକାରୀ କରିବାକୁ ଭି.ପି.ସିଂହଙ୍କ ଘୋଷଣା, ନଭେମ୍ବର ୨୦ ରେ ବି.ଜେ.ପି.ର ସମର୍ଥନ ପ୍ରତ୍ୟାହାର,ଚନ୍ଦ୍ରଶେଖର ସଂଖ୍ୟାଲଘୁ ସରକାରର ପ୍ରଧାନମନ୍ତ୍ରୀ । ୧୯୯୧ ମାର୍ଚ୍ଚ ୬

ତାରିଖରେ କେନ୍ଦ୍ର ସରକାର ପତନ, ମେ ୨୧ ରେ ରାଜୀବ ଗାନ୍ଧିଙ୍କ ନିଧନ, ମେ ୨୦ ରୁ ଜୁନ୍ ୧୫ ଦଶମ ସାଧାରଣ ନିର୍ବାଚନ, ପି.ଭି. ନରସିଂହ ରାଓ ପ୍ରଧାନମନ୍ତ୍ରୀ । ୧୯୯୬ ଏକାଦଶ ସାଧାରଣ ନିର୍ବାଚନ । ୧୯୫ଟି ଆସନ ଲାଭ କରିଥିବା ବି.ଜେ.ପି. ନେତା ଅଟଳ ବିହାରୀ ବାଜପେୟୀଙ୍କ ୧୩ ଦିନିଆ ପ୍ରଧାନମନ୍ତ୍ରିତ୍ୱ, ସଂଯୁକ୍ତ ମୋର୍ଚ୍ଚାର ନେତାରୂପେ ଏଚ.ଡ଼ି. ଦେଓ୍ୱେଗୌଡ଼ାଙ୍କୁ ମନୋନୀତ ଓ ପ୍ରଧାନମନ୍ତ୍ରୀ ପଦ ଗ୍ରହଣ । ୧୯୯୭ ମାର୍ଚ୍ଚ ୩୦ ରେ କଂଗ୍ରେସର ସମର୍ଥନ ପ୍ରତ୍ୟାହାର । ଅପ୍ରେଲ ୨୧ ରେ ବୈଦେଶିକ ମନ୍ତ୍ରୀ ଆଇ.କେ. ଗୁଜରାଲ କଂଗ୍ରେସ ସମର୍ଥନରେ ପ୍ରଧାନମନ୍ତ୍ରୀ, କଂଗ୍ରେସର ପୁନରାୟ ସମର୍ଥନ ପ୍ରତ୍ୟାହାର, ୧୯୯୮ ଫେବୃୟାରୀ ମାସରେ ଦ୍ୱାଦଶ ଲୋକସଭା ନିର୍ବାଚନ । ସମୟର ଆଇନାରେ ଏହି ପଚାଶ ବର୍ଷ ମଧ୍ୟରେ ଭାରତ ବହୁ ଉତ୍‌ଥାନ ପତନ ମଧ୍ୟ ଦେଇ ଗତି କରିଛି । ଏହା ଭିତରେ ଆମେ ଲାଭ କରିଛୁ କମ୍; କିନ୍ତୁ ହରାଇଛୁ ଅନେକ । ତଥାପି ସ୍ୱାଧୀନତାର ସୁବର୍ଣ୍ଣଜୟନ୍ତୀରେ ପ୍ରକୃତ ସଦ୍‌ବୁଦ୍ଧି ହୋଇଛି ବୋଲି ମନେହୁଏ ନାହିଁ ।

ଭାରତରେ ସ୍ୱାଧୀନତାର ସୁବର୍ଣ୍ଣଜୟନ୍ତୀ ପାଳନ ଅବକାଶରେ ବିବର୍ଣ୍ଣ ଭାରତର ଏକ ସ୍ୱରୂପ ଆମ ଆଖିରେ ଉଦ୍‌ଭାସିତ ହୋଇଉଠେ । ଗାନ୍ଧିଜୀ ସ୍ୱାଧୀନତାର ଅର୍ଥ ବୁଝିଥିଲେ ସ୍ୱରାଜ୍ୟ । ସ୍ୱରାଜ୍ୟର ଅର୍ଥ ସମ୍ପର୍କରେ ମହାତ୍ମାଗାନ୍ଧି କହିଥିଲେ – " I claim to live for the semi-starved Paupers of India and Purna Swaraj means the emancipation of these millions of skeletons." Purna Swaraj denotes a condition of things when the domb and lame millions will speak and walk. That Swaraj cannot achieved by force but by organisation and unity." ସ୍ୱରାଜ୍ୟର ଅର୍ଥ ତାଙ୍କ ମତରେ କୋଟି କୋଟି ଅସ୍ଥି କଙ୍କାଳସାର ଜନତାଙ୍କର ମୁକ୍ତି । ସେ ପୂର୍ଣ୍ଣ ସ୍ୱରାଜ୍ୟର ଅର୍ଥ ମୂକ ଓ ଚଳତ୍-ଶକ୍ତିହୀନ ବ୍ୟକ୍ତିର କଥା କହିପାରିବାର ଏବଂ ଚାଲିବାର ଶକ୍ତିକୁ ବୁଝିଛନ୍ତି । ସେ ସ୍ୱରାଜ୍ୟକୁ ପାଶବିକ ଶକ୍ତି ବଳରେ ଲାଭ କରାଯାଇପାରେ ନାହିଁ ବୋଲି ମତବ୍ୟକ୍ତ କରିଛନ୍ତି । ଏକତା ଓ ସଂଗଠନ ଦ୍ୱାରା ଏହା ଲାଭ ହୋଇଥାଏ ବୋଲି କହିଛନ୍ତି । ଗାନ୍ଧିଜୀଙ୍କ ସ୍ୱରାଜ୍ୟ ବା ସ୍ୱାଧୀନତାର ଅର୍ଥ ବର୍ତ୍ତମାନ ଭାରତରେ କିପରି ବିଡ଼ମ୍ବିତ ହୋଇପଡ଼ିଛି, ସାଂପ୍ରତିକ ସ୍ଥିତିକୁ ଅନୁଶୀଳନ କଲେ ସ୍ପଷ୍ଟ ହୋଇଥାଏ । ଆଜି ଲୋଭ, କ୍ଷମତା, ଦୁର୍ନୀତି, କପଟତା, ଅହଂ, ସ୍ୱାର୍ଥ ହୋଇଛି ସ୍ୱାଧୀନୋତ୍ତର ଭାରତର ରାଜନୈତିକ ଆଦର୍ଶ । ଧନୀ ହୋଇଛି ଅଧିକ ଧନୀ, ଦରିଦ୍ରର ଆର୍ଥିକାବସ୍ଥା ଅଧିକ ଶୋଚନୀୟ । ସ୍ୱାଧୀନତା ପୂର୍ବରୁ ଭାରତର ସି.ଭି. ରମଣ ପଦାର୍ଥ ବିଜ୍ଞାନରେ ଏବଂ ରବୀନ୍ଦ୍ରନାଥ ଠାକୁର ସାହିତ୍ୟରେ ନୋବେଲ୍ ପୁରସ୍କାର ଲାଭ କରିଥିଲେ । ମାତ୍ର ସ୍ୱାଧୀନତା ପରେ ଆମର ସାହିତ୍ୟ ଓ ବିଜ୍ଞାନ ବହୁଦୂର ଅଗ୍ରସର ହୋଇଥିଲେହେଁ, ଏ କ୍ଷେତ୍ରରେ ଏ ପର୍ଯ୍ୟନ୍ତ ଅନ୍ୟ କେହି ଆନ୍ତର୍ଜାତିକ ପୁରସ୍କାର ଲାଭ କରିବାକୁ ସମର୍ଥ ହୋଇପାରି ନାହାନ୍ତି । ସାନ୍ତ୍ୱନାର ବିଷୟ ସେବା ପାଇଁ କେବଳ ମଦର ଟେରେସା ନୋବେଲ୍ ପୁରସ୍କାର ପାଇଛନ୍ତି । ପୃଥିବୀରେ ଭାରତର ବୈଜ୍ଞାନିକଙ୍କ ସଂଖ୍ୟା ଦ୍ୱିତୀୟ । ମାତ୍ର ଗୁଣାତ୍ମକ ଦୃଷ୍ଟିକୋଣରୁ ବିଶ୍ୱର ଅନ୍ୟ ରାଷ୍ଟ୍ରଙ୍କ ତୁଳନାରେ ଆମେ ଅନେକ ପଛରେ । ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନାରେ ଗୁରୁଶିଳ୍ପ ଉପରେ

ଗୁରୁତ୍ୱ ଆରୋପ କରାଯାଇଥିଲେ ହେଁ ଆମେ ଏଯାବତ୍ ଗୁରୁଶିଳ୍ପ ନିର୍ମାଣ ପାଇଁ ମୌଳିକ ଜ୍ଞାନ ହାସଲ କରିପାରି ନାହୁଁ । ପରନ୍ତୁ ଏଥିପାଇଁ ଆମକୁ ଜାପାନ, ଜର୍ମାନ୍ ବା ରୁଷିଆ ଆଦି ଦେଶମାନଙ୍କ ଉପରେ ନିର୍ଭର କରିବାକୁ ପଡୁଛି । ଖାଦ୍ୟଶସ୍ୟ କ୍ଷେତ୍ରରେ ଆମେ ଏପର୍ଯ୍ୟନ୍ତ ସ୍ୱାବଲମ୍ବନଶୀଳ ହୋଇପାରି ନାହୁଁ । ଆମର ଖାଦ୍ୟାଭାବ ନିମିତ୍ତ ଅନ୍ୟ ରାଷ୍ଟ୍ର ଉପରେ ନିର୍ଭର କରିବାକୁ ପଡୁଛି । ଭାରତୀୟ କମ୍ପାନୀ ବା ଶିଳ୍ପ ବିଦେଶୀ କମ୍ପାନୀ ସହିତ ବର୍ତ୍ତମାନ ସୁଦ୍ଧା ପ୍ରତିଯୋଗିତା କରିବାକୁ ସମର୍ଥ ହୋଇପାରି ନାହାନ୍ତି । ବିସ୍କୁଟ, ଥଣ୍ଡାପାନୀୟ, ମଟରଗାଡ଼ି, ବିଭିନ୍ନ ସାବୁନ୍ ତଥା ଅନ୍ୟାନ୍ୟ କ୍ଷେତ୍ରରେ ବିଦେଶୀ ବୈଷୟିକ ଜ୍ଞାନର ସହାୟତା ନେବାକୁ ପଡୁଛି । କ୍ରୀଡ଼ା କ୍ଷେତ୍ରରେ ଆନ୍ତର୍ଜାତିକ ସ୍ତରରେ ଆମେ ବିଶେଷ କିଛି ହଟଚମଟ ଦେଖାଇପାରି ନାହୁଁ । ଅଲିମ୍ପିକ୍ କ୍ରୀଡ଼ାରେ ସ୍ୱର୍ଣ୍ଣପଦକ ପାଇବାର ସ୍ୱପ୍ନ ଦେଖିବା ଆମଦ୍ୱାରା ସମ୍ଭବ ହୋଇପାରୁ ନାହିଁ । ୧୯୯୬ ଆଟଲାଣ୍ଟା ଅଲମ୍ପିକ୍‌ରେ ଭାରତ ସମୁଦାୟ ଗୋଟିଏ ମାତ୍ର ବ୍ରୋଞ୍ଜ ପଦକ ଲାଭ କରିଛି । ଅତୀତରେ ହକି ଖେଳରେ ଭାରତ ଥିଲା ବିଶ୍ୱ ପ୍ରସିଦ୍ଧ । ମାତ୍ର ବର୍ତ୍ତମାନ ଏହି କ୍ରୀଡ଼ାରେ ଆମେ ବହୁ ପଛରେ ପଡ଼ିଯାଉଛୁ । ରାଜନୀତିରେ ନୈତିକ ସ୍ଖଳନ ଘଟିଛି । ଲାଲୁ ପ୍ରସାଦ ଯାଦବଙ୍କ ଗୋଖାଦ୍ୟ ଦୁର୍ନୀତି, ପୂର୍ବତନ ପ୍ରଧାନମନ୍ତ୍ରୀ ପି.ଭି. ନରସିଂହ ରାଓ ବହୁ ଦୁର୍ନୀତି ବ୍ୟାପାରରେ ଜଡ଼ିତ ଥିବାର ପ୍ରମାଣ ମିଳିଛି । ଅତୀତରେ ଆଦର୍ଶବାଦୀ ବ୍ୟକ୍ତିତ୍ୱ ହିଁ ରାଜନୀତିରେ ପ୍ରବେଶ କରୁଥିଲେ । ବର୍ତ୍ତମାନ ଗୁଣ୍ଡା, ଡ଼କାୟତ, ଦୁର୍ନୀତିପରାୟଣ ବ୍ୟକ୍ତି,ଚୋରାବେପାରୀ ରାଜନୀତିରେ ଆଡ୍‌ଡ଼ା ଜମାଇ ଚାଲିଛନ୍ତି । ସମଗ୍ର ଭାରତୀୟ ଜନତା ଆଜି ଏକ ସ୍ୱପ୍ନଭଙ୍ଗ ମଧ୍ୟ ଦେଇ ଗତିଶୀଳ । ଆଜି ଭାରତୀୟ ରାଜନୀତିରେ ଗୋବିନ୍ଦ ବଲ୍ଲଭ ପନ୍ଥ, ସୁଭାଷ ଚନ୍ଦ୍ର ବୋଷ, ସର୍ଦ୍ଦାର ପଟେଲ, ପଣ୍ଡିତ ଜବାହରଲାଲ ନେହେରୁ, ଆବୁଲକାଲାମ ଆଜାଦ୍, ରବିଶଙ୍କର ଶୁକ୍ଳା, କୃଷ୍ଣ ମେନନ୍, ବିଧାନ ରାୟ, ଶ୍ୟାମାପ୍ରସାଦ ମୁଖାର୍ଜୀ, ଶ୍ରୀକୃଷ୍ଣ ସିହ୍ନା, ଉତ୍କଳମଣି ଗୋପବନ୍ଧୁ ଦାସ, ଗୋପବନ୍ଧୁ ଚୌଧୁରୀ ଆଦି ବ୍ୟକ୍ତିଙ୍କର ଘୋର ଅଭାବ । ନୈତିକ ଆଦର୍ଶକୁ ପାଥେୟ କରି ରାଜନୀତି କରିବାର ସମୟ ଅତିକ୍ରାନ୍ତ ହୋଇଯାଇଛି । ପ୍ରତ୍ୟେକ କ୍ଷେତ୍ରରେ ନୈତିକ ସ୍ଖଳନ । ଭାରତର ଏହି ବିବର୍ଣ୍ଣ ରୂପ ବଞ୍ଚିଥିବା ମୁଷ୍ଟିମେୟ କେତେଜଣ ସ୍ୱାଧୀନତା ସଂଗ୍ରାମୀଙ୍କୁ ଖୁବ୍ ଦୁଃଖ ଦେଇଛି । କୋଟି କୋଟି ଭାରତୀୟଙ୍କ ସ୍ୱପ୍ନ ଆଜି ଭାଙ୍ଗି ଯାଇଛି । ସମୟର ଏହି ଅସହାୟତା ରୂପ ଭାରତୀୟଙ୍କ ମାନଚିତ୍ରକୁ ବିକଳାଙ୍ଗ କରିଦେଇଛି । ପଞ୍ଜାବ, ଜାମ୍ମୁ-କାଶ୍ମୀର, ଆସାମ, ଆନ୍ଧ୍ରପ୍ରଦେଶର କେତେକ ସ୍ଥାନରେ ବିଚ୍ଛିନ୍ନତାବାଦୀ କାର୍ଯ୍ୟକଳାପ ବୃଦ୍ଧି ପାଇଛି । ସନ୍ତ୍ରାସବାଦୀଙ୍କ ସଂଖ୍ୟା ବଢ଼ିଛି । ଅକାଳରେ ବହୁ ନିରୀହ ଶିଶୁ, ମଣିଷ ପ୍ରାଣବଳି ଦେଇଛନ୍ତି । ଭାରତର ଏହି ବିବର୍ଣ୍ଣ ରୂପ ସୁବର୍ଣ୍ଣଜୟନ୍ତୀ ପରିପ୍ରେକ୍ଷୀରେ ଅତୀବ ଦୁଃଖଦାୟକ ଓ ଦୁର୍ଭାଗ୍ୟପୂର୍ଣ୍ଣ ।

ଏହା ସତ୍ତ୍ୱେ ସ୍ୱାଧୀନତା ପରବର୍ତ୍ତୀ ସମୟରେ ଭାରତ କେତେକ କ୍ଷେତ୍ରରେ ଅଗ୍ରଗତି ଲାଭ କରିଛି । ସି.ଟି.ବି.ଟି. ରେ ସ୍ୱାକ୍ଷର ନ କରି ନିଜର ନୈତିକ ବଳର ପରିଚୟ ପ୍ରଦାନ କରିଛି । ଆଠଟି ପଞ୍ଚବାର୍ଷିକ ଯୋଜନା ପ୍ରସ୍ତୁତ କରି ଶିଳ୍ପ, ଶିକ୍ଷା, ସ୍ୱାସ୍ଥ୍ୟ, ଗମନାଗମନ, ବୈଷୟିକ ଜ୍ଞାନ, ବିଜ୍ଞାନର ଗବେଷଣା, ଶିକ୍ଷା, ପଞ୍ଚାୟତିରାଜ ଆଦି କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ

ସଫଳତା ଲାଭ କରିଛି । ବିଂଶସୂତ୍ରୀ କାର୍ଯ୍ୟକ୍ରମ ଦ୍ୱାରା ଭାରତୀୟଙ୍କ ଆର୍ଥିକ ବିକାଶ କ୍ଷେତ୍ରରେ ପଦକ୍ଷେପ ଗ୍ରହଣ କରିଛି । 'ଜବାହର ରୋଜଗାର ଯୋଜନା'ରେ ଦାରିଦ୍ର୍ୟ ଦୂରୀକରଣ ନିମିତ୍ତ ଯୋଜନା ପ୍ରସ୍ତୁତ କରିଛି । ଅର୍ଥନୀତିର ଉଦାରୀକରଣ ଦ୍ୱାରା ପ୍ରତିଯୋଗିତାକୁ ପ୍ରୋତ୍ସାହିତ କରିଛି । ବ୍ୟାଙ୍କମାନଙ୍କର ଜାତୀୟକରଣ କରାଯାଇ ଅର୍ଥ ସଞ୍ଚୟ ଓ ଯଥାର୍ଥ ଉପଯୋଗ ଉପରେ ଗୁରୁତ୍ୱ ଦିଆଯାଇଛି । କ୍ରୀଡ଼ାର ପ୍ରୋତ୍ସାହନ ନିମିତ୍ତ କେତେକ କାର୍ଯ୍ୟକ୍ରମ ପ୍ରସ୍ତୁତ ହୋଇଛି । ପ୍ରାଥମିକ ଶିକ୍ଷାକୁ ସାର୍ବଜନୀନ କରିବା ପାଇଁ ଲକ୍ଷ୍ୟ ସ୍ଥିର ହୋଇଛି । ଦାରିଦ୍ର୍ୟର ସୀମାରେଖା ତଳେ ବସବାସ କରୁଥିବା ବ୍ୟକ୍ତିବିଶେଷଙ୍କ ନିମିତ୍ତ ବ୍ୟାଙ୍କ ଦ୍ୱାରା ଋଣ ଯୋଗାଣ କରାଯାଇ ଏବଂ ଅନ୍ୟ ସାହାଯ୍ୟ ମାଧ୍ୟମରେ ସେମାନଙ୍କର ଆର୍ଥିକ ବିକାଶ ପାଇଁ ଦୃଷ୍ଟି ଦେଇଛି । ଗ୍ରାମାଞ୍ଚଳର ଉନ୍ନତି ନିମିତ୍ତ ବିଭିନ୍ନ ସ୍ତରରେ ଉଦ୍ୟମ ଜାରି ରହିଛି । ପ୍ରୌଢ଼ଶିକ୍ଷା ମାଧ୍ୟମରେ ଜନସଚେତନତା ସୃଷ୍ଟିର ଉଦ୍ୟମ ହୋଇଛି । ଏସବୁର ସତ୍ତ୍ୱେ ବିଫଳତା ଅପେକ୍ଷା ସଫଳତାର ସଂଖ୍ୟା ବେଶ୍ ନ୍ୟୂନ । ସବୁ ସ୍ତରରେ ଉଦ୍ୟମ ଜାରି ନ ରହିଲେ ଭାରତର ଦୁର୍ଦ୍ଦଶା ଦୂର ହେବା ଅସମ୍ଭବ ମନେ ହୋଇଥାଏ ।

ସ୍ୱାଧୀନ ଭାରତର ନାଗରିକ ରୂପେ ପ୍ରତ୍ୟେକଙ୍କର କିଛି ନା କିଛି କର୍ତ୍ତବ୍ୟ ରହିଛି । ସରକାରୀ ସ୍ତରରେ ସବୁ ସମସ୍ୟାର ସମାଧାନ ଆଶା କରିବା ବୃଥା । ଜାତୀୟ-ସ୍ୱାର୍ଥର ସୁରକ୍ଷା ନିମିତ୍ତ ବିଭିନ୍ନ ସ୍ତରରେ ଉଦ୍ୟମ ଜାରି ରହିବା ଉଚିତ । ପ୍ରତ୍ୟେକ ନାଗରିକ ନିଜର କର୍ତ୍ତବ୍ୟବୋଧ ଓ ଦାୟିତ୍ୱବୋଧ ପ୍ରତି ସଚେତନ ରହିଲେ ବହୁ ସମସ୍ୟାର ସମାଧାନ ହୋଇପାରିବ । ସନ୍ତ୍ରାସବାଦୀ ଓ ବିଚ୍ଛିନ୍ନତାବାଦୀ କାର୍ଯ୍ୟକଳାପକୁ ରୋକାଯାଇପାରିବ । ଦୁର୍ନୀତି ବ୍ୟାଧି ସମାଜର ସବୁ ସ୍ତରକୁ ବ୍ୟାପିଯାଇଛି । ଜନସାଧାରଣ ଚାହିଁଲେ ନିଜର ଯୋଜନାବଦ୍ଧ ଓ ସଚେତନ କାର୍ଯ୍ୟ ମାଧ୍ୟମରେ ଏହାର ମୂଳୋତ୍ପାଟନ କରିପାରିବେ । ସାଧାରଣ ନିର୍ବାଚନରେ ଦୁର୍ନୀତିଗ୍ରସ୍ତ ତଥା ଅସାମାଜିକ ବ୍ୟକ୍ତିବିଶେଷଙ୍କୁ ଉପଯୁକ୍ତ ଶାସ୍ତି ପ୍ରଦାନ କରିପାରିବେ । ସରକାରୀ ଯୋଜନାକୁ ଉପଯୁକ୍ତ ଭାବେ କାର୍ଯ୍ୟ କରି ବେକାରୀ ଓ ଦାରିଦ୍ର୍ୟ ଦୂରୀକରଣରେ ସମୁଚିତ କାର୍ଯ୍ୟପନ୍ଥା ଗ୍ରହଣ କରିପାରିବେ । ଅନେକ ସମୟରେ ଆମର ଉଦାସୀନତା ଆମ ବିପର୍ଯ୍ୟୟର କାରଣ ରୂପେ ଦଣ୍ଡାୟମାନ ହୋଇଛି । ଶୋଷକ ଓ ଦୁର୍ନୀତିଗ୍ରସ୍ତ ବ୍ୟକ୍ତିଙ୍କୁ ଭୟକରି ଆମେ ଆମର ଯଥାର୍ଥ କର୍ତ୍ତବ୍ୟ ସମ୍ପାଦନ କରିପାରି ନାହୁଁ । ରାଜନୀତିକୁ ଏକ ବ୍ୟବସାୟରେ ପରିଣତ କରିଛୁ । ବିକାଶ କ୍ଷେତ୍ରରେ ବିନିଯୋଗ ହେଉଥିବା ଅର୍ଥକୁ ଠିକ୍ ରୂପେ ଉପଯୋଗ କରିପାରୁ ନାହୁଁ । ତେଣୁ ସ୍ୱାଧୀନ ଦେଶର ନାଗରିକ ରୂପେ କେବଳ ସବୁ କ୍ଷେତ୍ରରେ ସରକାରଙ୍କ ଉପରେ ବିଶ୍ୱାସ କିମ୍ବା ନିର୍ଭର କଲେ ଚଳିବ ନାହିଁ । ଏଥିପାଇଁ ଆବଶ୍ୟକ ରହିଛି ଆମର ସଚେତନତା, କର୍ତ୍ତବ୍ୟପରାୟଣତା, ଦୁର୍ନୀତିକୁ ମୁକାବିଲା କରିବାର ମନୋବୃତ୍ତି ଓ ସର୍ବୋପରି ସହଯୋଗପୂର୍ଣ୍ଣ କାର୍ଯ୍ୟକ୍ରମର ।

ଶ୍ରୀରାମ, ଶ୍ରୀକୃଷ୍ଣ, ଅରବିନ୍ଦ, ଗାନ୍ଧିଜୀ ଆଦିଙ୍କ ପରି ଯେଉଁ ମହାମାନବଗଣ ଭାରତବର୍ଷରେ ଜନ୍ମଲାଭ କରିଛନ୍ତି, ସେମାନଙ୍କର ସ୍ୱପ୍ନ କଦାପି ବ୍ୟର୍ଥ ହେବ ନାହିଁ । ସୁବର୍ଣ୍ଣଜୟନ୍ତୀର ପାଳନ ଅବକାଶରେ ଭାରତୀୟଗଣ କଦାପି ହତାଶ ହେବା ଅନୁଚିତ । ଅତୀତର ଆତ୍ମତ୍ୟାଗ,

ଭାରତୀୟ ଆଦର୍ଶ ଓ ପୂର୍ବସୂରୀଙ୍କ କୃଚ୍ଛ୍ର ସାଧନାକୁ ଭୁଲିଯିବା ଉଚିତ ନୁହେଁ । ଭାରତର ଶାସ୍ତ୍ରପୁରାଣ ଆଶାବାଦରେ ବିଶ୍ୱାସୀ । ପୃଥିବୀରେ ଯେଉଁ ଦେଶ ବିନା ରକ୍ତପାତରେ ସ୍ୱାଧୀନତା ପାଇପାରେ, ଯେଉଁ ଦେଶରେ ପ୍ରଚୁର ପରିମାଣରେ ପ୍ରାକୃତିକ ସମ୍ପଦ ପରିପୂର୍ଣ୍ଣ, ଯେଉଁ ଦେଶ ଶାନ୍ତି, ମୈତ୍ରୀ ଓ ସଂହତି ବାର୍ତ୍ତାର ପ୍ରଚାରକ, ସେ ଦେଶ କଦାପି ଗରିବ, ହୀନ ହୋଇନ ପାରେ । ସ୍ୱାଧୀନତାର ସୁବର୍ଣ୍ଣଜୟନ୍ତୀରେ ଆମେ ସମସ୍ତେ ଆତ୍ମସମୀକ୍ଷା କରିବା ଉଚିତ । ପ୍ରତ୍ୟେକ ନିଜ ନିଜର ଦାୟିତ୍ୱ ପ୍ରତି ସଚେତନ ହେବା ଉଚିତ । ଆତ୍ମପ୍ରତାରଣା ନୁହେଁ, ଆତ୍ମବିଶ୍ୱାସ ହିଁ ସବୁଠାରୁ ମୂଲ୍ୟବାନ୍ । ଏହି ବଳରେ ବଳୀୟାନ୍ ହେଲେ ଆମେ ପୁଣି ଆମର ଗୌରବୋଜ୍ଜ୍ୱଳ ଅତୀତକୁ ଫେରିପାଇବା । ପୂର୍ବସୂରୀଙ୍କ ତପସ୍ୟା ସଫଳ ହେବ । ଶସ୍ୟଶ୍ୟାମଳା ସୁଜଳା ସୁଫଳା ଭାରତ ପୁଣି ତା'ର ସଫଳତାରେ ହସିଉଠିବ । ସୁବର୍ଣ୍ଣଜୟନ୍ତୀର ଏହି ଶୁଭକ୍ଷଣରେ ପ୍ରତ୍ୟେକ ଭାରତୀୟ ବ୍ୟକ୍ତିଗତ ସ୍ୱାର୍ଥ, କନ୍ଦଳ, ହିଂସା, ଈର୍ଷା ଓ ପରଶ୍ରୀକାତରତାକୁ ଭୁଲି ଭ୍ରାତୃତ୍ୱ, ସୌହାର୍ଦ୍ଦ୍ୟ, ତ୍ୟାଗ, ସଦ୍‌ଭାବନା ଓ ସେବାର ବନ୍ଧନରେ ପରସ୍ପରକୁ ବନ୍ଧନ କରିବାର ଶପଥ ଗ୍ରହଣ କଲେ ପୁଣି ଏହି ବିବର୍ଣ୍ଣ ଭାରତ ସୁବର୍ଣ୍ଣ ଭାରତରେ ପରିଣତ ହୋଇପାରିବ ।



## ସନ୍ତ୍ରାସବାଦ

**(ସନ୍ତ୍ରାସବାଦର ଅର୍ଥ ଓ ସ୍ୱରୂପ, ସନ୍ତ୍ରାସବାଦର କାରଣ, ବିଶ୍ୱ ପରିପ୍ରେକ୍ଷୀରେ ସନ୍ତ୍ରାସବାଦ, ଭାରତରେ ସନ୍ତ୍ରାସବାଦ ଓ ତା'ର କାରଣ, ମାନବିକତାର ବିକାଶରେ ଏହାର ପ୍ରତିବନ୍ଧକ, ନିରାକରଣର ଉପାୟ, ଉପସଂହାର)**

ସନ୍ତ୍ରାସର ଅର୍ଥ ଭୟ, ଆତଙ୍କ, ତ୍ରାସ ଇତ୍ୟାଦି । ମାନବ ସମାଜରେ ଆତଙ୍କ ସୃଷ୍ଟି କରିବା ଏହାର ଲକ୍ଷ୍ୟ । ପ୍ରଶାସନ ତଥା ଆର୍ଥନୀତିକ ଅବସ୍ଥାକୁ ସ୍ଥାଣୁ କରିବା ଉଦ୍ଦେଶ୍ୟରେ ସନ୍ତ୍ରାସବାଦୀ ସମାଜରେ ଆତଙ୍କରାଜ ସୃଷ୍ଟି କରିଥାନ୍ତି । ଅନେକ ସମୟରେ ପ୍ରତିହିଂସାପରାୟଣ ହୋଇ ଏମାନେ ସାମାଜିକ ଜୀବନରେ ବିପର୍ଯ୍ୟୟ ଆଣିଥାନ୍ତି । ଗଣହତ୍ୟା ଓ ହିଂସାକାଣ୍ଡ ଘଟାଇ ସନ୍ତ୍ରାସବାଦୀ ସାମାଜିକ ଜୀବନକୁ ପଙ୍ଗୁ କରିଦେଇଥାନ୍ତି । ଏମାନେ କୌଣସି ନିର୍ଦ୍ଦିଷ୍ଟ ଆଦର୍ଶର ପ୍ରତିଷ୍ଠା ନିମିତ୍ତ ସନ୍ତ୍ରାସବାଦକୁ ଗ୍ରହଣ କରିନଥାନ୍ତି । ଭବିଷ୍ୟତ ବଂଶଧରଗଣ ଏମାନଙ୍କର ଏହି କଳଙ୍କିତ କାର୍ଯ୍ୟ ଯୋଗୁଁ ବହୁ ସମୟରେ ଦୁର୍ଯୋଗର ଶିକାର ହୋଇଥାନ୍ତି । ପ୍ରତିକ୍ରିୟାଶୀଳ ଏହି ଗୋଷ୍ଠୀ ନିଜର ରକ୍ତପିପାସା ମେଣ୍ଟାଇବା ପାଇଁ କେତେବେଳେ ଅଗ୍ନିଦାହ ବା କେତେବେଳେ ଗୁଳିଗୋଳାର ଆଶ୍ରୟ ନେଇଥାନ୍ତି । ଜୀବନକୁ ବାଜି ଲଗାଇ ସାମାଜିକ, ସାଂସ୍କୃତିକ, ରାଜନୀତିକ ତଥା ଆର୍ଥନୀତିକ ଜୀବନରେ ସଙ୍କଟ ସୃଷ୍ଟି କରିଥାନ୍ତି । ଅନୁଦାର ଓ ସଂକୀର୍ଣ୍ଣଭାବାପନ୍ନ ବ୍ୟକ୍ତିବିଶେଷଙ୍କ ମନ ହେଉଛି ଏହି ସନ୍ତ୍ରାସବାଦର ଆଶ୍ରୟସ୍ଥଳ । ମୂଲ୍ୟବୋଧରେ ସଙ୍କଟ ସୃଷ୍ଟି କରି ଏହି ସନ୍ତ୍ରାସବାଦୀଗଣ ମାନବିକ ଆଦର୍ଶବୋଧ ଉପରେ ପ୍ରଚଣ୍ଡ କୁଠାରାଘାତ କରିଥାନ୍ତି । କେବଳ ମାନବିକ କ୍ରିୟାକଳାପ

ଉପରେ ନୁହେଁ ସମୟେ ସମୟେ ସମଗ୍ର ପ୍ରାଣୀଜଗତରେ ଏମାନଙ୍କର ଜିଘାଂସାବୋଧ ଘୋର ବିପର୍ଯ୍ୟୟ ସୃଷ୍ଟି କରିଥାଏ । ଏମାନେ ସମଗ୍ର ପ୍ରାଣୀଜଗତର ଶତ୍ରୁ ।

ମାନବିକ ମୂଲ୍ୟବୋଧ ପ୍ରତି ବୀତସ୍ପୃହତା ସନ୍ତ୍ରାସବାଦର କାରଣ ରୂପେ ଗ୍ରହଣ କରାଯାଇପାରେ । ସମୟେ ସମୟେ ସଂକୀର୍ଣ୍ଣତାବୋଧ, ବ୍ୟକ୍ତିଗତ ସ୍ୱାର୍ଥ, ଜିଘାଂସାବୋଧ, ହତାଶାବୋଧ, ରାଜନୀତିକ ଅସ୍ଥିରତା ତଥା ସାମାଜିକ ସ୍ଥିତାବସ୍ଥାର ଅଭାବରୁ ସନ୍ତ୍ରାସବାଦ ଜନ୍ମ ନେଇଥାଏ । ଏହି କାରଣରୁ ଗଣହତ୍ୟା, ଅଗ୍ନିଦାହ, ଗୁଳିବର୍ଷଣ, ବୋମା ବିସ୍ଫୋରଣ, ଧର୍ମପୀଠ ଉପରେ ଆକ୍ରମଣ ଆଦି କରାଯାଇଥାଏ । ଉଗ୍ର ଜାତିଆଣଭାବ ଓ ସଂକୀର୍ଣ୍ଣ ଚିନ୍ତାଧାରା ମଧ ସନ୍ତ୍ରାସବାଦ ନିମିତ୍ତ ଖୋରାକ ଯୋଗାଇ ଦେଇଥାଏ । ବହୁ ସମୟରେ ଜୀବନ ପ୍ରତି ବୀତସ୍ପୃହ କେତେକ ବ୍ୟକ୍ତି ସମାଜ ଉପରେ ପ୍ରତିଶୋଧ ନେବା ନିମିତ୍ତ ସନ୍ତ୍ରାସବାଦକୁ ଗ୍ରହଣ କରିଥାନ୍ତି । ସବୁଠାରୁ ଦୁଃଖର ବିଷୟ କେତେକ ସ୍ୱାର୍ଥପର ରାଜନୈତିକ ବ୍ୟକ୍ତିବିଶେଷ ନିଜର ହୀନ ସ୍ୱାର୍ଥ ଚରିତାର୍ଥ ନିମିତ୍ତ ବିପୁଳ ପରିମାଣର ଅର୍ଥ ବ୍ୟୟ କରି ଏପରି ସାମାଜିକ ଶତ୍ରୁମାନଙ୍କୁ ପ୍ରୋତ୍ସାହିତ କରିଥାନ୍ତି । ନୀତିହୀନତାର ଆଶ୍ରୟ ନେଇ ନରସଂହାର କରୁଥିବା ଏହି ସନ୍ତ୍ରାସବାଦୀମାନଙ୍କୁ ସେମାନେ କୁତ୍ସିତ ରାଜନୀତିର ଛତ୍ରଛାୟାତଳେ ଅବାଧରେ ବିଚରଣ କରିବାକୁ ଛାଡ଼ିଦିଅନ୍ତି । ସାମାଜିକ ଜୀବନରେ ପ୍ରତିଷ୍ଠା ଲାଭ କରିପାରି ନ ଥିବା କେତେକ ବ୍ୟକ୍ତିବିଶେଷ ସନ୍ତ୍ରାସବାଦ ମାଧ୍ୟମରେ ବିପୁଳ ଅର୍ଥଲାଭ କରିବାର ସ୍ୱପ୍ନ ଦେଖନ୍ତି ଓ ଭୟ ଦ୍ୱାରା ନିଜକୁ ସମାଜରେ ପ୍ରତିଷ୍ଠା କରିବା ନିମିତ୍ତ ଚେଷ୍ଟା କରିଥାନ୍ତି । ମାତ୍ର ସେମାନେ ଭୁଲିଯାଇଥାନ୍ତି, ସେମାନଙ୍କର ଏହି ସାମାଜିକ ପ୍ରତିଷ୍ଠା କ୍ଷଣିକ । ରକ୍ତପାତ ଦ୍ୱାରା କେହି କେବେ ଜନହୃଦୟର ରାଜସିଂହାସନରେ ଅଧିରୂଢ଼ ହୋଇ ନ ପାରେ । ଏଥିପାଇଁ ଆବଶ୍ୟକ ସ୍ନେହ, ଦୟା ଓ ମୈତ୍ରୀ ଭାବର । ସାମାଜିକ ଅଙ୍ଗୀକାରବଦ୍ଧତା ହିଁ ମାନବକୁ ଶ୍ରେଷ୍ଠ ଆସନ ପ୍ରଦାନ କରିଥାଏ ।

ଆଜି ସନ୍ତ୍ରାସବାଦର ଚେର ବହୁ ଗଭୀରରେ । ସମଗ୍ର ବିଶ୍ୱରେ ଏହା ଏକ ଚ୍ୟାଲେଞ୍ଜ ରୂପରେ ଦେଖାଦେଇଛି । କେତେକ ହୀନ ସ୍ୱାର୍ଥପର ରାଷ୍ଟ୍ର ନିଜ ଅଭୀପ୍ସାର ଚରିତାର୍ଥ ନିମିତ୍ତ ସନ୍ତ୍ରାସବାଦକୁ ପ୍ରୋତ୍ସାହନ ଦେଉଛନ୍ତି । ଆଜି ପୃଥିବୀରେ ସନ୍ତ୍ରାସବାଦ ଏକ ମୁଣ୍ଡବ୍ୟଥାର କାରଣ ହୋଇଛି । ରୁଷ, ଆମେରିକା, ଚୀନ, ଇଂଲଣ୍ଡ, ଫ୍ରାନ୍ସ, ଜାପାନ, ଭାରତ ଆଦି ରାଷ୍ଟ୍ରଗଣ ଏହାର ଘୋର ବିରୋଧ କରୁଥିଲେ ହେଁ କ୍ୟାନ୍ସର ରୋଗପରି ଏହାର ନିରାକରଣ ନିମିତ୍ତ କୌଣସି ନିଦାନ ଗ୍ରହଣ କରାଯାଇପାରି ନାହିଁ । ଏହାଦ୍ୱାରା ସମାଜର ବିପୁଳ କ୍ଷତି ହେଉଛି । ନିକଟ ଅତୀତରେ ସନ୍ତ୍ରାସବାଦର ଅନେକ ବୀଭତ୍ସ କାଣ୍ଡ ଘଟିଯାଇଛି । ଅସ୍ଥିରତା, ଅସହାୟତା, ଜିଘାଂସାବୋଧ ଓ ସଂକୀର୍ଣ୍ଣତାରୁ ଜନ୍ମଲାଭ କରିଥିବା ସନ୍ତ୍ରାସବାଦ ଆଜି ସମଗ୍ର ବିଶ୍ୱ ପାଇଁ ଏକ ଆତଙ୍କ ରୂପେ କାୟାବିସ୍ତାର କରିବାକୁ ଲାଗିଛି । ଅତୀତରେ ଏହି ସନ୍ତ୍ରାସବାଦର ଶିକାର ହୋଇଥିଲେ ଇଂଲଣ୍ଡର ତତ୍କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀମତୀ ମାର୍ଗାରେଟ୍ ଥାଚର୍ । ଏଲ.ଟି.ଟି.ଇ.ର ସନ୍ତ୍ରାସବାଦୀ କାର୍ଯ୍ୟକଳାପ ଯୋଗୁଁ ଆଜି ଶ୍ରୀଲଙ୍କାର ସାମାଜିକ, ରାଜନୀତିକ ଓ ଆର୍ଥନୀତିକ ଅବସ୍ଥା ଘୋର ବିପର୍ଯ୍ୟୟ ମଧ ଦେଇ ଗତି କରୁଛି । ଆମେରିକାର

କେତେକ ପର୍ଯ୍ୟଟକଙ୍କୁ ଏହିପରି କେତେକ ସନ୍ତ୍ରାସବାଦୀ ଅପହରଣ କରିନେଇଥିଲେ । ଆନ୍ତର୍ଜାତୀୟ ବିମାନ ଅପହରଣ କ୍ଷେତ୍ରରେ ଏମାନେ ବେଶ୍ ସକ୍ରିୟ । ଆଫଗାନିସ୍ଥାନରେ ଯେଉଁ ସନ୍ତ୍ରାସବାଦୀ କାର୍ଯ୍ୟକଳାପ ଚାଲିଥିଲା, ସେଥିରେ ପାକିସ୍ଥାନରୁ ତାଲିମ ପାଇଥିବା କେତେକ ବ୍ୟକ୍ତିବିଶେଷ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ପାକିସ୍ଥାନର ରାଜଧାନୀ ଇସ୍‌ଲାମାବାଦଠାରେ ସ୍ଥାପିତ ଇସ୍‌ଲାମିକ ବିଶ୍ୱବିଦ୍ୟାଳୟ ଆଜି ଆନ୍ତର୍ଜାତିକ ସନ୍ତ୍ରାସବାଦର କେନ୍ଦ୍ରସ୍ଥଳରେ ପରିଣତ ହୋଇଛି । ବିଭିନ୍ନ ଦେଶରେ ସଙ୍ଘଟିତ ହେଉଥିବା ସନ୍ତ୍ରାସବାଦକୁ ପାକିସ୍ଥାନ ରାଜନୈତିକ ପ୍ରୋତ୍ସାହନ ଯୋଗାଉଛି । ସନ୍ତ୍ରାସବାଦ କାର୍ଯ୍ୟକଳାପକୁ ଉତ୍ସାହ ଦେବାନିମିତ୍ତ ଏଠାରେ ପ୍ରଶିକ୍ଷଣ ମଧ୍ୟ ଦିଆଯାଉଛି । ପୁଣି ପାକିସ୍ଥାନର ବିଭିନ୍ନ ଧର୍ମପୀଠଗୁଡ଼ିକ ଆଜି ଆନ୍ତର୍ଜାତିକ ସନ୍ତ୍ରାସବାଦର ପ୍ରଧାନ ପୀଠସ୍ଥଳୀରେ ପରିଣତ ହୋଇଛି । ଶୁଣାଯାଏ ମିଶର ଏବଂ ସାଉଦିଆରବ ଆଦି ଏଥି ନିମିତ୍ତ ଆର୍ଥିକ ସହାୟତା ଯୋଗାଇ ଦେଉଛନ୍ତି । ପାକିସ୍ଥାନର ସାମରିକ ଗୁଇନ୍ଦାବାହିନୀ ଆଇ.ଏସ୍.ଆଇ. ସନ୍ତ୍ରାସବାଦର ବିକାଶ କ୍ଷେତ୍ରରେ ପ୍ରମୁଖ ଭୂମିକା ଗ୍ରହଣ କରୁଛି । ଚେଚେନିଆରେ ଯେଉଁ ସନ୍ତ୍ରାସବାଦୀ କାର୍ଯ୍ୟ ସଙ୍ଘଟିତ ହୋଇଗଲା, ସେହି କାର୍ଯ୍ୟରେ ସଂଶ୍ଳିଷ୍ଟ ବ୍ୟକ୍ତିବିଶେଷ ପାକିସ୍ଥାନରୁ ପ୍ରଶିକ୍ଷଣ ଲାଭ କରିଛନ୍ତି ବୋଲି ରୁଷର ରାଷ୍ଟ୍ରପତି ୟେଲ୍‌ସିନ୍ ଅଭିଯୋଗ କରିଥିଲେ । ଇଥିଓପିଆ ମଧ୍ୟ ଅନୁରୂପ ଅଭିଯୋଗ ଫର୍ଦ୍ଦ ଦାଖଲ କରିଛି । ମିଶରର ରାଷ୍ଟ୍ରପତି ହୁସନି ମୁବାରକଙ୍କ ଉପରେ ଯେଉଁମାନେ ଆକ୍ରମଣ କରିଥିଲେ, ସେମାନେ ପାକିସ୍ଥାନରୁ ପ୍ରଶିକ୍ଷଣପ୍ରାପ୍ତ । ଆଲଜେରିଆରୁ ଏହି ପ୍ରକାର ଅଭିଯୋଗ ଶୁଣିବାକୁ ମିଳିଥିଲା । ଫିଲିପାଇନ୍ସରେ ମଧ୍ୟ ପାକିସ୍ଥାନରୁ ତାଲିମପ୍ରାପ୍ତ ସନ୍ତ୍ରାସବାଦୀଗଣ ଅରାଜକତା ସୃଷ୍ଟି ପାଇଁ ଉଦ୍ୟମ କରିଥିଲେ । ଆମେରିକାର ଅଭିଜାତ ସହର ନ୍ୟୁୟର୍କରେ ବିଶ୍ୱବାଣିଜ୍ୟ କେନ୍ଦ୍ରରେ ଯେଉଁ ବୋମା ବିସ୍ଫୋରଣ ଘଟିଥିଲା, ସେଥିରେ ସଂଶ୍ଳିଷ୍ଟ ଥିବା ବ୍ୟକ୍ତିବିଶେଷ ପାକିସ୍ଥାନରୁ ପ୍ରଶିକ୍ଷଣ ଲାଭ କରିଥିଲେ । ପ୍ରତିହିଂସା ଉଗ୍ରବାଦର ନଗ୍ନସ୍ୱରୂପ ନିକଟରେ କରାଚି ଠାରେ ସଙ୍ଘଟିତ ହୋଇଯାଇଥିବା ବର୍ବରୋଚିତ ହତ୍ୟାକାଣ୍ଡରୁ ପ୍ରମାଣ ମିଳିଥାଏ । ଆମେରିକାର ହ୍ୟୁଷ୍ଟନ୍ ସହରରୁ ଆନ୍ତର୍ଜାତିକ ତୈଳ କମ୍ପାନୀ ଇଉନିୟନ୍ ଟେକ୍‌ସାସର ଏଫ୍ରାଇମ୍ ଏଗବୁ, ଟ୍ରେସିରିଚି, ଜୋୟେଲ ଏନ୍‌ଲୋ ଓ ଲ୍ୟାରି ଜୈନିଂସ ପାକିସ୍ଥାନୀ କମ୍ପାନୀର ଆୟବ୍ୟୟ ହିସାବ ନିକାଶ ଉଦ୍ଦେଶ୍ୟରେ ଆସିଥିଲେ । ମାତ୍ର କରାଚି ଠାରେ ତାଙ୍କୁ ନୃଶଂସଭାବେ ହତ୍ୟା କଲେ ଏହି ସନ୍ତ୍ରାସବାଦୀଗଣ । ସବୁଠାରୁ ଦୁଃଖର ବିଷୟ ରାଜନୈତିକ ଶତ୍ରୁତାର ପ୍ରତିଶୋଧ ନେବାପାଇଁ କେତେକ ବ୍ୟକ୍ତିବିଶେଷ ରାଷ୍ଟ୍ରୀୟ କ୍ଷତିସାଧନ କରିବାକୁ ପଶ୍ଚାଦ୍‌ପଦ ହୋଇ ନଥାନ୍ତି । ଏହାର ଉଜ୍ଜ୍ୱଳ ଦୃଷ୍ଟାନ୍ତ ପାକିସ୍ଥାନର ଲାହୋରଠାରେ ପ୍ରସିଦ୍ଧ କ୍ରିକେଟ୍ ଖେଳାଳି ଇମ୍ରାନ ଖାଁଙ୍କ ଦ୍ୱାରା ନିର୍ମିତ ଡ଼ାକ୍ତରଖାନାରେ ବୋମା ବିସ୍ଫୋରଣ । ରାଷ୍ଟ୍ର ଉଦ୍ଦେଶ୍ୟରେ ସମର୍ପିତ ଏହି ଡ଼ାକ୍ତରଖାନାରେ କର୍କଟରୋଗୀମାନଙ୍କର ଚିକିତ୍ସା କରାଯାଉଥିଲା । ବୋମା ବିସ୍ଫୋରଣରେ ବହୁ ରୋଗୀ ମୃତାହତ ହେଲେ । ଲକ୍ଷ ଲକ୍ଷ ଟଙ୍କାର

ଜିନିଷପତ୍ର ନଷ୍ଟ ହୋଇଗଲା । ପାକିସ୍ଥାନୀ ସନ୍ତ୍ରାସବାଦୀମାନଙ୍କର ଏହି କାର୍ଯ୍ୟକଳାପ ସମଗ୍ର ମାନବଜାତି ପାଇଁ ଘୋର ଲଜ୍ଜାର ବିଷୟ ।

ଆଜି ଭାରତର ବହୁ ସ୍ଥାନରେ ସନ୍ତ୍ରାସବାଦୀ କାର୍ଯ୍ୟକଳାପ ମୁଣ୍ଡ ଟେକି ଉଠିଛି । ଭାରତରେ ସନ୍ତ୍ରାସବାଦୀ କାର୍ଯ୍ୟକଳାପର ମୁଖ୍ୟନାୟକ ପାକିସ୍ଥାନ । ଭାରତରେ ଅସ୍ଥିରତା ସୃଷ୍ଟି କରିବା ଓ ତା'ର ସାର୍ବଭୌମ ଉପରେ ଆଞ୍ଚ ଆଣିବା ଉଦ୍ଦେଶ୍ୟରେ ପାକିସ୍ଥାନରୁ ତାଲିମ ପ୍ରାପ୍ତ ସନ୍ତ୍ରାସବାଦୀଗଣ ବେଶ୍ ସକ୍ରିୟ ହୋଇ ଉଠିଛନ୍ତି । ଏତଦ୍ ବ୍ୟତୀତ ସଂକୀର୍ଣ୍ଣ ଜାତିଆଣଭାବ, ସଂକୀର୍ଣ୍ଣ ଜାତୀୟତାବୋଧ, ରାଜନୈତିକ ସ୍ୱାର୍ଥସିଦ୍ଧି, ବ୍ୟକ୍ତିଗତ ସ୍ୱାର୍ଥ, ମାଫିଆମାନଙ୍କ କ୍ଷୁଦ୍ରସ୍ୱାର୍ଥ, ଆର୍ଥନୀତିକ ବିପର୍ଯ୍ୟୟ ଓ ଅର୍ଥପ୍ରତି ଦୁର୍ବଳତା, ରାଜନୈତିକ ଅସ୍ଥିରତା, ମାନବିକ ମୂଲ୍ୟବୋଧ ପ୍ରତି ଜିଘାସାବୋଧ ସର୍ବୋପରି ସଂକୀର୍ଣ୍ଣ ଆଞ୍ଚଳିକତାବୋଧ ଭାରତରେ ସନ୍ତ୍ରାସବାଦର ବିକାଶ ନିମିତ୍ତ ମୁଖ୍ୟ କାରଣ ରୂପେ ଗ୍ରହଣ କରାଯାଇପାରେ । ପଞ୍ଜାବ ଏବଂ କାଶ୍ମୀରରେ ଅରାଜକତା ସୃଷ୍ଟି ନିମିତ୍ତ ପାକିସ୍ଥାନ ସନ୍ତ୍ରାସବାଦୀମାନଙ୍କୁ ପ୍ରଶିକ୍ଷଣ ଦେଇ ଉତ୍ସାହିତ କରୁଛି । ନିୟନ୍ତ୍ରଣ ସୀମାରେଖା ଠାରୁ ସୀମାନ୍ତ ନିରାପତ୍ତାବାହିନୀର ପ୍ରତ୍ୟାହାର ଆଳରେ ପାକିସ୍ଥାନ ଅନେକଥର ସୀମାନ୍ତରେ ଗୁଳିଚାଳନା କରିଛି । ଭାରତର ଅବିଚ୍ଛେଦ୍ୟ ଅଙ୍ଗ କାଶ୍ମୀର ପ୍ରଶ୍ନ ନେଇ ଅଯଥା ଆନ୍ତର୍ଜାତିକ ସ୍ତରରେ କଳହର ସୂତ୍ରପାତ କରାଉଛି । ପାକିସ୍ଥାନରୁ ତାଲିମପ୍ରାପ୍ତ ପ୍ରାୟ ପାଞ୍ଚହଜାର ସନ୍ତ୍ରାସବାଦୀ ଭାରତ ମଧ୍ୟକୁ ପ୍ରବେଶ କରିବା ନିମିତ୍ତ ଉଦ୍ୟମ ଜାରି ରଖିଛନ୍ତି । ଭାରତର ଉତ୍ତରପୂର୍ବାଞ୍ଚଳରେ ଯେଉଁ ଅସ୍ଥିରତା ଦେଖାଦେଇଛି, ସେଥିପାଇଁ ପାକିସ୍ଥାନରୁ ତାଲିମପ୍ରାପ୍ତ ସନ୍ତ୍ରାସବାଦୀଗଣ ମୁଖ୍ୟତଃ ଦାୟୀ । ଆସାମର ନାଗାଲାଣ୍ଡ, ମଣିପୁର ଆଦିରେ ଉଗ୍ରପନ୍ଥୀଗଣ ବେଶ୍ ସକ୍ରିୟ ହୋଇଉଠିଛନ୍ତି । ଆନ୍ତର୍ଜାତିକ ସାହାଯ୍ୟ ତଥା ଶିଳ୍ପପତିମାନଙ୍କ ଠାରୁ ଜବରଦସ୍ତ ଅର୍ଥ ଆଦାୟ କରି ଏମାନେ ନିରୀହ ଜନସାଧାରଣଙ୍କ ଉପରେ ଅକଥନୀୟ ଅତ୍ୟାଚାର କରିବା ସଙ୍ଗେ ସଙ୍ଗେ ରାଷ୍ଟ୍ରୀୟ କ୍ଷତି ଘଟାଉଛନ୍ତି । ଏପରିକି ଭୂତପୂର୍ବ ଆସାମର ମୁଖ୍ୟମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ମହନ୍ତଙ୍କୁ ହତ୍ୟା କରିବାର ଉଦ୍ୟମ କରାଯାଇଥିଲା । ଆସାମରେ ବୋଡ଼ୋ ଉଲ୍‌ଫା ସମସ୍ୟା ଏଯାବତ୍ ସମାଧାନ ହୋଇପାରି ନାହିଁ । ୧୯୮୨ ଠାରୁ ଉଗ୍ରପନ୍ଥୀ ସଙ୍ଗଠନ 'ଉଲ୍‌ଫା' ଧମକଦେଇ ଶିଳ୍ପପତି ତଥା ଅନ୍ୟମାନଙ୍କଠାରୁ ପ୍ରଭୂତ ପରିମାଣର ଅର୍ଥ ଆଦାୟ କରି ସନ୍ତ୍ରାସବାଦୀ କାର୍ଯ୍ୟକଳାପରେ ବିନିଯୋଗ କରୁଛନ୍ତି । 'ବୋଡ଼ୋ' ଉଗ୍ରପନ୍ଥୀଗଣ ସ୍ୱତନ୍ତ୍ର ବୋଡ଼ୋ ରାଜ୍ୟ ଗଠନ ନିମିତ୍ତ ଦାବି ଉପସ୍ଥାପନ କରୁଛନ୍ତି । ଏଥିପାଇଁ ସେମାନେ ଅପହରଣ, ହତ୍ୟା, ଆକ୍ରମଣ, ଟ୍ରେନ୍‌ରେ ବୋମା ବିସ୍ଫୋରଣ ଆଦି ଅମାନବିକ କାର୍ଯ୍ୟକଳାପ ଆରମ୍ଭ କରିଛନ୍ତି । ସଂକୀର୍ଣ୍ଣ ଆଞ୍ଚଳିକତାବାଦରୁ ବୋଡ଼ୋ ଉଲ୍‌ଫା ସମସ୍ୟାର ସୃଷ୍ଟି କହିଲେ ଭୁଲ ହେବ ନାହିଁ । ଅନୁରୂପ ଭାବେ ଏହି ଆଞ୍ଚଳିକତାବୋଧରୁ ଗୋର୍ଖାଲ୍ୟାଣ୍ଡ ପ୍ରସଙ୍ଗର ସୃଷ୍ଟି । ପଶ୍ଚିମବଙ୍ଗର ଉତ୍ତର ପାର୍ବତ୍ୟ ଇଲାକାସ୍ଥିତ ଦାର୍ଜିଲିଂରେ ବସବାସ କରୁଥିବା ନେପାଳୀ ଭାଷାଭାଷୀମାନେ ଗୋର୍ଖାଲ୍ୟାଣ୍ଡ ରାଜ୍ୟ ଦାବି କରୁଛନ୍ତି । ଦଳୀୟ ସ୍ୱାର୍ଥ ସୁରକ୍ଷା ଉଦ୍ଦେଶ୍ୟରେ କେତେକ ରାଜନୈତିକ ବ୍ୟକ୍ତି ଏଥିରେ ସଂଶ୍ଳିଷ୍ଟ

ଥିବାରୁ ଏହି ସମସ୍ୟା ଗୁରୁତର ରୂପ ଧାରଣ କରିଛି । ଭାରତରେ ରାଜନୈତିକ ପ୍ରତିଶୋଧ ପାଇଁ ସନ୍ତ୍ରାସବାଦକୁ ଯେଉଁ ପ୍ରୋତ୍ସାହନ ଦିଆଯାଉଛି, ତା'ର ଉଜ୍ଜ୍ୱଳ ଉଦାହରଣ ହାଇଦ୍ରାବାଦର ବୋମା ବିସ୍ଫୋରଣ । ପୁଣି ଆନ୍ଧ୍ରପ୍ରଦେଶରେ ନକ୍ସାଲପନ୍ଥୀଙ୍କ ସନ୍ତ୍ରାସବାଦୀ କାର୍ଯ୍ୟକଳାପ ଘୋର ଉଦ୍‌ବେଗଜନକ । ମୁମ୍ବଇରେ ବାରମ୍ବାର ହତ୍ୟାକାଣ୍ଡ ପଛରେ ଏହି ସନ୍ତ୍ରାସବାଦୀଗଣ ଅତ୍ୟନ୍ତ ସକ୍ରିୟ । ମୁଖ୍ୟମନ୍ତ୍ରୀ ସୁଧାକର ରାଓ ନାୟକଙ୍କ କେତେକ ମତରୁ ସନ୍ତ୍ରାସବାଦ କାର୍ଯ୍ୟକଳାପ ନିମିତ୍ତ ରାଜନୈତିକ ନେତାଗଣ ଦାୟୀ ବୋଲି ପ୍ରମାଣିତ ହୋଇଥାଏ । ଏତଦ୍ ବ୍ୟତୀତ ଦିଲ୍ଲୀ ଚଳଚ୍ଚିତ୍ର ପ୍ରେକ୍ଷାଳୟରେ ଅଗ୍ନିକାଣ୍ଡ, ଝାଡ଼ଖଣ୍ଡ ଆନ୍ଦୋଳନ ଏବଂ ଭାରତରେ ସଙ୍ଘଟିତ ବହୁ ଅମାନବିକ କାର୍ଯ୍ୟକଳାପ ପାଇଁ ସନ୍ତ୍ରାସବାଦୀଗଣ ଦାୟୀ ବୋଲି ଜଣାଯାଇଥାଏ । ଆନ୍ତର୍ଜାତିକ ସାହାଯ୍ୟ ଓ ଆଭ୍ୟନ୍ତରୀଣ ସ୍ଥିତାବସ୍ଥାର ଅଭାବରୁ ଭାରତରେ ସନ୍ତ୍ରାସବାଦୀ କାର୍ଯ୍ୟକଳାପ ବିଶେଷ ସକ୍ରିୟ ହୋଇପାରୁଛି ବୋଲି ମନେହୁଏ ।

ସନ୍ତ୍ରାସବାଦୀ କାର୍ଯ୍ୟକଳାପ ମାନବିକତାର ବିକାଶରେ ଘୋର ଅନ୍ତରାୟ ସୃଷ୍ଟି କରେ । ଅର୍ଥ ପାଇଁ ଓ ପ୍ରତିଶୋଧ ନିମିତ୍ତ ନିରୀହ ବ୍ୟକ୍ତିଙ୍କ ଉପରେ ଆକ୍ରମଣ, ବିଦ୍ୟାଳୟର ନିରୀହ ଛାତ୍ରମାନଙ୍କୁ ହତ୍ୟା, ଛୋଟ ଛୋଟ ଶିଶୁମାନଙ୍କୁ ଅପହରଣ ଓ ହତ୍ୟା ଦେଶର ପ୍ରଗତିକୁ କଦାପି ତ୍ୱରାନ୍ୱିତ କରିନ ପାରେ । ମଣିଷର ସ୍ୱଭାବ ସୁନ୍ଦର ଅଭିବୃଦ୍ଧିରେ ଏହା ପ୍ରତିବନ୍ଧକ ସୃଷ୍ଟି କରେ । ଆର୍ଥିକ ବିକାଶରେ ବାଧାଦିଏ । ମାନବର ଅନ୍ତଃପ୍ରକୃତିର ଅଭିବୃଦ୍ଧିରେ ଏହା ପ୍ରତିକୂଳ ବାତାବରଣ ସୃଷ୍ଟି କରିଥାଏ ।

ସାମାଜିକ ସଚେତନତା ଦ୍ୱାରା ଏହି ସନ୍ତ୍ରାସବାଦ କାର୍ଯ୍ୟକଳାପର ବିଲୋପ ସାଧନ ସମ୍ଭବ । ଅନ୍ତର୍ଜାତୀୟ ସ୍ତରରେ ଏକ ସଙ୍ଗଠନ ଆରମ୍ଭ ହୋଇ ଜାତି ଧର୍ମ ବର୍ଣ୍ଣ ତଥା ଆର୍ଥନୀତିକ ଓ ରାଜନୀତିକ ସ୍ୱାର୍ଥ ନିର୍ବିଶେଷରେ ସ୍ୱାର୍ଥହୀନ ଭାବରେ କାର୍ଯ୍ୟପ୍ରଣାଳୀ ପ୍ରସ୍ତୁତ ହୋଇପାରିଲେ ସନ୍ତ୍ରାସବାଦକୁ ନିଶ୍ଚିତ ରୂପେ ବିଲୋପ କରାଯାଇପାରିବ । ପ୍ରତିଶୋଧପରାୟଣ ମନୋଭାବ ପରିତ୍ୟାଗ କରି ସମବେତ ଭାବରେ ମାନବିକତାର ବିକାଶ ନିମିତ୍ତ କାର୍ଯ୍ୟ କଲେ ସମଗ୍ର ମାନବ ସମାଜର ଏହି ଅଭିଶପ୍ତ ରାକ୍ଷସକୁ ଦୂର କରାଯାଇପାରିବ । ମାନବିକତାବୋଧ ପ୍ରତି ଯଥାର୍ଥ ସମ୍ମାନବୋଧ ହିଁ ସମଗ୍ର ପୃଥିବୀରୁ ସନ୍ତ୍ରାସବାଦକୁ ଦୂର କରିପାରିବ ।

ଆଜି ସମଗ୍ର ବିଶ୍ୱ ସନ୍ତ୍ରାସବାଦ ଦ୍ୱାରା ଭୀତତ୍ରସ୍ତ । ସାମାଜିକ ଏବଂ ସାଂସ୍କୃତିକ ବିକାଶ ଏହା ଦ୍ୱାରା ବାଧାପ୍ରାପ୍ତ । ସନ୍ତ୍ରାସବାଦୀର ଅତ୍ୟାଚାର ଆଜି ଏକ ଆହ୍ୱାନ ଭାବରେ ମାନବ ସମାଜ ସମ୍ମୁଖରେ ଦଣ୍ଡାୟମାନ । ଏହି ପରିପ୍ରେକ୍ଷୀରେ ସମଗ୍ର ବିଶ୍ୱର ଜନସାଧାରଣ ଏକମନ ଏକପ୍ରାଣ ହୋଇ କାର୍ଯ୍ୟ କଲେ ଏବଂ ମାନବବାଦର ଯଥାର୍ଥ ସମ୍ମାନ ଦେଇପାରିଲେ ଏହି କ୍ରିୟାକଳାପ ଏକ ଅଭିଶାପ ନ ହୋଇ ବରଂ ଏକ ଆଶୀର୍ବାଦ ରୂପେ ମାନବସମାଜର କଲ୍ୟାଣ ସାଧନ କରିପାରିବ ।

●

# ଜାତିଭିତ୍ତିକ ସଂରକ୍ଷଣ ବ୍ୟବସ୍ଥା ଓ ମଣ୍ଡଳ କମିଶନ

(ଉପକ୍ରମ, ପ୍ରାଚୀନ ଭାରତରେ ଜାତି ସମସ୍ୟା, ସ୍ୱାଧୀନ ଭାରତ ଓ ଜାତି ସମସ୍ୟା, କାକା କାଲେକର କମିଶନ ରିପୋର୍ଟ, ମଣ୍ଡଳ କମିଶନ ରିପୋର୍ଟ, ମଣ୍ଡଳ କମିଶନ ରିପୋର୍ଟର ବିଭିନ୍ନ ଦିଗ, ଭାରତରେ ଏହାର ପ୍ରତିକ୍ରିୟା, ସମ୍ବିଧାନର ସଂରକ୍ଷଣ ନୀତି, ସଂରକ୍ଷଣ ନୀତିର ରାଜନୀତିକ ଦିଗ, ସାମାଜିକ ଦିଗ, ସମସ୍ୟା ଓ ସମାଧାନ, ଉପସଂହାର)

ଦ୍ୱିତୀୟ ତିରୋରୀ ଯୁଦ୍ଧ (୧୧୯୨)ରେ ପୃଥ୍ୱୀରାଜ ଚୌହାନ୍‌ଙ୍କର ନିଧନ ପରେ ଭାରତର ସ୍ୱାଧୀନ ରବି ଚିରଦିନ ପାଇଁ ଅସ୍ତ ହୋଇଗଲା । ଭାରତରେ ଶେଷ ସ୍ୱାଧୀନ ନରପତିଙ୍କ ନିଧନ ପରେ ଭାରତ ପରାଧୀନତାର ଯେଉଁ ଶୃଙ୍ଖଳରେ ବନ୍ଦୀ ହେଲା, ସେହି ଶୃଙ୍ଖଳରୁ ମୁକ୍ତି ହେବା ପାଇଁ ତାକୁ ଅପେକ୍ଷା କରିବାକୁ ପଡ଼ିଲା ଦୀର୍ଘ ୭୫୫ ବର୍ଷ । ବହୁ ଆନ୍ଦୋଳନ, ଆତ୍ମତ୍ୟାଗ ଓ କୃଚ୍ଛ ସାଧନା ପରେ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଭାରତ ଏକ ସ୍ୱାଧୀନ ଗଣତାନ୍ତ୍ରିକ ରାଷ୍ଟ୍ରରେ ପରିଣତ ହେଲା ଏବଂ ୧୯୫୦ ମସିହା ଜାନୁଆରୀ ୨୬ ତାରିଖ ଠାରୁ ଏକ ସାଧାରଣତନ୍ତ୍ର ରାଷ୍ଟ୍ରରୂପେ ସ୍ୱୀକୃତି ଲାଭ କଲା । ଏହି ସ୍ୱାଧୀନ ରାଷ୍ଟ୍ରର ସମ୍ବିଧାନ ପ୍ରଣୟନ କଲେ ଭାରତବର୍ଷର ଏକ ପଛୁଆ ଜାତିର ଜ୍ଞାନୀ, ପଣ୍ଡିତ, ଦୂରଦର୍ଶୀସମ୍ପନ୍ନ ବ୍ୟକ୍ତିତ୍ୱ ଡ଼କ୍ଟର ବାବାସାହେବ ଭୀମରାଓ ଆମ୍ବେଦକର । ଭାରତବର୍ଷର ଆଦର୍ଶ, ଆଶା-ଆକାଂକ୍ଷା, ଆଭିମୁଖ୍ୟର ପ୍ରତିଫଳନ ଘଟିଛି ସମ୍ବିଧାନରେ । ସମ୍ବିଧାନର ନୀତି ଏବଂ ନିୟମକୁ ଆଖି ଆଗରେ ରଖି ଭାରତର ଶାସନ ପରିଚାଳନା ମଧ୍ୟ ଚାଲିଛି । ଆବଶ୍ୟକତାକୁ ଦୃଷ୍ଟି ସମ୍ମୁଖରେ ରଖି ସମ୍ବିଧାନରେ ସଂଶୋଧନ ହେଉଛି । ଗୋଟିଏ ଦେଶର ବିଧିବ୍ୟବସ୍ଥା ଓ ପରିଚାଳନା ସମ୍ବିଧାନର ଲିଖିତ ଏବଂ ଅଲିଖିତ ପରମ୍ପରା ଦ୍ୱାରା ମୁଖ୍ୟତଃ ନିୟନ୍ତ୍ରିତ ହୋଇଥାଏ । ନାଗରିକମାନଙ୍କର ସମସ୍ୟା ଓ ଆବଶ୍ୟକତା ଅନୁଯାୟୀ ଏଥିରେ ମଧ୍ୟ କେତେକ କ୍ଷେତ୍ରରେ ପରିବର୍ତ୍ତନ ଅଣାଯାଇଥାଏ । ସମସ୍ତଙ୍କୁ ନ୍ୟାୟ ପ୍ରଦାନ କରିବା ସମ୍ବିଧାନର ଉଦ୍ଦେଶ୍ୟ । ଗୋଟିଏ ସ୍ୱାଧୀନ ରାଷ୍ଟ୍ରରେ ବସବାସ କରୁଥିବା ବିଭିନ୍ନ ଜାତି ତଥା ସମ୍ପ୍ରଦାୟର ବ୍ୟକ୍ତିବିଶେଷ ଯେପରି ସାମାଜିକ ନ୍ୟାୟ ପ୍ରଦାନ କ୍ଷେତ୍ରରେ ଅବହେଳିତ ବା ଅପାଂକ୍ତେୟ ମନେ ନ ହୁଅନ୍ତି, ସେଥିନିମିତ୍ତ ଏଥିରେ ତୀକ୍ଷ୍ଣ ଦୃଷ୍ଟି ପ୍ରଦାନ କରାଯାଇଛି । ଦେଶର ସାମୂହିକ ପ୍ରଗତି, ସମୃଦ୍ଧି ଓ ବିକାଶ କ୍ଷେତ୍ରରେ ସମସ୍ତଙ୍କର ସହଯୋଗ ଯେପରି ଏକାନ୍ତ ଆବଶ୍ୟକ, ମଣିଷ ପରି ବଞ୍ଚି ରହିବା ତଥା ସମାନ ସୁଯୋଗ ଲାଭ କରିବା କ୍ଷେତ୍ରରେ ମଧ୍ୟ ଅନୁରୂପ ସମାନ ଅଧିକାର ଆବଶ୍ୟକ । ସେଥିପାଇଁ ଆମର ସମ୍ବିଧାନ ଏକ ନମନୀୟ ସମ୍ବିଧାନ ରୂପେ ପରିଗଣିତ । ଏହି ସମ୍ବିଧାନରେ ବିଭିନ୍ନ ଜାତିମାନଙ୍କର ସମସ୍ୟାକୁ ଆଖି ଆଗରେ ରଖି, ବିଶେଷକରି ଅନଗ୍ରସର ଜାତିମାନଙ୍କର ସ୍ୱାର୍ଥରକ୍ଷା ନିମିତ୍ତ କେତେକ ସ୍ୱତନ୍ତ୍ର ପଦକ୍ଷେପ ଗ୍ରହଣ

କରାଯାଇଛି । ସମ୍ବିଧାନ ପ୍ରଣୟନ ସମୟରେ ଭବିଷ୍ୟତରେ ଏହି ସଂରକ୍ଷଣ ବ୍ୟବସ୍ଥା ଭାରତରେ ଯେ ଏକ ସମସ୍ୟା ରୂପେ ଦେଖାଦେବ, ତାହା କେହି କେବେ କଳ୍ପନା କରିନଥିଲେ । ସମସ୍ତ ସୁଯୋଗ ପ୍ରଦାନ ସତ୍ୱେ କେତେକ ସୁବିଧାବାଦୀ ବ୍ୟକ୍ତି ଏହାର ଦୁରୂପଯୋଗ କରି ବର୍ଣ୍ଣ ବ୍ୟବସ୍ଥାକୁ ଏକ ତିକ୍ତ ଏବଂ ସଂକୀର୍ଣ୍ଣ ସ୍ତରରେ ପହଞ୍ଚାଇ ସେଥିରୁ ଫାଇଦା ହାସଲ କରୁଛନ୍ତି । ସାଂପ୍ରତିକ ଅବସ୍ଥାରେ ଜାତିଭିତ୍ତିକ ସଂରକ୍ଷଣ ବ୍ୟବସ୍ଥା ଗୋଟିଏ ବିରାଟ ସମସ୍ୟା ହୋଇ ଦେଖାଦେଇଛି ଏବଂ ଏହାଦ୍ୱାରା ରାଷ୍ଟ୍ରୀୟ ସ୍ତରରେ ପ୍ରଭୂତ କ୍ଷତି ସାଧିତ ହେଉଛି ।

ବୈଦିକ ଯୁଗରୁ ପ୍ରାଚୀନ ଜଗତରେ ବର୍ଣ୍ଣ ବ୍ୟବସ୍ଥା ରହିଥିଲା । ଗୀତାର 'ଚତୁର୍ବର୍ଣ୍ଣ୍ୟଃ ମୟା ସୃଷ୍ଟା ...' ଶ୍ଳୋକରୁ ଚାରିବର୍ଣ୍ଣ ବ୍ୟବସ୍ଥା ସମ୍ପର୍କରେ ସୂଚନା ମିଳିଥାଏ । ମାତ୍ର ଏହା ଜାତିଭେଦକୁ ସୂଚାଉ ନ ଥିଲା । ସାମାଜିକ ସମ୍ପର୍କ ଦୃଷ୍ଟିରୁ ପରସ୍ପର ମଧ୍ୟରେ ସୌହାର୍ଦ୍ଦ୍ୟ ରହିଥିଲା । ରାଜତନ୍ତ୍ରର ବିକାଶ ଯୋଗୁଁ ଏହି ବର୍ଣ୍ଣବ୍ୟବସ୍ଥା ଅନ୍ୟରୂପ ଧାରଣ କଲା । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ବ୍ୟବସ୍ଥାରେ ଜାତିକୁ ଚିହ୍ନିବାର ଓ ତା'ର କାର୍ଯ୍ୟକୁ ଜାଣିବା ନିମିତ୍ତ ଉଦ୍ୟମ ହେଲା । ଅଥଚ କିଛି କାଳ ପୂର୍ବରୁ କର୍ମର ସୁକ୍ଷମ ବଣ୍ଟନ ନିମିତ୍ତ ଚାରିଜାତିର ପରିକଳ୍ପନା କରାଯାଇଥିଲା । କେତେକ କାର୍ଯ୍ୟରେ ଏକ ନିର୍ଦ୍ଦିଷ୍ଟ ଦଳକୁ ନିପୁଣ କରିବା ନିମିତ୍ତ କାର୍ଯ୍ୟବଣ୍ଟନକୁ ଭିତ୍ତି କରି ଜାତିପ୍ରଥା ସୃଷ୍ଟି ହେଲା । ଦେବପୂଜା ନିମିତ୍ତ ବ୍ରାହ୍ମଣ, ଦେଶରକ୍ଷା ନିମିତ୍ତ କ୍ଷତ୍ରିୟ, ବ୍ୟବସାୟବାଣିଜ୍ୟ ନିମିତ୍ତ ବୈଶ୍ୟ ଓ ଉକ୍ତ ତିନୋଟି ଗୋଷ୍ଠୀର ବିଭିନ୍ନ ସେବା କାର୍ଯ୍ୟରେ ନିୟୋଜିତ ହେବାପାଇଁ ଶୂଦ୍ରଙ୍କ ଉପରେ ଦାୟିତ୍ୱ ଅର୍ପଣ କରାଯାଇଥିଲା । ସାମନ୍ତବାଦୀ ସଭ୍ୟତାର ବିକାଶକ୍ରମେ ସମାଜରେ ଭେଦଭାବର ପ୍ରାଚୀର ଠିଆ ହେଲା ଏବଂ ଛୁଆଁ ଅଛୁଆଁ ଜାତିର ସୂତ୍ରପାତ ହେଲା । ଫଳରେ ଏହି ଜାତି ବିଭିନ୍ନ କ୍ଷେତ୍ରରେ ପଛରେ ପଡ଼ିଗଲେ । ଶିକ୍ଷା, ସଂସ୍କୃତି ଆଦି ଦିଗରୁ ଏମାନେ ଧୀରେ ଧୀରେ ଅନୁନ୍ନତ ଦିଗକୁ ଧାବିତ ହେବାକୁ ଲାଗିଲେ । ପରାଧୀନ ଭାରତବର୍ଷରେ ବିଭିନ୍ନ ସମୟରେ ମୋଗଲ,ପଠାଣ, ମରହଟ୍ଟା ଏବଂ ଇଂରେଜମାନଙ୍କ ଶାସନବେଳେ ଜାତିଭେଦ ପ୍ରଥା ଉତ୍କଟ ରୂପ ଧାରଣ କରିଥିଲା । ଏହି ଅନଗ୍ରସର ଜାତି ପ୍ରତି କାହାରି ମନରେ ସମ୍ବେଦନଶୀଳ ଭାବ ନ ଥିଲା । ପରନ୍ତୁ ବିଭିନ୍ନ କ୍ଷେତ୍ରରେ ସେମାନେ ଉଚ୍ଚବର୍ଗ ଓ ଶାସକମାନଙ୍କ ଦ୍ୱାରା ଶୋଷିତ ହେଉଥିଲେ । ଭାରତୀୟ ରାଜନୈତିକ ମାନଚିତ୍ରରେ ମହାତ୍ମାଗାନ୍ଧିଙ୍କ ଆବିର୍ଭାବ ପରେ ଏମାନଙ୍କର ଅବସ୍ଥା ପ୍ରତି କେତେକ ପରିମାଣରେ ଦୃଷ୍ଟି ପ୍ରଦାନ କରାଗଲା । ଏହି ଅନଗ୍ରସର ଜାତିକୁ ମହାତ୍ମାଗାନ୍ଧି ହରିଜନ ନାମରେ ନାମିତ କଲେ । ଏମାନଙ୍କ ମଧ୍ୟରେ ଯୁଗ ଯୁଗ ଧରି ରହି ଆସିଥିବା ଭେଦଭାବର ପ୍ରାଚୀରକୁ ଭାଙ୍ଗିବାକୁ ଚେଷ୍ଟା କରିଥିଲେ । ସେମାନଙ୍କ ଆର୍ଥିକ ପ୍ରଗତି ଓ ସାମାଜିକ ବିକାଶ ନିମିତ୍ତ ସ୍ୱତନ୍ତ୍ର ଭାବରେ ଦୃଷ୍ଟି ପ୍ରଦାନ କରିଥିଲେ । ମହାତ୍ମାଗାନ୍ଧିଙ୍କ ଆବିର୍ଭାବ ପରେ ଭାରତୀୟ ସାମାଜିକ ବ୍ୟବସ୍ଥାରେ ଏମାନଙ୍କ ପ୍ରତି ଯେଉଁ ଦୃଷ୍ଟିଭଙ୍ଗୀ ରହିଆସିଥିଲା, ସେଥିରେ ଲକ୍ଷଣୀୟ ପରିବର୍ତ୍ତନ ସାଧିତ ହେବାକୁ ଲାଗିଲା ।

୧୯୪୭ ମସିହାରେ ଭାରତ ସ୍ୱାଧୀନ ହେବା ପରେ ଏହି ଅନଗ୍ରସର ଜାତିର ଉତ୍‌ଥାନ ନିମିତ୍ତ ପଦକ୍ଷେପମାନ ଗ୍ରହଣ କରାଗଲା । ସେମାନଙ୍କର ଦୃଷ୍ଟିଭଙ୍ଗୀର ପରିବର୍ତ୍ତନ ପାଇଁ ଚେଷ୍ଟା

ଅବ୍ୟାହତ ରହିଲା । ସମ୍ବିଧାନରେ ଏମାନଙ୍କ ନିମିତ୍ତ ସ୍ୱତନ୍ତ୍ର ବ୍ୟବସ୍ଥା ମଧ୍ୟ କରାଗଲା । ଆର୍ଥନୀତିକ, ସାମାଜିକ, ରାଜନୀତିକ ଓ ସାଂସ୍କୃତିକ କ୍ଷେତ୍ରରେ ଏହି ଜାତିକୁ କେତେକ କ୍ଷେତ୍ରରେ ବିଶେଷ ସୁବିଧାମାନ ପ୍ରଦାନ କରାଗଲା । ସ୍ୱତନ୍ତ୍ର ବିଭାଗମାନ ଖୋଲାଯାଇ ପ୍ରଚୁର ଅର୍ଥ ଯୋଗାଇ ଦିଆଗଲା । ଜାତିଭେଦ ପ୍ରଥାକୁ ଏକ ଘୃଣ୍ୟ ଓ ନିନ୍ଦିତ ପ୍ରଥା ରୂପେ ଗ୍ରହଣ କରାଗଲା । ଏହା ଗୋଟିଏ ସାମାଜିକ ଅପରାଧ ରୂପେ ବିବେଚିତ ହେଲା । ହରିଜନ ଓ ଆଦିବାସୀ କମିଶନଙ୍କୁ ସେମାନଙ୍କର ସାମଗ୍ରିକ ବିକାଶ ପାଇଁ ଅଧିକ କ୍ଷମତା ମଧ୍ୟ ପ୍ରଦାନ କରାଗଲା । କ୍ରମେ ଏହି ସଂରକ୍ଷଣ ନୀତିର ପ୍ରଭାବ ସମାଜର ବିଭିନ୍ନ କ୍ଷେତ୍ରରେ ଅନୁଭୂତ ହେଲା । ଯେଉଁମାନେ ଏହି ଜାତିର ବିକାଶ ନିମିତ୍ତ କଣ୍ଠ ଫଟାଇ ଚିତ୍କାର କରନ୍ତି, ବାସ୍ତବରେ ସେମାନେ ଏମାନଙ୍କର ପ୍ରକୃତ ଉତ୍‌ଥାନ ଚାହାନ୍ତି ନାହିଁ । ଚିତ୍କାର ଅନ୍ତରାଳରେ ଏହି ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀଙ୍କର ବ୍ୟକ୍ତିଗତ ଫାଇଦା ରହିଛି । ଭୋଟ ରାଜନୀତିରେ ଏହାର ତୀବ୍ର ପ୍ରତିକ୍ରିୟା ଲକ୍ଷ୍ୟ କରାଯାଇଥାଏ । ସାମୂହିକ ଭାବରେ ଦଳୀୟ ସ୍ୱାର୍ଥ ବା ବ୍ୟକ୍ତିଗତ ସ୍ୱାର୍ଥ ଉଚ୍ଚତର ହୋଇଥିବାରୁ ଏବଂ ଅନଗ୍ରସର ଜାତିର ଉତ୍‌ଥାନ ନିମିତ୍ତ ପ୍ରକୃତ ଆନ୍ତରିକତାର ଅଭାବ ରହୁଥିବାରୁ, ସମସ୍ତ ସୁବିଧା ସୁଯୋଗ ସତ୍ତ୍ୱେ ଏହି ଜାତି ଯେଉଁ ତିମିରେକୁ ସେହି ତିମିରେ । ସେମାନଙ୍କର ସାମୂହିକ ବିକାଶ ଏକ ଧୂଆଁ ବାଣରେ ପରିଣତ ହୋଇଛି । ସ୍ୱାଧୀନ ଭାରତରେ ମଧ୍ୟ ଏଯାବତ୍ ଏହି ସଂରକ୍ଷଣ ବ୍ୟବସ୍ଥା ସାମୂହିକ ଅନୁମୋଦନ ଲାଭ କରିପାରି ନାହିଁ ।

ସମାଜରେ ପଛୁଆ ବର୍ଗ ଶ୍ରେଣୀଙ୍କ ସାମାଜିକ ଓ ଆର୍ଥିକ ଉନ୍ନତି ନିମିତ୍ତ ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କ ନିର୍ଦ୍ଦେଶ କ୍ରମେ ତା ୨୯/୧/୧୯୫୩ ମସିହାରେ ଶ୍ରୀଯୁକ୍ତ କାକା କାଲେକରଙ୍କ ଅଧକ୍ଷତାରେ ଏକ କମିଟି ଗଠିତ ହୋଇଥିଲା । ପଛୁଆ ଜାତିଙ୍କୁ ଚିହ୍ନଟ ଏବଂ ସେମାନଙ୍କର ଉନ୍ନତି ନିମିତ୍ତ କେତେକ ପଦକ୍ଷେପ ଗ୍ରହଣ ଥିଲା ଏହି କମିଶନଙ୍କ ଉଦ୍ଦେଶ୍ୟ । ୧୯୫୫ ମସିହାରେ ଏହି କମିଶନ ତତ୍କାଳୀନ ରାଷ୍ଟ୍ରପତିଙ୍କୁ ତାଙ୍କର ରିପୋର୍ଟ ପ୍ରଦାନ କରିଥିଲେ । ତାଙ୍କ ତାଲିକାରେ ସର୍ବମୋଟ ୨୩୯୯ ପଛୁଆ ଜାତିଙ୍କ ସମ୍ପର୍କରେ ଉଲ୍ଲେଖ କରାଯାଇଥିଲା । ଜାତିଭିତ୍ତିକ ସଂରକ୍ଷଣ ଦ୍ୱାରା ମୁସଲମାନ ଓ ଇସାଇ ଲୋକମାନେ କ୍ଷତିଗ୍ରସ୍ତ ହେବେ ବୋଲି ସେ ତାଙ୍କ ରିପୋର୍ଟରେ ସ୍ପଷ୍ଟ ଉଲ୍ଲେଖ କରିଥିଲେ । ସରକାରୀ ସେବା ସଂସ୍ଥା (ଚାକିରି) ରେ ସ୍ଥାନ ସଂରକ୍ଷଣକୁ ସେ ବିରୋଧ କରିଥିଲେ । ଜାତିପ୍ରଥା ଚିହ୍ନଟ ଦ୍ୱାରା ସମାଜର ସାମୂହିକ ବିକାଶ ବାଧାପ୍ରାପ୍ତ ହେବ ବୋଲି ସେ ଅନୁଭବ କରିଥିଲେ । ଯେଉଁମାନେ ଶିକ୍ଷା କ୍ଷେତ୍ରରେ ଅବହେଳିତ ହୋଇଛନ୍ତି, ତାହା ସେମାନଙ୍କର ଦୋଷ ଏବଂ ବର୍ତ୍ତମାନ ଯଦି ସେମାନେ ପ୍ରକୃତ ଶିକ୍ଷାର ଆବଶ୍ୟକତା ଅନୁଭବ କରୁଥାନ୍ତି, ତେବେ ସର୍ବସାଧାରଣଙ୍କ ରାଜକୋଷରେ ସେମାନେ ବୋଝ ନ ହୋଇ ବରଂ ନିଜ ଚେଷ୍ଟାରେ ସେମାନେ ଶିକ୍ଷା ଲାଭ କରିବା ଉଚିତ ବୋଲି ମତବ୍ୟକ୍ତ କରିଥିଲେ । ସମାଜର ସାମୂହିକ କଲ୍ୟାଣ ପାଇଁ କୌଣସି ନିର୍ଦ୍ଦିଷ୍ଟ ଜାତିଙ୍କ ନିମିତ୍ତ ସ୍ଥାନ ସଂରକ୍ଷଣ ବ୍ୟବସ୍ଥା ଜାତୀୟ ପ୍ରଗତିର ପରିପନ୍ଥୀ ବୋଲି ସେ ମତ ଦେଇଥିଲେ । ଏହାଦ୍ୱାରା ଏକ ଜନମଙ୍ଗଳ ରାଷ୍ଟ୍ର ବିବିଧ ବିରୋଧର ସମ୍ମୁଖୀନ ହେବ ବୋଲି ସେ ଚିନ୍ତାବ୍ୟକ୍ତ

କରିଥିଲେ । ଏତଦ୍ ବ୍ୟତୀତ ସେ ତାଙ୍କ ରିପୋର୍ଟରେ ସରକାରଙ୍କୁ କେତେକ ସୁପାରିଶ କରିଥିଲେ । ତାଙ୍କ ସୁପାରିଶ ଅନୁଯାୟୀ ହରିଜନ, ଗିରିଜନ, ମହିଳା ଆଦିଙ୍କୁ ପଛୁଆ ଜାତି ରୂପେ ଘୋଷଣା କରାଯିବା ଉଚିତ । ଏହି ପଛୁଆବର୍ଗଙ୍କ ନିମିତ୍ତ ବୈଷୟିକ ଶିକ୍ଷାନୁଷ୍ଠାନମାନଙ୍କରେ ଶତକଡ଼ା ୭୦ ଭାଗ, ଦ୍ୱିତୀୟ ଶ୍ରେଣୀ ଚାକିରିରେ ଶତକଡ଼ା ୩୩ ଭାଗ, ତୃତୀୟ ଶ୍ରେଣୀ ଚାକିରିରେ ଶତକଡ଼ା ୪୦ ଭାଗ ଏଥିନିମିତ୍ତ ସଂରକ୍ଷିତ ହେବା ଆବଶ୍ୟକ । ସେ ତତ୍କାଳୀନ ଭାରତବର୍ଷର ବିଭିନ୍ନ ଦିଗକୁ ଆଲୋଚନା କରି ତାଙ୍କ ରିପୋର୍ଟରେ ସମୟୋଚିତ ଉପଦେଶ ପ୍ରଦାନ କରିଥିଲେ । ମାତ୍ର ତତ୍କାଳୀନ ସରକାର ତାଙ୍କ ରିପୋର୍ଟ ଉପରେ ବିଶେଷ ଗୁରୁତ୍ୱ ପ୍ରଦାନ କରିନଥିଲେ । ପରନ୍ତୁ, ବିଭିନ୍ନ ସମୟରେ ରାଜନୈତିକ ଫାଇଦା ଲାଭ ଉଦ୍ଦେଶ୍ୟରେ ବିଭିନ୍ନ ସଂରକ୍ଷିତ କମିଟି ଗଠନ କରାଯାଇ ଏହି ବ୍ୟବସ୍ଥାକୁ ଅଧିକ ଜଟିଳ କରାଯାଇଛି । ଫଳରେ ବିଭିନ୍ନ ସମୟରେ ଏଥିପାଇଁ ଆନ୍ଦୋଳନ, ଭଙ୍ଗାରୁଜା, ଆତ୍ମଦାହ ପରି ବହୁ ଅଶୋଭନୀୟ ପରିସ୍ଥିତି ସୃଷ୍ଟି ହୋଇଛି । ଏହାଦ୍ୱାରା ଭାରତୀୟ ସାମାଜିକ ବ୍ୟବସ୍ଥା ବିପର୍ଯ୍ୟୟର ସମ୍ମୁଖୀନ ହୋଇଛି ।

ମୋରାର୍ଜୀ ଦେଶାଇଙ୍କ ପ୍ରଧାନମନ୍ତ୍ରୀତ୍ୱ ସମୟରେ ସଂରକ୍ଷଣ ବ୍ୟବସ୍ଥାର ସଂଶୋଧନ କରି ଏକ ନୂତନ କମିଟି ଗଠନ ନିମିତ୍ତ ନିର୍ଦ୍ଦେଶ ପ୍ରଦାନ କରାଯାଇଥିଲା । ୧୯୭୮ ମସିହା ଡ଼ିସେମ୍ବର ୨୦ ତାରିଖରେ ଏହିପରି ଏକ କମିଶନ ଗଠିତ ହେବାର ଘୋଷଣା କରାଯାଇଥିଲା । ତଦନୁଯାୟୀ ବିନ୍ଧେଶ୍ୱରୀ ପ୍ରସାଦ ମଣ୍ଡଳଙ୍କ ଅଧକ୍ଷତାରେ ୬ ଜଣ ସଦସ୍ୟଙ୍କୁ ନେଇ ଏହି କମିଶନ ଗଠିତ ହୋଇଥିଲା ଏବଂ ଏହାହିଁ ସର୍ବପରିଚିତ ମଣ୍ଡଳ କମିଶନ । ୧୯୮୦ ମସିହାରେ ଶ୍ରୀମତୀ ଇନ୍ଦିରାଗାନ୍ଧୀ ପ୍ରଧାନମନ୍ତ୍ରୀ ଥିବା ସମୟରେ ଏହି କମିଶନ ତାଙ୍କ ରିପୋର୍ଟ ପ୍ରଦାନ କରିଥିଲେ । ଜାତିଭିତ୍ତିକ ସଂରକ୍ଷଣ ବ୍ୟବସ୍ଥାକୁ ଭିତ୍ତି କରି ଏହି କମିଶନ ତାଙ୍କ ରିପୋର୍ଟ ପ୍ରସ୍ତୁତ କରିଥିଲେ । ଦୂରଦୃଷ୍ଟିସମ୍ପନ୍ନା ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀ ସମାଜରେ ଏହା ପ୍ରତିକ୍ରିୟା ସୃଷ୍ଟି କରିବ ବୋଲି ଅନୁଭବ କରି ଦୀର୍ଘଦିନ ପର୍ଯ୍ୟନ୍ତ କମିଶନଙ୍କ ରିପୋର୍ଟକୁ ଫାଇଲ ମଧ୍ୟରେ ଚାପି ରଖିଥିଲେ । ମଣ୍ଡଳ କମିଶନ ତାଙ୍କ ରିପୋର୍ଟରେ ସମୁଦାୟ ଜନସଂଖ୍ୟାର ମୋଟ୍ ୫୨ ଭାଗ ପଛୁଆ ଜାତି ବୋଲି ମତବ୍ୟକ୍ତ କରିବା ସଙ୍ଗେ ସଙ୍ଗେ ପ୍ରାୟ ୧୪୦ଟି ପଛୁଆ ଜାତିଙ୍କୁ ଚିହ୍ନଟ କରିଥିଲେ । ଏହି ପଛୁଆ ଜାତିକୁ ବିଭିନ୍ନ ରାଜ୍ୟାନୁଯାୟୀ ଭିନ୍ନ ଭିନ୍ନ ଭାବରେ ଉଲ୍ଲେଖ କରାଯାଇଥିଲା । ଏହି ଜାତିପ୍ରଥା ହିନ୍ଦୁ ଜାତିରୁ ସୃଷ୍ଟି ଲାଭ କରିଥିବାରୁ ଅଣହିନ୍ଦୁମାନଙ୍କ କ୍ଷେତ୍ରରେ ଏହା କାର୍ଯ୍ୟକାରୀ ହୋଇ ନ ପାରିବାରୁ ସାମାଜିକ ବୈଷମ୍ୟ ସୃଷ୍ଟି ହେବାର ସମ୍ଭାବନା ରହିଥିଲା । ଆର୍ଥିକ ସ୍ଥିତିକୁ ଆଖିରେ ନ ରଖି ଜାତି ଅନୁଯାୟୀ ସଂରକ୍ଷଣ ବ୍ୟବସ୍ଥା ଦ୍ୱାରା ଉଚିତ ନ୍ୟାୟ ପ୍ରଦାନ କରାଯାଇ ପାରିଲା ନାହିଁ । ପୂର୍ବରୁ ଉଚ୍ଚନ୍ୟାୟାଳୟ ସଂରକ୍ଷଣ ବ୍ୟବସ୍ଥା ଶତକଡ଼ା ୫୦ ଭାଗରୁ ଅଧିକ ହୋଇପାରିବ ନାହିଁ ବୋଲି ନିର୍ଦ୍ଦେଶ ଦେଇଥିଲେ । ଅତୀତରେ ହରିଜନ ଓ ଆଦିବାସୀମାନଙ୍କ ନିମିତ୍ତ ଶତକଡ଼ା ୨୨.୫ ଭାଗ ସଂରକ୍ଷଣ ରହିଥିଲା, ମଣ୍ଡଳ କମିଶନଙ୍କ ରିପୋର୍ଟରେ ଅନୁନ୍ନତବର୍ଗଙ୍କ ପାଇଁ ଶତକଡ଼ା ୨୭ ଭାଗ ସ୍ଥାନ ସଂରକ୍ଷଣ ନିମିତ୍ତ ସୁପାରିଶ କରିଥିଲେ । ସମସ୍ତ ସଂରକ୍ଷଣ ବ୍ୟବସ୍ଥା ଶତକଡ଼ା ୫୦ଭାଗରୁ ଅଧିକ ହୋଇଗଲା । ଏତଦ୍ ବ୍ୟତୀତ ସାମରିକ କର୍ମଚାରୀ, ମହିଳା, ଶାରୀରିକ ଅକ୍ଷମ, ପଛୁଆ ବର୍ଗ, ହରିଜନ, ଆଦିବାସୀ ଆଦିଙ୍କର ଏତେ

ପରିମାଣରେ ସଂରକ୍ଷଣ ବୃଦ୍ଧି ପାଇଲା, ଯଦ୍ୱାରା ସାଧାରଣବର୍ଗଙ୍କ ପାଇଁ ବିଭିନ୍ନ କ୍ଷେତ୍ରରେ ସରକାରୀ ସେବା ସମ୍ପୂର୍ଣ୍ଣରୂପେ ସଙ୍କୁଚିତ ହୋଇପଡ଼ିଲା । ଏହି ପଛୁଆ ବର୍ଗଙ୍କ ଉନ୍ନତି ନିମିତ୍ତ ସରକାର ଆବଶ୍ୟକୀୟ ଖର୍ଚ୍ଚ ବହନ କରିବା ଉଚିତ ବୋଲି କମିଶନ ତାଙ୍କ ରିପୋର୍ଟରେ ସୁପାରିଶ କରିଥିଲେ ।

ମଣ୍ଡଳ କମିଶନ୍‌ଙ୍କ ରିପୋର୍ଟରେ ଯେଉଁ ବିଭିନ୍ନ ଦିଗ ରହିଛି, ତାକୁ ସଂକ୍ଷେପରେ ଆଲୋଚନା କରାଯାଇପାରେ । ଏହାର ଉଭୟ ସପକ୍ଷ ଓ ବିପକ୍ଷରେ ଯୁକ୍ତି ରହିଛି । କମିଶନ୍‌ଙ୍କ ରିପୋର୍ଟରେ ଆବହମାନ କାଳରୁ ହିନ୍ଦୁ ସମାଜର ଯେଉଁ ପରମ୍ପରା ରହିଛି, ତାହାକୁ ଗତିହୀନ, ପରିବର୍ତ୍ତନରହିତ, ସ୍ଥାଣୁ, ସାମାଜିକ ପ୍ରକ୍ରିୟା ବୋଲି ସମାଲୋଚନା କରାଯାଇଛି । ସାମାଜିକ ପରିବର୍ତ୍ତନ ସମ୍ପର୍କରେ ଏଥିରେ ଯାହା ଉଲ୍ଲେଖ କରାଯାଇଛି, ତାହା ସମ୍ପୂର୍ଣ୍ଣ ରୂପେ ପୁରୋଦୃଷ୍ଟିହୀନ । ଦକ୍ଷିଣଭାରତ ପ୍ରତି ଏହି ରିପୋର୍ଟରେ ପକ୍ଷପାତିତା କରାଯାଇଥିବା ଅନୁଭୂତ ହୋଇଥାଏ । ଚେନ୍ନାଇରେ ବ୍ରାହ୍ମଣଙ୍କ ସଂଖ୍ୟା ନ୍ୟୂନ ହୋଇଥିବାରୁ ସେମାନେ ଏଥିରେ ଉପେକ୍ଷିତ ହୋଇଛନ୍ତି । ସଂରକ୍ଷଣ ବ୍ୟବସ୍ଥା ଆୟକୁ ଭିତ୍ତିକରି ସୃଷ୍ଟି ହେବା ପରିବର୍ତ୍ତେ, ଜାତିକୁ ଭିତ୍ତିକରି ନିର୍ଦ୍ଦିଷ୍ଟ ହୋଇଥିବାରୁ ଅନଗ୍ରସର ଜାତିର ମଧ୍ୟସ୍ଥ ବା ଥିଲାବାଲାଙ୍କର କେବଳ ସ୍ୱାର୍ଥସାଧନ କରିବ । ଉଚ୍ଚ ଜାତିରେ ଥିବା ଦରିଦ୍ର ବ୍ୟକ୍ତିଗଣ ଏହାଦ୍ୱାରା ଉପକୃତ ହୋଇପାରିବେ ନାହିଁ । ଶିକ୍ଷାର ଗୁଣାତ୍ମକ ମୂଲ୍ୟ ଉପରେ ଏଥିରେ ପ୍ରାଧାନ୍ୟ ଦିଆଯାଇ ନ ଥିବାରୁ ପ୍ରଚଳିତ ଶିକ୍ଷା ପଦ୍ଧତି ଦୁର୍ବଳ ହୋଇପଡ଼ିବାର ସମ୍ଭାବନା ଅଧିକ । ଗରିବମାନଙ୍କ ନିମିତ୍ତ ଉଦ୍ଦିଷ୍ଟ ଯୋଜନା ସଫଳ ହେବାର ସମ୍ଭାବନା କମ୍ । କାରଣ ସଂରକ୍ଷଣ ବ୍ୟବସ୍ଥା ଦ୍ୱାରା ଏହା ଉପରେ ପ୍ରତ୍ୟକ୍ଷ ବା ପରୋକ୍ଷ ପ୍ରଭାବ ପଡ଼ିବ । ଜାତି ଏବଂ ଧର୍ମ ଭିତ୍ତିରେ ସଂରକ୍ଷଣ ବ୍ୟବସ୍ଥା ପ୍ରସ୍ତୁତ କରାଯାଇଥିବାରୁ ଧର୍ମ ନିରପେକ୍ଷତାର ଭିତ୍ତି ଭୁଶୁଡ଼ି ପଡ଼ିବ ଏବଂ 'ଜାତି' ଗୋଟିଏ ଚିରସ୍ଥାୟୀ ନ୍ୟସ୍ତ-ସ୍ୱାର୍ଥ ସତ୍ତାରେ ପରିଣତ ହୋଇଯିବ । ଜାତୀୟତା ବିଖଣ୍ଡିତ ହେବ । ବିଭେଦକାରୀ ଶକ୍ତି ସୃଷ୍ଟି ହେବ । ଭାରତୀୟ ସମ୍ବିଧାନର ୧୫(୪) ଏବଂ (୧୬) (୪) ଧାରାରେ ସୁଯୋଗର ସମତା ନୀତି ସମ୍ପର୍କରେ ଯାହା ଉଲ୍ଲେଖ ରହିଛି, ତାହା ଏହି ସଂରକ୍ଷଣ ନୀତି ଦ୍ୱାରା ବ୍ୟାହତ ହେବ । ମଣ୍ଡଳ କମିଶନଙ୍କ ସପକ୍ଷରେ ମଧ୍ୟ କେତେକ ଯୁକ୍ତି ରହିଛି । ଜାତି ଜାତି ମଧ୍ୟରେ ରହି ଆସିଥିବା ସାମାଜିକ ବୈଷମ୍ୟ ଏହା ଦ୍ୱାରା ଦୂରୀଭୂତ ହୋଇପାରିବ ବୋଲି କମିଶନ ଆଶା ପ୍ରକାଶ କରିଛନ୍ତି । ପୁନରାୟ ସାମାଜିକ ନ୍ୟାୟ ପ୍ରତିଷ୍ଠା ଦିଗରେ ଏହା ସହାୟତା କରିପାରିବ । ସାମାଜିକ ଗତିଶୀଳତା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ସୁଯୋଗର ସମତା ସୃଷ୍ଟି ହୋଇପାରିବ । ଚିର ଅବହେଳିତ କେତେକ ଜାତି ଏହାଦ୍ୱାରା ବିଶେଷ ଉପକୃତ ହେବେ ତେଣୁ ସାମାଜିକ ଓ ଆର୍ଥନୀତିକ ସମସ୍ୟା ବହୁପରିମାଣରେ ଦୂରୀଭୂତ ହୋଇପାରିବ । ଶାସନ କ୍ଷେତ୍ରରେ ମଧ୍ୟ ସହଯୋଗ ବୃଦ୍ଧିପାଇବ । ବିଭିନ୍ନ ଗୋଷ୍ଠୀର ଯୋଗଦାନ ଶାସନକୁ ଅଧିକ ସକ୍ରିୟ ଓ ସହଯୋଗମୂଳକ କରିବ । ସଂରକ୍ଷଣ ଦ୍ୱାରା ବିଭିନ୍ନ ଗୋଷ୍ଠୀଙ୍କ ଯୋଗଦାନ ଦ୍ୱାରା ଭାବର ଆଦାନପ୍ରଦାନ, ନୂତନ ଧାରଣା ତଥା ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆସିବ ଏବଂ ଏକଦେଶଦର୍ଶିତା ଦୂର ହେବ । ହିନ୍ଦୁ ମୌଳିକତାବାଦର ପ୍ରତିହତ ହେବା ସହିତ ଜାତୀୟ ସଂହତି ବୃଦ୍ଧି ପାଇବ । ଜାତି

ଏକ ସାମାଜିକ ମାନ; ମାତ୍ର ଦାରିଦ୍ର୍ୟ ଏକ ଅର୍ଥନୈତିକ ମାନ । ଏହି ସଂରକ୍ଷଣ ଯୋଗୁଁ ଜାତି ଏକକ ବୋଲି ବିଚାର ହେବ । ବିଭିନ୍ନ ଯୋଜନାର ରୂପାୟନରେ ସଂରକ୍ଷଣ ବ୍ୟବସ୍ଥା ସହଯୋଗର ଭିତ୍ତିଭୂମି ପ୍ରସ୍ତୁତ କରିବା ସଙ୍ଗେ ସଙ୍ଗେ ଏହାକୁ ପ୍ରଶସ୍ତ କରିବ । ସଂରକ୍ଷଣରେ ସବୁ ଜାତିର ସମାନ ଭାଗୀଦାର ଯୋଗୁଁ ଏହା ଅଧିକ ଗଣତାନ୍ତ୍ରିକ ହୋଇପାରିବ । ସବୁଠାରୁ ଉଲ୍ଲେଖଯୋଗ୍ୟ ବିଷୟ ଏହି ଯେ ସଂରକ୍ଷଣ ବ୍ୟବସ୍ଥା ଦ୍ୱାରା ସମସ୍ତେ ଏକ ଏବଂ ଭାରତର ବିକାଶରେ ସବୁ ଜାତିର ସମାନ ଭୂମିକା ରହିଛି ବୋଲି ଅନୁଭୂତ ହେବ । ତେଣୁ ମଣ୍ଡଳ କମିଶନଙ୍କ ଉଭୟ ସପକ୍ଷ ଓ ବିପକ୍ଷରେ ଏହିପରି କେତେକ ଯୁକ୍ତି ରହିଥିବାର ଦେଖାଯାଏ ।

ତା ୭/୮/୧୯୯୦ ମସିହାରେ କେନ୍ଦ୍ରରେ ଭି.ପି.ସିଂହ ପ୍ରଧାନମନ୍ତ୍ରୀ ଥିବା ସମୟରେ ମଣ୍ଡଳ କମିଶନଙ୍କ ଏହି ରିପୋର୍ଟକୁ ଯଥାଶୀଘ୍ର କାର୍ଯ୍ୟକାରୀ କରିବାକୁ ପାର୍ଲାମେଣ୍ଟରେ ଘୋଷଣା କଲେ । ସାମାଜିକ ଓ ଶିକ୍ଷା କ୍ଷେତ୍ରରେ ଥିବା ଅନଗ୍ରସର ଜାତିମାନଙ୍କ ପାଇଁ ଭାରତ ସରକାର ଓ ତାଙ୍କ ଅଧୀନସ୍ଥ ଉଦ୍ୟୋଗଗୁଡ଼ିକରେ ଶତକଡ଼ା ୨୭ ଭାଗ ଚାକିରି ସଂରକ୍ଷଣ ନିମିତ୍ତ ଘୋଷଣା କଲେ । ତା ୪/୪/୧୯୯୦ ମସିହାରେ ଆମ୍ବେଦକର ଶତବାର୍ଷିକୀ ଉତ୍ସବରେ ପ୍ରଧାନମନ୍ତ୍ରୀ ଏହି ବର୍ଷକୁ 'ସାମାଜିକ ନ୍ୟାୟ ବର୍ଷ' ରୂପେ ପାଳନ କରାଯିବାକୁ ମଧ ଘୋଷଣା କଲେ । ୧୯୮୦ ମସିହା ଠାରୁ ଏହି ରିପୋର୍ଟ ଦାଖଲ କରାଯାଇଥିଲେ ମଧ ଭାରତରେ ଏହା ଦଙ୍ଗା ସୃଷ୍ଟି କରିବ ବୋଲି ଅନୁମାନ କରି ତତ୍କାଳୀନ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀ ଏହାକୁ କାର୍ଯ୍ୟକାରୀ କରାଇ ନଥିଲେ । ମାତ୍ର ଭି.ପି. ସିଂହ ମଣ୍ଡଳ କମିଶନଙ୍କ ରିପୋର୍ଟର ବିଭିନ୍ନ ଦିଗ ଆଲୋଚନା ନ କରି କିମ୍ବା ଜାତୀୟ ସ୍ତରରେ ଏହାର ବିତର୍କ ନ କରାଇ ଅଥବା ନେତାମାନଙ୍କ ସହିତ ପରାମର୍ଶ ନ କରି ଏକତରଫା ଭାବେ ଏହାକୁ କାର୍ଯ୍ୟକାରୀ କରିବାକୁ ଘୋଷଣା କରିଦେଲେ । ତାଙ୍କର ଏହି ଅଚାନକ ପଦକ୍ଷେପ ଯୋଗୁଁ ସମଗ୍ର ଭାରତବର୍ଷରେ ଏକ ଅଶାନ୍ତ ବାତାବରଣ ସୃଷ୍ଟି ହେଲା । ନିଜର ଭବିଷ୍ୟତ ଅନ୍ଧକାର ଅନୁମାନ କରି ଭାରତବର୍ଷର ଛାତ୍ରସମାଜ ଉତ୍କ୍ଷିପ୍ତ ହୋଇଉଠିଲେ । କେତେକ ଛାତ୍ର ନିଜ ଦେହରେ ପେଟ୍ରୋଲ ଢ଼ାଳି ନିଆଁ ଲଗାଇ ଆତ୍ମଘାତୀ ହେଲେ । ବହୁସ୍ଥାନରେ ହିଂସାକାଣ୍ଡ ସଙ୍ଘଟିତ ହେଲା । ପୋଡ଼ାଜଳା, ଭଙ୍ଗାରୁଜାରେ ବହୁ ରାଷ୍ଟ୍ରୀୟ ସମ୍ପଦ ଧ୍ୱଂସ ହେଲା । ରାସ୍ତାରୋକୋ, ଛାତ୍ର ଆକ୍ରମଣରେ ବାତାବରଣ ସରଗରମ ହୋଇଉଠିଲା । ଦିଲ୍ଲୀରୁ ଏହାର ଆରମ୍ଭ ହୋଇ କ୍ରମେ ଉତ୍ତରପ୍ରଦେଶ, ହରିଆନା, ବିହାର, ମହାରାଷ୍ଟ୍ର, ଓଡ଼ିଶା ଆଦିକୁ ଖୁବ୍ କମ୍ ସମୟ ମଧରେ ବ୍ୟାପିଗଲା । ସରକାରୀ ପ୍ରଶାସନିକ ବ୍ୟବସ୍ଥା ସ୍ଥାଣୁ ହୋଇପଡ଼ିଲା । ଏପରିକି ଜାତୀୟ ସ୍ତରରେ ଏହାର ପ୍ରଭାବ ଅନୁଭୂତ ହେବାରୁ ବିଭିନ୍ନ କ୍ଷେତ୍ରରେ ଆଲୋଚନା ପ୍ରତ୍ୟାଲୋଚନା ଚାଲିଲା । ସେହି ଜନତାଦଳର ଜଣେ ମୁଖ୍ୟମନ୍ତ୍ରୀ ମଧ ଭି.ପି. ସିଂହଙ୍କ ନିଷ୍ପତ୍ତିର ପ୍ରତିବାଦ କରି ତାଙ୍କ ରାଜ୍ୟରେ ତା'ର ପ୍ରଚଳନ ନ କରିବାକୁ ରୋକ୍‌ଠୋକ୍ ମନା କରିଦେଲେ । ଭି.ପି.ସିଂହ ଙ୍କ ପୂର୍ବରୁ ରାଜୀବ ଗାନ୍ଧୀଙ୍କ ସରକାର ଜାତୀୟ ସ୍ତରରେ ଆଲୋଚନା କରି ମଣ୍ଡଳ କମିଶନଙ୍କ ସୁପାରିସ୍‌କୁ କାର୍ଯ୍ୟକାରୀ କରିବାର ନିଷ୍ପତ୍ତି ଗ୍ରହଣ କରିଥିଲେ । ମାତ୍ର ଶ୍ରୀଯୁକ୍ତ ସିଂହ ରାଜନୈତିକ କାରଣରୁ ହଠାତ୍ ଏହାକୁ କାର୍ଯ୍ୟକାରୀ କରିବାକୁ ନିଷ୍ପତ୍ତି ନେବାରୁ ଘୋର ଅରାଜକତା ସୃଷ୍ଟି ହେଲା । ଏହା ଦ୍ୱାରା ଅନଗ୍ରସର

ଜାତିଙ୍କ ପ୍ରତି ସହାନୁଭୂତି ପ୍ରକାଶ ପାଇଲା ନାହିଁ କିମ୍ବା ସପକ୍ଷରେ ମଧ କେହି କହିବାକୁ ଇଚ୍ଛା ପ୍ରକାଶ କଲେ ନାହିଁ । ଭି.ପି. ସିଂହଙ୍କ ସରକାରର ପତନ ପାଇଁ ଏହା ଏକ ମୁଖ୍ୟ କାରଣ ହୋଇ ଦଣ୍ଡାୟମାନ ହେଲା । ବିଂଶ ଶତାବ୍ଦୀର ଶେଷ ଦଶକରେ ମଣ୍ଡଳ କମିଶନଙ୍କ ରିପୋର୍ଟକୁ କେନ୍ଦ୍ରକରି ଯେଉଁ ଆନ୍ଦୋଳନ ଦେଖା ଦେଇଥିଲା, ଭାରତୀୟ ଇତିହାସରେ ତାହା ଅନନ୍ୟ ସାଧାରଣ । ଏହି ଆନ୍ଦୋଳନ ନିମିତ୍ତ ମୁଖ୍ୟତଃ ରାଜନୈତିକ ନେତାମାନଙ୍କର ଅଦୂରଦର୍ଶିତା ଓ ଅପରିଣାମଦର୍ଶିତା ବହୁପରିମାଣରେ ଦାୟୀ ।

ଭାରତୀୟ ସମ୍ବିଧାନ ପ୍ରଣୟନ ସମୟରେ ଆଦିବାସୀ ଏବଂ ହରିଜନମାନଙ୍କର କଲ୍ୟାଣ ନିମିତ୍ତ ସ୍ୱତନ୍ତ୍ର ଦୃଷ୍ଟି ପ୍ରଦାନ କରାଯାଇଛି । ସମ୍ବିଧାନର ୩୪୦ ଧାରା ଏହିମାନଙ୍କ ଉଦ୍ଦେଶ୍ୟରେ ଲିଖିତ । ସମ୍ବିଧାନ ପ୍ରଣୟନ ସମୟରେ ଡ଼ଃ ଆମ୍ବେଦକର ଉପେକ୍ଷିତ ଏବଂ ନିର୍ଯାତିତ ଦେଶର ଅନୁନ୍ନତ ସମ୍ପ୍ରଦାୟଙ୍କ ନିମିତ୍ତ ସଂରକ୍ଷଣ ବ୍ୟବସ୍ଥା କରିଥିଲେ । ସେମାନଙ୍କର ସାମୂହିକ କଲ୍ୟାଣ ଉଦ୍ଦେଶ୍ୟରେ ଏ ପ୍ରକାର ପଦକ୍ଷେପ ଗ୍ରହଣ କରାଯାଇଥିଲା ଏବଂ ଭାରତୀୟମାନେ ତାହାକୁ ବିନା ଦ୍ୱିଧାରେ ସ୍ୱୀକାର କରି ନେଇଥିଲେ । ସମ୍ବିଧାନର ୧୫(୪) ଧାରାରେ ସାମାଜିକ ଓ ଶିକ୍ଷା କ୍ଷେତ୍ରରେ ଅନଗ୍ରସର ଶ୍ରେଣୀ ପାଇଁ 'ସ୍ୱତନ୍ତ୍ର ବ୍ୟବସ୍ଥା' ବିଷୟ କୁହାଯାଇଛି । ୧୬(୪) ଧାରାରେ ମଧ କୌଣସି ଅନଗ୍ରସର ଶ୍ରେଣୀର ଲୋକେ ଯଦି ପର୍ଯ୍ୟାପ୍ତ ପରିମାଣରେ ସରକାରୀ ଚାକିରିରେ ସ୍ଥାନ ପାଇନଥାନ୍ତି, ତେବେ ସେମାନଙ୍କ ନିମିତ୍ତ ସ୍ଥାନ ସଂରକ୍ଷଣ କରାଯାଇପାରିବ ବୋଲି ସ୍ପଷ୍ଟ ଉଲ୍ଲେଖ ରହିଛି । ସମ୍ବିଧାନ ପ୍ରଣୟନ ସମୟରେ ପ୍ରଥମେ ଦଶବର୍ଷ ପାଇଁ ଏପରି ସଂରକ୍ଷଣ ବ୍ୟବସ୍ଥା ରହିଥିଲା । ସେହି ଦଶବର୍ଷ କାର୍ଯ୍ୟକାଳ ପୂର୍ଣ୍ଣ ହେବା ପୂର୍ବରୁ ପୁନରାୟ ଦଶବର୍ଷ, ଏହିପରି ଭାବରେ ସଂରକ୍ଷଣ ବ୍ୟବସ୍ଥାର ସମୟକାଳ ବୃଦ୍ଧି ପାଇ ଚାଲିଛି । ୧୯୮୯ ମସିହାରେ ଏହି ସଂରକ୍ଷଣ ବ୍ୟବସ୍ଥାର ଦଶବର୍ଷିଆ କାର୍ଯ୍ୟକାଳ ବୃଦ୍ଧି ସମୟରେ ତତ୍କାଳିନ ପ୍ରଧାନମନ୍ତ୍ରୀ ରାଜୀବଗାନ୍ଧୀ ଘୋଷଣା କରିଥିଲେ, ଏହା ଚଳିତ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ଗତି କରିବ ଓ ପରେ ତା'ର ଆଉ ବୃଦ୍ଧି କରାଯିବ ନାହିଁ । ମାତ୍ର ସମସ୍ତ ସୁବିଧା ସତ୍ତ୍ୱେ ଏହି ଅନଗ୍ରସର ଜାତିର ଉତ୍ଥାନ ଆଦୌ ସନ୍ତୋଷଜନକ ନୁହେଁ । ତେଣୁ ଏକବିଂଶ ଶତାବ୍ଦୀରେ ମଧ ଏପରି ସଂରକ୍ଷଣ ବ୍ୟବସ୍ଥାର ପରିସମାପ୍ତି ଘଟିଲା ନାହିଁ । ଜାତିଭିତ୍ତିକ ସଂରକ୍ଷଣ ବ୍ୟବସ୍ଥା ଭାରତରେ ଯେପରି ଉତ୍କଟ, ବିଶ୍ୱର ଅନ୍ୟ କୌଣସି ଦେଶରେ ସେପରି ଥିବାର ଦେଖାଯାଏ ନାହିଁ ।

ପରିତାପ ବିଷୟ, ରାଜନୈତିକ ଉଦ୍ଦେଶ୍ୟ ସାଧନରେ ସଂରକ୍ଷଣ ବ୍ୟବସ୍ଥାକୁ ଏକ ଅସ୍ତ୍ର ରୂପେ ବ୍ୟବହାର କରାଯାଉଥିବାରୁ ଏହା ବହୁପରିମାଣରେ ସାମାଜିକ ବିଚ୍ଛେଦ ସୃଷ୍ଟି କରୁଛି । ଭାରତ ପରି ବିଶ୍ୱର ସର୍ବବୃହତ୍ ଗଣତନ୍ତ୍ର ରାଷ୍ଟ୍ରରେ ଏପରି ଏକ ବ୍ୟବସ୍ଥା ଘୋର ଲଜ୍ଜାକର ବିଷୟ । ଭି.ପି.ସିଂହ ଯେଉଁ ସମୟରେ ମଣ୍ଡଳ କମିଶନଙ୍କ ରିପୋର୍ଟକୁ ଗ୍ରହଣ କରିନେବାକୁ ଘୋଷଣା କଲେ, ତାହା ସ୍ୱତଃସ୍ଫୂର୍ତ୍ତ ଏହି ଅନଗ୍ରସର ଜାତିଙ୍କ ମଙ୍ଗଳ କାମନାକୁ ଆଖିଆଗରେ ରଖି ନୁହେଁ; ବରଂ ତା'ର ଦୁଇଦିନ ପରେ ଦେବୀଲାଲଙ୍କ କୃଷକ ମେଳାକୁ ଭଣ୍ଡୁର କରିବା ନିମିତ୍ତ ଏହା ଥିଲା ରାଜନୈତିକ ଅସ୍ତ୍ର । ଭୋଟ ରାଜନୀତି ସହିତ ଏହି ସଂରକ୍ଷଣ ବ୍ୟବସ୍ଥା ଏପରି ଘନିଷ୍ଠ ଆତ୍ମୀୟତା

ସୃଷ୍ଟି କରିଛି, ନିକଟ ଭବିଷ୍ୟତରେ ତା'ର ପରିସମାପ୍ତି ଘଟିବାର ଆଦୌ ଅବକାଶ ନାହିଁ । ଅନଗ୍ରସର ଜାତିଙ୍କର ଭୋଟ୍‌କୁ ନିଜ ସପକ୍ଷରେ ନେବା ନିମିତ୍ତ ଏହା ହେଉଛି ଏକ ରାଜନୈତିକ ଚାଲ୍ । ଏପରିକି କେତେକ ରାଜନୈତିକ ଦଳ ଏହାକୁ ନିର୍ବାଚନ ପ୍ରଚାରର ଏଜେଣ୍ଡା ଭାବରେ ବ୍ୟବହାର କରିବାକୁ ଭୁଲୁ ନାହାନ୍ତି । ମାତ୍ର ବାସ୍ତବ କ୍ଷେତ୍ରରେ ଯେଉଁ ରାଜନୀତିକ ନେତା ଏହି ସଂରକ୍ଷଣ ବ୍ୟବସ୍ଥା ଦ୍ୱାରା ଅନଗ୍ରସର ଜାତିର ମଙ୍ଗଳ ହେବ ବୋଲି କୁମ୍ଭୀର କାନ୍ଦଣା କାନ୍ଦୁଛନ୍ତି, ପ୍ରକୃତରେ ତାହା ତାଙ୍କର ଆନ୍ତରିକ ଉଦ୍ଦେଶ୍ୟ ନୁହେଁ । ଦୀର୍ଘ ପଚାଶ ବର୍ଷର ସଂରକ୍ଷଣ ଦ୍ୱାରା ମଧ ଏହି ଜାତି କେଉଁ ପ୍ରକାର ଉନ୍ନତି କରିଛନ୍ତି ? ବରଂ ଏହା ଦ୍ୱାରା ସେହି ତଥାକଥିତ ଧନୀବ୍ୟକ୍ତିମାନେ ହିଁ ଉପକୃତ ହୋଇଛନ୍ତି । ସେମାନଙ୍କର ବ୍ୟାଙ୍କ୍ ବାଲାନ୍‌ସ ବଢ଼ି ବଢ଼ି ଚାଲିଛି । କରାଣ୍ଡି ଗୁଞ୍ଛି ବାଳିଆ ମାଛ ଶିକାର କରିଛନ୍ତି । ତେଣୁ ଯେ ପର୍ଯ୍ୟନ୍ତ ସଂରକ୍ଷଣ ବ୍ୟବସ୍ଥାର ଅନ୍ତରାଳରେ ରାଜନୈତିକ ଇଚ୍ଛାର ଅପମୃତ୍ୟୁ ନ ଘଟିଛି, ସେ ପର୍ଯ୍ୟନ୍ତ ଭାରତବର୍ଷରେ ଏହି ସଂରକ୍ଷଣ ବ୍ୟବସ୍ଥା ଅନଗ୍ରସର ବ୍ୟକ୍ତିମାନଙ୍କର ମଙ୍ଗଳ ବିଧାନରେ ଆଦୌ ସହାୟତା କରିପାରିବ ନାହିଁ ।

ସାମାଜିକ ଦୃଷ୍ଟିକୋଣରୁ ସଂରକ୍ଷଣ ନୀତିର ଆବଶ୍ୟକତା ରହିଛି । ମାତ୍ର ଏହି ସଂରକ୍ଷଣ ବ୍ୟବସ୍ଥା ସେବା କ୍ଷେତ୍ରରେ ବା ଶିକ୍ଷା କ୍ଷେତ୍ରରେ ପ୍ରୟୋଗ ହେବା ଅନୁଚିତ । ସେମାନଙ୍କର ସାମାଜିକ ବିକାଶ ନିମିତ୍ତ ଆର୍ଥିକ ସାହାଯ୍ୟ କରାଯିବା ଉଚିତ । ଶିକ୍ଷା କ୍ଷେତ୍ରରେ ମାଗଣାରେ ସେମାନଙ୍କୁ ଶିକ୍ଷାଦାନ ଦେବାରେ କୌଣସି ବାଧା ନାହିଁ । ଆର୍ଥିକ ସହାୟତା ଯୋଗାଇଦେଇ ସେମାନଙ୍କୁ ଉପାର୍ଜନକ୍ଷମ କରାଯାଇପାରେ । ମାତ୍ର ଚାକିରି କ୍ଷେତ୍ରରେ ଏହି ନୀତିର ଅନୁସରଣ ସମ୍ପୂର୍ଣ୍ଣ ରୂପେ ଅମାନବିକ । ବହୁ ଯୋଗ୍ୟତାସମ୍ପନ୍ନ ବ୍ୟକ୍ତି ବେକାର ରହୁଥିବା ସମୟରେ ସଂରକ୍ଷଣ ନୀତି ଦ୍ୱାରା କମ୍ ଯୋଗ୍ୟତାସମ୍ପନ୍ନ ବ୍ୟକ୍ତି ଚାକିରି ଲାଭ ଦ୍ୱାରା କେବଳ ସାମାଜିକ ବିଭେଦ ସୃଷ୍ଟି ହେବ । ପ୍ରଶାସନିକ କ୍ଷେତ୍ରରେ ଏପରି ବ୍ୟକ୍ତିଙ୍କ ନିଯୁକ୍ତି ଦ୍ୱାରା ପ୍ରଶାସନିକ ସ୍ଥାଣୁତା ଜାତ ହେବ । ସ୍ୱାସ୍ଥ୍ୟ, ଶିକ୍ଷା, ଇଞ୍ଜିନିୟରିଂ ଆଦି କ୍ଷେତ୍ରରେ ଏହି ସଂରକ୍ଷଣ ନୀତି ଯୋଗୁଁ କମ୍ ଯୋଗ୍ୟତାସମ୍ପନ୍ନ ବ୍ୟକ୍ତି ସ୍ଥାନ ଲାଭ କରି ସେବା କ୍ଷେତ୍ରରେ ନିଜର ପାରଦର୍ଶିତା ପ୍ରଦର୍ଶନ କରିପାରୁ ନାହାନ୍ତି । ଅଥଚ ବହୁ ଯୋଗ୍ୟତା ସମ୍ପନ୍ନ ବ୍ୟକ୍ତି ଉଚ୍ଚ ଜାତିର ହୋଇଥିବାରୁ ଉପଯୁକ୍ତ ସୁଯୋଗ ଲାଭ ଅଭାବରୁ ନିଜର ପାରଦର୍ଶିତା ପ୍ରଦଶର୍ନ କରିବାର ସୁଯୋଗ ପାଉନାହାନ୍ତି । ଏହାଦ୍ୱାରା ସେମାନଙ୍କ ମନ ମଧରେ ଅସନ୍ତୋଷର କୁହେଳିକା ସୃଷ୍ଟି ହୋଇଛି । ଯଦି କୌଣସି ସମୟରେ ଏହି ଅସନ୍ତୋଷର ବିସ୍ଫୋରଣ ଘଟେ, ତେବେ ସାମାଜିକ ଜୀବନ ଯେ ସମ୍ପୂର୍ଣ୍ଣ ବିକଳାଙ୍ଗ ହୋଇଯିବ ଏଥିରେ ଦ୍ୱିମତ ନାହିଁ । ସେଥିପାଇଁ ସରକାର ଏହି ଅନଗ୍ରସର ବ୍ୟକ୍ତିଙ୍କର ସାମାଜିକ ବିକାଶ, ସ୍ୱାସ୍ଥ୍ୟ ତଥା ଆର୍ଥିକ ବିକାଶ କ୍ଷେତ୍ରରେ ଦୃଷ୍ଟି ପ୍ରଦାନ କରିବା ସଙ୍ଗେ ସଙ୍ଗେ ଉପଯୁକ୍ତ ଯୋଗ୍ୟ ପ୍ରାର୍ଥୀଙ୍କୁ ସେମାନଙ୍କର ଅଧିକାରରୁ ବଞ୍ଚିତ ନ କରିବା ନିମିତ୍ତ ଯଥାର୍ଥ ପଦକ୍ଷେପ ଗ୍ରହଣ କରିବା ଉଚିତ ।

ସଂରକ୍ଷଣ ଦ୍ୱାରା ସମସ୍ୟାର ସମାଧାନ ସମ୍ଭବ ନୁହେଁ । ଏଥିପାଇଁ ଆବଶ୍ୟକ ସାମୂହିକ ଉଦ୍ୟମର । ଯେପର୍ଯ୍ୟନ୍ତ ଭାରତବର୍ଷରେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଏକ ସଚେତନଶୀଳତା ସୃଷ୍ଟି ନ ହୋଇଛି, ସଂରକ୍ଷଣକୁ ରାଜନୈତିକ ଭୋଟ୍‌ବାକ୍‌ସରୁ ପୃଥକ ନ କରାଯାଇଛି, ସେପର୍ଯ୍ୟନ୍ତ

ଏହି ସମସ୍ୟାର ସମାଧାନ ହୋଇପାରିବ ନାହିଁ । ଆଭ୍ୟନ୍ତରୀଣ ଗଠନରେ ପରିବର୍ତ୍ତନ ହେବା ଆବଶ୍ୟକ । ଆପେକ୍ଷିକ ସ୍ଥିତିର ପରିବର୍ତ୍ତନ ଦ୍ୱାରା ଜାତିପ୍ରଥାର କୁଟିଳତାକୁ ଦୂର କରାଯିବା ଆଦୌ ସମ୍ଭବ ନୁହେଁ । ଶ୍ରେଣୀର ସଂଜ୍ଞା ରାଜନୈତିକ ଦୃଷ୍ଟିକୋଣରୁ ବିଚାରାଲୋଚନା କରାଯିବା ଅନୁଚିତ । ସାଗରକେସ୍‌ରେ ଉଚ୍ଚତମ ନ୍ୟାୟାଳୟ ଶ୍ରେଣୀ (Class) ର ସଂଜ୍ଞା ନିର୍ଦ୍ଦେଶ କରି କହିଛନ୍ତି – "The expression''Classes' meant a homogeneous section of people grouped together because of certain likeness of common traits and identifiable by some common attributes such as status, rank, occupation, residence in a locality race, religion and the like. ଏଠାରେ ସୂଚାଇଦେବା ଆବଶ୍ୟକ ଯେ, କାଲେକର କମିଶନ ଜାତିଭିତ୍ତିକ ସଂରକ୍ଷଣର ବିରୋଧୀ ଥିଲେ । ଚାକିରିକୁ ସେ ସମାଜ ସେବା ଭାବରେ ଗ୍ରହଣ କରି କହିଥିଲେ ''ଚାକିରି କେବଳ ଚାକିରିଆମାନଙ୍କ ନିମିତ୍ତ ଉଦ୍ଦିଷ୍ଟ ନୁହେଁ । ଏହା ସମାଜ ସେବା ପାଇଁ ଉଦ୍ଦିଷ୍ଟ ।'' ସେଥିପାଇଁ ସେ ଏହି ସେବା କ୍ଷେତ୍ରରେ ସଂରକ୍ଷଣ ନୀତିକୁ ବିରୋଧ କରୁଥିଲେ । ମାତ୍ର ମଣ୍ଡଳ କମିଶନ କାଲେକରଙ୍କ ଯୁକ୍ତିକୁ ଗ୍ରହଣ କରିନାହାନ୍ତି । ଏ କ୍ଷେତ୍ରରେ ମଧ୍ୟ ସେ ସଂରକ୍ଷଣ ନୀତିକୁ ସ୍ୱୀକାର କରି ଏଥିରେ ତା'ର ବ୍ୟବସ୍ଥା କରିଯାଇଛନ୍ତି । ସେଥିପାଇଁ ଆଦିବାସୀ ବା ହରିଜନମାନଙ୍କ ପାଇଁ ସ୍ୱତନ୍ତ୍ର ସ୍ଥାନ ସଂରକ୍ଷଣକୁ ବିରୋଧ କରାଯାଇ ନ ଥିବା ସମୟରେ, ଅନ୍ୟ ଅନଗ୍ରସର କ୍ଷେତ୍ରରେ ତା'ର ବିରୋଧ କରାଗଲା ଏବଂ ସେହି କାରଣରୁ ଆନ୍ଦୋଳନ ଓ ଧ୍ୱଂସାତ୍ମକ ଘଟଣା ପରି ଦୁଃଖଦାୟକ ଘଟଣାମାନ ଘଟିଗଲା ।

ସମାଜ ସମସ୍ତଙ୍କ ପାଇଁ । ଏଠାରେ ବଞ୍ଚିବା ନିମିତ୍ତ ସମସ୍ତ ଅଧିବାସୀଙ୍କର ସମାନ ଅଧିକାର ରହିଛି । ଯଦି କୌଣସି ବ୍ୟକ୍ତି ନିଜ ଅଧିକାରରୁ ବଞ୍ଚିତ ହୁଏ, ସେ ପ୍ରତିକ୍ରିୟାଶୀଳ ହେବା ସ୍ୱାଭାବିକ । ଏହି ଦୃଷ୍ଟିରୁ ମଣ୍ଡଳ କମିଶନ୍‌ଙ୍କ ସୁପାରିଶ ଏକ ତ୍ରୁଟିପୂର୍ଣ୍ଣ ନିଷ୍ପତ୍ତି ରୂପେ ଗୃହୀତ ହୋଇଥିଲା । ସମାଜର ଅବହେଳିତମାନଙ୍କ ନିମିତ୍ତ ରାଷ୍ଟ୍ରର ଏକ ଦାୟିତ୍ୱ ରହିଛି ଓ ସେ ଦାୟିତ୍ୱବୋଧକୁ ପାଳନ କରିବାର ଦାୟିତ୍ୱ ଏ ଦେଶର ଜନସାଧାରଣଙ୍କର । ସେଥିପାଇଁ ଆର୍ଥିକ କ୍ଷେତ୍ରରେ ସେହି ଅନଗ୍ରସର ଜାତିକୁ ଅଗ୍ରାଧିକାର ଦିଆଯିବା ଉଚିତ । ଅନଗ୍ରସର ଜାତିର ଚିହ୍ନଟ ସମୟରେ କୌଣସି ନିର୍ଦ୍ଦିଷ୍ଟ ଜାତିକୁ ଗ୍ରହଣ ନକରି ତା'ର ଆର୍ଥନୀତିକ ମାନଦଣ୍ଡ ଦୃଷ୍ଟିରୁ ବିଚାର କରାଯିବା ବିଧେୟ । ଅନେକ ଉଚ୍ଚବଂଶର ବ୍ୟକ୍ତିବିଶେଷ ଆର୍ଥିକ ଦୃଷ୍ଟିକୋଣରୁ ବହୁ ପଛରେ । ଅଥଚ ବହୁ ଅନଗ୍ରସର ଜାତି ଆର୍ଥିକ ଦୃଷ୍ଟିରୁ ସମୃଦ୍ଧଶାଳୀ । ଏହି ଦୃଷ୍ଟିରୁ ସରକାର ସେବା କ୍ଷେତ୍ରରେ ଜ୍ଞାନବନ୍ତ, ନିପୁଣ ଯୁବକମାନଙ୍କୁ ବଞ୍ଚିତ ନ କରି ତାଙ୍କ ପ୍ରଜ୍ଞାର ଯଥାର୍ଥ ସମ୍ମାନ ପ୍ରଦର୍ଶନ କରିବା ଉଚିତ । ଏହା ଦ୍ୱାରା ସାମାଜିକ ବିକାଶ ତ୍ୱରାନ୍ୱିତ ହୋଇପାରିବ ଓ ସାମାଜିକ ସ୍ଥାଣୁତା ଦୂର ହୋଇପାରିବ । ତେଣୁ ସରକାର ଅନଗ୍ରସର ଜାତିକୁ ଚିହ୍ନଟ କରିବା ସମୟରେ ଜାତି ଦୃଷ୍ଟିରୁ ଚିହ୍ନଟ ନକରି ଆର୍ଥିକ ମାନଦଣ୍ଡ ଦୃଷ୍ଟିକୋଣରୁ ବିଚାର କରିବା ସଙ୍ଗେ ସଙ୍ଗେ ପ୍ରଜ୍ଞାର ଯଥାର୍ଥ ଉପଯୋଗ ନିମିତ୍ତ ସୁଯୋଗ ସୃଷ୍ଟି କରିବା ଉଚିତ । ଏହା ଦ୍ୱାରା ସାମୂହିକ ଭାବରେ ସମାଜ ଓ ରାଷ୍ଟ୍ରର ଉନ୍ନତି ହୋଇପାରିବ ।

●

# ଭାରତର ଖାଉଟି ସୁରକ୍ଷା ଆନ୍ଦୋଳନ

(ଉପକ୍ରମ, ଖାଉଟିର ସଂଜ୍ଞା, ଖାଉଟି ସଙ୍ଗଠନ, ଖାଉଟି ସୁରକ୍ଷା ଆଇନ୍‌ର କେତେକ ଦିଗ, ଖାଉଟିମାନଙ୍କର ଅଧିକାର, ସାମ୍ପ୍ରତିକ ପରିପ୍ରେକ୍ଷୀରେ ଖାଉଟି ଆନ୍ଦୋଳନର ଆବଶ୍ୟକତା, ଖାଉଟିମାନଙ୍କର କର୍ତ୍ତବ୍ୟ, ଉପସଂହାର)

ଆବହମାନ ଯୁଗରୁ ସମାଜରେ ଦୁଇଟି ଗୋଷ୍ଠୀ ପରିଲକ୍ଷିତ ହୋଇଥାଏ, ଯଥା—ଶୋଷକ ଗୋଷ୍ଠୀ ଓ ଶୋଷିତ ଗୋଷ୍ଠୀ । ଶୋଷକ ଗୋଷ୍ଠୀ ସର୍ବସାଧାରଣଙ୍କୁ ସର୍ବଦା ଶୋଷଣ କରି ନିଜକୁ ପରିପୁଷ୍ଟ କରିବାର ଚେଷ୍ଟାରେ ଥା'ନ୍ତି । ଅନୁରୂପ ଭାବେ ଶୋଷିତ ଗୋଷ୍ଠୀ ଶୋଷଣରୁ ମୁକ୍ତ ହେବା ଲାଗି ଓ ନିଜର ସୁରକ୍ଷା ପାଇଁ ସଙ୍ଗଠନ ଗଠନ କରି ପ୍ରତିପକ୍ଷ ବିରୋଧରେ ସ୍ୱର ଉତ୍ତୋଳନପୂର୍ବକ ନିଜର ସତ୍ତାକୁ ଜାହିର କରିଥାନ୍ତି । ଦୁର୍ବଳ ଉପରେ ଆକ୍ରମଣ ଓ ଆତ୍ମରକ୍ଷା—ଏହି ଦୁଇଟି କାରଣରୁ ସଙ୍ଗଠନ ଏବଂ ନୀତିନିୟମ ପ୍ରଣୟନର ଆବଶ୍ୟକତା ହୋଇଥାଏ । ଶିଳ୍ପ କାରଖାନାରେ ଶ୍ରମିକଗଣ ଶ୍ରମିକ ସଙ୍ଘ ଗଠନ ମାଧ୍ୟମରେ ନିଜର ସ୍ୱାର୍ଥକୁ ସୁରକ୍ଷିତ ରଖିଥା'ନ୍ତି । ବ୍ୟବସାୟୀ ଗୋଷ୍ଠୀ ମଧ୍ୟ ବଣିକ ସଙ୍ଘ ମାଧ୍ୟମରେ ନିଜର ସ୍ୱାର୍ଥ ପ୍ରତି ଯତ୍ନ ନେଇଥା'ନ୍ତି । ଭାରତରେ ବହୁଦିନ ପର୍ଯ୍ୟନ୍ତ ଖାଉଟିମାନଙ୍କର ସୁରକ୍ଷା ନିମିତ୍ତ କୌଣସି ସଙ୍ଗଠନ ଗଠିତ ହୋଇ ନ ଥିଲା । ସେହି କାରଣରୁ ଏ ଦେଶର ବ୍ୟବସାୟୀଗଣ ନିଜର ଇଚ୍ଛାନୁଯାୟୀ ଖାଉଟିମାନଙ୍କୁ ଶୋଷଣ କରୁଥିଲେ । ଖାଦ୍ୟ ଅପମିଶ୍ରଣ କରି ନିଜର ଫାଇଦା ଉଠାଉଥିଲେ । ବଜାରରେ ଉପଲବ୍ଧ ହେଉଥିବା ଜିନିଷପତ୍ରକୁ ହଠାତ୍ ଲୁଚାଇଦେଇ କୃତ୍ରିମ ଅଭାବ ସୃଷ୍ଟି କରି ଖାଉଟିମାନଙ୍କୁ ସେହି ଜିନିଷ ପାଇଁ ବହୁପରିମାଣରେ ଅର୍ଥ ଦାବି କରୁଥିଲେ । ମାପ ଓ ଓଜନରେ ମଧ୍ୟ ବିଭିନ୍ନ ଉପାୟରେ ଠକିବାକୁ ଭୁଲୁ ନ ଥିଲେ । ଏ ଦେଶର ଜନସାଧାରଣ ବା ଖାଉଟି ବ୍ୟବସାୟୀମାନଙ୍କ ଦ୍ୱାରା ପ୍ରତାରିତ ନ ହେବା ଉଦ୍ଦେଶ୍ୟରେ ଏବଂ ସେମାନଙ୍କୁ ସୁରକ୍ଷା ପ୍ରଦାନ ନିମିତ୍ତ ଖାଉଟି ସୁରକ୍ଷା ଆନ୍ଦୋଳନର ସୂତ୍ରପାତ ହେଲା ଏବଂ ଏହା ଏକ ବିଶେଷ ନିୟମ ରୂପେ ପ୍ରଚଳିତ ହେଲା ।

ସାଧାରଣତଃ ଖାଉଟି କହିଲେ ଉପଭୋକ୍ତା । ନିଜର ବ୍ୟବହାର ଉଦ୍ଦେଶ୍ୟରେ କୌଣସି ପଦାର୍ଥ ବା ସେବା କ୍ରୟ କରାଗଲେ ଏହାର କ୍ରୟକାରୀଙ୍କୁ ଖାଉଟି କୁହାଯାଇଥାଏ । ଆଇନ୍‌ସମ୍ମତ ଭାବରେ ଦ୍ରବ୍ୟ ବା ସେବା କ୍ରୟକାରୀ ବ୍ୟକ୍ତିକୁ ଖାଉଟି ବୋଲି ସାଧାରଣ ଭାବରେ କୁହାଯାଇଥାଏ । ଖାଉଟି ସୁରକ୍ଷା ଆଇନ୍‌ରେ ଖାଉଟିର ସଂଜ୍ଞା ନିର୍ଦ୍ଦେଶ କରି କୁହାଯାଇଛି—'Consumer' means (i) any person who buys any goods for a consideration which has been paid or promised or partly paid or partly promised, or under any system of deferred payment and includes any user of such goods other than the person who buys such goods for consideration paid or promised or partly paid or partly promised or under any system of deferred payment when such use is made with the approval of such person, but does not include a person who obtains

such goods for resale or for any commercial purpose, or (ii) hires any services for a consideration which has been paid or promised or partly paid or partly promised or under any system of defferred payment and includes any beneficiary of such services other than the person who hires the services for consideration paid or promise or partly paid and partly promised or under any system of deferred payment, when such services are availed of with the approval of the first mentioned person. ସଂକ୍ଷେପରେ କହିଲେ ଏହି ଆଇନ୍‌ର ୨ (ଘ) ଧାରାରେ ଦ୍ରବ୍ୟ ଓ ସେବାକ୍ଷେତ୍ରରେ ଖାଉଟିର ସଂଜ୍ଞା ଦିଆଯାଇ କୁହାଯାଇଛି—କୌଣସି ଦ୍ରବ୍ୟ ବା ପଦାର୍ଥ ମୂଲ୍ୟ ବଦଳରେ କ୍ରୟ କରିଥିବା କିମ୍ବା କ୍ରୟ ମୂଲ୍ୟ ଦେବାର ପ୍ରତିଶ୍ରୁତି ଦେଇଥିବା ଅଥବା ଆଂଶିକ ମୂଲ୍ୟ ପ୍ରଦାନ କରି ଅବଶିଷ୍ଟ ମୂଲ୍ୟ ପାଇଁ ପ୍ରତିଶ୍ରୁତି ଦେଇଥିବା ବ୍ୟକ୍ତି ଖାଉଟି ପଦବାଚ୍ୟ । କ୍ରୟ ଜିନିଷର ବ୍ୟବହାର ନିମିତ୍ତ ଖରିଦ୍‌ଦାରଙ୍କଠାରୁ ସ୍ୱୀକୃତି ପାଇଥିବା ବ୍ୟକ୍ତି ମଧ୍ୟ ଖାଉଟି । ସେବାକ୍ଷେତ୍ରରେ ମୂଲ୍ୟ ବା ଭଡ଼ା ଦେଇ ସେବା ଗ୍ରହଣ କରୁଥିବା ବା ମୂଲ୍ୟ ଦେବା ପାଇଁ ପ୍ରତିଶ୍ରୁତି ପ୍ରଦାନ କରିବା ଅଥବା ଆଂଶିକ ମୂଲ୍ୟ ଦେଇ ପରେ ଅବଶିଷ୍ଟ ଦେବାପାଇଁ ପ୍ରତିଶ୍ରୁତି ଦେଇଥିବା କିମ୍ବା କିସ୍ତି ସୂତ୍ରରେ ମୂଲ୍ୟ ଦେବାପାଇଁ ସ୍ୱୀକୃତି ଦେଇଥିବା ବ୍ୟକ୍ତି ଖାଉଟି ପଦବାଚ୍ୟ । ଏତଦ୍‌ବ୍ୟତୀତ ଭଡ଼ା ଦେଇଥିବା ବ୍ୟକ୍ତିଙ୍କ ସ୍ୱୀକୃତିରେ ସେବା ଉପଭୋଗ କରୁଥିବା ହିତାଧିକାରୀ ମଧ୍ୟ ଖାଉଟି । ଏହି ଦୃଷ୍ଟିରୁ ଜୀବନବୀମା ପଲିସି କ୍ରୟ କରୁଥିବା ବ୍ୟକ୍ତି ଯେପରି ଖାଉଟି, ନିଜ ବ୍ୟବହାର ପାଇଁ ସାଇକେଲ କିମ୍ବା ଅନ୍ୟ ପଦାର୍ଥ କ୍ରୟ କରୁଥିବା ବ୍ୟକ୍ତି ମଧ୍ୟ ସେହିପରି ଖାଉଟି । ବିଭିନ୍ନ ସଞ୍ଚୟଯୋଜନା କ୍ଷେତ୍ରରେ ଅର୍ଥ ସଞ୍ଚୟ କରୁଥିବା ବ୍ୟକ୍ତି ଖାଉଟି, ଚାକିରିର ବିଭିନ୍ନ ପଲିସିରେ ମନୋନୀତ ବ୍ୟକ୍ତି ମଧ୍ୟ ଖାଉଟି । ମାତ୍ର ବ୍ୟବସାୟ ଉଦ୍ଦେଶ୍ୟରେ ଜିନିଷ କ୍ରୟକରି ବିକ୍ରୟ କରୁଥିବା ବ୍ୟକ୍ତି ଖାଉଟି ପଦବାଚ୍ୟ ନୁହେଁ । ବରଂ ସେମାନେ ବ୍ୟବସାୟୀ ।

ବ୍ୟବସାୟୀମାନଙ୍କର ଭ୍ରଷ୍ଟାଚାର, ଶୋଷଣ ଓ ମନଇଚ୍ଛା କାରବାରରୁ ଖାଉଟିମାନଙ୍କୁ ସୁରକ୍ଷା ଦେବା ନିମିତ୍ତ ଗୋଟିଏ ସଙ୍ଗଠନ ଗଠନ ପାଇଁ ବିଭିନ୍ନ କ୍ଷେତ୍ରରେ ମତାମତ ପ୍ରକାଶ ପାଇଲା । ଶ୍ରମିକ ସଙ୍ଗଠନ ଶ୍ରମିକମାନଙ୍କର ସ୍ୱାର୍ଥ ପ୍ରତି ଦୃଷ୍ଟିଦେବା ପରି ଖାଉଟିମାନଙ୍କର ହିତ ପାଇଁ ଦୃଷ୍ଟି ଦେବାକୁ ଏକ ସକ୍ରିୟ ସଙ୍ଗଠନର ଅଭାବ ଅନୁଭୂତ ହେଲା । ସରକାର ମଧ୍ୟ ଏପରି ଏକ ସଙ୍ଗଠନ ଗଠନର ଆବଶ୍ୟକତା ଅନୁଭବ କଲେ । ଖାଉଟିମାନଙ୍କୁ ବିଭିନ୍ନ ଭାବରେ ସଚେତନ କରାଇବା ଉଦ୍ଦେଶ୍ୟରେ ବିଭିନ୍ନ କାର୍ଯ୍ୟକ୍ରମମାନ ଗ୍ରହଣ କରାଗଲା । ଖାଉଟି ସୁରକ୍ଷା ଆନ୍ଦୋଳନରୁ 'ଉପଭୋକ୍ତା ମହାସଙ୍ଘ' ସୃଷ୍ଟିଲାଭ କଲା । ବିଭିନ୍ନ କ୍ଷେତ୍ରରୁ ଏମାନେ ଉତ୍ସାହିତ ହେଲେ । ସମଗ୍ର ଭାରତବର୍ଷରେ ଏହି ଆନ୍ଦୋଳନ ଏକ ନୂତନ ରୂପ ପରିଗ୍ରହ କଲା । ବ୍ୟବସାୟୀମାନଙ୍କର ଅତ୍ୟାଚାରରୁ ମୁକ୍ତି ମିଳିଲା । ଖାଉଟି ସଙ୍ଗଠନ ମାଧ୍ୟମରେ ବ୍ୟକ୍ତିବିଶେଷ ନିଜର ଅଧିକାର ସାବ୍ୟସ୍ତ କରି ଉଚିତ ନ୍ୟାୟ ପାଇବାକୁ ସମର୍ଥ ହେଲେ ।

ଖାଉଟିମାନଙ୍କର ସଙ୍ଗଠନ ସରକାରଙ୍କ ନିକଟରେ ନିଜର ଦାବି ଉପସ୍ଥାପନ କରିବା ପରେ ସରକାରୀ ସ୍ତରରେ ବିଚାରବିମର୍ଶ ହୋଇ 'ଖାଉଟି ସୁରକ୍ଷା ଆଇନ୍' ପ୍ରଣୟନ କରାଗଲା । ଏହା ପୂର୍ବରୁ ମଧ୍ୟ ଭାରତର ଅନ୍ୟାନ୍ୟ ସ୍ଥାନପରି ଓଡ଼ିଶାରେ 'ଓଡ଼ିଶା ଉପଭୋକ୍ତା ସଙ୍ଘ' ଗଠନ କରାଯାଇଥିଲା । 'ଖାଉଟି ସୁରକ୍ଷା ଆଇନ୍' ପ୍ରଣୟନ ପୂର୍ବରୁ ଏହି ସମ୍ପର୍କୀୟ ଅନ୍ୟ କେତେକ ଆଇନ୍ ପ୍ରଣୟନ କରାଯାଇଛି । ୧୯୮୬ ମସିହାରେ ପାର୍ଲାମେଣ୍ଟରେ ଖାଉଟି ସୁରକ୍ଷା ଆଇନ୍ ବା The Consumer Protection Act, 1986 ପ୍ରଣୟନ କରାଗଲା । ୧୯୮୭ ମସିହାରେ The Consumer Protection Rules, 1987 ବା ଖାଉଟି ସୁରକ୍ଷା ନିୟମାବଳୀର ପ୍ରଣୟନ କରାଯାଇଛି । ୧୯୮୭ ମସିହାଠାରୁ ଏହା କାର୍ଯ୍ୟକାରୀ ହୋଇଛି । ଖାଉଟି ଆଇନ୍‌ର ସୁରକ୍ଷା ନିମିତ୍ତ ବିଭିନ୍ନ ଅନୁଷ୍ଠାନ ଗଠନ କରାଯାଇଛି । ତାହା ହେଲା– କେନ୍ଦ୍ରୀୟ ଖାଉଟି ସୁରକ୍ଷା ସମିତି ବା The Central Consumer Protection Council, ରାଜ୍ୟ ଖାଉଟି ସମିତି ବା The State Consumer Protection Council, ଖାଉଟି ବିବାଦ ଲାଘବ ସଙ୍ଗଠନ ମଧ୍ୟରେ ରହିଛି (କ) ଜିଲ୍ଲା ଫୋରମ (A Consumer Disputes Redressal Forum to be known as the 'District Forum' established by the State Govt. with the prior approval of the Central Govt. in each district of the state by notification), (ଖ) ରାଜ୍ୟ କମିଶନ (A Consumer Disputes Redressal Commission to be known as the State Commission), (ଗ) ଜାତୀୟ କମିଶନ (National Consumer Disputes Redressal Commission). କ୍ଷତିର ପରିମାଣ ଅନୁଯାୟୀ ବିଭିନ୍ନ ସ୍ଥାନରେ ଅପିଲ ବା ଆବେଦନ କରିବାର ନିୟମ ରହିଛି । ଖାଉଟି ଦ୍ରବ୍ୟ ବା ସେବାର ମୂଲ୍ୟ ଏକଲକ୍ଷ ଟଙ୍କାରୁ କମ୍ ହୋଇଥିଲେ ଜିଲ୍ଲା ବିଚାର ପୀଠ (District Forum)ରେ ଦ୍ରବ୍ୟ, ସେବା ବା କ୍ଷତିର ପରିମାଣ ଏକଲକ୍ଷ ଟଙ୍କାରୁ ଅଧିକ ଓ ଦଶଲକ୍ଷ ଟଙ୍କାରୁ କମ୍ ହୋଇଥିଲେ ରାଜ୍ୟ ଆୟୋଗ ବା State Commissionଙ୍କ ନିକଟରେ ଏବଂ ଦ୍ରବ୍ୟ ବା ସେବା, କ୍ଷତିର ମୂଲ୍ୟ ଦଶଲକ୍ଷ ଟଙ୍କାରୁ ଅଧିକ ହେଲେ ଜାତୀୟ ଆୟୋଗଙ୍କ ନିକଟରେ ଅଭିଯୋଗ କରାଯାଇଥାଏ । ସାଧାରଣତଃ ଜିଲ୍ଲା ପାଇଁ ଜିଲ୍ଲା ବିଚାରପୀଠ ଓ ସମଗ୍ର ରାଜ୍ୟ ନିମିତ୍ତ ରାଜ୍ୟ ଆୟୋଗ ଗଠନ କରାଯାଇଥାଏ । ଜିଲ୍ଲା ଜଜ୍, ଜିଲ୍ଲା ବିଚାରପୀଠର ଅଧ୍ୟକ୍ଷ ଏବଂ ରାଜ୍ୟର ଉଚ୍ଚ ନ୍ୟାୟାଳୟର ମାନ୍ୟବର ବିଚାରପତି ରାଜ୍ୟ ଆୟୋଗର ଅଧ୍ୟକ୍ଷ ରୂପେ କାର୍ଯ୍ୟ କରିଥାନ୍ତି । ଖାଉଟି ସଂଘ ଆବଶ୍ୟକ ଅନୁଭବ କଲେ ଜିଲ୍ଲା ଫୋରମର ନିଷ୍ପତ୍ତି ବିରୁଦ୍ଧରେ ରାଜ୍ୟ ଖାଉଟି କମିଶନଙ୍କ ନିକଟରେ, ରାଜ୍ୟ କମିଶନଙ୍କ ନିଷ୍ପତ୍ତି ବିରୁଦ୍ଧରେ କେନ୍ଦ୍ର କମିଶନ ନିକଟରେ ଏବଂ କେନ୍ଦ୍ର କମିଶନଙ୍କ ନିଷ୍ପତ୍ତି ବିରୁଦ୍ଧରେ ଉଚ୍ଚତମ ନ୍ୟାୟାଳୟ ବା ସୁପ୍ରିମକୋର୍ଟ ନିକଟରେ ଆବେଦନ କରିପାରିବେ । ୩୦ ଦିନ ମଧ୍ୟରେ ଜିଲ୍ଲା ଫୋରମ ଆଦେଶ ବିରୁଦ୍ଧରେ ରାଜ୍ୟ ଆୟୋଗଙ୍କ ଇଜିଲାସରେ, ୩୦ ଦିନ ମଧ୍ୟରେ ରାଜ୍ୟ ଆୟୋଗ ଆଦେଶ ବିରୁଦ୍ଧରେ ଜାତୀୟ ଆୟୋଗଙ୍କ ଇଜିଲାସରେ ଓ ୩୦ ଦିନ ମଧ୍ୟରେ ଜାତୀୟ ଆୟୋଗଙ୍କ ଆଦେଶ ବିରୁଦ୍ଧରେ ସୁପ୍ରିମ୍‌କୋର୍ଟରେ ଆବେଦନ କରାଯାଇପାରିବ । ଅଭିଯୋଗ

ସମୟରେ ଅଭିଯୋଗକାରୀଙ୍କ ସମ୍ପୂର୍ଣ୍ଣ ନାମ, ଠିକଣା, ଅପରପକ୍ଷର ନାମ, ଗ୍ରାମ, ଠିକଣା, ଅଭିଯୋଗ ସମ୍ବନ୍ଧୀୟ ବିଷୟବସ୍ତୁ, ସମୟ ଏବଂ ସ୍ଥାନ, ଅଭିଯୋଗ ସପକ୍ଷରେ କାଗଜପତ୍ରର ପ୍ରମାଣ, କେଉଁ ଆଦେଶ ବା ନିଷ୍ପତ୍ତି ନିମିତ୍ତ ଆବେଦନ ଏବଂ ଅଭିଯୋଗକାରୀଙ୍କ ସ୍ୱାକ୍ଷର ସହିତ ଦାଖଲ କରାଯିବ । ଖାଉଟି ନିଜେ, ସ୍ୱେଚ୍ଛାସେବୀ ଖାଉଟି ସଙ୍ଗଠନ, ରାଜ୍ୟ ସରକାର କିମ୍ବା କେନ୍ଦ୍ର ସରକାର ଅଭିଯୋଗ ଫର୍ଦ୍ଦ ଦାଖଲ କରିପାରିବେ ।

ଖାଉଟିମାନଙ୍କର ଆଇନ୍‌ଗତ ଅଧିକାର ସମ୍ପର୍କରେ ୧୯୮୬ ମସିହା ଖାଉଟି ସୁରକ୍ଷା ଆଇନ୍‌ରେ ଉଲ୍ଲେଖ ରହିଛି । ପ୍ରତ୍ୟେକ ଖାଉଟି ନିଜର ଅଧିକାର ସମ୍ପର୍କରେ ସଚେତନ ରହିଲେ ସ୍ୱେଚ୍ଛାଚାରୀ ବା ଅନ୍ୟାୟ ବ୍ୟବସାୟୀଙ୍କ ବିରୋଧରେ କଠୋର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ସମର୍ଥ ହୋଇପାରିବ । ଖାଉଟିମାନଙ୍କର ଧନ ଓ ଜୀବନ ପ୍ରତି ବିପଦ ସୃଷ୍ଟି କରୁଥିବା ଦ୍ରବ୍ୟର କାରବାର କବଳରୁ ରକ୍ଷା ପାଇବା ନିମିତ୍ତ ତା'ର ସମସ୍ତ ଅଧିକାର ରହିଛି । ଏହା ବିରୋଧରେ ଅଭିଯୋଗ ଫର୍ଦ୍ଦ ଦାଖଲ କରି ତା'ର ଯଥାର୍ଥ ନ୍ୟାୟ ସେ ପାଇପାରିବ । ପ୍ରତିଯୋଗିତାମୂଳକ ବିଭିନ୍ନ ଜିନିଷ ପାଇବା ନିମିତ୍ତ ଭରସା ପାଇବାର ଅଧିକାର ରହିଛି । ଖାଉଟି ଦ୍ରବ୍ୟର ପରିମାଣ, ଗୁଣ, ସାମର୍ଥ୍ୟ, ବିଶୁଦ୍ଧତା, ମାନ ଏବଂ ପ୍ରକୃତ ମୂଲ୍ୟ ବିଷୟରେ ଅବଗତ ହେବାର ଅଧିକାର ଖାଉଟିର ରହିଛି । ଏହାଦ୍ୱାରା ଅସାଧୁ ବ୍ୟବସାୟୀମାନଙ୍କ ବିରୋଧରେ ଯଥାର୍ଥ ଆଇନ୍‌ସମ୍ମତ କାର୍ଯ୍ୟପନ୍ଥା ଗ୍ରହଣ କରିପାରିବ । ଖାଉଟି କୌଣସି କ୍ଷେତ୍ରରେ ଅବହେଳିତ ହୋଇଥିଲେ ବିଭିନ୍ନ ବିଚାରପୀଠରେ ଖାଉଟି ସ୍ୱାର୍ଥସୁରକ୍ଷା ନିମନ୍ତେ ଶୁଣାଣି ପାଇବାର ଅଧିକାର ତା'ର ରହିଛି । ଅସାଧୁ ବ୍ୟବସାୟ ପ୍ରଥା କିମ୍ବା ଅସାଧୁ ବ୍ୟବସାୟୀ ଖାଉଟିକୁ ଶୋଷଣ କଲେ, ତା' ବିରୁଦ୍ଧରେ ପ୍ରତିକାର ଲୋଡ଼ିବାର ଅଧିକାର ତା'ର ରହିଛି । ସର୍ବୋପରି ଖାଉଟିମାନଙ୍କର ପ୍ରକୃତ ଅଧିକାର ଓ କର୍ତ୍ତବ୍ୟ ସମ୍ବନ୍ଧରେ ସମସ୍ତ ପ୍ରକାର ଶିକ୍ଷା ପାଇବାର ଅଧିକାର ରହିଛି । ଖାଉଟିମାନଙ୍କର ଅଧିକାର ଏକ ସାମାଜିକ ଅଧିକାର । ଏହି ଅଧିକାରରୁ ସେ ବଞ୍ଚିତ ହେଲେ ସେଥିପ୍ରତି ଅଭିହିତ ନ୍ୟାୟାଳୟରେ ସେ ଅଭିଯୋଗ କରିପାରିବ । ଅଭିଯୋଗ ଦାଏର ପାଇଁ କୌଣସି କୋର୍ଟ ଫି ଦେୟ ଆବଶ୍ୟକ ହୁଏ ନାହିଁ । ଅଭିଯୋଗକାରୀ କିମ୍ବା ତାଙ୍କର କ୍ଷମତାପ୍ରାପ୍ତ ଯେକୌଣସି ବ୍ୟକ୍ତି ଅଭିଯୋଗ ଦାଖଲ କରିପାରିବେ । ନିଜ ଇଚ୍ଛାନୁଯାୟୀ ପ୍ରତ୍ୟେକ ଖାଉଟି ଉପଯୁକ୍ତ ମୂଲ୍ୟରେ ସମସ୍ତ ପଦାର୍ଥ ପାଇବାର ଅଧିକାର ତା'ର ରହିଛି । କୌଣସି କ୍ଷେତ୍ରରେ ସେ ଏହି ଅଧିକାରରୁ ବଞ୍ଚିତ ହେଲେ, ଉପଯୁକ୍ତ ନ୍ୟାୟ ପାଇବା ପାଇଁ 'ଖାଉଟି ସୁରକ୍ଷା ଆଇନ୍'ର ସହାୟତା ସେ ନେଇପାରିବ ।

ସାମ୍ପ୍ରତିକ ପରିପ୍ରେକ୍ଷୀରେ ଖାଉଟି ଆନ୍ଦୋଳନର ଆବଶ୍ୟକତା ଅତୀବ ଜରୁରୀ ବୋଲି ମନେ ହୋଇଥାଏ । ଅନେକ ସମୟରେ ବ୍ୟବସାୟୀ ନିର୍ଦ୍ଧାରିତ ମୂଲ୍ୟଠାରୁ ଅଧିକ ମୂଲ୍ୟ ନେଇ ଜିନିଷ ବିକ୍ରୟ କରିଥାନ୍ତି । ପୁଣି ନିମ୍ନମାନର ପଦାର୍ଥକୁ ଉଚ୍ଚମାନର କହି ସାଧାରଣ ଲୋକଙ୍କୁ ଭୁଆଁ ବୁଲାଇବାର ଚେଷ୍ଟା କରିଥାନ୍ତି । ପୁଣି କେତେକ କ୍ଷେତ୍ରରେ ସମୟ ଅତିକ୍ରାନ୍ତ ହୋଇଥିବା ଜିନିଷ ବିକ୍ରୟ କରି ଖାଉଟିମାନଙ୍କ ସ୍ୱାସ୍ଥ୍ୟ ପ୍ରତି ବିପଦ ସୃଷ୍ଟି କରିଥାନ୍ତି । ଖାଉଟି ଆନ୍ଦୋଳନ

ଦ୍ୱାରା ସେହି ଅସାଧୁ ବ୍ୟକ୍ତିବିଶେଷଙ୍କ ବିରୋଧରେ କଠୋର କାର୍ଯ୍ୟାନୁଷ୍ଠାନ କରାଯାଇଥାଏ । ଖାଉଟି ସୁରକ୍ଷା ଆଇନ୍ ଦ୍ୱାରା ଖାଉଟିଙ୍କୁ କ୍ଷତି ପାଇଁ କ୍ଷତିପୂରଣ, ମୂଲ୍ୟ ଫେରସ୍ତ, ଦ୍ରବ୍ୟବଦଳ, ତ୍ରୁଟି ସୁଧାରକରଣ ଆଦି ଦ୍ୱାରା ସାହାଯ୍ୟ ଏବଂ ସୁରକ୍ଷା ଯୋଗାଇ ଦିଆଯାଇଥାଏ । ଓଡ଼ିଶାରେ ଖାଉଟି ସୁରକ୍ଷା ଆନ୍ଦୋଳନ ମଧ୍ୟ ଏକ ବାସ୍ତବବାଦୀ ଭୂମିକା ଲିଭାଇବାକୁ ସମର୍ଥ ହୋଇଛି । ''ଓଡ଼ିଶା ଖାଉଟି ସୁରକ୍ଷା ନିୟମ, ୧୯୮୭''ରେ ଏ ସମ୍ପର୍କରେ ବିଶଦ ଆଲୋଚନା କରାଯାଇଛି । ବର୍ତ୍ତମାନ ଓଡ଼ିଶାରେ ଗଞ୍ଜାମ, ଫୁଲବାଣୀ, କଳାହାଣ୍ଡି, ବାଲେଶ୍ୱର, ବଲାଙ୍ଗୀର, ଢେଙ୍କାନାଳ, କେନ୍ଦୁଝର, କୋରାପୁଟ, ମୟୂରଭଞ୍ଜ, ପୁରୀ, ସମ୍ବଲପୁର, ସୁନ୍ଦରଗଡ଼, କଟକ ଆଦି ଅବିଭାଜିତ ଜିଲ୍ଲାମାନଙ୍କରେ ଜିଲ୍ଲା ଖାଉଟି ଫୋରମ୍ କର୍ତ୍ତବ୍ୟରତ । କେବଳ ପୁରୀକୁ ବାଦ୍‌ଦେଲେ ଅନ୍ୟ ସବୁଠାରେ ଜିଲ୍ଲାଜଜ୍ ଅଧ୍ୟକ୍ଷ ଭାବରେ କାର୍ଯ୍ୟ ତୁଲାଉଥିବା ସମୟରେ ପୁରୀରେ ଭୁବନେଶ୍ୱରର ସ୍ୱତନ୍ତ୍ର ଜଜ୍ ଏହାର ଅଧ୍ୟକ୍ଷ ଅଛନ୍ତି । ଏତଦ୍‌ବ୍ୟତୀତ ଓଡ଼ିଶାରେ ପ୍ରାୟ ୬୧ରୁ ଊର୍ଦ୍ଧ୍ୱ ସ୍ୱେଚ୍ଛାସେବୀ ସଙ୍ଗଠନ ଖାଉଟି ସୁରକ୍ଷାନିମିତ୍ତ କାର୍ଯ୍ୟ କରିଆସୁଛନ୍ତି । କେନ୍ଦ୍ର ସରକାର ଏ କ୍ଷେତ୍ରରେ ଉଲ୍ଲେଖନୀୟ କାର୍ଯ୍ୟ କରୁଥିବା ଅନୁଷ୍ଠାନଗୁଡ଼ିକୁ National Youth Award for Consumer Protection ପୁରସ୍କାର ପ୍ରଦାନ କରୁଛନ୍ତି । ଏତଦ୍‌ବ୍ୟତୀତ ଗଣମାଧ୍ୟମଦ୍ୱାରା ମଧ୍ୟ ସାଧାରଣ ଜନତାକୁ ଏ ସମ୍ପର୍କରେ ସୂଚନା ପ୍ରଦାନ ଦ୍ୱାରା ଧୀରେ ଧୀରେ ସଚେତନତା ବୃଦ୍ଧି ପାଉଛି ଓ ଜନସାଧାରଣ ଅସାଧୁ ବ୍ୟବସାୟୀମାନଙ୍କର ସଫଳ ମୁକାବିଲା କରିବାକୁ ସମର୍ଥ ହେଉଛନ୍ତି । ସର୍ବଭାରତୀୟ ସ୍ତରରେ ଏହା ଏକ ଆନ୍ଦୋଳନର ରୂପରେଖ ଗ୍ରହଣ କରିଥିବାରୁ ଖାଉଟିମାନଙ୍କ ସୁରକ୍ଷା ସମ୍ଭବ ହୋଇପାରିଛି ।

ଅନେକ ସମୟରେ ଖାଉଟି ନିଜର କର୍ତ୍ତବ୍ୟକୁ ଯଥାର୍ଥ ଭାବରେ ସଂସାଧିତ କରିପାରନ୍ତି ନାହିଁ । ''କାଦୁଅକୁ କାହିଁକି ଯିବା, ଗୋଡ଼ ଧୋଇବା'' ନ୍ୟାୟରେ ଅନେକେ ସବୁ ଜାଣି ମଧ୍ୟ ନିରବ ରହିଥାନ୍ତି । ମାତ୍ର ଏହାଦ୍ୱାରା ସେମାନେ କିପରି କ୍ଷତିଗ୍ରସ୍ତ ହେଉଛନ୍ତି ତାହା ଜାଣିପାରୁ ନାହାନ୍ତି । ଅସାଧୁ ବ୍ୟବସାୟୀଙ୍କ ବିରୋଧରେ ପ୍ରତ୍ୟେକ ଖାଉଟି ତୀବ୍ର ପ୍ରତିବାଦ କରିବା ଉଚିତ । ନିମ୍ନମାନର ପଦାର୍ଥ ବିକ୍ରୟ କିମ୍ବା ଓଜନରେ କମ୍ ଦେଲେ ଅଥବା ଅପମିଶ୍ରିତ ପଦାର୍ଥ ଦେଲେ ସଙ୍ଗେ ସଙ୍ଗେ ଖାଉଟି ସୁରକ୍ଷା ନିୟମର ଆଶ୍ରୟ ଗ୍ରହଣ କରିବା ଉଚିତ । ସେମାନେ ଜାଣିବା ଉଚିତ ଏହି ସୁରକ୍ଷା ନିୟମ ଅନୁଯାୟୀ ଅପରପକ୍ଷ ନୋଟିସ୍ ପାଇବାର ମାତ୍ର ୩ ମାସ ମଧ୍ୟରେ ବିଚାରପୀଠ ଆୟୋଗ ଅଭିଯୋଗ ଫଏସଲା କରିଥାନ୍ତି । ଯଦି କୌଣସି ଅଭିଯୋଗ ପାଇଁ ପରୀକ୍ଷା ଆବଶ୍ୟକ ପଡ଼େ, ତେବେ ତାହା ୫ ମାସ ମଧ୍ୟରେ ବା ଅନ୍ୟତ୍ର ଅପିଲ ୯୦ ଦିନ ମଧ୍ୟରେ ଫଏସଲା କରାଯାଇଥାଏ । ଏଣୁ ପ୍ରତ୍ୟେକ ଖାଉଟି ସଚେତନ ଭାବରେ ମିଳିତ ହୋଇ ଅନ୍ୟାୟୀ ଅସାଧୁ ବ୍ୟବସାୟୀଙ୍କ ବିରୋଧରେ ଆଇନ୍ ମାଧ୍ୟମରେ ଦଣ୍ଡବିଧାନ କରିବାକୁ ପଦକ୍ଷେପ ନେବା ବିଧେୟ । ସମସ୍ତ ଜାଣିବା ପରେ ନିରବ ରହିବାର ଅର୍ଥ ଅନ୍ୟାୟକୁ ପ୍ରଶ୍ରୟ ଦେବା । ସରକାରୀ କ୍ଷେତ୍ରରେ ଏ ସମ୍ପର୍କରେ ଯେତିକି ଦାୟିତ୍ୱ ରହିଛି, ତା' ଅପେକ୍ଷା ଅଧିକ ଦାୟିତ୍ୱ ରହିଛି ଖାଉଟିମାନଙ୍କର । ଖାଉଟିମାନେ ସଚେତନ ନ ହେଲେ ସମାଜରୁ ଏହି ଅସାଧୁ କାର୍ଯ୍ୟର ମୂଳୋତ୍ପାଟନ କରିବା ସମ୍ଭବ ନୁହେଁ ।

ବିଶ୍ୱରେ ପ୍ରାୟ ପ୍ରତ୍ୟେକ ବ୍ୟକ୍ତି ଜଣେ ଜଣେ ଖାଉଟି । କାରଣ ସେମାନେ ସେମାନଙ୍କର ଦୈନନ୍ଦିନ ଜୀବନରେ କିଛି ନା କିଛି କ୍ରୟ କରୁଛନ୍ତି । ଶୋଷଣ ଏବଂ ଅନ୍ୟାୟକୁ ସହ୍ୟ କରିବା ସବୁଠାରୁ ବଡ଼ ପାପ । ମାତ୍ର ଏକଥା ସତ୍ୟ ଯେ ସହରରେ ବସବାସ କରୁଥିବା ବ୍ୟକ୍ତିବିଶେଷଙ୍କ ଅପେକ୍ଷା ଗ୍ରାମାଞ୍ଚଳରେ ବାସ କରୁଥିବା ବ୍ୟକ୍ତି ଖାଉଟି ସୁରକ୍ଷା ଆଇନ୍ ସମ୍ପର୍କରେ କମ୍ ଜାଣନ୍ତି । ବିଭିନ୍ନ ଗଣମାଧ୍ୟମ ଓ ସ୍ୱେଚ୍ଛାସେବୀ ସଙ୍ଗଠନ ମାଧ୍ୟମରେ ଏହି ବାର୍ତ୍ତା ମଫସଲ ଅଞ୍ଚଳରେ ପ୍ରଚାର ହୋଇପାରିଲେ ଜନସାଧାରଣ ନିଜ ସୁରକ୍ଷା ସମ୍ପର୍କରେ ଅଧିକ ସଚେତନ ହୋଇପାରନ୍ତେ । ଏତଦ୍‌ବ୍ୟତୀତ ବର୍ତ୍ତମାନ ଖାଉଟି ସୁରକ୍ଷା ଆଇନ୍‌ର ପୁନଃମୂଲ୍ୟାୟନର ଆବଶ୍ୟକତା ରହିଛି । ସାମ୍ପ୍ରତିକ ପରିସ୍ଥିତିକୁ ଚାହିଁ ଏଥିରେ କିଛି ପରିବର୍ତ୍ତନ ସାଧନ କଲେ ତା'ର ସୁଫଳ ସମସ୍ତେ ପାଇପାରନ୍ତେ । ସମସ୍ତେ ସୁସ୍ଥ ଓ ନିରାମୟ ଜୀବନ ଚାହାନ୍ତି । ଖାଉଟି ସୁରକ୍ଷା ନିୟମ ଏ ସମ୍ପର୍କରେ ବହୁପରିମାଣରେ ସଚେତନ । ମାତ୍ର ବ୍ୟକ୍ତିବିଶେଷ ସେହି ପରିମାଣରେ ସଚେତନ ଓ ବିଶ୍ୱସ୍ତ ହୋଇ ନ ପାରିଲେ କୌଣସି ନିୟମ ସେମାନଙ୍କୁ ସୁରକ୍ଷା ଦେବାରେ ସମର୍ଥ ହୋଇପାରିବ ନାହିଁ । ଖାଉଟି ସଚେତନତା ହିଁ ଖାଉଟିମାନଙ୍କର ଯଥାର୍ଥ ସୁରକ୍ଷା ।



## ମାନବ ସେବାରେ ରେଡ଼କ୍ରସ

**(ଉପକ୍ରମ, ରେଡ଼କ୍ରସର ଅର୍ଥ, ରେଡ଼କ୍ରସର ଜନକ ଓ ଉଦ୍ଭବର କାହାଣୀ, ସେବା ଓ ମୂଲ୍ୟବୋଧର ପ୍ରତୀକ ରେଡ଼କ୍ରସ, ବିଶ୍ୱରେ ରେଡ଼କ୍ରସର ଭୂମିକା, ଉପସଂହାର)**

ମାନବିକ ମୂଲ୍ୟବୋଧର ସମ୍ମାନ ତଥା ଅସହାୟ ମାନବର ବହୁବିଧ ସେବା ରେଡ଼କ୍ରସର ଲକ୍ଷ୍ୟ । ଯେତେବେଳେ ପୃଥିବୀରେ ନିଷ୍ଠୁରତା, ଜିଘାଂସା, ଅମାନବିକତା ମାନବସମାଜକୁ କଳୁଷିତ କରିବାକୁ ଉଦ୍ୟମରତ ଥିଲା, ଠିକ୍ ସେତିକିବେଳେ ଦୟା, ମାନବିକତା, ସ୍ନେହ ଓ ଶ୍ରଦ୍ଧାର ହାତ ବଢ଼ାଇ ଆବିର୍ଭୂତ ହୋଇଥିଲା ରେଡ଼କ୍ରସ । ଜୀବନଯୁଦ୍ଧରେ ପରାହତ ମଣିଷ ପ୍ରାଣରେ ସୃଷ୍ଟି କରିଥିଲା ବଞ୍ଚିବାର ଅପୂର୍ବ ଉନ୍ମାଦନା । ବିଶ୍ୱରେ ପ୍ରଚାରିତ କରିଥିଲା ସ୍ନେହ, ଶ୍ରଦ୍ଧା ଓ ମୈତ୍ରୀର ବାର୍ତ୍ତା । ସ୍ୱାର୍ଥପର ପୃଥିବୀରେ ଖେଳାଇ ଦେଇଥିଲା ପ୍ରୀତିର ଝରଣା ।

ଏକ ଆବେଗମୟ ମୁହୂର୍ତ୍ତରେ ରେଡ଼କ୍ରସ ଗଠନର ଆବଶ୍ୟକତା ଅନୁଭୂତ ହୋଇଥିଲା ଫ୍ରାନ୍ସର ଜେନିଭାଠାରେ । ଏଭଳି ଏକ ମହତ୍ ସେବାନୁଷ୍ଠାନର ସୃଷ୍ଟି ବିଶ୍ୱ ଇତିହାସରେ ନୂତନ ଅଧ୍ୟାୟ ସୃଷ୍ଟି କଲା । ରେଡ଼କ୍ରସ ଏକ ସେବାସଂସ୍ଥା । ମାନବ ସେବାର ମହତ୍ ଇଚ୍ଛାରୁ ଏହାର ସୃଷ୍ଟି ହୋଇଥିବାରୁ ଏହା ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଗୋଟିଏ କଲ୍ୟାଣକାରୀ ଅନୁଷ୍ଠାନ ।

ଜିନ୍ ହେନେରୀ ଡୁନାଣ୍ଟ (Jean Henri Dunant) ଏହାର ଜନକ । ଯୁଦ୍ଧରେ ଆହତ ପୀଡ଼ିତ ଅସହାୟ ମଣିଷର ସେବାରୁ ଏହାର ଜନ୍ମ । ବିଶ୍ୱ ଇତିହାସରେ ମଇ ୮ ତାରିଖ ଏକ ସ୍ମରଣୀୟ ଦିବସ । ଏହି ଦିନରେ ଜନ୍ମଲାଭ କରିଥିଲେ ମାନବବାଦୀ ଡୁନାଣ୍ଟ । ବିଶ୍ୱ ଇତିହାସରେ

୧୮୫୮ ମସିହା ଜୁନ୍ ୨୪ ତାରିଖ ମଧ୍ୟ ସବୁଦିନ ପାଇଁ ସ୍ମରଣୀୟ ହୋଇ ରହିବ । ଫ୍ରାନ୍ସର ଜେନିଭାଠାରେ ଜନ୍ମଲାଭ କରିଥିବା ହେନେରୀ ଡୁନାଣ୍ଟ ଥିଲେ ବିଶ୍ୱର ଅନ୍ୟତମ ବିତ୍ତଶାଳୀ ବ୍ୟକ୍ତି । ନିଜର ବ୍ୟବସାୟ ସଂସ୍ଥାକୁ ଆନ୍ତର୍ଜାତିକ ସ୍ତରରେ ପ୍ରତିଷ୍ଠା କରିବା ନିମିତ୍ତ ସେ ତତ୍କାଳୀନ ସମ୍ରାଟଙ୍କୁ ସାକ୍ଷାତ ଉଦ୍ଦେଶ୍ୟରେ ସୋଲ୍‌ଫର୍ଣ୍ଣିଓ ଯାତ୍ରା କରୁଥିଲେ । କାରଣ ସୋଲଫର୍ଣ୍ଣିଓ ଯୁଦ୍ଧଭୂମିରେ ଯୁଦ୍ଧରତ ଥିଲେ ସମ୍ରାଟ । ଯୁଦ୍ଧଭୂମି ମଧ୍ୟଦେଇ ଗତି କରୁଥିବା ସମୟରେ ଡୁନାଣ୍ଟଙ୍କ ଦୃଷ୍ଟିଗୋଚର ହୋଇଥିଲା ଶତାଧିକ ଯୁଦ୍ଧାହତ ବ୍ୟକ୍ତିମାନଙ୍କର । ସେମାନଙ୍କର ଆର୍ତ୍ତଚିତ୍କାର, କରୁଣ ନିବେଦନ ଏବଂ ଯୁଦ୍ଧର ହୃଦୟବିଦାରକ ଦୃଶ୍ୟ ମାନବବାଦୀ ଡୁନାଣ୍ଟଙ୍କ ହୃଦୟରେ ସୃଷ୍ଟି କରିଥିଲା ଗଭୀର ସମ୍ବେଦନା । ସେ ନିଜର ବ୍ୟବସାୟକୁ ବିସ୍ମୃତ ହୋଇ ଲାଗି ଯାଇଥିଲେ ଆହତଙ୍କ ସେବା ଶୁଶ୍ରୂଷାରେ । ଏହି ଘଟଣାଟି ଥିଲା ୧୮୫୮ ମସିହା ଜୁନ୍ ୨୪ ତାରିଖର । ଡୁନାଣ୍ଟଙ୍କ ଏହି ନିଃସ୍ୱାର୍ଥପର ସେବା ଦ୍ୱାରା ପ୍ରଭାବିତ ହୋଇ ଅନେକ ବ୍ୟକ୍ତି ଯୁଦ୍ଧାହତଙ୍କ ସେବାକାର୍ଯ୍ୟରେ ଲାଗିପଡ଼ିଥିଲେ ସେଦିନ । ନିଷ୍ଠୁର ମାନବର ନରସଂହାର ପ୍ରବୃତ୍ତି ଓ ମାନବାତ୍ମାର କରୁଣ ଚିତ୍କାରରୁ ସେଦିନ ରୂପ ନେଇଥିଲା ରେଡ଼କ୍ରସର ପ୍ରାଥମିକ ରୂପ । ସୋଲଫର୍ଣ୍ଣିଓ ରଣକ୍ଷେତ୍ରର କରୁଣ ଅନୁଭୂତିକୁ ନେଇ ଡୁନାଣ୍ଟ ରଚନା କରୁଥିଲେ A memory of Solfernio ପ୍ରବନ୍ଧ ଏବଂ ସେହି ପ୍ରବନ୍ଧଟିକୁ ସେ ତାଙ୍କର ବିଭିନ୍ନ ବନ୍ଧୁ ତଥା ଶିକ୍ଷିତ ବ୍ୟକ୍ତିମାନଙ୍କ ନିକଟକୁ ପଠାଇଥିଲେ । ଅସମ୍ଭବ ରୂପେ ଆର୍ଥିକ ଓ ଜନ ସହାୟତା ଲାଭ କରିଥିଲେ ସେ ଏହି କାର୍ଯ୍ୟଟିକୁ ଆଗେଇ ନେବା ନିମିତ୍ତ । ମାନବିକ ସେବାକୁ ଆନ୍ତର୍ଜାତୀୟ ସ୍ତରରେ ପ୍ରତିଷ୍ଠା ନିମିତ୍ତ ୧୮୬୩ ମସିହାରେ ଜେନେଭାଠାରେ ଏକ କନଫରେନ୍ସ ବା ମହାସଭା ଆହୂତ ହୋଇଥିଲା । ଏଥିରେ ପ୍ରାୟ ୧୭ଟି ରାଷ୍ଟ୍ରର ପ୍ରତିନିଧିଗଣ ଯୋଗଦେଇ ଦୀର୍ଘ ୪ଦିନ କାଳ ଏହାର ବହୁଦିଗ ଆଲୋଚନା କରିଥିଲେ । ଏଥିରେ ସଭାପତି ଥିଲେ ଡୁନାଣ୍ଟଙ୍କ ଓକିଲବନ୍ଧୁ ମୋୟନିଅର । ଏବେବି ଜେନେଭାଠାରେ ରେଡ଼କ୍ରସର ମୁଖ୍ୟ କାର୍ଯ୍ୟାଳୟ ରହିଛି ଓ ସମଗ୍ର ପୃଥିବୀରେ ପ୍ରାୟ ୭୪ରୁ ଅଧିକ ଶାଖା ଅଫିସ କାର୍ଯ୍ୟରତ । ୧୯୬୩ ମସିହାରେ ଏହାର ଶତବାର୍ଷିକୀ ଉତ୍ସବ ପାଳିତ ହୋଇଛି । ପ୍ରତି ଚାରିବର୍ଷରେ ଥରେ ଜେନେଭାଠାରେ ରେଡ଼କ୍ରସ ସଭା ବସି ବିଭିନ୍ନ କାର୍ଯ୍ୟକାରିତା ଦିଗ ସମ୍ପର୍କରେ ଆଲୋଚନା ହୋଇଥାଏ । ବିଶ୍ୱର ପ୍ରାୟ କୋଟି କୋଟି ବ୍ୟକ୍ତି ଏହାର ସଦସ୍ୟ ଏବଂ ଏକ ମହତ୍ ମାନବିକ ସେବାସଂସ୍ଥା ରୂପେ ବହୁ ସମ୍ମାନ ଓ ଅର୍ଥର ଅଧିକାରୀ । ଏହି ମହତ୍ କାର୍ଯ୍ୟ ପାଇଁ ଡୁନାଣ୍ଟଙ୍କୁ ସେବା ନିମିତ୍ତ ନୋବେଲ ପୁରସ୍କାର ଦିଆଯାଇଥିଲା ଏବଂ ତାଙ୍କର ସମ୍ମାନ ନିମିତ୍ତ ତାଙ୍କ ଜନ୍ମ ଦିବସଟିକୁ ରେଡ଼କ୍ରସ ଦିବସ ରୂପେ ପାଳିତ କରାଯାଉଛି ।

ବିଶ୍ୱରେ ସେବା ଓ ମୂଲ୍ୟବୋଧର ପ୍ରତୀକ ରୂପେ ରେଡ଼କ୍ରସ ପରିଚିତ । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଦଳିତ, ପୀଡ଼ିତ ଓ ଅସହାୟ ମଣିଷର ସେବାକରି ତାହା ଆଜି ବିଶ୍ୱବିଖ୍ୟାତ । ସମଗ୍ର ବିଶ୍ୱରେ ଏକ ଶାନ୍ତିପୂର୍ଣ୍ଣ ବାତାବରଣ ସୃଷ୍ଟିରେ ଏହାର ଭୂମିକା ଅତୀବ ପ୍ରଶଂସନୀୟ । ଭ୍ରାତୃତ୍ୱ, ମାନବିକତାର ପ୍ରଚାର, ନିଃସ୍ୱାର୍ଥପର ସେବା, ମୈତ୍ରୀବାଦର ପ୍ରଚାର ତଥା ସାମୂହିକ କଲ୍ୟାଣର ମୌଳିକ ଲକ୍ଷ୍ୟ ନେଇ ଆଜି ରେଡ଼କ୍ରସ କାର୍ଯ୍ୟରତ । ଯୁଦ୍ଧୋତ୍ତର ପୃଥିବୀରେ ଶାନ୍ତିର

ବାର୍ତ୍ତା ପ୍ରଚାର କରିବା ମଧ୍ୟ ଏହି ସଂସ୍ଥାର ଅନ୍ୟତମ ମୁଖ୍ୟ ଲକ୍ଷ୍ୟ । ଅକୁଣ୍ଠିତ ସେବା ଓ ଉତ୍ସର୍ଗୀକୃତ ମହତ୍ ଆଦର୍ଶ ନେଇ ଏହା ଜନ୍ମଲାଭ କରିଥିବାରୁ ରାଜନୈତିକ ହଟଚମଟ ବା ଅସାଧୁତା ଏହାକୁ ଏପର୍ଯ୍ୟନ୍ତ ସ୍ପର୍ଶ କରିପାରି ନାହିଁ । 'ରକ୍ତଦାନ ଦ୍ୱାରା ଜୀବନ ଦାନ' ରେଡ଼କ୍ରସର ଅନ୍ୟତମ ଶ୍ରେଷ୍ଠ ସେବା ଅବଦାନ । ଆଜି ବିଶ୍ୱର ବିଭିନ୍ନ ସ୍ଥାନରେ ରକ୍ତାଭାବ ପରିଲକ୍ଷିତ । ରୋଗୀଟିଏ ଅପରେସନ ଟେବୁଲକୁ ଯିବା ପୂର୍ବରୁ ଆବଶ୍ୟକ ହୋଇଥାଏ ରକ୍ତର । ମୃତ୍ୟୁକୁ ଅପେକ୍ଷା କରିଥିବା ବ୍ୟକ୍ତିଙ୍କ ପାଇଁ ରକ୍ତ ଯେ କେତେ ମୂଲ୍ୟବାନ, ତାହା ସମସ୍ତେ ଭଣାଅଧିକେ ଜାଣନ୍ତି । ରେଡ଼କ୍ରସ ସଂସ୍ଥା ମାଧ୍ୟମରେ ବହୁ ସ୍ଥାନରୁ ରକ୍ତ ସଂଗ୍ରହ କରାଯାଇ ରକ୍ତାଭାବ ସମୟରେ ଯୋଗାଇ ଦିଆଯାଇଥାଏ । ରକ୍ତ ସଂଗ୍ରହ ନିମିତ୍ତ ଜନସଚେତନା ବୃଦ୍ଧି କ୍ଷେତ୍ରରେ ରେଡ଼କ୍ରସର ଅବଦାନକୁ କଦାପି ବିସ୍ମୃତ ହେବାର ନୁହେଁ । 'ରକ୍ତଦାନ-ଜୀବନଦାନ' ସ୍ଲୋଗାନ ଆଜି ଯଦି ଏତେ ଜନପ୍ରିୟ ହୋଇପାରିଥାଏ, ସେଥିପାଇଁ ରେଡ଼କ୍ରସର ସମୟୋଚିତ ପଦକ୍ଷେପ ହିଁ ବହୁପରିମାଣରେ ଦାୟୀ । ଯୁଦ୍ଧଭୂମିରୁ ଏହାର ପରିକଳ୍ପନା ହୋଇଥିଲେ ହେଁ, ବିଶ୍ୱର ବିଭିନ୍ନ ସ୍ତରରେ ଏହା ବର୍ତ୍ତମାନ କାର୍ଯ୍ୟକ୍ଷମ । ପୀଡ଼ିତ ମାନବର ସେବା ହିଁ ଏହାର ମୁଖ୍ୟ କାର୍ଯ୍ୟ । ଜୀବନ ଯୁଦ୍ଧରେ ପରାହତ ମଣିଷ ପ୍ରାଣରେ ବଞ୍ଚିବାର ନୂତନ ଉନ୍ମାଦନା ଭରିଦେବା କ୍ଷେତ୍ରରେ ଏହାର ଅବଦାନକୁ କଦାପି ଅସ୍ୱୀକାର କରାଯାଇ ନ ପାରେ । ମାନବିକତାର ପ୍ରଚାର, ନିଷ୍ଠାପର ମାନବ ସେବା ଦ୍ୱାରା ଆଜି ରେଡ଼କ୍ରସ ବିଶ୍ୱର ସର୍ବଶ୍ରେଷ୍ଠ ସେବା ସଂସ୍ଥା ରୂପେ ପରିଚିତ । 'ବସୁଧୈବ କୁଟୁମ୍ବକମ୍'—ଏହାର ମର୍ମବାଣୀ । ଶାନ୍ତିର ବାର୍ତ୍ତା ପ୍ରଚାର ମାଧ୍ୟମରେ ସମଗ୍ର ବିଶ୍ୱକୁ ଏକ ସହଯୋଗ ମାର୍ଗ ଦିଗକୁ ସମ୍ପ୍ରସାରିତ କରିବାର ଲକ୍ଷ୍ୟ ନେଇ ବିଭିନ୍ନ ସ୍ଥାନରେ କର୍ମଶାଳା ସ୍ଥାପନ କରିଛି ରେଡ଼କ୍ରସ । ଯୁବସଚେତନତା ସୃଷ୍ଟି ଦିଗରେ ଏହାର ଭୂମିକା ମଧ୍ୟ ଅତୀବ ଗୁରୁତ୍ୱପୂର୍ଣ୍ଣ । ଜଗତବାସୀଙ୍କ ହୃଦୟରେ ପ୍ରେମର ବିମଳ ପ୍ରବାହ ସୃଷ୍ଟି କରାଇ ପୃଥିବୀକୁ ଯୁଦ୍ଧବିମୁଖ କରାଇବା ଦିଗରେ ଏହା ଯେପରି ବିଭିନ୍ନ ଅନୁଷ୍ଠାନ ମାଧ୍ୟମରେ ସକ୍ରିୟ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଛି, ତା'ର ଅବଦାନକୁ କୌଣସି ମୂଲ୍ୟଦେଇ କେବେ କଳନା କରାଯାଇ ନ ପାରେ । ସଙ୍ଘର୍ଷ, ବିବାଦ, ହିଂସା, ରକ୍ତପାତ, ଅନୀତି ଓ ଅଶାନ୍ତି ବିରୋଧରେ ରେଡ଼କ୍ରସର ଶାନ୍ତିପୂର୍ଣ୍ଣ ଅଭିଯାନ ତଥା ନିଃସ୍ୱାର୍ଥପର ପଦକ୍ଷେପ ସର୍ବାଦୌ ସ୍ମରଣୀୟ । ଜାତି-ଜାତି ମଧ୍ୟରେ, ଦେଶ-ଦେଶ ମଧ୍ୟରେ ଓ ରାଷ୍ଟ୍ର-ରାଷ୍ଟ୍ର ମଧ୍ୟରେ ସୌହାର୍ଦ୍ଦ୍ୟ, ଭ୍ରାତୃତ୍ୱ ଏବଂ ସହଯୋଗପୂର୍ଣ୍ଣ ମନୋବୃତ୍ତି ସୃଷ୍ଟି କରିବା ଦିଗରେ ଏହାର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ବିଶ୍ୱବାସୀଙ୍କ ମନରେ ବିଶ୍ୱାସର ବାତାବରଣ ସୃଷ୍ଟି କରିବା ତଥା ପ୍ରଦୂଷିତ ଜଗତକୁ ପରିଶୁଦ୍ଧ କରିବା ଲକ୍ଷ୍ୟ ନେଇ ରେଡ଼କ୍ରସ ବହୁ ଯୋଜନା ନିଜ ହାତକୁ ନେଇଛି ଓ ଅତ୍ୟନ୍ତ ଆନ୍ତରିକ୍ ଏବଂ ନିଷ୍ଠାର ସହିତ ଏହି କାର୍ଯ୍ୟକୁ ସମାହିତ କରିବା ନିମିତ୍ତ ଆପ୍ରାଣ ଉଦ୍ୟମ କରି ସଫଳକାମ ହୋଇପାରିଚି । ବିଶ୍ୱର କୋଟି କୋଟି ସ୍ନେହକାଙ୍ଗାଳ ମଣିଷ ହୃଦୟରେ ରେଡ଼କ୍ରସ ଯେପରି ଆତ୍ମପ୍ରତ୍ୟୟ ଓ ବିଶ୍ୱାସବୋଧ ସୃଷ୍ଟି କରିପାରିଛି, ଅନ୍ୟ କୌଣସି ଆନ୍ତର୍ଜାତୀୟ ସଂସ୍ଥା ସେପରି କରିବାକୁ ସମର୍ଥ ହୋଇପାରି ନାହିଁ । ଏହି ଦୃଷ୍ଟିରୁ ସେବା ଓ ମାନବିକ ମୂଲ୍ୟବୋଧର ଯଥାର୍ଥ ପ୍ରତୀକ 'ରେଡ଼କ୍ରସ' କହିବା ଆଦୌ ଅତିରଞ୍ଜନ ନୁହେଁ ।

ବିଶ୍ୱବାସୀଙ୍କୁ ସହାୟତା ଦେବା ଉଦ୍ଦେଶ୍ୟରେ ଅନ୍ତର୍ଜାତୀୟ ସ୍ତରରେ ବହୁ ଅନୁଷ୍ଠାନ ଗଠନ କରାଯାଇଛି । ମାତ୍ର କୌଣସି ସେବାନୁଷ୍ଠାନ 'ରେଡ଼କ୍ରସ' ପରି ବିଶ୍ୱାସନୀୟ କିମ୍ବା ଲୋକପ୍ରିୟ ହୋଇପାରି ନାହିଁ । ତା'ର ମହତ୍ କାର୍ଯ୍ୟାବଳୀ ଯୋଗୁଁ ଆନ୍ତର୍ଜାତୀୟ ସ୍ତରରେ ବହୁବାର ପୁରସ୍କୃତ ହୋଇଛି । ପ୍ରାକୃତିକ ବିପର୍ଯ୍ୟୟ, ଯଥା—ବନ୍ୟା, ବାତ୍ୟା, ଅଗ୍ନିକାଣ୍ଡ ଆଦି ସମୟରେ ରେଡ଼କ୍ରସର ସମୟୋଚିତ ପଦକ୍ଷେପ ଅତ୍ୟନ୍ତ ପ୍ରଶଂସନୀୟ । ଶାରୀରିକ ବିକଳାଙ୍ଗମାନଙ୍କର ସହାୟତା ନିମିତ୍ତ ଏହା ମଧ୍ୟ ବହୁ ଯୋଜନା ପ୍ରଣୟନ କରିଛି । ବହୁ ଜନହିତକର କାର୍ଯ୍ୟରେ ନିଷ୍ଠାର ସହିତ ନିଜକୁ ଜଡ଼ିତ କରି ଆଜି ବିଶ୍ୱରେ ସର୍ବଶ୍ରେଷ୍ଠ ସେବାନୁଷ୍ଠାନର ମର୍ଯ୍ୟାଦା ଲାଭ କରିଛି । ବିଂଶ ଶତକର ପ୍ରଥମ ବର୍ଷରେ ରେଡ଼କ୍ରସର ଜନକ ହେନେରୀ ଡୁନାଣ୍ଟ ନୋବେଲ ପୁରସ୍କାର ଲାଭ କରିବା ପରେ ବିଶ୍ୱସ୍ତରରେ ଏହି ଅନୁଷ୍ଠାନଟି ପ୍ରତି ଜନସାଧାରଣରେ ବିଶ୍ୱାସ ବୃଦ୍ଧି ପାଇଥିଲା । ପ୍ରଥମ ବିଶ୍ୱଯୁଦ୍ଧ (୧୯୧୪-୧୯୧୮) ସମୟରେ ରେଡ଼କ୍ରସ ସଂସ୍ଥା ଯେପରି ସେବାକ୍ଷେତ୍ରରେ ଅପୂର୍ବ କୃତିତ୍ୱ ପ୍ରଦର୍ଶନ କରିଥିଲା; ଅସହାୟ, ପୀଡ଼ିତ ଏବଂ ଯୁଦ୍ଧାହତ ବ୍ୟକ୍ତିମାନଙ୍କର ସେବାକାର୍ଯ୍ୟରେ ଅଭୂତପୂର୍ବ ସଫଳତା ଲାଭ କରିଥିଲା, ତା'ର ସେହି ସେବାକାର୍ଯ୍ୟକୁ ମୂଲ୍ୟାୟନ କରି ଏହି ସଂସ୍ଥାକୁ ନୋବେଲ ଶାନ୍ତି ପୁରସ୍କାର ପ୍ରଦାନ କରାଯାଇଥିଲା । କୌଣସି ପୁରସ୍କାର ବା ପ୍ରଶଂସା ଉଦ୍ଦେଶ୍ୟରେ ଏହି ସେବାସଂସ୍ଥା କାର୍ଯ୍ୟରତ ନ ଥିଲେ ମଧ୍ୟ ତା'ର ନିରଳସ ସେବା ଏବଂ ଉତ୍ସର୍ଗୀକୃତ ମନୋବୃତ୍ତି ନିମିତ୍ତ ସେ ବହୁ ଜାତୀୟ ଏବଂ ଆନ୍ତର୍ଜାତୀୟ ପୁରସ୍କାର ଲାଭ କରିଛି । ଦ୍ୱିତୀୟ ବିଶ୍ୱଯୁଦ୍ଧ (୧୯୩୯-୪୫) ସମୟରେ ରେଡ଼କ୍ରସର ଅବଦାନ ଓ ସେବାକାର୍ଯ୍ୟକୁ ଲକ୍ଷ୍ୟ କରି ୧୯୪୪ ମସିହାରେ ପୁଣି ନୋବେଲ ଶାନ୍ତି ପୁରସ୍କାର ପ୍ରଦାନ କରାଯାଇଥିଲା । ୧୯୬୩ ମସିହାରେ ମଧ୍ୟ ଏହି ସଂସ୍ଥାକୁ ନୋବେଲ ଶାନ୍ତି ପୁରସ୍କାର ମିଳିଛି । ବିଶ୍ୱରେ ଶାନ୍ତି ଓ ସଦ୍ଭାବର ବାତାବରଣ ସୃଷ୍ଟି ଉଦ୍ଦେଶ୍ୟରେ ରେଡ଼କ୍ରସ ସଂସ୍ଥା ବହୁ ନିଃସ୍ୱାର୍ଥପର କାର୍ଯ୍ୟ କରୁଥିବାରୁ, ତାହାକୁ ବିଶ୍ୱରେ ସର୍ବଶ୍ରେଷ୍ଠ ପୁରସ୍କାର ଚାରି ଚାରିଥର ମିଳିଛି ଏବଂ ଏହି ପୁରସ୍କାର ଲାଭ କରିବାର ସେ ହେଉଛି ପ୍ରକୃତ ହକ୍‌ଦାର । ହେନେରୀ ଡୁନାଣ୍ଟ ଯେଉଁ ଉଦ୍ଦେଶ୍ୟରେ ଏହି ସଂସ୍ଥାର ସୃଷ୍ଟି କରିଥିଲେ, ପରବର୍ତ୍ତୀ ସମୟରେ ସେହି ସଂସ୍ଥା ନିଜ ଜନକଙ୍କର ଉଦ୍ଦେଶ୍ୟକୁ ଯଥାର୍ଥ ଭାବରେ ସଫଳ କରିଥିବାରୁ, ନିଶ୍ଚିତ ଭାବରେ ଧନ୍ୟବାଦର ପାତ୍ର ।

ଆଜି ବିଶ୍ୱରେ ଅସହାୟତା, ହିଂସାଭାବ, ପରଶ୍ରୀକାତରତା, ସ୍ୱାର୍ଥପରତା ମାନବସମାଜକୁ ପ୍ରତି ମୁହୂର୍ତ୍ତରେ କଳୁଷିତ କରିଦେବାକୁ ଲାଗିଛି । ସ୍ୱାର୍ଥପର ମନୋବୃତ୍ତି ଏବଂ ଅନ୍ୟ ଉପରେ ପ୍ରାଧାନ୍ୟ ବିସ୍ତାର କରିବାର ଅଭୀପ୍ସା ଆଜି ମାନବକୁ ପଙ୍କିଳତା ମଧ୍ୟଦେଇ ଗତି କରିବାକୁ ବାଧ କରିଛି । ଏପରି ଏକ ଅସହାୟ ସମୟରେ ପ୍ରତ୍ୟେକ ମଣିଷ ଟିକିଏ ସ୍ନେହ ଓ ସମ୍ବେଦନା ଲାଭ କରିବାକୁ ଆଗ୍ରହୀ । ଏ କ୍ଷେତ୍ରରେ ରେଡ଼କ୍ରସ ସଂସ୍ଥାର ଏକ ବିଶେଷ ଭୂମିକା ରହିଛି । ଆଜି ତା'ର କାର୍ଯ୍ୟ କରିବାର ସ୍ଥାନ ବହୁଭାବରେ ପ୍ରସାରିତ । ସାମାଜିକ ନ୍ୟାୟ ପ୍ରତିଷ୍ଠା ତଥା ଶାନ୍ତିର ପ୍ରଚାର ନିମିତ୍ତ ରେଡ଼କ୍ରସ ସଂସ୍ଥାକୁ ଆହୁରି ଅନେକ କାର୍ଯ୍ୟ କରିବାକୁ ବାକି ରହିଛି । ଏ କ୍ଷେତ୍ରରେ ଯୁବସମାଜ ରେଡ଼କ୍ରସ ସଂସ୍ଥାର ହାତକୁ ଦୃଢ଼ କରିବା ନିମିତ୍ତ ଆଗେଇ ଆସିବା

ଉଚିତ । ମହାମନୀଷୀ ଡୁନାଣ୍ଟଙ୍କ ଯେଉଁ କାର୍ଯ୍ୟ ଆଜି ତଥାପି ଅସମାଧିତ ଓ ଅସମାହିତ ତା'ର ପରିପୂର୍ଣ୍ଣତା ନିମିତ୍ତ ସମଗ୍ର ବିଶ୍ୱ ସ୍ୱତଃପ୍ରବୃତ୍ତ ଭାବରେ ଆତ୍ମୋତ୍ସର୍ଗ କରି ତାଙ୍କର ସେହି ମହାନ୍ ପରିକଳ୍ପନାକୁ ସାକାର କରିବା ଉଚିତ । ଏହାକୁ ଅଧିକ ସକ୍ରିୟ ଓ ଗଣମୁଖୀ କରିବା ଆମ ସମସ୍ତଙ୍କର ଧେୟ ହେବା ଆବଶ୍ୟକ । ସମଗ୍ର ମାନବସମାଜର ସ୍ୱାର୍ଥ ଉଦ୍ଦେଶ୍ୟରେ ଏହି ସଂସ୍ଥାଟି ସମର୍ପିତ ହୋଇଥିବାରୁ ଆଜି ସମଗ୍ର ବିଶ୍ୱବାସୀ ଏହାର କାର୍ଯ୍ୟପରିସରକୁ ଅଧିକ ବିସ୍ତାର କରିବା ସଙ୍ଗେ ସଙ୍ଗେ ସମଗ୍ର ବିଶ୍ୱକୁ ଗୋଟିଏ ପରିବାରର ସଦସ୍ୟ ରୂପେ ପରିଗଣିତ କରିବାର ଶପଥ ନେଲେ, ତାହାହିଁ ହେବ ଯଥାର୍ଥରେ ମହର୍ଷି ଡୁନାଣ୍ଟଙ୍କ ପ୍ରତି ପ୍ରକୃତ ସମ୍ମାନ ।



# ରାଜନୈତିକ ଅପରାଧୀକରଣ

**(ଉପକ୍ରମ, ଅପରାଧୀକରଣର ଉଦ୍ଦେଶ୍ୟ, ତା'ର ସ୍ୱରୂପ, ଅପରାଧୀକରଣର କାରଣ, ରାଷ୍ଟ୍ରୀୟ ଜୀବନରେ ପ୍ରତିବନ୍ଧକ, ସମସ୍ୟା ଓ ସମାଧାନର ସୂତ୍ର, ଉପସଂହାର)**

ଶାନ୍ତି, ମୈତ୍ରୀ ଓ ସୌହାର୍ଦ୍ଦ୍ୟର ଦେଶ ଭାରତ । ବୈଦିକ ଯୁଗରୁ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଉପରେ ଗୁରୁତ୍ୱ ଆରୋପ କରିଆସିଛି ଆମର ଏହି ପୁଣ୍ୟଭୂମି ଭାରତବର୍ଷ । 'ବସୁଧୈବ କୁଟୁମ୍ବକମ୍'ର ଆଦର୍ଶ ଉପରେ ପ୍ରତିଷ୍ଠା ଲାଭ କରିଛି ତା'ର ଭିତ୍ତିଭୂମି । ମାତ୍ର ବୈଦିକ ବା ପୁରାଣଯୁଗର ଭାରତବର୍ଷ ଏବଂ ସାମ୍ପ୍ରତିକ ଭାରତବର୍ଷ ମଧ୍ୟରେ ଯୋଜନ ଯୋଜନର ପାର୍ଥକ୍ୟ । ଅନ୍ୟର ଦୁଃଖ ଓ ପୀଡ଼ା ଦର୍ଶନରେ ଯେଉଁ ଦେଶର ସନ୍ତାନଗଣ ମ୍ରିୟମାଣ ହୋଇପଡୁଥିଲେ, ବିଗଳିତ ହେଉଥିଲେ, ଆଜି ତା'ର ସନ୍ତାନ ନିଜ ଭାଇର ରକ୍ତରେ ହୋଲି ଖେଳିବାକୁ ପଶ୍ଚାଦ୍‌ପଦ ହେଉ ନାହାନ୍ତି । ଦିନେ ଯେଉଁ ଦେଶର ସଂସ୍କୃତି ଓ ପରମ୍ପରା ସମଗ୍ର ବିଶ୍ୱରେ ଶ୍ରେଷ୍ଠ ସ୍ଥାନ ଅଧିକାର କରିଥିଲା; ଆଜି ତା'ର ମାଟିର ପୁଅ ନିଜ ସଂସ୍କୃତି, ଆଭିଜାତ୍ୟକୁ ଅନ୍ୟ ପାଖରେ ବିକ୍ରି କରିଦେବାକୁ ତିଳେମାତ୍ର କୁଣ୍ଠା ପ୍ରକାଶ କରୁ ନାହିଁ । ଦୈନିକ ସମ୍ବାଦପତ୍ର ପୃଷ୍ଠାରୁ ଏହି ପବିତ୍ର ଦେଶ ସନ୍ତାନମାନଙ୍କର ଅପକୀର୍ତ୍ତିର କାହାଣୀ ଶୁଣି ଲଜ୍ଜାରେ ମଥାନତ ହୋଇଯାଉଛି । ସବୁଠାରୁ ପରିତାପର ବିଷୟ, ଯେଉଁମାନଙ୍କୁ ଆଦର୍ଶବାଦୀ ବ୍ୟକ୍ତି ମନେକରି ଦେଶର ନିରୀହ ଜନସାଧାରଣ ସେମାନଙ୍କର ଶାସନକ୍ଷମତା ଅର୍ପଣ କରିଛନ୍ତି, 'ଆଧାର ଛୁଆଙ୍କୁ ଖାଇବା' ନ୍ୟାୟରେ ସେହିମାନେ ହିଁ ସମସ୍ତ ପ୍ରକାର ଅପରାଧର ମୂଳ କାରଣ ବୋଲି ପ୍ରମାଣିତ ହେଉଛନ୍ତି । ଜନକ ପରି ରାଜର୍ଷି ଦିନେ ଯେଉଁ ଭାରତରେ ସମସ୍ତ ପ୍ରକାର ପ୍ରାଚୁର୍ଯ୍ୟ ମଧ୍ୟରେ ଥାଇ ମଧ୍ୟ ନିରାସକ୍ତ ଜୀବନଯାପନ କରୁଥିଲେ, ପ୍ରଜାପାଳନ ନିମିତ୍ତ ନିଜର ସୁଖ ଜଳାଞ୍ଜଳି ଦେଇଥିଲେ, ଆଜି ସେହି ଭାରତର ଶାସକ ନିଜର ବ୍ୟକ୍ତିଗତ ସ୍ୱାର୍ଥ ପାଇଁ ସାମୂହିକ ସ୍ୱାର୍ଥକୁ ଆଖିବୁଜି ବଳି ପକାଉଛି । ପ୍ରଜାପାଳନ ନୁହେଁ; ପ୍ରଜାପୀଡ଼ନ ହୋଇଛି ଆଜି ଶାସକର ଆଦର୍ଶ । ନିଜର ସ୍ୱାର୍ଥ ପାଇଁ ସେ ସହାୟତା ନେଉଛି ଅସାମାଜିକ ଅପରାଧୀଙ୍କର । ଆଜି ରାଜନୀତି କହିଲେ ସାଧାରଣ ଲୋକେ ବୁଝୁଛନ୍ତି ଅପରାଧ

ନୀତି । ରାଜନୀତିରେ ଅପରାଧୀକରଣ ଏକ ଅନୀତି ନ ହୋଇ ଆଜି ନୀତିରେ ପରିଣତ ହୋଇଛି । ସାଧୁତା, ସଚ୍ଚୋଟତା, ପବିତ୍ରତା, ନ୍ୟାୟ ରାଜନୀତିରୁ ଅନ୍ତର ହୋଇ ତା'ର ସ୍ଥାନ ଲାଭ କରିଛି ଭଣ୍ଡାମି, ଗୁଣ୍ଡାମି, ଭ୍ରଷ୍ଟାଚାର, ଅନୀତି ଓ ବ୍ୟକ୍ତିସ୍ୱାର୍ଥ । ବିଶ୍ୱର ସର୍ବବୃହତ୍ ଗଣତନ୍ତ୍ର ଭାରତ ଆଜି ବିପଦାପନ୍ନ । ଗାନ୍ଧିଜୀଙ୍କ ସ୍ୱପ୍ନର ଭାରତ ବିଡ଼ମ୍ବିତ । ଗାନ୍ଧିଜୀଙ୍କ ଦୃଷ୍ଟିରେ ରାଜନୀତି ଥିଲା ସଚ୍ଚୋଟ ନୀତି, ପବିତ୍ର ନୀତି ଓ ସାଧୁ ନୀତି । ତାଙ୍କର ଦୀର୍ଘଦିନର ସାଧନା, କାରଗାରବରଣ ସବୁ ଯେପରି ବ୍ୟର୍ଥ ହୋଇଗଲା ତାଙ୍କର ଭବିଷ୍ୟତ ବଂଶଧରଙ୍କ ଅପକୀର୍ତ୍ତି ଦ୍ୱାରା । ସାମ୍ପ୍ରତିକ ରାଜନୀତିକୁ ଦେଖିଲେ ଅସତ୍ୟର ଅନ୍ଧକାରରେ ସତ୍ୟର ଆଲୋକ କିପରି ମଳିନତା ଲଭିଛି, ତା'ର ବହୁ ପ୍ରମାଣ ମିଳିପାରିବ । ରାଜନୀତି ପରିଣତ ହୋଇଛି ଅପରାଧୀଙ୍କ ଆଡ୍‌ଡ଼ାସ୍ଥଳୀରେ । ତେଣୁ ବର୍ତ୍ତମାନ ଭାରତର ରାଜନୀତିରେ ଅପରାଧୀକରଣ ସବୁଠାରୁ ବଡ଼ ସମସ୍ୟା ହୋଇ ଦେଖାଦେଇଛି । ଏହି ସମସ୍ୟାର ଉପଯୁକ୍ତ ସମାଧାନ ହୋଇ ନ ପାରିଲେ ଭାରତ ତା'ର ଅତୀତର ହୃତଗୌରବ କଦାପି ଫେରିପାଇବ ନାହିଁ ।

ବ୍ୟକ୍ତିସ୍ୱାର୍ଥ ରାଜନୈତିକ ଅପରାଧୀକରଣର ମୁଖ୍ୟ କାରଣ । ବହୁ ସମୟରେ ଦେଖାଯାଏ ରାଜଗାଦି ହାସଲ କରିବା ପାଇଁ ଉଦ୍ଦେଶ୍ୟମୂଳକ ଭାବରେ କେତେକ ଅପରାଧ କରାଯାଇଥାଏ । କେବଳ ଭାରତ କାହିଁକି, ଭାରତ ବାହାରେ ମଧ ଭାରତୀୟ ରାଜନୀତିରେ ଅପରାଧୀକରଣ ବୃଦ୍ଧି ପାଇଛି ବୋଲି ପ୍ରତିକୂଳ ସମାଲୋଚନା ହେଉଛି । ପୂର୍ବତନ ନିର୍ବାଚନ କମିଶନର ଟି. ଏନ୍. ଶେଷାନ ଭାରତର ନିର୍ବାଚନରେ ଅର୍ଥବଳ, କ୍ଷମତା ଓ ବାହୁବଳର ପ୍ରଭାବ ରହିଛି ବୋଲି ସ୍ୱୀକାର କରିବା ସଙ୍ଗେ ସଙ୍ଗେ କେତେକ ବ୍ୟକ୍ତି ଜେଲ୍‌ରେ ରହିବା ପରିବର୍ତ୍ତେ ବର୍ତ୍ତମାନ ରାଜନୀତିରେ ସକ୍ରିୟ ଅଂଶ ଗ୍ରହଣ କରିଛନ୍ତି ବୋଲି କ୍ଷୋଭ ପ୍ରକାଶ କରିଛନ୍ତି । ତାଙ୍କ ମତରେ ପୃଥିବୀରେ ସବୁ ସ୍ତରରେ ଦୁର୍ନୀତି ରହିଥିଲେ ହେଁ, ଭାରତର ମୁଖ୍ୟ ଦୁର୍ନୀତି ରାଜନୀତିକ । କ୍ଷୋଭର ବିଷୟ ଯେଉଁ ନେତାମାନେ ରାଜନୀତିରେ ଅପରାଧୀକରଣ ବୃଦ୍ଧି ପାଇଁ ପ୍ରତିକ୍ରିୟା ପ୍ରକାଶ କରୁଛନ୍ତି, ସଭାରେ ବଡ଼ ବଡ଼ ଭାଷଣମାନ ପ୍ରଦାନ କରୁଛନ୍ତି ସେହିମାନେ ଅଧିକ ପରିମାଣରେ ଏହାକୁ ପ୍ରୋତ୍ସାହନ ଦେଉଛନ୍ତି । ଦେଶ ଓ ନିରୀହ ଜନସାଧାରଣଙ୍କ ମଧରେ ଦଲାଲି କରି ନିଜକୁ ପ୍ରତିଷ୍ଠିତ ରାଜନୈତିକ ନେତାରୂପେ ପ୍ରଚାର କରୁଛନ୍ତି । ବ୍ୟକ୍ତିଗତ ସ୍ୱାର୍ଥ ହାସଲ କରିବାକୁ ଯାଇ କୋଟି କୋଟି ବ୍ୟକ୍ତିଙ୍କୁ ଶୋଷଣ କରୁଛନ୍ତି । ବହୁ ତଥାକଥିତ ଅପରାଧୀ ନିଜର ଅତୀତ ଅପରାଧକୁ ରାଜନୀତି ମାଧମରେ ଘଣ୍ଟଘୋଡ଼ାଇବାକୁ ସମର୍ଥ ହୋଇପାରୁଛନ୍ତି । ମୁଖ୍ୟତଃ ବ୍ୟକ୍ତିଗତ ସ୍ୱାର୍ଥ, ପ୍ରତିପତ୍ତି, ଉପଭୋଗ, କାମନା ଓ ରାଜନୈତିକ ଶତ୍ରୁତାର ପ୍ରତିଶୋଧମୂଳକ ଇଚ୍ଛାବୃତ୍ତି ରାଜନୀତିକ ଅପରାଧୀକରଣ ନିମିତ୍ତ ପଥ ପରିଷ୍କାର କରିଥାଏ ।

ଦୈନନ୍ଦିନ ଜୀବନରେ ରାଜନୈତିକ ଅପରାଧୀକରଣର ନଗ୍ନ ସ୍ୱରୂପ ସମ୍ପର୍କରେ ଊଣାଅଧିକେ ସମସ୍ତେ ପ୍ରାୟ ଅବଗତ । ସାଧାରଣ ଜୀବନରେ ଯେତେବେଳେ ନୈତିକ ମୂଲ୍ୟରେ ସଙ୍କଟ ଦେଖାଯାଏ, ସେତେବେଳେ ଅପରାଧୀକରଣ ବୃଦ୍ଧି ପାଇଥାଏ । ରାଜନୀତି କ୍ଷେତ୍ରରେ ଯେତେବେଳେ ଅସାଧୁତା, ଦୁର୍ନୀତି ଓ ବ୍ୟକ୍ତିଗତ ସ୍ୱାର୍ଥ ଉତ୍କଟ ହୋଇଉଠେ, ଅପରାଧୀମାନେ

ନିଜର କାୟା ବିସ୍ତାର କରିବାକୁ ସୁଯୋଗ ଲାଭ କରିଥାନ୍ତି । ଦେଶର ରାଜନୀତିକୁ ନିୟନ୍ତ୍ରଣ କରିବାର ସମସ୍ତ ଅବକାଶ ଲାଭ କରିଥାନ୍ତି । ଫଳରେ ମୂଳରୁ ଚୂଳ ପର୍ଯ୍ୟନ୍ତ ପ୍ରତ୍ୟେକ ସ୍ତରରେ ଦୁର୍ନୀତି ରୂପକ ରାକ୍ଷସ ସମାଜ ଜୀବନକୁ କବଳିତ କରିଥାଏ । ଦେଶର ରକ୍ଷକ ଭକ୍ଷକ ସାଜିଲେ ଦେଶକୁ ରକ୍ଷା କରିବ କିଏ ? ଗାନ୍ଧି ପୋଷାକ ଅନ୍ତରାଳରେ ଅପରାଧୀ ମନର ଯେଉଁ କୁତ୍ସିତ ରୂପ ଆତ୍ମଗୋପନ କରିଛି, ତାକୁ ଠିକ୍ ସମୟରେ ସରଳ ଜନସାଧାରଣ ବୁଝିବାକୁ ଅସମର୍ଥ ହୋଇଥାନ୍ତି । ଗାଦିସୀନ ହେବାପରେ ଏହିପରି ବ୍ୟକ୍ତି ନିଜର ସ୍ୱରୂପ ପ୍ରକାଶ କରିଥାନ୍ତି । ଆଜି ଭାରତର ପ୍ରଧାନମନ୍ତ୍ରୀଙ୍କଠାରୁ ଆରମ୍ଭ କରି ମୁଖ୍ୟମନ୍ତ୍ରୀଙ୍କ ପର୍ଯ୍ୟନ୍ତ ପ୍ରତ୍ୟେକ ସ୍ତରରେ ଦୂର୍ନୀତି ମୁଖ୍ୟ ହୋଇଉଠିଛି । ବୋଫର୍ସ କମାଣ କ୍ରୟ, ହାୱାଲା, ଗୋ-ଖାଦ୍ୟ, ଗୃହବଣ୍ଟନ, ଗ୍ୟାସ୍ ବଣ୍ଟନ, ସାରକ୍ରୟ ଆଦି ବିଭିନ୍ନ କ୍ଷେତ୍ରରେ ଦୁର୍ନୀତି ହୋଇଥିବାର ବହୁ ଚମତ୍କାର ଘଟଣାମାନ ପ୍ରକାଶିତ ହୋଇ ରାଜନୈତିକ ନେତାମାନଙ୍କର ସଚ୍ଚୋଟତା ପ୍ରତି ପ୍ରଶ୍ନବାଚୀ ତୋଳିଛି । ସିଂହାସନର ଲାଳସା ଆଜି ରାଜନୈତିକ ନେତାମାନଙ୍କୁ ଏତେ ପରିମାଣରେ ଅନ୍ଧ କରିଦେଇଛି ଯେ ଭାରତର ସାମୂହିକ ସ୍ୱାର୍ଥ ସେମାନଙ୍କ ନିକଟରେ ଅତି ତୁଚ୍ଛ ବୋଲି ପରିଗଣିତ ହେଉଛି । ଆଶ୍ଚର୍ଯ୍ୟର ବିଷୟ ଯେଉଁମାନେ କିଛିଦିନ ପୂର୍ବରୁ ମାନବସମାଜର ଅଭିଶାପ ରୂପେ ପରିଗଣିତ ହେଉଥିଲେ, ସେମାନେ ପୁଣି ଆଜି ମାନବର ଭାଗ୍ୟବିଧାତା । ଚୋର, କଳାବଜାରୀ, ଡ଼କାୟତ, ଗୁଣ୍ଡା ତଥା ବହୁ ଅସାମାଜିକ ବ୍ୟକ୍ତି ରାଜନୈତିକ ବ୍ୟକ୍ତିମାନଙ୍କର ଦୁର୍ବଳତାର ସୁଯୋଗ ନେଇ ନିଜକୁ ରାଜନୀତିରେ ପ୍ରତିଷ୍ଠିତ କରିପାରିବା ସଙ୍ଗେ ସଙ୍ଗେ ଅତୀତରେ ନିଜ ନାମ ପଛରେ ଲାଗିଥିବା ଅସାମାଜିକ ବିଶେଷଣମାନଙ୍କୁ ଧୋଇପୋଛି ପରିଷ୍କାର କରିଦେବାକୁ ସମର୍ଥ ହେଉଛନ୍ତି । ଏହିମାନଙ୍କ ପାଇଁ ଭୋଟ ର୍‌ୟାଗିଂ ହେଉଛି । ମୃତ ମଣିଷ ଜୀବନଲାଭ କରି ନିଜର ଭୋଟାଧିକାର ସାବ୍ୟସ୍ତ କରୁଛି । ଅନୁପସ୍ଥିତ ବହୁ ବ୍ୟକ୍ତିଙ୍କର ଭୋଟକାଗଜ ଆପେ ଆପେ ଭୋଟବାକ୍ସରେ ପ୍ରବେଶ କରିଯାଉଛି । ତାଲିକାରେ ନାମ ନ ଥିବା ବ୍ୟକ୍ତି ଭୋଟ ଦେବାର ଅଧିକାର ଲାଭ କରୁଛନ୍ତି । ଏହି ଅପରାଧୀଗଣ ସମାଜରେ ପ୍ରତିପତ୍ତିଶାଳୀ ବ୍ୟକ୍ତିରୂପରେ ପରିଗଣିତ ହେବା ସଙ୍ଗେ ସଙ୍ଗେ ସମ୍ବିଧାନ ପରିସର ବାହାରକୁ ଯାଇ କାର୍ଯ୍ୟ କରୁଛନ୍ତି । ଦେଶର ଆଇନ୍‌କୁ ନିଜ ହାତକୁ ନେଇ ମଧ୍ୟ ଦିନ ଦ୍ୱିପ୍ରହରେ ସ୍ୱଚ୍ଛନ୍ଦରେ ଯାତାୟାତ କରୁଛନ୍ତି । ତେଣୁ ଅନୁଭୂତ ହେଉଛି ଭାରତୀୟ ରାଜନୀତିରେ ବ୍ୟକ୍ତିଗତ ସ୍ୱଚ୍ଛ ଚରିତ୍ର ଅପେକ୍ଷା ଅର୍ଥ, କ୍ଷମତା, ଅହଙ୍କାର, ପାପ ତଥା ଅତ୍ୟାଚାର ମୁଖ୍ୟ ଭୂମିକା ଲାଭ କରିଛି । ରାଜନୀତିର ସ୍ୱଚ୍ଛ ଆବରଣ ତଳେ ଭଣ୍ଡାମି ଓ ଠକାମି ଆତ୍ମଗୋପନ କରି ରହିଛି ।

ରାଜନୈତିକ ଅପରାଧୀକରଣର ବହୁ କାରଣ ବିଦ୍ୟମାନ । ରାଜନୈତିକ ବ୍ୟକ୍ତିମାନଙ୍କର ଅସାଧୁତା ଏହାର ସର୍ବଶ୍ରେଷ୍ଠ କାରଣ ରୂପେ ଗୃହୀତ ହୋଇପାରେ । ଅନେକ ରାଜନୈତିକ ବ୍ୟକ୍ତି ନିର୍ବାଚନ ବୈତରଣୀକୁ ପାର ହେବା ନିମିତ୍ତ ଅପରାଧୀମାନଙ୍କୁ ଡ଼ଙ୍ଗାରୂପେ ବ୍ୟବହାର କରିଥାନ୍ତି । ଭୋଟ ର୍‌ୟାଗିଂ, ବାହୁବଳ ଦ୍ୱାରା ଭୋଟରମାନଙ୍କୁ ନିର୍ଦ୍ଦିଷ୍ଟ ବ୍ୟକ୍ତିବିଶେଷଙ୍କ ସପକ୍ଷରେ ଭୋଟଦାନ ଦେବାକୁ ବାଧ୍ୟ କରିବା, ଅନୁପସ୍ଥିତ ଭୋଟରମାନଙ୍କ ଭୋଟକୁ କଳାବଜାରୀ କରିବା ଆଦି କାର୍ଯ୍ୟ

କରି ଏହି ଅପରାଧୀଗଣ ରାଜନୈତିକ ବ୍ୟକ୍ତିଗଣଙ୍କର ଅଶେଷ ଉପକାର ସାଧନ କରିଥାନ୍ତି । କୃତାର୍ଥ ହୋଇଥିବା ଏହି ନେତାଗଣ ପ୍ରତିବଦଳରେ ପ୍ରତ୍ୟକ୍ଷ ଓ ପରୋକ୍ଷରେ ସେମାନଙ୍କର ପ୍ରତ୍ୟୁପକାର କରିବାକୁ ଭୁଲନ୍ତି ନାହିଁ, ଯେଉଁଥିପାଇଁ ସମସ୍ତ ଅପରାଧ ସତ୍ତ୍ୱେ ଏମାନଙ୍କୁ ଅପରାଧୀ କୁହାଯାଇପାରେ ନାହିଁ । ସେମାନଙ୍କ ବିରୋଧରେ ପୋଲିସଙ୍କ ନିକଟରେ ଏତଲା କିମ୍ବା ଏଫ୍. ଆଇ. ଆର୍. ଦେଲେ ତାହା ଗୃହୀତ ହୁଏ ନାହିଁ । ଯଦିବା ବାଧ୍ୟବାଧକତାରେ ଏତଲା ଗୃହୀତ ହୁଏ, ତା'ର ସ୍ୱରୂପରେ ପରିବର୍ତ୍ତନ ହୋଇଯାଇଥାଏ । ବିଚାରାଳୟରେ ମଧ୍ୟ ଉପଯୁକ୍ତ ସାକ୍ଷ୍ୟ ପ୍ରମାଣ ତଥା କାଗଜପତ୍ରର ବିକୃତ ଉପସ୍ଥାପନ ଯୋଗୁଁ ଏମାନେ ଅକ୍ଳେଶରେ ଖସିଯାଇ ପାରନ୍ତି । ଜାତୀୟ ପୁଲିସ କମିଶନରଙ୍କ ଏକ ବିଶ୍ୱସ୍ତ ରିପୋର୍ଟରୁ ଜଣାଯାଏ, ଦେଶରେ ବିଭିନ୍ନ ସମୟରେ ସଂଘଟିତ ହେଉଥିବା ଅପରାଧର ମାତ୍ର ୨୫ ଭାଗ ପଞ୍ଜୀକରଣ କରାଯାଇଥାଏ । ଅନେକ ସମୟରେ ଭୟଭ୍ରାନ୍ତି ଦ୍ୱାରା କ୍ଷମତା ହାସଲ କରିବା ପାଇଁ ଅପରାଧକୁ ପ୍ରୋତ୍ସାହନ ଦିଆଯାଇଥାଏ । ସାଧାରଣତଃ ବିଭିନ୍ନ ସମୟରେ ଅପରାଧ ଆଚରଣ କରୁଥିବା ବ୍ୟକ୍ତିଙ୍କ ପ୍ରତି ସମାଜର ସାଧାରଣ ବ୍ୟକ୍ତିଙ୍କ ମନରେ ଭୟ ରହିଥାଏ । ସେମାନଙ୍କୁ ଭୋଟ ନ ଦେଲେ ହୁଏତ ସେମାନେ କୌଣସି ଅପ୍ରୀତିକର ପରିସ୍ଥିତି ସୃଷ୍ଟି କରିପାରନ୍ତି—ଏହି ଭୟରେ ଭୟାତୁର ବ୍ୟକ୍ତିଙ୍କ ମତଦାନ ସେମାନଙ୍କ ସପକ୍ଷରେ ଯାଇଥାଏ । ଜନସଚେତନତାର ଅଭାବ ରାଜନୀତିରେ ଅପରାଧୀକରଣର ଅନ୍ୟତମ କାରଣ । ସଚେତନ ଜନସାଧାରଣ ଯଦି ନିର୍ଭୟରେ ନିଜର ମତାଧିକାର ସାବ୍ୟସ୍ତ କରିପାରନ୍ତେ, ଅପରାଧୀକରଣକୁ ବହୁପରିମାଣରେ ରୋକାଯାଇ ପାରନ୍ତା । ରାଷ୍ଟ୍ରୀୟ ସ୍ୱାର୍ଥ ଅପେକ୍ଷା ବ୍ୟକ୍ତିଗତ ସ୍ୱାର୍ଥ ଅଧିକ ଗୁରୁତ୍ୱପୂର୍ଣ୍ଣ ହେଉଥିବାରୁ ଅପରାଧୀ ସ୍ୱଚ୍ଛନ୍ଦରେ ନିଜ କାର୍ଯ୍ୟ କରିଯାଉଛନ୍ତି । ନୈତିକ ମୂଲ୍ୟବୋଧରେ ସଙ୍କଟ ରାଜନୈତିକ ଅପରାଧୀକରଣର ଅନ୍ୟ ଏକ ବିଶେଷ କାରଣ । ଅତୀତରେ ସଚ୍ଚୋଟ ଓ ନୈତିକତାସମ୍ପନ୍ନ ବ୍ୟକ୍ତିଗଣ ରାଜନୀତିରେ ପ୍ରବେଶ କରୁଥିଲେ । ମାତ୍ର ବର୍ତ୍ତମାନର କଳୁଷିତ ରାଜନୀତିରେ ସମ୍ମାନବୋଧ ଥିବା କୌଣସି ବ୍ୟକ୍ତି ପ୍ରବେଶ କରିବାକୁ ଭୟ କରୁଛନ୍ତି । ବହୁ କ୍ଷେତ୍ରରେ ପରିଲକ୍ଷିତ ହେଉଛି ଯେ ସମାଜର ଗୁଣୀ ଓ ନ୍ୟାୟପରାୟଣ ବ୍ୟକ୍ତି ଶୋଚନୀୟ ଭାବରେ ରାଜନୀତିରେ ପରାଜୟ ବରଣ କରୁଛନ୍ତି । କାରଣ ଜନସାଧାରଣଙ୍କୁ ମିଥ୍ୟା ପ୍ରତିଶ୍ରୁତି ଦେବାର କଳା ସେମାନଙ୍କୁ ଜଣା ନ ଥିବାରୁ ଲୋକମାନଙ୍କ ଭାବପ୍ରବଣ ମନ ମଧ୍ୟକୁ ପ୍ରବେଶ କରିବାରୁ ବଞ୍ଚିତ ହେଉଛନ୍ତି । ସେଥିପାଇଁ ରାଜନୀତି ଆଜି ଦେଶସେବା ନ ହୋଇ ଏକ ବ୍ୟବସାୟରେ ପରିଣତ ହୋଇଯାଇଛି । ବିହାର, ଉତ୍ତରପ୍ରଦେଶ ଆଦି ରାଜ୍ୟର ରାଜନୀତିକ ହଟଚମଟରୁ ଏହାର ବହୁ ଉଦାହରଣ ସଂଗ୍ରହ କରାଯାଇପାରିବ । ନୈତିକତାର ଅଭାବ ଓ ଅନ୍ୟାୟକୁ ସମ୍ମୁଖୀନ ହେବାରେ ସାହସର ଅଭାବ ରାଜନୀତିରେ ଅପରାଧୀକରଣକୁ ସହାୟତା କରୁଛି । ଯେନତେନପ୍ରକାରେଣ କ୍ଷମତା ଦଖଲ ଆଜି ରାଜନୀତିର ଆଦର୍ଶ ହୋଇଛି । ବାସ୍ତବରେ ଭାରତୀୟ ରାଜନୀତିରେ ୧୯୬୭ ମସିହା ସାଧାରଣ ନିର୍ବାଚନଠାରୁ ଅପରାଧୀମାନଙ୍କ ପ୍ରବେଶ ହୋଇଛି । ଉତ୍ତରଭାରତରୁ ପ୍ରଭାବ ହରାଇଥିବା ଏକ ପ୍ରତିଷ୍ଠିତ ରାଜନୈତିକ ଦଳ କ୍ଷମତାସୀନ ହେବାପାଇଁ ଅର୍ଥବଳ ଓ ବାହୁବଳର ଆଶ୍ରୟ ନେଇ ଅପରାଧୀମାନଙ୍କ ସହିତ ଅସାଧୁ ମେଣ୍ଟ କଲେ ।

. ୧୯୭୦ ବେଳକୁ ଅସାଧୁ ବ୍ୟକ୍ତିମାନେ ଭୋଟ ରାଜନୀତିରେ ସକ୍ରିୟ ଭୂମିକା ଗ୍ରହଣ କରି ସେମାନଙ୍କୁ ସହାୟତା ପ୍ରଦାନ କରୁଥିବା ଦଳକୁ ଗାଦିସୀନ କରାଇଲେ । ଗୋଟିଏ ନିର୍ଦ୍ଦିଷ୍ଟ ଦଳର ସଫଳତା ଅନ୍ୟ ଦଳମ.ନଙ୍କୁ ମଧ ତାହା କରିବାକୁ ପ୍ରେରଣା ଯୋଗାଇଲା ଓ ରାଜନୀତିରେ ଅପରାଧୀମାନେ ମୁଖ୍ୟ ଭୂମିକା ଗ୍ରହଣ କରି ଏହାକୁ ଏକ ନୀତିରେ ପରିଣତ କଲା ।

ସମ୍ପ୍ରତି ରାଜନୀତିରେ ଅପରାଧୀକରଣ ଯୋଗୁଁ ରାଷ୍ଟ୍ରୀୟ ପ୍ରଗତି ରୁଦ୍ଧ ହୋଇଯାଇଛି । ମାଫିଆ ଗୁଣ୍ଡାମାନେ ରାଜନୀତି ଓ ଶାସନକୁ ପରିଚାଳନା କରୁଥିବାରୁ ସାଧାରଣ ବ୍ୟକ୍ତିଙ୍କ ସ୍ୱାର୍ଥ ପରାହତ ହୋଇଛି । ସମସ୍ତ ଯୋଜନାର ସୁଫଳ ମାତ୍ର ଅଳ୍ପ କେତେକ ବ୍ୟକ୍ତିଙ୍କ ହାତକୁ ଚାଲିଯାଇଛି । ପୁଲିସମାନଙ୍କର ନୈତିକ ମୂଲ୍ୟବୋଧ ଦୁର୍ବଳ ହେବାରୁ ସମାଜରେ ଶୋଷଣ ଓ ପୀଡ଼ନ ବୃଦ୍ଧି ପାଇଛି । ରାଜନୀତିକ ନେତାମାନେ ଅପରାଧୀମାନଙ୍କୁ ପ୍ରତିପକ୍ଷଙ୍କ ବିରୋଧରେ ପ୍ରୟୋଗ କରିବା ଦ୍ୱାରା ସମାଜରେ ଗୁଣ୍ଡାମି, ଅପହରଣ, ଧର୍ଷଣ ଓ ଅମାନବିକତା ବଢ଼ିବାକୁ ଲାଗିଛି । ଆଇନ୍ ଆଖିରେ ଏହି ଅପରାଧୀ ନିର୍ଦ୍ଦୋଷ ହୋଇଥିବାରୁ ସମାଜର ପ୍ରଗତି ସ୍ଥାଣୁ ହୋଇଯାଇଛି । ପ୍ରଗତି ନାମରେ ଗୁଣ୍ଡାପୋଷଣ ଆଜି ରାଜନୀତିର ଆଦର୍ଶରେ ପରିଣତ ହୋଇଛି । ଏହି କାରଣରୁ ପ୍ରତିଯୋଗିତା କ୍ଷେତ୍ରରେ ଭାରତ ପଛରେ ପଡ଼ିଯାଇଛି । ଜନସାଧାରଣ ପ୍ରକୃତ ନ୍ୟାୟ ପାଇବାରୁ ବଞ୍ଚିତ ହୋଇଛନ୍ତି । ରାଷ୍ଟ୍ରର ସାମୂହିକ ସ୍ୱାର୍ଥ ବ୍ୟାହତ ହେବାରୁ ଅର୍ଥନୈତିକ ପ୍ରଗତି ତ୍ୱରାନ୍ୱିତ ହୋଇପାରୁ ନାହିଁ । ଯେକୌଣସି ଜନମଙ୍ଗଳ ରାଷ୍ଟ୍ର ପାଇଁ ଏହି ପରିସ୍ଥିତି ଅତ୍ୟନ୍ତ ଉଦ୍‌ବେଗଜନକ । ଏଥିପାଇଁ ବର୍ତ୍ତମାନ ସବୁ ସ୍ତରରେ ଉଦ୍ୟମ ଜାରି ରହିବା ଉଚିତ ।

ରାଜନୀତିରେ ଅପରାଧୀକରଣ ବର୍ତ୍ତମାନ ସବୁଠାରୁ ବଡ଼ ସମସ୍ୟା । ପ୍ରତ୍ୟେକ ରାଜନୈତିକ ଦଳ ଏଥିପ୍ରତି ଉଦ୍‌ବେଗ ପ୍ରକାଶ କରୁଥିଲେହେଁ, ତାହା ସମ୍ପୂର୍ଣ୍ଣ ଭାବରେ ଲୋକଦେଖାଣିଆ । ଦେଶର ପ୍ରଗତି ଓ କଲ୍ୟାଣର ଏହା ପରିପନ୍ଥୀ ବୋଲି ସମସ୍ତେ ଅନୁଭବ କରୁଛନ୍ତି । ସୁଖର ବିଷୟ ନିର୍ବାଚନ କମିଶନର କେ. ପି. ଏସ୍. ଗିଲ ଅପରାଧ ପାଇଁ ଶାସ୍ତି ପାଇଥିବା ବ୍ୟକ୍ତିଙ୍କୁ ନିର୍ବାଚନରେ ଛଅ ବର୍ଷ ପାଇଁ ପ୍ରତିଦ୍ୱନ୍ଦ୍ୱିତା କରିପାରିବ ନାହିଁ ବୋଲି ନିର୍ଦ୍ଦେଶ ଦେଇଛନ୍ତି । ଏପରିକି ଉଚ୍ଚ ଅଦାଲତ ଦ୍ୱାରା ଜାମିନ୍ ପାଇନଥିବା ବ୍ୟକ୍ତି ମଧ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିପାରିବ ନାହିଁ ବୋଲି ନିର୍ଦ୍ଦେଶ ଦିଆଯାଇଛି । ମାତ୍ର ଏ ସମ୍ପର୍କରେ ଏପର୍ଯ୍ୟନ୍ତ ଆଇନ୍ ପ୍ରଣୟନ ହୋଇପାରି ନାହିଁ । ଏ ସମ୍ପର୍କରେ ସ୍ୱରାଷ୍ଟ୍ରମନ୍ତ୍ରୀ ବିବୃତି ଦେଇ କହିଛନ୍ତି ଅଦାଲତରେ ଦୋଷୀ ସାବ୍ୟସ୍ତ ହୋଇଥିବା ବ୍ୟକ୍ତି କେଉଁ ଧରଣର ଅପରାଧରେ ଜଡ଼ିତ ପ୍ରଥମେ ତାହା ଜାଣିବାକୁ ପଡ଼ିବ । ଜନସାଧାରଣଙ୍କ ସେବା ଉଦ୍ଦେଶ୍ୟରେ ଆନ୍ଦୋଳନ କରି ଅପରାଧୀ ରୂପେ ସାବ୍ୟସ୍ତ ହୋଇଥିବା ବ୍ୟକ୍ତି ଅପରାଧୀ ପଦବାଚ୍ୟ ହୋଇ ନ ପାରନ୍ତି । ସି.ପି.ଆଇ.ର ଶ୍ରୀ ଡ଼ି. ରାଜାଙ୍କର ଦୁର୍ବୃତ୍ତ ସମ୍ପର୍କୀୟ ବ୍ୟାଖ୍ୟା ଏବେ ମଧ ଏକ ପ୍ରଶ୍ନବାଚୀ ହୋଇ ଦେଖାଦେଇଛି । ପୁନରାୟ ଅତୀତରେ ଯେଉଁମାନେ ଅପରାଧ କରି ନିର୍ବାଚିତ ସଦସ୍ୟ ରୂପେ କାର୍ଯ୍ୟ କରୁଛନ୍ତି, ସେମାନଙ୍କ ପାଇଁ ଏହା ଲାଗୁ ହେବ ନାହିଁ । ଏକଥା ସତ୍ୟ ଯେ ପ୍ରତ୍ୟେକ ରାଜନୀତିକ ଦଳ ଏହି ଅପରାଧୀକରଣକୁ ମୁହଁରେ ବିରୋଧ କରୁଥିଲେ ହେଁ, ସେଥି ପ୍ରତି ଆନ୍ତରିକ ସମ୍ମତି ନାହିଁ ।

ଅନେକ ଅପରାଧପ୍ରବଣ ବ୍ୟକ୍ତି ନିଜର ସ୍ୱାର୍ଥ ପାଇଁ ଦେଶର ସ୍ୱାର୍ଥକୁ ବହିଃଶତ୍ରୁଙ୍କ ନିକଟରେ ବିକ୍ରୟ ନିମିତ୍ତ ଆଦୌ କୁଣ୍ଠା ପ୍ରକାଶ କରୁନାହାନ୍ତି । ଏ ସମ୍ପର୍କରେ କେତେକ ସମ୍ବାଦ ମଧ୍ୟ ହସ୍ତଗତ ହେଉଛି । ଅଥଚ ସେ କ୍ଷେତ୍ରରେ କୌଣସି ଆଖିଦୃଶିଆ ପଦକ୍ଷେପ ଗ୍ରହଣ କରାଯାଇପାରୁ ନାହିଁ । ଯେପର୍ଯ୍ୟନ୍ତ ସମୂହ ଜନସଚେତନତା ସୃଷ୍ଟି ନ ହୋଇପାରିଛି, ସେପର୍ଯ୍ୟନ୍ତ ରାଜନୀତିରୁ ଅପରାଧର ମୂଳୋତ୍ପାଟନ ହୋଇପାରିବ ନାହିଁ । ନିରପେକ୍ଷ ତଦନ୍ତ ହେଲେ ନିର୍ବାଚିତ ସଦସ୍ୟଙ୍କ ମଧ୍ୟରୁ ପ୍ରାୟ ୫୦ ଭାଗରୁ ଊର୍ଦ୍ଧ୍ୱ ବ୍ୟକ୍ତିଙ୍କ ନାମରେ ବିଭିନ୍ନ ମାମଲା ବିଚାରାଳୟ, ପୁଲିସ ଷ୍ଟେସନରେ ରୁଜୁ ହୋଇଥିବାର ଦେଖିବାକୁ ମିଳିବ । ଶାସନକଳ ଏ କ୍ଷେତ୍ରରେ କୌଣସି ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଆଣିପାରିବ ନାହିଁ । ଶିକ୍ଷାନୀତିରେ ପରିବର୍ତ୍ତନ, ନୈତିକ ସାହସର ଜାଗରଣ ଏବଂ ସମ୍ମିଳିତ ଜନ ଆନ୍ଦୋଳନ ଦ୍ୱାରା ଏହି ଅପରାଧୀକରଣକୁ ରୋକାଯାଇପାରିବ । ଏଥିପାଇଁ ବର୍ତ୍ତମାନଠାରୁ ସବୁ ସ୍ତରରେ ଉଦ୍ୟମ ହେବା ସଙ୍ଗେ ସଙ୍ଗେ ସି. ବି. ଆଇ. କୁ ନିରପେକ୍ଷ ଭାବରେ ତଦନ୍ତ କରିବାର ସୁଯୋଗ ପ୍ରଦାନ କରାଯିବା ଉଚିତ । ବ୍ୟକ୍ତିସ୍ୱାର୍ଥଠାରୁ ରାଷ୍ଟ୍ରସ୍ୱାର୍ଥ ଊର୍ଦ୍ଧ୍ୱରେ– ଏହା ସମସ୍ତେ ଅନୁଭବ କରିବା ଉଚିତ ।

ରାଜନୀତିରେ ଅପରାଧୀକରଣ ସମାଜ ପାଇଁ ଏକ ଅଭିଶାପ । ଭାରତ ପରି ଏକ ଐତିହ୍ୟ ଓ ଧାର୍ମିକ ଦେଶରେ ଏପରି କାର୍ଯ୍ୟ ଘୋର ନିନ୍ଦାର ବିଷୟ । ଅତୀତରେ ପ୍ରଜାସୁଖ ପାଇଁ ଏହି ଦେଶର ରାଜା ପତ୍ନୀଙ୍କୁ ତ୍ୟାଗ କରିବାର ଉଦାହରଣ ବିରଳ ନୁହେଁ । କାଳର ଅବାରିତ ସ୍ରୋତରେ ଅପରାଧୀମାନଙ୍କର ଛଦ୍ମମୁଖା ଖୋଲିଯିବାକୁ ଲାଗିଛି । ଧୀରେ ଧୀରେ ଜନସଚେତନତା ବୃଦ୍ଧି ପାଉଥିବା ବିଷୟ ସମ୍ପ୍ରତି ଘଟି ଯାଇଥିବା ନିର୍ବାଚନରୁ ଜଣାଯାଏ । ଆଶା କରାଯାଏ ଭାରତର ଅତୀତ ଗୌରବ ପୁଣି ଫେରିଆସିବ । ଜନସାଧାରଣ ପ୍ରକୃତ ବିଚାରକ । ଯଥାସମୟରେ ସେମାନେ ସେମାନଙ୍କର ରାୟ ଶୁଣାଇ ଏହି ଅପରାଧୀମାନଙ୍କ ମୂଳୋତ୍ପାଟନ କରିବେ । ସମୟକୁ ତଥାପି ଅପେକ୍ଷା କରିବାକୁ ପଡ଼ିବ । କାରଣ ସମୟ ସବୁଠାରୁ ବଳବାନ୍ ।



## ଭାରତରେ ମହିଳା ସ୍ଥାନ ସଂରକ୍ଷଣ

(ଉପକ୍ରମ, ନାରୀ ସମାଜ ପ୍ରତି ପୁରୁଷର ମାନସିକତା, ରାଜନୀତିକ ଖେଳ, ମହିଳା ସଂରକ୍ଷଣ ବିଲ୍‌ର ବିଭିନ୍ନ ଦିଗ, ପୁରୁଷ ସମାଜର ଦୃଷ୍ଟିଭଙ୍ଗୀ, ଉପସଂହାର)

ସମ୍ପ୍ରତି ଭାରତ ତା'ର ସ୍ୱାଧୀନତାର ସୁବର୍ଣ୍ଣଜୟନ୍ତୀ ପାଳନ କରୁଥିଲେ ହେଁ, ନାରୀମାନଙ୍କର ଉନ୍ନତି ନିମିତ୍ତ ବିଶେଷ କିଛି ପଦକ୍ଷେପ ନିଆଯାଇପାରି ନାହିଁ । ପ୍ରାଚୀନ କାଳରେ ଋଷିଗଣ ନାରୀମାନଙ୍କର ବିଶେଷତ୍ୱ ସମ୍ପର୍କରେ ସୂଚନା ପ୍ରଦାନ କରିବାକୁ ଯାଇ କହିଥିଲେ– ''ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତା ।'' ଅର୍ଥାତ୍ ଯେଉଁଠାରେ ନାରୀମାନଙ୍କୁ ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କରାଯାଇଥାଏ, ସେଠାରେ ଦେବତାମାନେ ବିଳାସ କରିଥାନ୍ତି । ପ୍ରାଚୀନ

ଆର୍ଯ୍ୟଋଷିଙ୍କ ଏହି ମହତ୍‌ବାଣୀ ଭାରତୀୟ ପରମ୍ପରାରେ କିପରି ମୂଲ୍ୟହୀନ, ସାମ୍ପ୍ରତିକ ନାରୀ ଜୀବନକୁ ଅନୁଶୀଳନ କଲେ ତା'ର ଯଥାର୍ଥ ପ୍ରମାଣ ମିଳିଥାଏ । ଅତୀତରେ ସୀତାଙ୍କ ପରି ରାମାୟଣ ବନ୍ଦନୀୟା ନାରୀ ଥିଲେ ଭାରତର ଆଦର୍ଶ । ତାଙ୍କର ନୈତିକ ଓ ଆଦର୍ଶପୂର୍ଣ୍ଣ ଜୀବନକୁ ଅନୁସରଣ କରି ଭାରତୀୟମାନେ କୃତ୍ୟାକୃତ୍ୟ ହେଉଥିଲେ । ପୁରୁଷପ୍ରଧାନ ସମାଜରେ ସୀତାଙ୍କର ସେହି ସମ୍ମାନାସ୍ପଦ ଆସନ ଭାରତୀୟ ନାରୀମାନଙ୍କୁ ବହୁ ଆଶ୍ୱାସନାର ଭବିଷ୍ୟତ ସମ୍ବନ୍ଧରେ ସୂଚନା ଦେଇଥିଲା । ନାରୀ ଶକ୍ତିର ମହତ୍ତ୍ୱ ପ୍ରତିପାଦନ ନିମିତ୍ତ ଭାରତୀୟ ଧାର୍ମିକ ପରମ୍ପରାରେ ବହୁ ଶକ୍ତିଙ୍କର ପୂଜାର୍ଚ୍ଚନା ହୋଇଥାଏ । ମାତ୍ର ବାସ୍ତବକ୍ଷେତ୍ରରେ ଏହା କେତେଦୂର ଯଥାର୍ଥ ? ପୁରୁଷପ୍ରଧାନ ସମାଜରେ ନାରୀ କ'ଣ ତା'ର ଯଥାର୍ଥ ଆସନ ଲାଭ କରିପାରିଛି ? ସାମାଜିକ, ରାଜନୀତିକ ଓ ଆର୍ଥନୀତିକ କ୍ଷେତ୍ରରେ ସେ ଏବେ କ'ଣ ସ୍ୱାବଲମ୍ବନଶୀଳ ହୋଇପାରିଛି ? ପୁରୁଷ ସହିତ ପାଦ ମିଳାଇ ଚାଲିବାର ସତ୍‌ସାହସ ଲାଭ କରିଛି ?

ଭାରତୀୟ ପରମ୍ପରାରେ ଏବେ ମଧ୍ୟ ନାରୀ ଏକ ଭୋଗ୍ୟବସ୍ତୁ ରୂପେ ପରିଚୟ ନେଇ ବିଚରଣ କରୁଛି । ନାରୀ ସତେଯେପରି ଏକ ଅଭିଶପ୍ତ ଜୀବଟିଏ । କନ୍ୟାଟିର ଜନ୍ମ ହେଲେ ପରିବାରରେ କେହି କେବେ ଖୁସି ହୋଇପାରେନା । କନ୍ୟା ଶିଶୁର ଅବହେଳା ତଥା ସୁଷମ ଖାଦ୍ୟର ଅଭାବ ଯୋଗୁଁ ବହୁ କନ୍ୟାଶିଶୁ ଅକାଳରେ ଝଡ଼ିପଡ଼ନ୍ତି । ୧୦୦୦ ପୁରୁଷଙ୍କ ଅନୁପାତରେ ଗତ କେତେବର୍ଷରେ ନାରୀମାନଙ୍କର ସଂଖ୍ୟା ୯୭୨ରୁ ୯୨୭କୁ ଖସିଆସିଛି । ନାରୀ ପ୍ରଗତି ଓ ନାରୀଜାଗରଣ ସମ୍ବନ୍ଧରେ ବାହାରେ ଆମେ ଯେତେ ଭାଷଣ ଦେଲେହେଁ, ମାନସିକ ସ୍ତରରେ ନାରୀ ସ୍ୱାଧୀନତା ସମ୍ପର୍କରେ ଆମେ କେବେ ଚିନ୍ତା କରିପାରୁନା । ସାମୟିକ ରାଜନୀତିକ ସ୍ୱାର୍ଥସିଦ୍ଧି ପାଇଁ ଆମେ ନାରୀମାନଙ୍କ ବିଷୟରେ ଆଲୋଚନା କରୁ, ସମ୍ବେଦନା ଜଣାଉ । ଭୋଟ ରାଜନୀତି ସହିତ ନାରୀମାନଙ୍କୁ ସଂଶ୍ଳିଷ୍ଟ କରାଯାଇ କେତେକ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ନିଜର ଫାଇଦା ଉଠାଇବାରେ ବ୍ୟସ୍ତ । ବ୍ୟକ୍ତିଚରିତ୍ରର ଏହି ଗୁଣଗୁଡ଼ିକ କୁମ୍ଭୀରକାନ୍ଦଣା ସହିତ ସମାନ ।

ସ୍ୱାଧୀନତା ପ୍ରାପ୍ତିର ସୁବର୍ଣ୍ଣଜୟନ୍ତୀ ପାଳନ ଉପଲକ୍ଷେ ମହିଳା ସଂରକ୍ଷଣ ବିଲ୍ ଲୋକସଭାରେ ଆଗତ କରାଗଲା ଏବଂ ଏହା ଗୃହୀତ ହେବ ବୋଲି ମଧ୍ୟ ଆଶା ପ୍ରକାଶ କରାଯାଉଥିଲା । ବିଭିନ୍ନ କ୍ଷେତ୍ରରେ ମହିଳାମାନଙ୍କ ନିମିତ୍ତ ଏକ ତୃତୀୟାଂଶ ସ୍ଥାନ ସଂରକ୍ଷଣ ପାଇଁ ଏକ ବିଲ୍ ମଧ୍ୟ ଆଗତ ହୋଇଥିଲା । ଭାରତରେ ସମୁଦାୟ ଜନସଂଖ୍ୟାର ଅର୍ଦ୍ଧେକରୁ ସାମାନ୍ୟ କମ୍ ହେଉଛନ୍ତି ମହିଳା । ସେହି ଦୃଷ୍ଟିରୁ ଏକତୃତୀୟାଂଶ ସ୍ଥାନ ସଂରକ୍ଷଣ ଆଦୌ ଅଯୌକ୍ତିକ ନୁହେଁ । ପୁଣି ନିର୍ବାଚନରେ ଓ ଲୋକସଭାରେ ଶତକଡ଼ା ୩୩ ଭାଗ ମହିଳାଙ୍କ ପାଇଁ ସ୍ଥାନ ସଂରକ୍ଷଣ ନିମିତ୍ତ ବିଲ୍‌ରେ ଉଲ୍ଲେଖ କରାଗଲା । ଅତୀତରେ ପ୍ରାୟତଃ ମହିଳା ସଦସ୍ୟଙ୍କ ସଂଖ୍ୟା କେବେ ୧୦% ରୁ ଅଧିକ ହୋଇ ନାହିଁ । ୧୯୯୫ ମସିହାରେ ଏହି ସଂକ୍ରାନ୍ତୀୟ ବିଲ୍‌ଟି ଲୋକସଭାରେ ଆଗତ କରାଗଲା । ଆଶା କରାଯାଉଥିଲା ୮୧ତମ ସମ୍ବିଧାନ ସଂଶୋଧନ ବିଲ୍ ମଧ୍ୟରେ ଏହା ଗୃହୀତ ହୋଇଯିବ । ମାତ୍ର ମାନସିକ ସ୍ତରରେ ଆମେ ନାରୀ ସ୍ୱାଧୀନତାର ପରିପନ୍ଥୀ, ଏହା ଅବିଳମ୍ବେ ପ୍ରମାଣିତ ହୋଇଗଲା ।

ମହିଳା ସଂରକ୍ଷଣ ବିଲ୍‌ଟି ଆଗତ ସମୟରେ ବିଭିନ୍ନ ରାଜନୈତିକ ଦଳ ଭିନ୍ନ ଭିନ୍ନ ମତବ୍ୟକ୍ତ କରିବାକୁ ଲାଗିଲେ । ଜନତାଦଳର କାର୍ଯ୍ୟକାରୀ ସଭାପତି ଏହାର ଘୋର ବିରୋଧ କରିବା ସଙ୍ଗେ ସଙ୍ଗେ ଅସୁନ୍ଦର ମନ୍ତବ୍ୟମାନ ଦେବାକୁ ଭୁଲିଲେ ନାହିଁ । ଅନ୍ୟ କେତେକ ଦଳ ଚତୁରତାର ସହିତ ବିଭିନ୍ନ ବୈଧାନିକ ପ୍ରଶ୍ନ ଉଠାଇ କାଳକ୍ଷେପଣ ନୀତି ଅବଲମ୍ବନ କଲେ । ମହିଳାମାନଙ୍କୁ ସମଅଧିକାର ଦେବା ନିମିତ୍ତ କେତେକ ପାଟିତୁଣ୍ଡ କରୁଥିଲେ ହେଁ, ତାହା କେବଳ ଲୋକଦେଖାଣିଆ । ଏଥିରେ ତିଳେମାତ୍ର ଆନ୍ତରିକତାର ଚିହ୍ନ ନାହିଁ । ମୁସ୍‌ଲିମଲିଗ୍‌ର ଶ୍ରୀ କାନିତ୍‌ୱାଲା ଏହି ବିଲ୍ ନିମିତ୍ତ ଭୋଟପ୍ରଥାକୁ ବିରୋଧ କଲେ । ସଂସଦରେ ସମ୍ବିଧାନ ସଂଶୋଧନ ନିମିତ୍ତ ଯେତିକି ସଦସ୍ୟ ଉପସ୍ଥିତ ରହିବା କଥା, ସେତିକି ସଦସ୍ୟ ମଧ୍ୟ ରହିଲେ ନାହିଁ । ଆଗାମୀ ଲୋକସଭା ନିର୍ବାଚନରେ ୩୦% ଆସନ ମହିଳାଙ୍କ ନିମିତ୍ତ ସଂରକ୍ଷଣ ରହିବ ବୋଲି ଏହି ବିଲ୍‌ରେ ଉଲ୍ଲେଖ ଥିଲା । ଏତଦ୍‌ବ୍ୟତୀତ ଆଇନ୍ ସଭାରେ ମଧ୍ୟ ଅନୁରୂପ ସଂରକ୍ଷଣ ପଦ୍ଧତି ଅବଲମ୍ବନ କରାଯିବାର ସୂଚନା ରହିଥିଲା । ଅତୀତରେ ଆନ୍ତର୍ଜାତିକ ମହିଳାବର୍ଷ ଅବସରରେ ମହିଳାମାନଙ୍କ ସୁବିଧା ଓ ସୁଯୋଗର ବିଚାର ନିମିତ୍ତ 'ନାରୀ ସାମାଜିକ ପଦମର୍ଯ୍ୟାଦା ସମିତି' (Status of Women Committee) ଗଠନ କରାହେବା ସମୟରେ ବାମପନ୍ଥୀ ଦଳଗୁଡ଼ିକ ମଧ୍ୟ ମହିଳାଙ୍କ ପାଇଁ ସ୍ଥାନ ସଂରକ୍ଷଣ ବ୍ୟବସ୍ଥାର ବିରୋଧ କରିଥିଲେ । ଏହା ତା'ର ଏକ ପୁନରାବୃତ୍ତି କହିଲେ ଭୁଲ୍ ହେବ ନାହିଁ ।

ମହିଳା ସଂରକ୍ଷଣ ବିଲ୍ ଆଗତ ସମୟରେ କେତେକ ସଦସ୍ୟ ବିଭିନ୍ନ ଆଳରେ ଏହାର ତ୍ରୁଟିବିଚ୍ୟୁତିମାନ ଦର୍ଶାଇବାକୁ ଲାଗିଲେ । ସମତା ଦଳର ଜଣେ ବରିଷ୍ଠ ସଦସ୍ୟ ମତଦେଇ କହିଥିଲେ ମହିଳାଙ୍କ ନିମିତ୍ତ ସଂରକ୍ଷିତ ସ୍ଥାନ ମଧ୍ୟରେ କେବଳ ତଫସିଲଭୁକ୍ତ ଜାତି, ଉପଜାତିମାନଙ୍କର ସ୍ଥାନ ସଂରକ୍ଷଣ ରହିଥିବା ସମୟରେ ଅନ୍ୟାନ୍ୟ ଅନଗ୍ରସର ଜାତିର ମହିଳାଙ୍କ ନିମିତ୍ତ ସଂରକ୍ଷଣ ବ୍ୟବସ୍ଥା ନ ଥିବାରୁ ଏହା ତ୍ରୁଟିପୂର୍ଣ୍ଣ । ଉକ୍ତ ବିଲ୍‌ର ସଂଶୋଧନ ତଥା ଜନମତ ସଂଗ୍ରହ ଉଦ୍ଦେଶ୍ୟରେ ତତ୍କାଳୀନ ବାଚସ୍ପତି ପି. ଏ. ସାଙ୍ଗମା ୩୧ ଜଣ ସଦସ୍ୟଙ୍କୁ ନେଇ ଏକ କମିଟି ଗଠନ କଲେ ଏବଂ ଏହି କାର୍ଯ୍ୟ କିପରି ସୁରୁଖୁରୁରେ ସାଧିତ ହୋଇପାରିବ ସେଥିପାଇଁ ତୀକ୍ଷ୍ଣ ଦୃଷ୍ଟି ରଖିଥିଲେ ହେଁ ଏହା ବାସ୍ତବରେ କାର୍ଯ୍ୟକାରୀ ହୋଇପାରିଲା ନାହିଁ । କେତେକ କୂଟନୀତିକ ବ୍ୟକ୍ତି ମତପ୍ରକାଶ କରି କହିଲେ ଏହି ସଂରକ୍ଷଣ ବ୍ୟବସ୍ଥାର ଫାଇଦା କେବଳ ସମାଜର ଉଚ୍ଚବର୍ଗର ମହିଳାମାନେ ହିଁ ଲାଭ କରିପାରିବେ । ଅନଗ୍ରସର ଜାତିର ମହିଳା ଏଥିରେ କୌଣସି ପ୍ରକାର ଉପକୃତ ହୋଇପାରିବେ ନାହିଁ । ତେଣୁ ସେମାନେ ଯୁକ୍ତି କଲେ ଅନଗ୍ରସର ମହିଳାମାନଙ୍କ ନିମିତ୍ତ ଆଉ ଏକ ସଂରକ୍ଷଣ ବ୍ୟବସ୍ଥାର ପ୍ରଚଳନ କରାଯାଉ । ପୁଣି କେତେକ ଏହି ସଂରକ୍ଷଣକୁ ୩୩%ରୁ ଶତକଡ଼ା ୧୫-୨୦ ମଧ୍ୟରେ ସୀମିତ ରଖିବାକୁ ଯୁକ୍ତି କରିଛନ୍ତି । ଯଥାର୍ଥ ସହଯୋଗ ନ ମିଳିବାରୁ ଓ ସାଂସଦମାନଙ୍କ ଅନୁପସ୍ଥିତି କାରଣରୁ ବିଲ୍‌ଟି ସିଲେକ୍ଟ କମିଟିକୁ ଗଲା ଏବଂ ଶେଷପର୍ଯ୍ୟନ୍ତ ଏକ ଝୁଲା ବିଲ୍‌ରୂପେ ଗୃହରେ ପଡ଼ିରହିଲା । ଏଥିରୁ ସ୍ପଷ୍ଟ ପ୍ରମାଣିତ ହୋଇଗଲା, କୌଣସି ଦଳ କାୟମନୋବାକ୍ୟରେ ଏହି ବିଲ୍‌ଟିକୁ ଗୃହରେ ଆଗତ ଓ ସମର୍ଥନ କରିବାକୁ ଚାହୁଁ ନ ଥିଲେ । କେବଳ ଭୋଟ ଆଶାରେ

ବେଳେବେଳେ ଏମାନେ ଅଯଥାରେ ନାରୀଜାତି ପ୍ରତି ସମ୍ବେଦନଶୀଳ ବୋଲି ପ୍ରମାଣ କରିବାକୁ ଯତ୍‌ପରୋନାସ୍ତି ଚେଷ୍ଟା କରୁଥିଲେ । ସାମନ୍ତବାଦୀ ସଭ୍ୟତାର ମୋହ ଏଯାବତ୍ ଆମ ପାଖରୁ ଦୂର ହୋଇ ନାହିଁ । ନାରୀକୁ ଯଥାର୍ଥ ମର୍ଯ୍ୟାଦା ଏବଂ ସମ୍ମାନ ଦେବାକୁ ପୁରୁଷମାନଙ୍କର ପ୍ରକୃତ ଇଚ୍ଛା ନାହିଁ ବୋଲି ଉକ୍ତ ମହିଳା ସଂରକ୍ଷଣ ବିଲ୍ ଆଗତ ପ୍ରସଙ୍ଗରୁ ଜଣାପଡ଼ିଲା ।

ମହିଳା ସଂରକ୍ଷଣ ବିଲ୍ ଫଳବତୀ ହୋଇ ନ ପାରିବାର ମଧ୍ୟ କେତେକ କାରଣ ରହିଛି । ଏହି ବିଲ୍ ଆଗତ ପୂର୍ବରୁ ରାଜନୈତିକ ବ୍ୟକ୍ତିଗଣ ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ଆଖିଆଗରେ ରଖିଥିଲେ । ସ୍ୱତଃପ୍ରବୃତ୍ତ ଭାବରେ ନାରୀକୁ ନାରୀର ଅଧିକାର ପ୍ରଦାନ ବା ସହାୟତା କରିବା ଉଦ୍ଦେଶ୍ୟରେ ବିଲ୍‌ଟି ଆଗତ ହୋଇଥିଲେ, ପରବର୍ତ୍ତୀ ସମୟରେ ଏପରି ମତାନ୍ତର ଘଟିନଥାନ୍ତା । ଭାରତର ଅଧିକାଂଶ କ୍ଷେତ୍ରରେ ଏବେବି ନାରୀମାନେ ଅବହେଳିତା । ପୁରୁଷସମାଜର ସତେଯେପରି ସେମାନଙ୍କ ପ୍ରତି କୌଣସି କର୍ତ୍ତବ୍ୟବୋଧ ଥିବାପରି ମନେହୁଏ ନାହିଁ । ଗୃହରେ ଚଣ୍ଡୀ, ଦୁର୍ଗା, ଲକ୍ଷ୍ମୀ, ସରସ୍ୱତୀ ଆଦି ଦେବୀଙ୍କୁ ଉପାସନା କରୁଥିବାବେଳେ ସେହି ନାରୀଶକ୍ତିର ପ୍ରତୀକ ବର୍ତ୍ତମାନର ମହିଳାମାନଙ୍କର ଜୀବନ ଅତ୍ୟନ୍ତ ମର୍ମନ୍ତୁଦ । ପୁରୁଷର ଭୋଗ୍ୟବସ୍ତୁ ପରି ଏମାନେ ଧର୍ଷିତା ହୁଅନ୍ତି; ପୁଣି ଯୌତୁକର ଯୂପକାଷ୍ଠରେ ଏହିମାନେ ହିଁ ବଳିପଡ଼ନ୍ତି ପ୍ରଥମେ । ଗୃହର ସମସ୍ତ କର୍ତ୍ତବ୍ୟ ସୁଚାରୁରୂପେ ସମ୍ପାଦନା କରି ମଧ ପ୍ରଶଂସାର ପାତ୍ରୀ ହୋଇପାରନ୍ତି ନାହିଁ । ସାମାନ୍ୟ ତ୍ରୁଟି ନିମିତ୍ତ ଏମାନଙ୍କୁ ଅନେକ କିଛି ନିର୍ଯାତନା ସହ୍ୟ କରିବାକୁ ପଡ଼େ । କର୍ମଜୀବୀ ମହିଳାମାନଙ୍କର ଅଧିକାଂଶ ଅର୍ଥ ପରିବାରର ମଙ୍ଗଳ ଉଦ୍ଦେଶ୍ୟରେ ବ୍ୟୟିତ ହେଲେହେଁ, ଏମାନଙ୍କୁ କେହି ସୁନଜରରେ ଦେଖନ୍ତି ନାହିଁ । ପିଲାମାନଙ୍କର ସମସ୍ତ ଅଳିଅର୍ଦ୍ଦଳି ଏମାନେ ଆଖିବୁଜି ସହିନିଅନ୍ତି । 'ଶକ୍ତିହୀନ ଶିବ ଶବ'—ଏପରି ମତ ସାମ୍ପ୍ରତିକ ସମାଜରେ ଅଚଳ । ମହିଳାମାନଙ୍କର ଅନାବିଳ ନିଃସ୍ୱାର୍ଥ ଅବଦାନକୁ ଭୋଗବାଦୀ ପୁରୁଷସମାଜ ସହଜରେ ଗ୍ରହଣ କରିନେଇପାରନ୍ତି ନାହିଁ । ବରଂ ସାମାନ୍ୟ ତ୍ରୁଟି ପାଇଁ ଏମାନଙ୍କୁ ଅକଥନୀୟ ନିର୍ଯାତନାର ଶିକାର ହେବାକୁ ପଡ଼େ । ମହାଭାରତର ଯାଜ୍ଞସେନୀ ପରି ଏମାନଙ୍କୁ କେବଳ ବାରମ୍ବାର ପୁରୁଷର ଖିଆଲକୁ ସମ୍ମାନ ଦେବାକୁ 'ଏକ ଅମାନତ' ପରି କାର୍ଯ୍ୟ କରିବାକୁ ପଡ଼ିଥାଏ । ଏପରି ଏକ ପାରମ୍ପରିକ ମୂଲ୍ୟବୋଧର ସମାଜରେ ନାରୀମାନଙ୍କୁ କିପରି ବା ସହାୟତା ମିଳିପାରିବ ? ସେଥିପାଇଁ ମହିଳା ସଂରକ୍ଷଣ ବିଲ୍‌ଟି ଯଥାର୍ଥରେ କାର୍ଯ୍ୟକାରୀ ହୋଇ ନ ପାରିବାର ଯେଉଁ ସମ୍ଭାବନା ପ୍ରଥମରୁ ଦେଖାଦେଇଥିଲା, ତାହା ବାସ୍ତବରେ ସତ୍ୟରେ ପରିଣତ ହେଲା ।

ଏବେ ମଧ୍ୟ ଆମ ସମାଜରେ ନାରୀଶିଶୁମାନଙ୍କୁ ବହୁ ସମୟରେ ମୃତ୍ୟୁର ଶିକାର ହେବାକୁ ପଡ଼ିଥାଏ । ଉପଯୁକ୍ତ ଖାଦ୍ୟାଭାବରୁ ତା'ର ଯଥାର୍ଥ ଶାରୀରିକ ଗଠନ ହୋଇପାରେ ନାହିଁ । ଉପଯୁକ୍ତ ସମୟରେ ଉଚିତ ଶିକ୍ଷାଲାଭ କରିପାରେ ନାହିଁ । ଅନେକ ସମୟରେ ଅଧାରୁ ଏମାନଙ୍କୁ ପାଠ ଛାଡ଼ିବାକୁ ପଡ଼ିଥାଏ । ଏମାନଙ୍କ ଶିକ୍ଷା ପ୍ରତି ଉଚିତ ଦୃଷ୍ଟି ଦେବାକୁ ପୁରୁଷସମାଜ ଆଗ୍ରହ ପ୍ରକାଶ କରେ ନାହିଁ । ପିଲାଟି ଦିନରୁ ଗୃହର ବହୁକାର୍ଯ୍ୟରେ ବ୍ୟସ୍ତ ରହି ଜୀବନର ସୁଖକର ମୁହୂର୍ତ୍ତମାନଙ୍କରୁ ଏମାନେ ବଞ୍ଚିତ ହୋଇଥା'ନ୍ତି । ଭାରତୀୟ ସାମାଜିକ ଜୀବନରେ ଏହିପରି ପ୍ରତିକୂଳ

ପରିବେଶ ଓ ପରିସ୍ଥିତି ମଧ୍ୟ ଦେଇ ଗତିକରୁଥିବା ନାରୀସମାଜକୁ ସ୍ୱତଃପ୍ରବୃତ୍ତ ଭାବରେ ସାହାଯ୍ୟ କରିବାକୁ ଆଗେଇ ଆସିବା ପୁରୁଷସମାଜ ପକ୍ଷରେ ସମ୍ଭବ ନୁହେଁ । ନୈତିକ ମୂଲ୍ୟବୋଧର ଦ୍ୱାହି ଦେଇ ଏମାନେ କେବଳ ଚିତ୍କାର କରିପାରନ୍ତି । ସେଥିପାଇଁ ବହୁପ୍ରତୀକ୍ଷିତ 'ମହିଳା ସଂରକ୍ଷଣ ବିଲ୍' ବହୁ ଆଡ଼ମ୍ବର ଓ ଆଟୋପ ମଧ୍ୟ ଦେଇ ଆଗତ ହୋଇଥିଲେ ହେଁ, ପାଣିଫୋଟକା ପରି ଏହା ମୁହୂର୍ତ୍ତକ ମଧ୍ୟରେ ନିଜର ମହତ୍ତ୍ୱ ହରାଇ ଏକ ମହାଶୂନ୍ୟତାକୁ କେବଳ ଆବୋରି ନେବାକୁ ବାଧ୍ୟହେଲା । ବି.ଜେ.ପି. ଓ ତାଙ୍କର ସହଯୋଗୀ ଦଳର ସରକାର ସେମାନଙ୍କର ଜାତୀୟ କାର୍ଯ୍ୟସୂଚୀରେ ଲୋକସଭା ପାଇଁ ଶତକଡ଼ା ୩୩ଭାଗ ସ୍ଥାନ ମହିଳାମାନଙ୍କ ନିମିତ୍ତ ସଂରକ୍ଷଣ ରହିବ ବୋଲି ଘୋଷଣା କରିଥିଲା ମାତ୍ର ରାଜନୀତିକ କାରଣରୁ ଏହା କାର୍ଯ୍ୟକାରୀ ହୋଇପାରିନାହିଁ । ଏହା କିପରି ରୂପରେଖ ନେବ, ତାହା ଭବିଷ୍ୟତରେ ରାଜନୀତିଜ୍ଞମାନଙ୍କର ମାନସିକତା ହିଁ କହିବ ।

●

# ତୃତୀୟ ସାର୍କ ଓ ଶତାବ୍ଦୀର ଶେଷ ଜାମ୍ବୋରୀ

**(ଉପକ୍ରମ, ଜାମ୍ବୋରୀର ଅର୍ଥ, ବିଶ୍ୱସ୍ତରରେ ଜାମ୍ବୋରୀ, ଭାରତରେ ଜାମ୍ବୋରୀର ଇତିହାସ, ଜାମ୍ବୋରୀର ସଂକଳ୍ପ ଓ ଉଦ୍ଦେଶ୍ୟ, ଜାମ୍ବୋରୀର ବିଭିନ୍ନ ବିଭାଗ, ଉପସଂହାର)**

୧୯୯୮ ମସିହା ଜାନୁଆରୀ ୪ ତାରିଖରୁ ୯ ତାରିଖ ପର୍ଯ୍ୟନ୍ତ ଖୋର୍ଦ୍ଧା ଜିଲ୍ଲାର ବରୁଣେଇ ପାହାଡ଼ ତଳେ ତ୍ରୟୋଦଶତମ ଜାମ୍ବୋରୀ ପାଳିତ ହୋଇଯିବା ଏକ ଉଲ୍ଲେଖଯୋଗ୍ୟ ଘଟଣା । ପୃଥିବୀର ସର୍ବବୃହତ୍ ତଥା ଶୃଙ୍ଖଳିତ ଯୁବସଂସ୍ଥା ହେଉଛି ସ୍କାଉଟ୍ ଓ ଗାଇଡ୍ ସଂସ୍ଥା । ଏହି ସଂସ୍ଥାର ସଦସ୍ୟ ବିନା ସ୍ୱାର୍ଥରେ ଅବହେଳିତ, ଦଳିତମାନଙ୍କର ସେବାରେ ନିଜକୁ ଉତ୍ସର୍ଗ କରିବା ସଙ୍ଗେ ସଙ୍ଗେ ବିପଦ-ଆପଦ ସମୟରେ ସ୍ୱତଃସ୍ଫୂର୍ତ୍ତ ଭାବରେ ସହାୟତା ପ୍ରଦାନ କରିଥାନ୍ତି । ଦେଶ ଦେଶ ମଧ୍ୟରେ ଭ୍ରାତୃତ୍ୱ ତଥା ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ସୃଷ୍ଟି କରିବା କ୍ଷେତ୍ରରେ ଏମାନେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାନ୍ତି । ଶୃଙ୍ଖଳା ଜ୍ଞାନ, ଚାରିତ୍ରିକ ସଂଯମତା ତଥା ଉତ୍ତମ ନାଗରିକ ହେବାର ସମସ୍ତ ଉତ୍ତମ ଗୁଣ ଏମାନଙ୍କ ନିକଟରେ ବିଦ୍ୟମାନ । ଚଳିତବର୍ଷ ଖୋର୍ଦ୍ଧାର ବରୁଣେଇ ପାହାଡ଼ ତଳେ ଅନୁଷ୍ଠିତ ହୋଇଯାଇଥିବା ତ୍ରୟୋଦଶ ଜାମ୍ବୋରୀରେ ବିଭିନ୍ନ ସ୍ଥାନରୁ ପ୍ରାୟ ୨୫ ହଜାର ସ୍କାଉଟ୍ସ ଅଂଶ ଗ୍ରହଣ କରିବା ସଙ୍ଗେ ସଙ୍ଗେ ସେମାନଙ୍କର ନୈପୁଣ୍ୟ ପ୍ରଦର୍ଶନ କରିଥିଲେ । ସୁଖର ବିଷୟ ଓଡ଼ିଶାରେ ଏହା ପ୍ରଥମଥର ପାଇଁ ଅନୁଷ୍ଠିତ ହେଲା ଏବଂ ଏହାହିଁ ହେଉଛି ବିଂଶ ଶତାବ୍ଦୀର ଶେଷ ଜାମ୍ବୋରୀ । ସବୁଠାରୁ ଉଲ୍ଲେଖଯୋଗ୍ୟ ବିଷୟ ହେଲା ଏହା ତୃତୀୟ ସାର୍କ

ଜାମ୍ବୋରୀ । ଏହା ପୂର୍ବରୁ ଭାରତର ବିଭିନ୍ନ ସ୍ଥାନରେ ବାରୋଟି ଜାମ୍ବୋରୀ ଅନୁଷ୍ଠିତ ହୋଇଯାଇଥିଲେ ହେଁ, ତାହା ଥିଲା ଜାତୀୟସ୍ତରର । ମାତ୍ର ଓଡ଼ିଶାରେ ଏହା ହେଉଛି ତୃତୀୟ ସାର୍କ ତଥା ତ୍ରୟୋଦଶତମ ଜାତୀୟ ଜାମ୍ବୋରୀ । ଏହା ପୂର୍ବରୁ ପ୍ରଥମ ଓ ଦ୍ୱିତୀୟ ସାର୍କ ଜାମ୍ବୋରୀ ଯଥାକ୍ରମେ ପାକିସ୍ଥାନ ଓ ଶ୍ରୀଲଙ୍କାରେ ଅନୁଷ୍ଠିତ ହୋଇଥିଲା । ସେଥିପାଇଁ ଏଥିରେ ଦେଶ ତଥା ଦେଶ ବାହାରୁ ମଧ୍ୟ ବିଭିନ୍ନ ପ୍ରତିନିଧି ଯୋଗଦାନ କରିଥିଲେ । ଜାମ୍ବୋରୀର ବାର୍ତ୍ତା ଥିଲା March Together ଅର୍ଥାତ୍ ଏକତ୍ର ଆଗେଇଚାଲ । ପ୍ରଗତିଶୀଳ ଦୃଷ୍ଟିଭଙ୍ଗୀ ସ୍କାଉଟ୍ସ ଓ ଗାଇଡ୍ସର ବିଶେଷତ୍ୱ ହୋଇଥିବାରୁ ଏକତ୍ର ଆଗେଇଯିବା ହିଁ ତାଙ୍କର ଆହ୍ୱାନ ।

ଜାମ୍ବୋରୀର ଅର୍ଥ ବିରାଟ ସ୍କାଉଟ୍ସ ଗାଇଡ୍ସ ମେଳା । କୌଣସି ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଏହି ସଂସ୍ଥାର ସଦସ୍ୟଗଣ ମିଳିତ ହୋଇ ବିଭିନ୍ନ କ୍ରୀଡ଼ାନୈପୁଣ୍ୟ ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ଦେଶ ଓ ଜାତିର କିପରି ସୁରକ୍ଷା କରାଯାଇପାରିବ ସେ ସମ୍ପର୍କରେ ତାଲିମପ୍ରାପ୍ତ ହୋଇଥାନ୍ତି । ଚାରିତ୍ରିକ ମୂଲ୍ୟବୋଧର ଜାଗ୍ରତ ସହିତ ସମାଜର ସାମୂହିକ ମଙ୍ଗଳ ଉଦ୍ଦେଶ୍ୟରେ ଏମାନେ କାର୍ଯ୍ୟ କରିଥାନ୍ତି । ନିଜର ସ୍ୱାର୍ଥ ଅପେକ୍ଷା ସାମୂହିକ ସ୍ୱାର୍ଥ ଏହି ସଂସ୍ଥାର ସଦସ୍ୟମାନଙ୍କ ନିକଟରେ ବଡ଼ । ଯୁବକଯୁବତୀମାନଙ୍କର ଚରିତ୍ରଗଠନ ତଥା ଉତ୍ତମ ନାଗରିକ ଭାବେ ସମାଜରେ ନିଜର ନିପୁଣତା ପ୍ରଦର୍ଶନ କରିବା ସ୍କାଉଟ୍ସ ଗାଇଡ୍ସର ଲକ୍ଷ୍ୟ । ଯୁବକଯୁବତୀ ବା ପିଲାମାନଙ୍କର ଅନ୍ତର୍ନିହିତ ପ୍ରତିଭାର ବିକାଶ କରିବା ସଙ୍ଗେ ସଙ୍ଗେ ନିଜ ଗୋଡ଼ରେ ନିଜେ ଠିଆ ହୋଇ ସ୍ୱାବଲମ୍ବନଶୀଳ ହେବା କ୍ଷେତ୍ରରେ ଏହାର ଭୂମିକା ଅତୀବ ପ୍ରଶଂସନୀୟ । ସ୍କାଉଟ୍ସ ଗାଇଡ୍ ସଙ୍ଗଠନ ଏକ ଅଣରାଜନୈତିକ ସ୍ୱେଚ୍ଛାସେବୀ ସମାଜ-ମଙ୍ଗଳକାରୀ ଅନୁଷ୍ଠାନ । ଏହା ଏକ ଶୃଙ୍ଖଳିତ ସମାଜସେବୀ ଅନୁଷ୍ଠାନ । ଏହି ଅନୁଷ୍ଠାନରେ ପିଲାଟି ସମୟରୁ ବିଭିନ୍ନ ତାଲିମ ପ୍ରଦାନ କରାଯାଇ ସାମାଜିକ ବିକାଶ ନିମିତ୍ତ ପଥ ଉନ୍ମୁକ୍ତ କରିଥାଏ । ଜାତୀୟ ସଂହତି ଓ ବିଶ୍ୱଭ୍ରାତୃତ୍ୱର ପ୍ରଚାର ଏହି ସ୍ୱେଚ୍ଛାସେବୀ ଅନୁଷ୍ଠାନର ଅନ୍ୟତମ ମୁଖ୍ୟ ଲକ୍ଷ୍ୟ ।

ଏକ ବିଶେଷ ମୁହୂର୍ତ୍ତରେ ସ୍କାଉଟ୍ସ ଆନ୍ଦୋଳନର ସୂତ୍ରପାତ ହୋଇଥିଲା । ବିଶ୍ୱ ସ୍କାଉଟ୍ସର ଜନ୍ମଦାତା ଲେଫ୍‌ଟନାଣ୍ଟ ଜେନେରାଲ ବାଡ଼େନ୍ ପାଓ୍ୱେଲ । ଦିନେ ଯେଉଁ ପାଓ୍ୱେଲ ଯୁଦ୍ଧକ୍ଷେତ୍ରରେ ରକ୍ତ ଦେଖି ପୈଶାଚିକ ଉଲ୍ଲାସରେ ମାତି ଉଠୁଥିଲେ, ସେ ପୁଣି ଜନସାଧାରଣଙ୍କ ମଙ୍ଗଳ ଉଦ୍ଦେଶ୍ୟରେ ନିଜକୁ ସମ୍ପୂର୍ଣ୍ଣରୂପେ ଉତ୍ସର୍ଗ କରିଥିଲେ । ତାଙ୍କରି ପ୍ରଯତ୍ନରେ ଗଢ଼ି ଉଠିଥିଲା ବିଶ୍ୱ ସ୍କାଉଟ୍ସ । ୧୯୦୮ ମସିହାରେ ଏହା ଏକ ବିଧିବଦ୍ଧ ରୂପ ପରିଗ୍ରହ କରିଥିଲେ ହେଁ, ଏହାର ପରିକଳ୍ପନା କିନ୍ତୁ ବହୁପୂର୍ବରୁ । ଯଥାର୍ଥରେ ଆଦିମ ଅଧିବାସୀମାନଙ୍କୁ ୧୮୯୫ ମସିହାରେ ଯୁଦ୍ଧଶିକ୍ଷା ଦେବା ସମୟରେ ଏହାର ଭିତ୍ତି ପ୍ରସ୍ତର ପଡ଼ିଥିଲା । ବାଡ଼େନ୍ ପାଓ୍ୱେଲ ଭାରତରେ କମାଣ୍ଡର ଥିବା ସମୟରେ କେତେଜଣ ଯୁବକଙ୍କୁ ଏକତ୍ରିତ କରି ୧୮୯୭ ମସିହାରେ ପରୀକ୍ଷା ସ୍ୱରୂପ କେତେକ କାର୍ଯ୍ୟକ୍ରମ ଗ୍ରହଣ କରିଥିଲେ । ଏଥିରେ ସେ ଅଦ୍ଭୁତ ସଫଳତା ଲାଭ କରିବାରୁ ଏବଂ ଏହି କାର୍ଯ୍ୟ ପାଇଁ ସେ ଜନସାଧାରଣଙ୍କ ଠାରୁ ଅପୂର୍ବ ଉତ୍ସାହ ଲାଭ କରିବାରୁ ୧୯୦୭ ମସିହାରେ ସେ ସ୍କାଉଟ୍ସ ଯୋଜନାକୁ କାର୍ଯ୍ୟକାରୀ କରିବାକୁ ଲାଗିଲେ । ବ୍ରାଉନ୍‌ସି ଦ୍ୱୀପରେ ପ୍ରଥମ ତାଲିମ

ଶିବିର ସଫଳତାର ସହିତ ଅନୁଷ୍ଠିତ ହୋଇଯିବା ପରେ ସେ ଲିଜିଅନ୍ ଅଫ୍ ବନର ସ୍କାଉଟ୍ ଆରମ୍ଭ କରିଥିଲେ । ପରେ ଏହା କଏଦ୍ ସ୍କାଉଟ୍ ନାମରେ ଖ୍ୟାତିଲାଭ କଲା । ପ୍ରଥମେ ଏଥିରେ କେବଳ ବାଳକମାନେ ଅଂଶଗ୍ରହଣ କରୁଥିଲେ । ଏହାକୁ ବିସ୍ତାର ରୂପ ପ୍ରଦାନ ଉଦ୍ଦେଶ୍ୟରେ ସେ ବାଳିକାମାନଙ୍କୁ ମଧ୍ୟ ଏହାର ଅନ୍ତର୍ଭୁକ୍ତ କରାଇବାକୁ ମନସ୍ଥ କଲେ । ସେବା କ୍ଷେତ୍ରରେ ବାଳକମାନଙ୍କ ଅପେକ୍ଷା ବାଳିକାମାନେ ଅଧିକ ସମ୍ବେଦନଶୀଳ ଓ କର୍ତ୍ତବ୍ୟପରାୟଣ ହୋଇଥିବାରୁ ୧୯୧୦ ମସିହାରେ ବାଳିକା ବିଭାଗ 'ଗାଇଡ୍' ଆରମ୍ଭ କରାଗଲା ଏବଂ ଏହା ମଧ୍ୟ ବିଶେଷ ସଫଳତା ଲାଭ କରିପାରିଲା । ଅଲିମ୍ପିଆ ଯେତେବେଳେ ଆନନ୍ଦରେ ଉତ୍ସବମୁଖର ହୋଇଉଠିଥିଲା, ହଠାତ୍ ସେଠାରେ ଏକ ବିପର୍ଯ୍ୟୟ ସୃଷ୍ଟି ହୋଇଥିଲା । ଟେମସ୍ ନଦୀରେ ଆସିଥିଲା ପ୍ରଳୟଙ୍କରୀ ବନ୍ୟା । ସତେଯେପରି ମାନବ-ସଭ୍ୟତାର ଧ୍ୱଂସ ପାଇଁ ସେ ପ୍ରତିଜ୍ଞାବଦ୍ଧ ଥିଲା । ଠିକ୍ ଏହି ସମୟରେ ବାଡ଼େନ୍ ପାୱେଲ୍ ସ୍କାଉଟ୍‌ସ ପିଲାମାନଙ୍କୁ ନେଇ ଏହି ପ୍ରଳୟଙ୍କରୀ ବନ୍ୟାର ସଫଳ ମୁକାବିଲା କଲେ । ବିପନ୍ନ ଓ ଅସହାୟ ଲୋକମାନଙ୍କୁ ସାହାଯ୍ୟ କଲେ । ସ୍କାଉଟ୍‌ସ ପିଲାମାନଙ୍କର ସ୍ୱାର୍ଥହୀନ ସେବାରେ ସେଦିନ ବହୁବ୍ୟକ୍ତି ଅଭିଭୂତ ହୋଇପଡ଼ିଥିଲେ । ସେମାନଙ୍କର ନିଷ୍ଠା ଓ କର୍ତ୍ତବ୍ୟବୋଧ ଯୋଗୁଁ ଏହି ସଂସ୍ଥା ଲୋକପ୍ରିୟ ହେବାକୁ ଲାଗିଲା । ବିଶେଷକରି ବାଡ଼େନ୍ ପାୱେଲଙ୍କ କର୍ତ୍ତବ୍ୟବୋଧ, ପରିଶ୍ରମ, ସାଧୁତା ଓ ନିଷ୍ଠା ଏହାକୁ ବିଶ୍ୱରେ ଅନ୍ୟତମ ବିଶିଷ୍ଟ ସେବାସଂସ୍ଥା ରୂପେ ଗଢ଼ି ତୋଳିବାରେ ସମର୍ଥ ହୋଇଥିଲା । ଆଜି ସମଗ୍ର ବିଶ୍ୱରେ ୧୫୦ ଟି ଦେଶରେ ଏହି ସଂସ୍ଥା କର୍ତ୍ତବ୍ୟରତ ଏବଂ ଏଥିରେ ୧୮୦୦ ଲକ୍ଷରୁ ଅଧିକ ଯୁବକଯୁବତୀ ବିନା ସ୍ୱାର୍ଥରେ ସଭ୍ୟରୂପେ ନିଷ୍ଠାର ସହ କର୍ତ୍ତବ୍ୟ ସମ୍ପାଦନ କରି ଜନପ୍ରିୟ ହୋଇପାରିଛନ୍ତି । ଏହାସତ୍ତ୍ୱେ ବାଡ଼େନ୍ ପାୱେଲ ଏହି ସଂସ୍ଥାର ଜନକରୂପେ ଚିରଦିନ ପାଇଁ ସ୍ମରଣୀୟ ହୋଇ ରହିବେ ।

ଭାରତରେ ୧୯୧୦ ମସିହା ବେଳକୁ ସ୍କାଉଟ୍‌ର ଆରମ୍ଭ ହୋଇଥିଲା । ପ୍ରଥମେ ଏହି ସ୍କାଉଟ୍‌ରେ କେବଳ ଇଂରେଜ ପିଲାମାନେ ଅଂଶ ଗ୍ରହଣ କରୁଥିଲେ । ଏହାକୁ 'ବୟଲିର ଅଫ୍ ଅନର' କୁହାଯାଉଥିଲା । ୧୯୧୫ ରେ ସିନ୍ଧ ବୟ ସ୍କାଉଟ୍ ଆସୋସିଏସନ୍, ୧୯୧୬ ରେ ବେଙ୍ଗଲୀ ବୟ ସ୍କାଉଟ୍ ଆସୋସିଏସନ୍, ୧୯୧୭ରେ ଇଣ୍ଡିଆନ୍ ବୟ ସ୍କାଉଟ୍ ଆସୋସିଏସନ୍ ଗଠିତ ହୋଇଥିଲା । ଶ୍ରୀରାମ ବାଜପେୟୀ, ପଣ୍ଡିତ ମଦନମୋହନ ମାଲବ୍ୟ ଏବଂ ପଣ୍ଡିତ ହୃଦୟନାଥ କୁଞ୍ଜରୁ ଆଦିଙ୍କ ନେତୃତ୍ୱରେ ଗଠିତ ହେଲା "ଅଖିଳ ଭାରତୀୟ ସେବାସମିତି ବଏଜ୍ ସ୍କାଉଟ୍ ଆସୋସିଏସନ୍ । ୧୯୨୧ ରେ ହିନ୍ଦୁସ୍ତାନ ବୟଜ୍ ସ୍କାଉଟ୍ ଆସୋସିଏସନ୍ ଗଠିତ ହୋଇଥିଲା । ଏହି ସମୟରେ ଭାରତର ବିଭିନ୍ନ ପ୍ରଦେଶରେ ସ୍କାଉଟ୍ ଆସୋସିଏସନ୍ ମାନ ଗଢ଼ିଉଠିଲା ଏବଂ ସେମାନଙ୍କର କାର୍ଯ୍ୟକଳାପ ସମସ୍ତଙ୍କ ଦ୍ୱାରା ଗ୍ରହଣୀୟ ହେଲା । ଓଡ଼ିଶାରେ ଜେ. ଚୌଧୁରୀ, ପଣ୍ଡିତ ରଘୁନାଥ ମିଶ୍ର, ରାଧାନାଥଙ୍କ ଉଦ୍ୟମରେ ଗଠିତ ହେଲା ' ହିନ୍ଦୁସ୍ଥାନ ସ୍କାଉଟ୍‌ସ ଆସୋସିଏସନ୍' । ୧୯୫୦ ବେଳକୁ ଭାରତର ବିଭିନ୍ନ ସ୍ଥାନରେ ଗଠିତ ହୋଇଥିବା ସମସ୍ତ ସ୍କାଉଟ୍‌ସ ସଙ୍ଘ ମିଳିତ ହୋଇ 'ଭାରତ ସ୍କାଉଟ୍ ଗାଇଡ୍ ସଂଘ' ନାମରେ ନାମିତ ହେଲା ।

ଏହାପରେ ପ୍ରତି ଚାରି ବର୍ଷରେ ଜାତୀୟ ସ୍ତରରେ ଥରେ ଏହି ଜାମ୍ବୋରୀ ବା ସ୍କାଉଟ୍ସ ଗାଇଡ୍ସ ମେଳା ଅନୁଷ୍ଠିତ ହୋଇଆସୁଛି । ୧୯୫୨ ମସିହାଠାରୁ ଏହା ଧାରାବାହିକ ଭାବରେ ବିଭିନ୍ନ ରାଜ୍ୟରେ ଅନୁଷ୍ଠିତ ହୋଇଆସିଛି । ୧୯୫୨ ମସିହାରେ ରାଜସ୍ଥାନର ଜୟପୁର, ୧୯୫୬ ରେ ହାଇଦ୍ରାବାଦ, ୧୯୬୦ ରେ ବାଙ୍ଗାଲୋର, ୧୯୬୪ ରେ ଆହ୍ଲାବାଦ, ୧୯୬୭ ରେ ପଶ୍ଚିମବଙ୍ଗର କଲ୍ୟାଣୀ, ୧୯୭୦ ରେ ବମ୍ବେର ଆରେକଲୋନୀ, ୧୯୭୪ ରେ ହରିଆନାର ଫରିଦାବାଦ୍, ୧୯୭୯ ରେ ତାମିଲନାଡୁର ମରାଇମଲା ନଗର, ୧୯୮୨ ରେ ବିହାରର ବୁଦ୍ଧଗୟା, ୧୯୮୬ ରେ ବାଙ୍ଗାଲୋର, ୧୯୯୦ ରେ ଭୋପାଳ, ୧୯୯୪ ରେ ପାଲଘାଟ ଓ ୧୯୯୮ ରେ ଓଡ଼ିଶାର ଖୋର୍ଦ୍ଧା ଜିଲ୍ଲାର ବରୁଣେଇ ପାହାଡ଼ ତଳେ ଏହା ଅନୁଷ୍ଠିତ ହୋଇଯାଇଛି । ଶିବିର ଜୀବନରେ ସ୍କାଉଟ୍ ଗାଇଡ୍ସମାନେ ନିଷ୍ଠା ଓ ଶୃଙ୍ଖଳାର ସହିତ ବିଭିନ୍ନ କାର୍ଯ୍ୟକ୍ରମ ପ୍ରତିପାଳନ କରିଥାନ୍ତି । ବ୍ୟାୟାମ, ପ୍ରାର୍ଥନା, ପତାକା ଉତ୍ତୋଳନ, ବିଭିନ୍ନ ପ୍ରତିଯୋଗିତା, ଏଷ୍ଟିମେସନ୍, ଲୋକନୃତ୍ୟ, ଗୀତ, ୱାଲକ୍ରସିଂ, ମଙ୍କି କ୍ରାଉଲ୍, ରୋପ୍ କ୍ଲାଇମିଙ୍ଗ୍, ଟନେଲ୍ କ୍ରସିଙ୍ଗ ଆଦି ବହୁ ଦୁଃସାହସିକ ତଥା ସାହସପୂର୍ଣ୍ଣ କାର୍ଯ୍ୟକ୍ରମ ସମାହିତ କରିଥାନ୍ତି । ଅତୀତରେ ସ୍କାଉଟ୍ସ ତାଲିମ ଭାରତରେ କେବଳ ସ୍କୁଲର ପରିସୀମା ମଧ୍ୟରେ ଆବଦ୍ଧ ଥିବା ସମୟରେ ବର୍ତ୍ତମାନ ଏହା ମହାବିଦ୍ୟାଳୟ, ବିଭିନ୍ନ ଯୁବଅନୁଷ୍ଠାନ ଓ ସ୍ୱେଚ୍ଛାସେବୀ ସଂଗଠନ ସ୍ତରକୁ ପ୍ରସାର ଲାଭ କରିଛି । ଏହାର ସୁଦୂରପ୍ରସାରୀ ଫଳାଫଳକୁ ଲକ୍ଷ୍ୟ କରି ୧୯୮୬ ମସିହାରେ ତତ୍କାଳୀନ ଭାରତର ପ୍ରଧାନମନ୍ତ୍ରୀ ସ୍ୱର୍ଗତ ରାଜୀବ ଗାନ୍ଧି ନୂତନ ଜାତୀୟ ଶିକ୍ଷାନୀତିରେ ସ୍କାଉଟ୍ସ ଗାଇଡ୍ସକୁ ଶିକ୍ଷାର ଏକ ମୁଖ୍ୟ ତଥା ଅତ୍ୟାବଶ୍ୟକୀୟ ଅଙ୍ଗ ରୂପେ ଗ୍ରହଣ କରିବାକୁ ପରାମର୍ଶ ଦେଇଥିଲେ । ବଜେଟ୍ ସେସନରେ ଏହାର ଆଲୋଚନା କରାଯାଇ ଜାତୀୟ ଶିକ୍ଷାନୀତି ପର୍ଯ୍ୟାୟରେ Programme of Action ରୂପେ ଲିପିବଦ୍ଧ କରାଗଲା । ଏଥିରେ ସ୍ପଷ୍ଟଭାବେ କୁହାଯାଇଛି – The Scouting Movement has very pervasive coverage in the country. Through its inexpensive yet disciplined activities, the Scouting and Guiding and to the extent Possible Rovering Movements would be used to take care of activities like community singing, protection of movements, cultural camps, rallies, jamborees and inter-state camps. This movement is capable of actioning a great deal with very little investment. ସମାଜର ବିଭିନ୍ନ କଲ୍ୟାଣକର କାର୍ଯ୍ୟରେ ସ୍କାଉଟ୍ସ ଗାଇଡ୍ସର ସଦସ୍ୟଗଣ ପ୍ରତ୍ୟକ୍ଷଭାବରେ ଅଂଶଗ୍ରହଣ କରି ନିଜର ସେବାପରାୟଣ ମନୋବୃତ୍ତିର ପରିଚୟ ପ୍ରଦାନ କରୁଛନ୍ତି । ସେଥିପାଇଁ ଶିକ୍ଷାପାଠ୍ୟ ଖସଡ଼ାର ଏକ ବିଶେଷ ଅଂଶ ରୂପେ ଏହାକୁ ଗ୍ରହଣ କରିବାକୁ ବହୁ ବୁଦ୍ଧିଜୀବୀ ମତପ୍ରଦାନ କରୁଛନ୍ତି ।

ସମାଜର ସାମୂହିକ ମଙ୍ଗଳ ସାଧନା ଜାମ୍ବୋରୀର ମୁଖ୍ୟ ସଙ୍କଳ୍ପ ଓ ଉଦ୍ଦେଶ୍ୟ । ବାଡ଼େନ୍ ପାୱେଲ ଏହାର ପ୍ରତିଷ୍ଠା ସମୟରେ ପ୍ରକାଶ କରିଥିଲେ, ''ସଦାବେଳ ପାଇଁ ପ୍ରସ୍ତୁତ ରୁହ'' । ୧୯୦୯ ମସିହାରେ ବୋଏର ଯୁଦ୍ଧ ସମୟରେ ଆହତ ସୈନ୍ୟମାନଙ୍କର ସେବା

ନିମିତ୍ତ ବାଳଚର ସେନା ନାମରେ ଗୋଟିଏ ଶିଶୁ ସଙ୍ଗଠନ ଗଠନ କରି ସେବା ଓ ତ୍ୟାଗର ମହିମା ପ୍ରକାଶ କରିଥିଲେ । ଦେଶ, ଜାତି, ଅନୁଷ୍ଠାନ ତଥା ସମାଜର ମଙ୍ଗଳ ଓ ସୁରକ୍ଷା ନିମିତ୍ତ ଏହା ମାଧ୍ୟମରେ ବିଭିନ୍ନ ତାଲିମ ପ୍ରଦାନ କରାଯାଇଥାଏ । ଶିବିରବାସୀଙ୍କ ମନରେ ତ୍ୟାଗ, ତିତୀକ୍ଷା ତଥା ସେବା ମନୋବୃତ୍ତିର ଉଦ୍ରେକ ନିମିତ୍ତ ବହୁବିଧ ପଦକ୍ଷେପ ଗ୍ରହଣ କରାଯାଇଥାଏ । ବିଭିନ୍ନ କାର୍ଯ୍ୟକ୍ରମ ମାଧ୍ୟମରେ ଜାତି, ଐକ୍ୟ, ମହିମା, ସଂହତି, ଐତିହ୍ୟ, ପରମ୍ପରା ଓ ସଂସ୍କୃତିର ସୁରକ୍ଷା ପାଇଁ ପ୍ରେରଣା ଦିଆଯାଇଥାଏ । ଏହାର ଅନ୍ତର୍ଭୁକ୍ତ ସମସ୍ତ ଅନ୍ତେବାସୀଙ୍କର ଅନ୍ତର୍ନିହିତ ପ୍ରତିଭାର ବିକାଶ ପ୍ରତି ଯଥୋଚିତ ଧ୍ୟାନ ପ୍ରଦାନ କରାଯାଇଥାଏ । ମାନବିକ ମୂଲ୍ୟବୋଧର ଜାଗ୍ରତ ଓ ଉତ୍ତମ ଚରିତ୍ର ଗଠନ ଉପରେ ମଧ୍ୟ ସ୍କାଉଟ୍ସ ଗାଇଡ୍ସ ଗୁରୁତ୍ୱ ଆରୋପ କରିଥାଏ । ପରିବାରରୁ ଛୋଟ ଶିଶୁଟିଏ ସାମାଜିକ ଆଚାରବ୍ୟବହାର ଶିକ୍ଷାଲାଭ କରିବା ସଦୃଶ ଶିବିର ଜୀବନରୁ ଏହାର ସଦସ୍ୟଗଣ ସାମ୍ୟ, ମୈତ୍ରୀ, ସୌହାର୍ଦ୍ଦ୍ୟ ଓ ଭ୍ରାତୃଭାବ ଶିକ୍ଷାକରି ବିଶ୍ୱ ସ୍ତରରେ ଅନୁରୂପ ବାତାବରଣ ସୃଷ୍ଟି କରିବାରେ ସମର୍ଥ ହୋଇଥାଏ । ଶିବିର ଜୀବନ ଆରମ୍ଭ ପୂର୍ବରୁ ଏହାର ସଦସ୍ୟଗଣ ଦେଶ, ଜାତି ନିମିତ୍ତ କର୍ତ୍ତବ୍ୟ କରିବାକୁ ଓ ଅସହାୟକୁ ସହାୟ ହେବାକୁ ଶପଥ ଗ୍ରହଣ କରିଥାନ୍ତି । ଭାରତୀୟ ଋଷିଙ୍କ ବଚନ ''ସର୍ବେ ଭବନ୍ତୁ ସୁଖିନଃ, ସର୍ବେସନ୍ତୁ ନିରାମୟାଃ, ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା' କଶ୍ଚିତ୍ ଦୁଃଖଭାଗ ଭବେତ୍'' – ଏହା ହିଁ ହେଉଛି ତା'ର ବାଣୀ । ପ୍ରତିଜ୍ଞା ଓ ନିୟମ ପାଠରୁ ଶିକ୍ଷାର ଆରମ୍ଭ ଏବଂ ବିଶ୍ୱଭ୍ରାତୃତ୍ୱ ଶିକ୍ଷା ମାଧ୍ୟମରେ ଦେଶର କଲ୍ୟାଣ ନିମିତ୍ତ ଜୀବନୋତ୍ସର୍ଗରେ ଏହାର ଉଦ୍ଦେଶ୍ୟର ପରିସମାପ୍ତି । 'ବସୁଧୈବ କୁଟୁମ୍ବକମ୍' – ତା'ର ଆଦର୍ଶ । ଜାତି, ଧର୍ମ, ବର୍ଣ୍ଣ, ଅବସ୍ଥା ଓ ଦେଶ ନିର୍ବିଶେଷରେ ତା'ର ସଦସ୍ୟମାନଙ୍କୁ ଉପଯୁକ୍ତ ନାଗରିକ ହେବା ପାଇଁ, ସୁ-ମଣିଷ ହେବା ପାଇଁ ତଥା ତା'ର ଶାରୀରିକ ଓ ମାନସିକ ବିକାଶ ପାଇଁ ବିଭିନ୍ନ ତାଲିମ ପ୍ରଦାନ କରିଥାଏ । ଜାତୀୟ ଐକ୍ୟ ପ୍ରତିଷ୍ଠା ଏବଂ ବିଶ୍ୱ ଭ୍ରାତୃତ୍ୱ ତଥା ଶାନ୍ତିର ପ୍ରଚାର ପାଇଁ ବିଭିନ୍ନ କାର୍ଯ୍ୟକ୍ରମ ଓ ଶିକ୍ଷା ଏଥିରେ ଗୃହୀତ ହୋଇଥାଏ । ଆର୍ଥିକ ଅବସ୍ଥା, ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ସବୁ ମଣିଷଙ୍କୁ ସମାନଭାବେ ଦେଖିବାକୁ ଏହା ଶିକ୍ଷା ପ୍ରଦାନ କରେ । ସ୍କାଉଟ୍ସ ଗାଇଡ୍ସ ବିଶ୍ୱରେ ଏକମାତ୍ର ଧର୍ମରେ ବିଶ୍ୱାସୀ ଏବଂ ତାହା ହେଉଛି ମାନବ ଧର୍ମ । ସମାଜସେବା, ଦୁଃସ୍ଥ ଓ ନିଃସହାୟଙ୍କୁ ସାହାଯ୍ୟ, ଶାରୀରିକ ଶିକ୍ଷା, ଶୃଙ୍ଖଳିତ ଜୀବନଯାପନ ଏମାନଙ୍କର ବୈଶିଷ୍ଟ୍ୟ । ସମାଜର ବିଭିନ୍ନ ସମସ୍ୟା ସମ୍ପର୍କରେ ଅବଗତ ହୋଇ ଏହାର ସଦସ୍ୟଗଣ ତା'ର ଆଶୁ ସମାଧାନ ନିମିତ୍ତ ବିଭିନ୍ନ କାର୍ଯ୍ୟପନ୍ଥା ଗ୍ରହଣ କରିଥାନ୍ତି । ସ୍କାଉଟ୍ସ ଗାଇଡ୍ସ ମଣିଷର ଆତ୍ମବିଶ୍ୱାସ ବୃଦ୍ଧି କରେ; ସମାଜରେ ସ୍ୱାବଲମ୍ବନଶୀଳ ହେବାକୁ ପ୍ରେରଣା ଯୋଗାଏ ଏବଂ ନିଜ ସମସ୍ୟାର ସମାଧାନ ନିମିତ୍ତ ନୈତିକ ସାହସ ପ୍ରଦାନ କରେ । ସମଗ୍ର ବିଶ୍ୱରେ ଗୋଟିଏ ମାନବବାଦୀ ଚିନ୍ତାଧାରାର ଉଦ୍ରେକ ପାଇଁ ଏହାର ଅବଦାନ ଅବିସ୍ମରଣୀୟ । ବିଶ୍ୱ ଭ୍ରାତୃତ୍ୱର ଉଦ୍ରେକ, ଏକ ସୁସ୍ଥ ବାତାବରଣ ସୃଷ୍ଟି ଓ ବିଶ୍ୱରେ ପ୍ରତ୍ୟେକ ମଣିଷର ଶାନ୍ତିପୂର୍ଣ୍ଣ ସହାବସ୍ଥାନ ନିମିତ୍ତ ଏହା ସଙ୍କଳ୍ପବଦ୍ଧ ଓ ସାଧନାରତ । ଯୁଦ୍ଧୋତ୍ତର ବିଶ୍ୱାସହୀନ ପୃଥିବୀରେ ବିଶ୍ୱାସଭାବ ସୃଷ୍ଟି ଏମାନଙ୍କର ଅନ୍ୟତମ ଲକ୍ଷ୍ୟ ।

ସ୍କାଉଟ୍‌ସ ଗାଇଡ୍‌ସ ସଂସ୍ଥାରେ ପିଲାମାନଙ୍କୁ ଅତି କମ୍ ବୟସରୁ ତାଲିମ ପ୍ରଦାନ କରାଯାଇଥାଏ । ସେଥିପାଇଁ ବୟସ ଅନୁପାତରେ ଏଥିରେ ଭିନ୍ନ ଭିନ୍ନ ନାମକରଣ ବା ବିଭାଜନ କରାଯାଇଥାଏ । ଦଶବର୍ଷର ଛୋଟ ଛୋଟ ବାଳକମାନଙ୍କୁ 'କବ' ଓ ଝିଅମାନଙ୍କୁ 'ବୁଲ୍‌ବୁଲ' କୁହାଯାଇଥାଏ । ଦଶ ବର୍ଷ ପରେ ପୁଅମାନେ 'ସ୍କାଉଟ୍' ଏବଂ ଝିଅମାନେ 'ଗାଇଡ୍' ଭାବରେ ପରିଚିତ ହୋଇଥାନ୍ତି । ସେହିପରି ବାରବର୍ଷ ପରେ ପୁଅମାନଙ୍କୁ 'ରୋଭର' ଏବଂ ଝିଅମାନଙ୍କୁ 'ରେଞ୍ଜର' କୁହାଯାଇଥାଏ । ଏହାସତ୍ତ୍ୱେ ସେମାନେ ମୁଖ୍ୟତଃ ସ୍କାଉଟ୍ ଓ ଗାଇଡ୍ ଭାବରେ ସାଧାରଣତଃ ଅନ୍ୟମାନଙ୍କ ଆଗରେ ପରିଚୟ ଲାଭ କରିଥାନ୍ତି ।

ମଣିଷର ଯଥାର୍ଥ ପରିଚୟ ଅନ୍ୟମାନଙ୍କ ମୁଖରେ । ତାହାହିଁ ବୋଧହୁଏ ସ୍କାଉଟ୍‌ସ ଓ ଗାଇଡ୍‌ସର ଉଦ୍ଦେଶ୍ୟ । ଓଡ଼ିଶାରେ ଏ ଶତାବ୍ଦୀର ଶେଷ ତଥା ତ୍ରୟୋଦଶତମ ଜାମ୍ବୋରୀ ପାଳିତ ହେବା ଖୁବ୍ ସୁଖର ବିଷୟ । ବର୍ତ୍ତମାନ ଓଡ଼ିଶାରେ ପ୍ରାୟ ୧୦୦୦ ରୁ ଅଧିକ ସ୍କୁଲରେ ଏହି ସ୍କାଉଟ୍, ଗାଇଡ୍ ଶିକ୍ଷା ଦିଆଯାଉଛି । ୧୯୮୬-୮୭ ଶିକ୍ଷାବର୍ଷରେ ଦିଲ୍ଲୀ, କାଶ୍ମୀର, ମହାରାଷ୍ଟ୍ର, ହାଇଦ୍ରାବାଦ ଇତ୍ୟାଦି ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ହୋଇଥିବା ସଂହତି ଶିବିରମାନଙ୍କରେ ଏମାନେ ଯୋଗ ଦେଇ ପୁରସ୍କାର ଲାଭ କରିଛନ୍ତି । ରାଷ୍ଟ୍ରପତି ୪୩୫ ଜଣ ବାଳକ ବାଳିକାଙ୍କୁ ପ୍ରଶଂସାପତ୍ର ପ୍ରଦାନ କରିଛନ୍ତି । ଏପରିକି ତିନୋଟି ବିଦ୍ୟାଳୟ ମଧ୍ୟ ପ୍ରଧାନମନ୍ତ୍ରୀଙ୍କ ଦ୍ୱାରା ପୁରସ୍କୃତ ହେବା ଓଡ଼ିଶା ପାଇଁ କମ୍ ଗୌରବର ବିଷୟ ନୁହେଁ । ୧୯୯୮ ମସିହା ଜାନୁଆରୀ ୪ ରୁ ୯ ମଧ୍ୟରେ ଖୋର୍ଦ୍ଧା ଜିଲ୍ଲାରେ ଅନୁଷ୍ଠିତ ଶତାବ୍ଦୀର ଶେଷ ଜାମ୍ବୋରୀରେ ସ୍କାଉଟ୍ ଓ ଗାଇଡ୍‌ମାନେ ନିଜର ନିପୁଣତା ପ୍ରଦର୍ଶନ କରିଛନ୍ତି । ଏକ ଏକ ଶୃଙ୍ଖଳିତ ସୈନିକ ସଦୃଶ ସେମାନେ ଯେପରି ନିଜର ନିଷ୍ଠା ପ୍ରଦର୍ଶନ କଲେ, ସେଥିରୁ ଜଣାଯାଉଥିଲା 'ସେବା ହିଁ ସେମାନଙ୍କ ଜୀବନର ପରମ ଧର୍ମ' । ବିଭିନ୍ନ କାର୍ଯ୍ୟକ୍ରମ ମଧ୍ୟରେ ଜନସଚେତନତା ସୃଷ୍ଟି କରିବା ମାଧ୍ୟମରେ ସରକାରଙ୍କ ଦ୍ୱାରା ଘୋଷିତ ବିଂଶସୂତ୍ରୀ ତଥା ଅନ୍ୟାନ୍ୟ କାର୍ଯ୍ୟକ୍ରମର ସଫଳ ରୂପାୟନ ନିମିତ୍ତ ପ୍ରଶଂସନୀୟ ଭୂମିକା ଗ୍ରହଣ କରିଛନ୍ତି । ଓଡ଼ିଶାର କଳା, ସଂସ୍କୃତି ଓ ଐତିହ୍ୟ ସ୍ୱରୂପ ଜଗନ୍ନାଥଙ୍କ ଆଖି, କୋଣାର୍କ ମନ୍ଦିରର ମୁଖଶାଳା ତଥା ଚନ୍ଦ୍ରଭାଗାର ସୂର୍ଯ୍ୟୋଦୟ ଥିଲା ଏହି ଜାମ୍ବୋରୀର ମୁଖ୍ୟ ସଙ୍କେତ । ବିଭିନ୍ନ କ୍ରୀଡ଼ା ଓ ସାଂସ୍କୃତିକ କାର୍ଯ୍ୟକ୍ରମ ମାଧ୍ୟମରେ ବିଶ୍ୱଭ୍ରାତୃତ୍ୱ ସୃଷ୍ଟି ତଥା ସମାଜସେବା ନିମିତ୍ତ ନିଜକୁ ଉତ୍ସର୍ଗ କରିବାର ମନୋବୃତ୍ତି ଏହାର ସଦସ୍ୟମାନଙ୍କୁ 'ବିରାଟତ୍ୱ'ର ସଂଜ୍ଞାରେ ସଂଜ୍ଞାୟିତ କରିଛି । ସମଗ୍ର ବିଶ୍ୱରେ ଶାନ୍ତିର ବାତାବରଣ ସୃଷ୍ଟି ଓ ଭ୍ରାତୃଭାବର ପ୍ରଚାର ସ୍କାଉଟ୍‌ସ ଓ ଗାଇଡ୍‌ସମାନଙ୍କର ଲକ୍ଷ୍ୟ ହୋଇଥିବାରୁ ଏବଂ ସମଗ୍ର ବିଶ୍ୱକୁ ଗୋଟିଏ କୁଟୁମ୍ବ ରୂପେ ପରିଚିତ କରି ସେମାନଙ୍କ ମଧ୍ୟରେ ପରସ୍ପର ପ୍ରତି ରହିଥିବା ହିଂସା, ଦ୍ୱେଷ ତଥା ଭେଦଭାବ ନୀତିକୁ ଦୂର କରାଇ ବିଶ୍ୱରେ ଶାନ୍ତି ଓ ମୈତ୍ରୀର ବାର୍ତ୍ତା ପ୍ରଚାର କରିବା ଏହାର ସର୍ବଶ୍ରେଷ୍ଠ ଲକ୍ଷ୍ୟ ହୋଇଥିବାରୁ ସମଗ୍ର ମାନବସମାଜ ନିମିତ୍ତ ଏହି ସଂସ୍ଥା ଏକ ଆଶୀର୍ବାଦ ସ୍ୱରୂପ ବୋଲି ଗ୍ରହଣ କରିବାକୁ ହେବ ।

●

# ସ୍ୱେଚ୍ଛାକୃତ ଟିକସ ଘୋଷଣା ଯୋଜନା – ୧୯୯୭

(ସ୍ୱେଚ୍ଛାକୃତ ଆୟ ଘୋଷଣା କ'ଣ ?, ଏହାର ଲକ୍ଷ୍ୟ ଓ ଉଦ୍ଦେଶ୍ୟ, କେଉଁମାନେ ଏହି ଯୋଜନାର ଅନ୍ତର୍ଭୁକ୍ତ ହୋଇପାରିବେ, ଅତୀତରେ ଏହି ଯୋଜନାର ବିଫଳତା, କେଉଁ ଅଘୋଷିତ ଆୟ ଏହାର ଅନ୍ତର୍ଭୁକ୍ତ, ଚଳିତ ଯୋଜନାରେ ଏହାର ସଫଳତା, ବିଫଳତା, ଉପସଂହାର)

ପ୍ରଚୁର ସ୍ଥାବର ଏବଂ ଅସ୍ଥାବର ସମ୍ପତ୍ତିର ମାଲିକାନା ସତ୍ତ୍ୱେ ଭାରତବର୍ଷରେ ଅସଂଖ୍ୟ ବ୍ୟକ୍ତି ନିଜର ପ୍ରକୃତ ଆୟ ସମ୍ପର୍କରେ ସଠିକ୍ ହିସାବ ସରକାରଙ୍କୁ ପ୍ରଦତ୍ତ କରିନଥାନ୍ତି । ଏପରିକି କୋଟି କୋଟି କଳାଧନର ମାଲିକ ମଧ୍ୟ ନିଜର ଆୟ ଓ ସମ୍ପତ୍ତି ସମ୍ବନ୍ଧରେ ସମସ୍ତ ବିବରଣୀ ଲୁକ୍କାୟିତ ରଖିଥାନ୍ତି । ସରକାର ଏବଂ ଜାତିଠାରୁ ନିଜର ଆୟକୁ ଗୁପ୍ତ ରଖି ଏମାନେ ପରୋକ୍ଷରେ ଜାତି ପ୍ରତି ବିଶ୍ୱାସଘାତକତା କରିଥାନ୍ତି । ୧୯୬୧ ର ଆୟକର ଅଧିନିୟମ ଅନୁସାରେ ବ୍ୟକ୍ତିବିଶେଷ, ଫାର୍ମ, ବିଭିନ୍ନ କମ୍ପାନୀ, ଟ୍ରଷ୍ଟ ତଥା ବିଦେଶରେ ଥିବା ଭାରତୀୟ ନାଗରିକ, ଯେଉଁମାନଙ୍କର ଏକ ନିର୍ଦ୍ଧାରିତ ସୀମାଠାରୁ ଅଧିକ ଆୟ ଥିବ, ସେମାନେ ଆୟକର ବିଭାଗଙ୍କ ନିକଟରେ ତାହା ଘୋଷଣା କରିବା ସଙ୍ଗେ ସଙ୍ଗେ ନିରୂପିତ ଟିକସ ଦେବାକୁ ବାଧ୍ୟ ହେବେ । ଯେଉଁମାନେ ଏହି ନିୟମକୁ ଫାଙ୍କିବାକୁ ଇଚ୍ଛା କରିବେ, ସେ କ୍ଷେତ୍ରରେ ଆୟକର ଅଧିନିୟମରେ ଦଣ୍ଡ ଦେବାର ମଧ୍ୟ ବ୍ୟବସ୍ଥା ରହିଛି । ଏହି ବ୍ୟବସ୍ଥା ଅନୁଯାୟୀ ଆୟକର ଫାଙ୍କୁଥିବା ବ୍ୟକ୍ତିଙ୍କୁ ଶତକଡ଼ା ୬୦ ଭାଗ କର ଦେବା ସହିତ ଦଣ୍ଡଦେବାର ମଧ୍ୟ ନିୟମ ରହିଛି । ଆର୍ଥନୀତିକ ସ୍ରୋତରେ ସାମିଲ ହେବା ନିମିତ୍ତ ୧୯୯୭ ମସିହାରେ କେନ୍ଦ୍ର ଅର୍ଥମନ୍ତ୍ରୀ ପି. ଚିଦାମ୍ବରମ୍ କେନ୍ଦ୍ରବଜେଟ୍‌ରେ ସ୍ୱେଚ୍ଛାକୃତ ଆୟ ଘୋଷଣା ଯୋଜନାର ବ୍ୟବସ୍ଥା କରିଥିଲେ । ଏହି ଯୋଜନା ୧୯୯୭ ମସିହା ଜୁଲାଇ ୧ ତାରିଖ ଠାରୁ ଡ଼ିସେମ୍ବର ୩୧ ତାରିଖ ପର୍ଯ୍ୟନ୍ତ ବଳବତ୍ତର ରହିଥିଲା । ଉକ୍ତ ସମୟସୀମା ମଧ୍ୟରେ ନିର୍ଦ୍ଧାରିତ ସୀମାଠାରୁ ଅଧିକ ଅର୍ଥ ବା ସମ୍ପତ୍ତିର ମାଲିକ ଥିବା ବ୍ୟକ୍ତି, ଟ୍ରଷ୍ଟ, କମ୍ପାନୀ, ଅନିବେଶ ଭାରତୀୟ ନିଜର ଗୁପ୍ତ ଅର୍ଜନକୁ ଘୋଷଣା କରିପାରିବେ ବୋଲି ପ୍ରସ୍ତାବ ରହିଥିଲା । ଏହି ଯୋଜନା ଅନୁଯାୟୀ ବ୍ୟକ୍ତିବିଶେଷ ତାଙ୍କର ଗୁପ୍ତ ଅର୍ଜନରେ ଶତକଡ଼ା ୩୦ ଭାଗ ଏବଂ କମ୍ପାନୀ ଶତକଡ଼ା ୩୫ ଭାଗ ଆୟକର ଦାଖଲ କରି ତାହାକୁ ବିଧିସଙ୍ଗତ କରାଇପାରିବେ । ଗୁପ୍ତ ଆୟର ସଠିକ୍ ଘୋଷଣା ଦ୍ୱାରା କୌଣସି କମ୍ପାନୀ ବା ବ୍ୟକ୍ତିବିଶେଷଙ୍କର କୌଣସି କ୍ଷତି ହେବ ନାହିଁ ବୋଲି ସରକାର ଘୋଷଣା କରିଥିଲେ । ପୁନରାୟ ଘୋଷିତ ହୋଇଥିବା ସମସ୍ତ ଆୟର ବିବରଣୀ ଗୋପନ ରଖାଯିବ ଓ ସେ ସମ୍ପର୍କରେ କରଦାତାକୁ କିଛି ପଚରାଯିବ ନାହିଁ କିମ୍ବା ଅର୍ଜନ ସମ୍ବନ୍ଧରେ ଯାଞ୍ଚ ମଧ୍ୟ କରାଯିବ ନାହିଁ ବୋଲି ସରକାର ସ୍ପଷ୍ଟୋକ୍ତି କରିଥିଲେ ।

ସ୍ୱେଚ୍ଛାକୃତ ଆୟ ଘୋଷଣା ଯୋଜନାର ଉଦ୍ଦେଶ୍ୟ ହେଉଛି ଗୁପ୍ତ ଅର୍ଥର ସଠିକ୍ ହିସାବ ଲାଭ କରିବା । ଭାରତରେ ବହୁ ବ୍ୟକ୍ତି, କମ୍ପାନୀ, ଟ୍ରଷ୍ଟ ବା ଅନିବେଶ ଭାରତୀୟ ସେମାନଙ୍କର ପ୍ରକୃତ ଆୟର ପରିମାଣ ସରକାରଙ୍କ ନିକଟରେ ଘୋଷଣା କରିବାକୁ କୁଣ୍ଠାପ୍ରକାଶ କରିଥାନ୍ତି । ଏହି ଟିକସ ଫାଙ୍କୁଥିବା ବ୍ୟକ୍ତି, କମ୍ପାନୀ ଆଦିଙ୍କ ନିମିତ୍ତ ସମ୍ପଦକର ଅଧିନିୟମ ୧୯୫୭, ଆୟକର ଅଧିନିୟମ ୧୯୬୧, ବୈଦେଶିକ ମୁଦ୍ରାନିୟନ୍ତ୍ରଣ ଅଧିନିୟମ ୧୯୭୩, କମ୍ପାନୀଜ ଅଧିନିୟମ ୧୯୫୭ ଆଦିର ବିଭିନ୍ନ ଦଣ୍ଡ ବ୍ୟବସ୍ଥାର ନିୟମ ଥିଲେ ହେଁ, ସରକାର ଏହାଦ୍ୱାରା ପ୍ରକୃତ କଳାଧନର ହିସାବ ଲାଭ କରିବାକୁ ସମର୍ଥ ହୋଇପାରି ନ ଥିଲେ । ସେଥିପାଇଁ ଅର୍ଥମନ୍ତ୍ରୀଙ୍କ ଉଦ୍ୟମରେ ୧୯୯୭ ସ୍ୱେଚ୍ଛାକୃତ ଆୟଘୋଷଣା ଯୋଜନା ବା ଭିଡ଼ିଆଇଏସ୍‌ର ପ୍ରଚଳନ କଲେ । ବହୁ କରଦାତା ସେମାନଙ୍କ ଅଘୋଷିତ ଆୟକୁ ବିଭିନ୍ନ ବ୍ୟାଙ୍କ୍‌ରେ କମ୍ପାନୀ ସେୟାର୍, ବ୍ୟାଙ୍କ୍ ଡ଼ିପୋଜିଟ୍, ମୂଲ୍ୟବାନ୍ ଅଳଙ୍କାର, ନଗଦ ଟଙ୍କା, ସରକାରୀ ବଣ୍ଡ, ଜମିବାଡ଼ି ବା ବେସରକାରୀ ସଂସ୍ଥାରେ ଗୁପ୍ତ ଭାବରେ ରଖିଥାନ୍ତି । ଖୁବ୍ କମ୍ ଟିକସରେ ସେମାନଙ୍କର ଗୁପ୍ତ ଆୟକୁ ପ୍ରକାଶ କରି ତାହାକୁ ବିଧିସଙ୍ଗତ କରାଇ ନେବାକୁ ୧୯୯୭ ଯୋଜନାରେ ପରାମର୍ଶ ଦିଆଯାଇଥିଲା । ଏହାଦ୍ୱାରା ଉଭୟ ସରକାର ଓ ବ୍ୟକ୍ତିବିଶେଷ, କମ୍ପାନୀ, ଟ୍ରଷ୍ଟ ଆଦି ଲାଭବାନ୍ ହୋଇପାରିବେ ବୋଲି ଆଶାପ୍ରକାଶ କରାଯାଇଥିଲା । ଏତଦ୍‌ବ୍ୟତୀତ ଏହି ଯୋଜନାରେ ଘୋଷଣା କରାଯାଇଥିଲା ଯେ, ଯଦି କୌଣସି ବ୍ୟକ୍ତି ବା କମ୍ପାନୀ ଟିକସ୍ ଫାଙ୍କନ୍ତି କିମ୍ବା ଆୟକର ବିଭାଗ ନିକଟରେ ସ୍ୱେଚ୍ଛାକୃତ ଭାବରେ ନିଜର ଆୟ ଘୋଷଣା ନ କରି କର ବା ଟିକସ ନ ଦିଅନ୍ତି, ତେବେ ଯାଞ୍ଚ ଦ୍ୱାରା ଆୟ ବହିର୍ଭୂତ ସମ୍ପତ୍ତିର ୩ ଶହ ଗୁଣ ଅଧିକ ଟିକସ ଆଦାୟ କରାଯିବ । ଲୋକମାନଙ୍କ ମନରେ ବିଶ୍ୱାସ ଜନ୍ମାଇବା ଉଦ୍ଦେଶ୍ୟରେ ବିଭିନ୍ନ ପ୍ରସିଦ୍ଧ ବ୍ୟକ୍ତି, ଦୈନିକ ସମ୍ବାଦପତ୍ର, ଦୂରଦର୍ଶନ ଆଦି ମାଧ୍ୟମରେ ବିଜ୍ଞାପନ ପ୍ରକାଶ କରାଯାଇଥିଲା । ଏହି ଯୋଜନାର ଅନ୍ୟ ଏକ ବିଶେଷତ୍ୱ ହେଉଛି, ସ୍ୱେଚ୍ଛାକୃତ ଆୟରୁ ଲାଭ କରାଯାଇଥିବା ଅର୍ଥରୁ ଶତକଡ଼ା ୭୭.୫ ଭାଗ ରାଜ୍ୟମାନଙ୍କୁ ପ୍ରଦାନ କରାଯିବ ଓ ତାହା ରାଜ୍ୟର ବିଭିନ୍ନ କଲ୍ୟାଣକର କାର୍ଯ୍ୟ, ଯଥା – ସମାଜକଲ୍ୟାଣ, ରାସ୍ତା ନିର୍ମାଣ, ପ୍ରାଥମିକ ଶିକ୍ଷା, ପିଇବା ପାଣି ଆଦି କ୍ଷେତ୍ରରେ ଖର୍ଚ୍ଚ କରାଯିବ । ମାତ୍ର ମୁଷ୍ଟିମେୟ କେତେଜଣ ବ୍ୟକ୍ତିବିଶେଷ, କମ୍ପାନୀ ବା ଟ୍ରଷ୍ଟମାନଙ୍କ ନିକଟରେ ଗଚ୍ଛିତ ଥିବା ପ୍ରଚୁର ଅର୍ଥ କିଛି ପରିମାଣରେ ସାମୂହିକ କଲ୍ୟାଣକର କାର୍ଯ୍ୟରେ ବ୍ୟବହୃତ ହୋଇପାରିବାର ଆଶା ଓ ବିଶ୍ୱାସ ନେଇ ଏହି ଯୋଜନା ପ୍ରବର୍ତ୍ତନ କହିଲେ ଭୁଲ ହେବ ନାହିଁ ।

ସ୍ୱେଚ୍ଛାକୃତ ଟିକସ ଘୋଷଣା ଯୋଜନାରେ କେଉଁମାନେ ଅନ୍ତର୍ଭୁକ୍ତ ହୋଇପାରିବେ, ସେ ସମ୍ପର୍କରେ ଉକ୍ତ ଯୋଜନାରେ ସୂଚନା ପ୍ରଦାନ କରାଯାଇଛି । ଏହି ଯୋଜନାରେ ଯେକୌଣସି ବ୍ୟକ୍ତି, ଟ୍ରଷ୍ଟ, କମ୍ପାନୀ, ହିନ୍ଦୁ ଅବିଭକ୍ତ ପରିବାର ଆଦି ଅନ୍ତର୍ଭୁକ୍ତ ହୋଇପାରିବେ । ଯେଉଁ ବ୍ୟକ୍ତିବିଶେଷ, କମ୍ପାନୀ ବା ଉପରିଲିଖିତ ସଂସ୍ଥା ନିଜର ପ୍ରକୃତ ଆୟ ଘୋଷଣା କରିନଥିବେ, ସେମାନଙ୍କର ସେହି ଅଘୋଷିତ ଆୟ ହିଁ ଏହାର ଅନ୍ତର୍ଭୁକ୍ତ । ଲୁକ୍କାୟିତ ବା ଗୁପ୍ତ ରଖାଯାଇଥିବା

ଅଘୋଷିତ ଆୟ ଘୋଷିତ ହେଲେ ତା' ଉପରେ ୩୦% ବା ୩୫% ଆୟକର ପ୍ରଦାନ କରି ବ୍ୟକ୍ତିବିଶେଷ ବା କମ୍ପାନୀ ତାକୁ ବୈଧ କରିପାରିବେ ।

ସ୍ୱେଚ୍ଛାକୃତ ଆୟ ଘୋଷଣା ଯୋଜନା ୧୯୯୭ ଭାରତବର୍ଷରେ ସମ୍ପୂର୍ଣ୍ଣ ରୂପେ ଏକ ନୂତନ ଯୋଜନା ନୁହେଁ । ଭାରତବର୍ଷରେ ୧୯୫୧ ମସିହାରୁ ଏହାର ଆରମ୍ଭ ହୋଇଛି । ମାତ୍ର ଦୁଃଖର ବିଷୟ ଅତୀତରେ ଏହି ଯୋଜନା ଆଶାନୁରୂପ ସଫଳତା ଲାଭ କରି ନାହିଁ । ୧୯୯୭ ମସିହାରେ ପ୍ରବର୍ତ୍ତିତ ଏହି ଯୋଜନା ଯେ ସମ୍ପୂର୍ଣ୍ଣ ସଫଳକାମ ହୋଇପାରିଛି, କହିବା ଭୁଲ ହେବ ନିଶ୍ଚୟ । ଏବେ ମଧ ଭାରତରେ ବହୁ ଅଘୋଷିତ ଆୟବ୍ୟାଙ୍କ, ବିଭିନ୍ନ ଚେକ୍, ବଣ୍ଡ, ବିଦେଶୀ ବ୍ୟାଙ୍କ୍, ମୂଲ୍ୟବାନ୍ ଅଳଙ୍କାର, ଭୂମି ସମ୍ପତ୍ତିରୂପେ ଗୁପ୍ତ ଭାବରେ ରହିଛି । ଯାହା ଘୋଷିତ ହୋଇଛି, ସେଥିରେ ମଧ ଆଶ୍ୱସ୍ତ ହେବାର କିଛି ନାହିଁ । ୧୯୯୭ ଜାନୁଆରୀ ମାସରେ National Development Council (ଜାତୀୟ ଉନ୍ନୟନ ପରିଷଦ)ର ବୈଠକରେ ପଶ୍ଚିମବଙ୍ଗର ମୁଖ୍ୟମନ୍ତ୍ରୀ ବିଶିଷ୍ଟ କମ୍ୟୁନିଷ୍ଟ ନେତା ଜ୍ୟୋତିବସୁ ଯେଉଁ ତଥ୍ୟ ପ୍ରଦାନ କରିଛନ୍ତି, ସେଥିରୁ ଆମକୁ ବହୁପରିମାଣରେ ହତାଶ ହେବାକୁ ପଡ଼ିବ । ତାଙ୍କ ମତାନୁସାରେ ପ୍ରାୟ ୭ ଲକ୍ଷ କୋଟି ଟଙ୍କା କଳାଧନ ଭାରତରେ ଅନ୍ୟ ଏକ ଆର୍ଥିକ ବ୍ୟବସ୍ଥାର ପ୍ରଚଳନ ହେଉଛି ଏବଂ ହାରାହାରି ୧ ଲକ୍ଷ କୋଟି ଟଙ୍କାର କଳାଧନ ପ୍ରତିବର୍ଷ ଏହା ସହିତ ସାମିଲ ହେଉଛି । ଯଦି ବାସ୍ତବରେ ଏହି ତଥ୍ୟ ସତ୍ୟ ହୋଇଥାଏ, ତେବେ ସ୍ୱେଚ୍ଛାକୃତ ଆୟ ଯୋଜନାରେ ଆମେ ଯେତିକି ଲାଭବାନ୍ ହୋଇଛୁ ତାହା ସମୁଦ୍ରରୁ ଶଙ୍ଖେ ଜଳ ମାତ୍ର । ଅବଶ୍ୟ ଅତୀତର ଆୟକରର ଆୟଠାରୁ ୧୯୯୭ ମସିହାର ସ୍ୱେଚ୍ଛାକୃତ ଆୟଘୋଷଣା ଯୋଜନାରେ ଅଧିକ ଅର୍ଥ ମିଳିଛି । ସେଥିପାଇଁ ସରକାରଙ୍କ ତରଫରୁ ନିରାପତ୍ତା ଯୋଗାଇ ଦିଆଯିବାର ମଧ ପ୍ରତିଶ୍ରୁତି ଦିଆଯାଇଥିଲା । ୧୯୯୭ ମସିହାରେ ବୈଦେଶିକ ବିନିମୟ ମୁଦ୍ରା ସଂଗ୍ରହ ଉଦ୍ଦେଶ୍ୟରେ ପ୍ରବାସୀ ଭାରତୀୟମାନଙ୍କୁ ଯେଉଁ ବଣ୍ଡ୍ ବିକ୍ରୟ କରାଯାଇଥିଲା, ସେଥିରୁ ପ୍ରାୟ ୨୫୦ କୋଟି ଡ଼ଲାର ଗଚ୍ଛିତ ହୋଇପାରିଥିଲା, ତଥାପି ତାହା ଆଶାନୁରୂପ ସଫଳତା ନୁହେଁ । ବହୁ ବ୍ୟକ୍ତି ଏବେ ମଧ କୋଟି କୋଟି ଟଙ୍କା ବାହାର ଦେଶର ବିଭିନ୍ନ ବ୍ୟାଙ୍କରେ ଲୁଚାଇ ରଖିଛନ୍ତି । ସବୁଠାରୁ ଆଶ୍ଚର୍ଯ୍ୟର ବିଷୟ ବିଭିନ୍ନ ବୁରୋକ୍ରାଟ ବା ରାଜନୀତିକ ନେତା ଯେଉଁ ପ୍ରଚୁର ଅର୍ଥ ବିଭିନ୍ନ ସ୍ଥାନରେ ଗୁପ୍ତ ଭାବରେ ରଖିଛନ୍ତି, କୌଣସି ପରିସ୍ଥିତିରେ ଆୟକର ବିଭାଗ ତା'ର ପ୍ରକୃତ ହିସାବ ପାଇବାକୁ ସମର୍ଥ ହୋଇପାରୁ ନାହିଁ । ଏହି ସ୍ତରରେ ବହୁ କଳାଧନ ଅଘୋଷିତ ଭାବରେ ରହିଯାଉଛି ।

ସ୍ୱେଚ୍ଛାକୃତ ଆୟ ଘୋଷଣା ଯୋଜନା ବା ଭିଡ଼ିଆଇଏସ୍-୯୭ ରେ ଯେଉଁ ଅଘୋଷିତ ଆୟ ଏହାର ଅନ୍ତର୍ଭୁକ୍ତ ହୋଇପାରିବ, ତା'ର ଏକ ତାଲିକା ପ୍ରସ୍ତୁତ କରିଛନ୍ତି । ସେହି ତାଲିକା ଅନୁଯାୟୀ ଆୟକର ଅଧିନିୟମର ୧୩୯ ଧାରା ଅନୁସାରେ ଯଦି କୌଣସି କରଦାତା ଅତୀତରେ ତାଙ୍କ ପ୍ରକୃତ ଆୟର ଘୋଷଣା କରିନଥାନ୍ତି, ସ୍ୱେଚ୍ଛାକୃତ ଆୟଘୋଷଣା ଯୋଜନାରେ ସେ ତାହା ଘୋଷଣା କରି ୩୦% ବା ୩୫% ଆୟକର ଦାଖଲପୂର୍ବକ ତାଙ୍କର ଅତୀତ ଆୟକୁ ବୈଧୀକରଣ କରିପାରିବେ । ପୁନରାୟ ୧୯୯୭ ପୂର୍ବରୁ ଯଦି କୌଣସି ବ୍ୟକ୍ତି ବା କମ୍ପାନୀ ନିଜର ଆୟକର

ଘୋଷଣା କରିଥାନ୍ତି, ମାତ୍ର କେତେକ ଆୟର ହିସାବ ବା ସୁଧର ପ୍ରକୃତ ବିବରଣୀ ଏଥିରେ ପ୍ରଦତ୍ତ କରିନାହାନ୍ତି,ତେବେ ଏହି ଯୋଜନାରେ ସେ ତାକୁ ଅନ୍ତର୍ଭୁକ୍ତ କରିପାରିବେ । ଅତୀତ ଆୟ ସମ୍ବନ୍ଧୀୟ ବିବରଣୀ ବା ଇତିମଧ୍ୟରେ କ୍ରୟ କରାଯାଇଥିବା ବିଭିନ୍ନ ସମ୍ପତ୍ତିର ପ୍ରକୃତ ମୂଲ୍ୟ କୌଣସି ବ୍ୟକ୍ତି ପ୍ରଦାନ କରି ପାରି ନ ଥାନ୍ତି, ତେବେ ଏହି ଯୋଜନାରେ ୩୦% ବା ୩୫% ଆୟକର ଦେଇ ସେ ତାହାକୁ ଘୋଷଣା କରିପାରିବେ । ମାତ୍ର ଯଦି ଅତୀତରେ ଆୟକର ବିଭାଗ ଦ୍ୱାରା ତଲାସି ଯୋଗୁଁ ଆୟ ବହିର୍ଭୂତ ସମ୍ପତ୍ତିର ସୂଚନା ମିଳିଥାଏ ଏବଂ ସେଥିପ୍ରତି ସେହି ବ୍ୟକ୍ତିବିଶେଷ ବା କମ୍ପାନୀ ଦଣ୍ଡିତ ହୋଇଥାଏ, ସେହି ସମ୍ପତ୍ତିର ଘୋଷଣା ପରେ ମଧ୍ୟ ସେହି ବ୍ୟକ୍ତି ବା କମ୍ପାନୀ ଦଣ୍ଡରୁ ମୁକ୍ତିଲାଭ କରିପାରିବେ ନାହିଁ ।

ସୁଖର ବିଷୟ ଭି.ଡ଼ି.ଆଇଏସ-୯୭ ଯୋଜନା କିଛି ପରିମାଣରେ ସଫଳତା ଅର୍ଜନ କରିପାରିଛି । ଏହି ଯୋଜନା ପ୍ରବର୍ତ୍ତନ ସମୟରେ ସରକାର ଏଥିରୁ ପ୍ରାୟ ୪ ହଜାର ୮୦୦ କୋଟି ଟଙ୍କା ଆୟ କରିବେ ବୋଲି ଅନୁମାନ କରିଥିଲେ । ମାତ୍ର ଶେଷ ହିସାବରୁ ଏହି ଯୋଜନାରେ ୧୦ ହଜାର ୫୦ କୋଟି ଟଙ୍କା ଆୟ ହୋଇଛି ବୋଲି ସରକାର ଘୋଷଣା କରିଛନ୍ତି । ୧୯୯୭ ଡ଼ିସେମ୍ବର ୩୧ ତାରିଖ ମଧ୍ୟରେ ପ୍ରାୟ ୨ ଲକ୍ଷ ବ୍ୟକ୍ତି ସେମାନଙ୍କର ରିଟର୍ଣ୍ଣ ଦାଖଲ କରିଛନ୍ତି । ସରକାରୀ ହିସାବ ଅନୁଯାୟୀ ୨୦ ରୁ ୨୫ ହଜାର କୋଟି ଟଙ୍କା ସମ୍ପତ୍ତି, ବିଭିନ୍ନ ଅଳଙ୍କାର, ନଗଦ ଟଙ୍କା, ଆସବାବପତ୍ର ଆଦିର ଘୋଷଣା କରାଯିବା ସଙ୍ଗେ ସଙ୍ଗେ କର୍ପୋରେଟ୍ ଓ ବ୍ୟକ୍ତିଗତ କ୍ଷେତ୍ରରୁ ୧୦ ହଜାର ୫୦ କୋଟି ଟଙ୍କା ଆୟକର ଆଦାୟ ହୋଇଛି । ଅନ୍ୟାନ୍ୟ ଟିକସ ଫାଙ୍କୁଥିବା ବ୍ୟକ୍ତିଙ୍କ ନିମିତ୍ତ ସରକାର ଅନ୍ୟ ଏକ ନୂତନ ନୀତି ପ୍ରଚଳନ କରିବାର ଯୋଜନା କରୁଛନ୍ତି । ଏଥିରୁ ପ୍ରାୟ ଅଧିକ ୧୦ ହଜାର କୋଟି ଟଙ୍କା ଆୟ ହୋଇପାରିବ ବୋଲି ଅର୍ଥମନ୍ତ୍ରୀ ଆଶା ଓ ବିଶ୍ୱାସ ରଖିଛନ୍ତି । ଏହି ଯୋଜନାର ଫଳବତୀ ରୂପରେଖ କେବଳ ଭବିଷ୍ୟତ ହିଁ କହିପାରିବ ।

ଭାରତର ଅର୍ଥନୀତି ବହୁପରିମାଣରେ କଳାଧନ ଦ୍ୱାରା ପ୍ରଭାବିତ । ୧୯୯୭ ସ୍ୱେଚ୍ଛାକୃତ ଆୟଘୋଷଣା ଯୋଜନାରେ ସରକାର ଯେ ସମ୍ପୂର୍ଣ୍ଣ ସଫଳ ହୋଇଛନ୍ତି, କହିବା କଷ୍ଟକର ବ୍ୟାପାର । ଏବେ ମଧ୍ୟ ବହୁ ଗୁପ୍ତ ଆୟ ଅଘୋଷିତ ଭାବରେ ରହିଯାଇଛି । ସରକାରଙ୍କ ବିବରଣୀ ଅନୁଯାୟୀ ଅନ୍ୟାନ୍ୟ ଦେଶ ତୁଳନାରେ ଭାରତରେ ସବୁଠାରୁ କମ୍ କର ଆଦାୟ ହେଉଛି । ୧୯୯୫ ରେ ଜିଡ଼ିପିର ମାତ୍ର ୯.୬% କର ଆଦାୟ ହୋଇଥିଲା । ଭାରତର ଉଦାରୀକରଣ ଅର୍ଥନୀତି ବହୁ ସମୟରେ ସରକାରୀ କଳ ଓ ରାଜନୀତି ବ୍ୟକ୍ତିବିଶେଷଙ୍କର ହାତବାରିସି ହୋଇପଡ଼ିଥିବାରୁ ଏଥିରୁ ଉପଯୁକ୍ତ ସଫଳତା ଲାଭ ହୋଇପାରୁ ନାହିଁ । ଅନେକ ସମୟରେ ଧନିକ ବା ପୁଞ୍ଜିପତିଗୋଷ୍ଠୀ ରାଜନୈତିକ ଶକ୍ତିର ଅଂଶବିଶେଷ ହୋଇଥିବାରୁ ତଥା ରାଜନୈତିକ ପୃଷ୍ଠପୋଷକତା ଲାଭ କରୁଥିବାରୁ ଆୟକର ବିଭାଗ ସେମାନଙ୍କ ବିପକ୍ଷରେ କୌଣସି ଶାସ୍ତି ବିଧାନ କରିବାକୁ ସମର୍ଥ ହୋଇପାରୁ ନାହାନ୍ତି । ବହୁ ରାଜନୈତିକ ବ୍ୟକ୍ତି ଗୁପ୍ତ ଭାବରେ ବିଭିନ୍ନ ସ୍ଥାନରେ ଅର୍ଥ ରଖିଥିବାରୁ ଏବଂ ଆୟକର ବିଭାଗ ସରକାରର ଏକ ଅଂଶବିଶେଷ ହୋଇଥିବାରୁ ଏ କ୍ଷେତ୍ରରେ ସେମାନେ ସ୍ୱାଧୀନ ଭାବରେ କାର୍ଯ୍ୟ କରିବାକୁ ଅସମର୍ଥ ହୋଇଛନ୍ତି । ଏହି କେତେକ କାରଣ ଯୋଗୁଁ ଭାରତରେ

ସ୍ୱେଚ୍ଛାକୃତ ଆୟ ଘୋଷଣା ଯୋଜନା ବିଶେଷ ରୂପେ ଫଳବତୀ ହୋଇପାରୁ ନାହିଁ । ମାତ୍ର ବେତନଭୋଗୀ କର୍ମଚାରୀ ବିଶେଷ ପରିମାଣରେ ଏହାର ଶିକାର ହେଉଛନ୍ତି ।

ଭାରତ ଏକ ଦରିଦ୍ର ଦେଶ । ସେହି ଦେଶର ନାଗରିକ ଭାବେ ତା'ର ସୁଖଦୁଃଖରେ ଆମେ ସମସ୍ତେ ଭାଗୀଦାର ହେବା ଉଚିତ । ଏ ଦେଶରେ ଯେଉଁ କେତେକ ମୁଷ୍ଟିମେୟ ବ୍ୟକ୍ତି ବା ପୁଞ୍ଜିପତି ଗୋଷ୍ଠୀ ପ୍ରଚୁର ପରିମାଣରେ ଅର୍ଥ ଗୁପ୍ତ ଭାବରେ ଲୁଚାଇ ରଖିଛନ୍ତି, ଦେଶର ଉନ୍ନତିକଳ୍ପେ ସେମାନେ ତାହା ସ୍ୱତଃପ୍ରବୃତ୍ତ ଭାବେ ଘୋଷଣା କରିବା ଉଚିତ । ଜାତୀୟ ସ୍ରୋତରେ ନିଜକୁ ସାମିଲ କରି ଯଦି ଏହି ଗୋଷ୍ଠୀ ଭାରତର ମଙ୍ଗଳ ନିମିତ୍ତ ନିଜର ପ୍ରକୃତ ଆୟ ଘୋଷଣା କରିପାରନ୍ତେ, ତେବେ ଭାରତର ଦୁର୍ବଳ ଅର୍ଥନୀତି ନିଶ୍ଚିତ ଭାବରେ ସୁଧୁରି ଯାଇପାରନ୍ତା ।



# ଦକ୍ଷିଣ ଏସିଆ ଆଞ୍ଚଳିକ ସହଯୋଗ ସଙ୍ଗଠନ ବା ସାର୍କ

**(ଉପକ୍ରମ, ସାର୍କ କ'ଣ, ସାର୍କର ଉଦ୍ଦେଶ୍ୟ, ବିଶ୍ୱ ପରିବର୍ତ୍ତନ ପରିପ୍ରେକ୍ଷୀରେ ସାର୍କର ଭୂମିକା, ବିକାଶଶୀଳ ରାଷ୍ଟ୍ର ନିମିତ୍ତ ଏକ ଆହ୍ୱାନ, ସାର୍କର ଉଭୟ ଦିଗ, ଉପସଂହାର)**

୧୯୮୫ ମସିହା ଡ଼ିସେମ୍ବର ଆଠ ତାରିଖ ଦିନ ଦକ୍ଷିଣ ଏସିଆ ଆଞ୍ଚଳିକ ସହଯୋଗ ସଙ୍ଗଠନ ବା ସାର୍କ ପ୍ରତିଷ୍ଠା ହେବାର ଘୋଷଣା କରାଗଲା । ବିଗତ ୧୩ ବର୍ଷ ଧରି ଏହି ସଙ୍ଗଠନ ବିଭିନ୍ନ କାର୍ଯ୍ୟକ୍ରମ ନିଜ ହାତକୁ ନେଇଛି । ଏହାର ଗଠନ ସମୟରେ ସାର୍କର ଭବିଷ୍ୟତ ନେଇ ବିଭିନ୍ନ ବ୍ୟକ୍ତିଙ୍କ ମନରେ ଭିନ୍ନ ଭିନ୍ନ ପ୍ରଶ୍ନବାଚୀ ଉଙ୍କି ମାରିଥିଲା । ମାତ୍ର ସମସ୍ତ ପ୍ରଶ୍ନବାଚୀ, ଆଶଙ୍କା ଓ ଦ୍ୱନ୍ଦ୍ୱର ପରିସମାପ୍ତି ଘଟାଇ ଏହା ଏବେ ମଧ୍ୟ କାର୍ଯ୍ୟକ୍ଷମ । ଦକ୍ଷିଣ ଏସିଆ ବ୍ୟକ୍ତିବିଶେଷ ଆଶା ଓ ଆକାଙ୍‌କ୍ଷାର ପରିପୂରଣ ଦିଗରେ ବିଭିନ୍ନ କ୍ଷେତ୍ରରେ ସାର୍କ ସକରାତ୍ମକ ପଦକ୍ଷେପ ଗ୍ରହଣ କରିଛି । ବିଶ୍ୱର ବିଭିନ୍ନ ସଙ୍ଗଠନ ପରିପ୍ରେକ୍ଷୀରେ ଏହାର ଗଠନର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ବିଭିନ୍ନ କାର୍ଯ୍ୟକ୍ରମର ସହଯୋଗ ପରିପ୍ରେକ୍ଷୀରେ ଦକ୍ଷିଣ ଏସିଆର ଆଞ୍ଚଳିକ ସ୍ୱାର୍ଥରକ୍ଷାରେ ଏହା ଏଯାବତ୍ ବିଶେଷ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି । ଶାନ୍ତି, ବାଣିଜ୍ୟ, ପରିବେଶ, ଆର୍ଥନୀତିକ, ସାମାଜିକ, ସାଂସ୍କୃତିକ, ବୈଷୟିକ ତଥା ବିଜ୍ଞାନ କ୍ଷେତ୍ରରେ ଏହି ଆଞ୍ଚଳିକ ସଙ୍ଗଠନ ପରସ୍ପରକୁ ସହାୟତା ପ୍ରଦାନ କରିବା ନିମିତ୍ତ ଦୃଢ଼ ସଙ୍କଳ୍ପବଦ୍ଧ ।

ସାର୍କର ଅର୍ଥ ଦକ୍ଷିଣ ଏସିଆ ଆଞ୍ଚଳିକ ସହଯୋଗ ସଙ୍ଗଠନ । ଆନ୍ତର୍ଜାତିକ କ୍ଷେତ୍ରରେ ପରସ୍ପରଙ୍କୁ ବିଭିନ୍ନ କ୍ଷେତ୍ରରେ ସହଯୋଗ ପ୍ରଦାନ ଉଦ୍ଦେଶ୍ୟରେ ଏହି ସଙ୍ଗଠନ ଗଠିତ । ଭାରତ, ପାକିସ୍ଥାନ, ବାଂଲାଦେଶ, ମାଳଦ୍ୱୀପ, ନେପାଳ, ଭୂଟାନ ଓ ଶ୍ରୀଲଙ୍କା ଏହାର ସଦସ୍ୟ ରାଷ୍ଟ୍ର ।

ଭୌଗୋଳିକ ଦୃଷ୍ଟିକୋଣରୁ ବିଭାଜିତ ହୋଇଥିବା ଏହି ରାଷ୍ଟ୍ରଗୁଡ଼ିକୁ ବିଭିନ୍ନ କ୍ଷେତ୍ରରେ ଏକତ୍ରିତ ହୋଇ କାର୍ଯ୍ୟ କରିବା ନିମିତ୍ତ ଉକ୍ତ ସଙ୍ଗଠନ ପ୍ରେରଣା ପ୍ରଦାନ କରିଛି । ଭାରତୀୟ ଉପମହାଦେଶ୍‌ରେ ଶାନ୍ତି ପ୍ରତିଷ୍ଠା ଏହାର ଅନ୍ୟତମ ଲକ୍ଷ୍ୟ । ଗୋଟିଏ ସଭ୍ୟତାର ବନ୍ଧନରୁ ଉପରୋକ୍ତ ଦେଶଗୁଡ଼ିକ ଏଯାବତ୍ ବିଚ୍ଛିନ୍ନ ନୁହେଁ । କେତେକ କ୍ଷେତ୍ରରେ ମତପାର୍ଥକ୍ୟ ରହିଥିଲେ ମଧ୍ୟ ଏ ସମ୍ପର୍କର ସେତୁ ଏମାନଙ୍କୁ ଗୋଟିଏ ବନ୍ଧନ ସୂତ୍ରରେ ଆବଦ୍ଧ କରିବାର ଉଦ୍ଦେଶ୍ୟରୁ ସାର୍କର ଜନ୍ମ । ସହଯୋଗ ପ୍ରତିଷ୍ଠା, ଆଲୋଚନା ମାଧ୍ୟମରେ ମତପାର୍ଥକ୍ୟ ଦୂର, ବ୍ୟକ୍ତିଗତ ସ୍ୱାର୍ଥ ଅପେକ୍ଷା ସାମୂହିକ ସ୍ୱାର୍ଥ ପ୍ରତି ଗୁରୁତ୍ୱ ପ୍ରଦାନ — ଏହି ପୃଷ୍ଠଭୂମିରେ ସାର୍କର ପରିକଳ୍ପନା ।

ସାର୍କର ମୁଖ୍ୟ ଉଦ୍ଦେଶ୍ୟ ବିଭିନ୍ନ କ୍ଷେତ୍ରରେ ଆଞ୍ଚଳିକ ସହଯୋଗ ପ୍ରତିଷ୍ଠା । ଏହି ସହଯୋଗ ମୁଖ୍ୟତଃ ବାଣିଜ୍ୟ, ବିଜ୍ଞାନ, ସଂସ୍କୃତି, ପରିବେଶ, ଅର୍ଥନୀତି, ବୈଷୟିକ ଆଦି ବିଷୟ ଉପରେ ପ୍ରତିଷ୍ଠିତ୍ ହେବ ବୋଲି ସଦସ୍ୟ ରାଷ୍ଟ୍ରଗୁଡ଼ିକ ଏକମତ ହୋଇଛନ୍ତି । ବିଭିନ୍ନ ଅଞ୍ଚଳର ଭୌଗୋଳିକ ସ୍ଥିତିକୁ ବିଚାର କରାଯାଇ ଏହି ସଙ୍ଗଠନ ଗଠନ କରାଯାଇଥିବାରୁ ଏଥିରେ ସାମୂହିକ ସ୍ୱାର୍ଥ ଉପରେ ଗୁରୁତ୍ୱ ପ୍ରଦାନ କରାଯାଇଛି । ଇତିମଧ୍ୟରେ ସାର୍କ ଅନ୍ତର୍ଭୁକ୍ତ ବିଭିନ୍ନ ରାଷ୍ଟ୍ରରେ ଏହାର ଏଗାରଟି ଶୀର୍ଷ ବୈଠକ ଅନୁଷ୍ଠିତ ହୋଇଛି ଓ ପ୍ରତି ରାଷ୍ଟ୍ରର ସଦସ୍ୟ ଏହାର ଅଧ୍ୟକ୍ଷ ଦାୟିତ୍ୱ ଗ୍ରହଣ କରିଛନ୍ତି । ଅନ୍ତର୍ଜାତୀୟ ସ୍ତରରେ ସଦସ୍ୟଭୁକ୍ତ ରାଷ୍ଟ୍ରମାନେ ପରସ୍ପରକୁ ସହଯୋଗ କରିବେ ବୋଲି ସାର୍କର ସନନ୍ଦରେ ଉଲ୍ଲେଖ ରହିଛି । ଏହି ଅନୁଷ୍ଠାନର ରାଷ୍ଟ୍ର ମଧ୍ୟରେ ବିଭିନ୍ନ ପ୍ରାକୃତିକ ବସ୍ତୁ ଓ ଖଣିଜ ସମ୍ପଦ ପରିପୂର୍ଣ୍ଣ ହୋଇ ରହିଛି । ପୃଥିବୀର ପ୍ରାୟ ଏକ ପଞ୍ଚମାଂଶ ବ୍ୟକ୍ତି ଏହି ସାର୍କ ଅଞ୍ଚଳରେ ବସବାସ କରନ୍ତି । ମାନବସମ୍ବଳର ଯଥାର୍ଥ ଉପଯୋଗରେ ଦେଶର ଭବିଷ୍ୟତ ନିର୍ଭର କରୁଥିବାରୁ ସାର୍କ ମାନବସମ୍ବଳର ଉପଯୁକ୍ତ ବିନିଯୋଗ ଉପରେ ଗୁରୁତ୍ୱ ଆରୋପ କରିଛି । ଦକ୍ଷିଣ ଏସିଆରେ ଏଭରେଷ୍ଟ ଶୃଙ୍ଗ, ହିମାଳୟ ପାର୍ବତ୍ୟମାଳା, ଗଙ୍ଗା, ବ୍ରହ୍ମପୁତ୍ର, ସିନ୍ଧୁ ଆଦି ପ୍ରଖ୍ୟାତ ନଦୀମାନ ନିଜର ବିଶେଷତ୍ୱ ନେଇ ବିରାଜମାନ । ସେହିସବୁ ପ୍ରାକୃତିକ ସମ୍ପଦ୍ୟ ଯଥାର୍ଥ ବିନିଯୋଗ ଉପରେ ସାର୍କ ଗୁରୁତ୍ୱ ଦେଇଛି । ଏହି ଦକ୍ଷିଣ ଏସିଆର ବିଭିନ୍ନ ଅଞ୍ଚଳମାନଙ୍କ ମଧ୍ୟରେ ବହୁ ବୈଷମ୍ୟ ରହିଛି । ବିଭିନ୍ନ ବୈଷମ୍ୟ ମଧ୍ୟରେ ସାମ୍ୟ ପ୍ରତିଷ୍ଠା କରିବା ସାର୍କର ଅନ୍ୟତମ ଲକ୍ଷ୍ୟ । ଆଞ୍ଚଳିକ ସହଯୋଗ ପ୍ରତିଷ୍ଠା କ୍ଷେତ୍ରରେ ଭାରତ ପ୍ରମୁଖ ଭୂମିକା ଗ୍ରହଣ କରିବ ବୋଲି ସାର୍କର ପ୍ରତିଷ୍ଠା ସମୟରେ ତତ୍କାଳୀନ ଭାରତର ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧି ଦୃଢ଼ୋକ୍ତି ପ୍ରକାଶ କରିଥିଲେ । ଯେଉଁ ସମସ୍ୟା ବା ବିଷୟ ରାଷ୍ଟ୍ରମାନଙ୍କର ସାର୍ବଭୌମ ଉପରେ ଆଞ୍ଚ ଆଣିବ, ସେ ସମ୍ପର୍କରେ ସାର୍କରେ କୌଣସି ଆଲୋଚନା ହେବ ନାହିଁ ବୋଲି ସନନ୍ଦରେ କୁହାଯାଇଛି । ପୁଣି ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ଥିବା ବିବାଦୀୟ ବିଷୟ ଏହାର ଆଲୋଚନା ପରିସରଭୁକ୍ତ ହୋଇପାରିବ ନାହିଁ ବୋଲି ମଧ୍ୟ ଏହାର ସନନ୍ଦରେ ଉଲ୍ଲେଖ ରହିଛି । କୌଣସି ଦେଶର ଆଞ୍ଚଳିକତା ଅଥବା ଅଖଣ୍ଡତା ପ୍ରତି ବିପଦ ଆସିବା ଭଳି ଯେକୌଣସି ଆଲୋଚ୍ୟ ବିଷୟକୁ ଏଥିରେ ସମ୍ପୂର୍ଣ୍ଣ ବର୍ଜନ କରାଯିବାର ବ୍ୟବସ୍ଥା ହୋଇଛି । ସାର୍କ ଅନ୍ତର୍ଭୁକ୍ତ ରାଷ୍ଟ୍ରଗୁଡ଼ିକ ପରସ୍ପର ପ୍ରତି ଅବିଶ୍ୱାସ ଭାବନେଇ ପ୍ରତିରକ୍ଷା କ୍ଷେତ୍ରରେ ବିପୁଳ ଅର୍ଥବ୍ୟୟ କରୁଛନ୍ତି । ସାର୍କ ମାଧ୍ୟମରେ ପରସ୍ପର ପ୍ରତି ବିଶ୍ୱାସଭାବ ସୃଷ୍ଟି ହୋଇପାରିଲେ

ପ୍ରତିରକ୍ଷା କ୍ଷେତ୍ରରେ ବ୍ୟୟ କରାଯାଉଥିବା ଅର୍ଥକୁ ସାମୂହିକ ଲୋକମଙ୍ଗଳ କାର୍ଯ୍ୟରେ ବ୍ୟବହାର କରାଯାଇ ପାରିବ ଓ ଦାରିଦ୍ର୍ୟ ବହୁପରିମାଣରେ ହ୍ରାସ ହୋଇପାରିବ । ବିପୁଳ ପ୍ରାକୃତିକ ସମ୍ପଦ ସତ୍ତ୍ୱେ ପୃଥିବୀରେ ସାର୍କ ଭୁକ୍ତ ରାଷ୍ଟ୍ରଗୁଡ଼ିକ ଦରିଦ୍ର ଦେଶ ରୂପେ ପରିଗଣିତ । ସହଯୋଗ ଓ ପ୍ରାକୃତିକ ସମ୍ପଦର ଯଥାର୍ଥ ବିନିଯୋଗର ଅଭାବ ହେତୁ ଏହିପ୍ରକାର ପରିସ୍ଥିତି ସୃଷ୍ଟି ଲାଭ କରିଛି । ଯୋଗାଯୋଗର ବିକାଶ ମାଧ୍ୟମରେ ସାର୍କଭୁକ୍ତ ରାଷ୍ଟ୍ରଗୁଡ଼ିକ ମଧ୍ୟରେ ସମନ୍ୱୟ ସ୍ଥାପନ କରାଯାଇ ପ୍ରାକୃତିକ ସମ୍ପଦର ବିନିଯୋଗ ନିମିତ୍ତ ବ୍ୟବସ୍ଥା ହୋଇଛି । ପୁନରାୟ ଆର୍ଥନୀତିକ, ସାମାଜିକ ଓ ସାଂସ୍କୃତିକ ବିକାଶ ନିମିତ୍ତ ସାର୍କ ଦ୍ୱାରା କେତେକ ସଙ୍ଗଠନ ପ୍ରତିଷ୍ଠା କରାଯାଇ ବିଭିନ୍ନ ନୀତିନିୟମ ପ୍ରଣୟନ କରାଯାଇଛି । କ୍ରୀଡ଼ା କ୍ଷେତ୍ରରେ, ବୌଦ୍ଧିକତାର ବିନିମୟ କ୍ଷେତ୍ରରେ ସହଯୋଗ ପ୍ରତିଷ୍ଠା ନିମିତ୍ତ କେତେକ ପ୍ରସ୍ତାବ ମଧ୍ୟ ରହିଛି । ପରସ୍ପର ମଧ୍ୟରେ ଥିବା ମତଭେଦର ଦୂରୀକରଣ ଓ ସମନ୍ୱୟ ପ୍ରତିଷ୍ଠା ନିମିତ୍ତ ସାର୍କ ଉତ୍ସବ ଓ କ୍ରୀଡ଼ା ଅନୁଷ୍ଠିତ ହେଉଛି । ଦାରିଦ୍ର୍ୟ, ବିଭିନ୍ନ ସମସ୍ୟା ତଥା ଶିକ୍ଷାର ବିସ୍ତାର ନିମିତ୍ତ ବିଭିନ୍ନ ପ୍ରସ୍ତାବ ଗ୍ରହଣ କରାଯାଇ ତାହାକୁ କାର୍ଯ୍ୟକାରୀ କରିବା ନିମିତ୍ତ ସାର୍କଭୁକ୍ତ ରାଷ୍ଟ୍ରମାନେ ସଦିଚ୍ଛା ପ୍ରକାଶ କରିଛନ୍ତି । ଜାତୀୟ ସମ୍ପଦ ରୂପେ ପରିଗଣିତ ପ୍ରବହମାନା ନଦୀଗୁଡ଼ିକର ଜଳରାଶିକୁ ସଂରକ୍ଷଣ କରି କୃଷିକ୍ଷେତ୍ରରେ ତାହାର ବ୍ୟବହାରପୂର୍ବକ ଶସ୍ୟ ଉତ୍ପାଦନ ବୃଦ୍ଧି ନିମିତ୍ତ କେତେକ ପ୍ରସ୍ତାବ ଗୃହୀତ ହୋଇଛି । ମୃତ୍ତିକା କ୍ଷୟକୁ ରୋକିବା ନିମିତ୍ତ ଆଞ୍ଚଳିକ ସ୍ତରରେ ବିବିଧ ବ୍ୟବସ୍ଥା ଗ୍ରହଣ ନିମିତ୍ତ ଆହ୍ୱାନ ଦିଆଯାଇଛି । ମିଳିତ ଜାତିସଂଘର ଏକ ରିପୋର୍ଟ ଅନୁଯାୟୀ ଶତକଡ଼ା ୫୦ ଭାଗ ଜମି କେବଳ ଏସିଆ ମହାଦେଶର ମୃତ୍ତିକା କ୍ଷୟ ଘଟିଥାଏ । ଉଦ୍‌ବେଗର ବିଷୟ ହେଉଛି ସାର୍କ ଅନ୍ତର୍ଭୁକ୍ତ ରାଷ୍ଟ୍ର ମଧ୍ୟରେ ବଙ୍ଗଳାଦେଶର ୭୫ ଭାଗ, ପାକିସ୍ଥାନର ୬୧ ଭାଗ, ଶ୍ରୀଲଙ୍କାର ୪୪ ଭାଗ, ନେପାଳର ୨୬ ଭାଗ ଓ ଭାରତର ପ୍ରାୟ ୨୫ ଭାଗ କୃଷିକ୍ଷେତ୍ର ଏହି ମୃତ୍ତିକା କ୍ଷୟର ଶିକାର ହୋଇଛି । ଜଙ୍ଗଲକ୍ଷୟ ତଥା କୃଷିକ୍ଷେତ୍ରର ଉପଯୁକ୍ତ ତତ୍ତ୍ୱର ଅଭାବରୁ ଏହିପ୍ରକାର ପରିସ୍ଥିତି ସୃଷ୍ଟିଲାଭ କରିଛି । ଏବେଠାରୁ ସତର୍କମୂଳକ ପଦକ୍ଷେପ ଗ୍ରହଣ କରାନଗଲେ, ଭବିଷ୍ୟତରେ ଏହିସବୁ ରାଷ୍ଟ୍ରଗୁଡ଼ିକ ନିଜର ଖାଦ୍ୟଶସ୍ୟର ଅଭାବ ପରିପୂରଣ ନିମିତ୍ତ ବିଶ୍ୱରେ ଅନ୍ୟରାଷ୍ଟ୍ର ଉପରେ ନିର୍ଭରଶୀଳ ହେବାକୁ ବାଧ୍ୟ ହେବେ । ତେଣୁ ବିଭିନ୍ନ କ୍ଷେତ୍ରରେ ସ୍ୱାବଲମ୍ବନଶୀଳ ହେବାପାଇଁ ସାର୍କର ବିଭିନ୍ନ ଅଧିବେଶନରେ ଗୁରୁତ୍ୱ ଆରୋପ କରାଯାଇଛି ।

ଆଜି ବିଶ୍ୱର ବିଭିନ୍ନ କ୍ଷେତ୍ରରେ ପରିବର୍ତ୍ତନର ସୂତ୍ରପାତ ହୋଇଛି । ଧନୀରାଷ୍ଟ୍ରଗଣ କେତେକ କ୍ଷେତ୍ରରେ ସଙ୍ଗଠନ ଗଠନ କରି ନିଜ ନିଜ ମଧ୍ୟରେ ବାଣିଜ୍ୟିକ ସହଯୋଗ ବୃଦ୍ଧି କରିଛନ୍ତି । ଏହି ପର୍ଯ୍ୟାୟରେ ଇଉରୋପୀୟ ରାଷ୍ଟ୍ର ଗୋଷ୍ଠୀଙ୍କର 'ନାପ୍‌ଟା' ଅଥବା 'ଏପିକ୍' ଗଠନକୁ ବିଚାର କରାଯାଇପାରେ । ଏହି ଗୋଷ୍ଠୀ ଅନ୍ତର୍ଭୁକ୍ତ ଦେଶ ଅନ୍ତର୍ଜାତୀୟ କ୍ଷେତ୍ରରେ ନିଜ ନିଜ ମଧ୍ୟରେ ବାଣିଜ୍ୟିକ ଯୋଗାଯୋଗ ଦିଗରେ ଅନ୍ୟରାଷ୍ଟ୍ର ଅପେକ୍ଷା ଅଧିକ ଉଦାରତା ଓ ସମ୍ବେଦନଶୀଳତା ପ୍ରଦର୍ଶନ କରିଥାନ୍ତି । ସହଯୋଗ ମାଧ୍ୟମରେ ସମ୍ଭାବନାର ଦ୍ୱାରକୁ ଉନ୍ମୁକ୍ତ ରଖାଯାଇଥାଏ । ଆଜି ବିଶ୍ୱସ୍ତରରେ ବାଣିଜ୍ୟ ତଥା ବିଭିନ୍ନ ସ୍ତରରେ ନିଜକୁ ପ୍ରତିଷ୍ଠା କରିବା ନିମିତ୍ତ ଯେପରି ସଙ୍ଗଠନମାନ

ଗଠିତ ହୋଇଛି, ସେହି ଦୃଷ୍ଟିରୁ ଦକ୍ଷିଣ-ଏସୀୟ ଆଞ୍ଚଳିକ ସହଯୋଗ ପରିଷଦ ଗଠିତ ହେବା ବାଞ୍ଛନୀୟ ମନେ ହୋଇଥାଏ । ମାଲେଠାରେ ଅନୁଷ୍ଠିତ ହୋଇଥିବା ନବମ ଶିଖର ସମ୍ମିଳନୀରେ ୨୦୦୧ ମସିହା ସୁଦ୍ଧା ଦକ୍ଷିଣ ଏସିଆକୁ ଏକ ମୁକ୍ତ ବାଣିଜ୍ୟ ଅଞ୍ଚଳରେ ପରିଣତ କରିବା ପାଇଁ ଯେଉଁ ଆହ୍ୱାନ ଦିଆଯାଇଛି, ସାମ୍ପ୍ରତିକ ପରିପ୍ରେକ୍ଷୀରେ ତାହା ଅତୀବ ଗୁରୁତ୍ୱପୂର୍ଣ୍ଣ ।

ପୃଥିବୀର ବିକାଶଶୀଳ ରାଷ୍ଟ୍ରଗୁଡ଼ିକ ପରସ୍ପର ମଧ୍ୟରେ ସହଯୋଗ ବୃଦ୍ଧି ନିମିତ୍ତ ବିଭିନ୍ନ ସଙ୍ଗଠନ ଗଠନ କରିବା ବାଞ୍ଛନୀୟ । 'ସାର୍କ'ର ଗଠନ ଦ୍ୱାରା ଅନ୍ୟାନ୍ୟ ରାଷ୍ଟ୍ରଗୁଡ଼ିକ ପ୍ରଭାବିତ ହେବେ ବୋଲି ବିଶ୍ୱାସ କରାଯାଏ । ବିଶ୍ୱର ପ୍ରତି କ୍ଷେତ୍ରରେ ଯେପରି ଅଭାବ ପରିଲକ୍ଷିତ ହେଉଛି, କୌଣସି ସ୍ୱାଧୀନ ରାଷ୍ଟ୍ର ସବୁଦୃଷ୍ଟିରୁ ନିଜକୁ ସ୍ୱାବଲମ୍ୱନଶୀଳ କରିବା ସମ୍ଭବ ନୁହେଁ । ଏହି ଦୃଷ୍ଟିରୁ ସମଭାବାପନ୍ନ ଓ ପରସ୍ପରର ସାର୍ବଭୌମ ତଥା ସଭ୍ୟତାକୁ ସମ୍ମାନ ଜଣାଉଥିବା ରାଷ୍ଟ୍ରଗୁଡ଼ିକ ନିଜ ନିଜ ମଧ୍ୟରେ ସହଯୋଗ ବୃଦ୍ଧି ନିମିତ୍ତ ସଙ୍ଗଠନ ଗଠନ କରି ବିଭିନ୍ନ କ୍ଷେତ୍ରରେ ପରସ୍ପରକୁ ସହାୟତା ପ୍ରଦାନ କରିବା ଉଚିତ । ସାଂପ୍ରତିକ ପରିପ୍ରେକ୍ଷୀରେ ଏହାହିଁ ସମୟର ଆହ୍ୱାନ । ଏହି ଆହ୍ୱାନକୁ ଅସମ୍ମାନ କଲେ ଦେଶ ଏବଂ ଜାତିର ଉନ୍ନତି ଅସମ୍ଭବ ହୋଇଉଠିବ । ବିଭିନ୍ନ ରାଷ୍ଟ୍ର ମଧ୍ୟରେ କୌଣସି ଏକ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ପ୍ରଚୁର ପ୍ରାକୃତିକ ଓ ଭୂମିଜ ସମ୍ପଦ ପରିପୂର୍ଣ୍ଣ ହୋଇ ରହିଛି । ହିମାଳୟର ଅବଦାନ ଯୋଗୁଁ ଅନେକ ନଦୀ ଭାରତ, ପାକିସ୍ଥାନ, ଭୁଟାନ, ନେପାଳ, ବଙ୍ଗଳାଦେଶ ଆଦି ଦେଶରେ ବହୁ ଉର୍ବର ଉପତ୍ୟକା ସୃଷ୍ଟି କରିପାରିଛି । ବିଭିନ୍ନ ସାର୍କଦେଶ ଅନ୍ତର୍ଭୁକ୍ତ ରାଷ୍ଟ୍ର ମଧ୍ୟରେ ପ୍ରବାହିତ ନଦୀର ଜଳକୁ ସଂରକ୍ଷଣ ଓ ଉପଯୋଗ କରି କୃଷି ଉତ୍ପାଦନ ବୃଦ୍ଧି, ବିଦ୍ୟୁତ୍ ଚାହିଦା ଆଦିକୁ ପରିପୂର୍ତ୍ତି କରାଯାଇପାରିବ । ନିକଟ ଅତୀତରେ ଭାରତ ଓ ବାଙ୍ଗଲାଦେଶ ମଧ୍ୟରେ ପ୍ରବାହିତ ଗଙ୍ଗାଜଳର ସମସ୍ୟା, ଯୌଥ ଉଦ୍ୟମ ଦ୍ୱାରା ସମାଧାନ କରାଯାଇପାରିଛି । ନେପାଳ ଏବଂ ଭୁଟାନ ତଥା ଭାରତ ମଧ୍ୟରେ ପ୍ରବାହିତ ବିଭିନ୍ନ ଜଳରାଶିକୁ ଆପୋଷ ଆଲୋଚନା ମାଧ୍ୟମରେ ପରସ୍ପର ମଧ୍ୟରେ ସଦୁପଯୋଗ କରାଯାଇପାରିବ । ନେପାଳର ବନଜ ସମ୍ପଦକୁ ବ୍ୟବହାର କରି ଭାରତ ତା'ର ପଣ୍ୟଉତ୍ପାଦନ ବୃଦ୍ଧି କରିପାରିବ । ବାଂଲାଦେଶର ପ୍ରାକୃତିକ ଗ୍ୟାସ୍ ଦ୍ୱାରା ଭାରତରେ ବିଜୁଳି ଉତ୍ପାଦନ ବୃଦ୍ଧି ପାଇପାରିବ ଓ ତାହାକୁ ମଧ୍ୟ ବାଂଲାଦେଶ ଅକ୍ଳେଶରେ ନିଜ ଦେଶରେ କମ୍ ଖର୍ଚ୍ଚରେ ଉପଯୋଗ କରିପାରିବ । ମେଘାଳୟର ଚୂନପଥରକୁ ବାଂଲାଦେଶ ସିମେଣ୍ଟ ଉତ୍ପାଦନ ନିମିତ୍ତ ବ୍ୟବହାର କରିପାରିବ । ତେଣୁ ସାର୍କ ଅନ୍ତର୍ଭୁକ୍ତ ଦେଶମାନଙ୍କ ମଧ୍ୟରେ ଯେଉଁ ନୂତନ ବାତାବରଣ ଓ ସହଯୋଗର ଦ୍ୱାର ଉନ୍ମୁକ୍ତ ହୋଇଛି, ପୃଥିବୀର ବିକାଶଶୀଳ ରାଷ୍ଟ୍ରମାନଙ୍କ ପ୍ରତି ଏହା ଏକ ଆଶୀର୍ବାଦ ସ୍ୱରୂପ । ଏହି ନୂତନ ଆନ୍ଦୋଳନ ଦ୍ୱାରା ପ୍ରଭାବିତ ହୋଇ ବିଭିନ୍ନ ଦେଶ ପରସ୍ପରକୁ ସହଯୋଗ ପ୍ରଦାନ ଉଦ୍ଦେଶ୍ୟରେ ସଙ୍ଗଠନମାନ ଗଠନ କଲେ, ବିଶ୍ୱ ଅର୍ଥନୀତିରେ ଆମୂଳଚୂଳ ପରିବର୍ତ୍ତନ ଘଟିପାରିବ । ସମଗ୍ର ପୃଥିବୀରେ ଏକ ସୌହାର୍ଦ୍ଦପୂର୍ଣ୍ଣ ବାତାବରଣ ସୃଷ୍ଟି ହୋଇପାରିବ । ଯେଉଁ ଯୁଦ୍ଧଭୟ ଆଜି ପ୍ରତିମୁହୂର୍ତ୍ତରେ ମାନବସମାଜକୁ ଆତଙ୍କିତ ଅବସ୍ଥାରେ ରଖିଛି, ତାହାର

ନିରାକରଣ ମଧ କରାଯାଇପାରିବ । ଏହି ଦୃଷ୍ଟିରୁ ଦକ୍ଷିଣ ଏସିଆ ଆଞ୍ଚଳିକ ସହଯୋଗ ସଙ୍ଗଠନ ବା ପରିଷଦ ଅନ୍ୟାନ୍ୟ ବିକାଶଶୀଳ ରାଷ୍ଟ୍ରମାନଙ୍କ ନିମିତ୍ତ ଏକ ପ୍ରେରଣାର ଉତ୍ସ ହୋଇପାରିବ ।

ସାର୍କର ସନନ୍ଦରେ ବହୁ ବିଷୟ ଉଲ୍ଲେଖ ରହିଥିଲେ ହେଁ, ଏଯାବତ୍ ଏହାର ବହୁ ଅଂଶ ପରିପୂରଣ ହେବା ସମ୍ଭବ ହୋଇ ନାହିଁ । ଏହି ସନନ୍ଦରେ ସ୍ପଷ୍ଟରୂପେ ଉଲ୍ଲେଖ ରହିଛି ସାର୍କ ଅନ୍ତର୍ଭୁକ୍ତ ରାଷ୍ଟ୍ରଗଣ ନିଜ ନିଜର ସାମର୍ଥ୍ୟକୁ ଉପଲବ୍ଧି କରିବା ସଙ୍ଗେ ସଙ୍ଗେ ଆତ୍ମନିର୍ଭରଶୀଳ ହେବେ । ସଦିଚ୍ଛା ଓ ସହଯୋଗର ବାତାବରଣ ସୃଷ୍ଟି କରିବେ । ମାତ୍ର ପରିତାପର ବିଷୟ, ଏ ପର୍ଯ୍ୟନ୍ତ ସାର୍କ ଅନ୍ତର୍ଭୁକ୍ତ ରାଷ୍ଟ୍ରମାନଙ୍କ ମଧ୍ୟରେ ଏକ ବିଶ୍ୱାସପୂର୍ଣ୍ଣ ବାତାବରଣ ସୃଷ୍ଟି ହୋଇପାରି ନାହିଁ । ଦକ୍ଷିଣ ଏସୀୟ ଆର୍ଥନୀତିକ ସମୁଦାୟ ଗଠନ ଉପରେ ସର୍ବସମ୍ମତ ମତପ୍ରକାଶ ପାଇପାରି ନାହିଁ । ଖଣ୍ଡଗୋଷ୍ଠୀର ବିଚାର ନିମିତ୍ତ ପାକିସ୍ଥାନ ଓ ଶ୍ରୀଲଙ୍କା ପ୍ରତିକୂଳ ମନ୍ତବ୍ୟ ପ୍ରକାଶ କରିଛନ୍ତି । ରାଜନୈତିକ ସଦିଚ୍ଛାର ଅଭାବ ଯୋଗୁଁ ଏହାର ଅନେକ କାର୍ଯ୍ୟକ୍ରମ ଏବେବି ଖଣ୍ଡିତ ଅବସ୍ଥାରେ ରହିଛି । ଏହି କାରଣ ପାଇଁ ପାକିସ୍ଥାନ ଅଧିକାଂଶ କ୍ଷେତ୍ରରେ ଭାରତର ପ୍ରସ୍ତାବକୁ ବିରୋଧ କରୁଛି । ଯେଉଁ ଉଦ୍ଦେଶ୍ୟ ନେଇ ସାର୍କ ଗଠିତ ହୋଇଥିଲା, ସଙ୍ଘର୍ଷମୂଳକ ମନୋଭାବ ଯୋଗୁଁ ଆଞ୍ଚଳିକ ସହଯୋଗ ପ୍ରତିଷ୍ଠା ପ୍ରକ୍ରିୟା ଏଯାବତ୍ ସକ୍ରିୟ ହୋଇପାରି ନାହିଁ । ସାର୍କ ଅନ୍ତର୍ଭୁକ୍ତ କେତେକ ରାଷ୍ଟ୍ର ଅଯଥାରେ ଭାରତକୁ ସନ୍ଦେହ ଚକ୍ଷୁରେ ଦେଖୁଛନ୍ତି । ସେମାନଙ୍କର ଧାରଣା ଦକ୍ଷିଣ ଏସିଆରେ ଭାରତ ନିଜର ଆର୍ଥନୀତିକ ସ୍ଥିତିକୁ ସୁଦୃଢ଼ କରିବା ସଙ୍ଗେ ସଙ୍ଗେ ନିଜର ବଡ଼ଭାଇପଣିଆକୁ ସାବ୍ୟସ୍ତ କରିପାରେ । ମାତ୍ର ଏହା ସମ୍ପୂର୍ଣ୍ଣ ଅମୂଳକ । ଇତିମଧ୍ୟରେ ଭାରତ ବଙ୍ଗଳାଦେଶ ଓ ଶ୍ରୀଲଙ୍କା ସହିତ ସୌହାର୍ଦ୍ଦ୍ୟପୂର୍ଣ୍ଣ ସମ୍ପର୍କ ସ୍ଥାପନ କରିପାରିଛି । ଭୁଟାନ ତଥା ମାଳଦ୍ୱୀପ ସହିତ ବହୁଦିନରୁ ଭାରତର ସୁସମ୍ପର୍କ ରହିଆସିଛି । ନେପାଳ ସହିତ ମଧ ଭାରତର ସମ୍ପର୍କ ଅତୀବ ନିବିଡ଼ । କେବଳ ପାକିସ୍ଥାନ ରାଜନୈତିକ ଓ ନିଜର ସ୍ୱାର୍ଥଗତ କାରଣରୁ ଭାରତକୁ ବିରୋଧ କରୁଛି । ପାକିସ୍ଥାନ ସହିତ ଭାରତର ସୁସମ୍ପର୍କ ସ୍ଥାପନ ହୋଇପାରିଲେ ସାର୍କ ସନନ୍ଦରେ ଲିଖିତ ସମସ୍ତ ପ୍ରସ୍ତାବ ଅକ୍ଳେଶରେ କାର୍ଯ୍ୟକାରୀ ହୋଇପାରିବ । ଏହାସତ୍ତ୍ୱେ ଏହାର ଅନ୍ୟ ଦିଗଟିକୁ ମଧ ଅସ୍ୱୀକାର କରାଯାଇନ ପାରେ । ଏହା ମଧ୍ୟରେ ସାର୍କ ଆଞ୍ଚଳିକ ଭେଦଭାବ ଭୁଲି ବହୁକ୍ଷେତ୍ରରେ ଅଗ୍ରଗତି କରିପାରିଛି । ସାର୍କ ରାଷ୍ଟ୍ରମାନଙ୍କ ମଧ୍ୟରେ ପ୍ରତ୍ୟକ୍ଷ ଯୋଗାଯୋଗ ସ୍ଥାପନ, ବିନା ଭିସାରେ ପରିଭ୍ରମଣ, ରାସ୍ତାସଂଯୋଗ ଉପରେ କିଛିଟା କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି । କରାଚୀଠାରେ ପ୍ରତିଷ୍ଠା କରାଯାଇଥିବା ସାର୍କ ବଣିକ ସଂଘ ଏହାର ଅନ୍ୟତମ ସାକାର ରୂପ । ବିଜ୍ଞାନ ଓ ବୈଷୟିକ କ୍ଷେତ୍ରରେ ସହଯୋଗ ବୃଦ୍ଧି ନିମିତ୍ତ ଉଦ୍ୟମ ଜାରି ରହିଛି । ଏହାର ସପକ୍ଷ ଓ ବିପକ୍ଷରେ ବହୁ ଯୁକ୍ତି ରହିଥିଲେ ହେଁ ଭବିଷ୍ୟତ ପାଇଁ ତଥାପି ସମ୍ଭାବନାର ଦ୍ୱାର ଉନ୍ମୁକ୍ତ । ଦକ୍ଷିଣ ଏସିଆରେ ଏହା ଏକ ସହଯୋଗର ବାତାବରଣ ସୃଷ୍ଟି କରିପାରିବ, ଏଥିରେ ସନ୍ଦେହ ନାହିଁ ।

ସାର୍କର ସ୍ୱପ୍ନ ଅନେକ । ଉଦ୍ୟମରେ ମଧ ଅବହେଳା ନାହିଁ । ମାତ୍ର ଯେପର୍ଯ୍ୟନ୍ତ ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ରାଜନୈତିକ ମତଭେଦ ଦୂର ହୋଇ ନ ପାରିଛି, ସେପର୍ଯ୍ୟନ୍ତ ସାର୍କ ସ୍ୱାଧୀନ ଭାବରେ କାର୍ଯ୍ୟ କରିବାକୁ ସମର୍ଥ ହୋଇପାରିବ ନାହିଁ । ତେଣୁ ସାଂପ୍ରତିକ ପରିସ୍ଥିତିରେ ପରସ୍ପର

ପ୍ରତି ଅସୂୟାଭାବ ପରିତ୍ୟାଗ ପୂର୍ବକ, ଦକ୍ଷିଣ ଏସିଆର ଆର୍ଥନୀତିକ, ସାମାଜିକ, ସାଂସ୍କୃତିକ ତଥା ବୈଷୟିକ ଉନ୍ନତି ପାଇଁ ଶାନ୍ତିପୂର୍ଣ୍ଣ ବାତାବରଣ ସୃଷ୍ଟି ହୋଇପାରିଲେ ସାର୍କ ଗଠନର ଉଦ୍ଦେଶ୍ୟ ପୂରଣ ହୋଇପାରିବ । ପରସ୍ପର ମଧ୍ୟରେ ଥିବା ମତଭେଦକୁ ଆପୋଷ ଆଲୋଚନା ମାଧ୍ୟମରେ ସମାଧାନ କରି ପରସ୍ପରକୁ ସହଯୋଗ କରିପାରିଲେ ବିଶ୍ୱରେ ପରିଗଣିତ ହେଉଥିବା ଏହି ଦରିଦ୍ର ରାଷ୍ଟ୍ରଗୁଡ଼ିକ ଆର୍ଥିକ ସ୍ୱଚ୍ଛଳତା ନିଶ୍ଚିତ ଭାବରେ ପାଇପାରନ୍ତେ, ଏଥିରେ ସନ୍ଦେହ ନାହିଁ ।



# ପୂର୍ଣ୍ଣାଙ୍ଗ ଆଣବିକ ପରୀକ୍ଷା ନିଷେଧ ଚୁକ୍ତି ବା ସି.ଟି.ବି.ଟି.

**(ଉପକ୍ରମ, ସିଟିବିଟିର ଅର୍ଥ, ଏହାର ଉଦ୍ଦେଶ୍ୟ, ଭାରତର ସିଟିବିଟିକୁ ବିରୋଧ କରିବାର କାରଣ, ସାମ୍ରାଜ୍ୟବାଦୀଙ୍କ ପ୍ରଚ୍ଛନ୍ନ ଉଦ୍ଦେଶ୍ୟ, ପରମାଣୁ ଅସ୍ତ୍ର ଓ ବିଶ୍ୱ, ଉପସଂହାର)**

ଦୁଇ ଦୁଇଟି ବିଶ୍ୱଯୁଦ୍ଧ ପରେ ମଣିଷର ମଣିଷସମାଜ ପ୍ରତି ଅବିଶ୍ୱାସ ଭାବ ସୃଷ୍ଟି ହୋଇଛି । ଦ୍ୱିତୀୟ ବିଶ୍ୱଯୁଦ୍ଧର ଅମାନବିକତା ପରମାଣୁ ଯୁଦ୍ଧର ଭୟଙ୍କରିତା ପ୍ରମାଣ କରିଛି । ଜାପାନର ହିରୋସୀମା ଓ ନାଗାସାକିରେ ୧୯୪୫ ମସିହାରେ ପରମାଣୁ ବୋମା ଯେଉଁ ଧ୍ୱଂସଲୀଳା ସୃଷ୍ଟି କଲା; ଭବିଷ୍ୟତର ମାନବ ଇତିହାସ କଦାପି ଏହାକୁ କ୍ଷମା କରିପାରିବ ନାହିଁ । ସଭ୍ୟ ବୋଲାଉଥିବା ମଣିଷର ଏହି କାର୍ଯ୍ୟକଳାପ ତାକୁ ଅସଭ୍ୟ ମାନବ ରୂପେ ପ୍ରତିପାଦନ କଲା । ହିରୋସୀମା ଓ ନାଗାସାକିର ଅଗଣିତ ମଣିଷ ଭସ୍ମସ୍ତୂପ ତଳେ ଅକାଳରେ ସମାଧି ନେଲେ । ବହୁ ଶିଶୁ, ଯୁବକ, ବୃଦ୍ଧ, ପଙ୍ଗୁ, ଅଥର୍ବ ଭୋକରେ ନିଜର ମୂଲ୍ୟହୀନ ଜୀବନକୁ ଅଭିଶାପ ଦେଲେ । ପରବର୍ତ୍ତୀ ସମୟରେ ଏହି ସହରମାନଙ୍କରେ ଜନ୍ମଲାଭ କରିଥିବା ବହୁ ଶିଶୁ ପଙ୍ଗୁ ଓ ଅଥର୍ବ ହୋଇ ଜନ୍ମଲାଭ କଲେ । ମାନବସମାଜରେ ଏହି କ୍ରୂର ଓ ଅମାନବିକ କାର୍ଯ୍ୟ ମାନବ ଇତିହାସର ଏକ ଅଭିଶାପ ବ୍ୟତୀତ ଅନ୍ୟ କ'ଣ ହୋଇପାରେ ? ଏହା ସତ୍ତ୍ୱେ ମଧ୍ୟ ଏପର୍ଯ୍ୟନ୍ତ ମାନବସମାଜ ସଚେତନ ହୋଇପାରିଲା ନାହିଁ । ପରମାଣୁ ଯୁଦ୍ଧ ମାନବ ସଭ୍ୟତା ପାଇଁ ଏକ କଳଙ୍କ – ଏହା ଉପଲବ୍ଧି କରିସାରିବା ପରେ ମଧ୍ୟ ବିକଶିତ ରାଷ୍ଟ୍ରଗୁଡ଼ିକ ଏଥିରୁ କିଛି ଶିକ୍ଷା ପାଇଛନ୍ତି ବୋଲି ମନେହୁଏ ନାହିଁ । ସେଦିନର ପରମାଣୁ ବୋମା ଅପେକ୍ଷା ଏବେ ବିକଶିତ ରାଷ୍ଟ୍ରମାନଙ୍କ ନିକଟରେ ତା'ଠାରୁ ହଜାର ଗୁଣରୁ ଅଧିକ ଶକ୍ତିଶାଳୀ ବୋମା ଗଚ୍ଛିତ ହୋଇ ରହିଛି । ଶାନ୍ତି ପ୍ରଚାରର ଛଦ୍ମ ନାମରେ ବହୁ ମାରାତ୍ମକ ଅସ୍ତ୍ରଶସ୍ତ୍ର ଏବେ ବିଭିନ୍ନ ରାଷ୍ଟ୍ର ନିଜ ପାଖରେ ଗଚ୍ଛିତ ରଖିଛନ୍ତି । ପରମାଣୁ ଆତଙ୍କରୁ ବିଶ୍ୱକୁ ରକ୍ଷା କରିବା ନିଶ୍ଚିତ ଭାବରେ ଏକ ସମୟୋଚିତ ଆହ୍ୱାନ । ମାତ୍ର ଏହା ଅନ୍ତରାଳରେ ଯଦି କୌଣସି ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ଲୁକ୍କାୟିତ

ଥାଏ, ତେବେ ତାହା ବିଶ୍ୱ ଶାନ୍ତି ପ୍ରତି ବିଶ୍ୱାସଘାତକତା ବ୍ୟତୀତ ଅନ୍ୟ କିଛି ହୋଇନ ପାରେ । ବିଶ୍ୱକୁ ପରମାଣୁ ଆତଙ୍କରୁ ରକ୍ଷା କରିବା ଉଦ୍ଦେଶ୍ୟରେ ସିଟିବିଟିର ପରିକଳ୍ପନା । କିନ୍ତୁ ଦୁଃଖର ବିଷୟ ଯେଉଁ ଦେଶ ପ୍ରଚୁର ପରିମାଣରେ ଅଣୁଅସ୍ତ୍ର ନିଜ ନିକଟରେ ଗଚ୍ଛିତ ରଖିଛନ୍ତି, ସେମାନଙ୍କ ସମ୍ପର୍କରେ ଏହି ଚୁକ୍ତି ନିରବ । ବିଶ୍ୱବାସୀ ଅନୁଭବ କରିଛନ୍ତି, ଅଳ୍ପ କେତୋଟି ରାଷ୍ଟ୍ରଙ୍କର ସ୍ୱାର୍ଥର ସୁରକ୍ଷା ଉଦ୍ଦେଶ୍ୟରେ ଏପରି ଏକ ପାତରଅନ୍ତର ଚୁକ୍ତିର ଅବତାରଣା କରାଯାଇଛି । ଅନ୍ୟ ଦେଶ ଉପରେ କେତେକ ମୁଷ୍ଟିମେୟ ବିକଶିତ ରାଷ୍ଟ୍ର ନିଜର କର୍ତ୍ତୃତ୍ୱ ଓ ବଡ଼ଭାଇପଣିଆ ସାବ୍ୟସ୍ତ କରିବା ନିମିତ୍ତ ପ୍ରଚାର ମାଧ୍ୟମରେ ଏହାକୁ ସ୍ୱାକ୍ଷର କରାଇବାର ଉପକ୍ରମ କରିଛନ୍ତି । ଭାରତ ଏପରି ଏକ ଏକଦେଶଦର୍ଶୀ ଚୁକ୍ତିରେ ସ୍ୱାକ୍ଷର ନ କରି ଏହି ଅସ୍ତ୍ରର ସମ୍ପୂର୍ଣ୍ଣ ବିଲୋପ ନିମିତ୍ତ ଗୁରୁତ୍ୱ ଆରୋପ କରିଛି । ସାଂପ୍ରତିକ ସମୟରେ ବିଶ୍ୱରୁ ସମ୍ପୂର୍ଣ୍ଣ ମାରାତ୍ମକ ଅସ୍ତ୍ରଶସ୍ତ୍ର ବିଲୋପ ହେବା ବିଧେୟ ବୋଲି ବହୁ ବିଦ୍ୱାନ୍ ମତବ୍ୟକ୍ତ କରନ୍ତି । ସମୟର ଏହି ଆହ୍ୱାନକୁ କଦାପି ଅସ୍ୱୀକାର କରାଯାଇ ନ ପାରେ ।

ସି.ଟି.ବି.ଟି. (C.T.B.T.) ର ସମ୍ପୂର୍ଣ୍ଣ ଅର୍ଥ ହେଉଛି Comprehensive Test Ban Treaty ବା ପୂର୍ଣ୍ଣାଙ୍ଗ ଆଣବିକ ପରୀକ୍ଷା ନିଷେଧ ଚୁକ୍ତି । ଏପରି ଏକ ଅନ୍ତଃସାରଶୂନ୍ୟ ଚୁକ୍ତିର ପରିକଳ୍ପନା ପୂର୍ବରୁ ବିଶ୍ୱର ଜନମତକୁ ସମ୍ପୂର୍ଣ୍ଣ ଉପେକ୍ଷା କରି ଚୀନ୍ ଓ ଫ୍ରାନ୍ସ ଆଦି ଦେଶ ପରମାଣୁ ବୋମା ପରୀକ୍ଷା କରିଛନ୍ତି । ମାତ୍ର ବର୍ତ୍ତମାନ ଏହି ଚୁକ୍ତିର ଦୁଇଟି ଅର୍ଥ ଥିବାର ଅନୁମିତ ହୁଏ । ପ୍ରଥମ ଅର୍ଥ ହେଉଛି ଯେଉଁମାନେ ଏହି ଚୁକ୍ତିରେ ସ୍ୱାକ୍ଷର କରିବେ, ସେମାନେ କେବେ ଭବିଷ୍ୟତରେ ପରମାଣୁ ଅସ୍ତ୍ରର ପରୀକ୍ଷା କରିପାରିବେ ନାହିଁ । ଅଥଚ ଯେଉଁମାନେ ପରମାଣୁ ଅସ୍ତ୍ରର ଅଧିକାରୀ ବା ଯେଉଁ ଦେଶରେ ପରମାଣୁ ଅସ୍ତ୍ର ଗଚ୍ଛିତ ରହିଛି, ସେମାନଙ୍କ ସମ୍ପର୍କରେ ଏହି ଚୁକ୍ତି ନିରବ । ଦ୍ୱିତୀୟ ଅର୍ଥ ହେଉଛି ପରମାଣୁ ଶକ୍ତିର ଅଧିକାରୀ ଦେଶଗଣ ଏପରି ମାରାତ୍ମକ ଅସ୍ତ୍ରର ବିଲୋପ କରିବେ କି ନାହିଁ ସେ ସମ୍ବନ୍ଧରେ ସି.ଟି.ବି.ଟି.ରେ କିଛି ଉଲ୍ଲେଖ ନାହିଁ । ପରୋକ୍ଷରେ ସେହି ଅଳ୍ପ କେତୋଟି ଦେଶର ସ୍ୱାର୍ଥରକ୍ଷା ଉଦ୍ଦେଶ୍ୟରେ ଏପରି ଏକ ଚୁକ୍ତିର ଆୟୋଜନ କରାଯାଇଛି କହିଲେ ଭୁଲ ହେବ ନାହିଁ । ଅତୀତରେ ଏନ୍.ପି.ଟି. ମାଧ୍ୟମରେ ଆଣବିକ ଅସ୍ତ୍ରର ଉତ୍ପାଦନ ଓ ବିକାଶ ନ ହେବା ପାଇଁ ବ୍ୟବସ୍ଥା କରାଯାଇଥିଲେ ହେଁ, ତାହା ସମ୍ପୂର୍ଣ୍ଣ ରୂପେ ଫଳପ୍ରଦ ହୋଇପାରି ନାହିଁ । ଆଣବିକ ଅସ୍ତ୍ରଶସ୍ତ୍ର ଅଧିକାରୀ ଦେଶଗୁଡ଼ିକ ବର୍ତ୍ତମାନ ପ୍ରତିରକ୍ଷା କ୍ଷେତ୍ରରେ ବେଶ୍ ସମୃଦ୍ଧ । ସେମାନେ ଯେଉଁ ପ୍ରକାର ଆଣବିକ ଶକ୍ତିର ଅଧିକାରୀ, ଯେକୌଣସି ମୁହୂର୍ତ୍ତରେ ଏପ୍ରକାର ଅସ୍ତ୍ରଶସ୍ତ୍ର ନିର୍ମାଣ କରିବାକୁ ସମର୍ଥ । ମାତ୍ର ବର୍ତ୍ତମାନ ଅନ୍ୟ ଯେଉଁ ଦେଶଗୁଡ଼ିକ ଏ କ୍ଷେତ୍ରରେ ଅଗ୍ରଗତି କରୁଛନ୍ତି, ସେମାନଙ୍କୁ ଏଥିରୁ ନିବୃତ୍ତ କରିବା ପାଇଁ ଏ ପ୍ରକାର ଏକ ଚୁକ୍ତି ପ୍ରସ୍ତାବିତ ହୋଇଛି । ଆମେରିକା, ଫ୍ରାନ୍ସ, ଚୀନ୍, ରୁଷିଆ, ବ୍ରିଟେନ୍ ସମ୍ପୂର୍ଣ୍ଣ ରୂପେ ପରମାଣୁ ଶକ୍ତିସମ୍ପନ୍ନ ରାଷ୍ଟ୍ରରେ ପରିଣତ ହୋଇଛନ୍ତି । ଅନ୍ୟମାନେ ଏହି ଶକ୍ତିର ଅଧିକାରୀ ନ ହୁଅନ୍ତୁ, ସେହି ଉଦ୍ଦେଶ୍ୟରେ ସେମାନେ ଆନ୍ତର୍ଜାତୀୟ ସ୍ତରରେ ବିଭିନ୍ନ ଚାପର ପ୍ରୟୋଗ କରୁଛନ୍ତି । ଅଳ୍ପ କେତେକ ଦେଶ ପରମାଣୁ ବୋମା ଗଚ୍ଛିତ ରଖିଥିବା ସମୟରେ ଅନ୍ୟଦେଶ ସେମାନଙ୍କ ପ୍ରତିରକ୍ଷା ଶକ୍ତିର

ସମୃଦ୍ଧି ନିମିତ୍ତ ଏଥିପାଇଁ ସଚେଷ୍ଟ ହେବା ସମୟରେ ତାଙ୍କୁ ବାଧା ଦେବା ଅତ୍ୟନ୍ତ ସ୍ୱାର୍ଥପରାୟଣ କାର୍ଯ୍ୟ । ସେଥିପାଇଁ ଭାରତ ଏପରି ଏକ ପକ୍ଷପାତମୂଳକ ଚୁକ୍ତିରେ ସ୍ୱାକ୍ଷର କରିବାକୁ ଅନିଚ୍ଛା ପ୍ରକାଶ କରିଛି । ଭାରତର ଏପରି ପଦକ୍ଷେପ ନିଶ୍ଚିତ ଭାବରେ ସ୍ୱାଗତଯୋଗ୍ୟ ।

ପୂର୍ଣ୍ଣାଙ୍ଗ ଆଣବିକ ପରୀକ୍ଷା ନିଷେଧ ଚୁକ୍ତି ବା ସି.ଟି.ବି.ଟି. ର ଉଦ୍ଦେଶ୍ୟ ହେଉଛି, ବିଶ୍ୱକୁ ଆଣବିକ ଆତଙ୍କରୁ ରକ୍ଷା କରିବା । ମାତ୍ର ଏହା କେତେଦୂର ସଫଳ ହୋଇପାରିବ ତାହାହିଁ ବର୍ତ୍ତମାନ ବିଚାର୍ଯ୍ୟ । ୧୯୯୬ ମସିହା ସେପ୍ଟେମ୍ବର ୧୦ ତାରିଖ ଦିନ ଅଷ୍ଟ୍ରେଲିଆ ଦ୍ୱାରା ଜାତିସଂଘର ସାଧାରଣ ପରିଷଦରେ ସି.ଟି.ବି.ଟି. ଉପସ୍ଥାପିତ ହୋଇଥିଲା । ପରିଷଦର ସମୁଦାୟ ୧୮୫ ସଦସ୍ୟଙ୍କ ମଧ୍ୟରୁ ୧୫୮ ସଦସ୍ୟଙ୍କ ଅନୁମୋଦନ ମଧ ଲାଭ କରିଛି । ସୁଖର ବିଷୟ ଏହି ଚୁକ୍ତିକୁ ଭାରତ ସମେତ ଲିବିୟା ଏବଂ ଭୁଟାନ୍ ବିରୋଧ କରିଛନ୍ତି । ଏମାନଙ୍କର ଯୁକ୍ତି ହେଉଛି, ପୃଥିବୀ ସମ୍ପୂର୍ଣ୍ଣ ରୂପେ ଆଣବିକଶୂନ୍ୟ ହେବା ଉଚିତ । ଏହି ଚୁକ୍ତିଦ୍ୱାରା ଅତୀତରେ ଯେଉଁମାନେ ଆଣବିକ ପରୀକ୍ଷା କରିଛନ୍ତି, ସେମାନଙ୍କର ସ୍ୱାର୍ଥ ସୁରକ୍ଷିତ ରହିଛି । ଅଥଚ ଭବିଷ୍ୟତରେ ଯେଉଁ ଦେଶ ଏ କ୍ଷେତ୍ରରେ ଅଗ୍ରସର ହେବାକୁ ଉଦ୍ୟମ କରୁଛନ୍ତି ସେହିମାନଙ୍କୁ କେବଳ ବାଧା ପ୍ରଦାନ କରାଯାଇଛି । ଏକ ଉଲ୍ଲେଖଯୋଗ୍ୟ ଘଟଣା ହେଉଛି କ୍ୟୁବା, ମରିସସ୍, ତାଞ୍ଜାନିଆ, ସିରିଆ ଆଦି ଦେଶ ଜାତିସଂଘର ସାଧାରଣ ପରିଷଦରେ ଏହି ଚୁକ୍ତିର ସ୍ୱାକ୍ଷର ସମୟରେ ଭୋଟ ଦାନରୁ ବିରତ ରହିଥିଲେ । ଏହି ଚୁକ୍ତିରେ ପରମାଣୁ ଶକ୍ତିର ଅଧିକାରୀ ରୁଷିଆ, ଆମେରିକା, ଫ୍ରାନ୍ସ, ଇଂଲଣ୍ଡ ଓ ଚୀନ ତଥା ସେମାନଙ୍କର ଅନୁଗତ ଦେଶ ଏହା ପ୍ରତି ସମର୍ଥନ ଜ୍ଞାପନ କରିଛନ୍ତି । ଆନ୍ତର୍ଜାତିକ ନିରସ୍ତ୍ରୀକରଣ ନିୟମ ଅନୁଯାୟୀ ଆଣବିକ ରିଆକ୍ଟର ଅଧିକାରୀ ବିଶ୍ୱର ୪୪ଟି ରାଷ୍ଟ୍ର ଏହି ଚୁକ୍ତିକୁ ଅନୁମୋଦନ କରିବା ପରେ ଏହା ଆଇନ୍‌ରେ ପରିଣତ ହୋଇପାରିବ । ଆଣବିକ ରିଆକ୍ଟରର ଅଧିକାରୀ ଭାରତ ଏହି ଚୁକ୍ତିରେ ସ୍ୱାକ୍ଷର କରି ନ ଥିବାରୁ ଆଇନରେ ପରିଣତ ହେବା କ୍ଷେତ୍ରରେ ବାଧାର ସମ୍ମୁଖୀନ ହୋଇଛି । ଏହାଦ୍ୱାରା ସାମ୍ରାଜ୍ୟବାଦୀ ଶକ୍ତିଗୁଡ଼ିକୁ ଦାରୁଣ ଧକ୍କା ଲାଗିଛି । ଯେଉଁ ଆମେରିକା ଏହି ଚୁକ୍ତିର ସ୍ୱାକ୍ଷର ନିମିତ୍ତ କୁମ୍ଭୀରକାନ୍ଦଣା କାନ୍ଦୁଛି, ଏହି ଚୁକ୍ତି ସ୍ୱାକ୍ଷରର କିଛିଦିନ ପୂର୍ବରୁ ଫ୍ରାନ୍ସ ସହିତ ଏକ ଆଣବିକ ଚୁକ୍ତି ସ୍ୱାକ୍ଷର କରି ବିପୁଳ ପରିମାଣର ଆଣବିକ ଜ୍ଞାନକୌଶଳ ଲାଭ କରିବାର ପଥ ପରିଷ୍କାର କରିଛି । ପାକିସ୍ଥାନ ସହିତ ବ୍ରାଉନ୍ ଚୁକ୍ତି ସ୍ୱାକ୍ଷର ହେବା ଦ୍ୱାରା ପାକିସ୍ଥାନ ଆମେରିକା ଠାରୁ ବିପୁଳ ପରମାଣୁ ଅସ୍ତ୍ର ସଂଗ୍ରହ କରିଛି । ୯୪ ବିଲିୟନ୍ ଡ଼ଲାର ଖର୍ଚ୍ଚ କରି ଆମେରିକା ସୁପର କମ୍ପ୍ୟୁଟର ଦ୍ୱାରା ନିଜର ଆଣବିକ ଶକ୍ତିର ସମୃଦ୍ଧି ପାଇଁ ମସୁଧା କରିଛି । ଇରାକ୍ ଉପରେ ଆକ୍ରମଣ କରି ଆନ୍ତର୍ଜାତିକ ନୀତିନିୟମକୁ ଆମେରିକା ଉଲଙ୍ଘନ କରିଛି ଏବଂ ବର୍ତ୍ତମାନ ଫ୍ରାନ୍ସ, ଚୀନ, ରୁଷିଆ ଆଦି ଦେଶର ବିରୋଧ ସତ୍ତ୍ୱେ ପୁନରାୟ ଇରାକ୍ ଉପରେ ଆକ୍ରମଣ କରିବାର ସମସ୍ତ ଯୋଜନା ପ୍ରସ୍ତୁତ କରିସାରିଛି । ଆନ୍ତର୍ଜାତୀୟ ନୀତିନିୟମକୁ ବାରମ୍ବାର ଉଲଙ୍ଘନ କରୁଥିବା ଆମେରିକା ସିଟିବିଟିର ଅନୁମୋଦନ ନିମିତ୍ତ କୁମ୍ଭୀରକାନ୍ଦଣା କାନ୍ଦୁଥିବା ପଶ୍ଚାତ୍‌ରେ ତା'ର ଯେ ଏକ ନ୍ୟସ୍ତସ୍ୱାର୍ଥ ଜଡ଼ିତ ରହିଛି, ସେଥିରେ ଦ୍ୱିରୁକ୍ତି ହେବାର କୌଣସି କାରଣ ନାହିଁ । ବିକାଶଶୀଳ ରାଷ୍ଟ୍ରମାନଙ୍କୁ

ଏକ କ୍ରୀଡ଼ନକରେ ପରିଣତ କରିବାର ଉଦ୍ଦେଶ୍ୟରୁ ହିଁ ଏହି ଚୁକ୍ତିଟି ଜନ୍ମଲାଭ କରିଛି । ଯଦି ବାସ୍ତବରେ ଏହି ଆଣବିକ ଶକ୍ତିସମ୍ପନ୍ନ ରାଷ୍ଟ୍ରଗୁଡ଼ିକ ପରମାଣୁ ଅସ୍ତ୍ରର ବିଲୋପ ଚାହାନ୍ତି, ତେବେ ସେମାନଙ୍କ ନିକଟରେ ଗଚ୍ଛିତ ଥିବା ସମସ୍ତ ପରମାଣୁ ଅସ୍ତ୍ରଗୁଡ଼ିକୁ ଏକ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ନଷ୍ଟ କରିବା ନିମିତ୍ତ ସ୍ପଷ୍ଟୀକରଣ ଦେବା ଉଚିତ । ଏହି ଚୁକ୍ତି ସମ୍ପୂର୍ଣ୍ଣ ରୂପେ ଉଦ୍ଦେଶ୍ୟମୂଳକ ଏବଂ ବିକଶିତ ରାଷ୍ଟ୍ରମାନଙ୍କ ସ୍ୱାର୍ଥସାଧନ ନିମିତ୍ତ ଉଦ୍ଦିଷ୍ଟ ଥିବାରୁ ଭାରତ ଏହାର ବିରୋଧ କରି ନିଜ ସ୍ୱାଧୀନ ଚିନ୍ତାଧାରାର ଯଥାର୍ଥ ପରିଚୟ ପ୍ରଦାନ କରିଛି ।

ଭାରତ ସିଟିବିଟିକୁ ବିରୋଧ କରିବା ମୂଳରେ କେତୋଟି ବିଶିଷ୍ଟ କାରଣ ରହିଛି । ମୁଖ୍ୟ କାରଣ ହେଉଛି ଏହି ସିଟିବିଟିରେ ପରମାଣୁ ଶକ୍ତିସମ୍ପନ୍ନ ରାଷ୍ଟ୍ରମାନଙ୍କ ନିକଟରେ ଗଚ୍ଛିତ ଥିବା ମାରାତ୍ମକ ପରମାଣୁ ଅସ୍ତ୍ରଶସ୍ତ୍ରକୁ ନିର୍ଦ୍ଦିଷ୍ଟ ସମୟ ସୀମା ମଧ୍ୟରେ ନଷ୍ଟକରି ଦେବାପାଇଁ କୌଣସି ସର୍ତ୍ତ ଆରୋପ କରାଯାଇ ନାହିଁ । ପୁନରାୟ ପରମାଣୁ ଅସ୍ତ୍ରଶସ୍ତ୍ର ରଖି ନ ଥିବା ଦେଶ ବା ପରମାଣୁ ଶକ୍ତିର ଅଧିକାରୀ ନ ଥିବା ଦେଶ ଶାନ୍ତି ଉଦ୍ଦେଶ୍ୟରେ ମଧ୍ୟ ପରମାଣୁ ଶକ୍ତିର ପରୀକ୍ଷା କରିପାରିବେ ନାହିଁ । ୧୯୫୪ ମସିହାରେ ତତ୍କାଳୀନ ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ବିଶ୍ୱକୁ ପରମାଣୁ ଅସ୍ତ୍ରରୁ ମୁକ୍ତ ରଖିବା ନିମିତ୍ତ ଯେଉଁ ଆହ୍ୱାନ ଦେଇଥିଲେ, ତା'ର ଗୁରୁତ୍ୱ ସମଗ୍ର ବିଶ୍ୱ ଅନୁଭବ କରିଥିଲେ ହେଁ ସର୍ବାନ୍ତଃକରଣରେ କେହି ଏହାକୁ କାର୍ଯ୍ୟକାରୀ କରି ନ ଥିଲେ । ବାସ୍ତବରେ ଯେଉଁମାନେ ବିଶ୍ୱକୁ ପରମାଣୁ ଅସ୍ତ୍ର ମୁକ୍ତ କରିବାକୁ ଚିତ୍କାର କରୁଛନ୍ତି, ଯଥାର୍ଥରେ କାୟ, ମନ ଓ ବାକ୍ୟରେ ସେମାନେ ତାହା ଚାହୁଁ ନାହାନ୍ତି । ସେଥିପାଇଁ ଭାରତୀୟ ପ୍ରତିନିଧି ଅରୁନ୍ଧତୀ ଘୋଷ ଜାତିସଂଘର ସାଧାରଣ ପରିଷଦରେ ସ୍ପଷ୍ଟୋକ୍ତି କରି କହିଥିଲେ – 'ଭାରତ ଏପରି ଏକ ବାଛବିଚାରମୂଳକ ଚୁକ୍ତିକୁ ବର୍ତ୍ତମାନ କିମ୍ବା ଭବିଷ୍ୟତରେ ଗ୍ରହଣ କରିପାରିବ ନାହିଁ । 'ଜାତିସଂଘରେ ଭାରତର ସ୍ଥାୟୀ ପ୍ରତିନିଧି ଶ୍ରୀ ପ୍ରକାଶ ସାହା ଭାରତ ନିଜର ସ୍ୱାର୍ଥ ଓ ନିରାପତ୍ତା ଦୃଷ୍ଟିରୁ ଆଣବିକ କାର୍ଯ୍ୟକ୍ରମକୁ ବନ୍ଦ କରିପାରିବ ନାହିଁ ବୋଲି କହିଛନ୍ତି । ପୂର୍ଣ୍ଣାଙ୍ଗ ଆଣବିକ ପରୀକ୍ଷା ନିଷେଧ ଚୁକ୍ତି ଭିଏନା ସମ୍ମିଳନୀର ୪୩ତମ ପରିଚ୍ଛେଦ ଓ ଆନ୍ତର୍ଜାତିକ ଆଇନକୁ ଉଲଙ୍ଘନ କରୁଥିବାରୁ ଭାରତ ଏହାର ବୈଧତା ସମ୍ପର୍କରେ ଆନ୍ତର୍ଜାତିକ ବିଚାରାଳୟରେ ପ୍ରଶ୍ନ କରିବାକୁ ଚାହୁଁଛି । ଆଣବିକ ଅସ୍ତ୍ରଶସ୍ତ୍ର ସମ୍ପର୍କରେ ଭାରତର ଦୃଷ୍ଟିଭଙ୍ଗୀକୁ ଅତୀତରେ ୧୯୮୮ ମସିହାରେ ପ୍ରଧାନମନ୍ତ୍ରୀ ରାଜୀବଗାନ୍ଧି ପ୍ରକାଶ କରି ସାରିଛନ୍ତି । ଆମେରିକା, ରୁଷ, ଚୀନ, ବ୍ରିଟେନ ଆଦି ଦେଶ, ଯେଉଁମାନେ ଏହି ଚୁକ୍ତିରେ ସ୍ୱାକ୍ଷର କରିଛନ୍ତି ଓ ଅନ୍ୟଦେଶମାନଙ୍କୁ ଏଥିରେ ସ୍ୱାକ୍ଷର କରାଇବା ନିମିତ୍ତ ପ୍ରବର୍ତ୍ତାଉଛନ୍ତି, ସେମାନେ ଅତୀତରେ ୧୯୯୩ ମସିହା ଜାନୁଆରୀ ମାସରେ ପ୍ୟାରିସ୍ ଠାରେ ନିରସ୍ତ୍ରୀକରଣ ସମ୍ମିଳନୀରେ ଗୃହୀତ ହୋଇଥିବା ପ୍ରସ୍ତାବକୁ ଏଯାବତ୍ ସ୍ୱୀକୃତି ପ୍ରଦାନ କରିନାହାନ୍ତି । ଷ୍ଟାର୍ଟ-୨ କୁ ରୁଷିଆ ଡୁମା ମଧ୍ୟ ଏପର୍ଯ୍ୟନ୍ତ ଅନୁମୋଦନ କରି ନାହିଁ । ପୂର୍ବତନ ପ୍ରଧାନମନ୍ତ୍ରୀ ଇନ୍ଦ୍ରକୁମାର ଗୁଜୁରାଲ୍ ପରମାଣୁ ଅସ୍ତ୍ର ସମ୍ବନ୍ଧରେ ଭାରତର ଦୃଷ୍ଟିଭଙ୍ଗୀର ସୂଚନା ପ୍ରଦାନ କରିବାକୁ ଯାଇ କହିଛନ୍ତି ଭାରତ ଏକ ସମ୍ପୂର୍ଣ୍ଣ ଆଣବିକଶୂନ୍ୟ ବିଶ୍ୱ ଆଶା କରେ ଏବଂ ସମ୍ପୂର୍ଣ୍ଣ ଆଣବିକ ଅସ୍ତ୍ରଶସ୍ତ୍ର ନିରସ୍ତ୍ରୀକରଣ ନିମିତ୍ତ ସେ ତା'ର ଉଦ୍ୟମ ଚଳାଇ ରଖିବ ।

କାନବାରା କମିଶନରଙ୍କ ନିଷ୍ପତ୍ତି ଅନୁସାରେ ୧୯୯୭ ମସିହା ଶେଷ ସୁଦ୍ଧା ବିଶ୍ୱ ସମ୍ପୂର୍ଣ୍ଣରୂପେ ପରମାଣୁ ଅସ୍ତ୍ରଶସ୍ତ୍ର ମୁକ୍ତ ହେବା କଥା । ମାତ୍ର ଏଯାବତ୍ ଏପରି ଏକ ସୁନ୍ଦର ପ୍ରସ୍ତାବ କାର୍ଯ୍ୟକାରୀ ହୋଇପାରି ନାହିଁ । ଗାନ୍ଧିଜୀଙ୍କ ଆଦର୍ଶ ଓ ବୁଦ୍ଧଦେବଙ୍କ ମତ ଉପରେ ବିଶ୍ୱାସ କରୁଥିବା ଭାରତବର୍ଷ କଦାପି ପରମାଣୁ ଅସ୍ତ୍ର ପ୍ରତିଯୋଗିତାକୁ ସ୍ୱାଗତ କରିନ ପାରେ । ମାତ୍ର ଯେଉଁମାନେ ଆନ୍ତରିକତା ସହିତ ଉଦ୍ୟମ ନ କରି ବିଶ୍ୱରାଜନୀତିକୁ ନିଜର ହାତମୁଠା ମଧ୍ୟରେ ରଖିବାକୁ ଚାହାନ୍ତି, ଭାରତ ସେହିପରି ସ୍ୱାର୍ଥନ୍ୱେଷୀ ରାଷ୍ଟ୍ରମାନଙ୍କୁ ସିଟିବିଟି ସ୍ୱାକ୍ଷର ନକରି ସଚେତନ କରାଇ ଦେଇଛନ୍ତି । ଏହାଦ୍ୱାରା ବିଶ୍ୱ ସମ୍ବନ୍ଧରେ ଭାରତ ନିଜର ନୈତିକ ଓ ମୌଳିକ ଚିନ୍ତାଧାରାକୁ ଯଥାଯଥ ଉପସ୍ଥାପନ କରିପାରିଛି ।

ଆଜି ବିଶ୍ୱରେ ସାମ୍ରାଜ୍ୟବାଦୀ ଶକ୍ତି ମୁଣ୍ଡଟେକି ଉଠୁଛି । ସିଟିବିଟି ଚୁକ୍ତିର ସ୍ୱାକ୍ଷର ଅନ୍ତରାଳରେ ସାମ୍ରାଜ୍ୟବାଦୀ ରାଷ୍ଟ୍ରଗୁଡ଼ିକର ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ସମ୍ପର୍କରେ ଭାରତ ବେଶ୍ ସଚେତନ । ଭାରତର ପଡ଼ୋଶୀ ରାଷ୍ଟ୍ର ଚୀନ୍ ପରମାଣୁ ବୋମାର ଅଧିକାରୀ । ''ଭାରତ ଚୀନ୍ ଭାଇ ଭାଇ'' ବୋଲି ସେମାନେ ଯେତେ ଚିତ୍କାର କଲେ ମଧ୍ୟ ୧୯୬୨ ର ଅନ୍ୟାୟ ଯୁଦ୍ଧ ପରେ ଭାରତବାସୀ ସେମାନଙ୍କୁ ବିଶ୍ୱାସ କରିବାକୁ ନାରାଜ । ଏ ପର୍ଯ୍ୟନ୍ତ ଭାରତର କେତେକ ଅଞ୍ଚଳ ଚୀନ୍‌ଦ୍ୱାରା ଅଧିକୃତ । କିଛି ଦିନ ପୂର୍ବରୁ ପାକିସ୍ଥାନର ପୂର୍ବତନ ପ୍ରଧାନମନ୍ତ୍ରୀ ନୱାଜ୍ ସରିଫ୍ ପାକିସ୍ଥାନରେ ପରମାଣୁ ବୋମା ଅଛି ବୋଲି ସ୍ୱୀକାର କରିଛନ୍ତି । ସାମ୍ରାଜ୍ୟବାଦୀ ଆମେରିକା ଦକ୍ଷିଣ ଏସିଆରେ ହଟଚମଟ ସୃଷ୍ଟି କରି ନିଜର ନ୍ୟସ୍ତ ସ୍ୱାର୍ଥ ହାସଲ କରିବାକୁ ଚାହେଁ । ସେଥିପାଇଁ ପାକିସ୍ଥାନକୁ ବହୁପରିମାଣରେ ମାରାତ୍ମକ ଅସ୍ତ୍ରଶସ୍ତ୍ର ଯୋଗାଇ ଦେବାରେ କୌଣସି କାର୍ପଣ୍ୟ କରୁ ନାହିଁ । ଭାରତର ସାର୍ବଭୌମତ୍ୱକୁ ବିପନ୍ନ କରିବା ନିମିତ୍ତ ଆମେରିକା ବହୁଥର ଚେଷ୍ଟା ଚଳାଇ ଆସିଛି । ଭାରତ ବିରୁଦ୍ଧରେ ମଧ୍ୟ ଅନେକ ଆପତ୍ତିଜନକ ମନ୍ତବ୍ୟ ପ୍ରଦାନ କରିଛି । ସାମ୍ରାଜ୍ୟବାଦୀ ରାଷ୍ଟ୍ରଙ୍କ ପ୍ରରୋଚନାରେ ଭାରତ କଦାପି ନିଜର ନିରାପତ୍ତାକୁ ବିପନ୍ନ କରିବା ଅନୁଚିତ । ଯେତେବେଳେ ଭାରତର ସୀମାନ୍ତବର୍ତ୍ତୀ ରାଷ୍ଟ୍ରଗୁଡ଼ିକ ପରମାଣୁ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ, ସେତେବେଳେ ଭାରତ ଅମୂଳକ ସିଟିବିଟିରେ ସ୍ୱାକ୍ଷର କରି ଏଥିରୁ ଦୂରେଇ ଯିବ କାହିଁକି ? ବରଂ ବର୍ତ୍ତମାନର ପରିସ୍ଥିତିରେ ଭାରତ ମଧ୍ୟ ପରମାଣୁବୋମାର ଅଧିକାରୀ ହେବା ସବୁ ଦୃଷ୍ଟିରୁ ଶ୍ରେୟସ୍କର । ତେଣୁ ଯେଉଁ ସାମ୍ରାଜ୍ୟବାଦୀ ରାଷ୍ଟ୍ର ନିଜର ସ୍ୱାର୍ଥ ହାସଲ ଉଦ୍ଦେଶ୍ୟରେ ସିଟିବିଟିରେ ସ୍ୱାକ୍ଷର କରିବାକୁ ଭାରତକୁ ପରାମର୍ଶ ବା ବାଧ କରୁଛନ୍ତି, ସେମାନଙ୍କ କଥାରେ ନ ଭୁଲି ଭାରତ ନିଜର ନିରାପତ୍ତା ଦୃଷ୍ଟିରୁ ପରମାଣୁ ଶକ୍ତିର ଅଧିକାରୀ ହେବା ଉଚିତ । ଯେପର୍ଯ୍ୟନ୍ତ ସମଗ୍ର ବିଶ୍ୱରୁ ପରମାଣୁ ଅସ୍ତ୍ରଶସ୍ତ୍ର ସମ୍ପୂର୍ଣ୍ଣ ବିନଷ୍ଟ ନ ହୋଇଛି, ସେ ପର୍ଯ୍ୟନ୍ତ ଭାରତ ସିଟିବିଟିର ଅନ୍ତଃସାରଶୂନ୍ୟ ସନନ୍ଦରେ ସ୍ୱାକ୍ଷର କରିବା ସମ୍ପୂର୍ଣ୍ଣ ଅନୁଚିତ ।

ପରମାଣୁ ଅସ୍ତ୍ରର ଭୟାବହତା ଆଜି ସମ୍ପୂର୍ଣ୍ଣ ବିଶ୍ୱକୁ ସନ୍ତ୍ରସ୍ତ କରିଛି । ୧୯୪୫ ମସିହାରେ ପରମାଣୁ ବୋମାର ଶକ୍ତି ଯାହା ଥିଲା, ଏବେ ତା'ଠାରୁ ବହୁଗୁଣରୁ ଅଧିକ ପରମାଣୁ ବୋମା ପୃଥିବୀରେ ଗଚ୍ଛିତ ରହିଛି । ଗୋଟିଏ ପରମାଣୁ ବୋମାର ବିସ୍ଫୋରଣରେ ଆଜି ବିଶ୍ୱରେ ଶହ

ଶହ ହିରୋସୀମା ଓ ନାଗାସାକୀ ସୃଷ୍ଟି ହୋଇଯିବ । ଏ କ୍ଷେତ୍ରରେ ବିଶ୍ୱକୁ ଭାରତର ପରାମର୍ଶ ନିଶ୍ଚିତଭାବରେ ଅଭିନନ୍ଦନୀୟ । ଆଜି ସମଗ୍ର ବିଶ୍ୱ ଏକ ପରମାଣୁ ଅସ୍ତ୍ରଶସ୍ତ୍ରଶୂନ୍ୟ ବିଶ୍ୱର ସ୍ୱପ୍ନ ଦେଖୁଛି । ଏହି ସ୍ୱପ୍ନ ସାକାର ହୋଇନପାରିଲେ ବିଶ୍ୱର ଭବିଷ୍ୟତ ଯେ ସମ୍ପୂର୍ଣ୍ଣ ରୂପେ ବିପଦପୂର୍ଣ୍ଣ ଓ ସମ୍ଭାବନାଶୂନ୍ୟ, ଯେକୌଣସି ଚିନ୍ତାନାୟକ ଏହାକୁ ସ୍ୱୀକାର କରିବାକୁ ବାଧ । ନିଜର ବଡ଼ଭାଇପଣିଆ ଓ ଶକ୍ତି ସାମର୍ଥ୍ୟର ଅହଙ୍କାର ପ୍ରଦର୍ଶନ ନିମିତ୍ତ ଯେଉଁ କେତେକ ରାଷ୍ଟ୍ର ଅବିରତ ଉଦ୍ୟମଶୀଳ, ବିଶ୍ୱଶାନ୍ତି ନିମିତ୍ତ ସେମାନେ ସେହି ମାରାତ୍ମକ ପଥରୁ ଫେରିଆସିବା ଉଚିତ । ନଚେତ୍ ଅନ୍ୟାନ୍ୟ ବିକାଶଶୀଳ ରାଷ୍ଟ୍ର ସହିତ ସେହି ବିକଶିତ ରାଷ୍ଟ୍ରମାନଙ୍କର ମଧ ଭବିଷ୍ୟତ ଅନ୍ଧକାରର ଗିରିଗହ୍ୱରରେ ନିକ୍ଷେପିତ ହେବ ।

ପୂର୍ଣ୍ଣାଙ୍ଗ ଆଣବିକ ପରୀକ୍ଷା ନିଷେଧ ଚୁକ୍ତି– ଏକ ଯଥୋଚିତ ପଦକ୍ଷେପ, ଏଥିରେ ସନ୍ଦେହ ନାହିଁ । ମାତ୍ର ଏହାର କେତୋଟି ଦିଗ ତ୍ରୁଟିପୂର୍ଣ୍ଣ ହୋଇଥିବାରୁ ଭାରତ ଏଥିରେ ସ୍ୱାକ୍ଷର କରିବାକୁ ଅସମ୍ମତି ପ୍ରକାଶ କରିଛି । ବର୍ତ୍ତମାନ ଯେଉଁ ଦେଶଗୁଡ଼ିକ ଆଣବିକ ଶକ୍ତିର ଅଧିକାରୀ ଓ ବହୁପରିମାଣରେ ଆଣବିକ ଅସ୍ତ୍ରଶସ୍ତ୍ର ମାନ ଠୁଳ କରିଛନ୍ତି, ସେହି ଅସ୍ତ୍ରଗୁଡ଼ିକର ବିଲୋପ ନିମିତ୍ତ ଏଥିରେ କୌଣସି ପ୍ରସ୍ତାବ ଦିଆଯାଇ ନାହିଁ । ଏହାଦ୍ୱାରା ବିଶ୍ୱର ଅଳ୍ପ କେତୋଟି ଦେଶ ଯେକୌଣସି ମୁହୂର୍ତ୍ତରେ ଅନ୍ୟ ଦେଶ ଉପରେ ନିଜର ପରମାଣୁ ଶକ୍ତିକୁ ପ୍ରୟୋଗ କରିପାରିବା ସମୟରେ ବିକାଶଶୀଳ ରାଷ୍ଟ୍ରଗୁଡ଼ିକ ଭୟରେ ସେମାନଙ୍କର ଦ୍ୱାରସ୍ଥ ହେବାକୁ ବାଧ ହେବେ । ସେଥିନିମିତ୍ତ ସିଟିବିଟିକୁ ସାମାନ୍ୟ ପରିବର୍ତ୍ତନ କରାଯାଇ ବିଶ୍ୱକୁ ସମ୍ପୂର୍ଣ୍ଣ ରୂପେ ଆଣବିକ ପରୀକ୍ଷାରୁ ନିଷେଧ କରିବା ପାଇଁ ପ୍ରସ୍ତାବ ରହିବା ସଙ୍ଗେ ସଙ୍ଗେ ଯେଉଁମାନେ ସେ ପ୍ରକାର ଅସ୍ତ୍ରଶସ୍ତ୍ରର ଅଧିକାରୀ, ଏକ ନିର୍ଦ୍ଦିଷ୍ଟ ସମୟ ସୀମା ମଧରେ ସେମାନେ ତାହାକୁ ସମ୍ପୂର୍ଣ୍ଣ ନଷ୍ଟ କରିବା ନିମିତ୍ତ ଏହି ଚୁକ୍ତିରେ ବ୍ୟବସ୍ଥା ରହିବା ଉଚିତ ।



# ମାନବିକ ଅଧିକାର

**(ଉପକ୍ରମ, ମାନବିକ ଅଧିକାର କ'ଣ ?, ମାନବିକ ଅଧିକାରର ଆବଶ୍ୟକତା, ମିଳିତ ଜାତିସଂଘ ଓ ମାନବିକ ଅଧିକାର, ଭାରତ ଓ ମାନବିକ ଅଧିକାର, ସାମାଜିକ ନ୍ୟାୟ ପ୍ରତିଷ୍ଠାରେ ମାନବିକ ଅଧିକାର, ମାନବିକ ଅଧିକାରରେ ସଙ୍କଟ, ଉପସଂହାର)**

ପ୍ରତ୍ୟେକ ମଣିଷ ନିଜର ରୁଚି ଓ ଇଚ୍ଛାନୁଯାୟୀ ବଞ୍ଚିବାକୁ ଚାହେଁ । ମାତ୍ର କୌଣସି ମଣିଷ ନିଜର ଇଚ୍ଛା ଓ ରୁଚିକୁ ଅନ୍ୟାୟ ଭାବେ ଅନ୍ୟ ଉପରେ ଲଦି ଦେବା ଅନୁଚିତ । ସାମାଜିକ ଜୀବ ଭାବେ ଅନ୍ୟର ରୁଚିବୋଧ ଓ ଇଚ୍ଛାକୁ ସମ୍ମାନ ଦେବା ମଣିଷର କର୍ତ୍ତବ୍ୟ । ନିଜେ ଠିକ୍‌ଭାବେ ବଞ୍ଚ ଏବଂ ଅନ୍ୟମାନଙ୍କୁ ଅନୁରୂପ ଭାବେ ବଞ୍ଚିବାକୁ ସୁଯୋଗ ଦିଅ – ଏହାହିଁ ବର୍ତ୍ତମାନ ସମୟର ଆହ୍ୱାନ । ମାତ୍ର କେତେକ ବ୍ୟକ୍ତି ନିଜର ଅର୍ଥ, ବାହୁବଳ ଓ ଶକ୍ତି ବଳରେ ଅନ୍ୟ ଉପରେ ଆଧିପତ୍ୟ

ସଦସ୍ୟଭୁକ୍ତ ହୋଇଥିଲେ । ସମସ୍ତ ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ଭାରତର ପ୍ରତିନିଧି ପ୍ରଣବ ମୁଖାର୍ଜୀ ମଧ୍ୟ ଏହି ରାଜିନାମାରେ ସ୍ୱାକ୍ଷର କରିଥିଲେ । ୧୯୯୫ ଜାନୁଆରିରେ ଏହି ପ୍ରସ୍ତାବଟି ଅନୁକୂଳ ମତଲାଭ କରି କାର୍ଯ୍ୟକାରୀ ହେଲା । ଏହାର ଅତୀତ ଅତୀବ କୌତୂହଳପ୍ରଦ । ଗ୍ୟାଟ୍‌ର ୮ମ ଆଲୋଚନା ଚକ୍ରରେ ବାଣିଜ୍ୟ ଅନ୍ତର୍ଭୁକ୍ତ ନ ଥିବା ବହୁ ବିଷୟ ଏହାର ଅନ୍ତର୍ଭୁକ୍ତ ହେଲା । ଗ୍ୟାଟ୍‌ର ୭ମ ଆଲୋଚନା ଚକ୍ର ପର୍ଯ୍ୟନ୍ତ ଗ୍ୟାଟ୍ କେବଳ ବାଣିଜ୍ୟ ଉପରେ ପ୍ରଭାବ ବିସ୍ତାର କରିଥିଲା । ମାତ୍ର ୮ମ ଆଲୋଚନା ଚକ୍ରରେ କୃଷି ଏହାର ଅନ୍ତର୍ଭୁକ୍ତ ହେଲା । ଗ୍ୟାଟ୍ ଚୁକ୍ତି ଅନୁଯାୟୀ ଆମେରିକା ପ୍ରଥମେ ବହୁ ପରିମାଣରେ ଲାଭବାନ ହୋଇଥିଲା । ୧୯୯୧ ମସିହା ବେଳକୁ ଆମେରିକା ଶତକଡ଼ା ୪୫ ଭାଗ ବ୍ୟବସାୟ ଏକଚାଟିଆ କରିନେଇଥିଲା । ମାତ୍ର ୧୯୯୨ ମସିହା ବେଳକୁ ଏହାର ପରିମାଣ ଶତକଡ଼ା ୨୨ କୁ ଖସି ଆସିଥିଲା । ଏହି ରାଜିନାମା ଯୋଗୁଁ ବିକଶିତ ଦେଶର ଅଧିବାସୀମାନଙ୍କର ଜୀବନଧାରଣର ମାନ ବହୁ ପରିମାଣରେ ବୃଦ୍ଧି ପାଇଲା । ମାତ୍ର ଏହାଦ୍ୱାରା ଆର୍ଥିକ ପ୍ରଗତି ନାମରେ  ବିକାଶଶୀଳ ରାଷ୍ଟ୍ରଗୁଡ଼ିକ ଉପରେ ଆର୍ଥିକ ବୋଝ ଲଦି ହୋଇପଡ଼ିବ । ବିକାଶଶୀଳ ରାଷ୍ଟ୍ରଗୁଡ଼ିକର ପ୍ରାକୃତିକ ସମ୍ପଦକୁ ଶୋଷଣ କରି ବିକଶିତ ରାଷ୍ଟ୍ର ବଜାର ସୃଷ୍ଟି କରିବେ । ଏମାନଙ୍କର ସମ୍ପଦକୁ ପଦାର୍ଥରେ ପରିଣତ କରି ବହୁ ଅଧିକ ଦରରେ ବିକ୍ରି କରିବେ । ନିଜ ସମ୍ପଦ ଉପରୁ ମାଲିକାନା ସ୍ୱତ୍ୱ ହରାଇ ବସିବେ । ୧୯୭୦ ମସିହା ବେଳକୁ ବିଶ୍ୱରେ ଏକ ପରିବର୍ତ୍ତନ ଦେଖାଦେଇଥିଲା । ଏହି ଦଶନ୍ଧିରେ ଆମେରିକା ତଥା ପଶ୍ଚିମ ଇଉରୋପରେ କୃଷିଜାତ ପଦାର୍ଥର ଉତ୍ପାଦନ ଅସମ୍ଭବ ଭାବେ ବୃଦ୍ଧି ପାଇଲା । କୃଷିଜାତ ପଦାର୍ଥ ମାଧ୍ୟମରେ ସେମାନେ ଆନ୍ତର୍ଜାତିକ ବଜାର ଅଧିକାର କରିବାକୁ ଚେଷ୍ଟା କଲେ । ଏହି କୃଷିଜାତ ଦ୍ରବ୍ୟର ବାଣିଜ୍ୟ ପାଇଁ ଦ୍ୱୈତ ବଜାର କମ୍ପାନୀମାନ ଗଢ଼ି ଉଠିଲା । କୃଷିଜାତ ଦ୍ରବ୍ୟ ବିକ୍ରି କରି ସେମାନେ ନିଜ ଦେଶକୁ ସମୃଦ୍ଧ କରିବାକୁ ଚାହିଁଲେ । ଗ୍ୟାଟ୍ ରାଜିନାମା ମାଧ୍ୟମରେ ଏହାକୁ ସଫଳ କରାଇବାକୁ ଯାଇ ଏବେ କୃଷିକୁ ସେହି ରାଜିନାମା ଅନ୍ତର୍ଭୁକ୍ତ କରାଇଛନ୍ତି । ଏସିଆ, ଆଫ୍ରିକା ମହାଦେଶର ଅଧିବାସୀଗଣ ଶିଳ୍ପ କ୍ଷେତ୍ରରେ ଧନୀ ରାଷ୍ଟ୍ରମାନଙ୍କ ସହିତ ସମକକ୍ଷ ହୋଇପାରିବେ  ନାହିଁ ଜାଣି କୃଷିକ୍ଷେତ୍ରରେ ଆତ୍ମନିର୍ଭରଶୀଳ ହେବାକୁ ଚେଷ୍ଟା କରୁଥିଲେ । କୃଷିର ସାମୂହିକ ବିକାଶ ପାଇଁ ସେମାନେ ବହୁରାଷ୍ଟ୍ରୀୟ କମ୍ପାନୀ, ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଓ ବିଶ୍ୱବ୍ୟାଙ୍କ୍ ଆଦିରୁ ଋଣ ଆଣିଥିଲେ । ବର୍ତ୍ତମାନ ପରିସ୍ଥିତିରେ ପରିବର୍ତ୍ତନ ପରିଲକ୍ଷିତ ହେଲାଣି । ଶିଳ୍ପ ସମୃଦ୍ଧ ବିକଶିତ ରାଷ୍ଟ୍ର ବିକାଶଶୀଳ ରାଷ୍ଟ୍ରମାନଙ୍କୁ କହିଲେଣି କୃଷିଜାତ ପଦାର୍ଥରେ ଆତ୍ମନିର୍ଭରଶୀଳ ହେବାର ଆବଶ୍ୟକତା  ନାହିଁ । ତୁମେ ବଜାର ଖୋଲ; ଆମେ ତୁମକୁ ସମସ୍ତ କୃଷିଜାତ ଦ୍ରବ୍ୟ ଯୋଗାଇଦେବୁ । ପାଶ୍ଚାତ୍ୟ ଦେଶମାନଙ୍କରେ ଏହି ବଜାର ଅଧିକାର ନୀତି ବର୍ତ୍ତମାନ ବିକାଶଶୀଳ ରାଷ୍ଟ୍ରମାନଙ୍କର ମୁଣ୍ଡବ୍ୟଥାର କାରଣ ହୋଇଛି । ଗ୍ୟାଟ୍‌ର ମୂଳ ଲକ୍ଷ୍ୟ ମୁକ୍ତ ବଜାର ମାଧ୍ୟମରେ ପାଶ୍ଚାତ୍ୟ ସନ୍ତୁଷ୍ଟୀକରଣ ହୋଇଥିବାରୁ ବିକାଶଶୀଳ ରାଷ୍ଟ୍ରମାନଙ୍କର ଭବିଷ୍ୟତ ଅନ୍ଧକାରାଚ୍ଛନ୍ନ । ବିକାଶଶୀଳ ରାଷ୍ଟ୍ରମାନଙ୍କର ପ୍ରକୃତ ବିକାଶ ଗ୍ୟାଟ୍‌ର କେବେ ଲକ୍ଷ୍ୟ ନୁହେଁ । ନଚେତ୍ ୧୯୮୦ର G-77 ରାଷ୍ଟ୍ରର UNCTAD ବୈଠକକୁ ଧନୀରାଷ୍ଟ୍ରଗଣ ଚପାଇ ଦେବାକୁ ଚେଷ୍ଟା କରିନଥାନ୍ତେ କିମ୍ବା G-7 ଗଠନ କରି Organisation for Economic

Corporation Development Agency ମାଧ୍ୟମରେ ବିଶ୍ୱ ବଜାରକୁ ଦଖଲ କରିବାକୁ ଯୋଜନା ପ୍ରସ୍ତୁତ କରିନ ଥାନ୍ତେ । ଗ୍ୟାଟ୍ ବା ଡଙ୍କେଲ ପ୍ରସ୍ତାବରେ ଧନୀରାଷ୍ଟ୍ରମାନଙ୍କୁ ସୁହାଇବା ପରି ଯେ ବିଭିନ୍ନ ଯୋଜନା ପ୍ରସ୍ତୁତ କରାଯାଇଛି, ଏଥିରେ ଦ୍ୱିମତ ନାହିଁ ।

ଗ୍ୟାଟ୍ ରାଜିନାମାରେ ଭାରତ ସ୍ୱାକ୍ଷର କରିବା ପୂର୍ବରୁ ଏ ସମ୍ପର୍କରେ ବହୁ ଉଷ୍ମ ଆଲୋଚନା ହୋଇଥିଲା । ନୈତିକ ଦୃଷ୍ଟିକୋଣରୁ ଭାରତ ଏଥିରେ ସ୍ୱାକ୍ଷର କରିବାକୁ ରାଜି ନ ଥିଲା । ମାତ୍ର ଏକ ପ୍ରକାର ବାଧବାଧକତାରେ ସ୍ୱାକ୍ଷର କରିବାକୁ ପଡ଼ିଲା । ଗ୍ୟାଟ୍‌ର ୮ମ ଆଲୋଚନାଚକ୍ରରେ ଭାରତର ବାଣିଜ୍ୟ ପ୍ରତିନିଧି ଶ୍ରୀଯୁକ୍ତ ଏସ୍.ପି. ଶୁକ୍ଳା ଭାରତର ହିତ ଦୃଷ୍ଟିରୁ ଏହାକୁ ବିରୋଧ କରିବାରୁ ଆମେରିକାର ବାଣିଜ୍ୟ ପ୍ରତିନିଧି ଶ୍ରୀମତୀ କାର୍ଲାହିଲସ୍ ଭୀଷଣ ଭାବରେ କ୍ଷୁବ୍ଧ ହେବାରୁ ଶ୍ରୀଯୁକ୍ତ ଶୁକ୍ଳାଙ୍କୁ ଭାରତ ସରକାର ଫେରାଇ ଆଣିଲେ । କେବଳ ଭାରତ କାହିଁକି, କୌଣସି ବିକାଶଶୀଳ ରାଷ୍ଟ୍ର ନିଜ ସ୍ୱାର୍ଥଦୃଷ୍ଟିରୁ ମଧ୍ୟ ଗ୍ୟାଟ୍‌କୁ ବିରୋଧ କରିବାର ସତ୍‌ସାହସ କରି ନାହାନ୍ତି । ନିକଟରେ କଟକ ଧାନ ଗବେଷଣା କେନ୍ଦ୍ରର ବୈଜ୍ଞାନିକଗଣ ଗବେଷଣା କରି ବହୁ ଅମଳକ୍ଷମ ବିଭିନ୍ନ ପ୍ରକାର ଧାନ ବିହନ ସୃଷ୍ଟି କରିପାରିଛନ୍ତି । ସମଗ୍ର ପୃଥିବୀରେ ଏହା ଚମକ ସୃଷ୍ଟି କରିବାରୁ ଏହାର ନମୁନା ଲାଭ ପାଇଁ ବହୁରାଷ୍ଟ୍ରୀୟ କମ୍ପାନୀ ଲାଳାୟିତ ହୋଇଉଠିଲେ । ମାତ୍ର କର୍ତ୍ତୃପକ୍ଷ ଏଥିରେ ରାଜି ନ ହେବାରୁ ଚାପର ବଶବର୍ତ୍ତୀ ହୋଇ ତାଙ୍କୁ ବଦଳି କରାଗଲା । ତେଣୁ ବିକାଶଶୀଳ ରାଷ୍ଟ୍ରମାନଙ୍କର ଏହି ଦୟନୀୟ ସ୍ଥିତି ଅତ୍ୟନ୍ତ ଦୁଃଖଦାୟକ । ବର୍ତ୍ତମାନ ବହୁରାଷ୍ଟ୍ରୀୟ କମ୍ପାନୀର ବୁଡ଼ିଆଣୀ ଜାଲରେ ଭାରତ ବନ୍ଦୀ । ପାରମ୍ପରିକ ବିହନ ନଷ୍ଟ କରି ତା' ସ୍ଥାନରେ ବହୁ ଅମଳକ୍ଷମ ବିହନ ଭାରତ ବାହାରୁ ଆମଦାନୀ କରିବ । ମାତ୍ର ସେଥିରୁ ସେ ବିହନ ରଖିପାରିବ ନାହିଁ । ମାଲିକର 'ଗାଈ ଉପରେ ଅଧିକାର; ମାତ୍ର ବାଛୁରୀ ଉପରେ ନାହିଁ' ନ୍ୟାୟରେ ଏପରି ରାଜିନାମା କରାଯାଇଛି । ଉଚ୍ଚମାନର ବାଇଗଣ, ବିଲାତିବାଇଗଣ ମଞ୍ଜି କିଲୋପିଛା ୧୬ ରୁ ୨୫ ହଜାର ଟଙ୍କାରେ କ୍ରୟ କରାଯିବ; ଅଥଚ ସେ ବିହନ ରଖାଯାଇପାରିବ ନାହିଁ । ବର୍ତ୍ତମାନ ସୁଦ୍ଧା ଭାରତରେ ୧୫୦୦ ରୁ ଊର୍ଦ୍ଧ୍ୱ ବହୁରାଷ୍ଟ୍ରୀୟ କମ୍ପାନୀ ନିଜର କାୟା ବିସ୍ତାର କରିସାରିଲେଣି । ଆଧୁନିକତା ନାମରେ ସେମାନେ ତାଙ୍କର ପୁରୁଣା ପ୍ରତ୍ୟାଖିତ ଟେକ୍‌ନିକ୍ ଆମ ଉପରେ ଲଦି ଦେଉଛନ୍ତି । ଆବଶ୍ୟକ ନ ଥିଲେ ମଧ୍ୟ ଆମେ ତାଙ୍କଠାରୁ ଖାଦ୍ୟଶସ୍ୟ କିଣିବାକୁ ବାଧ୍ୟ ହେବୁ । ତିନିବର୍ଷ ପୂର୍ବରୁ ଆମେରିକାରୁ ୧୦ ଲକ୍ଷ ଟନ୍ ଗହମ ଆଣିବାରୁ ଆମ ଗହମର ମୂଲ୍ୟ କମିଗଲା ଓ ଗହମ ଚାଷୀ କ୍ଷତିର ସମ୍ମୁଖୀନ ହେଲେ । ଭାରତ ଏକ କୃଷିପ୍ରଧାନ ଦେଶ । ମାତ୍ର କେନ୍ଦ୍ରସରକାର ନୂତନ କୃଷିନୀତି ପାଇଁ ବହୁରାଷ୍ଟ୍ରୀୟ କମ୍ପାନୀ ଓ ଔଦ୍ୟୋଗକୁ ପ୍ରାଧାନ୍ୟ ଦେବାରୁ ସେମାନେ ଆମ ବଜାର ଦଖଲ କରିବାକୁ ଆଗେଇ ଆସିଲେଣି । ସାର, ବିହନ, କୀଟନାଶକ ଔଷଧ ପାଇଁ ବହୁରାଷ୍ଟ୍ରୀୟ କମ୍ପାନୀ ଉପରେ ନିର୍ଭର କରିବାକୁ ହେବ । ବୃକ୍ଷଲତା ଏବଂ ଗାଈଗୋରୁ ଉପରେ ମଧ୍ୟ ଅଧିକାର ଆମର ରହିବ ନାହିଁ । ୧୯୯୧ ମସିହାରେ ମୁଦ୍ରାପାଣ୍ଠିରୁ ଋଣ ଆଣିବା ପରେ ଭାରତ ଏହି ରାଜିନାମାକୁ ବିରୋଧ କରିବାର ଏକପ୍ରକାର ନୈତିକ ବଳ ହରାଇଛି । କିନ୍ତୁ ନିଜର ବାହାଦୁରି ପାଇଁ ନେତାଗଣ କେବଳ ବାହାସ୍ଫୋଟ ମାରିଚାଲିଛନ୍ତି ।

ଗ୍ୟାଟ୍ ରାଜିନାମାର ଉଭୟ ଅନ୍ଧକାର ଓ ଆଲୋକିତ ଦିଗ ରହିଛି । ବିକାଶଶୀଳ ରାଷ୍ଟ୍ରଙ୍କ କ୍ଷେତ୍ରରେ ଏହାର ଅନ୍ଧକାର ଦିଗ କିନ୍ତୁ ଅଧିକ । ଉପକାର ମଧ୍ୟରେ କେବଳ ମୁକ୍ତ ବାଣିଜ୍ୟ ପାଇଁ ଦ୍ୱାର ଉନ୍ମୁକ୍ତ ହୋଇଛି । ଏକ ପ୍ରତିଯୋଗିତାର ବାତାବରଣ ସୃଷ୍ଟି ହୋଇଛି । ନିଜର ଉତ୍ପାଦନକୁ ଲୋକପ୍ରିୟ କରିବା ପାଇଁ ଏଥିରେ ସୁଯୋଗ ସୃଷ୍ଟି ହୋଇଛି । ନିଜର ଅର୍ଥନୀତିକୁ ସମୃଦ୍ଧ କରିବାର ପରିସର ଲାଭ ହୋଇଛି । ମାତ୍ର ଭାରତ ପରି ବିକାଶଶୀଳ ରାଷ୍ଟ୍ର କ୍ଷେତ୍ରରେ ଗ୍ୟାଟ୍ ରାଜିନାମାର ଉପକାର ବଦଳରେ ଅପକାରର ପରିମାଣ ଅଧିକ । ଧନୀରାଷ୍ଟ୍ରଙ୍କ ସହିତ ପ୍ରତିଯୋଗିତା କରି ଏମାନେ କେବେ ନିଜର ଖୋଲା ବଜାର ସୃଷ୍ଟି କରିବାକୁ ସମର୍ଥ ହେବେ ନାହିଁ । ପେଟେଣ୍ଟ ଆଇନଭୁକ୍ତ ବିଭିନ୍ନ ଔଷଧ, ସାର ଆଦିକୁ ବହୁ ମୂଲ୍ୟରେ କ୍ରୟ କରିବାକୁ ପଡ଼ିବ । ଔଷଧ ଶିଳ୍ପ ଉପରୁ ନିୟନ୍ତ୍ରଣ ଉଠିଗଲେ ଭାରତର ଔଷଧ ଶିଳ୍ପ ଓ ଗରିବମାନଙ୍କ ପ୍ରତି ବିପଦ ଘନେଇ ଆସିବ । ବିଦେଶୀ କମ୍ପାନୀ ତାଙ୍କ ଦେଶର ଔଷଧ ବିକ୍ରୟ କରିବାର ଏକଚାଟିଆ ଅଧିକାର ଲାଭ କଲେ ଦେଶୀୟ କମ୍ପାନୀଗୁଡ଼ିକ କେବଳ ତାଙ୍କର ଏଜେଣ୍ଟ ଭାବରେ କାର୍ଯ୍ୟ କରିବେ । ଆର୍ଥିକ ଶୋଷଣ ବୃଦ୍ଧି ପାଇବ । ଡଙ୍କେଲ ପ୍ରସ୍ତାବଟି ମୁଖ୍ୟତଃ ଚାରିଭାଗରେ ବିଭକ୍ତ । ଯଥା – ସେବାକାର୍ଯ୍ୟ, କୃଷିକାର୍ଯ୍ୟ, ପୁଞ୍ଜି ବ୍ୟବସାୟିକ ଓ ବୌଦ୍ଧିକ ସମ୍ପତ୍ତି । ବର୍ତ୍ତମାନ ଶିଳ୍ପ ଅପେକ୍ଷା ସେବାକାର୍ଯ୍ୟରେ ଅଧିକ ମାନବ ସମ୍ବଳ ଦରକାର ହେଉଛି । କୃଷି ଓ ଶିଳ୍ପ ବ୍ୟତୀତ ଆଉ ଅନ୍ୟ ସମସ୍ତ ସଂସ୍ଥାକୁ ସେବାକାର୍ଯ୍ୟ ଅନ୍ତର୍ଭୁକ୍ତ କରାଯାଇଛି । ସ୍କୁଲ କଲେଜ, ବ୍ୟାଙ୍କ, ବୀମା, ପରିବହନ, ଖବରକାଗଜ, ହସ୍ପିଟାଲ ପ୍ରଭୃତି ଗୋଟିଏ ଗୋଟିଏ ସେବା ସଂସ୍ଥା ରୂପେ ପରିଗଣିତ । ପୁଣି ବିକଶିତ ଦେଶରୁ ଆସିଥିବା ଆର୍ଥିକ ସଙ୍ଗଠନ ମଧ୍ୟ ସେବାସଂସ୍ଥା ଅନ୍ତର୍ଭୁକ୍ତ । କାରଣ ମୁକ୍ତବଜାର ପାଇଁ ସେମାନେ ଏଠାରେ ପହଞ୍ଚିଲେ ବେକାରୀ ସଂଖ୍ୟା ବୃଦ୍ଧି ପାଇବ । ଆମେ କେବେ ଧନୀରାଷ୍ଟ୍ରକୁ ଯାଇ ସେବା କରିବାର ସୁଯୋଗ ପାଇବା ନାହିଁ । ଯଦି କୌଣସି ବ୍ୟକ୍ତି ନିଜ କ୍ଷେତ୍ରରେ କୌଣସି ନୂତନ ଆବିଷ୍କାର କରେ, ତେବେ ସେହି ଦେଶର ସରକାର ଏକ ନିର୍ଦ୍ଦିଷ୍ଟ ସମୟ ପାଇଁ ତାହା ପେଟେଣ୍ଟ ପାଇଥାଏ । ଭାରତୀୟ ପେଟେଣ୍ଟ ଆଇନ୍ ଅନୁଯାୟୀ ଏହାର ସମୟସୀମା ୫/୭ ବର୍ଷ ଥିଲା । ମାତ୍ର ଗ୍ୟାଟ୍ ପ୍ରସ୍ତାବର ଅନୁଚ୍ଛେଦ ୧୪ (୧) ଅନୁଯାୟୀ ଚାଷ ପାଇଁ ଉପଯୋଗୀ ସମସ୍ତ ମଞ୍ଜି ଚାରା ହେବା ପରେ ଯିଏ ପ୍ରଥମେ ପଞ୍ଜିକୃତ କରିଥିବ, ସେସବୁର ପେଟେଣ୍ଟ କେବଳ ସେହି ରାଷ୍ଟ୍ରର ରହିପାରିବ । ଏହାର ଉତ୍ପାଦନ ମଧ୍ୟ ପେଟେଣ୍ଟ ହେବ ଏବଂ ଏହାର ସମୟସୀମା ୨୦ ବର୍ଷ ପର୍ଯ୍ୟନ୍ତ ରଖାଯିବ । ଏହାର ଅନ୍ୟ ଅର୍ଥ ହେଉଛି ୨୦ ବର୍ଷ ପର୍ଯ୍ୟନ୍ତ ସେହିପ୍ରକାର ମଞ୍ଜି ଆଉ କେହି କରିପାରିବେ ନାହିଁ । ଏହି ମଞ୍ଜିରୁ ଉତ୍ପାଦିତ ହେଉଥିବା ଶସ୍ୟର ମୂଲ୍ୟ କୃଷକ ଦ୍ୱାରା ନିୟନ୍ତ୍ରିତ ହେବ ନାହିଁ କିମ୍ବା ସେଥିରୁ ସେ କୌଣସି ବିହନ ରଖିପାରିବ ନାହିଁ । ଏପରିକି ନିଜର ଲାଭ ପାଇଁ ସେ ତା'ର ଉତ୍ପାଦିତ ଶସ୍ୟକୁ ବିକ୍ରି କରିପାରିବ ନାହିଁ । ଯଦି ସେ କୌଣସି ବିହନ ରଖିବାକୁ ଚାହେଁ, ସେଥିପାଇଁ ତାକୁ ରୟାଲଟି ଦେବାକୁ ପଡ଼ିବ । ରୟାଲଟି ନାମରେ ବହୁରାଷ୍ଟ୍ରୀୟ କମ୍ପାନୀ ଅର୍ଥଶୋଷଣ କରିବେ । ବିଦେଶରୁ ଉନ୍ନତ ମାନର ବିହନ କ୍ରୟ କରି ଚାଷୀ କ୍ଷତିଗ୍ରସ୍ତ ହେବ; ମାତ୍ର ସେମାନେ ଖୋଲାବଜାର ସୃଷ୍ଟି କରିପାରିବେ ନାହିଁ । ଔଷଧର ପ୍ରସ୍ତୁତି କ୍ଷେତ୍ରରେ ମଧ୍ୟ ଅନୁରୂପ ଅସୁବିଧାର ସମ୍ମୁଖୀନ

ହେବେ ଏ ଦେଶର ଔଷଧ ନିର୍ମାଣକାରୀ ଓ ସେବନକାରୀ । କୁଟୀରଶିଳ୍ପ, ହସ୍ତଶିଳ୍ପ ଓ ବୟନଶିଳ୍ପ ଗୁଡ଼ିକ ବିପର୍ଯ୍ୟୟର ସମ୍ମୁଖୀନ ହେବେ । ଗାନ୍ଧି ପ୍ରଦର୍ଶିତ ଭାରତୀୟ ଅର୍ଥନୀତି ଶୋଚନୀୟ ଆଘାତପ୍ରାପ୍ତ ହେବ । ତାହାକୁ ଜୀବିକା ଭାବରେ ଗ୍ରହଣ କରି ପରିବାର ପ୍ରତିପୋଷଣ କରୁଥିବା ବ୍ୟକ୍ତିବିଶେଷ ଆର୍ଥିକ ସଙ୍କଟର ସମ୍ମୁଖୀନ ହେବେ । ସେଥିପାଇଁ ଏହି ରାଜିନାମା ଭାରତ ପରି ଏକ ବିକାଶଶୀଳ ରାଷ୍ଟ୍ର ପାଇଁ ଦାରୁଣ ବିପର୍ଯ୍ୟୟ ସୃଷ୍ଟି କରିବ ।

ଗ୍ୟାଟ୍‌ର ରାଜିନାମା ନେଇ ବହୁ ସନ୍ଦେହ ଏବେବି ବିକାଶଶୀଳ ରାଷ୍ଟ୍ରଙ୍କ ମନରେ । ଅତୀତରେ ୧୯୫୦ ମସିହାରେ ଗ୍ୟାଟ୍‌ରୁ ଓହରି ଯାଇଥିବା ଚୀନ ଏବେ ଏଥିରେ ସାମିଲ ହେବାକୁ ଆଶା ପ୍ରକାଶ କରିଛି । ବର୍ତ୍ତମାନ ଆର୍ଥିକ ଦୃଷ୍ଟିରୁ ଚୀନ ବହୁପରିମାଣରେ ସମୃଦ୍ଧ । ଆନ୍ତର୍ଜାତିକ ବଜାର ସୃଷ୍ଟି କରିବାରେ ତା'ର କୌଣସି ଅସୁବିଧା ହେବ ନାହିଁ । ମୁକ୍ତ ବାଣିଜ୍ୟରେ ଚୀନ ବିଶେଷଭାବରେ ଲାଭବାନ୍ ହେବାର ସମ୍ଭାବନା ଥିବାରୁ ସେ ଗ୍ୟାଟ୍ ରାଜିନାମା ଗ୍ରହଣ କରିବାକୁ ବର୍ତ୍ତମାନ ରାଜି ଅଛି । କିନ୍ତୁ ଭାରତ ଏ କ୍ଷେତ୍ରରେ ବିଶ୍ୱ ବଜାରରେ ଚୀନ ପରି ପ୍ରତିଯୋଗିତା କ୍ଷେତ୍ରରେ ଅବତୀର୍ଣ୍ଣ ହୋଇପାରିବ ନାହିଁ । ବର୍ତ୍ତମାନ ମଧ୍ୟ ବାସୁମତୀ ଚାଉଳର ପେଟେଣ୍ଟ ନେଇ ଭାରତ ସନ୍ଦିହାନ । ତେଣୁ ଭାରତକୁ ବହୁ ଦୃଷ୍ଟିକୋଣରୁ ଏହାକୁ ବିଚାର କରି ପଦକ୍ଷେପ ଗ୍ରହଣ କରିବା ଉଚିତ । ବିଶ୍ୱ ବଜାର ସୃଷ୍ଟି କରିବାକୁ ଯାଇ ଭାରତ ନିଜେ ବିଶ୍ୱବଜାରରେ ବିକ୍ରି ହୋଇଗଲେ ଏ ଦେଶର କୋଟି କୋଟି ଜନସାଧାରଣଙ୍କ ଭବିଷ୍ୟତ ଅନ୍ଧକାର ହୋଇପଡ଼ିବ । ତେଣୁ ଅନ୍ତର୍ଦୃଷ୍ଟି ବଳରେ ଭାରତର ଭବିଷ୍ୟତକୁ ଆଖି ଆଗରେ ରଖି କାର୍ଯ୍ୟପନ୍ଥା ଗ୍ରହଣ କରିବା ଆବଶ୍ୟକ । ଜାତୀୟ ସଂହତି, ସାର୍ବଭୌମ ଓ ଦେଶର ସ୍ୱାର୍ଥ ବ୍ୟାହତ ହେବା ପରି କୌଣସି ରାଜିନାମାରେ ସ୍ୱାକ୍ଷର କରିବା ସମ୍ପୂର୍ଣ୍ଣ ଅନୁଚିତ । ଭାବପ୍ରବଣତା ନୁହେଁ, ବାସ୍ତବତାକୁ ଦୃଷ୍ଟିରେ ରଖି କାର୍ଯ୍ୟପନ୍ଥା ସ୍ଥିର କରାଗଲେ ଦେଶର ଆଶାଆକାଂକ୍ଷା ପରିପୂର୍ତ୍ତି ହୋଇପାରିବ ।

●

# ସବୁଜ ବିପ୍ଳବ

**(ଉପକ୍ରମ, ସବୁଜ ବିପ୍ଳବର ଅର୍ଥ ଓ ଉଦ୍ଦେଶ୍ୟ, ଭାରତରେ କୃଷି ସଭ୍ୟତା, ଖାଦ୍ୟ ସମସ୍ୟାର ବିଭିନ୍ନ ଦିଗ, ଭାରତର ପଞ୍ଚବାର୍ଷିକ ଯୋଜନାରେ କୃଷିର ଉନ୍ନତି, କୃଷିର ବିକାଶ ନିମିତ୍ତ କେତେକ ପଦକ୍ଷେପ, ସାମାଜିକ ଓ ରାଜନୀତିକ ଦିଗ, ଉପସଂହାର)**

କୌଣସି ଦେଶର ଉନ୍ନତି ସେ ଦେଶର ଖାଦ୍ୟଶସ୍ୟ ଉତ୍ପାଦନ ଉପରେ ନିର୍ଭରଶୀଳ । ଯେଉଁ ଦେଶ ଖାଦ୍ୟଶସ୍ୟ ଉତ୍ପାଦନ କ୍ଷେତ୍ରରେ ଯେଉଁ ପରିମାଣରେ ସ୍ୱାବଲମ୍ବନଶୀଳ, ତା'ର ଆର୍ଥିକ ମାନଦଣ୍ଡ ସେହି ପରିମାଣରେ ସମୃଦ୍ଧ । ଅତୀତରେ ବିଶିଷ୍ଟ ଆର୍ଥନୀତିକ ମାଲଥ୍ୟୁସ୍ କହିଥିଲେ ପୃଥିବୀର ଜନସଂଖ୍ୟା ବୃଦ୍ଧି ତୁଳନାରେ ଖାଦ୍ୟଶସ୍ୟ ଉତ୍ପାଦନ ବୃଦ୍ଧି ପାଉ ନାହିଁ । ସେଥିପାଇଁ ପୃଥିବୀର ଭବିଷ୍ୟତ ଘେନି ସେ ସନ୍ଦେହ ପ୍ରକାଶ କରିଥିଲେ । ଅବଶ୍ୟ ବର୍ତ୍ତମାନ

ଅବସ୍ଥା ଧୀରେ ଧୀରେ ପରିବର୍ତ୍ତନ ହେବାକୁ ଲାଗିଛି । ବିଶ୍ୱର ବହୁ ଦେଶ ଖାଦ୍ୟପଦାର୍ଥ ଉତ୍ପାଦନ କ୍ଷେତ୍ରରେ ସ୍ୱାବଲମ୍ବନଶୀଳ ହୋଇପାରିଛନ୍ତି । ଭାରତ ମଧ୍ୟ ଏ କ୍ଷେତ୍ରରେ ବିଶେଷ କିଛି ପଛରେ ପଡ଼ିଯାଇଛି ବୋଲି ମନେହୁଏ ନାହିଁ । ସ୍ୱାଧୀନତା ଲାଭ ସମୟରେ ଭାରତର ଖାଦ୍ୟପଦାର୍ଥ ଉତ୍ପାଦନ ତୁଳନାରେ ବର୍ତ୍ତମାନ ବହୁ ଅଧିକ ଶସ୍ୟ ଉତ୍ପାଦିତ ହେଉଛି । ତଥାପି ସଂପ୍ରତି ଆହୁରି ଅଧିକ ଶସ୍ୟ ଉତ୍ପାଦନ କରିବାର ଆବଶ୍ୟକତା ଅନୁଭୂତ ହେଉଛି । କେବଳ ସବୁଜ ବିପ୍ଳବ ମାଧ୍ୟମରେ ଭାରତ ଏ କ୍ଷେତ୍ରରେ ତା'ର ଲକ୍ଷ୍ୟ ପୂରଣ କରିବାକୁ ସମର୍ଥ ହୋଇପାରିବ । ଜନସଂଖ୍ୟାର ଦ୍ରୁତବୃଦ୍ଧି ଅନୁଯାୟୀ ଖାଦ୍ୟଶସ୍ୟର ତୁଳନାତ୍ମକ ରୂପେ ଅଭିବୃଦ୍ଧି ନ ଘଟିଲେ, ଭାରତ ଯେ ଏକ ସଙ୍କଟଜନକ ପରିସ୍ଥିତିର ସମ୍ମୁଖୀନ ହେବ, ଏଥିରେ ଦ୍ୱିମତ ହେବାର କିଛି ନାହିଁ । Grow more food ବା ଅଧିକ ଶସ୍ୟ ଉତ୍ପାଦନ କର – ଏହାହିଁ ଆଜିର ସମୟର ଆହ୍ୱାନ । କୃଷି ବ୍ୟବସ୍ଥାରେ ବୈପ୍ଳବିକ ପରିବର୍ତ୍ତନ ଦ୍ୱାରା ଏହା କେବଳ ସମ୍ଭବ ହୋଇପାରିବ । ଏଥିପାଇଁ ସବୁ ସ୍ତରରେ ଉଦ୍ୟମ ଜାରି ରହିବା ଆବଶ୍ୟକ । ସାମୂହିକ ପ୍ରଚେଷ୍ଟା ଦ୍ୱାରା କୃଷିଜାତ ପଦାର୍ଥର ଉତ୍ପାଦନ କ୍ଷେତ୍ରରେ ଭାରତ ନିଶ୍ଚିତଭାବେ ଉଲ୍ଲେଖଯୋଗ୍ୟ ସଫଳତା ଲାଭ କରିପାରିବ ବୋଲି ଆଶା ଏବଂ ବିଶ୍ୱାସ ।

ସବୁଜିମା 'ପ୍ରାଚୁର୍ଯ୍ୟମୟ ଜୀବନ'ର ପ୍ରତୀକ । ଖାଦ୍ୟଶସ୍ୟର ଉତ୍ପାଦନ କ୍ଷେତ୍ରରେ ସ୍ୱାବଲମ୍ବନଶୀଳ ହୋଇ ଦେଶକୁ ପ୍ରାଚୁର୍ଯ୍ୟ ତଥା ସବୁଜିମାରେ ଭରିଦେବା 'ସବୁଜ ବିପ୍ଳବ'ର ଲକ୍ଷ୍ୟ । ବିପ୍ଳବ ବା ଆନ୍ଦୋଳନର ଅର୍ଥ ନୂତନ ସର୍ଜନ ବା ଏକ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ଅଭିନବ ପରିବର୍ତ୍ତନ । ଏହା କଦାପି ଧ୍ୱଂସାତ୍ମକ ନୁହେଁ । ଜୀବନକୁ ସୁସ୍ଥ ସୁନ୍ଦର କରି ଗଢ଼ି ତୋଳିବାରେ ଏହାର ଅବଦାନ ଚିରସ୍ମରଣୀୟ । ବୈଜ୍ଞାନିକ ପ୍ରଣାଳୀରେ ପ୍ରଚୁର ପରିମାଣରେ ଶସ୍ୟ ଉତ୍ପାଦନ କରି ଦେଶର ଆର୍ଥିକ ମେରୁଦଣ୍ଡକୁ ଶକ୍ତିଶାଳୀ କରିବା ଏହି ଆନ୍ଦୋଳନର ମୁଖ୍ୟ ଉଦ୍ଦେଶ୍ୟ । ବହୁ ବୁଦ୍ଧିଜୀବୀଙ୍କ ଦୃଷ୍ଟିରେ ଭାରତ 'ଶସ୍ୟ ଶ୍ୟାମଳା ସୁଜଳା ସୁଫଳା' । ଅତୀତରେ ଏହାର ପ୍ରାଚୁର୍ଯ୍ୟ ଓ ଐଶ୍ୱର୍ଯ୍ୟରେ ପ୍ରଲୁବ୍ଧ ହୋଇ ବହୁ ବୈଦେଶିକ ଭାରତରେ ପ୍ରବେଶ କରିଥିଲେ । ଶୋଷଣ କରିଥିଲେ ଏହାର ସବୁଜିମାକୁ । ସମୃଦ୍ଧ କରିଥିଲେ ନିଜ ଦେଶକୁ । ମାତ୍ର ଦୁର୍ଭାଗ୍ୟର ବିଷୟ ଭାରତର ମାଟିକୁ ଶୋଷଣ କରି ବିଦେଶୀ ଶତ୍ରୁ ନିଜ ଦେଶକୁ ସମୃଦ୍ଧିଶାଳୀ କରିଥିଲେ ହେଁ, ଭାରତ ଶେଷ ପର୍ଯ୍ୟନ୍ତ ଗୋଟିଏ ଦରିଦ୍ର ଦେଶର ପରିଚୟ ନେଇ ରହିଗଲା । ସ୍ୱାଧୀନତା ପରେ ଭାରତର କୃଷି ବ୍ୟବସ୍ଥାର ଉନ୍ନତି ନିମିତ୍ତ ପଦକ୍ଷେପମାନ ଗ୍ରହଣ କରାଯାଇଥିଲେ ହେଁ; ଅନୁରୂପ ସଫଳତା ଲାଭ କରିବାକୁ ସମର୍ଥ ହୋଇପାରିନ ଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ସମଗ୍ର ବିଶ୍ୱରେ ଖାଦ୍ୟ ସଙ୍କଟ ପରିଲକ୍ଷିତ ହେବାରୁ ତତ୍କାଳୀନ ଭାରତର ଇଂରେଜ ସରକାର ଅଧିକ ଶସ୍ୟ ଉତ୍ପାଦନ (Grow more food) ପାଇଁ ଆହ୍ୱାନ ଦେଇଥିଲେ । ଏଥିପାଇଁ ସ୍ୱତନ୍ତ୍ର ବିଭାଗ ମଧ୍ୟ ସୃଷ୍ଟି କରାଯାଇଥିଲା । ମାତ୍ର ଏହି ଆହ୍ୱାନ ଜନସାଧାରଣଙ୍କ ମଧ୍ୟରେ ବିଶେଷ କିଛି ପ୍ରଭାବ ପକାଇବାକୁ ସମର୍ଥ ହୋଇ ନ ଥିଲା । ସ୍ୱାଧୀନତା ଲାଭ ପରେ ଦେଶୀୟ ସରକାର ଅଧିକ ଶସ୍ୟ ଉତ୍ପାଦନର ଆବଶ୍ୟକତା ଅନୁଭବ କରି ସବୁଜ ବିପ୍ଳବ ଉପରେ ଅଧିକ ଗୁରୁତ୍ୱ ପ୍ରଦାନ କଲେ । ଏହା ସତ୍ତ୍ୱେ ୧୯୬୦

ମସିହା ପର୍ଯ୍ୟନ୍ତ ଏହା ବିଶେଷ କିଛି ଉନ୍ନତି କରି ପାରିନ ଥିଲା । ୧୯୬୦ ମସିହାର ମଧ୍ୟଭାଗ ବେଳକୁ 'ସବୁଜ ବିପ୍ଳବ' ପାଇଁ ଜନସଚେତନତା ବୃଦ୍ଧି ପାଇଲା ଏବଂ ଏହା ଏକ ସ୍ଲୋଗାନରେ ପରିଣତ ହେଲା । ଏହି ସମୟ ବେଳକୁ ମେକ୍ସିକୋରେ ଏହା ଏକ ଅଭିନବ ରୂପ ପରିଗ୍ରହ କରିଥିଲେ । ଅଧିକ ଉତ୍ପାଦନକ୍ଷମ ବିହନ ଏବଂ ରସାୟନ ସାର ବ୍ୟବହାର ଦ୍ୱାରା ସେଠାରେ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଘଟିଥିଲା । ଏପରିକି ଫିଲିପାଇନ୍‌ସ, ଥାଇଲାଣ୍ଡ, ଶ୍ରୀଲଙ୍କା ପରି ଦେଶରେ ଏହା ସେତେବେଳେ ଗଭୀର ଆଲୋଡ଼ନ ସୃଷ୍ଟି କରିଥିଲା ଓ ସେମାନେ ଉନ୍ନତ ବିହନ ମାଧ୍ୟମରେ ଅଧିକ ଶସ୍ୟ ଉତ୍ପାଦନ କରିବାକୁ ସମର୍ଥ ହୋଇପାରିଥିଲେ । ବର୍ତ୍ତମାନ ପ୍ରଚୁର ପରିମାଣରେ ଶସ୍ୟ ଉତ୍ପାଦନ କରି ପୃଥିବୀରୁ ଖାଦ୍ୟଶସ୍ୟର ଭୟକୁ ସମ୍ପୂର୍ଣ୍ଣଭାବେ ଦୂରୀଭୂତ କରିବା ନିମିତ୍ତ 'ସବୁଜ ବିପ୍ଳବ'କୁ ଏକ ପ୍ରତୀକାତ୍ମକ ଆହ୍ୱାନ ରୂପେ ଗ୍ରହଣ କରାଯାଇଛି । ପାରମ୍ପରିକ ବିହନ ପରିବର୍ତ୍ତେ ଅଧିକ ଉତ୍ପାଦନକ୍ଷମ ବିହନ, କୀଟନାଶକ ଔଷଧ ତଥା ରାସାୟନିକ ସାର ବ୍ୟବହାର ଦ୍ୱାରା ପ୍ରଚୁର ପରିମାଣରେ ଶସ୍ୟ ଉତ୍ପାଦନ ନିମିତ୍ତ ବିଭିନ୍ନ ସ୍ତରରେ ସଚେତନତା ସୃଷ୍ଟି ହୋଇଛି । ଭାରତ ପରି ବହୁ ଜନସଂଖ୍ୟାବିଶିଷ୍ଟ ରାଷ୍ଟ୍ରରେ ଅଧିକ ଶସ୍ୟ ଉତ୍ପାଦନ କରି ଖାଦ୍ୟାଭାବ ଦୂର କରିବା ବର୍ତ୍ତମାନ ସମୟର ଏକ ବିଶେଷ ଆହ୍ୱାନ ହୋଇପଡ଼ିଛି । କେବଳ 'ସବୁଜ ବିପ୍ଳବ' ମାଧ୍ୟମରେ ଭାରତ ତା'ର ଏହି ଲକ୍ଷ୍ୟ ପରିପୂରଣ ଦିଗରେ ସମର୍ଥ ହୋଇପାରିବ । 'ସବୁଜ ବିପ୍ଳବ' ର ପ୍ରକୃତ ଉଦ୍ଦେଶ୍ୟ ହେଉଛି ଦେଶକୁ ଶସ୍ୟଶ୍ୟାମଳା ତଥା ଖାଦ୍ୟ ଉତ୍ପାଦନ କ୍ଷେତ୍ରରେ ସ୍ୱାବଲମ୍ବନଶୀଳ କରିବା ।

ଭାରତର କୃଷି ସଭ୍ୟତା ବହୁ ପ୍ରାଚୀନ । ବୈଦିକ ଋଷି ଦେଶର କୃଷି ବ୍ୟବସ୍ଥା ତଥା ଗୋସମ୍ପଦର ଉନ୍ନତି ନିମିତ୍ତ ଯାଗଯଜ୍ଞ କରୁଥିଲେ । କୃଷିର ବିକାଶ ଦ୍ୱାରା ଦେଶ ଉନ୍ନତି ଲାଭ କରିଥାଏ । ଦେଶର ଅର୍ଥନୀତିକୁ ନିୟନ୍ତ୍ରଣ କରିବା କ୍ଷେତ୍ରରେ ଏହାର ଅବଦାନ ସର୍ବଦା ସ୍ୱୀକାର୍ଯ୍ୟ । ଏବେ ମଧ୍ୟ ଭାରତର ଶତକଡ଼ା ୭୦ ଭାଗ ଲୋକ କୃଷି ଉପରେ ନିର୍ଭରଶୀଳ । କୃଷିର ଉନ୍ନତି ବ୍ୟତିରେକେ ଭାରତର ସଭ୍ୟତା ଓ ସଂସ୍କୃତି ଉନ୍ନତି ଲାଭ କରିବା ସମ୍ପୂର୍ଣ୍ଣ ଅସମ୍ଭବ । ମାତ୍ର ପରାଧୀନ ଭାରତରେ ବିଭିନ୍ନ କାରଣରୁ କୃଷି ସଭ୍ୟତା ବିପର୍ଯ୍ୟସ୍ତ ହୋଇପଡ଼ିଥିଲା । ଏ ଦେଶର ବୈଦେଶିକ ଶାସକ ଏହାର ଉନ୍ନତି ନିମିତ୍ତ ପ୍ରଶାସନିକ ସ୍ତରରେ ବିଶେଷ କିଛି ଉଲ୍ଲେଖଯୋଗ୍ୟ ପଦକ୍ଷେପ ଗ୍ରହଣ କରିପାରିନଥିଲେ । ଶୋଷଣ ଥିଲା ସେମାନଙ୍କ ଶାସନର ଲକ୍ଷ୍ୟ । ଏକଦା କୃଷିକ୍ଷେତ୍ରରେ ଭାରତ ଏପରି ଏକ ଅବସ୍ଥାରେ ଉପନୀତ ହୋଇଥିଲା, ଯେତେବେଳେ ସମଗ୍ର ବିଶ୍ୱ ଅନୁଭବ କରିଥିଲା ଭାରତ ତା'ର କୋଟି କୋଟି ଲୋକଙ୍କୁ ଖାଦ୍ୟ ଯୋଗାଇବାରେ ଅସମର୍ଥ ହେବ । ୧୯୪୫ ମସିହା ପର୍ଯ୍ୟନ୍ତ ଭାରତ ତା'ର ଅଧିବାସୀଙ୍କ ଖାଦ୍ୟାଭାବ ପୂରଣ ନିମିତ୍ତ ଅନ୍ୟଦେଶ ନିକଟରେ ହାତ ପତାଇ ଦାନ ଗ୍ରହଣ କରୁଥିଲା । ଭାରତର ବିଭାଜନ ଏବଂ ଜନସଂଖ୍ୟାର ଆଶାତିରିକ୍ତ ବୃଦ୍ଧି ଯୋଗୁଁ ଏପରି ଏକ ସମସ୍ୟାର ଉଦ୍ଭବ ହୋଇଥିଲା । ନିରାଶ ଏବଂ ହତାଶ ମଧ୍ୟରେ ଏ ଦେଶର ଜନସାଧାରଣ କାଳାତିପାତ କରୁଥିଲେ । ଅତୀତରେ ଯେଉଁ କୃଷି ମାଧ୍ୟମରେ ଭାରତ ଉନ୍ନତିର ଚରମସୀମାରେ ଉପନୀତ ହୋଇଥିଲା, ତା'ର

ବିପର୍ଯ୍ୟୟ ଯୋଗୁଁ ଭାରତବାସୀ 'ହାଅନ୍ନ' ଚିତ୍କାରରେ ଗଗନପବନ ମୁଖରିତ କରିଥିଲେ । ସ୍ୱାଧୀନତା ପରେ ଦେଶୀୟ ସରକାରଙ୍କ ଉଦ୍ୟମରେ କୃଷିର ବିକାଶ ଉପରେ ଅଧିକ ଧ୍ୟାନ ନିବେଶ କରାଗଲା । ବିଭିନ୍ନ ଯୋଜନା ପ୍ରଣୟନ ସମୟରେ କୃଷିର ବିକାଶ ପ୍ରତି ଗୁରୁତ୍ୱ ପ୍ରଦାନ କରାଗଲା । ପାରମ୍ପରିକ କୃଷିନୀତି ପରିହାର କରାଯାଇ ନୂତନ କୃଷିନୀତିକୁ ଗ୍ରହଣ କରାଗଲା । ପାରମ୍ପରିକ ବିହନ ପରିବର୍ତ୍ତେ ବହୁ ଅମଳକ୍ଷମ ବିହନ, ରାସାୟନିକ ସାର, କୀଟନାଶକ ଔଷଧ, ଜଳସେଚନ ଆଦି ଉପରେ ଗୁରୁତ୍ୱ ଦିଆଗଲା । କୃଷିକୁ ମଧ୍ୟ ଗୋଟିଏ ଶିଳ୍ପର ମର୍ଯ୍ୟାଦା ପ୍ରଦାନ କରାଗଲା । ଏବେ ମଧ୍ୟ ଆନ୍ଧ୍ରପ୍ରଦେଶ ଓ ଅନ୍ୟ କେତେକ ପ୍ରଦେଶରେ କୃଷିକୁ ଏକ ବ୍ୟବସାୟ ଭାବରେ ଗ୍ରହଣ କରାଯାଇଛି । ବିଭିନ୍ନ ଋଣ ତଥା କୃଷି ଉପକରଣ ଯୋଗାଇ ଦିଆଯାଉଛି । ସରକାରୀ ତଥା ବିଭିନ୍ନ ଘରୋଇ ଉଦ୍ୟମ ଯୋଗୁଁ ଆଜି ଭାରତ କୃଷି ଉତ୍ପାଦନ ପଦାର୍ଥ କ୍ଷେତ୍ରରେ ବହୁପରିମାଣରେ ସ୍ୱାବଲମ୍ବନଶୀଳ ।

ଭାରତରେ ଖାଦ୍ୟସମସ୍ୟା ସୃଷ୍ଟି ହେବାର କେତୋଟି କାରଣ ମଧ୍ୟରୁ ଜନସଂଖ୍ୟା ବୃଦ୍ଧି ସବୁଠାରୁ ମୁଖ୍ୟ କାରଣ । ୧୯୯୧ ଜନଗଣନା ଅନୁଯାୟୀ ଭାରତର ଜନସଂଖ୍ୟା ୮୪.୪ କୋଟି ଥିବା ସମୟରେ ବର୍ତ୍ତମାନ ତାହା ୧୦୮ କୋଟିରେ ପହଞ୍ଚିଲାଣି । ଏତେ ପରିମାଣର ଲୋକମାନଙ୍କ ପାଇଁ ପ୍ରଚୁର ଖାଦ୍ୟଶସ୍ୟ ଉତ୍ପାଦନର ଆବଶ୍ୟକତା ରହିଛି । ଜନସଂଖ୍ୟା ଅନୁଯାୟୀ ଜମିର ପରିମାଣ ବୃଦ୍ଧି ପାଉ ନାହିଁ । ବରଂ ଜନସଂଖ୍ୟା ବୃଦ୍ଧି ଯୋଗୁଁ ପ୍ରତିବର୍ଷ ମୁଣ୍ଡପିଛା ଜମିର ପରିମାଣ ହ୍ରାସ ପାଇବାରେ ଲାଗିଛି । ଦିନକୁ ଦିନ ଜଙ୍ଗଲ କଟାଯାଉଥିବାରୁ ତା'ର କୁପ୍ରଭାବ କୃଷି ଅର୍ଥନୀତି ଉପରେ ପଡୁଛି । ଅନିୟମିତ ବର୍ଷା ବା ପ୍ରଚୁର ବର୍ଷା କୃଷିର ପ୍ରଭୂତ କ୍ଷତି ସାଧନ କରୁଛି । ଭାରତ ବିଭିନ୍ନ ସମୟରେ ପ୍ରାକୃତିକ ବିପର୍ଯ୍ୟୟ ଯଥା — ବନ୍ୟା, ମରୁଡ଼ି, ବାତ୍ୟା ଆଦିର ସମ୍ମୁଖୀନ ହେଉଥିବାରୁ କୃଷି ଉତ୍ପାଦନ ହ୍ରାସ ପାଉଛି । ଭାରତରେ ଥିବା କୃଷି ଜମି ମଧ୍ୟରୁ ମାତ୍ର ୪୦/୪୧ ଭାଗ ଜମି ଜଳସେଚିତ । ଅନ୍ୟ ଜମିଗୁଡ଼ିକ ମୁଖ୍ୟତଃ ବର୍ଷାଜଳ ଉପରେ ନିର୍ଭରଶୀଳ । ଅନିୟମିତ ବର୍ଷା ହେଲେ କିମ୍ବା ଅଧିକ ବର୍ଷା ହେଲେ କୃଷି ଉତ୍ପାଦନ ହ୍ରାସ ପାଇବା ସ୍ୱାଭାବିକ । ଜଳସେଚନର ସୁବିଧା କରାଯାଇ ନପାରିଲେ କୃଷି ଉତ୍ପାଦନ ବୃଦ୍ଧି ଘଟିବା ସମ୍ଭବପର ନୁହେଁ । କେତେକ କ୍ଷେତ୍ରରେ ପରିଲକ୍ଷିତ ହେଉଛି, ଯେଉଁମାନଙ୍କର ଜମି ଅଛି ସେମାନେ କୃଷି କାର୍ଯ୍ୟ କରୁ ନାହାନ୍ତି; ଅଥଚ ଯେଉଁମାନଙ୍କର ଜମି ନାହିଁ ସେମାନେ କୃଷି ଉପରେ ନିର୍ଭର କରୁଛନ୍ତି । ଫଳତଃ ନିଜର ଜମି ହୋଇନଥିବାରୁ ଜମି ମଧ୍ୟ ପଡ଼ିଆ ରହୁଛି । ସାଂପ୍ରତିକ ପରିପ୍ରେକ୍ଷୀରେ ଭୂସଂସ୍କାର ବା ଜମିର ସୁଷମବଣ୍ଟନର ଆବଶ୍ୟକତା ରହିଛି । ଏହା ହୋଇ ନ ପାରିଲେ ଭାରତର 'ସବୁଜ ବିପ୍ଳବ' ସଫଳ ହୋଇପାରିବ ନାହିଁ । ଏବେ ମଧ୍ୟ ଅଧିକାଂଶ କୃଷକ ପାରମ୍ପରିକ ରୀତିରେ କୃଷିକାର୍ଯ୍ୟ କରୁଥିବାରୁ ଅଧିକ ଫସଲ ଅମଳ କରିବାକୁ ସମର୍ଥ ହୋଇପାରୁ ନାହାନ୍ତି । ବାରମ୍ବାର ଚାଷ ଯୋଗୁଁ ଜମିର ଉତ୍ପାଦିକା ଶକ୍ତି ହ୍ରାସ ପାଉଛି । ଗରିବ କୃଷକ କୃଷିକ୍ଷେତ୍ରକୁ ସବଳ କରିବା ନିମିତ୍ତ ଯେଉଁ ପରିମାଣରେ ସାର, ଔଷଧ ପ୍ରୟୋଗ କରିବା ଆବଶ୍ୟକ, ଅର୍ଥାଭାବରୁ ତାହା କରିପାରୁ ନାହାନ୍ତି । ତେଣୁ ଜମିରୁ

ଶସ୍ୟ ଉତ୍ପାଦନ ହ୍ରାସ ପାଇବାରେ ଲାଗିଛି । ଶସ୍ୟ ଉତ୍ପନ୍ନ ସମୟରେ କେତେକ କଳାବଜାରୀ ଖାଦ୍ୟଶସ୍ୟ ସଂଗ୍ରହ କରି ଆବଶ୍ୟକ ବେଳେ ବଜାରକୁ ନ ଛାଡ଼ିବା ଯୋଗୁଁ କୃତ୍ରିମ ଖାଦ୍ୟାଭାବ ସୃଷ୍ଟି ହେଉଛି । ସରକାରୀ ସ୍ତରରେ ଏହାକୁ ରୋକିବା ପାଇଁ ଆଖିଦୃଶିଆ ପଦକ୍ଷେପ ଗ୍ରହଣ କରାଯାଉ ନାହିଁ । ସାମାଜିକ ଓ ରାଜନୀତିକ ଅସ୍ଥିରତା ମଧ୍ୟ ଖାଦ୍ୟଶସ୍ୟ ହ୍ରାସର ଅନ୍ୟତମ କାରଣ । ଏହି ଅସ୍ଥିରତା ଯୋଗୁଁ ନିର୍ଦ୍ଦିଷ୍ଟ କୃଷିନୀତି ପ୍ରଣୟନ କରାଯାଇ ପାରୁନଥିବାରୁ ଆବଶ୍ୟକ ଅନୁଯାୟୀ ଖାଦ୍ୟଶସ୍ୟର ଅଭାବ ପରିପୂରଣ ହୋଇପାରୁ ନାହିଁ ।

୧୯୫୦ ମସିହାରେ ପଣ୍ଡିତ ଜବାହରଲାଲ ନେହେରୁଙ୍କ ଉଦ୍ୟମରେ ଯୋଜନା କମିଶନ ପ୍ରତିଷ୍ଠା ଲାଭ କରିବା ପରେ ପଞ୍ଚବାର୍ଷିକ ଯୋଜନା ଅନୁଯାୟୀ ବିଭିନ୍ନ କାର୍ଯ୍ୟକ୍ରମ ଗ୍ରହଣ କରାଗଲା । ଏହି ପଞ୍ଚବାର୍ଷିକ ଯୋଜନାରେ ଖାଦ୍ୟାଭାବର ଦୂରୀକରଣ ନିମିତ୍ତ କୃଷି ଉପରେ ଅଧିକ ଗୁରୁତ୍ୱ ପ୍ରଦାନ କରାଗଲା । ପ୍ରଥମ ପଞ୍ଚବାର୍ଷିକ ଯୋଜନାରେ ଖାଦ୍ୟଶସ୍ୟ ଉତ୍ପାଦନ କ୍ଷେତ୍ରରେ ଭାରତ ଯେଉଁ ପରିମାଣରେ ସଫଳତା ହାସଲ କରିଥିଲା, ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନାରେ ସେହି ସଫଳତା ହାସଲ କରିପାରିଲା ନାହିଁ । କାରଣ ଏହି ଯୋଜନାରେ କୃଷି ଅପେକ୍ଷା ଗୁରୁଶିଳ୍ପ ଉପରେ ଅଧିକ ଗୁରୁତ୍ୱ ପ୍ରଦାନ କରାଗଲା । ତେଣୁ ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନା ସମୟସୀମା ମଧ୍ୟରେ ଭାରତର କେତେକ ସ୍ଥାନରେ ବନ୍ୟା, ଦୁର୍ଭିକ୍ଷ ପରି ପ୍ରାକୃତିକ ବିପର୍ଯ୍ୟୟ, କୃଷି ପ୍ରତି ଉଦାସୀନ ଦୃଷ୍ଟିଭଙ୍ଗୀ ଆଦି ଯୋଗୁଁ ଖାଦ୍ୟଶସ୍ୟର ଉତ୍ପାଦନ ବହୁପରିମାଣରେ ହ୍ରାସ ପାଇଲା । ଏହି ସମୟରେ ଭାରତରେ ସମୁଦାୟ ୯୨ ନିୟୁତ ଟନ୍ ଖାଦ୍ୟଶସ୍ୟ ଆବଶ୍ୟକ ସମୟରେ ଉତ୍ପାଦିତ ହୋଇଥିଲା; ମାତ୍ର ୬୮ ନିୟୁତ ଟନ୍ । ତୃତୀୟ ପଞ୍ଚବାର୍ଷିକ ଯୋଜନାରେ ମଧ୍ୟ ଖାଦ୍ୟଶସ୍ୟ ଉତ୍ପାଦନ ହ୍ରାସ ପାଇଥିଲା । ୧୯୬୪-୬୫ ରେ ୮୮.୮ ନିୟୁତ ଟନ୍ ଖାଦ୍ୟ ଉତ୍ପାଦିତ ହୋଇଥିବା ବେଳେ ୧୯୬୫-୬୬ ମଧ୍ୟରେ ୧୯% ଶସ୍ୟ ଉତ୍ପାଦନ କମିଯାଇଥିଲା । ସେଥିପାଇଁ ଭାରତ ଆମେରିକାରୁ ବହୁପରିମାଣରେ ଖାଦ୍ୟଶସ୍ୟ ଆମଦାନି କରିବାକୁ ବାଧ୍ୟ ହୋଇଥିଲା । ୧୯୬୭-୬୮ ମସିହା ବେଳକୁ ଭାରତରେ 'ସବୁଜ ବିପ୍ଳବ' ସଫଳତା ଦିଗକୁ ଅଗ୍ରସର ହୋଇଥିଲା । ୧୯୬୮ ମସିହାରେ ୯୨ ନିୟୁତ ଟନ୍ ଶସ୍ୟ ଉତ୍ପନ୍ନ ହୋଇଥିବା ସମୟରେ ୧୯୬୯ ମସିହାରେ ଏହା ୯୫ ନିୟୁତ ଟନ୍‌କୁ ବୃଦ୍ଧି ପାଇଥିଲା । ୧୯୭୦ ମସିହା ବେଳକୁ ଏହା ଅସମ୍ଭବ ଭାବେ ୧୦୮ ନିୟୁତ ଟନ୍‌ରେ ପହଞ୍ଚିଥିଲା । ନୂତନ କୃଷିନୀତିର ପ୍ରଚଳନ ଯୋଗୁଁ ଏପରି ସଫଳତା ମିଳିପାରିଥିଲା । ଅଧିକ ଅମଳକ୍ଷମ ବିହନ, ରାସାୟନିକ ସାର ପ୍ରୟୋଗ ଯୋଗୁଁ ଉତ୍ପାଦନ ବୃଦ୍ଧି ପାଇଥିଲା । ଆନ୍ତର୍ଜାତୀୟ ଶସ୍ୟ ଗବେଷଣା ପ୍ରତିଷ୍ଠାନ ଦ୍ୱାରା ଉଦ୍ଭାବିତ ଅଧିକ ଅମଳକ୍ଷମ ବିହନ ଆଇ. ଆର.-୮ ଏବଂ ଅନ୍ୟାନ୍ୟ ବିହନର ପ୍ରୟୋଗ କୃଷିକ୍ଷେତ୍ରରେ କରାଗଲା । ଏତଦ୍ ବ୍ୟତୀତ ୧୯୪୬ ମସିହାରେ ଓଡ଼ିଶାରେ କଟକ ନିକଟବର୍ତ୍ତୀ ବିଦ୍ୟାଧରପୁରସ୍ଥିତ କେନ୍ଦ୍ରୀୟ ଧାନ ଗବେଷଣା ପ୍ରତିଷ୍ଠାନ ଏ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିଛି । ୧୯୬୨ ମସିହାରେ ଫିଲିପାଇନ୍‌ସରେ ଆନ୍ତର୍ଜାତିକ ଧାନ ଗବେଷଣା କେନ୍ଦ୍ର ପ୍ରତିଷ୍ଠା ହେବା

ପୂର୍ବରୁ ଏହା ଥିଲା ବିଶ୍ୱର ବୃହତ୍ ଧାନ ଗବେଷଣା କେନ୍ଦ୍ର । ବର୍ତ୍ତମାନ ଏହା ବିଶ୍ୱର ଦ୍ୱିତୀୟ ବୃହତ୍ ଧାନ ଗବେଷଣା କେନ୍ଦ୍ର ରୂପେ ସ୍ୱୀକୃତି ଲାଭ କରିଛି । ଏହି କେନ୍ଦ୍ର ବର୍ତ୍ତମାନ ସୁଦ୍ଧା ୪୮ ଟି ଅଧିକ ଅମଳକ୍ଷମ ଧାନ ଉଦ୍ଭାବନ କରିଛି । ଅଧିକ ଉତ୍ପାଦନକ୍ଷମ ବିହନ ଓ ଜାପାନର କୃଷି କୌଶଳର ଅବଲମ୍ବନ ଦ୍ୱାରା ଭାରତରେ ପ୍ରଚୁର ପରିମାଣରେ ଶସ୍ୟ ଉତ୍ପାଦିତ ହୋଇପାରିଲା । ଭାରତର ବିଭିନ୍ନ ସ୍ଥାନର ମୃତ୍ତିକାକୁ ଲକ୍ଷ୍ୟ କରି ବିଭିନ୍ନ କିସମର ବିହନ ଉଦ୍ଭାବିତ ହୋଇଛି । ଏହି ବହୁ ଅମଳକ୍ଷମ ଧାନବିହନ ମଧ୍ୟରେ ବିଜୟା, କ୍ରିଷ୍ଣା, ରତ୍ନା, ପଦ୍ମା, କାବେରୀ, ଜୟା, ହୀରା, ସୁପରଫାଷ୍ଟ, ସତାରୀ, ଧଳାହୀରା, ସ୍ନେହ, ସାଙ୍କେତ, କଳିଙ୍ଗ, ସରସା, ଉଦୟ, ଲୁଣିଶ୍ରୀ, ସୋନାମଣି ଆଦି ପ୍ରଧାନ । କେବଳ ଧାନ କ୍ଷେତ୍ରରେ ନୁହେଁ ଗହମ କ୍ଷେତ୍ରରେ ମଧ୍ୟ ଭାରତ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିଛି । ଭାରତୀୟ କୃଷି ବୈଜ୍ଞାନିକଗଣ ବିଭିନ୍ନ ପ୍ରକାର ବହୁ ଅମଳକ୍ଷମ ଗହମ ବିହନ ଉଦ୍ଭାବନ କରିବାକୁ ସମର୍ଥ ହୋଇଛନ୍ତି । ସେହି ବିହନଗୁଡ଼ିକ ମଧ୍ୟରୁ ହୀରା, ମୋତି, ସେରା ଆଦି ପ୍ରଧାନ । ଏତଦ୍ ବ୍ୟତୀତ ତୈଳବୀଜ, ବାଜରା, କପା, ମାଣ୍ଡିଆ, ମକା, ସୋୟାବିନ୍, ନଡ଼ିଆ, ବିଭିନ୍ନ ପନିପରିବା ଆଦି କ୍ଷେତ୍ରରେ ମଧ୍ୟ ଆମର ଉତ୍ପାଦନ ବୃଦ୍ଧି ହୋଇଛି । ନୂତନ ଧରଣର ବହୁ ଅମଳକ୍ଷମ ବିହନ ନିମିତ୍ତ ବହୁପରିମାଣର ରାସାୟନିକ ସାର, ଉପଯୁକ୍ତ ଜଳ, କୀଟନାଶକ ଔଷଧ ଆଦିର ଆବଶ୍ୟକ ହୋଇଥାଏ । ସାର ଔଷଧ ଓ ଜଳସେଚନର ସୁବିଧା ଯୋଗୁଁ ୧୯୭୫ ମସିହାରେ ୧୨୧.୦୩ ନିୟୁତ ଟନ୍, ୧୯୭୭-୭୮ ରେ ୧୨୧ ନିୟୁତ ଟନ୍ ଶସ୍ୟ ଉତ୍ପାଦନ ହୋଇଥିବା ସମୟରେ ୧୯୮୨-୮୩ ମସିହାରେ ଏହା ପ୍ରାୟ ୧୪୪ ନିୟୁତ ଟନ୍‌ରେ ପହଞ୍ଚି ପାରିଥିଲା । ୮ମ ପଞ୍ଚବାର୍ଷିକ ଯୋଜନାରେ 'ସବୁଜ ବିପ୍ଳବ' କ୍ଷେତ୍ରରେ ଭାରତ ଉଲ୍ଲେଖଯୋଗ୍ୟ ସଫଳତା ହାସଲ କରିଥିଲା । ଏହି ସମୟରେ ସବୁଠାରୁ ଅଧିକ ପ୍ରାୟ ୨୩୩ ନିୟୁତ ଟନ୍ ଶସ୍ୟ ଉତ୍ପାଦିତ ହୋଇଥିଲା । ବିଭିନ୍ନ ପଞ୍ଚବାର୍ଷିକ ଯୋଜନାରେ କୃଷି ଉପରେ ଗୁରୁତ୍ୱ ଆରୋପ କରାଯାଉଥିବାରୁ ଏ ପ୍ରକାର ସଫଳତାପ୍ରାପ୍ତି ହେବା ସମ୍ଭବ ହୋଇପାରିଛି । କେବଳ ରାସାୟନିକ ସାର ବା କୀଟନାଶକ ଔଷଧ ନୁହେଁ, ଭାରତୀୟ କୃଷକ ଏହି ସମୟରେ ଟ୍ରାକ୍ଟର ଓ ପାୱାର ଟିଲର ଦ୍ୱାରା କୃଷିକାର୍ଯ୍ୟ କରିବାରୁ ବଳଦମାନଙ୍କ ଅପେକ୍ଷା ଅଧିକ ଏବଂ ଶୀଘ୍ର କୃଷିକାର୍ଯ୍ୟ ସମ୍ପନ୍ନ କରିବାକୁ ସମର୍ଥ ହୋଇପାରିଛନ୍ତି । ବିଭିନ୍ନ ପଞ୍ଚବାର୍ଷିକ ଯୋଜନାରେ ଜଳସେଚିତ ଜମିର ପରିମାଣ ବୃଦ୍ଧି ପାଇବାରେ ଲାଗିଛି । ଅଧିକ ଶସ୍ୟ ଉତ୍ପାଦନ ଯୋଗୁଁ ଭାରତ ଆଫଗାନିସ୍ଥାନ, ଭିଏତନାମ, ଇଣ୍ଡୋନେସିଆ ପ୍ରଭୃତି ଦେଶକୁ ଶସ୍ୟ ରପ୍ତାନୀ କରିବାକୁ ସମର୍ଥ ହୋଇଛି । ଏହା ଦ୍ୱାରା ବୈଦେଶିକ ମୁଦ୍ରା ଅର୍ଜନ କରିବାକୁ ଆମେ ସମର୍ଥ ହୋଇପାରିଛୁ । ଏହା ସତ୍ତ୍ୱେ କୃଷି ଉତ୍ପାଦନ କ୍ଷେତ୍ରରେ ଆମେ ସମ୍ପୂର୍ଣ୍ଣ ରୂପେ ସଫଳତା ଅର୍ଜନ କରିପାରି ନାହୁଁ । ନବମ ପଞ୍ଚବାର୍ଷିକ ଯୋଜନାରେ କୃଷି ଉପରେ ଅଧିକ ଗୁରୁତ୍ୱ ପ୍ରଦାନ କରାଯାଇଛି । ଆଶା କରାଯାଏ, ଏହି ଯୋଜନାରେ ଭାରତ ନିଶ୍ଚିତଭାବେ ଅଧିକ କୃଷିପଦାର୍ଥ ଉତ୍ପନ୍ନ କରିବାକୁ ସଫଳ ହୋଇପାରିବ ।

ସବୁଜ ବିପ୍ଳବର ସଫଳତା ନିମିତ୍ତ କୃଷିର ବିକାଶ ଅତ୍ୟନ୍ତ ଜରୁରୀ । କୃଷିର ବିକାଶ ନିମିତ୍ତ କେତେକ ଜରୁରୀ ପଦକ୍ଷେପ ଗ୍ରହଣ କରାଯାଇପାରିଲେ ଭାରତରେ ଶସ୍ୟ ଉତ୍ପାଦନ ନିଶ୍ଚିତ ଭାବରେ ବୃଦ୍ଧି ପାଇବ । ହଳ କାର୍ଯ୍ୟରେ ବଳଦର ବ୍ୟବହାର ପରିବର୍ତ୍ତେ ଟ୍ରାକ୍ଟର କିମ୍ବା ପାୱାରଟିଲର ବ୍ୟବହାର କଲେ ସ୍ୱଳ୍ପ ସମୟ ତଥା କମ୍ ମଜୁରି ଦ୍ୱାରା ଅଧିକ ଜମିରେ କୃଷିକାର୍ଯ୍ୟ କରାଯାଇପାରିବ । କୃଷକମାନଙ୍କୁ କୃଷି ବିଶେଷଜ୍ଞଙ୍କ ଦ୍ୱାରା ବିଭିନ୍ନ ସମୟରେ ପ୍ରଶିକ୍ଷଣ ପ୍ରଦାନ କରାଗଲେ ବିଭିନ୍ନ ନୂତନ ଚାଷପ୍ରଣାଳୀ ସମ୍ପର୍କରେ ଅବହିତ ହୋଇପାରିବେ । କାରଣ ଭାରତର ଅଧିକାଂଶ କୃଷକ ଅଶିକ୍ଷିତ ବା ସ୍ୱଳ୍ପ ଶିକ୍ଷିତ ହୋଇଥିବାରୁ ସରକାରୀ ଯୋଜନା ତଥା ନୂତନ କୃଷିନୀତିର ଆବିଷ୍କାର ସମ୍ପର୍କରେ ଅନଭିଜ୍ଞ । ବିଶ୍ୱର କୃଷିନୀତିରେ ଯେଉଁ ପରିବର୍ତ୍ତନ ଘଟୁଛି ବିଭିନ୍ନ ଗଣମାଧ୍ୟମ ଦ୍ୱାରା ତାହା ଭାରତୀୟ କୃଷକ ନିକଟରେ ପହଞ୍ଚିବା ଆବଶ୍ୟକ । ଅବଶ୍ୟ ରେଡ଼ିଓ, ଟେଲିଭିଜନ ଆଦିରେ କୃଷି ସମ୍ପର୍କୀୟ କାର୍ଯ୍ୟକ୍ରମର ପ୍ରସାରଣ ହେଉଛି; ମାତ୍ର ତା'ର ଯଥାର୍ଥ ସୁଫଳ ସେମାନେ ପାଇପାରୁ ନାହାନ୍ତି । ବର୍ତ୍ତମାନ ଏହାକୁ ଆହୁରି ଅଧିକ ବ୍ୟାପକ କରିବାକୁ ପଡ଼ିବ । ହେକ୍ଟର ପିଛା କେତେ ପରିମାଣରେ ସାର ଓ ଔଷଧ ପ୍ରୟୋଗ କରିବା ଉଚିତ, ତାହା ଅଧିକାଂଶ କୃଷକ ଅବହିତ ନୁହନ୍ତି । ପୁନରାୟ ଆର୍ଥିକ କାରଣରୁ ଉପଯୁକ୍ତ ପରିମାଣର ସାର ତଥା ଔଷଧ ଦେବାକୁ ବହୁ କୃଷକ ଅସମର୍ଥ । ସରକାରୀ ସ୍ତରରେ କୃଷିଋଣ ମାଧ୍ୟମରେ ସାର, ଔଷଧ ଯୋଗାଇ ଦିଆଯାଇପାରିଲେ ଏବଂ ଶସ୍ୟ ଉତ୍ପାଦନ ପରେ ଶସ୍ୟ ଆକାରରେ କୃଷକମାନଙ୍କଠାରୁ ତା'ର ମୂଲ୍ୟ ଗ୍ରହଣ କରାଗଲେ ନିଶ୍ଚିତ ଭାବରେ ଉତ୍ପାଦନ ବୃଦ୍ଧି ପାଇପାରନ୍ତା । ବୈଜ୍ଞାନିକ ପ୍ରଣାଳୀରେ କୃଷିଦ୍ୱାରା ଅଧିକ ଶସ୍ୟ ଉତ୍ପାଦନ ନିମିତ୍ତ ସରକାରୀ ସ୍ତରରେ ଉଦ୍ୟମ ଜାରି ରହିବା ଆବଶ୍ୟକ । ଏତଦ୍ ବ୍ୟତୀତ ଗୋଟିଏ ଜମିରୁ କିପରି ବର୍ଷରେ ୩/୪ ଥର ଫସଲ ଉତ୍ପନ୍ନ ହୋଇପାରିବ, ସେ ସମ୍ପର୍କରେ କୃଷକମାନଙ୍କୁ ବିଶେଷଜ୍ଞଗଣ ପ୍ରଶିକ୍ଷଣ ଦେବା ଉଚିତ । ଆମ କୃଷକ କେବଳ ଧାନ ଓ ଗହମ ଉତ୍ପାଦନ ଉପରେ ଅଧିକ ଗୁରୁତ୍ୱ ଦେଉଛନ୍ତି । ସେହି ଜମିରୁ ଧାନ ଏବଂ ଗହମ ସହିତ ଅନ୍ୟାନ୍ୟ ଡ଼ାଲି ଜାତୀୟ, ତୈଳ ଜାତୀୟ ବା ପନିପରିବା କିପରି ଉତ୍ପନ୍ନ ହୋଇପାରିବ, ସେଥିପ୍ରତି ଦୃଷ୍ଟି ପ୍ରଦାନ କରାଯିବା ବିଧେୟ । ଅଧିକାଂଶ ଚାଷୀ ଦାରିଦ୍ର୍ୟ ସୀମାରେଖା ତଳେ ଥିବାରୁ 'ସବୁଜ ବିପ୍ଳବ' ଯେଉଁ ପରିମାଣରେ ସାର୍ଥକ ହେବା କଥା ତାହା ହୋଇପାରୁ ନାହିଁ । ଋଣ ମାଧ୍ୟମରେ ସେମାନଙ୍କର ଆର୍ଥିକ ବ୍ୟବସ୍ଥାର ଉନ୍ନତି କରାଯାଇପାରିଲେ ସରକାରଙ୍କ ଆହ୍ୱାନ ସଫଳ ହୋଇପାରନ୍ତା । ଏତଦ୍ ବ୍ୟତୀତ ଜମିର ସୁଷମବଣ୍ଟନ ବର୍ତ୍ତମାନ ପରିପ୍ରେକ୍ଷୀରେ ଅତ୍ୟନ୍ତ ଜରୁରୀ ହୋଇପଡ଼ିଛି । ପ୍ରକୃତରେ ଯେଉଁମାନେ ଚାଷୀ, ସେମାନଙ୍କ ନିକଟରେ ଚାଷଜମି ନାହିଁ; ଅଥଚ ଯେଉଁମାନେ ଚାଷୀ ନୁହନ୍ତି, ସେମାନଙ୍କ ନିକଟରେ ପ୍ରଚୁର ଚାଷଜମି ରହିଛି । ସରକାରୀ ସ୍ତରରେ ଭୂସଂସ୍କାର ଆଇନ୍ ଦ୍ୱାରା ଜମିର ଉପଯୁକ୍ତ ବଣ୍ଟନ କରାଯାଇପାରିଲେ, ପଡ଼ିଆ ରହୁଥିବା ଚାଷଜମିଗୁଡ଼ିକର ମଧ୍ୟ ଯଥୋପଯୋଗ କରଯାଇପାରନ୍ତା । ଭାରତରେ ଅଧିକାଂଶ ଚାଷଜମି ଅଣଜଳସେଚିତ । ଜଳସେଚନ ଅଧିକ ପରିମାଣରେ କରାଗଲେ ଶସ୍ୟ ଉତ୍ପାଦନର ପରିମାଣ ମଧ୍ୟ ବୃଦ୍ଧି ପାଆନ୍ତା । ଅବଶ୍ୟ ଏ ପ୍ରକାର କେତେକ ବିହନ ଉଦ୍ଭାବିତ ହୋଇଥିଲେ ହେଁ, ଆବଶ୍ୟକତା ଅନୁଯାୟୀ ତାହା ଯଥେଷ୍ଟ ଉପଯୋଗୀ ହୋଇପାରୁ ନାହିଁ ।

ଅନେକ ସମୟରେ କଳାବଜାରୀମାନଙ୍କ ଦ୍ୱାରା ଗରିବ କୃଷିକୁଳ ଶୋଷିତ ହୋଇଥାନ୍ତି । ସରକାରୀ ସ୍ତରରେ କୃଷିଜାତ ପଦାର୍ଥ କ୍ରୟ ଓ ବଣ୍ଟନର ବ୍ୟବସ୍ଥା କରାଗଲେ କୃଷକମାନେ ଉପକୃତ ହେବା ସଙ୍ଗେ ସଙ୍ଗେ 'ସବୁଜ ବିପ୍ଳବ'ର ଆହ୍ୱାନ ବହୁପରିମାଣରେ ସାକାର ହୋଇପାରନ୍ତା ।

ଅନେକ ସମୟରେ ସାମାଜିକ ଓ ରାଜନୈତିକ ଅସ୍ଥିରତା ତଥା ଦୁର୍ନୀତି 'ସବୁଜ ବିପ୍ଳବ'ର ପରିପନ୍ଥୀ ରୂପେ କାର୍ଯ୍ୟ କରିଥାଏ । ରାଜନୀତିକ କାରଣରୁ ସମାଜର ପ୍ରତିଷ୍ଠିତ ବ୍ୟକ୍ତି କୃଷିଋଣ ଲାଭ କରିଥାନ୍ତି, ଅଥଚ ସେମାନେ କୃଷିକାର୍ଯ୍ୟ କରିନଥାନ୍ତି । ଗରିବ କୃଷକ ହାତରେ ସମ୍ବଳର ଅଭାବ, ଅଥଚ ଧନୀବ୍ୟକ୍ତି କୃଷି ଋଣ ଲାଭ କରି ଅଧିକ ଧନୀ ହେବାରେ ଲାଗିଛନ୍ତି । ଯେଉଁମାନେ ପ୍ରକୃତରେ କୃଷି ଉପରେ ନିର୍ଭରଶୀଳ, ସେମାନେ ଉପଯୁକ୍ତ ସୁବିଧା ଲାଭ କରିପାରୁ ନାହାନ୍ତି । ସରକାରୀ ସ୍ତରରେ ଯେଉଁମାନେ କୃଷିକ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ସଫଳତା ନିମିତ୍ତ ପୁରସ୍କୃତ ହେଉଛନ୍ତି ସେମାନେ ମୁଖ୍ୟତଃ ଏହି ଧନୀ ଶ୍ରେଣୀର । ପ୍ରକୃତ କୃଷକ ଉପଯୁକ୍ତ ପ୍ରାପ୍ୟ ଓ ପ୍ରୋତ୍ସାହନ ଅଭାବରୁ ନିରୁତ୍ସାହିତ ହେଉଛି ଓ 'ସବୁଜ ବିପ୍ଳବ'ର ଅର୍ଥ ତା' ନିକଟରେ ଦୁର୍ବୋଧ ହୋଇପଡୁଛି । ତେଣୁ ଭାରତରେ କୃଷି ବ୍ୟବସ୍ଥାକୁ ରାଜନୈତିକ ବାଧବାଧକତା ଓ ଦୁର୍ନୀତିରୁ ମୁକ୍ତ ରଖାଯାଇପାରିଲେ ଏହି କୃଷି ଆନ୍ଦୋଳନ ବହୁପରିମାଣରେ ସଫଳ ହୋଇପାରନ୍ତା ।

ଭାରତ କୃଷି ଉତ୍ପାଦନ କ୍ଷେତ୍ରରେ ବହୁପରିମାଣରେ ସ୍ୱାବଲମ୍ବନଶୀଳ ହୋଇପାରିଛି । ମାତ୍ର ଯେଉଁ ପରିମାଣରେ ଜନସଂଖ୍ୟାର ବୃଦ୍ଧି ଘଟୁଛି, ସେଥିପାଇଁ ଆହୁରି ଅଧିକ ଶସ୍ୟ ଉତ୍ପାଦନର ଆବଶ୍ୟକତା ରହିଛି । କୃଷି ଗବେଷଣା ନିମିତ୍ତ ଯେଉଁ କେତେକ ପଦକ୍ଷେପ ଗ୍ରହଣ କରାଯାଇଛି, ତାହା ନିଶ୍ଚିତ ଭାବରେ ଆଶ୍ୱାସନାର ବିଷୟ । ଏହାକୁ ଅଧିକ ସକ୍ରିୟ ଓ ସମାଜୋପଯୋଗୀ କରିବାର ଆବଶ୍ୟକତା ରହିଛି । କୃଷକମାନଙ୍କୁ ପ୍ରୋତ୍ସାହନ ଓ ଋଣ ଯୋଗାଇଦେଇ 'ସବୁଜ ଆନ୍ଦୋଳନ' କୁ ଅଧିକ ସକ୍ରିୟ କରିବାକୁ ପଡ଼ିବ । କୃଷିକୁ ମଧ ଏକ ବ୍ୟବସାୟର ମର୍ଯ୍ୟାଦା ପ୍ରଦାନ କରିବାକୁ ପଡ଼ିବ । କାରଣ ଭାରତରେ କୃଷିକୁ ଜୀବିକା ଭାବରେ ଗ୍ରହଣ କରିନେଇଥିବା କୃଷକ ଆର୍ଥିକ ଦୃଷ୍ଟିକୋଣରୁ ସମୃଦ୍ଧ ନୁହନ୍ତି । ସେମାନେ ଅନେକ ସମୟରେ ଶୋଷଣର ଶିକାର ହୋଇଥାନ୍ତି । କୃଷକମାନଙ୍କ ପ୍ରତି ଆମ ସମାଜରେ ରହିଥିବା ଦୃଷ୍ଟିଭଙ୍ଗୀର ମଧ ପରିବର୍ତ୍ତନ ଆସିବା ସର୍ବାଦୌ ଆବଶ୍ୟକ । ସେମାନେ ସମାଜରେ ଉପଯୁକ୍ତ ମର୍ଯ୍ୟାଦା ଲାଭ କରିନପାରିଲେ, ଏ କ୍ଷେତ୍ରରେ ଉତ୍ସାହିତ ହେବେ ନାହିଁ । ପ୍ରାକୃତିକ ବିପର୍ଯ୍ୟୟ ସମୟରେ କୃଷକମାନଙ୍କୁ ଋଣଛାଡ଼, ନୂତନ ଋଣ ପ୍ରଦାନ ଆଦିର ବ୍ୟବସ୍ଥା କରାଯିବା ସଙ୍ଗେ ସଙ୍ଗେ ନୂତନ କୃଷିକୌଶଳ ଯୋଗାଇଦେଇ ଉତ୍ପାଦିତ ଶସ୍ୟର ବଜାର ନିମିତ୍ତ ସରକାରୀ ସ୍ତରରେ ଉଦ୍ୟମ ଜାରି ରହିଲେ ଭାରତରେ 'ସବୁଜ ଆନ୍ଦୋଳନ' ବା 'ସବୁଜ ବିପ୍ଳବ' ନିଶ୍ଚିତ ଭାବରେ ସଫଳ ହୋଇପାରିବ ।

# ବୋଫର୍ସ ଦୁର୍ନୀତି

(ଉପକ୍ରମ, ବୋଫର୍ସ ଇତିହାସ, ଭାରତର ପ୍ରତିରକ୍ଷା ଓ ବୋଫର୍ସ ଘଟଣା, ରାଜନୈତିକ ହଟ୍ଟଗୋଳ, ବୋଫର୍ସ ମଧ୍ୟସ୍ଥ, ତଦନ୍ତର କେତୋଟି ଦିଗ, ବୋଫର୍ସର ଅନ୍ଧକାର ଦିଗ, ଉପସଂହାର)

ଦେଶର ସାର୍ବଭୌମତ୍ୱ ରକ୍ଷା ଯେକୌଣସି ସ୍ୱାଧୀନ ରାଷ୍ଟ୍ରର ପ୍ରଥମ କର୍ତ୍ତବ୍ୟ । ଏହା ମଧ୍ୟ ପ୍ରତ୍ୟେକ ଦେଶର ଏକ ସମ୍ବେଦନଶୀଳ ଦିଗ । ସଂପ୍ରତି ବିଶ୍ୱ ସ୍ୱାର୍ଥପର ଭାବେ ଯେଉଁ ଦିଗକୁ ଧାବମାନ ହେଉଛି, ସେହି ଦୃଷ୍ଟିରୁ ପ୍ରତ୍ୟେକ ସ୍ୱାଧୀନ ରାଷ୍ଟ୍ର ନିଜର ପ୍ରତିରକ୍ଷା ବିଭାଗକୁ ଅଧିକ ଶକ୍ତିଶାଳୀ କରିବା ସ୍ୱାଭାବିକ । ସେଥିପାଇଁ ବର୍ତ୍ତମାନ ଦେଶ ଦେଶ ମଧ୍ୟରେ ଅସ୍ତ୍ରଶସ୍ତ୍ରର ପ୍ରତିଯୋଗିତା ଚାଲିଛି । ଅସ୍ତ୍ରଶସ୍ତ୍ର ସମୃଦ୍ଧଶାଳୀ ରାଷ୍ଟ୍ରମାନଙ୍କ ନିକଟରୁ ଅନ୍ୟାନ୍ୟ ରାଷ୍ଟ୍ର ପ୍ରଚୁର ପରିମାଣରେ ଅସ୍ତ୍ରମାନ କ୍ରୟ କରି ନିଜର ପ୍ରତିରକ୍ଷା ବିଭାଗକୁ ଶକ୍ତିଶାଳୀ କରୁଛନ୍ତି । ଭାରତର ପଡ଼ୋଶୀ ରାଷ୍ଟ୍ର ପାକିସ୍ଥାନ, ଆମେରିକା, ଚୀନ ତଥା ଅନ୍ୟାନ୍ୟ ରାଷ୍ଟ୍ରରେ ବହୁପରିମାଣରେ ମାରାତ୍ମକ ଅସ୍ତ୍ର କ୍ରୟ କରି ଭାରତ ଉପରେ ପ୍ରୟୋଗ କରିବାକୁ ମସୁଧା ଚଳାଇଛି । ଏ କ୍ଷେତ୍ରରେ ଭାରତ ନିଜର ସ୍ୱାଧୀନତା ଓ ସାର୍ବଭୌମତ୍ୱର ରକ୍ଷା ପାଇଁ ନିଜ ଇଚ୍ଛା ବିରୋଧରେ ବିଭିନ୍ନ ଅସ୍ତ୍ର କ୍ରୟ କରିବାକୁ ବାଧ୍ୟ ହେଉଛି । ଏହି ପରିପ୍ରେକ୍ଷୀରେ ରାଜୀବଗାନ୍ଧିଙ୍କ ପ୍ରଧାନମନ୍ତ୍ରିତ୍ୱ ସମୟରେ ସୁଇଡ଼େନର ବୋଫର୍ସ କମ୍ପାନୀ ଠାରୁ କମାଣ କ୍ରୟ ଉଦ୍ଦେଶ୍ୟରେ ଏକ ଚୁକ୍ତିପତ୍ର ସ୍ୱାକ୍ଷରିତ ହୋଇଥିଲା ଏବଂ ଏଥିରେ ବହୁପରିମାଣରେ ଟଙ୍କାର କମିଶନି କାରବାର ହୋଇଥିଲା । ତାହାର କିଛି ଅଂଶ ପ୍ରକାଶ ପାଇବା ପରେ ଭାରତରେ ବୋଫର୍ସ ଦୁର୍ନୀତି ଏକ ବିଶେଷ ପ୍ରସଙ୍ଗ ରୂପେ ଆଲୋଚନାର ପରିସରଭୁକ୍ତ ହେବା ସଙ୍ଗେ ସଙ୍ଗେ ଭାରତର ରାଜନୈତିକ ବାତାବରଣକୁ ବେଶ୍ ଉଷ୍ମ କରିପାରିଥିଲା ।

ରାଜୀବ ଗାନ୍ଧି ଭାରତର ପ୍ରଧାନମନ୍ତ୍ରୀ ଥିବା ସମୟରେ ନିଜର ପ୍ରତିରକ୍ଷା ବିଭାଗକୁ ସୁଦୃଢ଼ କରିବା ନିମିତ୍ତ ବୋଫର୍ସ କମାଣ କ୍ରୟ କରିବା ଉଦ୍ଦେଶ୍ୟରେ ସୁଇଡ଼େନର ବୋଫର୍ସ କମ୍ପାନୀ ସହିତ ଏକ ଚୁକ୍ତି ସ୍ୱାକ୍ଷର କରାଯାଇଥିଲା । ୧୯୮୭ ମସିହାରେ ସୁଇଜରଲ୍ୟାଣ୍ଡର ରେଡ଼ିଓରେ ପ୍ରଥମେ ବୋଫର୍ସ କମାଣ କ୍ରୟରେ ଉତ୍କୋଚ କାରବାର ହୋଇଛି ବୋଲି ସମ୍ବାଦ ପ୍ରକାଶ ହେବାରୁ ଏ ସମ୍ପର୍କରେ ରାଜନୈତିକ ସ୍ତରରେ ତନାଘନା ଆଲୋଚନା ଆରମ୍ଭ ହେଲା । ସୁଇଡ଼େନର ଗୋଟିଏ ପତ୍ରିକାରେ ମଧ୍ୟ କମାଣ କିଣାରେ ୧ ଶହ ୩୦ କୋଟି ମାର୍କିନ ଡ଼ଲାର ତତ୍କାଳୀନ ଭାରତର ଶାସକ ଦଳର ମୁଖ୍ୟ ବ୍ୟକ୍ତିମାନଙ୍କୁ ଲାଞ୍ଚ ଦିଆଯାଇଛି ବୋଲି ପ୍ରକାଶିତ ହୋଇଥିଲା । ୧୯୮୬ ମସିହାରେ ଭାରତକୁ କମାଣ ବିକ୍ରି ନିମିତ୍ତ ୨୫୦ ନିୟୁତ ଡ଼ଲାର ଲାଞ୍ଚ ଦେଇଥିଲା ବୋଲି ସୁଇଡ଼େନର ବୋଫର୍ସ କମ୍ପାନୀ ପ୍ରକାଶ କରିଛି । ଏହି ଉତ୍କୋଚର ଏକ ପଞ୍ଚମାଂଶ ଜେନିଭା ଓ ଜୁରିକର ବ୍ୟାଙ୍କରେ ଗଚ୍ଛିତ ରହିଛି । ରାଜୀବ

ଗାନ୍ଧି ପ୍ରଧାନମନ୍ତ୍ରୀ ଥିବା ସମୟରେ ପ୍ରତିରକ୍ଷା ସାମଗ୍ରୀ କ୍ରୟ କ୍ଷେତ୍ରରେ କୌଣସି ମଧ୍ୟସ୍ଥଙ୍କୁ ସ୍ଥାନ ଦିଆଯିବ ନାହିଁ ବୋଲି ଘୋଷଣା କରିଥିଲେ ହେଁ ବାସ୍ତବରେ ତାହା କରାଯାଇପାରି ନାହିଁ । ବୋଫର୍ସ କମାଣ ଚୁକ୍ତି ସ୍ୱାକ୍ଷରରେ ୧୪୨୭ କୋଟି ଟଙ୍କାର ୪୦ଟି ୧୫୫ ଏମ୍.ଏମ୍.ହାଓ୍ୱିଜର କମାଣ କିଣାଯିବାର ବ୍ୟବସ୍ଥା ରହିଥିଲା ଓ ଏଥିପାଇଁ ୬୪ କୋଟି ଟଙ୍କା କମିଶନ ଦିଆଯାଇଥିଲା । ଏହି ଉତ୍କୋଚର ଅଂଶୀଦାର ହେଉଛନ୍ତି ୫ ଜଣ ବ୍ୟକ୍ତି । ଜଣାଯାଏ ମଧ୍ୟସ୍ଥ ଉଇନ୍ ଚାଧା, ତାଙ୍କ ସ୍ତ୍ରୀ ଓ ପୁତ୍ର ଏବଂ ଇଟାଲିର ଶ୍ରୀ କ୍ୱାତ୍ରୋଚି ଓ ତାଙ୍କ ପତ୍ନୀ ଏହି କାରବାରର ମୁଖ୍ୟ କାର୍ପଟଦାର । ଏଠାରେ ଉଲ୍ଲେଖଯୋଗ୍ୟ ଯେ ସ୍ୱର୍ଗତ ପ୍ରଧାନମନ୍ତ୍ରୀ ରାଜୀବଗାନ୍ଧି ଙ୍କ ସହଧର୍ମିଣୀ ଶ୍ରୀମତୀ ସୋନିଆ ଗାନ୍ଧିଙ୍କର ନିକଟ ସମ୍ପର୍କୀୟ ହେଉଛନ୍ତି ଶ୍ରୀ କ୍ୱାତ୍ରୋଚି ଏବଂ ସେହି ଦୃଷ୍ଟିରୁ ରାଜୀବ ଗାନ୍ଧିଙ୍କ ସରକାରର ବିଭିନ୍ନ କ୍ଷେତ୍ରରେ ସେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ଶ୍ରୀ ଓଟାଭିଓ କ୍ୱାତ୍ରୋଚି ଇଟାଲିର ସ୍ନାମ ପ୍ରୋଗେଟିଭ ପ୍ରତିନିଧି ଭାବେ ଭାରତରେ କାର୍ଯ୍ୟ କରୁଥିଲେ । ବୋଫର୍ସ ଅନୁସନ୍ଧାନ ସମୟରେ ଆଶ୍ଚର୍ଯ୍ୟଜନକ ଭାବେ ସେ ୧୯୯୩ ମସିହାରେ ଭାରତରୁ ଖସିଯାଇ ଇଟାଲୀୟ ଫାର୍ମ 'ସ୍ନାମ ପ୍ରୋଗେଟିଭ'ର ବରିଷ୍ଠ ପ୍ରତିନିଧିଭାବେ ମାଲେସିଆ ଓ ପରେ ଦୁବାଇରେ ଅଛନ୍ତି ଓ ତାଙ୍କ ପତ୍ନୀଙ୍କର ମଧ ମୃତ୍ୟୁ ଘଟିଛି । ବର୍ତ୍ତମାନ ସୁଦ୍ଧା ଏ ସମ୍ପର୍କୀୟ ଏହି ଘଟଣାର ତଦନ୍ତ ଚାଲିଛି ଓ ଅନେକ ଆଶ୍ଚର୍ଯ୍ୟଜନକ ଘଟଣା ମଧ ପ୍ରକାଶିତ ହେବାରେ ଲାଗିଛି ।

ଭାରତର ପ୍ରତିରକ୍ଷାକୁ ସମୃଦ୍ଧ କରିବା କ୍ଷେତ୍ରରେ ବୋଫର୍ସ ତୋପର ଏକ ବିଶେଷ ଭୂମିକା ରହିଛି । ଏହା ମଧ ସ୍ୱୀକାର କରିବାକୁ ହେବ ଯେ, ଅପେକ୍ଷାକୃତ ଭାବେ ବୋଫର୍ସ ଏକ ଉତ୍ତମ ତୋପ । ମାତ୍ର ତା'ର କ୍ରୟ ସମୟରେ କମିଶନି କାରବାର ହେବା ନିଶ୍ଚିତ ଭାବରେ ଦୁର୍ଭାଗ୍ୟଜନକ । ପ୍ରଧାନମନ୍ତ୍ରୀଙ୍କ ସ୍ୱୀକାରୋକ୍ତି ପରେ ମଧ କିପରି ଏଥିରେ କମିଶନି କାରବାର ହେଲା, ତାହା ସବୁଠାରୁ ଆଶ୍ଚର୍ଯ୍ୟର ଘଟଣା । ପୁଣି ସନ୍ଦେହ କରାଯାଉଛି ଯେ ଜର୍ମାନ୍ ସବମେରିନ୍ କିଣା ବ୍ୟାପାରରେ ମଧ ଲାଞ୍ଚ କାରବାର ହୋଇଛି । କେନ୍ଦ୍ରୀୟ ତଦନ୍ତ ବ୍ୟୁରୋର ପୂର୍ବତନ ଯୁଗ୍ମ ନିର୍ଦ୍ଦେଶକ କେ. ମାଧବନ ୧୯୯୧ ରେ ଏହାର ତଦନ୍ତ କରି ୧୯୯୩ ରେ ଯେଉଁ ରିପୋର୍ଟ ଦେଇଥିଲେ, ଏଥିରେ ସେ ଉଲ୍ଲେଖ କରିଛନ୍ତି ସୁଇସ୍ ବ୍ୟାଙ୍କର ଟୁଲିପ, ମଣ୍ଟବ୍ଲାକ୍ ଏବଂ ଲୋଟସ୍ ଆକାଉଣ୍ଟରେ ୮୧ ନିୟୁତ କ୍ରୋନ୍‌ର ଜମା ରହିଛି । ଏହା ବ୍ୟତୀତ ଅନ୍ୟ ଏକ ଷଷ୍ଠ ଆକାଉଣ୍ଟରେ A.E. Services ମାଧମରେ ବହୁପରିମାଣରେ ଅର୍ଥ ଜମା ରହିଛି । ଜର୍ମାନ୍ ବୁଡ଼ାଜାହାଜ କ୍ରୟରୁ ମିଳିଥିବା କମିଶନ ଏଥିରେ ମଧ ଜମା କରାଯାଇଛି । ବୋଫର୍ସର ମୁଖ୍ୟ କର୍ମକର୍ତ୍ତା ମାର୍ଟିନ ଆରଡ଼କୋ ମଧ ତାଙ୍କ ଡ଼ାଏରିରେ କେତେକ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ଉପସ୍ଥାପନ କରିଛନ୍ତି । A.E. Services ମାଧମରେ ବହୁ ଅର୍ଥ କ୍ୱାତ୍ରୋଚିଙ୍କ ଆକାଉଣ୍ଟକୁ ଯାଇଛି ବୋଲି ଜଣାଯାଏ । ଭାରତର ପ୍ରତିରକ୍ଷା ଘଟଣା ସହିତ ଏହାର ପ୍ରତ୍ୟକ୍ଷ ସମ୍ପର୍କ ରହିଥିବାରୁ ସମ୍ପୂର୍ଣ୍ଣ ବିବରଣୀ ମିଳିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିବ । ସୁଇସ୍ କର୍ତ୍ତୃପକ୍ଷ ଏପର୍ଯ୍ୟନ୍ତ ଯେଉଁ ତଥ୍ୟ ଦେଇଛନ୍ତି ତାହା ସମ୍ପୂର୍ଣ୍ଣ ନୁହେଁ । ଦ୍ୱିତୀୟ ଦଫାରେ ଅଧିକ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ମିଳିବାର ଅଛି; ସେପର୍ଯ୍ୟନ୍ତ ଧୈର୍ଯ୍ୟ ଧରିବାକୁ ପଡ଼ିବ । ନଚେତ୍ ତଥ୍ୟ ମିଳିବାରେ ବାଧା ସୃଷ୍ଟି ହୋଇପାରେ ।

ବୋଫର୍ସ ଘଟଣାକୁ ଭିତ୍ତିକରି ଭାରତରେ ରାଜନୈତିକ ସ୍ତରରେ ଉଷ୍ମ ବାତାବରଣ ସୃଷ୍ଟି ହୋଇଛି । ଏହି ମାମଲାକୁ କେନ୍ଦ୍ରକରି ବିଶ୍ୱନାଥ ପ୍ରତାପ ସିଂହ କଂଗ୍ରେସ ତ୍ୟାଗ କରିବା ସଙ୍ଗେ ସଙ୍ଗେ ବୋଫର୍ସ ଦୁର୍ନୀତି ଧ୍ୱନିଦେଇ ୧୯୮୯ ନିର୍ବାଚନରେ ଜୟଲାଭ କଲେ । ସେ ପ୍ରଧାନମନ୍ତ୍ରୀ ହେବାପରେ ୧୯୯୦ ମସିହା ଜାନୁଆରୀ ମାସରେ ବୋଫର୍ସ ସମ୍ପର୍କୀୟ କାଗଜପତ୍ର ପଠାଇବାକୁ ସୁଇଜରଲ୍ୟାଣ୍ଡ ବ୍ୟାଙ୍କକୁ ଅନୁରୋଧ କରିଥିଲେ । କେନ୍ଦ୍ରୀୟ ତଦନ୍ତ ବ୍ୟୁରୋ ଦ୍ୱାରା ବୋଫର୍ସ କମିଶନି ସମ୍ବନ୍ଧରେ ଅଭିଯୋଗ ପତ୍ର ଦାଖଲ କରାଗଲା । ଦୀର୍ଘ ସାତ ବର୍ଷ ପରେ ତଦନ୍ତର କେତେକ ସତ୍ୟ ଉଦ୍‌ଘାଟିତ ହେଲା । ୧୯୯୭ ମସିହା ଜାନୁଆରୀ ୨୧ ତାରିଖରେ ବୋଫର୍ସ ଦୁର୍ନୀତି ସମ୍ପର୍କୀୟ କାଗଜପତ୍ର ପହଞ୍ଚିବା ପରେ କେନ୍ଦ୍ରୀୟ ତଦନ୍ତବ୍ୟୁରୋର ହେପାଜତରେ ରଖାଯାଇଛି । କେତେକ ରାଜନୈତିକ ଦଳ ଏହି ତଦନ୍ତର ଫଳାଫଳ ଘୋଷଣା କରାଯାଉ ବୋଲି ଦାବି ଉପସ୍ଥାପନ କରୁଥିବା ସମୟରେ ଅନ୍ୟ କେତେକ ନିରବତା ଅବଲମ୍ବନ କରୁଛନ୍ତି । ଶ୍ରୀମତୀ ସୋନିଆ ଗାନ୍ଧୀଙ୍କୁ ଏ ସମ୍ପର୍କରେ ପଚାରିବା ପାଇଁ କେତେକ ପ୍ରସ୍ତାବ ଆଗତ କରୁଥିବା ସମୟରେ କଂଗ୍ରେସର ହାଇକମାଣ୍ଡ ଆପତ୍ତି ଉତ୍‌ଥାପନ କରିଛନ୍ତି, ଅବଶ୍ୟ ତତ୍କାଳୀନ ପ୍ରଧାନମନ୍ତ୍ରୀ ଏଚ.ଡ଼ି. ଦେବଗୌଡ଼ାଙ୍କ ନିର୍ଦ୍ଦେଶରେ ପାଞ୍ଚଜଣଙ୍କର ନାମ ପ୍ରକାଶ କରାଯାଇଛି । ଏହା ସତ୍ତ୍ୱେ ସେହି ରିପୋର୍ଟରେ ଆଉ କେତେଜଣ ବିଶିଷ୍ଟ ବ୍ୟକ୍ତିଙ୍କର ନାମ ରହିଥିବାର ଜଣାଯାଏ । ଜଣେ ପ୍ରଧାନମନ୍ତ୍ରୀ ଏପରି ଏକ ଘଟଣାରେ ଜଡ଼ିତ ଅଛନ୍ତି ବୋଲି କେତେକ ମଧ ସନ୍ଦେହ କରୁଛନ୍ତି । ରିପୋର୍ଟ ସମ୍ପୂର୍ଣ୍ଣ ଭାବରେ ପ୍ରକାଶ ନ ହେବା ପର୍ଯ୍ୟନ୍ତ ତାହା ଗୋଟିଏ ରହସ୍ୟ ଘଟଣା ହୋଇ ରହିଯାଇଥିବ । ସି.ବି.ଆଇ.ର ହସ୍ତଗତ ହୋଇଥିବା ଏହି ଗୁରୁତ୍ୱପୂର୍ଣ୍ଣ ଦଲିଲ ଅଦାଲତରେ ଦାଖଲ କରାଯାଇଥିଲା । ମାତ୍ର ସ୍ୱତନ୍ତ୍ର ଜଜ୍ ଅଜିତ୍ ଭାରିହୋକ୍ ଏହାର ତଦନ୍ତ ନିମିତ୍ତ ପୁନଃ କେନ୍ଦ୍ରୀୟ ତଦନ୍ତ ବ୍ୟୁରୋକୁ ହସ୍ତାନ୍ତର କରିଛନ୍ତି । ଏଥିରେ ତତ୍କାଳୀନ ପ୍ରଧାନମନ୍ତ୍ରୀଙ୍କ କେତେକ ଅନ୍ତରଙ୍ଗ ବ୍ୟକ୍ତି ଓ ରାଜନୈତିକ ବ୍ୟକ୍ତି ଜଡ଼ିତ ଥିବାର ଅନୁମିତ ହେଉଛି । ମାତ୍ର ଏକଥା ସତ୍ୟ ଯେ, ସୁଇସ୍ ବ୍ୟାଙ୍କ୍ ବୋଫର୍ସ ସମ୍ପର୍କୀୟ ସମସ୍ତ କାଗଜପତ୍ର ହସ୍ତାନ୍ତର କରି ନାହାନ୍ତି । ବ୍ୟାଙ୍କ କର୍ତ୍ତୃପକ୍ଷ ସର୍ତ୍ତ ଆରୋପ କରି କହିଛନ୍ତି ପ୍ରଦାନ କରାଯାଉଥିବା ତଥ୍ୟ କେବଳ ଅନୁସନ୍ଧାନ କାର୍ଯ୍ୟରେ ବ୍ୟବହୃତ ହୋଇପାରିବ; ମାତ୍ର କୌଣସି ରାଜନୈତିକ କାରଣ କିମ୍ବା ରାଜନୈତିକ ଦଳ ଅଥବା ବ୍ୟକ୍ତିଙ୍କୁ ସମାଲୋଚନା ବା ଅପଦସ୍ତ କରିବା ନିମିତ୍ତ ବ୍ୟବହାର କରାଯାଇପାରିବ ନାହିଁ । ଯଦି ବର୍ତ୍ତମାନ ରିପୋର୍ଟକୁ ସମ୍ପୂର୍ଣ୍ଣ ପ୍ରକାଶ କରାଯାଏ, ତେବେ ସର୍ତ୍ତଭଙ୍ଗଜନିତ କାରଣରୁ ମିଳିବାକୁ ଥିବା ଅନ୍ୟାନ୍ୟ ତଥ୍ୟ ସୁଇସ୍ କର୍ତ୍ତୃପକ୍ଷଙ୍କ ନିକଟରୁ ମିଳିବ ନାହିଁ । ମାତ୍ର ଏହାକୁ ନେଇ ରାଜନୈତିକ ସ୍ତରରେ ଆଲୋଚନାର ଅନ୍ତ ନାହିଁ । କେତେକ ପ୍ରଭାବଶାଳୀ ବ୍ୟକ୍ତି ତତ୍କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀ ଦେବଗୌଡ଼ାଙ୍କ ଉପରେ ବିଭିନ୍ନ ସମୟରେ ଚାପ ପ୍ରୟୋଗ କରିଛନ୍ତି, ଯେଉଁଥିପାଇଁ ନିରପେକ୍ଷ ଭାବରେ ତଦନ୍ତ କରୁଥିବା କେନ୍ଦ୍ରୀୟ ତଦନ୍ତ ବ୍ୟୁରୋର ନିର୍ଦ୍ଦେଶକ ଶ୍ରୀ ଯୋଗୀନ୍ଦ୍ର ସିଂହଙ୍କୁ ବଦଳି କରାଗଲା । ରାଜନୈତିକ କାରଣରୁ ଏହା ଘଟିଛି ବୋଲି ସମସ୍ତେ ଅନୁଭବ କରୁଛନ୍ତି । ନ୍ୟାୟପାଳିକାର କାର୍ଯ୍ୟ ଏ କ୍ଷେତ୍ରରେ ଅତୀବ ପ୍ରଶଂସନୀୟ ।

ରାଜୀବ ଗାନ୍ଧି ପ୍ରଧାନମନ୍ତ୍ରୀ ଥିବା ସମୟରେ ସ୍ୱଷ୍ଟୋକ୍ତି କରିଥିଲେ, ପ୍ରତିରକ୍ଷା କିଣା ସାମଗ୍ରୀରେ କୌଣସି ପ୍ରକାର କମିଶନି କାରବାରକୁ ପ୍ରଶ୍ରୟ ଦିଆଯିବ ନାହିଁ, ମାତ୍ର ବୋଫର୍ସ କ୍ରୟରେ ରାଜୀବଗାନ୍ଧିଙ୍କ ନାମ ଜଡ଼ିତ ଥିଲେ ହେଁ, ସେତେବେଳେ ସେ ଏହି କମିଶନି କାରବାରରେ ଆଦୌ ଜଡ଼ିତ ନୁହନ୍ତି ବୋଲି ସ୍ୱଷ୍ଟୀକରଣ ଦେଇଥିଲେ । ଏହା ସହିତ ସେ ଲୋକସଭାରେ କହିଥିଲେ କଂଗ୍ରେସ (ଇ) ଦଳର ରାଜନୈତିକ ସ୍ଥିତିକୁ ବଦନାମ କରିବା ନିମିତ୍ତ ଏହା ଏକ ସୁପରିକଳ୍ପିତ ଚକ୍ରାନ୍ତ । ମାତ୍ର ତଦନ୍ତ ସମୟରେ ଅନେକ ଗୋପନୀୟ ତଥ୍ୟ ଉଦ୍‌ଘାଟିତ ହେଲା । ଏଥିରେ ମଧ୍ୟସ୍ଥ କାରବାର ହୋଇଥିବାର ବିଶ୍ୱାସଯୋଗ୍ୟ ପ୍ରମାଣ ମଧ୍ୟ ରହିଛି । ଉଇନ ଚାଧା ଓ କ୍ୱାତ୍ରୋଚିଙ୍କ ମାଧ୍ୟମରେ ଏହି କାରବାର ହୋଇଛି ବୋଲି ଧୀରେ ଧୀରେ ପ୍ରମାଣ ମିଳୁଛି । କ୍ୱାତ୍ରୋଚି ଶ୍ରୀମତୀ ସୋନିଆ ଗାନ୍ଧୀଙ୍କ ସମ୍ପର୍କୀୟ ହୋଇଥିବାରୁ କଂଗ୍ରେସ ସରକାରରେ ତାଙ୍କର ଅଖଣ୍ଡ କ୍ଷମତା ରହିଥିଲା । ଏପରିକି ରାଜୀବ ଗାନ୍ଧି ତାଙ୍କ ପରାମର୍ଶ ଗ୍ରହଣ କରିବାକୁ ମନ୍ତ୍ରିମାନଙ୍କୁ ନିର୍ଦ୍ଦେଶ ଦେଉଥିଲେ । ବୋଫର୍ସ କମାଣ କାରବାରରେ ମଧ୍ୟ ତାଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥିଲା । ଅନୁମାନ କରାଯାଏ ବୋଫର୍ସର ମଧ୍ୟସ୍ଥଭାବେ ଉଇନ ଚାଧା, କ୍ୱାତ୍ରୋଚି ଓ ହିନ୍ଦୁଜା ଭାଇମାନେ ସଂପୃକ୍ତ ରହିଥିଲେ ।

ବୋଫର୍ସ ତଦନ୍ତ ପାଇଁ ପ୍ରଥମେ ଭି.ପି. ସିଂହ ଉଲ୍ଲେଖଯୋଗ୍ୟ ପଦକ୍ଷେପ ଗ୍ରହଣ କରିଥିଲେ । ୧୯୯୧ ମସିହାରେ ସି.ବି.ଆଇ. ର ପୂର୍ବତନ ଯୁଗ୍ମ ନିର୍ଦ୍ଦେଶକ କେ. ମାଧବନ ପ୍ରଥମେ ଏହି ଘଟଣାର ତଦନ୍ତ ଆରମ୍ଭ କରିଥିଲେ । ୧୯୯୩ ମସିହାରେ ପ୍ରକାଶିତ ରିପୋର୍ଟରେ ସୁଇସ୍‌ବ୍ୟାଙ୍କ୍‌ରେ ବୋଫର୍ସ କମିଶନର କିଛି ଅଂଶ ଗଚ୍ଛିତ ଅଛି ବୋଲି ସେ ଉଲ୍ଲେଖ କରିଥିଲେ । ବୋଫର୍ସର ଅନ୍ୟତମ ମୁଖ୍ୟ ମାର୍ଟିନ୍ ଆରଡବୋଙ୍କ ଡ଼ାଏରିରେ 'କ୍ୟୁ' ଏବଂ 'ଆର୍' ପ୍ରତୀକାତ୍ମକ ନାମ ରହିଛି, ଯାହାର ରହସ୍ୟ ଉନ୍ମୋଚନ ହେଲେ ବହୁ ଲୁକ୍‌କାୟିତ ଘଟଣା ଆଲୋକକୁ ଆସିପାରିବ । ଭି.ପି.ସିଂହ ସୁଇସ୍ କର୍ତ୍ତୃପକ୍ଷଙ୍କୁ ବୋଫର୍ସ ସମ୍ପର୍କୀୟ କାଗଜପତ୍ର ପଠାଇବାକୁ ଅନୁରୋଧ କରି ପତ୍ର ଲେଖିବା ପରେ ଏହି ବ୍ୟାପାରକୁ ଗୁପ୍ତ ରଖିବା ନିମିତ୍ତ ଏଥି ସହିତ ଜଡ଼ିତ ଥିବା ଉଇନ ଚାଧା, ହିନ୍ଦୁଜା ଭାଇଗଣ ଏବଂ ଇଟାଲୀର କ୍ୱାତ୍ରୋଚି ଫେଡେରାଲ କୋର୍ଟରେ ଆବେଦନ କରିଥିଲେ । ଏହି ଆବେଦନର ବିଚାର ଶେଷ ହେବାକୁ ଦୀର୍ଘ ସାତବର୍ଷ ଲାଗିଥିଲେ ହେଁ ତଥାପି ମାମଲାର ଉପସଂହାର ଘଟି ନାହିଁ । ଏବେ ମଧ୍ୟ ସୁଇସ୍ ଫେଡ଼େରାଲ କୋର୍ଟରେ ଏ ସଂକ୍ରାନ୍ତୀୟ ୬ଷ୍ଠ ଆବେଦନ ଫଏସଲା ହୋଇପାରି ନାହିଁ । ସାତ ବର୍ଷର ସମୀକ୍ଷାପରେ ମଧ୍ୟ ସମସ୍ତ କାଗଜ ସି.ବି.ଆଇ.ଙ୍କ ହସ୍ତଗତ ହୋଇ ପାରିନାହିଁ । ଅନ୍ୟ ଏକ ସେଟ୍ ଦଲିଲ ଏବେବି ସୁଇସ୍ ବ୍ୟାଙ୍କରେ ରହିଛି । ଏହି ଦଲିଲ ହସ୍ତାନ୍ତର ନ କରିବା ପାଇଁ ବିଭିନ୍ନ ସ୍ତରରେ ଉଦ୍ୟମ ଜାରି ରହିଛି । ତେବେ ପ୍ରଥମ କିସ୍ତିର କାଗଜପତ୍ର ସୁଇସ୍ ବିଚାର ମନ୍ତ୍ରଣାଳୟ ପକ୍ଷରୁ ସୁଇଜରଲ୍ୟାଣ୍ଡରେ ଅବସ୍ଥାପିତ ଭାରତୀୟ ରାଷ୍ଟ୍ରଦୂତ ଶ୍ରୀ କେ.ପି. ବାଳକୃଷ୍ଣନଙ୍କୁ ଅର୍ପଣ କରାଯାଇଥିଲା । ଯେତିକି କାଗଜପତ୍ର ମିଳିଛି, ସେଥିରୁ ପାଞ୍ଚଜଣଙ୍କର ନାମ ପ୍ରକାଶିତ ହୋଇଛି । ଆହୁରି ଅନେକ ବିଶିଷ୍ଟ

ବ୍ୟକ୍ତିଙ୍କର ନାମ ଗୁପ୍ତ ଭାବରେ ରହିଛି । ଇତିମଧ୍ୟରେ ଅବସରପ୍ରାପ୍ତ ସେନାପ୍ରଧାନ ଜେନେରାଲ ସୁନ୍ଦରଜୀ ଏବଂ ଲେଫ୍‌ଟନାର୍ଣ୍ଣ ଜେନେରାଲ ମାୟାଦାସଙ୍କୁ ସି.ବି. ଆଇ. ନିର୍ଦ୍ଦେଶକ ଶ୍ରୀ ଯୋଗୀନ୍ଦ୍ର ସିଂହ ଦୁର୍ନୀତିରେ ଲିପ୍ତ ଥିବା ସନ୍ଦେହରେ ପଚ଼ରାଉଚୁରା କରିବାରୁ ଅତି ଅପମାନଜନକ ଭାବରେ ତାଙ୍କୁ ଅନ୍ୟକ୍ଷେତ୍ରକୁ ବଦଳି କରାଗଲା । ତା'ର ନିରବ ପ୍ରତିବାଦରେ ସେ ଛୁଟିରେ ରହିଲେ । ତେଣୁ ବୋଫର୍ସ ଦୁର୍ନୀତି ଭବିଷ୍ୟତରେ କେଉଁ ଦିଗକୁ ଗତି କରିବ, ତାହା ଜାଣିବା ପାଇଁ ଏ ଦେଶର ବୁଦ୍ଧିଜୀବୀ ଚାତକ ପରି ଚାହିଁ ବସିଛନ୍ତି ।

ଭାରତର ପ୍ରତିରକ୍ଷା ବିଭାଗ ଦେଶର ଭବିଷ୍ୟତ । ତେଣୁ ପ୍ରତିରକ୍ଷା କ୍ଷେତ୍ରରେ ସାଧୁତା ଅବଲମ୍ବନ କରାଯିବା ସର୍ବାଦୌ ଆବଶ୍ୟକ । ମାତ୍ର ବୋଫର୍ସ ଦୁର୍ନୀତି ପ୍ରକାଶ ପାଇବା ପରେ ଏ ଦେଶର ରାଜନୈତିକ ନେତା କେତେ ପରିମାଣରେ ସ୍ୱାର୍ଥପର ତା'ର ପ୍ରମାଣ ମିଳିଗଲା । ଦେଶର ସାର୍ବଭୌମତ୍ୱ ଏପରି ନେତାଙ୍କ ହସ୍ତରେ ବିଡ଼ମ୍ବିତ ହେବାର ବହୁ ସମ୍ଭାବନା ରହିଛି । ପ୍ରତିରକ୍ଷା କ୍ଷେତ୍ରରେ ଯଦି ଏପରି ଦୁର୍ନୀତି ହୁଏ ତେବେ ଦେଶର ଭବିଷ୍ୟତ ଯେ ଅନ୍ଧକାରାଚ୍ଛନ୍ନ ଏଥିରେ ଦ୍ୱିରୁକ୍ତି ହେବାର କିଛି ନାହିଁ । ଦୁଃଖର ବିଷୟ ଭାରତର ଭାଗ୍ୟନିୟନ୍ତା ବହୁପରିମାଣରେ ନିଜର ବ୍ୟକ୍ତିଗତ ସ୍ୱାର୍ଥ ପାଇଁ ସାମୂହିକ ସ୍ୱାର୍ଥକୁ ଜଳାଞ୍ଜଳି ଦେଉଛନ୍ତି । କ୍ୱାତ୍ରୋଚିଙ୍କ ପରି ବିଦେଶୀ ନିକଟ ଅତୀତରେ ଭାରତର ବିଭିନ୍ନ ଘଟଣାରେ ଯେପରି ଅଯଥା ହସ୍ତକ୍ଷେପ କରି ତତ୍କାଳୀନ ପେଟ୍ରୋଲିୟମ ମନ୍ତ୍ରୀ ଶ୍ରୀ ନୟନ କିଶୋର ଶର୍ମା ଓ କେନ୍ଦ୍ର ରସାୟନ ତଥା ସାରବିଭାଗ ମନ୍ତ୍ରୀ ଶ୍ରୀ ରାମଚନ୍ଦ୍ର ରଥଙ୍କୁ ମାନସିକ ଯନ୍ତ୍ରଣା ଦେଇଛନ୍ତି, ତାହା ଅତ୍ୟନ୍ତ କ୍ଷୋଭ ଓ ଲଜ୍ଜାର ବିଷୟ । ଅଥଚ ବୋର୍ଫସ କାରବାରରେ ଉଇନ୍ ଚାଧା ତଥା କ୍ୱାତ୍ରୋଚିଙ୍କୁ ଜେରା କରିବାର ଆବଶ୍ୟକତା ଥିବା ସମୟରେ ସେମାନେ ଚତୁରତାର ସହିତ ଭାରତରୁ ଖସି ଚାଲିଗଲେ । ଏ କ୍ଷେତ୍ରରେ ଭାରତ ସେପରି କିଛି ଆଖିଦୃଶିଆ ପଦକ୍ଷେପ ଗ୍ରହଣ କରିପାରିଲା ନାହିଁ । ପୁନରାୟ ବୋଫର୍ସ ଦୁର୍ନୀତିର ତଦନ୍ତକୁ ବାଧା ଦେବା ପାଇଁ ଜାତୀୟ ତଥା ଆନ୍ତର୍ଜାତୀୟ ସ୍ତରରେ ଯେଉଁ ହୀନଉଦ୍ୟମ ଜାରି ରହିଛି, ଏହାର ସୁଫଳ ପ୍ରତି ବହୁ ବିଦ୍ୱାନ ସନ୍ଦିହାନ । ସୁଇସ୍ ବ୍ୟାଙ୍କ୍ ଏହାର ଦ୍ୱିତୀୟ ଦଫା କାଗଜପତ୍ର ପଠାଇ ନ ଥିବା ସତ୍ତ୍ୱେ ବହୁ ଲୁକ୍‌କାୟିତ ଘଟଣା ଅନ୍ଧକାର ମଧ୍ୟରେ ରହିଯିବ ।

ସାମାନ୍ୟ ନିରପେକ୍ଷତା ଅବଲମ୍ବନ କରାଗଲେ ବୋଫର୍ସ ଦୁର୍ନୀତି ସମ୍ପୂର୍ଣ୍ଣ ପ୍ରକାଶିତ ହୋଇପାରନ୍ତା । ଖୁସିର ବିଷୟ ନ୍ୟାୟପାଳିକା ଏ କ୍ଷେତ୍ରରେ ଯେପରି ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି, ସେଥିରୁ ବୋଫର୍ସ ଅନୁସନ୍ଧାନକୁ ଅନ୍ୟ ମାର୍ଗରେ ଗତି କରାଇବା କଷ୍ଟକର ହୋଇପଡ଼ିବ । ବିଶେଷକରି କୌଣସି ରାଜନୈତିକ ନେତା ଅନୁସନ୍ଧାନର ଗତିପଥକୁ ବଦଳାଇବାକୁ ସମର୍ଥ ହୋଇପାରିବେ ନାହିଁ । ବର୍ତ୍ତମାନ ସବୁ ସ୍ତରରେ ଏକ ସଚେତନତା ସୃଷ୍ଟି ହୋଇଥିବାରୁ କୌଣସି ବ୍ୟକ୍ତି ଏ କ୍ଷେତ୍ରରେ ହସ୍ତକ୍ଷେପ କରିବାକୁ ସାହସ କରିପାରିବେ ନାହିଁ । ଏହି ବ୍ୟାପାର ସହିତ ଦେଶର ଭବିଷ୍ୟତର ପ୍ରଶ୍ନ ଜଡ଼ିତ ଥିବାରୁ ସୁଇସ୍ ବ୍ୟାଙ୍କ୍‌ରେ ଗଚ୍ଛିତ ଥିବା ଅନ୍ୟ କାଗଜପତ୍ର ଭାରତକୁ ଆଣିବା ନିମିତ୍ତ ଚେଷ୍ଟା ଅବ୍ୟାହତ ରହିବା ଉଚିତ । ସମସ୍ତ ପଦକ୍ଷେପ ସତର୍କତାର

ସହିତ ଗ୍ରହଣ କରାଯିବା ବିଧେୟ । କାରଣ ତରବର ଭାବରେ କାର୍ଯ୍ୟସୂଚୀ ଗ୍ରହଣ କଲେ, ହୁଏତ ଅନୁସନ୍ଧାନରେ ବିଘ୍ନ ଉପୁଜିବାର ସମ୍ଭାବନା ରହିଛି । ଦେଶର ହିତ ଦୃଷ୍ଟିରୁ, ଦଳମତ ନିର୍ବିଶେଷରେ ସମସ୍ତେ ବୋଫର୍ସ ଅନୁସନ୍ଧାନକୁ ତ୍ୱରାନ୍ୱିତ କରିବା ପାଇଁ ଅନୁକୂଳ ବାତାବରଣ ସୃଷ୍ଟି କରିବା ଉଚିତ । ଏହି ତଦନ୍ତ ଉପରେ ହିଁ ଦେଶର ଭବିଷ୍ୟତ ଓ ସମ୍ମାନ ବହୁପରିମାଣରେ ନିର୍ଭର କରେ ।



# ସଂସଦୀୟ ସରକାର

**(ଉପକ୍ରମ, ସଂସଦୀୟ ସରକାର କ'ଣ, ସଂସଦୀୟ ସରକାରର ବୈଶିଷ୍ଟ୍ୟ, ଉପକାରିତା; ତ୍ରୁଟି; ଭାରତରେ ସଂସଦୀୟ ସରକାର; ସଂସଦୀୟ ସରକାର ଓ ଦ୍ୱିଦଳୀୟ ନୀତି; ଉପସଂହାର)**

ବ୍ରିଟିଶ୍ ଉପନିବେଶବାଦରୁ ମୁକ୍ତିଲାଭ କରି ୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଠାରୁ ଭାରତ ଏକ ପୂର୍ଣ୍ଣ ଗଣତନ୍ତ୍ର ରାଷ୍ଟ୍ରର ମର୍ଯ୍ୟାଦା ଲାଭ କରିଛି । ଭାରତୀୟ ସମ୍ବିଧାନ ବହୁ ପରିମାଣରେ ଇଂଲଣ୍ଡର ସମ୍ବିଧାନକୁ ଅନୁସରଣ କରିଛି । ଇଂଲଣ୍ଡର ସମ୍ବିଧାନ ଅଲିଖିତ ଏବଂ ତାଙ୍କର ପରମ୍ପରା ମଧ୍ୟ ଅଲିଖିତ । ମାତ୍ର ସେ ଦେଶର ଜନସାଧାରଣ ତାଙ୍କର ଅଲିଖିତ ସମ୍ବିଧାନ ଓ ପରମ୍ପରାକୁ ଯଥେଷ୍ଟ ସମ୍ମାନ ପ୍ରଦର୍ଶନ କରିଥାନ୍ତି । ସ୍ୱାଧୀନତା ଲାଭ ପରେ ଭାରତ ଇଂଲଣ୍ଡର ସଂସଦୀୟ ସରକାର ବ୍ୟବସ୍ଥାକୁ ଗ୍ରହଣ କରିନେଇଛି । ବର୍ତ୍ତମାନ ବିଶ୍ୱର ବହୁ ରାଷ୍ଟ୍ରରେ ସଂସଦୀୟ ସରକାର ବା ଗଣତନ୍ତ୍ର ବ୍ୟବସ୍ଥା ପ୍ରଚଳିତ । ଇଂଲଣ୍ଡ, ଭାରତ, ଅଷ୍ଟ୍ରେଲିଆ, କାନାଡ଼ା, ଜାପାନ, ହଲାଣ୍ଡ ଆଦି ଦେଶରେ ଏହି ପ୍ରକାର ସରକାର ପ୍ରଚଳିତ । ବିଶ୍ୱରେ ସର୍ବପ୍ରଥମେ ଇଂଲଣ୍ଡରେ ଅଷ୍ଟାଦଶ ଶତକର ଆଦ୍ୟଭାଗରେ ଏ ପ୍ରକାର ସରକାର ପ୍ରସ୍ତୁତ ହୋଇଥିଲା । ପରବର୍ତ୍ତୀ କାଳରେ ଏହି ସରକାରର ବହୁ ସୁଗୁଣ ପରିଲକ୍ଷିତ ହେବାରୁ ବିଶ୍ୱର ଅନ୍ୟାନ୍ୟ ରାଷ୍ଟ୍ର ଏ ପ୍ରକାର ସରକାରକୁ ଗ୍ରହଣ କରିନେଇଛନ୍ତି । ସାଧାରଣତଃ ଦେଶର ଅବସ୍ଥାକୁ ବିଚାର ପରିସରଭୁକ୍ତ କରି ରାଷ୍ଟ୍ର ପାଇଁ କେଉଁ ସରକାର ଆବଶ୍ୟକ, ତାହାର ନିଷ୍ପତ୍ତି କରାଯାଇଥାଏ । ଯେଉଁ ସରକାର ମୁଖ୍ୟତଃ ରାଷ୍ଟ୍ରର ସାର୍ବଭୌମତ୍ୱ ରକ୍ଷା କରିବା ସଙ୍ଗେ ସଙ୍ଗେ ଜନସାଧାରଣଙ୍କ ଆଶା-ଆକାଙ୍କ୍ଷାକୁ ଯଥାଯଥଭାବେ ପରିପୂରଣ କରିପାରୁଥିବ, ସେହି ପ୍ରକାର ସରକାର ସର୍ବଦା ଅଭିନନ୍ଦନୀୟ । ଭାରତ ସ୍ୱାଧୀନତା ଲାଭ କରିବା ସମୟରେ ତତ୍କାଳୀନ ରାଷ୍ଟ୍ରନାୟକ ଓ ସମ୍ବିଧାନ ବିଶାରଦଗଣ ଭାରତ ପାଇଁ ସଂସଦୀୟ ସରକାରର ଆବଶ୍ୟକତା ଅନୁଭବ କରି ଭାରତୀୟ ସମ୍ବିଧାନରେ ସଂସଦୀୟ ସରକାରର ବ୍ୟବସ୍ଥା କରିଯାଇଛନ୍ତି ଓ ସଂପ୍ରତି ଭାରତରେ ସେହି ପ୍ରକାର ସରକାର ତିଷ୍ଠି ରହିଛି ।

ବ୍ୟବସ୍ଥାପିକା ଏବଂ କାର୍ଯ୍ୟପାଳିକାର ସମ୍ବନ୍ଧ ଅନୁଯାୟୀ ସରକାରକୁ ମୁଖ୍ୟତଃ ସଂସଦୀୟ ଓ ରାଷ୍ଟ୍ରପତୀୟ ସରକାର : ଏହିପରି ଦୁଇ ଭାଗରେ ବିଭକ୍ତ କରାଯାଇଥାଏ । ରାଷ୍ଟ୍ରପତୀୟ ସରକାରରେ ରାଷ୍ଟ୍ରପତି ମୁଖ୍ୟ ରୂପେ କାର୍ଯ୍ୟ କରିବା ସମୟରେ ସଂସଦୀୟ ସରକାରରେ

ପ୍ରଧାନମନ୍ତ୍ରୀ ମୁଖ୍ୟ ଭାବେ କାର୍ଯ୍ୟ କରିଥାନ୍ତି । ତେବେ ବ୍ୟବସ୍ଥାପିକା ଓ କାର୍ଯ୍ୟପାଳିକା ବିଭାଗର ପରସ୍ପର ବୁଝାମଣା ଏବଂ ସହଯୋଗ ଉପରେ ସଂସଦୀୟ ସରକାର ପର୍ଯ୍ୟବସିତ । ଏହି ସରକାରରେ କାର୍ଯ୍ୟପାଳିକା ବ୍ୟବସ୍ଥାପିକାର ଅଂଶବିଶେଷ ଏବଂ ସମସ୍ତ କାର୍ଯ୍ୟ ପାଇଁ ତା' ନିକଟରେ ଦାୟୀ ରହିଥାଏ । ସେଥିପାଇଁ ଏହି ସରକାର ଉତ୍ତରଦାୟୀ ବା ଦାୟିତ୍ୱଶୀଳ ସରକାରଭାବେ ପରିଚିତ । ସଂସଦୀୟ ସରକାରରେ ରାଷ୍ଟ୍ରପତି ତାଙ୍କର ଅବାଧ କ୍ଷମତା ଜାହିର କରିପାରିବେ ନାହିଁ । ପ୍ରଧାନମନ୍ତ୍ରୀ ହିଁ ଏହି ସରକାରର ପ୍ରକୃତ ମୁଖ୍ୟ ରୂପେ କାର୍ଯ୍ୟନିର୍ବାହ କରିଥାନ୍ତି । ଏହି ସରକାରରେ ବ୍ୟବସ୍ଥାପିକାର ସଦସ୍ୟମାନେ ସରକାରଙ୍କୁ ବିଭିନ୍ନ ପ୍ରଶ୍ନ ପଚାରିବା ସଙ୍ଗେ ସଙ୍ଗେ ସରକାରଙ୍କ ତରଫରୁ ସଂସଦରେ ସେମାନଙ୍କ ପ୍ରଶ୍ନର ସନ୍ତୋଷଜନକ ଉତ୍ତର ପ୍ରଦାନ କରାଯାଇଥାଏ । ଦେଶର ଆବଶ୍ୟକତା ଓ ପରିବର୍ତ୍ତିତ ପରିସ୍ଥିତିକୁ ଆଖିରେ ରଖି ସମ୍ବିଧାନର ସଂଶୋଧନ ସହଜରେ କରାଯାଇଥାଏ । ସଂସଦର ଉଭୟ ଗୃହ ଏଥିରେ ପ୍ରମୁଖ ଭୂମିକା ଗ୍ରହଣ କରିଥାନ୍ତି ।

କେତେକ ଦୃଷ୍ଟିକୋଣରୁ ସଂସଦୀୟ ସରକାରର ମହତ୍ତ୍ୱ ସ୍ୱୀକାର୍ଯ୍ୟ । ଦ୍ୱୈତ କାର୍ଯ୍ୟପାଳିକା ରହିଥିବାରୁ କେହି ସ୍ୱେଚ୍ଛାଚାରୀ ଭାବେ କୌଣସି କାର୍ଯ୍ୟ କରିବାକୁ ସମର୍ଥ ହୋଇ ନ ଥାନ୍ତି । ପରସ୍ପରର ବୁଝାମଣା ଓ ସହଯୋଗ ଉପରେ ହିଁ ଏକ ନିର୍ଦ୍ଦିଷ୍ଟ କାର୍ଯ୍ୟ ପାଇଁ ନିଷ୍ପତ୍ତି ଗ୍ରହଣ କରାଯାଇଥାଏ । ବ୍ୟବସ୍ଥାପିକା ତଥା ମନ୍ତ୍ରିମଣ୍ଡଳ ମଧ୍ୟରେ ସୁସମ୍ପର୍କ ସ୍ଥାପିତ ହୋଇଥାଏ । କୌଣସି କାର୍ଯ୍ୟର ନିର୍ଦ୍ଦିଷ୍ଟ ରୂପରେଖ ପ୍ରସ୍ତୁତ ପୂର୍ବରୁ ବ୍ୟବସ୍ଥାପିକା ସହିତ ମନ୍ତ୍ରିମଣ୍ଡଳ ପରାମର୍ଶ କରୁଥିବାରୁ ଉଭୟଙ୍କ ମଧ୍ୟରେ ଉତ୍ତମ ସମ୍ବନ୍ଧ ସ୍ଥାପିତ ହେବାର ଅବକାଶ ସୃଷ୍ଟି ହୋଇଥାଏ । ମନ୍ତ୍ରିମଣ୍ଡଳ ସଂସଦରୁ ସୃଷ୍ଟି ହୋଇଥିବାରୁ ସ୍ୱେଚ୍ଛାଚାରୀ ହେବାର ଅବକାଶ କ୍ଷୀଣ । ପୁନରାୟ ସଂସଦ ଚାହିଁଲେ ମନ୍ତ୍ରିମଣ୍ଡଳ ମଧ୍ୟରେ ବିଭାଜନ ସୃଷ୍ଟି କରିପାରିଥାଏ । କୌଣସି ଏକ ବିଲ୍‌ର କାର୍ଯ୍ୟକାରିତା ପାଇଁ ଦୁଇ ତୃତୀୟାଂଶ ସଦସ୍ୟଙ୍କ ସମର୍ଥନ ଆବଶ୍ୟକତା ହେଉଥିବାରୁ ବିନା ବିଚାର ଓ ପରାମର୍ଶରେ ମନ୍ତ୍ରିମଣ୍ଡଳ ଏକ ନିର୍ଦ୍ଦିଷ୍ଟ ମୀମାଂସାରେ ଉପନୀତ ହେବାକୁ କ୍ଷମ ହୋଇନଥାଏ । ବ୍ୟବସ୍ଥାପିକା ବା ସଂସଦର ପ୍ରାଧାନ୍ୟ ସର୍ବଦା ସ୍ୱୀକୃତ ହୋଇଥାଏ । ବିଭିନ୍ନ ଦଳର ସଦସ୍ୟଗଣ ସାଂସଦରୂପେ ସଂସଦରେ ଅବସ୍ଥାପିତ ହେଉଥିବାରୁ କୌଣସି ଏକ ନିର୍ଦ୍ଦିଷ୍ଟ ଦଳ ମନମୁଖୀ କିଛି କାର୍ଯ୍ୟ କରିପାରିନଥାନ୍ତି । ଏହା ଦ୍ୱାରା ରାଜନୈତିକ ସମତା ସୃଷ୍ଟି ହୋଇଥାଏ । ସଂସଦୀୟ ସରକାରରେ ମିଳିତ ଦାୟିତ୍ୱର ପ୍ରାଧାନ୍ୟ ସ୍ୱୀକୃତ । କୌଣସି କ୍ଷେତ୍ରରେ ଏକ ନିର୍ଦ୍ଦିଷ୍ଟ ଦଳ ମନମୁଖୀ ବ୍ୟବସ୍ଥା ଗ୍ରହଣ କଲେ, ପରବର୍ତ୍ତୀ ସମୟରେ ସେ ସଂସଦ ନିକଟରେ ଉତ୍ତରଦାୟୀ ହୋଇଥାଏ । ଦଳୀୟ ଶୃଙ୍ଖଳା ସଂସଦୀୟ ସରକାରର ଅନ୍ୟତମ ବିଶେଷତ୍ୱ । ଦଳର ଶୃଙ୍ଖଳା ଯଥାଯଥ ରକ୍ଷା କରାଯାଉଥିବାରୁ ଦଳ ମଧ୍ୟରେ ମତାନ୍ତର ଓ ମନାନ୍ତର ହେବାର ସମ୍ଭାବନା କ୍ଷୀଣ । ପ୍ରଧାନମନ୍ତ୍ରୀ ସଂସଦୀୟ ସରକାରରେ ମୁଖ୍ୟ ହୋଇଥିବାରୁ ତାଙ୍କ ନେତୃତ୍ୱ ପ୍ରତି ସମ୍ମାନ ପ୍ରଦର୍ଶନ କରାଯାଇଥାଏ । ପ୍ରଧାନମନ୍ତ୍ରୀଙ୍କ ପରାମର୍ଶକ୍ରମେ ମନ୍ତ୍ରିଗଣ ନିଯୁକ୍ତି ପାଇଥାନ୍ତି ଓ ତାଙ୍କ ସୁପାରିଶରେ ମନ୍ତ୍ରିମାନେ ମଧ୍ୟ ବହିଷ୍କାର ହୋଇପାରନ୍ତି । ସେଥିଯୋଗୁଁ ମନ୍ତ୍ରିମଣ୍ଡଳର ମୁଖ୍ୟ ରୂପେ ସେ ଦଳ ମଧ୍ୟରେ ଉପଯୁକ୍ତ ବ୍ୟକ୍ତିଙ୍କ ମଧ୍ୟରେ ବିଭାଗ ବଣ୍ଟନ କରିଥାନ୍ତି । ସଂସଦୀୟ ସରକାରରେ ବିରୋଧୀ

ଦଳଙ୍କର ମଧ୍ୟ ପ୍ରମୁଖ ଭୂମିକା ରହିଛି । ଜନସାଧାରଣ ସ୍ୱାର୍ଥଜଡ଼ିତ ଯେକୌଣସି ଅବ୍ୟବସ୍ଥାକୁ ସେମାନେ କଠୋର ସମାଲୋଚନା କରିଥାନ୍ତି । ଦୁଇ ତୃତୀୟାଂଶ ସଦସ୍ୟଙ୍କ ସୁପାରିଶ ବ୍ୟତିରେକେ କୌଣସି ବିଲ୍ କାର୍ଯ୍ୟକାରୀ ହେବାର ସମ୍ଭାବନା ନ ଥିବାରୁ, ସଂସଦରେ ବିରୋଧୀ ଦଳକୁ କୌଣସି କ୍ଷେତ୍ରରେ ଅବହେଳା କରାଯାଇ ନ ଥାଏ । ପୁନରାୟ ଜନସାଧାରଣ ସ୍ୱାର୍ଥବିରୋଧୀ କିଛି ପ୍ରସ୍ତାବ ସରକାର ଗ୍ରହଣ କଲେ ବିରୋଧୀଦଳ ଜନାଦେଶ ମାଗିଥାନ୍ତି ଏବଂ ପରବର୍ତ୍ତୀ କାଳରେ ସରକାର ସଂଖ୍ୟାଗରିଷ୍ଠତା ହରାଇ ବସିଥାଏ । ତେଣୁ ସଂସଦୀୟ ସରକାରରେ ବିରୋଧୀଦଳ ଓ ସରକାରୀଦଳ – ଉଭୟଙ୍କ ବୁଝାମଣାରେ ନିଷ୍ପତ୍ତି ଗୃହୀତ ହେଉଥିବାରୁ ପରବର୍ତ୍ତୀ କାଳରେ କେହି କାହା ନିକଟରେ ଦାୟୀ ରହିନଥାନ୍ତି ।

ସଂସଦୀୟ ସରକାରରେ କେତେକ କ୍ଷେତ୍ରରେ ବିଶେଷ ଉପଯୋଗିତା ରହିଛି । ଏହି ସରକାରରେ ବ୍ୟବସ୍ଥାପିକା ଓ କାର୍ଯ୍ୟପାଳିକା ମଧ୍ୟରେ ସୁସମ୍ପର୍କ ରହିଥିବାରୁ ହଠାତ୍ କୌଣସି ପ୍ରକାର ବିଶୃଙ୍ଖଳା ସୃଷ୍ଟି ହେବାର ଅବକାଶ ନ ଥାଏ । ଏହା ଦ୍ୱାରା ସରକାର ନିର୍ବିଘ୍ନରେ କାର୍ଯ୍ୟ ସମାପ୍ତ କରିବାର ସୁଯୋଗ ଲାଭ କରିଥାଏ । ବ୍ୟବସ୍ଥାପିକା ଓ କାର୍ଯ୍ୟପାଳିକା ଉଭୟେ ଜନସାଧାରଣଙ୍କ ନିକଟରେ ଉତ୍ତରଦାୟୀ ହୋଇଥିବାରୁ ଏକ ଉତ୍ତମ ସରକାର ଲାଭ ହୋଇଥାଏ । ଏତଦ୍ ବ୍ୟତୀତ ସଂସଦୀୟ ସରକାର ଏକ ଦାୟିତ୍ୱସମ୍ପନ୍ନ ସରକାର ରୂପେ ତା'ର କାର୍ଯ୍ୟଗୁଡ଼ିକୁ ପରିପାଳନ କରିଥାଏ । ସଂସଦୀୟ ସରକାର ଏକ ପରିବର୍ତ୍ତନଶୀଳ ଓ ନମନୀୟ ସରକାର ହୋଇଥିବାରୁ ସ୍ୱେଚ୍ଛାଚାରିତାର ଅବକାଶ କ୍ଷୀଣ । କାରଣ ଜନସାଧାରଣଙ୍କର ବିଶ୍ୱାସଭାଜନ ହୋଇ ନ ପାରିଲେ, ପରବର୍ତ୍ତୀ ସମୟରେ ସରକାର ତା'ର ସ୍ଥିତି ହରାଇଥାଏ । ପୁଣି ଏହା ନମନୀୟ ହୋଇଥିବାରୁ ମନମୁଖୀ କାର୍ଯ୍ୟ କରିବାର କୌଣସି ସୁଯୋଗ ନ ଥାଏ । ରାଷ୍ଟ୍ରପତୀୟ ସରକାରରେ ଯେପରି ରାଷ୍ଟ୍ରପତି ମନମୁଖୀ କାର୍ଯ୍ୟ କରିବାର ଅଧିକାର ପାଇଥାନ୍ତି, ସଂସଦୀୟ ସରକାର ସେପରି ଅଧିକାର ପାଇପାରି ନ ଥାନ୍ତି । ଏକ ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ରାଷ୍ଟ୍ରପତୀୟ ସରକାରରେ ରାଷ୍ଟ୍ରପତିଙ୍କୁ କ୍ଷମତାଚ୍ୟୁତ କରିବା ସମ୍ଭବ ନୁହେଁ । ମାତ୍ର ପ୍ରଧାନମନ୍ତ୍ରୀ ସଂସଦର ବିଶ୍ୱାସ ହରାଇଲେ, ଯେକୌଣସି ମୁହୂର୍ତ୍ତରେ କ୍ଷମତାରୁ ଅନ୍ତର ହୋଇପାରନ୍ତି । ସେଥିପାଇଁ ଏପ୍ରକାର ସରକାର ସ୍ୱେଚ୍ଛାଚାରୀ ହୋଇପାରନ୍ତି ନାହିଁ । ଏପ୍ରକାର ସରକାରରେ ଉତ୍ତମ ନେତୃତ୍ୱ ମଧ୍ୟ ସମ୍ଭବ ହୋଇଥାଏ । ପ୍ରତ୍ୟେକ କାର୍ଯ୍ୟରେ ଅନ୍ୟମାନଙ୍କ ସହିତ ପରାମର୍ଶ କରି କାର୍ଯ୍ୟପନ୍ଥା ସ୍ଥିରୀକୃତ ହେଉଥିବାରୁ ସମସ୍ତ କାର୍ଯ୍ୟ ଉତ୍ତମ ହେବା ସମ୍ଭବ ବୋଲି ବିଶ୍ୱାସ ହୋଇଥାଏ । ସଂସଦର ଉତ୍ତମ, ଧୂରୀଣ ଓ ବିଜ୍ଞବ୍ୟକ୍ତି ଉପରେ କାର୍ଯ୍ୟଭାର ଅର୍ପଣ କରାଯାଉଥିବାରୁ ଏବଂ ଗଣତନ୍ତ୍ରର ରକ୍ଷା ତାଙ୍କର ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ ହୋଇଥିବାରୁ ଉତ୍ତମ ନେତୃତ୍ୱ ଦେବା ସମ୍ଭବ ହୋଇଥାଏ । ବିଭିନ୍ନ ବ୍ୟକ୍ତିବିଶେଷ ତଥା ଦଳମାନଙ୍କ ସମ୍ପର୍କରେ ଆସୁଥିବାରୁ ବିଭିନ୍ନ ପ୍ରକାର ରାଜନୈତିକ ଶିକ୍ଷାଲାଭ ହୋଇଥାଏ । ଏହି କେତୋଟି କାରଣରୁ ସଂସଦୀୟ ସରକାର ଏକ ଉତ୍ତମ ସରକାର ବୋଲି ବିଶ୍ୱାସ କରାଯାଇଥାଏ ।

ଏହାବ୍ୟତୀତ ଏହି ସରକାରରେ କେତେକ ତ୍ରୁଟି ମଧ୍ୟ ପରିଲକ୍ଷିତ ହୋଇଥାଏ । ସଂସଦୀୟ ସରକାର ପରିବର୍ତ୍ତନଶୀଳ ହୋଇଥିବାରୁ ଏକ ସ୍ଥିର ସରକାର ଦେବାକୁ ଅସମର୍ଥ । ଦୀର୍ଘସୂତ୍ରୀ

ଯୋଜନାରେ ଏହା କୌଣସି ଉଲ୍ଲେଖଯୋଗ୍ୟ କାର୍ଯ୍ୟ କରିବାକୁ ସମର୍ଥ ହୋଇନଥାଏ । କ୍ଷମତା ପୃଥକୀକରଣ ନୀତିର ଲଙ୍ଘନ କରାଯାଉଥିବାରୁ କୌଣସି ଏକ କାର୍ଯ୍ୟ ସୂଚାରୁରୂପେ ସମ୍ପନ୍ନ ହେବା ଅସମ୍ଭବ ହୋଇଥାଏ । ପ୍ରଧାନମନ୍ତ୍ରୀଙ୍କ ବିଶ୍ୱାସ ଉପରେ ମନ୍ତ୍ରିମାନେ କାର୍ଯ୍ୟ କରୁଥିବାରୁ ଯେକୌଣସି ମୁହୂର୍ତ୍ତରେ ମନ୍ତ୍ରୀ ସେମାନଙ୍କର କ୍ଷମତା ହରାଇପାରନ୍ତି । ବାରମ୍ବାର ପଦ ବଦଳ ଯୋଗୁଁ ନିର୍ଦ୍ଦିଷ୍ଟ କାର୍ଯ୍ୟ ମଧ ସୁଚାରୁସମ୍ପନ୍ନ ହୋଇପାରେନି । ସମୟେ ସମୟେ ମନ୍ତ୍ରିମଣ୍ଡଳ ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ କାର୍ଯ୍ୟ କରୁଥିବାରୁ ଏକଛତ୍ରବାଦୀ ହେବାର ଆଶଙ୍କା ରହିଛି । ସଂଖ୍ୟାଗରିଷ୍ଠ ଦଳ ଶାସନଭାର ଗ୍ରହଣ କରୁଥିବାରୁ ନିଜର ସ୍ୱାର୍ଥ ପାଇଁ ଏପରି ସରକାର ବିଭିନ୍ନ କାର୍ଯ୍ୟପନ୍ଥା ମଧ ଗ୍ରହଣ କରିଥାନ୍ତି । ଏହାଦ୍ୱାରା ସାମୂହିକ ସ୍ୱାର୍ଥରେ ବାଧା ସୃଷ୍ଟି ହୋଇଥାଏ । ଅସ୍ଥିରତା ଏପରି ଏକ ସରକାରର ଅନ୍ୟତମ ଦୁର୍ବଳତା । କୌଣସି କାର୍ଯ୍ୟର ପରିସମାପ୍ତି ପୂର୍ବରୁ ଯଦି ଏପରି ସରକାରର କାର୍ଯ୍ୟକାଳ ପୂରିଯାଏ କିମ୍ବା ବରଖାସ୍ତ ହୁଏ, ତେବେ ସେହି ଅସମ୍ପୂର୍ଣ୍ଣ କାର୍ଯ୍ୟଟି ସବୁଦିନ ପାଇଁ ଅସମ୍ପୂର୍ଣ୍ଣ ହୋଇ ରହିଯାଏ । ପରବର୍ତ୍ତୀ ସରକାର ନିଜର ସ୍ୱାର୍ଥ ଦୃଷ୍ଟିରୁ ପୂର୍ବବର୍ତ୍ତୀ ସରକାରର ଅଧା କାର୍ଯ୍ୟକୁ ସମ୍ପୂର୍ଣ୍ଣ କରିବା ପାଇଁ କୌଣସି ତତ୍ପରତା ପ୍ରକାଶ କରିନଥାଏ । ଦୀର୍ଘଦିନ ପର୍ଯ୍ୟନ୍ତ କୌଣସି ଏକ ସରକାର କାର୍ଯ୍ୟ କରିପାରୁ ନ ଥିବାରୁ ସରକାରୀ କାର୍ଯ୍ୟକ୍ଷେତ୍ରରେ ଅଭିଜ୍ଞତା ଅର୍ଜନ କରିପାରିନଥାନ୍ତି । ଅନଭିଜ୍ଞ ଶାସକଗଣ ସରକାରର ଦାୟିତ୍ୱ ନେଉଥିବାରୁ କାର୍ଯ୍ୟକ୍ଷେତ୍ରରେ ବିବିଧ ଅସୁବିଧା ପରିଲକ୍ଷିତ ହେବା ସଙ୍ଗେ ସଙ୍ଗେ କୌଣସି କାର୍ଯ୍ୟ ସଫଳ ହୋଇପାରି ନ ଥାଏ । ସଂସଦୀୟ ସରକାରରେ ଅମଲାତନ୍ତ୍ରର କ୍ଷମତା ବୃଦ୍ଧି ଘଟିଥାଏ । କାରଣ ଏମାନେ ଜାଣନ୍ତି, ଏ ପ୍ରକାର ସରକାର ଦୀର୍ଘସ୍ଥାୟୀ ନୁହନ୍ତି । କିଛିବର୍ଷ ପରେ ଅନ୍ୟ ଏକ ନୂତନ ସରକାର କାର୍ଯ୍ୟଭାର ଗ୍ରହଣ କରିବେ । ମାତ୍ର ଅମଲାଗଣ ସ୍ଥିର ହୋଇଥିବାରୁ ସରକାରଙ୍କ ବାଧ୍ୟବାଧକତା ଏବଂ ପ୍ରଭାବର ମୂଲ୍ୟ ଏମାନଙ୍କ ଉପରେ କିଛି ନ ଥାଏ । ବରଂ ଏହି ଅମଲାମାନେ ଚାହିଁଲେ ସଂସଦୀୟ ସରକାରଙ୍କୁ ବିଭିନ୍ନ ଭାବରେ ବଦନାମ କରିପାରନ୍ତି । ଏହି ଦୃଷ୍ଟିରୁ ସଂସଦୀୟ ସରକାରରେ ଅମଲାମାନେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାନ୍ତି । ହଠାତ୍ ଏକ ଜରୁରୀକାଳୀନ ପରିସ୍ଥିତି ଜାରି ପାଇଁ ଏହି ସରକାର ସମ୍ପୂର୍ଣ୍ଣ ଅନୁପଯୁକ୍ତ । ଯଦି ରାଷ୍ଟ୍ର ପ୍ରତିକୂଳ ପରିସ୍ଥିତି ମଧ ଦେଇ ଗତି କରେ ବା ହଠାତ୍ ରାଷ୍ଟ୍ରର ସାର୍ବଭୌମତ୍ୱ ପ୍ରତି କୌଣସି ବିପଦ ସୃଷ୍ଟି ହୁଏ ବା ଏକ ପରିବର୍ତ୍ତନ ପାଇଁ ହଠାତ୍ କୌଣସି ଏକ ପଦକ୍ଷେପ ଗ୍ରହଣ କରିବାର ଆବଶ୍ୟକତା ପଡ଼େ, ସଂସଦୀୟ ସରକାର ସେ ପ୍ରକାର ଅଚାନକ ପଦକ୍ଷେପ ଗ୍ରହଣ କ୍ଷେତ୍ରରେ ସମ୍ପୂର୍ଣ୍ଣ ଅସମର୍ଥ ହୋଇଥାଏ, କାରଣ ପ୍ରତି କ୍ଷେତ୍ରରେ ଦୁଇ ତୃତୀୟାଂଶ ସଦସ୍ୟଙ୍କ ସମର୍ଥନ ଲାଭ କରିବା ସବୁ ସମୟରେ ସମ୍ଭବ ନୁହେଁ କିମ୍ବା ମନମୁଖୀ ହଠାତ୍ ଏକ କାର୍ଯ୍ୟପନ୍ଥା ଗ୍ରହଣ କରିବା ସଂସଦୀୟ ସରକାର ଦ୍ୱାରା ସମ୍ଭବ ମଧ ନୁହେଁ । ଜରୁରୀକାଳୀନ ପରିସ୍ଥିତି ଜାରି କ୍ଷେତ୍ରରେ ରାଷ୍ଟ୍ରପତୀୟ ସରକାର ଅଧିକ ଉତ୍ତମ । ଦଳୀୟକନ୍ଦଳ ଓ ଦଳୀୟସ୍ୱାର୍ଥ ବହୁ ସମୟରେ ସଂସଦୀୟ ସରକାରର ଅନିଷ୍ଟ ସାଧନ କରିଥାଏ । ଦଳୀୟ ମନୋଭାବ ଉପରେ ଏହି ସରକାର ଗୁରୁତ୍ୱ ଦେଉଥିବାରୁ ଅନ୍ୟ ଦଳର ମତାମତ ପ୍ରତି ଯଥାର୍ଥ ସମ୍ମାନ ପ୍ରଦର୍ଶନ କରିନଥାନ୍ତି । ସମୟେ ସମୟେ ଦଳୀୟକନ୍ଦଳ ମଧ ସରକାରକୁ ବିପଦର ଘେର ମଧକୁ ଠେଲି

ଦେଇଥାଏ । ବେଳେ ବେଳେ ଦେଖାଯାଏ, ସଂସଦୀୟ ସରକାରରେ ମନ୍ତ୍ରିମଣ୍ଡଳ ଦେଶର ସ୍ୱାର୍ଥ ଅପେକ୍ଷା ଦଳର ସ୍ୱାର୍ଥକୁ ଅଗ୍ରାଧିକାର ଦେଇଥାନ୍ତି । ଦଳୀୟ ସରକାର ହୋଇଥିବାରୁ ଦଳର ସ୍ୱାର୍ଥରକ୍ଷା ପାଇଁ ଏମାନେ ଯେକୌଣସି କାର୍ଯ୍ୟପନ୍ଥା ଗ୍ରହଣ କରିବାକୁ କୁଣ୍ଠାପ୍ରକାଶ କରିନଥାନ୍ତି । ସଂସଦୀୟ ସରକାର ଉଚିତ ମାର୍ଗରେ ଗତି କରିନପାରିଲେ ଦେଶର ହିତ ପରିବର୍ତ୍ତେ କେବଳ ଅହିତ ସାଧନ ହିଁ କରିଥାଏ ।

ଭାରତରେ ସଂସଦୀୟ ସରକାର ବ୍ୟବସ୍ଥା ପ୍ରଚଳିତ । ବହୁପରିମାଣରେ ସଂସଦୀୟ ସରକାର ଭାରତରେ ସଫଳକାମ ହୋଇଥିଲେ ହେଁ ବର୍ତ୍ତମାନ ଏହା ଏକ ପ୍ରଶ୍ନବାଚୀ ନେଇ ଦଣ୍ଡାୟମାନ । ବର୍ତ୍ତମାନ ସଂସଦୀୟ ଗଣତନ୍ତ୍ର ସମ୍ପୂର୍ଣ୍ଣ ବିପନ୍ନ ହୋଇପଡ଼ିଛି କହିଲେ ଭୁଲ୍ ହେବ ନାହିଁ । ବହୁଦଳୀୟ ବ୍ୟବସ୍ଥା, ରାଜନୀତି ଅପରାଧୀକରଣ, ଦୁର୍ନୀତି, ଭ୍ରଷ୍ଟାଚାର, ସନ୍ତ୍ରାସବାଦ ଆଦି କାରଣ ଯୋଗୁଁ ଭାରତୀୟ ସଂସଦୀୟ ସରକାର ବିଫଳ ହୋଇଛି । ସତୁରୀ ଦଶକ ପର୍ଯ୍ୟନ୍ତ ଭାରତର ସଂସଦୀୟ ସରକାରରେ ଏପ୍ରକାର ଅବସ୍ଥା ସୃଷ୍ଟି ହୋଇନ ଥିଲା । ସାମୂହିକ ସ୍ୱାର୍ଥ ଅପେକ୍ଷା ବ୍ୟକ୍ତିସ୍ୱାର୍ଥ ଉଚ୍ଚତର ମର୍ଯ୍ୟାଦା ଲାଭ କରୁଥିବାରୁ ସଂସଦୀୟ ସରକାରର ସ୍ଥିତାବସ୍ଥାରେ ପ୍ରଶ୍ନବାଚୀ ମୁଣ୍ଡ ଟେକିଛି । ବିଭିନ୍ନ କ୍ଷେତ୍ରରେ ସରକାରଙ୍କର ସ୍ୱାର୍ଥପର ମନୋବୃତ୍ତି, ଜାତିଆଣଭାବ, ସଂକୀର୍ଣ୍ଣ ଆଞ୍ଚଳିକବୋଧ, ଦୂରଦୃଷ୍ଟିର ଅଭାବ ଏହି ସରକାରର ବିଫଳତା ନିମିତ୍ତ ବହୁପରିମାଣରେ ଦାୟୀ । ଏହାର ସ୍ଥାୟିତ୍ୱ ଓ ସଫଳତା ପାଇଁ ଆତ୍ମୋତ୍ସର୍ଗପୂର୍ଣ୍ଣ ମନୋବୃତ୍ତି ଆବଶ୍ୟକ ।

ଦୁଃଖ ଓ କ୍ଷୋଭର ବିଷୟ ୧୯୯୬ ମସିହାରେ ଅନୁଷ୍ଠିତ ହୋଇଥିବା ନିର୍ବାଚନ ସମ୍ପୂର୍ଣ୍ଣରୂପେ ବିଫଳତାରେ ପର୍ଯ୍ୟବସିତ ହୋଇଛି । ୧୮ ମାସ କାର୍ଯ୍ୟକାଳ ମଧ୍ୟରେ ଆମେ ତିନି ତିନୋଟି ପ୍ରଧାନମନ୍ତ୍ରୀ ଓ ତିନୋଟି ସରକାରଙ୍କୁ ଦେଖିଲୁ । ଭାରତର ୧୦୦୦କୋଟି ଟଙ୍କା ପାଣିରେ ପଡ଼ିଲା । ନିର୍ବାଚିତ ପ୍ରତିନିଧିଗଣ ନିଜର ସଂକୀର୍ଣ୍ଣ ସ୍ୱାର୍ଥ ପାଇଁ ଭାରତର ପାଖାପାଖି ୯୮କୋଟି ଲୋକଙ୍କର ସ୍ୱପ୍ନକୁ ଧୂଳିସାତ୍ କରିଦେଲେ । ରଣଯନ୍ତାରେ ଅହରହ ଯନ୍ତ୍ରଣା ପାଉଥିବା ଗରିବ ଭାରତବାସୀଙ୍କ ସହିତ ଏହି ନିର୍ବାଚିତ ସଦସ୍ୟ ବିଶ୍ୱାସଘାତକତା କରିଛନ୍ତି କହିଲେ ଆଦୌ ଭୁଲ୍ ହେବ ନାହିଁ । ଭାରତର ସମ୍ବିଧାନ ପ୍ରଣେତାଗଣ ବିଲାତର ସମ୍ବିଧାନକୁ ଅନୁସରଣ କରିଥିଲେହେଁ, ବିଲାତର ଦ୍ୱିଦଳୀୟ ବ୍ୟବସ୍ଥାକୁ ଗ୍ରହଣ କରିନପାରିବା ଦୁର୍ଭାଗ୍ୟର ବିଷୟ । ଇଂଲଣ୍ଡ ଓ କାନାଡ଼ା ଆଦି ଦେଶରେ ଏହି ଦ୍ୱିଦଳୀୟ ସଂସଦୀୟ ବ୍ୟବସ୍ଥା ବେଶ୍ ସଫଳ ହୋଇଛି । ଜାତୀୟ ଚରିତ୍ରକୁ ଆଖି ଆଗରେ ରଖି ବର୍ତ୍ତମାନ ସମ୍ବିଧାନର ସଂଶୋଧନ ହେବା ଆବଶ୍ୟକ । ଭାରତରେ ଦ୍ୱିଦଳୀୟ ବ୍ୟବସ୍ଥା ରହିଲେ ବାରମ୍ବାର ସରକାର ଭାଙ୍ଗି ଦେଶର ଆର୍ଥିକ ମେରୁଦଣ୍ଡକୁ ଧ୍ୱଂସ କରିଦିଅନ୍ତା ନାହିଁ । ଭାରତରେ ବର୍ତ୍ତମାନ ଏକପ୍ରକାର ବ୍ୟକ୍ତିନିଷ୍ଠ ଦଳୀୟବ୍ୟବସ୍ଥା ପ୍ରଚଳିତ ହୋଇଛି କହିଲେ ଚଳେ । ଦଳ ବିଭାଜନ, ଦଳବଦଳ ଯୋଗୁଁ ବାରମ୍ବାର ସରକାର ଭଙ୍ଗ କରାଯାଉଛି ଓ ଗଢ଼ାଯାଉଛି । ଏହା ଜାତୀୟସ୍ୱାର୍ଥ ନିମିତ୍ତ ଅତ୍ୟନ୍ତ କ୍ଷତିକାରକ । ସାମ୍ମୁଖ୍ୟ ସରକାର ଗଠନ ଦ୍ୱାରା ଭାରତ କେତେ ପରିମାଣ କ୍ଷତିର ସମ୍ମୁଖୀନ ହେଲା, ତାହା ଏ ଦେଶର ସଚେତନ ନାଗରିକ ବିଚାର କରିପାରିବେ । ଆଜି ରାଜନୀତି ଏକ ତାମସାରେ ପରିଣତ ହୋଇଛି । ବିଭିନ୍ନ ଦଳର

ପ୍ରଚାରମୁଖୀ ଜନସାଧାରଣଙ୍କୁ ଦ୍ୱନ୍ଦ୍ୱରେ ପକାଉଛି । ପରବର୍ତ୍ତୀ ଲୋକସଭା ନିର୍ବାଚନରେ ଯଦି କୌଣସି ଦଳ ସଂଖ୍ୟାଗରିଷ୍ଠତା ଲାଭ କରିନପାରନ୍ତି, ପୁଣି ଝୁଲା ପାର୍ଲାମେଣ୍ଟ ହେବ । ଭାରତର ଗଣତନ୍ତ୍ର ବିପନ୍ନ ହୋଇପଡ଼ିବ । ଏ କ୍ଷେତ୍ରରେ ସଂସଦୀୟ ଗଣତନ୍ତ୍ରର ସଫଳତା ନିମିତ୍ତ ଦୁଇଟି ଦଳର ମାତ୍ର ଆବଶ୍ୟକତା ରହିଛି । ଗୋଟିଏ ଦଳ ସରକାର ଗଢ଼ିବେ ଓ ଅନ୍ୟଦଳ ବିରୋଧୀଦଳ ଆସନରେ ବସିବେ । ସରକାରଙ୍କ ଜନସ୍ୱାର୍ଥ ବିରୋଧୀ କାର୍ଯ୍ୟକଳାପର ସମାଲୋଚନା କରି ଜନସଚେ଼ତନତା ସୃଷ୍ଟି କରିବେ, ଏକ ଆଦର୍ଶକୁ ଆଖି ଆଗରେ ରଖି କାର୍ଯ୍ୟ କରିବେ । ଏହାଦ୍ୱାରା ଜନସାଧାରଣ ବା ସରକାର କେହି କ୍ଷତିର ସମ୍ମୁଖୀନ ହେବେ ନାହିଁ । ସମ୍ବିଧାନର ୩୨୬ ଧାରାର ସାମାନ୍ୟ ପରିବର୍ତ୍ତନ ବର୍ତ୍ତମାନ ସମୟ ପାଇଁ ଅତ୍ୟନ୍ତ ଆବଶ୍ୟକ ହୋଇଉଠିଛି ।

ସଂସଦୀୟ ସରକାରର ବହୁ ଉନ୍ନତ ଦିଗ ରହିଛି । ଯଦି ଭାରତରେ ଦ୍ୱିଦଳୀୟ ବ୍ୟବସ୍ଥା ପ୍ରଚଳିତ ହୋଇପାରନ୍ତା, ତେବେ ସଂସଦୀୟ ସରକାର ନିଶ୍ଚିତଭାବରେ ସଫଳ ହୋଇପାରନ୍ତା । ତେଣୁ ସଂସଦୀୟ ସରକାରର ସଫଳତା ପାଇଁ ଆବଶ୍ୟକ ସମ୍ବିଧାନର ସଂଶୋଧନ, ଦୁର୍ନୀତିର ମୂଳୋତ୍ପାଟନ, ରାଜନୀତି ଅପରାଧୀକରଣର ନିରାକରଣ ଓ ସର୍ବୋପରି ଜନସଚେତନତା । ଭାରତୀୟ ଜାତୀୟ ଚରିତ୍ର ଓ ସଂସ୍କୃତିରେ ଯେପରି ସଙ୍କଟ ଦେଖାଦେଇଛି, ଦାରିଦ୍ର୍ୟର ସୀମାରେଖା ବଢ଼ି ବଢ଼ି ଚାଲିଛି, ଆର୍ଥିକ ସ୍ଥିତି ଉଦ୍‌ବେଗଜନକ ପରିସ୍ଥିତିରେ ପହଞ୍ଚିଛି, ତା'ର ନିରାକରଣ ପାଇଁ ବର୍ତ୍ତମାନ ଆବଶ୍ୟକ ଏକ ଦୃଢ଼ ସରକାର ଓ ଅନ୍ୟ ଏକ ଦୃଢ଼ ବିରୋଧୀଦଳର । ଭାରତର ଏହି ମୌଳିକ ସମସ୍ୟା ସମାଧାନ ହୋଇପାରିଲେ, ସଂସଦୀୟ ସରକାର ଭାରତକୁ ଏକ ନିଶ୍ଚିତ ଉତ୍ତମ ସ୍ଥିତିଶୀଳ ପ୍ରଶାସନ ଦେଇପାରିବ, ଏଥିରେ ସନ୍ଦେହର ଅବକାଶ ନାହିଁ ।



# ଛାତ୍ର ବିଶୃଙ୍ଖଳା : କାରଣ ଓ ନିରାକରଣ

**(ଉପକ୍ରମ; ବିଶୃଙ୍ଖଳାର କାରଣ–(୧) ପାରିବାରିକ (୨) ବାହ୍ୟପ୍ରଭାବ (୩) ରାଜନୀତିକ ହସ୍ତକ୍ଷେପ (୪) ପ୍ରଚଳିତ ତ୍ରୁଟିପୂର୍ଣ୍ଣ ଶିକ୍ଷାନୀତି (୫) ଶିକ୍ଷକମାନଙ୍କର ଦାୟିତ୍ୱର ଅଭାବ (୬) ଅନିଶ୍ଚିତ ଭବିଷ୍ୟତ । ନିରାକରଣ ଉପାୟ–(୧) ସାମାଜିକ ସଦ୍ଭାବ (୨) ଶିକ୍ଷା ଖସଡ଼ାରେ ପରିବର୍ତ୍ତନ (୩) ଛାତ୍ରସମାଜ ପ୍ରତି ସହାନୁଭୂତି ଓ ସମ୍ମାନ (୪) ସ୍ୱୟଂଚାଳିତ ଶିକ୍ଷା ବ୍ୟବସ୍ଥା (୫) ରାଜନୈତିକ ପ୍ରଭାବରୁ ଶିକ୍ଷାନୁଷ୍ଠାନକୁ ମୁକ୍ତ ରଖିବା (୬) ଶିକ୍ଷକ, ଛାତ୍ର ଓ ଅଭିଭାବକଙ୍କ ମଧ୍ୟରେ ସହଯୋଗ ପ୍ରତିଷ୍ଠା (୭) ଛାତ୍ର ନିର୍ବାଚନରେ ନିର୍ଦ୍ଦିଷ୍ଟ ନିୟମ ପ୍ରଣୟନ; ଉପସଂହାର)**

ସମାଜର ବିକାଶରେ ଛାତ୍ର ସମାଜର ଏକ ମୁଖ୍ୟ ଭୂମିକା ବିଦ୍ୟମାନ । ସେମାନେ ଦେଶର ଭବିଷ୍ୟତ ଓ କର୍ଣ୍ଣଧାର । ସମାଜର ଗୋଟିଏ ବିରାଟ ଶକ୍ତିରୂପେ ସେମାନେ ପରିଚିତ । ଦେଶର ଭବିଷ୍ୟତ ନେତୃତ୍ୱ ଓ ବିକାଶ ତାଙ୍କ ଉପରେ ନିର୍ଭର କରେ । ଗୋଟିଏ ଆଦର୍ଶ, ଜୀବନ

ପ୍ରତି ସାକାର ଦୃଷ୍ଟିଭଙ୍ଗୀ ଏବଂ ସାମାଜିକ ଅଙ୍ଗୀକାରବଦ୍ଧତା ଯୁବସମାଜକୁ ଉନ୍ମାଦିତ କରିଥାଏ ଦେଶର ଭବିଷ୍ୟତ ଗଠନ ନିମିତ୍ତ । କୁସଂସ୍କାର ଓ ଆର୍ଥିକ ଛାଣୁତା ବିରୋଧରେ ସେମାନେ ପ୍ରତ୍ୟକ୍ଷ ସଂଗ୍ରାମ କରିବାକୁ ଅଗ୍ରସର ହୋଇଥାନ୍ତି । ଆସନ୍ତାକାଲିର ଆଶା ଓ ବିଶ୍ୱାସ ଏହି ଛାତ୍ର ସମାଜ । ଉପଯୁକ୍ତ ଦିଗ୍‌ଦର୍ଶନ ଅଭାବରୁ ଅନେକ ସମୟରେ ଛାତ୍ରସମାଜ ପଥଭ୍ରଷ୍ଟ ହୋଇଥାନ୍ତି । ବର୍ତ୍ତମାନ କେବଳ ଭାରତ କାହିଁକି, ସମଗ୍ର ବିଶ୍ୱରେ ଛାତ୍ର ବିଶୃଙ୍ଖଳା ଚରମ ସୀମାରେ ପହଞ୍ଚିଛି । ରାସ୍ତାଘାଟ ଅବରୋଧ, ଜାତୀୟ ସମ୍ପତ୍ତି ଧ୍ୱଂସ, ଧ୍ୱଂସାତ୍ମକ କାର୍ଯ୍ୟଧାରା, ଶିକ୍ଷକମାନଙ୍କ ପ୍ରତି ଅସଦ୍ ଆଚରଣ, ଅଭିଭାବକମାନଙ୍କ ପ୍ରତି ଅସମ୍ମାନ, ପରୀକ୍ଷାରେ ଅସଦ୍ ଉପାୟ ଅବଲମ୍ବନ, ରକ୍ତପାତ ଆଦି ବହୁ ଅହିତକର କାର୍ଯ୍ୟରେ ଆଜି ସେମାନେ ଲିପ୍ତ । ସେମାନଙ୍କ ବିରୋଧରେ ଅଧିକାଂଶ ସମୟରେ ବିଭିନ୍ନ କ୍ଷେତ୍ରରୁ ଅଭିଯୋଗମାନ ଆସୁଛି । ନୀତିନିୟମର ବିରୋଧାଚରଣ କରିବା ଆଜି ଛାତ୍ରସମାଜର ଏକ ଦୈନନ୍ଦିନ କର୍ତ୍ତବ୍ୟରେ ପରିଣତ ହୋଇଛି । ମୁହୂର୍ତ୍ତିକ ଉତ୍ତେଜନାରେ ସେମାନେ ନିଜର କର୍ତ୍ତବ୍ୟବୋଧ ହରାଇ ଧ୍ୱଂସାତ୍ମକ କାର୍ଯ୍ୟରେ ଲିପ୍ତ ହୋଇପଡୁଛନ୍ତି । ସମଗ୍ର ଦେଶ ପାଇଁ ଏହା ଆଜି ଏକ ଉଦ୍‌ବେଗର ବିଷୟ ହୋଇପଡ଼ିଛି । ନିର୍ଦ୍ଦିଷ୍ଟ ଲକ୍ଷ୍ୟପଥରେ ଗତି କରିବାର ମାନସିକତା ହରାଇଥିବାରୁ ସେମାନେ ଆଜି ଉଦ୍‌ଭ୍ରାନ୍ତ । ସେମାନଙ୍କୁ ଉପଯୁକ୍ତ ମାର୍ଗ ପ୍ରଦର୍ଶନ କରିବାକୁ କୌଣସି ସ୍ତରରେ ଉଦ୍ୟମ ହେଉ ନାହିଁ । ସେଥିପାଇଁ ଛାତ୍ର ବିଶୃଙ୍ଖଳା ବର୍ତ୍ତମାନ ସବୁ ସ୍ତରରେ ଚିନ୍ତାର ବିଷୟ ହୋଇ ପଡ଼ିଛି । ଭବିଷ୍ୟତର ଏହି ମୂଲ୍ୟବାନ ସମ୍ପଦକୁ ଅଯଥାରେ ବିନଷ୍ଟ ହେବାକୁ ନ ଦେବା ଆଜି ଏକ ଜାତୀୟ କର୍ତ୍ତବ୍ୟ ହୋଇପଡ଼ିଛି । ଏହି କର୍ତ୍ତବ୍ୟ ପ୍ରତି ସବୁସ୍ତରରେ ସୁଚିନ୍ତିତ ପଦକ୍ଷେପ ଗ୍ରହଣ କରିବା ବର୍ତ୍ତମାନ ସମୟର ସର୍ବଶ୍ରେଷ୍ଠ ଆହ୍ୱାନ ।

ଆଜି ସମସ୍ତେ ସ୍ୱୀକାର କରୁଛନ୍ତି, ଛାତ୍ର ସମାଜ ବିଶୃଙ୍ଖଳିତ । ମାତ୍ର ଏହାର କାରଣ କ'ଣ ? ଏହି ବିଶୃଙ୍ଖଳା ପାଇଁ ଦାୟୀ କିଏ ? କେବଳ ଛାତ୍ରମାନଙ୍କୁ ଏହି ବିଶୃଙ୍ଖଳା ପାଇଁ ଦାୟୀ କଲେ ଚଳିବ ନାହିଁ । ଏହା ପଛରେ ବହୁ କାରଣ ବିଦ୍ୟମାନ । ଶିଶୁଟି ଜନ୍ମହେବା ସମୟରେ ତା'ର ଲାଳନପାଳନର ଭାର ପରିବାର ଉପରେ ପଡ଼ିଥାଏ । ଶୈଶବରୁ ପରିବାର ନିକଟରୁ ସେ ଯାହା ଶିକ୍ଷା କରିଥାଏ, ଯୌବନରେ ସମାଜରେ ସେ ସେହି ଶିକ୍ଷାର ପରୀକ୍ଷା କରିଥାଏ । ପରିବାରର ଆଚାର-ବ୍ୟବହାର ତାକୁ ମାର୍ଜିତ କିମ୍ବା ବିଶୃଙ୍ଖଳିତ କରିଥାଏ । ଏ କ୍ଷେତ୍ରରେ ପରିବାରର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ବର୍ତ୍ତମାନର ମଣିଷ ଏପରି ବସ୍ତୁବାଦୀ ହୋଇପଡ଼ିଛି ଯେ, ନିଜର ପରିବାର ପ୍ରତି ଉଚିତ ଦୃଷ୍ଟି ଦେବାକୁ ସମର୍ଥ ହୋଇପାରୁ ନାହିଁ । ଆଦର୍ଶ ପାରିବାରିକ ଜୀବନ ଶିଶୁକୁ କରିଥାଏ ମାର୍ଜିତ ଓ ଶୃଙ୍ଖଳିତ । ଅଥଚ ଆଜି ପରିବାରରେ ଶାନ୍ତି ସମ୍ପୂର୍ଣ୍ଣ ବ୍ୟାହତ । ପିତାମାତାଙ୍କ ନିକଟରେ ଆଦର୍ଶର ଅଭାବ । ଅନୈତିକତା ଓ ଦୁର୍ନୀତି ପାରିବାରିକ ଜୀବନକୁ ଗ୍ରାସ କରିଥିବାରୁ ସୌଜନ୍ୟବୋଧ, ସଂଯତ ଆଚରଣ ସୁଦୂର ପରାହତ ହୋଇପଡ଼ିଛି । ସମାଜ ଏବଂ ପରିବାରର ଏହି ଅବକ୍ଷୟ ଏବଂ ମୂଲ୍ୟବୋଧର ଅଭାବ ଛାତ୍ରମାନଙ୍କୁ ବିଶୃଙ୍ଖଳିତ ହେବାକୁ ବାଧ କରୁଛି । ପରିବାରରେ ଶୃଙ୍ଖଳାର ଅଭାବରୁ ଛାତ୍ରମାନେ ବିଶୃଙ୍ଖଳିତ ଜୀବନଧାରାକୁ ଗ୍ରହଣ କରିନେଉଛନ୍ତି । ଏତଦ୍‌ବ୍ୟତୀତ ବାହ୍ୟପ୍ରଭାବ ମଧ୍ୟ ଛାତ୍ରସମାଜକୁ ବିଶୃଙ୍ଖଳ ଆଚରଣ ପ୍ରଦର୍ଶନ କରିବାକୁ ବାଧ କରୁଛି । ସମାଜରୁ ସେମାନେ ଯେଉଁ ଉଚିତ ଦିଗ୍‌ଦର୍ଶନ ଆଶା କରିବାର କଥା

ତାହା ସେମାନେ ପାଇପାରୁ ନାହାନ୍ତି । ସମାଜରେ ନୈତିକ ଆଦର୍ଶବୋଧ ଦ୍ୱାରା ପରିଚାଳିତ ବ୍ୟକ୍ତିମାନଙ୍କର ସଂଖ୍ୟା ନିହାତି ନଗଣ୍ୟ । ଜୁଆ, ନିଶା, ଅନାଚାର, ନଗ୍ନତା, ଅଶ୍ଳୀଳ ଆଚରଣ ଛାତ୍ରସମାଜକୁ ବିଶୃଙ୍ଖଳିତ କରୁଛି । ଚଳଚ୍ଚିତ୍ରର ନଗ୍ନ ଛବି କାନ୍ଥ ଓ ପ୍ରାଚୀରର ଶୋଭାବର୍ଦ୍ଧନ କରୁଛି । କର୍ଣ୍ଣକଟୁ ଅଶ୍ଳୀଳ ସଙ୍ଗୀତ, ଉଦ୍ଦୀପନା ପୋଷାକ ପରିଚ୍ଛଦ, ଭୋଗବାଦୀ ଜୀବନଧାରା ଛାତ୍ରସମାଜକୁ ବହୁପରିମାଣରେ ବିପଥଗାମୀ କରୁଛି । ଏହାର କୁପ୍ରଭାବ ସବୁକ୍ଷେତ୍ରରେ ଅନୁଭୂତ ହେଉଥିଲେ ହେଁ ପ୍ରତିକାର ନିମିତ୍ତ କୌଣସିଠାରେ ଉଦ୍ୟମ ନାହିଁ । ଏହି ପ୍ରକାର ସାମାଜିକ ଏବଂ ବାହ୍ୟ ପରିବେଶରୁ ଛାତ୍ର ସମାଜ ବିଶୃଙ୍ଖଳିତ ଆଚରଣ ଶିକ୍ଷା କରିବା ବ୍ୟତୀତ, ଅନ୍ୟ କ'ଣ ବା ଶିକ୍ଷା କରିପାରିବେ ? ସମ୍ବାଦପତ୍ରର ପୃଷ୍ଠା ଓଲଟାଇଲେ ପ୍ରତିଦିନ କିଛି ନା କିଛି ଧର୍ଷଣ ଖବର ଦୃଷ୍ଟି ପଥାରୂଢ଼ ହେଉଛି । ଚଳଚ୍ଚିତ୍ରର ନଗ୍ନ ନୃତ୍ୟ, ପୋଷାକ ଓ ଅଭିନେତା ଅଭିନେତ୍ରୀଙ୍କର କାମୋଦ୍ଦୀପକ ଅଭିନୟ ଅନେକ କ୍ଷେତ୍ରରେ ଛାତ୍ର ବିଶୃଙ୍ଖଳା ନିମିତ୍ତ ଦାୟୀ । ଏହାଛଡ଼ା ଶିକ୍ଷାନୁଷ୍ଠାନମାନଙ୍କରେ ରାଜନୈତିକ ହସ୍ତକ୍ଷେପ ବହୁପରିମାଣରେ ଛାତ୍ର ବିଶୃଙ୍ଖଳା ନିମିତ୍ତ ରୋଚକ ଉପାଦାନ ଯୋଗାଇ ଦେଉଛି । ଆଜି ଶିକ୍ଷାନୁଷ୍ଠାନଗୁଡ଼ିକ ଅନୈତିକ ରାଜନୀତିର ବିଚରଣ ଭୂମିରେ ପରିଣତ ହୋଇଛି । କ୍ଷମତା ପାଇଁ ରାଜନୈତିକ ସଂଘର୍ଷରେ ଛାତ୍ର ସମାଜ ବଳି ପଡୁଛନ୍ତି । କେତେକ ସ୍ୱାର୍ଥପର ରାଜନୀତିଜ୍ଞ ନିଜର ଫାଇଦା ପାଇଁ କୋମଳମତି ଛାତ୍ରଙ୍କୁ ଅସ୍ତ୍ରକରି ଶିକ୍ଷାନୁଷ୍ଠାନର ପବିତ୍ର ବାତାବରଣକୁ କଳୁଷିତ କରୁଛନ୍ତି । ଛାତ୍ରମାନଙ୍କୁ ନେଇ ରାଜନୈତିକ ଖେଳ ଖେଳୁଥିବା ଏହି ସ୍ୱାର୍ଥପର ଗୋଷ୍ଠୀ ଦେଶ ପାଇଁ ସବୁଠାରୁ ବଡ଼ ବିପଦ । ଏହିମାନଙ୍କ ପ୍ରରୋଚନାରେ ଧର୍ମଘଟ, ଆଇନ ଅମାନ୍ୟ ଆନ୍ଦୋଳନ, ଜାତୀୟ ସମ୍ପଦ ନଷ୍ଟ ଓ ହିଂସାତ୍ମକ କାର୍ଯ୍ୟରେ ଛାତ୍ରସମାଜ ଲିପ୍ତ ହୋଇ ସେମାନଙ୍କ ସୁନ୍ଦର ଭବିଷ୍ୟତକୁ ନଷ୍ଟ କରୁଛନ୍ତି । ଛାତ୍ରସଂସଦ ନିର୍ବାଚନରେ ବିଭିନ୍ନ ଦଳ ନିଜ ସମର୍ଥିତ ପ୍ରାର୍ଥୀଙ୍କ ବିଜୟ ପାଇଁ ପ୍ରତ୍ୟକ୍ଷ ଭାବରେ ଅଂଶ ଗ୍ରହଣ କରି ଶିକ୍ଷାନୁଷ୍ଠାନର ମର୍ଯ୍ୟାଦା ହାନି କରୁଛନ୍ତି । ଅବୋଧ ଛାତ୍ର ସେମାନଙ୍କ ମଧୁର ପ୍ରତିଶ୍ରୁତିରେ ଭୁଲି ନିଜର ଭବିଷ୍ୟତକୁ ଧ୍ୱଂସ କରୁଛନ୍ତି । ତେଣୁ ଛାତ୍ରବିଶୃଙ୍ଖଳା ନିମିତ୍ତ ଏହି ପ୍ରକାର ରାଜନୈତିକ ନେତା ଅନେକ ପରିମାଣରେ ଦାୟୀ । ପ୍ରଚଳିତ ତ୍ରୁଟିପୂର୍ଣ୍ଣ ଶିକ୍ଷାପଦ୍ଧତି ମଧ୍ୟ ବହୁକ୍ଷେତ୍ରରେ ଛାତ୍ରବିଶୃଙ୍ଖଳାର କାରଣ ରୂପେ ଦେଖା ଦେଇଛି । ଏହି ଶିକ୍ଷାପଦ୍ଧତିରେ ଛାତ୍ରମାନେ ନିଜର ଭବିଷ୍ୟତକୁ ଅସୁରକ୍ଷିତ ମନେକରୁଛନ୍ତି । ଶିକ୍ଷାଲାଭ ପରେ ନିର୍ଦ୍ଦିଷ୍ଟ କାର୍ଯ୍ୟରେ ନିଯୋଜିତ ହେବାର କୌଣସି ପ୍ରତିଶ୍ରୁତି ନାହିଁ । ଶିକ୍ଷାଲାଭ ପରେ ମଧ୍ୟ ନିଜ ଗୋଡ଼ରେ ଠିଆ ହେବାର ସାମର୍ଥ୍ୟ ଛାତ୍ର ହରାଇ ବସୁଛି । ସେହି ପାରମ୍ପରିକ ଶିକ୍ଷାନୀତି ଛାତ୍ରମାନଙ୍କୁ ସ୍ୱାବଲମ୍ବନଶୀଳ ହେବାରେ ଆଦୌ ସାହାଯ୍ୟ କରୁ ନାହିଁ । ଚରିତ୍ର ଗଠନ କ୍ଷେତ୍ରରେ ଏଥିରେ କୌଣସି ବ୍ୟବସ୍ଥା ନାହିଁ । ଆଜି ସମାଜର ସବୁ କ୍ଷେତ୍ରରେ ନୈତିକ ଅବକ୍ଷୟ ଘଟିଛି । ପାରମ୍ପରିକ ଶିକ୍ଷା ବ୍ୟବସ୍ଥାରେ ଛାତ୍ରମାନଙ୍କର ନୈତିକ ମୂଲ୍ୟବୋଧର ବିକାଶ ପାଇଁ କୌଣସି ବାର୍ତ୍ତା ନାହିଁ । ସଂଶୟାଚ୍ଛନ୍ନ, ଦ୍ୱିଧାଗ୍ରସ୍ତ ଓ ଅନିଶ୍ଚିତ ଭବିଷ୍ୟତ ଆଜି ଛାତ୍ରସମାଜକୁ ବିଶୃଙ୍ଖଳିତ କରୁଛି । ଜୀବନସଂଗ୍ରାମରେ ବାରମ୍ବାର ପରାଜୟ ବରଣ କରି ସେମାନେ ସମାଜ ବିରୋଧରେ ସ୍ୱର ଉତ୍ତୋଳନ କରୁଛନ୍ତି । ନୀତି ଓ ନିୟମକୁ ଭାଙ୍ଗି ସମାଜରେ ସୃଷ୍ଟି କରୁଛନ୍ତି ଅଶାନ୍ତିର ବାତାବରଣ । ପୁସ୍ତକ ଜ୍ଞାନଶିକ୍ଷା ମଣିଷକୁ କେବେ ଆତ୍ମନିର୍ଭରଶୀଳ କରିପାରେନା ।

ଶିକ୍ଷାର ମୁଖ୍ୟ ଉଦ୍ଦେଶ୍ୟ ବ୍ୟାବହାରିକ ଜ୍ଞାନ ତଥା ଆତ୍ମନିର୍ଭରଶୀଳ ହେବାପାଇଁ ପ୍ରକୃତ ଦିଗ୍‌ଦର୍ଶନ ପ୍ରଦାନ । ମାତ୍ର ବର୍ତ୍ତମାନର ଶିକ୍ଷାପଦ୍ଧତିରେ ଏହାର ଘୋର ଅଭାବ ପରିଲକ୍ଷିତ ହେଉଥିବାରୁ ସମ୍ଭାବନାହୀନ ଭବିଷ୍ୟତକୁ ଲକ୍ଷ୍ୟକରି ଛାତ୍ରସମାଜ ବିଶୃଙ୍ଖଳିତ ହେଉଛନ୍ତି । ଛାତ୍ରଙ୍କୁ ଉପଯୁକ୍ତ ମାର୍ଗ ଦର୍ଶନ କ୍ଷେତ୍ରରେ ଶିକ୍ଷକମାନଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଆଜି ଶିକ୍ଷକମାନେ ସେମାନଙ୍କ ଦାୟିତ୍ୱ ଯଥାନୁରୂପ ସାଧନ କରିପାରୁ ନ ଥିବାରୁ ଛାତ୍ରବିଶୃଙ୍ଖଳା ଦେଖା ଦେଉଛି । ଶିକ୍ଷକ ଏବଂ ଛାତ୍ରମାନଙ୍କ ମଧ୍ୟରେ ଯେପରି ସମ୍ପର୍କ ରହିବା ଆବଶ୍ୟକ, ତାହା ରହିପାରୁ ନାହିଁ । ବହୁ ଶିକ୍ଷକ ଚାକିରିର ସୁରକ୍ଷା ପାଇଁ ନିଜର କର୍ତ୍ତବ୍ୟରେ ଅବହେଳା ପ୍ରଦର୍ଶନ କରିଥାନ୍ତି । କେତେକ ଦାୟିତ୍ୱହୀନ ଓ ଅପରିଣାମଦର୍ଶୀ ଶିକ୍ଷକ ନିଜର ସ୍ୱାର୍ଥ ପାଇଁ ଛାତ୍ରମାନଙ୍କୁ ଅସ୍ତ୍ରକରି ଶିକ୍ଷାନୁଷ୍ଠାନରେ ବିଶୃଙ୍ଖଳା ସୃଷ୍ଟି କରିଥାନ୍ତି । ଅନ୍ୟ ଶିକ୍ଷକଙ୍କ ବିରୋଧରେ ଛାତ୍ରମାନଙ୍କୁ ପ୍ରେରିତ କରନ୍ତି । ଅର୍ଥଲୋଭରେ ଟିଉସନ୍ ପାଇଁ ଶିକ୍ଷାନୁଷ୍ଠାନରେ ଶିକ୍ଷାପ୍ରଦାନ କରି ନ ଥାନ୍ତି । ଏମାନେ ଶିକ୍ଷାକୁ ଏକ ବ୍ୟବସାୟରେ ପରିଣତ କରିଥାନ୍ତି । ଏପରି ଶିକ୍ଷକଙ୍କ ଆଚରଣ ଛାତ୍ର ବିଶୃଙ୍ଖଳା ପାଇଁ ଉପାଦାନ ଯୋଗାଇ ଦେଇଥାଏ । ତେଣୁ ଛାତ୍ରସମାଜ ସେମାନଙ୍କ ପ୍ରକୃତ ଦାୟିତ୍ୱ ଓ କର୍ତ୍ତବ୍ୟ ବିସ୍ମୃତ ହୋଇ ବିଶୃଙ୍ଖଳିତ ଆଚରଣ ପ୍ରଦର୍ଶନ କରିଥାନ୍ତି । ଛାତ୍ର ବିଶୃଙ୍ଖଳାର ଆଜି ସବୁଠାରୁ ମୁଖ୍ୟ କାରଣ ହେଉଛି ସେମାନଙ୍କର ଅନିଶ୍ଚିତ ଭବିଷ୍ୟତ । ସେମାନେ ଅନୁଭବ କରୁଛନ୍ତି, ଏହି ଶିକ୍ଷାଲାଭରେ କୌଣସି ଆବଶ୍ୟକ ନାହିଁ । ତାଙ୍କ ଆଗରେ ହଜାର ହଜାର ଶିକ୍ଷିତ ବେକାର ଜୀବନକୁ ଅବଲମ୍ବନ କରି ବଡ଼ ଅସହାୟ ଜୀବନଯାପନ କରୁଛନ୍ତି । ସେମାନଙ୍କର ଭବିଷ୍ୟତ ପ୍ରଖର ଗ୍ରୀଷ୍ମ ତାପରେ ଦରମୁକୁଳିତ କଳିକାପରି ପୋଡ଼ି ଭସ୍ମୀଭୂତ ହୋଇଯାଉଛି । ଶିକ୍ଷାଲାଭ ସମୟରେ ସମସ୍ତ ଆଶା, ବିଶ୍ୱାସ ଓ ସ୍ୱପ୍ନ ଧୂଳିସାତ୍ ହେଉଛି । ଏହି ମାନସିକ ଅଶାନ୍ତି ଛାତ୍ର ବିଶୃଙ୍ଖଳାର ମୁଖ୍ୟ କାରଣ ରୂପେ ଦେଖାଯାଉଛି ।

ଛାତ୍ର ସମାଜରେ ପରିଲକ୍ଷିତ ଏହି ବିଶୃଙ୍ଖଳାର ନିରାକରଣ ନିମିତ୍ତ କେତେକ ପଦକ୍ଷେପ ଗ୍ରହଣ କରାଯାଇପାରିଲେ ଏହାର ଆଶୁ ସମାଧାନ ହୋଇପାରିବ । ଛାତ୍ରସମାଜ ଏକ ଝରଣାପରି । ପଥଅପଥ ନ ମାନି ଝରିଯିବା ହିଁ ତାଙ୍କର ଧର୍ମ । ମାତ୍ର ସେମାନଙ୍କୁ ଉପଯୁକ୍ତ ଦିଗ୍‌ଦର୍ଶନ ପ୍ରଦାନ କରିବା ସମାଜର ନୈତିକ କର୍ତ୍ତବ୍ୟ । ସମାଜର ସବୁ ସ୍ତରରେ ସଦ୍‌ଭାବ ପ୍ରତିଷ୍ଠିତ ହୋଇପାରିଲେ ଏହାର ଗଭୀର ପ୍ରଭାବ ଛାତ୍ର ସମାଜ ଉପରେ ପଡ଼ିବ । ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ସଦ୍‌ଭାବ ପ୍ରତିଷ୍ଠାଦ୍ୱାରା ସାମାଜିକ ମଙ୍ଗଳ ସାଧିତ ହେବା ସଙ୍ଗେ ସଙ୍ଗେ ଛାତ୍ରସମାଜ ଏଥିପ୍ରତି ଉଦ୍‌ବୁଦ୍ଧ ହୋଇ ସାମାଜିକ ଚଳନ୍ତି ସ୍ରୋତରେ ନିଜକୁ ସାମିଲ କରିପାରିବ । ସାମାଜିକ ଜୀବନର ଅବକ୍ଷୟ ଛାତ୍ର ବିଶୃଙ୍ଖଳାର ମୁଖ୍ୟ କାରଣ ହୋଇଥିବାରୁ ସମାଜର ସୁସଙ୍ଗଠନ ଓ ନୈତିକ ମୂଲ୍ୟର ଅଭିବୃଦ୍ଧି ନିମିତ୍ତ ବିଭିନ୍ନ ସ୍ତରରେ ଉଦ୍ୟମ ଜାରି ରହିବା ଆବଶ୍ୟକ । ଏହାଦ୍ୱାରା ସମାଜ ସୁସ୍ଥ ସୁନ୍ଦର ହେବା ସଙ୍ଗେ ସଙ୍ଗେ ଛାତ୍ରସମାଜର ନୈତିକ ମୂଲ୍ୟ ବୃଦ୍ଧି ପାଇବ । ସେଥିପାଇଁ ସାମାଜିକ ଶୃଙ୍ଖଳା ବର୍ତ୍ତମାନ ସମୟର ସବୁଠାରୁ ବଡ଼ ଆହ୍ୱାନ । ଏଥିପାଇଁ ଆବଶ୍ୟକ ରହିଛି ସାମାଜିକ ସଦ୍‌ଭାବର । ପରସ୍ପରର ବିପଦରେ ସହାୟ ହେବା, ସମସ୍ତଙ୍କୁ ସମଦୃଷ୍ଟିରେ ଦେଖିବା, ଏହି ସଦ୍‌ଭାବର ଅନ୍ୟତମ ବୈଶିଷ୍ଟ୍ୟ । ବର୍ତ୍ତମାନ

ଶିକ୍ଷାପଦ୍ଧତି ତ୍ରୁଟିପୂର୍ଣ୍ଣ ହୋଇଥିବାରୁ ଏହାର ଖସଡ଼ାରେ ପରିବର୍ତ୍ତନ ଆଣିବା ଉଚିତ । କର୍ମାଭିମୁଖୀ ଶିକ୍ଷା ପ୍ରତି ବର୍ତ୍ତମାନ ବିଶେଷ ଗୁରୁତ୍ୱପ୍ରଦାନ କରାଯିବା ଆବଶ୍ୟକ । ବେକାର ରହିବାର ମାନସିକ ଯନ୍ତ୍ରଣାରୁ ଛାତ୍ରସମାଜ ମୁକ୍ତ ହୋଇପାରିଲେ, ସେମାନଙ୍କର ବିଶୃଙ୍ଖଳିତ ଆଚରଣ ସ୍ୱତଃ ହ୍ରାସ ପାଇବ । ଏକ ଅନିଶ୍ଚିତ ଭବିଷ୍ୟତ ସମାଜ ବିରୋଧରେ ଆନ୍ଦୋଳନ କରିବାକୁ ସେମାନଙ୍କୁ ପ୍ରେରିତ କରିଥାଏ । ସେଥିରୁ ମୁକ୍ତିଲାଭ କଲେ ଶୃଙ୍ଖଳିତ ଜୀବନଯାପନ ପ୍ରଣାଳୀକୁ ସେମାନେ ଗ୍ରହଣ କରିପାରିବେ । ତେଣୁ ବର୍ତ୍ତମାନ ଭାରତର ଆବଶ୍ୟକତା ଓ ଛାତ୍ରସମାଜର ଭବିଷ୍ୟତ କର୍ମପନ୍ଥାକୁ ଆଖିରେ ରଖି ପାଠ୍ୟଖସଡ଼ା ପ୍ରସ୍ତୁତ ହେବା ଆବଶ୍ୟକ । ବୈଷୟିକ ଶିକ୍ଷା ଉପରେ ଗୁରୁତ୍ୱପ୍ରଦାନ କରାଗଲେ କୌଳିକ ଶିକ୍ଷା ତା'ର ପୂର୍ବ ମର୍ଯ୍ୟାଦା ଫେରିପାଇବା ସଙ୍ଗେ ସଙ୍ଗେ ଛାତ୍ରସମାଜର ହତାଶାବୋଧ ନିରାକରଣ ହୋଇପାରିବ । ଆମ ସମାଜରେ ଛାତ୍ରସମାଜ ପ୍ରତି ଯେତିକି ସମ୍ମାନ ଓ ସହାନୁଭୂତି ମିଳିବା କଥା ତାହା ମିଳିପାରୁ ନାହିଁ । ବୟସର ସ୍ୱଳ୍ପତା ଯୋଗୁଁ ଅନେକ ସମୟରେ ଆମ ସମାଜ ସେମାନଙ୍କର ଖିଆଲକୁ ଯଥାର୍ଥ ସମ୍ମାନ ଦେଉନଥିବାରୁ ସେମାନେ ପ୍ରତିକ୍ରିୟାଶୀଳ ହୋଇ ଉଠୁଛନ୍ତି । ସମାଜ ସେମାନଙ୍କୁ ଯେଉଁପରି ବ୍ୟବହାର ପ୍ରଦର୍ଶନ କରିବ ପରିଣାମରେ ସେମାନେ ସମାଜକୁ ସେହିପରି ବ୍ୟବହାର ପ୍ରଦର୍ଶନ କରିବେ । ସେଥିପାଇଁ ଛାତ୍ରସମାଜ ପ୍ରତି ସମାଜର ବର୍ତ୍ତମାନ ଯେଉଁପରି ଦୃଷ୍ଟିଭଙ୍ଗୀ ରହିଛି, ସେଥିରେ ଏକାନ୍ତ ପରିବର୍ତ୍ତନ ଆସିବା ଆବଶ୍ୟକ । ବର୍ତ୍ତମାନର ଶିକ୍ଷାନୁଷ୍ଠାନଗୁଡ଼ିକ ସରକାରୀ ନିୟନ୍ତ୍ରଣାଧୀନ ରହିଥିବାରୁ ଅନୁଷ୍ଠାନ ସ୍ୱାଧୀନ ଭାବରେ କୌଣସି ପଦକ୍ଷେପ ଗ୍ରହଣ କରିବାକୁ ସମର୍ଥ ହୋଇପାରୁ ନାହିଁ । ସରକାରୀ କଟକଣା ବହୁ ସମୟରେ ଶିକ୍ଷାନୁଷ୍ଠାନର ମହତ୍ତ୍ୱ ହାନି କରୁଛି ଓ ଛାତ୍ରସମାଜର ପ୍ରକୃତ ଅଭାବ ଉପଲବ୍ଧି କରିପାରୁ ନ ଥିବାରୁ ବିଶୃଙ୍ଖଳା ବୃଦ୍ଧି ପାଉଛି । ଏପରିକି ନାମଲେଖା କ୍ଷେତ୍ରରେ ମଧ୍ୟ ଯୋଗ୍ୟ ଛାତ୍ର ସ୍ଥାନ ନ ପାଇ ବହୁ ଅଯୋଗ୍ୟ ଛାତ୍ର ସରକାରୀ କଳର ସହାୟତା ନେଇ ପ୍ରବେଶ ଲାଭ କରୁଛନ୍ତି ଓ ଶିକ୍ଷାନୁଷ୍ଠାନରେ ବିଶୃଙ୍ଖଳ ଆଚରଣ ପ୍ରଦର୍ଶନ କରୁଛନ୍ତି । ଶିକ୍ଷାନୁଷ୍ଠାନ ନିଜେ ପ୍ରବେଶିକା ପରୀକ୍ଷା ମାଧ୍ୟମରେ ଛାତ୍ର ନିର୍ବାଚନ କଲେ, ବହୁ ବିଶୃଙ୍ଖଳିତ ଛାତ୍ର ଏଥିରୁ ବାଦ୍ ପଡ଼ନ୍ତେ ଏବଂ ଶିକ୍ଷାନୁଷ୍ଠାନମାନଙ୍କରେ ଶାନ୍ତି ଓ ସ୍ଥିରତା ଜାରି ରହିପାରନ୍ତା । ତେଣୁ ଛାତ୍ର, ସମାଜ ଏବଂ ଶିକ୍ଷାନୁଷ୍ଠାନର ମଙ୍ଗଳ ନିମିତ୍ତ ପ୍ରତ୍ୟେକ ଶିକ୍ଷାନୁଷ୍ଠାନଗୁଡ଼ିକୁ ସ୍ୱୟଂଚାଳିତ କରିବା ନିତାନ୍ତ ଆବଶ୍ୟକ । ବର୍ତ୍ତମାନ ପରିପ୍ରେକ୍ଷୀରେ ରାଜନୈତିକ ପ୍ରଭାବରୁ ଶିକ୍ଷାନୁଷ୍ଠାନଗୁଡ଼ିକୁ ମୁକ୍ତ ରଖିବା ଏକାନ୍ତ ଜରୁରୀ । କାରଣ ରାଜନୈତିକ କାରଣରୁ ବହୁ ସମୟରେ ଛାତ୍ର ବିଶୃଙ୍ଖଳା ଦେଖାଦେଉଛି । ଏହି କାରଣରୁ ହିଁ ଭାଷାକୁ କେନ୍ଦ୍ରକରି ତାମିଲନାଡୁରେ; ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟ ସ୍ଥାପନ ପାଇଁ ଆଲିଗଡ଼ରେ ଏବଂ ସ୍ଥାୟୀ ବାସିନ୍ଦାକୁ କେନ୍ଦ୍ରକରି ଆସାମରେ ଛାତ୍ରବିଶୃଙ୍ଖଳା ଦେଖାଦେଇଥିଲା । ରାଜନୀତିକ ନେତାଗଣ ଛାତ୍ରମାନଙ୍କର ଶିକ୍ଷାର ଗୁଣାତ୍ମକ ଅଭିବୃଦ୍ଧି ନିମିତ୍ତ ସେମାନଙ୍କୁ ଆନ୍ଦୋଳନରେ ପ୍ରବୃତ୍ତ ନ କରି ନିଜର ବ୍ୟକ୍ତିଗତ ଫାଇଦା ନିମିତ୍ତ ଛାତ୍ରସମାଜକୁ ବଳି ପକାଉଥିବାରୁ ବିଶୃଙ୍ଖଳା ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଛି । ତେଣୁ ରାଜନୈତିକ ହସ୍ତକ୍ଷେପରୁ ଶିକ୍ଷାନୁଷ୍ଠାନଗୁଡ଼ିକ ମୁକ୍ତି ଲାଭ କଲେ ଛାତ୍ରବିଶୃଙ୍ଖଳା ଅନେକ ପରିମାଣରେ ହ୍ରାସ ପାଇବ ।

ଏଥିପାଇଁ ବିଭିନ୍ନ କ୍ଷେତ୍ରରେ ଜନସଚେତନତାର ଆବଶ୍ୟକତା ରହିଛି । ବର୍ତ୍ତମାନ ଅଭିଭାବକ, ଶିକ୍ଷକ ଓ ଛାତ୍ରମାନଙ୍କ ମଧ୍ୟରେ ଆଦୌ ସହଯୋଗ ପ୍ରତିଷ୍ଠା ହୋଇପାରୁ ନ ଥିବାରୁ ଛାତ୍ରବିଶୃଙ୍ଖଳା ବୃଦ୍ଧି ପାଉଛି । ଘରେ ଛାତ୍ର କ'ଣ କରୁଛି ତାହା ଶିକ୍ଷକ ଜାଣିପାରୁ ନାହିଁ କିମ୍ବା ଶିକ୍ଷାନୁଷ୍ଠାନରେ ଛାତ୍ର କ'ଣ କରୁଛି, ତାହା ଅଭିଭାବକ ଜାଣିପାରୁ ନାହିଁ । ଉପଯୁକ୍ତ ଯୋଗାଯୋଗର ଅଭାବରୁ ଛାତ୍ରର ଗତିବିଧି ଉଭୟ ଅଭିଭାବକ ଓ ଶିକ୍ଷକଙ୍କ ନିକଟରେ ଅନ୍ଧାରରେ ରହିଯାଉଛି । ଶିକ୍ଷକ ଛାତ୍ରମାନଙ୍କର ଭାବପ୍ରବଣ ମନକୁ ଯେପରି ହୃଦୟଙ୍ଗମ କରିବା ଆବଶ୍ୟକ, ଅଭିଭାବକ ମଧ୍ୟ ତା'ର ଆଚରଣ ପ୍ରତି ସେହିପରି ଦୃଷ୍ଟିଦେବା ଆବଶ୍ୟକ । ଏଥିପାଇଁ ପ୍ରତି ମାସରେ ଛାତ୍ର, ଅଭିଭାବକ ଓ ଶିକ୍ଷକମାନଙ୍କର ଏକ ମିଳିତ ବୈଠକ ଅନୁଷ୍ଠିତ ହୋଇ ସେମାନଙ୍କର ଗୁଣାତ୍ମକ ବିକାଶ ନିମିତ୍ତ ଉପଯୁକ୍ତ ପଦକ୍ଷେପ ଗ୍ରହଣ କରାଯାଇ ପାରିଲେ ଛାତ୍ରବିଶୃଙ୍ଖଳା ବହୁପରିମାଣରେ ହ୍ରାସ ପାଇପାରିବ । ଶିକ୍ଷାନୁଷ୍ଠାନମାନଙ୍କରେ ଛାତ୍ର ନିର୍ବାଚନ ସମୟରେ କେତେକ ନୀତିନିୟମ ପ୍ରତି ଦୃଷ୍ଟି ଦିଆଯିବା ଉଚିତ । ବିଭିନ୍ନ ପରୀକ୍ଷାଦ୍ୱାରା ତଥା ଛାତ୍ର ଓ ଅଭିଭାବକମାନଙ୍କର ମୌଖିକ ଆଲୋଚନା ମାଧ୍ୟମରେ ଛାତ୍ରମାନଙ୍କୁ ଗ୍ରହ ୀ କରାଗଲେ ଅନେକ ଉଦ୍‌ବାସ୍ତୁ ଛାତ୍ର ନାମଲେଖାରୁ ବଞ୍ଚିତ ହୁଅନ୍ତେ ଓ ସେମାନଙ୍କ ଦ୍ୱାରା ଆଶଙ୍କା କରାଯାଉଥିବା ବିଶୃଙ୍ଖଳାର ମଧ୍ୟ ପରିସମାପ୍ତି ଘଟନ୍ତା । ଅନୁଷ୍ଠାନର ବିଭିନ୍ନ କାର୍ଯ୍ୟକ୍ରମ ତଥା ସମାଜ ହିତକର କାର୍ଯ୍ୟରେ ଛାତ୍ରମାନଙ୍କୁ ବ୍ୟାପୃତ କରିପାରିଲେ ଓ ସେମାନଙ୍କ ମଧ୍ୟରେ ଶୃଙ୍ଖଳାବୋଧ ଜାଗ୍ରତ କରିପାରିଲେ ଛାତ୍ରସମାଜ ବହୁପରିମାଣରେ ଶୃଙ୍ଖଳିତ ହୋଇପାରନ୍ତେ ।

ଦେଶର ସାମଗ୍ରିକ ବିକାଶରେ ଛାତ୍ରସମାଜ ମୁଖ୍ୟ ଭୂମିକା ଗ୍ରହଣ କରୁଥିବାରୁ ପ୍ରଥମେ ସେମାନେ ଶୃଙ୍ଖଳିତ ହେବା ଆବଶ୍ୟକ । ଛାତ୍ରବିଶୃଙ୍ଖଳା ନିମିତ୍ତ ବିଭିନ୍ନ କାରଣ ଦାୟୀ ହୋଇଥିବାରୁ ସବୁ ସ୍ତରରେ ଏହାର ନିରାକରଣ ନିମିତ୍ତ ଯଥୋଚିତ ଧ୍ୟାନ ପ୍ରଦାନ କରାଯିବା ଏକାନ୍ତ ଜରୁରୀ । ଦେଶର ଭବିଷ୍ୟତ ନେତୃତ୍ୱ ସେମାନଙ୍କ ଉପରେ ନିର୍ଭର କରେ । ଦେଶର ବିକାଶ ଓ ପ୍ରଗତି ସେମାନଙ୍କର ଶୃଙ୍ଖଳାବୋଧ ଉପରେ ବହୁପରିମାଣରେ ନିର୍ଭରଶୀଳ । ସେଥିପାଇଁ ଛାତ୍ରସମାଜକୁ ଉପଯୁକ୍ତ ଦିଗ୍‌ଦର୍ଶନ ପ୍ରଦାନ କରାଯିବା ଆବଶ୍ୟକ । ସାମୟିକ ସ୍ୱାର୍ଥ ପାଇଁ ଦେଶର ଭବିଷ୍ୟତକୁ ଅନୁଚିତ ମାର୍ଗ ପ୍ରଦର୍ଶନ କଲେ ସମଗ୍ର ଦେଶର ହିଁ କ୍ଷତି ଘଟିବ । ଆଜିର ଛାତ୍ରସମାଜ ଯେଉଁ ଅନିଶ୍ଚିତତା ଓ ଅସହାୟତା ପଛରେ ଧାବମାନ ହେଉଛନ୍ତି, ସେଥିରୁ ସେମାନଙ୍କୁ ନିବୃତ୍ତ କରାଇ ସେମାନଙ୍କ ମନରେ ଆଶା ଓ ଆଶ୍ୱାସନାର ଭାବ ଉଦ୍ରେକ କରିବା ଆଜିର ସମାଜର ନୈତିକ କର୍ତ୍ତବ୍ୟ । କାରଣ ସେମାନଙ୍କର ଶୃଙ୍ଖଳା ଉପରେ ଦେଶର ଶୃଙ୍ଖଳା ଓ ପ୍ରଗତି ନିର୍ଭର କରେ । ଏହି କାରଣରୁ ଆମ ସମାଜରୁ ଛାତ୍ରବିଶୃଙ୍ଖଳା ଦୂର କରିବା ପାଇଁ ପ୍ରତ୍ୟେକ ବ୍ୟକ୍ତି ନିଜ ନିଜ ସ୍ତରରେ ଉଦ୍ୟମ ଜାରି ରଖିବା ସଙ୍ଗେ ସଙ୍ଗେ ଏହାକୁ ଏକ ସାମାଜିକ କର୍ତ୍ତବ୍ୟ ଭାବରେ ଗ୍ରହଣ କରିନେବା ଆବଶ୍ୟକ ।

●

# ଦେଶ ଗଠନରେ ଛାତ୍ରସମାଜର ଭୂମିକା
# ବା
# ସ୍ୱାଧୀନ ଭାରତ ଓ ଛାତ୍ରସମାଜ

(ଉପକ୍ରମ, ଭାରତୀୟ ସମାଜବ୍ୟବସ୍ଥା ଓ ଛାତ୍ର, ସ୍ୱାଧୀନତା ପୂର୍ବବର୍ତ୍ତୀ ଭାରତରେ ଛାତ୍ରର ଭୂମିକା, ସ୍ୱାଧୀନତୋତ୍ତର କାଳରେ ଛାତ୍ରସମାଜ, (ଯୋଜନା ପ୍ରଣୟନ, ରାଜନୀତି, ଭୂସଂସ୍କାର ଓ ଦୁର୍ନୀତି ବିରୋଧରେ ସଂଗ୍ରାମ, ସାମାଜିକ ସଚେତନତା ତଥା ସାମ୍ପ୍ରଦାୟିକ ସଦ୍ଭାବ, ଜାତୀୟ ଚେତନାର ବିକାଶ କ୍ଷେତ୍ର ଆଦିରେ ଛାତ୍ରସମାଜର ଭୂମିକା; ଉପସଂହାର)

ଭାରତ ଏକ ବିଶାଳ ଦେଶ । ସମ୍ପ୍ରତି ଏହି ମାଟିରେ ୧୦୮ କୋଟି ଲୋକ ବସବାସ କରୁଛନ୍ତି । ଲୋକସଂଖ୍ୟାର ପ୍ରାୟ ଅଧା ହେଉଛନ୍ତି ଯୁବକ, ଯେଉଁମାନଙ୍କର ବୟସ ସୀମା ୧୫ ବର୍ଷରୁ ୩୫ ବର୍ଷ ମଧ୍ୟରେ । ଏହିମାନଙ୍କ ମଧ୍ୟରେ ଅଛନ୍ତି ଛାତ୍ର, ଶ୍ରମଜୀବୀ, କୃଷକ, ଦୈନିକ ମଜୁରିଆ, ଚାକିରିଆ, ବ୍ୟବସାୟୀ, ରାଜନୀତିକ ବ୍ୟକ୍ତିବିଶେଷ ଓ ବେକାର ଆଦି ଯୁବକ । ଦେଶ ଗଠନରେ ଏହିମାନଙ୍କର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ଏହିମାନେ ଦେଶର ଅମିତ ଶକ୍ତି । ଯୁବକ ହୋଇଥିବାରୁ ଅନ୍ୟମାନଙ୍କ ତୁଳନାରେ ଏମାନେ ଅଧିକ କାର୍ଯ୍ୟକ୍ଷମ, କଷ୍ଟସହିଷ୍ଣୁ ଓ କର୍ତ୍ତବ୍ୟପରାୟଣ । ଉଚିତ ଦିଗ୍‌ଦର୍ଶନ ଲାଭ କଲେ ଏମାନେ ଦେଶର ପ୍ରଗତିକୁ ତ୍ୱରାନ୍ୱିତ କରିପାରିବେ । ବହୁ ଯୁବକ ଦେଶପାଇଁ ପ୍ରାଣ ଉତ୍ସର୍ଗ କରିବାକୁ ମଧ୍ୟ ତତ୍ପର । ମାତ୍ର ଦୁଃଖର ବିଷୟ ଉପଯୁକ୍ତ ଦିଗ୍‌ଦର୍ଶନ ତଥା କାର୍ଯ୍ୟାଭାବରୁ ଏମାନେ ପଥଭ୍ରଷ୍ଟ ହୋଇପଡ଼ିଛନ୍ତି । ଜାତୀୟ ସ୍ରୋତରେ ନିଜକୁ ସାମିଲ କରିବାକୁ ସମର୍ଥ ହୋଇପାରୁ ନାହାନ୍ତି । ଏହି ଯୁବଶକ୍ତିକୁ ଯଥାର୍ଥ ବିନିଯୋଗ କରାଯାଇ ପାରୁନଥିବାରୁ ବହୁ ପରିମାଣରେ ଜାତୀୟ କ୍ଷତି ଘଟୁଛି । ଏମାନଙ୍କର ବୁଦ୍ଧି ଓ କାର୍ଯ୍ୟକାରୀ ଶକ୍ତିକୁ ଅପଚୟ ନ କରି ବିଭିନ୍ନ କାର୍ଯ୍ୟରେ ନିୟୋଜନ କରାଯାଇପାରିଲେ ଦେଶ ସମୃଦ୍ଧିଶାଳୀ ହୋଇପାରିବ; ଦେଶର ବିକାଶ ତ୍ୱରାନ୍ୱିତ ହୋଇପାରିବ । ଉତ୍ସାହ ଓ କାର୍ଯ୍ୟ ଅଭାବରୁ ଏମାନେ ଅଳସୁଆ ହେବା ସଙ୍ଗେ ସଙ୍ଗେ ବିଭିନ୍ନ ଧ୍ୱଂସାତ୍ମକ କାର୍ଯ୍ୟରେ ନିଜକୁ ଜଡ଼ିତ କରୁଛନ୍ତି । ତେଣୁ ଦେଶର ନେତୃବୃନ୍ଦ ଏହି ଯୁବଶକ୍ତିକୁ କିପରି ଅଧିକ କ୍ଷମ ଓ କାର୍ଯ୍ୟକାରୀ କରିପାରିବେ, ସେ ସମ୍ବନ୍ଧରେ ଚିନ୍ତାକରିବା ଆବଶ୍ୟକ । ତା' ନ ହେଲେ ଦେଶର ପ୍ରଗତି ସ୍ଥାଣୁ ହୋଇପଡ଼ିବ ।

ଭାରତୀୟ ସାମାଜିକ ପରମ୍ପରାରେ ଯୁଗେ ଯୁଗେ ଛାତ୍ରସମାଜ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଆସିଛି । ପ୍ରାଚୀନ କାଳରେ ଗୁରୁକୁଳରେ ଶିକ୍ଷା ଗ୍ରହଣ କରିବା ସମୟରେ ଛାତ୍ରସମାଜ କିପରି ଭାବରେ ସମାଜର ମଙ୍ଗଳ କାର୍ଯ୍ୟରେ ନିଜକୁ ନିୟୋଜିତ କରିପାରିବେ ସେ ସମ୍ପର୍କରେ ଶିକ୍ଷାଲାଭ କରୁଥିଲେ । ଶିକ୍ଷାଲାଭ ପରେ ସମାଜର ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠା ଲାଭ କରିବା

ସଙ୍ଗେ ସଙ୍ଗେ ସମାଜକୁ ଉଚିତ ଦିଗ୍‌ଦର୍ଶନ ପ୍ରଦାନ କରୁଥିଲେ । ସେମାନଙ୍କର ସମବେତ ଉଦ୍ୟମ ଫଳରେ ସମାଜର ସାମଗ୍ରିକ ଉନ୍ନତି ସାଧିତ ହୋଇପାରୁଥିଲା । ସେମାନଙ୍କର ଶକ୍ତି ଏବଂ ବୁଦ୍ଧି ନିୟୋଜିତ ହେଉଥିଲା ସମାଜର ବିକାଶ ନିମିତ୍ତ । ପୁରାଣ, ଇତିହାସରୁ ଏହି ଛାତ୍ରସମାଜର ବହୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟାବଳୀର ନିଦର୍ଶନ ଦେଖିବାକୁ ମିଳେ । ତେଣୁ ପ୍ରାଚୀନ କାଳରେ ଭାରତୀୟ ସାମାଜିକ ବ୍ୟବସ୍ଥାରେ ଛାତ୍ରସମାଜର ଗୁରୁତ୍ୱପୂର୍ଣ୍ଣ ଭୂମିକା ସ୍ୱୀକୃତ ହୋଇଥିଲା ।

ଇଂରେଜ ଶାସନାଧୀନ ସମୟରେ ଭାରତୀୟ ଛାତ୍ରସମାଜ ନିଜ ଦେଶର ସ୍ୱାଧୀନତା ନିମିତ୍ତ ଆତ୍ମବଳି ଦେବାକୁ କୁଣ୍ଠା ପ୍ରକାଶ କରି ନ ଥିଲା । ମହାତ୍ମାଗାନ୍ଧିଙ୍କ ଆହ୍ୱାନରେ ଶହ ଶହ ଛାତ୍ର ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । ଇଂରେଜ ଶାସକମାନଙ୍କର ଅକଥନୀୟ ଅତ୍ୟାଚାର ସେମାନଙ୍କୁ ଦେଶସେବାରୁ ନିବୃତ୍ତ କରିପାରିନ ଥିଲା । ୧୯୪୨ ମସିହାର ଅଗଷ୍ଟ ବିପ୍ଳବରେ ଛାତ୍ରସମାଜର ଭୂମିକା ଥିଲା ଅତୀବ ଗୁରୁତ୍ୱପୂର୍ଣ୍ଣ । ବିଦ୍ୟାଳୟ, ମହାବିଦ୍ୟାଳୟ ତ୍ୟାଗ କରି ଜାତିର ସ୍ୱାର୍ଥ ପାଇଁ ଏମାନେ ନିଜର ଭବିଷ୍ୟତକୁ ଅନ୍ଧକାର ଗହ୍ୱରକୁ ଠେଲିଦେଇ ଆଗେଇ ଆସିଥିଲେ । ସ୍ୱାଧୀନତା ଲାଭ ପାଇଁ ଏମାନଙ୍କର ପ୍ରାଣମୂର୍ଚ୍ଛା ସଂଗ୍ରାମ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ଦେଶର ଦାବି ଆଗରେ ନିଜର ସୁଖସ୍ୱାଚ୍ଛନ୍ଦ୍ୟକୁ ସମ୍ପୂର୍ଣ୍ଣ ରୂପେ ବଳି ଦେଇଥିଲେ ତତ୍କାଳୀନ ଛାତ୍ରସମାଜ । ସ୍ୱାଧୀନତା ଆନ୍ଦୋଳନ ବ୍ୟତୀତ ସମାଜ ସଂସ୍କାର, କୁସଂସ୍କାର ବିରୋଧରେ ସଂଗ୍ରାମ ଥିଲା ସ୍ୱାଧୀନତା ପୂର୍ବବର୍ତ୍ତୀ ଭାରତୀୟ ଛାତ୍ରସମାଜର ଅନ୍ୟତମ କର୍ତ୍ତବ୍ୟ । ନିଶାନିବାରଣ ପାଇଁ ୧୯୩୦ ମସିହାରେ ଯେଉଁ ଶାନ୍ତିପୂର୍ଣ୍ଣ ହରତାଳ ବିଭିନ୍ନ ମଦ ଓ ନିଶାଦୋକାନମାନଙ୍କ ଆଗରେ ଅନୁଷ୍ଠିତ ହୋଇଥିଲା, ସେଥିରେ ଏହି ଛାତ୍ରସମାଜ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ଅସହଯୋଗ ଆନ୍ଦୋଳନରେ ମଧ୍ୟ ଏମାନେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ।

ସ୍ୱାଧୀନତାର ପରବର୍ତ୍ତୀ କାଳରେ ଛାତ୍ରସମାଜର ଭୂମିକା ଅଧିକ ଗୁରୁତ୍ୱପୂର୍ଣ୍ଣ ମନେ ହୋଇଛି । ସ୍ୱାଧୀନତା ପୂର୍ବରୁ ଛାତ୍ରସମାଜର ଆନ୍ଦୋଳନ ଥିଲା 'ସ୍ୱାଧୀନତା' ଲାଭ ନିମିତ୍ତ । ମାତ୍ର ସ୍ୱାଧୀନତା ପରେ ଏହି କଷ୍ଟଲବ୍ଧ ସ୍ୱାଧୀନତାକୁ ସୁରକ୍ଷିତ ରଖିବା ହୋଇଛି ସବୁଠାରୁ ବଡ଼ କର୍ତ୍ତବ୍ୟ । ସ୍ୱାଧୀନତା ଲାଭ ନିମିତ୍ତ ଆନ୍ଦୋଳନରେ ଇଂରେଜ ସରକାରଙ୍କ ଧ୍ୱଂସ ପାଇଁ ଜାତୀୟ ସମ୍ପତ୍ତି ନଷ୍ଟ କରାଯାଉଥିଲା । ବର୍ତ୍ତମାନ ଛାତ୍ରସମାଜ ଯଦି ଜାତୀୟ ସମ୍ପତ୍ତି ନଷ୍ଟ କରନ୍ତି, ତାହା ତାଙ୍କ ନିଜ ସମ୍ପଦର ଧ୍ୱଂସ ସାଧନ ବୋଲି ବୁଝିବାକୁ ହେବ । ଦେଶକୁ ପୁନଃସଙ୍ଗଠିତ କରିବା ନିମିତ୍ତ ବର୍ତ୍ତମାନ ଛାତ୍ରସମାଜ ଆଗେଇ ଆସିବା ଉଚିତ । ଆସନ୍ତାକାଲି ଭାରତର ନେତୃତ୍ୱ ସେମାନଙ୍କ ଉପରେ ନିର୍ଭର କରୁଥିବାରୁ ସେମାନେ ବର୍ତ୍ତମାନଠାରୁ ନିଜକୁ ଦେଶ ସେବାପାଇଁ ଗଢ଼ିତୋଳିବା ଆବଶ୍ୟକ । ଭାରତର ଦୁଇ ସୀମାନ୍ତରେ ଚୀନ ଓ ପାକିସ୍ଥାନ ଲୋଲୁପ ଦୃଷ୍ଟି ନେଇ ଭାରତକୁ ଚାହିଁ ବସିଛନ୍ତି । ଏ କ୍ଷେତ୍ରରେ ଭାରତର ଯୁବସମ୍ପ୍ରଦାୟ ସାମରିକ ଶକ୍ତିକୁ ଦୃଢ଼ କରିବା ପାଇଁ ନିଜକୁ ସେଥିରେ ସାମିଲ କରିବା ଉଚିତ । ଦେଶର ପ୍ରତିରକ୍ଷା ସୁଦୃଢ଼ ହେଲେ, ଦେଶର ପ୍ରଗତି ତ୍ୱରାନ୍ୱିତ ହୋଇଥାଏ । ଆଜିର ଛାତ୍ରସମାଜ ଏହି ବାସ୍ତବ ସତ୍ୟକୁ ଉପଲବ୍ଧି କରି ସେଥିପାଇଁ ନିଜକୁ ସେହିପରି ଗଢ଼ିନେବା ଆବଶ୍ୟକ । ଏତଦ୍‌ବ୍ୟତୀତ ଭାରତର

ବିକାଶ ଓ ଆର୍ଥିକ ସମୃଦ୍ଧି ନିମିତ୍ତ ବହୁ ଯୋଜନା ପ୍ରଣୟନ ହେଉଛି । ମାତ୍ର ଏହି ଯୋଜନା ଦେଶର ମଙ୍ଗଳ ନିମିତ୍ତ ପ୍ରଣୟନ କରାଯାଉଥିଲେ ମଧ୍ୟ ଦେଶବାସୀ ଏହାର ସୁଫଳ ଲାଭ କରିବାକୁ ସମର୍ଥ ହୋଇପାରୁ ନାହାନ୍ତି । ବିଭିନ୍ନ କ୍ଷେତ୍ରରେ ଏହାର ତ୍ରୁଟି ପରିଲକ୍ଷିତ ହେଉଛି । ଏହି ଯୋଜନାର ସୁଫଳ କିପରି ଜନସାଧାରଣଙ୍କ ପାଖରେ ପହଞ୍ଚିପାରିବ ଏବଂ ଏଥିରେ ପରିଲକ୍ଷିତ ହେଉଥିବା ତ୍ରୁଟି କିପରି ସଂଶୋଧନ ହୋଇପାରିବ ସେଥିପ୍ରତି ଛାତ୍ରସମାଜ ତୀକ୍ଷ୍ଣ ଦୃଷ୍ଟି ଦେବା ଉଚିତ । ଆଜି ଯେଉଁମାନେ ଛାତ୍ର, ଆସନ୍ତା କାଲି ସେମାନେ ଦେଶର ନେତୃତ୍ୱ ଗ୍ରହଣ କରିବେ । ତେଣୁ ଆଜିଠାରୁ ଦେଶର ବିକାଶ ନିମିତ୍ତ ପ୍ରଣୟନ କରାଯାଉଥିବା ବିଭିନ୍ନ କାର୍ଯ୍ୟରେ ସେମାନେ ନିଜକୁ ଓତପ୍ରୋତ ଭାବେ ଜଡ଼ିତ କରିବା ଆବଶ୍ୟକ । ଛାତ୍ରସମାଜ ନିଜର ଭବିଷ୍ୟତ ପାଇଁ ରାଜନୀତି ସହିତ ଜଡ଼ିତ ହେବା ଅନାବଶ୍ୟକ । ସେମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ଜ୍ଞାନ ଆହରଣ । ପ୍ରକୃତ ଜ୍ଞାନ ଆହରଣ ପରେ ସେମାନେ ରାଜନୀତି କ୍ଷେତ୍ରକୁ ପ୍ରବେଶ କଲେ କୌଣସି ଅସୁବିଧା ନାହିଁ । ସେଥିପାଇଁ ମହାତ୍ମାଗାନ୍ଧି କହିଥିଲେ–For the students there should be no party politics. There should be no socialist, communist, congress or other groups among students. They should be all students first and last, determined together as much knowledge as possible and that for the sake of getting jobs. ଏହା ସତ୍ତ୍ୱେ ପବିତ୍ର ଓ ସ୍ୱଚ୍ଛ ରାଜନୀତି ସର୍ବଦା କରଣୀୟ । ବର୍ତ୍ତମାନର କଳୁଷିତ ରାଜନୀତିକୁ ସବୁକ୍ଷେତ୍ରରେ ବିରୋଧ କରାଯିବା ଆବଶ୍ୟକ । ଆଜି ରାଜନୀତି ଦେଶସେବା ନ ହୋଇ ବ୍ୟକ୍ତିସେବାରେ ପରିଣତ ହୋଇଛି । କୋଟି କୋଟି ଜନସାଧାରଣଙ୍କୁ ଠକାଇ ଅଳ୍ପ କେତେଜଣ ନ୍ୟସ୍ତ ସ୍ୱାର୍ଥପର ଗୋଷ୍ଠୀ ରାଜନୀତି ନାମରେ ନିଜର ଫାଇଦା ଉଠାଉଛନ୍ତି । ଏପରି ରାଜନୀତିକୁ ଛାତ୍ରସମାଜ ଘୋର ବିରୋଧ କରିବା ସଙ୍ଗେ ସଙ୍ଗେ ରାଜନୀତିରେ ସ୍ୱଚ୍ଛତା ଫେରାଇ ଆଣିବାକୁ ବ୍ରତୀ ହେବା ଆବଶ୍ୟକ । ଆଜି ୧୮ ବର୍ଷରୁ ଊର୍ଦ୍ଧ୍ୱ ଛାତ୍ରସମାଜ ଭୋଟ ଦାନର ଅଧିକାର ଲାଭ କରିଛନ୍ତି । ବ୍ୟକ୍ତିବିଶେଷଙ୍କ ଚରିତ୍ର ଓ କାର୍ଯ୍ୟଦକ୍ଷତାକୁ ଦୃଷ୍ଟିରେ ରଖି ସେମାନେ ନିଜର ମୂଲ୍ୟବାନ ମତାମତ ପ୍ରଦାନ କରିବା ସହିତ ରାଜନୀତିକୁ କଳଙ୍କମୁକ୍ତ କରିବା ନିମିତ୍ତ ସଚେଷ୍ଟ ହେବା ଆବଶ୍ୟକ । ବିଶ୍ୱର ରାଜନୀତିକୁ ଲକ୍ଷ୍ୟ କଲେ ଛାତ୍ରମାନଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ କଦାପି ଅସ୍ୱୀକାର କରାଯାଇ ନ ପାରେ । ଇଣ୍ଡୋନେସିଆର ଏକଚ୍ଛତ୍ର ରାଷ୍ଟ୍ରପତି ସୁକର୍ଣ୍ଣ ଛାତ୍ର ଆନ୍ଦୋଳନ ଦ୍ୱାରା ପଦଚ୍ୟୁତ ହୋଇଥିଲେ । ଯୁଗୋସ୍ଲୋଭାକିଆ, କ୍ୟୁବା, କାମ୍ବୋଡ଼ିଆ, ପାକିସ୍ଥାନ, ଫ୍ରାନ୍ସ, ବଙ୍ଗଳାଦେଶ ଆଦି ଦେଶର ବିଭିନ୍ନ ସମୟର ବିପ୍ଳବରେ ଏହି ଛାତ୍ରସମାଜ ହିଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛନ୍ତି । ତେଣୁ ବର୍ତ୍ତମାନ ଭାରତୀୟ ରାଜନୀତିରେ ଯେପରି ଦୁର୍ନୀତି ପ୍ରବେଶ କରିଛି, କେବଳ ଛାତ୍ରସମାଜର ପ୍ରତ୍ୟକ୍ଷ ହସ୍ତକ୍ଷେପ ଦ୍ୱାରା ତା'ର ସମାଧାନ ହୋଇପାରିବ । ଏବେ ମଧ୍ୟ ଭାରତରେ କୁସଂସ୍କାର ଓ ଦୁର୍ନୀତି ପୂରି ରହିଛି । ଆଜି ବିଶ୍ୱ ବିଜ୍ଞାନର ସର୍ବୋଚ୍ଚ ଶିଖରରେ ପାଦଦେଇ ସାରିଥିଲେ ମଧ୍ୟ ଭାରତ ତଥାପି କୁସଂସ୍କାରମୁକ୍ତ ହୋଇପାରି ନାହିଁ ।

ଏବେ ମଧ୍ୟ ଝାଡ଼ା ହେଲେ ଲୋକେ ଠାକୁରାଣୀଙ୍କୁ ପୂଜା କରୁଛନ୍ତି; ଫଳ ଲାଭ ପାଇଁ ଦେବଦେବୀଙ୍କୁ ଉପାସନା ଓ ମାନସିକ କରୁଛନ୍ତି । ଭାଗ୍ୟ ଓ ଭଗବାନ୍‌ଙ୍କ ଦ୍ୱାହି ଦେଇ ବିଭିନ୍ନ କ୍ଷେତ୍ରରେ ନିରବତା ଅବଲମ୍ବନକୁ ଶ୍ରେୟସ୍କର ମନେକରୁଛନ୍ତି । ଏହା କୁସଂସ୍କାର ବ୍ୟତୀତ ଅନ୍ୟ କ'ଣ ହୋଇପାରେ ? ତେଣୁ ଛାତ୍ରସମାଜ ଲୋକମାନଙ୍କ ମନରୁ ଏହି ଅନ୍ଧବିଶ୍ୱାସ ଓ କୁସଂସ୍କାରକୁ ଦୂର କରିବା ନିମିତ୍ତ ବିଭିନ୍ନ ପଦକ୍ଷେପ ଗ୍ରହଣ କରିବା ଆବଶ୍ୟକ । ଭାଗ୍ୟବାଦୀ ହେବା ଅପେକ୍ଷା କର୍ମବାଦୀ ହେବାପାଇଁ ସେମାନଙ୍କୁ ପ୍ରେରଣା ପ୍ରଦାନ କରାଯିବା ଉଚିତ । ନଚେତ୍ ବିଜ୍ଞାନର ପ୍ରକୃତ ସୁଫଳ ଏମାନଙ୍କ ନିକଟରେ ପହଞ୍ଚିପାରିବ ନାହିଁ । ଏମାନେ ଯେଉଁ ତିମିରରେ ଥିଲେ, ସେହି ତିମିରରେ ରହିଯିବେ । ସମାଜରୁ ଦୁର୍ନୀତିର ମୂଳୋତ୍ପାଟନ କେବଳ ଯୁବସମ୍ପ୍ରଦାୟ ଓ ଛାତ୍ରସମାଜର ପ୍ରତ୍ୟକ୍ଷ ଅଂଶ ଗ୍ରହଣ ଦ୍ୱାରା ସମ୍ଭବ ହୋଇପାରିବ । ଆଜି ଭାରତରେ ଅନ୍ୟାୟ, ଅନୀତି ଓ ଦୁର୍ନୀତି ଶେଷ ସୀମା ସ୍ପର୍ଶ କରିଛି । ସର୍ଭେରୁ ଜଣାପଡ଼ିଛି ବିଶ୍ୱର ୧୦ଟି ଦୁର୍ନୀତିପୂର୍ଣ୍ଣ ଦେଶ ମଧ୍ୟରୁ ଭାରତ ଅନ୍ୟତମ । ଏହାଦ୍ୱାରା ଗରିବ ଅଧିକ ଗରିବ ହୋଇପଡୁଥିବା ସମୟରେ ଧନୀ ଅଧିକ ଧନୀ ହେବାରେ ଲାଗିଛି । ଏହି ସାମାଜିକ ଆର୍ଥନୀତିକ ବୈଷମ୍ୟ ଦ୍ୱାରା ସମାଜ ଧୀରେ ଧୀରେ ଘାଣ୍ଟି ହୋଇପଡୁଛି । ପ୍ରତ୍ୟେକ କ୍ଷେତ୍ରରେ ଦୁର୍ନୀତିର ଚେର ତଳକୁ ତଳକୁ ଯିବାକୁ ଲାଗିଛି । ଶ୍ରେଣୀ ବୈଷମ୍ୟ ବୃଦ୍ଧି ପାଉଛି । ଏ କ୍ଷେତ୍ରରେ ଛାତ୍ରସମାଜ ସାହସିକ ପଦକ୍ଷେପ ଗ୍ରହଣ କରି ଦୁର୍ନୀତିଗ୍ରସ୍ତ ବ୍ୟକ୍ତିଙ୍କ ମୁଖା ସର୍ବସାଧାରଣରେ ଖୋଲି ଦେଲେ ଭବିଷ୍ୟତରେ ସେମାନେ ଏପରି କାର୍ଯ୍ୟ କରିବାକୁ ସାହସ କରିବେ ନାହିଁ । ଭାରତର ଅଧିକାଂଶ ବ୍ୟକ୍ତି ନିରକ୍ଷର ହୋଇଥିବାରୁ ସେମାନେ ସାମାଜିକ ବା ରାଜୀନତି ସଚେତନ ନୁହନ୍ତି । ସେମାନଙ୍କ ପାଇଁ ସରକାରୀ ସ୍ତରରେ ଆରମ୍ଭ ହେଉଥିବା ବିଭିନ୍ନ କାର୍ଯ୍ୟକଳାପ ସମ୍ପର୍କରେ ଅନଭିଜ୍ଞ ଥିବାରୁ ଏହାର ସୁଯୋଗ ନେଉଛନ୍ତି ଅଳ୍ପ କେତେଜଣ ସ୍ୱାର୍ଥପର ବ୍ୟକ୍ତି । କୃଷି ତଥା ବିଭିନ୍ନ ଯୋଜନାର ରୂପରେଖ ସମ୍ପର୍କରେ ଅବଗତ ହୋଇପାରୁ ନାହାନ୍ତି । ନୂତନ କୃଷି ପଦ୍ଧତିର ପ୍ରୟୋଗରେ ବହୁପରିମାଣର ଶସ୍ୟ ଉତ୍ପାଦନ କରିବାର ଅବକାଶ ବର୍ତ୍ତମାନ ସୃଷ୍ଟି ହୋଇଥିଲେ ହେଁ ସଚେତନତାର ଅଭାବରୁ ତା'ର ସୁଯୋଗ ସେମାନେ ଗ୍ରହଣ କରିପାରୁ ନାହାନ୍ତି । ଛାତ୍ରସମାଜ ପ୍ରତ୍ୟେକ ଗ୍ରାମ ପରିଭ୍ରମଣ ପୂର୍ବକ ଲୋକମାନଙ୍କୁ ବିଭିନ୍ନ ସରକାରୀ ଉଦ୍ୟମ ସମ୍ପର୍କରେ ସଚେତନ କରାଇପାରିଲେ ସେମାନଙ୍କର ଆର୍ଥିକ ପ୍ରଗତି ସମ୍ଭବ ହୋଇପାରନ୍ତା । ଦୁର୍ନୀତିଗ୍ରସ୍ତ ବ୍ୟକ୍ତିଙ୍କ ବିରୋଧରେ ସଂଗ୍ରାମ କରିବାର ସାହସ ଲାଭ କରିପାରନ୍ତେ । ଦୁର୍ନୀତି, ଶୋଷଣ, ଅତ୍ୟାଚାର ଓ କଳାବଜାରୀ ବିରୋଧରେ ଲୋକମାନଙ୍କ ମଧ୍ୟରେ ସଚେତନତା ସୃଷ୍ଟି କରିପାରିଲେ ଛାତ୍ରସମାଜ ନିଜର କର୍ତ୍ତବ୍ୟ ପ୍ରକୃତ ସମ୍ପାଦନ କରିପାରିଛନ୍ତି ବୋଲି ସ୍ୱୀକାର କରିବାକୁ ହେବ । ଭାରତରେ ସାମ୍ପ୍ରଦାୟିକ ଦଙ୍ଗା ବେଳେବେଳେ ଭାରତର ଆର୍ଥିକ ଓ ସାମାଜିକ ସ୍ଥିତିକୁ ବିପନ୍ନ କରିଦେଉଛି । ବହୁଭାଷା, ଧର୍ମ ଓ ସମ୍ପ୍ରଦାୟର ବ୍ୟକ୍ତି ଭାରତରେ ବସବାସ କରନ୍ତି । କେତେବେଳେ ଭାଷାକୁ ନେଇ ତ ପୁଣି କେତେବେଳେ ଧର୍ମକୁ ନେଇ ବା ଅନ୍ୟ କେତେବେଳେ ସମ୍ପ୍ରଦାୟକୁ କେନ୍ଦ୍ର କରି ଗଣ୍ଡଗୋଳ

ସୃଷ୍ଟି ହେଉଛି । ଜାମ୍ମୁ-କାଶ୍ମୀର, ପଞ୍ଜାବ, ଆସାମ, ଆନ୍ଧ୍ରପ୍ରଦେଶ, ଉତ୍ତରପ୍ରଦେଶ ଆଦିର ଦଙ୍ଗାକୁ ଲକ୍ଷ୍ୟ କଲେ ଏହାର ସ୍ପଷ୍ଟ ପ୍ରମାଣ ମିଳିଥାଏ । କାଶ୍ମୀରଠାରୁ କନ୍ୟାକୁମାରୀ ଭାରତ ଏକ—ଏହି ବାର୍ତ୍ତା ବାରମ୍ବାର ପ୍ରଚାର କରାଯାଉଥିଲେହେଁ, ଏହାର କୌଣସି ସୁଫଳ ପରିଲକ୍ଷିତ ହେଉ ନାହିଁ । ରାମମନ୍ଦିର ଓ ବାବ୍ରୀ ମସ୍‌ଜିଦ୍‌କୁ କେନ୍ଦ୍ରକରି ସଂଘର୍ଷ ଚାଲିଛି । ହିନ୍ଦୀ ଓ ଇଂରାଜୀ ଭାଷାକୁ ନେଇ ମତାନ୍ତର ସୃଷ୍ଟି ହେଉଛି, ଆସାମୀ ଅଣଆସାମୀକୁ କେନ୍ଦ୍ରକରି ବା ଅନ୍ୟ କେତେବେଳେ ହିନ୍ଦୁ ମୁସଲମାନମାନଙ୍କୁ କେନ୍ଦ୍ରକରି ବିଭିନ୍ନ ସ୍ଥାନରେ ଗଣ୍ଡଗୋଳର ସୂତ୍ରପାତ ହେଉଛି । ଏହି ସାମ୍ପ୍ରଦାୟିକ ଦଙ୍ଗାର ସୁଯୋଗ ନେଇ ଅନ୍ୟ ଦେଶ ଏହାର ଫାଇଦା ଉଠାଇବାକୁ ଚାହୁଁଛି । ଏହି କାରଣରୁ ଦେଶର ପ୍ରଗତି ବାଧାପ୍ରାପ୍ତ ହେଉଛି । ତେଣୁ ସାମ୍ପ୍ରଦାୟିକ ସଦ୍ଭାବ ଫେରାଇଆଣି ସମସ୍ତଙ୍କ ମନରେ ପରସ୍ପର ପ୍ରତି ବିଶ୍ୱାସ ସୃଷ୍ଟି କରାଇବା ଆଜି ପ୍ରତ୍ୟେକ ଭାରତୀୟଙ୍କର ପ୍ରଥମ କର୍ତ୍ତବ୍ୟ । ଏ କ୍ଷେତ୍ରରେ ଛାତ୍ରସମାଜର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଜାତୀୟ ସଂହତି ଓ ଐକ୍ୟର ପ୍ରତିଷ୍ଠା ନିମିତ୍ତ ଭାରତରେ ବସବାସ କରୁଥିବା ପ୍ରତ୍ୟେକ ସମ୍ପ୍ରଦାୟ ମଧ୍ୟରେ ବିଶ୍ୱସନୀୟ ବାତାବରଣ ସୃଷ୍ଟି ନିମିତ୍ତ ସେମାନେ ଚେଷ୍ଟା କରିବା ଉଚିତ । ସେହିମାନଙ୍କ ଆନ୍ତରିକ ପ୍ରଚେଷ୍ଟାରେ ଭାରତରେ ପୁଣି ଶାନ୍ତି ଓ ସଦ୍ଭାବ ଫେରିଆସିପାରିବ । ସନ୍ତ୍ରାସବାଦୀ କାର୍ଯ୍ୟକଳାପରେ ବିଲୋପ ଘଟିବ । ଜାତୀୟ ଚେତନାର ବିକାଶ ଘଟାଇ ଦେଶକୁ ଗୋଟିଏ ଭ୍ରାତୃତ୍ୱର ରଜ୍ଜୁରେ ଦୃଢ଼ୀଭୂତ କରିବାର କ୍ଷମତା କେବଳ ଛାତ୍ରସମାଜର ରହିଛି । ଜାତି, ଧର୍ମ, ବର୍ଣ୍ଣ, ଭାଷା ନିର୍ବିଶେଷରେ ଭାରତରେ ବସବାସ କରୁଥିବା ପ୍ରତ୍ୟେକ ବ୍ୟକ୍ତି ଭାରତୀୟ—ଏହି ବାର୍ତ୍ତା ଛାତ୍ରସମାଜ ହିଁ ପ୍ରଚାର କରି ଜନସାଧାରଣଙ୍କ ମଧ୍ୟରେ ଜାତୀୟ ଚେତନା ସୃଷ୍ଟି କରିପାରିବେ । ଏତଦ୍‌ବ୍ୟତୀତ ଉଚ୍ଚ ମାନବବୋଧର ପ୍ରଚାର, ଦେଶପ୍ରାଣତା ଦ୍ୱାରା ସେମାନେ ସମାଜରେ ଏକ ଆଦର୍ଶ ମଧ୍ୟ ପ୍ରତିଷ୍ଠା କରିବାକୁ ସମର୍ଥ ହୋଇପାରିବେ ।

ସ୍ୱାଧୀନ ଭାରତରେ ଛାତ୍ରସମାଜର ବହୁବିଧ କର୍ତ୍ତବ୍ୟ ରହିଛି । ସେମାନେ ସେମାନଙ୍କର କର୍ତ୍ତବ୍ୟ ଯଥାବିଧି ପାଳନ କରିପାରିଲେ ଭାରତର ସାମଗ୍ରିକ ବିକାଶକୁ କେହି ବାଧାଦେଇ ପାରିବେ ନାହିଁ । ଏ ଦେଶର ମେରୁଦଣ୍ଡ ଭାବରେ ଦେଶର ସର୍ବବିଧ ଉନ୍ନତି ଓ ପ୍ରଗତି ସେମାନଙ୍କର ଆନ୍ତରିକ କାର୍ଯ୍ୟ ଉପରେ ହିଁ ନିର୍ଭର କରେ । ବିଭିନ୍ନ ସମସ୍ୟାର ସମାଧାନ ନିମିତ୍ତ ସେହିମାନଙ୍କ ନିକଟରେ ଉପାୟ ରହିଛି । ଏହା ସତ୍ତ୍ୱେ ଛାତ୍ରମାନଙ୍କ ପାଇଁ ମଧ୍ୟ ଆମ ସମାଜର କେତେକ କର୍ତ୍ତବ୍ୟ ରହିଛି । ସେମାନେ ମାନସିକ ଆଘାତ ପାଇବା ପରି କୌଣସି କାର୍ଯ୍ୟ ସମାଜ କରିବା ଅନୁଚିତ । ସେମାନଙ୍କର ବିଭିନ୍ନ ଯୁକ୍ତିଯୁକ୍ତ ଦାବି ପ୍ରତି ଆମ ସମାଜ ସଚେତନ ରହିବା ଆବଶ୍ୟକ । ସ୍ୱାଧୀନ ଭାରତର ବହୁ ସମସ୍ୟା ରହିଛି । ସମାଧାନର ଉପାୟ ମଧ୍ୟ ରହିଛି । ଆନ୍ତରିକ ଉଦ୍ୟମ ଦ୍ୱାରା ସମସ୍ତ କିଛି ସମାଧାନ ହୋଇପାରିବ । ଛାତ୍ରସମାଜର ନିଷ୍ଠା, କର୍ତ୍ତବ୍ୟପରାୟଣତା, ଆଦର୍ଶବୋଧ ଓ ଶୃଙ୍ଖଳା ଦ୍ୱାରା ଭାରତ ଯେ ବହୁକ୍ଷେତ୍ରରେ ଅଗ୍ରଗତି କରିପାରିବ ଏଥିରେ ଦ୍ୱିମତ ହେବାର କିଛି ନାହିଁ ।

●

# ଛାତ୍ର ଓ ରାଜନୀତି

(ଉପକ୍ରମ, ପ୍ରାଚୀନ ଭାରତରେ ରାଜନୀତି, ରାଜନୈତିକ ଚେତନା ଓ ଛାତ୍ରସମାଜ, ସ୍ୱାଧୀନତା ଆନ୍ଦୋଳନରେ ଛାତ୍ରସମାଜର ଭୂମିକା, ରାଜନୀତିର ବିଭିନ୍ନ ଦିଗ, ଛାତ୍ରସମାଜର ରାଜନୀତିରେ ଭାଗନେବା ସପକ୍ଷ ଓ ବିପକ୍ଷରେ ଯୁକ୍ତି, ଉପସଂହାର)

ମଣିଷ ଏକ ସାମାଜିକ ପ୍ରାଣୀ । ସଂଜ୍ଞା ବଦଳି ଆଜି ମଣିଷ ଏକ ରାଜନୈତିକ ପ୍ରାଣୀରେ ପରିଣତ ହୋଇଛି । ଗ୍ରାମରୁ ସହର ସବୁଠାରେ ରାଜନୀତିର ଚର୍ଚ୍ଚା । ଏହି ରାଜନୀତିର ରାକ୍ଷସ କବଳରୁ ମଣିଷ ଆଜି ମୁକ୍ତିଲାଭ କରିବା କଷ୍ଟସାଧ ବ୍ୟାପାର । ଶିଶୁ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଯେଉଁ କେତୋଟି ପାବଚ୍ଛ ଅତିକ୍ରମ କରିଥାଏ, ତନ୍ମଧ୍ୟରେ ସବୁଠାରୁ ସମ୍ବେଦନଶୀଳ ପାବଚ୍ଛ ହେଉଛି ଯୌବନ ସମୟ । ଏହି ସମୟ ମଧ୍ୟରେ ଅତିକ୍ରମ କରେ ସେ ତା'ର ଛାତ୍ରଜୀବନକୁ । ସର୍ପକୁଣ୍ଡଳୀ ରାଜନୀତିରେ ସେ ତା'ର ଅଜାଣତରେ ପ୍ରବେଶ କରିଯାଏ ଆପେ ଆପେ ଠିକ୍ ଏହି ସମୟରେ । ଆଜିର ଛାତ୍ର ଆସନ୍ତାକାଲି ଭାରତ ବର୍ଷର ଦିଗ୍‌ଦର୍ଶକ ଓ ନିୟାମକ । ସେହିମାନଙ୍କ ମଧ୍ୟରୁ ଆସନ୍ତାକାଲି ପ୍ରକାଶ ଲାଭ କରିବେ ଶିକ୍ଷକ, ଡ଼ାକ୍ତର, ଇଞ୍ଜିନିୟର, ପ୍ରଶାସକ, ରାଜନୀତିକ ନେତା, ବୈଜ୍ଞାନିକ ଇତ୍ୟାଦି । ଆସନ୍ତାକାଲି ପାଇଁ ଆଜିଠାରୁ ତାକୁ ପ୍ରସ୍ତୁତ ହେବାକୁ ପଡ଼ିବ । ଆଜି ବିଶ୍ୱ ଏତେ କ୍ଷୁଦ୍ର ହୋଇପଡ଼ିଛି ଯେ ପ୍ରତି ମୁହୂର୍ତ୍ତରେ ବିଶ୍ୱର ପ୍ରତିଟି ଘଟଣା ଓ ଦୁର୍ଘଟଣା ଦୀପ୍ତିମୟ ହୋଇ ଉଠୁଛି ମଣିଷ ଆଗରେ । ତେଣୁ ଶିକ୍ଷାନୁଷ୍ଠାନର ସୀମିତ ପରିବେଶ ମଧ୍ୟରେ ଛାତ୍ରସମାଜ ନିଜକୁ ଆବଦ୍ଧ କରି ରଖିବାକୁ ଚାହୁଁ ନାହିଁ । ଦେଶର ସାମ୍ପ୍ରତିକ ସ୍ଥିତି ତାକୁ ରାଜନୀତିରେ ଭାଗନେବାକୁ ବାଧ୍ୟ କରେ । ମାତ୍ର ଆଜିର କଳୁଷିତ ରାଜନୀତିରେ ପ୍ରବେଶ କରିବା ମାତ୍ରେ ସେ ହୁଏ ପଥଭ୍ରଷ୍ଟ । ଦେଶର ସେବା କରିବା ପରିବର୍ତ୍ତେ ସେ କରେ ଦେଶର ଅନିଷ୍ଟ । ଚପଳତାର ବଶବର୍ତ୍ତୀ ହୋଇ ସେ ଏପରି କେତେକ ପଦକ୍ଷେପ ଗ୍ରହଣ କରେ ଯାହା ତାକୁ ଓ ତା'ର ସାମାଜିକ ପରିବେଷ୍ଟନୀକୁ କଳଙ୍କିତ କରେ । ବିଶୃଙ୍ଖଳିତ ଭାବରେ ଲକ୍ଷ୍ୟଭ୍ରଷ୍ଟ ହୋଇ ଜୀବନକୁ ନଷ୍ଟ କରେ । ଅବଶ୍ୟ ଆଜି ଦେଶ ଗଠନର ଭାର ଛାତ୍ରସମାଜ ଉପରେ । ସେମାନଙ୍କ ଚେଷ୍ଟାରେ ବର୍ତ୍ତମାନର କଳଙ୍କିତ ରାଜନୀତି ତା'ର ଅସ୍ତିତ୍ୱ ହରାଇପାରେ । ମାତ୍ର ଉପଯୁକ୍ତ ଦିଗ୍‌ଦର୍ଶନ ଅଭାବରୁ ତା'ର ସର୍ଜନଶୀଳ ଦିଗଟି ଧ୍ୱଂସାତ୍ମକ ଦିଗରେ ପରିଣତ ହୋଇଥାଏ । ଛାତ୍ର ଜୀବନ ଏକ ସାଧନାର ସମୟ । ଏହି ମୂଲ୍ୟବାନ ସମୟଟିକୁ ଏପରି ଧ୍ୱଂସ ନ କରି ଛାତ୍ରସମାଜ ତା'ର ସୁ-ଉପଯୋଗ କରିବା ଆବଶ୍ୟକ । ବର୍ତ୍ତମାନର ପ୍ରସ୍ତୁତି ଉପରେ ନିର୍ଭର କରେ ତା'ର ଉଜ୍ଜ୍ୱଳ ଭବିଷ୍ୟତ । ଏହି ଦୃଷ୍ଟିରୁ ସାମ୍ପ୍ରତିକ କୀଟଦ୍ରଷ୍ଟ ରାଜନୀତି ଠାରୁ ଛାତ୍ରସମାଜ ଯେତେ ଦୂରେଇ ରହିବ, ତା'ର ହେବ ସେତିକି ମଙ୍ଗଳ ।

ରାଜନୀତି ଏକ ପବିତ୍ର ନୀତି । ଅତୀତରେ ବିଜ୍ଞ, ସାଧୁ ଓ ସତ୍‌ଚରିତ୍ର ବ୍ୟକ୍ତିମାନେ କେବଳ ରାଜନୀତି କରୁଥିଲେ । ଆଧ୍ୟାତ୍ମିକ ଭାବନା ପରି ଏହା ମଧ୍ୟ ଏକ ପବିତ୍ର ଭାବନା । ଜଗତର କଲ୍ୟାଣ ଓ ସାର୍ବଜନୀନ ମଙ୍ଗଳ ଚିନ୍ତାଧାରା ଏହାର ଏକମାତ୍ର ଲକ୍ଷ୍ୟ । ପ୍ରାଚୀନ ଭାରତରେ

ରାଜନୀତିଜ୍ଞ ବ୍ୟକ୍ତିମାନେ ହିଁ ଥିଲେ ସମାଜର କର୍ଣ୍ଣଧାର । ଦେଶ ଓ ଦଶର ସ୍ୱାର୍ଥ ପାଇଁ ନିଜକୁ ସମ୍ପୂର୍ଣ୍ଣରୂପେ ଉତ୍ସର୍ଗ କରିଦେଇଥିଲେ । ରାଜର୍ଷି ଜନକ, ରାମଚନ୍ଦ୍ର, ଭୀଷ୍ମ, ଯୁଧିଷ୍ଠିର ଆଦି ବିଶିଷ୍ଟ ରାଜନୀତିଜ୍ଞ ବର୍ତ୍ତମାନ ବି ସର୍ବଜନ ବନ୍ଦିତ । ଏହି ଜ୍ଞାନ ଲାଭ କରିବା ପାଇଁ ବିଜ୍ଞ ବ୍ୟକ୍ତି ଶତ୍ରୁର ପାଦତଳେ ମଧ୍ୟ ମଥାନତ କରିଛନ୍ତି । ରାବଣ ମୃତ୍ୟୁ ଅପେକ୍ଷାରେ ଥିବା ସମୟରେ ରାମଚନ୍ଦ୍ର ତା'ଠାରୁ ରାଜନୀତି ଶିକ୍ଷା କରିବାକୁ ଯାଇଛନ୍ତି । ଶରଶଯ୍ୟାରେ ଶାୟିତ ଭୀଷ୍ମଙ୍କ ନିକଟରୁ ରାଜନୀତି ଶିକ୍ଷା କରିଛନ୍ତି ଯୁଧିଷ୍ଠିର । ପ୍ରାଚୀନ ଭାରତରେ ରାଜନୀତି ଶିକ୍ଷା କରିବାର ଅଧିକାର ସମସ୍ତଙ୍କର ନ ଥିଲା । ଗୁରୁକୁଳରେ କେବଳ ରାଜକୁମାରମାନେ ଅଥବା ଶାସନ ସହିତ ସମ୍ପୃକ୍ତ ବ୍ୟକ୍ତିମାନେ ଏହି ଶିକ୍ଷା ଲାଭ କରୁଥିଲେ । ସମୟର ପରିବର୍ତ୍ତନ ସହିତ ରାଜନୀତିର ସଂଜ୍ଞାରେ ମଧ୍ୟ ପରିବର୍ତ୍ତନ ଆସିଛି । ରାଜନୀତି ଏକ ବିଶେଷ ବିଜ୍ଞାନ ଓ ଉଚ୍ଚତର କଳାରୂପେ ଗ୍ [illegible] ହୋଇଛି । ଏହାର ଅଧ୍ୟୟନ ପରିସର ମଧ୍ୟ ବିସ୍ତୃତ ହୋଇଛି । ତାତ୍ତ୍ୱିକ ଦୃଷ୍ଟିକୋଣରୁ ଏହା ଏବେ ମଧ୍ୟ ଏକ ପବିତ୍ର ଶିକ୍ଷା ହୋଇଥିଲେ ହେଁ ବାସ୍ତବ ଦୃଷ୍ଟିକୋଣରୁ ସମ୍ପୂର୍ଣ୍ଣରୂପେ ଏହା କଳୁଷିତ । କ୍ୱଚିତ୍ ଜ୍ଞାନୀ ଓ ଗୁଣୀ ବ୍ୟକ୍ତି ରାଜନୀତିରେ ପ୍ରବେଶ କରୁଛନ୍ତି । ଆଜି ରାଜନୀତି ବଦମାସ୍‌ମାନଙ୍କର ଶେଷ ଆଶ୍ରୟସ୍ଥଳରେ ପରିଣତ ହୋଇଛି । ତେଣୁ ପ୍ରାଚୀନ ଭାରତର ରାଜନୀତି ସହିତ ସାମ୍ପ୍ରତିକ ରାଜନୀତିକୁ ତୁଳନା କଲେ ଆକାଶ ପାତାଳ ପାର୍ଥକ୍ୟ ବିଦ୍ୟମାନ ।

ଛାତ୍ରସମାଜର ରାଜନୈତିକ ଚେତନା ରହିବା ଆବଶ୍ୟକ କି ନାହିଁ ତାହା ଏକ ବିବଦମାନ ପ୍ରଶ୍ନ । ସମୟ, ପରିବେଶ ଏବଂ ଚିନ୍ତାଧାରା ଏହାର କେବଳ ଯଥାର୍ଥ ଉତ୍ତର ଦେଇପାରିବ । ତେବେ ରାଜନୀତିକ ଜ୍ଞାନ ସର୍ବଦା ସ୍ୱାଗତଯୋଗ୍ୟ । ବିଶ୍ୱର ବିଶିଷ୍ଟ ଚିନ୍ତାନାୟକଗଣ ରାଜନୀତି ସମ୍ବନ୍ଧୀୟ ମୂଲ୍ୟବାନ ପୁସ୍ତକମାନ ରଚନା କରିଛନ୍ତି । ହେଗେଲ୍‌ସ, କାଣ୍ଟ, ପ୍ଲେଟୋ, ହବ୍‌ସ, ଆରିଷ୍ଟଟଲ, ରଷୋ, ଭଲଟାୟାର, କାର୍ଲମାର୍କସ, ମେକିଆଭେଲି, ଚାଣକ୍ୟ, ବିଷ୍ଣୁଗୁପ୍ତ ଆଦି ବିଶିଷ୍ଟ ମନୀଷୀଗଣ ରାଜନୀତିର ବିଭିନ୍ନ ତତ୍ତ୍ୱ ଓ ବାସ୍ତବଦିଗ ଉପରେ ଗୁରୁତ୍ୱପୂର୍ଣ୍ଣ ଆଲୋଚନା କରିଛନ୍ତି । ଏହି ଗ୍ରନ୍ଥଗୁଡ଼ିକ ଯେ କୌଣସି ବ୍ୟକ୍ତିର ପଠନୀୟ । ବିଶେଷଭାବରେ ଛାତ୍ରସମାଜ ଏହି ଗ୍ରନ୍ଥଗୁଡ଼ିକୁ ପାଠ କରିବା ଅତ୍ୟନ୍ତ ଜରୁରୀ । ଏହାଦ୍ୱାରା ଜ୍ଞାନର ପରିସର ବିସ୍ତୃତ ହେବା ସଙ୍ଗେ ସଙ୍ଗେ ରାଜନୀତିର ଅର୍ଥ ଓ ସ୍ୱରୂପ ସମ୍ବନ୍ଧରେ ସ୍ୱଚ୍ଛ ଧାରଣା ସୃଷ୍ଟି ହୋଇପାରିବ । ଏହି ଦୃଷ୍ଟିରୁ ଛାତ୍ରସମାଜ ରାଜନୈତିକ ଜ୍ଞାନଲାଭ କରିବା ଉଚିତ । ଛାତ୍ରସମାଜର ରାଜନୈତିକ ଚେତନାର ବିକାଶ ହେଲେ ସମାଜର ବିକାଶ ସାଧନ ହୋଇପାରିବ । ଦେଶବିଦେଶର ରାଜନୈତିକ ଚିନ୍ତାଧାରା, ସେମାନଙ୍କ ଦୃଷ୍ଟିଭଙ୍ଗୀରେ ଆଣିବ ପରିବର୍ତ୍ତନ । ସାଂପ୍ରତିକ ସମୟର ଅନ୍ୟ ଦେଶର ଚିନ୍ତାଧାରା ସହିତ ନିଜ ଦେଶର ଚିନ୍ତାଧାରାକୁ ତୁଳନାତ୍ମକ ଭାବରେ ଆଲୋଚନା କରି, ବର୍ତ୍ତମାନ ସମୟ ପାଇଁ ଯାହା ଉପଯୋଗୀ ତାହା ଗ୍ରହଣ କରିବାକୁ ଛାତ୍ରସମାଜ ପରାମର୍ଶ ଦେଇପାରିବେ । ସମ୍ବାଦପତ୍ର, ପତ୍ରପତ୍ରିକା ଏବଂ ଏହି ସମ୍ପର୍କୀୟ ପୁସ୍ତକମାନ ପାଠକରି ନିଜର ଅଧ୍ୟୟନ ପରିସରକୁ ବିସ୍ତୃତ କରିବା ସଙ୍ଗେ ସଙ୍ଗେ ବିଭିନ୍ନ ଆଲୋଚନାରେ ଭାଗ ନେଇ ଗଠନମୂଳକ ପରାମର୍ଶ ସରକାରଙ୍କୁ ପ୍ରଦାନ କରିପାରିବେ । ଏହାଦ୍ୱାରା ଦେଶର ମଙ୍ଗଳ ସାଧିତ ହେବା ସହିତ ଅଧ୍ୟୟନ

କ୍ଷେତ୍ରରେ ମଧ୍ୟ କୌଣସି କ୍ଷତି ଘଟିବ ନାହିଁ । ମାତ୍ର ମୌଳିକ ଲକ୍ଷ୍ୟଠାରୁ ଦୂରେଇଯାଇ କେବଳ ରାଜନୀତିରେ ସକ୍ରିୟ ହୋଇଉଠିଲେ ଛାତ୍ରସମାଜର କୌଣସି ମଙ୍ଗଳ ହେବ ନାହିଁ ।

ସମୟର ଆହ୍ୱାନକୁ ଗ୍ରହଣ କରିବା ଯେକୌଣସି ମଣିଷର କର୍ତ୍ତବ୍ୟ । ଏହି ଆହ୍ୱାନକୁ ଅସ୍ୱୀକାର କଲେ କେବଳ ବ୍ୟକ୍ତିର ଅମଙ୍ଗଳ ହେବ ନାହିଁ; ସମାଜର ମଧ୍ୟ ଅମଙ୍ଗଳ ହେବ । ଆବଶ୍ୟକତାକୁ ଆଖିଆଗରେ ରଖି ମଣିଷ ନିଜର କର୍ତ୍ତବ୍ୟ ନିରୂପଣ କରିଥାଏ । ପ୍ରାକ୍ ସ୍ୱାଧୀନତା କାଳରେ ଛାତ୍ରସମାଜକୁ ପ୍ରତ୍ୟକ୍ଷ ରାଜନୀତିରେ ଭାଗନେବାକୁ ଆହ୍ୱାନ ଦିଆଯାଇଥିଲା । କାରଣ ସେତେବେଳେ ତାହା ଥିଲା ସମୟର ଆହ୍ୱାନ । ପ୍ରତ୍ୟେକ ଭାରତୀୟଙ୍କର ଏକମାତ୍ର ଲକ୍ଷ୍ୟ ଥିଲା, ଭାରତରୁ ଇଂରେଜ ଶାସନର ମୂଳୋତ୍ପାଟନ । ସଚେତନ ଛାତ୍ରସମାଜ ଏଥିରେ ସମ୍ପୃକ୍ତ ନ ହେଲେ, ଏହି ଲକ୍ଷ୍ୟ ପୂରଣରେ ଯେ ବାଧା ସୃଷ୍ଟି ହେବ, ମହାତ୍ମାଗାନ୍ଧି ତାହା ଉତ୍ତମ ରୂପେ ହୃଦୟଙ୍ଗମ କରିଥିଲେ । ସ୍ୱାଧୀନତା ଆନ୍ଦୋଳନରେ ଭାଗନେବାକୁ ସେ ସେତେବେଳେ ଛାତ୍ରସମାଜକୁ ଆହ୍ୱାନ ଦେଇଥିଲେ । ସମଗ୍ର ଭାରତର ଛାତ୍ରସମାଜ ଏହି ଆହ୍ୱାନର ବଶବର୍ତ୍ତୀ ହୋଇ ବିଦ୍ୟାଳୟ, ମହାବିଦ୍ୟାଳୟ ତ୍ୟାଗ କରି ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇଥିଲେ, ଅସହଯୋଗ ଆନ୍ଦୋଳନରେ ପ୍ରତ୍ୟକ୍ଷ ଅଂଶ ଗ୍ରହଣ କରିଥିଲେ । ଜାତୀୟ ଆଶା ଆକାଂକ୍ଷାର ପୂରଣ ନିମିତ୍ତ ସେଦିନ ଛାତ୍ରସମାଜ ଯେଉଁ ଭୂମିକା ଗ୍ରହଣ କରିଥିଲା, ତାହା ଇତିହାସରେ ସବୁଦିନ ପାଇଁ ଲିପିବଦ୍ଧ ହୋଇ ରହିବ । କୋମଳମତି ବାଳକଙ୍କଠାରୁ ଆରମ୍ଭ କରି ଯୁବକ ପର୍ଯ୍ୟନ୍ତ ସମସ୍ତେ ଯେପରି କାରାଗାରକୁ ତୀର୍ଥସ୍ଥାନ ଭାବରେ ଗ୍ରହଣ କରି ନେଇଥିଲେ । ନିଜର ଭବିଷ୍ୟତକୁ ଆଖି ବୁଜିଦେଇ ଦେଶର ଭବିଷ୍ୟତ ପାଇଁ ସ୍ୱାଧୀନତା ସଂଗ୍ରାମରେ ସୈନିକ ସାଜିଥିଲେ । ଏପରିକି ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ସଶସ୍ତ୍ର ସଂଗ୍ରାମରେ ଛାତ୍ରସମାଜ ଉଦ୍‌ବୁଦ୍ଧ ହୋଇ ରଣାଙ୍ଗନକୁ ଲମ୍ଫ ପ୍ରଦାନ କରିଥିଲେ । ଏହି ସଂଗ୍ରାମ କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତିବିଶେଷଙ୍କ ବିରୋଧରେ ନ ଥିଲା । ନିଜ ମାତୃଭୂମିର ସ୍ୱାଧୀନତା ପାଇଁ ଏହା ଥିଲା ତତ୍କାଳୀନ ସମୟର ଆହ୍ୱାନ । ଏହି ଆହ୍ୱାନକୁ ଗ୍ରହଣ କରିନଥିଲେ ଭବିଷ୍ୟତର ଇତିହାସ କଦାପି ଛାତ୍ରସମାଜକୁ କ୍ଷମାକରି ପାରିନଥାନ୍ତା । ତେଣୁ ସ୍ୱାଧୀନତା ଆନ୍ଦୋଳନ ସମୟରେ ଛାତ୍ରସମାଜର ଏ ପ୍ରକାର ରାଜନୈତିକ ଚିନ୍ତାଧାରା ଓ ବିପ୍ଳବକୁ ସମସ୍ତେ ସ୍ୱୀକାର କରିଛନ୍ତି । ଦେଶର ସ୍ୱାଧୀନତା ମୁଖ୍ୟ ହୋଇଥିବାରୁ ସେତେବେଳେ ଛାତ୍ରସମାଜର ରାଜନୀତିରେ ପ୍ରବେଶାଧିକାରକୁ ସ୍ୱାଗତ କରାଯାଉଥିଲା । ବର୍ତ୍ତମାନ ସ୍ୱାଧୀନ ଭାରତରେ ଛାତ୍ର ରାଜନୀତି ଅପେକ୍ଷା ପ୍ରଥମେ ନିଜର ଅଧ୍ୟୟନ ପ୍ରତି ଅଧିକ ଗୁରୁତ୍ୱ ଦେବା ଉଚିତ । ସମ୍ପ୍ରତି ଏପରି ପରିସ୍ଥିତି ଭାରତରେ ସୃଷ୍ଟି ହୋଇ ନାହିଁ ଯେ, ଯାହା ପାଇଁ ଭାରତୀୟ ଛାତ୍ର ନିଜର ମୌଳିକ ଲକ୍ଷ୍ୟକୁ ବିସ୍ମୃତ ହୋଇ ରାଜନୀତିର ଘନଘଟାରେ ଭବିଷ୍ୟତକୁ ଅନ୍ଧକାର ମଧ୍ୟକୁ ନିକ୍ଷେପ କରିବ ।

ରାଜନୀତିର ମୁଖ୍ୟତଃ ଦୁଇଟି ଦିଗ ରହିଛି । ପ୍ରଥମଟି ପ୍ରତ୍ୟକ୍ଷ ଦିଗ ଓ ଅନ୍ୟଟି ପରୋକ୍ଷ ଦିଗ । ପ୍ରତ୍ୟକ୍ଷ ଦିଗ କହିଲେ ରାଜନୀତି ସହିତ ସକ୍ରିୟ ଭାବରେ ସଂପୃକ୍ତ ହୋଇ ପଡ଼ିବା । କୌଣସି ଘଟଣା ବା ପରିସ୍ଥିତି ସମ୍ପର୍କରେ ଅନୁଧ୍ୟାନ କରି ତା' ଉପରେ ପ୍ରତିକ୍ରିୟା

ପ୍ରକାଶ ବା ମତାମତ ପ୍ରଦାନ ସକ୍ରିୟ ରାଜନୀତି ନୁହେଁ । ରାଜନୀତିରେ ପ୍ରତ୍ୟକ୍ଷ ଭାବରେ ନିଜକୁ ଜଡ଼ାଇ ଦେଇ ସର୍ବସାଧାରଣରେ କ୍ରିୟାଶୀଳ ଭାବରେ କାର୍ଯ୍ୟପନ୍ଥା ଗ୍ରହଣ ହିଁ ସକ୍ରିୟ ରାଜନୀତି । ଆବଶ୍ୟକତାକୁ ଆଖି ଆଗରେ ରଖି ଧର୍ମଘଟ, ଶୋଭାଯାତ୍ରା, ସାଧାରଣ ସଭାସମିତିରେ ଅଭିଭାଷଣ ପ୍ରଦାନ, ପରିସ୍ଥିତି ସହିତ ସଂଗ୍ରାମ, ନିର୍ବାଚନରେ ଅଂଶ ଗ୍ରହଣ ପୂର୍ବକ ଶାସନ କ୍ଷମତା ଦାଖଲ ପାଇଁ ଉଦ୍ୟମ, ନିଜର ମତବାଦକୁ ଜାହିର କରିବା ନିମିତ୍ତ ଉପାୟ ପ୍ରଣୟନ ଆଦି ସକ୍ରିୟ ରାଜନୀତିର ଅଂଶବିଶେଷ । କୌଣସି ଛାତ୍ର ଏହିପରି ସକ୍ରିୟ ରାଜନୀତିରେ ଯୋଗଦେବା ଅନୁଚିତ । ଏହା ଦ୍ୱାରା ତା'ର ପ୍ରକୃତ ଉଦ୍ଦେଶ୍ୟ ସାଧିତ ହୋଇପାରିବ ନାହିଁ । ଯେଉଁ ଲକ୍ଷ୍ୟ ନେଇ ସେ ଶିକ୍ଷାନୁଷ୍ଠାନରେ ପାଦ ଦେଇଥାଏ, ତାହା ସବୁଦିନ ପାଇଁ ଅପୂରଣୀୟ ହୋଇ ରହିଯାଏ । ସକ୍ରିୟ ରାଜନୀତିରେ ଭାଗନେବା ଦ୍ୱାରା ଏହା ଛାତ୍ରସମାଜ ପାଇଁ ସମ୍ପୂର୍ଣ୍ଣ ଭାବେ ଅମଙ୍ଗଳପ୍ରଦ । ମାତ୍ର ଛାତ୍ରମାନେ ପରୋକ୍ଷ ରାଜନୀତିରେ ଭାଗ ନେଇପାରିବେ । ଛାତ୍ରସମାଜ ସମ୍ପୂର୍ଣ୍ଣ ଭାବରେ ଦେଶର ସଚେତନ ନାଗରିକ ହୋଇଥିବାରୁ ଦେଶ ମଧ୍ୟରେ ସଙ୍ଘଟିତ ହେଉଥିବା କ୍ରିୟାକଳାପକୁ ତୀକ୍ଷ୍ଣ ନଜର ପ୍ରଦାନ କରିବା ଆବଶ୍ୟକ । ଏ ସମ୍ପର୍କରେ ସମ୍ବାଦପତ୍ର ବା ଆଲୋଚନାରେ ଗଠନାତ୍ମକ ମତାମତ ପ୍ରଦାନ କରିବାରେ ମଧ୍ୟ କୌଣସି ଅସୁବିଧା ନାହିଁ । ରାଜନୀତି ସମ୍ବନ୍ଧୀୟ ଉପାଦେୟ ପୁସ୍ତକ, ପତ୍ରପତ୍ରିକା ପାଠ କରି ସରକାରଙ୍କୁ ଉପଯୁକ୍ତ ପରାମର୍ଶ ଦେବାରେ ଛାତ୍ରସମାଜର ସମ୍ପୂର୍ଣ୍ଣ ଅଧିକାର ରହିଛି । ଏହାଦ୍ୱାରା ସେମାନଙ୍କର ବିଚାରବୁଦ୍ଧିର ପରିପ୍ରକାଶ ହେବା ସହିତ ଭବିଷ୍ୟତର ପରିପକ୍ୱ ରାଜନୀତିଜ୍ଞ ହେବାର ଆଭାସ ମଧ୍ୟ ମିଳିପାରିବ । ଏତଦ୍ ବ୍ୟତୀତ କେତେକ ଛାତ୍ର ଗୋଟିଏ ଗୋଟିଏ ଆଲୋଚନାଚକ୍ର ଗଠନ କରି ସାଂପ୍ରତିକ ରାଜନୀତି, ରାଜନୀତିଜ୍ଞଙ୍କ କ୍ରିୟାକଳାପ, ସରକାରଙ୍କ ବିଭିନ୍ନ ଯୋଜନା ସମ୍ପର୍କରେ ଆଲୋଚନା କରି ବିଭିନ୍ନ ସମ୍ବାଦପତ୍ର ବା ପତ୍ରପତ୍ରିକା ମାଧ୍ୟମରେ ନିଜର ମତାମତକୁ ପ୍ରକାଶ କରିପାରିବେ । ଏହାଦ୍ୱାରା ସେମାନଙ୍କ ଅଧ୍ୟୟନରେ କୌଣସି କ୍ଷତି ନ ହେବା ସଙ୍ଗେ ସଙ୍ଗେ ରାଜନୀତିକ ବିଚାରବୁଦ୍ଧିର ମଧ୍ୟ ପରିଚୟ ମିଳିପାରିବ । ପ୍ରତ୍ୟେକ ଛାତ୍ରଛାତ୍ରୀଙ୍କ ପକ୍ଷରେ ଏହି ପରୋକ୍ଷ ରାଜନୀତି ହିଁ ବରଣୀୟ । ଭାରତବର୍ଷରେ କ୍ୱଚିତ୍ ଛାତ୍ରଛାତ୍ରୀଙ୍କ ନିକଟରେ ଏହି ପ୍ରକାର ଗୁଣ ପରିଲକ୍ଷିତ ହୋଇଥାଏ ।

ଛାତ୍ରସମାଜ ସକ୍ରିୟ ରାଜନୀତିରେ ଭାଗନେବା ଉଚିତ କି ଅନୁଚିତ ଏ ସମ୍ପର୍କରେ ଭିନ୍ନ ଭିନ୍ନ ବ୍ୟକ୍ତି ଭିନ୍ନ ଭିନ୍ନ ମତପ୍ରଦାନ କରିଥାନ୍ତି । ସ୍ୱାଧୀନତା ପୂର୍ବରୁ ମଧ୍ୟ ଏହିପରି ଦୁଇପ୍ରକାର ମତ ପରିଲକ୍ଷିତ ହେଉଥିଲା । ଶାସକଦଳରେ ଥିବା ରାଜନୈତିକ ନେତାମାନେ ଛାତ୍ରମାନଙ୍କର ରାଜନୀତିରେ ପ୍ରବେଶାଧିକାରକୁ ବିରୋଧ କରୁଥିବା ସମୟରେ ବିରୋଧୀଦଳ ଛାତ୍ରମାନଙ୍କୁ ଏ କ୍ଷେତ୍ରରେ ସ୍ୱାଗତ କରିଥାନ୍ତି । ନେତାମାନଙ୍କର ସ୍ୱାଗତ ବା ବିରୋଧ ପଛରେ କୌଣସି ନୈତିକ ଆଦର୍ଶ ନାହିଁ । ସରକାରରେ ଥିବା ବ୍ୟକ୍ତିମାନେ ଛାତ୍ରମାନଙ୍କର ଆନ୍ଦୋଳନ, ଧର୍ମଘଟ ଓ ଧ୍ୱଂସାତ୍ମକ କାର୍ଯ୍ୟକୁ ଭୟ କରି ବିରୋଧ କରୁଥିବା ସମୟରେ ବିରୋଧୀଦଳ ଦେଶରେ ରାଜନୀତିକ ଅସ୍ଥିରତା ସୃଷ୍ଟି ଓ ସରକାରଙ୍କୁ ବଦନାମ କରିବା ପାଇଁ ଚଞ୍ଚଳମତି ଛାତ୍ରସମାଜକୁ ସ୍ୱାଗତ କରିଥାନ୍ତି ।

ଛାତ୍ରମାନେ ବହିଯାଉଥିବା ଝରଣା ସଦୃଶ । କୌଣସି ବାଧା ବନ୍ଧନ ନ ମାନି, ପରିସ୍ଥିତିକୁ ବିଶ୍ଳେଷଣ ନ କରି ଗୋଟିଏ ଖିଆଲରେ ଆଗକୁ ମାଡ଼ିଯିବା ହିଁ ସେମାନଙ୍କର ଧର୍ମ । ଏଥିରେ ସମାଜର ବା ସେମାନଙ୍କର ନିଜର କୌଣସି କ୍ଷତି ହେଉଛି କି ନାହିଁ ସେତେବେଳେ ସେମାନେ ବିଚାର କରିପାରି ନ ଥାନ୍ତି । ଏଥିରେ ନା ଅଛି ଆଦର୍ଶ, ଦେଶସେବା ବା ସ୍ୱଚ୍ଛତା । ପ୍ରତ୍ୟେକ ବ୍ୟକ୍ତି ପାଇଁ ଏହା ବେଶ୍ ଏକ ପ୍ରଲୋଭନର ସାମଗ୍ରୀ ହୋଇପଡ଼ିଛି । ଛାତ୍ର ଲକ୍ଷ୍ୟ କରୁଛି ଥରେ ରାଜନୀତିରେ କ୍ଷମତା ଆସନଟି ଲାଭ କଲେ ସମଗ୍ର ଜୀବନ ବିଳାସବ୍ୟସନରେ କଟିଯାଇପାରିବ । କ୍ଷମତା, ଅର୍ଥ, ଉପଭୋଗ ସବୁକିଛି ହାତପାହାନ୍ତାରେ । ସମାଜରେ ମଧ୍ୟ ରାଜନୀତିକ ବ୍ୟକ୍ତିବିଶେଷଙ୍କର ଅଗାଧ ସମ୍ମାନ ରହିଛି । ଛାତ୍ର ନିଜ ଅନୁଭୂତିରୁ ଅନୁଭବ କରୁଛି ପାଠପଢ଼ା ସାରି ବେକାର ହୋଇ ବସିବା ଅପେକ୍ଷା ରାଜନୀତିରେ କ୍ଷମତା ଏବଂ ପ୍ରାଚୁର୍ଯ୍ୟ ପାଇବାରେ କ୍ଷତି କ'ଣ ! ପୁଣି କ୍ଷମତା ପାଇଁ ଦଳୀୟ ସଂଘର୍ଷ, ଦୁର୍ନୀତି, ସ୍ୱାର୍ଥପରତା ଆଜିର ରାଜନୀତିକୁ ଏପରି କଳୁଷିତ କରିଛି ଯେ ଛାତ୍ରସମାଜ ପ୍ରତିକ୍ରିୟାଶୀଳ ହୋଇ ରାଜନୀତିରେ ପ୍ରବେଶ କରିବାକୁ ମନସ୍ଥ କରୁଛି । ସମୟେ ସମୟେ କେତେକ ନେତାଙ୍କର ପ୍ରରୋଚନା ଯୋଗୁଁ ସରଳମତି ଛାତ୍ର ରାଜନୀତିରେ ପ୍ରବେଶ କରିଥାଏ । ରାଜନୀତିର ହଟଚମଟ, କ୍ଷମତାଲାଳସା, ନେତୃତ୍ୱ ପାଇଁ ଆକୁଳ ଆକାଂକ୍ଷା ମଧ୍ୟ ରାଜନୀତି ପ୍ରତି ଛାତ୍ରକୁ ପ୍ରଲୁବ୍ଧ କରାଏ । କଳୁଷିତ ରାଜନୀତିକ ବାତାବରଣ ମଧ୍ୟରେ ଦିଗହଜା ଛାତ୍ର କ୍ଷମତାର ସୁନାହରିଣ ପଛରେ ଧାଇଁ ଧାଇଁ ଅଣନିଃଶ୍ୱାସୀ ହୋଇପଡ଼େ, ତଥାପି ରାଜନୀତିର ନିଶାକୁ ଛାଡ଼ିପାରେ ନାହିଁ । ଦଳ ମଧ୍ୟରେ କ୍ଷମତା ପାଇଁ ସଂଘର୍ଷ, ବ୍ୟକ୍ତିସ୍ୱାର୍ଥ ଓ ରାଜନୀତିକ ପ୍ରୋତ୍ସାହନ ସ୍ୱାଭାବିକ ଭାବରେ ଛାତ୍ରସମାଜକୁ ରାଜନୀତିରେ ଭାଗ ନେବାକୁ ଉତ୍ସାହିତ କରୁଛି । ଅନେକ ସମୟରେ ସାଂପ୍ରତିକ ଶିକ୍ଷା ପଦ୍ଧତିରେ ତ୍ରୁଟି, ଭବିଷ୍ୟତ ପାଇଁ ଅନିଶ୍ଚିତତା ଓ କ୍ଷମତାର ମୋହ ଛାତ୍ରଙ୍କୁ ରାଜନୀତି କରିବାକୁ ବାଧ୍ୟ କରୁଛି । ତା' ଆଗରେ କୌଣସି ଆଦର୍ଶ ନ ଥିବାରୁ ଏବଂ ଏଥିରୁ କେହି ତାକୁ ନିରୁତ୍ସାହିତ କରୁନଥିବାରୁ ତା' ପକ୍ଷରେ ରାଜନୀତି କରିବା ଉଚିତ ବୋଲି ମତପ୍ରକାଶ ପାଇଥାଏ । ମାତ୍ର ଏହାର ବିରୋଧରେ ମଧ୍ୟ ବହୁ ଯୁକ୍ତି ରହିଛି । ଅଧ୍ୟୟନ ଏକ ନିରବଚ୍ଛିନ୍ନ ପ୍ରକ୍ରିୟା । ଏହା ମଧ୍ୟରେ ବାଧା ସୃଷ୍ଟି ହେଲେ ଛାତ୍ରର ଭବିଷ୍ୟତ ଅନ୍ଧକାର ହୋଇଯାଏ । ଦେଶ ଗଠନର ଭବିଷ୍ୟତ ଭାର ଛାତ୍ରସମାଜ ଉପରେ ନ୍ୟସ୍ତ ଥିବାରୁ, ନିଜକୁ ଉଚିତ ନାଗରିକ ଭାବରେ ଗଢ଼ି ତୋଳିବା ସେମାନଙ୍କର ପ୍ରଥମ ଲକ୍ଷ୍ୟ ହେବା ଆବଶ୍ୟକ । ବିଶ୍ୱର ସମସ୍ତ ବିଶିଷ୍ଟ ନେତା ଅଧ୍ୟୟନର ପରିସମାପ୍ତି ପରେ ହିଁ ରାଜନୀତିକୁ ପ୍ରବେଶ କରିଛନ୍ତି ଓ ରାଜନୀତିରେ ସେମାନେ ସେମାନଙ୍କର ଆଦର୍ଶ ପ୍ରତିଷ୍ଠା କରିବାକୁ ସମର୍ଥ ହୋଇପାରିଛନ୍ତି । ମହାତ୍ମାଗାନ୍ଧି, ଜବାହରଲାଲ ନେହେରୁ, ସୁଭାଷଚନ୍ଦ୍ର ବୋଷ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ଗୋପବନ୍ଧୁ ଦାସ, ସର୍ବପଲ୍ଲୀ ଡ଼ଃ. ରାଧାକ୍ରିଷ୍ଣନ୍, ରାଜେନ୍ଦ୍ର ନାରାୟଣ ପ୍ରଭୃତି ସ୍ୱାଧୀନତା ସଂଗ୍ରାମୀ ଶିକ୍ଷା ସମାପ୍ତି ପରେ ହିଁ ଜନନାୟକ ରୂପେ ଦେଶର ନେତୃତ୍ୱ ନେଇଛନ୍ତି । ସଂପ୍ରତି ଛାତ୍ରସମାଜ ସେହିମାନଙ୍କୁ ଆଦର୍ଶ ରୂପେ ଗ୍ରହଣ କରି ନିଜର ଲକ୍ଷ୍ୟ ସ୍ଥିର କରିବା ଆବଶ୍ୟକ । ଅଧ୍ୟୟନ ପରି ଏକ ମହତ୍ କାର୍ଯ୍ୟକୁ ସାମୟିକ କ୍ଷମତା ଲାଳସା ପାଇଁ ତ୍ୟାଗ କରିବା ବିରାଟ ଅପରାଧ । ଯେଉଁ ରାଜନୀତିକ

ନେତାମାନେ ଚପଳମତି ଛାତ୍ରସମାଜକୁ ଏହି କୁତ୍ସିତ ରାଜନୀତି ପାଇଁ ପ୍ରେରଣା ଦେଉଛନ୍ତି, ସେମାନେ ସମାଜର ସବୁଠାରୁ ବଡ଼ ଶତ୍ରୁ । ରାଜନୈତିକ ଚେତନା ବା ଜ୍ଞାନଲାଭ କରିବା ସ୍ୱାଗତଯୋଗ୍ୟ; ମାତ୍ର ଛାତ୍ରାବସ୍ଥାରୁ କଳଙ୍କିତ ରାଜନୀତିରେ ଛାତ୍ରମାନଙ୍କର ପ୍ରବେଶ ଭାରତର ସବୁଠାରୁ ବଡ଼ ଦୁର୍ଭାଗ୍ୟ ।

ଆଜିର ଏହି ଅଭିଶପ୍ତ ସମୟରୁ କୌଣସି ବ୍ୟକ୍ତି ମୁକ୍ତ ନ ଥିବାରୁ ଛାତ୍ରସମାଜ ଏଥିରୁ ରକ୍ଷା ପାଇବ ବା କିପରି ? ରାଜନୀତିକ ବାତାବରଣରୁ ସଂପ୍ରତି ନିଜକୁ ମୁକ୍ତ ରଖିବା ଏକ କଠିନ ବ୍ୟାପାର । ଏହା ସତ୍ତ୍ୱେ ଛାତ୍ରସମାଜ ହଠାତ୍ ନିଜକୁ ଏପରି ବିକ୍ରି କରିଦେବା ଉଚିତ ନୁହେଁ । ବିଶ୍ୱ ଚିନ୍ତା ଓ ଚେତନାରେ ବର୍ତ୍ତମାନ ଯେଉଁ ପରିବର୍ତ୍ତନ ଆସିଛି, ତାହାକୁ ଛାତ୍ରସମାଜ ତୀକ୍ଷ୍ଣ ଦୃଷ୍ଟି ଦେଇ ସେହି ଢ଼ାଞ୍ଚାରେ ନିଜକୁ ଗଠନ କରିବା ଆବଶ୍ୟକ । ରାଜନୀତି ରାକ୍ଷସ ଦ୍ୱାରା ସମ୍ପୂର୍ଣ୍ଣ କବଳିତ ନ ହୋଇ ତାହାକୁ ବିଶ୍ଳେଷଣ ପୂର୍ବକ ଛାତ୍ର ନିଜର ବୌଦ୍ଧିକ ଚେତନାକୁ ଜାଗ୍ରତ କରିବା ଆବଶ୍ୟକ । ଅଧ୍ୟୟନ ସମୟ ପ୍ରସ୍ତୁତି ପର୍ବ । ବିଶ୍ୱ ରାଜନୀତି ସହିତ ପରିଚିତି ଲାଭ କରି ଭବିଷ୍ୟତ ପାଇଁ ମାର୍ଗ ପ୍ରସ୍ତୁତି କରିବା ଓ ନିଜ ଜୀବନକୁ ସୁସଙ୍ଗଠିତ କରି ଭବିଷ୍ୟତ ରାଜନୀତି ପାଇଁ ନିଜକୁ ପ୍ରସ୍ତୁତ କରିବା ବର୍ତ୍ତମାନ ଛାତ୍ରସମାଜର ଧ୍ୟେୟ ହେବା ଉଚିତ୍ ।

●

## ଛାତ୍ରର ସାମାଜିକ ଦାୟିତ୍ୱ ବା ଛାତ୍ର ଓ ସମାଜ ସେବା

**(ଉପକ୍ରମ, ସମାଜସେବାର ଉଦ୍ଦେଶ୍ୟ, ଭାରତରେ ସମାଜସେବା, ଛାତ୍ରସମାଜର ସାମାଜିକ କର୍ତ୍ତବ୍ୟ, କୁସଂସ୍କାର, ନିରକ୍ଷରତା ଦୂରୀକରଣ, ଯୌତୁକ ପ୍ରଥା ବିରୋଧରେ ସ୍ୱର ଉତ୍ତୋଳନ, ପରିବେଶ ସୁରକ୍ଷା, ସାମାଜିକ ସଚେତନତା ବୃଦ୍ଧି ପାଇଁ ପଦକ୍ଷେପ, ପ୍ରାକୃତିକ ବିପର୍ଯ୍ୟୟ ସମୟରେ ସହାୟତା, ରକ୍ତଦାନ ଶିବିର, ସାମାଜିକ ଦୁର୍ଗତି ଅବସାନ ପାଇଁ ପଦକ୍ଷେପ, ଉପସଂହାର)**

ମଣିଷ ଏକ ସାମାଜିକ ପ୍ରାଣୀ ହୋଇଥିବାରୁ ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ସମାଜ ମଧ୍ୟରେ ରହିବାକୁ ବାଧ ହୋଇଥାଏ । ଜୀବନର ବିଭିନ୍ନ ପର୍ଯ୍ୟାୟ ମଧ୍ୟ ଅତିକ୍ରାନ୍ତ ହୋଇଥାଏ ସମାଜରେ । ଗୋଟିଏ ସୁସ୍ଥ ସମାଜ ମଣିଷର ସାମଗ୍ରିକ ବିକାଶରେ ସହାୟତା କରିଥାଏ । ସାମାଜିକ ଅବସ୍ଥା ପଙ୍ଗୁ ହୋଇପଡ଼ିଲେ, ମଣିଷର ଜୀବନ ବିପର୍ଯ୍ୟସ୍ତ ହୋଇପଡ଼େ । ଆଦିମ କାଳରୁ ଏପର୍ଯ୍ୟନ୍ତ ସମାଜକୁ ସୁନ୍ଦର କରି ଗଢ଼ିବା ନିମିତ୍ତ ଅତୀତର ମୁନିଋଷି ଏବଂ ବର୍ତ୍ତମାନର ବୈଜ୍ଞାନିକ କେତେ କ'ଣ ଉପାୟ ଆବିଷ୍କାର କରିଯାଇଛନ୍ତି । କେବଳ ଉପାୟର ଆବିଷ୍କାରରେ ସମସ୍ୟାର ସମାଧାନ ହୋଇ ନ ଥାଏ । ଏହି ଉପାୟକୁ କିପରି କାର୍ଯ୍ୟକାରୀ କରାଯାଇପାରିବ; ତା'ରି ସଫଳତା ଉପରେ ହିଁ ସମାଜର ସୁସ୍ଥତା ନିର୍ଭର କରେ । ସେଥିପାଇଁ ଛାତ୍ରସମାଜର ହିଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ।

ଅଫୁରନ୍ତ ପ୍ରାଣ ପ୍ରବାହର ଚରମ ପ୍ରତୀକ ଛାତ୍ରସମାଜ । ସେମାନଙ୍କର ସକ୍ରିୟ ସହଯୋଗରେ ହିଁ ସାମାଜିକ ବ୍ୟବସ୍ଥା ସୁନ୍ଦର ଓ ସୁଗଠିତ ହୋଇଉଠେ । ଭବିଷ୍ୟତ ଗଠନ କରିବାର ସ୍ୱପ୍ନ ଭିତରେ ସେ ଅନୁଭବ କରିଥାଏ ସମାଜର ଦୁର୍ବଳତାକୁ । ସେମାନଙ୍କର ସଙ୍ଗଠିତ ଓ ଉତ୍ସର୍ଗୀକୃତ କର୍ମ ଯୋଜନା ଦେଶର ବିକାଶ ନିମିତ୍ତ ଅତ୍ୟନ୍ତ ଉପଯୋଗୀ । ଛାତ୍ର ଜୀବନରେ ଯେଉଁ କେତେକ କର୍ତ୍ତବ୍ୟ କରିବାର ସୁଯୋଗ ରହିଛି, ତନ୍ମଧ୍ୟରେ ସମାଜସେବା ସବୁଠାରୁ ମୁଖ୍ୟ । ଭାରତ ପରି ସ୍ୱଳ୍ପ ଶିକ୍ଷିତ ଏବଂ ବିକାଶଶୀଳ ରାଷ୍ଟ୍ରରେ ଛାତ୍ର ଉପରେ ବହୁ ଦାୟିତ୍ୱ ନ୍ୟସ୍ତ । ସେହିମାନେ ହିଁ ସାମାଜିକ ଆନ୍ଦୋଳନ ମାଧ୍ୟମରେ ସମାଜରେ ସଂସ୍କାର ଆଣିପାରିବେ । ଯୁଗ ଯୁଗ ଧରି କୁସଂସ୍କାର ପରିପୂରିତ ଦେଶରେ ଆଲୋକର ନୂତନ ବାର୍ତ୍ତା ପ୍ରଚାର କରିପାରିବେ । ସମାଜକୁ ନୂତନ ମୋଡ଼ ଦେଇପାରିବେ ।

ସମାଜସେବାର ମୁଖ୍ୟ ଉଦ୍ଦେଶ୍ୟ କାୟମନବାକ୍ୟରେ ସମାଜର ମଙ୍ଗଳ ସାଧନ । ଆମ ସମାଜରେ ଏବେବି ବହୁଲୋକ ଅଛନ୍ତି, ଯେଉଁମାନେ ଜ୍ଞାନ ବିଜ୍ଞାନଠାରୁ ବହୁ ଦୂରରେ । ସମାଜର ପରିବର୍ତ୍ତିତ ବିବର୍ତ୍ତନ ଧାରାରେ ନିଜକୁ ଆଦୌ ଖାପ ଖୁଆଇ ଚଳାଇ ପାରୁନାହାନ୍ତି । ସେହି ପ୍ରାଚୀନତା ଓ ଅନ୍ଧମୋହକୁ ଜାବୁଡ଼ି ଧରି ନିଜକୁ କ୍ଷୟ କରି ଚାଲିଛନ୍ତି । ସମାଜର ଏହି ଅଧୋଗତିକୁ ଲକ୍ଷ୍ୟ କରି ସମାଜ ବିଜ୍ଞାନ ପରି ଏକ ନୂତନ ପାଠ୍ୟକ୍ରମ ଆରମ୍ଭ କରାଯାଇଛି । ପାଶ୍ଚାତ୍ୟ ଦେଶମାନଙ୍କରେ ଏହା ଏକ ଗୁରୁତ୍ୱପୂର୍ଣ୍ଣ ପାଠ୍ୟରୂପେ କେବଳ ଯେ ଗୃହୀତ ତାହା ନୁହେଁ, ପରନ୍ତୁ ସମାଜସେବାକୁ ମଧ୍ୟ ଶିକ୍ଷାର ଏକ ବିଶେଷ ଅଙ୍ଗରୂପେ ଗ୍ରହଣ କରାଯାଇଛି । ସମାଜସେବା ଦ୍ୱାରା ଛାତ୍ରର ମନୋବୃତ୍ତିରେ ପରିବର୍ତ୍ତନ ଆସେ । ସଂକୀର୍ଣ୍ଣ ମନୋଭାବ ତ୍ୟାଗ କରି ବିଶ୍ୱ ଭାବନାରେ ନିଜକୁ ସାମିଲ କରିଦିଏ । ଏତଦ୍ ବ୍ୟତୀତ ସମାଜର ଅବହେଳିତ ଓ ନିକ୍ଷେପିତ ବ୍ୟକ୍ତି ସେବା ମାଧ୍ୟମରେ ବଞ୍ଚିବାର ରାହା ଖୋଜି ପାଇଥାନ୍ତି । ସମାଜରେ ବସବାସ କରୁଥିବା ବିଭିନ୍ନ ବ୍ୟକ୍ତିଙ୍କୁ ସମାଜସେବା ମାଧ୍ୟମରେ ଗୋଟିଏ ଭ୍ରାତୃତ୍ୱର ରଜ୍ଜୁରେ ବନ୍ଦୀ କରି ହୋଇଥାଏ । ନୀଚ ଓ ସଙ୍କୀର୍ଣ୍ଣ ଚିନ୍ତାଧାରା ସେମାନଙ୍କ ମନରୁ ଦୂରେଇ ଯାଇଥାଏ । ଏକ ପାଇଁ ଅନେକ ଓ ଅନେକ ପାଇଁ ଏକ — ଏହି ଭାବନାର ବଶବର୍ତ୍ତୀ ହୋଇ ସମାଜର ସାମଗ୍ରିକ ମଙ୍ଗଳ ଉଦ୍ଦେଶ୍ୟରେ ଆଗେଇ ଆସନ୍ତି । ସତ୍ୟ, ଶିବ ଏବଂ ସୁନ୍ଦରତାର ମୂର୍ତ୍ତିମନ୍ତ ପ୍ରତୀକ ହୋଇଉଠେ ସମାଜ ।

ପାଶ୍ଚାତ୍ୟ ଜଗତରେ ଆଧୁନିକ ଯୁଗରେ ସମାଜସେବା ଉପରେ ଗୁରୁତ୍ୱ ପ୍ରଦାନ କରାଯାଇଥିବା ସମୟରେ ଭାରତରେ କେଉଁ ପ୍ରାଚୀନ କାଳରୁ ଶିକ୍ଷାର ଏହା ଏକ ବିଶେଷ ଅଙ୍ଗ ରୂପେ ଗୃହୀତ ହୋଇଥିଲା । ପ୍ରାଚୀନ ମୁନିଋଷିମାନେ ଯାଗଯଜ୍ଞ ମାଧ୍ୟମରେ ସମାଜର ସେବାହିଁ କରୁଥିଲେ । ଗୁରୁକୁଳ ଆଶ୍ରମରେ ଶିଷ୍ୟ ସମାଜସେବା ପାଇଁ ନିଜକୁ ପ୍ରସ୍ତୁତ କରୁଥିଲେ । ''ସମସ୍ତେ ସୁଖରେ ରୁହନ୍ତୁ, ସମସ୍ତେ ନିରାମୟ ଜୀବନଯାପନ କରନ୍ତୁ, ସମସ୍ତେ ଭଦ୍ର ହୁଅନ୍ତୁ; କେହି ଦୁଃଖ ଭୋଗ ନ କରୁ'' ଏହାହିଁ ଥିଲା ପ୍ରାଚୀନ ଭାରତର ଶିକ୍ଷା ପଦ୍ଧତି ଓ ପ୍ରାଚୀନ ମୁନିଋଷିଙ୍କର ବାଣୀ । ଉଦାର ଓ ନୈତିକ ମୂଲ୍ୟବୋଧ ଉପରେ ପ୍ରାଚୀନ କାଳରେ ଗୁରୁତ୍ୱ ଆରୋପ କରାଯାଇଥିଲା । ସମୟକ୍ରମେ ଭାରତର ସେହି ପ୍ରାଚୀନ ଆଦର୍ଶ ବିପଥଗାମୀ ହୋଇପଡ଼ିଲା । ପୁନରାୟ ଊନବିଂଶ

ଶତାବ୍ଦୀରେ ସେହି ପ୍ରାଚୀନ ଆଦର୍ଶର ପୁନରୁତ୍‌ଥାନ ନିମିତ୍ତ ଉଦ୍ୟମ ଆରମ୍ଭ ହେଲା । 'Service to mankind is service to God.' ମାନବର ସେବା ଈଶ୍ୱରଙ୍କର ସେବା ବୋଲି ମହାତ୍ମାଗାନ୍ଧି ପ୍ରଚାର କଲେ । ଆଶ୍ରମ ଜୀବନଯାପନ ମାଧ୍ୟମରେ ପ୍ରାଚୀନ ପରମ୍ପରାକୁ ଉଜ୍ଜୀବିତ କଲେ । ଅସହାୟ, ନିଃସହାୟ ଏବଂ ରୋଗଗ୍ରସ୍ତଙ୍କ ସେବା କରି ଏକ ନୂତନ ପରମ୍ପରା ସୃଷ୍ଟି କଲେ । ତାଙ୍କ ଦ୍ୱାରା ପ୍ରଭାବିତ ହୋଇ ବହୁ ବ୍ୟକ୍ତି ସମାଜସେବା ପାଇଁ ନିଜକୁ ଉତ୍ସର୍ଗ କଲେ । ପୁଣି ମଦରଟେରେସା ସେବାର ମୂର୍ତ୍ତିମନ୍ତ ପ୍ରତୀକ ଭାବରେ ଭାରତ ଗଗନରେ ଉଭାହେଲେ । ଦଳିତ, ଅବହେଳିତମାନଙ୍କର ସେବାକରି ବିଶ୍ୱରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କଲେ । ତେଣୁ ଭାରତରେ ସମାଜସେବା ବହୁପୂର୍ବରୁ ପ୍ରଚଳିତ । ସେହି ପ୍ରାଚୀନ ଆଦର୍ଶ ଓ ପରମ୍ପରାକୁ ଅନୁସରଣ କରିପାରିଲେ ଆଜିର ଛାତ୍ରସମାଜ ଯେ ନିଜକୁ ଜଣେ ଜଣେ ସମାଜସେବୀ ଆସନକୁ ଉନ୍ନୀତ କରିପାରିବେ, ଏଥିରେ ସନ୍ଦେହ ନାହିଁ ।

ମହାତ୍ମାଗାନ୍ଧି ଛାତ୍ରସମାଜକୁ ଉପଦେଶ ଦେଇ କହିଥିଲେ, ଛାତ୍ରମାନେ ସର୍ବଦା ସେବା ଓ ସଂସ୍କାର ମନୋଭାବ ପୋଷଣ କରିବା ଉଚିତ । ଏହି ସେବା ବିଭିନ୍ନ ପ୍ରକାର ହୋଇପାରେ । ବିଂଶଶତାବ୍ଦୀର ଶେଷଭାଗରେ ମଧ୍ୟ ଭାରତୀୟ ସମାଜ ବହୁ କୁସଂସ୍କାରରେ ପରିପୂର୍ଣ୍ଣ ହୋଇଛି । ଯୁଗଯୁଗର ଅନ୍ଧବିଶ୍ୱାସ, ପ୍ରାଚୀନ ପରମ୍ପରା ଏବେ ମଧ୍ୟ ତା' ଆଖିରେ ଅନ୍ଧପୁଟୁଳି ବାନ୍ଧିଛି । ବିଶ୍ୱର କୌଣସି ପରିବର୍ତ୍ତନ ତା' ଆଖିରେ ପଡୁ ନାହିଁ । ଏବେ ମଧ୍ୟ ହଇଜା ଓ କଲେରା ଲାଗିଲେ ସେ ଦେବଦେବୀଙ୍କୁ ପୂଜା କରୁଛି, ପଣା ଦେଉଛି, କାଳିଶି ଲାଗିଛି ବୋଲି ଧୂପ ନୈବେଦ୍ୟ ଦେଉଛି । ଏହା ଯେ ଏକ କୁସଂସ୍କାର ଓ କେତେଜଣ ଚତୁର ବ୍ୟକ୍ତିଙ୍କର ବିଶେଷ ଚାଲ, ତାହା ଏଯାବତ୍ ସେ ବୁଝିପାରି ନାହିଁ । ରୋଗରେ ମୃତ୍ୟୁବରଣ କରିବାକୁ ସେ ଭାଗ୍ୟର ବିଡ଼ମ୍ବନା ବୋଲି ଗ୍ରହଣ କରିନେଉଛି । ତେଣୁ ଛାତ୍ରସମାଜ ସମାଜରେ ଓ ବ୍ୟକ୍ତିବିଶେଷଙ୍କ ମନରେ ପରିପୂରିତ ଏହି ଧାରଣାକୁ ବଦଳାଇଦେବା ଉଚିତ । କୁସଂସ୍କାର ମୁଣ୍ଡରେ ପ୍ରଚଣ୍ଡ ଆଘାତ କରି ସମାଜରୁ ତା'ର ସମୂଳ ଧ୍ୱଂସ କରିବା ଆବଶ୍ୟକ । କୁସଂସ୍କାର ଦୂରକରି ମଣିଷକୁ ଶୁଦ୍ଧ, ସଂସ୍କାର କରିବା ବର୍ତ୍ତମାନ ଛାତ୍ରସମାଜର କେବଳ ସାମାଜିକ କର୍ତ୍ତବ୍ୟ ନୁହେଁ, ନୈତିକ ଦାୟିତ୍ୱ ମଧ୍ୟ ।

ନିରକ୍ଷରତା ଭାରତୀୟ ସମାଜ ପାଇଁ ଏକ ବଡ଼ କଳଙ୍କ । ବିଶ୍ୱରେ ଭାରତର ନିରକ୍ଷରଙ୍କ ସଂଖ୍ୟା ସର୍ବାଧିକ । ରାଷ୍ଟ୍ରସଂଘ ଏହି ନିରକ୍ଷରତା ଦୂର କରିବା ନିମିତ୍ତ ବିଭିନ୍ନ ପଦକ୍ଷେପ ଗ୍ରହଣ କରି ୧୯୮୮ ମସିହାକୁ ନିରକ୍ଷରତା ଦୂରୀକରଣ ବର୍ଷ ରୂପେ ଘୋଷିତ ହୋଇଛି । ମାତ୍ର ଭାରତରେ ଏହାର ବିଶେଷ କିଛି ପରିବର୍ତ୍ତନ ହୋଇଛି ବୋଲି ମନେହୁଏ ନାହିଁ । ଏବେବି ଅକ୍ଷର ଶିକ୍ଷା ପାଇଁ ବହୁ ଅଭିଭାବକ ସେମାନଙ୍କର ପିଲାମାନଙ୍କୁ ଅନୁମତି ଦିଅନ୍ତି ନାହିଁ । ଏହାର ସୁଫଳ ସମ୍ପର୍କରେ ସେମାନେ ସମ୍ପୂର୍ଣ୍ଣ ଅନଭିଜ୍ଞ । ଗଣଶିକ୍ଷା ଓ ପ୍ରୌଢ଼ଶିକ୍ଷା ମାଧ୍ୟମରେ ସରକାର କୋଟି କୋଟି ଟଙ୍କା ଖର୍ଚ୍ଚ କଲେ ମଧ୍ୟ ବ୍ୟୟ ତୁଳନାରେ ଫଳ ଅତ୍ୟନ୍ତ ନିରାଶଜନକ । ଯୋଜନାକୁ କାର୍ଯ୍ୟକାରୀ କରିବା ନିମିତ୍ତ ଯେଉଁ ମନୋବୃତ୍ତିର ଆବଶ୍ୟକ, ତାହା ଆମର ନାହିଁ । ଏ କ୍ଷେତ୍ରରେ ଛାତ୍ରସମାଜ ଚାହିଁଲେ ତୃମୂଳ ପରିବର୍ତ୍ତନ ଆଣିପାରିବେ । ଅବସର ସମୟରେ ଗ୍ରାମର ନିରକ୍ଷର ବ୍ୟକ୍ତିଙ୍କୁ ଅକ୍ଷର ଶିଖାଇପାରିବେ । ଶିକ୍ଷାର ମୂଲ୍ୟ ସମ୍ପର୍କରେ ସେମାନଙ୍କୁ ଅବଗତ କରାଇପାରିବେ । ସରକାରଙ୍କ

କୋଟି କୋଟି ଟଙ୍କା ବ୍ୟୟ ଯୋଜନାରେ ଯାହା ହୋଇ ନ ପାରୁଛି, ଛାତ୍ରମାନଙ୍କ ସକ୍ରିୟ ସହଯୋଗରେ ତାହା ଅକ୍ଳେଶରେ ଫଳବତୀ ହୋଇପାରିବ । ଗ୍ରାମାଞ୍ଚଳର ନିରକ୍ଷର ବ୍ୟକ୍ତିମାନଙ୍କୁ ସାକ୍ଷର କରାଇପାରିଲେ କେବଳ ଗ୍ରାମର ନୁହେଁ ସମଗ୍ର ଦେଶର ମଙ୍ଗଳ ହୋଇପାରିବ । ଛାତ୍ରସମାଜ ଏ କ୍ଷେତ୍ରରେ ବୈପ୍ଳବିକ ଭୂମିକା ଗ୍ରହଣ କରିବା ଉଚିତ ।

ଆମ ସମାଜରେ ଯୌତୁକ ପ୍ରଥା ଗୋଟିଏ ବଡ଼ ବ୍ୟାଧି ହୋଇ ଦେଖାଯାଇଛି । ନବବିବାହିତା ବଧୂ ପାଦର ଅଳତା ନ ଲିଭୁଣୁ ଯୌତୁକ ବ୍ୟାଧିର ଶିକାର ହୋଇ ପ୍ରାଣ ବିସର୍ଜନ କରୁଛି । ତା' ଆଖିର ସ୍ୱପ୍ନ ସାକାର ହେବା ପୂର୍ବରୁ ଯୌତୁକ ରାକ୍ଷସ ତା' ସ୍ୱପ୍ନକୁ ଭାଙ୍ଗି ନଷ୍ଟ କରିଦେଉଛି । ବେଦୀ ଉପରୁ ବର ଉଠିଯାଉଛି । କନ୍ୟାପିତା ବର ଘରର ଦାବିପୂରଣ କରିବାକୁ ଯାଇ ସର୍ବସ୍ୱାନ୍ତ ହୋଇପଡୁଛି । ଯୌତୁକ ନେଇ ମଧ୍ୟ ନିର୍ଯାତନାର ଶେଷ ନାହିଁ । ପ୍ରତିଦିନ ସମ୍ବାଦପତ୍ରରେ ଯୌତୁକ ଜନିତ ବଧୂ ହତ୍ୟା ଘଟଣା ଦୃଷ୍ଟି ସମ୍ମୁଖକୁ ଆସୁଛି । ସରକାରୀ ନିୟମ ବିବାହିତା ବଧୂକୁ ଆଦୌ ସୁରକ୍ଷା ପ୍ରଦାନ କରିପାରୁ ନାହିଁ । ଦିନ ଦ୍ୱିପ୍ରହରରେ ଯୌତୁକ ପାଇଁ ପ୍ରଣୀତ ନିୟମକୁ ଭାଙ୍ଗି ବରପିତାମାନେ ପ୍ରଚୁର ପରିମାଣରେ ଯୌତୁକ ଧରି ଘରକୁ ଫେରୁଛନ୍ତି । ଆଜି ଏହି ଯୌତୁକ ରାକ୍ଷସ ଆମର ସମାଜବ୍ୟବସ୍ଥାକୁ ପଙ୍ଗୁ କରିଦେଇଛି । ସରକାରଙ୍କର କଡ଼ା ନିୟମ ଏହି ପ୍ରଥାକୁ କଦାପି ଲୋପ କରିପାରିବ ନାହିଁ । ଯଦି ଛାତ୍ରସମାଜ ଏକ ସାମାଜିକ ଜାଗରଣ ସୃଷ୍ଟି କରି ସାମୂହିକ ଭାବେ ଏହା ବିରୋଧରେ ସ୍ୱର ଉତ୍ତୋଳନ କରିବେ, ତେବେ ଏହି କଳଙ୍କିତ ପ୍ରଥାର ବିଲୋପ ସାଧନ ହୋଇପାରିବ । ବାସ୍ତବ ଦୃଷ୍ଟିକୋଣରୁ ବିଚାର କଲେ ଛାତ୍ରସମାଜ ପାଇଁ ଏହା ଏକ ଆହ୍ୱାନରେ ପରିଣତ ହୋଇଛି । ଛାତ୍ରମାନେ ଏହି ଆହ୍ୱାନକୁ ଗ୍ରହଣ କରି ଯୌତୁକ ପରି କଳଙ୍କିତ ପ୍ରଥାକୁ ବିନାଶ କରିପାରିଲେ ପ୍ରକୃତରେ ସେମାନେ ସମାଜସେବା କରିପାରିଲେ ବୋଲି ସ୍ୱୀକାର କରିବାକୁ ହେବ ।

ଆଜି ବିଶ୍ୱରେ ପରିବେଶ ସୁରକ୍ଷା ପ୍ରତି ବିଶେଷ ଧ୍ୟାନ ଦିଆଯାଉଛି । ଆମର ପରିବେଶ ଦିନକୁ ଦିନ ଯେପରି ଦୂଷିତ ହୋଇପଡୁଛି, ଆଉ କିଛି ବର୍ଷ ପରେ ଏହି ପରିବେଶରେ ମାନବ ସଭ୍ୟତା ଜୀବନ ଯାପନ କରିବା କଷ୍ଟକର ହୋଇପଡ଼ିବ । ଗ୍ରାମାଞ୍ଚଳମାନଙ୍କରେ ପରିବେଶ ଅଧିକ ପ୍ରଦୂଷିତ ହୋଇପଡୁଛି । ଅସ୍ୱାସ୍ଥ୍ୟକର ପରିବେଶ ମଧ୍ୟରେ ଗ୍ରାମାଞ୍ଚଳ ଅଧିବାସୀ ଜୀବନଯାପନ କରୁଥିବାରୁ ବିଭିନ୍ନ ରୋଗର ଶିକାର ହେଉଛନ୍ତି । ଅଳିଆ ଆବର୍ଜନା ରାସ୍ତା ଉପରେ ଗଦା କରୁଛନ୍ତି । ଯେଉଁ ପୋଖରୀର ଜଳ ପାନୀୟ ଜଳ ରୂପେ ବ୍ୟବହାର କରୁଛନ୍ତି, ସେଥିରେ ଗାଈଗୋରୁଙ୍କୁ ଧୋଉଛନ୍ତି, ଲୁଗା ସଫା କରୁଛନ୍ତି । ରାସ୍ତାଘାଟ ଅପରିଚ୍ଛନ୍ନ ରଖୁଛନ୍ତି । ବାସ କରୁଥିବା ବାସଗୃହ ଚତୁଃପାର୍ଶ୍ୱ ସମ୍ପୂର୍ଣ୍ଣ ଅପରିଷ୍କୃତ । ଗଛକାଟି ଧ୍ୱଂସ କରୁଛନ୍ତି । ସ୍ୱାସ୍ଥ୍ୟରକ୍ଷା ସମ୍ପର୍କରେ ସମ୍ପୂର୍ଣ୍ଣ ଅଜ୍ଞ । ଏହି କାରଣ ଯୋଗୁଁ ସହର ତୁଳନାରେ ଗ୍ରାମବାସୀଗଣ ଅଧିକ ପରିମାଣରେ ରୋଗଗ୍ରସ୍ତ । ତେଣୁ ଛାତ୍ରସମାଜର ଦାୟିତ୍ୱ ହେଉଛି, ଲୋକମାନଙ୍କ ମଧ୍ୟରେ ସଚେତନତା ସୃଷ୍ଟି କରିବା । କିପରି ଗୃହରେ ବାସ କରିବା, ପାଣିକୁ କିପରି ବିଶୁଦ୍ଧ କରି ବ୍ୟବହାର କରିବା, ଖାଦ୍ୟକୁ କିପରି ରଖିବାକୁ ପଡ଼ିବ, ରାସ୍ତାଘାଟ କିପରି ପରିଷ୍କାର କରାଯାଇପାରିବ ଇତ୍ୟାଦି ସମ୍ପର୍କରେ ଛାତ୍ରମାନଙ୍କୁ ଗ୍ରାମ ଗ୍ରାମ ବୁଲି ବୁଝାଇବାକୁ ପଡ଼ିବ । ଶିକ୍ଷାନୁଷ୍ଠାନରେ ଜାତୀୟ ସେବାସଂସ୍ଥାମାନ ପ୍ରତିଷ୍ଠା କରାଯାଇଛି ।

ଏହି ସେବା ସଂସ୍ଥା ମାଧ୍ୟମରେ ଜନସଚେତନତା ବୃଦ୍ଧି କରିବା ସଙ୍ଗେ ସଙ୍ଗେ ଛାତ୍ରସମାଜ ରାସ୍ତା ସଫେଇ, ପୋଖରୀରୁ ଦଳ ଆଦି ସଫା କାର୍ଯ୍ୟ କରି ସମାଜରେ ଆଦର୍ଶ ସ୍ଥାପନ କରିବା ଆବଶ୍ୟକ ।

ବନ୍ୟା, ବାତ୍ୟା ଆଦି ପ୍ରାକୃତିକ ବିପର୍ଯ୍ୟୟ ସମୟରେ ଛାତ୍ରମାନେ ସ୍ୱତଃପ୍ରବୃତ୍ତ ଭାବରେ ସାହାଯ୍ୟ ନିମିତ୍ତ ଅଣ୍ଟା ଭିଡ଼ିବା ଆବଶ୍ୟକ । ଦୁର୍ଗତମାନଙ୍କର ସେବାକରି ସେମାନଙ୍କ ମନରେ ସାହସ ଭରିଦେବା ଉଚିତ । ପ୍ରାକୃତିକ ବିପର୍ଯ୍ୟୟ ସମୟରେ ବିଭିନ୍ନ ସ୍ଥାନରୁ ସାହାଯ୍ୟ ଗ୍ରହଣ କରି ତୁରନ୍ତ ଅସହାୟଙ୍କୁ ସାହାଯ୍ୟ କଲେ ସମାଜରେ ଛାତ୍ରସମାଜ ପାଇଁ ଏକ ସ୍ୱତନ୍ତ୍ର ସମ୍ମାନବୋଧ ସୃଷ୍ଟି ହୋଇପାରିବ । ଏତଦ୍‌ବ୍ୟତୀତ ରେଡ଼କ୍ରସ୍ ବା ରକ୍ତ ଦାନ ଶିବିରର ଆୟୋଜନ କରି ଦୁର୍ଗତମାନଙ୍କୁ ରକ୍ତ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କୁ ରକ୍ତ ଦେବାପାଇଁ ପ୍ରବର୍ତ୍ତାଇବା ଉଚିତ । ରକ୍ତଦାନ, ମହାପୁଣ୍ୟ—ଏ ସମ୍ପର୍କରେ ଛାତ୍ରସମାଜ ଲୋକମାନଙ୍କୁ ସଚେତନ କରାଇଦେବା ଆବଶ୍ୟକ ।

ଏହା ବ୍ୟତୀତ ବିଭିନ୍ନ ସାମାଜିକ ଦୁର୍ଗତି ସମୟରେ ଛାତ୍ରସମାଜ ଯୁଦ୍ଧକାଳୀନ ଭିତ୍ତିରେ ସାହାଯ୍ୟ କରିବାକୁ ଆଗେଇ ଆସିବାର ଆବଶ୍ୟକତା ରହିଛି । ଅଗ୍ନ୍ୟୁତ୍ପାତ ସମୟରେ ଯେପରି ନିର୍ଭୀକତାର ପରିଚୟ ଦେଇପାରନ୍ତି, ସେଥିପାଇଁ ଛାତ୍ରସମାଜ ସଚେତନ ହେବା ଉଚିତ । ଏତଦ୍‌ବ୍ୟତୀତ ସାମାଜିକ ପର୍ବପର୍ବାଣିର ଅଯଥା ଖର୍ଚ୍ଚକୁ ନିରୁତ୍ସାହିତ କରିବା, ବିଭିନ୍ନ ଉତ୍ସବର ଅପବ୍ୟୟକୁ ବାଧା ପ୍ରଦାନ କରିବା, ବିବାହ ସମୟରେ ଅଯଥା ଆଡ଼ମ୍ବର ଓ ବାଣ ବାଜା ଆଦିକୁ ବିରୋଧ କରିବା, ସାମ୍ପ୍ରଦାୟିକ ସଂଘର୍ଷକୁ ରୋକିବା, ସମାଜରେ ବସବାସ କରୁଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ସହୃଦୟତା ସ୍ଥାପନ କରିବା ଆଦି ବିଭିନ୍ନ କ୍ଷେତ୍ରରେ ଛାତ୍ରସମାଜ ବୈପ୍ଳବିକ ଭୂମିକା ଗ୍ରହଣ କରିପାରିବେ । ଏହି କାର୍ଯ୍ୟଦ୍ୱାରା ସେମାନେ ଯେ ସମାଜସେବା କରୁଛନ୍ତି, ତାହା ଭୁଲିଯିବା ଉଚିତ ନୁହେଁ ।

ସମାଜରେ ଛାତ୍ରସମାଜର ବହୁବିଧ ଭୂମିକା ରହିଛି । ସେମାନଙ୍କର ନିଷ୍ଠା, ସାଧୁତା, କର୍ତ୍ତବ୍ୟପରାୟଣତା ସମାଜକୁ ସୁସ୍ଥ ସୁନ୍ଦର କରି ଗଢ଼ିପାରିବ । ସେମାନେ ହିଁ ସାମାଜିକ ବିପ୍ଳବରେ ସେନାପତିର ଭୂମିକା ଗ୍ରହଣ କରିବାକୁ ସମର୍ଥ । ବହୁ ସମୟରେ କେତେକ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତିଙ୍କ ପ୍ରରୋଚନାରେ ଛାତ୍ରସମାଜ ପଥଭ୍ରଷ୍ଟ ହୋଇଥାନ୍ତି । ସାମାଜିକ ମଙ୍ଗଳ ପରିବର୍ତ୍ତେ ଅମଙ୍ଗଳ ସାଧନ କରିଥାନ୍ତି । ଏହାଦ୍ୱାରା ସମାଜର କେତେବେଡ଼ କ୍ଷତି ହୁଏ, ସେତେବେଳେ ତାହା ସେମାନେ ବୁଝିପାରି ନ ଥାନ୍ତି । ସେମାନେ ଭୁଲିନଯିବା ଉଚିତ ସମାଜର ମେରୁଦଣ୍ଡ ହେଉଛନ୍ତି ଛାତ୍ରସମାଜ । ସେହିମାନଙ୍କ ଆନ୍ତରିକ ସେବା ଓ ପ୍ରଯତ୍ନରେ ସମାଜ ନୂତନ ରୂପ ଗ୍ରହଣ କରିଥାଏ । ଜାତିର କଲ୍ୟାଣ ଉଦ୍ଦେଶ୍ୟରେ ପ୍ରତ୍ୟେକ ଛାତ୍ର ନିଜକୁ ଉତ୍ସର୍ଗ କରିବା ଉଚିତ । ସେମାନଙ୍କର କର୍ତ୍ତବ୍ୟନିଷ୍ଠା ଓ ସେବା ମନୋବୃତ୍ତି ଅନ୍ୟମାନଙ୍କର ଆଦର୍ଶ ହୋଇଥାଏ । ନିରକ୍ଷର ବ୍ୟକ୍ତି ଛାତ୍ରମାନଙ୍କୁ ହିଁ ଆଦର୍ଶ ଭାବରେ ଗ୍ରହଣ କରିଥାନ୍ତି । ତେଣୁ ସେମାନେ ଏପରି କିଛି କାର୍ଯ୍ୟ କରିବା ଅନୁଚିତ, ଯାହା ସମାଜ ପାଇଁ କ୍ଷତିକାରକ ବୋଲି ସାବ୍ୟସ୍ତ ହେବ । ସମାଜସେବା, ଭଗବାନ୍‌ଙ୍କ ସେବା—କୌଣସି ସମୟରେ ଛାତ୍ରସମାଜ ଏହା ଭୁଲିଯିବା ଅନୁଚିତ ।



# ଛାତ୍ର ଜୀବନର ଆଦର୍ଶ

**(ଉପକ୍ରମ, ଛାତ୍ରଜୀବନରେ ଶୃଙ୍ଖଳା ଜ୍ଞାନର ଆବଶ୍ୟକତା; ସମାଜ ପ୍ରତି କର୍ତ୍ତବ୍ୟବୋଧ; ବିଦ୍ୟାଧ୍ୟୟନ ଓ ଜ୍ଞାନଲାଭ ପ୍ରତି ଆକୁଳ ପିପାସା; ଉଚ୍ଚାକାଂକ୍ଷା; ଧୈର୍ଯ୍ୟ ଏବଂ ନିଷ୍ଠା; ସଂଯମତା ଓ ସେବା ମନୋବୃତ୍ତି; ସମ୍ମାନ ଓ ବ୍ୟବହାର ଜ୍ଞାନ; କର୍ମନିଷ୍ଠା, ସମୟାନୁବର୍ତ୍ତିତା ଏବଂ ସ୍ୱାଧୀନ ଚିନ୍ତାଧାରା; ଉପସଂହାର)**

ସମଗ୍ର ମାନବ ଜୀବନ ମଧ୍ୟରେ ଛାତ୍ରଜୀବନ ସର୍ବଶ୍ରେଷ୍ଠ । ଏହି ସମୟରେ ନୂତନ କିଛି ଗଠନ କରିବାର ସ୍ୱପ୍ନ ତା' ମନରେ ଉଙ୍କି ଉଠେ । ଜୀବନକୁ ନୂଆକରି ଗଢ଼ିବାର କଳ୍ପନା କରେ । ଭବିଷ୍ୟତ ପାଇଁ ସରଣୀ ପ୍ରସ୍ତୁତ କରେ । ନୂଆ ନୂଆ ଦର୍ଶନ ମନକୁ ଆନ୍ଦୋଳିତ କରେ । ଜୀବନ ଓ ଜଗତର ଗୂଢ଼ ରହସ୍ୟ ବୁଝିବାକୁ ମନରେ ଆକାଂକ୍ଷା ସୃଷ୍ଟି ହୁଏ । ପୁଣି ଖିଆଲର ବଶବର୍ତ୍ତୀ ହୋଇ ନିମ୍ନଗାମୀ ଝରଣା ପରି ଅମଡ଼ା ମାଡ଼ି ଚାଲିଯିବାର ଦୁଃସାହସ କରେ । ଛାତ୍ର ଜୀବନ ହିଁ ଜୀବନ ଗଠନର ପ୍ରକୃଷ୍ଟ ସମୟ । ଏହି ସମୟର ଯଥାର୍ଥ ବିନିଯୋଗ ହୋଇ ନ ପାରିଲେ, ଭବିଷ୍ୟତ ଅନ୍ଧକାର ହୋଇପଡ଼େ । ଅବଶ୍ୟ ଏହି ସମୟର ବୟସ ଅତ୍ୟନ୍ତ ଚପଳ । ମାତ୍ର ସେହି ଚପଳତାକୁ ନିୟନ୍ତ୍ରଣ କରି ନ ପାରିଲେ ଜୀବନର ଚଳଚଞ୍ଚଳ ସ୍ରୋତଟି ମରୁଭୂମିରେ ନିଜର ସତ୍ତାକୁ ସମ୍ପୂର୍ଣ୍ଣ ହଜାଇ ଦେଇପାରେ । ଏହି ସମୟରେ ଛାତ୍ରକୁ ବହୁ ଦାୟିତ୍ୱ ପୂରଣ କରିବାକୁ ହୋଇଥାଏ । ଉନ୍ନତ ଜୀବନ ଗଠନ ଓ ଆତ୍ମୋନ୍ନତି ନିମିତ୍ତ ଏହି ଜୀବନ ହିଁ ପ୍ରସ୍ତୁତିର ସମୟ । ଭାବପ୍ରବଣ ମନନେଇ ଅନେକ ସମୟରେ ଛାତ୍ରସମାଜ ବିରୋଧୀ କାର୍ଯ୍ୟ କରିବାକୁ ପଛଘୁଞ୍ଚା ଦେଇ ନ ଥାଏ । ସଂସାରରେ ଦାୟିତ୍ୱ କିମ୍ବା ଅର୍ଥ ଉପାର୍ଜନ ଜଞ୍ଜାଳରୁ ମୁକ୍ତ ଥିବାରୁ ଦାୟିତ୍ୱହୀନ ଭାବରେ ସେ ଅନେକ କିଛି କୁରୁଚିପୂର୍ଣ୍ଣ କାର୍ଯ୍ୟ କରିବାକୁ ଆଗ୍ରହ ପ୍ରକାଶ କରିଥାଏ । ମାତ୍ର ଏହା ତା'ର ଭବିଷ୍ୟତ ଜୀବନକୁ ପୋଡ଼ି ଜାଳି ନଷ୍ଟ କରିଦିଏ । ତେଣୁ ପ୍ରତ୍ୟେକ ଛାତ୍ର ଛାତ୍ରାବସ୍ଥାରୁହିଁ ଜୀବନକୁ ଠିକ୍ ଭାବେ ଗଠନ କରିବାକୁ ଶିଖିବା ଉଚିତ । ଏହି ସମୟରେ ସେ ଯେଉଁ ଭିତ୍ତିଭୂମି ପ୍ରସ୍ତୁତ କରିଥାଏ, ତା' ଉପରେ ହିଁ ସେ ଭବିଷ୍ୟତର ବିରାଟ ହର୍ମ୍ୟ ନିର୍ମାଣ କରିବାକୁ ସମର୍ଥ ହୋଇଥାଏ ।

ଆଦର୍ଶ ଛାତ୍ରଜୀବନ ନିମିତ୍ତ କେତେଗୁଡ଼ିଏ ନିୟମ ପାଳନ କରାଯିବା ଉଚିତ । ସମଗ୍ର ଜଗତ ମଧ୍ୟ କେତେଗୁଡ଼ିଏ ନିୟମ ଦ୍ୱାରା ପରିଚାଳିତ । ପ୍ରତ୍ୟେକ ଛାତ୍ର ପ୍ରଥମେ ଶୃଙ୍ଖଳିତ ହେବା ଆବଶ୍ୟକ । ଶୃଙ୍ଖଳାଜ୍ଞାନ ତା'ର ବୋଧଶକ୍ତିକୁ ଶାଣିତ ଓ ବ୍ୟବହାରକୁ ମାର୍ଜିତ କରିଥାଏ । ସ୍ୱାଧୀନତା ଅଭିନନ୍ଦନୀୟ; ମାତ୍ର ସ୍ୱେରାଚାର ନିନ୍ଦନୀୟ । ଶାରୀରିକ, ମାନସିକ ଓ ନୈତିକ ଉନ୍ନତି ନିମିତ୍ତ ଶୃଙ୍ଖଳା ଜ୍ଞାନର ଆବଶ୍ୟକତା ରହିଛି । ସଙ୍ଗଠନ ନିମିତ୍ତ ମଧ୍ୟ ଶୃଙ୍ଖଳା ଆବଶ୍ୟକ । ଛାତ୍ରଜୀବନ ଭବିଷ୍ୟତ ଗଠନର ଶ୍ରେଷ୍ଠ ସୋପାନ ହୋଇଥିବାରୁ କେତେଗୁଡ଼ିଏ ନୀତିନିୟମର ବଶବର୍ତ୍ତୀ ହେବାକୁ ପଡ଼ିଥାଏ । ଏହି ନୀତିନିୟମର ପାଳନ ଶୃଙ୍ଖଳିତ ଅବସ୍ଥାରେ ହିଁ ସାଧିତ ହୋଇଥାଏ । ତେଣୁ ଛାତ୍ରଜୀବନର ସର୍ବଶ୍ରେଷ୍ଠ ଗୁଣ ହେଉଛି ଶୃଙ୍ଖଳା ଜ୍ଞାନ ।

ପ୍ରତ୍ୟେକ ମଣିଷ ପରି ପ୍ରତ୍ୟେକ ଛାତ୍ରର ମଧ୍ୟ କେତେକ ସାମାଜିକ କର୍ତ୍ତବ୍ୟବୋଧ ରହିଛି । ମଣିଷର ଜନ୍ମ, ବିକାଶ ଓ ବିଲୟ ସମାଜରେ । ସମାଜ ବ୍ୟତିରେକେ ମୁହୂର୍ତ୍ତଟିଏ ଚଳିବା ମଧ୍ୟ ମଣିଷ ପାଇଁ ଅସମ୍ଭବ । ସମାଜ ଯେପରି ମଣିଷକୁ କିଛି ଦେଇଥାଏ, ମଣିଷଠାରୁ ଅନୁରୂପ କିଛି ଆଶା କରିଥାଏ ସମାଜ । ଆଦାନ ପ୍ରଦାନର ଭିତ୍ତି ଉପରେ ହିଁ ଏହା ଗଠିତ । ଛାତ୍ରଟିଏ ମଧ୍ୟ ସାମାଜିକ ଜୀବଟିଏ । ସମାଜ ପ୍ରତି ତା'ର ଅନେକ କର୍ତ୍ତବ୍ୟ ରହିଛି । ସମାଜକୁ ନୂତନ ଦିଗ୍‌ଦର୍ଶନ ପ୍ରଦାନ କରିବା, ପରସ୍ପର ମଧ୍ୟରେ ସହଯୋଗପୂର୍ଣ୍ଣ ବାତାବରଣ ସୃଷ୍ଟି କରିବା, ସମାଜ ଜୀବନକୁ ପଙ୍ଗୁ କରୁଥିବା କୁସଂସ୍କାରର ବିରୋଧ କରିବା, ସୁସ୍ଥ ସମାଜ ଗଠନ ପାଇଁ ପରିବେଶ ସୃଷ୍ଟି କରିବା, ସର୍ବୋପରି ଉନ୍ନତ ଚିନ୍ତାଧାରା ଦ୍ୱାରା ସମାଜର ଆମୂଳଚୂଳ ପରିବର୍ତ୍ତନ ଆଣିବା ପ୍ରତ୍ୟେକ ଛାତ୍ରର କର୍ତ୍ତବ୍ୟ ହେବା ଆବଶ୍ୟକ ।

ଛାତ୍ରାଣାଂ ଅଧ୍ୟୟନଂ ତପଃ । ଛାତ୍ରାବସ୍ଥାରେ ଏକମାତ୍ର ତପ ହେଉଛି ବିଦ୍ୟାଧ୍ୟୟନ । ଏହି ସମୟରେ ସେ ଯାହା ଅଧ୍ୟୟନ କରିଥାଏ, ଭବିଷ୍ୟତ ଜୀବନରେ ତାହା ତା'ର କାର୍ଯ୍ୟରେ ଆସିଥାଏ । ତେଣୁ ଛାତ୍ରାବସ୍ଥାରେ ବିଭିନ୍ନ ବିଦ୍ୟା ଲାଭ କରିଥିଲେ ପରବର୍ତ୍ତୀ ସାଂସାରିକ ଓ ସାମାଜିକ ଜୀବନରେ ତା'ର ଉପାଦେୟତା ସହଜରେ ଉପଲବ୍ଧ ହୋଇଥାଏ । କେବଳ ପୋଥିବିଦ୍ୟା ନୁହେଁ; ତତ୍ ସହିତ ଅନ୍ୟାନ୍ୟ ବିଦ୍ୟା ଶିକ୍ଷା କରିବା ଉଚିତ । ବିଭିନ୍ନ ବିଦ୍ୟା ଶିକ୍ଷା ସହିତ ବୁଦ୍ଧିର ବିକାଶ ନିମିତ୍ତ ପ୍ରତ୍ୟେକ ଛାତ୍ର ସଚେତନ ହେବା ଆବଶ୍ୟକ । ବୁଦ୍ଧି ନ ଥିଲେ ବିଦ୍ୟାର କୌଣସି ପ୍ରୟୋଜନ ନାହିଁ । କାରଣ ବିଦ୍ୟାକୁ ବିଭିନ୍ନ କ୍ଷେତ୍ରରେ ପ୍ରୟୋଗ କରିବା ନିମିତ୍ତ ବୁଦ୍ଧିର ହିଁ ଆବଶ୍ୟକ ପଡ଼ିଥାଏ । ବୁଦ୍ଧି ବିବେକାନୁମୋଦିତ ହେଲେ ବ୍ୟକ୍ତି ପ୍ରଶଂସା ଲାଭ କରିଥାଏ । ଅତୀତରେ ଗୁରୁକୁଳ ଆଶ୍ରମରେ ଶିଷ୍ୟମାନେ ଶାସ୍ତ୍ର ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ ବୁଦ୍ଧି ଓ ଜ୍ଞାନ ଲାଭ ମଧ୍ୟ କରୁଥିଲେ । ଆଶ୍ରମ ତ୍ୟାଗ କରି ପାରିବାରିକ ବା ସାମାଜିକ ଜୀବନରେ ପ୍ରବେଶ କଲେ ସୁଦ୍ଧା ସେମାନେ କୌଣସି ଅସୁବିଧାର ସମ୍ମୁଖୀନ ହେଉନଥିଲେ । ସାମାଜିକ ମଣିଷଟିଏ ହେବାପାଇଁ ସମସ୍ତ ଯୋଗ୍ୟତା ସେମାନେ ଗୁରୁକୁଳ ଆଶ୍ରମରୁ ଶିକ୍ଷା କରି ଆସୁଥିଲେ । ତେଣୁ ଆଜିର ଛାତ୍ର ବିଭିନ୍ନ ବିଦ୍ୟା ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ ଜ୍ଞାନ ଓ ବୁଦ୍ଧିର ଅଧିକାରୀ ହେବା ଉଚିତ । ଜ୍ଞାନ ଏକ ଅଗାଧ ସମୁଦ୍ର । ଏହାର ଆରମ୍ଭ ଅଛି; ମାତ୍ର ପରିସମାପ୍ତି ନାହିଁ । ତେଣୁ ଜ୍ଞାନ ପାଇଁ ହୃଦୟରେ ଆକୁଳ ପିପାସା ସୃଷ୍ଟି ନ ହେଲେ ଜ୍ଞାନ ଲାଭ ଅସମ୍ଭବ । ଅଧିକରୁ ଅଧିକ ଜାଣିବା ନିମିତ୍ତ ଜିଜ୍ଞାସାବୋଧ ହିଁ ପିପାସା । ଯେ ପର୍ଯ୍ୟନ୍ତ ପିପାସାର ପରିତୃପ୍ତି ନାହିଁ; ସେ ପର୍ଯ୍ୟନ୍ତ ମଣିଷ ଜ୍ଞାନଲାଭ କରିବାକୁ ସମର୍ଥ ହୋଇଥାଏ । ଛାତ୍ରଟିଏ ଜ୍ଞାନଲାଭ ପାଇଁ ବ୍ୟାକୁଳ ନ ହେଲେ, ପ୍ରକୃତ ଜ୍ଞାନ ଲାଭ କରିବା ତା' ଦ୍ୱାରା ସମ୍ଭବ ହୋଇନଥାଏ । ତେଣୁ ଛାତ୍ର ଜ୍ଞାନର ବିଭିନ୍ନ ସୋପାନ ସମ୍ପର୍କରେ ଅବଗତ ହେବା ନିମିତ୍ତ ବହୁ ପୁସ୍ତକ, ପତ୍ରପତ୍ରିକା, ସମ୍ବାଦପତ୍ର ଆଦି ପାଠ କରିବା ଉଚିତ । ଏତଦ୍‌ବ୍ୟତୀତ ବିଭିନ୍ନ ଆଲୋଚନା ଚକ୍ର ଓ ଗୁଣୀ ବ୍ୟକ୍ତିମାନଙ୍କ ସମ୍ପର୍କରେ ଆସିବା ଦ୍ୱାରା ତା' ଜ୍ଞାନର ସରହଦ ବ୍ୟାପ୍ତି ଲାଭ କରିଥାଏ ।

ଉଚ୍ଚାକାଂକ୍ଷା ନ ଥିଲେ ମଣିଷ କଦାପି ବଡ଼ ହୋଇ ନ ପାରେ । ଏହି ଆକାଂକ୍ଷା ବା ଆଗ୍ରହ ତାକୁ ଗୋଟିଏ ପରେ ଗୋଟିଏ ସୋପାନ ଅତିକ୍ରମ କରିବାକୁ ପ୍ରେରଣା ଦେଇଥାଏ । ତା' ମନର ଅକୁଣ୍ଠ ଆଗ୍ରହ ଜୀବନର ଲକ୍ଷ୍ୟସ୍ଥଳରେ ପହଞ୍ଚାଇବାକୁ ସାହାଯ୍ୟ କରେ । ତେଣୁ ପ୍ରତ୍ୟେକ ଛାତ୍ର ତା'ର ଉଜ୍ଜ୍ୱଳ ଭବିଷ୍ୟତ ଗଠନ କରିବା ପାଇଁ ସର୍ବଦା ଉଚ୍ଚାକାଂକ୍ଷା ପୋଷଣ କରିବା ଆବଶ୍ୟକ । ସୀମିତ ଆଶା ମଣିଷକୁ ଉଚ୍ଚତର ସୋପାନରେ ଉପନୀତ କରାଇବାରେ ବାଧା ସୃଷ୍ଟି କରିଥାଏ । ଏହାଦ୍ୱାରା ଛାତ୍ରର ଅନ୍ତର୍ନିହିତ ଶକ୍ତିର ବିକାଶ ହେବା ସଙ୍ଗେ ସଙ୍ଗେ ତା'ର ବ୍ୟକ୍ତିତ୍ୱର ପରିସ୍ଫୁଟନ ଘଟେ । ତେଣୁ ଛାତ୍ର ଅଧ୍ୟୟନ ସମୟରେ ଭବିଷ୍ୟତରେ ଶିକ୍ଷକ, ଡ଼ାକ୍ତର, ଇଞ୍ଜିନିୟର, ବୈଜ୍ଞାନିକ, ପ୍ରଶାସକ ବା ଦେଶସେବକ ହେବାର ଆକାଂକ୍ଷା ପୋଷଣ କରି ନିଜକୁ ସେହିପରି ହେବା ନିମିତ୍ତ ପ୍ରସ୍ତୁତ କରିବା ଉଚିତ । ଏଥିପାଇଁ ତାଙ୍କୁ କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କୁ ନିଜର ଆଦର୍ଶ ରୂପେ ରଖି ସୋପାନ ପରେ ସୋପାନ ଅତିକ୍ରମ କରିବାକୁ ପଡ଼ିବ । କେବଳ ଆକାଂକ୍ଷା ରଖିଲେ ଜଣେ କଦାପି ବିରାଟ ହୋଇ ନ ପାରେ । ଏହି ଆକାଂକ୍ଷାର ପରିପୂର୍ତ୍ତି ନିମିତ୍ତ ନିଜକୁ ସେହିପରି କର୍ମପନ୍ଥାରେ ନିୟୋଜନ କରିବା ଆବଶ୍ୟକ । ତେଣୁ ପ୍ରତ୍ୟେକ ଛାତ୍ର ଜୀବନରେ ପ୍ରତିଷ୍ଠିତ ହେବାପାଇଁ ଏହି ଧ୍ୟେୟ ରଖି ଅଗ୍ରସର ହେବା ଆବଶ୍ୟକ ।

ଧୈର୍ଯ୍ୟ ଏବଂ ନିଷ୍ଠା ଛାତ୍ର ଜୀବନର ଅନ୍ୟ ଦୁଇଟି ବିଶିଷ୍ଟ ଲକ୍ଷଣ । ପ୍ରତ୍ୟେକ ମଣିଷ ଜୀବନରେ ଉତ୍‌ଥାନ ଓ ପତନ ଲାଗିରହିଛି । ପତନ ବା ଅସଫଳତାରେ ଧୈର୍ଯ୍ୟହରା କିମ୍ବା ସଫଳତାରେ ଉଲ୍ଲସିତ ହେବା ଅନୁଚିତ । ଇଂରାଜୀରେ ଏକ ପ୍ରବାଦ ରହିଛି Failure is the pillar of success. ଅସଫଳତା ହିଁ ସଫଳତାର ଚାବିକାଠି । ପ୍ରତ୍ୟେକ ଜୀବନରେ କିଛି ନା କିଛି ଘଟଣା ଓ ଦୁର୍ଘଟଣା ଆସିବ । ଏହି ଦୁର୍ଘଟଣାରେ ଭାଙ୍ଗିପଡ଼ିଲେ ମଣିଷ କଦାପି ଉନ୍ନତିର ଚରମସୀମାରେ ଉପନୀତ ହୋଇପାରିବ ନାହିଁ । ଧୈର୍ଯ୍ୟ ହରାଇବା କେବଳ ଦୁର୍ବଳ ଲୋକଙ୍କୁ ହିଁ ଶୋଭାପାଏ । ଛାତ୍ର ଆସନ୍ତାକାଲିର ଶକ୍ତିର ଉତ୍ସ । ଏହି ଉତ୍ସ କଦାପି ସାମାନ୍ୟ ଆଘାତରେ ଶୁଷ୍କ ହେବା ଅନୁଚିତ । ପୁନରାୟ କୌଣସି କାର୍ଯ୍ୟରେ ନିଷ୍ଠା ନ ରହିଲେ ତାହା କଦାପି ସଫଳ ହୋଇ ନ ପାରେ । କାର୍ଯ୍ୟ କରିବା ନିମିତ୍ତ ଧୈର୍ଯ୍ୟ ଓ ତା'ର ପରିପୂରଣ ନିମିତ୍ତ ନିଷ୍ଠା ଅସମ୍ଭବକୁ ମଧ୍ୟ ସମ୍ଭବ କରିପାରେ । ସେଥିପାଇଁ କୁହାଯାଏ; ''ନିଷ୍ଠାରେ ହିଁ ଭଗବତ୍ ପ୍ରାପ୍ତି । ତେଣୁ ପ୍ରତ୍ୟେକ ଛାତ୍ର ନିଷ୍ଠାପର ଭାବେ ସମସ୍ତ କାର୍ଯ୍ୟ କରିବା ଉଚିତ । ଏହାଦ୍ୱାରା ତା'ର ଯେ କେବଳ କାର୍ଯ୍ୟଦକ୍ଷତା ବୃଦ୍ଧି ପାଏ, ତା'ନୁହେଁ, ପରନ୍ତୁ ସମସ୍ତ କାର୍ଯ୍ୟରେ ସେ ଅସମ୍ଭବ ସଫଳତା ମଧ୍ୟ ଲାଭ କରିଥାଏ ।

ଛାତ୍ରଭାବରେ ପ୍ରତ୍ୟେକ ଛାତ୍ର ସଂଯମତା ଅବଲମ୍ବନ କରିବା ସଙ୍ଗେ ସଙ୍ଗେ ସେବା କରିବା ନିମିତ୍ତ ହୃଦୟରେ ବ୍ୟାକୁଳଭାବ ସୃଷ୍ଟି ହେବା ଆବଶ୍ୟକ । ଛାତ୍ର ଜୀବନ ଏକ ମହାର୍ଘ ସମୟ, ପୁଣି ଚାଞ୍ଚଲ୍ୟର ସମୟ । ଯୌବନର ଉଦ୍‌ବେଳନ ଯୋଗୁଁ ପାଦ ଖସିଯିବାର ବହୁ ସମ୍ଭାବନା ରହିଛି ଏହି ସମୟରେ ' ଛାତ୍ରଟିଏ ନିଜକୁ ଏତିକିବେଳେ ସଂଯମ କରିନପାରିଲେ ବିଶୃଙ୍ଖଳିତ ହୋଇପଡ଼େ ଓ ଲକ୍ଷ୍ୟସ୍ଥ ’ରେ ଉପନୀତ ହେବାକୁ ସମର୍ଥ ହୋଇପାରେ ନାହିଁ । ମଣିଷ ମନ ମଧ୍ୟରେ ଲୁକ୍‌କାୟିତ ଥିବା ବିଭିନ୍ନ କୁପ୍ରବୃତ୍ତି ସଦାସର୍ବଦା ତା'ର ପତନ ଘଟାଇବାକୁ ଚେଷ୍ଟା କରେ ।

କୁମାର୍ଗରେ ପରିଚାଳିତ ହେବାକୁ ପ୍ରେରଣା ଯୋଗାଏ । ଏହି କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟରୂପକ ଷଡ଼ରିପୁକୁ ଦମନ କରିବାକୁ ହେଲେ ଗଭୀର ସଂଯମତାର ଆବଶ୍ୟକ ରହିଛି । ସତ୍ ଚିନ୍ତା, ସତ୍ ଜ୍ଞାନ, ସାଧୁସଙ୍ଗ, ଶୁଦ୍ଧ ଆହାର ଓ ପବିତ୍ର ଭାବନା ମଣିଷର ମନ ମଧ୍ୟରୁ ଦୁର୍ବଳତାକୁ ଦୂରକରି ଆତ୍ମଶକ୍ତି ଜାଗ୍ରତ କରିଥାଏ । ଦୃଢ଼ ମନୋବଳ ଦ୍ୱାରା ତା'ର ଚିତ୍ତଚାଞ୍ଚଲ୍ୟ ଦୂର ହୋଇଥାଏ । ଏତଦ୍‌ବ୍ୟତୀତ ଛାତ୍ରମାନଙ୍କଠାରେ ସେବା ମନୋବୃତ୍ତି ଜାଗ୍ରତ ହେବା ଆବଶ୍ୟକ । ଏହାଦ୍ୱାରା ସେ ବିମଳ ଆନନ୍ଦଲାଭ କରିପାରିବ । ସମାଜର ସମସ୍ତଙ୍କ ପ୍ରତି ସମାନ ଦୃଷ୍ଟିଭଙ୍ଗୀଯୋଗୁଁ ସାମାଜିକ ସହୃଦୟତା ସ୍ଥାପିତ ହୋଇପାରିବ । ସମାଜସେବା ମଣିଷ ମନରୁ ଅହଂ ଓ ସ୍ୱାର୍ଥପରତାର ଅବସାନ ଘଟାଏ । ଗୁରୁଜନସେବା, ଦେଶସେବା, ଭଗବତ୍ ସେବା, ଜନସେବାଦ୍ୱାରା ଛାତ୍ରମନରେ ସୃଷ୍ଟିଲାଭ କରେ ବିଶ୍ୱୈକପ୍ରାଣତା । ବସୁଧୈବ କୁଟୁମ୍ବକମ୍ ନୀତିରେ ସେ ଦେଖେ ଜଗତ୍ ଓ ଜୀବନକୁ । ତା' ଅନ୍ତର ଭିତରେ ଲୁକ୍‌କାୟିତ ସ୍ୱାର୍ଥରାକ୍ଷସ ପରିଣତ ହୋଇଯାଏ ଦୟା, କ୍ଷମାର ମାତୃମୂର୍ତ୍ତିରେ । ସେ ଜଗତଠାରୁ ନିଜକୁ ପୃଥକ୍ ଭାବରେ ଚିନ୍ତା କରିପାରେନା । ଜଗତ, ଜୀବନ ଓ ସେ ମିଶି ଏକାକାର ହୋଇଯାନ୍ତି । ସେ ଲାଭକରେ ମଣିଷ ଜୀବନର ଚରମ ଓ ପରମ ଶାନ୍ତି ।

ଜଣେ ଉତ୍ତମ ଛାତ୍ର ହେବାକୁ ହେଲେ ତା'ର ସମ୍ମାନ ଏବଂ ବ୍ୟବହାର ଜ୍ଞାନ ରହିବା ଆବଶ୍ୟକ । ଇଂରାଜୀରେ କୁହାଯାଏ courtesy begets courtesy. ତୁମେ ଅନ୍ୟକୁ ଯେପରି ସମ୍ମାନ ଦେଖାଇବ, ତା'ର ପରିଣାମରେ ସେହିପରି ସମ୍ମାନ ଲାଭ କରିବ । ଏ ପୃଥିବୀରେ ଗୋଟିଏ ଧର୍ମ, ମାନବଧର୍ମ—ଏହି ଚିନ୍ତାଧାରା ଦ୍ୱାରା ସେ ପରିଚାଳିତ ହେବା ଆବଶ୍ୟକ । ସମାଜରେ କେହି ହେୟ ବା ନୀଚ ନୁହନ୍ତି; ସମସ୍ତେ ମଣିଷ । ମଣିଷଭାବରେ ପ୍ରତ୍ୟେକଙ୍କୁ ସମ୍ମାନ ପ୍ରଦର୍ଶନ କରାଯିବା ଉଚିତ । ଅନ୍ୟକୁ ଅସମ୍ମାନ କଲେ ସମ୍ମାନ ମିଳିବ ନାହିଁ । ବରଂ ସମ୍ମାନ ଦ୍ୱାରା ସମ୍ମାନଲାଭ ହୋଇଥାଏ । ସେହିପରି ଗୋଟିଏ ମଣିଷର ପରିଚୟ ତା'ର ବ୍ୟବହାର । ତେଣୁ ପ୍ରତ୍ୟେକ ଛାତ୍ର ବ୍ୟବହାର ଜ୍ଞାନ ଶିକ୍ଷା କରିବା ଉଚିତ । ଏହି ବ୍ୟବହାର ଜ୍ଞାନରୁ ହିଁ ତା'. ଭବିଷ୍ୟତ ଜୀବନର ପରିଚୟ ମିଳେ । ବିନୟଭାବ, ମିଷ୍ଟାଳାପ, ଗୁରୁଜନମାନଙ୍କ ପ୍ରତି ଭକ୍ତି, ପିଲାମାନଙ୍କ ପ୍ରତି ସ୍ନେହ ଓ ଶ୍ରଦ୍ଧା ତଥା ସତ୍ ଆଚରଣ ପ୍ରତ୍ୟେକ ଛାତ୍ରର ପରମ ଧ୍ୟେୟ ହେବା ଆବଶ୍ୟକ । ଛାତ୍ରାବସ୍ଥାରେ ଏହି ସୁଗୁଣଗୁଡ଼ିକର ଅଧିକାରୀ ହୋଇପାରିଲେ ସମାଜରେ ସେ ସମସ୍ତଙ୍କର ପ୍ରିୟପାତ୍ର ହୋଇଥାଏ ।

କର୍ମକୁଣ୍ଠତା ଆଜି ଛାତ୍ର ସମାଜର ଗୋଟିଏ ବଡ଼ ବ୍ୟାଧି ହୋଇ ଦେଖାଦେଇଛି । କର୍ମ ନ କରି ଫଳଲାଭ କରିବାର ଆଶା ଛାତ୍ରମାନଙ୍କୁ କର୍ମଭୀରୁ କରିଛି । ଏହା ପ୍ରତ୍ୟେକ ଛାତ୍ରର ଏକ ଦୁର୍ଗୁଣ । ଗୋପବନ୍ଧୁ ମାନବ ସମାଜକୁ ଉପଦେଶ ଦେଇ କହିଥିଲେ—

ମାନବ ଜୀବନ ନୁହଇ କେବଳ ବର୍ଷ, ମାସ, ଦିନ ଦଣ୍ଡ
କର୍ମେ ଜୀଏଁ ନର, କର୍ମ ଏକା ତା'ର ଜୀବନର ମାନଦଣ୍ଡ ।

ଗୀତାରେ ମଧ୍ୟ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କର୍ମ କରିବା ପାଇଁ ପ୍ରେରଣା ଦେଇଛନ୍ତି । ଛାତ୍ରାବସ୍ଥାରେ କର୍ମ କରିବା ନିମିତ୍ତ ମନରେ ଅକୁଣ୍ଠ ଆଗ୍ରହ ସୃଷ୍ଟି ହେବା ଆବଶ୍ୟକ । ଏହି ବୟସରେ ଛାତ୍ର ନିକଟରେ

ଅସମ୍ଭବ ବୋଲି କିଛି ନ ଥାଏ । ତେଣୁ ଅଯଥାରେ ସମୟ ନଷ୍ଟ ନ କରି, ଫଳପ୍ରାପ୍ତିର ଆଶା ନ ରଖି ସ୍ୱକର୍ମ କରିବା ଛାତ୍ରର ପ୍ରଥମ କର୍ତ୍ତବ୍ୟ । କର୍ତ୍ତବ୍ୟରେ ଅବହେଳା କଲେ ସମାଜ କେବେ କ୍ଷମାଦେବ ନାହିଁ । ତେଣୁ ପ୍ରତ୍ୟେକ ଛାତ୍ର କର୍ମଭୀରୁ ନ ହୋଇ କର୍ମବୀର ହେବା ଆବଶ୍ୟକ । ଏତଦ୍‌ବ୍ୟତୀତ ସମୟାନୁବର୍ତ୍ତିତା ସୁଛାତ୍ରର ଅନ୍ୟତମ ଲକ୍ଷଣ । ସମୟର ଅପବ୍ୟୟ ନ କରି ଠିକ୍ କାର୍ଯ୍ୟ ଠିକ୍ ସମୟରେ କରିବା ଉଚିତ । ଏହାଦ୍ୱାରା ତା'ର କର୍ତ୍ତବ୍ୟପରାୟଣତା ଓ ନିଷ୍ଠା ବୃଦ୍ଧି ପାଇଥାଏ । ସମୟ ସଚେତନତା ଦ୍ୱାରା ସମାଜରେ ତା'ର ମହତ୍ତ୍ୱ ବୃଦ୍ଧିପାଏ । ପୁନରାୟ ପ୍ରତ୍ୟେକ ଛାତ୍ରର ସ୍ୱାଧୀନ ଚିନ୍ତାଧାରା ରହିବା ଆବଶ୍ୟକ । କୌଣସି ବିଷୟ ହୃଦୟଙ୍ଗମ ନ କରି ଅନ୍ୟଦ୍ୱାରା ପରିଚାଳିତ ହେବା ସର୍ବାଦୌ ଅନାବଶ୍ୟକ । ପରଦ୍ୱାରା ବଶବର୍ତ୍ତୀ ନ ହୋଇ ସ୍ୱାଧୀନ ଭାବରେ ପ୍ରତ୍ୟେକ ବିଷୟ ଚିନ୍ତା କରି ଉଚିତ କାର୍ଯ୍ୟପନ୍ଥା ଗ୍ରହଣ କରିବା ଉତ୍ତମ ଛାତ୍ରର ଲକ୍ଷଣ । ତେଣୁ ଜଣେ ଆଦର୍ଶ ଛାତ୍ର କର୍ମନିଷ୍ଠ, ସମୟାନୁବର୍ତ୍ତୀ ଓ ସ୍ୱାଧୀନ ଚିନ୍ତାଧାରାର ବାହକ ହେବା ଆବଶ୍ୟକ ।

ଛାତ୍ର ଜୀବନ, ଜୀବନ ଗଠନର ପ୍ରକୃଷ୍ଟ ସମୟ । ଏହାରି ଉପରେ ନିର୍ଭର କରେ ତା'ର ଭବିଷ୍ୟତ ଜୀବନର ସଫଳତା । ସମାଜର ଯେ ଏକ ଗୁରୁଦାୟିତ୍ୱ ତା' ଉପରେ ନ୍ୟସ୍ତ, ତାହା ସବୁବେଳେ ସେ ଭୁଲିଯାଇଥାଏ । ମୁକ୍ତ ବିହଙ୍ଗ ପରି ଏହି ବୟସରେ ଉଡ଼ି ବୁଲିବାକୁ ସେ ଖୁବ୍ ଭଲପାଏ । ବସା ଖୋଜିବାର କୌଣସି ଆବଶ୍ୟକତା ସେ ଅନୁଭବ କରିପାରେନା, ମାତ୍ର ଏହି ମୂଲ୍ୟବାନ ସମୟର ଅଯଥା ଅପବ୍ୟୟ ତା'ର ଭବିଷ୍ୟତ ଜୀବନକୁ ଅନ୍ଧକାର କରିଦେଇଥାଏ । ସେଥିପାଇଁ ପ୍ରତ୍ୟେକ ଛାତ୍ର ତା'ର ଏହି ମୂଲ୍ୟବାନ ସମୟଟିର ଅପବ୍ୟୟ ନ କରି, ତାକୁ କିପରି ଅଧିକ ମହତ୍ତ୍ୱପୂର୍ଣ୍ଣ ଓ ବାସ୍ତବ କରିହେବ, ତାହା ଚିନ୍ତା କରିବା ଆବଶ୍ୟକ । ସମୟକୁ ବୁଝିବା ଏବଂ ତାକୁ ଉଚିତ ମାର୍ଗରେ ବ୍ୟବହାର କରିବା, ଛାତ୍ର ଜୀବନର ଏହି ଅମୂଲ୍ୟ ବିଷୟଟି ସେ ସର୍ବଦା ସ୍ମରଣ ରଖିବା ଉଚିତ ।



# ଜରୁରୀ ପରିସ୍ଥିତିରେ ଛାତ୍ରର ଭୂମିକା

**(ଉପକ୍ରମ, ଜରୁରୀ ପରିସ୍ଥିତି କାହିଁକି ?, ଭାରତରେ ଜରୁରୀ ପରିସ୍ଥିତି, ଦେଶର ଆହ୍ୱାନ, ସାମରିକ ଶିକ୍ଷା, ଜାତୀୟ ଐକ୍ୟ ପ୍ରତିଷ୍ଠା, ରକ୍ତଦାନ ଶିବିର, ଜନସାଧାରଣଙ୍କ ମଧ୍ୟରେ ସଚେତନତା ବୃଦ୍ଧି ଓ ଦେଶସେବା ପାଇଁ ଅନୁରକ୍ତି ସୃଷ୍ଟି, ଜବାନମାନଙ୍କ ସେବା ଶୁଶ୍ରୂଷା ଓ ଆର୍ଥିକ ସାହାଯ୍ୟ, ଉପସଂହାର)**

ମାନବ ଜୀବନରେ ସୁଖ ଦୁଃଖ ପରି, ପ୍ରକୃତି ଜୀବନରେ ଆଲୋକ ଅନ୍ଧକାର ପରି, ଗୋଟିଏ ଦେଶର ଜୀବନରେ ମଧ୍ୟ ସେହିପରି ଅନୁକୂଳ ଓ ପ୍ରତିକୂଳ ସମୟ ଆସିଥାଏ । ଏହି ପ୍ରତିକୂଳ ପରିସ୍ଥିତିରେ ଦେଶର ଏକତା ଓ ତା'ର ସାର୍ବଭୌମତ୍ୱର ରକ୍ଷା ପାଇଁ ସଂଘବଦ୍ଧ ଉଦ୍ୟମ କରିବା ପ୍ରତ୍ୟେକ ନାଗରିକର ଜାତୀୟ ଏବଂ ନୈତିକ କର୍ତ୍ତବ୍ୟ । ଏ କ୍ଷେତ୍ରରେ ଛାତ୍ରସମାଜର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ଛାତ୍ରସମାଜ ଦେଶର ଦୁର୍ମଦ ଶକ୍ତି । ସମସ୍ତ ବାଧା ବନ୍ଧନକୁ ଅତିକ୍ରମି

ଯିବାର ଅମିତ ଶକ୍ତି ତା' ଦେହରେ ପୁଞ୍ଜୀଭୂତ । ଦେଶର ଏବଂ ଜାତିର ବିପଦରେ ନିଜ ଜୀବନକୁ ତୁଚ୍ଛ କରି ସେ ଆଗେଇ ଆସିଥାଏ ଦେଶମାତୃକାର ସେବା ପାଇଁ । ନିଜ ଦେଶ ଉପରେ ଶତ୍ରୁ ଆକ୍ରମଣ ଦେଖିଲେ ତା' ରକ୍ତରେ ନିଆଁ ଲାଗେ । ଦେଶର ପ୍ରକୃତ ଶକ୍ତି ହିଁ ଛାତ୍ର ଶକ୍ତି । ବିଶ୍ୱରେ ସଙ୍ଘଟିତ ବିଭିନ୍ନ ଆନ୍ଦୋଳନ ଓ ପରିବର୍ତ୍ତନରେ ଛାତ୍ରସମାଜ ସବୁ ସମୟରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଆସିଛି ! ଭାରତୀୟ ସ୍ୱାଧୀନତା ଆନ୍ଦୋଳନରେ ଛାତ୍ରମାନଙ୍କର ଭୂମିକା ଏବେବି ସ୍ମରଣୀୟ । ଦେଶର ପ୍ରତିକୂଳ ପରିସ୍ଥିତିରେ ଛାତ୍ରମାନଙ୍କୁ ସବୁ ଦାୟିତ୍ୱ ଗ୍ରହଣ କରିବାକୁ ହୋଇଥାଏ । ଜରୁରୀକାଳୀନ ପରିସ୍ଥିତିରେ ଏହି ଦାୟିତ୍ୱ ଆହୁରି ବୃଦ୍ଧି ପାଇଥାଏ । ଆଭ୍ୟନ୍ତରୀଣ ବିଶୃଙ୍ଖଳା ବା ବହିଃଶତ୍ରୁ ଆକ୍ରମଣରେ ଯେତେବେଳେ ଦେଶରେ ଜରୁରୀକାଳୀନ ପରିସ୍ଥିତି ଘୋଷଣା କରାଯାଏ, ସେତେବେଳେ ଛାତ୍ରସମାଜ ନିଜ ଭିତରେ ଥିବା ସମସ୍ତ ବିଭେଦ ଭୁଲି ଦେଶମାତୃକାର ସେବା ପାଇଁ ଅଣ୍ଟାଭିଡ଼ି ବାହାରିଆସିବା ଆବଶ୍ୟକ ।

ସମ୍ବିଧାନର ନିୟମ ଅନୁଯାୟୀ ତିନୋଟି ପରିସ୍ଥିତିରେ ରାଷ୍ଟ୍ରପତି କେନ୍ଦ୍ର ମନ୍ତ୍ରିମଣ୍ଡଳର ପରାମର୍ଶ ଅନୁଯାୟୀ ଜରୁରୀ ପରିସ୍ଥିତି ଘୋଷଣା କରିଥାନ୍ତି । ସମ୍ବିଧାନର ୩୫୨ ଧାରା ଅନୁଯାୟୀ ଜାତୀୟ ଜରୁରୀ ପରିସ୍ଥିତି ଘୋଷଣା ହୋଇଥାଏ । ଏ ସମ୍ପର୍କରେ ସମ୍ବିଧାନରେ ସ୍ପଷ୍ଟ ଉଲ୍ଲେଖ ରହିଛି "If the President is satisfied that a grave emergency exists where by the security of India or of any part of territory there of is threatened, whether by war or external aggression or armed rebellion he may, by proclamation, make declaration to that effect." ଯୁଦ୍ଧ, ବହିଃଶତ୍ରୁ ଆକ୍ରମଣ କିମ୍ବା ସାମରିକ ବିପ୍ଳବ ଘଟିଲେ ମନ୍ତ୍ରିମଣ୍ଡଳ ପରାମର୍ଶରେ ଦେଶରେ ରାଷ୍ଟ୍ରପତି ଜରୁରୀ ପରିସ୍ଥିତି ଜାରି କରିଥାନ୍ତି । ଏହି ପରିସ୍ଥିତି ଘୋଷିତ ହେବାର ଏକମାସ ମଧ୍ୟରେ ତାହା ଉଭୟ ଗୃହର ଅନୁମୋଦନ ଲାଭ କରିବା ବାଞ୍ଛନୀୟ । ୩୫୬ ଧାରା ଅନୁଯାୟୀ ରାଜ୍ୟମାନଙ୍କରେ ସାମ୍ବିଧାନିକ ବ୍ୟବସ୍ଥା ବିଫଳ ହେଲେ କିମ୍ବା ରାଜ୍ୟପାଳଙ୍କ ନିକଟରୁ ରାଜ୍ୟର ଶୋଚନୀୟ ପରିସ୍ଥିତି ସମ୍ପର୍କରେ ବିବରଣୀ ଲାଭ କଲା ପରେ ଯଦି ରାଷ୍ଟ୍ରପତି ରାଜ୍ୟରେ ସାମ୍ବିଧାନିକ ବ୍ୟବସ୍ଥା ଅଚଳ ହୋଇପଡ଼ିଛି ବୋଲି ଅନୁଭବ କରନ୍ତି, ତେବେ ସେଠାରେ ସେ ଜରୁରୀ ପରିସ୍ଥତି ଘୋଷଣା କରିପାରିବେ । ଏହି ପରିସ୍ଥିତି ଥରେ ଘୋଷଣା କରାଗଲେ ତାହା ଦୁଇମାସ ପର୍ଯ୍ୟନ୍ତ ବଳବତ୍ତର ରହିଥାଏ ଏବଂ ଏହାକୁ ବଢ଼ାଇ ତିନିବର୍ଷ ପର୍ଯ୍ୟନ୍ତ ରଖାଯାଇପାରେ । ସମ୍ବିଧାନର ୩୬୦ ଧାରା ଅନୁଯାୟୀ ଦେଶରେ ଆର୍ଥନୀତିକ ଜରୁରୀ ଅବସ୍ଥା ଘୋଷିତ ହୋଇଥାଏ । ଯଦି ରାଷ୍ଟ୍ରପତି ଅନୁଭବ କରନ୍ତି ଦେଶର ବା କୌଣସି ରାଜ୍ୟର ଆର୍ଥିକ ପରିସ୍ଥିତି ଅତ୍ୟନ୍ତ ଦେବାଳିଆ ହୋଇପଡ଼ିଛି, ସେ କ୍ଷେତ୍ରରେ ଏହି ପରିସ୍ଥିତି ଘୋଷଣା କରାଯାଇଥାଏ । ଏହାର ସମୟ ୨ ମାସ । ମାତ୍ର ଜାତୀୟ ଜରୁରୀ ପରିସ୍ଥିତି ଓ ଆର୍ଥନୀତିକ ଜରୁରୀ ପରିସ୍ଥିତିର କୌଣସି ନିର୍ଦ୍ଦିଷ୍ଟ ସମୟସୀମା ନାହିଁ । ଏହାକୁ ପରବର୍ତ୍ତୀ ସମୟରେ ପୁଣି ଉଭୟ ଗୃହ ଓ ରାଷ୍ଟ୍ରପତି ଚାହିଁଲେ ଅନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ବୃଦ୍ଧି କରିପାରନ୍ତି ।

ସ୍ୱାଧୀନ ଭାରତରେ ଏଯାବତ୍ ସର୍ବମୋଟ ୩ଥର ଜାତୀୟ ଜରୁରୀ ପରିସ୍ଥିତି ଘୋଷଣା କରାଯାଇଛି । ଚୀନ୍‌ର ଭାରତ ଉପରେ ଅପ୍ରତ୍ୟାଶିତ ଆକ୍ରମଣ ଯୋଗୁଁ ୧୯୬୨ ମସିହା ଅକ୍ଟୋବର ୨୬ ତାରିଖରେ ଏହି ପରିସ୍ଥିତି ଘୋଷଣା କରାଯାଇଥିଲା ଏବଂ ୧୯୬୮ ମସିହା ଜାନୁଆରୀ ୧୦ ତାରିଖରେ ଏହାକୁ ଉଠାଇ ନିଆଯାଇଥିଲା । ଭାରତରେ ଦ୍ୱିତୀୟ ଥର ପାଇଁ ୧୯୭୧ ମସିହା ଡ଼ିସେମ୍ବର ୩ ତାରିଖରେ ଜରୁରୀ ପରିସ୍ଥିତି ଘୋଷଣା କରାଯାଇଥିଲା, ଯେତେବେଳେ ପାକିସ୍ଥାନ ଭାରତ ବିରୋଧରେ ଯୁଦ୍ଧ ଘୋଷଣା କଲା । ଭାରତ ବଙ୍ଗଳାଦେଶର ସ୍ୱାଧୀନତାକୁ ସମର୍ଥନ କରୁଥିବାରୁ ପାକିସ୍ଥାନ ଭାରତ ବିରୋଧରେ ଯୁଦ୍ଧ ଘୋଷଣା କରିଥିଲା । ତୃତୀୟ ଜରୁରୀକାଳୀନ ପରିସ୍ଥିତି ଜୁନ ୨୫, ୧୯୭୫ରେ ଘୋଷଣା କରାଯାଇଥିଲା । ପ୍ରଥମ ଦୁଇଟି ଜରୁରୀକାଳୀନ ପରିସ୍ଥିତି ବହିଃଶତ୍ରୁ ଆକ୍ରମଣ ଯୋଗୁଁ ଘୋଷଣା କରାଯାଇଥିବା ସମୟରେ ତୃତୀୟ ପରିସ୍ଥିତିଟି ଆଭ୍ୟନ୍ତରୀଣ କାରଣରୁ ଘୋଷିତ ହୋଇଥିଲା । ଇନ୍ଦିରାଗାନ୍ଧିଙ୍କ ପ୍ରଧାନମନ୍ତ୍ରିତ୍ୱ ସମୟରେ ତାଙ୍କର ନିର୍ବାଚନକୁ ଆହ୍ଲାବାଦ ଉଚ୍ଚ ନ୍ୟାୟାଳୟ ଅସିଦ୍ଧ ଘୋଷଣା କରିବାରୁ ପ୍ରତିକ୍ରିୟା ସ୍ୱରୂପ ୧୯୭୫ରେ ଏହି ଜରୁରୀକାଳୀନ ପରିସ୍ଥିତି ଘୋଷିତ ହୋଇଥିଲା ଏବଂ ୧୯୭୭ ମସିହା ମାର୍ଚ୍ଚ ମାସରେ ଏହା ଉଠିଯାଇଥିଲା । ପ୍ରଥମ ଦୁଇଟି ଜରୁରୀ ପରିସ୍ଥିତି ଜନସାଧାରଣ ଓ ବୁଦ୍ଧିଜୀବୀମାନଙ୍କ ଦ୍ୱାରା ସମାଲୋଚିତ ହୋଇନଥିବା ସମୟରେ ତୃତୀୟଟି ଭୀଷଣ ଭାବେ ସମାଲୋଚନାର ଶରବ୍ୟ ହୋଇଥିଲା । ମୁଖ୍ୟତଃ ଏକ ବ୍ୟକ୍ତିଗତ କାରଣରୁ ଏହା ସୃଷ୍ଟି ହୋଇଥିବାରୁ ଏପରି ପରିସ୍ଥିତି ଉପୁଜିଥିଲା ।

ଜରୁରୀ ପରିସ୍ଥିତି ସମୟରେ ଦେଶର ରକ୍ଷା ପାଇଁ ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ସମସ୍ତେ ଐକ୍ୟବଦ୍ଧ ଭାବେ କାର୍ଯ୍ୟ କରିବା ଉଚିତ । ଦେଶର ଏହି ଡାକକୁ ଛାତ୍ରସମାଜ ଆହ୍ୱାନ ଭାବରେ ଗ୍ରହଣ କରିନେଇ ଦେଶର ସମ୍ମାନ ରକ୍ଷା ପାଇଁ ଉଚିତ ପଦକ୍ଷେପମାନ ଗ୍ରହଣ କରିବା ଆବଶ୍ୟକ । ଏପରିକି ପ୍ରାକୃତିକ ବିପର୍ଯ୍ୟୟ ବା ଆନ୍ତଃବିପ୍ଳବ ସମୟରେ ଯେଉଁ ଜରୁରୀ ପରିସ୍ଥିତି ଘୋଷଣା କରାଯାଇଥାଏ, ତା'ର ମୁକାବିଲା ନିମିତ୍ତ ଛାତ୍ରସମାଜ ସର୍ବଦା ପ୍ରସ୍ତୁତ ରହିବା ବିଧେୟ । ମନେରଖିବା ଆବଶ୍ୟକ ଦେଶର ବିପଦଠାରୁ ବଡ଼ ବିପଦ ଆଉ କିଛି ନାହିଁ । ଦେଶର ସାର୍ବଭୌମତ୍ୱ ଖଣ୍ଡବିଖଣ୍ଡିତ ବା ବିପର୍ଯ୍ୟସ୍ତ ହେଲେ ପୁଣି ପରାଧୀନତାର ଶୃଙ୍ଖଳରେ ବନ୍ଦୀ ହେବାକୁ ପଡ଼ିବ । ଦାସର ପରିଚୟ ନେଇ ଜୀବନ ନିର୍ବାହ କରିବାକୁ ହେବ । ସ୍ୱାଧୀନ ନାଗରିକ ଭାବେ ଓ ସ୍ୱାଧୀନ ଦେଶର ସନ୍ତାନ ଭାବେ ଦେଶର ଏହି ବିପଦକୁ ସାହସର ସହିତ ମୁକାବିଲା କରିବାକୁ ଛାତ୍ରସମାଜ ନିଜକୁ ପ୍ରସ୍ତୁତ ରଖିବା ଆବଶ୍ୟକ । ଜାତୀୟତାର ମନ୍ତ୍ରରେ ଦେଶବାସୀଙ୍କୁ ଉଦ୍‌ବୁଦ୍ଧ କରି କଷ୍ଟୋପାର୍ଜିତ ସ୍ୱାଧୀନତାର ସୁରକ୍ଷା ପାଇଁ ପ୍ରତ୍ୟେକ ଛାତ୍ର ବୀରପରି ନିଜକୁ ଉତ୍ସର୍ଗ କରିବା ଉଚିତ । ପରାଧୀନ ଜୀବନକୁ ବରଣ କରି ଭୀରୁ ପରି ବଞ୍ଚିବା ଅପେକ୍ଷା ବୀର ପରି ସ୍ୱାଧୀନତା ରକ୍ଷା ପାଇଁ ମୃତ୍ୟୁବରଣ ସର୍ବାଦୌ ବାଞ୍ଛନୀୟ । ତେଣୁ ଜରୁରୀକାଳୀନ ପରିସ୍ଥିତିରେ ଛାତ୍ରସମାଜ ଆନ୍ତରିକ ଭାବରେ ଉଦ୍ୟମ କଲେ ନିଶ୍ଚିତ ଭାବେ ଏକ ବୈପ୍ଳବିକ ପରିବର୍ତ୍ତନ ଦେଶରେ ଆନୟନ କରିପାରିବେ । ସାମ୍ଭାବ୍ୟ ବିପଦରୁ ଦେଶକୁ ରକ୍ଷା କରିବାକୁ ସମର୍ଥ ହୋଇପାରିବେ । ଏହା ମଧ ପ୍ରତ୍ୟେକ ଛାତ୍ର ପାଇଁ ଏକ ଜାତୀୟ କର୍ତ୍ତବ୍ୟ ।

ଯୁଦ୍ଧ ସମୟରେ ଆବଶ୍ୟକ ହୋଇଥାଏ ବହୁପରିମାଣରେ ସୈନ୍ୟମାନଙ୍କର । ସେହିମାନେ କେବଳ ସୈନ୍ୟବିଭାଗରେ ସଫଳତାର ସହିତ କାର୍ଯ୍ୟ କରିପାରିବେ, ଯେଉଁମାନଙ୍କର ଦେଶ ପ୍ରତି ଭକ୍ତି, ଶ୍ରଦ୍ଧା ଓ ସମ୍ମାନ ରହିଛି ଏବଂ ଯୌବନାବସ୍ଥା ଅତିକ୍ରମ କରିନାହାନ୍ତି । ଏ କ୍ଷେତ୍ରରେ ଛାତ୍ରମାନଙ୍କର ଭୂମିକା ଅତୀବ ମହତ୍ତ୍ୱପୂର୍ଣ୍ଣ । ଅତୀତରେ ସ୍ୱାଧୀନତା ସଂଗ୍ରାମରେ ଛାତ୍ରମାନେ ସୁଖସ୍ୱାଚ୍ଛନ୍ଦ୍ୟକୁ ପରିହାର କରି ଦେଶମାତୃକାର ସେବାପାଇଁ ଆଗେଇ ଆସିଥିଲେ । ବହିଃଶତ୍ରୁ ଆକ୍ରମଣ ସମୟରେ ମଧ୍ୟ ଛାତ୍ରମାନେ ସେହିପରି ବୀରତ୍ୱର ସହିତ ଯୁଦ୍ଧକ୍ଷେତ୍ରକୁ ଆଗେଇ ଆସିବା ଉଚିତ । ସ୍କୁଲ ବା କଲେଜମାନଙ୍କରେ ଥିବା ଜାତୀୟ ସମର ଶିକ୍ଷାର୍ଥୀ ବାହିନୀ (N.C.C.)ରେ ଯୋଗଦାନ କରି ପୂର୍ବରୁ ନିଜକୁ ସେଥିପାଇଁ ପ୍ରସ୍ତୁତ କରିଥିବା ଆବଶ୍ୟକ । 'ମୃତ୍ୟୁବରଣ କଲେ ସ୍ୱର୍ଗଲାଭ, ବଞ୍ଚିଲେ ରାଜ୍ୟଲାଭ'—ସମ୍ପ୍ରତି ଛାତ୍ରମାନଙ୍କର ଆଦର୍ଶ ଏହାହିଁ ହେବା ଉଚିତ । ତେଣୁ ଜରୁରୀକାଳୀନ ପରିସ୍ଥିତିରେ ଛାତ୍ରମାନେ ସାମରିକ ବାହିନୀରେ ଯୋଗ ଦେଇ ଦେଶର ରକ୍ଷା ପାଇଁ ବୀରଦର୍ପରେ ଆଗେଇ ଆସିବା ଆବଶ୍ୟକ ।

ଯୁଦ୍ଧ ସମୟରେ ବା ଦେଶକୁ ବହିଃଶତ୍ରୁ ଆକ୍ରମଣ ବେଳେ ଦେଶର ଆଭ୍ୟନ୍ତରୀଣ ଶୃଙ୍ଖଳା ପ୍ରତି ଦୃଷ୍ଟି ପ୍ରଦାନ କରିବା ଛାତ୍ରମାନଙ୍କର ଅନ୍ୟତମ ବିଶେଷ କର୍ତ୍ତବ୍ୟ । କାରଣ ଏହି ସମୟରେ ଶତ୍ରୁଦେଶ ପକ୍ଷରୁ ଗୁପ୍ତଚରମାନେ ପ୍ରେରଣ କରାଯାଇ ଦେଶବାସୀଙ୍କ ମନରେ ଆତଙ୍କ ସୃଷ୍ଟି କରିବାର ପ୍ରୟାସ କରାଯାଇଥାଏ । ନିଜର ସ୍ୱାର୍ଥ ପାଇଁ ଅର୍ଥ ତଥା ଅନ୍ୟାନ୍ୟ ଲୋଭ ଦେଖାଇ ଦେଶର ଗୁପ୍ତତଥ୍ୟ ହାସଲ କରିବାକୁ ଚେଷ୍ଟା କରିଥାନ୍ତି । ଲୋକମାନଙ୍କ ମନରେ ଭୟ ସୃଷ୍ଟି କରାଇ ଆଭ୍ୟନ୍ତରୀଣ ସଙ୍କଟ ସୃଷ୍ଟି କରିବାର ପରିବେଶ ସୃଷ୍ଟି କରିଥାନ୍ତି । ରାଜନୈତିକ ଅସ୍ଥିରତା ସୃଷ୍ଟି କରି ସେଥିରୁ ବହୁଭାବରେ ନିଜର ଫାଇଦା ଉଠାଇଥାନ୍ତି । ସାମାନ୍ୟ ଦୁର୍ବଳତାର ସୁଯୋଗ ଲାଭ କରି ସମସ୍ତ ଗୁପ୍ତ ସମ୍ବାଦ ଅକ୍ଳେଶରେ ଦେଶକୁ ପଠାଇ ଦେଇପାରନ୍ତି । ଏପରି ସମୟରେ ଜାତୀୟ ଏକତା ସୃଷ୍ଟି କରିବା ପାଇଁ ଛାତ୍ରସମାଜ ପ୍ରୟାସ ଜାରିରଖିବା ଉଚିତ । ଲୋକମାନଙ୍କ ମନରୁ ଯୁଦ୍ଧ ଭୟ ଦୂରକରାଇ ସେମାନଙ୍କୁ ସଙ୍ଗଠିତ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ମନରେ ନୈତିକ ବଳ ଭରିଦେବା ଆବଶ୍ୟକ । ଜାତୀୟ ସଂହତିର ପ୍ରତିଷ୍ଠା ପାଇଁ ଲୋକମାନଙ୍କର ମନୋବଳ ବୃଦ୍ଧି କରିବା ଉଚିତ । ଯେଉଁମାନେ ଗୁପ୍ତଚର ବୃତ୍ତିରେ ସଂଶ୍ଳିଷ୍ଟ ସେମାନଙ୍କୁ ଧରାଇଦେବା ସହିତ ଦେଶଦ୍ରୋହୀମାନଙ୍କୁ ଉପଯୁକ୍ତ ଶାସ୍ତିବିଧାନ କରିବା ଆବଶ୍ୟକ । ଗୁଜବଦ୍ୱାରା ଜନସାଧାରଣଙ୍କ ମନରେ ଯେଉଁ ସନ୍ଦେହ ସୃଷ୍ଟି ହୋଇଥାଏ, ତାହାର ଦୂରୀକରଣ କରି ଦେଶମାତୃକାର ସେବା ପାଇଁ ଜନସାଧାରଣଙ୍କ ମଧ୍ୟରେ ଚେତନା ଜାଗ୍ରତ କରିବା ଛାତ୍ରସମାଜର ପରମ କର୍ତ୍ତବ୍ୟ ।

ଯୁଦ୍ଧ ସମୟରେ ରକ୍ତକ୍ଷୟ ହେବା ସ୍ୱାଭାବିକ । ଏହି ସମୟରେ ସୈନ୍ୟମାନଙ୍କର ଚିକିତ୍ସାନିମିତ୍ତ ପ୍ରଚୁର ରକ୍ତର ଆବଶ୍ୟକ ପଡ଼ିଥାଏ । ଛାତ୍ରମାନେ ବିଭିନ୍ନ ରକ୍ତଶିବିରର ଆୟୋଜନ କରି ନିଜେ ରକ୍ତ ଦେବା ସଙ୍ଗେ ସଙ୍ଗେ ଜନସାଧାରଣଙ୍କୁ ରକ୍ତଦାନ ପାଇଁ ପ୍ରୋତ୍ସାହିତ କରିବା

ଆବଶ୍ୟକ । ମନେରଖିବା ଉଚିତ ଯବାନମାନେ ଦେଶ ରକ୍ଷକ । ମାତୃଭୂମିର ସେବାପାଇଁ ସେମାନେ ନିଜର ଜୀବନ ଉତ୍ସର୍ଗ କରୁଛନ୍ତି । ତେଣୁ ସେମାନଙ୍କ ନିମିତ୍ତ ରକ୍ତଦାନ କରିବା ମହାପୁଣ୍ୟର କାର୍ଯ୍ୟ । ଯୁଦ୍ଧ ସମୟରେ ରକ୍ତଦାନ ଦେଶଭକ୍ତିର ଯଥାର୍ଥ ପରିଚୟ । ସମସ୍ତ ବିଭେଦ ଭୁଲି ରେଡ଼କ୍ରସ ମାଧମରେ ଛାତ୍ରମାନେ ରକ୍ତ ସଂଗ୍ରହ କରି ଦେଶର ଯବାନମାନଙ୍କ ପାଇଁ ଯୁଦ୍ଧକ୍ଷେତ୍ରକୁ ରକ୍ତ ପ୍ରେରଣ କରିବା ଆବଶ୍ୟକ । ଏହାଦ୍ୱାରା ଛାତ୍ର ସମାଜର ଦେଶାତ୍ମବୋଧ, କର୍ତ୍ତବ୍ୟପରାୟଣତା ଓ ଦେଶସେବାର ପ୍ରକୃତ ପରିଚୟ ମିଳିପାରିବ । ଦେଶ ଏବଂ ଜାତିର ସେବା ପାଇଁ ସାମାନ୍ୟ ରକ୍ତଦାନରେ ଛାତ୍ରସମାଜ କୁଣ୍ଠିତ ହେବା ଅନାବଶ୍ୟକ ।

ଯୁଦ୍ଧ ସମୟରେ ଅନେକ ସମୟରେ ଜନସାଧାରଣଙ୍କର ନୈତିକବଳ ଭାଙ୍ଗି ପଡ଼ିଥାଏ । ଗୋଟିଏ କୋକୁଆଭୟ ସମଗ୍ର ଜାତିକୁ ଗ୍ରାସ କରିଯାଇଥାଏ । ଦେଶର ଏହି ନୈତିକ ଅଧୋପତନ ସମୟରେ ଛାତ୍ରମାନେ ପ୍ରମୁଖ ଭୂମିକା ଗ୍ରହଣ କରିପାରିବେ । ଯବାନମାନେ ଶତ୍ରୁ ବିପକ୍ଷରେ ଯୁଦ୍ଧ କରୁଥିବା ସମୟରେ ଛାତ୍ରମାନେ ଏହି ଅଜଣା ଭୟ ବିରୋଧରେ ସଂଗ୍ରାମ କରିବା ଉଚିତ । ଆମ ଯବାନମାନଙ୍କର ଶକ୍ତି, ସାମର୍ଥ୍ୟ ଓ ଦେଶାତ୍ମବୋଧ ସମ୍ବନ୍ଧରେ ଜନସାଧାରଣଙ୍କୁ ଅବଗତ କରାଇଦେବା ନିମିତ୍ତ ପ୍ରୟାସ ଜାରି ରଖିବା ସର୍ବାଦୌ ବାଞ୍ଛନୀୟ । ଆମେ ଏକ ବୀରଜାତି, ଇତିହାସରୁ ଏହା ପ୍ରମାଣ ଦେଇ ଲୋକମାନଙ୍କୁ ସେହି ଭାବରେ ଉଦ୍‌ବୁଦ୍ଧ କରିବା ଜରୁରୀ କର୍ତ୍ତବ୍ୟ । ନଚେତ୍ ଲୋକମାନଙ୍କର ଏହି ଦୁର୍ବଳତାର ସୁଯୋଗ ଶତ୍ରୁପକ୍ଷ ସହଜରେ ହାସଲ କରି ନିଜର ଚକ୍ରାନ୍ତର ଜାଲ ବୁଣି ଚାଲିବେ । ଜାତୀୟ ଭାବନାରେ ଭାବିତ କରିବା ପାଇଁ ଛାତ୍ରମାନେ ଜାତୀୟ ସଙ୍ଗୀତ, ଉଦ୍‌ବୋଧନୀ ସଙ୍ଗୀତ, ଦେଶାତ୍ମବୋଧ ସଙ୍ଗୀତମାନ ଗ୍ରାମ ତଥା ସହରମାନଙ୍କରେ ମାଇକ୍ ମାଧମରେ ପ୍ରଚାର କରିବା ଉଚିତ । ବୀରମାନଙ୍କର ଗାଥା ପ୍ରଚାରକରି ଦେଶସେବା ନିମିତ୍ତ ଜନସାଧାରଣଙ୍କ ମଧ୍ୟରେ ଅନୁରକ୍ତି ସୃଷ୍ଟି କରିପାରିଲେ, ଜନସାଧାରଣ ଆଦୌ ଭୟଭୀତ ହେବେ ନାହିଁ । ଦେଶର ସ୍ୱାଧୀନତା ରକ୍ଷା ପାଇଁ ସେମାନେ ମଧ୍ୟ ବୀରଦର୍ପରେ ଯୁଦ୍ଧଭୂମିକୁ ଆଗେଇ ଆସିପାରିବେ । ମାତୃଭୂମିର ସେବା ପାଇଁ ନିଜକୁ ଉତ୍ସର୍ଗ କରିପାରିବେ । ତେଣୁ ଛାତ୍ରସମାଜ ବହିଃଶତ୍ରୁ ଆକ୍ରମଣ ସମୟରେ ଦେଶ ମଧ୍ୟରେ ବସବାସ କରୁଥିବା ସାଧାରଣ ଜନତାଙ୍କ ମନରେ ସର୍ବଦା ସଚେତନତା ବୃଦ୍ଧି ନିମିତ୍ତ ବିଭିନ୍ନ ପଦକ୍ଷେପ ଗ୍ରହଣ କଲେ ଦେଶ ତଥା ଦଶର ପ୍ରଭୂତ ମଙ୍ଗଳ ସାଧନ ହୋଇପାରିବ ।

ଯେଉଁମାନେ ଯୁଦ୍ଧକ୍ଷେତ୍ରରେ ନିଜକୁ ସଂଶ୍ଳିଷ୍ଟ କରିଥାନ୍ତି, ସେହିମାନେ ହିଁ କେବଳ ଦେଶସେବା କରିନଥାନ୍ତି; ପ୍ରତ୍ୟକ୍ଷ ଓ ପରୋକ୍ଷରେ ଦେଶ ପାଇଁ କର୍ତ୍ତବ୍ୟ କରିବା ହିଁ ଦେଶସେବା । ଯୁଦ୍ଧକ୍ଷେତ୍ରରେ ଆହତମାନଙ୍କର ଯଥାର୍ଥ ସେବା ଶୁଶ୍ରୂଷା ମଧ୍ୟ ପ୍ରକୃତ ଦେଶସେବା । ଏଣୁ ଯେଉଁ ଛାତ୍ରମାନେ ଡ଼ାକ୍ତରୀପାଠ ପଢୁଛନ୍ତି ବହିଃଶତ୍ରୁ ଆକ୍ରମଣ ସମୟରେ ନିଜର ସମସ୍ତ ସୁଖସ୍ୱାଚ୍ଛନ୍ଦ୍ୟ ଭୁଲି ଯବାନମାନଙ୍କର ସେବା କରିବା ଉଚିତ । ଦେଶରକ୍ଷାଠାରୁ ବଡ଼ କର୍ତ୍ତବ୍ୟ ପୃଥିବୀରେ କିଛି ନାହିଁ । ଦେଶର ଓ ଜନସାଧାରଣଙ୍କ ରକ୍ଷା ପାଇଁ ନିଜର ଜୀବନକୁ ବିପନ୍ନକରି ଯେଉଁ ସୈନ୍ୟମାନେ ଯୁଦ୍ଧଭୂମିରେ କ୍ଷତବିକ୍ଷତ ହୋଇପଡ଼ିଥାନ୍ତି, ସେମାନଙ୍କର ଉପଯୁକ୍ତ ସେବା ଶୁଶ୍ରୂଷା କରାଇ ପୁଣି ସେମାନଙ୍କୁ ସୁସ୍ଥ କରିବା ଓ ସେମାନଙ୍କ ମନରେ ଉନ୍ମାଦନା ସୃଷ୍ଟି କରିବା

ଛାତ୍ରସମାଜର ପରମ କର୍ତ୍ତବ୍ୟ । ଏତଦ୍‌ବ୍ୟତୀତ ଯୁଦ୍ଧ ସମୟରେ ପ୍ରଚୁର ଅର୍ଥର ଆବଶ୍ୟକ ହୋଇଥାଏ । ଅସ୍ତ୍ରଶସ୍ତ୍ର ଓ ଗୋଳାବାରୁଦ କ୍ଷେତ୍ରରେ ଦେଶ ପ୍ରଭୂତ ପରିମାଣ ଅର୍ଥ ବ୍ୟୟ କରିଥାଏ । ଏହି ସମୟରେ ଛାତ୍ରମାନଙ୍କର କର୍ତ୍ତବ୍ୟ ହେଉଛି, ବିଭିନ୍ନ ସ୍ଥାନରୁ ଚାନ୍ଦା ଆଦାୟ କରି ସାମରିକ ବିଭାଗକୁ ପଠାଇବା । ବିତ୍ତଶାଳୀ ବ୍ୟକ୍ତିମାନଙ୍କୁ ପ୍ରରୋଚିତ କରି ସେମାନଙ୍କଠାରୁ ଅର୍ଥ ଚାନ୍ଦା ଭାବରେ ଆଦାୟ କରିବା । ଅତୀତରେ ଚୀନ୍ ଆକ୍ରମଣ ସମୟରେ ବହୁ ଛାତ୍ରଛାତ୍ରୀ ସେମାନଙ୍କର ସଞ୍ଚିତ ଅର୍ଥ ଏବଂ ଅଳଙ୍କାର ଦେଶରକ୍ଷା ପାଣ୍ଠିକୁ ଦାନ କରିଥିଲେ । ଯୁଦ୍ଧ ସମୟରେ ଛାତ୍ରସମାଜ ନିଜେ ମିତବ୍ୟୟୀ ହେବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କୁ ମଧ୍ୟ ମିତବ୍ୟୟୀ ହେବାକୁ ଉତ୍ସାହିତ କରିବା ଉଚିତ । ଆମର ପୂର୍ବତନ ପ୍ରଧାନମନ୍ତ୍ରୀ ଲାଲବାହାଦୁର ଶାସ୍ତ୍ରୀ ଭାରତ ପାକିସ୍ଥାନ ଯୁଦ୍ଧ ସମୟରେ ସପ୍ତାହର ଗୋଟିଏ ଓଳି ଉପବାସ କରୁଥିଲେ ଏବଂ ଅନ୍ୟମାନଙ୍କୁ ମଧ୍ୟ ତାହା କରିବାକୁ ଉପଦେଶ ଦେଉଥିଲେ । ତେଣୁ ଭାରତର କୋଟି କୋଟି ଜନସାଧାରଣ ଯଦି ଯୁଦ୍ଧ ସମୟରେ ଗୋଟିଏ ଓଳି ଉପବାସ କରନ୍ତି, ତା'ହେଲେ କୋଟି କୋଟି ଟଙ୍କା ସହଜରେ ସାମରିକ ବିଭାଗକୁ ଦାନ କରାଯାଇପାରିବ । ଜାତୀୟ ସଙ୍କଟ ବା ଯୁଦ୍ଧ ସମୟରେ ଛାତ୍ରସମାଜ ଦେଶରକ୍ଷା ପାଇଁ ଏହିପରି ଉପାୟରେ ବିଭିନ୍ନ ସ୍ଥାନରୁ ଚାନ୍ଦା ସଂଗ୍ରହ କରି ସାମରିକ ବିଭାଗକୁ ପଠାଇପାରିଲେ ଅନ୍ତତଃ କିଛି ପରିମାଣର ସାମରିକ ଖର୍ଚ୍ଚ ଭରଣା କରାଯାଇପାରିବ ।

ଦେଶର ମର୍ଯ୍ୟାଦା ଓ ସମ୍ମାନରକ୍ଷା ପ୍ରତ୍ୟେକ ବ୍ୟକ୍ତିଙ୍କ ନିକଟରେ ମହନୀୟ । କାରଣ ପ୍ରତ୍ୟେକ ବ୍ୟକ୍ତି ସମ୍ମାନ, ମର୍ଯ୍ୟାଦା ଓ ବୀରତ୍ୱର ସହିତ ବଞ୍ଚିବାକୁ ଚାହାନ୍ତି । ଭୀରୁପରି ବଞ୍ଚିବା ଅପେକ୍ଷା ମୃତ୍ୟୁ ଶତଗୁଣରେ ଶ୍ରେୟସ୍କର । ଦେଶର ମର୍ଯ୍ୟାଦା ଏବଂ ସମ୍ମାନର ପ୍ରଶ୍ନ ସହିତ ବ୍ୟକ୍ତିର ମର୍ଯ୍ୟାଦା ତଥା ସମ୍ମାନ ଜଡ଼ିତ । ଗୋଷ୍ଠୀଗତ ଜୀବନରେ ମତାନ୍ତର ଏବଂ ମନାନ୍ତର ଆସିବା ସ୍ୱାଭାବିକ । ମାତ୍ର ଜାତୀୟ ସଙ୍କଟ ସମୟରେ ପ୍ରତ୍ୟେକ ବ୍ୟକ୍ତି ନିଜ ମଧ୍ୟରେ ଥିବା ସମସ୍ତ ମନାନ୍ତର ଭୁଲି ଦେଶ ଏବଂ ଜାତିର ରକ୍ଷା ଉଦ୍ଦେଶ୍ୟରେ ସଂଘବଦ୍ଧ ଭାବରେ କାର୍ଯ୍ୟ କରିବା ଆବଶ୍ୟକ । ଏ କ୍ଷେତ୍ରରେ ଛାତ୍ରମାନଙ୍କର ସକ୍ରିୟ ସହଯୋଗ ଦେଶ ପାଇଁ ଏକାନ୍ତ କାମ୍ୟ । ସେହିମାନଙ୍କର ଆନ୍ତରିକ କାର୍ଯ୍ୟଦକ୍ଷତା ଉପରେ ଦେଶର ସମ୍ମାନ ଓ ଗୌରବ ନିର୍ଭର କରେ । ସେମାନଙ୍କର ଅଦମ୍ୟ ଉଦ୍ୟମ ଶତ୍ରୁ ହୃଦୟରେ କମ୍ପନ ସୃଷ୍ଟି କରିପାରିବ । ଦେଶବାସୀଙ୍କ ମନ ଭିତରେ ସୃଷ୍ଟି କରିପାରିବ ଶତସିଂହର ବଳ । ଜାତୀୟ ବିପ୍ଲାତ ବା ପ୍ରାକୃତିକ ବିପର୍ଯ୍ୟୟ ସମୟରେ ମଧ୍ୟ ସେହିମାନଙ୍କର ସଂଘବଦ୍ଧ ଉଦ୍ୟମ ଦେଶକୁ ଆସନ୍ନ ବିପଦରୁ ରକ୍ଷା କରିପାରିବ । ଛାତ୍ରସମାଜ ଦେଶର ସୁଦୃଢ଼ ମେରୁଦଣ୍ଡ । ସାମାନ୍ୟ ଟିକିଏ ଚହଲି ଗଲେ ଦେଶ ହେବ ଖଣ୍ଡ ବିଖଣ୍ଡିତ । ମାତ୍ର ସେହିମାନଙ୍କର ସାଧୁ ଉଦ୍ୟମ ଦେଶକୁ ଏକତାର ପାଶରେ ଆବଦ୍ଧ କରିପାରିବ । ସମସ୍ତ ବିପଦରୁ ଦେଶକୁ ରକ୍ଷା କରିପାରିବ । ଏହି କାରଣରୁ ଜାତୀୟ ଜରୁରୀକାଳୀନ ପରିସ୍ଥିତି ସମୟରେ ସମଗ୍ର ଛାତ୍ରସମାଜ ଏକଜୁଟ ହୋଇ ଗଠନମୂଳକ ସାହାଯ୍ୟ ଏବଂ ସହଯୋଗ କରିପାରିଲେ ଦେଶର ସଙ୍କଟ ଅଚିରେ ଦୂର ହୋଇପାରିବ ।



# ଯୁବ ଓ ଛାତ୍ର ଆନ୍ଦୋଳନ

(ଉପକ୍ରମ, ଯୁବ ଓ ଛାତ୍ର ଆନ୍ଦୋଳନର ପୃଷ୍ଠଭୂମି, ବିଶ୍ୱ ତଥା ଭାରତରେ ଏହି ଆନ୍ଦୋଳନ, ଆନ୍ଦୋଳନର କେତେକ କାରଣ, ସମାଧାନର କେତେକ ଦିଗ, ଉପସଂହାର)

ଯୁବ ଓ ଛାତ୍ର ମଧ୍ୟରେ ବିଶେଷ କିଛି ପାର୍ଥକ୍ୟ ନାହିଁ । ସମୟର ଏକ ସ୍ରୋତରୁ ହିଁ ଉଭୟର ଆବିର୍ଭାବ । ଯେଉଁମାନେ ଶିକ୍ଷାନୁଷ୍ଠାନରେ ଅଧ୍ୟୟନର ସୁଯୋଗ ପାଇଲେ, ସେମାନେ ହେଲେ ଛାତ୍ର ପଦବାଚ୍ୟ । ଯେଉଁମାନେ ଆର୍ଥିକ ବା ଅନ୍ୟକୌଣସି କାରଣରୁ ଶିକ୍ଷାନୁଷ୍ଠାନ ସହିତ ସମ୍ପୃକ୍ତ ହୋଇ ନ ପାରିଲେ, ସେମାନେ ଛାତ୍ରର ସଂଜ୍ଞା ଲାଭ କରିପାରିଲେ ନାହିଁ । ମାତ୍ର ବୟସ, ଆଭିମୁଖ୍ୟ ଓ ଲକ୍ଷ୍ୟ ଦିଗରୁ ଉଭୟ ଗୋଷ୍ଠୀ ସମାନ । ଯୁବଗୋଷ୍ଠୀ କହିଲେ ହିଁ ଛାତ୍ରଗୋଷ୍ଠୀ ସ୍ୱତଃସ୍ଫୂର୍ତ୍ତ ଭାବେ ତା'ର ଅନ୍ତର୍ଭୁକ୍ତ ହୋଇପାରିବ । ଯେକୌଣସି ଦେଶରେ ଏହି ଗୋଷ୍ଠୀ ସର୍ବଶକ୍ତିମାନ ଗୋଷ୍ଠୀ ରୂପେ ପରିଗଣିତ । ସମୟ ସ୍ରୋତରେ ମଣିଷ ଜୀବନରେ ଯୌବନ ଆସେ ଏବଂ ଏହି ବୟସ ସର୍ବଦା ନୂତନ କିଛି ସର୍ଜନ କରିବାର ସ୍ୱପ୍ନ ଦେଖେ । ତା' ଗତିପଥରେ ଦେଖାଦେଉଥିବା ବାଧାବନ୍ଧନକୁ ସେ ଭାଙ୍ଗି ଚୂରମାର କରିଦେବାକୁ ଇଚ୍ଛା ପ୍ରକାଶ କରେ । କାରଣ ଏହାହିଁ ହେଉଛି ତା' ବୟସର ଗୁଣ । ସମଗ୍ର ବିଶ୍ୱରେ ଆଜି ଯୁବ ବା ଛାତ୍ର ଆନ୍ଦୋଳନ ଏକ ସମସ୍ୟା ରୂପେ ମୁଣ୍ଡ ଟେକିଛି । ତା'ର ଗୁରୁତ୍ୱ ସମସ୍ତେ ଅନୁଭବ କରୁଛନ୍ତି । ଅଥଚ ପ୍ରତିକାର ପାଇଁ କେହି ଚେଷ୍ଟିତ ନୁହନ୍ତି । ଏହି କାରଣରୁ ଅନେକ ଜାତୀୟ ସମ୍ପତ୍ତି ନଷ୍ଟ ହେଉଛି । ଅନେକ ସମାଲୋଚନାର ଶରବ୍ୟ ହେଉଛନ୍ତି ଏହି ସମ୍ପ୍ରଦାୟ । ମାତ୍ର ତା'ର କାରଣ ଅନୁସନ୍ଧାନ କରିବାକୁ କେହି ଆନ୍ତରିକ ଉଦ୍ୟମ କରୁ ନାହାନ୍ତି । ଏହି ଚଳଚଞ୍ଚଳ ଓ ଶକ୍ତିମାନ ଉପ୍ଟିର ଭାବପ୍ରବଣ ମନକୁ ଥରେ ମଧ କେହି ପରୀକ୍ଷା କରିବାକୁ ଚେଷ୍ଟା କରୁନାହାନ୍ତି । ସେଥିପାଇଁ ଯୁବଆନ୍ଦୋଳନ ବିସ୍ଫୋରଣମୁଖୀ ହୋଇଉଠୁଛି । ବିସ୍ଫୋରଣ ପରେ ଯେଉଁ ପ୍ରତିକ୍ରିୟା ସୃଷ୍ଟି ହୁଏ ଏ ଦେଶର ଚିନ୍ତାଶୀଳ ଓ ରାଜନୀତିଜ୍ଞ ବ୍ୟକ୍ତିଙ୍କ ମନରେ; ତା'ର ପରିଣାମସ୍ୱରୂପ ସେମାନେ ଏହାକୁ ଏକ ଆନ୍ଦୋଳନର ରୂପରେଖ ଦେଇଥାନ୍ତି । ଅଥଚ ଆନ୍ଦୋଳନ ପୂର୍ବରୁ ଏହାର ଉପଶମ ପାଇଁ ଏମାନେ କୌଣସି ପଦକ୍ଷେପ ଗ୍ରହଣ କରି ନ ଥାନ୍ତି । ଯୁବ ଓ ଛାତ୍ର ଆନ୍ଦୋଳନ ସମୟର ଏକ ଆହ୍ୱାନ । ସମୟକୁ ବୁଝିବାକୁ ଚେଷ୍ଟା ନ କଲେ ଏହି ଆନ୍ଦୋଳନର ରୂପରେଖ କଳନା କରିବା କଷ୍ଟସାଧ୍ୟ ।

ପ୍ରତ୍ୟେକ ଆନ୍ଦୋଳନର ପୃଷ୍ଠଭୂମିରେ କିଛି ନା କିଛି କାରଣ ବିଦ୍ୟମାନ । ଯୁବ ସମ୍ପ୍ରଦାୟ ଚପଳ ଓ ଉନ୍ମାଦ । ମଧ୍ୟାହ୍ନର ମାର୍ତ୍ତଣ୍ଡ ପରି ସେମାନେ ତେଜବାନ । ବୟସର ସ୍ୱଳ୍ପତା ଯୋଗୁଁ ସାମାନ୍ୟ ବ୍ୟତିକ୍ରମ ସେମାନଙ୍କ ପକ୍ଷରେ ଅସହ୍ୟ । ସମାଜର ଅନାଚାର, ଅତ୍ୟାଚାର, ଦୁର୍ନୀତି, ଅସ୍ଥିରତା, ଶୋଷଣକୁ ସେମାନେ ବରଦାସ୍ତ କରିପାରନ୍ତି ନାହିଁ । ସାମାଜିକ ବୈଷମ୍ୟ ମଧ ସେମାନଙ୍କ ମନରେ ସୃଷ୍ଟି କରେ ପ୍ରତିକ୍ରିୟା । ମହତ୍ତର ସ୍ୱାର୍ଥ ବ୍ୟକ୍ତିସ୍ୱାର୍ଥ ପାଖରେ ବଳିପଡ଼ିଲେ ସେମାନେ ହୋଇଉଠନ୍ତି ରକ୍ତମୁଖା । ତେଣୁ ଯୁବ ବା ଛାତ୍ର ଆନ୍ଦୋଳନର ପଶ୍ଚାତରେ ସର୍ବଦା ରହିଛି ଶୋଷଣ, ଦୁର୍ନୀତି ଓ ସାମାଜିକ ଅସମତା । ଅଥଚ ବୟସ୍କ ବ୍ୟକ୍ତି ଯୁବସମ୍ପ୍ରଦାୟର ଏହି

ମାନସିକ ପ୍ରତିକ୍ରିୟାକୁ ବୁଝି ନ ପାରି ସେମାନଙ୍କୁ ଉଚ୍ଛୃଙ୍ଖଳ ବୋଲି କୁହେ; କଟୁ ସମାଲୋଚନା କରେ । ସାମାଜିକ ସଂସ୍କାର ଉଦ୍ଦେଶ୍ୟରେ ହିଁ ସେମାନଙ୍କର ଆନ୍ଦୋଳନ । ପୁରୁଣା ଭାଙ୍ଗି ନୂଆ ଗଢ଼ିବାକୁ ସେମାନେ ବଦ୍ଧପରିକର । ନିର୍ଭୀକଭାବରେ କ୍ଷମତାଶାଳୀ ବ୍ୟକ୍ତିର ଦୁର୍ନୀତି ଓ ଅନ୍ୟାୟକୁ ମଧ୍ୟ ସେ ପଦାରେ ପ୍ରକାଶ କରିଦିଏ । ସେ ଦୁର୍ଦ୍ଦମ, ଅନ୍ୟାୟ ବିରୋଧରେ ସଂଗ୍ରାମ କରିବାକୁ ତା'ର ଜନ୍ମ । ଯେଉଁ ମହତ୍ତର ଆଦର୍ଶ ନେଇ ସେ ଜନ୍ମଲାଭ କରିଛି, ସେହି ଆଦର୍ଶର ସାମାନ୍ୟତମ ଅବହେଳାକୁ ସେ ସହ୍ୟ କରିପାରେନା । ଏହାହିଁ ତା'ର ବିଶେଷତ୍ୱ । ଏଥିପାଇଁ ତାକୁ ଯେତେ ମୂଲ୍ୟ ଦେବାକୁ ପଡୁନା କାହିଁକି, ସେଥିରେ ସେ ତିଳେମାତ୍ର ଭ୍ରୂକ୍ଷେପ କରେ ନାହିଁ । ସ୍ରୋତର ପ୍ରତିକୂଳରେ ଯିବା ତା'ର ଧର୍ମ । ଆଜି ସେ ଅନୁଭବ କରୁଛି ରାଜନୀତିକ ନେତାମାନଙ୍କର ଶଠତା; ଆଖିରେ ଦେଖିଛି କଳାବଜାରୀମାନଙ୍କର କାରସାଦି, ଅଙ୍ଗେ ଲିଭାଉଛି କ୍ଷମତାଶାଳୀ ବ୍ୟକ୍ତିମାନଙ୍କର ଅନ୍ୟାୟ ଓ ଅତ୍ୟାଚାର । ଦେଶସେବା ଓ ଜନସେବା ନାମରେ ଯେଉଁ ବ୍ୟକ୍ତିସେବାର ଯଜ୍ଞ ଅନୁଷ୍ଠିତ ହେଉଛି; ସେଥିରେ ବଳି ପଡୁଛନ୍ତି ଲକ୍ଷ ଲକ୍ଷ ଜନସାଧାରଣ । ସେ ମଧ୍ୟ ପ୍ରତ୍ୟକ୍ଷ କରୁଛି ତା'ରି ପରି ଶହଶହ ଯୁବକ ପାଠ ପଢ଼ି ବେକାର ହୋଇ ବସିଛନ୍ତି । ଏହି ଅସମାନତା, ପକ୍ଷପାତ ନୀତି, ଦୁର୍ନୀତି ତାକୁ ଆନ୍ଦୋଳନ କରିବାକୁ ବାଧ କରୁଛି । ଆନ୍ଦୋଳନ ମାଧ୍ୟମରେ ନିଜର ହକ୍ ଆଦାୟ କରିବାକୁ ସେ ମନସ୍ଥ କରୁଛି । ଏହିପରି ସାମାଜିକ ବୈଷମ୍ୟରୁ ଭାରତ କାହିଁକି ସମଗ୍ର ବିଶ୍ୱରେ ଯୁବ ଆନ୍ଦୋଳନର ସୂତ୍ରପାତ୍ର ହୋଇଛି ଓ ତା'ର ପରିଣାମ ସମଗ୍ର ସମାଜ ଭୋଗ କରିବାକୁ ବାଧ ହେଉଛି ।

ବିଶ୍ୱ ଏବଂ ଭାରତରେ ସର୍ବଦା ପ୍ରଶାସନିକ ସ୍ଥାଣୁତା, ସାମ୍ରାଜ୍ୟବାଦୀ ମନୋଭାବ, ସ୍ୱେଚ୍ଛାଚାର ଓ ଅନ୍ୟାୟ, ଦୁର୍ନୀତି ବିରୋଧରେ ଯୁବଗୋଷ୍ଠୀ ଆନ୍ଦୋଳନ କରି ଆସିଛନ୍ତି । ବିଂଶ ଶତକରେ ଚୀନ୍‌ର ତିଆନ୍‌ନମେନ୍‌ଠାରେ ଶାସକ ଗୋଷ୍ଠୀଙ୍କ ଅନ୍ୟାୟ ଓ ସ୍ୱେଚ୍ଛାଚାର ବିରୋଧରେ ଛାତ୍ରମାନେ ଯେଉଁ ସଙ୍ଗଠିତ ବିପ୍ଳବ କଲେ, ତାହା ଇତିହାସର ପୃଷ୍ଠାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଗଲା । ପାକିସ୍ଥାନ, ଇଣ୍ଡୋନେସିଆ, ଫ୍ରାନ୍‌ସ, ଇଜିପ୍‌ଟ, ଇସ୍ରାଏଲ, ଇଂଲଣ୍ଡ ଆଦି ଦେଶରେ ମଧ୍ୟ ଛାତ୍ର ପ୍ରଶାସନିକ ଅନ୍ୟାୟ ଅନୀତି ଓ ଶୋଷଣ ବିରୁଦ୍ଧରେ ତୀବ୍ର ଆନ୍ଦୋଳନ କରୁଛନ୍ତି । ସ୍ୱାଧୀନତା ପୂର୍ବରୁ ଭାରତରେ ସାମ୍ରାଜ୍ୟବାଦୀଙ୍କ ବିରୋଧରେ ଏ ଦେଶର ଛାତ୍ର ଓ ଯୁବସମାଜ ଆନ୍ଦୋଳନ କରିଥିଲେ । ବାଘାଯତୀନ୍, ଭଗତ୍‌ସିଂ, ଜବାହରଲାଲ ନେହେରୁ, ସର୍ଦ୍ଦାର ପଟେଲ, ସୁଭାଷବୋଷ ଆଦି ଯୁବକ ଏ ଦେଶରୁ ଇଂରେଜ ଶାସନର ବିଲୋପ ପାଇଁ ଆନ୍ଦୋଳନ କରି କେତେକ ଶହୀଦ ହୋଇଛନ୍ତି ଓ ଆଉ କେତେକ ଶେଷପର୍ଯ୍ୟନ୍ତ ସଂଗ୍ରାମରତ ରହି ଇଂରେଜ ଶାସନର ମୂଳୋତ୍ପାଟନ କରିଛନ୍ତି । କଳଙ୍କିଲଗା ପୁରୁଣା ବିରୋଧରେ ଯୁଗେ ଯୁଗେ ନୂତନତାର ପ୍ରତିଷ୍ଠା ପାଇଁ ଯୁବସମ୍ପ୍ରଦାୟର ସଂଗ୍ରାମ ଇତିହାସରେ ଲିପିବଦ୍ଧ । ସ୍ୱାଧୀନତା ପରେ ଭାରତରେ ଯୁବସମ୍ପ୍ରଦାୟ ଆନ୍ଦୋଳନ କରିଛି, କ୍ଷମତାଲିପ୍‌ସୁ, ଦୁର୍ନୀତି, କଳାବଜାରୀ ଓ ସ୍ଥାଣୁ ପ୍ରଶାସନ ବିରୋଧରେ । ଯୁବଶକ୍ତିପରି ଅଖଣ୍ଡ ଦୀପଶିଖାକୁ ସ୍ୱାର୍ଥପରଗୋଷ୍ଠୀ ଯେତେ ନିର୍ବାପିତ କରିବାକୁ ଚାହିଁଲେ ମଧ୍ୟ ଅନିର୍ବାଣ ଦୀପଶିଖା ପରି ସେ ଜଳିଉଠୁଛି । ଆଜି ଦଳ ମଧ୍ୟରେ ଚାଲିଛି କ୍ଷମତା

ପାଇଁ ସଂଘର୍ଷ । ଏହି ସଂଘର୍ଷରେ ବଳି ପଡୁଛନ୍ତି ଏ ଦେଶର ନିରୀହ ଜନସାଧାରଣ । ଏମାନେ କେବଳ ଓଟଭଳି ଭାର ବହନ କରି ଚାଲିଛନ୍ତି । ପ୍ରତିବାଦ କରିବାର ସାହସ ନାହିଁ । ଦେଶ ସମ୍ପର୍କରେ ଚିନ୍ତା କରିବାର ଜ୍ଞାନ ନାହିଁ । ଭବିଷ୍ୟତକୁ ଗଢ଼ିବାର ସ୍ୱପ୍ନ ମଧ୍ୟ ନାହିଁ । ସରକାରୀ ପଦପଦବୀର ଅମର୍ଯ୍ୟାଦା କରି ଯେଉଁମାନେ ସମ୍ପଦ ଠୁଳ କରୁଛନ୍ତି, ସାଧାରଣ ଲୋକଙ୍କ ବିଷୟରେ ଚିନ୍ତା କରିବାକୁ ତାଙ୍କର ସମୟ ବା କାହିଁ ? ଏପରି ଅବସ୍ଥାରେ ଯୁବସମ୍ପ୍ରଦାୟ ନିରବ ହୋଇ ବସିଲେ ଦେଶ ରସାତଳଗାମୀ ହେବ । ପ୍ରଗତିର ପଥ ରୁଦ୍ଧ ହୋଇପଡ଼ିବ । ଆଜି ଏହି କାରଣରୁ ଭାରତରେ ଯୁବ ଆନ୍ଦୋଳନ ଦେଖାଦେଇଛି ଓ ତା'ର ପ୍ରତିକ୍ରିୟା ଚାରିଆଡ଼େ ଅନୁଭୂତ ହେଉଛି ।

ଭାରତରେ ଯୁବ ଆନ୍ଦୋଳନ ପଛରେ ବିବିଧ କାରଣ ବିଦ୍ୟମାନ । ସ୍ୱାଧୀନତା ସଂଗ୍ରାମ ସମୟରେ ଏ ଦେଶର ଯୁବସମ୍ପ୍ରଦାୟ ସ୍ୱପ୍ନ ଦେଖିଥିଲେ, ଭାରତୀୟମାନଙ୍କ ହାତରେ ଭାରତର ଶାସନ କ୍ଷମତା ରହିଲେ ଦେଶରୁ ଅରାଜକତା ଦୂର ହୋଇଯିବ । ଘିଅ ଓ ମହୁରେ ଦେଶ ଭାସିବ । ଅନ୍ତତଃ ସବୁ ମଣିଷ ଗଣ୍ଡିଏ ଖାଇବାକୁ ଓ ଖଣ୍ଡିଏ ପିନ୍ଧିବାକୁ ପାଇବେ । ସାମ୍ରାଜ୍ୟବାଦୀଙ୍କ ଅତ୍ୟାଚାର ଆଉ ସହିବାକୁ ପଡ଼ିବ ନାହିଁ । ସ୍ୱାଧୀନ ଦେଶର ସନ୍ତାନ ଭାବରେ ଦେଶର ପ୍ରଗତି ଦେଖି ସମସ୍ତେ ଗର୍ବ କରିବେ, ଉତ୍‌ଫୁଲ୍ଲିତ ହେବେ । ସ୍ୱାଧୀନତା ଆସିଲା । ଅନ୍ଧକାର ରାତ୍ରିର ଅବସାନ ଘଟିଲା । ମାତ୍ର ଦେଶର କୌଣସି ଗୁଣାତ୍ମକ ପରିବର୍ତ୍ତନ ହେଲା ନାହିଁ । ''ନୂଆ ବୋତଲରେ ପୁରୁଣା ମଦ'' ନ୍ୟାୟରେ ଇଂରେଜ ଶାସକମାନଙ୍କର ଶାସନ ପଦ୍ଧତିକୁ ଭାରତୀୟମାନେ ଅନ୍ଧାନୁସରଣ କରିବାକୁ ଲାଗିଲେ । ଇଂରେଜମାନେ ଭାରତରୁ ସମ୍ପଦ ନେଇ ଇଂଲଣ୍ଡରେ ଠୁଳ କରୁଥିଲେ । ଭାରତର ପ୍ରଶାସନ କ୍ଷମତାରେ ଯେଉଁ ଭାରତୀୟ ରହିଲେ, ସେମାନେ ଦେଶର ସମ୍ପଦକୁ ନିଜ ଘରେ ନେଇ ଠୁଳ କଲେ । ଦେଶସେବା ନାମରେ ବ୍ୟକ୍ତିସେବା ମୁଖ୍ୟ ହୋଇଉଠିଲା । ଶୋଷଣରେ ଦାନବ ନିରୀହ ଭାରତୀୟମାନଙ୍କୁ ଗ୍ରାସ କରିବାରେ ଲାଗିଲା । ନିଜ ରକ୍ତକୁ ଶୋଷଣ କରି ପ୍ରଶାସକମାନେ ପରିପୁଷ୍ଟ ହେ୍ବାକୁ ଲାଗିଲେ । ନିର୍ବାଚନ ସମୟ ବ୍ୟତୀତ ରାଜନୀତିକ ନେତାମାନଙ୍କର ଅନ୍ୟ ସମୟରେ ଜନସାଧାରଣଙ୍କ ସହିତ ସମ୍ପର୍କ ରହିଲା ନାହିଁ । ସାମାଜିକ ବୈଷମ୍ୟ ବୃଦ୍ଧି ପାଇବାକୁ ଲାଗିଲା । ଗରିବ ହେଲା ଅଧିକ ଗରିବ । ଧନୀର ଧନ ବୃଦ୍ଧି ପାଇବାକୁ ଲାଗିଲା । ସମାଜରେ ପୁଣି ଧନୀ ଦରିଦ୍ର ବୈଷମ୍ୟ ସୃଷ୍ଟି ହେଲା । ଅନ୍ୟାୟ ବିରୋଧରେ ସ୍ୱର ଉତ୍ତୋଳନ କରୁଥିବା ବ୍ୟକ୍ତିବିଶେଷଙ୍କର ସ୍ୱରକୁ ପୁଲିସ ଦ୍ୱାରା ବା ଗୁଣ୍ଡାମାନଙ୍କ ଦ୍ୱାରା ଧିମାଇ ଦିଆଗଲା । ଶିକ୍ଷିତ ଯୁବକ ପାଠ ପଢ଼ିସାରିବା ପରେ ଅନୁଭବ କଲା ତା'ପାଇଁ ଚାକିରିର ସମସ୍ତ ଦ୍ୱାର ରୁଦ୍ଧ । ଦୀର୍ଘଦିନଧରି ଶିକ୍ଷାନୁଷ୍ଠାନରେ ସେ ଯେଉଁ ସମୟ ବ୍ୟୟ କଲା, ତା'ର କୌଣସି ମୂଲ୍ୟ ନାହିଁ । ତା'ଠାରୁ କମ୍ ଯୋଗ୍ୟତାସମ୍ପନ୍ନ ବ୍ୟକ୍ତି ଚାକିରି ପାଉଥିବା ସମୟରେ ତା'ପାଇଁ ସର୍ବନିମ୍ନ ଚାକିରି ଖାଲି ନାହିଁ । ନିଜର ଜୀବନ ଧାରଣ ପାଇଁ ଖୋରାକ ଯୋଗାଡ଼ର କ୍ଷମତା ମଧ୍ୟ ତା'ର ନାହିଁ । ତା' ଶିକ୍ଷାର ମର୍ଯ୍ୟାଦା କେଉଁଠାରେ ନାହିଁ । ସ୍ୱାଧୀନ ଭାବରେ ଜୀବନ ଅତିବାହିତ କରିବାକୁ ଶିକ୍ଷା ମାର୍ଗ ପ୍ରଦର୍ଶନ କରିଥାଏ । ଅଥଚ ସାମ୍ପ୍ରତିକ ଶିକ୍ଷା ତା' ମନରେ ସୃଷ୍ଟି କରୁଛି ସଂଶୟ । ନିଜ ଉପରୁ ବିଶ୍ୱାସ ହରାଇ ସେ ମ୍ରିୟମାଣ ହୋଇପଡୁଛି । ସବୁଆଡ଼େ ସେ ଅନୁଭବ

କରୁଛି ଦୁର୍ନୀତିର ଚେର ତଳକୁ ତଳ ମାଡ଼ିଯିବାରେ ଲାଗିଛି । ଏପରି ପରିସ୍ଥିତିରେ ସେ ବିଦ୍ରୋହୀ ହେବା ସ୍ୱାଭାବିକ । ଅର୍ଥର ଘୋଡ଼ାଦୌଡ଼ରେ ପଛରେ ପଡ଼ିଯାଇ ନିଜର ଜୀବିକା ହରାଉଥିବାରୁ ପ୍ରତିକ୍ରିୟାଶୀଳ ହେବା ଅସ୍ୱାଭାବିକ ନୁହେଁ । ଆଜି ଭାରତରେ ବିଶେଷ ଭାବରେ ଏହି କାରଣରୁ ଯୁବ ବା ଛାତ୍ର ଆନ୍ଦୋଳନ ଦେଖାଯାଉଛି । ଅଥଚ ଯେଉଁମାନେ ଏହାର ପ୍ରକୃତ କାରଣ ଜାଣିପାରୁ ନାହାନ୍ତି ସେମାନେ ଯୁବସମ୍ପ୍ରଦାୟକୁ ଉଦ୍‌ଭ୍ରାନ୍ତ ବୋଲି କହୁଛନ୍ତି । ସେମାନଙ୍କର ଉଦଭ୍ରାନ୍ତ ମୂଳରେ ରହିଛି ସାମ୍ପ୍ରତିକ ରାଜନୀତିକମାନଙ୍କର ଶଠତା, ସମାଜର ଶୋଷଣ, ଅନ୍ୟାୟ ଓ ଦୁର୍ନୀତି । ନିଜର ଦାବି ପୂରଣ ଉଦ୍ଦେଶ୍ୟରେ ସେମାନଙ୍କର ଆଜି ଏହି ଆନ୍ଦୋଳନ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଓ ସମୟୋଚିତ ।

ଆଜିର ଏହି ଯୁବ ବା ଛାତ୍ର ଆନ୍ଦୋଳନର ସମାଧାନ ନିମିତ୍ତ ସବୁ ସ୍ତରରେ ଉଦ୍ୟମ ହେବା ଆବଶ୍ୟକ । ଏହି ଆନ୍ଦୋଳନ ପଛରେ ଯେଉଁ ଯୁକ୍ତି ରହିଛି, ସରକାର ତାହା ସହାନୁଭୂତିର ସହିତ ବିଚାର କରିବା ଉଚିତ । ପ୍ରଥମେ ଦେଶର ନେତାଗଣ ଯେଉଁ ପ୍ରତିଶ୍ରୁତି ଦେଇ କ୍ଷମତାର ଅଳିନ୍ଦରେ ପ୍ରବେଶ କରୁଛନ୍ତି, ଅଗ୍ରାଧିକାର ଭିତ୍ତିରେ ତାହା ପୂରଣ କରିବା ବାଞ୍ଛନୀୟ । ସ୍ୱାଧୀନତା ପରେ ରାମରାଜ୍ୟର ସ୍ୱପ୍ନ ବିଡ଼ମ୍ବିତ ହୋଇପଡ଼ିଛି । ସେହି ସ୍ୱପ୍ନକୁ ସାକାର କରିବା ପାଇଁ ସରକାର ସର୍ବମନ୍ତେ ଉଦ୍ୟମ ଜାରି ରଖିବା ଆବଶ୍ୟକ । ଆଜି ଆମ ସମାଜରେ ଯେଉଁ ଧନୀ ଦରିଦ୍ର ଶ୍ରେଣୀ ବୈଷମ୍ୟ ସୃଷ୍ଟି ହୋଇଛି, ତା'ର ମୂଳୋତ୍ପାଟନ ନିମିତ୍ତ ସମୟୋଚିତ ପଦକ୍ଷେପ ଗ୍ରହଣ କରାଯିବା ବାଞ୍ଛନୀୟ । ଯୁବ ସମ୍ପ୍ରଦାୟଙ୍କ ଭାବପ୍ରବଣ ମନୋବୃତ୍ତିକୁ ସମ୍ମାନ ପ୍ରଦର୍ଶନପୂର୍ବକ, ଯୋଗ୍ୟତାନୁଯାୟୀ ସେମାନଙ୍କୁ ବିଭିନ୍ନ ପଦପଦବୀରେ ଅଧିଷ୍ଠିତ କଲେ ଆନ୍ଦୋଳନ କରିବାର ଆବଶ୍ୟକତା ରହିବ ନାହିଁ । ଆଜି ଦୁର୍ନୀତି ସବୁସ୍ତରରେ ପ୍ରବେଶ କରିଛି । ସରକାରୀ, ବେସରକାରୀ ଉଦ୍ୟୋଗମାନଙ୍କରେ ଏହା ଏପରି ସ୍ତରକୁ ଗତି କରୁଛି, ତା'ର ମୂଳ ଜାଣିବା କାଠିକର ବ୍ୟାପାର । ଦୁର୍ନୀତି ବିରୋଧରେ କେବଳ ସ୍ଲୋଗାନ ଦେଲେ ଚଳିବ ନାହିଁ । ବରଂ ସଚେତନ ଭାବରେ ଏହାର ବିଲୋପ ପାଇଁ ପଦକ୍ଷେପ ଗ୍ରହଣ କରାଗଲେ ତାହାହିଁ ହେବ ଆଶା ଆଶ୍ୱାସନାର ବିଷୟ । ଦୁର୍ନୀତିପରାୟଣ ବ୍ୟକ୍ତି, ବ୍ୟବସାୟୀ, ଚାକିରିଆ, ରାଜନୀତିକ ନେତା—ସମସ୍ତଙ୍କ ଆଖି ଖୋଲିଦେବାକୁ ପଡ଼ିବ । ଏ କ୍ଷେତ୍ରରେ ଯୁବସମ୍ପ୍ରଦାୟର ସାହାଯ୍ୟ ଓ ସହଯୋଗ ଏହି ପଦକ୍ଷେପକୁ ଅଧିକ ତ୍ୱରାନ୍ୱିତ କରିବ । ପ୍ରିୟାପ୍ରୀତିତୋଷଣ ନୀତିକୁ ବିଲୋପ କରିବାକୁ ହେବ । ଯୋଗ୍ୟ ବ୍ୟକ୍ତିର ବ୍ୟକ୍ତିତ୍ୱକୁ ସମ୍ମାନ କରି ତା'ର ନ୍ୟାଯ୍ୟ ଦାବି ତାକୁ ଫେରାଇ ଦେବାକୁ ପଡ଼ିବ । ଅର୍ଥର ସୁଷମ ବଣ୍ଟନ ଶ୍ରେଣୀ ବୈଷମ୍ୟ ଲୋପ ଦିଗରେ ସହାୟତା କରିପାରିବ । ଯୁବଆନ୍ଦୋଳନର ମୁଖ୍ୟ ଉଦ୍ଦେଶ୍ୟ ସଦ୍ଭାବ ଓ ଶାନ୍ତି ପ୍ରତିଷ୍ଠା, ଦୁର୍ନୀତିର ବିଲୋପ, ଯୋଗ୍ୟତାର ସମ୍ମାନ ଏବଂ ଜନସାଧାରଣଙ୍କ ଆଶା-ଆକାଂକ୍ଷା ପୂରଣ । ସରକାରୀ ଏବଂ ବେସରକାରୀ ସ୍ତରରେ ଯୁବ ସମସ୍ୟାର ସମାଧାନ ପାଇଁ ଉଦ୍ୟମ ହେଲେ ତାହା ଆଉ ଏକ ସମସ୍ୟା ହୋଇ ଦେଖାଦେବ ନାହିଁ ।

ଯୁବସମସ୍ୟାର ସମାଧାନ ଦ୍ୱାରା ଦେଶର ପ୍ରଗତି ତ୍ୱରାନ୍ୱିତ ହେବ । ଭବିଷ୍ୟତକୁ ଧ୍ୱଂସମୁଖକୁ ଛାଡ଼ିଦେଲେ ଦେଶ ମଧ୍ୟ ଧ୍ୱଂସ ହୋଇଯିବ । ଯୁବକମାନେ ରାଷ୍ଟ୍ରର ସବୁଠାରୁ ବଡ଼

ଶକ୍ତି । ସେମାନଙ୍କର ଗୁରୁତ୍ୱ ଉପଲବ୍ଧି କରି ସରକାର ଯଥାଶୀଘ୍ର ଆଶୁ ପଦକ୍ଷେପ ଗ୍ରହଣ କରିବା ଆବଶ୍ୟକ । ସେମାନଙ୍କ ସମସ୍ୟାର ସମାଧାନ ଉପରେ ଦେଶର ଶାନ୍ତି ଓ ସଂହତି ନିର୍ଭର କରେ । ସେହିମାନେ କେବଳ ଅବକ୍ଷୟ ସମାଜ, ଶୋଷଣ, ଭ୍ରଷ୍ଟାଚାର, ସନ୍ତ୍ରାସବାଦ ବିରୋଧରେ ଫଳପ୍ରଦ ସଂଗ୍ରାମ କରିପାରିବେ । ଯୁବଶକ୍ତି ଦେଶର ଜାତୀୟ ସମ୍ପଦ । ଏହି ସମ୍ପଦକୁ ଯେତେ ପରିମାଣରେ ସୁରକ୍ଷିତ କରାଯାଇପାରିବ; ଦେଶର ସେତେ ମଙ୍ଗଳ । ଆଜି ଏହା ଯେ ଏକ ସାମାଜିକ ସମସ୍ୟାରେ ପରିଣତ ହୋଇଛି, ଅସ୍ୱୀକାର କରାଯାଇ ନ ପାରେ । ବର୍ତ୍ତମାନ ଏହି ସମସ୍ୟାର ସମାଧାନ ଏକ ଜାତୀୟ କର୍ତ୍ତବ୍ୟର ରୂପରେଖ ଗ୍ରହଣ କରିବା ଆବଶ୍ୟକ ।



## ଛାତ୍ର ଜୀବନରେ ଆଧ୍ୟାତ୍ମିକ ଓ ନୈତିକ ଶିକ୍ଷା

**(ଉପକ୍ରମ, ସାମ୍ପ୍ରତିକ ବିଶ୍ୱରେ ଆଧ୍ୟାତ୍ମିକ ଓ ନୈତିକ ଶିକ୍ଷାର ଆବଶ୍ୟକତା, ବସ୍ତୁବାଦୀ ଶିକ୍ଷାର ବିପରୀତ ଦିଗ, ଛାତ୍ର ଜୀବନରେ ଆଧ୍ୟାତ୍ମିକ ଓ ନୈତିକ ଶିକ୍ଷା, ଉପସଂହାର)**

ବିଂଶ ଶତାବ୍ଦୀ ବିଜ୍ଞାନର ଯୁଗ । ଏହି ଯୁଗ ମଣିଷକୁ ନୂତନ ଆଲୋକ ପ୍ରଦାନ କରିଛି । ତା'ର ଦୃଷ୍ଟିଭଙ୍ଗୀକୁ ପ୍ରସାରିତ କରିଛି । ମାତ୍ର ମଣିଷ ମନରୁ କାଢ଼ିନେଇଛି ଦୟା, ପ୍ରେମ, ଶାନ୍ତି ଓ କ୍ଷମା । ମଣିଷ ଆଜି ଦେହରେ ମଣିଷ, ମନରେ କିନ୍ତୁ ଅସୁର । ଆସୁରିକଶକ୍ତି ମଣିଷକୁ ପ୍ରବଳ ଭାବରେ ଆକ୍ରାନ୍ତ କରିଛି । ସେ ଆଜି ଅନ୍ୟମାନଙ୍କ ପାଇଁ ବଞ୍ଚୁ ନାହିଁ; ବଞ୍ଚୁଛି ନିଜ ପାଇଁ । ଭାରତର ମହାନ ପରମ୍ପରା ଆଜି ବିଡ଼ମ୍ବିତ । ସନ୍ଦେହ ଓ ଅବିଶ୍ୱାସର କୁହେଳି ଚତୁର୍ଦ୍ଦିଗରେ ଆଚ୍ଛନ୍ନ । ସେଥିପାଇଁ ମାନବସମାଜ ଅଣନିଃଶ୍ୱାସୀ ହୋଇପଡୁଛି । ବଞ୍ଚିବାର ରାହା ଖୋଜି ପାଉ ନାହିଁ । କ୍ଷମତା ଓ ପ୍ରାଚୁର୍ଯ୍ୟ ତାକୁ ଶାନ୍ତି ଦେଇପାରୁ ନାହିଁ । ନିଜର ଦୁଃଖ ଓ ଅନୁଭବକୁ ଅନ୍ୟ ନିକଟରେ ପ୍ରକାଶ କରିପାରୁ ନାହିଁ । ଅହଂ ଭିତରେ ବୁଡ଼ୁବୁଡ଼ୁ ମଣିଷ ଭୁଲିଯାଇଚି ମାନବୀୟ ଭାବଧାରାକୁ । ଆଶା ତା'ର ଅସୀମ; ମାତ୍ର ଶକ୍ତି କ୍ଷୀଣ । ସବୁଆଡ଼େ କେମିତି ହଜାଇଲା ଭାବ ତାକୁ ବିଭ୍ରାନ୍ତ କରୁଛି । ଜଡ଼ବାଦୀ ସଭ୍ୟତାର ମୋହରେ ସେ ଭୁଲିଯାଇଛି ନିଜର ବ୍ୟକ୍ତିସତ୍ତାକୁ । ଏପରି ସ୍ଥଳେ ଶାନ୍ତି ତା' ନିକଟରେ ସୁଦୂର ପରାହତ । ପ୍ରାଚୁର୍ଯ୍ୟର ଗାଦି ତାକୁ ବାରୁଦ ସ୍ତୂପପରି ମନେ ହେଉଛି । ସେ ଆଜି ବିଭ୍ରାନ୍ତ । ମୁକ୍ତି ପାଇବାର ପଥ ତା'ର ରୁଦ୍ଧ । ଏହି କାରଣରୁ ଆଜି ପୁଣି ଆବଶ୍ୟକତା ରହିଛି ଆଧ୍ୟାତ୍ମିକ ଓ ନୈତିକ ଶିକ୍ଷାର । ଆଜିର ଛାତ୍ର ଉପରେ ଆସନ୍ତାକାଲି ଦେଶ ଗଠନର ଭାର ନ୍ୟସ୍ତ ହେବାକୁ ଥିବାରୁ, ବର୍ତ୍ତମାନ ତା'ପାଇଁ ଆଧ୍ୟାତ୍ମିକ ଓ ନୈତିକ ଶିକ୍ଷାର ଆବଶ୍ୟକତା ରହିଛି । ଏହି ଶିକ୍ଷା ଦ୍ୱାରା ସେ ହୋଇପାରିବ ସଂଯତ ଓ ଶୃଙ୍ଖଳିତ । ଆତ୍ମାର ପ୍ରକୃତ ସତ୍ତା ଉପଲବ୍ଧି

କରିବାକୁ ସମର୍ଥ ହେବ । ଦେଶକୁ ଶୃଙ୍ଖଳିତ ମାର୍ଗରେ ଗତି କରାଇବାକୁ କ୍ଷମ ହେବ । ସେଥିପାଇଁ ଛାତ୍ର ଜୀବନରେ ଆଧ୍ୟାତ୍ମିକ ଓ ନୈତିକ ଶିକ୍ଷାର ଗୁରୁତ୍ୱ ରହିଛି ।

ସାମ୍ପ୍ରତିକ ବିଶ୍ୱ ବାରୁଦସ୍ତୂପ ଉପରେ ଦଣ୍ଡାୟମାନ । ଯେ କୌଣସି ମୁହୂର୍ତ୍ତରେ ବିସ୍ଫୋରଣ ହେବାର ସମ୍ଭାବନା ରହିଛି । ବସ୍ତୁବାଦୀ ସଭ୍ୟତାଦ୍ୱାରା ବର୍ତ୍ତମାନର ବିଶ୍ୱ ଏପରି ମୋହାଚ୍ଛନ୍ନ ଯେ ନିଜ ଅନ୍ତରର ଆହ୍ୱାନକୁ ଶୁଣିବାକୁ ତା'ର ବେଳ ନାହିଁ । ଏହା ସତ୍ତ୍ୱେ ଜୀବନରେ ତା'ର ଶାନ୍ତି କାହିଁ ? ଆକାଶରେ ଉଡୁଛି, ପାଣିରେ ବୁଡୁଛି, ଅସମ୍ଭବକୁ ସମ୍ଭବ କରିଛି ବୋଲି ମନରେ ତା'ର ଗର୍ବର ସୀମା ନାହିଁ । ଏହା ସତ୍ତ୍ୱେ ସେ ବିଷାଦ ଓ ଅବସାଦଗ୍ରସ୍ତ । ନୀତିହୀନତାର ଆଶ୍ରୟ ନେଇ ସମ୍ପଦ ଠୁଳ କରିବାରେ ଲାଗିଛି । ମଣିଷମାରଣ ଯଜ୍ଞ ପାଇଁ ତିଆରି କରିଛି ମାରଣାସ୍ତ୍ର । ମାନବୀୟ ସମସ୍ତ ଗୁଣର ଅବସାନ ଘଟିଛି ତା' ଦେହରୁ । ହିଂସା, ଦ୍ୱେଷ. ପରଶ୍ରୀକାତରତା କବଳିତ କରିଛି ତା'ର ସମଗ୍ର ଶରୀର । ନୀତିହୀନତାକୁ ପାଥେୟ କରି ଜୀବନତରୀ ସେ ମେଲିଦେଇଛି ସଂସାର ସାଗରରେ । ଅତୀତରେ ମଣିଷ ପ୍ରଥମେ ବିଶ୍ୱ ବିଷୟ ଚିନ୍ତା କରୁଥିଲା । ମାତ୍ର ବର୍ତ୍ତମାନର ମଣିଷ ବିଶ୍ୱ ଧ୍ୱଂସ କରିବାକୁ ବଦ୍ଧପରିକର । ସାମ୍ରାଜ୍ୟବାଦୀ ମନୋବୃତ୍ତି ନେଇ ନିଜର ଆଧିପତ୍ୟ ଅନ୍ୟ ଉପରେ ବିସ୍ତାର କରିବାକୁ ଶପଥବଦ୍ଧ । ଏହାସତ୍ତ୍ୱେ ସେ ସର୍ବଦା ଅଶାନ୍ତ । ଏଥିପାଇଁ ସମ୍ପ୍ରତି ବିଶ୍ୱରେ ଆବଶ୍ୟକତା ହୋଇଛି ଆଧ୍ୟାତ୍ମିକ ଓ ନୈତିକ ଶିକ୍ଷାର । ଏହି ଶିକ୍ଷା ମଣିଷକୁ କରେ ସଂଯତ ଓ ଦୟାଶୀଳ । ମଣିଷ ହୃଦୟରେ ସୃଷ୍ଟି କରେ ଦୟା ଓ ପ୍ରେମଭାବ । ପଙ୍କିଳ ପରିବେଶରୁ ମଣିଷକୁ ଟାଣିଆଣେ ଏକ ଶୁଦ୍ଧ ଓ ମାର୍ଜିତ ପରିବେଶକୁ । ନୈତିକ ଶିକ୍ଷା ନୀତିବୋଧ ଉପରେ ଆଧାରିତ ହୋଇଥିବାରୁ ଉଦାର ଓ ମହାନ୍ ଭାବ ମଣିଷକୁ ପ୍ରେରଣା ଯୋଗାଏ ସମାଜର ସାମୂହିକ ମଙ୍ଗଳ ପାଇଁ । ଉଚ୍ଛୃଙ୍ଖଳ ମଣିଷକୁ କରେ ଶୃଙ୍ଖଳିତ । ଅଶାନ୍ତ ପରିବେଶକୁ ଶୁଦ୍ଧ ଓ ପବିତ୍ର କରିବାକୁ ଶୁଣାଏ ମାଙ୍ଗଳିକ ଧ୍ୱନି । ଆଧ୍ୟାତ୍ମିକ ଶିକ୍ଷା ବିଶ୍ୱ ଭ୍ରାତୃତ୍ୱ ନିମିତ୍ତ ପରିବେଶ ସୃଷ୍ଟି କରେ । ମାନବିକତାବୋଧ ଦ୍ୱାରା ସମଗ୍ର ଜଗତକୁ କରେ ଆପ୍ଲୁତ । ଆଧ୍ୟାତ୍ମିକ ଶିକ୍ଷା ମାନବଧର୍ମ ଉପରେ ବିଶ୍ୱାସ କରେ । ନୈତିକ ଶିକ୍ଷା ତ୍ୟାଗ ଏବଂ ତିତିକ୍ଷା ଉପରେ ଗୁରୁତ୍ୱ ଆରୋପ କରେ ଏବଂ ପାପାଚାର, ବ୍ୟଭିଚାର ଓ ଦୁର୍ନୀତିର କଣ୍ଠରୋଧ କରେ । ମଣିଷକୁ ମଣିଷପରି ବଞ୍ଚିବାକୁ ସୁଯୋଗ ଦିଏ । ପୃଥିବୀରୁ ଗର୍ବ, ହିଂସା, ଦ୍ୱେଷ ଦୂରକରି ଭ୍ରାତୃଭାବ, ସ୍ନେହ, ପ୍ରୀତି ଓ ସଦ୍ଭାବ ଆଦି ପୁନଃ ପ୍ରତିଷ୍ଠା କରିବାକୁ ହେଲେ ବର୍ତ୍ତମାନ ଆଧ୍ୟାତ୍ମିକ ଓ ନୈତିକ ଶିକ୍ଷାର ପ୍ରୟୋଜନ ରହିଛି ।

ବସ୍ତୁବାଦୀ ଶିକ୍ଷା ମଣିଷକୁ କରେ ଅହଂସର୍ବସ୍ୱ । ମଣିଷର ଚିରନ୍ତନ ମୂଲ୍ୟବୋଧକୁ ସେ ଅସ୍ୱୀକାର କରେ । ବୈଷୟିକ ଚିନ୍ତା ତାକୁ ଭୋଗବାଦୀ କରିବାକୁ ପ୍ରେରଣା ଦିଏ । ସେ ହୁଏ ଜଡ଼ବାଦୀ । ବ୍ୟକ୍ତିଗତ ସ୍ୱାର୍ଥ ତା' ନିକଟରେ ବଡ଼ ହୋଇ ଦେଖାଦିଏ । ଜାଗତିକ ସଂସାର ପ୍ରତି ମୋହଗ୍ରସ୍ତ ହୋଇ ଜୀବନର ପ୍ରକୃତ ଲକ୍ଷ୍ୟ ବିସ୍ମୃତ ହୋଇଥାଏ । ମାନବିକ ଗୁଣ ପରିବର୍ତ୍ତେ ଆସୁରିକ କ୍ଷମତା ପ୍ରତି ସେ ଲାଳାୟିତ ହୋଇଥାଏ । ସଂସାର ପ୍ରତି ଅତ୍ୟଧିକ ଆସକ୍ତି ଯୋଗୁଁ ସୁ ଓ କୁ ମଧ୍ୟରେ କୌଣସି ପାର୍ଥକ୍ୟ ଦେଖିପାରେ ନାହିଁ । ଛାତ୍ରସମାଜ ବସ୍ତୁବାଦୀ ଶିକ୍ଷାର ମୋହରେ ଥରେ ଆକର୍ଷିତ ହେଲେ ତାଙ୍କ ମନର ସମସ୍ତ କୋମଳ ଭାବ ବିନଷ୍ଟ ହୋଇଥାଏ ।

ଧ୍ୱଂସାତ୍ମକ କ୍ରିୟାକଳାପରେ ନିଜକୁ ଜଡ଼ିତ କରିବାକୁ ସେ ଆଗ୍ରହ ପ୍ରକାଶ କରେ । ସାମାନ୍ୟ ମାତ୍ର ସ୍ୱାର୍ଥ ତ୍ୟାଗ କରିବାକୁ ମାନସିକ ସ୍ତରରେ ନିଜକୁ ପ୍ରସ୍ତୁତ କରିପାରେ ନାହିଁ । ଶୃଙ୍ଖଳାଜ୍ଞାନର ବିଲୋପ ଯୋଗୁଁ ଉଚ୍ଛୃଙ୍ଖଳ ହୋଇଉଠେ । ଦେହକୁ ଶ୍ରେୟ ମନେକରି ଆତ୍ମାର ବିକାଶ ନିମିତ୍ତ ଆଦୌ ଲକ୍ଷ୍ୟ ଦିଏ ନାହିଁ । ମାନସିକ ସ୍ନେହ, ପ୍ରେମ ଓ ମମତାଠାରୁ ନିଜକୁ ଦୂରେଇ ନେଇଥାଏ । ମଣିଷର କବନ୍ଧ ସହିତ କ୍ରୀଡ଼ା କରିବାରେ ସେ ଲାଭକରେ ଆସୁରିକ ଉଲ୍ଲାସ । ଆଜି ସମଗ୍ର ବିଶ୍ୱରେ ଯେଉଁ ପୈଶାଚିକ ଲୀଳା ଲାଗିଛି, ତା ମୂଳରେ ରହିଛି ଏହି ବସ୍ତୁବାଦ ପାଇଁ ତୀବ୍ର ଆକର୍ଷଣ । ମଣିଷସମାଜ ମଧ୍ୟରେ ଯେଉଁ ସାମ୍ପ୍ରଦାୟିକ ବିଭେଦ, ସାମାଜିକ ବୈଷମ୍ୟ ସୃଷ୍ଟିଲାଭ କରିଛି, ତା'ର ପଶ୍ଚାତ୍‌ରେ ରହିଛି ବସ୍ତୁବାଦୀ ଶିକ୍ଷାର କୁପରିଣାମ । ଭାରତୀୟ ସଭ୍ୟତା ଭୋଗବାଦ ଉପରେ ପର୍ଯ୍ୟବସିତ ନୁହେଁ । ଅଥଚ ଆଜି ପାଶ୍ଚାତ୍ୟ ଶିକ୍ଷାର ମୋହ ଆମକୁ ଭୋଗବାଦୀ କରି ଧ୍ୱଂସର ମୁଖ ଆଡ଼କୁ ଟାଣିନେଉଛି । ମଣିଷ ଆଜି ଅସ୍ୱୀକାର କରୁଛି ତା'ର ପ୍ରାଚୀନ ପରମ୍ପରା ଓ ମହାନ୍ ଐତିହ୍ୟକୁ । ଆତ୍ମାର ବିଳାପ ଶୁଣିବାକୁ କାହାରି ସମୟ ନାହିଁ । ଗାନ୍ଧିଜୀ କହିଥିଲେ ଯେଉଁ ଶିକ୍ଷା ମଣିଷର ଶରୀର, ଆତ୍ମା ଓ ମସ୍ତିଷ୍କକୁ ଠିକ୍ ପଥରେ ପରିଚାଳିତ କରିପାରେ, ତାହାହିଁ ପ୍ରକୃତ ଶିକ୍ଷା । ବସ୍ତୁବାଦୀ ଶିକ୍ଷା ଶରୀର, ଆତ୍ମା ଓ ମସ୍ତିଷ୍କର ଉନ୍ନତି ନ ଘଟାଇ ଉଚ୍ଛୃଙ୍ଖଳ କରେ । ପର ପ୍ରତି ଶଠତା ଆଚରଣ କରିବାକୁ ପ୍ରଚୋଦିତ କରେ । ବିବେକର ବେକ ମୋଡ଼ି ତା'ର ରକ୍ତ ଶୋଷଣ କରେ । ତାମସିକ ଭାବକୁ ଉତ୍ସାହିତ କରେ । ଜୀବନକୁ କରେ କୁତ୍ସିତ, କଦାକାର । ଧର୍ମକୁ ଅଫିମ ନିଶା କହି ପ୍ରକୃତ ନିଶାରେ ଘାରିହୁଏ । ମଣିଷ ମନରେ ପୈଶାଚିକ ଭାବନାକୁ ଭରିଦେଇ ଛଡ଼ାଇ ନିଏ ତା'ଠାରୁ ମଣିଷତ୍ୱ । ସାମ୍ପ୍ରତିକ କାଳରେ ଏପରି ଶିକ୍ଷା ସର୍ବାଦୌ ବର୍ଜନୀୟ । ବିଶେଷ ଭାବରେ ଭାରତପରି ଏକ ସୁ-ସଂସ୍କୃତ ଓ ମହାନ ଦେଶରେ ଏପରି ଶିକ୍ଷାର ଆଦୌ ଆବଶ୍ୟକତା ନାହିଁ । ଏ ମାଟିର ସନ୍ତାନ ଅନ୍ୟ ପାଇଁ ରକ୍ତ ଦେଇ ଜାଣିଛି; ମାତ୍ର ଅନ୍ୟଠାରୁ ରକ୍ତ ନେବାକୁ ଜାଣି ନାହିଁ । ସ୍ନେହ, ମୈତ୍ରୀ, ପ୍ରେମଭାବରେ ସମସ୍ତ ଜଗତକୁ ବନ୍ଧନ କରିବା ଏହି ପବିତ୍ର ମାଟିର ବିଶେଷତ୍ୱ । ଧର୍ମ ନିରପେକ୍ଷତା ଏହାର ବୈଶିଷ୍ଟ୍ୟ । ସମଭାବ ଏହାର ଆଦର୍ଶ, ତେଣୁ ଆଜି ଯେଉଁ ଭାରତୀୟ ପାଶ୍ଚାତ୍ୟ ଶିକ୍ଷା ମୋହରେ ଅନ୍ଧ ହୋଇ ନିଜର ମହାନ ପରମ୍ପରାକୁ ଅସ୍ୱୀକାର କରୁଛନ୍ତି, ଭୋଗବାଦୀ ସଭ୍ୟତାକୁ ଆଦରି ନେଉଛନ୍ତି, ତାହା କ୍ଷଣିକମାତ୍ର । ତେଣୁ ଆଜିର ଛାତ୍ରସମାଜ ଏହି କ୍ଷଣିକ ମୋହ ପଛରେ ଅନ୍ଧଭାବରେ ନ ଧାଇଁ ଚିରନ୍ତନତ୍ୱକୁ ଆଦରି ନିଅନ୍ତୁ । ତ୍ୟାଗର ମହନୀୟ ଆଦର୍ଶ ଦ୍ୱାରା ନିଜକୁ ଅନୁପ୍ରାଣିତ କରନ୍ତୁ । ତାହାହିଁ ହେବ ସେମାନଙ୍କର ପ୍ରକୃତ ଶିକ୍ଷା ।

ଛାତ୍ର ଜୀବନରେ ଆଧ୍ୟାତ୍ମିକ ଓ ନୈତିକ ଶିକ୍ଷାର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ । ଆଧ୍ୟାତ୍ମିକ ଶିକ୍ଷା ଛାତ୍ରକୁ କରେ ଶୃଙ୍ଖଳିତ ଓ ମାର୍ଜିତ । ନୈତିକ ଶିକ୍ଷା ଛାତ୍ରକୁ ଅନ୍ୟାୟ ବିରୋଧରେ ସ୍ୱର ଉତ୍ତୋଳନ କରିବାକୁ ଦିଏ ପ୍ରେରଣା । ଏହା ଛାତ୍ର ହୃଦୟରେ ସୃଷ୍ଟି କରେ ମାନବିକତାବୋଧ । ଆଧ୍ୟାତ୍ମିକ ଶିକ୍ଷା ମାନବସମାଜରେ ସୃଷ୍ଟି କରେ ସ୍ନେହ ଓ ପ୍ରେମର ଫଲ୍‌ଗୁ । ପ୍ରେମ ପ୍ରତି ହୃଦୟରେ ସୃଷ୍ଟିକରେ ପ୍ରେରଣା । ଛାତ୍ର ମନରୁ ଅହମିକା ଭାବର ଲୋପ କରି ବିଶ୍ୱଜନୀନ ଭ୍ରାତୃତ୍ୱଭାବରେ

ଉଦ୍‌ବୁଦ୍ଧ କରାଏ । ଜୀବନ ସଂଗ୍ରାମରେ ଅନ୍ୟାୟର ପ୍ରତିରୋଧ କରାଏ । ସାମ୍ପ୍ରଦାୟିକ ସଦ୍ଭାବ ନିମିତ୍ତ ଉଦ୍‌ବୁଦ୍ଧ କରାଏ । ମହାମାନବର ସାଗରତୀରେ ସୃଷ୍ଟିକରେ ପ୍ରେମ, ସ୍ନେହ ଓ ସଂପ୍ରୀତିର ଉଦ୍‌ବେଳନ । ଆଜିର ସ୍ୱାର୍ଥଜଡ଼ିତ ଧ୍ୱଂସାତ୍ମକ ପୃଥିବୀ ଉପକୂଳରେ ବସି ଶୁଣାଏ ଜୀବନର ସାମସଙ୍ଗୀତ । ପଶୁପ୍ରବୃତ୍ତିର ବିଲୋପ ସାଧନ କରି ଦେବତ୍ୱ ଭାବର ଜାଗରଣ କରେ । ଆଧ୍ୟାତ୍ମିକ ଭାବଧାରା ଦ୍ୱାରା ଉଦ୍‌ବୁଦ୍ଧ ଛାତ୍ର ବା ମଣିଷ ଦୃଷ୍ଟିରେ ସବୁ ମଣିଷ ସମାନ । କେହି ହୀନ ବା ନୀଚ ନୁହେଁ । ତା'ଦୃଷ୍ଟିରେ ପୃଥିବୀରେ ଗୋଟିଏ ଜାତି; ତାହା ମାନବଜାତି । ପୃଥିବୀରେ ଗୋଟିଏ ସଭ୍ୟତା, ତାହା ମାନବ ସଭ୍ୟତା । ବସ୍ତୁବାଦୀ ମଣିଷ ନିଜର ସ୍ୱାର୍ଥ ପାଇଁ ମାରଣାସ୍ତ୍ରମାନ ନିର୍ମାଣ କରି ପୃଥିବୀକୁ ଧ୍ୱଂସ କରିବାକୁ ବସିଛି । ତା'ର ପଶୁ ପ୍ରବୃତ୍ତି ପ୍ରତି ମୁହୂର୍ତ୍ତରେ ମଣିଷ ରକ୍ତରେ ହୋରି ଖେଳିବାକୁ ଉନ୍ମୁଖ ହୋଇ ଉଠିଛି । ଆଧ୍ୟାତ୍ମିକ ଚିନ୍ତା ଓ ନୈତିକ ଶିକ୍ଷା ମଣିଷକୁ ଏହି ଧ୍ୱଂସ ଦିଗରୁ କେବଳ ନିବୃତ୍ତ କରିପାରିବ । ନୈତିକ ଶିକ୍ଷା ମଣିଷକୁ ଦେଶସେବା ପ୍ରତି ବ୍ରତୀ କରାଏ । ବ୍ୟକ୍ତି ସ୍ୱାର୍ଥ ଅପେକ୍ଷା ସମୂହ ସ୍ୱାର୍ଥ ପ୍ରତି ଅଧିକ ଗୁରୁତ୍ୱ ଦିଏ ଆଧ୍ୟାତ୍ମିକ ଶିକ୍ଷା । ଆଧ୍ୟାତ୍ମିକତାର ଅର୍ଥ ସଂକୀର୍ଣ୍ଣ ସାମ୍ପ୍ରଦାୟିକତାବାଦ ନୁହେଁ କିମ୍ବା କ୍ଷୁଦ୍ର ଧର୍ମଭାବ ନୁହେଁ । ଆଜିର ସମାଜରେ ଧର୍ମକୁ କେନ୍ଦ୍ର କରି ବିଭିନ୍ନ ସମ୍ପ୍ରଦାୟ ମଧ୍ୟରେ ଯେଉଁ ଦଙ୍ଗା ଓ ହିଂସାଭାବ ସୃଷ୍ଟି ହେଉଛି, ତାହା ପ୍ରକୃତରେ ଆଧ୍ୟାତ୍ମିକ ଭାବ ନୁହେଁ । ଆଧ୍ୟାତ୍ମିକତା କୌଣସି ଧର୍ମକୁ ହୀନ ବା ନିକୃଷ୍ଟ ମନେ କରେ ନାହିଁ । ଧର୍ମ ଅର୍ଥ ଏକ ନିୟମ ବା ପଥ । "ଧାରୟତି ଇତି ଧର୍ମଃ"– ଯାହା ପୃଥିବୀକୁ ଧାରଣ କରେ ବା ଯେଉଁ ନିୟମର ବଶବର୍ତ୍ତୀ ହୋଇ ପୃଥିବୀ ଗତିଶୀଳ, ତାହାହିଁ ଧର୍ମ ଓ ତାହା ହେଉଛି ପ୍ରକୃତରେ ଆଧ୍ୟାତ୍ମିକ ଶିକ୍ଷା । କେତେକେ ଯୁକ୍ତି କରନ୍ତି, ଆଧ୍ୟାତ୍ମିକ ଭାବନା ମଣିଷକୁ ପଙ୍ଗୁ କରିଦିଏ, ତା'ର ଦୃଷ୍ଟିକୁ ସଂକୀର୍ଣ୍ଣ କରେ । ବାସ୍ତବରେ ତାହା ଆଦୌ ସତ୍ୟ ନୁହେଁ । ବରଂ ଏହି ଭାବନା ଦ୍ୱାରା ମଣିଷ ଅଧିକ ମାତ୍ରାରେ ଚଳଚଞ୍ଚଳ ହେବା ସଙ୍ଗେ ସଙ୍ଗେ ତା'ର ଦୃଷ୍ଟିଭଙ୍ଗୀ ପ୍ରସାରିତ ହୋଇଥାଏ । ସାମାଜିକ ନୀତିନିୟମକୁ ଶୃଙ୍ଖଳିତ ସୈନିକପରି ସମ୍ମାନ କରିବାକୁ ଶିଖିଥାଏ । ନୀତିବୋଧ ଦ୍ୱାରା ଅନୁପ୍ରାଣିତ ହେଉଥିବାରୁ କୌଣସି ବେନିୟମ କାର୍ଯ୍ୟ କରିବାକୁ ସାହସ କରିପାରେ ନାହିଁ । ଆଧ୍ୟାତ୍ମିକ ଶିକ୍ଷା ଜଡ଼ବାଦକୁ ଘୃଣାକରେ; ମାତ୍ର ଉନ୍ନତ ମାନବିକତାବୋଧକୁ ସମ୍ମାନ କରେ । ସେଥିପାଇଁ ସାମ୍ପ୍ରତିକ ଶିକ୍ଷା ପଦ୍ଧତିରେ ଆଧ୍ୟାତ୍ମିକ ଓ ନୈତିକ ଶିକ୍ଷା ପ୍ରତି ଗୁରୁତ୍ୱ ପ୍ରଦାନ କରାଯିବା ଆବଶ୍ୟକ ।

ଆଜିର ଛାତ୍ର ହିଁ ଆସନ୍ତାକାଲିର ନାଗରିକ । ସେମାନେ ଆଜି ନିଜକୁ ଯେପରି ଗଠନ କରିବେ, ଆସନ୍ତାକାଲି ଦେଶକୁ ସେହିପରି ଦିଗ୍‌ଦର୍ଶନ ପ୍ରଦାନ କରିବେ । ତେଣୁ ଛାତ୍ରସମାଜକୁ ଉପଯୁକ୍ତ ଶିକ୍ଷା ପ୍ରଦାନ କରିବା ପ୍ରତ୍ୟେକ ସମାଜର ନୈତିକ କର୍ତ୍ତବ୍ୟ । ଏଥିରୁ ବିଚ୍ୟୁତ ହେଲେ ସମାଜ ଧ୍ୱଂସାତ୍ମକ ଦିଗକୁ ଗତି କରିବ । ଦୁର୍ନୀତି ଓ ଅନ୍ୟାୟ ଆଚରଣର ଶିକାର ହେବା ପୂର୍ବରୁ ସେମାନଙ୍କ ମନ ମଧ୍ୟରେ ସ୍ନେହ, ପ୍ରେମ ଓ ଭ୍ରାତୃଭାବର ଧାରଣା ସୃଷ୍ଟି କରିବାକୁ ପଡ଼ିବ । ସେମାନେ ଯେପରି ଦେଶକୁ ଉଚିତ ମାର୍ଗରେ ପରିଚାଳନା କରିବାକୁ ଶିକ୍ଷା କରିବେ ତାହା ପ୍ରଥମରୁ ତାହାଙ୍କୁ ଜଣାଇ ଦିଆଯିବା ଆବଶ୍ୟକ । ଏ କ୍ଷେତ୍ରରେ କେବଳ ନୈତିକ ଓ ଆଧ୍ୟାତ୍ମିକ ଶିକ୍ଷା ହିଁ ତାଙ୍କୁ ସହାୟତା କରିପାରିବ । ଦେଶ, ଜାତି ଓ ସମଗ୍ର ମାନବ ସମାଜକୁ ଭଲପାଇବା

ପାଇଁ ସେମାନଙ୍କ ମନ ମଧ୍ୟରେ ସୃଷ୍ଟି କରିବାକୁ ପଡ଼ିବ ମାନବିକତାବୋଧ । ଆଜିର ସମାଜ ଧୀରେ ଧୀରେ ଜଟିଳ ହୋଇପଡୁଛି । ଏଥିପାଇଁ ଆଧ୍ୟାତ୍ମିକ ଓ ନୈତିକ ଶିକ୍ଷାର ଅଭାବ ହିଁ ସମ୍ପୂର୍ଣ୍ଣ ଦାୟୀ । ବସ୍ତୁ ମୂଲ୍ୟବାନ ନୁହେଁ; ସତ୍ତା ହିଁ ମୂଲ୍ୟବାନ । ମାତ୍ର ବସ୍ତୁବାଦୀ ସଭ୍ୟତାରେ ଆମେ କେବଳ ବସ୍ତୁ ହିଁ ପାଇଛୁ, ହରାଇଛୁ ସତ୍ତାକୁ । ସେହି ସତ୍ତାକୁ ପୁଣି ଫେରାଇ ଆଣିବାକୁ ହେଲେ ଆଜିର ଛାତ୍ରସମାଜକୁ ଆଧ୍ୟାତ୍ମିକ ଶିକ୍ଷା ପ୍ରଦାନ କରିବାକୁ ପଡ଼ିବ । ନୈତିକ ଶିକ୍ଷାଦ୍ୱାରା ସେମାନଙ୍କର ନୀତିବୋଧକୁ ଜାଗ୍ରତ୍ କରିବାକୁ ହେବ । ତା'ହେଲେ ଏହି ଧ୍ୱଂସଗାମୀ ମାନବ ସଭ୍ୟତାକୁ ପୁଣି ଧ୍ୱଂସମୁଖରୁ ଫେରାଇ ଆଣିବାକୁ ସମର୍ଥ ହୋଇପାରିବ ।



## ଜାତିସଂଘ

**(ଉପକ୍ରମ, ଜାତିସଂଘ ସୃଷ୍ଟି ଇତିହାସ, ଲକ୍ଷ୍ୟ ଏବଂ ଉଦ୍ଦେଶ୍ୟ, ଜାତିସଂଘର ବିଭିନ୍ନ ବିଭାଗ, ବିଶ୍ୱଶାନ୍ତି କ୍ଷେତ୍ରରେ ଏହାର କେତେକ ପଦକ୍ଷେପ, ପ୍ରତିବନ୍ଧକ ଏବଂ ନିରାକରଣ ଉପାୟ, ଉପସଂହାର)**

ପ୍ରତ୍ୟେକ ମଣିଷ ଶାନ୍ତିକାମୀ । ଏହା ସତ୍ତ୍ୱେ କୁପ୍ରବୃତ୍ତିର ତାଡ଼ନାରେ ମଣିଷ ବେଳେ ବେଳେ ଭୁଲ କରେ । ଏହି ଭୁଲ୍ ପାଇଁ ବିଶ୍ୱରେ ସୃଷ୍ଟି ହୁଏ ଅସନ୍ତୋଷ । ପ୍ରବୃତ୍ତି ପରିଚାଳିତ ମଣିଷ ସର୍ବଦା ଅନ୍ୟ ଉପରେ ପ୍ରଭୁତ୍ୱ ବିସ୍ତାର କରିବାର ଆଶା ରଖେ । ଏଥିରୁ ସେ ଲାଭ କରେ ପୈଶାଚିକ ଉଲ୍ଲାସ । ମାତ୍ର ପରବର୍ତ୍ତୀ ସମୟରେ ନିଜର ତ୍ରୁଟି ପାଇଁ ଯେତେବେଳେ ସେ ଅନୁତାପ କରେ, ସେତେବେଳେ ଶାନ୍ତି ନିମିତ୍ତ ତା' ମନରେ ସୃଷ୍ଟି ହୁଏ ଅପୂର୍ବ ଆବେଗ । ଆଜିର ବିଜ୍ଞାନ ଯୁଗରେ ପୃଥିବୀର ପରିସୀମା ଅତ୍ୟନ୍ତ ସଙ୍କୁଚିତ ହୋଇପଡ଼ିଛି । ଗୋଟିଏ ମୁହୂର୍ତ୍ତରେ ସମଗ୍ର ବିଶ୍ୱର ଖବର ଭାସିଉଠୁଛି ତା' ଆଗରେ । ଏପରି କ୍ଷେତ୍ରରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ନିମିତ୍ତ ସେ ପ୍ରୟାସୀ ହେବା ସ୍ୱାଭାବିକ । ଏହା ସତ୍ତ୍ୱେ କେତେକ ସ୍ୱାର୍ଥପର ମଣିଷ ଧ୍ୱଂସର ତାଣ୍ଡବଲୀଳା ରଚନା କରିବାକୁ ପରିବେଶ ସୃଷ୍ଟି କରନ୍ତି । ସାମାନ୍ୟ ଘଟଣାକୁ କେନ୍ଦ୍ରକରି ପ୍ରଳୟର ବେଣୁବାଦନ କରନ୍ତି । ଏହିପରି ସାଧାରଣ ଘଟଣାରୁ ପୃଥିବୀରେ ଦୁଇ ଦୁଇଟି ବିଶ୍ୱଯୁଦ୍ଧ ସଂଘଟିତ ହୋଇଯାଇଛି । ବିଶ୍ୱଯୁଦ୍ଧ ପରେ ସେହି ପୋଡ଼ାପୃଥିବୀକୁ ଲକ୍ଷ୍ୟକରି ମନୁଷ୍ୟର ଆତ୍ମା ବିଳାପ କରି ଉଠିଛି । ନୃଶଂସତା ପରିଣତ ହୋଇଛି ସମ୍ବେଦନଶୀଳତାରେ । ଯୁଦ୍ଧର ବିଭୀଷିକାରୁ ରକ୍ଷାପାଇବା ପାଇଁ ମଣିଷର ବ୍ୟାକୁଳ ହୃଦୟ ଉପାୟ ଅନ୍ୱେଷଣ ଜାରି ରଖିଛି । ମାନବର ଏହି ଶାନ୍ତି ପାଇଁ ଆବେଗମୟ ଇଚ୍ଛାରୁ ଜନ୍ମଲାଭ କରିଛି 'ଜାତିସଂଘ' । ଶାନ୍ତିକାମୀ ମଣିଷ ପ୍ରାଣରେ ଆଶାର ଆଲୋକ ଜଳାଇ 'ଜାତିସଂଘ' ହୋଇଉଠିଛି ବିଶ୍ୱର କୋଟି କୋଟି ହୃଦୟର ମିଳନ ପୀଠ ।

ବିଶ୍ୱରେ ଦୈନନ୍ଦିନ କିଛି ନା କିଛି ଘଟଣା ଘଟୁଛି ଓ ଏହି ଘଟଣାରୁ ହିଁ ଆବିଷ୍କାର ହେଉଛି ସମାଧାନର ଉପାୟ । ଏହିପରି ଗୋଟିଏ ଘଟଣା ଘଟିଥିଲା ୧୯୧୪ ମସିହାରେ । ୧୯୧୪-

୧୯୧୮ ଦୀର୍ଘ ଚାରିବର୍ଷ କାଳ ପୃଥିବୀକୁ ଧ୍ୱଂସ କରିବା ପାଇଁ ଆଧୁନିକ ବିଜ୍ଞାନ ମଣିଷ ପ୍ରୟାସ ଜାରି ରଖିଥିଲା । ବିଶ୍ୱ ଇତିହାସରେ ଏହା ପ୍ରଥମ ବିଶ୍ୱଯୁଦ୍ଧ ରୂପେ ନାମିତ । ପ୍ରଥମ ବିଶ୍ୱଯୁଦ୍ଧର ଧ୍ୱଂସକାରୀ ସ୍ତୂପ ମଧ୍ୟରେ ମଣିଷ ଅନୁସନ୍ଧାନ କଲା ଶାନ୍ତିର ଉତ୍ସ । ଆନ୍ତର୍ଜାତିକ କ୍ଷେତ୍ରରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ନିମିତ୍ତ ଗଠିତ ହୋଇଥିଲା 'ଲିଗ୍ ଅଫ ନେସନ୍' ୧୯୨୦ ମସିହା ଜାନୁଆରୀ ୧୦ ତାରିଖରେ । ଉଦ୍ଦେଶ୍ୟ ଥିଲା ସମଗ୍ର ବିଶ୍ୱରୁ ଯୁଦ୍ଧର ଭୟଙ୍କରତା ଦୂର କରିବା ଓ ମଣିଷକୁ ଶାନ୍ତିରେ ବଞ୍ଚିବାକୁ ଦେବା । ତତ୍କାଳୀନ ଆମେରିକାର ରାଷ୍ଟ୍ରପତି ଉଇଲ୍‌ସନଙ୍କ ନେତୃତ୍ୱରେ ପୃଥିବୀର ୩୨ଟି ରାଷ୍ଟ୍ର ଏହାର ସଦସ୍ୟ ହୋଇଥିଲେ । ମାତ୍ର କେତେକ ସଦସ୍ୟଭୁକ୍ତ ରାଷ୍ଟ୍ରଙ୍କର ଅମାନବିକ କାର୍ଯ୍ୟକଳାପ ଯୋଗୁଁ 'ଲିଗ୍ ଅଫ୍ ନେସନ'ରେ ସଙ୍କଟ ସୃଷ୍ଟି ହେଲା । ଏହା ସ୍ୱାଧୀନ ଭାବରେ ତା'ର କାର୍ଯ୍ୟ କରିବାକୁ ଅସମର୍ଥ ହେଲା । ମାତ୍ର ଅଳ୍ପ ସମୟ ମଧ୍ୟରେ ମଣିଷର ଆଶା ଏବଂ ବିଶ୍ୱାସକୁ ଧୂଳିସାତ୍ କରି ଏହା ଅଚିରେ ବିଲୟ ଘଟିଲା । ଘଟଣାକ୍ରମେ ପୁଣି ଯୁଦ୍ଧର ଦୁନ୍ଦୁଭି ବାଜି ଉଠିଲା ୧୯୩୯ ମସିହାରେ । ବିଶ୍ୱ ଇତିହାସରେ ଏହା ଦ୍ୱିତୀୟ ବିଶ୍ୱଯୁଦ୍ଧ ରୂପେ ପରିଚିତ । ୧୯୩୯-୪୫ ମଧ୍ୟରେ ବିଶ୍ୱକୁ ଅନେକ କ୍ଷତି ସହିବାକୁ ପଡ଼ିଲା । ଜାପାନ୍‌ର ହିରୋସୀମା ଓ ନାଗାସାକି ଉପରେ ପରମାଣୁ ବୋମା ଧ୍ୱଂସର ତାଣ୍ଡବଲୀଳା ରଚନା କଲା । ଦ୍ୱିତୀୟ ବିଶ୍ୱଯୁଦ୍ଧର ଅବ୍ୟବହିତ ପରେ ପରେ ପୁଣି ଆବଶ୍ୟକ ହେଲା ଏକ ବିଶ୍ୱ ସଂସ୍ଥାର । ଏହି ପରିପ୍ରେକ୍ଷୀରେ ଆମେରିକାର ରାଷ୍ଟ୍ରପତି ରୁଜ୍‌ଭେଲଟ ଓ ଇଂଲଣ୍ଡର ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲଙ୍କ ଭୂମିକା ବେଶ୍ ପ୍ରଣିଧାନଯୋଗ୍ୟ । ସେହିମାନଙ୍କ ଆନ୍ତରିକ ଉଦ୍ୟମ ଫଳରେ ପ୍ରକାଶ ଲାଭ କଲା ଆଟଲାଣ୍ଟିକ ସନନ୍ଦ ୧୯୪୧ ମସିହାରେ । ବିଶ୍ୱଶାନ୍ତି ପାଇଁ ସେତେବେଳେ ଏହା ଥିଲା ପ୍ରାଥମିକ ପଦକ୍ଷେପ । ୧୯୪୨ ମସିହାରେ ବିଶ୍ୱର ୨୬ଟି ରାଷ୍ଟ୍ରର ପ୍ରତିନିଧିମାନେ ସମ୍ମିଳିତ ଭାବେ ଗୋଟିଏ ଇସ୍ତାହାରରେ ଜାତିସଂଘ ଗଠନ ନିମିତ୍ତ ସ୍ୱାକ୍ଷର କଲେ । ସେତେବେଳେ ଏହାର ପ୍ରକୃତ ରୂପରେଖ ସ୍ପଷ୍ଟ ହୋଇନଥିଲା । ୧୯୪୪ ମସିହାରେ ରୁଷ, ଆମେରିକା, ଚୀନ୍ ଏବଂ ଗ୍ରେଟ୍‌ବ୍ରିଟେନ ସମ୍ମିଳିତ ଭାବେ ଏହି ସଙ୍ଗଠନ ନିମିତ୍ତ କେତେକ ନିୟମ ପ୍ରଣୟନ କଲେ । ଧ୍ୱଂସର ତାଣ୍ଡବଲୀଳା ରଚନା କରି ଦ୍ୱିତୀୟ ବିଶ୍ୱଯୁଦ୍ଧର ପରିସମାପ୍ତି ଘଟିଲା । ସମଗ୍ର ବିଶ୍ୱର ଚିନ୍ତାଶୀଳ ବ୍ୟକ୍ତି ମଣିଷର ଏହି ଅପରିଣାମଦର୍ଶିତା ପାଇଁ ଗଭୀର ଚିନ୍ତା ବ୍ୟକ୍ତ କଲେ । ମିଳିତ ଜାତିସଂଘ ଗଠନ ପାଇଁ ଅଧିକ ପ୍ରବଣତା ପ୍ରକାଶ ପାଇଲା । ଫଳସ୍ୱରୂପ ୧୯୪୫ ଜୁନ୍ ୨୭ ତାରିଖରେ ସାନ୍‌ଫ୍ରାନ୍‌ସିସ୍କୋଠାରେ ବିଶ୍ୱର ୫୦ଟି ଦେଶର ପ୍ରତିନିଧି ସମ୍ମିଳିତ ଭାବେ ଏକ ଐତିହାସିକ ସନନ୍ଦରେ ସ୍ୱାକ୍ଷର କଲେ । ଏହି ସନନ୍ଦରେ ସ୍ୱାକ୍ଷର ନିମିତ୍ତ ଯେଉଁ ଦେଶଗୁଡ଼ିକ ବିଶେଷ ଭୂମିକା ଗ୍ରହଣ କରିଥିଲେ, ସେମାନଙ୍କ ମଧ୍ୟରେ ମୁଖ୍ୟ ଥିଲେ ରୁଷ, ଆମେରିକା ଓ ଇଂଲଣ୍ଡ । ସମଗ୍ର ବିଶ୍ୱର ଇତିହାସରେ ୧୯୪୫ ମସିହା ଅକ୍ଟୋବର ୨୪ ତାରିଖ ଏକ ସ୍ମରଣୀୟ ଦିବସ । ଏହି ଦିନ ହିଁ ଜାତିସଂଘ ଅନ୍ୟ ଏକ ନୂତନ ରୂପ ନେଲା । ମାନବ ଜାତିର ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଓ ବିଶ୍ୱାସର ବାତାବରଣ ସୃଷ୍ଟି କରି ଏଯାବତ୍ 'ଜାତିସଂଘ' ତା'ର ନିରବଚ୍ଛିନ୍ନ କାର୍ଯ୍ୟକ୍ରମ ଜାରି ରଖି ଚାଲି ଆସୁଅଛି ।

ବିଶ୍ୱର ବିଭିନ୍ନ ସମସ୍ୟା ସମାଧାନ ଦିଗରେ ଜାତିସଂଘ ଆଜି ପ୍ରମୁଖ ଭୂମିକା ଗ୍ରହଣ କରିଛି । ୫୦ଟି ଦେଶର ପ୍ରତିନିଧିଙ୍କୁ ନେଇ ଗଠିତ ଜାତିସଂଘର ସଭ୍ୟସଂଖ୍ୟା ବର୍ତ୍ତମାନ ୧୮୦ରେ

ପହଞ୍ଚିଛି । ଜାତିସଂଘର ଉଦ୍ଦେଶ୍ୟ ଏବଂ ଲକ୍ଷ୍ୟ ଅତୀବ ମହତ୍ତ୍ୱପୂର୍ଣ୍ଣ । ଏହାର ସନନ୍ଦରେ ସେହି ଲକ୍ଷ୍ୟ ସ୍ପଷ୍ଟ ଲିପିବଦ୍ଧ ହୋଇଛି । ଦେଶ ଦେଶ ମଧ୍ୟରେ ସଂହତି ସ୍ଥାପନ, ବିଶ୍ୱରେ ଶାନ୍ତି ପ୍ରତିଷ୍ଠା, ଯୁଦ୍ଧ ବିଭୀଷିକାର ଦୂରୀକରଣ ନିମିତ୍ତ ପଦକ୍ଷେପ ଗ୍ରହଣ, ସଦ୍‌ଭାବପୂର୍ଣ୍ଣ ବାତାବରଣ ସୃଷ୍ଟି ଆଦି ଏହାର ପ୍ରଥମ ଲକ୍ଷ୍ୟ । ବିଶ୍ୱର ସର୍ବାଙ୍ଗୀନ କଲ୍ୟାଣ ସାଧନ ନିମିତ୍ତ ଏହା ପ୍ରତିଶ୍ରୁତିବଦ୍ଧ । ମାନବିକ ଅଧିକାର ପ୍ରତି ଜାତିସଂଘ ବିଶେଷ ଗୁରୁତ୍ୱ ପ୍ରଦାନ କରିଥାଏ । ଏତଦ୍‌ବ୍ୟତୀତ ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ସାମାଜିକ, ସାଂସ୍କୃତିକ ଓ ଆର୍ଥନୀତିକ ଅବସ୍ଥାର ବିକାଶ ନିମିତ୍ତ ଏହା ଗୁରୁତ୍ୱ ଆରୋପ କରିଥାଏ । ଜାତିସଂଘ ତା'ର ଲକ୍ଷ୍ୟ ସମ୍ପର୍କରେ ୧୯୬୬ ମସିହା ଡ଼ିସେମ୍ବର ୧୬ ତାରିଖ ସାଧାରଣ ଅଧିବେଶନରେ ଘୋଷଣା କରିଛି । ମୁଖ୍ୟତଃ ବିଶ୍ୱରେ ଶାନ୍ତି ପ୍ରତିଷ୍ଠା ଏହାର ପ୍ରଧାନ ଲକ୍ଷ୍ୟ ହେଲେହେଁ, ଏହା ସହିତ ଅନ୍ୟାନ୍ୟ ଆନୁଷଙ୍ଗିକ ଲକ୍ଷ୍ୟ ପୂରଣ କରିବା ପାଇଁ ସେ ପ୍ରତିଶ୍ରୁତିବଦ୍ଧ । ସମାନ ନ୍ୟାୟ, ସମାନତାର ଭିତ୍ତିଭୂମି ଏବଂ ମାନବ ସମାଜର ବିକାଶ ଉପରେ ଏହା ଗୁରୁତ୍ୱ ଆରୋପ କରିଥାଏ । ଶିକ୍ଷା ମାନବକୁ ଅନ୍ଧକାରରୁ ଆଲୋକ ଦିଗରେ ଗତି କରାଇଥାଏ । ତେଣୁ ଜାତିସଂଘ ଶିକ୍ଷା ଉପରେ ମଧ୍ୟ ଗୁରୁତ୍ୱ ପ୍ରଦାନ କରିଥାଏ । ଏତଦ୍‌ବ୍ୟତୀତ ସ୍ୱାସ୍ଥ୍ୟ, କୃଷି ଆଦିର ବିକାଶ ଦିଗରେ ଏହା ବାଞ୍ଛିତ ପଦକ୍ଷେପ ଗ୍ରହଣ କରିଥାଏ । ଶିଶୁମାନଙ୍କୁ ଉପଯୁକ୍ତ କରି ଗଢ଼ି ତୋଳିବା କ୍ଷେତ୍ରରେ ଏହି ସଂସ୍ଥାର ଅବଦାନ କମ୍ ନୁହେଁ । ସେଥିପାଇଁ ୧୯୫୪ ମସିହାରୁ ଜାତିସଂଘ ଶିଶୁ ଦିବସ ପାଳନ କରିଆସୁଛି ।

ଜାତିସଂଘ ତା'ର ବିଭିନ୍ନ ଲକ୍ଷ୍ୟ ପରିପୂରଣ ପାଇଁ କେତେଗୁଡ଼ିଏ ବିଭାଗ ବା ଶାଖା ସୃଷ୍ଟି କରିଛି । ମୁଖ୍ୟତଃ ଏହା ଛଅ ଭାଗରେ ବିଭକ୍ତ । ଯଥା—ସାଧାରଣ ପରିଷଦ, ନିରାପତ୍ତା ପରିଷଦ, ଆନ୍ତର୍ଜାତିକ ବିଚାର ଅଦାଲତ, ଆର୍ଥନୀତିକ ଓ ସାମାଜିକ ପରିଷଦ, ସଚିବାଳୟ, ମାର୍ଫତଦାର ପରିଷଦ । ଜାତିସଂଘର ଏହି ଛଅଟି ଶାଖା ମଧ୍ୟରେ ବିଭିନ୍ନ ଦାୟିତ୍ୱ ବଣ୍ଟନ କରାଯାଇଥାଏ ଓ ସେମାନେ ତାହା ଦାୟିତ୍ୱପୂର୍ଣ୍ଣ ଭାବେ ନିର୍ବାହ କରିଥାନ୍ତି । ଜାତିସଂଘର ସାଧାରଣ ପରିଷଦରେ ସମସ୍ତ ସଭ୍ୟରାଷ୍ଟ୍ର ସଦସ୍ୟ ରହିଥାନ୍ତି । ବିଭିନ୍ନ କ୍ଷେତ୍ରରେ ନିୟମ ପ୍ରଣୟନ କରିବା ଏହି ପରିଷଦର ଦାୟିତ୍ୱ । ପ୍ରତିବର୍ଷ ସେପ୍ଟେମ୍ବର ମାସରେ ଏହି ପରିଷଦ ବସି ବିଶ୍ୱର ବିଭିନ୍ନ ସମସ୍ୟାକୁ ଆନ୍ତରିକତାର ସହିତ ଆଲୋଚନା କରିଥାଏ । ମାତ୍ର ଏଥିରେ ନିଆଯାଉଥିବା ନିଷ୍ପତ୍ତିକୁ ସମସ୍ତ ସଦସ୍ୟରାଷ୍ଟ୍ର ମାନିବାକୁ ବାଧ୍ୟ ନୁହନ୍ତି । କାରଣ ଏହାର ଶକ୍ତି ସୀମିତ । ମାତ୍ର ନିରାପତ୍ତା ପରିଷଦ ସବୁଠାରୁ ଶକ୍ତିଶାଳୀ ପରିଷଦ ରୂପେ ପରିଚିତ । ଏହାର ସଦସ୍ୟମାନେ ସ୍ଥାୟୀ ଓ ଅସ୍ଥାୟୀ ଏହିପରି ଦୁଇ ଭାଗରେ ବିଭକ୍ତ । ଏହାର ଅସ୍ଥାୟୀ ସଭ୍ୟଙ୍କ ସଂଖ୍ୟା ଦଶ ଓ ଏମାନେ ଦୁଇବର୍ଷ ପାଇଁ ସାଧାରଣ ପରିଷଦ ଦ୍ୱାରା ନିର୍ବାଚିତ ହୋଇ କାର୍ଯ୍ୟ କରିଥାନ୍ତି । ସ୍ଥାୟୀ ସଭ୍ୟଙ୍କ ସଂଖ୍ୟା ପାଞ୍ଚ । ଆମେରିକା, ରୁଷିଆ, ବ୍ରିଟେନ୍, ଫ୍ରାନ୍ସ ଓ ଚୀନ ଏହାର ସ୍ଥାୟୀ ସଭ୍ୟ । ଏମାନଙ୍କର 'ଭେଟୋ' ପ୍ରୟୋଗ କରିବାର କ୍ଷମତା ରହିଛି । ନିରାପତ୍ତା ପରିଷଦର ଯେ କୌଣସି ନିଷ୍ପତ୍ତି ଉପରେ ଏହି ସ୍ଥାୟୀ ସଦସ୍ୟଙ୍କ ମଧ୍ୟରୁ ଜଣେ କେହି 'ଭେଟୋ' ପ୍ରୟୋଗ କଲେ ତାହା କାର୍ଯ୍ୟକାରୀ ହୋଇପାରେ ନାହିଁ । ନୂତନ ସଭ୍ୟ ଗ୍ରହଣ, ସେକ୍ରେଟାରୀ ଜେନେରାଲଙ୍କ ନାମ ସୁପାରିଶ ଆଦି

ଏହି ପରିଷଦ ଦ୍ୱାରା ନିଷ୍ପତ୍ତି ହୋଇଥାଏ । ସାମରିକ ବିଭାଗ ଓ ପରମାଣୁ ନିୟନ୍ତ୍ରଣ କମିଟି ଏହାର ଅଧୀନରେ ରହିଥାଏ । ଆନ୍ତର୍ଜାତିକ ବିଚାର ଅଦାଲତରେ ମୁଖ୍ୟତଃ ଏହାର ସଦସ୍ୟଭୁକ୍ତ ରାଷ୍ଟ୍ରମାନଙ୍କର ବାଦବିସମ୍ବାଦର ବିଚାର କରାଯାଇଥାଏ । ଏଥିରେ ପନ୍ଦର ଜଣ ବିଚାରପତି ରହିଥାନ୍ତି । ବିଭିନ୍ନ ମତାନ୍ତର ଓ ମନାନ୍ତରର ବିଚାର କରାଯାଇ ଏଥିରେ ନିଷ୍ପତ୍ତି ଗ୍ରହଣ କରାଯାଇଥାଏ । ଏହା ବିଶ୍ୱର ସର୍ବୋଚ୍ଚ ବିଚାରାଳୟର ସମ୍ମାନ ଲାଭ କରିଛି । ବିଭିନ୍ନ ଦେଶର ଆର୍ଥନୀତିକ ଓ ସାମାଜିକ ବିକାଶପାଇଁ ଜାତିସଂଘର ଆର୍ଥନୀତିକ ଓ ସାମାଜିକ ପରିଷଦ ଗଠିତ । ଶିକ୍ଷା, ସ୍ୱାସ୍ଥ୍ୟ, ପରିବେଶ ଆଦିର ଉନ୍ନତି ଓ ବିଭିନ୍ନ ରୋଗ ବିରୋଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ ଏହି ପରିଷଦର ଦାୟିତ୍ୱ । ଏଥିରେ ମୁଖ୍ୟତଃ ନଅ ଜଣ ସଦସ୍ୟ ରହିଥାନ୍ତି । ଆମେରିକାର ନିୟୁୟର୍କରେ ଅବସ୍ଥିତ ଜାତିସଂଘର ସଚିବାଳୟ ସଂଘର ପରିଚାଳନା ଦାୟିତ୍ୱ ନିର୍ବାହ କରିଥାନ୍ତି । ସେକ୍ରେଟାରୀ ଜେନେରାଲ ଏହି ସଚିବାଳୟରେ ହିଁ କାର୍ଯ୍ୟ କରିଥାନ୍ତି । ମାର୍ଫତଦାର ପରିଷଦ ମୁଖ୍ୟତଃ ଫ୍ରାନ୍ସର କାମରେନ୍, ଅଷ୍ଟ୍ରେଲିଆର ନିୟୁଗୁଇନିଆ ଆଦି ରାଜ୍ୟମାନଙ୍କର ଶାସନ ଦାୟିତ୍ୱ ସମ୍ପାଦନ କରିଥାନ୍ତି । ବିଶେଷଭାବରେ ସ୍ୱୟଂଶାସିତ ନ ଥିବା ଅଞ୍ଚଳ ନିମିତ୍ତ ଏହି ପରିଷଦ ଗଠିତ । ଏତଦ୍‌ବ୍ୟତୀତ ଜାତିସଂଘର ଆହୁରି ଅନେକ ଉପବିଭାଗ ରହିଛି । ସେଗୁଡ଼ିକ ମଧ୍ୟରେ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି (I.M.F), ଆନ୍ତର୍ଜାତିକ ଶ୍ରମ ସଙ୍ଗଠନ (I.L.O.), ବିଶ୍ୱ ସ୍ୱାସ୍ଥ୍ୟ ସଙ୍ଗଠନ (W.H.O.) ସଂଯୁକ୍ତରାଷ୍ଟ୍ର ଆର୍ଥନୀତିକ, ସାମାଜିକ ଓ ସାଂସ୍କୃତିକ ସଙ୍ଗଠନ (UNESCO), ଖାଦ୍ୟ ଓ କୃଷି ସଙ୍ଗଠନ (F.A.O.) ଆଦି ପ୍ରଧାନ । ଏହାର ପତାକାର ରଙ୍ଗ ନୀଳରଙ୍ଗ ଏବଂ ଏଥିରେ ପୃଥିବୀର ମାନଚିତ୍ର ଓ ଦୁଇଟି ଅଲିଭ ବୃକ୍ଷର ଚିତ୍ର ରହିଛି । ଏହାର ସମ୍ପୂର୍ଣ୍ଣ ବ୍ୟୟଭାର ସଦସ୍ୟ ରାଷ୍ଟ୍ରମାନେ ଗ୍ରହଣ କରିଥାନ୍ତି । ଶାନ୍ତି ଏବଂ ମୈତ୍ରୀର ପ୍ରଚାରକଳ୍ପେ ମାନବ ସମାଜର କଲ୍ୟାଣ ନିମିତ୍ତ ଏହା ବହୁବିଧ କାର୍ଯ୍ୟପନ୍ଥା ଗ୍ରହଣ କରିଥାଏ ।

ବିଶ୍ୱଶାନ୍ତି ପ୍ରତିଷ୍ଠା କ୍ଷେତ୍ରରେ ଜାତିସଂଘର ଅବଦାନ ଉଲ୍ଲେଖଯୋଗ୍ୟ । ବିଶ୍ୱରେ ଯେତେବେଳେ ପୁଣି ଯୁଦ୍ଧର ଆଶଙ୍କା ଦେଖାଦେଇଛି, ସେତେବେଳେ ଜାତିସଂଘ ଏହାର ନିରାକରଣ ପାଇଁ ଆଶୁପଦକ୍ଷେପ ଗ୍ରହଣ କରିଛି । ଶାନ୍ତିସେନା ଓ ମଧ୍ୟସ୍ଥ ମାଧ୍ୟମରେ ତା'ର ସମାଧାନ କରିଛି । ଇସ୍ରାଏଲ ଓ ପାଲେଷ୍ଟାଇନ ମଧ୍ୟରେ ଚାଲିଥିବା ସଂଘର୍ଷ; ଆରବ ଇସ୍ରାଏଲ ସଂଘର୍ଷ, ଆଫଗାନିସ୍ଥାନ-କାମ୍ବୋଡ଼ିଆ ବିବାଦ ଆଦିର ସମାଧାନ କ୍ଷେତ୍ରରେ ଜାତିସଂଘର ଭୂମିକା ଗୁରୁତ୍ୱପୂର୍ଣ୍ଣ । ୧୯୪୯ ମସିହାରେ ବର୍ଲିନ ସମସ୍ୟା ସମାଧାନ, ୧୯୫୬ରେ ସୁଏଜ କେନାଲ ଜାତୀୟକରଣ ବେଳେ ଫ୍ରାନ୍ସ ଏବଂ ଇଂଲଣ୍ଡର ସୈନ୍ୟ ଅପସାରଣ, ୧୯୭୮ରେ ଇସ୍ରାଏଲ୍ ଏବଂ ମିଶର ମଧ୍ୟରେ ରାଜିନାମା, କଙ୍ଗୋରେ ଶାନ୍ତି ପ୍ରତିଷ୍ଠା, କୋରିଆ ଯୁଦ୍ଧର ସମାଧାନ, ଲିବିୟାର ସ୍ୱାଧୀନତା, ଇରାନ୍‌ରୁ ରୁଷିଆର ସୈନ୍ୟ ଅପସାରଣ, ଇଣ୍ଡୋନେସିଆ ଓ ନେଦରଲ୍ୟାଣ୍ଡ ବିବାଦର ଆପୋସ ମୀମାଂସା, ଭିଏତ୍‌ନାମ ସମସ୍ୟା ସମାଧାନ, କାଶ୍ମୀର ଘଟଣାରେ ପାକିସ୍ଥାନ ଓ ଭାରତର ଆଶୁ ଯୁଦ୍ଧର ନିରାକରଣ ଆଦି ବହୁ ଘଟଣାରେ ଜାତିସଂଘ ଉଲ୍ଲେଖନୀୟ କାର୍ଯ୍ୟ କରି ପ୍ରଶଂସାଭାଜନ ହୋଇପାରିଛି । ଇରାକ୍ ଓ ଆମେରିକା ମଧ୍ୟରେ ଯେଉଁ ଯୁଦ୍ଧର ଆରମ୍ଭ

ହୋଇଥିଲା, ସମସ୍ତେ ଆଶା କରୁଥିଲେ ତୃତୀୟ ବିଶ୍ୱଯୁଦ୍ଧ ଆସନ୍ନପ୍ରାୟ । ମାତ୍ର ଏ କ୍ଷେତ୍ରରେ ଜାତିସଂଘ ସେକ୍ରେଟାରୀଙ୍କ ସମୁଚିତ ପଦକ୍ଷେପ ତୃତୀୟ ବିଶ୍ୱଯୁଦ୍ଧ ଆଶଙ୍କାକୁ ଦୂର କରିପାରିଥିଲା । ତେଣୁ ଜାତିସଂଘର ସୃଷ୍ଟିକାଳଠାରୁ ଏଯାବତ୍ ବିଭିନ୍ନ ସମୟରେ ଜାତିସଂଘ ବିଶ୍ୱରେ ସ୍ଥାୟୀ ଶାନ୍ତି ପ୍ରତିଷ୍ଠା ନିମିତ୍ତ ଉଦ୍ୟମ ଜାରି ରଖିଛି ଏବଂ ଅଧିକାଂଶ କ୍ଷେତ୍ରରେ ସେ ସଫଳକାମ ହୋଇପାରିଛି ମଧ୍ୟ ।

ଏହା ସତ୍ତ୍ୱେ ଜାତିସଂଘ ଅନେକ କ୍ଷେତ୍ରରେ ବିଫଳ ହେବାର ବହୁ ଉଦାହରଣ ରହିଛି । କାରଣ ଏହାର ସଦସ୍ୟଭୁକ୍ତ ରାଷ୍ଟ୍ର ସମୟେ ସମୟେ ଏପରି ଆଚରଣ କରନ୍ତି, ଯାହାଦ୍ୱାରା ଜାତିସଂଘର କାର୍ଯ୍ୟରେ ବାଧା ସୃଷ୍ଟି ହୋଇଥାଏ । 'ଭେଟୋ' ପ୍ରୟୋଗ କରିବାର ଅଧିକାରୀ ରାଷ୍ଟ୍ର ନିଜର ତଥା ନିଜ ମେଣ୍ଟଭୁକ୍ତ ରାଷ୍ଟ୍ରର ସ୍ୱାର୍ଥ ପାଇଁ ଅନୁଚିତ କାର୍ଯ୍ୟରେ ମଧ୍ୟ 'ଭେଟୋ' ପ୍ରୟୋଗ କରି ଜାତିସଂଘର କ୍ଷମତାକୁ ସଙ୍କୁଚିତ କରିଦେଉଛନ୍ତି । ବିକଶିତ ରାଷ୍ଟ୍ର ଅନ୍ୟକୁ ଆଣବିକ ଅସ୍ତ୍ରର ସଙ୍କୋଚନ ପାଇଁ ପରାମର୍ଶ ଦେଉଥିବା ସମୟରେ ନିଜେ ବିପୁଳ ପରିମାଣରେ ଏହି ଅସ୍ତ୍ରର ଉତ୍ପାଦନ କରୁଛନ୍ତି । ଆମେରିକା କେତେଥର ଜାତିସଂଘର ନିଷ୍ପତ୍ତିକୁ ଅବମାନନା କରିଛି । ମାତ୍ର ଜାତିସଂଘ ସେ କ୍ଷେତ୍ରରେ କିଛି କରିପାରି ନାହିଁ । ପୁଣି କୌଣସି ରାଷ୍ଟ୍ର ଏହାର ନିଷ୍ପତ୍ତିକୁ ଅବମାନନା କଲେ କେବଳ ନିନ୍ଦାପ୍ରସ୍ତାବ ବ୍ୟତୀତ ଜାତିସଂଘ ଆଉ କିଛି କରିପାରେ ନାହିଁ । ଏବେବି କାଶ୍ମୀର ସମସ୍ୟା, ଚୀନ ଭାରତ ସୀମାସମସ୍ୟା, ଆଫଗାନିସ୍ଥାନ ସମସ୍ୟା ଆଦି କ୍ଷେତ୍ରରେ ଜାତିସଂଘ କୌଣସି ଭୂମିକା ଗ୍ରହଣ କରିପାରୁ ନାହିଁ । କଙ୍ଗୋ ସମସ୍ୟାର ଯଥାର୍ଥ ସମାଧାନ ହୋଇପାରି ନାହିଁ । ଭିଏତ୍‌ନାମରୁ ସୈନ୍ୟ ଅପସାରଣ କ୍ଷେତ୍ରରେ ଆମେରିକାର ଜିଦ୍ ଆଗରେ ଜାତିସଂଘ କିଛି କରିପାରିନ ଥିଲା । ବିଶ୍ୱର ବୃହତ୍ ଶକ୍ତିଗୁଡ଼ିକ ଅଧିକାଂଶ ସମୟରେ ଜାତିସଂଘର ନିଷ୍ପତ୍ତିକୁ ଅବମାନନା କରୁଛନ୍ତି । ଏ କ୍ଷେତ୍ରରେ ଜାତିସଂଘ ବାଧହୋଇ ନିରବ ରହୁଛି । ବିଶ୍ୱର ଯୁଦ୍ଧଭୟ ଏଡ଼ାଇବାକୁ ଓ ଶାନ୍ତି ପ୍ରତିଷ୍ଠା ପାଇଁ ଜାତିସଂଘର ସୃଷ୍ଟି । ଏଣୁ ଏହାର ସଦସ୍ୟ ରାଷ୍ଟ୍ର ସଂଯତ ଆଚରଣ କରି ତା'ର ନିଷ୍ପତ୍ତିକୁ କାର୍ଯ୍ୟକାରୀ କରିବାକୁ ଆଗ୍ରହ ପ୍ରକାଶ କରିବା ଉଚିତ । 'ଭେଟୋ' ପ୍ରୟୋଗର କ୍ଷମତା ଥିବା ରାଷ୍ଟ୍ର ବିନା କାରଣରେ ବା ସାମାନ୍ୟ କାରଣରେ ଭେଟୋ ପ୍ରୟୋଗ କରିବା ସର୍ବାଦୌ ଅନୁଚିତ । ଯେଉଁମାନେ ଏହାର ନିଷ୍ପତ୍ତିକୁ ଅବମାନନା କରୁଛନ୍ତି, ସେମାନଙ୍କ ବିରୋଧରେ କଠୋର କାର୍ଯ୍ୟାନୁଷ୍ଠାନ ଗ୍ରହଣ ହେବା ଆବଶ୍ୟକ । ବିଶ୍ୱକୁ ପରମାଣୁମୁକ୍ତ କରିବା ପାଇଁ ଜାତିସଂଘର ଉଦ୍ୟମ ଜାରି ରହିବା ସଙ୍ଗେ ସଙ୍ଗେ ସଦସ୍ୟଭୁକ୍ତ ସମସ୍ତ ରାଷ୍ଟ୍ର ପାଇଁ ସମାନ ନୀତି, ନିୟମ ଓ ଆଚରଣ ଲାଗୁ ହେବା ଜରୁରୀ ।

ଜାତିସଂଘ ଏକ ବିଶ୍ୱାସର ଅନୁଷ୍ଠାନ । ସମୂହ ସ୍ୱାର୍ଥ ସୁରକ୍ଷା ଉଦ୍ଦେଶ୍ୟରେ ଏହାର ସୃଷ୍ଟି । ଏହାର ସମ୍ମାନ ରକ୍ଷା ପାଇଁ ବିଶ୍ୱର ସମସ୍ତ ରାଷ୍ଟ୍ର ମିଳିତ ଭାବରେ ଉଦ୍ୟମ ଜାରି ରଖିବା ଆବଶ୍ୟକ । ଅଯଥା ନିଜର ଶକ୍ତିର ମହାକାଂକ୍ଷା ପ୍ରଦାନ ନ କରି ସମଗ୍ର ବିଶ୍ୱର ଶାନ୍ତି ନିମିତ୍ତ ଜାତିସଂଘ ଯେଉଁ ଉଦ୍ୟମ କରୁଛି, ତା'କୁ ଆନ୍ତରିକ ସହଯୋଗ ପ୍ରଦାନ କଲେ ତା'ର କାର୍ଯ୍ୟକାରିତା ଶକ୍ତି ବୃଦ୍ଧି ପାଇବ । ସମଗ୍ର ବିଶ୍ୱର ମୁକ୍ତି ଓ ଶାନ୍ତି ପାଇଁ କେବଳ ଜାତିସଂଘ ହିଁ ବ୍ୟବସ୍ଥା କରିପାରିବ । ତେଣୁ

ସଦସ୍ୟଭୁକ୍ତ ରାଷ୍ଟ୍ର ଭାବରେ ତା'ର ନିଷ୍ପତ୍ତିକୁ ସ୍ୱାଗତ କରିବା ବର୍ତ୍ତମାନ ସମୟ ପାଇଁ ଅତ୍ୟନ୍ତ ଜରୁରୀ । ଜାତିସଂଘର କାର୍ଯ୍ୟକାରୀ ଶକ୍ତି ସଙ୍କୁଚିତ ହେଲେ ବିଶ୍ୱ ଯେ ଆଉ ଏକ ତୃତୀୟ ବିଶ୍ୱଯୁଦ୍ଧ ଆଡ଼କୁ ଗତି କରିବ, ତାହା ନିଃସନ୍ଦେହରେ କୁହାଯାଇପାରେ ।



# ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନ

**(ଉପକ୍ରମ, ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନର ଉଦ୍ଦେଶ୍ୟ, ଏହାର ଅତୀତ ଇତିହାସ, ବିଶ୍ୱ ପରିପ୍ରେକ୍ଷୀରେ ଗୋଷ୍ଠୀ ଆନ୍ଦୋଳନର ଭୂମିକା, ଉପସଂହାର )**

ଅତୀତ ଅନୁଭୂତିରୁ ମଣିଷ ନୂତନ ଶିକ୍ଷା ଲାଭ କରେ । ଏହି ଅନୁଭୂତି ମଣିଷକୁ ପ୍ରେରଣା ଦିଏ ନିଜର ସୁରକ୍ଷା ଓ ସ୍ଥିତିର ଜାହିର ପାଇଁ । ଗୋଟିଏ ମଣିଷ ଜୀବନରେ ଯାହା ସତ୍ୟ, ଗୋଟିଏ ଜାତି ବା ଦେଶର ଜୀବନରେ ମଧ ତାହା ସତ୍ୟ । ସୁରକ୍ଷା ଏବଂ ସ୍ଥିତାବସ୍ଥା ପାଇଁ ହିଁ ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନର ସୃଷ୍ଟି । ଦୁଇ ଦୁଇଟି ବିଶ୍ୱଯୁଦ୍ଧ ମାନବ ସମାଜକୁ ଯେଉଁ ସଙ୍କଟ ମଧ୍ୟକୁ ଟାଣିନେଇଥିଲା, ସେହି ସଙ୍କଟରୁ ଉଦ୍ଧାର ନିମିତ୍ତ ସୃଷ୍ଟି ଲାଭ କରିଥିଲା 'ଜାତିସଂଘ' । ଯୁଦ୍ଧର ଭୟଙ୍କରତାରୁ ରକ୍ଷା ନିମିତ୍ତ ଏବଂ ଶାନ୍ତି ପ୍ରତିଷ୍ଠା ପାଇଁ 'ଜାତିସଂଘ' ଗଠିତ ହୋଇଥିଲେହେଁ ଏବଂ -ଏହାର ଉଦ୍ଦେଶ୍ୟ ଅତୀବ ମହତ୍ତ୍ୱପୂର୍ଣ୍ଣ ହେଲେହେଁ, ବାସ୍ତବରେ କାର୍ଯ୍ୟକାରିତା କ୍ଷେତ୍ରରେ ଏହା ଯେତେଦୂର ସଫଳ ହେବା କଥା, ତାହା ହୋଇପାରି ନାହିଁ । ରୁଷିଆ ଓ ଆମେରିକାର କ୍ଷମତାକନ୍ଦଳରୁ ଜନ୍ମ ନେଇଥିଲା 'ନାଟୋ' ଓ 'ୱାର୍ସାମେଣ୍ଟ' । ଅଯଥା ଅହଙ୍କାର ଏବଂ ଆତ୍ମବଡ଼ିମାର ପରିପ୍ରକାଶ ପାଇଁ ଏହିପରି ଦୁଇଟି ମେଣ୍ଟ ଯେ ଗଠିତ ହୋଇଥିଲା ତାହା ଅସ୍ୱୀକାର କରାଯାଇ ନ ପାରେ । ମାତ୍ର ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନର ଜନ୍ମ ହୋଇଥିଲା ଏକ ମହତ୍ ଉଦ୍ଦେଶ୍ୟର ସାଧନ ନିମିତ୍ତ । ନାମ ବା ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନର ଲକ୍ଷ୍ୟ ବିଶ୍ୱରେ ଶାନ୍ତି ଓ ସ୍ଥିରତା ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଏକ ଭ୍ରାତୃତ୍ୱର ବନ୍ଧନରେ ସମଗ୍ର ବିଶ୍ୱକୁ ବନ୍ଦୀ କରିବା । ନିରସ୍ତ୍ରୀକରଣ, ବର୍ଣ୍ଣବୈଷମ୍ୟ ନୀତିର ତୀବ୍ର ବିରୋଧ, ଆତ୍ମନିର୍ଭରଶୀଳତା, ବିକାଶଶୀଳ ରାଷ୍ଟ୍ରମାନଙ୍କର ଆର୍ଥିକ ପ୍ରଗତି, ସର୍ବୋପରି ଆତଙ୍କବାଦର ବିଲୋପ ସାଧନ ଏହାର ବୃହତ୍ତର ଲକ୍ଷ୍ୟ । ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ବାସ୍ତବରେ ଗୋଷ୍ଠୀ ନିରପେକ୍ଷ ଆଦର୍ଶର ମହାନ୍ ପ୍ରବକ୍ତା । ଧର୍ମ ନିରପେକ୍ଷ ଜାତୀୟତାବାଦ ଏବଂ ଗୋଷ୍ଠୀ ନିରପେକ୍ଷ ନୀତି ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନର ଅନ୍ୟତମ ଲକ୍ଷ୍ୟ । ଦୁଇ ଦୁଇଟି ଶକ୍ତିଶାଳୀ ମେଣ୍ଟଠାରୁ ଦୂରରେ ରହି ସ୍ୱାଧୀନ ଭାବରେ ନିଜର ପବିତ୍ର କାର୍ଯ୍ୟକୁ ସାଧନ କରିବା ପାଇଁ ଏହା ନେଇଥିଲା ଅଗ୍ନିଶପଥ । ଏହି ଦୃଷ୍ଟିରୁ ବିଶ୍ୱ ରାଜନୀତିକ ମଞ୍ଚରେ ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନର ଆବିର୍ଭାବ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ମାନବିକ ମୂଲ୍ୟବୋଧର ପ୍ରତିଷ୍ଠା ପାଇଁ ଏହାର ସଂଗ୍ରାମ ମଧ ଅତୀବ ପ୍ରଶଂସନୀୟ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ସମଗ୍ର ବିଶ୍ୱରେ ଏକ ସଙ୍କଟ ସୃଷ୍ଟି କରିଥିଲା । ଏହି ସମୟରେ ବିଶ୍ୱର ଦୁଇଟି ମହାଶକ୍ତି ରୁଷ୍ ଓ ଆମେରିକା ନିଜ ନିଜର ଆଧିପତ୍ୟ ବିସ୍ତାର କରିବାକୁ ସକ୍ରିୟ ହୋଇ ଉଠିଥିଲେ । ଉଭୟ ଦେଶର ଶୀତଳଯୁଦ୍ଧ ଘନେଇ ଆସିଥିଲା । ଆମେରିକାର ପ୍ରଭାବିତ 'ନାଟୋ' ଏବଂ ରୁଷ ଦ୍ୱାରା ଗଠିତ 'ୱାର୍ସାମେଣ୍ଟ' ପରସ୍ପରର ଶକ୍ତି କଳନା କରିବାକୁ ସଜାଗ ହୋଇ ଉଠିଥିଲେ । ପୃଥିବୀର ଶାନ୍ତି ସମ୍ପୂର୍ଣ୍ଣ ଭାବରେ ବିଡ଼ମ୍ବିତ ହୋଇ ଉଠୁଥିବା ସମୟରେ ଉଭୟ ଗୋଷ୍ଠୀଠାରୁ ଦୂରତ୍ୱ ରକ୍ଷା କରି ବିଶ୍ୱରେ ଶାନ୍ତି ଏବଂ ମୈତ୍ରୀର ପ୍ରତିଷ୍ଠା ପାଇଁ ଜନ୍ମଲାଭ କଲା ନାମ୍ ବା ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନ । ଏହା ଉପରୋକ୍ତ ଦୁଇଟି ସାମରିକ ଗୋଷ୍ଠୀରେ ଯୋଗଦାନ ନ କରି ବିଶ୍ୱର ପ୍ରତ୍ୟେକ ରାଷ୍ଟ୍ରର ସ୍ୱାଧୀନତା ତଥା ସାର୍ବଭୌମତ୍ୱର ରକ୍ଷା ଦିଗରେ କାର୍ଯ୍ୟ କରିବାକୁ ସ୍ଥିର କରିଥିଲା । ସାମ୍ରାଜ୍ୟବାଦର ବିରୋଧ, ମାରାତ୍ମକ ଅସ୍ତ୍ରଶସ୍ତ୍ରର ବିଲୋପ, ବିଶ୍ୱଶାନ୍ତି ପ୍ରତିଷ୍ଠା ହେଉଛି ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନର ପ୍ରଧାନ ଲକ୍ଷ୍ୟ । ଏହି ଆନ୍ଦୋଳନ ମୁଣ୍ଡ ଟେକିବା ସମୟରେ ଅର୍ଥନୈତିକ ନ୍ୟାୟପ୍ରଦାନ ତଥା ଶୋଷଣ ବିରୋଧୀ ସଂଗ୍ରାମର ନେତୃତ୍ୱ ନେବା ଥିଲା ଏହାର ଉଦ୍ଦେଶ୍ୟ । ସଦ୍ୟ ଔପନିବେଶିକବାଦର ବିଲୋପ ଯୋଗୁଁ ଜନ୍ମ ନେଇଥିବା ରାଷ୍ଟ୍ରଗୁଡ଼ିକୁ ପୁଞ୍ଜିବାଦୀ ରାଷ୍ଟ୍ର କବଳିତ କରିବାକୁ ଆଗେଇ ଆସିଥିଲେ । ମିଳିତ ଜାତିସଂଘରେ ଯୋଗଦେବା ପାଇଁ ବିଭିନ୍ନ ସ୍ତରରେ ଏମାନଙ୍କ ଉପରେ ଚାପ ପ୍ରୟୋଗ କରାଗଲା । ମାତ୍ର ସ୍ୱାଧୀନଚେତା ଏହି ରାଷ୍ଟ୍ରଗୁଡ଼ିକ ନିଜକୁ ସ୍ୱାବଲମ୍ବନଶୀଳ କରିବା ପାଇଁ ତଥା ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ଐକ୍ୟ ସ୍ଥାପନ ପାଇଁ ସମଚିନ୍ତକ ରାଷ୍ଟ୍ରଗୁଡ଼ିକ ଗଠନ କଲେ ନାମ୍ ବା ଗୋଷ୍ଠୀନିରପେକ୍ଷ ଆନ୍ଦୋଳନ । ପ୍ରଥମେ ପୁଞ୍ଜିବାଦୀ ରାଷ୍ଟ୍ରଗୁଡ଼ିକ ଏହାର କାର୍ଯ୍ୟକୁ ସନ୍ଦେହ ଚକ୍ଷୁରେ ଦେଖୁଥିଲେହେଁ ପରବର୍ତ୍ତୀ ସମୟରେ ବିଶ୍ୱର ବିଭିନ୍ନ ରାଷ୍ଟ୍ର ଏହାର କାର୍ଯ୍ୟାବଳୀକୁ ପ୍ରଶଂସା କରିଛନ୍ତି । ଦକ୍ଷିଣଆଫ୍ରିକାରେ ଯେଉଁ ବର୍ଣ୍ଣବୈଷମ୍ୟ ନୀତି କଳାଲୋକଙ୍କୁ ନିର୍ଯାତିତ କରୁଥିଲା, ତା ବିରୋଧରେ ନାମ୍ ସ୍ୱର ଉତ୍ତୋଳନ କରିଥିଲା । ନାମ୍ବିଆ କ୍ଷେତ୍ରରେ ମଧ୍ୟ ଅନୁରୂପ ଘଟଣା ଘଟିଥିଲା । ଆଫ୍ରିକା, ଲାଟିନ୍ ଆମେରିକା, ଏସିଆ ଆଦି ଆର୍ଥନୀତିକ ଅନଗ୍ରସର ରାଷ୍ଟ୍ର ଉପରେ ହେଉଥିବା ଔପନିବେଶିକ ଶୋଷଣକୁ ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନ ତୀବ୍ର ସମାଲୋଚନା କରିଛି । ଏତଦ୍‌ବ୍ୟତୀତ ପାଲେଷ୍ଟାଇନ୍ ମୁକ୍ତି ସଂଗ୍ରାମରେ ଏହା ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି । ଆର୍ଥିକ ପ୍ରଗତି, ସାମାଜିକ ନ୍ୟାୟପ୍ରଦାନ କ୍ଷେତ୍ରରେ ଏହାର କାର୍ଯ୍ୟାବଳୀ ଅତୀବ ପ୍ରଶଂସନୀୟ । ଜାତି, ଧର୍ମ, ବର୍ଣ୍ଣ ଓ ଆର୍ଥିକ ସମୃଦ୍ଧିକୁ ବିଚାର ନ କରି ପ୍ରତ୍ୟେକ ସଦସ୍ୟ ରାଷ୍ଟ୍ରକୁ ସମାନ ଅଧିକାର ପ୍ରଦାନ କରିବା ନାମ୍‌ର ବିଶେଷ ଲକ୍ଷ୍ୟ । ସ୍ଥିତାବସ୍ଥା ପରିବର୍ତ୍ତେ ପରିବର୍ତ୍ତନକୁ ସ୍ୱାଗତ କରିବା, ଅସ୍ତ୍ରଶସ୍ତ୍ର ପ୍ରତିଦ୍ୱନ୍ଦ୍ୱିତାକୁ ନିରୁତ୍ସାହିତ କରିବା, ସହାବସ୍ଥାନ ନୀତି ଉପରେ ଗୁରୁତ୍ୱ ପ୍ରଦାନ କରିବା, ସାମାଜିକ ନ୍ୟାୟପ୍ରଦାନ, ମାନବବାଦର ପ୍ରତିଷ୍ଠା, କ୍ଷୟିଷ୍ଣୁ ମୂଲ୍ୟବୋଧର ପୁନଃ ଜାଗରଣ, ଶାନ୍ତି ଓ ମୈତ୍ରୀର ବାର୍ତ୍ତାପ୍ରଚାର, ସର୍ବୋପରି ବିକାଶଶୀଳ ରାଷ୍ଟ୍ରଗୁଡ଼ିକର ଆର୍ଥିକ ପ୍ରଗତି ପ୍ରତି ଲକ୍ଷ୍ୟ ପ୍ରଦାନ କରିବା 'ନାମ୍'ର ଆନ୍ତରିକ ଉଦ୍ଦେଶ୍ୟ ।

ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନର ଇତିହାସ ଅତୀବ ଚମତ୍କାର । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ସମଗ୍ର ପୃଥିବୀରେ ଦୁଇଟି ଶକ୍ତିଶାଳୀ ଶିବିରର ଆବିର୍ଭାବ ଘଟିଲା । ମାତ୍ର କେତେକ ସ୍ୱାଧୀନ

ରାଷ୍ଟ୍ର ନିରପେକ୍ଷ ଭାବରେ କୌଣସି ଦଳଭୁକ୍ତ ନ ହୋଇ ଦେଶର ସେବା କରିବା ପାଇଁ ଆଗ୍ରହ ପ୍ରକାଶ କରିଥିଲେ ସେହିମାନଙ୍କ ପ୍ରଚେଷ୍ଟାରେ ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନ ଜନ୍ମଲାଭ କରିଥିଲା । ଏ କ୍ଷେତ୍ରରେ ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କ ଅବଦାନ ସ୍ମରଣୀୟ । ସାଧାରଣ ଭାବରେ କହିଲେ ତାଙ୍କରି ପ୍ରଚେଷ୍ଟା ଯୋଗୁ ହିଁ ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନ ମୁଣ୍ଡ ଟେକି ପାରିଥିଲା । ୧୯୩୬ ମସିହା ପର୍ଯ୍ୟନ୍ତ ଗୋଷ୍ଠୀ ନିରପେକ୍ଷ ଶବ୍ଦର ପ୍ରୟୋଗ କୌଣସିଠାରେ ଦେଖିବାକୁ ମିଳି ନ ଥିଲା । ବାସ୍ତବରେ ଗୋଷ୍ଠୀନିରପେକ୍ଷ ଆନ୍ଦୋଳନରେ ବିଶ୍ୱର ଯେଉଁ ତିନି ବ୍ୟକ୍ତିତ୍ୱ ବିଶେଷ ଭୂମିକା ଗ୍ରହଣ କରିଥିଲେ, ସେମାନେ ହେଲେ ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ ନେହେରୁ, ମିଶରର ରାଷ୍ଟ୍ରପତି ନାସେର, ଯୁଗୋସ୍ଲୋଭିଆର ରାଷ୍ଟ୍ରପତି ମାର୍ଶାଲ ଟିଟୋ । ୧୯୪୭ଠାରୁ ୧୯୫୫ ମଧ୍ୟରେ ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନର ଗଠନ ନିମିତ୍ତ ଯେଉଁ ପ୍ରସ୍ତୁତି ଚାଲିଥିଲା, ତା'ର ମୁଖ୍ୟ ପରିଚାଳକ ଥିଲେ ପଣ୍ଡିତ ନେହେରୁ । ଅଥଚ ୧୯୫୬ ମସିହା ଜୁଲାଇ ୧୮/୧୯ ତାରିଖରେ ବ୍ରିଓନୀ ଠାରେ ନେହେରୁ-ନାସେର-ଟିଟୋଙ୍କ ମଧ୍ୟରେ ଯେଉଁ ବୈଠକ ଅନୁଷ୍ଠିତ ହୋଇଥିଲା, ସେଥିରେ ମଧ୍ୟ 'ଗୋଷ୍ଠୀ-ନିରପେକ୍ଷ' ଶବ୍ଦର ପ୍ରୟୋଗ ହୋଇନ ଥିଲା । ପ୍ରକୃତରେ 'ଗୋଷ୍ଠୀ ନିରପେକ୍ଷ' ଶବ୍ଦର ପ୍ରଥମ ପ୍ରୟୋଗ କରାଯାଇଥିଲା ୧୯୬୧ ମସିହାରେ ବେଲଗ୍ରେଡ଼ ଠାରେ ଅନୁଷ୍ଠିତ ହୋଇଥିବା ସମ୍ମିଳନୀରେ । ସେହିଦିନ ଠାରୁ ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନ ବିଶ୍ୱର କୂଟନୈତିକ ସ୍ତରରେ ଗୁରୁତ୍ୱଲାଭ କଲା । ପ୍ରଥମ ଗୋଷ୍ଠୀ ନିରପେକ୍ଷ ରାଷ୍ଟ୍ରର ଶିଖର ସମ୍ମିଳନୀ ବେଲଗ୍ରେଡ଼ଠାରେ ଆରମ୍ଭ ହୋଇଥିଲା । ଏହି ସମ୍ମିଳନୀରେ ଏସିଆ ଏବଂ ଆଫ୍ରିକାରୁ ସମୁଦାୟ ୧୫ଟି ଦେଶ ଯୋଗ ଦେଇଥିଲେ । ୨ୟ ଶିଖର ସମ୍ମିଳନୀ ୧୯୬୪ ମସିହା ଅକ୍ଟୋବର ମାସରେ କାଏରୋଠାରେ ଅନୁଷ୍ଠିତ ହୋଇଥିଲା ଓ ଏଥିରେ ୪୭ଟି ଦେଶ ଯୋଗ ଦେଇଥିଲେ । ୧୯୭୦ରେ ଜାମ୍ବିଆର ରାଜଧାନୀ ଲୁସାକାର ୩ୟ ସମ୍ମିଳନୀରେ ୫୩ଟି ଦେଶ, ୧୯୭୩ ସେପ୍ଟେମ୍ବର ମାସରେ ଆଲଜିଆର୍ସର ୪ର୍ଥ ସମ୍ମିଳନୀରେ ୭୫ଟି ଦେଶ, ୧୯୭୬ କଲମ୍ବୋର ୫ମ ସମ୍ମିଳନୀରେ ୮୬ଟି ଦେଶ, ୧୯୭୯ ହାଭାନାଠାରେ ଅନୁଷ୍ଠିତ ୬ଷ୍ଠ ସମ୍ମିଳନୀରେ ୯୪ଟି ଦେଶ, ୧୯୮୩ ମାର୍ଚ୍ଚ ନୂଆଦିଲ୍ଲୀର ୭ମ ଗୋଷ୍ଠୀନିରପେକ୍ଷ ସମ୍ମିଳନୀରେ ୯୯ଟି ଦେଶ ଯୋଗଦେଇ ବିଭିନ୍ନ ବିଷୟରେ ଆଲୋଚନା କରିଥିଲେ । ଏହା ବ୍ୟତୀତ ବେଲଗ୍ରେଡ଼ଠାରେ ୧୯୮୯ରେ ନବମ ଶିଖର ସମ୍ମିଳନୀ, ୧୯୯୨ରେ ଜାକର୍ତ୍ତାଠାରେ ଦଶମ ସମ୍ମିଳନୀ, ୧୯୯୫ରେ କଲମ୍ବିଆର କର୍ତ୍ତାନଠାରେ ଏକାଦଶ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଗୋଷ୍ଠୀନିରପେକ୍ଷ ଆନ୍ଦୋଳନ ବା ନାମ୍‌ର ଦ୍ୱାଦଶ ମନ୍ତ୍ରୀସ୍ତରୀୟ ସମ୍ମିଳନୀ ନୂଆଦିଲ୍ଲୀରେ ୧୯୯୭ ମସିହା ଏପ୍ରିଲ ମାସରେ ଅନୁଷ୍ଠିତ ହୋଇଥିଲା । ଏଥିରେ ନାମ୍ ଅନ୍ତର୍ଭୁକ୍ତ ୧୧୩ଟି ରାଷ୍ଟ୍ର ସମ୍ମିଳିତ ହୋଇ ବିଶ୍ୱର ବିଭିନ୍ନ ସମସ୍ୟା ସମ୍ପର୍କରେ ଆଲୋଚନା କରିଛନ୍ତି । ବିଭିନ୍ନ ସମ୍ମିଳନୀରେ ବିଶ୍ୱର ସାମ୍ପ୍ରତିକ ପରିସ୍ଥିତି ପ୍ରତି ଉଦ୍‌ବେଗ ପ୍ରକାଶ କରାଯିବା ସଙ୍ଗେ ସଙ୍ଗେ ସମଗ୍ର ପୃଥିବୀକୁ ଯୁଦ୍ଧମୁକ୍ତ କରିବା ଉପରେ ଏହି ସମ୍ମିଳନୀରେ ଗୁରୁତ୍ୱ ଆରୋପ କରାଯାଇଛି । ବିଶେଷଭାବରେ ବିଶ୍ୱକୁ ଅଣୁଅସ୍ତ୍ରରୁ ମୁକ୍ତ ରଖିବା, ବର୍ଣ୍ଣବିଦ୍ୱେଷ ନୀତିର ବିରୋଧ କରିବା, ପାରମାଣବିକ ପରୀକ୍ଷାକୁ

ନିଷେଧ କରିବା, ଶକ୍ତିଶାଳୀ ରାଷ୍ଟ୍ରମାନଙ୍କ ନୀତିରେ ଅନାବଶ୍ୟକ ହସ୍ତକ୍ଷେପକୁ ପ୍ରତିରୋଧ କରିବା, ବିକାଶଶୀଳ ରାଷ୍ଟ୍ରଗୁଡ଼ିକର ଆର୍ଥିକ ପୁନରୁତ୍ଥାନ ନିମିତ୍ତ ବିଭିନ୍ନ ପଦକ୍ଷେପ ଗ୍ରହଣ କରିବା, ସାମ୍ରାଜ୍ୟବାଦର ବିରୋଧ ଆଦି କ୍ଷେତ୍ରରେ ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ ।

ସମ୍ପ୍ରତି ବିଶ୍ୱ ଯେଉଁ ଦିଗକୁ ଧାବମାନ ହେଉଛି, ତା'ର ସେହି ଧ୍ୱଂସାତ୍ମକ ଦିଗକୁ ପ୍ରତିହତ କରିବା ପାଇଁ 'ନାମ୍' ସକ୍ରିୟ ପଦକ୍ଷେପ ଗ୍ରହଣ କରିବା ଉଚିତ । ଆଜି ବିଶ୍ୱର ବିଭିନ୍ନ କ୍ଷେତ୍ରରେ ସଂସ୍କାର ଆଣିବାର ପ୍ରୟୋଜନ ରହିଛି । ଏବେ ମଧ୍ୟ ବିଶ୍ୱରୁ ବର୍ଣ୍ଣବୈଷମ୍ୟ ନୀତିର ସମ୍ପୂର୍ଣ୍ଣ ବିଲୋପ ଘଟି ନାହିଁ । ଆଫଗାନିସ୍ଥାନ, ଲେବାନନ୍, ଭିଏତ୍‌ନାମ, ଶ୍ରୀଲଙ୍କା, ଲିବିୟା, ମରକ୍‌କୋ ଆଦି ଦେଶ ବିଭିନ୍ନ ସମସ୍ୟା ଘେରରେ ରହିଛନ୍ତି । ଆମେରିକାର 'ଷ୍ଟାରୱାର' କାର୍ଯ୍ୟକ୍ରମ ବିଶ୍ୱଶାନ୍ତିକୁ ବ୍ୟାହତ କରୁଛି । ପାରମାଣବିକ ନିଷେଧଚୁକ୍ତି ଏଯାବତ୍ ଆନ୍ତରିକତାର ସହିତ ସମସ୍ତ ଦେଶଙ୍କ ଦ୍ୱାରା ଗୃହୀତ ହୋଇ ନାହିଁ । ଏବେ ମଧ୍ୟ ଆଫ୍ରିକା ମହାଦେଶର ଲକ୍ଷ ଲକ୍ଷ ଲୋକ ଦୁର୍ଭିକ୍ଷର ଶିକାର ହୋଇ ପ୍ରାଣ ବିସର୍ଜନ କରୁଛନ୍ତି । ବୋଥା ସରକାରର ବିଲୟ ଘଟିଥିଲେ ହେଁ; ଦକ୍ଷିଣଆଫ୍ରିକାରେ ଏବେ ମଧ୍ୟ ମୂଳ ଆଫ୍ରିକାବାସୀ ଅବହେଳିତ । ଇସ୍ରାଏଲ, ପାକିସ୍ଥାନ ଆଦି ଦେଶଙ୍କର ଯୁଦ୍ଧଖୋର ମନୋବୃତ୍ତି ଯୋଗୁଁ ମାନବ ସଭ୍ୟତା ବିପନ୍ନ ହେବାକୁ ବସିଛି । ବିଶ୍ୱ ରାଜନୀତିରେ ଆମେରିକାର ବଡ଼ଭାଇପଣିଆ ଓ ଆତ୍ମବଡ଼ିମା ବିଶ୍ୱକୁ ସଙ୍କଟଜନକ ପରିସ୍ଥିତି ମଧ୍ୟକୁ ଠେଲି ଦେଉଛି । ସୋଭିଏତ୍ ସଂଘର ପତନ ପରେ ଆଜି ଆମେରିକା ସର୍ବଶକ୍ତିଶାଳୀ ଦେଶ ଭାବରେ ନିଜ ମତାମତକୁ ଅନ୍ୟ ଦେଶମାନଙ୍କ ଉପରେ ବାଧ୍ୟ କରି ଲଦି ଦେବାରେ ଲାଗିଛି । ଏହା କଦାପି ସୁସ୍ଥ ଗଣତାନ୍ତ୍ରିକ ମତବାଦର ପରିଚାୟକ ନୁହେଁ । ତେଣୁ ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନରେ ସାମିଲ ହୋଇଥିବା ରାଷ୍ଟ୍ରଗୁଡ଼ିକ ଏ କ୍ଷେତ୍ରରେ ବିହିତ କାର୍ଯ୍ୟପନ୍ଥା ଗ୍ରହଣ କରିବା ଆବଶ୍ୟକ । ଅବଶ୍ୟ ଅତୀତରେ ଦକ୍ଷିଣ ଆଫ୍ରିକାର ବୋଥା ସରକାରଙ୍କ ବିରୋଧରେ ଜନମତ ଜାଗ୍ରତ, ଇସ୍ରାଏଲର ଅମାନବିକ କାର୍ଯ୍ୟାବଳୀ ନିମିତ୍ତ ବାସନ୍ଦ ବ୍ୟବସ୍ଥା ପାଇଁ ଡ଼ାକରା, ଇରାକ୍-ଇରାନ୍ ଯୁଦ୍ଧର ଅବସାନ ନିମିତ୍ତ କାର୍ଯ୍ୟପନ୍ଥା ଗ୍ରହଣ, ଲିବ୍ୟା ଉପରେ ଆମେରିକାର ଆକ୍ରମଣକୁ ସମାଲୋଚନା, ବିକାଶଶୀଳ ରାଷ୍ଟ୍ରମାନଙ୍କ ଆର୍ଥନୀତିକ ସହଯୋଗ ପାଇଁ ବିଭିନ୍ନ କାର୍ଯ୍ୟକ୍ରମ ଘୋଷଣା, ଅଣୁଅସ୍ତ୍ର ପରୀକ୍ଷା ଉପରେ ନିଷେଧାଦେଶ ଜାରି ନିମିତ୍ତ ନିଷ୍ପତ୍ତି, ସାମ୍ରାଜ୍ୟବାଦୀ କାର୍ଯ୍ୟକଳାପର ସମାଲୋଚନା, ବିଶ୍ୱରେ ଶାନ୍ତି ଓ ମୈତ୍ରୀ ଭାବର ପ୍ରଚାର ନିମିତ୍ତ ଆଶାଜନକ ପଦକ୍ଷେପ ଗ୍ରହଣ ଆଦି ବହୁ ପ୍ରଶଂସାଯୋଗ୍ୟ କାର୍ଯ୍ୟକ୍ରମ ନାମ୍‌ଦ୍ୱାରା ଗ୍ରହଣ କରାଯାଇଥିଲେ ହେଁ ଏବେ ମଧ୍ୟ ଆହୁରି ଅନେକ ସମସ୍ୟା ବିଶ୍ୱରାଜନୀତିକୁ କଳୁଷିତ କରିଦେବାରେ ଲାଗିଛି । ପାକିସ୍ଥାନ ଓ ଚୀନ୍‌ର ଯୁଦ୍ଧଖୋର ମନୋବୃତ୍ତି, ଆଫଗାନିସ୍ଥାନର ସମସ୍ୟା, ଇରାକ୍ ଓ ଆମେରିକା ମଧ୍ୟରେ ଶୀତଳ ଯୁଦ୍ଧ, ଲେବାନନ ସମସ୍ୟା, ଇସ୍ରାଏଲର ନରସଂହାର ମନୋବୃତ୍ତି, ଆମେରିକାର ସାମ୍ରାଜ୍ୟବାଦୀ ମନୋବୃତ୍ତି ବିଶ୍ୱର ସୁସ୍ଥ ବାତାବରଣର ପରିପନ୍ଥୀ । ଏ କ୍ଷେତ୍ରରେ ଗୋଷ୍ଠୀନିରପେକ୍ଷ

ଆନ୍ଦୋଳନର ବିଶେଷ ଭୂମିକା ରହିଛି । ବିଶ୍ୱନିରାପତ୍ତା ପରିପ୍ରେକ୍ଷୀରେ 'ନାମ୍'ର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ ମନେ ହୋଇଥାଏ ।

ଆଜି ସମଗ୍ର ବିଶ୍ୱରେ ଏକ ସନ୍ଦେହ ଓ ସଂଶୟର ବାତାବରଣ ସୃଷ୍ଟି ହୋଇଛି । ବିଭିନ୍ନ ଦେଶର ବୈଦେଶିକ ନୀତିରେ ଯେଉଁ ଅଚାନକ ପରିବର୍ତ୍ତନ ଲକ୍ଷ୍ୟ କରାଯାଉଛି, ବିଶ୍ୱଶାନ୍ତି ପାଇଁ ତାହା ଅତ୍ୟନ୍ତ ମାରାତ୍ମକ ଓ କ୍ଷତିକାରକ । ବିକାଶଶୀଳ ରାଷ୍ଟ୍ରଗୁଡ଼ିକ ବହୁକ୍ଷେତ୍ରରେ ବାଧାବିଘ୍ନର ସମ୍ମୁଖୀନ ହେଉଛନ୍ତି । ଏ କ୍ଷେତ୍ରରେ 'ନାମ୍' ତା'ର କାର୍ଯ୍ୟକ୍ରମକୁ ଅଧିକ ତ୍ୱରାନ୍ୱିତ କରିବାର ଆବଶ୍ୟକତା ରହିଛି । ପାଲେଷ୍ଟାଇନ୍ ସମସ୍ୟା, ଭାରତ-ପାକିସ୍ଥାନ, ଭାରତ-ଚୀନ ସୀମାବିବାଦ, ଆଫ୍‌ଗାନିସ୍ଥାନର ଯୁଦ୍ଧଶଙ୍କୁଳ ପରିସ୍ଥିତି, ଇରାକ୍-ଆମେରିକାର ମତାନ୍ତର ଆଦି ଅନେକ ସମସ୍ୟା ରହିଛି । ତେଣୁ ବିଶ୍ୱଶାନ୍ତି ପ୍ରତିଷ୍ଠା କ୍ଷେତ୍ରରେ ଗୋଷ୍ଠୀନିରପେକ୍ଷ ଆନ୍ଦୋଳନ ଉପଯୁକ୍ତ ପଦକ୍ଷେପ ଗ୍ରହଣ କରି ନ ପାରିଲେ, ବିଶ୍ୱଶାନ୍ତି କଳ୍ପନା ଧୂଳିସାତ୍ ହୋଇଯିବ । ଏବେ ମଧ୍ୟ ବିଶ୍ୱର କେତେକ ରାଷ୍ଟ୍ରଙ୍କ ମନରୁ ସାମ୍ରାଜ୍ୟବାଦୀ ମନୋବୃତ୍ତିର ବିଲୋପ ଘଟି ନାହିଁ । ବିଶ୍ୱଧ୍ୱଂସୀ ମାରଣାସ୍ତ୍ରମାନ ଏବେ ମଧ୍ୟ ନିର୍ମାଣ ଚାଲିଛି । ମାନବ କଲ୍ୟାଣ ପରିବର୍ତ୍ତେ ବିପୁଳ ପରିମାଣର ଅର୍ଥ ବିନିଯୋଗ କରାଯାଉଛି ମାନବ ସଭ୍ୟତାର ଧ୍ୱଂସ ପାଇଁ । ଯୁଦ୍ଧଭୟ ଏବେ ମଧ୍ୟ ମାନବସମାଜ ମନରୁ ଦୂର ହୋଇ ନାହିଁ । ଶାନ୍ତି ଓ ମୈତ୍ରୀର ବାର୍ତ୍ତା ପ୍ରଚାର କରୁଥିବା ଦେଶ ବିଭିନ୍ନ ମାରଣାସ୍ତ୍ରରେ ନିଜକୁ ସଜ୍ଜିତ କରୁଛନ୍ତି । ଏହି ପରିପ୍ରେକ୍ଷୀରେ 'ନାମ୍'ର ବିଭିନ୍ନ ପଦକ୍ଷେପ ବିଶ୍ୱଶାନ୍ତି ପ୍ରତିଷ୍ଠାରେ ସହାୟକ ହୋଇପାରିବ । ବିକଶିତ ରାଷ୍ଟ୍ରଗୁଡ଼ିକର ସହାୟତାରେ ବିକାଶଶୀଳ ରାଷ୍ଟ୍ରଗୁଡ଼ିକଙ୍କର ଆର୍ଥନୀତିକ ପ୍ରଗତି ସମ୍ଭବ ହୋଇପାରିବ । ଶୀତଳଯୁଦ୍ଧର ଅବସାନ ଘଟିଥିଲେ ହେଁ ଯୁଦ୍ଧର ଯେଉଁ ଭୟଙ୍କରତା ମାନବସମାଜକୁ ଭୀତତ୍ରସ୍ତ କରି ରଖିଛି, ନାମ୍‌ର ସହଯୋଗମୂଳକ ପଦକ୍ଷେପ ଦ୍ୱାରା ତାହା ଅଚିରେ ଦୂର ହୋଇପାରିବ । ତେଣୁ ସାମ୍ପ୍ରତିକ ପରିପ୍ରେକ୍ଷୀରେ ଗୋଷ୍ଠୀଆନ୍ଦୋଳନର ଭୂମିକା ଅତୀବ ତାତ୍ପର୍ଯ୍ୟ ଓ ମହତ୍ତ୍ୱପୂର୍ଣ୍ଣ ।

●

## ଭାରତର ବୈଦେଶିକ ନୀତି

**(ଉପକ୍ରମ, ବୈଦେଶିକ ନୀତିର ଆବଶ୍ୟକତା ଓ ଲକ୍ଷ୍ୟ, ଭାରତର ବୈଦେଶିକ ନୀତି ଓ ବିଶ୍ୱଶାନ୍ତି, ଜାତିସଂଘ ଓ ଭାରତର ବୈଦେଶିକ ନୀତି, ନିରପେକ୍ଷ ଆଚରଣ ଓ ସାମରିକ ଶକ୍ତିର ବିରୁଦ୍ଧାଚରଣ, ବୈଦେଶିକ ନୀତିର ସଫଳତା ଏବଂ ବିଫଳତା, ସମାନ ନୀତି ଓ ଆଦର୍ଶ ପ୍ରତି ସମ୍ମାନବୋଧ, ବୈଦେଶିକ ନୀତିର ପୁନର୍ବିଚାର, ଉପସଂହାର)**

ଆଜି ଆନ୍ତର୍ଜାତିକ ଘଟଣାବଳୀ ପ୍ରତିମୁହୂର୍ତ୍ତରେ ପରିବର୍ତ୍ତିତ ହେଉଛି । ଏହି ପରିବର୍ତ୍ତିତ ନୀତି ସହିତ ଖାପଖୁଆଇ ଚଳିବା ପ୍ରତ୍ୟେକ ରାଷ୍ଟ୍ରର ମୁଖ୍ୟ କର୍ତ୍ତବ୍ୟ । ଗୋଟିଏ ଦେଶର ଆଦର୍ଶବତ୍ତା

ପ୍ରତିଫଳିତ ହୋଇଥାଏ ତା'ର ବୈଦେଶିକ ନୀତିରେ । ଗୋଟିଏ ଦେଶର ନୀତି ଏବଂ ଆଚରଣରୁ ସେ ଦେଶର ଅନ୍ତରାତ୍ମା ଉପଲବ୍ଧି ହୋଇଥାଏ । ଦେଶର ଆଭ୍ୟନ୍ତରୀଣ ନୀତି ମୁଖ୍ୟତଃ ସେ ଦେଶର ଶାସନକାର୍ଯ୍ୟ ପରିଚାଳନାରେ ସହାୟତା କରିଥାଏ । ତା'ର ମାର୍ଜିତ ଓ ଦୃଢ଼ କାର୍ଯ୍ୟକାରୀ ଶକ୍ତି ଦେଶକୁ ସମୃଦ୍ଧ ଓ ଶୃଙ୍ଖଳିତ କରିଥାଏ । ଦେଶର ଶାନ୍ତି ଏବଂ ସମୃଦ୍ଧି ପାଇଁ ଆଭ୍ୟନ୍ତରୀଣ ନୀତିର ପ୍ରୟୋଜନ ରହିଥାଏ । ମାତ୍ର ବୈଦେଶିକ ନୀତି ଯୋଗୁଁ ଗୋଟିଏ ଦେଶ ଆନ୍ତର୍ଜାତିକ ସ୍ତରରେ ସ୍ୱୀକୃତି ଲାଭ କରିଥାଏ । ଦେଶର ସମ୍ମାନ ଓ ସାର୍ବଭୌମତ୍ୱ ବିଶେଷଭାବରେ ରାଷ୍ଟ୍ରର ବୈଦେଶିକ ନୀତି ଉପରେ ନିର୍ଭର କରିଥାଏ । ଏହା ଦେଶକୁ ଦୃଢ଼ ଓ ଜାତିକୁ ଉନ୍ନତିର ଚରମସୀମାରେ ଉପନୀତ କରାଇଥାଏ । ପରିବର୍ତ୍ତିତ ପରିସ୍ଥିତି ସହିତ ଦେଶର ବୈଦେଶିକ ନୀତି ପାଦମିଳାଇ ଚାଲିପାରିଲେ ତା'ର ଅଖଣ୍ଡତା ଓ ସ୍ୱାଧୀନତା ସୁରକ୍ଷିତ ରହିଥାଏ । ନିଜର ସଂସ୍କୃତି, ସାମାଜିକ ଚଳଣି ଏବଂ ଐତିହ୍ୟ ଅନ୍ୟ ଦେଶରେ ପ୍ରଭାବଶାଳୀ ହୋଇପାରେ କେବଳ ବୈଦେଶିକ ନୀତିର ସୁସଂଗଠିତ ବିନ୍ୟାସ ଦ୍ୱାରା । ଯେଉଁ ନୀତି ଦ୍ୱାରା ଗୋଟିଏ ଦେଶ ଅନ୍ୟ ଦେଶ ଦ୍ୱାରା ସମ୍ପର୍କ ସ୍ଥାପନ କରିପାରେ, ତାହାହିଁ ହେଉଛି ବୈଦେଶିକ ନୀତି । ଗୋଟିଏ ଦେଶର ବୈଦେଶିକ ନୀତି ମୁଖ୍ୟତଃ ସେ ଦେଶର ଭୌଗୋଳିକ ଓ ରାଜନୀତିକ ଅବସ୍ଥା, ଐତିହାସିକ ଭିତ୍ତିଭୂମି ଓ ନୀତିବୋଧ ଉପରେ ନିର୍ଭର କରେ ।

ସମ୍ପ୍ରତି ବିଶ୍ୱର କୌଣସି ରାଷ୍ଟ୍ର ଅନ୍ୟ ରାଷ୍ଟ୍ରର ସହାୟତା ବିନା ତିଷ୍ଠି ରହିବା ଅସମ୍ଭବ । ଅନ୍ୟ ରାଷ୍ଟ୍ରର ସହଯୋଗ ନିମିତ୍ତ ତାକୁ କେତେକ ନୀତି ସ୍ଥିର କରିବା ଆବଶ୍ୟକ । ଏହି ନୀତି ବୈଦେଶିକ ନୀତି ଭାବରେ ଖ୍ୟାତ । ଅନ୍ୟ ରାଷ୍ଟ୍ର ସହିତ କୂଟନୈତିକ ସମ୍ପର୍କ ସ୍ଥାପନ ପାଇଁ ଏହି ନୀତିର ଆବଶ୍ୟକତା ରହିଛି । ଅନ୍ୟ ଦେଶ ସହିତ ଉଚିତ ଓ ସମୟୋପଯୋଗୀ ସମ୍ପର୍କ ସ୍ଥାପିତ ହୋଇପାରିଲେ ଦେଶର ପ୍ରଗତି ତ୍ୱରାନ୍ୱିତ ହୋଇଥାଏ । ଅତୀତରେ ପରାଧୀନ ସମୟରେ ମଧ୍ୟ ଭାରତ କେତେକ ନୀତି ପ୍ରଣୟନ କରିଥିଲା । କଂଗ୍ରେସ କମିଟିର ନୀତି ନିର୍ଦ୍ଧାରଣ (୧୯୦୪ ମସିହା) ଉପରେ ସ୍ୱାଧୀନ ଭାରତର ବୈଦେଶିକ ନୀତି ଗଢ଼ିଉଠିଛି । ଏହାର ଲକ୍ଷ୍ୟ ବିଶ୍ୱର ବିଭିନ୍ନ ରାଷ୍ଟ୍ର ସହିତ ମଧୁର ସମ୍ପର୍କ ସ୍ଥାପନ କରି ଦେଶକୁ ପ୍ରଗତି ପଥରେ ଗତି କରାଇବା ଓ ବିଶ୍ୱଭ୍ରାତୃତ୍ୱ ବନ୍ଧନରେ ସମଗ୍ର ବିଶ୍ୱକୁ ବନ୍ଧନ କରିବା । ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଏହି ନୀତିର ମୂଳ ଲକ୍ଷ୍ୟ । ଏତଦ୍‌ବ୍ୟତୀତ ନିଜର ଐତିହ୍ୟ, ସଂସ୍କୃତି ଓ ପରମ୍ପରା ସହିତ ବିଶ୍ୱଜଗତକୁ ପରିଚିତ କରାଇ ଏହାର ଗୌରବ ଓ ଯଶକୁ ବୃଦ୍ଧି କରିବା । ମାନବିକ ମୂଲ୍ୟବୋଧ ପ୍ରତି ସମ୍ମାନ ପ୍ରଦର୍ଶନ କରିବା ଏବଂ ପରସ୍ପର ମଧ୍ୟରେ ଏକ ସହଯୋଗମୂଳକ ବାତାବରଣ ସୃଷ୍ଟି କରିବା ମଧ୍ୟ ଭାରତର ବୈଦେଶିକ ନୀତିର ଉଦ୍ଦେଶ୍ୟ ।

ଆମ ବୈଦେଶିକ ନୀତିର ବୈଶିଷ୍ଟ୍ୟ ହେଉଛି ମୁଖ୍ୟତଃ ଶାନ୍ତିପୂର୍ଣ୍ଣ ସହାବସ୍ଥାନ, ଅନ୍ୟର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପର ବିରୋଧ, ଅନ୍ୟରାଷ୍ଟ୍ରର ସାର୍ବଭୌମତ୍ୱ ପ୍ରତି ସମ୍ମାନ ପ୍ରଦର୍ଶନ, ଅନାକ୍ରମଣ ଓ ନିରପେକ୍ଷତା । ପଣ୍ଡିତ ଜବାହରଲାଲ ନେହେରୁ ଏହି ପାଞ୍ଚଟି ମୂଳନୀତିକୁ ପଞ୍ଚଶୀଳ ବୋଲି କହିଥିଲେ । ୧୯୫୫ ମସିହାରେ ଅନୁଷ୍ଠିତ ହୋଇଥିବା ଆଲୋଚନା ସଭାରେ

ନେହେରୁଙ୍କର ଏହି ପଞ୍ଚଶୀଳକୁ ଆଫ୍ରିକା ଏବଂ ଏସିଆର ୨୯ଟି ଦେଶ ସମର୍ଥନ କରିଥିଲେ । ଏତଦ୍‌ବ୍ୟତୀତ ରୁଷିଆ, ପୋଲାଣ୍ଡ, ଯୁଗୋସ୍ଲୋଭିଆ, ଅଷ୍ଟ୍ରିଆ ଆଦି ଦେଶ ମଧ୍ୟ ଏହା ପ୍ରତି ନିଜର ସମର୍ଥନ ଜ୍ଞାପନ କରିଥିଲେ । ବିଶ୍ୱଶାନ୍ତି ପ୍ରତିଷ୍ଠା କ୍ଷେତ୍ରରେ ଭାରତର ପଦକ୍ଷେପ ସର୍ବଦା ସ୍ୱାଗତଯୋଗ୍ୟ । ଭାରତର ସ୍ୱାଧୀନତା ଲାଭ ସମୟରେ ବିଶ୍ୱରେ ଦୁଇଟି ବୃହଦ୍ ସାମରିକ ଶକ୍ତି ମୁଣ୍ଡଟେକି ଉଠିଥିଲେ । ମାତ୍ର ଭାରତ କୌଣସି ଦଳ ଅନ୍ତର୍ଭୁକ୍ତ ନ ରହି ନିରପେକ୍ଷତା ଅବଲମ୍ବନ କରିଥିଲା । ଏହି ନିରପେକ୍ଷତା ଅବଲମ୍ବନ ମୂଳରେ ମୁଖ୍ୟତଃ ତିନୋଟି କାରଣ ବିଦ୍ୟମାନ । ପ୍ରଥମ କାରଣ–କୌଣସି ଗୋଟିଏ ଶକ୍ତି ବା ଦଳର ଅନ୍ତର୍ଭୁକ୍ତ ହେଲେ ଅନ୍ୟ ଦଳର ଅବିଶ୍ୱାସ୍ୟ ଏବଂ ଶତ୍ରୁ ହେବାକୁ ପଡ଼ିବ, ଯାହା ଭାରତର ବୈଦେଶିକ ନୀତିର ପରିପନ୍ଥୀ । ଦ୍ୱିତୀୟତଃ ସ୍ୱାଧୀନତା ସମୟରେ ଭାରତର ଆର୍ଥିକ ସ୍ଥିତି ଦୁର୍ବଳ ଥିବାରୁ ବିଶ୍ୱର ସମସ୍ତ ରାଷ୍ଟ୍ରଠାରୁ ସେ ସାହାଯ୍ୟ ଆବଶ୍ୟକ କରୁଥିଲା । ତେଣୁ ଗୋଟିଏ ମେଣ୍ଟଭୁକ୍ତ ହେଲେ, ଅନ୍ୟ ମେଣ୍ଟଠାରୁ ସାହାଯ୍ୟ ପାଇବାର ଆଶା ନ ଥିଲା । ତୃତୀୟତଃ ବିଶ୍ୱରେ ଏକ ବିଶ୍ୱସନୀୟ ଓ ଶାନ୍ତିପୂର୍ଣ୍ଣ ବାତାବରଣ ସୃଷ୍ଟିର ପ୍ରୟାସ କରିବାକୁ ହେଲେ ଭାରତକୁ କୌଣସି ମେଣ୍ଟଭୁକ୍ତ ହେବା ଅନୁଚିତ । ବିଶ୍ୱରେ ଶାନ୍ତି ପ୍ରତିଷ୍ଠା ଭାରତର ବୈଦେଶିକ ନୀତିର ମୂଳଲକ୍ଷ୍ୟ ହୋଇଥିବାରୁ କୌଣସି ସମୟରେ ଅନ୍ଧଭାବରେ ସେ କୌଣସି ରାଷ୍ଟ୍ରକୁ ସମର୍ଥନ କରି ନାହିଁ । ଉଦାରତା, ମାନବିକତାବୋଧ, ସମାନତା ହେଉଛି ଭାରତୀୟ ବୈଦେଶିକ ନୀତିର ମୂଳପିଣ୍ଡ । ବନ୍ଧୁତ୍ୱର ବାତାବରଣ ସୃଷ୍ଟି ଓ ଶାନ୍ତି ପ୍ରତିଷ୍ଠା ପାଇଁ ଆକୁଳ ଆବେଗ ଆମ ବେଦୈଶିକ ନୀତିର ଶ୍ରେଷ୍ଠ ବୈଶିଷ୍ଟ୍ୟ । ଆମର ସ୍ୱପ୍ନ ରାମରାଜ୍ୟ ପ୍ରତିଷ୍ଠା । ସେଥିପାଇଁ ଗାନ୍ଧିଜୀ କହିଥିଲେ, I dream of a world where there will be no strife between nation and nation । ସମସ୍ତ ପ୍ରକାର ଶତ୍ରୁତା ଆଚରଣ ପରେ ମଧ୍ୟ ପାକିସ୍ଥାନ ଓ ଚୀନ ପ୍ରତି ଭାରତ ବନ୍ଧୁତ୍ୱପୂର୍ଣ୍ଣ ଆଚରଣ ପ୍ରଦର୍ଶନ କରିଛି । ଶତ୍ରୁକୁ ବନ୍ଧୁରେ ପରିଣତ କରିବା ପାଇଁ ଭାରତ ବାରମ୍ୱାର ନିଜ ତରଫରୁ ଉଦ୍ୟମ ଜାରି ରଖିଛି । ଶାନ୍ତି ପ୍ରତିଷ୍ଠା ଭାରତର ଲକ୍ଷ୍ୟ ଥିବାରୁ ସେ ତା'ର ବୈଦେଶିକ ନୀତିରେ ଏହା ବାରମ୍ୱାର ପ୍ରତିଫଳିତ କରିଛି ।

ବିଶ୍ୱକୁ ଯୁଦ୍ଧ ଭୟରୁ ରକ୍ଷାକରିବା ଓ ସମଗ୍ର ବିଶ୍ୱରେ ଶାନ୍ତି ପ୍ରତିଷ୍ଠା ଉଦ୍ଦେଶ୍ୟରେ ଜାତିସଂଘ ଗଠିତ ହୋଇଛି । ଭାରତର ବୈଦେଶିକ ନୀତି ସହିତ ଜାତିସଂଘ ସୃଷ୍ଟି ଉଦ୍ଦେଶ୍ୟର ବହୁ ସାମ୍ୟ ରହିଥିବାରୁ ଏହାର ବିଭିନ୍ନ କାର୍ଯ୍ୟକଳାପକୁ ଭାରତ ସମ୍ମାନ ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ସମର୍ଥନ କରିଛି । ଏହା ବ୍ୟତୀତ ଯେଉଁଠାରେ ଜାତିସଂଘ ତା'ର କାର୍ଯ୍ୟକଳାପରେ ତ୍ରୁଟି କରିଛି, ଭାରତ ତା'ର ସମାଲୋଚନା କରିଛି । ଜବାହରଲାଲ ନେହେରୁ, ବିଜୟଲକ୍ଷ୍ମୀ ପଣ୍ଡିତ ଆଦି ଜାତିସଂଘକୁ ସମର୍ଥନ କରିବା ସହିତ ନିଜକୁ ତା'ର ବିଭିନ୍ନ ଗଠନାତ୍ମକ କାର୍ଯ୍ୟରେ ମିଶାଇ ଦେଇଥିଲେ । ଭିଏତ୍‌ନାମ ଯୁଦ୍ଧରେ ଜାତିସଂଘର ନିରବ ଦର୍ଶନ ଏବଂ ଦକ୍ଷିଣ ଆଫ୍ରିକାର ବର୍ଣ୍ଣବୈଷମ୍ୟ ନୀତି କ୍ଷେତ୍ରରେ ପକ୍ଷପାତିତା ଯୋଗୁଁ ଭାରତ ତାକୁ କଠୋର ସମାଲୋଚନା କରିଛି । ଆଣବିକ ଅସ୍ତ୍ରଶସ୍ତ୍ରର ସଙ୍କୋଚନ ଓ ବିଲୋପ ପାଇଁ ଜାତିସଂଘ ଯେତେବେଳେ ପ୍ରସ୍ତାବ ଆଗତ କରିଛି, ଭାରତ ତାକୁ ଅକୁଣ୍ଠ ସମର୍ଥନ କରିଛି । ତା'ର ଗଠନାତ୍ମକ କାର୍ଯ୍ୟରେ ସହାୟତା ଦେଇଛି । ଭାରତର ବୈଦେଶିକ

ନୀତି ସହିତ ଜାତିସଂଘର ବହୁ ନୀତିର ସାମ୍ୟ ରହିଥିବାରୁ ଏବଂ ବିଶେଷଭାବରେ ମଣିଷର ମୁକ୍ତି ଓ ଶାନ୍ତି ନିମିତ୍ତ ଏହା କାର୍ଯ୍ୟ କରୁଥିବାରୁ, ଜାତିସଂଘ ପ୍ରତି ଭାରତର ଶ୍ରଦ୍ଧା ଓ ସମ୍ମାନ ଅତୁଟ ରହିଛି ।

ଭାରତର ବୈଦେଶିକ ନୀତି ସର୍ବଦା ନିରପେକ୍ଷତା ଆଚରଣ ଉପରେ ଗୁରୁତ୍ୱ ଦେଇଥାଏ । କୌଣସି ଦଳଭୁକ୍ତ ନ ହୋଇ ବିବେକାନୁମୋଦିତ କାର୍ଯ୍ୟପନ୍ଥା ଗ୍ରହଣ କରିବା ଭାରତର ବୈଶିଷ୍ଟ୍ୟ । ପଣ୍ଡିତ ନେହେରୁ ଭାରତର ଏହି ନିରପେକ୍ଷ ନୀତିର ସୂଚନା ଦେଇଛନ୍ତି–"India does not propose to join any camp or alliance, But we wish to co-operate with all in the quest of peace, security and human brotherhood." ଭାରତର ଏହି ନିରପେକ୍ଷ ନୀତି ବିଭିନ୍ନ କ୍ଷେତ୍ରରେ ସମାଲୋଚିତ ହେଲେହେଁ ଗୋଷ୍ଠୀଭୁକ୍ତ ହେବାର ବିପଦ ବା ଭୟ ଏଥିରେ ନାହିଁ । ଭାରତ ବହୁକ୍ଷେତ୍ରରେ ନିରପେକ୍ଷତା ଅବଲମ୍ବନ କରିଥିଲେହେଁ ଶୋଷଣ, ଅତ୍ୟାଚାର, ଅନୀତି ଓ ଅନ୍ୟାୟ ବିରୋଧରେ ସ୍ୱର ଉତ୍ତୋଳନ କରିବାକୁ କୁଣ୍ଠା ପ୍ରକାଶ କରି ନାହିଁ । ସେଥିପାଇଁ ନେହେରୁ କହିଛନ୍ତି–"When freedom is menanced or justice threatened or aggression takes place, we cannot be or shall not be neutral." ତେଣୁ ଭାରତର ନିରପେକ୍ଷ ଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ବୈଦେଶିକ ନୀତିର ଅର୍ଥ ହେଉଛି ରାଜନୀତିକ ଓ ଆର୍ଥନୀତିକ ଭିନ୍ନତା ସତ୍ତ୍ୱେ ପରସ୍ପର ମଧ୍ୟରେ ବିଶ୍ୱସନୀୟ ବାତାବରଣ ସୃଷ୍ଟି କରିବା, ଶାନ୍ତିପୂର୍ଣ୍ଣ ଭାବେ ବସବାସ କରିବା ଓ ଅନ୍ୟ ଦେଶର ଅଖଣ୍ଡତା ତଥା ସାର୍ବଭୌମତ୍ୱ ପ୍ରତି ସମ୍ମାନ ପ୍ରଦର୍ଶନ କରିବା । ଭାରତର ବୈଦେଶିକ ନୀତି ବିଶ୍ୱରେ ସାମରିକ ଶକ୍ତିର ଅଭିବୃଦ୍ଧିକୁ ବିରୋଧ କରେ । କାରଣ ଏହା ଦ୍ୱାରା ବିଶ୍ୱାସ ଭଙ୍ଗ ହେବା ସଙ୍ଗେ ସଙ୍ଗେ ଶତ୍ରୁତା ବୃଦ୍ଧି ହୋଇଥାଏ । ଅନ୍ୟ ଉପରେ ପ୍ରଭାବ ବିସ୍ତାର କରିବାର ପ୍ରବୃତ୍ତି ସୃଷ୍ଟି ହୁଏ । ସାମରିକ ମେଣ୍ଟଦ୍ୱାରା ଶୀତଳ ଯୁଦ୍ଧ ଘନୀଭୂତ ହେଉଥିବାରୁ ବିଶ୍ୱରେ ଅଶାନ୍ତ ବାତାବରଣ ସୃଷ୍ଟି ହୋଇଥାଏ । ଆକ୍ରମଣରୁ ରକ୍ଷାପାଇବା ଅପେକ୍ଷା ଅନ୍ୟକୁ ଆକ୍ରମଣ କରିବାର ଅଭିଳାଷ ଏହି ସାମରିକ ମେଣ୍ଟକୁ ଉତ୍ସାହିତ କରୁଛି ଓ ତା'ଦ୍ୱାରା ବିଶ୍ୱର ଭବିଷ୍ୟତ ବିପନ୍ନ ହୋଇପଡୁଛି । ଏହି କାରଣରୁ ଭାରତ କୌଣସି ସାମରିକ ମେଣ୍ଟରେ ଯୋଗଦାନର ପକ୍ଷପାତୀ ନୁହେଁ । ପରନ୍ତୁ ସାମରିକ ଶକ୍ତିର ଅଯଥା ବୃଦ୍ଧିକୁ ସମାଲୋଚନା କରିଛି ।

ଭାରତର ବୈଦେଶିକ ନୀତି ଉଭୟ ସଫଳତା ଓ ବିଫଳତାର ସ୍ୱାଦ ଚାଖିଛି । ଏକଥା ସତ୍ୟ ଯାହା ବିଶ୍ୱର ଶାନ୍ତିକୁ ବିପନ୍ନ କରୁଛି ତାକୁ ସହୃଦୟତାର ସହିତ ସମାଧାନ କରିବା ଭାରତର ବୈଦେଶିକ ନୀତିର ଲକ୍ଷ୍ୟ । ଏହି କାରଣରୁ ଭିଏତ୍‌ନାମ ଉପରେ ଆମେରିକାର ବୋମାବର୍ଷଣକୁ ସେ ସମାଲୋଚନା କରିଛି । କଙ୍ଗୋରେ ଶାନ୍ତିଶୃଙ୍ଖଳା ରକ୍ଷା ପାଇଁ ଭାରତ ତା'ର ସେନାକୁ ଜାତିସଂଘର ଜରୁରୀ ସେନାବାହିନୀ ସହିତ ପଠାଇଛି । ବର୍ଲିନ୍ ଘଟଣା, କ୍ୟୁବା ସଙ୍କଟ, ଦକ୍ଷିଣ ଆଫ୍ରିକାର ବର୍ଣ୍ଣବୈଷମ୍ୟ ନୀତି, ଭିଏତ୍‌ନାମୀ ଯୁଦ୍ଧ, ମିଶର ଉପରେ ଇଂଲଣ୍ଡର ଆକ୍ରମଣ, କୋରିଆ ଓ ଇଜିପ୍ଟ ସମସ୍ୟା, ବଙ୍ଗଳାଦେଶର ସଙ୍କଟ, ଅଣୁଅସ୍ତ୍ର ନିରାକରଣ ଆଦି କ୍ଷେତ୍ରରେ ଭାରତର ବୈଦେଶିକ ନୀତି ଅନେକ ପରିମାଣରେ ସଫଳ ହୋଇଛି । ଗୁଏନା, ମୋଜାମ୍ବିକା,

ଆଙ୍ଗୋଲା ଆଦି ରାଷ୍ଟ୍ରର ସ୍ୱାଧୀନତା ସମୟରେ ଭାରତ ଏହାକୁ ସ୍ୱାଗତ ଜଣାଇବା, ୧୯୭୮ ମସିହାରେ ତତ୍କାଳୀନ ଆମେରିକାର ରାଷ୍ଟ୍ରପତି ଜିମି କାର୍ଟରଙ୍କର ଭାରତ ଗସ୍ତ ଓ ଆମେରିକା ସହିତ ସମ୍ପର୍କ ବୃଦ୍ଧି, ରୁଷିଆ ସହିତ ସୁସମ୍ପର୍କ ଆଦି ଭାରତର ବୈଦେଶିକ ନୀତିର ଉଚିତ ପଦକ୍ଷେପ ବୋଲି ଗ୍ରହଣ କରିବାକୁ ପଡ଼ିବ । ଏହା ସତ୍ତ୍ୱେ ଅନେକ କ୍ଷେତ୍ରରେ ଭାରତର ବୈଦେଶିକ ନୀତି ବିଫଳ ହୋଇଛି । ଭାରତର ଦୁଇଟି ପଡ଼ୋଶୀ ରାଷ୍ଟ୍ର ପାକିସ୍ଥାନ ଓ ଚୀନ୍ ସହିତ ଭାରତ ଏପର୍ଯ୍ୟନ୍ତ ସୁସମ୍ପର୍କ ସ୍ଥାପନ କରିପାରି ନାହିଁ । ୧୯୬୫ ଓ ୧୯୭୧ରେ ପାକିସ୍ଥାନ ଏବଂ ୧୯୬୨ରେ ଚୀନ୍‌ର ଆକ୍ରମଣ ଏହାର ଉଜ୍ଜ୍ୱଳ ଉଦାହରଣ । ତାସ୍‌କେଣ୍ଟ ଚୁକ୍ତି ଭାରତର ବୈଦେଶିକ ନୀତିର ଅନ୍ୟତମ ତ୍ରୁଟିପୂର୍ଣ୍ଣ ପଦକ୍ଷେପ । ବଙ୍ଗଳାଦେଶର ସାର୍ବଭୌମତ୍ୱ ରକ୍ଷା ପାଇଁ ଭାରତର ସହାୟତା ଯୋଗୁଁ ଆମେରିକା, ଚୀନ୍ ପ୍ରଭୃତି ଦେଶ ଆକ୍ରମଣକାରୀ ରାଷ୍ଟ୍ରର ଆଖ୍ୟା ଦେଲେ । ରୁଷିଆ ଜାତିସଂଘରେ 'ଭେଟୋ' ପ୍ରୟୋଗ କରିନଥିଲେ, ଭାରତର ସମ୍ମାନ ସମ୍ପୂର୍ଣ୍ଣ ଭୂଲୁଣ୍ଠିତ ହୋଇଥାନ୍ତା । ୟୁଗୋସ୍ଲୋଭାକିଆ ଏବଂ କାମ୍ବୋଡ଼ିଆ ଉପରେ ଯଥାକ୍ରମେ ୧୯୬୮ ଓ ୧୯୭୦ରେ ଓ୍ୱାର୍ସର ଅତ୍ୟାଚାର ତଥା ଆକ୍ରମଣରେ ଭାରତର ନିରବତା ଅବଲମ୍ବନ, ତା'ର ଦୁର୍ବଳ ବୈଦେଶିକ ନୀତିର ପରିଚାୟକ । ଭାରତର ଅଧିବାସୀଙ୍କ ଉପରେ ଇଂଲଣ୍ଡର ନିୟନ୍ତ୍ରଣ ଜାରି ମଧ୍ୟ ଭାରତୀୟ ବୈଦେଶିକ ନୀତିର ଅନ୍ୟତମ ଦୁର୍ବଳତାକୁ ପ୍ରକାଶ କରିଛି । ଶ୍ରୀଲଙ୍କାକୁ ଭାରତର ଶାନ୍ତିବାହିନୀ ପ୍ରେରଣ ଓ ଏକ ଅପମାନଜନକ ପରିସ୍ଥିତିର ଶିକାର ହେବାଦ୍ୱାରା ଭାରତର ବୈଦେଶିକ ନୀତି ବହୁପରିମାଣରେ ସମାଲୋଚିତ ହୋଇଛି । ଏହାସତ୍ତ୍ୱେ ଭାରତର ବୈଦେଶିକ ନୀତି ବିଶ୍ୱର ବହୁ ରାଷ୍ଟ୍ରଙ୍କ ଦ୍ୱାରା ଯେ ପ୍ରଶଂସାଭାଜନ ହୋଇପାରିଛି, ଅସ୍ୱୀକାର କରାଯାଇ ନ ପାରେ ।

ଭାରତର ବୈଦେଶିକ ନୀତି ସମାନ ନୀତି ଓ ଆଦର୍ଶବୋଧ ଉପରେ ଗୁରୁତ୍ୱ ଆରୋପ କରିଥାଏ । ଜାତି, ବର୍ଣ୍ଣ, ଧର୍ମ, ଆର୍ଥିକ ଅବସ୍ଥା ନିର୍ବିଶେଷରେ ସମସ୍ତଙ୍କ ପାଇଁ ସମାନ ନୀତି ପରିପୋଷଣ କରିବା ଭାରତୀୟ ସାଂସ୍କୃତିକ ପରମ୍ପରାର ବିଶେଷତ୍ୱ । ତେଣୁ ଭାରତଦୃଷ୍ଟିରେ ଧନଶାଳୀ ଆମେରିକାର ସ୍ଥାନ ଯାହା, ଆର୍ଥିକ ଅନଗ୍ରସର କାମ୍ବୋଡ଼ିଆ ବା ଶ୍ରୀଲଙ୍କାର ସ୍ଥାନ ମଧ୍ୟ ତାହା । ଯେଉଁ ଦେଶ ମାନବିକ ମୂଲ୍ୟବୋଧ ଓ ଆଦର୍ଶବୋଧର ପରିପୋଷକ, ଭାରତ ନିକଟରେ ସେହି ଦେଶ ଆଦର୍ଶସ୍ଥାନୀୟ, ସମଭାବ ଓ ବସୁଧୈବ କୁଟୁମ୍ବକମ୍ ଭାବାଦର୍ଶ ଦ୍ୱାରା ଭାରତର ବୈଦେଶିକ ନୀତି ପରିଚାଳିତ । ଯେଉଁ ଦେଶ ନିଜର ଅହମିକା ଏବଂ ଅର୍ଥ ପ୍ରାଚୁର୍ଯ୍ୟର ବଡ଼ପଣ ଦେଖାଇ ଅନ୍ୟ ଉପରେ ନିଜ ଚିନ୍ତାଧାରାକୁ ଲଦି ଦେବାକୁ ପ୍ରୟାସ କରନ୍ତି, ଭାରତ ତା'ର ବିରୁଦ୍ଧାଚରଣ କରେ । ଭାରତୀୟ ସଂସ୍କୃତି ଓ ପରମ୍ପରା ଯେଉଁପରି ଉନ୍ନତମାନର ତା'ର ବୈଦେଶିକ ନୀତି ମଧ୍ୟ ସେହିପରି ଉଚ୍ଚକୋଟୀର ।

ସାମ୍ପ୍ରତିକ ପରିସ୍ଥିତିରେ ଭାରତର ବୈଦେଶିକ ନୀତିର ପୁନର୍ବିଚାରର ଆବଶ୍ୟକତା ରହିଛି । ଆଜି ବିଶ୍ୱରେ ଯେଉଁ ପରିବର୍ତ୍ତନର ସ୍ରୋତ ପ୍ରବାହିତ ହେଉଛି; ତାହାକୁ ଲକ୍ଷ୍ୟକରି ଭାରତର ବୈଦେଶିକ ନୀତି ମଧ୍ୟ ପରିବର୍ତ୍ତନ ହେବା ଆବଶ୍ୟକ । ଭାରତର ଉଦାର ମନୋଭାବ ପାଇଁ ଅନେକତ୍ର ସେ ସମାଲୋଚନାର ଶରବ୍ୟ ହେଉଛି । ବର୍ତ୍ତମାନ ଭାରତକୁ ସ୍ୱାବଲମ୍ବନଶୀଳ ହେବାର

ସମୟ ଆସିଛି । ପାକିସ୍ଥାନ ଓ ଚୀନ୍‌ର ମତିଗତିକୁ ଲକ୍ଷ୍ୟକରି ଭାରତ ବର୍ତ୍ତମାନ ନିଜର କର୍ତ୍ତବ୍ୟ ନିରୂପଣ କରିବା ଉଚିତ । ଶକ୍ତି ବା ଅର୍ଥ ଦ୍ୱାରା ପ୍ରଭାବିତ ନ ହୋଇ ନିଜର ନିରପେକ୍ଷ ଭାବାଦର୍ଶକୁ ବଜାୟ ରଖିବା ସଙ୍ଗେ ସଙ୍ଗେ ଆନ୍ତର୍ଜାତିକ ସ୍ତରରେ କିପରି ତା'ର ସମ୍ମାନ ବୃଦ୍ଧିଲାଭ କରିବ, ସେ ସମ୍ପର୍କରେ ସଚେତନ ହୋଇ ନିଜ ବୈଦେଶିକ ନୀତିର ନବୀକରଣ କରିବା ସର୍ବାଦୌ ବାଞ୍ଛନୀୟ । ଆଦର୍ଶ ନୁହେଁ ବାସ୍ତବତାକୁ ଆଖି ଆଗରେ ରଖି ଭାରତ ତା'ର ବୈଦେଶିକ ନୀତିରେ କେତେକ ପରିବର୍ତ୍ତନ ଆଣିପାରିଲେ ବିଶ୍ୱରେ ପୁଣି ଭାରତ ତା'ର ପୂର୍ବ ସମ୍ମାନ ଓ ଯଶ ଫେରିପାଇବ ।

ଯେକୌଣସି ଦେଶ ନିଜର ଜାତୀୟ ସ୍ୱାର୍ଥକୁ ଆଖି ଆଗରେ ରଖି ବୈଦେଶିକ ନୀତି ସ୍ଥିର କରିଥାଏ । ବାସ୍ତବତା ପ୍ରତି ସଚେତନ ହେବା ଯେ କୌଣସି ରାଷ୍ଟ୍ରର ପ୍ରଥମ କର୍ତ୍ତବ୍ୟ । ତେଣୁ ଭାରତର ବୈଦେଶିକ ନୀତିରେ ଯେଉଁ କେତେକ ତ୍ରୁଟି ରହିଛି, ଆତ୍ମସମୀକ୍ଷା ପୂର୍ବକ ତା'ର ପୁନଃନିର୍ମାଣ କରିବା ବର୍ତ୍ତମାନ ଆମର ମୌଳିକ କର୍ତ୍ତବ୍ୟ । ଏହାଦ୍ୱାରା କେବଳ ଦେଶର ସମ୍ମାନ ବୃଦ୍ଧି ହେବ ନାହିଁ, ପରନ୍ତୁ ଭାରତର ବୈଦେଶିକ ନୀତି ବିଶ୍ୱକୁ ପଥପ୍ରଦର୍ଶନ କରିବାକୁ ସମର୍ଥ ହୋଇପାରିବ । ଅନ୍ୟ ଉପରେ ନିର୍ଭର ନ କରି ଆତ୍ମନିର୍ଭରଶୀଳ ହେବା, ଜାତୀୟ ଆଦର୍ଶ ଓ ସ୍ୱାର୍ଥକୁ ସୁରକ୍ଷିତ ରଖିବା ଏବଂ ସର୍ବୋପରି ଆମର ପରମ୍ପରା ତଥା ଐତିହ୍ୟର ଭିତ୍ତିଭୂମି ଉପରେ ବୈଦେଶିକ ନୀତିର ପୁନଃ ମୂଲ୍ୟାୟନ କରିବା, ଯୁଗାଦର୍ଶ ସହିତ ପାଦମିଳାଇ ଚଳିବା ଆମ ବୈଦେଶିକ ନୀତିର ମୂଳଲକ୍ଷ୍ୟ ହେବା ଉଚିତ ।

●

## ଭାରତର ରାଜନୀତିକ ଦଳ

**(ଉପକ୍ରମ, ସ୍ୱାଧୀନତା ପୂର୍ବବର୍ତ୍ତୀ ଭାରତର ରାଜନୀତିକ ଦଳ, ସ୍ୱାଧୀନତା ପରବର୍ତ୍ତୀ ସମୟରେ ରାଜନୀତିକ ଦଳର ଭୂମିକା, ଜାତୀୟ ଓ ଆଞ୍ଚଳିକ ରାଜନୀତିକ ଦଳ, ରାଜନୀତିକ ଦଳର ଆଦର୍ଶବତ୍ତା, ସାଧାରଣ ନିର୍ବାଚନରେ ରାଜନୀତିକ ଦଳଗୁଡ଼ିକର ଭୂମିକା, ଗଣତନ୍ତ୍ରରେ ବିରୋଧୀଦଳର ଭୂମିକା, ଉପସଂହାର)**

ପ୍ରତ୍ୟେକ ଗଣତନ୍ତ୍ର ରାଷ୍ଟ୍ରରେ ରାଜନୀତିକ ଦଳମାନଙ୍କର ଏକ ବିଶେଷ ଭୂମିକା ବିଦ୍ୟମାନ । ସେହିମାନଙ୍କର କାର୍ଯ୍ୟକଳାପ ଉପରେ ହିଁ ଦେଶର ଭବିଷ୍ୟତ ନିର୍ଭର କରେ । ସେହି ଦୃଷ୍ଟିରୁ ଭାରତପରି ଏକ ବିଶାଳ ଗଣତନ୍ତ୍ର ରାଷ୍ଟ୍ରରେ ରାଜନୀତିକ ଦଳମାନଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ସମ୍ବିଧାନ ପ୍ରଣୟନ ସମୟରେ ଭାରତର ସଂସଦୀୟ ସରକାର ବହୁଦଳୀୟ ହେବ ବୋଲି ସ୍ୱୀକୃତି ପ୍ରଦାନ କରାଯାଇଥିବାରୁ, ବିଶ୍ୱରେ ସବୁଠାରୁ ଅଧିକ ରାଜନୀତିକ ଦଳ ଭାରତରେ ଦେଖା ଦେଇଥାନ୍ତି । ସୁସ୍ଥ ଗଣତନ୍ତ୍ର ପାଇଁ ଏହାର ଉପଯୋଗିତା ଥିଲେହେଁ, ସମୟେ ସମୟେ ଦଳଗତ ବା ବ୍ୟକ୍ତିଗତ ସ୍ୱାର୍ଥଯୋଗୁଁ ରାଜନୀତିକ ଦଳ ଓ ବ୍ୟକ୍ତିବିଶେଷ ସେମାନଙ୍କର ନୈତିକ ଆଦର୍ଶ ହରାଇ ବସୁଛନ୍ତି । ରାଜନୀତିକ ଦଳ ମୂଲ୍ୟବୋଧ ଉପରେ ଗୁରୁତ୍ୱ ପ୍ରଦାନ କରି ଜାତୀୟ ସ୍ୱାର୍ଥ

ପ୍ରତି ଗୁରୁତ୍ୱ ପ୍ରଦାନ କଲେ ଦେଶ ଓ ଜାତିର ଉନ୍ନତି ବିଧାନ ହୋଇଥାଏ । ମାତ୍ର କ୍ଷୁଦ୍ର ସଂକୀର୍ଣ୍ଣ ସ୍ୱାର୍ଥର ରକ୍ଷା ଉଦ୍ଦେଶ୍ୟରେ କାର୍ଯ୍ୟକଲେ ଦେଶର ଗୁରୁତର କ୍ଷତି ହୋଇଥାଏ । ବିଭିନ୍ନ ଦଳରେ ମତପାର୍ଥକ୍ୟ ରହିବା ସ୍ୱାଭାବିକ । ମାତ୍ର ସେହି ମତପାର୍ଥକ୍ୟ ଦେଶ ସ୍ୱାର୍ଥର ପରିପନ୍ଥୀ ହେବା ଅନୁଚିତ । ପ୍ରତ୍ୟେକ ରାଜନୀତିକ ଦଳ ଯେତେବେଳେ ଅନୁଭବ କରିବେ ସେମାନଙ୍କର ରାଜନୀତି ସାମୂହିକ ସ୍ୱାର୍ଥ ପାଇଁ ଉଦ୍ଦିଷ୍ଟ; ବ୍ୟକ୍ତିଗତ ସ୍ୱାର୍ଥ ପାଇଁ ନୁହେଁ, ସେତେବେଳେ ଯାଇ ରାଷ୍ଟ୍ରର ମଙ୍ଗଳ ସାଧିତ ହୋଇପାରିବ । ଏହି ଦୃଷ୍ଟିରୁ ଭାରତରେ ରାଜନୀତିକ ଦଳ କେତେ ପରିମାଣରେ ଦେଶର ମଙ୍ଗଳ ପାଇଁ କାର୍ଯ୍ୟରତ, ତାହା ବିଚାର୍ଯ୍ୟ ।

ବହୁ ସଂଘର୍ଷ ଓ ଉତ୍ସର୍ଗୀକୃତ ପ୍ରାଣ ବିନିମୟରେ ଭାରତ ସ୍ୱାଧୀନତା ଲାଭକଲା ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ । ଗୋଟିଏ ରାଜନୀତିକ ଦଳର ଉତ୍ସର୍ଗୀକୃତ ସଂଘର୍ଷ ଯୋଗୁ ହିଁ ଦେଶ ସ୍ୱାଧୀନ ହେଲା । ତେଣୁ ସ୍ୱାଧୀନତା ପୂର୍ବରୁ ଭାରତରେ ଏକମାତ୍ର କଂଗ୍ରେସ ହିଁ ଥିଲା ସବୁଠାରୁ ଅଧିକ ପ୍ରଭାବଶାଳୀ ଦଳ । ଏହି କଂଗ୍ରେସ ଥିଲା ଜାତୀୟ କଂଗ୍ରେସ । ଏହି କଂଗ୍ରେସର ଜନକ ଥିଲେ ଜଣେ ଇଂରେଜ ଏ. ଓ. ହ୍ୟୁମ୍ । ୧୮୮୫ ମସିହାରେ ଏହାର ପ୍ରଥମ ପଦଧ୍ୱନି ଶୁଣାଯାଇଥିଲା ଭାରତର ଭୂମିରେ । ପରବର୍ତ୍ତୀ ସମୟରେ ଏହି ଦଳ ହିଁ ଇଂରେଜମାନଙ୍କୁ ଭାରତରୁ ବିତାଡ଼ିତ କରିଥିଲା । ଜାତୀୟ କଂଗ୍ରେସର ଗଠନ ସମୟରେ ସାମ୍ରାଜ୍ୟବାଦୀ ଇଂରେଜ ଶାସକ କଦାପି ଏହା ସ୍ୱପ୍ନରେ ମଧ୍ୟ ଚିନ୍ତା କରିପାରିନଥିଲେ । ୧୯୧୫ ମସିହାରେ ଗାନ୍ଧିଜୀ ଦକ୍ଷିଣଆଫ୍ରିକାରୁ ଫେରିବା ପରେ କଂଗ୍ରେସର କାର୍ଯ୍ୟପନ୍ଥାରେ କେତେକ ମୌଳିକ ପରିବର୍ତ୍ତନ ଆସିଲା । ଅହିଂସା ଓ ଅସହଯୋଗର ଅସ୍ତ୍ରରେ ଭାରତକୁ ସ୍ୱାଧୀନ କରିବା ପାଇଁ ଗାନ୍ଧିଜୀ ସମଗ୍ର ଦେଶବାସୀଙ୍କୁ ଆହ୍ୱାନ କଲେ । ୧୯୨୦ ମସିହା ବେଳକୁ କଂଗ୍ରେସରେ ଦୁଇଟି ଦଳ ଦେଖାଦେଲେ । ଗୋଟିଏ ଦଳ ଥିଲେ ଚରମପନ୍ଥୀ, ସେମାନଙ୍କର ଉଦ୍ଦେଶ୍ୟ ଥିଲା ସଂଘର୍ଷ ମାଧ୍ୟମରେ ଇଂରେଜମାନଙ୍କଠାରୁ ସ୍ୱାଧୀନତା ଲାଭ କରିବା । ତେଣୁ ସ୍ୱଦେଶୀ ଓ ସ୍ୱରାଜ ଥିଲା ସେମାନଙ୍କର ଧ୍ୱନି । ଏହି ଦଳର ମୁଖ୍ୟ ଥିଲେ ବାଳ ଗଙ୍ଗାଧର ତିଳକ, ବିପିନଚନ୍ଦ୍ର ପାଲ୍ ଓ ଲାଲା ଲଜପତ୍‌ରାୟ । ମାତ୍ର ଗାନ୍ଧିଜୀ ଥିଲେ ନରମପନ୍ଥୀ ଅନ୍ତର୍ଭୁକ୍ତ । କହିବା ଅନାବଶ୍ୟକ ଯେ, ଗାନ୍ଧିଜୀଙ୍କ ନେତୃତ୍ୱରେ ହିଁ ଭାରତ ସ୍ୱାଧୀନତା ଲାଭ କଲା । ଇଂରେଜମାନେ ଭାରତ ଛାଡ଼ିବା ପୂର୍ବରୁ ଭାରତକୁ ଦୁଇ ଭାଗ କରିଦେବାକୁ ମନସ୍ଥ କରିଥିଲେ । ସେହିମାନଙ୍କ ଚକ୍ରାନ୍ତ ସ୍ୱରୂପ ୧୯୦୬ ମସିହାରେ ସର୍ବଭାରତୀୟ ମୁସଲିମଲିଗ୍ ଆତ୍ମପ୍ରକାଶ କଲା ଏବଂ ମହମ୍ମଦଅଲ୍ଲୀ ଜିନ୍ନା ଥିଲେ ଏହାର ମୁଖ୍ୟ ପୃଷ୍ଠପୋଷକ । ସଂକୀର୍ଣ୍ଣ ସ୍ୱାର୍ଥର ପରିପୂରଣ ଉଦ୍ଦେଶ୍ୟରେ 'ମୁସଲିମ୍‌ଲିଗ୍' ଏକ ରାଜନୀତିକ ଦଳ ରୂପେ ଆବିର୍ଭୂତ ଲାଭ ହୋଇଥିଲା, କହିଲେ ଭୁଲ୍ ହେବ ନାହିଁ । ଇଂରେଜମାନଙ୍କ ପ୍ରୋତ୍ସାହନରେ ସେମାନଙ୍କର ମୁଖ୍ୟଦାବି ଥିଲା ସ୍ୱତନ୍ତ୍ର ମୁସ୍‌ଲିମ୍ ରାଷ୍ଟ୍ର ଗଠନ । ଏହି କାରଣରୁ ସ୍ୱାଧୀନତା ପ୍ରାକ୍ କାଳରେ ଭାରତ ହିନ୍ଦୁସ୍ଥାନ ଓ ପାକିସ୍ଥାନ ଏହିପରି ଦୁଇଭାଗରେ ବିଭକ୍ତ ହୋଇଗଲା । ସ୍ୱାଧୀନତା ପରେ ପାକିସ୍ଥାନ ଗଠନ ହେଲା ମୁସ୍‌ଲିମ୍‌ଲିଗ୍‌ର ତତ୍ତ୍ୱାବଧାନରେ ଏବଂ ଜାତୀୟ କଂଗ୍ରେସ ଭାରତର ଶାସନଭାର ଗ୍ରହଣ କଲେ । ତେଣୁ ସ୍ୱାଧୀନତା ପୂର୍ବରୁ କେବଳ ଜାତୀୟ କଂଗ୍ରେସ ହିଁ ଥିଲା ଭାରତର ଏକମାତ୍ର

ରାଜନୀତିକ ଦଳ । ସଂକୀର୍ଣ୍ଣ ସ୍ୱାର୍ଥର ବଶବର୍ତ୍ତୀ ହୋଇ ଏମାନେ ଦେଶର ସ୍ୱାର୍ଥକୁ ବଳିଦେବା ପାଇଁ କୌଣସି କାର୍ଯ୍ୟପନ୍ଥା ଗ୍ରହଣ କରିନାହାନ୍ତି । ପରନ୍ତୁ ଭାରତର ସର୍ବାଙ୍ଗୀଣ ଉନ୍ନତି ଥିଲା ଏହି ରାଜନୀତିକ ଦଳର ଆଦର୍ଶ । ସ୍ୱାଧୀନତାର କିଛି ବର୍ଷ ପରେ ଜାତୀୟ କଂଗ୍ରେସ ସେହି ଆଦର୍ଶବତ୍ତାରୁ ବିଚ୍ୟୁତ ହୋଇଥିଲେହେଁ, ଲୋକମାନଙ୍କର କଂଗ୍ରେସ ପ୍ରତି ଥିବା ସମ୍ମାନବୋଧ କଂଗ୍ରେସ ଦଳକୁ ଅନେକଥର ଭାରତର ଶାସନ କ୍ଷମତା ଅର୍ପଣ କରିଛି ।

ସ୍ୱାଧୀନତା ପରେ ଭାରତରେ ବହୁ ରାଜନୀତିକ ଦଳର ଆବିର୍ଭାବ ଘଟିଛି । ଅଳ୍ପ କେତେଜଣ ନେତାଙ୍କୁ ଛାଡ଼ିଦେଲେ ଅଧିକାଂଶ ନେତା କେବଳ ବ୍ୟକ୍ତିଗତ ସ୍ୱାର୍ଥଲୋଭରେ ରାଜନୀତିରେ ପ୍ରବେଶ କରିଛନ୍ତି । ତେଣୁ ରାଜନୀତି ପରିଣତ ହୋଇଛି ଭ୍ରଷ୍ଟାଚାରୀଙ୍କ ଆଶ୍ରୟସ୍ଥଳରେ । ମହାତ୍ମାଗାନ୍ଧିଙ୍କ ନିଧନ ପରେ ଜାତୀୟ କଂଗ୍ରେସର ଭାବମୂର୍ତ୍ତିକୁ ପଣ୍ଡିତ ଜବାହରଲାଲ ନେହେରୁ କିଛିବର୍ଷ ପାଇଁ ସାଇତି ରଖି ପାରିଥିଲେ । ଯେଉଁଥିପାଇଁ ୧୯୭୭ ମସିହା ପର୍ଯ୍ୟନ୍ତ କଂଗ୍ରେସ ଏକ ଶକ୍ତିଶାଳୀ ଦଳରୂପେ ନିଜର କାର୍ଯ୍ୟ ସମ୍ପାଦନ କରିପାରିଥିଲା । ଏହି ଦଳ ଭାରତକୁ ବିଭିନ୍ନ କ୍ଷେତ୍ରରେ ସମୃଦ୍ଧ କରିବାକୁ ବିଭିନ୍ନ କାର୍ଯ୍ୟପନ୍ଥା ଗ୍ରହଣ କରିଛି । ଚୀନ ଓ ପାକିସ୍ଥାନର ଆକ୍ରମଣ ସମୟରେ ଏହି ଦଳ ଦେଶର ସମ୍ମାନ ସୁରକ୍ଷିତ ରଖିବାକୁ ଯତ୍‌ପରୋନାସ୍ତି ଚେଷ୍ଟା କରିଛି । ଧର୍ମନିରପେକ୍ଷତା ରକ୍ଷା ସହିତ ଶିଳ୍ପ, କୃଷି ଓ ଶିକ୍ଷା ଆଦିର ବିକାଶରେ ଏହି ଦଳର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ । ସାମାଜିକ ନ୍ୟାୟ ପ୍ରତିଷ୍ଠା ଦିଗରେ ଗାନ୍ଧିଜୀଙ୍କ ପଦାଙ୍କ ଅନୁସରଣ କରିଛି । ଆଣବିକ ପରୀକ୍ଷା ବିଂଶସୂତ୍ରୀ କାର୍ଯ୍ୟକ୍ରମ ଆଦି ଦ୍ୱାରା କଂଗ୍ରେସ ଦଳ ନିଜର ଭାବମୂର୍ତ୍ତିକୁ କିଛି ସମୟ ପାଇଁ ଅକ୍ଷୁଣ୍ଣ ରଖିପାରିଥିଲା । ଲୋକମାନଙ୍କ ମନରେ ତିନୋଟି କାରଣରୁ ଏହି ଦଳ ପ୍ରତି ବିଶ୍ୱାସଭାବ ସୃଷ୍ଟି ହୋଇଥିଲା । ପ୍ରଥମତଃ ମହାତ୍ମାଗାନ୍ଧି ଓ ପଣ୍ଡିତ ନେହେରୁଙ୍କ ନେତୃତ୍ୱରେ ସ୍ୱାଧୀନତା ସଂଗ୍ରାମରେ ଏହି ଦଳ ଭାଗନେଇ ଭାରତକୁ ସ୍ୱାଧୀନତାର ସ୍ୱାଦ ଚଖେଇଥିଲା । ଦ୍ୱିତୀୟତଃ ବହୁବର୍ଷ ଧରି ଶାସନ କ୍ଷମତାରେ ରହିବା ଦ୍ୱାରା ନିଜର ସଙ୍ଗଠନକୁ ବହୁପରିମାଣରେ ଦୃଢ଼ୀଭୂତ କରିବା ସଙ୍ଗେ ସଙ୍ଗେ ଲୋକମାନଙ୍କ ମନରେ ଆସ୍ଥାଭାବ ସୃଷ୍ଟି କରିପାରିଥିଲା । ତୃତୀୟତଃ ବିଭିନ୍ନ ମତବାଦୀଙ୍କ ପାଇଁ କଂଗ୍ରେସ ଦଳରେ ସ୍ଥାନ ରହିଥିଲା ଓ ଏହା ଏକ ଶୃଙ୍ଖଳିତ ଓ ସୁସଙ୍ଗଠିତ ଦଳ ବୋଲି ଜନସାଧାରଣଙ୍କ ଧାରଣା ରହିଥିଲା । ଏହି କାରଣରୁ ଭାରତର ରାଜନୀତିରେ ଏହି ଦଳ ବହୁବର୍ଷ ଧରି ଶାସନ କରିବାର ସୁଯୋଗ ଲାଭ କରିପାରିଛି । ସ୍ୱାଧୀନତା ପରେ ମତଭେଦ ଯୋଗୁଁ କଂଗ୍ରେସ ଦଳର କେତେକ ତୁଙ୍ଗ ନେତା ସେଥିରୁ ଓହରିଆସି ସ୍ୱତନ୍ତ୍ର ଦଳ ଗଠନ କରିଥିଲେ ହେଁ, ତା'ର ବିଶେଷ କିଛି ପ୍ରଭାବ ଜନସାଧାରଣଙ୍କ ଉପରେ ପଡ଼ିନ ଥିଲା । 'ପ୍ରଜାସାମ୍ୟବାଦୀ' ଏହିପରି ଏକ ଦଳ । କଂଗ୍ରେସ ଦଳର ଅନ୍ୟତମ ଟାଣୁଆ ନେତା ଡ଼ଃ ରାମମନୋହର ଲୋହିଆଙ୍କ ନେତୃତ୍ୱରେ ଗଠିତ ହୋଇଥିଲା ସଂଯୁକ୍ତ ସମାଜବାଦୀ ଦଳ । ଡ଼ଃ ଲୋହିଆଙ୍କ ପରେ ସାଙ୍ଗଠନିକ ଦକ୍ଷତାର ଅଭାବ ଏହାକୁ ନିଶ୍ଚିହ୍ନ କରି ଦେଇଥିଲା । ଶ୍ୟାମାପ୍ରସାଦ ମୁଖାର୍ଜିଙ୍କ ଉଦ୍ୟମରେ ୧୯୫୨ ମସିହାରେ ସୃଷ୍ଟି ହୋଇଥିଲା 'ଜନସଂଘ' । ଜାତୀୟତାବାଦ ଓ ସ୍ୱଦେଶପ୍ରେମ ଲୋକମାନଙ୍କ ମନରେ ଜାଗ୍ରତ କରିବା ଥିଲା ଏହି ଦଳର

ମୁଖ୍ୟ ଉଦ୍ଦେଶ୍ୟ । ଏ କ୍ଷେତ୍ରରେ ମଧ୍ୟ ଉକ୍ତ ଦଳଟି ବେଶ୍ ସଫଳତା ଅର୍ଜନ କରିଥିଲା । ମାତ୍ର କେତେକ ଏହାକୁ ସାମ୍ପ୍ରଦାୟିକ ଦଳ ବୋଲି ଅପପ୍ରଚାର କରିଥିଲେ । ଏହି ଅପପ୍ରଚାର ଯୋଗୁଁ ଲୋକମାନଙ୍କ ମନରେ ଏହା ଚିରସ୍ଥାୟୀ ପ୍ରଭାବ ବିସ୍ତାର କରିବାକୁ ଅସମର୍ଥ ହେଲା । କମ୍ୟୁନିଷ୍ଟ ଦଳ ମଧ୍ୟ ଭାରତର ଏକ ଜାତୀୟ ଦଳ ରୂପେ ସ୍ୱୀକୃତି ଲାଭ କରିଛି । ଏହା ସି. ପି. ଆଇ. ଓ ସି. ପି. ଆଇ. (ଏମ୍)ରୂପେ ଦୁଇଭାଗରେ ବିଭକ୍ତ । ରୁଷ ଏବଂ ଚୀନ୍‌ର ଚିନ୍ତାଧାରା ଦ୍ୱାରା ଉକ୍ତ ଦୁଇଟି ଦଳ ପ୍ରଭାବିତ । ସମାଜବାଦୀ ସମାଜର ପରିକଳ୍ପନା ଉକ୍ତ ଦଳର ଉଦ୍ଦେଶ୍ୟ ହୋଇଥିବାରୁ ପୁଞ୍ଜିବାଦୀମାନେ ଏହାର ଘୋର ବିରୋଧୀ । ସି. ପି. ଆଇ. (ଏମ୍) ବିଶେଷଭାବରେ କେରଳ, ତ୍ରିପୁରା ଓ ପଶ୍ଚିମବଙ୍ଗରେ ନିଜର ଗୁରୁତ୍ୱ ବୃଦ୍ଧି କରିପାରିଛି । ଭାରତୀୟ କମ୍ୟୁନିଷ୍ଟ ଦଳରୁ ଜନ୍ମଲାଭ କରିଛି ଏସ୍. ୟୁ. ସି.ଆଇ. । ଭାରତରେ ଏହି ଦଳର ବିଶେଷ କୌଣସି ପ୍ରଭାବ ଜନସାଧାରଣଙ୍କ ଉପରେ ଦେଖାଯାଏ ନାହିଁ । ଶ୍ରୀମତୀ ଇନ୍ଦିରାଗାନ୍ଧିଙ୍କ ପ୍ରଧାନମନ୍ତ୍ରିତ୍ୱ ସମୟରେ ଜରୁରୀକାଳୀନ ପରିସ୍ଥିତି ଘୋଷଣା କରାଯାଇଥିଲା । ଏହାଦ୍ୱାରା ମର୍ମାହତ ଲୋକପ୍ରିୟ ନେତା ଜୟପ୍ରକାଶ ନାରାୟଣ ବିଭିନ୍ନ ବିରୋଧୀଦଳକୁ ଏକତ୍ର କରି ଏକଛତ୍ରବାଦ ବିରୋଧରେ ସଂଗ୍ରାମ କରିବାକୁ ଆଗେଇ ଆସିଥିଲେ । ତାଙ୍କରି ନେତୃତ୍ୱରେ ଜନସଂଘ, ସୋସାଲିଷ୍ଟ ପାର୍ଟି, ଭାରତୀୟ ଲୋକଦଳ, ସଙ୍ଗଠନ କଂଗ୍ରେସ ଆଦି ଏକତ୍ରିତ ହୋଇ ଗଠିତ ହୋଇଥିଲା 'ଜନତା ଦଳ' । ୧୯୭୭ ମସିହା ନିର୍ବାଚନରେ ଏହି ଦଳ ସଂଖ୍ୟାଗରିଷ୍ଠତା ଲାଭକରି କ୍ଷମତାସୀନ ହେଲା । ମାତ୍ର ଦଳୀୟ କନ୍ଦଳ ଯୋଗୁଁ ତାହା ଦୁଇଭାଗରେ ବିଭକ୍ତ ହୋଇଗଲା । ୧୯୮୮ ମସିହାରେ ଲୋକଦଳ, ଜନତା (ଏ), ଜନମୋର୍ଚ୍ଚା ଏବଂ କଂଗ୍ରେସ (ଏସ୍) ମିଳିତ ଭାବରେ ଜନତା ଦଳ ନାମରେ ଏକ ନୂତନ ଦଳ ଗଠନ କଲେ । ୧୯୮୯ ଲୋକସଭା ନିର୍ବାଚନରେ ଏହି ଦଳ ୧୪୧ଟି ଆସନ ଲାଭ କରିଥିଲା । ଭାରତୀୟ ଜନତାଦଳର ସମର୍ଥନରେ ଏମାନେ ସରକାର ଗଠନ କରିଥିଲେହେଁ କେତେକ କାର୍ଯ୍ୟକ୍ରମ ଓ କ୍ଷମତାକନ୍ଦଳ ଯୋଗୁଁ ପୁଣି ଏମାନେ ଲୋକପ୍ରିୟତା ହରାଇଲେ । ସମ୍ପ୍ରତି ଭାରତୀୟ ଜନତାଦଳ ଅନ୍ୟତମ ଶକ୍ତିଶାଳୀ ଜାତୀୟ ଦଳ ରୂପେ ଆବିର୍ଭାବ ଲାଭ କରିଛି । ଏହା ୧୯୮୦ ମସିହାରେ ଗଠନ କରାଯାଇଥିଲା । ଜନସଂଘର ଅଧିକାଂଶ ସଦସ୍ୟଙ୍କ ମିଳିତ ଉଦ୍ୟମରେ ଏହା ଗଠିତ । ଅନ୍ୟାନ୍ୟ ଦଳ ଏହାକୁ ଏକ ସାମ୍ପ୍ରଦାୟିକ ଦଳ ବୋଲି ସମାଲୋଚନା କଲେହେଁ ଧୀରେ ଧୀରେ ଏହାର ଲୋକପ୍ରିୟତା ବୃଦ୍ଧି ପାଇବାରେ ଲାଗିଛି । ଦ୍ୱାଦଶ ଓ ତ୍ରୟୋଦଶ ଲୋକସଭା ନିର୍ବାଚନରେ ଏକ ବୃହତ୍ ଦଳ ରୂପେ ଅନ୍ୟାନ୍ୟ ସହଯୋଗୀ ଦଳଙ୍କ ସହିତ ମିଶି ଏହି ଦଳ ଶାସନ କ୍ଷମତା ଲାଭ କରିଛି । ତେବେ ଭାରତୀୟ ରାଜନୀତିରେ କଂଗ୍ରେସ ଦଳ ଏ ଯାବତ୍ ସର୍ବାଧିକ ଥର ଶାସନକ୍ଷମତା ଲାଭ କରିଛି । ଏହି ଦଳ ପ୍ରତି ଜନସାଧାରଣଙ୍କ ମନରେ ଅସନ୍ତୋଷ ରହିଥିଲେ ହେଁ ଅନ୍ୟାନ୍ୟ ଦଳର କ୍ଷମତା କନ୍ଦଳ, ପରସ୍ପର ପ୍ରତି ଅବିଶ୍ୱାସ ଭାବ ଯୋଗୁଁ ଭାରତୀୟ ଜନସାଧାରଣ ସେମାନଙ୍କୁ ବିଶ୍ୱାସ କରିପାରୁ ନାହାନ୍ତି । ପ୍ରାୟ ୩।୪ଥର ଭାରତୀୟ ଜନତା କଂଗ୍ରେସକୁ ତ୍ୟାଗ କରିଛନ୍ତି । ଅଥଚ ଅନ୍ୟଦଳ ପାଞ୍ଚବର୍ଷ ପର୍ଯ୍ୟନ୍ତ କ୍ଷମତାରେ ରହିବାକୁ ସମର୍ଥ ହୋଇପାରି ନାହାନ୍ତି । ଏହି କାରଣରୁ ବର୍ତ୍ତମାନ ଜନସାଧାରଣ ଭାରତର କୌଣସି ରାଜନୀତିକ ଦଳକୁ ବିଶ୍ୱାସ କରିପାରୁ ନାହାନ୍ତି ।

ବର୍ତ୍ତମାନ ଭାରତରେ କଂଗ୍ରେସ, ଭାରତୀୟ ଜନତାପାର୍ଟି, ସି. ପି. ଆଇ. (ଏମ୍), ଜନତା ଦଳ ଆଦି କେତୋଟି ଜାତୀୟ ଦଳ ଭାବରେ ପ୍ରତିଷ୍ଠା ଲାଭ କରିଛି । ବହୁଜନ ସମାଜ ପାର୍ଟି, ସମାଜବାଦୀ ଜନତାପାର୍ଟି, ରାଷ୍ଟ୍ରୀୟମୋର୍ଚ୍ଚା ଆଦି ନିଜକୁ ଜାତୀୟ ଦଳ ଭାବରେ ଯେତେ ଘୋଷଣା କଲେ ମଧ୍ୟ ସେମାନେ କେବଳ ଆଞ୍ଚଳିକ ଦଳର ମର୍ଯ୍ୟାଦା ଲାଭ କରିପାରିବେ । ମାତ୍ର ଏକଥା ସତ୍ୟ; ଆଞ୍ଚଳିକ ଦଳମାନଙ୍କର ଆବିର୍ଭାବ ଯୋଗୁଁ ଜାତୀୟଦଳଙ୍କ ମର୍ଯ୍ୟାଦା ହାନି ହୋଇଛି ଓ ସେମାନେ ପ୍ରାଦେଶିକ ସ୍ତରରେ ଏହି ଦଳମାନଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ଅସମର୍ଥ ହୋଇଛନ୍ତି । ଆଜି ଭାରତରେ ଯେଉଁ ଆଞ୍ଚଳିକ ଦଳଗୁଡ଼ିକ ନିଜର ପ୍ରାଧାନ୍ୟ ବିସ୍ତାର କରିବାକୁ ସମର୍ଥ ହୋଇଛନ୍ତି, ସେମାନଙ୍କ ମଧ୍ୟରେ କାଶ୍ମୀରର ଜାତୀୟ ସମ୍ମିଳନୀ, ଆନ୍ଧ୍ରର ତେଲୁଗୁଦେଶମ୍ ଦଳ, ଆସାମର ଆସାମଗଣପରିଷଦ, ଉତ୍ତରପ୍ରଦେଶର ସମାଜବାଦୀ ଜନତାଦଳ ଓ ବହୁଜନସମାଜ ଦଳ, ତାମିଲନାଡୁର ଏ. ଆଇ. ଏ. ଡ଼ି. ଏମ୍. କେ ଓ ଡ଼ି. ଏମ୍. କେ, ପଞ୍ଜାବର ଅକାଳୀ ଦଳ, ଓଡ଼ିଶାର ବିଜୁଜନତା ଦଳ, ମହାରାଷ୍ଟ୍ରର ଶିବସେନା, ପଶ୍ଚିମବଙ୍ଗର ତୃଣମୂଳ କଂଗ୍ରେସ, ଝାଡ଼ଖଣ୍ଡ, ହରିଆନା ବିକାଶ ପାର୍ଟି, ହରିଆନା ଲୋକଦଳ, ଅରୁଣାଚଳ କଂଗ୍ରେସ ଆଦି ପ୍ରଧାନ । ଲୋକଶକ୍ତି ଓ ସମତାପାର୍ଟିର କୌଣସି ପ୍ରଭାବ ସର୍ବଭାରତୀୟ ସ୍ତରରେ ପରିଲକ୍ଷିତ ହୁଏ ନାହିଁ । ଏତଦ୍‌ବ୍ୟତୀତ ନିର୍ବାଚନ ସମୟରେ ସ୍ୱାଧୀନ ଏବଂ ଆହୁରି ଅନେକ କ୍ଷୁଦ୍ର କ୍ଷୁଦ୍ର ଦଳର ଆବିର୍ଭାବ ଘଟିଥାଏ । ମୁଖ୍ୟତଃ ଧର୍ମ, ଆଞ୍ଚଳିକ ସଂସ୍କୃତି, ସଂକୀର୍ଣ୍ଣ ଜାତିଆଣଭାବ ଓ ଭାବପ୍ରବଣତାକୁ ଭିତ୍ତିକରି ଏହି ଦଳ ଗଠିତ ହୋଇଥିବାରୁ ଜାତୀୟ ସ୍ୱାର୍ଥ ଏମାନଙ୍କ ନିକଟରେ ବଡ଼ ହୋଇ ନ ଥାଏ । ସଂକୀର୍ଣ୍ଣ ଆଞ୍ଚଳିକତାବୋଧ ରାଜନୀତିର ମର୍ଯ୍ୟାଦାକୁ ହାନି କରୁଛି ।

ପ୍ରତ୍ୟେକ ରାଜନୀତିକ ଦଳ ଏକ ଏକ ଆଦର୍ଶକୁ ଆଖିଆଗରେ ରଖି ସେମାନଙ୍କର କାର୍ଯ୍ୟପନ୍ଥା ସ୍ଥିର କରିବା ଆବଶ୍ୟକ । ରାଷ୍ଟ୍ରୀୟ ସ୍ୱାର୍ଥର ସୁରକ୍ଷା ପ୍ରତ୍ୟେକ ରାଜନୀତିକ ଦଳର ମୁଖ୍ୟ ଲକ୍ଷ୍ୟ ହେବା ଉଚିତ । ମାତ୍ର ବର୍ତ୍ତମାନ ଭାରତରେ ପରିଲକ୍ଷିତ ହେଉଥିବା ଜାତୀୟ ବା ଆଞ୍ଚଳିକ ରାଜନୀତିକ ଦଳଗୁଡ଼ିକ ରାଷ୍ଟ୍ରୀୟ ସ୍ୱାର୍ଥ ଅପେକ୍ଷା ବ୍ୟକ୍ତିଗତ ସ୍ୱାର୍ଥ ପ୍ରତି ଅଧିକ ଗୁରୁତ୍ୱ ପ୍ରଦାନ କରୁଛନ୍ତି । ଧର୍ମ, ଆଞ୍ଚଳିକତା, ସଂକୀର୍ଣ୍ଣ ଜାତିଆଣଭାବକୁ ପୁଞ୍ଜିକରି ନିର୍ବାଚନ ରଣାଙ୍ଗନରେ ଅବତୀର୍ଣ୍ଣ ହେଉଛନ୍ତି । ଏହାଦ୍ୱାରା ରାଷ୍ଟ୍ରର ପ୍ରଭୂତ କ୍ଷତି ହେଉଛି । ସ୍ୱାର୍ଥ ଏବଂ କ୍ଷମତା ଲାଭ ପାଇଁ ଏହି ଦଳଗୁଡ଼ିକ ଯେକୌଣସି ସ୍ତରକୁ ଯିବା ପାଇଁ ଦ୍ୱିଧାବୋଧ କରୁନାହାନ୍ତି । ତେଣୁ ସାଧୁତା, ସଚ୍ଚୋଟତା ଆଜି ରାଜନୀତିରୁ ବିଲୁପ୍ତ । ଦେଶର ସମୃଦ୍ଧି ଓ ସୁରକ୍ଷା, ଗଣତାନ୍ତ୍ରିକ ମୂଲ୍ୟବୋଧ ପ୍ରତି ସମ୍ମାନ ପ୍ରଦର୍ଶନ ଜନସାଧାରଣଙ୍କ ମନରେ ରାଜନୈତିକ ସଚେତନତା ବୃଦ୍ଧି ତଥା ସର୍ବୋପରି ସେବକ ରୂପେ ଜନସାଧାରଣଙ୍କ ସେବା ପାଇଁ ନିଜକୁ ଉତ୍ସର୍ଗ କରିବା ପ୍ରତ୍ୟେକ ରାଜନୈତିକ ନେତା ଓ ଦଳର ଆଦର୍ଶ ହେବା ଆବଶ୍ୟକ । ନଚେତ୍ କଷ୍ଟଲବ୍ଧ ଗଣତନ୍ତ୍ର ଯେ ବିପନ୍ନ ହୋଇଯିବ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ଭାରତର ସମ୍ବିଧାନ ଅନୁଯାୟୀ ପ୍ରତ୍ୟେକ ନିର୍ବାଚିତ ଦଳ ପାଞ୍ଚବର୍ଷ ପାଇଁ ଶାସନ କ୍ଷମତାରେ ରହିପାରିବେ । ମାତ୍ର ଦୁଃଖର ବିଷୟ ବିଗତ ଦୁଇଦୁଇଟି ନିର୍ବାଚନରେ କୌଣସି ଦଳ ପାଞ୍ଚ ବର୍ଷ ପାଇଁ କ୍ଷମତାରେ ରହିବାକୁ ସମର୍ଥ ହୋଇପାରିଲେ ନାହିଁ । ଜନସାଧାରଣଙ୍କ ମୁଣ୍ଡ ଉପରେ ଗୋଟିଏ ବର୍ଷ ମଧ୍ୟରେ ଦୁଇଦୁଇଟି ନିର୍ବାଚନ ଲଦି ଦିଆଗଲା । କୋଟିକୋଟି ଟଙ୍କା ରାଜକୋଷରୁ ଖର୍ଚ୍ଚ ହେଲା । ନିରୀହ ଜନସାଧାରଣଙ୍କର ସମସ୍ତ ଆଶା ଧୂଳିସାତ୍ ହେଲା । ତେଣୁ ସାଧାରଣ ନିର୍ବାଚନ ସମୟରେ ପ୍ରତ୍ୟେକ ରାଜନୀତିକ ଦଳ ସେମାନଙ୍କର ଭୂମିକା ସମ୍ପର୍କରେ ଜନସାଧାରଣଙ୍କୁ ସ୍ପଷ୍ଟ କରିଦେବା ଆବଶ୍ୟକ । ଯେଉଁ ଉଦ୍ଦେଶ୍ୟରେ ସେମାନେ ନିର୍ବାଚନ ରଣାଙ୍ଗନରେ ପାଦ ଦେଇଛନ୍ତି, ତା'ର ଏକ ସ୍ପଷ୍ଟୀକରଣ ଦେବା ସଙ୍ଗେ ସଙ୍ଗେ ନିର୍ବାଚନ ପରେ ସେମାନେ ସେହି ପ୍ରତିଶ୍ରୁତିକୁ ପାଳନ କରିପାରିଲେ ଭବିଷ୍ୟତରେ ଏ କ୍ଷେତ୍ରରେ ସେମାନଙ୍କର ପୁନଃ ଆବିର୍ଭାବ ନ ହେବ ବୋଲି ଶପଥପାଠ କରିବା ଉଚିତ । ନିର୍ବାଚନ ସମୟରେ ସେମାନେ ସେମାନଙ୍କର ଅତୀତ କାର୍ଯ୍ୟକଳାପ ଓ ବର୍ତ୍ତମାନର କାର୍ଯ୍ୟପନ୍ଥା ସମ୍ବନ୍ଧରେ ସ୍ପଷ୍ଟ ଅବଗତ କରାଇବା ଆବଶ୍ୟକ । ବିଶେଷଭାବରେ ବ୍ୟକ୍ତିଗତ ସ୍ୱାର୍ଥ, ଜାତିଆଣ ମନୋଭାବ, ଆଞ୍ଚଳିକତାବୋଧ, ଭାବପ୍ରବଣ ସର୍ବସ୍ୱ ଓ ସଂକୀର୍ଣ୍ଣମନା ବ୍ୟକ୍ତିଙ୍କୁ ଦଳୀୟ ନିକଟରୁ ବଞ୍ଚିତ କରାଯିବା ସର୍ବାଦୌ ବାଞ୍ଛନୀୟ । ରାଜନୀତିକ ଦଳ କ୍ଷମତାର ଅଳିନ୍ଦରେ ପ୍ରବେଶ କରିବା ପୂର୍ବରୁ ସଚ୍ଚୋଟ ଓ ସାଧୁ ମନୋଭାବ ସମ୍ପନ୍ନ ହୋଇଥିବା ଅତୀବ ଜରୁରୀ ।

ପ୍ରତ୍ୟେକ ଗଣତାନ୍ତ୍ରିକ ରାଷ୍ଟ୍ରରେ ବିରୋଧୀଦଳର ଏକ ପ୍ରମୁଖ ଭୂମିକା ରହିଛି । ସେହିମାନେ ହିଁ ପ୍ରକୃତ ସମ୍ବିଧାନର ରକ୍ଷକ । ସେମାନଙ୍କର ଗଠନମୂଳକ ପରାମର୍ଶ ଦେଶକୁ ପ୍ରଗତି ପଥରେ ଗତି କରାଇଥାଏ । କ୍ଷମତାସୀନ ଦଳ ସ୍ୱେଚ୍ଛାଚାରୀ କିମ୍ବା ସ୍ୱାର୍ଥପର ହେଲେ ଜନସାଧାରଣଙ୍କ ନିକଟରେ ସେମାନଙ୍କର ମୁଖା ଖୋଲିଦେବାର ଦାୟିତ୍ୱ ବିରୋଧୀଦଳର । ବିରୋଧୀଦଳ ସର୍ବଦା ଗଠନମୂଳକ ସମାଲୋଚକ ହେବା ଆବଶ୍ୟକ । ସରକାରଙ୍କ ତ୍ରୁଟିବିଚ୍ୟୁତି ସମ୍ପର୍କରେ ସେମାନେ ଦଳକୁ ଅବଗତ କରାଇଦେବା ଉଚିତ । ବିରୋଧୀଦଳ ଉପଦେଶକର ଭୂମିକା ଗ୍ରହଣ କରି ଦେଶ ଓ ଜନସାଧାରଣଙ୍କ ହିତ ପାଇଁ ଯାହା ଆବଶ୍ୟକ, ତାହା ସରକାରଙ୍କୁ ଉଚିତ ସମୟରେ ପରାମର୍ଶ ଦେବା ବିଧେୟ । ମୁକାବିଲାମୂଳକ ମନୋଭାବ ପ୍ରଦର୍ଶନ ନ କରି ଜାତୀୟ ସଙ୍କଟ ସମୟରେ ସହଯୋଗ ମୂଳକ ମନୋବୃତ୍ତି ପ୍ରକାଶ କରିବା ପ୍ରକୃତ ବିରୋଧୀଦଳର ମୁଖ୍ୟ କର୍ତ୍ତବ୍ୟ । କେବଳ ସମାଲୋଚନା କଲେ ସମସ୍ୟାର ସମାଧାନ ହୋଇନଥାଏ, ସମସ୍ୟା ସମାଧାନ ନିମିତ୍ତ ଯଥାର୍ଥ ପଥପ୍ରଦର୍ଶନ ହିଁ ବିରୋଧୀଦଳର ମୁଖ୍ୟ ଲକ୍ଷ୍ୟ ହେବା ଆବଶ୍ୟକ । ସୁସ୍ଥ ଓ ସୁଦୃଢ଼ ଗଣତନ୍ତ୍ର ନିମିତ୍ତ ବିରୋଧୀଦଳର ମୁଖ୍ୟ ଭୂମିକା ରହିଛି । ଶାସକ ଓ ବିରୋଧୀଦଳ ମିଳିତ ଭାବରେ କାର୍ଯ୍ୟପନ୍ଥା ଗ୍ରହଣ କଲେ ଦେଶର ପ୍ରଗତି ତ୍ୱରାନ୍ୱିତ ହୋଇପାରିବ ।

ବିଶ୍ୱରେ ସବୁଠାରୁ ଅଧିକ ରାଜନୀତିକ ଦଳ ଭାରତରେ ଦେଖାଯାଇଥାନ୍ତି । ମାତ୍ର ଆଦର୍ଶର ଅଭାବ ହେତୁ ଜନସାଧାରଣଙ୍କ ମନରେ ଏମାନେ ଯେପରି ପ୍ରଭାବ ବିସ୍ତାର କରିବା

କଥା, ତାହା କରିପାରୁ ନାହାନ୍ତି । ଜନସାଧାରଣ ଏମାନଙ୍କ ଉପରୁ ବିଶ୍ୱାସ ହରାଇ ସାରିଲେଣି । ପ୍ରତ୍ୟେକ ରାଜନୀତିକ ଦଳ ମନେରଖିବା ଉଚିତ, ରାଜନୀତି ଏକ ବ୍ୟବସାୟ ବା ବୃତ୍ତି ନୁହେଁ । ଏହାର ମୁଖ୍ୟ ଉଦ୍ଦେଶ୍ୟ ଜନସାଧାରଣଙ୍କୁ ସେବା ପ୍ରଦାନ । ଆଜି ବ୍ୟକ୍ତି ସ୍ୱାର୍ଥ, ସଂକୀର୍ଣ୍ଣ ମନୋଭାବ ରାଜନୀତିକୁ କଳୁଷିତ କରିଦେଇଛି । ଦଳବଦଳ ଏକ ସାଧାରଣ ବସ୍ତୁରେ ପରିଣତ ହୋଇଛି । ଆଦର୍ଶ, ସେବା, ସଚ୍ଚୋଟତା କେବଳ ଅଭିଧାନର ପୃଷ୍ଠା ମଣ୍ଡନ କରିଛି । ରାଜନୀତି ଏକ ପବିତ୍ର କର୍ତ୍ତବ୍ୟ । ଦେଶ ଓ ଜନସେବା ଏହାର ମୁଖ୍ୟ ଲକ୍ଷ୍ୟ । ଯଦି ଆଜିର ରାଜନୀତିକ ଦଳ 'ରାଜନୀତି' ଶବ୍ଦର ପ୍ରକୃତ ଅର୍ଥ ବୁଝାଇବାକୁ ସମର୍ଥ ହୋଇପାରିବେ, ତେବେ ସମସ୍ତ ସମସ୍ୟା ଅଚିରେ ଦୂରୀଭୂତ ହୋଇପାରିବ । ପୁନରାୟ ଭାରତକୁ ରାମରାଜ୍ୟ ଫେରିଆସିବ । ରାଜନୀତିରୁ ଅପସରିଯିବ କଳୁଷତା, ସଂକୀର୍ଣ୍ଣତା, ସ୍ୱାର୍ଥପରାୟଣତା ଓ ଆଦର୍ଶହୀନତା । ପୁଣି ଭାରତ ପ୍ରଗତି ପଥରେ ଗତିକରି ବିଶ୍ୱକୁ ବିଭିନ୍ନ କ୍ଷେତ୍ରରେ ମାର୍ଗ ନିର୍ଦ୍ଦେଶ କରିବାକୁ ସମର୍ଥ ହୋଇପାରିବ ।



## ଭାରତରେ ଗଣତନ୍ତ୍ରର ଭବିଷ୍ୟତ

**(ଉପକ୍ରମ, ଗଣତନ୍ତ୍ରର ରୂପରେଖ, ସାମ୍ବିଧାନିକ ପ୍ରତିଶ୍ରୁତି, ଭାରତୀୟ ଗଣତନ୍ତ୍ରର ଉଜ୍ଜ୍ୱଳ ଦିଗ, ଗଣତନ୍ତ୍ରରେ ରାଜନୀତିକ ଦଳର ଭୂମିକା, ଭାରତୀୟ ଗଣତନ୍ତ୍ରର କେତେକ ତ୍ରୁଟିପୂର୍ଣ୍ଣ ଦିଗ, ସମସ୍ୟା ସମାଧାନର ଉପାୟ, ଉପସଂହାର)**

ସ୍ୱାଧୀନ ଭାବରେ ଜୀବନଯାପନ କରିବା ପ୍ରତ୍ୟେକ ମଣିଷର ଇଚ୍ଛା । ସ୍ୱାଧୀନ ମତବ୍ୟକ୍ତ, ସ୍ୱାଧୀନ ଚଳପ୍ରଚଳ ମଣିଷର ସହଜାତ ପ୍ରବୃତ୍ତି । ମାତ୍ର ସମୟେ ସମୟେ ସମାଜ ତା'ର ସେହି ସ୍ୱାଧୀନ ସ୍ୱଚ୍ଛନ୍ଦ ଜୀବନରେ ଅଙ୍କୁଶ ଲଗାଇ ଦେଇଥାଏ । ପ୍ରବହମାନ ଝରଣାର ଗତିପଥକୁ ପଥର ଦ୍ୱାରା ବାଧା ପ୍ରଦାନ କରିଥାଏ । ଏହାଦ୍ୱାରା ତା'ର ସ୍ୱାଧୀନତା କ୍ଷୁଣ୍ଣ ହୁଏ । ଗଣତନ୍ତ୍ରର ଉଦ୍ଦେଶ୍ୟ ମଣିଷ ନିଜ ରୁଚି ଅନୁଯାୟୀ ନିଜକୁ ଗଢ଼ିତୋଳିବ; ମାତ୍ର ସମାଜ ଜୀବନରେ ବା ରାଷ୍ଟ୍ରୀୟ ଜୀବନରେ କୌଣସି କ୍ଷତି ସାଧନ କରିବ ନାହିଁ । ଦୀର୍ଘଦିନର ସଂଘର୍ଷ ଓ ସାଧନାର ଫଳସ୍ୱରୂପ ଭାରତ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଦିନ ଇଂରେଜ ଶାସନରୁ ମୁକ୍ତ ହୋଇ ଏକ ସ୍ୱାଧୀନ ଗଣତନ୍ତ୍ର ରାଷ୍ଟ୍ର ରୂପେ ନିଜକୁ ପ୍ରତିଷ୍ଠା କଲା । ୧୯୫୦ ମସିହା ଜାନୁଆରୀ ୨୬ ତାରିଖ ଦିନ ଏକ ସାର୍ବଭୌମ ଗଣତାନ୍ତ୍ରିକ ସାଧାରଣତନ୍ତ୍ରର ରାଜ୍ୟ ସଂଘଭାବରେ ନିଜର ବୈଶିଷ୍ଟ୍ୟ ପ୍ରତିପାଦନ କଲା । ବିଶ୍ୱରେ ଇଂଲଣ୍ଡରେ ସର୍ବପ୍ରଥମ ଗଣତନ୍ତ୍ର ଶାସନ ପଦ୍ଧତି ପ୍ରଚଳିତ ହୋଇଥିଲା । ପରେ ପରେ ଫ୍ରାନ୍ସ, ଆମେରିକା, ଜର୍ମାନ, ଇଟାଲୀ ଆଦି ଅନେକ ଦେଶରେ ଗଣତନ୍ତ୍ରର ପ୍ରଚଳନ ହେଲା । ସ୍ୱାଧୀନତା ଲାଭ ପରେ ଭାରତ ହେଲା ବିଶ୍ୱର ସର୍ବବୃହତ୍ ଗଣତନ୍ତ୍ର ରାଷ୍ଟ୍ର । ବିଶ୍ୱରେ ଅନେକ ଚିନ୍ତାଶୀଳ ବ୍ୟକ୍ତି ଗଣତାନ୍ତ୍ରିକ ଶାସନ ପଦ୍ଧତିକୁ ଶ୍ରେଷ୍ଠ ସ୍ଥାନ ପ୍ରଦାନ କରିଥାନ୍ତି । ୧୯୫୦ ମସିହାରୁ ଭାରତ ତା'ର ସାମ୍ବିଧାନିକ ନୀତିନିୟମ ଅନୁଯାୟୀ ଶାସନ କାର୍ଯ୍ୟ ପରିଚାଳନା କରୁଛି । ଏହା ମଧ୍ୟରେ

ଆମେ ଆମ ସ୍ୱାଧୀନତାର ସୁବର୍ଣ୍ଣଜୟନ୍ତୀ ମହା ଉଲ୍ଲାସରେ ପାଳନ କରିସାରିଛୁ । ମାତ୍ର ଗଣତାନ୍ତ୍ରିକ ମୂଲ୍ୟବୋଧ ପ୍ରତି ଆମର ରାଜନୀତିକ ଦଳ, ଜନସାଧାରଣ କେତେମାତ୍ରାରେ ସଚେତନ, ତାହାହିଁ ମୁଖ୍ୟ ପ୍ରଶ୍ନ ହୋଇ ଆଖିଆଗରେ ଠିଆ ହୋଇଛି । ସାମ୍ପ୍ରତିକ ଅବସ୍ଥାରେ ଭାରତ ପ୍ରତି ଗଣତନ୍ତ୍ର କେତେଦୂର ଉପଯୋଗୀ, ତାହାହିଁ ବିଚାର୍ଯ୍ୟ ।

ଗଣତନ୍ତ୍ର ସମ୍ପର୍କରେ ବ୍ୟାଖ୍ୟା କରିବା ସମୟରେ ବହୁ ଚିନ୍ତାଶୀଳ ବ୍ୟକ୍ତି ସ୍ୱଦୃଷ୍ଟିକୋଣରୁ ଏହାର ରୂପରେଖ ପ୍ରସ୍ତୁତ କରିଛନ୍ତି । ଆମେରିକାର ପୂର୍ବତନ ପ୍ରଖ୍ୟାତ ରାଷ୍ଟ୍ରପତି ଆବ୍ରାହମ୍ ଲିଙ୍କନ ଗଣତନ୍ତ୍ରକୁ ଲୋକମାନଙ୍କର, ଲୋକମାନଙ୍କ ଦ୍ୱାରା ଏବଂ ଲୋକମାନଙ୍କ ପାଇଁ ଏକ ଶାସନ ପଦ୍ଧତି କହିବା ଦ୍ୱାରା (The Government of the people, by the people and for the people) ଏଥିରେ ଜନସାଧାରଣଙ୍କର ବିଶେଷ ଗୁରୁତ୍ୱ ରହିଥିବା ବିଷୟ ସୂଚାଇ ଦେଇଛନ୍ତି । ତେଣୁ ଏକ ଗଣତନ୍ତ୍ର ରାଷ୍ଟ୍ରରେ ଜନସାଧାରଣଙ୍କର ଯେ ଗୁରୁଦାୟିତ୍ୱ ଓ କର୍ତ୍ତବ୍ୟ ରହିଛି, ତାହା ଆମେ ଅନେକ ସମୟରେ ଭୁଲିଯାଇଥାଉ ଓ ଆମର ଏହି ଭୁଲିଯିବାର ସୁଯୋଗ ନେଇ କେତେଜଣ ସ୍ୱାର୍ଥପରାୟଣ ବ୍ୟକ୍ତି ସେମାନଙ୍କର ବ୍ୟକ୍ତିଗତ ସ୍ୱାର୍ଥ ହାସଲ କରିଥାନ୍ତି । ମହାତ୍ମାଗାନ୍ଧି ଗଣତନ୍ତ୍ର ସମ୍ବନ୍ଧରେ ଉଲ୍ଲେଖ କରିବାକୁ ଯାଇ କହିଥିଲେ, ଏହି ଶାସନରେ ସବଳ ବ୍ୟକ୍ତିଙ୍କ ଅନୁରୂପ ଦୁର୍ବଳ ବ୍ୟକ୍ତି ମଧ୍ୟ ସମାନ ସୁବିଧା ସୁଯୋଗ ଲାଭ କରିପାରିବ । (Under it the weakest would have the same opportunity as the strongest.) ସାମ୍ପ୍ରତିକ ସମୟ ଯେ ଏକ ଗଣତନ୍ତ୍ରର ସମୟ, ତାହା କଦାପି ଅସ୍ୱୀକାର କରାଯାଇ ନ ପାରେ । ଏପରିକି କେତେକ କମ୍ୟୁନିଷ୍ଟ ରାଷ୍ଟ୍ର ଗଣତନ୍ତ୍ରକୁ ଜନସମୁଦାୟଙ୍କ ଶାସନ ବା People's democracy ବୋଲି କହିଥାନ୍ତି । ଭାରତୀୟ ଜନସାଧାରଣ ସେମାନଙ୍କର ଗଣତାନ୍ତ୍ରିକ ଅଧିକାର ଲାଭ ପାଇଁ ଇଂରେଜ ଶାସନ ବିରୋଧରେ ଦୀର୍ଘକାଳ ଧରି ସଂଘର୍ଷ କରିଥିଲେ । ତେଣୁ ସ୍ୱାଧୀନତା ଲାଭ ପରେ ଭାରତରେ ଗଣତାନ୍ତ୍ରିକ ଶାସନ ପଦ୍ଧତିର ପ୍ରଚଳନ ହେଲା । ଏହା ଏପରି ଏକ ସରକାର ଯେଉଁଥିରେ ଯୁକ୍ତି, ଆଲୋଚନା ମାଧ୍ୟମରେ କୌଣସି ଏକ ନିଷ୍ପତ୍ତି ଗୃହୀତ ହୋଇଥାଏ । ପଣ୍ଡିତ ଜବାହରଲାଲ ନେହେରୁଙ୍କ ମତରେ "Democracy was a civilised procedure to settle problems by discussion, argument and their decision by the majority". ଏହି ସରକାରର ଅନ୍ୟତମ ବିଶେଷତ୍ୱ ହେଉଛି, ଲୋକମାନଙ୍କର ପସନ୍ଦ ଅନୁଯାୟୀ ସରକାର ଗଠିତ ହେଉଥିବାରୁ ସେମାନେ ଲୋକମାନଙ୍କ ନିକଟରେ ଉତ୍ତରଦାୟୀ ରହିବେ ଓ ସେମାନଙ୍କର ସ୍ୱାର୍ଥ ପାଇଁ କାର୍ଯ୍ୟ କରିବେ । ଗଣତନ୍ତ୍ରର ଏହି ବିଶିଷ୍ଟ ଦିଗଟି ପ୍ରତି ସମସ୍ତେ ସଚେତନ ହୋଇପାରିଲେ ଏହା ନିଶ୍ଚିତ ଭାବରେ ଜନସାଧାରଣଙ୍କର ମଙ୍ଗଳ ସାଧନ କରିପାରିବ ।

ଭାରତର ସମ୍ବିଧାନରେ ନାଗରିକମାନଙ୍କୁ ଅନେକ ପ୍ରତିଶ୍ରୁତି ପ୍ରଦାନ କରାଯାଇଛି । ଭାରତରେ ବସବାସ କରୁଥିବା ସମସ୍ତ ଲୋକଙ୍କ ପାଇଁ ସମାନ ନ୍ୟାୟ, ସମାନ ସାମାଜିକ, ଆର୍ଥନୀତିକ ଏବଂ ରାଜନୀତିକ ନ୍ୟାୟ, ବାକ୍ ସ୍ୱାଧୀନତା, ଚିନ୍ତା ଏବଂ ଭାବପ୍ରକାଶର ସ୍ୱାଧୀନତା ଆଦି ପ୍ରଦାନ କରାଯିବ ବୋଲି ସମ୍ବିଧାନର ମୁଖବନ୍ଧରେ ସ୍ୱୀକାର କରାଯାଇଛି (Indian

democracy will secure to all its citizens social, economic and political justice, liberty of thought, expression, belief and faith and equality of status and opportunity.) ଗୋଟିଏ ପ୍ରକୃତ ଗଣତାନ୍ତ୍ରିକ ରାଷ୍ଟ୍ର ତା'ର ନାଗରିକମାନଙ୍କର ସର୍ବବିଧ ମଙ୍ଗଳ ନିମିତ୍ତ କାର୍ଯ୍ୟ କରିଥାଏ । ଭ୍ରାତୃତ୍ୱବୋଧର ପ୍ରଚାର, ଧର୍ମ କ୍ଷେତ୍ରରେ ନିରପେକ୍ଷତା, ସାମ୍ପ୍ରଦାୟିକ ସଦ୍ଭାବ, ଜାତୀୟ-ଐକ୍ୟ ପ୍ରତିଷ୍ଠା ପାଇଁ ଆମ ସମ୍ବିଧାନରେ ବହୁ କଥା ଉଲ୍ଲେଖ ରହିଛି । ଆର୍ଥନୀତିକ ବୈଷମ୍ୟର ଦୂରୀକରଣ ନିମିତ୍ତ ମଧ୍ୟ ଏଥିରେ ପ୍ରତିଶ୍ରୁତି ଦିଆଯାଇଛି । ତେଣୁ ଭାରତର ସମ୍ବିଧାନ ଅଧ୍ୟୟନ କଲେ, ଏହା ଯେ ନାଗରିକମାନଙ୍କୁ ବିବିଧ ସ୍ୱାଧୀନତା ଓ ସୁଯୋଗ ପ୍ରଦାନ ସହିତ ଭାରତକୁ ଏକ ଜନମଙ୍ଗଳ ରାଷ୍ଟ୍ରରେ ପରିଣତ କରିବା ପାଇଁ ପ୍ରତିଜ୍ଞାବଦ୍ଧ, ଅସ୍ୱୀକାର କରାଯାଇ ନ ପାରେ । ସ୍ୱାଧୀନତାର ସମସ୍ତ ଫଳ ଉପଭୋଗ କରିବା ପାଇଁ ଏହା ନାଗରିକମାନଙ୍କୁ ସମସ୍ତ ସ୍ୱାଧୀନତା ପ୍ରଦାନ କରିଛି ।

ଭାରତୀୟ ଗଣତନ୍ତ୍ରର ବହୁ ଉଜ୍ଜ୍ୱଳ ଦିଗ ରହିଛି । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମ୍ବିଧାନ ଆଗରେ ସମସ୍ତେ ସମାନ । ଜାତି ଜାତି ମଧ୍ୟରେ, ସମ୍ପ୍ରଦାୟ ସମ୍ପ୍ରଦାୟ ମଧ୍ୟରେ ଐକ୍ୟ ସୃଷ୍ଟି ଦିଗରେ ଭାରତୀୟ ଗଣତନ୍ତ୍ରର ଭୂମିକା ଉଲ୍ଲେଖଯୋଗ୍ୟ । ପ୍ରାଚୀନ ଭାରତର ଆଦର୍ଶବତ୍ତା, ପରମ୍ପରା ଓ ଭ୍ରାତୃତ୍ୱବୋଧ ଏଥିରେ ପ୍ରତିଫଳିତ । ପ୍ରତ୍ୟେକ ନାଗରିକଙ୍କୁ ସମାନ ଅଧିକାର ପ୍ରଦାନ କରାଯାଇଥିବାରୁ ସମ୍ବିଧାନ ଆଗରେ ଉଚ୍ଚ ନୀଚ, ଧନୀ-ନିର୍ଦ୍ଧନ ସମସ୍ତେ ସମାନ । ବ୍ୟକ୍ତିର ବ୍ୟକ୍ତିତ୍ୱର ବିକାଶ ନିମିତ୍ତ ଏହା ଅବାଧ ସ୍ୱାଧୀନତା ପ୍ରଦାନ କରିଛି । ମାତ୍ର ପ୍ରତ୍ୟେକ ନାଗରିକ ସଚେତନ ଭାବରେ ନିଜର ପ୍ରକୃତ କର୍ତ୍ତବ୍ୟ ସମ୍ପାଦନ କରିପାରିଲେ ଗଣତାନ୍ତ୍ରିକ ମୂଲ୍ୟବୋଧର ଯଥାର୍ଥ ସମ୍ମାନ ପ୍ରଦର୍ଶନ କରାଯାଇପାରିବ । ଭାରତରେ ପ୍ରତ୍ୟେକ ବୟସ୍କ ବ୍ୟକ୍ତି (୧୮ ବର୍ଷରୁ ଊର୍ଦ୍ଧ୍ୱ) ଭୋଟଦାନର ଅଧିକାର ଲାଭ କରିଛନ୍ତି । ଏହାଦ୍ୱାରା ଲୋକମାନଙ୍କର ରାଜନୈତିକ ବ୍ୟକ୍ତିତ୍ୱବୋଧ ଜାଗ୍ରତ କରିବାରେ ଏହା ସାହାଯ୍ୟ କରିଥାଏ । ଏତଦ୍‌ବ୍ୟତୀତ ଏହାଦ୍ୱାରା ରାଷ୍ଟ୍ର ପ୍ରତି ସେମାନଙ୍କର ଯେ ଏକ କର୍ତ୍ତବ୍ୟବୋଧ ରହିଛି ତାହା ସେମାନେ ଅନୁଭବ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ମନ ମଧ୍ୟରେ ରହିଥିବା ହୀନଭାବ ଦୂର ହୋଇଥାଏ । ଗଣତନ୍ତ୍ର ହେଉଛି ଗଣ ବା ଲୋକମାନଙ୍କର ଶାସନ । ସମ୍ବିଧାନ ପ୍ରଣୟନ ସମୟରେ କେତେକ ବ୍ୟକ୍ତିଙ୍କ ମନରେ ଧାରଣା ରହିଥିଲା, ଭାରତ ବିଭିନ୍ନ ଧର୍ମ, ଭାଷା ଓ ସଂସ୍କୃତିର ଦେଶ ହୋଇଥିବାରୁ ଏଠାରେ ଗଣତନ୍ତ୍ର ସମ୍ପୂର୍ଣ୍ଣ ସଫଳ ହୋଇ ନ ପାରେ । ମାତ୍ର ଅଚିରେ ସେମାନଙ୍କର ଧାରଣା ଭୁଲ୍ ବୋଲି ପ୍ରତିପାଦିତ ହେଲା ଓ ଭାରତରେ ଗଣତନ୍ତ୍ର ଆଶାନୁରୂପ ସଫଳତା ଲାଭ କଲା । ଏହାହିଁ ହେଉଛି ଭାରତୀୟ ଗଣତନ୍ତ୍ରର ସବୁଠାରୁ ଉଜ୍ଜ୍ୱଳମୟ ଦିଗ ।

ଗଣତାନ୍ତ୍ରିକ ରାଷ୍ଟ୍ରରେ ରାଜନୀତିକ ଦଳମାନଙ୍କର ବିଶେଷ ଭୂମିକା ରହିଛି । ସେମାନଙ୍କର ଆଦର୍ଶବତ୍ତା ଓ କାର୍ଯ୍ୟଦକ୍ଷତା ଉପରେ ବହୁପରିମାଣରେ ଗଣତନ୍ତ୍ରର ଭବିଷ୍ୟତ ନିର୍ଭର କରେ । ଅନେକ ସମୟରେ ଦେଖାଯାଏ, ଦଳଗତ ସ୍ୱାର୍ଥ ପାଇଁ ରାଜନୈତିକ ନେତାଗଣ କାର୍ଯ୍ୟ କରୁଥିବାରୁ ସାମୂହିକ ସ୍ୱାର୍ଥ ପ୍ରତି ଉଦାସୀନ ଭାବ ପ୍ରକାଶ କରିଥାନ୍ତି । ଏହାଦ୍ୱାରା ସମଗ୍ର ଦେଶର କ୍ଷତି

ହୋଇଥାଏ । ଅତୀତରେ କେବଳ ଉତ୍ତମ ଚରିତ୍ର ସମ୍ପନ୍ନ ଓ ଆଦର୍ଶବାଦୀ ବ୍ୟକ୍ତିତ୍ୱ ରାଜନୀତି ମଧ୍ୟକୁ ପ୍ରବେଶ କରୁଥିଲେ । ଦେଶସେବା ଥିଲା ସେମାନଙ୍କ ଜୀବନର ବ୍ରତ । ଗଣତନ୍ତ୍ର ମାର୍ଜିତ ଓ ସଂସ୍କୃତ ହେବାକୁ ହେଲେ ରାଜନୀତିକ ବ୍ୟକ୍ତିବିଶେଷ ସେହି ପରିମାଣରେ ମାର୍ଜିତ ଏବଂ ସଂସ୍କୃତିସମ୍ପନ୍ନ ହେବା ଆବଶ୍ୟକ । ଆଜି ରାଜନୀତିରେ କ୍ଷମତା ଓ ଅର୍ଥବଳ ପ୍ରାଧାନ୍ୟ ବିସ୍ତାର କରିଛି । ଅନେକ ସମୟରେ ଧର୍ମ ଓ ସମ୍ପ୍ରଦାୟକୁ ଅସ୍ତ୍ର କରି କେତେକ ବ୍ୟକ୍ତି ରାଜନୀତିକୁ ପ୍ରବେଶ କରୁଥିବାରୁ ଗଣତନ୍ତ୍ର ବିପନ୍ନ ହୋଇପଡୁଛି । ଆଞ୍ଚଳିକତାବାଦକୁ କେନ୍ଦ୍ର କରି କ୍ଷମତା ବଳୟରେ ପ୍ରବେଶ କରିବାକୁ ଚେଷ୍ଟା କରୁଥିବାରୁ ମୂଲ୍ୟବୋଧରେ ଅବକ୍ଷୟ ଘଟୁଛି । ତେଣୁ ଗୋଟିଏ ସୁସ୍ଥ ଗଣତନ୍ତ୍ର ପାଇଁ ରାଜନୀତିକ ସାଧୁତା ଆବଶ୍ୟକ; ଯାହା ବର୍ତ୍ତମାନ ଅଧିକାଂଶ ରାଜନୀତିକ ନେତାଙ୍କଠାରେ ଅଭାବ ଘଟିଛି । ସମ୍ପ୍ରଦାୟ ସମ୍ପ୍ରଦାୟ ମଧ୍ୟରେ ବିଭେଦ ସୃଷ୍ଟି କରି ରାଜନୀତିକୁ ଏହିପରି ବ୍ୟକ୍ତିବିଶେଷ କଳୁଷିତ କରୁଛନ୍ତି । ସେମାନେ ରାଜନୀତିକୁ ଏକ ବ୍ୟବସାୟରେ ପରିଣତ କରିଛନ୍ତି । ଏହି କାରଣ ଯୋଗୁଁ ଆଜି ଗଣତନ୍ତ୍ରରେ ଅବକ୍ଷୟ ଦେଖାଦେଇଛି । ଦୁର୍ନୀତି ଓ ଶୋଷଣର ପୋକ ତାକୁ ଅନ୍ତଃସାରଶୂନ୍ୟ କରିଦେଇଛି । ଯେପର୍ଯ୍ୟନ୍ତ ରାଜନୀତିକ ଦଳଗୁଡ଼ିକ ବ୍ୟକ୍ତିଗତ ସ୍ୱାର୍ଥ ପରିତ୍ୟାଗ କରି ସ୍ୱଚ୍ଛତା ଅବଲମ୍ବନ କରି ନାହାନ୍ତି, ସେପର୍ଯ୍ୟନ୍ତ ଭାରତୀୟ ଗଣତନ୍ତ୍ର କଦାପି ସଫଳ ହୋଇପାରିବ ନାହିଁ ।

ବିଶ୍ୱର ଅନ୍ୟାନ୍ୟ ଗଣତାନ୍ତ୍ରିକ ରାଷ୍ଟ୍ର ତୁଳନାରେ ଭାରତୀୟ ଗଣତନ୍ତ୍ର ଅତ୍ୟନ୍ତ ଅର୍ବାଚୀନ । ସେଥିପାଇଁ ଏଥିରେ ଅନେକ ତ୍ରୁଟି ପରିଲକ୍ଷିତ ହେଉଛି । ସ୍ୱାଧୀନତା ଆନ୍ଦୋଳନ ସମୟରେ ଯେଉଁମାନେ ନେତୃତ୍ୱ ନେଇ ଦେଶ ସ୍ୱାଧୀନ କରିଥିଲେ, ସେମାନଙ୍କର ବ୍ୟକ୍ତିତ୍ୱ, ଚରିତ୍ର ବର୍ତ୍ତମାନ କୌଣସି ରାଜନୀତିକ ନେତାମାନଙ୍କ ଠାରେ ଦେଖାଯାଏ ନାହିଁ । ଅନେକ ଅସାଧୁ ବ୍ୟକ୍ତି ଭାରତୀୟ ରାଜନୀତିରେ ଆସ୍ଥାନ ମାଡ଼ିବସିଥିବାରୁ ଗଣତନ୍ତ୍ର ରୁଗ୍ଣ ହୋଇପଡ଼ିଛି । ଦ୍ୱିତୀୟରେ ଗଣତନ୍ତ୍ରକୁ ରକ୍ଷାକରିବା ପାଇଁ ଯେଉଁ ସଚେତନତା ଆବଶ୍ୟକ, ତାହା ଭାରତୀୟ ଭୋଟରମାନଙ୍କ ଠାରେ ଦେଖାଯାଏ ନାହିଁ । ଦେଶର ଅବସ୍ଥା ଓ ପରିସ୍ଥିତି ସମ୍ପର୍କରେ ବୁଝିବାର ଜ୍ଞାନାଭାବ ଯୋଗୁଁ ଗଣତନ୍ତ୍ର ଦୁର୍ବଳ ହୋଇପଡୁଛି । ଭାରତରେ ଏବେ ମଧ୍ୟ ଅର୍ଦ୍ଧାଧିକ ଭୋଟର ଅଶିକ୍ଷିତ । ଗଣତନ୍ତ୍ରର ମୂଲ୍ୟବୋଧ ସମ୍ପର୍କରେ ସମ୍ପୂର୍ଣ୍ଣ ଅନଭିଜ୍ଞ । ନିଜ ଭୋଟର ପ୍ରକୃତ ମୂଲ୍ୟ ସମ୍ପର୍କରେ ମଧ୍ୟ ସେମାନେ ଅବଗତ ନୁହନ୍ତି । ଏହି ଅଶିକ୍ଷିତ ଓ ଅଜ୍ଞ ଭୋଟର ସହଜରେ ଶସ୍ତା ସ୍ଲୋଗାନ ଓ ପ୍ରଚାରରେ ଭୁଲି ଅଯୋଗ୍ୟ ବ୍ୟକ୍ତିଙ୍କ ସପକ୍ଷରେ ଭୋଟ ଦେଇଥାନ୍ତି । ଧୂର୍ତ୍ତ ଓ କପଟୀ ରାଜନୀତିକ ନେତା ନିଜର ସ୍ୱାର୍ଥ ପାଇଁ ବଡ଼ ବଡ଼ କଥା ମାଧ୍ୟମରେ ସେମାନଙ୍କର ଅଜ୍ଞତାକୁ ଶୋଷଣ କରିଥାନ୍ତି । ଏହିପରି ବ୍ୟକ୍ତିବିଶେଷ ଶାସନକ୍ଷମତା ଦଖଲ କରିବା ପରେ ଦେଶସେବା ଅପେକ୍ଷା ନିଜ ସେବା ଉପରେ ଅଧିକ ଗୁରୁତ୍ୱ ଦିଅନ୍ତି, ଫଳରେ ଗଣତନ୍ତ୍ର ବିପର୍ଯ୍ୟସ୍ତ ହୋଇପଡ଼େ । ଆମ ଗଣତନ୍ତ୍ରର ଅନ୍ୟ ଏକ ଦୁର୍ଭାଗ୍ୟ ହେଉଛି ଦେଶର ବହୁଲୋକ ଏବେ ମଧ୍ୟ ଜାତିଭେଦ, ସାମ୍ପ୍ରଦାୟିକତା ଓ ଆଞ୍ଚଳିକତାବାଦରୁ ମୁକ୍ତ ନୁହନ୍ତି । ରାଜନୀତିକ ନେତା ଏହାର ସୁଯୋଗ ନେଇ ଜାତି, ସମ୍ପ୍ରଦାୟ ଓ ଅଞ୍ଚଳର ଦ୍ୱାହି ଦେଇ ନିର୍ବାଚନ

ବୈତରଣୀ ପାରି ହେବାର ସ୍ୱପ୍ନ ଦେଖନ୍ତି । ଗଣତନ୍ତ୍ରର ବିକାଶ କ୍ଷେତ୍ରରେ ଏହା ଆଜି ଏକ ପ୍ରଧାନ ଅନ୍ତରାୟ ହୋଇ ଠିଆ ହୋଇଛି । ସାମ୍ପ୍ରଦାୟିକ ଭେଦଭାବ ଯୋଗୁଁ ଅନେକ ଅଯୋଗ୍ୟ ବ୍ୟକ୍ତି ନିର୍ବାଚିତ ହେବାର ସୁଯୋଗ ଲାଭ କରନ୍ତି । ନିର୍ବାଚନ ସମୟରେ କଳାଧନ ବା ଅର୍ଥର ବ୍ୟାପକ ବଣ୍ଟନ ନିର୍ବାଚନ ଭାଗ୍ୟ ନିୟନ୍ତ୍ରଣ କରୁଥିବାରୁ ସାଧୁ ସ୍ୱଭାବର ବ୍ୟକ୍ତି ରାଜନୀତିରେ ପ୍ରବେଶ କରିବାକୁ ଇଚ୍ଛାପ୍ରକାଶ କରୁନାହାନ୍ତି । ରାଜନୀତିକ ନେତା ଯେଉଁସବୁ ବ୍ୟବସାୟୀ ଓ ଶିଳ୍ପପତିମାନଙ୍କଠାରୁ ଚାନ୍ଦା ଭାବରେ ବ୍ୟାପକ ଅର୍ଥ ଆଦାୟ କରିଥାନ୍ତି, ନିର୍ବାଚନ ପରେ ସେମାନେ ସେହି ଚାନ୍ଦାଦାତାଙ୍କ ପ୍ରତି ଅଧିକ ନମନୀୟ ଭାବ ପ୍ରକାଶ କରନ୍ତି । ଫଳରେ ବ୍ୟବସାୟୀମାନେ ସାଧାରଣ ବ୍ୟକ୍ତିଙ୍କୁ ବିଭିନ୍ନ ଭାବରେ ଶୋଷଣ କରିଥାନ୍ତି । ଗଣତନ୍ତ୍ରର ସୁସ୍ଥ ବିକାଶ କ୍ଷେତ୍ରରେ ଏହା ବର୍ତ୍ତମାନ ପ୍ରଧାନ ଅନ୍ତରାୟ ହୋଇଛି । ପୁଣି ଆଞ୍ଚଳିକତାକୁ ଭେଦ କରି ନିର୍ବାଚିତ ହେଉଥିବା ପ୍ରତିନିଧିଗଣ ସମଗ୍ର ଦେଶର ଉନ୍ନତି ଦେଖିବା ପରିବର୍ତ୍ତେ ନିଜ ଅଞ୍ଚଳ ପ୍ରତି ଅଧିକ ଗୁରୁତ୍ୱ ଦେଇଥାନ୍ତି । ତଦ୍ଦ୍ୱାରା ସାମୂହିକ ଦେଶର ଉନ୍ନତି ବାଧାପ୍ରାପ୍ତ ହୋଇଥାଏ । ହିଂସା ଆଚରଣ ଗଣତନ୍ତ୍ର ପାଇଁ ଅଧିକ ମାରାତ୍ମକ । ବର୍ତ୍ତମାନ ଦେଶରେ ବାହୁବଳର ପ୍ରାଧାନ୍ୟ ଦେଖାଯାଉଥିବାରୁ ନିର୍ବାଚନ ପରେ ଓ ପୂର୍ବରୁ ବିଭିନ୍ନ ସ୍ଥାନରେ ପେସାଦାର ଗୁଣ୍ଡା ହିଂସାତ୍ମକ ଆଚରଣ କରିଥାନ୍ତି ଓ ସେମାନଙ୍କୁ ରାଜନୀତିକ ନେତାଗଣ ପ୍ରଶ୍ରୟ ଦେଇଥାନ୍ତି । ତେଣୁ ଦେଶରେ ଗୁଣ୍ଡାରାଜ ଚାଲୁଥିବାରୁ ସାଧାରଣ ବ୍ୟକ୍ତିଙ୍କ ଧନଜୀବନ ବିପନ୍ନ ହୋଇପଡୁଛି । ଏହା ଗଣତନ୍ତ୍ର ପାଇଁ ଏକ ଅଶୁଭ ସଙ୍କେତ । ଏତଦ୍‌ବ୍ୟତୀତ ରାଜନୀତିକ ଅସାଧୁତା ଓ ଦଳଗତ କନ୍ଦଳ ଭାରତର ଗଣତନ୍ତ୍ରକୁ ବିଭିନ୍ନ କ୍ଷେତ୍ରରେ କ୍ଷତିଗ୍ରସ୍ତ କରୁଛି । ଏକାଦଶତମ ନିର୍ବାଚନରେ କୌଣସି ରାଜନୀତିକ ଦଳ ସଂଖ୍ୟାଗରିଷ୍ଠତା ଲାଭ କରି ନ ପାରିବାରୁ ଏକକ ବୃହତ୍ ଦଳଭାବେ ଭାରତୀୟ ଜନତା ଦଳ ମନ୍ତ୍ରିମଣ୍ଡଳ ଗଠନ କଲା । ମାତ୍ର ରାଜନୀତିକ ଅସହଯୋଗ ଯୋଗୁଁ ଏହା ୧୩ ଦିନରେ ଭୁଷୁଡ଼ି ପଡ଼ିଲା । ତତ୍ପରେ ତେରଟି ଦଳ ମିଳିତ ଭାବରେ ସରକାର ଗଠନ କଲେ । ଏହା ମଧ୍ୟ ଗୋଟିଏ ବର୍ଷ ପୂର୍ଣ୍ଣ ନ କରିବା ପୂର୍ବରୁ ଭାଙ୍ଗିପଡ଼ିଲା । ଦ୍ୱାଦଶ ଓ ତ୍ରୟୋଦଶ ଓ ଚତୁର୍ଦ୍ଦଶ ଲୋକସଭା ନିର୍ବାଚନରେ ମଧ୍ୟ କୌଣସି ଗୋଟିଏ ଦଳ ଏକକ ସଂଖ୍ୟାଗରିଷ୍ଠତା ଲାଭ କରି ପାରିନାହାଁନ୍ତି । ସମୟେ ସମୟେ ବ୍ୟକ୍ତିଗତ ଇଚ୍ଛା ଓ ସ୍ୱାର୍ଥ ଭାରତୀୟ ରାଜନୀତିକୁ ଓ ଗଣତନ୍ତ୍ରକୁ ରସାତଳଗାମୀ କରିଦେଉଛି । ୧୯୭୫ ମସିହାରେ ଶ୍ରୀମତୀ ଇନ୍ଦିରାଗାନ୍ଧିଙ୍କ ବ୍ୟକ୍ତିଗତ ଇଚ୍ଛାରୁ ହିଁ ଭାରତରେ ଜରୁରୀକାଳୀନ ପରିସ୍ଥିତି ଜାରି ହୋଇଥିଲା । ଏହା ଗଣତନ୍ତ୍ର ପାଇଁ ଏକ ବିରାଟ ଅଭିଶାପ । ଏକ ଗଣତନ୍ତ୍ର ଦେଶରେ ସର୍ବୋଚ୍ଚ କ୍ଷମତାରେ ଅଧିଷ୍ଠିତ ବ୍ୟକ୍ତିବିଶେଷଙ୍କୁ ହତ୍ୟା କରିବା ଘୋର ଲଜ୍ଜାର ବିଷୟ । ଭାରତର ଦୁଇ ଦୁଇଟି ପ୍ରଧାନମନ୍ତ୍ରୀ ଯଥା ଶ୍ରୀମତୀ ଇନ୍ଦିରାଗାନ୍ଧି ଓ ଶ୍ରୀ ରାଜୀବଗାନ୍ଧି ଆତତାୟୀଙ୍କ ଦ୍ୱାରା ନିଧନ ହେବା ପରେ ଜଣେ କିପରି କହିପାରିବ ଯେ ଭାରତରେ ଗଣତନ୍ତ୍ର ତିଷ୍ଠି ରହିଛି ବୋଲି ? ଗଣତନ୍ତ୍ର ପାଇଁ ଯେଉଁ ରାଜନୀତିକ ସାଧୁତା ଓ ସ୍ୱଚ୍ଛତା ଆବଶ୍ୟକ, ତାହା ଭାରତରେ ଅଭାବ ଥିବାରୁ ଗଣତନ୍ତ୍ରର ସ୍ୱଚ୍ଛନ୍ଦ ଗତି ପ୍ରତି ମୁହୂର୍ତ୍ତରେ ବାଧାପ୍ରାପ୍ତ ହେଉଛି ।

ଯେଉଁ ସାଧନା ଓ ସଂଗ୍ରାମଦ୍ୱାରା ଆମର ପୂର୍ବସୂରୀଗଣ ସ୍ୱାଧୀନତାର ମଧୁମୟଫଳ ଆମ ନିକଟରେ ପରିବେଷଣ କରିଛନ୍ତି, ତାହାକୁ ରକ୍ଷା କରିବା ଆମ୍ଭମାନଙ୍କର ସର୍ବପ୍ରଥମ କର୍ତ୍ତବ୍ୟ । ଏ କ୍ଷେତ୍ରରେ ଉଭୟ ଜନସାଧାରଣ ଓ ରାଜନୈତିକ ବ୍ୟକ୍ତିବିଶେଷଙ୍କର ମିଳିତ ଭୂମିକା ରହିଛି । ଗଣତନ୍ତ୍ରର ସଫଳତା ଜନସାଧାରଣଙ୍କ ସହିଷ୍ଣୁତା, ସାଧୁତା, ବିଚାରଶକ୍ତି, ଚରିତ୍ରବତ୍ତା ଓ ସଚେତନତା ଉପରେ ନିର୍ଭର କରେ । ତେଣୁ ଲୋକଚରିତ୍ର ସଂଶୋଧନ ହୋଇପାରିଲେ ଗଣତନ୍ତ୍ର ବହୁପରିମାଣରେ ସଫଳ ହୋଇପାରିବ । ଆର୍ଥନୀତିକ ବୈଷମ୍ୟ ଗଣତନ୍ତ୍ରର ପଥରୋଧ କରିଥାଏ । ଏହି ବୈଷମ୍ୟ ଦୂରୀଭୂତ ହେବା ବର୍ତ୍ତମାନ ସର୍ବାଦୌ ବାଞ୍ଛନୀୟ । ଲୋକମାନଙ୍କ ମନ ମଧ୍ୟରେ ଦେଶପ୍ରେମ ଓ କର୍ତ୍ତବ୍ୟନିଷ୍ଠା ଜାଗ୍ରତ ହେବା ଆବଶ୍ୟକ । ତେଣୁ ଦେଶର ସଚେତନ ନାଗରିକ, ଶିକ୍ଷାନୁଷ୍ଠାନ ଏହି ଦାୟିତ୍ୱ ସ୍ୱତଃପ୍ରବୃତ୍ତ ଭାବରେ ଗ୍ରହଣ କରିବା ଆବଶ୍ୟକ । ନିରକ୍ଷରତା ଗଣତନ୍ତ୍ରକୁ ସ୍ଥାଣୁ କରିଥାଏ । ଅସାଧୁ ରାଜନୀତିକ ବ୍ୟକ୍ତିବିଶେଷଙ୍କ ଶଠତା ସାଧାରଣ ଅଶିକ୍ଷିତ ବ୍ୟକ୍ତି ବୁଝିପାରନ୍ତି ନାହିଁ । ତେଣୁ ଶିକ୍ଷାର ବିକାଶ ସଙ୍ଗେ ସଙ୍ଗେ ଜନସାଧାରଣଙ୍କ ମଧ୍ୟରେ ନବଚେତନାର ଉଦ୍ରେକ କରାଯାଇ ପାରିଲେ ଏହି ସମସ୍ୟାର ସମାଧାନ ହୋଇପାରିବ । ରାଜନୀତିକ ନେତାଗଣ ନୀତିବାନ୍ ଓ ସାଧୁ ପ୍ରକୃତିର ହୋଇ ନ ପାରିଲେ ଗଣତନ୍ତ୍ରର ଭ୍ରଷ୍ଟାଚାର ଏବଂ ଦୁର୍ନୀତିର ଚେର ତଳକୁ ତଳ ମାଡ଼ି ଚାଲିଥାଏ । ତେଣୁ ନିର୍ବାଚନ ସମୟରେ ଏହିଭଳି ସାଧୁ ତଥା ସଚ୍ଚୋଟ ବ୍ୟକ୍ତିଙ୍କୁ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା ନିମିତ୍ତ ଟିକେଟ୍ ପ୍ରଦାନ କରାଯିବା ଆବଶ୍ୟକ । ନିର୍ବାଚନ ପରେ ସାଧାରଣ ଜନତାଙ୍କ ସହିତ ଲୋକପ୍ରତିନିଧିଙ୍କର କୌଣସି ସମ୍ପର୍କ ରହୁ ନାହିଁ । ଏହାଦ୍ୱାରା ଗଣତନ୍ତ୍ରର ପ୍ରକୃତ ଉଦ୍ଦେଶ୍ୟ ସାଧିତ ହୋଇପାରୁ ନାହିଁ । ପ୍ରତ୍ୟେକ ନେତା ତାଙ୍କର ଓ ସେମାନଙ୍କର ଦଳର ନୀତି, ଆଦର୍ଶ ତଥା ସରକାରଙ୍କ ବିଭିନ୍ନ କାର୍ଯ୍ୟପଦ୍ଧତି ସମ୍ବନ୍ଧରେ ଜନସାଧାରଣଙ୍କୁ ଅବଗତ କରାଇବା ଉଚିତ । ଗଣତନ୍ତ୍ରର ସୁଷ୍ଠୁ ବିକାଶପାଇଁ ଉଭୟ ଶାସକ ଓ ବିରୋଧୀଦଳଙ୍କ ମଧ୍ୟରେ ସଦ୍ଭାବ ଓ ସହଯୋଗମୂଳକ ମନୋବୃତ୍ତି ରହିବା ଆବଶ୍ୟକ । ସେମାନଙ୍କର ପ୍ରଥମ ଲକ୍ଷ୍ୟ ଦେଶ ଓ ଜନସାଧାରଣଙ୍କ ମଙ୍ଗଳ କାମନା । ପରସ୍ପର ପ୍ରତି ସମାଲୋଚନାରେ ପ୍ରବୃତ୍ତ ନ ହୋଇ ରାଜନୈତିକ ନେତାଗଣ ଏକ ସହଯୋଗ ମୂଳକ ବାତାବରଣ ସୃଷ୍ଟି କରିପାରିଲେ ଗଣତନ୍ତ୍ରର ଅଶେଷ ମଙ୍ଗଳ ହେବ । ପ୍ରତ୍ୟେକ ସାମ୍ପ୍ରଦାୟିକ ଓ ଆଞ୍ଚଳିକ ମନୋଭାବଠାରୁ ଊର୍ଦ୍ଧ୍ୱରେ ରହିବା ଆବଶ୍ୟକ । ସେମାନେ ପ୍ରଥମେ ଭାରତୀୟ, ପରେ ଅନ୍ୟ ଅଞ୍ଚଳର । ସମଗ୍ର ଭାରତ ପାଇଁ କାର୍ଯ୍ୟ କରିବା ସେମାନଙ୍କର ପ୍ରାଥମିକ କାର୍ଯ୍ୟ ହେବା ଉଚିତ । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ପ୍ରତ୍ୟେକ ବ୍ୟକ୍ତିଙ୍କୁ ଜାତୀୟ ସ୍ରୋତରେ ସାମିଲ କରିପାରିଲେ ଗଣତନ୍ତ୍ର ସୁରକ୍ଷିତ ରହିପାରିବ । ସମ୍ପ୍ରତି ଭାରତର ଜନସାଧାରଣଙ୍କ ମଧ୍ୟରେ ଜାତୀୟ ଐକ୍ୟ ପ୍ରତିଷ୍ଠା ହେବା ଆବଶ୍ୟକ । ନଚେତ୍ ବୈଦେଶିକ ଶତ୍ରୁ ଓ ସନ୍ତ୍ରାସବାଦୀ ଗଣତନ୍ତ୍ରକୁ ବିପନ୍ନ କରିବା ନିମିତ୍ତ ଅବାଧ ସୁଯୋଗ ଲାଭ କରିବେ । ଆଇନ୍ କ୍ଷେତ୍ରରେ ମଧ୍ୟ କେତେକ ସଂସ୍କାର ଆଣିବାର ପ୍ରୟୋଜନ ରହିଛି । ଉପରୋକ୍ତ କେତୋଟି ବିଷୟ ପ୍ରତି ଧ୍ୟାନ ନିବେଶ କରିପାରିଲେ, ଭାରତର ଗଣତନ୍ତ୍ର ନିଶ୍ଚିତ ସୁଦୃଢ଼ ହୋଇପାରିବ ।

ସ୍ୱାଧୀନ ଭାରତର ସନ୍ତାନ ଭାବରେ ଆଜି ଆମେ ସମସ୍ତେ ଗର୍ବିତ । ଏହି ସ୍ୱାଧୀନତାକୁ ଜୀବନ ଦେଇ ରକ୍ଷା କରିବା ମଧ୍ୟ ଆମ ସମସ୍ତଙ୍କର ପରମ କର୍ତ୍ତବ୍ୟ । କେତେ ରକ୍ତପାତ ଓ ଆତ୍ମବଳି ବିନିମୟରେ ଯେଉଁ ସ୍ୱାଧୀନତା ଲାଭ ହୋଇଛି ତାହା କଦାପି ଅଚିରେ ବିଲୁପ୍ତ ହୋଇପାରିବ ନାହିଁ । ସମସ୍ତ ପ୍ରତିକୂଳ ବାତାବରଣ ସତ୍ତ୍ୱେ ଏବେବି ଭାରତର ଗଣତନ୍ତ୍ର ବିଶ୍ୱରେ ସମ୍ମାନ ଲାଭ କରିଛି । ଭାରତର ମହନୀୟ ପରମ୍ପରା ଓ ଆଦର୍ଶ ଉପରେ ଏହି ଗଣତନ୍ତ୍ର ପ୍ରତିଷ୍ଠିତ ହୋଇଥିବାରୁ, ଏବେ ମଧ୍ୟ ଏହା ବିଶ୍ୱକୁ ଦିଗ୍‌ଦର୍ଶନ ଦେବାକୁ ସମର୍ଥ । ବ୍ୟକ୍ତି ସ୍ୱାର୍ଥ ଓ ଦଳୀୟ ସ୍ୱାର୍ଥର ଊର୍ଦ୍ଧ୍ୱରେ ଗଣତନ୍ତ୍ର । ଏହା କୌଣସି ଗୋଟିଏ ବ୍ୟକ୍ତି ବା ଦଳର ପୈତୃକ ସମ୍ପତ୍ତି ନୁହେଁ । ୧୦୮ କୋଟି ଭାରତୀୟଙ୍କ ଆଶା ଏବଂ ସ୍ୱପ୍ନର ଫଳ । ତେଣୁ ସମ୍ମିଳିତ ଭାବରେ ଉଦ୍ୟମ ଓ କାର୍ଯ୍ୟ ନ କଲେ ଆମର ଗଣତନ୍ତ୍ର ବିପଦାପନ୍ନ ହୋଇପଡ଼ିବ ଓ ଏହାର ଭବିଷ୍ୟତ ଅତଳ ଅନ୍ଧକାରରେ ନିମଜ୍ଜିତ ହୋଇପଡ଼ିବ । ତ୍ୟାଗ, ତିତିକ୍ଷା ଓ ଆତ୍ମୋତ୍ସର୍ଗ ଦ୍ୱାରା ଗଣତନ୍ତ୍ରକୁ ବଞ୍ଚାଇ ରଖିବାକୁ ସମସ୍ତ ଭାରତୀୟ ଶପଥ ନେବା ଉଚିତ୍ ।



## ଜାତୀୟ ସଂହତି

**(ଉପକ୍ରମ, ପ୍ରାଚୀନ ଓ ମଧ୍ୟଯୁଗୀୟ ଭାରତରେ ଜାତୀୟ ସଂହତି, ସାମ୍ପ୍ରତିକ ପରିପ୍ରେକ୍ଷୀରେ ଜାତୀୟ ସଂହତିର ଆବଶ୍ୟକତା, ଜାତୀୟ ସଂହତି ବାଧାପ୍ରାପ୍ତ ହେବାର କାରଣ (ରାଜନୀତିକ ହଟଚମଟ, ସଂକୀର୍ଣ୍ଣ ଆଞ୍ଚଳିକ ମନୋଭାବ, ଭାଷା ଓ ଧାର୍ମିକ ସମସ୍ୟା, ସାମ୍ପ୍ରଦାୟିକତା, ଜାତୀୟତାର ଅଭାବ), ଜାତୀୟ ସଂହତି ବୃଦ୍ଧି ନିମିତ୍ତ କେତେକ ଉପାୟ (ଶିକ୍ଷାର ବିକାଶ, ସଂହତି ଓ ଐକ୍ୟପ୍ରତିଷ୍ଠା, ଜାତିଗତ ଭେଦଭାବର ବିଲୋପ, ପ୍ରଶାସନିକ ସ୍ଥିରତା, ଆର୍ଥିକ ବୈଷମ୍ୟର ଦୂରୀକରଣ ଓ ସାମାଜିକ ନ୍ୟାୟ ପ୍ରତିଷ୍ଠା, ଉପସଂହାର)**

ଭାରତ ଏପରି ଏକ ଦେଶ, ଯେଉଁଠାରେ ବିଭିନ୍ନ ଜାତି, ଧର୍ମ, ଭାଷା ଓ ସଂସ୍କୃତିର ବ୍ୟକ୍ତି ବସବାସ କରିଥାନ୍ତି । ବିଭିନ୍ନ କ୍ଷେତ୍ରରେ ସେମାନଙ୍କ ମଧ୍ୟରେ ବିଷମତା ପରିଲକ୍ଷିତ ହେବା ସ୍ୱାଭାବିକ । ବିଶ୍ୱର ଦ୍ୱିତୀୟ ଜନବହୁଳ ରାଷ୍ଟ୍ର ଯୋଗୁଁ ଏହାର ସମସ୍ୟା ମଧ୍ୟ ବହୁବିଧ । ଭାରତର ସମସ୍ତ ଜନସାଧାରଣଙ୍କୁ ଗୋଟିଏ ଜାତୀୟ ସ୍ରୋତରେ ସାମିଲ କରିବା ଏହି ଦୃଷ୍ଟିରୁ କଠିନ ବ୍ୟାପାର । ମାତ୍ର ଦେଶର ଜନସାଧାରଣଙ୍କ ମଧ୍ୟରେ ସଂହତି ସ୍ଥାପିତ ହୋଇ ନ ପାରିଲେ, ଏହାର ଅଖଣ୍ଡତା ଓ ସାର୍ବଭୌମତ୍ୱ ସୁରକ୍ଷିତ ରହିପାରିବ ନାହିଁ । ଏହି ଦୃଷ୍ଟିରୁ ଭାରତରେ ଜାତୀୟ ସଂହତିର ଆବଶ୍ୟକତା ରହିଛି । ଗୋଟିଏ ଦେଶର ସମସ୍ତ ଜନସାଧାରଣଙ୍କୁ ଏକ ଭ୍ରାତୃତ୍ୱର ବନ୍ଧନରେ ବାନ୍ଧି ରଖିବା ହେଉଛି ଜାତୀୟ ସଂହତି । ଏଥିପାଇଁ ଭାବଗତ ସଂହତି ପ୍ରଥମେ ସ୍ଥାପିତ ହେବାର ପ୍ରୟୋଜନ ରହିଛି । ସମସ୍ତ ଭାରତୀୟ ପ୍ରଥମେ ନିଜକୁ ଭାରତର ସନ୍ତାନ ବୋଲି ଗର୍ବ କରିପାରିଲେ ଜାତୀୟ

ସଂହତି ପ୍ରତିଷ୍ଠିତ ହୋଇପାରିବ । ସଂକୀର୍ଣ୍ଣ ଚିନ୍ତାଧାରା ସଂହତିର ପରିପନ୍ଥୀ । ଜାତୀୟ ସଂହତି ଏକ ମନସ୍ତାତ୍ତ୍ୱିକ ଧାରା, ଯାହା ସମଗ୍ର ମଣିଷ ମନରେ ଏକତାବଦ୍ଧ ହେବାପାଇଁ ପ୍ରେରଣା ଦେଇଥାଏ । ଜାତି ପ୍ରତି ସମ୍ମାନବୋଧ ଓ ବ୍ୟକ୍ତି ପ୍ରତି ଭ୍ରାତୃତ୍ୱବୋଧ ଜାଗ୍ରତ ହେଲେ ଦେଶରେ ଐକ୍ୟ ପ୍ରତିଷ୍ଠା ସମ୍ଭବ ହୋଇଥାଏ । ଗୋଟିଏ ଦେଶ ମଧ୍ୟରେ ବସବାସ କରୁଥିବା ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ପ୍ରଗାଢ଼ ମିଳନକୁ ଜାତୀୟ ସଂହତି କୁହାଯାଇଥାଏ । ସଂହତି ଦେଶକୁ ସମୃଦ୍ଧ କରେ ମାତ୍ର ବିଭେଦ କରେ ଦେଶକୁ ଖଣ୍ଡବିଖଣ୍ଡିତ । ଭାରତର ସାଂସ୍କୃତିକ ପରମ୍ପରା ଜାତୀୟ ଐକ୍ୟକୁ ନେଇ ପ୍ରତିଷ୍ଠିତ । ଦେଶ ଏବଂ ଜାତିର ମଙ୍ଗଳ ନିମିତ୍ତ ଭାରତୀୟ ଭାବରେ ଜାତୀୟ ସଂହତି ପ୍ରତିଷ୍ଠା କରିବା ଆମର ପ୍ରଥମ କର୍ତ୍ତବ୍ୟ ।

ଯେଉଁ ପାଶ୍ଚାତ୍ୟ ଚିନ୍ତାଶୀଳ ବ୍ୟକ୍ତି ଭାରତର ପ୍ରକୃତ ମୂଲ୍ୟ ଉପଲବ୍ଧି କରିପାରି ନାହାନ୍ତି, ସେମାନେ ଅତୀତରେ କେବେ ଭାରତରେ ଜାତୀୟ ସଂହତି ଥିଲା ବୋଲି ବିଶ୍ୱାସ କରନ୍ତି ନାହିଁ । ଏହା ସେମାନଙ୍କ ସଂକୀର୍ଣ୍ଣ ଚିନ୍ତାଧାରାର ପରିଚାୟକ । ସେଥିପାଇଁ ବୋଧହୁଏ Sir John Strachey କହିଛନ୍ତି– This is the first and the most essential thing to learn about India that there is not and never was an India or even any country of India possessing according to European ideas, any sort of unity physical, political, social or religious. No Indian nation, no people of India of which we hear so much. ମାତ୍ର ଯଦି ଭାରତର ଧର୍ମ, ପୁରାଣ, ଦର୍ଶନ, ଇତିହାସ, କିମ୍ବଦନ୍ତୀ, କଳା, ସ୍ଥାପତ୍ୟ, ଭାସ୍କର୍ଯ୍ୟ ଓ ସାହିତ୍ୟକୁ ଯଥାର୍ଥ ଅନୁଶୀଳନ କରାଯାଏ, ଅତୀତରେ ବିଭିନ୍ନ ବୈଷମ୍ୟ ସତ୍ତ୍ୱେ ଭାରତରେ ଯେ ଜାତୀୟ ସଂହତି ପ୍ରତିଷ୍ଠା ହୋଇପାରିଥିଲା, ତା'ର ଭୂରି ଭୂରି ନିଦର୍ଶନ ମିଳିବ । ଆର୍ଯ୍ୟଋଷି ଉଦାତ୍ତ କଣ୍ଠରେ ଘୋଷଣା କରିଥିଲେ–"ସର୍ବେ ଭବନ୍ତୁ ସୁଖୀନଃ, ସର୍ବେ ସନ୍ତୁ ନିରାମୟାଃ । ସର୍ବେ ଭଦ୍ରାଣି ପଶ୍ୟନ୍ତୁ, ମା କଶ୍ଚିତ୍ ଦୁଃଖ ଭାଗ ଭବେତ୍ ।" ଏକ ବିଶ୍ୱତାରକ ଦୃଷ୍ଟି ଟେକି ଆର୍ଯ୍ୟଋଷି ସମଗ୍ର ମାନବସମାଜର କଲ୍ୟାଣ ପାଇଁ ପ୍ରାର୍ଥନା କରିଥିଲେ । ରାମାୟଣ, ମହାଭାରତ, ଭାଗବତ ପରି ପୁରାଣ ଗ୍ରନ୍ଥଗୁଡ଼ିକରେ ଜାତି ନୁହେଁ ମଣିଷ ହିଁ ହୋଇଛନ୍ତି ଅତୀବ ପ୍ରିୟ । ସଂକୀର୍ଣ୍ଣତାର ସ୍ଥାନ ଆଦୌ ସେଠାରେ ନାହିଁ । ହିନ୍ଦୁ ରାଜତ୍ୱ ସମୟରେ ଧର୍ମ ଏବଂ ଭାଷା ଜାତୀୟ ଓ ଭାବଗତ ସଂହତି ସ୍ଥାପନରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା । ଧର୍ମ ହିଁ ଥିଲା ଏକତାର ସମୃଦ୍ଧିଶାଳୀ ମାଧ୍ୟମ । ଧର୍ମ ଶିଖାଇଥିଲା ମଣିଷକୁ ମଣିଷ ପରି ଭଲ ପାଇବାକୁ । ଗଙ୍ଗା, ଯମୁନା, ସରସ୍ୱତୀ, କୃଷ୍ଣା, କାବେରୀ ଆଦି ନଦୀ ସମଗ୍ର ଭାରତୀୟଙ୍କ ଦୃଷ୍ଟିରେ ପରମ ପବିତ୍ରା ଓ ଶୁଦ୍ଧପୂତା । ପ୍ରାଚୀନ ଭାରତରେ ସଂସ୍କୃତ ଏବଂ ପାଲି ଭାଷା ଜାତୀୟ ସଂହତି ପ୍ରତିଷ୍ଠା କରିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା । ବୈଦିକ ଋଷି ବଶିଷ୍ଠ ଜଣେ ବାରାଙ୍ଗନାର ପୁତ୍ର । ବାଲ୍ମୀକି ଥିଲେ ଏକ ଅଚ୍ଛୁଵ ଜାତିର ସନ୍ତାନ । କବୀର ଜଣେ ମୁସଲମାନ ତନ୍ତୀ ଘରର ପିଲା । ତଥାପି ଭାରତୀୟଙ୍କ ଦୃଷ୍ଟିରେ ସେମାନେ ଅତୀବ ମହାନ ଓ ପବିତ୍ର । ଶଙ୍କରାଚାର୍ଯ୍ୟ ଶୃଙ୍ଗେରୀ, ପୁରୀ, ଦ୍ୱାରିକା ଓ ବଦ୍ରିନାଥ–ଭାରତର ଚାରିଦିଗରେ ମଠ ସ୍ଥାପନ କରି ଗୋଟିଏ ବନ୍ଧନରେ ସମଗ୍ର ଭାରତୀୟଙ୍କୁ ବାନ୍ଧିବାର ପ୍ରୟାସ କରିଥିଲେ । ତେଣୁ ପ୍ରାଚୀନ ଭାରତରେ ଜାତିଗତ ସମସ୍ୟା କଦାପି ମୁଖ୍ୟ ନ ଥିଲା । ମଧ୍ୟଯୁଗୀୟ ଭାରତରେ ଅନ୍ୟ

ଏକ ନୂତନ ଧର୍ମ, ବିଶ୍ୱାସ ପରମ୍ପରା ସୃଷ୍ଟି ହୋଇଥିଲା ମୁସଲମାନମାନଙ୍କ ଆବିର୍ଭାବ ଦ୍ୱାରା । ଏହି ଆବିର୍ଭାବ ଦ୍ୱାରା କିଛି ସମୟ ପାଇଁ ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ପ୍ରଥାଗତ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଛି । ମାତ୍ର ଉଦାର ହୃଦୟ ସମ୍ପନ୍ନ ସମ୍ରାଟ ଆକବର ଦିନ୍-ଇ-ଇଲାହୀ ଧର୍ମ ପ୍ରତିଷ୍ଠା କରି ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ସମନ୍ୱୟ ସ୍ଥାପନର ଉଦ୍ୟମ କରିଥିଲେ । ଏହି ସମୟରେ ଭାରତରେ ଯେଉଁ ଭକ୍ତି ଆନ୍ଦୋଳନ ସଙ୍ଗଠିତ ହୋଇଥିଲା, ତଦ୍ୱାରା ଅନ୍ୟ ଏକ ସମନ୍ୱୟର ଧାରା ସୃଷ୍ଟି ହେଲା । ସେଥିପାଇଁ ନାନକ, କବିର, ଶ୍ରୀଚୈତନ୍ୟ, ତୁକାରାମ ଆଦି କୌଣସି ନିର୍ଦ୍ଦିଷ୍ଟ ସମ୍ପ୍ରଦାୟର ବୋଲି ବିବେଚିତ ନ ହୋଇ ସମସ୍ତ ଭାରତୀୟଙ୍କର ପୂଜ୍ୟ ଭାବରେ ଗୃହୀତ ହେଲେ । ତେଣୁ ପ୍ରାଚୀନ ଓ ମଧ୍ୟଯୁଗୀୟ ଭାରତରେ ଜାତୀୟ ସଂହତିର ଅଭାବ ଥିଲା ବୋଲି ଯେଉଁମାନେ ଯୁକ୍ତି କରନ୍ତି, ପ୍ରକୃତରେ ସେମାନେ ଭୁଲ୍ ହିଁ କହିଥାନ୍ତି ।

ଭାରତରେ ଯଥାର୍ଥରେ ଜାତୀୟ ସଂହତି କିଛି ପରିମାଣରେ ବିପନ୍ନ ହୋଇଛି ଇଂରେଜମାନଙ୍କ ରାଜତ୍ୱ ସମୟରେ । ସେମାନଙ୍କର ବିଭେଦ ନୀତି ଯୋଗୁଁ ମୁସଲମାନ ଓ ହିନ୍ଦୁ ଦୁଇଟି ଦଳଭୁକ୍ତ ହୋଇଛନ୍ତି ଏବଂ ସ୍ୱାଧୀନତା ପୂର୍ବରୁ ଭାରତ ଦୁଇ ଭାଗରେ ବିଭକ୍ତ ହୋଇ ପାକିସ୍ତାନ ଓ ହିନ୍ଦୁସ୍ତାନରେ ପରିଣତ ହୋଇଛି । ସ୍ୱାଧୀନତା ପରବର୍ତ୍ତୀ କାଳରେ ବିଭିନ୍ନ କାରଣ ପାଇଁ ଜାତୀୟ ସଂହତି ପ୍ରତିଷ୍ଠା ନିମିତ୍ତ ଜନସାଧାରଣଙ୍କ ମଧ୍ୟରେ ଆନ୍ତରିକ ଭାବ ସୃଷ୍ଟି ହୋଇ ପାରି ନାହିଁ । ଆଜି ଭାରତ ବିଭିନ୍ନ କ୍ଷେତ୍ରରେ ପ୍ରତିକୂଳ ଅବସ୍ଥା ମଧ୍ୟଦେଇ ଗତି କରୁଥିବା ସମୟରେ ଜାତୀୟ ସଂହତିର ଜରୁରୀ ଆବଶ୍ୟକତା ରହିଛି । ଅନେକ ବିଚ୍ଛିନ୍ନବାଦୀ ଶକ୍ତି ଭାରତକୁ ଖଣ୍ଡବିଖଣ୍ଡିତ କରିବାକୁ ଚାହୁଁଛନ୍ତି । କେତେକ ବ୍ୟକ୍ତି ନିଜର ହୀନ ସ୍ୱାର୍ଥ ସାଧନ ପାଇଁ ଦେଶର ଅଖଣ୍ଡତାକୁ ଖଣ୍ଡ ଖଣ୍ଡ କରିବାକୁ ଚେଷ୍ଟା କରୁଛନ୍ତି । ଭାରତର ବନ୍ଧୁତାର ବିଶ୍ୱାସଘାତକତା କରି ୧୯୬୨ ମସିହାରେ ଚୀନ ଭାରତ ଉପରେ ଆକ୍ରମଣ କରିଥିଲା । ୧୯୬୫ ଓ ୧୯୭୧ ରେ ପାକିସ୍ତାନର ଦୁଇ ଦୁଇଥର ଆକ୍ରମଣ ଆମର ଜାତୀୟ ସଂହତି ପ୍ରତି ପ୍ରଶ୍ନବାଚୀ ସୃଷ୍ଟି କରିଛି । ଏବେ ମଧ୍ୟ ଭାରତର ଦୁଇ ସୀମାନ୍ତ ଦେଶ ଚୀନ ଏବଂ ପାକିସ୍ତାନ ଭାରତ ପ୍ରତି ବୈମାତୃକ ଭାବ ପ୍ରଦର୍ଶନ କରୁଛନ୍ତି । ତେଣୁ ଯେ କୌଣସି ମୁହୂର୍ତ୍ତରେ ଏହି ଦୁଇ ଦେଶଠାରୁ ଭାରତ ପ୍ରତି ବିପଦ ଦେଖାଦେଇ ପାରେ । ପାକିସ୍ଥାନ ଭାରତର ସଂହତିକୁ ନଷ୍ଟ କରିବା ପାଇଁ ସନ୍ତ୍ରାସବାଦୀ କାର୍ଯ୍ୟ କଳାପ ଜାରି ରଖିଛି । କାଶ୍ମୀର, ପଞ୍ଜାବ ଓ ଅନ୍ୟାନ୍ୟ ସ୍ଥାନରେ ଯେଉଁ ଆତଙ୍କବାଦର ସ୍ୱର ଉତ୍ତୋଳିତ ହେଉଛି, ସେଥିରେ ପାକିସ୍ଥାନର ପ୍ରଚ୍ଛନ୍ନ ହାତ ରହିଛି । ଏତଦ୍‌ବ୍ୟତୀତ ଅନ୍ୟ କେତେକ ଦେଶ ମଧ୍ୟ ଭାରତର ପାରମାଣବିକ ପରୀକ୍ଷା ପାଇଁ ଅସନ୍ତୋଷ ପ୍ରକାଶ କରିଛନ୍ତି । ଏପରି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ଭାରତରେ ଜାତୀୟ ସଂହତି ପ୍ରତିଷ୍ଠିତ ହୋଇ ନ ପାରିଲେ ଆମର ଆର୍ଥନୀତିକ ଓ ସାମାଜିକ ପ୍ରଗତି ବାଧାପ୍ରାପ୍ତ ହେବ । ଏହାର ଫାଇଦା ଉଠାଇବା ନିମିତ୍ତ ପଡ଼ୋଶୀ ଦେଶଗୁଡ଼ିକ ବ୍ୟଗ୍ର ହୋଇପଡ଼ିବେ ।

ଜାତୀୟ ସଂହତି ବାଧାପ୍ରାପ୍ତ ହେବାର ବିଭିନ୍ନ କାରଣ ରହିଛି । ତନ୍ମଧ୍ୟରୁ ଅଳ୍ପ କେତୋଟି ମୁଖ୍ୟ କାରଣ ଏଠାରେ ଆଲୋଚନା କରାଯାଇପାରେ । ଭାରତରେ ରାଜନୀତିକ ସ୍ଥାଣୁତା

ଜାତୀୟ ସଂହତି ବାଧାପ୍ରାପ୍ତ ହେବାର ପ୍ରଥମ କାରଣ । ବିଗତ ତିନୋଟି ନିର୍ବାଚନରେ ଏହା ପ୍ରମାଣିତ ହୋଇଯାଇଛି । ଏକାଦଶ, ଦ୍ୱାଦଶ ଏବଂ ତ୍ରୟୋଦଶ ଲୋକସଭା ନିର୍ବାଚନରେ କୌଣସି ଦଳ ସଂଖ୍ୟାଗରିଷ୍ଠତା ଲାଭ କରି ନ ପାରିବାରୁ ପ୍ରଥମେ ଭାରତୀୟ ଜନତା ଦଳ ଓ ପରେ ୧୩ ଟି ଦଳ ମିଳିତ ଭାବେ ସରକାର ଗଠନ କରିଥିଲେ ହେଁ, ତାହା ସ୍ଥାୟୀ ହୋଇ ପାରି ନ ଥିଲା । ଦ୍ୱାଦଶ ଲୋକସଭା ନିର୍ବାଚନରେ ଭାରତୀୟ ଜନତା ଦଳ ସଂଖ୍ୟାଗରିଷ୍ଠତା ଦଳ ନ ହୋଇଥିଲେ ହେଁ, ଏକକ ସଂଖ୍ୟା ଗରିଷ୍ଠ ଦଳ ଭାବେ ସହଯୋଗୀ ଦଳଙ୍କ ସହିତ ସମ୍ମିଳିତ ହୋଇ ସରକାର ଗଠନ କଲା । ମାତ୍ର ଦଳକନ୍ଦଳ, ରାଜନୀତିକ ବ୍ୟକ୍ତିବିଶେଷଙ୍କର ସ୍ୱାର୍ଥପର ମନୋଭାବ ଏବଂ ପରସ୍ପର ପ୍ରତି କାଦୁଅ ଫୋପଡ଼ା ନୀତି ଯୋଗୁଁ ଭାରତର ରାଜନୀତିକ ବାତାବରଣ ପ୍ରତିମୁହୂର୍ତ୍ତରେ ସରଗରମ ହୋଇଉଠୁଥିଲା । ବର୍ତ୍ତମାନର ସରକାର ମଧ୍ୟ ସଂଖ୍ୟା ଗରିଷ୍ଠ ନୁହେଁ । ବିଭିନ୍ନ ଦଳକୁ ନେଇ ସରକାର ଗଠିତ । ସ୍ଥିର ସରକାର ନ ଥିବାରୁ ବ୍ୟବସାୟୀଗୋଷ୍ଠୀ, ସନ୍ତ୍ରାସବାଦୀ ଓ ବହିଃଶତ୍ରୁ ବହୁପରିମାଣରେ ନିଜର ଫାଇଦା ଉଠାଇବାକୁ ବ୍ୟଗ୍ର ହୋଇପଡୁଛନ୍ତି । ଏହାଦ୍ୱାରା ସାଧାରଣ ଖଟିଖିଆ ଓ ଶ୍ରମଜୀବୀ ବ୍ୟକ୍ତି ନିଜକୁ ଅବହେଳିତ ମନେକରି ଜାତୀୟ ସ୍ରୋତରେ ସାମିଲ ହୋଇ ପାରୁନାହାନ୍ତି । ତେଣୁ ଜାତୀୟ ସଂହତି ବାଧାପ୍ରାପ୍ତ ହେଉଛି । ସଂକୀର୍ଣ୍ଣ ଆଞ୍ଚଳିକ ମନୋଭାବ ଜାତୀୟ ସଂହତିର ପରିପନ୍ଥୀ । ରାଜନୀତିକ ନେତାଗଣ ଅଞ୍ଚଳକୁ ଭିତ୍ତି କରି ଦଳ ଗଠନ କରିଥିବାରୁ ସମଗ୍ର ଦେଶର ସ୍ୱାର୍ଥ ଅପେକ୍ଷା ନିଜ ଅଞ୍ଚଳର ସ୍ୱାର୍ଥ ଉପରେ ଅଧିକ ଗୁରୁତ୍ୱ ଦେଉଛନ୍ତି । ଆନ୍ଧ୍ରପ୍ରଦେଶ, ତାମିଲନାଡୁ, ଉତ୍ତରପ୍ରଦେଶ, ଆସାମ, ମହାରାଷ୍ଟ୍ର, ହରିଆନା, ତ୍ରିପୁରା, ଓଡ଼ିଶା ଆଦିରେ ଆଞ୍ଚଳିକ ଦଳମାନ ମୁଣ୍ଡଟେକି ଉଠିଛି । ଆଞ୍ଚଳିକ ମୋହଯୋଗୁଁ ଦଳ ଦଳ ମଧ୍ୟରେ କନ୍ଦଳ ସୃଷ୍ଟି ହେଉଛି । ଆଞ୍ଚଳିକତାର ପ୍ରଚାର ଯୋଗୁଁ ଦେଶର ଐକ୍ୟ ବାଧାପ୍ରାପ୍ତ ହେଉଛି । ଭାଷା ଓ ଧର୍ମକୁ କେନ୍ଦ୍ରକରି ଭାରତରେ ଯେଉଁ ଦଙ୍ଗା ସୃଷ୍ଟି ହେଉଛି, ତଦ୍ୱାରା ଜାତୀୟ ସଂହତି ନଷ୍ଟ ହେଉଛି । ଏହି ଭାଷାକୁ କେନ୍ଦ୍ରକରି ପଞ୍ଜାବ ଓ ହରିଆନା ଦୁଇଟି ପ୍ରଦେଶ ଭାବେ ଗଠିତ ହେଲା । ହିନ୍ଦୀ ଏବଂ ଇଂରାଜୀକୁ କେନ୍ଦ୍ରକରି ଉତ୍ତରଭାରତ ଓ ଦକ୍ଷିଣଭାରତ ମଧ୍ୟରେ ସଂଘର୍ଷ ସୃଷ୍ଟି ହେଉଛି । ହିନ୍ଦୀ ଭାଷାକୁ ତାଙ୍କ ଉପରେ ଲଦିଦେଲେ ସେମାନେ ଭାରତର ଜାତୀୟ ସ୍ରୋତରୁ ବିଚ୍ଛିନ୍ନ ହୋଇ ସ୍ୱତନ୍ତ୍ର ରାଷ୍ଟ୍ର ଗଠନ କରିବେ ବୋଲି ଦକ୍ଷିଣଭାରତର ଲୋକ ଧମକ ଦେଲେ । ଭାଷାକୁ କେନ୍ଦ୍ରକରି ସଂଘର୍ଷ ଆରମ୍ଭ ହେଲେ ଜାତୀୟ ସଂହତି ବିପନ୍ନ ହୋଇପଡ଼ିବ । ଧର୍ମକୁ ମଧ୍ୟ କେନ୍ଦ୍ରକରି ବହୁ ସମୟରେ ଧର୍ମଯୁଦ୍ଧ ଆରମ୍ଭ ହୋଇଯାଉଛି । ପଞ୍ଜାବର ଅକାଳୀଦଳ ପଞ୍ଜାବୀଙ୍କ ନିମିତ୍ତ ସ୍ୱତନ୍ତ୍ର ଧର୍ମ ତଥା ସମ୍ବିଧାନ ଦାବି କରୁଛନ୍ତି । ଅନେକ ସମୟରେ ହିନ୍ଦୁ, ଶିଖ, ମୁସଲମାନ ଓ ଖ୍ରୀଷ୍ଟିଆନ ଧର୍ମାବଲମ୍ବୀଙ୍କ ମଧ୍ୟରେ ଏହି ଧର୍ମକୁ କେନ୍ଦ୍ର କରି ସଂଘର୍ଷ ଦେଖାଦେଉଛି । ପ୍ରକୃତରେ ଧର୍ମର ପ୍ରକୃତ ଅର୍ଥ ସମ୍ପର୍କରେ ଅଜ୍ଞ ଥିବାରୁ ଏପରି ପରିସ୍ଥିତି ସୃଷ୍ଟି ହେଉଛି । ମାତ୍ର ଏହାଦ୍ୱାରା ଦେଶ ଯେ କିପରି ବିପଦର ସମ୍ମୁଖୀନ ହେଉଛି, ତାହା ସେମାନେ ଅନୁଭବ କରିପାରୁ ନାହାନ୍ତି । ଏହି କାରଣରୁ ସାମ୍ପ୍ରଦାୟିକ ଗଣ୍ଡଗୋଳ ଘଟୁଛି । ସାମ୍ପ୍ରଦାୟିକ ମନୋଭାବ ଜାତୀୟ ପ୍ରଗତି ଓ ଐକ୍ୟର ପରିପନ୍ଥୀ ବୋଲି ଏମାନେ ଆଦୌ ଚିନ୍ତା କରିପାରୁ

ନାହାନ୍ତି । ବିଭିନ୍ନ କ୍ଷେତ୍ରରେ ଜାତିଗତ ସଂରକ୍ଷଣ ସଂହତିକୁ ବିପନ୍ନ କରୁଛି । ଚାକିରିଠାରୁ ଆରମ୍ଭକରି ପାଠପଢ଼ା ପର୍ଯ୍ୟନ୍ତ ପ୍ରତ୍ୟେକ କ୍ଷେତ୍ରରେ ଏହି ଜାତିଆଣ ମନୋଭାବ ଗୋଟିଏ ଗୋଷ୍ଠୀକୁ ଅନ୍ୟ ଗୋଷ୍ଠୀଠାରୁ ପୃଥକ୍ କରିଦେଉଛି । ଏହାଦ୍ୱାରା ଜାତୀୟ ସଂହତି ଓ ଭାରତର ମୌଳିକ ନୀତି ବାଧାପ୍ରାପ୍ତ ହେଉଛି । ସର୍ବୋପରି ଜନସାଧାରଣଙ୍କ ମନରେ ଜାତୀୟତାର ଅଭାବ ଭାରତକୁ ଏକତାବଦ୍ଧ କରିବାରେ ପ୍ରତିବନ୍ଧକ ସୃଷ୍ଟି କରୁଛି । ''ଆମେ ଭାରତୀୟ''–ଏପରି ଚିନ୍ତାଧାରା କାହା ମନରେ ନାହିଁ । ଆମେ ନିଜକୁ ଯେଉଁ ପରିମାଣରେ ଓଡ଼ିଆ, ବଙ୍ଗାଳୀ, ପଞ୍ଜାବୀ, ଗୁଜୁରାଟୀ, ମରାଠୀ ବା ଆସାମୀ ବୋଲି ଦାବିକରି ପାରୁଛୁ, ସେହି ପରିମାଣରେ ନିଜକୁ ଭାରତୀୟ ବୋଲି ଦାବି କରିପାରୁ ନାହୁଁ । ଏହି କାରଣରୁ ଆମର ଜାତୀୟ ସଂହତି ଘୋର ବିପର୍ଯ୍ୟୟର ସମ୍ମୁଖୀନ ହେଉଛି ।

ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ଆମର ଜାତୀୟ ସଂହତି ବିପନ୍ନ ହୋଇପଡୁଥିବାର ଲକ୍ଷ୍ୟ କରି ୧୯୬୧ ମସିହାରେ ଜାତୀୟ ସଂହତି ଆଲୋଚନା ସଭା ଡ଼କାଇଥିଲେ । ଏ ସଭାରେ ଏକ ଜାତୀୟ ସଂହତି ପରିଷଦ ଗଠନ କରାଯାଇଥିଲା । ଉକ୍ତ ପରିଷଦ ବିଭିନ୍ନ ବିଷୟ ଅନୁସନ୍ଧାନ କରି ତାଙ୍କ ବିବରଣୀରେ ଲେଖିଥିଲେ – "India's unity in the midst of diversity was stressed. In the course of a long history, people of different races, religions and languages made their own contribution to the building up of India. But inspite of this diversity, India had always had a basic unity and a peculiar and distinctive identity. Even though the achievement of political unity and freedom have confirmed this unity, various fissiparous and disruptive tendencies, such as communalism, casteism, regionalism, and linguism tend to disrupt the solidarity of the people. These disruptive tendencies have to be controlled and countered while certain group loyalities on a religion, linguistic basis may continue, there should be subordinated to the national interest. ୧୯୬୮ ମସିହାରେ ଜାତୀୟ ସଂହତି ପରିଷଦ ଗଠନ କରାଯାଇଥିଲା ସାଂପ୍ରଦାୟିକ ଦଙ୍ଗା ଓ ଆଞ୍ଚଳିକ ସଂଘର୍ଷକୁ କେନ୍ଦ୍ର କରି । ୧୯୬୮ ମସିହା ଜୁନ୍ ମାସରେ ଶ୍ରୀନଗରରେ ଏକ ସଭା ବସି କେତେକ ପଦକ୍ଷେପ ଗ୍ରହଣ କରାଯାଇଥିଲା । ମାତ୍ର ତା'ର ସଫଳ ରୂପାୟନ ଘଟିନ ଥିଲା । ତେବେ ଜାତୀୟ ସଂହତିର ବୃଦ୍ଧି ନିମିତ୍ତ ପ୍ରଥମେ ଶିକ୍ଷା ଉପରେ ଗୁରୁତ୍ୱ ପ୍ରଦାନ କରାଯିବା ଉଚିତ । ଶିକ୍ଷାର ବିକାଶ ହେଲେ ମଣିଷ ମନରୁ ସଂକୀର୍ଣ୍ଣ ଚିନ୍ତାଧାରା ବିଲୁପ୍ତ ହୋଇଥାଏ ଓ ଏକ ବିସ୍ତୃତ ଦୃଷ୍ଟିଭଙ୍ଗୀ ନେଇ ସେ ଜୀବନ ଏବଂ ଜଗତକୁ ଦେଖେ । ଦେଶର ସମସ୍ତ ଜନସାଧାରଣ ମଧ୍ୟରେ ସଂହତି ଏବଂ ଐକ୍ୟ ପ୍ରତିଷ୍ଠା କରାଯାଇପାରିଲେ ଜାତୀୟ ସଂହତି ବିପନ୍ନ ହେବ ନାହିଁ । ଶିକ୍ଷାନୁଷ୍ଠାନମାନଙ୍କରେ ଏଥିପ୍ରତି ଛାତ୍ରଛାତ୍ରୀମାନଙ୍କୁ ଶିକ୍ଷାପ୍ରଦାନ କରାଯିବା ଉଚିତ । ଜାତିଗତ ଭେଦଭାବର ବିଲୋପ କରାଯାଇ ସମସ୍ତ ନାଗରିକଙ୍କୁ ସମାନ ସୁଯୋଗ ପ୍ରଦାନ କରାଯାଇପାରିଲେ ଜାତିଗତ ଦଙ୍ଗାକୁ ଏଡ଼ାଇ ଦିଆଯାଇପାରନ୍ତା ।

ଜାତି ବା ସଂପ୍ରଦାୟକୁ ନେଇ ରାଜନୀତି କରିବା ନିତାନ୍ତ ଦୁଃଖର ବିଷୟ । ତେଣୁ ଏଥିପ୍ରତି ସବୁ ସ୍ତରରେ ତୀକ୍ଷ୍ଣ ଦୃଷ୍ଟି ପ୍ରଦାନ କରାଯିବା ଆବଶ୍ୟକ । ପ୍ରଶାସନିକ ଅସ୍ଥିରତା ଜାତୀୟ ସଂହତିକୁ ବିପନ୍ନ କରିଥାଏ । ଏଣୁ ଦଳଗତ ରାଜନୀତି ନ କରି ଦେଶର ସ୍ୱାର୍ଥ ସ୍ୱାଧନ ପାଇଁ ପ୍ରତ୍ୟେକ ରାଜନୀତିକ ନେତା ନିଜକୁ ଉତ୍ସର୍ଗ କରିବା ଉଚିତ । ସ୍ଥିରତା ନ ରହିଲେ ଅସାମାଜିକ ମଣିଷ, ବ୍ୟବସାୟୀ ଦେଶରେ ବିଘଟଣମାନ ଘଟାଇଥାନ୍ତି । ତେଣୁ ଦଳଗତ ନିର୍ବିଶେଷରେ ଦେଶର ସ୍ୱାର୍ଥକୁ ଊର୍ଦ୍ଧ୍ୱରେ ରଖି ରାଜନୀତିକ ନେତାଗଣ କାର୍ଯ୍ୟ କଲେ ଜାତୀୟ ସଂହତି ସ୍ଥାପିତ ହୋଇପାରିବ । ଆର୍ଥିକ ବୈଷମ୍ୟ ଜାତୀୟ ସଂହତି ବିପନ୍ନ ହେବାର ଅନ୍ୟତମ ମୁଖ୍ୟ କାରଣ । ଦଳେ ପ୍ରାଚୁର୍ଯ୍ୟମୟ ଜୀବନଯାପନ କରୁଥିବା ସମୟରେ ଅନ୍ୟଦଳ ଖାଇବାକୁ ପାଉନଥିଲେ ସଂହତି କିପରି ସ୍ଥାପିତ ହୋଇପାରିବ ? ବୁଭୁକ୍ଷିତ ବ୍ୟକ୍ତି ବିପ୍ଳବ କରିବା ସ୍ୱାଭାବିକ । ତେଣୁ ଆମ ସମାଜରେ ଯେଉଁ ଆର୍ଥିକ ବୈଷମ୍ୟ ରହିଛି, ତା'ର ଦୂରୀକରଣ କରି ସାମାଜିକ ନ୍ୟାୟ ପ୍ରତିଷ୍ଠା କରିପାରିଲେ ଜାତୀୟ ସଂହତି ସ୍ଥାପନ ହୋଇପାରିବ ।

ଭାରତରେ ବିଭିନ୍ନ ବୈଷମ୍ୟ ରହିଛି । ଏହା ସତ୍ତ୍ୱେ ସମସ୍ତ ଜନସାଧାରଣ ସାମୂହିକ ଭାବେ କାର୍ଯ୍ୟ ନ କଲେ ଦେଶର ସ୍ଥିତି ବିପନ୍ନ ହୋଇପଡ଼ିବ । ଯେଉଁ ସ୍ୱାଧୀନତା ଲାଭ କରିବାକୁ ଆମକୁ ଅନେକ କୃଚ୍ଛ ସାଧନ କରିବାକୁ ପଡ଼ିଛି, ତାହାକୁ ଏପରି ବିଡ଼ମ୍ବିତ ହେବାକୁ ଦିଆଯିବା ଅତ୍ୟନ୍ତ କ୍ଷୋଭର ବିଷୟ । ଦେଶକୁ ରକ୍ଷା କରିବା ଓ ଜନସାଧାରଣଙ୍କ ମଧ୍ୟରେ ସଂହତି ସ୍ଥାପନ କରିବା ପ୍ରତ୍ୟେକ ନାଗରିକଙ୍କର ନୈତିକ କର୍ତ୍ତବ୍ୟ । ଏହା ମଧ୍ୟ ଏକ ମହତ୍ କର୍ମ । ସାଂପ୍ରଦାୟିକ ସଦ୍‌ଭାବ ରକ୍ଷା ପୂର୍ବକ ଏକ ମନ ହୋଇ ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ଭାରତର ଗୌରବ ବୃଦ୍ଧି ନିମିତ୍ତ କାର୍ଯ୍ୟ କଲେ କେବଳ ଜାତୀୟ ସଂହତି ପ୍ରତିଷ୍ଠା ହେବ ନାହିଁ । ପରନ୍ତୁ ଦେଶର ପ୍ରଗତି ଓ ବିକାଶ ସାଧିତ ହେବ ।

●

# ନିରସ୍ତ୍ରୀକରଣ

**(ଉପକ୍ରମ, ନିରସ୍ତ୍ରୀକରଣର ଆବଶ୍ୟକତା, ପ୍ରତିରୋଧ ଓ ପ୍ରତିବନ୍ଧକ; ନିରସ୍ତ୍ରୀକରଣ ନିମିତ୍ତ ଗୃହୀତ ପଦକ୍ଷେପ, ସଫଳତା ଓ ବିଫଳତା, ସାଂପ୍ରତିକ ସ୍ଥିତି ଓ ନିରସ୍ତ୍ରୀକରଣ, ଉପସଂହାର)**

ମଣିଷର ପ୍ରାଥମିକ ସଂଗ୍ରାମ ଥିଲା ବଞ୍ଚିବା ପାଇଁ । ଯାଯାବର ଜୀବନ ତ୍ୟାଗ କରି ମଣିଷ ଗଢ଼ିଲା ସମାଜ । କ୍ରମେ ସେ ସଭ୍ୟ ହେବାକୁ ଲାଗିଲା । ବିଜ୍ଞାନ ସହିତ ପରିଚିତ ହେବା ପରେ ଜୀବନକୁ ଅଧିକ ସୁସ୍ଥ ସୁନ୍ଦର କରି ଗଢ଼ି ତୋଳିବାର ପ୍ରୟାସ କଲା । ପ୍ରାଚୁର୍ଯ୍ୟ ଓ ବିଳାସ ମଧ୍ୟ ଦେଇ ଗତି କରୁଥିବା ମଣିଷ ଧ୍ୱଂସର ଲୀଳା ଦେଖିବାକୁ ହଠାତ୍ ଆଗ୍ରହୀ ହୋଇଉଠିଲା । ବିଂଶ ଶତାବ୍ଦୀ ମଣିଷ ଜୀବନରେ ଯେତିକି ସୁଖ ଶାନ୍ତି ଭରି ଦେଇଚି, ସେହି ପରିମାଣରେ

ଭରିଦେଇଛି ଅବିଶ୍ୱାସ ଓ ଅଶାନ୍ତି । ଏହି ଶତକରେ ବିଜ୍ଞାନ ଯେପରି ଲାଭ କରିଛି ଅଭୂତପୂର୍ବ ସଫଳତା, ସେହି ପରିମାଣରେ ପାଇଛି ଧ୍ୱଂସ ଓ ପୀଡ଼ନର ତ୍ରାସ । ନିଜର ଶକ୍ତି ଏବଂ ଜ୍ଞାନର ପରିପ୍ରକାଶ କରିବାକୁ ଯାଇ ସେ ସୃଷ୍ଟି କରିଛି ବିଶ୍ୱରେ ତାଣ୍ଡବଲୀଳା । ଶାନ୍ତ ପୃଥିବୀ କୋଳରେ ସେଦିନ ଯିଏ ରକ୍ତର ବନ୍ୟା ଦେଖିଥିବ, ଅନୁମାନ କରି ନେଇଥିବ ବିଜ୍ଞାନ ଯୁଗରେ ମଣିଷର ଅମାନବିକତାକୁ । ହଜାର ହଜାର ମଣିଷର ରକ୍ତରେ ସେଦିନ କର୍ଦ୍ଦମ ହୋଇଉଠିଥିଲା ହିରୋସୀମା ଓ ନାଗାସାକିର ମାଟି । କ୍ଷମତା ଓ ପ୍ରତିଶୋଧର ଲଢ଼େଇରେ ବଳିପଡ଼ିଲେ ଅସହାୟ ନିରୀହ ଜନସାଧାରଣ । ତଥାପି ମଣିଷ ଏଥିରୁ କିଛି ଶିକ୍ଷା କରିଛି ବୋଲି ମନେହୁଏ ନାହିଁ । ଆଜି ବୁଦ୍ଧି ବା ଜ୍ଞାନର ପ୍ରତିଯୋଗିତା ପରିବର୍ତ୍ତେ ଚାଲିଛି ଅସ୍ତ୍ରଶସ୍ତ୍ର ପ୍ରତିଯୋଗିତା । ଯିଏ ଯେତେପରିମାଣରେ ମାରାତ୍ମକ ଅସ୍ତ୍ର ନିର୍ମାଣ କରିପାରିଲା, ବିଶ୍ୱ ଦରବାରରେ ସିଏ ହେଲା ସେତିକି ବିଜ୍ଞାନୀ ଓ ଅଗ୍ରଗାମୀ । ମାତ୍ର ବିଶ୍ୱର ଚିନ୍ତାଶୀଳ ବ୍ୟକ୍ତି ମାନବସମାଜର ଏହି ଅପରିଣାମଦର୍ଶିତା ପାଇଁ କ୍ଷୋଭ ପ୍ରକାଶ କରୁଛନ୍ତି । ବର୍ତ୍ତମାନ ପ୍ରତ୍ୟେକ ରାଷ୍ଟ୍ର ଅନୁଭବ କଲେଣି ପ୍ରତିଯୋଗିତାରେ କେବଳ ଆକ୍ରମିତ ରାଷ୍ଟ୍ରର କ୍ଷତି ହେଉ ନାହିଁ; ପରନ୍ତୁ ଆକ୍ରମଣକାରୀ ରାଷ୍ଟ୍ର ମଧ୍ୟ ବହୁପରିମାଣରେ କ୍ଷତିଗ୍ରସ୍ତ ହେଉଛି । ମଣିଷ ହୃଦୟର ଏହି ଚୈତନ୍ୟରୁ ନିରସ୍ତ୍ରୀକରଣ ନିମିତ୍ତ ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ଆଗ୍ରହ ସୃଷ୍ଟି ହୋଇଛି । ଶାନ୍ତି ପ୍ରତିଷ୍ଠା ପାଇଁ ମଣିଷ ମନରେ ଯେଉଁ ଆକୁଳ ଆବେଗ ସୃଷ୍ଟି ହେଲା, ସେହିଥିରୁ ଜନ୍ମ ନେଲା ନିରସ୍ତ୍ରୀକରଣ ପ୍ରକ୍ରିୟା ।

ବିଜ୍ଞାନର ବିକାଶ ଓ ସଫଳତା ମଣିଷକୁ ଯେତିକି ପରିମାଣରେ ଆହ୍ଲାଦିତ କରିଛି ତା'ଠାରୁ ଅଧିକ କରିଛି ବିଷାଦିତ । ବିଜ୍ଞାନାଲୋକ ଲାଭ କରିବା ସମୟରେ ସେଦିନ ମଣିଷ ଚିନ୍ତା କରିଥିଲା ପୃଥିବୀର ଶୋକ ଦୁଃଖ, ଅଭାବ-ଅନଟନ ଅଚିରେ ଦୂରେଇ ଦେବ । ସେଦିନ ସେ ବିଜ୍ଞାନକୁ ଏକ ଆଶୀର୍ବାଦ ବୋଲି ମନେ କରିଥିଲା । ମାତ୍ର ତା'ର ପ୍ରଳୟଙ୍କରୀ ରୂପ ଦେଖିବା ପରେ ଅନୁଭବ କଲା, ବିଜ୍ଞାନ ମାନବ ସଭ୍ୟତା ପାଇଁ ଏକ ଆଶୀର୍ବାଦ ନୁହେଁ; ଅଭିଶାପ । ଦୁଇ ଦୁଇଟି ବିଶ୍ୱ ଯୁଦ୍ଧର ଅଭିଜ୍ଞତା ମଣିଷକୁ ନିରାଶାର ଅନ୍ଧକାରରେ ବୁଡ଼ାଇ ଦେଲା । ବିକଶିତ ରାଷ୍ଟ୍ରଗୁଡ଼ିକ ପ୍ରଚୁର ପରିମାଣରେ ଅସ୍ତ୍ରଶସ୍ତ୍ର ନିର୍ମାଣ କରି ବିଶ୍ୱରେ ନିଜର ବଡ଼ଭାଇପଣିଆ ସାବ୍ୟସ୍ତ କରିବାକୁ ବ୍ୟାକୁଳ । ଅଯଥା ଅହଂ ମଣିଷକୁ ଯେ ଧ୍ୱଂସ ଦିଗକୁ ଟାଣି ନେଉଛି ତାହା ସେ ବୁଝିବାକୁ ନାରାଜ । ମଣିଷର ଏହି ଖିଆଲି ମନୋବୃତ୍ତିରୁ ବିଶ୍ୱଯୁଦ୍ଧର ଆରମ୍ଭ । ଦୁଇ ଦୁଇଟି ବିଶ୍ୱଯୁଦ୍ଧ ପରେ ମଣିଷ ଅନୁଭବ କଲା ତା'ର ପୃଥିବୀ ବିଶ୍ୱାସର ପୃଥିବୀ ନୁହେଁ । ପୁନରାୟ ଏହି ପୃଥିବୀରେ ବିଶ୍ୱାସର ବାତାବରଣ ସୃଷ୍ଟି କରିବାକୁ ହେଲେ, ପ୍ରଥମେ ମଣିଷ ମନରୁ ଯୁଦ୍ଧ ଭୟ ଦୂର କରିବାକୁ ପଡ଼ିବ । ଏଥିପାଇଁ ନିରସ୍ତ୍ରୀକରଣ ନିମିତ୍ତ ବିଭିନ୍ନ ସ୍ଥାନରେ ଆଲୋଚନା ଚାଲିଲା । ଲକ୍ଷ ଲକ୍ଷ ମଣିଷ କ୍ଷୁଧା ଦାଉରେ ଜୀବନ ବିସର୍ଜନ କରୁଥିବା ସମୟରେ କୋଟି କୋଟି ଡଲାରର ମାରଣାସ୍ତ୍ର ମଣିଷସମାଜର ଧ୍ୱଂସ ପାଇଁ ନିର୍ମାଣ ହେବାର କୌଣସି ଯଥାର୍ଥତା ନାହିଁ । ଏବେ ମଧ୍ୟ ବହୁ ଲୋକଙ୍କର ଜୀବନଧାରଣର ମାନ ଅତି ନିମ୍ନରେ । ଅର୍ଦ୍ଧାହାର ଓ ବିଭିନ୍ନ ବ୍ୟାଧିର ଶିକାର ହୋଇ ଲକ୍ଷ ଲକ୍ଷ ମଣିଷ ଜୀବନ ବିସର୍ଜନ କରୁଛନ୍ତି । ଏହି ପରିସଂଖ୍ୟାନରୁ ଜଣାଯାଉଛି, ପ୍ରତିବର୍ଷ

ବିଭିନ୍ନ ମାରଣାସ୍ତ୍ର ନିର୍ମାଣରେ ଯେତିକି ଅର୍ଥବ୍ୟୟ ହେଉଛି, ସେଥିରେ ପୃଥିବୀରୁ ସମ୍ପୂର୍ଣ୍ଣ କ୍ଷୁଧାଭୟ ଦୂର କରାଯାଇପାରନ୍ତା ବା ୧୨୦ ଲକ୍ଷ ଲୋକଙ୍କ ପାଇଁ ଉପଯୁକ୍ତ ବସତି ସ୍ଥାପନ କରାଯାଇପାରନ୍ତା । ଏହି ଅର୍ଥରେ ହଜାର ହଜାର ଚିକିତ୍ସା କେନ୍ଦ୍ର ଖୋଲାଯାଇ ରୋଗୀମାନଙ୍କର ବ୍ୟାଧି ଦୂରୀକରଣ କରାଯାଇପାରନ୍ତା । ଏହାଦ୍ୱାରା ବିଶ୍ୱର ଅଶେଷ ମଙ୍ଗଳ ସାଧିତ ହୋଇପାରନ୍ତା । ବର୍ତ୍ତମାନ କୌଣସି ମୁହୂର୍ତ୍ତରେ ଯୁଦ୍ଧ ଲାଗିଲେ ଗୋଟିଏ ରାଷ୍ଟ୍ରର ନୁହେଁ; ସମଗ୍ର ବିଶ୍ୱର ହିଁ କ୍ଷତି ହେବ । ଏବେ କୌଣସି ଶକ୍ତିଶାଳୀ ରାଷ୍ଟ୍ର ଦୁର୍ବଳ ରାଷ୍ଟ୍ରକୁ ଧମକାଇ ନିଜର ଫାଇଦା ଉଠାଇପାରିବ ନାହିଁ । ତେଣୁ ବର୍ତ୍ତମାନ ସମଗ୍ର ବିଶ୍ୱରେ ନିରସ୍ତ୍ରୀକରଣ ନିମିତ୍ତ ଅନୁକୂଳ ପରିବେଶ ସୃଷ୍ଟି ହେବା ଆବଶ୍ୟକ । କାରଣ ଶାନ୍ତି ଓ ସ୍ଥିରତା ପାଇଁ ସଂପ୍ରତି ନିରସ୍ତ୍ରୀକରଣର ଆବଶ୍ୟକତା ରହିଛି । ଏ କ୍ଷେତ୍ରରେ ସମସ୍ତେ ସହଯୋଗ ପ୍ରଦାନ କରିବା ଉଚିତ । ମନେରଖିବା ଉଚିତ ଯେ ବିଜ୍ଞାନର ସୃଷ୍ଟି ମାନବସମାଜର ମଙ୍ଗଳ ପାଇଁ ଅଭିପ୍ରେତ, ଧ୍ୱଂସ ପାଇଁ ନୁହେଁ । ତେଣୁ ପ୍ରତ୍ୟେକ ରାଷ୍ଟ୍ର ଅସ୍ତ୍ର ନିର୍ମାଣରେ ଯେତିକି ଅର୍ଥ ବ୍ୟୟ କରୁଛନ୍ତି, ତାହାକୁ ମାନବସମାଜର ମଙ୍ଗଳ ଉଦ୍ଦେଶ୍ୟରେ ବ୍ୟୟ କଲେ ସମଗ୍ର ବିଶ୍ୱର ଅଶେଷ ମଙ୍ଗଳ ସାଧନ ହୋଇପାରିବ ।

ବାସ୍ତବ କ୍ଷେତ୍ରରେ ଯେଉଁମାନେ ନିରସ୍ତ୍ରୀକରଣ ନିମିତ୍ତ ପାଟି କରୁଛନ୍ତି, ପରୋକ୍ଷରେ ସେହିମାନେ ହିଁ ବିରୋଧ କରୁଛନ୍ତି । ଅତୀତରେ ସାମରିକ ମେଣ୍ଟ ଯୋଗୁଁ ବିଶ୍ୱରେ ଅସ୍ତ୍ର ପ୍ରତିଯୋଗିତା ବୃଦ୍ଧି ପାଇଥିଲା । ଗୋଟିଏ ପକ୍ଷରେ ଆମେରିକା ଓ ତା'ର ମିତ୍ରରାଷ୍ଟ୍ର, ଅନ୍ୟ ପକ୍ଷରେ ରୁଷିଆ ଏବଂ ତା'ର ସମର୍ଥକ ରାଷ୍ଟ୍ର । ବର୍ତ୍ତମାନ ଶକ୍ତିଶାଳୀ ରାଷ୍ଟ୍ରଗୁଡ଼ିକ ଅସ୍ତ୍ରଶସ୍ତ୍ର ନିର୍ମାଣକୁ ଏକ ଲାଭଜନକ ବ୍ୟବସାୟରେ ପରିଣତ କରିଛନ୍ତି । ଦୁର୍ବଳ ରାଷ୍ଟ୍ରଗଣ ସେମାନଙ୍କ ଠାରୁ ପ୍ରଚୁର ପରିମାଣରେ ଅସ୍ତ୍ରଶସ୍ତ୍ର କ୍ରୟ କରୁଥିବାରୁ ସେମାନେ ବହୁପରିମାଣରେ ଲାଭବାନ୍ ହୋଇପାରୁଛନ୍ତି । ଏହି କାରଣରୁ ବିକଶିତ ରାଷ୍ଟ୍ରଗୁଡ଼ିକ ସର୍ବଦା ଦ୍ୱୈତ ଭୂମିକା ଗ୍ରହଣ କରୁଛନ୍ତି । ଯେପର୍ଯ୍ୟନ୍ତ ବିଶ୍ୱରେ ସାମରିକ ମେଣ୍ଟ ରହିଥିବ, ସେପର୍ଯ୍ୟନ୍ତ ନିରସ୍ତ୍ରୀକରଣ ସ୍ଲୋଗାନ କେବଳ ଫାଙ୍କା ଆବାଜରେ ପରିଣତ ହେଉଥିବ । ଗୋଷ୍ଠୀ ନିରପେକ୍ଷ ସମ୍ମିଳନୀରେ ଭାରତର ମତ ଅତ୍ୟନ୍ତ ସ୍ୱଷ୍ଟ ହୋଇଥିବାରୁ ଜେନେଭା ସମ୍ମିଳନୀରେ ଆମେରିକାର ଇଚ୍ଛା ବିରୋଧରେ ଭାରତ ଭେଟୋ ପ୍ରୟୋଗ କରିଥିଲା । ଅତୀତରେ ଆନ୍ତର୍ଜାତିକ ନିରସ୍ତ୍ରୀକରଣ ଓ ପାରମାଣବିକ ପ୍ରସାର ନିରୋଧ ଚୁକ୍ତି (ଏନ୍.ପି.ଟି) ପାଇଁ ଯେଉଁ ଆମେରିକା ଯୁକ୍ତି କରୁଥିଲା, ସେ ପୁଣି ପାକିସ୍ଥାନକୁ ବିଭିନ୍ନ ମାଧ୍ୟମରେ ବିପୁଳ ପରିମାଣରେ ଅସ୍ତ୍ରଶସ୍ତ୍ର ଯୋଗାଇ ଦେଉଛି । ବିଶ୍ୱର ଜନମତକୁ ଉପେକ୍ଷା କରି ଫ୍ରାନ୍ସ ଆଣବିକ ବୋମା ପରୀକ୍ଷା କରୁଥିବା ସମୟରେ ଆମେରିକା ନିରବ ରହୁଛି, ଅଥଚ ଭାରତକୁ ଆଣବିକ ବୋମା ପରୀକ୍ଷା କରୁଥିବା ସମୟରେ ବାଧା ଦେଉଛି । ଚୀନ ମଧ୍ୟ ପାକିସ୍ଥାନକୁ ବିପୁଳ ପରିମାଣରେ ଅସ୍ତ୍ରଶସ୍ତ୍ର ଓ ଆଣବିକ ଜ୍ଞାନକୌଶଳ ବିକ୍ରି କରୁଛି । ଏହାଦ୍ୱାରା ଦିନକୁ ଦିନ ବିଶ୍ୱରେ ଅସ୍ତ୍ର ପ୍ରତିଯୋଗିତା ବୃଦ୍ଧି ପାଇ ଚାଲିଛି । ସାମରିକ ମେଣ୍ଟ ଗଠନ ଦ୍ୱାରା ନିରସ୍ତ୍ରୀକରଣ ନିମିତ୍ତ ଆରମ୍ଭ ହେଉଥିବା ପ୍ରକ୍ରିୟା ବନ୍ଦ ହୋଇଯାଉଛି । ମାତ୍ର ଏହା ଦ୍ୱାରା ବିଶେଷ କ୍ଷତିଗ୍ରସ୍ତ ହେଉଛନ୍ତି ବିକାଶଶୀଳ ରାଷ୍ଟ୍ରଗୁଡ଼ିକ । ପରୋକ୍ଷରେ

ଧନୀ ରାଷ୍ଟ୍ରଗୁଡ଼ିକ ଅସ୍ତ୍ର ପ୍ରତିଯୋଗିତାକୁ ପ୍ରୋତ୍ସାହିତ କରୁଥିବା ଯୋଗୁଁ ନିରସ୍ତ୍ରୀକରଣ ଆଲୋଚନା ବାରମ୍ବାର ଭଣ୍ଡୁର ହୋଇଯାଉଛି ।

ପ୍ରଥମ ବିଶ୍ୱଯୁଦ୍ଧ (୧୯୧୪-୧୮) ର ଭୟଙ୍କର ମାନବ ସମାଜକୁ ସ୍ତବ୍ଧ କରି ଦେଇଥିଲା । ବିଜ୍ଞାନ ମାନବ ଜୀବନକୁ ଯେ ବିକଳାଙ୍ଗ କରିଦେଇପାରେ ଏହି ଯୁଦ୍ଧର ଫଳାଫଳରୁ ମଣିଷ ତାହା ଅନୁଭବ କଲା । ଏହି ଯୁଦ୍ଧ ଭୟରୁ ରକ୍ଷା ପାଇବା ପାଇଁ ନିରସ୍ତ୍ରୀକରଣ ନିମିତ୍ତ ପ୍ରଥମ ଆଲୋଚନା ବୈଠକ ୧୯୨୦ ମସିହାରେ ପ୍ୟାରିସଠାରେ ଅନୁଷ୍ଠିତ ହୋଇଥିଲା । ମାତ୍ର ଅହଂସର୍ବସ୍ୱ ବିକଶିତ କେତୋଟି ରାଷ୍ଟ୍ରଙ୍କ ଜିଦ୍‌ଖୋର ମନୋବୃତ୍ତି ଯୋଗୁଁ ଏହା ସଫଳ ହୋଇ ପାରିନ ଥିଲା । ପରେ ଆଲୋଚନା ନିମିତ୍ତ ବାତାବରଣ ସୃଷ୍ଟି ପାଇଁ ପ୍ରୟାସ କରାଯାଉଥିବା ସମୟରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପାଇଁ ରଣଦୁନ୍ଦୁଭି ବାଜି ସାରିଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧର କାଳଗ୍ରାସୀ ରୂପ ସମଗ୍ର ବିଶ୍ୱକୁ ଭୀତତ୍ରସ୍ତ କରି ଦେଇଥିଲା । ପରେ ପରେ ୧୯୪୫ ମସିହାରେ ନିରସ୍ତ୍ରୀକରଣ ପାଇଁ ଆଲୋଚନା ଚାଲିଲା । ଏହି ସମୟରେ ବିଶ୍ୱର ଦୁଇଟି ଶକ୍ତିଶାଳୀ ରାଷ୍ଟ୍ରରୂପେ ଆମେରିକା ଓ ରୁଷିଆ ପରିଗଣିତ ହେଉଥିଲେ । ସମସ୍ତ ବିଶ୍ୱ ଅନୁଭବ କରୁଥିଲା ନିରସ୍ତ୍ରୀକରଣ ପ୍ରକ୍ରିୟା ଏହି ଦୁଇଟି ରାଷ୍ଟ୍ରରୁ ଆରମ୍ଭ ନ ହେଲେ ଆଲୋଚନା କଦାପି ସଫଳ ହୋଇପାରିବ ନାହିଁ । ତେଣୁ ୧୯୪୬ ମସିହାରେ ରୁଷିଆ ଓ ଆମେରିକା ମଧ୍ୟରେ ଆଲୋଚନା ଆରମ୍ଭ ହେଲା । ମାତ୍ର ଉଭୟ ରାଷ୍ଟ୍ରର ବଡ଼ଭାଇ ପଣିଆ ମନୋଭାବ ଯୋଗୁଁ ଏଥିରେ କୌଣସି ସୁଫଳ ମିଳିଲା ନାହିଁ । ଜାତିସଂଘ ମଧ୍ୟ ନିରସ୍ତ୍ରୀକରଣ ନିମିତ୍ତ ତା'ର ଉଦ୍ୟମରେ ଆଲୋଚନା ଆରମ୍ଭ କରିଥିଲା । କୋରିଆ ଯୁଦ୍ଧରେ ବିକଶିତ ରାଷ୍ଟ୍ର, ବିଶେଷକରି ଆମେରିକାର ପଦକ୍ଷେପ ଆଲୋଚନାର ଅସାରତାକୁ ପ୍ରତିପାଦନ କରିଥିଲା । ୧୯୫୯ ମସିହାରେ ରୁଷିଆର ପ୍ରଧାନମନ୍ତ୍ରୀ ଓ ଆମେରିକାର ରାଷ୍ଟ୍ରପତିଙ୍କ ମଧ୍ୟରେ ଅନୁଷ୍ଠିତ ଶୀର୍ଷ ସମ୍ମିଳନୀରେ ନିରସ୍ତ୍ରୀକରଣ ସମ୍ବନ୍ଧରେ ଆଲୋଚନା କରାଯାଇଥିଲେ ହେଁ ତାହା ସଫଳ ହୋଇପାରିଲା ନାହିଁ । ଏହାପରେ ୧୯୬୨ ମସିହାରେ ଜେନିଭାଠାରେ ଅନୁଷ୍ଠିତ ସମ୍ମିଳନୀରେ ପୁଣି ନିରସ୍ତ୍ରୀକରଣ ଉପରେ ଗୁରୁତ୍ୱ ପ୍ରଦାନ କରାଗଲା । ମାତ୍ର ସେ ଉଦ୍ୟମ ମଧ୍ୟ ସଫଳ ହେଲା ନାହିଁ । ନିରସ୍ତ୍ରୀକରଣ ନିମିତ୍ତ ରାଷ୍ଟ୍ରମାନଙ୍କ ଠାରେ ଯେଉଁ ସହୃଦୟତା ରହିବା କଥା, ତା'ର ଅଭାବରୁ ଏହି ଆଲୋଚନା ଫଳପ୍ରସୂ ହୋଇପାରୁ ନାହିଁ ।

ବିଶ୍ୱରେ ଶାନ୍ତି ପ୍ରତିଷ୍ଠା ପାଇଁ ନିରସ୍ତ୍ରୀକରଣର ଜରୁରୀ ଆବଶ୍ୟକତା ଥିଲେ ହେଁ ତାହା ଏଯାବତ୍ ଫଳବନ୍ତୀ ହୋଇ ନ ପାରିବା ଘୋର ପରିତାପର ବିଷୟ । ବିଗତ ଜେନିଭା ସମ୍ମିଳନୀରେ ୬୧ଟି ରାଷ୍ଟ୍ର ମଧ୍ୟରେ ମତ ପାର୍ଥକ୍ୟ ଦେଖାଦେଲା । ଆମେରିକା, ଇଂଲଣ୍ଡ, ରୁଷିଆ ଆଦି ସ୍ୱାକ୍ଷର କରିଥିବା ରାଜିନାମା ନିରସ୍ତ୍ରୀକରଣ ପ୍ରତି ଅଭିପ୍ରେତ ନୁହେଁ । ଆଣବିକ ଅସ୍ତ୍ରଶସ୍ତ୍ର ଅଧିକାରୀ ରାଷ୍ଟ୍ର ସେମାନଙ୍କ ଅଣୁଅସ୍ତ୍ର ନିର୍ମାଣ ଯୋଜନାକୁ ସମ୍ପ୍ରସାରିତ କରିବେ ନାହିଁ ବୋଲି ରାଜିନାମା ହୋଇଥିଲା । ଏହାଦ୍ୱାରା ଅଣୁଅସ୍ତ୍ର ଉତ୍ପାଦନକାରୀ ରାଷ୍ଟ୍ର ଓ ଅଣୁଅସ୍ତ୍ର ଉତ୍ପାଦନ କରୁନଥିବା ରାଷ୍ଟ୍ରଙ୍କ ମଧ୍ୟରେ ତାରତମ୍ୟ ବୃଦ୍ଧି ପାଇବାର ଯୋଜନା କରାଗଲା କହିଲେ ଭୁଲ୍ ହେବ ନାହିଁ । ଫ୍ରାନ୍ସ ଏହି ରାଜିନାମାରେ ସ୍ୱାକ୍ଷର ନ କରି ପରବର୍ତ୍ତୀ ସମୟରେ ଗୋଟିଏ ଆଣବିକ ବୋମା ପରୀକ୍ଷା

କରିଆସିଛି । ବିକଶିତ ରାଷ୍ଟ୍ରଙ୍କ ନିରବତାରୁ ନିରସ୍ତ୍ରୀକରଣ ନିମିତ୍ତ ସେମାନଙ୍କ ହୃଦୟରେ କେତେ ପରିମାଣରେ ସମ୍ବେଦନା ରହିଛି, ତାହା ପ୍ରମାଣିତ ହୋଇଗଲା । ୧୯୫୪ ମସିହା ଠାରୁ ଭାରତ ନିରସ୍ତ୍ରୀକରଣ ନିମିତ୍ତ ଉଦ୍ୟମ କରିଆସୁଛି । ୧୯୮୪ ମସିହାରେ ମଧ୍ୟ ଭାରତ ପାରମାଣବିକ ଅସ୍ତ୍ର ନିର୍ମାଣର ପ୍ରତିଯୋଗିତାକୁ ବନ୍ଦ କରିବାକୁ ଆହ୍ୱାନ ଦେଇଥିଲା । ବିକଶିତ ରାଷ୍ଟ୍ରଙ୍କ ମତିଗତି ଦେଖି ଭାରତ ସି.ଟି.ବି.ଟି. ବା ସମ୍ପୂର୍ଣ୍ଣ ପରମାଣୁ ଅସ୍ତ୍ର ନିରସ୍ତ୍ରୀକରଣ ଚୁକ୍ତିରେ ସ୍ୱାକ୍ଷର କଲା ନାହିଁ । ଭାରତର ଉଦ୍ଦେଶ୍ୟ ବିଶ୍ୱକୁ ସମ୍ପୂର୍ଣ୍ଣରୂପେ ଅଣୁଅସ୍ତ୍ର ମୁକ୍ତ ଦେଶରେ ପରିଣତ କରିବା । ମାତ୍ର ବିକଶିତ ଓ ମାରାତ୍ମକ ଅସ୍ତ୍ର ଉତ୍ପାଦିତ ରାଷ୍ଟ୍ରର ଛଳନା ତଥା କୁମ୍ଭୀରକାନ୍ଦଣା କଦାପି ବିଶ୍ୱ ନିରସ୍ତ୍ରୀକରଣ ପ୍ରକ୍ରିୟାକୁ ସଫଳ କରିପାରିବ ନାହିଁ । ମଇ ମାସ ୧୧ ଓ ୧୩ ତାରିଖ ୧୯୯୮ ମସିହାରେ ଭାରତ ଗୋଟିଏ ଉଦ୍‌ଜାନ ବୋମା ସହିତ ମୋଟ ୫ଟି ପରମାଣୁ ବୋମା ପରୀକ୍ଷା କରିବାଦ୍ୱାରା ବିଶ୍ୱର ବିଭିନ୍ନ ରାଷ୍ଟ୍ର ପ୍ରତିକ୍ରିୟା ପ୍ରକାଶ କରିଛନ୍ତି । ଅଥଚ ଏହା ପୂର୍ବରୁ ଆମେରିକା ୧୨୦୦ ଥର, ରୁଷିଆ ୭୦୦ ଥର, ଚୀନ ୪୫ ଥର ଓ ଇଂଲଣ୍ଡ ଫ୍ରାନ୍‌ସ ଏକାଧିକଥର ପରମାଣୁ ବୋମା ପରୀକ୍ଷା କରି ସାରିଛନ୍ତି । ଭାରତ ପରେ ପାକିସ୍ଥାନ ମଧ୍ୟ ଏହାର ପରୀକ୍ଷା କରିଛି । ଆନ୍ତରିକତାର ଅଭାବରୁ ନିରସ୍ତ୍ରୀକରଣ ପ୍ରକ୍ରିୟା ସମ୍ଭବ ହୋଇପାରୁ ନାହିଁ । ସୁଖର କଥା ୧୯୮୮ ମସିହାରୁ ରୁଷିଆର ବାର୍ଷିକ ବଜେଟରେ ସାମରିକ ବ୍ୟୟ ହ୍ରାସ ପାଇଆସୁଛି । ଅଥଚ ଆମେରିକାରେ ଏହି ଖର୍ଚ୍ଚ ବୃଦ୍ଧି ପାଇବାରେ ଲାଗିଛି । ଏହି ଅସ୍ତ୍ର ପ୍ରତିଯୋଗିତା ଫଳରେ ବିଶ୍ୱପୁଣି ଏକ ବିଶ୍ୱଯୁଦ୍ଧ ଆଡ଼କୁ ଯେ ଗତି କରୁଛି, ତାହା କହିବା ଅନାବଶ୍ୟକ ମାତ୍ର ।

ବିଶ୍ୱର ସାଂପ୍ରତିକ ସ୍ଥିତି ଯାହା ସେଥିରେ ନିରସ୍ତ୍ରୀକରଣ ପ୍ରକ୍ରିୟାର ଏକ ଆଶୁ ସମାଧାନ ହେବା ସର୍ବାଦୌ ବାଞ୍ଛନୀୟ । ବର୍ତ୍ତମାନ ପରମାଣୁ ଅସ୍ତ୍ରଶସ୍ତ୍ରର ନିର୍ମାଣ ବନ୍ଦ ହେବା ସହିତ ଯେଉଁ ରାଷ୍ଟ୍ରମାନେ ସେମାନଙ୍କ ଅସ୍ତ୍ରାଗାରରେ ଏହିସବୁ ଅସ୍ତ୍ରଗୁଡ଼ିକ ଗଚ୍ଛିତ ରଖିଛନ୍ତି, ତାକୁ ସମ୍ପୂର୍ଣ୍ଣ ବିଲୋପ କରିବା ଉଚିତ । ଏପରିକି ପରମାଣୁ ଅସ୍ତ୍ର ନିମିତ୍ତ ବ୍ୟବହୃତ ପଦାର୍ଥମାନଙ୍କର ଉତ୍ପାଦନ ବନ୍ଦ ହେବା ସଙ୍ଗେ ସଙ୍ଗେ ଏହି ଅସ୍ତ୍ରର ବିକ୍ରୟ ଉପରେ ନିଷେଧାଦେଶ ଜାରି କରିବା ଆବଶ୍ୟକ । ବିଶ୍ୱ ଯେତେବେଳେ କ୍ଷୁଧା ଓ ବ୍ୟାଧି ପୀଡ଼ିତ ସେତେବେଳେ ପ୍ରଚୁର ପରିମାଣ ଅର୍ଥ ବ୍ୟୟକରି ବିଶ୍ୱଧ୍ୱଂସକାରୀ ଅସ୍ତ୍ର ନିର୍ମାଣ କରିବାର କୌଣସି ଆବଶ୍ୟକତା ନାହିଁ । ଜାତିସଂଘର ଏ ସମ୍ପର୍କରେ ଉଦ୍ୟମ ପ୍ରଶଂସନୀୟ ହେଲେ ହେଁ, ତା'ର ମତାମତ ପ୍ରତି ସମ୍ମାନ ଦେବା ପାଇଁ ବିକଶିତ ରାଷ୍ଟ୍ରଗୁଡ଼ିକ ମାନସିକ ସ୍ତରରେ ପ୍ରସ୍ତୁତ ରହିବା ଉଚିତ । ନଚେତ୍ କେବଳ ଆଲୋଚନା ଦ୍ୱାରା କୌଣସି ଫଳପ୍ରଦ ସମାଧାନ ହୋଇପାରିବ ନାହିଁ ।

ବିଶ୍ୱକୁ ଆସନ୍ନ ବିପଦରୁ ରକ୍ଷା ପାଇବାକୁ ହେଲେ ନିରସ୍ତ୍ରୀକରଣ ପାଇଁ ଫଳପ୍ରଦ ପଦକ୍ଷେପ ଗ୍ରହଣ କରାଯିବା ଆବଶ୍ୟକ । ପ୍ରତିରକ୍ଷା ବାବଦରେ ଯେଉଁ ପ୍ରଚୁର ପରିମାଣରେ ଅର୍ଥ ଖର୍ଚ୍ଚ କରାଯାଇଛି, ତାହାକୁ ମାନବ ସମାଜର କଲ୍ୟାଣ ନିମିତ୍ତ ବ୍ୟୟ କରାଯାଇପାରିଲେ ବିଶ୍ୱର ମଙ୍ଗଳ ସାଧିତ ହୋଇପାରିବ । ବିଜ୍ଞାନର ଅଭୂତପୂର୍ବ ବିକାଶ ଦ୍ୱାରା ବିଶ୍ୱ ଖୁବ୍ ଛୋଟ ହୋଇଯାଇଛି । ପରସ୍ପର ମଧ୍ୟରେ ଭାବବିନିମୟ ପ୍ରକ୍ରିୟା ମଧ୍ୟ ସହଜ ହୋଇପଡ଼ିଛି । ଏହି

ପରିପ୍ରେକ୍ଷୀରେ ମାରାତ୍ମକ ଅସ୍ତ୍ର ପ୍ରତିଯୋଗିତା ନିଶ୍ଚିତ ଭାବରେ ଏକ ଅମାନବିକ କାର୍ଯ୍ୟ । ଧ୍ୱଂସ ପାଇଁ ମଣିଷର ଜନ୍ମ ନୁହେଁ ; ବିଶ୍ୱକୁ ସୁସ୍ଥ ସୁନ୍ଦର କରି ଗଢ଼ି ତୋଳିବା ମାନବର ପରମ ଧର୍ମ । ଏହି ଦୃଷ୍ଟିରୁ ବିଶ୍ୱର ପ୍ରତ୍ୟେକ ରାଷ୍ଟ୍ର ନିରସ୍ତ୍ରୀକରଣ ପ୍ରକ୍ରିୟାରେ ନିଜକୁ ସାମିଲ କରିଦେଇ ସୁସ୍ଥ ମସ୍ତିଷ୍କର ଯଥାର୍ଥ ପରିଚୟ ଦେବା ଆବଶ୍ୟକ ।



# ଭାରତ ଓ ଗାଣତାନ୍ତ୍ରିକ ସମାଜବାଦ

**(ଉପକ୍ରମ, ଗଣତାନ୍ତ୍ରିକ ସମାଜବାଦର ଅର୍ଥ , ଭାରତର ସମ୍ବିଧାନରେ ଏହାର ସ୍ୱରୂପ, ଗାଣତାନ୍ତ୍ରିକ ସମାଜବାଦର ସୃଷ୍ଟି ଇତିହାସ, ଏହାର ପ୍ରତିବନ୍ଧକ, ପ୍ରତିକାର ପାଇଁ କେତେକ ପନ୍ଥା, ଉପସଂହାର)**

ସମାଜରେ ବସବାସ କରୁଥିବା ପ୍ରତ୍ୟେକ ବ୍ୟକ୍ତି ସମାନ ସୁବିଧା ଓ ସୁଯୋଗ ଲାଭ କରିବାକୁ ଇଚ୍ଛା କରିଥାନ୍ତି । ଗୋଟିଏ ରାଷ୍ଟ୍ର ମଧ୍ୟ ତା'ର ନାଗରିକମାନଙ୍କୁ ସମାନ ନ୍ୟାୟ ଓ ସୁବିଧା ପ୍ରଦାନ କରିବା ସାମ୍ବିଧାନିକ କର୍ତ୍ତବ୍ୟ । ମାତ୍ର ବାସ୍ତବରେ ଦେଖାଯାଇଥାଏ, କେତେକ ବ୍ୟକ୍ତି ପ୍ରଚୁର ପରିମାଣରେ ସୁବିଧା-ସୁଯୋଗ ଉପଭୋଗ କରୁଥିବା ସମୟରେ, ଅନ୍ୟ କେତେକ ସାଧାରଣ ସୁବିଧା ମଧ୍ୟ ଲାଭ କରିବାକୁ ସମର୍ଥ ହୋଇପାରି ନ ଥାନ୍ତି । ଏହି ଅସମତା ଶ୍ରେଣୀସଂଘର୍ଷ ପାଇଁ ପଥ ପରିଷ୍କାର କରି ଦେଇଥାଏ । ଆର୍ଥନୀତିକ ବୈଷମ୍ୟ ଯୋଗୁଁ ସମାଜରେ ଦୁଇଟି ଗୋଷ୍ଠୀ ମୁଣ୍ଡ ଟେକିଥାନ୍ତି । ଗୋଟିଏ ସମାଜମଙ୍ଗଳ ରାଷ୍ଟ୍ରରେ ଏହି ପ୍ରକାର ବାଛବିଚାର ନିଶ୍ଚିତ ଭାବରେ ଦୁର୍ଭାଗ୍ୟର ବିଷୟ । ଅତୀତରେ ରାଜତନ୍ତ୍ର ବିରୋଧରେ ବହୁ ଆନ୍ଦୋଳନ ହୋଇଛି । ଏପରି ଏକ ସମୟ ଆସିଛି, ଯେତେବେଳେ ପୃଥିବୀରୁ ସମ୍ପୂର୍ଣ୍ଣ ଭାବରେ ଏହି ଶାସନ ବିଲୁପ୍ତ ହୋଇଯାଇଛି । ଶୋଷଣମୁକ୍ତ ସମାଜ ଗଠନ ନିମିତ୍ତ ବିଭିନ୍ନ ସ୍ଥାନରେ ସ୍ୱର ଉତ୍ତୋଳିତ ହୋଇଛି । ଭାରତରେ ସ୍ୱାଧୀନତା ଆନ୍ଦୋଳନ ସମୟରୁ ଏହିପରି ଏକ ସମାଜବାଦୀ ସମାଜର ପ୍ରତିଷ୍ଠା ନିମିତ୍ତ ରୂପରେଖ ପ୍ରସ୍ତୁତ ହୋଇଥିଲା । ମହାତ୍ମାଗାନ୍ଧି ପ୍ରଥମେ ଏହାର ରୂପରେଖ ପ୍ରସ୍ତୁତ କରିଥିଲେ । ସ୍ୱାଧୀନତା ପରେ ଭାରତରେ ପଣ୍ଡିତ ଜବାହରଲାଲ ନେହେରୁ ଗାଣତାନ୍ତ୍ରିକ ସମାଜବାଦ ପ୍ରତିଷ୍ଠା କରିବାକୁ ଆଗ୍ରହ ପ୍ରକାଶ କରିଥିଲେ ।

ଗଣତାନ୍ତ୍ରିକ ସମାଜବାଦ ମୁଖ୍ୟତଃ ସମାନତାର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ । ଗୋଟିଏ ସମାଜରେ ବାସ କରୁଥିବା ବ୍ୟକ୍ତିଙ୍କ ମଧ୍ୟରେ ଥିଲା-ନ ଥିଲାର ଭେଦଭାବ ସୃଷ୍ଟି କରିବା ସମାଜ ପାଇଁ ସବୁଠାରୁ ଅମଙ୍ଗଳକର । ସାମାଜିକ ନ୍ୟାୟ ପ୍ରତିଷ୍ଠା କରିବାକୁ ହେଲେ ସମାଜରୁ ଏହିପ୍ରକାର ମନୋଭାବ ଦୂର ହେବା ସର୍ବାଦୌ ଆବଶ୍ୟକ । ସମାନ ନ୍ୟାୟ, ସମାନ ଅଧିକାର ଓ ସମାନ ସୁବିଧା ସୁଯୋଗ– ଏହା ଯେଉଁ ସମାଜରେ ଉପଲବ୍ଧ, ତାହାହିଁ ଗାଣତାନ୍ତ୍ରିକ ସମାଜ । ଗାଣତାନ୍ତ୍ରିକ ସମାଜବାଦରେ ଧନୀ-ନିର୍ଦ୍ଧନ, ଶୋଷକ-ଶୋଷିତ, ପୀଡ଼କ-ପୀଡ଼ିତର ସ୍ଥାନ ନ

ଥାଏ । ସମାଜ ଉପରେ ରହିଥାଏ ସମସ୍ତଙ୍କର ସମାନ ଅଧିକାର । ଜଣେ ବ୍ୟକ୍ତିର ପରିଶ୍ରମ ଅନୁଯାୟୀ ତା'ର ମୂଲ୍ୟ ପ୍ରଦାନ କରାଯାଇଥାଏ । ଏହାଦ୍ୱାରା ସାମାଜିକ ଅସ୍ଥିରତା ଦୂର ହୋଇଥାଏ । ସମାଜର ସଂକୀର୍ଣ୍ଣ ମନୋଭାବ ଦୂରୀଭୂତ ହୋଇଥାଏ । ଭାରତରେ ସ୍ୱାଧୀନତା ପୂର୍ବରୁ ଏହି ପ୍ରକାର ସମାଜର ରୂପରେଖ ପରିକଳ୍ପିତ ହୋଇଥିଲା । ଗାନ୍ଧିଜୀଙ୍କର ମଧ ସ୍ୱପ୍ନ ରହିଥିଲା ଭାରତକୁ ଏହିପରି ଏକ ସମାଜ ରୂପେ ଗଢ଼ିବାକୁ । ପଣ୍ଡିତ ନେହେରୁଙ୍କର ପରିକଳ୍ପିତ ସମାଜ ବ୍ୟବସ୍ଥା ଥିଲା ଅନୁରୂପ । ସେଥିପାଇଁ ସେ କହିଥିଲେ – "Our basic aim is to create an ideal welfare state on a socialistic pattern, a classless society in which none is exploited, where there is no class conflict, regional rivalry or groupism." ଏହି ସମାଜରେ ଅର୍ଥନୀତି, ରାଜନୀତି ଓ ସମାଜନୀତି ଦୃଷ୍ଟିରୁ ସମସ୍ତେ ସମାନ । କେହି ମୂଲିଆ ନୁହେଁ କିମ୍ୱା କେହି ମାଲିକ ନୁହେଁ । ସମସ୍ତଙ୍କର ପରିଚୟ ଏକ ଏବଂ ତାହା ହେଉଛି ମଣିଷ ଜାତି । ସ୍ୱାଧୀନ ଭାବରେ ମତବ୍ୟକ୍ତ କରିବା ପାଇଁ ବା କାର୍ଯ୍ୟ ନିମିତ୍ତ ଅବାଧ କ୍ଷମତା ରହିଛି ଏଥିରେ । ଏହାର ଅର୍ଥ ନୁହେଁ; ସମାଜର ଅମଙ୍ଗଳ ସାଧନ ପାଇଁ କାର୍ଯ୍ୟ କରିବା । ଦେଶର ଅଗଣିତ ବ୍ୟକ୍ତିର ସ୍ୱାର୍ଥ ପାଇଁ ଯାହା ଅଭିପ୍ରେତ, ତାହାହିଁ ଏହି ସମାଜ କରିଥାଏ । ଶ୍ରେଣୀ ସଂଘର୍ଷର ଏହା ପକ୍ଷପାତି ନୁହେଁ । ଶ୍ରେଣୀବିହୀନ ସମାଜ ପରିକଳ୍ପନା ଏହାର ଏକମାତ୍ର ଧ୍ୟେୟ ।

ଭାରତରେ ଏହିପ୍ରକାର ସମାଜ ବ୍ୟବସ୍ଥା ବହୁ ପ୍ରାଚୀନ । ବୈଦିକ ଯୁଗରୁ ଭାରତୀୟ ମୁନିଋଷିମାନଙ୍କ ପରିକଳ୍ପନାରେ ଏହିପରି ଚିନ୍ତାଧାରା ରହିଥିଲା । ସେଥିପାଇଁ ସମଗ୍ର ଜଗତର ମଙ୍ଗଳ ପାଇଁ ସେମାନେ କାର୍ଯ୍ୟ କରୁଥିଲେ । ସମସ୍ତଙ୍କୁ ସୁଖରେ ଜୀବନ ଯାପନ କରିବା ପାଇଁ ସେମାନେ ପରାମର୍ଶ ଦେଉଥିଲେ । କାୟ, ମନ ଓ ବାକ୍ୟରେ ଜାତି ଓ ଜନତା ପାଇଁ ସେମାନେ ପ୍ରାର୍ଥନା କରୁଥିଲେ ଈଶ୍ୱରଙ୍କ ନିକଟରେ । ସ୍ୱାଧୀନତା ଆନ୍ଦୋଳନ ସମୟରେ ମଧ ସ୍ୱାଧୀନତା ସଂଗ୍ରାମୀଗଣଙ୍କ ଚିନ୍ତାଧାରାରେ ଏହି ପ୍ରକାର ସମାଜ ରହିଥିଲା । ସ୍ୱାଧୀନତା ଲାଭ ପରେ ତାହାକୁ ସାକାର କରିବା ପାଇଁ ତତ୍କାଳୀନ ଚିନ୍ତାନାୟକଗଣ କେତେକ ପଦକ୍ଷେପ ଗ୍ରହଣ କରିଥିଲେ । ସମ୍ବିଧାନ ପ୍ରଣୟନ ସମୟରେ ଭାରତର ଏହି ଆଭିମୁଖ୍ୟ ସେଥିରେ ପ୍ରତିଫଳିତ ହୋଇଥିବାର ଦେଖାଯାଏ । ପୁନରାୟ ୧୯୭୬ ମସିହାରେ ଯେତେବେଳେ ସମ୍ବିଧାନର ୪୨ତମ ସଂଶୋଧନ ହେଲା, ସେତେବେଳେ ଉକ୍ତ 'ସମାଜବାଦୀ' ଶବ୍ଦଟି ଉପରେ ଗୁରୁତ୍ୱ ଆରୋପ କରାଯାଇ ମୁଖବନ୍ଧରେ ଲେଖାଗଲା – 'We the people of India having solemnly resolved to constitute India into a sovereign socialist secular democratic republic – ''ଅର୍ଥାତ୍ ଭାରତ ଏକ ସାର୍ବଭୌମ, ସମାଜବାଦୀ ଧର୍ମନିରପେକ୍ଷ ଗଣତାନ୍ତ୍ରିକ ସାଧାରଣତନ୍ତ୍ର ରାଷ୍ଟ୍ର ବୋଲି ପରିଚିତ ହୋଇଛି । ମହାତ୍ମାଗାନ୍ଧି ଯେଉଁ ସମାଜବାଦୀ ରାଷ୍ଟ୍ରର ପରିକଳ୍ପନା କରିଥିଲେ ପଣ୍ଡିତ ନେହେରୁଙ୍କ ପ୍ରଧାନମନ୍ତ୍ରିତ୍ୱ ସମୟରେ ତାହା ସାକାର ରୂପ ଧାରଣ କରିଥିଲା । ସ୍ୱର୍ଗତା ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧି ଭାରତକୁ ଏକ ସ୍ୱତନ୍ତ୍ର ଢାଞ୍ଚାର ସମାଜବାଦୀ ରାଷ୍ଟ୍ରରୂପେ ଗଢ଼ି ତୋଳିବାକୁ ଚେଷ୍ଟା କରିଥିଲେ । ତାଙ୍କ ପରେ ମଧ ସେହିପ୍ରକାର ବ୍ୟବସ୍ଥାକୁ

ସ୍ଥିର ରଖିବା ପାଇଁ ପରବର୍ତ୍ତୀ ରାଜନୀତିକ ନେତାଗଣ ଚେଷ୍ଟା କରିଛନ୍ତି । କେବଳ ୧୯୭୫ ମସିହାରେ ଜାତୀୟ ଜରୁରୀକାଳୀନ ପରିସ୍ଥିତି ଜାରି ସମୟରେ ଏହି ସମାଜବାଦୀ ଗଣତନ୍ତ୍ର ରାଷ୍ଟ୍ର ଏକଛତ୍ରବାଦରେ ପରିଣତ ହୋଇଥିଲା । ସେହି ତ୍ରୁଟି ପାଇଁ ଜଣେ ପ୍ରଧାନମନ୍ତ୍ରୀଙ୍କୁ କମ୍ ଦାନ ଦେବାକୁ ପଡ଼ି ନାହିଁ । ତେବେ ସେ ଯାହା ହେଉନା କାହିଁକି, ଭାରତର ସମ୍ବିଧାନରେ ସମସ୍ତ ଲୋକଙ୍କୁ ସମାନ ନ୍ୟାୟ ଓ ସାମାଜିକ ସମ୍ମାନ ଦେବା ନିମିତ୍ତ ନିର୍ଦ୍ଦେଶ କରାଯାଇଛି । ଏତଦ୍ ବ୍ୟତୀତ ଏକପ୍ରକାର ସାମାଜିକ ତଥା ରାଜନୀତିକ ନ୍ୟାୟ ପ୍ରଦାନ ସହିତ ଭ୍ରାତୃତ୍ୱଭାବର ଜାଗରଣ ନିମିତ୍ତ ଏଥିରେ ଆହ୍ୱାନ ଦିଆଯାଇଛି । ଆମ ସମ୍ବିଧାନ ଆମ ଚିନ୍ତାଧାରାର ପ୍ରତିଫଳନ । ଏକ ଗଣତାନ୍ତ୍ରିକ ସମାଜବାଦୀ ରାଷ୍ଟ୍ର ଗଢ଼ିବା ନିମିତ୍ତ ବହୁ ପୂର୍ବରୁ ଆମେ ଯାହା ଚିନ୍ତା କରି ଆସିଥିଲୁଁ, ଆମର ସମ୍ବିଧାନ ପ୍ରଣେତାଗଣ ତାହାକୁ ଲିପିବଦ୍ଧ କରି ସେମାନଙ୍କ ଦୂରଦୃଷ୍ଟିକୋଣର ପରିଚୟ ପ୍ରଦାନ କରିଛନ୍ତି ।

ଗଣତାନ୍ତ୍ରିକ ସମାଜବାଦର ସୃଷ୍ଟି ବିପ୍ଲବରୁ । ଶୋଷିତ ଶୋଷଣର ଚରମସୀମାରେ ପହଞ୍ଚିଲେ, ରକ୍ତାକ୍ତ ସଂଗ୍ରାମ ନିମିତ୍ତ ମାନସିକ ସ୍ତରରେ ପ୍ରସ୍ତୁତ ହୋଇଯାଇଥାଏ । ନିଜର ହକ୍ ଆଦାୟ ନିମିତ୍ତ ବିପ୍ଲବର ଆବଶ୍ୟକତା ରହିଛି । ଡାରଉଇନ୍‌ଙ୍କ ବିବର୍ତ୍ତନ ବାଦରେ 'Struggle for existence' ବା ଜୀବନ ସଂଗ୍ରାମ ନାମରେ ଗୋଟିଏ ସୂତ୍ର ରହିଛି । ଅର୍ଥାତ୍ ବଞ୍ଚିରହିବାକୁ ହେଲେ ସଂଗ୍ରାମର ପ୍ରୟୋଜନ ରହିଛି । ୧୭୮୯ ମସିହାରେ ଫରାସୀରେ ଯେଉଁ ରାଷ୍ଟ୍ରବିପ୍ଳବ ହେଲା, ତା'ର ମୂଳ ପ୍ରେରଣା ବିବର୍ତ୍ତନବାଦର ଦ୍ୱିତୀୟ ସୂତ୍ରରୁ ଆସିଛି । ଫରାସୀ ରାଷ୍ଟ୍ର ବିପ୍ଳବ ପରେ ବିଶ୍ୱରେ ଏକ ନୂତନ ଚିନ୍ତାଧାରାର ଉଦ୍ରେକ ଘଟିଲା । ରାଜତନ୍ତ୍ର ବିରୋଧୀ ବିପ୍ଳବରୁ ଜନ୍ମନେଲା ନୂତନ ଗଣତନ୍ତ୍ର । ସାମ୍ୟ ଓ ସ୍ୱାଧୀନତାର ନୂତନ ସ୍ପର୍ଶରେ ପୁଲକିତ ହୋଇଉଠିଲେ ଫ୍ରାନ୍‌ସର ଜନସାଧାରଣ । ଏହି ନୂତନ ଚିନ୍ତାଧାରା ସମଗ୍ର ବିଶ୍ୱକୁ ଆଲୋଡ଼ିତ କଲା । ସ୍ୱାଧୀନତା ପାଇବାକୁ ଆକୁଳ ପ୍ରେରଣା ସୃଷ୍ଟି ହେଲା ବିଶ୍ୱବାସୀଙ୍କ ମନରେ । କାର୍ଲମାର୍କସଙ୍କ ନୂତନ ଆର୍ଥନୀତିକ ବିଶ୍ଳେଷଣ ଖଟିଖିଆଙ୍କ ଆଖି ଖୋଲିଦେଲା । ଉତ୍ପାଦନରେ ଉତ୍ପାଦକ ଶ୍ରେଣୀର ଯେ ଅଧିକାର ରହିଛି, ତାହା ସେମାନେ କଦାପି ଚିନ୍ତା କରିପାରି ନ ଥିଲେ । ପୁନରାୟ ଇଂଲଣ୍ଡରେ ଶିଳ୍ପ ବିପ୍ଳବ ପରେ ଶ୍ରମିକ ଶ୍ରେଣୀ ନିଜର ହକ୍ ହାସଲ ପାଇଁ କ୍ଷମତା ଲାଭ କଲେ । ଶ୍ରମିକ ଶ୍ରେଣୀକୁ ପ୍ରାଧାନ୍ୟ ଦିଆଯିବା ଦ୍ୱାରା ଯୁଗ ଯୁଗ ଧରି ପ୍ରଚଳିତ ହୋଇ ଆସୁଥିବା ନୀତିରେ ପରିବର୍ତ୍ତନ ଘଟିଲା । ଶ୍ରମିକ ଶ୍ରେଣୀ ରାଷ୍ଟ୍ରରୁ ତା'ର ଉଚିତ ଅଧିକାର ଲାଭ କରିବାକୁ ସମର୍ଥ ହେଲେ । ୧୯୧୭ ମସିହାରେ ରୁଷିଆରେ ସଙ୍ଘଟିତ ହୋଇଥିବା ଅକ୍ଟୋବର ବିପ୍ଳବ ବା ବଲ୍‌ସେଭିକ ଆନ୍ଦୋଳନ ବିଶ୍ୱରେ ଆଣିଲା କ୍ରାନ୍ତିକାରୀ ପରିବର୍ତ୍ତନ । ଦୀର୍ଘଦିନ ଧରି ଶୋଷିତ ହୋଇ ଆସୁଥିବା ସାଧାରଣ ଜନତା ଶୋଷକ ଗୋଷ୍ଠୀ ବିରୋଧରେ ଆରମ୍ଭ କଲେ ରକ୍ତାକ୍ତ ସଂଗ୍ରାମ । ଶୋଷିତର ହେଲା ବିଜୟ । ଏକ ନୂତନ ସମାଜ ବ୍ୟବସ୍ଥା ପ୍ରଚଳିତ ହେଲା ରୁଷିଆରେ । ଏହାର ନାମ ହେଲା ସମାଜବାଦୀ ସମାଜ । ସମାଜବାଦର ନୂତନ ଚିନ୍ତାଧାରା ବିଶ୍ୱର ବହୁ ରାଷ୍ଟ୍ରକୁ ପ୍ରଭାବିତ କଲା । ପୃଥିବୀର ସମସ୍ତ ବ୍ୟକ୍ତି ସମାନ ନ୍ୟାୟ ଓ ସୁଯୋଗ ପାଇବା ନିମିତ୍ତ ବ୍ୟାକୁଳ ହୋଇଉଠିଲେ ।

ପରାଧୀନ ରାଷ୍ଟ୍ରଗୁଡ଼ିକ ସ୍ୱାଧୀନତା ଲାଭ ପାଇଁ ଆନ୍ଦୋଳନର ଡାକରା ଦେଲେ । ଯୁଗଯୁଗର ଅନ୍ଧପୁଟୁଳି ଆଖିରୁ ଖୋଲିଗଲା । ନୂତନ ଜ୍ଞାନ ଓ ନୂତନ ଚିନ୍ତାଧାରା ସମସ୍ତ ଜଗତବାସୀଙ୍କୁ ପ୍ରଲୁବ୍ଧ କଲା । ଏହି ନୂତନ ଚିନ୍ତାଧାରା ହିଁ ସମାଜବାଦୀ ଚିନ୍ତାଧାରା । ଭାରତ ସ୍ୱାଧୀନ ହେବାପରେ ଗଣତାନ୍ତ୍ରିକ ସମାଜବାଦକୁ ଗ୍ରହଣ କରିନେଲା ସମଗ୍ର ଭାରତବାସୀଙ୍କ ମଙ୍ଗଳ ନିମିତ୍ତ । ତେଣୁ ବର୍ତ୍ତମାନ ଭାରତରେ ଯେଉଁ ସମାଜବାଦର ପ୍ରଚଳନ ହୋଇଛି ତାହା ଗାଣତାନ୍ତ୍ରିକ ସମାଜବାଦ ।

ଭାରତରେ ଗାଣତାନ୍ତ୍ରିକ ସମାଜବାଦର ପ୍ରଚଳନ ଥିଲେ ହେଁ ଏହାର ମୌଳିକ ଲକ୍ଷ୍ୟ ସମ୍ପୂର୍ଣ୍ଣ ରୂପେ ପୂରଣ ହୋଇପାରି ନାହିଁ । ଅବଶ୍ୟ ଭାରତର ଯେ କୌଣସି ନାଗରିକ ରାଷ୍ଟ୍ରପତି ବା ପ୍ରଧାନମନ୍ତ୍ରୀ ହୋଇପାରନ୍ତି । ମାତ୍ର ତଦ୍ଦ୍ୱାରା ଏହି ବ୍ୟବସ୍ଥା ଯେ ସମ୍ପୂର୍ଣ୍ଣ ସଫଳ ହୋଇପାରିଛି, କହିହେବ ନାହିଁ । ଆମ ଦେଶରେ ଏବେ ମଧ ଗରିବ ଓ ଧନୀବ୍ୟକ୍ତିଙ୍କ ମଧରେ ରହିଥିବା ତାରତମ୍ୟ ଦୂର ହୋଇପାରି ନାହିଁ । ଧନୀ ଅଧିକ ଧନୀ ହେଉଥିବା ସମୟରେ ଗରିବ ଅଧିକ ଗରିବ ହେଉଛି । ସାମାଜିକ ନ୍ୟାୟ ସମସ୍ତଙ୍କ ପାଇଁ ସମାନ ହୋଇପାରୁ ନାହିଁ । ଭେଦଭାବ ନୀତି ଆମ ସାମାଜିକ ଜୀବନରୁ ସଂପୂର୍ଣ୍ଣ ଦୂର କରାଯାଇ ପାରି ନାହିଁ । ଅର୍ଥନୀତିର ସୁଷମ ବଣ୍ଟନ ହୋଇ ନ ପାରିଲେ ଗାଣତାନ୍ତ୍ରିକ ସମାଜବାଦ ମୂଲ୍ୟହୀନ ହୋଇଥାଏ । ଏବେ ମଧ ଭାରତର ରାଜନୀତି ଓ ସମାଜନୀତି ଅଳ୍ପ କେତେଜଣ ଧନୀ ବ୍ୟକ୍ତିଙ୍କ ହାତରେ ବନ୍ଦୀ ଅବସ୍ଥାରେ ରହିଛି । ଧର୍ମକୁ ନେଇ ସଂଘର୍ଷ ଘଟୁଛି । ରାଜନୀତି କ୍ଷେତ୍ରରେ ମଧ ଧର୍ମକୁ ନେଇ ବିଭ୍ରାଟ ସୃଷ୍ଟି ହେଉଛି । ସାଂପ୍ରଦାୟିକତାବାଦ ମୁଣ୍ଡ ଟେକିଛି । ସମାଜବାଦୀ ରାଷ୍ଟ୍ରରେ ବ୍ୟକ୍ତି ସମାଜ ନିକଟରେ ଦାୟୀ ରହିଥାଏ ନିଜ କାର୍ଯ୍ୟକଳାପ ପାଇଁ । ମାତ୍ର ଭାରତରେ ଆମର ସାମାଜିକ ଜୀବନ ଏପରି ବିପର୍ଯ୍ୟସ୍ତ ହୋଇପଡ଼ିଛି ଯେ, କିଏ କାହା ନିକଟରେ ଦାୟୀ ନୁହନ୍ତି । ପଞ୍ଚବାର୍ଷିକ ଯୋଜନାରେ ବହୁ ଅର୍ଥ ବ୍ୟୟ ହେଉଛି । ଅଥଚ ତା'ର ସୁଫଳ ଭାରତ ବା ଜନସାଧାରଣ ପାଇପାରୁ ନାହାନ୍ତି । କାଗଜପତ୍ରରେ ଯୋଜନାମାନ ଚାଲିଛି । ପ୍ରଶାସନିକ ସ୍ଥାଣୁତା ଏଥିପାଇଁ ବହୁପରିମାଣରେ ଦାୟୀ । ଏତଦ୍‌ବ୍ୟତୀତ ରାଜନୀତିକ ବ୍ୟକ୍ତିବିଶେଷଙ୍କ ଚରିତ୍ର ଏବେ ମଧ ସଂଶୟାଚ୍ଛନ୍ନ । ରାଜନୀତି ଆଜି ଭାରତରେ ଦେଶସେବା ନ ହୋଇ ଆତ୍ମସେବାରେ ପରିଣତ ହୋଇଛି । ଏହିସବୁ କାରଣ ପାଇଁ ଭାରତରେ ଗାଣତାନ୍ତ୍ରିକ ସମାଜବାଦ ସଫଳ ହୋଇପାରୁ ନାହିଁ ।

ଗାଣତାନ୍ତ୍ରିକ ସମାଜବାଦର ସଫଳତା ପାଇଁ ଉଭୟ ପ୍ରଶାସନ ଓ ଜନସାଧାରଣଙ୍କ ମଧରେ ସହଯୋଗ ପ୍ରତିଷ୍ଠିତ ହେବା ଆବଶ୍ୟକ । ଅର୍ଥନୀତିର ବିକେନ୍ଦ୍ରୀକରଣ ହୋଇ ନ ପାରିଲେ ଏହାର ସୁଫଳ ସମସ୍ତେ ପାଇପାରିବେ ନାହିଁ । ବୃହତ ଓ ଅତ୍ୟାବଶ୍ୟକ ବ୍ୟବସାୟଗୁଡ଼ିକ ସରକାରାଧୀନ ହେବା ଉଚିତ । ବିକାଶ ନିମିତ୍ତ ଯେଉଁ ଯୋଜନାମାନ କାର୍ଯ୍ୟକାରୀ ହେଉଛି, ତାକୁ ଅଧିକ ସକ୍ରିୟ ଓ ଫଳପ୍ରଦ କରିବା ପାଇଁ ଜନସାଧାରଣଙ୍କ ସହଯୋଗ କାମନା କରିବା ବାଞ୍ଛନୀୟ । ଯେଉଁଠାରେ ପ୍ରଶାସନିକ କଳ ନିଷ୍କ୍ରିୟ ହୋଇଯାଉଛି କିମ୍ବା ଯୋଜନା ଅଧିକାରୀ ମନ୍ଦ ଉଦ୍ଦେଶ୍ୟ ନେଇ ଏହାର ପ୍ରଣୟନ ପାଇଁ ପଦକ୍ଷେପ ନେଉଛନ୍ତି, ସେଠାରେ ଜନସାଧାରଣଙ୍କଦ୍ୱାରା ତା'ର ତୀବ୍ର ପ୍ରତିବାଦ ହେବା ଆବଶ୍ୟକ । ସାମାଜିକ ଜାଗରଣ ସୃଷ୍ଟି

କରି ଏହାକୁ ଏକ ସାମାଜିକ ଆନ୍ଦୋଳନରେ ପରିଣତ କରିପାରିଲେ ଗାଣତାନ୍ତ୍ରିକ ସମାଜବାଦ ବହୁପରିମାଣରେ ସଫଳ ହୋଇପାରିବ । ଦୁର୍ନୀତିପରାୟଣ ରାଜନୀତିକ ନେତାଙ୍କୁ ଜନସାଧାରଣ ସଂପୂର୍ଣ୍ଣ ଭାବରେ ପରିତ୍ୟାଗ କରିବା ଉଚିତ । ସାଧାରଣ ମଣିଷର ଜୀବନଧାରଣ ମାନ ଉନ୍ନତ ହେଲେ ଏବଂ ଗ୍ରାମାଞ୍ଚଳର ଅର୍ଥନୀତି ସମୃଦ୍ଧ ହେଲେ, ଭାରତରେ ପ୍ରଚଳିତ ଏହି ସମାଜବାଦ ନିଶ୍ଚିତଭାବେ ଫଳପ୍ରସୂ ହୋଇପାରିବ ।

ଭାରତର ଗାଣତାନ୍ତ୍ରିକ ସମାଜବାଦ ଏକ ମିଶ୍ରିତ ରୂପ । ଫ୍ରାନ୍ସ କିମ୍ବା ରୁଷିଆର ସମାଜବାଦ ସହିତ ଏହାକୁ ତୁଳନା କରାଯାଇ ନ ପାରେ । ଜନସାଧାରଣଙ୍କ ସ୍ୱାର୍ଥକୁ ଅଗ୍ରାଧିକାର ଭିତ୍ତିରେ ପ୍ରଥମାବସ୍ଥା ପ୍ରଦାନ କରିବା ଯେକୌଣସି ରାଷ୍ଟ୍ରର ପ୍ରଧାନ କର୍ତ୍ତବ୍ୟ । ସେଥିପାଇଁ ମହାତ୍ମାଗାନ୍ଧି କହିଥିଲେ— ''ମୁଁ ଏପରି ଏକ ଭାରତ ଚାହେଁ, ଯେଉଁଠାରେ କେହି କ୍ଷୁଧା ବା ବସ୍ତ୍ରାଭାବରେ ନ ଥିବେ । ସମାଜରେ ଛୁଆଁ ଅଛୁଆଁ ଭେଦଭାବ ନ ଥିବ ।'' ଗାନ୍ଧିଜୀଙ୍କ ପରେ ଆମେ କେବଳ ତାଙ୍କର ଉକ୍ତିଗୁଡ଼ିକୁ ବେଶ୍ ସାବଧାନତାର ସହିତ ଉଦ୍ଧାର କରୁଛୁ, ଅଥଚ ବାସ୍ତବରେ ତାକୁ କାର୍ଯ୍ୟକାରୀ କରୁ ନାହୁଁ । ଭାରତରେ ଏହି ସମାଜବାଦକୁ ସଫଳ କରିବାକୁ ହେଲେ, ରାଜନୀତିକ ନେତା, ଜନସାଧାରଣ, ବ୍ୟବସାୟୀ ଓ ଶିଳ୍ପପତିମାନଙ୍କ ମଧ୍ୟରେ ସହଯୋଗ ସ୍ଥାପନ ହେବା ସଙ୍ଗେ ସଙ୍ଗେ ରାଷ୍ଟ୍ରପ୍ରତି ସମସ୍ତ ଜନସାଧାରଣଙ୍କ ଦାୟିତ୍ୱବୋଧ ସୃଷ୍ଟି ହେବା ଆବଶ୍ୟକ ।



# ଭାରତର ଧର୍ମନିରପେକ୍ଷ ନୀତି

**(ଉପକ୍ରମ, ଧର୍ମନିରପେକ୍ଷତ୍ୱର ଉଦ୍ଦେଶ୍ୟ, ଭାରତର ଧାର୍ମିକ ପରମ୍ପରା, ଭାରତୀୟ ସମ୍ବିଧାନ ଓ ଧର୍ମନିରପେକ୍ଷତା, ବିଶ୍ୱ ଶାନ୍ତି ପ୍ରତିଷ୍ଠାରେ ଧର୍ମର ଭୂମିକା, ଦେଶର ଐକ୍ୟ ପ୍ରତିଷ୍ଠାରେ ଧର୍ମନିରପେକ୍ଷତାର ଆବଶ୍ୟକତା, ଉପସଂହାର)**

ଧର୍ମ ଏକା ସିନା ମହତପଣିଆ
ଆଉ ସବୁ କଥା ଅଢ଼େଇଦିନିଆ

ଧର୍ମକୁ କୌଣସି ଏକ ନିର୍ଦ୍ଦିଷ୍ଟ ସଂଜ୍ଞାରେ ସଂଜ୍ଞାୟିତ କରିବା ଅନୁଚିତ । ଧର୍ମ ଏକ ପନ୍ଥା, ମାର୍ଗ, ଆଦର୍ଶ ବା ନୀତି । ଯେଉଁ ନୀତି ନିୟମକୁ ଭିତ୍ତିକରି ବିଶ୍ୱ ପରିଚାଳିତ, ତାହାହିଁ ଧର୍ମ । ମଣିଷ ଜୀବନକୁ ଶୃଙ୍ଖଳିତ, ପରିମାର୍ଜିତ, ସୁସଂସ୍କୃତ ଓ ନୀତିନିଷ୍ଠ କରିବା କ୍ଷେତ୍ରରେ ଏହାର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ବିଶ୍ୱ ଇତିହାସକୁ ପର୍ଯ୍ୟାଲୋଚନା କଲେ ଜଣାଯାଏ, ଧର୍ମଭାବ ହିଁ ପ୍ରଥମେ ମଣିଷକୁ ଏକତାର ସୂତ୍ରରେ ବନ୍ଧନ କରିବାକୁ ପ୍ରେରଣା ଦେଇଛି । ଶାନ୍ତି ମୈତ୍ରୀର ବାର୍ତ୍ତା ପ୍ରଚାର କରି ମଣିଷ ସମାଜକୁ ସଙ୍ଗଠିତ କରିଛି । ମଣିଷ ଅନ୍ତରରୁ କ୍ରୂରତାର ଅବସାନ ଘଟାଇ ଭରିଦେଇଛି ଶାନ୍ତି ଓ ପ୍ରୀତିର ମହତ୍ତର ଗୁଣରାଜି । ମାତ୍ର ସମୟର

ପରିବର୍ତ୍ତନ ସଙ୍ଗେ ସଙ୍ଗେ ମଣିଷର ସଂକୀର୍ଣ୍ଣ ମନ ଧର୍ମର ଏହି ମହତ୍ତର ଅର୍ଥକୁ ବିକୃତ କରିଛି । ତେଣୁ ବିଶ୍ୱରେ ଧର୍ମକୁ ନେଇ ସୃଷ୍ଟି ହୋଇଛି ସଂଘର୍ଷ । କ୍ରୂର ମଣିଷ ନିରୀହ ମଣିଷର ରକ୍ତରେ ହୋଲି ଖେଳିଛି । ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଧର୍ମ ଗୋଟିଏ ଗୋଟିଏ ସଂପ୍ରଦାୟର ଆଦର୍ଶ ହୋଇ ଦେଖାଦେଇଛି । ନିଜ ଧର୍ମର ଜୟଗାନ କରି ମଣିଷ ଅନ୍ୟ ଧର୍ମ ପ୍ରତି କୁତ୍ସାଭାବ ପ୍ରଦର୍ଶନ କରିଛି । ଅନ୍ୟ ଧର୍ମାବଲମ୍ବୀମାନଙ୍କ ଉପରେ ଆକ୍ରମଣ କରି ରକ୍ତାକ୍ତ କରିଛି । ଏହାହିଁ ମଣିଷର ସଂକୀର୍ଣ୍ଣ ଚିନ୍ତାଧାରାର ପରିଚାୟକ । ମାତ୍ର ଭାରତ ଏକ ଧର୍ମନିରପେକ୍ଷ ରାଷ୍ଟ୍ର । ଏହା କୌଣସି ନିର୍ଦ୍ଦିଷ୍ଟ ଧର୍ମମତ ଉପରେ ବିଶ୍ୱାସୀ ନୁହେଁ । ସେ ବିଶ୍ୱାସ କରେ ପୃଥିବୀରେ ଗୋଟିଏ ଧର୍ମ; ତାହା ହିଁ ମାନବଧର୍ମ । ଏଥିପାଇଁ ଭାରତରେ ବସବାସ କରୁଥିବା ବିଭିନ୍ନ ସଂପ୍ରଦାୟଙ୍କ ମଧ୍ୟରେ ସଦ୍‌ଭାବ ସୃଷ୍ଟି ହୋଇପାରିଛି । ଭାରତର ଧର୍ମନିରପେକ୍ଷ ନୀତି ହିଁ ହିନ୍ଦୁ, ମୁସଲମାନ, ଶିଖ, ଖ୍ରୀଷ୍ଟିଆନ୍‌ମାନଙ୍କୁ ଗୋଟିଏ ରଜ୍ଜୁରେ ବାନ୍ଧିପାରିଛି । ସମଗ୍ର ବିଶ୍ୱକୁ ଭାରତର ଧର୍ମନିରପେକ୍ଷ ନୀତି ଏକ ଅପୂର୍ବ ଦାନ । ଏହାଦ୍ୱାରା ବିଶ୍ୱରେ ଭାରତର ସମ୍ମାନ ବୃଦ୍ଧି ପାଇଛି କହିଲେ ଭୁଲ୍ ହେବ ନାହିଁ ।

ଧର୍ମନିରପେକ୍ଷତାର ଉଦ୍ଦେଶ୍ୟ ହେଉଛି ପ୍ରତ୍ୟେକ ମଣିଷକୁ ସମାନ ମର୍ଯ୍ୟାଦା ପ୍ରଦାନ କରିବା । ସମସ୍ତ ଧର୍ମ ପ୍ରତି ସମାନ ମତପୋଷଣ କରିବା ଏବଂ ସମସ୍ତ ଧର୍ମକୁ ସମାନ ମର୍ଯ୍ୟାଦା ପ୍ରଦାନ କରିବା ଏହାର ଉଦ୍ଦେଶ୍ୟ । ଯେଉଁ ରାଷ୍ଟ୍ରରେ ପ୍ରତ୍ୟେକ ବ୍ୟକ୍ତି ନିଜ ରୁଚି ଅନୁଯାୟୀ ଯେକୌଣସି ଧର୍ମକୁ ଗ୍ରହଣ କରିପାରନ୍ତି, ସେହି ରାଷ୍ଟ୍ର ଧର୍ମନିରପେକ୍ଷ ରାଷ୍ଟ୍ର ରୂପେ ପରିଗଣିତ ହୋଇଥାଏ । ଏହାଦ୍ୱାରା କୌଣସି ବ୍ୟକ୍ତିର ସ୍ୱାଭିମାନ ପ୍ରତି ଆଞ୍ଚ ଆସି ନ ଥାଏ । ବ୍ୟକ୍ତି ସ୍ୱାଧୀନ ଭାବରେ ଇଚ୍ଛାନୁଯାୟୀ ଧର୍ମ ଉପାସନା କରିଥାଏ । ଏହି ଭାବଦ୍ୱାରା ପରିଚାଳିତ ସମାଜ ପ୍ରତ୍ୟେକ ମଣିଷକୁ ସମାନ ଦୃଷ୍ଟିରେ ଦେଖିଥାଏ । ଅଧର୍ମ ଓ ଅନାଚାରକୁ ଘୃଣା କରିଥାଏ । ଭାରତ ଏକ ଧର୍ମନିରପେକ୍ଷ ରାଷ୍ଟ୍ର ହୋଇଥିବାରୁ ପ୍ରତ୍ୟେକ ସଂପ୍ରଦାୟର ବ୍ୟକ୍ତି ନିଜ ଧର୍ମମତର ପ୍ରଚାର ଓ ପ୍ରସାର ପାଇଁ ଅବାଧ ସ୍ୱାଧୀନତା ପାଇଥାନ୍ତି । ସେହି କାରଣରୁ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ୍, ବୌଦ୍ଧ, ଶିଖ,ଜୈନ ଆଦି ସଂପ୍ରଦାୟର ବ୍ୟକ୍ତିବିଶେଷ ମିଳିତ ଭାବରେ ବସବାସ କରିବାର ଅଧିକାର ପାଇଛନ୍ତି । କୌଣସି ଧର୍ମ ଉପରେ ଅନ୍ୟ କୌଣସି ଧର୍ମାବଲମ୍ବୀ ବ୍ୟକ୍ତି ହସ୍ତକ୍ଷେପ କରିପାରନ୍ତି ନାହିଁ । ଭାରତ ବ୍ୟତୀତ ବିଶ୍ୱର ଅନ୍ୟ କୌଣସି ରାଷ୍ଟ୍ରରେ ଏତେଗୁଡ଼ିଏ ଧର୍ମ ହାତ ଧରାଧରି ହୋଇ ଚାଲିବାର ଦେଖାଯାଇ ନ ଥାଏ । ଏହି ଦୃଷ୍ଟିରୁ ଭାରତ ଅନନ୍ୟ ସାଧାରଣ ।

ଭାରତର ଧାର୍ମିକ ପରମ୍ପରାକୁ ଲକ୍ଷ୍ୟ କଲେ, ବିସ୍ମିତ ନ ହୋଇ ରହିହୁଏ ନାହିଁ । ଏହି ମାଟିରେ ସର୍ବଧର୍ମର ସମନ୍ୱୟ ଘଟିଛି । ବୈଦିକ କାଳରୁ ସାଂପ୍ରତିକ କାଳ ପର୍ଯ୍ୟନ୍ତ ଲକ୍ଷ୍ୟ କଲେ ବିଭିନ୍ନ ସମୟରେ ରାଜପୃଷ୍ଠପୋଷକତା ଲାଭ କରି ଭିନ୍ନ ଭିନ୍ନ ଧର୍ମ ସମୟକ୍ରମେ ବିକାଶଲାଭ କରିଥିଲେ ହେଁ କୌଣସି ସମୟରେ କୌଣସି ଧର୍ମର ବିଲୋପ ଘଟି ନାହିଁ । ବୈଦିକ ସାହିତ୍ୟକୁ ଲକ୍ଷ୍ୟ କଲେ ଏଥିରେ ବହୁ ଧର୍ମର ଆଦର୍ଶ ପ୍ରଚାର ହୋଇଥିବା ଲକ୍ଷ୍ୟ କରାଯାଇପାରେ । ତେଣୁ ବୈଦିକ କାଳରୁ ହିଁ ଭାରତ ଧର୍ମନିରପେକ୍ଷ ନୀତିର ପୃଷ୍ଠପୋଷକତା କରିଆସିଛି । ମହାବୀରଙ୍କ

ଆଗମନ ପରେ ଜୈନ ଧର୍ମର ପ୍ରାଧାନ୍ୟ ଉପଲବ୍ଧ ହୋଇଛି । ଗୌତମବୁଦ୍ଧଙ୍କ ଆବିର୍ଭାବ ଭାରତର ଧାର୍ମିକ ଇତିହାସରେ ନୂତନ ଦିଶାର ସନ୍ଧାନ ଦେଇଥିଲା । ଜାତି, ଧର୍ମ ଓ ସାମାଜିକ ସ୍ଥିତି ନିର୍ବିଶେଷରେ ସମସ୍ତଙ୍କ ପାଇଁ ଏହାର ଦ୍ୱାର ଉନ୍ମୁକ୍ତ ରହିଥିଲା । ଧର୍ମନିରପେକ୍ଷତାର ପ୍ରଚାର କରି ବୁଦ୍ଧଦେବ ସମଗ୍ର ଜଗତକୁ ବିସ୍ମିତ କରି ଦେଇଥିଲେ । ବୁଦ୍ଧଦେବଙ୍କ ପରେ ସମୟକ୍ରମେ ବିଭିନ୍ନ ଶାସକଙ୍କ ସମୟରେ ଭିନ୍ନ ଭିନ୍ନ ଧର୍ମ ମୁଣ୍ଡ ଟେକିଥିଲେହେଁ, ଅନ୍ୟାନ୍ୟ ଧର୍ମାବଲମ୍ବୀଙ୍କ ପ୍ରତି ସେମାନଙ୍କ ହୃଦୟରେ କୌଣସି ଈର୍ଷା ବା ଦ୍ୱେଷଭାବ ନ ଥିଲା । ମୋଗଲମାନଙ୍କ ଶାସନ କାଳରେ 'ଇସଲାମ' ଧର୍ମ ଭାରତରେ ବହୁଳ ଭାବରେ ପ୍ରଚାର ହୋଇଥିଲା । କେତେକ ଧର୍ମାନ୍ଧ ଶାସକ ହିନ୍ଦୁଧର୍ମର ବିନାଶ ନିମିତ୍ତ ଆପ୍ରାଣ ଉଦ୍ୟମ କରିଥିଲେ ହେଁ, ଭାରତରୁ ତାହା ଲୋପ ପାଇ ନ ଥିଲା । ବରଂ ହିନ୍ଦୁ ଧର୍ମର ଉଦାରଭାବ ସମ୍ରାଟ ଆକବରଙ୍କୁ ବହୁଭାବରେ ପ୍ରଭାବିତ କରିଥିବାରୁ ସର୍ବଧର୍ମର ସମନ୍ୱୟ ନିମିତ୍ତ 'ଦିନ୍-ଇ-ଇଲାହି' ଧର୍ମର ପ୍ରତିଷ୍ଠା କରିଥିଲେ । ତାଙ୍କର ଉଦାର ହୃଦୟ ତାଙ୍କୁ ଧର୍ମକ୍ଷେତ୍ରରେ ନିରପେକ୍ଷ ନୀତି ଅବଲମ୍ବନ କରିବାକୁ ପ୍ରେରଣା ଦେଇଥିଲା । ଇଂରେଜମାନେ ଭାରତର ଶାସନ କ୍ଷମତା ଅଧିକାର କରିବା ପରେ 'ଖ୍ରୀଷ୍ଟିଆନ୍' ଧର୍ମର ପ୍ରଚାର କରିଥିଲେ । ଏହି ଧର୍ମର ପ୍ରଚାର ଓ ପ୍ରସାର ପାଇଁ ସେମାନେ ବିଭିନ୍ନ ଉଦ୍ୟମ କରିଥିଲେ ହେଁ ଭାରତରେ ପ୍ରଚଳିତ ଅନ୍ୟାନ୍ୟ ଧର୍ମର ବିଲୋପ ଘଟି ନ ଥିଲା । କବୀର, ନାନକ, ଶ୍ରୀଚୈତନ୍ୟ ଆଦି ମହାପୁରୁଷଗଣ ଧର୍ମନିରପେକ୍ଷ ନୀତି ଅବଲମ୍ବନ କରିଥିଲେ । ମହାତ୍ମାଗାନ୍ଧି ସ୍ୱାଧୀନତା ପାଇଁ ସଂଗ୍ରାମ କରିଥିଲେ ହେଁ ଧର୍ମନିରପେକ୍ଷତା ଥିଲା ତାଙ୍କ ଜୀବନର ଆଦର୍ଶ । ଧର୍ମ ଥିଲା ତାଙ୍କ ଜୀବନ । ମାତ୍ର ସେ କୌଣସି ନିର୍ଦ୍ଦିଷ୍ଟ ଧର୍ମର ପରିପ୍ରଚାରକ ନ ଥିଲେ । ସର୍ବଧର୍ମର ସମନ୍ୱୟ କରି ସେ ଭାରତକୁ ବିଶ୍ୱ ଦରବାରରେ ଆଦର୍ଶ ସ୍ଥାନ ପ୍ରଦାନ କରିଥିଲେ । ବାଇବେଲ୍, କୋରାନ୍ ଓ ଗୀତାରେ ସେ ସନ୍ଧାନ କରିଥିଲେ ସେହି ଏକମାତ୍ର ଜଣେ ଈଶ୍ୱରଙ୍କୁ । ପଣ୍ଡିତ ଜବାହରଲାଲ ନେହେରୁ ମଧ୍ୟ ଧର୍ମନିରପେକ୍ଷତାକୁ ଗ୍ରହଣ କରି ନେଇଥିଲେ । ଏହି ଦୃଷ୍ଟିରୁ ଭାରତୀୟଙ୍କ ଜନଜୀବନରେ ଗୀତାର ଯେପରି ପ୍ରାଧାନ୍ୟ ରହିଛି, ସେହିପରି ପ୍ରାଧାନ୍ୟ ରହିଛି ବାଇବେଲ ଓ କୋରାନ୍‌ର । ପ୍ରତ୍ୟେକ ଧର୍ମ ମଧ୍ୟରେ ଭାରତୀୟମାନେ ଅନୁଭବ କରିଛନ୍ତି ଶାନ୍ତି, ମୈତ୍ରୀ, ଅହିଂସାର ଭାବଧାରାକୁ ।

ସ୍ୱାଧୀନତା ପରେ ଭାରତ ଧର୍ମନିରପେକ୍ଷ ନୀତିର ପୃଷ୍ଠପୋଷକତା କରିଛି । ଏପରିକି ଭାରତର ସମ୍ବିଧାନ ପ୍ରଣୟନ ସମୟରେ ଏହି ଧର୍ମନିରପେକ୍ଷ ନୀତି ଉପରେ ଗୁରୁତ୍ୱ ପ୍ରଦାନ କରାଯାଇ ଏହାର ମୁଖବନ୍ଧରେ ଲେଖାଯାଇଛି – "We the people of India having solemnly resolved to constitute India into a sovereign socialist secular democratic republic..." ଅବଶ୍ୟ ଏହି secular ବା ଧର୍ମନିରପେକ୍ଷ ଶବ୍ଦଟି ୧୯୭୬ ମସିହାରେ ୪୨ତମ ସଂଶୋଧନରେ ଯୋଗ କରାଯାଇଛି । ଭାରତୀୟ ସମ୍ବିଧାନର ମୌଳିକ ଅଧିକାର ମଧ୍ୟରେ ନାଗରିକମାନଙ୍କୁ 'ଧର୍ମଗତ ଅଧିକାର' ପ୍ରଦାନ କରାଯାଇଛି । ଭାରତୀୟ ସମ୍ବିଧାନ ଚକ୍ଷୁରେ ସବୁ ଧର୍ମ ସମାନ । କୌଣସି ରାଷ୍ଟ୍ର ଏକ ନିର୍ଦ୍ଦିଷ୍ଟ ଧର୍ମମତକୁ ତା'ର

ନାଗରିକଙ୍କ ଉପରେ ଲଦି ଦେଇପାରିବ ନାହିଁ । ୨୫ରୁ ୨୮ ଧାରା ମଧ୍ୟରେ ଲେଖାଯାଇଛି ଧର୍ମକ୍ଷେତ୍ରରେ ରାଷ୍ଟ୍ର ନିରପେକ୍ଷ ନୀତି ଅବଲମ୍ବନ କରିବ । ୨୭ ଧାରା ଅନୁଯାୟୀ କୌଣସି ନାଗରିକଙ୍କ ଉପରେ ଧର୍ମର ପ୍ରଚାର ବା ପ୍ରସାର ପାଇଁ କର ଲଦି ଦିଆଯାଇପାରିବ ନାହିଁ । ଶିକ୍ଷାନୁଷ୍ଠାନରେ ମଧ୍ୟ ନିର୍ଦ୍ଦିଷ୍ଟ ଧର୍ମ ଉପରେ ଶିକ୍ଷା ପ୍ରଦାନ କରାଯିବ ନାହିଁ । ଏପରିକି ବାହାରୁ ଆସୁଥିବା ବ୍ୟକ୍ତିମାନେ ମଧ୍ୟ ଧର୍ମଗତ ଅଧିକାର ପାଇପାରିବେ । ତେଣୁ ଭାରତର ଅଧିବାସୀମାନଙ୍କ ପରି ଭାରତର ସମ୍ବିଧାନ ମଧ୍ୟ ଧର୍ମ କ୍ଷେତ୍ରରେ ଉଦାର ନୀତି ଅବଲମ୍ବନ କରିଛି ।

ବିଶ୍ୱ ଶାନ୍ତି ପ୍ରତିଷ୍ଠା କ୍ଷେତ୍ରରେ ଧର୍ମର ଭୂମିକା ଅତୀବ ଗୁରୁତ୍ୱପର୍ଣ୍ଣ । ଏହା ମଣିଷକୁ ଉଦାର, ସହିଷ୍ଣୁ ଓ ସ୍ନେହ-ପ୍ରୀତି ଭାବରେ ଉଦ୍‌ବୁଦ୍ଧ କରାଇଥାଏ । ଆର୍ନ୍ତଜାତିକ ସ୍ତରରେ ମୈତ୍ରୀ ଭାବର ପ୍ରଚାର କରାଇଥାଏ । ବିଶ୍ୱରେ ପ୍ରଚାର କରିଥାଏ ଭ୍ରାତୃତ୍ୱଭାବ । ଭାରତର ଏହି ଧର୍ମନିରପେକ୍ଷ ନୀତି ଯୋଗୁଁ ବିଶ୍ୱର ବିଭିନ୍ନ ରାଷ୍ଟ୍ରଙ୍କ ସହିତ ସେ ସୁସମ୍ପର୍କ ସ୍ଥାପନ କରିପାରିଛି । ବିଶ୍ୱ ଶାନ୍ତି ନିମିତ୍ତ ଯେଉଁ ଉଦାର ମନୋଭାବର ଆବଶ୍ୟକ, ତାହା କେବଳ ଧର୍ମ ଦ୍ୱାରା ହିଁ ସୃଷ୍ଟି ହୋଇପାରିବ । ଆଜି ବିଶ୍ୱରେ ପାରମାଣବିକ ଅସ୍ତ୍ରଶସ୍ତ୍ର ପ୍ରତିଯୋଗିତା ଯୋଗୁଁ ମଣିଷ ମନ ମଧ୍ୟରେ ସନ୍ଦେହ ଓ ଅବିଶ୍ୱାସର ଭାବ ଜାଗ୍ରତ ହୋଇଛି । ତେଣୁ ଚାରିଆଡ଼େ ଅଶାନ୍ତି ବିରାଜମାନ । ଧର୍ମ ମଣିଷ ମନରୁ ଏହି ଅବିଶ୍ୱାସ ଭାବ ଦୂର କରାଇ ତାକୁ ପୁଣି ଉଦାର ହୃଦୟ ସମ୍ପନ୍ନ କରିପାରିବ । ଯୁଦ୍ଧ ନିମିତ୍ତ ମଣିଷ ହୃଦୟରେ ସୃଷ୍ଟି ହେଉଥିବା ପଶୁ ପ୍ରବୃତ୍ତିକୁ ପ୍ରଶମନ କରିପାରିବ । ନୀତି ଏବଂ ଆଦର୍ଶର ଶିକ୍ଷା ପ୍ରଦାନ କରି ତାକୁ ସଂଯତ ଓ ସହିଷ୍ଣୁ କରିପାରିବ । ବିଶ୍ୱ ଭ୍ରାତୃତ୍ୱର ପ୍ରଚାର ଓ ପ୍ରସାର କେବଳ ଧର୍ମ ମାଧ୍ୟମରେ ହିଁ ସାଧିତ ହୋଇପାରିବ । ସମଗ୍ର ବିଶ୍ୱ ଆଜି ଏକ ବାରୁଦ ସ୍ତୂପ ଉପରେ ଦଣ୍ଡାୟମାନ । କେଉଁ ମୁହୂର୍ତ୍ତରେ ବିସ୍ଫୋରଣ ଘଟିବ, ତାହା କେହି କହିପାରିବ ନାହିଁ । ମଣିଷ ମନରୁ ମାନବିକ ଭାବଧାରାର ବିଲୋପ ଘଟୁଛି । ଆଦର୍ଶଚ୍ୟୁତ ମଣିଷ ଅନ୍ୟର ଧ୍ୱଂସ ପାଇଁ ଗାତ ଖୋଳୁଛି । ପଥଚ୍ୟୁତ ମଣିଷକୁ ଉଚିତ ମାର୍ଗ ଦର୍ଶନ କରାଇବାର କ୍ଷମତା କେବଳ ଧର୍ମର ହିଁ ରହିଛି । ସମଗ୍ର ବିଶ୍ୱରେ ମାନବ ଧର୍ମ ପ୍ରଚାର ହୋଇପାରିଲେ ବିଶ୍ୱରୁ ହିଂସା, ଦ୍ୱେଷ ଓ ପରଶ୍ରୀକାତରତା ଭାବ ବିଲୋପ ଘଟିବ । ଏ କ୍ଷେତ୍ରରେ ଧର୍ମର ଭୂମିକା ହିଁ ଗୁରୁତ୍ୱପୂର୍ଣ୍ଣ ।

ଦେଶ ମଧ୍ୟରେ ଐକ୍ୟ ପ୍ରତିଷ୍ଠା କ୍ଷେତ୍ରରେ ମଧ୍ୟ ଧର୍ମର ବିଶେଷ ଭୂମିକା ରହିଛି । ଭାରତରେ ବହୁ ସଂପ୍ରଦାୟ ବସବାସ କରୁଥିବାରୁ ସେମାନଙ୍କର ଆଚାର ବ୍ୟବହାର, ଚାଲି-ଚଳଣ ଓ ହାବ-ଭାବରେ ବିଭିନ୍ନତା ଲକ୍ଷ୍ୟ କରାଯିବା ସ୍ୱାଭାବିକ । ପ୍ରତ୍ୟେକ ମଣିଷ ନିଜ ରୁଚି ଅନୁଯାୟୀ ବଞ୍ଚିବାକୁ ଚାହେଁ । ସେଥିରୁ ତାକୁ କେହି ବିଚ୍ୟୁତ କରିବାକୁ ଚାହିଁଲେ ସେ ପ୍ରତିକ୍ରିୟାଶୀଳ ହୋଇଥାଏ । ବିଶେଷଭାବରେ ଆଜି ଧର୍ମକୁ ନେଇ ସଂପ୍ରଦାୟ ସଂପ୍ରଦାୟ ମଧ୍ୟରେ ବିଦ୍ୱେଷ ବଢ଼ି ଚାଲିଛି । ସବୁଠାରୁ ଦୁଃଖର ବିଷୟ ଆଜିର ରାଜନୀତିକ ନେତାଗଣ ଧର୍ମକୁ ନେଇ ରାଜନୀତି କରିବା ଆରମ୍ଭ କରି ଦେଇଛନ୍ତି । ସମାଜ ପାଇଁ ଏହା କେତେ ପରିମାଣରେ କ୍ଷତିକାରକ, ତାହା ସେମାନେ ହୃଦୟଙ୍ଗମ କରିପାରୁ ନାହାନ୍ତି । ଯେଉଁମାନେ ବ୍ୟକ୍ତିଗତ ସ୍ୱାର୍ଥ ପାଇଁ ଧର୍ମକୁ ଅସ୍ତ୍ରକରି ଠିଆ କରାଉଛନ୍ତି, ବାସ୍ତବରେ ଧର୍ମର ପ୍ରକୃତ ଅର୍ଥ ବୁଝିବାରେ ସେମାନେ ଅସମର୍ଥ । ମୋଗଲ

ଶାସନ ସମୟରେ ଭାରତରେ ଏହିପରି ଏକ ଅବସ୍ଥା ସୃଷ୍ଟି ହୋଇଥିଲା । ସ୍ୱାଧୀନତା ପରେ ମଧ ଏବେ କେତେକ କ୍ଷେତ୍ରରେ ଧର୍ମକୁ ନେଇ ଦଙ୍ଗା ହୋଇଛି । ଧର୍ମକୁ କେନ୍ଦ୍ରକରି ଭାରତ ଦୁଇ ଭାଗରେ ବିଭକ୍ତ ହୋଇଯାଇଛି । ଆଜି ବାବ୍ରୀ ମସ୍‌ଜିଦ୍ ଓ ରାମମନ୍ଦିର ପ୍ରସଙ୍ଗ ସେହି ଧର୍ମକୁ କେନ୍ଦ୍ର କରି ସୃଷ୍ଟି ହୋଇଛି । ସଂକୀର୍ଣ୍ଣ ଧର୍ମଧାରଣା ପାଇଁ ରାଜନୀତି ପଙ୍କିଳ ଓ କଳୁଷିତ ହୋଇଯାଇଛି । ଭାରତର ପ୍ରାଚୀନ ଆଦର୍ଶ ଓ ଭାବଧାରା ଭୂଲୁଣ୍ଠିତ । ଯେତେବେଳେ ଭାରତର ଧର୍ମନିରପେକ୍ଷ ନୀତିକୁ ସମଗ୍ର ବିଶ୍ୱ ସମ୍ମାନ ପ୍ରଦର୍ଶନ କରୁଛି, ସେତେବେଳେ ଭାରତରେ ଧର୍ମକୁ ନେଇ ଦଙ୍ଗା ସୃଷ୍ଟି ହେବା ଅତ୍ୟନ୍ତ କ୍ଷୋଭର ବିଷୟ । ମାତ୍ର ଯେଉଁମାନେ ଧର୍ମର ପ୍ରକୃତ ଅର୍ଥ ବୁଝିଛନ୍ତି, ସେମାନେ କେବେ ଧର୍ମର ଏପରି ସଂକୀର୍ଣ୍ଣ ସଂଜ୍ଞା ପ୍ରସ୍ତୁତ କରିପାରିବେ ନାହିଁ । ଧର୍ମନିରପେକ୍ଷ ନୀତି ହିଁ ଦେଶରେ ଐକ୍ୟ ପ୍ରତିଷ୍ଠା କରିଥାଏ । ମଣିଷ ପ୍ରତି ମଣିଷର ସମ୍ମାନ ବୃଦ୍ଧି କରିଥାଏ । ମଣିଷର ଜୀବନ ଗଠନରେ ଏହାର ଭୂମିକା ଯେପରି ମହତ୍ତ୍ୱପୂର୍ଣ୍ଣ, ଦେଶରେ ଐକ୍ୟ ସ୍ଥାପନ କ୍ଷେତ୍ରରେ ଏହାର ଭୂମିକା ମଧ ସେହିପରି ମହତ୍ତ୍ୱପୂର୍ଣ୍ଣ ।

ଧର୍ମନିରପେକ୍ଷତା ମଣିଷ ମଣିଷ ମଧରେ ରହିଥିବା ବିଭେଦର ପ୍ରାଚୀରକୁ ଦୂରକରେ । ବିଶ୍ୱ ଶାନ୍ତି ପାଇଁ ପଥ ପରିଷ୍କାର କରେ । ଭ୍ରାତୃତ୍ୱ ଭାବ ପ୍ରଚାର କରି ମଣିଷ ମନ ମଧରୁ ହିଂସାର ଭାବ ଦୂର କରେ । ସଂକୀର୍ଣ୍ଣ ଚିନ୍ତାଧାରାରୁ ମଣିଷକୁ ମୁକ୍ତ କରି ଜୀବନକୁ ଆଲୋକର ପଥ ଦେଖାଇଥାଏ । ମାତ୍ର ଯେତେବେଳେ ଏହା ସଂଜ୍ଞାବଦ୍ଧ ହୋଇ ସଂକୀର୍ଣ୍ଣତାକୁ ଆବୋରି ବସେ, ସେତେବେଳେ ମାନବ ଜାତିର ଅହିତ ସାଧନ କରିଥାଏ । ଆଜି ବିଶ୍ୱରେ ଧର୍ମକୁ ଭିତ୍ତି କରି ଯେଉଁ ସଂଘର୍ଷ ସୃଷ୍ଟି ହେଉଛି, ଧର୍ମନିରପେକ୍ଷତା ଦ୍ୱାରା ତାହା ଅଚିରେ ଦୂର କରାଯାଇପାରିବ । ବିଶ୍ୱକୁ ଭାରତ ଏହି ଧର୍ମନିରପେକ୍ଷତା ସମ୍ପର୍କରେ ଯେଉଁ ଶିକ୍ଷା ଦେଇଛି, ତାହାକୁ ଯଦି ବିଶ୍ୱ ଗ୍ରହଣ କରିପାରନ୍ତା, ତେବେ ତୃତୀୟ ବିଶ୍ୱଯୁଦ୍ଧର ଭୟାବହତା ଘେନି ମଣିଷ ଶଙ୍କା ବିଜଡ଼ିତ ହୋଇପଡ଼ନ୍ତା ନାହିଁ ।



## ସ୍ୱାଧୀନ ଭାରତରେ ନାଗରିକର ମୌଳିକ କର୍ତ୍ତବ୍ୟ

**(ଉପକ୍ରମ, ସମ୍ବିଧାନରେ ମୌଳିକ କର୍ତ୍ତବ୍ୟର ରୂପରେଖ, ନାଗରିକଙ୍କ ବିଭିନ୍ନ କର୍ତ୍ତବ୍ୟ, ମୌଳିକ କର୍ତ୍ତବ୍ୟର କେତେକ ବିଶେଷତ୍ୱ, ଉପସଂହାର)**

ପ୍ରତ୍ୟେକ ଦେଶର ନାଗରିକର କେତେକ କର୍ତ୍ତବ୍ୟବୋଧ ରହିଛି । ସେହି କର୍ତ୍ତବ୍ୟଗୁଡ଼ିକୁ ଯଥୋଚିତ ପାଳନ କରିବା ନାଗରିକର ମୌଳିକ ଦାୟିତ୍ୱ । ନାଗରିକର ଆଭିଧାନିକ ଅର୍ଥ ହେଉଛି ନଗର ବାସିନ୍ଦା । city ଶବ୍ଦର ଓଡ଼ିଆ ସହର ବା ନଗର । citizen ବା ନାଗରିକ ଶବ୍ଦଟି city ରୁ ଆସିଛି । ଅତୀତରେ ଗ୍ରୀସ ଦେଶର ସମତଳ ଭୂମି ଉପରେ ଗଢି ଉଠିଥିବା

ନଗରକୁ city କୁହାଯାଉଥିଲା । କେତେକ ଏହାକୁ city state ବା ନଗର ରାଜ୍ୟ କହୁଥିଲେ । ସେତେବେଳେ ଗ୍ରୀସ୍‌ରେ କୌଣସି ଗ୍ରାମ ନ ଥିଲା । ସମସ୍ତେ ଥିଲେ ନଗର ଅଧିବାସୀ; ତେଣୁ ନାଗରିକ । ବର୍ତ୍ତମାନ ଏହାର ସଂଜ୍ଞା ବଦଳି ଯାଇଛି । ଭାରତର ଯେ କୌଣସି ବ୍ୟକ୍ତି ୧୮ ବର୍ଷ ବା ତହିଁରୁ ଊର୍ଦ୍ଧ୍ୱ ହୋଇଥିଲେ, ସେ ଭାରତର ନାଗରିକ ହୋଇପାରିବେ । କେବଳ ସନ୍ନ୍ୟାସୀ, ବିକୃତ ମସ୍ତିଷ୍କ ବ୍ୟକ୍ତି ଆଦି ଏହି ଅଧିକାରରୁ ବଞ୍ଚିତ ହୋଇଥାନ୍ତି । ଦେଶର ଅଧିବାସୀ ମୁଖ୍ୟତଃ ଦୁଇଭାଗରେ ବିଭକ୍ତ । ୧-ବିଦେଶୀ, ୨-ନାଗରିକ । ଜଣେ ଭାରତୀୟ ନାଗରିକର ଯେପରି ମୌଳିକ ଅଧିକାର ଓ କର୍ତ୍ତବ୍ୟବୋଧ ରହିଛି, ଜଣେ ବିଦେଶୀର ତାହା ନାହିଁ । ନାଗରିକଙ୍କ କର୍ମଦକ୍ଷତା, ସଚ୍ଚୋଟତା ଓ ଆଦର୍ଶବୋଧ ଉପରେ ଦେଶର ବିକାଶ ବହୁପରିମାଣରେ ନିର୍ଭର କରେ । ଦେଶର ସ୍ଥାୟୀ ଅଧିବାସୀ ଭାବରେ ପ୍ରତ୍ୟେକ ନାଗରିକର ଦେଶ ପ୍ରତି କେତେକ କର୍ତ୍ତବ୍ୟବୋଧ ରହିଛି । ଏହି କର୍ତ୍ତବ୍ୟବୋଧରୁ ବିଚ୍ୟୁତ ହେଲେ ନାଗରିକ ହେବାର ମୌଳିକ ଅଧିକାର ସେ ହରାଇ ବସିଥାଏ । ଦେଶର ଶାସନ କ୍ଷମତା ଏହି ନାଗରିକମାନଙ୍କ ହାତରେ । ଭାରତ ପରି ଏକ ଗଣତନ୍ତ୍ର ରାଷ୍ଟ୍ରରେ ପ୍ରତି ପାଞ୍ଚବର୍ଷରେ ଥରେ ନିର୍ବାଚନ ହୋଇଥାଏ ଓ ଏହି ନିର୍ବାଚିତ ପ୍ରତିନିଧି ଦେଶର ଶାସନଭାର ଗ୍ରହଣ କରିଥାନ୍ତି । ସେମାନଙ୍କ କାର୍ଯ୍ୟପଦ୍ଧତି ସନ୍ତୋଷଜନକ ନ ହେଲେ ନାଗରିକମାନେ ପରବର୍ତ୍ତୀ ନିର୍ବାଚନରେ ସେମାନଙ୍କୁ ପରିତ୍ୟାଗ କରିଥାନ୍ତି । ତେଣୁ ନାଗରିକଙ୍କ ଦାୟିତ୍ୱବୋଧ ଓ ନିଷ୍ଠା ଉପରେ ଦେଶର ଭବିଷ୍ୟତ ନିର୍ଭର କରିଥାଏ ।

ଭାରତର ସମ୍ବିଧାନ ପ୍ରତି ନାଗରିକଙ୍କୁ ଯେପରି କେତେକ ମୌଳିକ ଅଧିକାର ଦେଇଛି, ସେହିପରି ସେମାନଙ୍କୁ କେତେକ କର୍ତ୍ତବ୍ୟ କରିବାକୁ ମଧ୍ୟ ସଚେତନ କରାଇ ଦେଇଛି । ୧୯୭୫ ମସିହା ପର୍ଯ୍ୟନ୍ତ ଭାରତର ସମ୍ବିଧାନରେ ନାଗରିକଙ୍କ କର୍ତ୍ତବ୍ୟ ସମ୍ପର୍କରେ କୌଣସି ଉଲ୍ଲେଖ ନ ଥିଲା । ୧୯୭୬ ମସିହାରେ କେତେକ ନାଗରିକ କର୍ତ୍ତବ୍ୟ ଏଥିରେ ଅନ୍ତର୍ଭୁକ୍ତ କରାଗଲା । ୧୯୭୬ ମସିହାର ୪୨ ତମ ସମ୍ବିଧାନ ସଂଶୋଧନରେ ଏକ ନୂତନ ଧାରାର ସଂଯୋଗ କରାଗଲା । ଏହି ଧାରାଟି ହେଉଛି '୫୧-କ' ଧାରା ଏବଂ ଏହି ଧାରାରେ ଭାରତର ନାଗରିକଙ୍କ ଉପରେ କେତେଗୁଡ଼ିଏ ଦାୟିତ୍ୱ ବା କର୍ତ୍ତବ୍ୟ ସମ୍ପାଦନ କରିବାକୁ ନିର୍ଦ୍ଦେଶ ଦିଆଯାଇଛି । ଜନସାଧାରଣ ବା ନାଗରିକଙ୍କ ଗଣତାନ୍ତ୍ରିକ ଦାୟିତ୍ୱବୋଧ ସୃଷ୍ଟି ନିମିତ୍ତ ଏପରି ପଦକ୍ଷେପ ଗ୍ରହଣ କରାଯାଇଛି । ଅବଶ୍ୟ ଅଳ୍ପ କେତୋଟି କର୍ତ୍ତବ୍ୟ ଛାଡ଼ିଦେଲେ, ଅନ୍ୟ କର୍ତ୍ତବ୍ୟମାନ ସମାଧାନ କରି ନ ପାରିଲେ ସେମାନଙ୍କୁ ଦଣ୍ଡ ଦେବାର ବ୍ୟବସ୍ଥା ନାହିଁ । ଏହା ମୁଖ୍ୟତଃ ଇଚ୍ଛାଧୀନ ଏବଂ ଏହାର କାର୍ଯ୍ୟକାରିତା ନିମିତ୍ତ କୌଣସି ବିଧିବ୍ୟବସ୍ଥା ମଧ୍ୟ କରାଯାଇ ନାହିଁ । ତଥାପି ଏହାଦ୍ୱାରା ଜଣେ ନାଗରିକଙ୍କର ରାଷ୍ଟ୍ର ପ୍ରତି ଦାୟିତ୍ୱବୋଧ ଯେ ବୃଦ୍ଧି ପାଇବ, ଏଥିରେ ସନ୍ଦେହ ନାହିଁ ।

ଭାରତର ସମ୍ବିଧାନରେ ମୁଖ୍ୟତଃ ଦଶଟି ମୌଳିକ କର୍ତ୍ତବ୍ୟ ସମ୍ପର୍କରେ ସୂଚନା ପ୍ରଦାନ କରାଯାଇଛି । ପ୍ରଥମ କର୍ତ୍ତବ୍ୟ ହେଉଛି, ଜଣେ ନାଗରିକ ଭାବରେ ସମ୍ବିଧାନ ଆଦର୍ଶ ପ୍ରତି ଆନୁଗତ୍ୟ ଓ ସମ୍ମାନ ପ୍ରଦର୍ଶନ ସଙ୍ଗେ ସଙ୍ଗେ ଜାତୀୟ ପତାକା ଓ ଜାତୀୟ ସଙ୍ଗୀତ ପ୍ରତି ସମ୍ମାନ ପ୍ରଦର୍ଶନ

କରିବା ଆବଶ୍ୟକ । ଗୋଟିଏ ସମ୍ବିଧାନ ସେ ଦେଶର ଦର୍ପଣ । ଏହା ମଧ୍ୟରେ ପ୍ରତିଫଳିତ ହୋଇଥାଏ ନାଗରିକର ଆଦର୍ଶ, କର୍ତ୍ତବ୍ୟନିଷ୍ଠା ଓ ଦାୟିତ୍ୱବୋଧ । ତା'ର ଆଦର୍ଶ ପ୍ରତି ସମ୍ମାନ ପ୍ରଦର୍ଶନ କରିବା ଜଣେ ନାଗରିକର ପରମ କର୍ତ୍ତବ୍ୟ । ଜାତୀୟ ପତାକା ମଧ୍ୟରେ ଦେଶର ସ୍ୱାଭିମାନ ଓ ଗୌରବ ଜଡ଼ିତ । ଜାତୀୟ ସଙ୍ଗୀତରେ ଦେଶର ଆତ୍ମା ଓ ଭାବ ପ୍ରତିଫଳିତ । ତେଣୁ ଏ ଦୁଇଟି ପ୍ରତି ଯଥାର୍ଥ ସମ୍ମାନ ପ୍ରଦର୍ଶନ କରିବା ଯେକୌଣସି ନାଗରିକର ନୈତିକ କର୍ତ୍ତବ୍ୟ । ଯେଉଁ ମହାନ୍ ଆଦର୍ଶ ଆମକୁ ସ୍ୱାଧୀନତା ସଂଗ୍ରାମରେ ଝାସ ଦେବାକୁ ଅନୁପ୍ରାଣିତ କରିଥିଲା, ସେହି ମହତ୍ତର ଭାବକୁ ଅନୁସରଣ କରିବା ଓ ତାକୁ ଶ୍ରଦ୍ଧା କରିବା ନାଗରିକର ଦ୍ୱିତୀୟ ମୌଳିକ କର୍ତ୍ତବ୍ୟ । ଏହି କର୍ତ୍ତବ୍ୟରେ ନାଗରିକର ଆତ୍ମୋତ୍ସର୍ଗ ଭାବ ଓ ସଂକୀର୍ଣ୍ଣ ସ୍ୱାର୍ଥର ପରିତ୍ୟାଗ ନିମିତ୍ତ ନିର୍ଦ୍ଦେଶ ପ୍ରଦାନ କରାଯାଇଛି । ଦେଶର ସାର୍ବଭୌମତ୍ୱ, ଏକତା ଓ ଅଖଣ୍ଡତା ରକ୍ଷା କରିବା ନାଗରିକର ତୃତୀୟ ମୌଳିକ କର୍ତ୍ତବ୍ୟ । ଦୀର୍ଘଦିନର ସାଧନା ଓ ସଂଗ୍ରାମ ଦ୍ୱାରା ଆମକୁ ଯେଉଁ ସ୍ୱାଧୀନତା ମିଳିଛି, ତାହାକୁ ଜୀବନ ଦେଇ ରକ୍ଷା କରିବା ଆମର ପ୍ରାଥମିକ କର୍ତ୍ତବ୍ୟ । ନଚେତ୍ ପୁନରାୟ ପରାଧୀନତାର ଶୃଙ୍ଖଳରେ ଆମକୁ ବନ୍ଦୀ ହେବାକୁ ପଡ଼ିବ । ଦେଶକୁ ରକ୍ଷା କରିବା ଏବଂ ଜାତୀୟ ସେବାପାଇଁ ନିଜକୁ ଉତ୍ସର୍ଗ କରିବା ହେଉଛି ଚତୁର୍ଥ ମୌଳିକ କର୍ତ୍ତବ୍ୟ । ବହିଃଶତ୍ରୁକୁ ପରାହତ କରି ଦେଶକୁ ନିରାପଦ ରଖିବା ନାଗରିକ ଭାବରେ ଏହା ଆମର ମହତ୍ କାର୍ଯ୍ୟ । ତେଣୁ ଯେକୌଣସି ମୁହୂର୍ତ୍ତରେ ଦେଶଙ୍କ ଡାକରା ଆସିବା ମାତ୍ରେ ବିପଦ ସାଗରକୁ ଲମ୍ଫ ପ୍ରଦାନ ନିମିତ୍ତ ନିଜକୁ ପ୍ରସ୍ତୁତ କରି ରଖିବା ଉଚିତ । ଜାତି, ଧର୍ମ, ଭାଷା ଓ ଅଞ୍ଚଳ ନିର୍ବିଶେଷରେ ଏକ ଭ୍ରାତୃତ୍ୱବୋଧର ଜାଗରଣ କରିବା ତଥା ଦେଶର ଅଧିବାସୀଙ୍କ ମଧ୍ୟରେ ସଂହତି ସ୍ଥାପନ କରିବା ଓ ସର୍ବୋପରି ନାରୀମାନଙ୍କ ମର୍ଯ୍ୟାଦା ହାନିକାରକ କୌଣସି କାର୍ଯ୍ୟ ନ କରିବା ପଞ୍ଚମ ମୌଳିକ କର୍ତ୍ତବ୍ୟ । ଜାତିଆଣଭାବ, ସଂକୀର୍ଣ୍ଣ ଧର୍ମନୀତି, ଆଞ୍ଚଳିକତାବୋଧ ଓ ଭାଷାଗତ ଅହଂକାର ଦେଶର ବିପଦକୁ ଡାକିଆଣେ । ନାରୀମାନଙ୍କର ଅମର୍ଯ୍ୟାଦା ଦେଶର ସମ୍ମାନ ହାନି କରିଥାଏ । ତେଣୁ ଏଥିପ୍ରତି ସତର୍କ ରହି କାର୍ଯ୍ୟ କରିବା ପ୍ରତ୍ୟେକ ନାଗରିକଙ୍କର ଯଥାର୍ଥ କର୍ତ୍ତବ୍ୟ । ଭାରତର ସମନ୍ୱୟଧର୍ମୀ ଓ ମହାନ୍ ସଂସ୍କୃତିର ରକ୍ଷା ତଥା ତା'ର ମୂଲ୍ୟବୋଧ ପ୍ରତି ସମ୍ମାନ ପ୍ରଦର୍ଶନ ନାଗରିକଙ୍କର ୬ଷ୍ଠ କର୍ତ୍ତବ୍ୟ । ବହୁ ସଂସ୍କୃତିର ମିଶ୍ରିତ ରୂପ ଭାରତୀୟ ସଂସ୍କୃତିକୁ ମହତ୍ତର କରିଛି । ଭାରତର ଏହି ମହାମୂଲ୍ୟ ସଂସ୍କୃତିକୁ ଚିରଜୀବିତ କରି ରଖିବା ଆମମାନଙ୍କର ଦାୟିତ୍ୱ । ଏଥିରୁ କ୍ଷାନ୍ତ ହେଲେ ସମୟ ଆମକୁ କ୍ଷମା କରିପାରିବ ନାହିଁ । ତେଣୁ ଏହାକୁ କିପରି ଅନାହତ ରଖାଯାଇପାରିବ, ତାହା ଆମ୍ଭ ସମସ୍ତଙ୍କର ଦାୟିତ୍ୱ । ଭାରତ ବିଭିନ୍ନ ଐଶ୍ୱର୍ଯ୍ୟ ଓ ସମ୍ପଦରେ ପରିପୂର୍ଣ୍ଣ । ବିଶେଷ ଭାବରେ ଅରଣ୍ୟ, ନଦୀ, ବଣ୍ୟ ପଶୁପକ୍ଷୀ ହେଉଛନ୍ତି ଆମର ପ୍ରାକୃତିକ ସମ୍ପଦ । ସେଗୁଡ଼ିକର କ୍ଷୟ ଦେଶ ପାଇଁ କ୍ଷତିକାରକ । ତେଣୁ ଏହି ସମ୍ପଦର ସୁରକ୍ଷା ଓ ତା' ପ୍ରତି ଯତ୍ନଶୀଳ ହେବା ନାଗରିକର ସପ୍ତମ କର୍ତ୍ତବ୍ୟ । ଏହାର ସୁରକ୍ଷା ଦ୍ୱାରା ଆମେ ଆମର ଯଥାର୍ଥ କର୍ତ୍ତବ୍ୟବୋଧର ପରିଚୟ ଦେଇପାରିବା । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବିକାଶ, ମାନବିକତାବୋଧର ପରିପ୍ରକାଶ ତଥା ଅନୁସନ୍ଧିତ୍ସା ଓ ସଂସ୍କାର ନିମିତ୍ତ ଯଥାର୍ଥ ମନୋବୃତ୍ତିର ବିକାଶ ଅଷ୍ଟମ ମୌଳିକ କର୍ତ୍ତବ୍ୟ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ସମାଜକୁ ସଂସ୍କୃତ ତଥା କୁସଂସ୍କାରମୁକ୍ତ କରିଥାଏ । ମାନବିକତାବୋଧ ସମାଜରେ ବସବାସ କରୁଥିବା ପ୍ରତ୍ୟେକ

ମଣିଷ ପ୍ରତି ସମଦୃଷ୍ଟିଭଙ୍ଗୀ ଜାଗ୍ରତ କରିଥାଏ ଏବଂ ଅନୁସନ୍ଧିତ୍ସା ନୂତନ ସୃଷ୍ଟି ନିମନ୍ତ ପ୍ରେରଣା ଯୋଗାଇଥାଏ । ଦେଶର ଉନ୍ନତି ନିମିତ୍ତ ଏହି ପ୍ରକାର ମନୋବୃତ୍ତିର ଆବଶ୍ୟକତା ଜରୁରୀ । ଜାତୀୟ ସମ୍ପତ୍ତିର ସୁରକ୍ଷା ଏବଂ ହିଂସାତ୍ମକ ଆଚରଣର ଅବଦମନ ହେଉଛି ନବମ ମୌଳିକ କର୍ତ୍ତବ୍ୟ । ଅନେକ ସମୟରେ ଗୋଟିଏ ଖିଆଲର ବଶବର୍ତ୍ତୀ ହୋଇ ମଣିଷ ହିଂସାତ୍ମକ ଆଚରଣ ପ୍ରଦର୍ଶନ କରିବାରୁ ବହୁପରିମାଣରେ ଜାତୀୟ ସମ୍ପତ୍ତି ନଷ୍ଟ ବିନଷ୍ଟ ହୋଇଥାଏ । ଏହା ବିଶୃଙ୍ଖଳିତ ଆଚରଣର ପ୍ରକୃତ ନମୁନା । ଏ ପ୍ରକାର ଆଚରଣ ଦ୍ୱାରା ଉଭୟ ବ୍ୟକ୍ତି ଓ ସମାଜର ଅନିଷ୍ଟ ସାଧନ ହୋଇଥାଏ । ଶୃଙ୍ଖଳିତ ଆଚରଣ ଓ ସଂଯମ ଜୀବନ ମଣିଷ ଏବଂ ସମାଜ ଉଭୟର ମଙ୍ଗଳ କରିଥାଏ । ଏହି ଦୃଷ୍ଟିରୁ ପ୍ରତ୍ୟେକ ନାଗରିକ ଶୃଙ୍ଖଳିତ ତଥା ସଂଯମୀ ହେବା ଆବଶ୍ୟକ । ବ୍ୟକ୍ତିଗତ ଓ ସମଷ୍ଟି ଉଭୟ କ୍ଷେତ୍ରରେ ଚରମ ଉତ୍କର୍ଷ ପ୍ରତିପାଦନ କଲେ ଜାତି ବା ରାଷ୍ଟ୍ର ସର୍ବୋଚ୍ଚ ସୋପାନରେ ଉପନୀତ ହୋଇଥାଏ । ବ୍ୟକ୍ତିଗତ ଓ ସାମୂହିକ ଜୀବନରେ ଚରମୋତ୍କର୍ଷତା ପ୍ରତିପାଦନ ହିଁ ଦଶମ ମୌଳିକ କର୍ତ୍ତବ୍ୟ । ସ୍ୱରଣ ସିଂ କମିଟିର ସୁପାରିସ ଅନୁଯାୟୀ ଏହି ମୌଳିକ କର୍ତ୍ତବ୍ୟଗୁଡ଼ିକ ସମ୍ବିଧାନର ଅଙ୍ଗୀଭୂତ ହୋଇଛି । କମିଟି ମଧ୍ୟ ଉକ୍ତ କର୍ତ୍ତବ୍ୟଗୁଡ଼ିକ ବାଧ୍ୟତାମୂଳକ କରିବାକୁ ସୁପାରିସ କରିଥିଲେ । ଯଦି କୌଣସି ବ୍ୟକ୍ତି ଏହି କର୍ତ୍ତବ୍ୟ ପାଳନରେ ଅବହେଳା ପ୍ରଦର୍ଶନ କରେ, ତେବେ ସେ ଦଣ୍ଡିତ ହେବା ଆବଶ୍ୟକ ବୋଲି କମିଟି ମତାମତ ପ୍ରଦାନ କରିଥିଲେ । ପୁନରାୟ ଏହା ବିରୋଧରେ କୌଣସି ଅଦାଲତରେ ଆଶ୍ରୟ ନିଆଯାଇପାରିବ ନାହିଁ ବୋଲି ସେମାନେ ମତ ଦେଇଥିଲେ । ମାତ୍ର ଇନ୍ଦିରାଗାନ୍ଧି ସରକାର ଶେଷ ଦୁଇଟି ମତକୁ ଗ୍ରହଣ କରିନଥିଲେ । ସମ୍ବିଧାନରେ ପ୍ରଦତ୍ତ ମୌଳିକ କର୍ତ୍ତବ୍ୟଗୁଡ଼ିକୁ ମୁଖ୍ୟତଃ ପାଞ୍ଚ ଭାଗରେ ବିଭକ୍ତ କରାଯାଇଥାଏ । ସମ୍ବିଧାନ ପ୍ରତି ଆନୁଗତ୍ୟ ପ୍ରକାଶ ବୈଧାନିକ କର୍ତ୍ତବ୍ୟ ଅନ୍ତର୍ଭୁକ୍ତ ହୋଇଥିବା ସମୟରେ ଦେଶର ସାର୍ବଭୌମତ୍ୱ, ଏକତ୍ୱ ଓ ଅଖଣ୍ଡତା ରକ୍ଷା ରାଜନୀତିକ କର୍ତ୍ତବ୍ୟ ଅନ୍ତର୍ଭୁକ୍ତ । ସଂହତିସ୍ଥାପନ, ଭ୍ରାତୃତ୍ୱବୋଧର ଜାଗରଣ ଏବଂ ନାରୀ ଜାତିର ସମ୍ମାନ ରକ୍ଷା ସାମାଜିକ କର୍ତ୍ତବ୍ୟ ଭାବରେ ଗୃହୀତ ହୋଇଥାଏ । ସେହିପରି ମୁକ୍ତି ସଂଗ୍ରାମର ଆଦର୍ଶର ଅନୁଧାବନ, ଦେଶରକ୍ଷା ଓ ଦେଶସେବା ନୈତିକ କର୍ତ୍ତବ୍ୟ ଭାବରେ ପରିଗଣିତ ହେଉଥିବା ବେଳେ ଜାତୀୟ ସମ୍ପତ୍ତିର ସୁରକ୍ଷା ଓ ପରିବେଶ ରକ୍ଷା ଆର୍ଥନୀତିକ କର୍ତ୍ତବ୍ୟ ଅନ୍ତର୍ଭୁକ୍ତ ହୋଇଥାଏ । ଭାରତର ନାଗରିକ ଭାବରେ ପ୍ରତ୍ୟେକ ବ୍ୟକ୍ତି ଉପରୋକ୍ତ କର୍ତ୍ତବ୍ୟ ପାଳନ କରିବା ସର୍ବାଦୌ ଆବଶ୍ୟକ ।

ସମ୍ବିଧାନର ୫୧ (କ) ଧାରାରେ ଯେଉଁ ନାଗରିକ କର୍ତ୍ତବ୍ୟ ସମ୍ପର୍କରେ ସୂଚନା ପ୍ରଦାନ କରାଯାଇଛି ତାହାକୁ ବୈଧାନିକ ଅନୁମୋଦନ ପ୍ରଦାନ କରାଯାଇପାରି ନାହିଁ । ଏହି ଧାରାର ସୂଚନା ଅନୁଯାୟୀ କୌଣସି ନାଗରିକ ଉପରୋକ୍ତ ଦଶଟି ମୌଳିକ କର୍ତ୍ତବ୍ୟ ସମ୍ପାଦନାରେ ଅବହେଳା ପ୍ରଦର୍ଶନ କଲେ, ତାହାକୁ ଶାସ୍ତି ଦିଆଯାଇପାରିବ ନାହିଁ । ମାତ୍ର ଜାତୀୟ ସଙ୍ଗୀତ ଓ ଜାତୀୟ ପତାକାର ଅବମାନନା କଲେ ସେଥିପ୍ରତି ଅନ୍ୟ ଉପାୟରେ ଦଣ୍ଡ ଦେବାର ବୈଧାନିକ ଉପାୟ ରହିଛି । ଏହି କର୍ତ୍ତବ୍ୟଗୁଡ଼ିକ ବ୍ୟକ୍ତି ପ୍ରତି ନିର୍ଦ୍ଦେଶ ମାତ୍ର ରାଷ୍ଟ୍ର ପ୍ରତି ନୁହେଁ । ଏହା ଭାରତୀୟ ନାଗରିକ ପ୍ରତି ପ୍ରଯୁଜ୍ୟ ହୋଇଥିବା ସମୟରେ ବିଦେଶୀମାନଙ୍କ ପ୍ରତି ପ୍ରଯୁଜ୍ୟ ହୋଇ ନ ଥାଏ ।

ସରକାରରେ ଥିବା ବ୍ୟକ୍ତିବିଶେଷଙ୍କ ପ୍ରତି ଏହା ମଧ ପ୍ରଯୁଜ୍ୟ ନୁହେଁ । ଏହା ମଧରେ ଏପରି କେତେକ କର୍ତ୍ତବ୍ୟ ରହିଛି ଯାହାକୁ ଠିକ୍ ଭାବରେ ବିଶ୍ଳେଷଣ କରିବା କଷ୍ଟକର ବ୍ୟାପାର । ଶୃଙ୍ଖଳାରକ୍ଷା କର୍ତ୍ତବ୍ୟ, କାମ କରିବାର ଦାୟିତ୍ୱ ପରି କେତୋଟି ଅତ୍ୟାବଶ୍ୟକ କର୍ତ୍ତବ୍ୟକୁ ମଧ ଏହାର ଅଙ୍ଗୀଭୂତ କରାଯାଇ ପାରି ନାହିଁ । କେତେକ ସମ୍ବିଧାନବିତ୍ ସମାଲୋଚନା କରି କହିଥାନ୍ତି, ଭାରତରେ ଜରୁରୀକାଳୀନ ପରିସ୍ଥିତି ଜାରି ସମୟରେ ଏହି ଦଶଟି ମୌଳିକ କର୍ତ୍ତବ୍ୟକୁ ସମ୍ବିଧାନରେ ସଂଯୋଜିତ କରାଯାଇ ନାଗରିକମାନଙ୍କର ମୁହଁ ବନ୍ଦ କରିଦେବାର ଉଦ୍ୟମ ହୋଇଥିଲା । ସରକାର ବିରୋଧରେ ସ୍ୱର ଉତ୍ତୋଳନ କରାନଯାଇ ପାରିବ ବୋଲି ଶ୍ରୀମତୀ ଗାନ୍ଧି ଏପରି ପଦକ୍ଷେପ ନେଇଥିବାର ଆଲୋଚନା ହୋଇଥାଏ । ତଥାପି ଏହି କର୍ତ୍ତବ୍ୟଗୁଡ଼ିକର ଯେ କେତେକ ସାମାଜିକ ଉପଯୋଗିତା ରହିଛି, ତାହା ଅସ୍ୱୀକାର କରାଯାଇ ନ ପାରେ ।

ମୌଳିକ ଅଧିକାର ସଦୃଶ ପ୍ରତ୍ୟେକ ନାଗରିକର କେତେକ ମୌଳିକ କର୍ତ୍ତବ୍ୟ ରହିବା ବାଞ୍ଛନୀୟ । ଅନ୍ୟଭାବରେ କହିଲେ ମୌଳିକ୍ ଅଧିକାର ଓ ମୌଳିକ କର୍ତ୍ତବ୍ୟ ପରସ୍ପରର ପରିପୂରକ । ଗୋଟିଏ ଅଭାବରେ ସାମାଜିକ ସ୍ଥିରତା ରକ୍ଷା କରିବା ଅସମ୍ଭବ । ଏହାଦ୍ୱାରା ନାଗରିକମାନେ ସଚେତନ ହୋଇପାରିବେ ଓ ନିଜର କର୍ତ୍ତବ୍ୟ ସମ୍ପର୍କରେ ମଧ ଅବଗତ ହୋଇପାରିବେ । ଏହି କର୍ତ୍ତବ୍ୟବୋଧ ନାଗରିକଙ୍କୁ ଦେଶ ନିମିତ୍ତ କାର୍ଯ୍ୟ କରିବାକୁ ପ୍ରେରଣା ଦେବା ସଙ୍ଗେ ସଙ୍ଗେ ଦେଶ ପାଇଁ ନିଜକୁ ଉତ୍ସର୍ଗ କରିବାର ଭାବନା ସୃଷ୍ଟି କରିଥାଏ । ଜଣେ ଉପଯୁକ୍ତ ନାଗରିକ ହେବାକୁ ହେଲେ କେଉଁପ୍ରକାର ଆଚରଣ ପ୍ରଦର୍ଶନ କରାଯିବା ଉଚିତ, ଏହି ଦଶଟି ମୌଳିକ ଅଧିକାର ତାହା ସଚେତନ କରାଇ ଦେଇଥାଏ । ତେଣୁ ଜଣେ ଜଣେ ନାଗରିକ ଭାବରେ ଆମର ଯେପରି କିଛି ପାଇବାର ରାଷ୍ଟ୍ରଠାରୁ ରହିଛି, ଠିକ୍ ସେହିପରି ରାଷ୍ଟ୍ରକୁ ମଧ କିଛି ଦେବାର କର୍ତ୍ତବ୍ୟ ରହିଛି । ସେହି କାରଣରୁ ଭାରତର ସମ୍ବିଧାନରେ ଉପରୋକ୍ତ ଦଶଟି ମୌଳିକ ଅଧିକାର ସଂଯୁକ୍ତ କରାଯିବା ଯୁକ୍ତିଯୁକ୍ତ ମନେ ହୋଇଥାଏ ।

●

## ପଞ୍ଚାୟତିରାଜ

**(ଉପକ୍ରମ, ପଞ୍ଚାୟତିରାଜ ଗଠନର ଲକ୍ଷ୍ୟ, ସମ୍ବିଧାନରେ ଏହାର ବ୍ୟବସ୍ଥା, ପଞ୍ଚାୟତିରାଜ ଗଠନ ପ୍ରଣାଳୀ ଓ ତ୍ରିସ୍ତରୀୟ ପଞ୍ଚାୟତିରାଜ, ଗ୍ରାମ ପଞ୍ଚାୟତ ଗଠନ ପ୍ରଣାଳୀ ଓ କାର୍ଯ୍ୟ, ପଞ୍ଚାୟତ ସମିତି ତଥା ଜିଲ୍ଲା ପରିଷଦର ଗଠନ ଓ କାର୍ଯ୍ୟ, ଏହାର ଉପକାର, କେତେକ ତ୍ରୁଟି, ଉପସଂହାର)**

ସମସ୍ତ ମଣିଷଙ୍କୁ ସ୍ୱାଧୀନତା ପ୍ରଦାନ କରିବା ଯେକୌଣସି ସ୍ୱାଧୀନ ରାଷ୍ଟ୍ରର ମୁଖ୍ୟ ଲକ୍ଷ୍ୟ । ଏହି ଲକ୍ଷ୍ୟ ଯଦି କେବଳ ଉପର ସ୍ତରରେ ସୀମିତ ରହେ, ତେବେ ଗଣତନ୍ତ୍ର ସମ୍ପୂର୍ଣ୍ଣ ତ୍ରୁଟିପୂର୍ଣ୍ଣ ବୋଲି ମନେ ହୋଇଥାଏ । ଭାରତ ଏକ ଗ୍ରାମବହୁଳ ଦେଶ । ଏହାର ଅଧିକାଂଶ ଜନସାଧାରଣ

ପଲ୍ଲୀ ବା ଗ୍ରାମରେ ହିଁ ବସବାସ କରିଥାନ୍ତି । ତେଣୁ ପ୍ରଥମେ ଗଣତନ୍ତ୍ର ଗ୍ରାମରୁ ହିଁ ଠିକ୍ ଭାବରେ ଆରମ୍ଭ ହେବା ଆବଶ୍ୟକ । ଗଣତନ୍ତ୍ର ସେତିକିବେଳେ ସଫଳ ହୋଇଥାଏ, ଯେତେବେଳେ ଗ୍ରାମର ଜନସାଧାରଣ ଏହାର ପ୍ରକୃତ ମୂଲ୍ୟ ଉପଲବ୍ଧି କରିଥାନ୍ତି । ସ୍ୱାଧୀନତା ପୂର୍ବରୁ ମହାତ୍ମାଗାନ୍ଧି ସର୍ବପ୍ରଥମେ ଗ୍ରାମରୁ କାର୍ଯ୍ୟ ଆରମ୍ଭ କରିବାର ଚିନ୍ତା କରିଥିଲେ । ପଞ୍ଚାୟତିରାଜର ସୃଷ୍ଟି ତାଙ୍କରି ପରିକଳ୍ପନାରୁ । ଗାନ୍ଧିଜୀଙ୍କ ଗ୍ରାମ ସ୍ୱରାଜ୍ୟର ଚିନ୍ତାଧାରା ହିଁ ପ୍ରକୃତରେ ପଞ୍ଚାୟତିରାଜ । ବିଧାନସଭା ବା ଲୋକସଭା ପାଇଁ ନିର୍ବାଚିତ ସଦସ୍ୟଗଣ ସମୟ ଅଭାବରୁ ହେଉ ବା ଅନ୍ୟ କୌଣସି କାର୍ଯ୍ୟବ୍ୟସ୍ତତା ପାଇଁ ହେଉ, ନିଜ ଅଞ୍ଚଳର ସାଧାରଣ ଅଧିବାସୀଙ୍କ ପ୍ରତି ଦୃଷ୍ଟିଦେଇ ପାରି ନ ଥାନ୍ତି । ଯାହାଦ୍ୱାରା ଅନେକ ସମୟରେ ପଲ୍ଲୀଗ୍ରାମଗୁଡ଼ିକ ଯଥାର୍ଥ ନ୍ୟାୟ ପାଇପାରି ନ ଥାନ୍ତି । ଏହି ବ୍ୟବସ୍ଥାକୁ ଅଧିକ ସକ୍ରିୟ ବା ଲୋକାଭିମୁଖୀ କରିବା ପାଇଁ ତଳସ୍ତରରେ ସ୍ୱାୟତ୍ତଶାସନ ସଂସ୍ଥା ଗଠନ କରିବାର ଆବଶ୍ୟକତା ପଡ଼ିଲା । ସ୍ୱାଧୀନତା ବହୁ ପୂର୍ବରୁ ମଧ ଗ୍ରାମର ସମସ୍ତ ସମସ୍ୟା ପଞ୍ଚାୟତ ମାଧମରେ ନିଷ୍ପତ୍ତି ହେଉଥିଲା; ମାତ୍ର ବିଭିନ୍ନ କାରଣରୁ ଓ ଶାସକମାନଙ୍କର ଏକଚାଟିଆ ଅଧିକାର ପାଇଁ ଏହି ପ୍ରକାର ବ୍ୟବସ୍ଥା ରୁଗ୍ଣ ହୋଇପଡ଼ିଲା । ସ୍ୱାଧୀନତା ପରେ ଗାନ୍ଧିଜୀଙ୍କର ସ୍ୱପ୍ନକୁ ସାକାର କରିବା ନିମିତ୍ତ ଭାରତରେ ପୁନଃ ପଞ୍ଚାୟତିରାଜ ଗଠନ କରାଗଲା ।

ଭାରତରେ ମୁଖ୍ୟତଃ ଦୁଇଟି ଲକ୍ଷ୍ୟକୁ ଆଖି ଆଗରେ ରଖି ପଞ୍ଚାୟତିରାଜ ଗଠନ କରାଯାଇଥିଲା । ପ୍ରଥମ ଲକ୍ଷ୍ୟ ହେଉଛି ଲୋକମାନଙ୍କ ହାତରେ କେତେକ କ୍ଷମତା ପ୍ରଦାନ କରିବା ଓ ଦ୍ୱିତୀୟ ଲକ୍ଷ୍ୟଟି ହେଲା ଗ୍ରାମମାନଙ୍କର ଉନ୍ନତି ସାଧନ କରିବା । ଭାରତ ଏକ ଗ୍ରାମବହୁଳ ଦେଶ ହୋଇଥିବାରୁ ଗ୍ରାମର ବିକାଶ ବିନା ଦେଶର ବିକାଶ ଅସମ୍ଭବ । ପୂର୍ବରୁ ପ୍ରାଚୀନ ଭାରତରେ ପଞ୍ଚାୟତ ବ୍ୟବସ୍ଥା ଥିଲେ ହେଁ ଇଂରେଜମାନଙ୍କ ଶାସନ ସମୟରେ ତା'ର ବିଲୋପ ଘଟିଥିଲା । ଅବଶ୍ୟ ଲର୍ଡ ରିପନ୍ ଭାଇସରାୟ ଥିବା ସମୟରେ ୧୮୮୨ ମସିହାରେ ସ୍ୱାୟତ୍ତ ଶାସନ ବ୍ୟବସ୍ଥାର ବିକାଶ ନିମିତ୍ତ କେତେକ ପଦକ୍ଷେପ ଗ୍ରହଣ କରିଥିଲେ ହେଁ, ତାହା ସଫଳ ହୋଇ ପାରିନ ଥିଲା । ଗାନ୍ଧିଜୀ ଏହାର ଏକ ନୂତନ ରୂପରେଖ ପ୍ରସ୍ତୁତ କରିଥିଲେ । ୧୯୫୨ ମସିହାରେ ଗ୍ରାମ୍ୟଗୋଷ୍ଠୀ ବିକାଶ ଯୋଜନା ଗୃହୀତ ହୋଇଥିଲା । ନେହେରୁ ଏହାକୁ 'ନିରବ ବିପ୍ଳବ' ବୋଲି ନାମିତ କରିଥିଲେ । ଗ୍ରାମର ସାଧାରଣ ଜନତାଙ୍କର ଅନାଗ୍ରହ ଯୋଗୁଁ ଏହା ସଫଳ ହୋଇ ପାରି ନ ଥିଲା । ପଲ୍ଲୀ ଉନ୍ନୟନ ଯୋଜନା କିପରି କାର୍ଯ୍ୟକାରୀ ହୋଇପାରିବ, ତା'ର ରୂପରେଖ ପ୍ରସ୍ତୁତ କରିବାକୁ ୧୯୫୬ ମସିହାରେ ବଳବନ୍ତରାୟ ମେହେଟାଙ୍କ ଅଧକ୍ଷତାରେ ସରକାର ଏକ କମିଟି ଗଢ଼ିଥିଲେ । ଏହି କମିଟି ଗଣତାନ୍ତ୍ରିକ ବିକେନ୍ଦ୍ରୀକରଣ ଉପରେ ଗୁରୁତ୍ୱାରୋପ କରିବା ସଙ୍ଗେ ସଙ୍ଗେ ତ୍ରିସ୍ତରୀୟ ପଞ୍ଚାୟତିରାଜ ଗଠନ କରିବା ନିମିତ୍ତ ପରାମର୍ଶ ଦେଇଥିଲେ । ଏହି ପଞ୍ଚାୟତିରାଜର ମୁଖ୍ୟ ଉଦ୍ଦେଶ୍ୟ ଥିଲା ପଲ୍ଲୀ ବିକାଶ । ଏହାର ଅନ୍ୟତମ ଲକ୍ଷ୍ୟ ଥିଲା ନିମ୍ନ ସ୍ତରରୁ ଗଣତନ୍ତ୍ର କାର୍ଯ୍ୟାବଳୀ ପ୍ରତି ଜନସାଧାରଣଙ୍କୁ ସଚେତନ କରାଇବା ଏବଂ ଜାତି ଗଠନ ଓ ବିକାଶ ପାଇଁ ସେମାନଙ୍କର ପ୍ରତ୍ୟକ୍ଷ ସହଯୋଗ କାମନା କରିବା ତଥା ସେମାନଙ୍କ ମଧରେ ନାଗରିକ ସଚେତନତା ସୃଷ୍ଟି କରିବା । ଗ୍ରାମ୍ୟ ସମାଜର ଉନ୍ନତି, ବିକାଶ, ପୁନର୍ଗଠନ ଆଦି କ୍ଷେତ୍ରରେ

ଲୋକମାନଙ୍କୁ ସଂପୃକ୍ତ କରାଇ ସେମାନଙ୍କ ମଧ୍ୟରେ ଶାସନଗତ ପରିଚାଳନା ଦକ୍ଷତା ସୃଷ୍ଟି କରିବା ଏହାର ଅନ୍ୟତମ ଲକ୍ଷ୍ୟ ।

ସ୍ୱାଧୀନତା ପରେ ପଞ୍ଚାୟତିରାଜ ଗଠନ ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଗଲା । ଭାରତୀୟ ସମ୍ବିଧାନର ୪୦ ଧାରାରେ ରାଜ୍ୟକୁ ଗ୍ରାମ ପଞ୍ଚାୟତ ଗଠନ ନିମିତ୍ତ ନିର୍ଦ୍ଦେଶ ଦିଆଯାଇଛି । ଏହି ସଂସ୍ଥା ସ୍ୱାୟତ୍ତ ଶାସନର ଏକ ଅଂଶ ରୂପେ କାର୍ଯ୍ୟ କରିବେ ବୋଲି ସ୍ପଷ୍ଟଭାବେ କୁହାଯାଇଛି – "The state shall take steps to organise village panchayats and endow them with such powers and authority as may be necessary to enable them to function as units of self Government." ସମ୍ବିଧାନର ନିର୍ଦ୍ଦେଶ ଅନୁଯାୟୀ ପଞ୍ଚାୟତିରାଜର ଗଠନ କାର୍ଯ୍ୟ ରାଜ୍ୟ ସରକାର କରିବେ ଓ ତାହାକୁ କେତେକ କ୍ଷମତା ଅର୍ପଣ କରିବେ । ଗାନ୍ଧିଜୀଙ୍କ ଆଦର୍ଶକୁ କାର୍ଯ୍ୟକାରୀ କରିବା ପାଇଁ ସମ୍ବିଧାନରେ ଲିଖିତ ରୂପେ ଏହାର ବ୍ୟବସ୍ଥା କରାଯାଇଛି । ପ୍ରଥମେ ରାଜସ୍ଥାନରେ ୧୯୫୯ ମସିହା ଅକ୍ଟୋବର ୨ ତାରିଖରେ ପଞ୍ଚାୟତିରାଜ ବ୍ୟବସ୍ଥା ପ୍ରଚଳନ ହୋଇଥିଲା । ଓଡ଼ିଶାରେ ୧୯୬୧ ମସିହା ଜାନୁଆରୀ ୨୬ ରେ ଏହା କାର୍ଯ୍ୟକାରୀ ହୋଇଥିଲା ।

ପଞ୍ଚାୟତିରାଜର କାର୍ଯ୍ୟକୁ ଅଧିକ ସରଳ ଓ ଲୋକପ୍ରିୟ କରିବା ପାଇଁ ଏହାକୁ ବିକେନ୍ଦ୍ରୀକରଣ କରାଯାଇଛି । ଏହାଦ୍ୱାରା ଜନସାଧାରଣ ଶୀଘ୍ର ଓ ପ୍ରକୃତ ନ୍ୟାୟ ଲାଭ କରିପାରିବେ ବୋଲି ଆଶା କରାଯାଇ ଏପରି ପଦକ୍ଷେପ ଗ୍ରହଣ କରାଯାଇଛି । ଏକ ବା ଏକାଧିକ ଗ୍ରାମକୁ ନେଇ ଗୋଟିଏ ଗ୍ରାମପଞ୍ଚାୟତ ଗଠନ କରାଯାଇଥାଏ । ସେହିପରି କେତେଗୁଡ଼ିଏ ଗ୍ରାମପଞ୍ଚାୟତକୁ ନେଇ ଗ୍ରାମପଞ୍ଚାୟତ ସମିତି ଏବଂ ସରକାରଙ୍କ ଦ୍ୱାରା ଜିଲ୍ଲାସ୍ତରରେ ଜିଲ୍ଲା ପରିଷଦ ଗଠିତ ହୋଇଛି । ଗ୍ରାମପଞ୍ଚାୟତ ମୁଖ୍ୟତଃ ଗ୍ରାମର ଉନ୍ନତି, ଗ୍ରାମପଞ୍ଚାୟତ ସମିତି ଥାନା ସ୍ତର ବା ବ୍ଲକ୍ ସ୍ତରରେ ଥିବା ସମସ୍ତ ଗ୍ରାମର ସମସ୍ୟା ଏବଂ ଜିଲ୍ଲାପରିଷଦ ଜିଲ୍ଲାସ୍ତରୀୟ ଉନ୍ନୟନ କାର୍ଯ୍ୟ ଦେଖିଥାନ୍ତି । ସମଗ୍ର ଭାରତରେ ପ୍ରାୟ ୨ ଲକ୍ଷ ଗ୍ରାମପଞ୍ଚାୟତ କାର୍ଯ୍ୟ କରୁଛି । ୭୩ ତମ ଏବଂ ୭୪ ତମ ସମ୍ବିଧାନ ସଂଶୋଧନ (୧୯୯୨) ଅନୁଯାୟୀ ନିର୍ବାଚନ କମିଶନଙ୍କ ତତ୍ତ୍ୱାବଧାନରେ ପଞ୍ଚାୟତ ନିର୍ବାଚନ ହେବାର ବ୍ୟବସ୍ଥା କରାଯାଇଛି । ଶ୍ରେଣୀ ଅନୁଯାୟୀ ସଂରକ୍ଷଣ ବ୍ୟବସ୍ଥା ହେବା ସଙ୍ଗେ ସଙ୍ଗେ ମହିଳାମାନଙ୍କୁ ଏଥିରେ ପ୍ରତ୍ୟକ୍ଷ ଅଂଶ ଗ୍ରହଣ କରିବା ନିମିତ୍ତ କେତେକ ପଦବୀ ସଂରକ୍ଷଣ ରଖାଯାଇଛି । ଗଣତାନ୍ତ୍ରିକ ଉପାୟରେ କିପରି ନିର୍ବାଚନ ସୁରୁଖୁରରେ ସମାପନ ହେବ, ସେଥିପାଇଁ ଦୃଷ୍ଟି ପ୍ରଦାନ କରିବାକୁ ନିର୍ଦ୍ଦେଶ ପ୍ରଦାନ କରାଯାଇଛି । ଏତଦ୍ ବ୍ୟତୀତ ଅନ୍ୟତମ ଉଲ୍ଲେଖଯୋଗ୍ୟ ବିଷୟ ହେଉଛି ପଞ୍ଚାୟତଗୁଡ଼ିକର ଅର୍ଥନୈତିକ ଅବସ୍ଥାର ଅନୁଧ୍ୟାନର ଦାୟିତ୍ୱ ମଧ୍ୟ ଅର୍ଥ କମିଶନଙ୍କ ଉପରେ ନ୍ୟସ୍ତ କରାଯାଇଛି । ଏହାଦ୍ୱାରା ଗଣତାନ୍ତ୍ରିକ ପଦ୍ଧତିକୁ ସମ୍ମାନ ପ୍ରଦର୍ଶନ କରାଯିବା ସଙ୍ଗେ ସଙ୍ଗେ ଏହାର ସାମଗ୍ରିକ ସୁଷ୍ଠୁ କାର୍ଯ୍ୟକାରିତା ନିମିତ୍ତ ପନ୍ଥା ନିର୍ଦ୍ଦେଶିତ ହୋଇଛି ।

ପଞ୍ଚାୟତିରାଜର ତଳସ୍ତର ହେଉଛି ଗ୍ରାମପଞ୍ଚାୟତ । ଗଣତାନ୍ତ୍ରିକ ଧାରାର ଏହା ହେଉଛି ପ୍ରଥମ ପାବଚ୍ଛ । ଗୋଟିଏ ଗ୍ରାମଶାସନ ମଧ୍ୟରେ ୧୧ରୁ ୨୫ ପୌର ବିଭାଗ ରହିଥାଏ । ସାଧାରଣତଃ ଗୋଟିଏ ଗ୍ରାମଶାସନର ଲୋକସଂଖ୍ୟା ମୁଖ୍ୟତଃ ୨୦୦୦ରୁ ୬୦୦୦ ମଧ୍ୟରେ ହୋଇଥାଏ । ଗ୍ରାମ ଶାସନର ବିଭିନ୍ନ ୱାର୍ଡରୁ ନିର୍ବାଚିତ ହୋଇଥିବା ବ୍ୟକ୍ତିଙ୍କୁ ନେଇ ଗ୍ରାମପଞ୍ଚାୟତ ଗଠିତ ହୋଇଥାଏ । ଏହି ୱାର୍ଡମେମ୍ବର ସାଧାରଣତଃ ପଞ୍ଚ ନାମରେ ନାମିତ ହୋଇଥାନ୍ତି । ଗ୍ରାମ ପଞ୍ଚାୟତର ମୁଖ୍ୟ ହେଉଛନ୍ତି ସରପଞ୍ଚ । ତାଙ୍କୁ କାର୍ଯ୍ୟରେ ସହାୟତା କରିବା ନିମିତ୍ତ ଜଣେ ଜଣେ ସେକ୍ରେଟାରୀ ଓ ନାଏବ ସରପଞ୍ଚ ରହିଥାନ୍ତି । ପୂର୍ବରୁ ପଞ୍ଚ (ୱାର୍ଡମେମ୍ବର) ମାନଙ୍କ ଦ୍ୱାରା ସରପଞ୍ଚ ନିର୍ବାଚିତ ହେଉଥିଲେ । ମାତ୍ର ୧୯୬୫ର ନିୟମ ଅନୁଯାୟୀ ଲୋକମାନଙ୍କ ଦ୍ୱାରା ପ୍ରତ୍ୟକ୍ଷ ଭାବରେ ସରପଞ୍ଚ ନିର୍ବାଚିତ ହେବାର ବ୍ୟବସ୍ଥା କରାଯାଇଛି । ଗ୍ରାମପଞ୍ଚାୟତର କାର୍ଯ୍ୟ ମୁଖ୍ୟତଃ ଦ୍ୱିବିଧ । ପ୍ରଥମତଃ ବାଧ୍ୟତାମୂଳକ ଓ ଦ୍ୱିତୀୟଟି ଇଚ୍ଛାଧୀନ । ବାଧ୍ୟତାମୂଳକ କାର୍ଯ୍ୟ ମଧ୍ୟରେ ଗ୍ରାମ୍ୟରାସ୍ତା ନିର୍ମାଣ, ରାସ୍ତାରେ ଆଲୋକ ପ୍ରଦାନ ବ୍ୟବସ୍ଥା, ସାଧାରଣ ଲୋକଙ୍କ ପାଇଁ କୂପ ଓ ପୋଖରୀ ଖନନ, ଗ୍ରାମ୍ୟ ନାଳନର୍ଦ୍ଦମାର ରକ୍ଷଣାବେକ୍ଷଣ, ସର୍ବସାଧାରଣ ସମ୍ପତ୍ତି ଓ ଜମିର ରକ୍ଷଣାବେକ୍ଷଣ, ବଜାର, ମେଳା-ମହୋତ୍ସବ ନିମିତ୍ତ ବିଧିବ୍ୟବସ୍ଥା, ପ୍ରାଥମିକ ପ୍ରୌଢ଼ ଶିକ୍ଷା ବ୍ୟବସ୍ଥା, ସ୍ୱାସ୍ଥ୍ୟକର ପରିବେଶ ସୃଷ୍ଟି ଓ ରୋଗର ନିରାକରଣ, ଜନ୍ମମୃତ୍ୟୁ ପଞ୍ଜିକରଣ, ମୃତ୍ତିକା ସଂରକ୍ଷଣ ଓ କୃଷି ବିକାଶ ଆଦି ଅନ୍ତର୍ଭୁକ୍ତ । ଇଚ୍ଛାଧୀନ କାର୍ଯ୍ୟ ମଧ୍ୟରେ ରାସ୍ତା ପାର୍ଶ୍ୱରେ ବୃକ୍ଷରୋପଣ, ପାଠାଗାର ସ୍ଥାପନ, ଶିଶୁ ମଙ୍ଗଳ ସମିତି ଗଠନ, କୃଷିଜାତ ପଦାର୍ଥ ନିମିତ୍ତ ବଜାର ସୃଷ୍ଟି, ବନ୍ୟା ଓ ଦୁର୍ଭିକ୍ଷ ସମୟରେ ରିଲିଫ୍ ବଣ୍ଟନ, କୁଟୀର ଶିଳ୍ପ ଗଠନ ଓ ପରିଚାଳନା, କ୍ଲବ୍ ଓ ଅବସର ବିନୋଦନ କେନ୍ଦ୍ର ସ୍ଥାପନ, ପଶୁ ଚିକିତ୍ସା ଆଦିକୁ ଗ୍ରହଣ କରାଯାଇଥାଏ । ଗ୍ରାମପଞ୍ଚାୟତ ଗ୍ରାମଗୁଡ଼ିକ ମଧ୍ୟରେ ଅଦାଲତ ପଞ୍ଚାୟତ ଗଠନ କରି ପଞ୍ଚାୟତର ମାଲିମୋକଦ୍ଦମା ବିଚାର କରିବାର କ୍ଷମତା ମଧ୍ୟ ପାଇଛି । ଏହାଦ୍ୱାରା ଅଦାଲତରେ ମାଲିମୋକଦ୍ଦମା ଖର୍ଚ୍ଚରୁ ଗ୍ରାମବାସୀମାନେ ରକ୍ଷା ପାଇବା ସଙ୍ଗେ ସଙ୍ଗେ ଉଚିତ ନ୍ୟାୟ ମଧ୍ୟ ପାଇଥାନ୍ତି । ଗ୍ରାମପଞ୍ଚାୟତଗୁଡ଼ିକ ବିଭିନ୍ନ ଉତ୍ସରୁ ଅର୍ଥ ସଂଗ୍ରହ କରିଥାନ୍ତି । ସେହି ଉତ୍ସଗୁଡ଼ିକ ହେଉଛି ଗୃହ, ପାଣି ଓ ଆଲୋକରୁ କର, ଯାନବାହନର ମାସୁଲ, ଗୋରୁ ପଞ୍ଜିକରଣ, ଧର୍ମଶାଳାରୁ ମାସୁଲ, ଗ୍ରାମ ହାଟ ନିଲାମ, ଘାଟ ନିଲାମ, ପୋଖରୀ ନିଲାମ, ହାଟ ଗୃହରୁ ସରକାରଙ୍କ ବିକାଶମୂଳକ ଯୋଜନା କାର୍ଯ୍ୟ ତଥା ସର୍ବସାଧାରଣଙ୍କ ଦାନ । ପଞ୍ଚାୟତ ସମିତି ମଧ୍ୟ କିଛି ପରିମାଣରେ ଅନୁଦାନ ଦେଇଥାନ୍ତି । ଏହି ଅର୍ଥକୁ ଗ୍ରାମପଞ୍ଚାୟତର ଉନ୍ନତି ନିମିତ୍ତ ବିନିଯୋଗ କରାଯାଇଥାଏ । ତ୍ରିସ୍ତରୀୟ ପଞ୍ଚାୟତିରାଜ ମଧ୍ୟରେ ଗ୍ରାମପଞ୍ଚାୟତର ବିଶେଷ ଭୂମିକା ରହିଛି । ଗ୍ରାମପଞ୍ଚାୟତକୁ ଜିଲ୍ଲାପାଳ ତଥା ଜିଲ୍ଲା ପଞ୍ଚାୟତ ଅଫିସରଙ୍କର ନିୟନ୍ତ୍ରଣ କରିବାର କ୍ଷମତା ରହିଛି ।

କେତେଗୁଡ଼ିଏ ଗ୍ରାମପଞ୍ଚାୟତକୁ ନେଇ ପଞ୍ଚାୟତ ସମିତି ଗଠିତ । ପ୍ରତ୍ୟେକ ବ୍ଲକରେ ଗୋଟିଏ ଲେଖାଏଁ ପଞ୍ଚାୟତ ସମିତି ଓ ୧୦ରୁ ୧୫ଟି ଗ୍ରାମପଞ୍ଚାୟତ ରହିଥାଏ । ଏଥିରେ ଉଭୟ ସରକାରୀ ଓ କେତେକ ବେସରକାରୀ ସଦସ୍ୟ ରହିଥାନ୍ତି । ଗ୍ରାମ ପଞ୍ଚାୟତ ସରପଞ୍ଚ ତଥା ୱାର୍ଡମେମ୍ବରମାନଙ୍କ ଦ୍ୱାରା ନିର୍ବାଚିତ ସଦସ୍ୟ ଏହାର ସଭାପତି (ଚେୟାରମ୍ୟାନ୍) ଓ ଉପସଭାପତି

(ଭାଇସ୍ ଚେୟାରମ୍ୟାନ୍) ହୋଇଥାନ୍ତି । ଏହାର କାର୍ଯ୍ୟ ପରିଚାଳନାର ଦାୟିତ୍ୱ ଭୂଖଣ୍ଡ ଉନ୍ନୟନ ଅଧିକାରୀ ବା ବି.ଡ଼ି.ଓ. ଙ୍କ ଉପରେ ନ୍ୟସ୍ତ ଥାଏ । ଏତଦ୍ ବ୍ୟତୀତ ସମିତି ସଦସ୍ୟ, ବିଧାୟକ, ପାର୍ଲାମେଣ୍ଟ ସଦସ୍ୟ ଆଦି ଜଣେ ଜଣେ ସଭ୍ୟ ଭାବରେ ରହିଥାନ୍ତି । ଚେୟାରମ୍ୟାନ୍ ପଞ୍ଚାୟତ ସମିତିର ମୁଖ୍ୟଭାବେ କାର୍ଯ୍ୟ କରିଥାନ୍ତି । ଏହି ପଞ୍ଚାୟତ ସମିତି ବିଭିନ୍ନ ଯୋଜନା ପ୍ରଣୟନ କରିବା ସଙ୍ଗେ ସଙ୍ଗେ ତାକୁ କାର୍ଯ୍ୟକାରୀ ଓ ତଦାରଖ କରିଥାନ୍ତି । ପ୍ରାଥମିକ ଶିକ୍ଷାର ବିକାଶ, ନିୟନ୍ତ୍ରଣ ଓ ପରିଚାଳନା ଦାୟିତ୍ୱ ଗ୍ରହଣ କରିଥାନ୍ତି । ଗ୍ରାମପଞ୍ଚାୟତ କାର୍ଯ୍ୟ ତଥା ଟୀକାଦାନ ଓ ଜନ୍ମମୃତ୍ୟୁ ପଞ୍ଜିକରଣର ତଦାରଖ, ଗ୍ରାମପଞ୍ଚାୟତର ବାର୍ଷିକ ଆୟବ୍ୟୟ ଖସଡ଼ା ମଞ୍ଜୁରି, ବାର୍ଷିକ ଆୟବ୍ୟୟ ମଞ୍ଜୁରି, ପଞ୍ଚାୟତ ସମିତି କର୍ମଚାରୀଙ୍କ ଚାକିରି ସଂପର୍କରେ ନିୟମ ପ୍ରସ୍ତୁତି ଆଦିର ଦାୟିତ୍ୱ ପଞ୍ଚାୟତ ସମିତିର । ଏହା ମୁଖ୍ୟତଃ ସରକାରଙ୍କ ଅନୁଦାନ, ଗ୍ରାମପଞ୍ଚାୟତ ତଥା ବିଭିନ୍ନ ଟ୍ରଷ୍ଟ ଓ ସର୍ବସାଧାରଣଙ୍କ ଠାରୁ ରାଜସ୍ୱ ସଂଗ୍ରହ କରି କୃଷି, ଶିକ୍ଷା, ସ୍ୱାସ୍ଥ୍ୟ ଆଦି ବିଭିନ୍ନ ଉନ୍ନୟନ ମୂଳକ କାର୍ଯ୍ୟରେ ଖର୍ଚ୍ଚ କରିଥାନ୍ତି । ପଞ୍ଚାୟତିରାଜର ସର୍ବୋଚ୍ଚ କ୍ଷମତାଶାଳୀ ସଂସ୍ଥା ହେଉଛି ଜିଲ୍ଲା ପରିଷଦ । ଜିଲ୍ଲା ସ୍ତରରେ ଏହା ଗଠିତ ହୋଇ ଜିଲ୍ଲାର ସର୍ବାଙ୍ଗୀନ ଉନ୍ନତି ଦାୟିତ୍ୱ ଗ୍ରହଣ କରିଥାନ୍ତି । କାର୍ଯ୍ୟ ପରିଚାଳନା ନିମିତ୍ତ ଜଣେ ଚେୟାରମ୍ୟାନ ଓ ଅନ୍ୟ ଜଣେ ଭାଇସ୍‌ଚେୟାରମ୍ୟାନ ଥା'ନ୍ତି । କିଛି ବର୍ଷ ଧରି ଓଡ଼ିଶାରୁ ଏହି ସଂସ୍ଥା ଉଠିଯାଇଥିଲେ ହେଁ ୧୯୯୭ ମସିହାରେ ଏହାକୁ ପୁନଃ କାର୍ଯ୍ୟକାରୀ କରାଯାଇଛି ।

ଭାରତ ସରକାରଙ୍କ ପଞ୍ଚବାର୍ଷିକ ଯୋଜନାକୁ କାର୍ଯ୍ୟକାରୀ କରିବା କ୍ଷେତ୍ରରେ ପଞ୍ଚାୟତିରାଜର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଏହାଦ୍ୱାରା ତଳସ୍ତରରୁ ଲୋକମାନେ ସରକାରଙ୍କ ବିଭିନ୍ନ କାର୍ଯ୍ୟକ୍ରମ ସମ୍ପର୍କରେ ଜାଣିବା ସଙ୍ଗେ ସଙ୍ଗେ ଏଥିରେ ପ୍ରତ୍ୟକ୍ଷ ଭାବରେ ଅଂଶଗ୍ରହଣ କରିଥାନ୍ତି । ଗ୍ରାମବାସୀଙ୍କର ଶିକ୍ଷା ଓ ଆର୍ଥିକ ଅବସ୍ଥାର ଉନ୍ନତି ନିମିତ୍ତ ଏହାର ଭୂମିକା ମହତ୍ତ୍ୱପୂର୍ଣ୍ଣ । ଗଣତନ୍ତ୍ରର ଉଦ୍ଦେଶ୍ୟ ଓ ପରିସର ସମ୍ପର୍କରେ ଜନସାଧାରଣ କେବଳ ପଞ୍ଚାୟତିରାଜ ମାଧ୍ୟମରେ ଜାଣିବାକୁ ସମର୍ଥ ହୋଇଥାନ୍ତି । ସରକାରଙ୍କ ଦ୍ୱାରା ପ୍ରଣୟନ କରାଯାଉଥିବା ବିଭିନ୍ନ କାଯ୍ୟକ୍ରମ ଏହାଦ୍ୱାରା କାର୍ଯ୍ୟକାରୀ ହୋଇଥାଏ । ସରକାର ପ୍ରତ୍ୟକ୍ଷ ଭାବରେ ଲୋକମାନଙ୍କ ସମ୍ପର୍କରେ ଆସିବା ସବୁ ସମୟରେ ସମ୍ଭବପର ହେଉନଥିବାରୁ ସରକାର ତଥା ଜନସାଧାରଣଙ୍କ ମଧ୍ୟରେ ପଞ୍ଚାୟତିରାଜ ସଂଯୋଗର ସେତୁ ରୂପେ କାର୍ଯ୍ୟ କରିଥାଏ ।

ପଞ୍ଚାୟତିରାଜର ତ୍ରୁଟି ମଧ୍ୟ ଅନେକ । ଏଥିରେ କାର୍ଯ୍ୟରତ ସଦସ୍ୟଗଣ ଉନ୍ନୟନ ପାଇଁ ଆସୁଥିବା ଅର୍ଥକୁ ବାଟମାରଣା କରିଥାନ୍ତି । ଏହିମାନେ ଗ୍ରାମମାନଙ୍କରେ କଳୁଷିତ ରାଜନୀତିକ ବାତାବରଣ ସୃଷ୍ଟି କରି ଲୋକମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଓ ସଂଘର୍ଷ ସୃଷ୍ଟି କରିଥାନ୍ତି । ଅର୍ଥତୋଷରପାତ, ଦୁର୍ନୀତିପୂର୍ଣ୍ଣ କାର୍ଯ୍ୟ ଆଦି ପଞ୍ଚାୟତିରାଜର ସାଧାରଣ କର୍ତ୍ତବ୍ୟରେ ପରିଣତ ହୋଇଛି । ଗାନ୍ଧିଜୀ ଯେଉଁ ଆଦର୍ଶକୁ ଆଖି ଆଗରେ ରଖି ପଞ୍ଚାୟତିରାଜ ଗଠନର ପରିକଳ୍ପନା କରିଥିଲେ, କେତେଜଣ ନ୍ୟସ୍ତ ସ୍ୱାର୍ଥପର ବ୍ୟକ୍ତିଙ୍କ ଯୋଗୁଁ ତାହା ବିଡ଼ମ୍ବିତ ହୋଇପଡ଼ିଛି । ଗ୍ରାମର ନିରୀହ ଜନସାଧାରଣଙ୍କୁ ଠକାଇ ଏମାନେ ସାମୂହିକ କାର୍ଯ୍ୟ ପାଇଁ ଆସୁଥିବା ଅର୍ଥକୁ ନିଜ ସ୍ୱାର୍ଥ ପାଇଁ ବ୍ୟୟ କରୁଛନ୍ତି ।

ଏପରିକି ପୋଖରୀ ବା ରାସ୍ତାଘାଟ ଆଦୌ ନିର୍ମାଣ ନ କରି ମିଥ୍ୟା ବିଲ୍ ଦେଖାଇ ଅର୍ଥ ଆତ୍ମସାତ୍ କରୁଛନ୍ତି । ତେଣୁ ଭାରତରେ ପଞ୍ଚାୟତିରାଜର ସ୍ୱପ୍ନ ବ୍ୟର୍ଥ ହୋଇଛି କହିଲେ ଭୁଲ ହେବ ନାହିଁ ।

ଗଣତନ୍ତ୍ରରେ ଲୋକମାନଙ୍କ ହାତରେ ଅବାଧ କ୍ଷମତା ରହିଛି । ସେମାନେ ଚାହିଁଲେ ପଞ୍ଚାୟତିରାଜର ସଂସ୍କାର କରି ତାକୁ ନୂତନ ମୋଡ଼ ପ୍ରଦାନ କରିପାରିବେ । ପଞ୍ଚାୟତିରାଜର ସଫଳତା ମୁଖ୍ୟତଃ ଜନସାଧାରଣଙ୍କ ସହଯୋଗ ଓ ଶିକ୍ଷାର ଉନ୍ନତି ଉପରେ ନିର୍ଭର କରିଥାଏ । ପଞ୍ଚାୟତିରାଜ ଗଠନ କରିଦେବା ବଡ଼ କଥା ନୁହେଁ । ଏହାକୁ କିପରି ଅଧିକ ଗଣତାନ୍ତ୍ରିକ ଓ ପରିପୁଷ୍ଟ କରାଯାଇପାରିବ, ସେଥିପ୍ରତି ସମସ୍ତେ ସଚେତନ ହେବା ଆବଶ୍ୟକ । ଏ କ୍ଷେତ୍ରରେ ସରକାର ଜନସାଧାରଣଙ୍କୁ ସଚେତନ କରାଇବା ଉଚିତ ଏବଂ ଜନସାଧାରଣ ନିଜର କର୍ତ୍ତବ୍ୟ ପ୍ରତି ସଚେତନ ହୋଇ ଏହାର ସୁପରିଚାଳନା ଦିଗରେ ପ୍ରତ୍ୟକ୍ଷ ଭାବରେ ଅଂଶ ଗ୍ରହଣ କରିବା ଆବଶ୍ୟକ ।

●

# ଜାତୀୟ ପ୍ରତିରକ୍ଷା

**(ଉପକ୍ରମ, ପ୍ରତିରକ୍ଷାର ଆବଶ୍ୟକତା, ଆନ୍ତର୍ଜାତିକ ଘନଘଟା, ଆଭ୍ୟନ୍ତରୀଣ ପରିସ୍ଥିତି, ଭାରତର ସାମରିକ ଶକ୍ତିର କେତେକ ଦିଗ, ସାଂପ୍ରତିକ ଅବସ୍ଥା, ଉପସଂହାର)**

ସ୍ୱାଧୀନତା ଲାଭ ଠାରୁ ସ୍ୱାଧୀନତାର ରକ୍ଷା ସବୁଠାରୁ ବଡ଼ ଦାୟିତ୍ୱ । ଦେଶର ସମ୍ମାନ ଓ ମର୍ଯ୍ୟାଦାରକ୍ଷା ଯେ କୌଣସି ନାଗରିକଙ୍କ ପ୍ରଥମ କର୍ତ୍ତବ୍ୟ । ଭାରତ ସ୍ୱାଧୀନତା ଲାଭ (୧୯୪୭ ମସିହା ଅଗଷ୍ଟ ୧୫ ତାରିଖ) ପରଠାରୁ ସାଂପ୍ରତିକ କାଳପର୍ଯ୍ୟନ୍ତ ବହୁ ଝଡ଼ଝଞ୍ଜା ଦେଇ ଗତିକରି ଆସିଛି । ବହିଃ ଏବଂ ଆଭ୍ୟନ୍ତରୀଣ ଶତ୍ରୁ ଅନେକଥର ଉଦ୍ୟମ କରିଛନ୍ତି, ଏହାର ସ୍ୱାଧୀନତାକୁ ବିପନ୍ନ କରିବା ପାଇଁ । ଭାରତ ଏକ ଶାନ୍ତିପ୍ରିୟ ଦେଶ ହୋଇଥିଲେ ହେଁ, ନିଜର ପ୍ରତିରକ୍ଷାକୁ ସୁଦୃଢ଼ କରିବା ନିମିତ୍ତ ବାଧ ହୋଇ କେତେକ ପଦକ୍ଷେପ ଗ୍ରହଣ କରିଛି । ଅତୀତରେ ଭାରତକୁ ରକ୍ଷା କରୁଥିଲା ନଗାଧିରାଜ ହିମାଳୟ ଓ ନୀଳସାଗର । ସମୟକ୍ରମେ ଏହି ପ୍ରତିବନ୍ଧକ ବହିଃଶତ୍ରୁଙ୍କ ପଥରୋଧ କରିବାକୁ ସମର୍ଥ ହୋଇ ନ ଥିଲା । ବିଜ୍ଞାନର ଚମତ୍କାର ଆବିଷ୍କାର ଯୋଗୁଁ ପର୍ବତ ଓ ସାଗରକୁ ଅତିକ୍ରମ କରିବାରେ ଆଜି କୌଣସି ଅସୁବିଧା ନାହିଁ । ଏହି ପରିପ୍ରେକ୍ଷୀରେ ଭାରତର ପ୍ରତିରକ୍ଷା ଏକ ସମ୍ବେଦନଶୀଳ ପ୍ରଶ୍ନ ହୋଇ ସମସ୍ତଙ୍କ ଆଗରେ ଠିଆ ହୋଇଛି । ଆନ୍ତର୍ଜାତିକ ପରିସ୍ଥିତିରେ ପ୍ରତି ମୁହୂର୍ତ୍ତରେ ଯେଉଁ ପରିବର୍ତ୍ତନ ଘଟୁଛି, ତାହାକୁ ଲକ୍ଷ୍ୟ କରି ଭାରତର ପ୍ରତିରକ୍ଷା ବ୍ୟବସ୍ଥାକୁ ମଧ ସୁଦୃଢ଼ କରିବାକୁ ପଡ଼ିବ ।

ଅତୀତର ଆନ୍ତର୍ଜାତିକ ପରିସ୍ଥିତି ଓ ବର୍ତ୍ତମାନର ଆନ୍ତର୍ଜାତିକ ପରିସ୍ଥିତି ମଧ୍ୟରେ ଆକାଶ ପାତାଳ ପାର୍ଥକ୍ୟ । ଆଜି ବିଶ୍ୱର ଅଧିକାଂଶ ବିକଶିତ ରାଷ୍ଟ୍ର ସମଗ୍ର ବିଶ୍ୱରେ ନିଜର ଏକଚାଟିଆ ଅଧିକାର ସାବ୍ୟସ୍ତ କରିବାକୁ ଆଗ୍ରହୀ । ବିଶେଷ ଭାବରେ ଭାରତର ଦୁଇ ପଡ଼ୋଶୀ ରାଷ୍ଟ୍ର ପାକିସ୍ଥାନ

ଓ ଚୀନ୍‌ର ମତିଗତି ଭାରତର ଚିନ୍ତାର କାରଣ ହୋଇଛି । ରାଜନୀତିକ ଫାଇଦା ହାସଲ ନିମିତ୍ତ ସେମାନେ ବାହାରକୁ ଯେତେ ନିରପେକ୍ଷ ବୋଲି ଘୋଷଣା କଲେହେଁ, ଏପର୍ଯ୍ୟନ୍ତ ଭାରତପ୍ରତି ବୈରଭାବ ସେମାନଙ୍କ ଅନ୍ତରରୁ ଦୂର ହୋଇନାହିଁ । ଅତୀତର ତିକ୍ତ ଅନୁଭୂତି ଭାରତୀୟଙ୍କ ମନରେ ସେମାନଙ୍କ ପ୍ରତି ଅବିଶ୍ୱାସଭାବ ସୃଷ୍ଟି କରିବାକୁ ବାଧ କରିଛି । ଯେଉଁ ଚୀନ୍ 'ଭାରତ ଓ ଚୀନ୍ ଭାଇ ଭାଇ' ବୋଲି ସ୍ଲୋଗାନ୍ ଦେଉଥିଲା, ସେ ପୁଣି ୧୯୬୨ ମସିହାରେ ଭାରତ ଉପରେ ଅତର୍କିତ ଆକ୍ରମଣ କରି ବିଶ୍ୱାସଘାତକତାର ପରିଚୟ ପ୍ରଦାନ କରିଛି । ଏବେ ମଧ୍ୟ ଭାରତର ଅନେକ ଅଞ୍ଚଳ ଚୀନ୍‌ର କର୍ତ୍ତୃତ୍ୱାଧୀନ ରହିଛି । ପରମାଣୁ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଚୀନ୍‌ର ମତିଗତି ଭାରତ ପ୍ରତି ଆଦୌ ମଙ୍ଗଳଦାୟକ ନୁହେଁ । ପାକିସ୍ଥାନର ମଧ୍ୟ ଭାରତ ପ୍ରତି ସର୍ବଦା ବୈମାତୃକ ଭାବ ରହିଆସିଛି । ଅତୀତରେ ଭାରତ ଓ ପାକିସ୍ଥାନ ଗୋଟିଏ ରାଷ୍ଟ୍ର ଥିଲେହେଁ, ସ୍ୱାଧୀନତାର ପ୍ରାକ୍ କାଳରେ ଏହା ଦୁଇଟି ରାଷ୍ଟ୍ରର ରୂପ ଗ୍ରହଣ କରିଛି । ପାକିସ୍ଥାନ ସଦାବେଳେ ଭାରତ ସମ୍ପର୍କରେ ମିଥ୍ୟା ପ୍ରଚାର ଚଳାଇଛି । କାଶ୍ମୀର ଭାରତର ଅବିଚ୍ଛେଦ୍ୟ ଅଙ୍ଗ ହୋଇଥିଲେ ହେଁ ଏବେ ମଧ୍ୟ ପାକିସ୍ଥାନ କାଶ୍ମୀରକୁ ତା'ର ଅଙ୍ଗବିଶେଷ ବୋଲି ମନେ କରୁଛି । ଏହି କାରଣରୁ ୧୯୬୫ ମସିହାରେ ଭାରତ ସହିତ ପାକିସ୍ଥାନର ଯୁଦ୍ଧ ଲାଗିଥିଲା । ଏହା ଏକ ଦ୍ୱିପାକ୍ଷିକ ସମସ୍ୟା ହୋଇଥିଲେ ହେଁ ପାକିସ୍ଥାନ ବାରମ୍ବାର ଆନ୍ତର୍ଜାତିକ ସ୍ତରରେ ଏହାର ଉପସ୍ଥାପନ କରୁଛି । କେତେକ ରାଷ୍ଟ୍ରର ପ୍ରଚ୍ଛନ୍ନ ସମର୍ଥନ ଏଥିପାଇଁ ତାକୁ ବିଶେଷ ଉତ୍ସାହିତ କରୁଛି । ୧୯୭୧ ମସିହାରେ ଓ ୧୯୯୯ ମସିହାରେ ମଧ୍ୟ ପାକିସ୍ଥାନ ଭାରତ ସହିତ ଯୁଦ୍ଧ କରିଥିଲା । ତିନି ତିନି ଥର ଯୁଦ୍ଧରେ ପରାସ୍ତ ହୋଇ ବର୍ତ୍ତମାନ ସେ ପ୍ରତିଶୋଧର ଅଗ୍ନିରେ ପ୍ରଜ୍ୱଳିତ ହେଉଛି । ବିନା କାରଣରେ ସୀମାନ୍ତରେ ଗୁଳି ବର୍ଷଣ କରି ଉତ୍ତେଜନା ସୃଷ୍ଟି କରୁଛି । ଭାରତ ସହିତ ମୁକାବିଲା ମୂଳକ ମନୋଭାବ ପ୍ରକାଶ କରି ବିଭିନ୍ନ ରାଷ୍ଟ୍ରରୁ ପ୍ରଚୁର ପରିମାଣର ଅସ୍ତ୍ରଶସ୍ତ୍ର କ୍ରୟ କରୁଛି । ଏ କ୍ଷେତ୍ରରେ ଯୁକ୍ତରାଷ୍ଟ୍ର ଆମେରିକା ଓ ଚୀନ୍ ତାକୁ ପ୍ରତ୍ୟକ୍ଷ ଭାବରେ ସାହାଯ୍ୟ କରୁଛନ୍ତି । ଭାରତ ଚୀନ୍ ଏବଂ ପାକିସ୍ଥାନ ସହିତ ଯୁଦ୍ଧରୁ ଯେଉଁ ନୂତନ ଅଭିଜ୍ଞତା ଲାଭ କରିଛି, ସେଥିରୁ ଜାଣିଛି ଅନ୍ୟ ଉପରେ ନିର୍ଭର କରି ନିଜର ପ୍ରତିରକ୍ଷା ବ୍ୟବସ୍ଥାକୁ ସୁଦୃଢ଼ କରିହେବ ନାହିଁ । ଏହି ପରିସ୍ଥିତିକୁ ଲକ୍ଷ୍ୟ କରି ପାକିସ୍ଥାନ ସୀମାନ୍ତରେ ସର୍ବଦା ଯୁଦ୍ଧ ଅବ୍ୟାହତ ରଖିଛି । ସଂପ୍ରତି ଭାରତ ନିଜର ପ୍ରତିରକ୍ଷା ବ୍ୟବସ୍ଥାକୁ ସୁଦୃଢ଼ କରିବା ଅତ୍ୟନ୍ତ ଜରୁରୀ ।

ତୃତୀୟ ବିଶ୍ୱ ଯୁଦ୍ଧକୁ ଏଡ଼ାଇବା ନିମିତ୍ତ ସମସ୍ତେ ଚିତ୍କାର କରୁଥିଲେ ହେଁ, ଏଥିପ୍ରତି କାହାରି ଆନ୍ତରିକତା ଥିବା ପରି ଜଣାଯାଏ ନାହିଁ । ବିଶ୍ୱର ପାଞ୍ଚଟି ବୃହତ୍ ଶକ୍ତିଶାଳୀ ରାଷ୍ଟ୍ର ନିଜେ ପରମାଣୁ ବୋମା ଓ ଅନ୍ୟାନ୍ୟ ବହୁ ମାରାତ୍ମକ ଅସ୍ତ୍ରଶସ୍ତ୍ର ନିର୍ମାଣ କରୁଥିଲେ ହେଁ, ଅନ୍ୟ ରାଷ୍ଟ୍ରକୁ ଅସ୍ତ୍ରଶସ୍ତ୍ର ନିର୍ମାଣ କରିବାକୁ ପ୍ରତିରୋଧ କରୁଛନ୍ତି । ଅତୀତରେ ନିରସ୍ତ୍ରୀକରଣ ନିମିତ୍ତ ବହୁ ପଦକ୍ଷେପ ଗ୍ରହଣ କରାଯାଇଛି । ମାତ୍ର କୌଣସି ଗୋଟିଏ ଯୋଜନା ମଧ୍ୟ ଫଳପ୍ରଦ ହୋଇପାରି ନାହିଁ । ପରମାଣୁ ଅସ୍ତ୍ର ପ୍ରସାର ନିରୋଧ ଚୁକ୍ତି (ଏନ୍.ପି.ଟି.) ନିମିତ୍ତ ବିଭିନ୍ନ ରାଷ୍ଟ୍ର ସମ୍ମିଳିତ ହୋଇଥିଲେ ହେଁ, ତାହା ସଫଳ ହେଇପାରିଲା ନାହିଁ । ବିଶ୍ୱ ଜନମତକୁ ଉପେକ୍ଷା କରି ଫ୍ରାନ୍ସ ଗୋଟିକ ପରେ

ଗୋଟିଏ ପରମାଣୁ ବୋମା ପରୀକ୍ଷା କଲା । ସମ୍ପୂର୍ଣ୍ଣ ପରମାଣୁ ଅସ୍ତ୍ର ନିରସ୍ତ୍ରୀକରଣ ଚୁକ୍ତି ବା Comprehensive Test Ban Treaty (ସି.ଟି.ବି.ଟି.) ସ୍ୱାକ୍ଷର ସମୟରେ ସହମତ ପ୍ରକାଶ ପାଇଲା ନାହିଁ । ଭାରତ ମଧ୍ୟ ଏପରି ଚୁକ୍ତିକୁ ବିରୋଧ କରୁଛି । ଏହାର କାରଣ ହେଉଛି, ଭାରତର ଇଚ୍ଛା ବିଶ୍ୱରେ ଯେତେ ପରମାଣୁ ଅସ୍ତ୍ର ରହିଛି, ତାହାକୁ ସମ୍ପୂର୍ଣ୍ଣ ଧ୍ୱଂସ କରାଯାଉ । ଅଥଚ ଯେଉଁ ଶକ୍ତିଶାଳୀ ରାଷ୍ଟ୍ର ବହୁପରିମାଣରେ ଏହି ବିଶ୍ୱଧ୍ୱଂସୀ ଅସ୍ତ୍ରଶସ୍ତ୍ର ଗଚ୍ଛିତ ରଖିଛନ୍ତି, ତା'ର ବିଲୋପ ନିମିତ୍ତ ଏହି ଚୁକ୍ତିରେ କୌଣସି ବ୍ୟବସ୍ଥା ନ ଥିଲା । ଏହି ଚୁକ୍ତି ଏକ ଦେଶଦର୍ଶୀ ଥିବାରୁ ଭାରତ ଏଥିରେ ସ୍ୱାକ୍ଷର ନ କରି ବୁଦ୍ଧିମତ୍ତାର ପରିଚୟ ଦେଇଛି । କେତୋଟି ଶକ୍ତିଶାଳୀ ରାଷ୍ଟ୍ର ସମଗ୍ର ଜନମତକୁ ଉପେକ୍ଷା କରି ଯେପରି ଭାବରେ ଅସ୍ତ୍ରଶସ୍ତ୍ର ନିର୍ମାଣରେ ପ୍ରଚୁର ପରିମାଣରେ ଅର୍ଥ ବ୍ୟୟ କରି ଚାଲିଛନ୍ତି, ସେହି ଦୃଷ୍ଟିରୁ ଭାରତ ନିଜର ପ୍ରତିରକ୍ଷା ପ୍ରତି ଆଦୌ ଅବହେଳା ପ୍ରଦର୍ଶନ କରିବା ଅନୁଚିତ ।

ଭାରତର ଆଭ୍ୟନ୍ତରୀଣ ପରିସ୍ଥିତି ସମ୍ପୂର୍ଣ୍ଣ ଭାବରେ ଶାନ୍ତିପୂର୍ଣ୍ଣ ନୁହେଁ । ବିଶେଷକରି ପାକିସ୍ଥାନ ଭାରତର ଆଭ୍ୟନ୍ତରୀଣ ପରିସ୍ଥିତିକୁ ଦିନକୁ ଦିନ ଜଟିଳ କରିବାରେ ଲାଗିଛି । ପଞ୍ଜାବ, ଆସାମ, କାଶ୍ମୀର, କୋଏମ୍ବାଟୁର ଆଦି ରାଜ୍ୟରେ ଯେଉଁସବୁ ସନ୍ତ୍ରାସବାଦୀ କାର୍ଯ୍ୟକଳାପ ଲାଗି ରହିଛି, ଏଥିପାଇଁ ପାକିସ୍ଥାନ ସମ୍ପୂର୍ଣ୍ଣ ଭାବରେ ଦାୟୀ । ଚୋରାରେ ଅସ୍ତ୍ରଶସ୍ତ୍ର ଓ ସନ୍ତ୍ରାସବାଦୀଙ୍କୁ ପଠାଇ ଭାରତରେ ବିଭିନ୍ନ ସମୟରେ ଗଣ୍ଡଗୋଳ କରାଉଛି । ଏହାଦ୍ୱାରା ସାଧାରଣ ମଣିଷଙ୍କର ଧନଜୀବନ ବିପନ୍ନ ହୋଇପଡୁଛି । ଶାନ୍ତିଶୃଙ୍ଖଳା ବ୍ୟାହତ ହେଉଛି । ଆତଙ୍କବାଦୀ କାର୍ଯ୍ୟକଳାପ ଯୋଗୁଁ ଭାରତର ଅଖଣ୍ଡତା ବିପନ୍ନ ହେବାର ବହୁ ସମ୍ଭାବନା ରହିଛି । କେତେଜଣ ସନ୍ତ୍ରାସବାଦୀଙ୍କ ସ୍ୱୀକୋରୋକ୍ତିରୁ ପାକିସ୍ଥାନ ଭାରତରେ ସନ୍ତ୍ରାସବାଦୀ କାର୍ଯ୍ୟକଳାପ ଜାରିରଖିବାକୁ ପ୍ରୋତ୍ସାହିତ କରୁଛି ବୋଲି ଜଣାଯାଇଛି । ଏତଦ୍ ବ୍ୟତୀତ ନିଜ ଦେଶରେ ଏହି ସନ୍ତ୍ରାସବାଦୀମାନଙ୍କୁ ପ୍ରଶିକ୍ଷଣ ଦେଇ ପ୍ରଚୁର ପରିମାଣର ଅର୍ଥ ବିତରଣ କରି ଭାରତର ବିଭିନ୍ନ ବିକାଶମୂଳକ କାର୍ଯ୍ୟକୁ ପଣ୍ଡ କରିବାକୁ ଚେଷ୍ଟା କରୁଛି । ଭଡ଼ାଟିଆ ଉଗ୍ରପନ୍ଥୀମାନେ ଗୁପ୍ତରେ ବିଭିନ୍ନ ସ୍ଥାନରେ ସେମାନଙ୍କର କାର୍ଯ୍ୟକଳାପ ଜାରି ରଖିଛନ୍ତି । ଏପରି ପରିସ୍ଥିତିରେ ଭାରତ ନିଜର ଆଭ୍ୟନ୍ତରୀଣ ଶୃଙ୍ଖଳାକୁ ଦୃଢ଼ ନ କଲେ ସରକାର ଓ ପ୍ରଶାସନ ପ୍ରତି ଜନସାଧାରଣଙ୍କର ଆସ୍ଥା ତୁଟିଯିବ । ହୁଏତ ପରିସ୍ଥିତି ମଧ୍ୟ ସଙ୍କଟଜନକ ଅବସ୍ଥାକୁ ଗତି କରିପାରେ । ଏଥିପାଇଁ ଭାରତ ନିଜର ଜାତୀୟ ପ୍ରତିରକ୍ଷାକୁ ସୁଦୃଢ଼ କରିବା ସଙ୍ଗେ ସଙ୍ଗେ ନିଜର ଅଖଣ୍ଡତା ଓ ସାର୍ବଭୌମତ୍ୱର ସୁରକ୍ଷା ନିମିତ୍ତ ସମସ୍ତ ପ୍ରକାର ପଦକ୍ଷେପ ଗ୍ରହଣ କରିବା ଆବଶ୍ୟକ ।

ଚୀନ୍ ଓ ପାକିସ୍ଥାନ ସହିତ ଯୁଦ୍ଧ ପରେ ଭାରତ ପ୍ରତିରକ୍ଷା କ୍ଷେତ୍ରରେ ସ୍ୱାବଲମ୍ବନଶୀଳ ହେବାକୁ ବହୁପରିମାଣରେ ଚେଷ୍ଟା କରିଛି । ବର୍ତ୍ତମାନ ପରିସ୍ଥିତିରେ ଭାରତ ଯେକୌଣସି ଦେଶ ସହିତ ମୁକାବିଲା କରିବାକୁ ପ୍ରସ୍ତୁତ । ଭାରତ ତା'ର ସୈନ୍ୟମାନଙ୍କୁ ଉପଯୁକ୍ତ ତାଲିମ ପ୍ରଦାନ କରିବାକୁ ବିଭିନ୍ନ ସ୍ଥାନରେ ତାଲିମ କେନ୍ଦ୍ର ପ୍ରତିଷ୍ଠା କରିଛି । ପ୍ରତିରକ୍ଷା ସାମଗ୍ରୀ ଉତ୍ପାଦନ ନିମିତ୍ତ ସେ ବାହାର ଦେଶ ଉପରେ ବିଶେଷ ନିର୍ଭର କରୁ ନାହିଁ । ବିଜୟାନ୍ତ ଟ୍ୟାଙ୍କ୍, ୧୦୫ ଏମ୍. ଏମ୍

ବନ୍ଧୁକ, ଉତ୍ତୋଳନ ଟ୍ୟାଙ୍କ୍, ମାର୍କ-୨ ଆଗ୍ନେୟାସ୍ତ୍ର, ମିଗ୍ ବିମାନ, ମାର୍କ-୨ ବିମାନ, ଏଚ. ଇ.-୨୪ ବିମାନ, ମଶକ ବିମାନ, ରାଡ଼ାର, ଫ୍ରିଗେଟ ରଣତରୀ ତଥା ଅନ୍ୟାନ୍ୟ ବହୁ ପ୍ରତିରକ୍ଷା ସାମଗ୍ରୀ ନିର୍ମାଣ କ୍ଷେତ୍ରରେ ଭାରତ ଆଜି ସ୍ୱାବଲମ୍ବନଶୀଳ ହୋଇପାରିଛି । ପୃଥ୍ୱୀ, ନାଗ, ତ୍ରିଶୂଳ ଓ ଅଗ୍ନିପରି କ୍ଷେପଣାସ୍ତ୍ର ନିର୍ମାଣ କରି ଭାରତ ବିଶ୍ୱକୁ ଚମକୃତ କରିଦେଇଛି । ନୌବାହିନୀର ସୁଦୃଢ଼ତା ପାଇଁ ଆଇ. ଏନ୍. ଏସ. ବିକ୍ରାନ୍ତ ଏବଂ ବିରାଟ ଆଦିର ନିର୍ମାଣ ଆମର ପ୍ରତିରକ୍ଷା ବ୍ୟବସ୍ଥାକୁ ଅଧିକ ନିରାପଦ କରିପାରିଛି । ଜଳ, ସ୍ଥଳ ଓ ଆକାଶମାର୍ଗରେ ଯେ କୌଣସି ଶତ୍ରୁର ମୁକାବିଲା ନିମିତ୍ତ ଭାରତୀୟ ଯବାନ ସମ୍ପୂର୍ଣ୍ଣ ସମର୍ଥ । ସେମାନଙ୍କର ଶକ୍ତି, ଦେଶପ୍ରାଣତା ଓ ସାହସ ଉପରେ ଭାରତର ସମ୍ପୂର୍ଣ୍ଣ ବିଶ୍ୱାସ ରହିଛି । ପାକିସ୍ଥାନ ସହିତ ଦୁଇଦୁଇଥର ଯୁଦ୍ଧରେ ସେମାନେ ତାଙ୍କର ପରାକାଷ୍ଠା ପ୍ରମାଣିତ କରିଛନ୍ତି । ୧୯୯୮ ମସିହାରେ ଭାରତ ସମୁଦାୟ ପାଞ୍ଚଟି ଉଦଜାନ ଓ ପରମାଣୁ ବୋମା ପରୀକ୍ଷା କରି ବିଶ୍ୱକୁ ଆଶ୍ଚର୍ଯ୍ୟ କରି ଦେଇଛି । ତେଣୁ ବିଶ୍ୱର ୬ଷ୍ଠ ପରମାଣୁ ଶକ୍ତିସମ୍ପନ୍ନ ରାଷ୍ଟ୍ର ଭାବରେ ମର୍ଯ୍ୟାଦା ଲାଭ କରିବାକୁ ଭାରତ ହକ୍‌ଦାର । କମ୍ପ୍ୟୁଟର ବିଜ୍ଞାନ କ୍ଷେତ୍ରରେ ଭାରତ ବିଶ୍ୱରେ ଶ୍ରେଷ୍ଠସ୍ଥାନ ଅଧିକାର କରିବାକୁ ସମର୍ଥ । ଏହି ଦୃଷ୍ଟିରୁ ଭାରତର ପ୍ରତିରକ୍ଷା ବ୍ୟବସ୍ଥା ବର୍ତ୍ତମାନ ନିଶ୍ଚିତ ଭାବରେ ସନ୍ତୋଷଜନକ । ପ୍ରତିରକ୍ଷା ବ୍ୟବସ୍ଥାର ଦୃଢ଼ତା ଉପରେ ଦେଶର ଭବିଷ୍ୟତ ବିକାଶ ନିର୍ଭର କରୁଥିବାରୁ ଏଥିପ୍ରତି ସଚେତନ ରହିବା ଯେକୌଣସି ରାଷ୍ଟ୍ରର ଜାତୀୟ କର୍ତ୍ତବ୍ୟ ।

ପ୍ରତିରକ୍ଷା କ୍ଷେତ୍ରରେ ଭାରତ ବହୁପରିମାଣରେ ଆତ୍ମନିର୍ଭରଶୀଳ ହୋଇଥିଲେହେଁ, ଏଥିରେ ଆଶ୍ୱସ୍ତ ହେବାର ବିଶେଷ କିଛି କାରଣ ନାହିଁ । ଆମର ପଡ଼ୋଶୀ ଦେଶ ଚୀନ୍ ବହୁପୂର୍ବରୁ ପରମାଣୁ ବୋମା ପରୀକ୍ଷା କରି ସାମର୍ଥ୍ୟ ପ୍ରତିପାଦନ କରିପାରିଛି । ନିକଟରେ ପାକିସ୍ଥାନ ମଧ ପରମାଣୁବୋମା ପରୀକ୍ଷା କରି ଏବଂ ଘୋରୀ କ୍ଷେପଣାସ୍ତ୍ର ପ୍ରୟୋଗ କରି ଭାରତ ସହିତ ସମକକ୍ଷ ହେବାକୁ ଚେଷ୍ଟା କରିଛି । ପରମାଣୁ ବୋମା ପରୀକ୍ଷାଦ୍ୱାରା ଜାପାନ ଭାରତ ବିରୋଧରେ ଆର୍ଥନୀତିକ ବାସନ୍ଦ ବ୍ୟବସ୍ଥା ଜାରି କରିଛି । ପାକିସ୍ଥାନରେ ଅନୁରୂପ ଅବସ୍ଥା ସୃଷ୍ଟି ହୋଇଥିଲେହେଁ ଚୀନ ଗୁପ୍ତରେ ପାକିସ୍ଥାନକୁ ବହୁପରିମାଣରେ ପ୍ରତିରକ୍ଷା ସାମଗ୍ରୀ ଯୋଗାଇ ଚାଲିଛି । କିଛିମାସ ପୂର୍ବରୁ ଚୀନ୍‌ର ଏକ ସ୍ପଷ୍ଟୀକରଣ ସମଗ୍ର ଭାରତୀୟଙ୍କୁ ଚମକାଇ ଦେଇଛି । ୧୯୬୨ ମସିହା ଯୁଦ୍ଧରେ ଭାରତର କେତେକ ଅଞ୍ଚଳ ଚୀନ୍ ଅଧୀନରେ ଏବେ ମଧ ରହିଥିଲେହେଁ, ଚୀନ୍ ବର୍ତ୍ତମାନ କହୁଛି, ଚୀନ୍‌ର କେତେକ ଅଞ୍ଚଳ ଭାରତ ଦଖଲ କରି ବସିଛି । ତେଣୁ ଚୀନ୍‌ର ଏପରି ମତାମତ ଓ ଆଚରଣ ଭାରତ ପାଇଁ ନିଶ୍ଚିତ ଭାବରେ ମୁଣ୍ଡବ୍ୟଥାର କାରଣ । ଏହାଦ୍ୱାରା ଚୀନ ଯେ ଭାରତ ସହିତ ସମ୍ପର୍କରେ ତିକ୍ତତା ସୃଷ୍ଟି କରିବାକୁ ଚାହୁଁଛି ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ପାକିସ୍ଥାନର ରାଜନୀତିକ ନେତା ଓ କୂଟନୀତିକମାନଙ୍କର ବାରମ୍ବାର ଚୀନ୍ ଗସ୍ତ କୌଣସି ଏକ ଗୁପ୍ତ ବୁଝାମଣା ପାଇଁ ଉଦ୍ଦିଷ୍ଟ ବୋଲି ହୃଦ୍‌ବୋଧ ହେଉଛି । ଏପରି ପରିସ୍ଥିତିରେ ଭାରତକୁ ଚତୁରତାର ସହିତ ପଦକ୍ଷେପ ଗ୍ରହଣ କରିବା ଆବଶ୍ୟକ । ଏକକାଳୀନ ଦୁଇ ପଡ଼ୋଶୀ ଦେଶର ଆକ୍ରମଣକୁ କିପରି ପ୍ରତିହତ କରାଯାଇପାରିବ, ସେଥିପ୍ରତି ବର୍ତ୍ତମାନଠାରୁ ଭାରତ ସତର୍କତା ଅବଲମ୍ବନ କରିବା ସଙ୍ଗେ

ସଙ୍ଗେ ଯୋଜନା ପ୍ରସ୍ତୁତ କରିବା ଉଚିତ । ନଚେତ୍ ଭାରତର ଅଖଣ୍ଡତା ଓ ସାର୍ବଭୌମତ୍ୱ ଯେ ବିପନ୍ନ ହୋଇପଡ଼ିବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ଗୋଟିଏ ଦେଶର ଗୌରବ ସେ ଦେଶର ପ୍ରତିରକ୍ଷା ବ୍ୟବସ୍ଥା ଉପରେ ବହୁପରିମାଣରେ ନିର୍ଭର କରେ । ପ୍ରତିରକ୍ଷା ହେଉଛି ଦେଶର ମେରୁଦଣ୍ଡ । ମେରୁଦଣ୍ଡ ଭାଙ୍ଗିପଡ଼ିଲେ ମଣିଷ ଯେପରି କର୍ମକ୍ଷମ ହୋଇନଥାଏ, ସେହିପରି ପ୍ରତିରକ୍ଷା ବ୍ୟବସ୍ଥା ସୁଦୃଢ଼ ହୋଇ ନ ପାରିଲେ ଦେଶର ନିରାପତ୍ତା ବିପନ୍ନ ହୋଇଥାଏ । ଆଜି ବିଶ୍ୱରେ ଯେଉଁ ପରିମାଣରେ ଅସ୍ତ୍ରଶସ୍ତ୍ର ନିର୍ମାଣରେ ପ୍ରତିଯୋଗିତା ଚାଲିଛି, ସେଥିରେ ଭାରତ ପଛରେ ପଡ଼ିଗଲେ ଅନ୍ୟମାନଙ୍କ ନିକଟରେ ହୀନ ହୋଇପଡ଼ିବ । ଅବଶ୍ୟ ଭାରତ ଏକ ବିକାଶଶୀଳ ରାଷ୍ଟ୍ର ହୋଇଥିବାରୁ ଆର୍ଥିକ ଦୃଷ୍ଟିରୁ ସେ ସେପରି ସୁଦୃଢ଼ ନୁହେଁ । ମାତ୍ର ଦେଶର ନିରାପତ୍ତା ପାଇଁ ଓ ପଡ଼ୋଶୀ ଦେଶର ମତିଗତିକୁ ଲକ୍ଷ୍ୟକରି ନିଜର ପ୍ରତିରକ୍ଷା ନିମିତ୍ତ ଉପଯୁକ୍ତ ବ୍ୟବସ୍ଥା କରିବା ସର୍ବାଦୌ ଆବଶ୍ୟକ । ଦେଶ ଓ ଜାତିର ମାନସମ୍ମାନ ଏହା ଉପରେ ବହୁପରିମାଣରେ ନିର୍ଭର କରୁଥିବାରୁ ସମସ୍ତ ଅଭାବ ସତ୍ତ୍ୱେ ସାମ୍ପ୍ରତିକ ବିଶ୍ୱ ପାଇଁ ଆମକୁ ପ୍ରଥମେ ଏହି ପ୍ରତିରକ୍ଷାର ସୁଦୃଢ଼ ନିମିତ୍ତ ବିଶେଷ ଦୃଷ୍ଟି ଦେବାକୁ ପଡ଼ିବ ।

●

## ଯୁଦ୍ଧ ଓ ଶାନ୍ତି

**(ଉପକ୍ରମ, ବଞ୍ଚିବା ପାଇଁ ଜୀବନ ସଂଗ୍ରାମ, ବିଶ୍ୱ ଓ ଭାରତ ଇତିହାସରେ ଯୁଦ୍ଧର ପରମ୍ପରା, ଯୁଦ୍ଧର ବିଭିନ୍ନ କାରଣ, କେଉଁ କ୍ଷେତ୍ରରେ ଯୁଦ୍ଧର ଆବଶ୍ୟକତା, ଯୁଦ୍ଧ ଓ ଶାନ୍ତି, ଆଧୁନିକ ଯୁଦ୍ଧର ଭୟଙ୍କର ପରିଣତି ଓ ଶାନ୍ତିର ଆବଶ୍ୟକତା, ଉପସଂହାର)**

ମଣିଷ ଜନ୍ମହେବା ପରଠାରୁ ବିଭିନ୍ନ କ୍ଷେତ୍ରରେ ସଂଗ୍ରାମ କରି ଆସିଥାଏ । କେତେବେଳେ ନିଜର ପରିବେଶ ବିରୋଧରେତ ପୁଣି କେତେବେଳେ ନିଜର ସମାଜ ବିରୋଧରେ । ଏ ଯୁଦ୍ଧ ଅନ୍ୟ କାହାର ଅନିଷ୍ଟ ନିମିତ୍ତ ଉଦ୍ଦିଷ୍ଟ ନୁହେଁ । ଉନ୍ନତି କରିବାକୁ ହେଲେ ସଂଗ୍ରାମର ଆବଶ୍ୟକତା ରହିଛି । ମାତ୍ର ଯେତେବେଳେ ସେହି ସଂଗ୍ରାମ ସମାଜ ଜୀବନର ଗତିରୋଧ କରେ, ଲକ୍ଷ ଲକ୍ଷ ମଣିଷର ଅପକାର ସାଧନ କରେ, ସେତେବେଳେ ତାହା ଅନ୍ୟମାନଙ୍କ ଦ୍ୱାରା ଘୃଣ୍ୟବୋଲି ବିବେଚିତ ହୋଇଥାଏ । ମଣିଷ ଶିଶୁର ପ୍ରଥମ ଯୁଦ୍ଧ ନିଜର ବଞ୍ଚିବା ପାଇଁ । ଏହା ସର୍ବଦା ସ୍ୱାଗତଯୋଗ୍ୟ । ମାତ୍ର ସମୟକ୍ରମେ ସେ ଯେତେବେଳେ ବଡ଼ ହୁଏ, ସେତେବେଳେ ସେ ଯୁଦ୍ଧ କରେ ଅନ୍ୟ ଉପରେ ଆଧିପତ୍ୟ ବିସ୍ତାର ପାଇଁ । ଏହି ପ୍ରବୃତ୍ତି ତାକୁ ସାମାଜିକରୁ ଅସାମାଜିକ ଜୀବରେ ପରିଣତ କରିଥାଏ । କେବଳ ବ୍ୟକ୍ତି ନୁହେଁ, ରାଷ୍ଟ୍ର ମଧ୍ୟ ରାଷ୍ଟ୍ର ବିରୋଧରେ ସଂଗ୍ରାମ କରେ । ଏହି ସଂଗ୍ରାମଯୋଗୁଁ ଲକ୍ଷଲକ୍ଷ ନିରୀହ ବ୍ୟକ୍ତି ବିନା କାରଣରେ ମୃତ୍ୟୁପଥର ଯାତ୍ରୀ ହୋଇଥାନ୍ତି । ଏହାଦ୍ୱାରା ପ୍ରକୃତପକ୍ଷେ ସମାଜର କୌଣସି ମଙ୍ଗଳ ସାଧିତ ହୋଇନଥାଏ । ମାତ୍ର ମଣିଷର ଅହମିକା ଓ ଅଦୂରଦର୍ଶିତା ମାନବସମାଜ ପାଇଁ ଏପରି ଏକ କ୍ଷତିର ସମ୍ଭାବନା ସୃଷ୍ଟି

କରିଥାଏ । ଯୁଦ୍ଧ ପରେ ଶାନ୍ତି ଅବଶ୍ୟମ୍ଭାବୀ । ଯୁଦ୍ଧାହତ ମଣିଷ ଯେତେବେଳେ ଶାନ୍ତି ପାଇଁ ବ୍ୟାକୁଳ ହୋଇଉଠେ, ସେତେବେଳେ ହିଁ ପ୍ରକୃତ ଶାନ୍ତି ସୃଷ୍ଟି ହୋଇଥାଏ ।

ଡାରଉଇନ୍‌ଙ୍କ ବିବର୍ତ୍ତନବାଦ ଅନୁଯାୟୀ ଯୁଦ୍ଧ ବା ସଂଗ୍ରାମ ହେଉଛି ମଣିଷର ଜନ୍ମଗତ ପ୍ରବୃତ୍ତି । ତାଙ୍କର Struggle for existence ବା ଜୀବନ ସଂଗ୍ରାମ ତତ୍ତ୍ୱର ମୂଳକଥା ହେଉଛି– ଆଜି ମଣିଷ ଏହି ସ୍ତରରେ ପହଞ୍ଚିବାକୁ ଜୀବନବ୍ୟାପୀ ସଂଗ୍ରାମ କରି ଆସିଛି । ଏହି ସଂଗ୍ରାମ ପାଇଁ ଜେଲି ବା ଏମିବାରୁ ମଣିଷର ରୂପାନ୍ତର ଘଟିଛି । ତେଣୁ ଜୀବନ ଯେପରି ସତ୍ୟ, ସଂଗ୍ରାମ ମଧ୍ୟ ସେହିପରି ସତ୍ୟ । ସଭ୍ୟତାର ଆଲୋକ ସ୍ପର୍ଶ ପୂର୍ବରୁ ମଣିଷ ଯେତେବେଳେ ବଣଜଙ୍ଗଲରେ ବସବାସ କରୁଥିଲା, ସେତେବେଳେ ସେ ବଞ୍ଚିବା ପାଇଁ ପ୍ରକୃତି ବିରୋଧରେ ଯୁଦ୍ଧ କରୁଥିଲା । ଧୀରେ ଧୀରେ ଏହି ଯୁଦ୍ଧ ବ୍ୟକ୍ତି ସ୍ଥାନରୁ ଗୋଷ୍ଠୀ ସ୍ଥାନକୁ ଉନ୍ନୀତ ହେଲା । ଗୋଟିଏ ଗୋଷ୍ଠୀ ନିଜର ପରାକାଷ୍ଠା ପ୍ରତିପାଦନ ପାଇଁ ଅନ୍ୟ ଗୋଷ୍ଠୀ ସହିତ ଯୁଦ୍ଧରତ ରହିଲା । ଏଥିରୁ ଆବଶ୍ୟକ ପଡ଼ିଲା ସମାଜ ସୃଷ୍ଟିର । ସମାଜ ସୃଷ୍ଟିପରେ ମଣିଷ ଯେତେବେଳେ ଜ୍ଞାନାଲୋକ ଲାଭ କଲା; ବିଜ୍ଞାନର ବିଭିନ୍ନ ତଥ୍ୟ ସମ୍ବନ୍ଧରେ ଅବହିତ ହେଲା, ସେତେବେଳେ ସେ ନିଜର ପ୍ରୌଢ଼ି ଓ ଅହଙ୍କାରର ସାବ୍ୟସ୍ତ ନିମିତ୍ତ ଅନ୍ୟ ରାଷ୍ଟ୍ର ଉପରେ ଆକ୍ରମଣ କଲା । ତେଣୁ ଯେଉଁ ସଂଗ୍ରାମର ସୃଷ୍ଟି ହୋଇଥିଲା ବଞ୍ଚିବା ପାଇଁ, ଆଜି ସେହି ସଂଗ୍ରାମ ପହଞ୍ଚିଛି ମାନବ ସଭ୍ୟତାର ଧ୍ୱଂସ କ୍ଷେତ୍ରରେ । ଆଜି ବିଶ୍ୱ ଯେପରି ବାରୁଦ ସ୍ତୂପ ଉପରେ ଠିଆ ହୋଇଛି, ଯେ କୌଣସି ମୁହୂର୍ତ୍ତରେ ଏହାର ବିସ୍ଫୋରଣ ହୋଇପାରେ ଏବଂ ସମଗ୍ର ମାନବ ସମାଜ ମଧ୍ୟ ଅକାଳରେ ନିଶ୍ଚିହ୍ନ ହୋଇଯାଇପାରେ । ସେଥିପାଇଁ ବର୍ତ୍ତମାନ ଶାନ୍ତିର ଜରୁରୀ ଆବଶ୍ୟକତା ପଡ଼ିଛି ।

ବିଶ୍ୱ ଓ ଭାରତ ଇତିହାସରେ ଯୁଦ୍ଧର ପରମ୍ପରା ବହୁ ପ୍ରାଚୀନ । ଆଦିମାନବ ଗୋଷ୍ଠୀଗତ ଜୀବନ ଯାପନ ସମୟରେ ପରସ୍ପର ସହିତ ବିଭିନ୍ନ କାରଣ ପାଇଁ ଯୁଦ୍ଧ କରୁଥିଲେ । ପ୍ରକୃତି କ୍ରୋଡ଼ରେ ଲାଳିତ ପାଳିତ ମଣିଷ ମଧ୍ୟ ଏହି ଯୁଦ୍ଧରୁ ନିଜକୁ ନିବୃତ୍ତ ରଖିପାରି ନ ଥିଲେ । ବିଶିଷ୍ଟ ଦାର୍ଶନିକ ହବ୍‌ସ ଏହାର ସୂଚନା ଦେଇ ଲେଖିଛନ୍ତି–"The state of nature was a state of war of all against all in which cardinal virtues were force and fraud.'' ଲୌହଯୁଗରେ ମଣିଷ ବିଭିନ୍ନ ମାରଣାସ୍ତ୍ର ମାଧ୍ୟମରେ ଯୁଦ୍ଧ କରିବାକୁ ଆରମ୍ଭ କଲା । ରାଜତନ୍ତ୍ର କାଳରେ ଯୁଦ୍ଧ ଥିଲା ସାମ୍ରାଜ୍ୟର ବିସ୍ତାର ପାଇଁ ଏକ ନିଶା । କେତେକ କ୍ଷେତ୍ରରେ ମଧ୍ୟ ଏହା ଥିଲା ବିଳାସର ସାମଗ୍ରୀ । ରାଜପୁତ୍ରମାନଙ୍କ ପାଇଁ ଯୁଦ୍ଧ ଥିଲା ଏକ ଆଦର୍ଶ ଓ ସମ୍ମାନର ପ୍ରଶ୍ନ । ସେଥିପାଇଁ ବୋଧହୁଏ ମାକିଆଭେଲି କହିଛନ୍ତି–"War should be the only study of prince. He should consider peace only as a breathing time, which gives him leisure to contrive and furnish an ability to execute military plans. ଅଶୋକ ସାମ୍ରାଜ୍ୟ ବିସ୍ତାର ଲାଳସାରେ ଅନ୍ୟ ରାଷ୍ଟ୍ର ଉପରେ ଆକ୍ରମଣ କରୁଥିଲେ । ଆଲେକ୍‌ଜାଣ୍ଡର ବିଶ୍ୱବିଜୟୀ ହେବାର ସ୍ୱପ୍ନ ନେଇ ଅବାଧରେ ଯୁଦ୍ଧକ୍ଷେତ୍ରରେ ପ୍ରବେଶ କରିଥିଲେ । ନେପୋଲିୟନ ବା ହିଟ୍‌ଲର ଅନ୍ୟ ଉପରେ ନିଜର ପ୍ରଭାବ ବିସ୍ତାର କରି ଯୁଦ୍ଧ କରୁଥିଲେ । ଭାରତୀୟ

ବିଭିନ୍ନ ପୁରାଣରେ ମୁଖ୍ୟତଃ ସତ୍ୟ, ଶାନ୍ତି ଓ ନ୍ୟାୟର ପ୍ରତିଷ୍ଠା ନିମିତ୍ତ ଯୁଦ୍ଧ ହୋଇଥିବା ବିଷୟ ବର୍ଣ୍ଣନା କରାଯାଇଛି । ରାମାୟଣରେ ରାମଚନ୍ଦ୍ରଙ୍କର ରାବଣ ବିରୋଧରେ ସଂଗ୍ରାମ ମୁଖ୍ୟତଃ ନ୍ୟାୟ ଓ ସତ୍ୟ ପ୍ରତିଷ୍ଠା ପାଇଁ । ଅନୁରୂପ ଭାବେ ଶ୍ରୀକୃଷ୍ଣଙ୍କର କଂସ ସହିତ ଯୁଦ୍ଧ ଓ ମହାଭାରତ ଯୁଦ୍ଧ ଏହି ସତ୍ୟ ଏବଂ ଧର୍ମର ପ୍ରତିଷ୍ଠା ନିମିତ୍ତ ହିଁ କରାଯାଇଥିଲା । ଯୁଦ୍ଧ ପ୍ରତି ବୀତରାଗ ଅର୍ଜ୍ଜୁନଙ୍କୁ ଶ୍ରୀକୃଷ୍ଣ କ୍ଷତ୍ରିୟ ଧର୍ମ ପ୍ରତି ସଚେତନ କରାଇଦେବା ସଙ୍ଗେ ସଙ୍ଗେ ଏହି ନ୍ୟାୟ ଯୁଦ୍ଧରେ ନିଜକୁ ସାମିଲ୍ କରିବାକୁ ଉତ୍ସାହିତ କରିଥିଲେ । ବଞ୍ଚିଲେ ରାଜ୍ୟଲାଭ, ନିଧନରେ ସ୍ୱର୍ଗପ୍ରାପ୍ତି—ଏହାହିଁ ପ୍ରତ୍ୟେକ କ୍ଷତ୍ରିୟର ଆଦର୍ଶ ହେବା ଉଚିତ—

ହତୋ ବା ପ୍ରାପ୍ସ୍ୟସି ସ୍ୱର୍ଗଂ ଜିତ୍ୱା ବା ଭୋକ୍ଷସେ ମହୀମ୍
ତସ୍ମାଦୁତ୍ତିଷ୍ଠ କୌନ୍ତେୟ ଯୁଦ୍ଧାୟ କୃତ ନିଶ୍ଚୟ ।

ବିଶ୍ୱ ଇତିହାସରେ ଯୁଦ୍ଧ ପରମ୍ପରା ସୁପ୍ରାଚୀନ ହେଲେହେଁ ଅତୀତର ଯୁଦ୍ଧ ଓ ବର୍ତ୍ତମାନର ଯୁଦ୍ଧ ମଧ୍ୟରେ ବହୁ ପାର୍ଥକ୍ୟ । ଅତୀତରେ କେବଳ ଯୋଦ୍ଧାଙ୍କ ସହିତ ନିର୍ଦ୍ଦିଷ୍ଟ ଯୁଦ୍ଧକ୍ଷେତ୍ରରେ ସଂଗ୍ରାମ କରାଯାଉଥିଲା । ବର୍ତ୍ତମାନ ନାରୀ, ପୁରୁଷ, ବାଳକ ନିର୍ବିଶେଷରେ ଯୁଦ୍ଧ ରାକ୍ଷସ କବଳରେ ସମସ୍ତେ କବଳିତ ହୋଇପଡୁଛନ୍ତି । ଲକ୍ଷ ଲକ୍ଷ ନିରୀହ ଜନସାଧାରଣଙ୍କ ଧନଜୀବନ ବିପନ୍ନ ହୋଇପଡୁଛି । ଯୁଦ୍ଧ ଆଜି ଗୋଟିଏ ଗୋଟିଏ ରାଷ୍ଟ୍ର ମଧ୍ୟରେ ସୀମିତ ନ ରହି ସମଗ୍ର ବିଶ୍ୱକୁ ବ୍ୟାପିଯାଇଛି । କୌଣସି ଗୋଟିଏ ଉଦଜାନ ବା ଆଣବିକ ବୋମାର ବିସ୍ଫୋରଣରେ ସମଗ୍ର ମାନବସମାଜ ମଧ୍ୟ ଧ୍ୱଂସ ପାଇପାରେ । ଏପରି କ୍ଷେତ୍ରରେ ଯୁଦ୍ଧ ଆଉ ଜୀବନ ସଂଗ୍ରାମ ପାଇଁ ଉଦ୍ଦିଷ୍ଟ ନ ହୋଇ ସମଗ୍ର ମାନବସମାଜର ଧ୍ୱଂସ ପାଇଁ ଉଦ୍ଦିଷ୍ଟ ହୋଇଥିବାରୁ ଏହାର ତୁରନ୍ତ ଅବସାନ ଅତ୍ୟନ୍ତ ଜରୁରୀ ।

ମୁଖ୍ୟତଃ ତିନୋଟି କାରଣ ପାଇଁ ବିଶ୍ୱରେ ଯୁଦ୍ଧ ସଂଘଟିତ ହୋଇଛି । ଏହି ତିନୋଟି କାରଣ ହେଉଛି କ୍ଷମତା, ଆଦର୍ଶ ଓ ପ୍ରତିପତ୍ତି । ନିଜର ଶକ୍ତିକୁ ଅନ୍ୟ ନିକଟରେ ପ୍ରତିପାଦିତ କରିବା ପାଇଁ ମଣିଷର 'ଯୁଦ୍ଧଂଦେହି' ଡାକରା । ପୁରାଣ ଯୁଗରେ କଂସ, ରାବଣ ଆଦି ରାକ୍ଷସ କ୍ଷମତାରେ ମତ୍ତ ହୋଇ ଯୁଦ୍ଧ କରୁଥିଲେ । ଏପରିକି କ୍ଷମତାଲାଭ ପାଇଁ ପିତାର ପୁତ୍ର ପ୍ରତି ସନ୍ଦେହ, ପୁତ୍ରର ପିତୃହତ୍ୟା, ଭ୍ରାତୃହତ୍ୟାର ଉଦାହରଣ ଇତିହାସରେ ବିରଳ ନୁହେଁ । ବିମ୍ବିସାର, ଅଜାତଶତ୍ରୁ, ଆଉରଙ୍ଗଜେବ, ଅଶୋକ ଏପରିକି ଓଡ଼ିଶାର କେତେକ ସାମନ୍ତ ରାଜପରିବାରରେ ଏହାର ଉଦାହରଣ ରହିଛି । ଆଦର୍ଶ ପାଇଁ ବିଶ୍ୱ ଇତିହାସରେ ଖୁବ୍ କମ୍ ଲୋକ ଯୁଦ୍ଧ କରିଛନ୍ତି । ଭାରତର ମହାତ୍ମାଗାନ୍ଧି ଆମେରିକାର ପୂର୍ବତନ ରାଷ୍ଟ୍ରପତି ଆବ୍ରାହମ୍ ଲିଙ୍କନ, ଗ୍ରୀସର ସତ୍ୟଦ୍ରଷ୍ଟା ସକ୍ରେଟିସ ଆଦି ଏକ ଆଦର୍ଶ ସ୍ଥାପନ ନିମିତ୍ତ ଏକଚ୍ଛତ୍ର ଶାସକ ବିରୋଧରେ ସଂଗ୍ରାମ କରି ବାସ୍ତବରେ ଜୟଯୁକ୍ତ ହୋଇଛନ୍ତି । ବିଂଶଶତାବ୍ଦୀରେ କେବଳ ନିଜର ପ୍ରତିପତ୍ତି ଓ ପ୍ରଭାବ ଜାହିର ପାଇଁ ଯୁଦ୍ଧ ଚାଲିଛି । ଆଜି ବିଶ୍ୱରେ ସଂଯମତା ଓ ଶୃଙ୍ଖଳା ସମ୍ପୂର୍ଣ୍ଣ ବିଡ଼ମ୍ବିତ ହୋଇପଡ଼ିଛି । କ୍ଷୁଦ୍ର ସ୍ୱାର୍ଥ ପାଇଁ ମଣିଷ ଏକ ବୃହତ୍ତର ସ୍ୱାର୍ଥକୁ ବଳିଦେବା ପାଇଁ ପରାଙ୍ମୁଖ ନୁହେଁ । ଅତୀତରେ ଅଶୋକ, ଆଲେକ୍‌ଜାଣ୍ଡର, ନେପୋଲିୟନ ଆଦି ନିଜର ପ୍ରତିପତ୍ତି ବିସ୍ତାର ନିମିତ୍ତ ରଣାଙ୍ଗନକୁ ଓହ୍ଲାଇ ଆସିଥିଲେ । ସମ୍ପ୍ରତି ଗୋଟିଏ ରାଷ୍ଟ୍ର ଅନ୍ୟ ରାଷ୍ଟ୍ର ଉପରେ ପ୍ରତିପତ୍ତି ବିସ୍ତାର ପାଇଁ ନିଜକୁ ବିଭିନ୍ନ

ମାରଣାସ୍ତ୍ରରେ ସଜ୍ଜିତ କରୁଛି । ବିଶ୍ୱଧ୍ୱଂସୀ ଆଣବିକ ବୋମା ପ୍ରସ୍ତୁତ କରୁଛି । ମାତ୍ର ଏହି କାର୍ଯ୍ୟଦ୍ୱାରା ସେମାନେ ଯେ ବିଶ୍ୱରେ ନିନ୍ଦିତ ହେଉଛନ୍ତି, ତାହା ଭୁଲିଯାଉଛନ୍ତି । ମଣିଷ ସମ୍ମାନିତ ହୁଏ ଶାନ୍ତି ପ୍ରତିଷ୍ଠାରେ, ଯୁଦ୍ଧରେ ନୁହେଁ । ଏହି ପରମ ସତ୍ୟକୁ ଆଖି ଆଗରେ ରଖି ମଣିଷ କାର୍ଯ୍ୟାରମ୍ଭ କଲେ ବିଶ୍ୱରେ ଶାନ୍ତି ପ୍ରତିଷ୍ଠା ସମ୍ଭବ ହୋଇପାରିବ ।

ବଞ୍ଚିବା ପାଇଁ ଯେଉଁ ଯୁଦ୍ଧର ଆବଶ୍ୟକତା ରହିଛି, ତାହା ହେବା ଯଥାର୍ଥରେ ଉଚିତ । ଅତୀତରେ ମଣିଷ ନିଜକୁ ଉନ୍ନତ କରିବା ପାଇଁ ନିଜର ପରିବେଶ ଏବଂ ଗୋଷ୍ଠୀ ସହିତ ସଂଗ୍ରାମ କରୁଥିଲା । ଜୀବନ ପାଇଁ ତାହା ଥିଲା ଆବଶ୍ୟକତା । ତେଣୁ ସେ ସଂଗ୍ରାମ ଥିଲା ବାସ୍ତବ । ଆଦର୍ଶର ପ୍ରତିଷ୍ଠା ପାଇଁ ସଂଗ୍ରାମ କରି ମୃତ୍ୟୁବରଣ କଲେ ସେଥିରେ ମଣିଷର ଗୌରବ ବୃଦ୍ଧି ହୋଇଥାଏ । ପୁରାଣରେ ରାମଚନ୍ଦ୍ର, ଶ୍ରୀକୃଷ୍ଣ ଆଦି ମହାପୁରୁଷ ଅନ୍ୟାୟ ଅତ୍ୟାଚାରର ବିଲୋପ ପାଇଁ ଯୁଦ୍ଧ କରି ନିଜର ଆଦର୍ଶ ପ୍ରତିଷ୍ଠା କରିଯାଇଛନ୍ତି । ଆଧୁନିକ ଯୁଗରେ ମହାତ୍ମାଗାନ୍ଧି ଭାରତରୁ ଇଂରେଜ ଶାସନ ବିଲୋପ ଓ ବିଭିନ୍ନ କୁସଂସ୍କାର ବିରୋଧରେ ସଂଗ୍ରାମ କରୁଥିଲେ । ଆବ୍ରାହମ ଲିଙ୍କନ୍ ସେ ଦେଶର ଦାସତ୍ୱପ୍ରଥା ବିରୋଧରେ ସଂଗ୍ରାମ କରି ଅମର ହୋଇ ରହିଯାଇଛନ୍ତି । ଗ୍ରୀସ୍‌ରେ ସକ୍ରେଟିସ ସତ୍ୟର ଓ ନ୍ୟାୟର ପ୍ରତିଷ୍ଠା ପାଇଁ ପୁରୋହିତ ଏବଂ ଏକଚ୍ଛତ୍ର ଶାସକଙ୍କ ବିରୋଧରେ ସଂଗ୍ରାମ କରି ଅମରତ୍ୱ ଲାଭ କରିଛନ୍ତି । ଯେଉଁମାନେ ଆଦର୍ଶ ପାଇଁ ସଂଗ୍ରାମ କରିଥାନ୍ତି, ସେମାନେ କଦାପି ବ୍ୟକ୍ତିସ୍ୱାର୍ଥକୁ ଆଖି ଆଗରେ ରଖିନଥାନ୍ତି । ସାମ୍ପ୍ରତିକ କାଳରେ କେତେକ ଚିନ୍ତାନାୟକ ବିଶ୍ୱରୁ ଯୁଦ୍ଧର ଭୟଙ୍କରିତାକୁ ଲୋପ କରି ଶାନ୍ତି ପ୍ରତିଷ୍ଠା ନିମିତ୍ତ ସଂଗ୍ରାମ ଜାରି ରଖିଛନ୍ତି । ଏହିମାନେ ପ୍ରକୃତରେ ମହାମାନବ । ସେମାନଙ୍କ ମୃତ୍ୟୁପରେ ମଧ ଇତିହାସ ସେମାନଙ୍କୁ ମନେରଖିବ । ଏବେ ମଧ ସମାଜରେ ବହୁ ଅନ୍ଧବିଶ୍ୱାସ ଓ କୁସଂସ୍କାର ପରିପୂର୍ଣ୍ଣ ହୋଇ ରହିଛି । ଖାଦ୍ୟ ଅଭାବରେ ଲକ୍ଷ ଲକ୍ଷ ଲୋକ ମୃତ୍ୟୁବରଣ କରୁଛନ୍ତି । ଅଳ୍ପ କେତେଜଣ ମୁଷ୍ଟିମେୟ ବ୍ୟକ୍ତି ଧନର ପ୍ରାଚୁର୍ଯ୍ୟ ଉପଭୋଗ କରୁଥିବା ସମୟରେ ଅନେକ ନିରନ୍ନ କାଙ୍ଗାଳ ସେମାନଙ୍କ ହାତକୁ ଚାହିଁ ବସିଛନ୍ତି । ସମାଜର ଏହି ନୀତି ବିରୋଧରେ ସଂଗ୍ରାମ କଲେ ସମାଜର କ୍ରାନ୍ତିକାରୀ ପରିବର୍ତ୍ତନ ଆସିବା ସଙ୍ଗେ ସଙ୍ଗେ ସାଧାରଣ ଜନତାର ଜୀବନଧାରଣର ମାନରେ ପରିବର୍ତ୍ତନ ଆସିବ । ଆଦର୍ଶ ଓ ସମାଜର ବୃହତ୍ ସ୍ୱାର୍ଥ ପାଇଁ ଯେଉଁ ସଂଗ୍ରାମ କରାଯାଇଥାଏ, ତାହାହିଁ ପ୍ରକୃତ ସଂଗ୍ରାମ ବା ଯୁଦ୍ଧ ପଦବାଚ୍ୟ । ଅଶୋକ ଲକ୍ଷ ଲକ୍ଷ ମଣିଷର ଶୋଣିତରେ ହୋରି ଖେଳି ପରିଣତ ହୋଇଥିଲେ ଚଣ୍ଡାଶୋକରେ; ମାତ୍ର ସତ୍ୟ ଓ ଅହିଂସାର ପଥରେ ଗତିକରିବାରୁ ପରିଣତ ହେଲେ ଧର୍ମାଶୋକରେ । ଇତିହାସରେ ଧର୍ମାଶୋକ ହିଁ ବଞ୍ଚି ରହିଛନ୍ତି । ତାହାଙ୍କୁ ଆଦର୍ଶ ଶାସକର ମର୍ଯ୍ୟାଦା ଦେଇ ଇତିହାସ ମଧ ଧନ୍ୟ ହୋଇଛି । ଶାନ୍ତି ପାଇଁ ଯେଉଁ ସଂଗ୍ରାମ ବାସ୍ତବରେ ତାହାହିଁ ଯଥାର୍ଥ ସଂଗ୍ରାମ ।

ଅନେକ ବିଦ୍ୱାନ ମତବ୍ୟକ୍ତ କରି କହିଥାନ୍ତି, ଶାନ୍ତିର ପୂର୍ବବର୍ତ୍ତୀ ସୋପାନ ହିଁ ଯୁଦ୍ଧ । ଯୁଦ୍ଧ ନ ହେଲେ ଶାନ୍ତି ସ୍ଥାପନ ହୋଇପାରିବ ନାହିଁ । ଶ୍ରୀକୃଷ୍ଣ କଂସ, ରାମଚନ୍ଦ୍ର ରାବଣ, ପାଣ୍ଡବ କୌରବମାନଙ୍କ ସହିତ ଯୁଦ୍ଧ କରିନଥିଲେ ଜଗତରେ ଶାନ୍ତି ପ୍ରତିଷ୍ଠା ସମ୍ଭବ ହୋଇନଥାନ୍ତା ।

ଯୁଦ୍ଧ ଯେତେବେଳେ ଶାନ୍ତି ପ୍ରତିଷ୍ଠା ଉଦ୍ଦେଶ୍ୟରେ କରାଯାଏ, ସେତେବେଳେ ଜଗତର ମଙ୍ଗଳ ସାଧିତ ହୋଇଥାଏ । ମାତ୍ର ଯୁଦ୍ଧ ଯେତେବେଳେ ଧ୍ୱଂସ ସାଧନ ପାଇଁ କରାଯାଏ, ସେତେବେଳେ ମଣିଷର ତାହା ଅମଙ୍ଗଳ କରିଥାଏ । ସେଥିପାଇଁ ସିସେରୋ କହିଥିଲେ–"The only excuse of war is that it be undertaken to ensure a peace injurious to none." ଏକଥା ସତ୍ୟ, ଯୁଦ୍ଧ ସମୟରେ ବିଜ୍ଞାନ ବହୁ ନୂତନ ପଦାର୍ଥ ଆବିଷ୍କାର କରିଥାଏ । ଯୁଦ୍ଧ ପରେ ଏହା ମାନବର ଉପକାର ସାଧନ କରେ । ମାତ୍ର ଯୁଦ୍ଧ ସମୟରେ ଯେଉଁ କ୍ଷତି ଘଟେ, ତା'ର କିପରି ଭରଣା କରାଯାଇ ପାରିବ, ଦୁଇ ଦୁଇଟି ବିଶ୍ୱଯୁଦ୍ଧ ସମଗ୍ର ପୃଥିବୀର ଯେଉଁ ଅନିଷ୍ଟସାଧନ କଲା, ତା'ର ପୂରଣ କ'ଣ କେବେ ସମ୍ଭବ ? ଯୁଦ୍ଧ ଅପେକ୍ଷା ଶୀତଳ ଯୁଦ୍ଧ ଅଧିକ ସାଂଘାତିକ । ଏହାଦ୍ୱାରା ଗୋଟିଏ ଆଶଙ୍କା ଓ ଆତଙ୍କ ଜନସମାଜକୁ ସମ୍ପୂର୍ଣ୍ଣ କବଳିତ କରି ରଖିଥାଏ । ଯୁଦ୍ଧଭୟ ଯୋଗୁଁ ରାଷ୍ଟ୍ର ବହୁପରିମାଣରେ ଅସ୍ତ୍ରଶସ୍ତ୍ର ନିର୍ମାଣ କରିବାକୁ ବାଧ ହୁଏ । ଫଳରେ ଉନ୍ନୟନମୂଳକ କାର୍ଯ୍ୟରେ ବାଧା ଆସିଥାଏ । ମାନସିକ ସ୍ତରରେ ଜନସାଧାରଣ ଦୁର୍ବଳ ହୋଇପଡୁଥିବାରୁ ଦେଶର ପ୍ରଗତି ବାଧାପ୍ରାପ୍ତ ହୋଇଥାଏ । ଏହିପରି ଏକ ପରିସ୍ଥିତି ୧୮୭୪-୧୯୧୪ ପର୍ଯ୍ୟନ୍ତ ଲାଗି ରହିଥିଲା । ଫଳରେ ବିଶ୍ୱରେ ବହୁ ପରିମାଣରେ ମାରଣାସ୍ତ୍ର ନିର୍ମିତ ହୋଇଥିଲା । ଏହାର ନିରାକରଣ ପାଇଁ ରୁଷିଆର ଜାର୍ ପ୍ରଥମ ନିକୋଲାସ ପ୍ରଥମ ଆନ୍ତର୍ଜାତିକ ଶାନ୍ତି ସମ୍ମିଳନୀ ହେଗ୍‌ଠାରେ ଡକାଇଥିଲେ । ପ୍ରଥମ ବିଶ୍ୱଯୁଦ୍ଧ ସମୟରେ ଆମେରିକାର ରାଷ୍ଟ୍ରପତି ରୁଜ୍‌ଭେଲଟ ୧୯୧୭ରେ ସେହି ହେଗ୍‌ଠାରେ ୨ୟ ଶାନ୍ତି ସମ୍ମିଳନୀ ଆହ୍ୱାନ କରିଥିଲେ । ପ୍ରଥମ ବିଶ୍ୱଯୁଦ୍ଧ ପରେ ତତ୍କାଳୀନ ଆମେରିକାର ରାଷ୍ଟ୍ରପତି ଉଇଲସନ୍‌ଙ୍କ ନେତୃତ୍ୱରେ 'ଲିଗ୍ ଅଫ୍ ନେସନ୍‌ସ' ଗଠିତ ହୋଇଥିଲା । ଶାନ୍ତି ପ୍ରତିଷ୍ଠା ପୂର୍ବରୁ ପୁଣି ୨ୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଯାଇଥିଲା । ବିଶ୍ୱଯୁଦ୍ଧ ପରେ ଗଠିତ ହୋଇଥିଲା ମିଳିତ ଜାତିସଂଘ ୧୯୪୫ ମସିହା ଅକ୍ଟୋବର ୨୪ ତାରିଖରେ । ଏଯାବତ୍ ବିଶ୍ୱରେ ଶାନ୍ତି ପ୍ରତିଷ୍ଠା ପାଇଁ ତା'ର ଅବଦାନ ସର୍ବଦା ସ୍ମରଣୀୟ । ଏହା ବ୍ୟତୀତ ପଣ୍ଡିତ ନେହେରୁ ବିଶ୍ୱଶାନ୍ତି ଉଦ୍ଦେଶ୍ୟରେ ଯେଉଁ ପଞ୍ଚଶୀଳ ଘୋଷଣା କରିଥିଲେ, ତାହା ବିଶ୍ୱର ବହୁ ରାଷ୍ଟ୍ରନୀତିଜ୍ଞଙ୍କ ଦ୍ୱାରା ଆଦୃତ ହୋଇଥିଲା । ବିଶ୍ୱଯୁଦ୍ଧ ପରେ ହିଁ ସମଗ୍ର ବିଶ୍ୱରେ ଶାନ୍ତି ପ୍ରତିଷ୍ଠାର ଉଦ୍ୟମ ହୋଇଥିବାରୁ ଯୁଦ୍ଧ ଯେ ଶାନ୍ତିର ବାର୍ତ୍ତାବହ, ସ୍ୱୀକାର କରିବାକୁ ହେବ ।

ଆଧୁନିକ ଯୁଦ୍ଧର ଭୟଙ୍କର ପରିଣତି ସମଗ୍ର ମାନବସମାଜ ପ୍ରତ୍ୟକ୍ଷ କରିଛି ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ । ଜାପାନର ହୀରୋସୀମା ଓ ନାଗାସାକି ସମ୍ପୂର୍ଣ୍ଣ ଧ୍ୱସ୍ତ ବିଧ୍ୱସ୍ତ ହୋଇପଡ଼ିଲା ମାତ୍ର ଦୁଇଟି କ୍ଷୁଦ୍ର ପରମାଣୁ ବୋମାରେ । ବର୍ତ୍ତମାନ ବିଶ୍ୱରେ ତାହାଠାରୁ ଆହୁରି ସହସ୍ର ଗୁଣରେ ଶକ୍ତିଶାଳୀ ପରମାଣୁ ବୋମା ତିଆରି ହୋଇ ରହିଛି । ଏହି ବୋମାର ବିସ୍ଫୋରଣ ଘଟିଲେ ବିଶ୍ୱରୁ ସମଗ୍ର ମାନବସମାଜ ନିଶ୍ଚିହ୍ନ ହୋଇଯାଇପାରେ । ଯେତିକି ମଣିଷ ମୃତ୍ୟୁବରଣ ନ କରିବେ, ତା'ଠାରୁ ଅଧିକ ମାରାତ୍ମକ ବ୍ୟାଧିର ଶିକାର ହେବେ । ତେଣୁ ଏହି ପରିପ୍ରେକ୍ଷୀରେ ବିଶ୍ୱରେ ଶାନ୍ତି ପ୍ରତିଷ୍ଠାର ଆବଶ୍ୟକତା ରହିଛି । ପ୍ରତ୍ୟେକ ମଣିଷ ଶାନ୍ତିକାମୀ । ବିଶ୍ୱକୁ ଧ୍ୱଂସମୁଖରୁ ରକ୍ଷା

କରିବାକୁ ହେଲେ ଶାନ୍ତି ଏକମାତ୍ର ରକ୍ଷାକବଚ । ବର୍ତ୍ତମାନ ଯୁଗର ଆହ୍ୱାନ ହେଉଛି ଯେଉଁଠାରେ ଶାନ୍ତି ନାହିଁ, ସେଠାରେ ଶାନ୍ତି ପ୍ରତିଷ୍ଠା କର । ଶାନ୍ତିରେ ହିଁ ଉଭୟ ମଣିଷ ଓ ସମାଜର ମଙ୍ଗଳ ସାଧନ ହୋଇଥାଏ । ଆର୍ଯ୍ୟଋଷିଙ୍କ ଠାରୁ ଆରମ୍ଭ କରି ବାଇବେଲ ପର୍ଯ୍ୟନ୍ତ ସମସ୍ତେ ଶାନ୍ତିର ବାର୍ତ୍ତା ପ୍ରଚାର କରି ଯାଇଛନ୍ତି । ଚଣ୍ଡାଶୋକ ଧର୍ମାଶୋକରେ ପରିଣତ ହେବାପରେ ଅନୁଭବ କରିଥିଲେ ତରବାରିର ଜୟ ପ୍ରକୃତ ଜୟ ନୁହେଁ । ହୃଦୟର ପରିବର୍ତ୍ତନ ନ ହେଲେ ଶାନ୍ତି ସ୍ଥାପନ ବିଡ଼ମ୍ବିତ ହୋଇପଡ଼ିବ । ତେଣୁ ଆଜି ବିଶ୍ୱର ବହୁ ଚିନ୍ତାଶୀଳ ବ୍ୟକ୍ତି ଶାନ୍ତି ପ୍ରତିଷ୍ଠା ନିମିତ୍ତ ଯେଉଁ ଉଦ୍ୟମ ଜାରି ରଖିଛନ୍ତି, ତାହା ନିଶ୍ଚିତ ଭାବରେ ପ୍ରଶଂସାର୍ହ ।

ଯୁଦ୍ଧ ଓ ଶାନ୍ତି ପ୍ରାୟ ପାଖାପାଖି ଚାଲିଥିଲେହେଁ ବିଶ୍ୱ ମଙ୍ଗଳ ପାଇଁ ଶାନ୍ତିର ଆବଶ୍ୟକତା ସର୍ବାଧିକ । ମାନବସମାଜର ବିକାଶ ଓ ସଭ୍ୟତାର ପ୍ରଗତି କ୍ଷେତ୍ରରେ ଶାନ୍ତିର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ଯୁଦ୍ଧ ଧ୍ୱଂସ କରେ; ମାତ୍ର ଶାନ୍ତି ଶୁଣାଏ ପ୍ରେମ ଓ ଜୀବନର ମନ୍ତ୍ର । ଯୁଦ୍ଧର ପରିଣତି ସୁଦୂରପ୍ରସାରୀ । ଶାନ୍ତି ବିକାଶର ପ୍ରତୀକ । କେଉଁ ଯୁଗରୁ ଶାନ୍ତି ପାଇଁ ମଣିଷ ମନରେ ପରମ ବ୍ୟାକୁଳତା ସୃଷ୍ଟି ହୋଇ ଆସୁଛି ଆଜି ଯଦି ତୃତୀୟ ବିଶ୍ୱଯୁଦ୍ଧର ରଣଦୁନ୍ଦୁଭି ବାଜିଉଠେ, ସମଗ୍ର ପୃଥିବୀ ଧ୍ୱଂସ ହେବାକୁ ମୁହୂର୍ତ୍ତେ ଲାଗିବ ନାହିଁ । ବିଜ୍ଞାନର ଆବିଷ୍କାର ହୋଇଥିଲା ମାନବ ସଭ୍ୟତାକୁ ଶାନ୍ତି ଓ ସ୍ଥିର ରଖିବାକୁ, ଧ୍ୱଂସ କରିବାକୁ ନୁହେଁ । ଏହି ମହତ୍ କଥାକୁ ଆଖିଆଗରେ ରଖି ଶାନ୍ତିର ପ୍ରତିଷ୍ଠା ପାଇଁ ସବୁ ସ୍ତରରେ ଉଦ୍ୟମ ଜାରି ରହିବା ଉଚିତ । ଶାନ୍ତି ହିଁ ବିଶ୍ୱରେ ସ୍ନେହ ଓ ପ୍ରେମର ଭାବ ପ୍ରଚାର କରିପାରିବ ।

●

## ଗଣତନ୍ତ୍ର ଓ ବିରୋଧୀଦଳ

**(ଉପକ୍ରମ, ଗଣତନ୍ତ୍ରର ରୂପରେଖ ଓ ବୈଶିଷ୍ଟ୍ୟ, ବିରୋଧୀ ଦଳର ନୀତି ଓ ଆଦର୍ଶ, ବିରୋଧୀଦଳର ଭୂମିକା, ଉପସଂହାର)**

ବିଶ୍ୱରେ ଗଣତନ୍ତ୍ର ସର୍ବଶ୍ରେଷ୍ଠ ଆଦର୍ଶ ସରକାର ଭାବରେ ଗୃହୀତ ହୋଇଛି । ସ୍ୱାଧୀନତା ଲାଭ ନିମିତ୍ତ ଯେଉଁଠାରେ ଆନ୍ଦୋଳନ ଆରମ୍ଭ ହୋଇଛି, ସେହି ଆନ୍ଦୋଳନ ମୁଖ୍ୟତଃ ଗଣତନ୍ତ୍ର ସରକାର ପ୍ରତିଷ୍ଠା ପାଇଁ ହୋଇଛି । ଫରାସୀ ରାଷ୍ଟ୍ରବିପ୍ଳବ ନିମିତ୍ତ ଯେଉଁମାନେ ନେତୃତ୍ୱ ନେଉଥିଲେ, ସେମାନେ ଏହି ଗଣତନ୍ତ୍ର ସପକ୍ଷରେ ଧ୍ୱନି ଦେଉଥିଲେ । ଇଟାଲୀ ତଥା ଆମେରିକାର ସ୍ୱାଧୀନତା ସଂଗ୍ରାମରେ ଗଣତନ୍ତ୍ର ସ୍ଥାପନ ନିମିତ୍ତ ନିର୍ଭର ପ୍ରତିଶ୍ରୁତି ରହିଥିଲା । ଗଣତନ୍ତ୍ର ଶାସନର ମୌଳିକ ନିୟମଗୁଡ଼ିକ ଜନସାଧାରଣଙ୍କ ହିତ ପାଇଁ ଉଦ୍ଦିଷ୍ଟ ହୋଇଥିବାରୁ ଏପ୍ରକାର ସରକାର ଗଠନ ନିମିତ୍ତ ବିଶ୍ୱସ୍ତରରେ ବିଭିନ୍ନ କ୍ଷେତ୍ରରେ ଆଲୋଡ଼ନ ସୃଷ୍ଟି ହେବା ସ୍ୱାଭାବିକ । ତେଣୁ ଗଣତନ୍ତ୍ର ସରକାର ହିଁ ସର୍ବଶ୍ରେଷ୍ଠ ଜନ ଉପକାରୀ ସରକାର ଭାବରେ ଗୃହୀତ ହୋଇଛି । ବିଶେଷଭାବରେ ଏହି ସରକାରର ଯେକୌଣସି ନୀତିକୁ ବିରୋଧୀଦଳଗୁଡ଼ିକ ତୀବ୍ର

ସମାଲୋଚନା କରୁଥିବାରୁ ସରକାର ସଚେତନ ଭାବରେ ଲୋକବିରୋଧୀ କୌଣସି ପଦକ୍ଷେପ ନେବାକୁ ସାହସ କରିପାରି ନ ଥାନ୍ତି ।

ଗଣତନ୍ତ୍ର ହେଉଛି ଲୋକମାନଙ୍କ ଦ୍ୱାରା, ଲୋକମାନଙ୍କ ପାଇଁ ଓ ଲୋକମାନଙ୍କର ଏକ ଶାସନ ପଦ୍ଧତି । ଜନସାଧାରଣଙ୍କ ରୁଚି ଅନୁଯାୟୀ ଏହି ସରକାର ଗଠିତ ହୋଇଥାଏ । ଲୋକସାଧାରଣ ଯେଉଁମାନଙ୍କ ସପକ୍ଷରେ ମତାମତ ପ୍ରଦାନ କରିଥାନ୍ତି, କେବଳ ସେହିମାନେ ହିଁ ସରକାର ଗଠନ କରିବାକୁ ସମର୍ଥ ହୋଇଥାନ୍ତି । ନିର୍ବାଚନ ମାଧ୍ୟମରେ ଲୋକମାନେ ସେମାନଙ୍କର ପ୍ରତିନିଧି ବାଛିଥାନ୍ତି । ଏହାହିଁ ହେଉଛି ସମଗ୍ର ବିଶ୍ୱର ଗଣତନ୍ତ୍ରର ସର୍ବଶ୍ରେଷ୍ଠ ବିଶେଷତ୍ୱ । ଏହି ନିର୍ବାଚନରେ ଏକାଧିକ ଦଳ ଅଂଶ ଗ୍ରହଣ କରିଥାନ୍ତି ଏବଂ ସଂଖ୍ୟାଗରିଷ୍ଠ ଦଳ ହିଁ ସରକାର ଗଠନ କରିଥାନ୍ତି । ଅନ୍ୟ ଦଳ ବିରୋଧୀଦଳର ଭୂମିକା ଗ୍ରହଣ କରିଥାନ୍ତି । ବିରୋଧୀ ଦଳର ଅନୁପସ୍ଥିତି ଗୋଟିଏ ଦଳକୁ ସ୍ୱେଚ୍ଛାଚାରୀ କରିଥାଏ । ଭାରତର ସମ୍ବିଧାନ ବହୁକ୍ଷେତ୍ରରେ ଇଂଲଣ୍ଡର ସମ୍ବିଧାନ ଓ ଶାସନ ପଦ୍ଧତିକୁ ଅନୁସରଣ କରିଥିଲେହେଁ, କେତେକ କ୍ଷେତ୍ରରେ ଏହାର ବିଶେଷତ୍ୱ ପରିଲକ୍ଷିତ ହୋଇଥାଏ । ଇଂଲଣ୍ଡରେ ମୁଖ୍ୟତଃ ଦୁଇଟି ରାଜନୀତିକ ଦଳ ଦେଖାଯାଇଥାନ୍ତି । ସଂଖ୍ୟାଗରିଷ୍ଠ ଦଳ ଶାସନ କ୍ଷମତାରେ ଅବସ୍ଥାନ କରୁଥିବା ସମୟରେ ସଂଖ୍ୟାନ୍ୟୂନ ଦଳଟି ବିରୋଧୀ ଦଳର ଭୂମିକା ଗ୍ରହଣ କରିଥାନ୍ତି । ମାତ୍ର ଭାରତରେ ସଦାବେଳେ ଦୁଇଟିରୁ ଅଧିକ ରାଜନୀତିକ ଦଳ ନିର୍ବାଚନରେ ଅଂଶ ଗ୍ରହଣ କରିଥାନ୍ତି । ସଂଖ୍ୟାଗରିଷ୍ଠ ଦଳ ସରକାର ଗଠନ କରନ୍ତି ଓ ଅନ୍ୟ ସମସ୍ତ ଦଳ ବିରୋଧୀ ଦଳ ଭାବେ ସଂସଦରେ ବସିବାର ଅଧିକାର ପାଇଥାନ୍ତି । ଏପରିକି ଯେଉଁ ସମୟରେ ଏକକ ଦଳ ସଂଖ୍ୟାଗରିଷ୍ଠତା ଅର୍ଜନ କରିପାରନ୍ତି ନାହିଁ, ସେତେବେଳେ ସମଆଦର୍ଶ ସମ୍ପନ୍ନ ଏକାଧିକ ଦଳ ମିଶି ସରକାର ଗଠନ କରିପାରନ୍ତି ଓ ଅନ୍ୟ ଦଳଗୁଡ଼ିକ ବିରୋଧୀଦଳ ରୂପେ ମର୍ଯ୍ୟାଦା ଲାଭ କରିଥାନ୍ତି । କ୍ଷମତାର ନିଶା ପ୍ରତ୍ୟେକ ବ୍ୟକ୍ତିର ରହିଛି । ଗଣତନ୍ତ୍ରରେ ଯେଉଁମାନେ ସଂଖ୍ୟାଗରିଷ୍ଠତା ଲାଭ କରିଥାନ୍ତି, ସେମାନଙ୍କର ମଧ୍ୟ ଲାଳସା ରହିଥାଏ । ମାତ୍ର ସ୍ୱେଚ୍ଛାଚାରୀ ଶାସକ ପରି ସେମାନେ କୌଣସି ପଦକ୍ଷେପ ଗ୍ରହଣ କରିବାକୁ ସାହସ କରିପାରନ୍ତି ନାହିଁ । ଏପରିକି ବହୁଜନ ମତ ଲାଭ କରି ଶାସନ ଗାଦି ମାଡ଼ିବସିଥିବା ଦଳ କଦାପି ଜନବିରୋଧୀ କାର୍ଯ୍ୟ କରି ନ ଥାନ୍ତି ଗଣତନ୍ତ୍ରରେ । ସେମାନେ ଜାଣନ୍ତି, ଯଦି ଏଭଳି ପଦକ୍ଷେପ ଗ୍ରହଣ କରିବେ, ତେବେ ପରବର୍ତ୍ତୀ ନିର୍ବାଚନରେ ଜନସାଧାରଣ ସେମାନଙ୍କୁ ପରିତ୍ୟାଗ କରିବେ । ବାସ୍ତବରେ ଗଣତନ୍ତ୍ରରେ ଶାସନ କ୍ଷମତା ନିର୍ବାଚିତ ଦଳଙ୍କ ହାତରେ ନ ଥାଏ, ଥାଏ ଜନସାଧାରଣଙ୍କ ହାତରେ । ବହୁକ୍ଷେତ୍ରରେ ସାଧାରଣ ଜନତା ପ୍ରତ୍ୟକ୍ଷ ଭାବରେ ନିର୍ବାଚିତ ପ୍ରତିନିଧିଙ୍କୁ ସେମାନଙ୍କର ତ୍ରୁଟିପୂର୍ଣ୍ଣ କାର୍ଯ୍ୟ ପାଇଁ ସମାଲୋଚନା କରିଥାନ୍ତି । ଅନ୍ୟ କୌଣସି ଶାସନ ପଦ୍ଧତିରେ ଜନସାଧାରଣ ଏପ୍ରକାର ସ୍ୱାଧୀନତା ଲାଭ କରିବାକୁ ସମର୍ଥ ହୋଇ ନ ଥାନ୍ତି । ଗଣତନ୍ତ୍ରର ଏହିପରି କେତେକ ବୈଶିଷ୍ଟ୍ୟ ରହିଥିବାରୁ, ଏହା ଏକ ଶ୍ରେଷ୍ଠ ଶାସନ ପଦ୍ଧତି ଭାବରେ ଗୃହୀତ ହୋଇଥାଏ ।

ଗଣତନ୍ତ୍ରରେ ମୁଖ୍ୟତଃ ଦୁଇଟି ଦଳ ଦେଖାଯାଇଥାନ୍ତି । ଯେଉଁ ଦଳ ନିର୍ବାଚନରେ ସଂଖ୍ୟାଗରିଷ୍ଠତା ଲାଭ କରିଥାନ୍ତି, ସେମାନେ ସରକାରୀ ଦଳ ଓ ଅନ୍ୟମାନେ ବିରୋଧୀ

ଦଳ ରୂପେ ପରିଗଣିତ ହୋଇଥାନ୍ତି । ଗୋଟିଏ ଗଣତନ୍ତ୍ରରେ ବିରୋଧୀଦଳର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । କାରଣ ବିରୋଧୀ ଦଳ ନ ଥିଲେ ସରକାରରେ ଥିବା ଯେକୌଣସି ଦଳ ସ୍ୱେଚ୍ଛାଚାରୀ ହେବାର ବହୁ ସମ୍ଭାବନା ରହିଛି । ଏହାସତ୍ତ୍ୱେ ପ୍ରତ୍ୟେକ ବିରୋଧୀଦଳଙ୍କର କେତେକ ନୀତି ଓ ଆଦର୍ଶ ରହିବା ଉଚିତ । କେବଳ ବିରୋଧୀଦଳ ଆସନରେ ବସିଗଲେ, ସେମାନଙ୍କ ଦାୟିତ୍ୱର ପରିସମାପ୍ତି ଘଟେ ନାହିଁ । ଗଣତନ୍ତ୍ରକୁ ସ୍ୱେଚ୍ଛାଚାରରୁ ରକ୍ଷାକରିବାର ପ୍ରଥମ ଦାୟିତ୍ୱ ସେମାନଙ୍କର । ବିରୋଧୀ ଦଳର ଆଦର୍ଶ ଓ ନୀତି ଗଣତନ୍ତ୍ରକୁ ସୁସ୍ଥ ଓ ସୁନ୍ଦର କରିଥାଏ । ସମାଲୋଚନା କରିବା ବିରୋଧୀଦଳର ଉଦ୍ଦେଶ୍ୟ ହେବା ଅନୁଚିତ । ସରକାରଙ୍କ ଦୁର୍ନୀତି ଓ କ୍ଷମତାର ଅପବ୍ୟବହାରକୁ ବାଧା ଦେବାର ଦାୟିତ୍ୱ ବିରୋଧୀ ଦଳର । ଯେଉଁମାନେ ବିରୋଧୀଦଳ ଆସନରେ ଉପବେଶନ କରିଥାନ୍ତି, ସେମାନେ ମଧ୍ୟ ଜନସାଧାରଣଙ୍କ ପ୍ରତିନିଧି । ଜନସାଧାରଣଙ୍କ ସ୍ୱାର୍ଥ ପାଇଁ କାର୍ଯ୍ୟ କରିବା ସେମାନଙ୍କର ପ୍ରଥମ ଦାୟିତ୍ୱ । ସଚେତନ ଭାବରେ ଲୋକମାନଙ୍କର ସ୍ୱାର୍ଥ ପ୍ରତି କାର୍ଯ୍ୟ କରିପାରିଲେ ଏବଂ ସେମାନଙ୍କର ଆସ୍ଥାଭାଜନ ହୋଇପାରିଲେ, ପରବର୍ତ୍ତୀ ସମୟରେ ସେମାନେ ମଧ୍ୟ ସରକାର ଗଠନ କରିବାର ସୁଯୋଗ ପାଇଥାନ୍ତି । ବିରୋଧୀ ଦଳର ପ୍ରତ୍ୟେକ ସଦସ୍ୟ ଜଣେ ଜଣେ ଗଠନମୂଳକ ସମାଲୋଚକ ହେବା ଆବଶ୍ୟକ । ସବୁକ୍ଷେତ୍ରରେ ସରକାରଙ୍କୁ ସମାଲୋଚନା କଲେ ଜନସାଧାରଣ ସେମାନଙ୍କ ପ୍ରତି ବିତୃଷ୍ଣ ହୋଇପଡ଼ନ୍ତି । ଯେଉଁ କ୍ଷେତ୍ରରେ ବିରୋଧୀ ଦଳ ଅନୁଭବ କରିବେ, ସରକାରଙ୍କ କାର୍ଯ୍ୟପନ୍ଥା ଜନସାଧାରଣଙ୍କ ପରିପନ୍ଥୀ, ସେ କ୍ଷେତ୍ରରେ ସେମାନେ ସରକାରଙ୍କୁ ସମାଲୋଚନା କରିବା ଉଚିତ । ଯେତେବେଳେ ଦେଶ କୌଣସି ଏକ ଅସ୍ୱାଭାବିକ ପରିସ୍ଥିତି ମଧ୍ୟ ଦେଇ ଗତିକରୁଥାଏ, ସେତେବେଳେ ବିରୋଧୀଦଳ ତାହାକୁ ଏକ ଜାତୀୟ ଆଇନଘଟିତ ତର୍କରେ ପରିଣତ କଲେ, ଜନସାଧାରଣ ବିରୋଧୀଦଳଙ୍କ କାର୍ଯ୍ୟପଦ୍ଧତିକୁ ପ୍ରଶଂସା କରିଥାନ୍ତି । ପ୍ରତ୍ୟେକ ବିରୋଧୀ ଦଳର କେତେକ ନୀତି ଓ ଆଦର୍ଶ ରହିବା ଆବଶ୍ୟକ । ଏହି ନୀତି ଓ ଆଦର୍ଶର ସଫଳତା ନିମିତ୍ତ ଗୃହ ମଧ୍ୟରେ ଏକତ୍ରିତ ଭାବେ କାର୍ଯ୍ୟ କଲେ, ପରବର୍ତ୍ତୀ ସମୟରେ ସରକାର ଗଠନରେ ତାହା ସେମାନଙ୍କୁ ସାହାଯ୍ୟ କରିଥାଏ । ନିଜ ଦଳର ଆଦର୍ଶକୁ କାର୍ଯ୍ୟକାରୀ କରିବା ପାଇଁ ସେମାନେ ସରକାରଙ୍କ ନିକଟରେ କେତେକ ପ୍ରସ୍ତାବ ଆଗତ କରିପାରନ୍ତି । ବିଶେଷ ଭାବରେ ନିର୍ବାଚନ ସମୟରେ ଜନସାଧାରଣଙ୍କୁ ସେମାନେ ଯେଉଁ ପ୍ରତିଶ୍ରୁତି ଦେଇ ଆସିଥାନ୍ତି, ତାହାକୁ କାର୍ଯ୍ୟକାରୀ କରିବା ପାଇଁ ଗୃହରେ ସଙ୍ଗଠିତ ଉଦ୍ୟମ କରିବା ପ୍ରଥମ କର୍ତ୍ତବ୍ୟ । ସରକାରୀ ଦଳ ସେହି ପ୍ରସ୍ତାବଗୁଡ଼ିକୁ କାର୍ଯ୍ୟ କରିବାକୁ ଅନିଚ୍ଛା ପ୍ରକାଶ କଲେ ବିରୋଧୀ ଦଳ ତାହା ଜନସାଧାରଣଙ୍କ ସମ୍ମୁଖରେ ଉପସ୍ଥାପନ କରି ସରକାରଙ୍କ ପ୍ରତି ବିରାଗ ଭାବ ସୃଷ୍ଟି କରିପାରିବେ । ବାର୍ଷିକ ବ୍ୟୟ ଅଟକଳ ସମୟରେ ମଧ୍ୟ ସେମାନେ ନିଜ ଦଳ ଓ ଜନସାଧାରଣଙ୍କ ସ୍ୱାର୍ଥକୁ ଆଖି ଆଗରେ ରଖି କାର୍ଯ୍ୟପନ୍ଥା ନିର୍ଦ୍ଦିଷ୍ଟ କରିନେବା ଆବଶ୍ୟକ । ସରକାରଙ୍କ ଯେଉଁ ନୀତି ଜନସାଧାରଣ ବିରୋଧୀ, ତାହାକୁ ସେମାନେ ତୀବ୍ର ବିରୋଧ କରିବା ବାଞ୍ଛନୀୟ । ସରକାରୀ ଦଳର ସାମାନ୍ୟ ମାତ୍ର ଦୁର୍ବଳତାକୁ ହାତଛଡ଼ା ନ କରି ତା'ର ଫାଇଦା ଉଠାଇବା ସେମାନଙ୍କର ମୁଖ୍ୟ କର୍ତ୍ତବ୍ୟ । ଏହାଦ୍ୱାରା ଜନସାଧାରଣଙ୍କ

ଉପରେ ନିଜ ଦଳର ଏକ ବିଶେଷ ପ୍ରଭାବ ପକାଇବାକୁ ସମର୍ଥ ହୋଇପାରିବେ । ଦୁର୍ନୀତି, ଅଯଥା ଅନୁକମ୍ପା, ପ୍ରିୟାପ୍ରୀତି ତୋଷଣ, ସରକାରୀ କଳର ଅପରାଧ କାର୍ଯ୍ୟକଳାପ, କ୍ଷମତାର ଅପବ୍ୟବହାର ଆଦି ବିଷୟକୁ ବିରୋଧୀଦଳ ମୁଖ୍ୟ ବିଷୟ ଭାବରେ ଉପସ୍ଥାପନ କରିବା ଉଚିତ । ସରକାରଙ୍କର ବିଭିନ୍ନ ଅପାରଗତାକୁ ଜନସମ୍ମୁଖରେ ଉପସ୍ଥାପିତ କରି ନିଜର ଫାଇଦା ହାସଲ କରିବା ପ୍ରତ୍ୟେକ ବିରୋଧୀଦଳର ଲକ୍ଷ୍ୟ ହେବା ଆବଶ୍ୟକ । ସରକାରୀ ଦଳ ସଂଖ୍ୟାଗରିଷ୍ଠ ହେଲେ ମଧ୍ୟ ସଙ୍ଗଠିତ ଉଦ୍ୟମ ଦ୍ୱାରା ବିରୋଧୀଦଳ ନିଜର ସ୍ଥିତିକୁ ଜାହିର କରିପାରିବେ । ବିଭିନ୍ନ ଜାତୀୟ, ଆନ୍ତର୍ଜାତୀୟ ଘଟଣାବଳୀ ସହିତ ଜନସାଧାରଣଙ୍କୁ ପରିଚିତ କରିବା ପାଇଁ ବିରୋଧୀଦଳଗଣ ଉଦ୍ୟମ ଜାରି ରଖିବା ଉଚିତ । ଏହାଦ୍ୱାରା ଜନସାଧାରଣ ସରକାରଙ୍କ ବିଭିନ୍ନ କାର୍ଯ୍ୟକ୍ରମ ଓ ପଦକ୍ଷେପ ସମ୍ବନ୍ଧରେ ଶିକ୍ଷାଲାଭ କରିବା ସଙ୍ଗେ ସଙ୍ଗେ ଜନସାଧାରଣଙ୍କ ସ୍ୱାର୍ଥରକ୍ଷା ଯେଉଁ ଦଳ ଦ୍ୱାରା ସମ୍ଭବ, ତାହା ସେମାନେ ଅବଗତ ହୋଇଥାନ୍ତି । ପରବର୍ତ୍ତୀ ନିର୍ବାଚନରେ ନିଜର ବିବେକାନୁମୋଦିତ ଭୋଟ ସେହି ବ୍ୟକ୍ତିଙ୍କ ସପକ୍ଷରେ ପ୍ରଦାନ କରିଥାନ୍ତି । ଯେଉଁମାନେ ତାଙ୍କ ସ୍ୱାର୍ଥପ୍ରତି ସମ୍ପୂର୍ଣ୍ଣ ସଚେତନ ଥାନ୍ତି, ଅଧିବେଶନ ଚାଲୁଥିବା ସମୟରେ ବିରୋଧୀ ଦଳ ସରକାରଙ୍କ କ୍ଷମତାର ଅପବ୍ୟବହାର, ଦୁର୍ନୀତି, ଅର୍ଥତୋଷରପାତ, ଦାୟିତ୍ୱଶୂନ୍ୟତା, ଅନୀତି ଆଦି ସମ୍ବନ୍ଧରେ ତୀବ୍ର ସମାଲୋଚନା କରିବା ସହିତ ସେମାନଙ୍କ ବିରୋଧରେ ଅନାସ୍ଥା ସୂଚକ ପ୍ରସ୍ତାବ ଆଗତ କଲେ ସରକାରୀଦଳ ବହୁପରିମାଣରେ ସଚେତନ ହୋଇପାରିବେ ଏବଂ ନିଜ ତ୍ରୁଟିର ସଂଶୋଧନ ନିମିତ୍ତ ଆବଶ୍ୟକୀୟ ପଦକ୍ଷେପ ଗ୍ରହଣ କରିପାରିବେ । ଜାତୀୟ ସ୍ୱାର୍ଥ ସମ୍ବଳିତ କୌଣସି ଘଟଣାରେ ସରକାରଙ୍କ ଅନୀତି ସହିତ ବିରୋଧୀଦଳ ଆଦୌ ସାଲିସ କରିବା ଅନୁଚିତ । ବିରୋଧୀଦଳ ଶାସନର ଜାଗ୍ରତ ପ୍ରହରୀ । ସେହିମାନଙ୍କ ପ୍ରତ୍ୟକ୍ଷ ଓ ସଚେତନ କାର୍ଯ୍ୟପଦ୍ଧତି ଉପରେ ପ୍ରକୃତ ଗଣତନ୍ତ୍ରର ଭାଗ୍ୟ ନିର୍ଭର କରିଥାଏ ।

ବିରୋଧୀ ଦଳର ଅର୍ଥ କେବଳ ସରକାରଙ୍କ କାର୍ଯ୍ୟର ବିରୋଧ ନୁହେଁ । ଯେଉଁ କ୍ଷେତ୍ରରେ ସରକାରଙ୍କର କାର୍ଯ୍ୟ ଜନସ୍ୱାର୍ଥ ବିରୋଧୀ ବୋଲି ଅନୁଭୂତ ହେବ, କେବଳ ସେହି କ୍ଷେତ୍ରରେ ବିରୋଧୀ ଦଳ ବିରୋଧ କରିବା ଉଚିତ । ବିରୋଧୀଦଳ ଗଣତନ୍ତ୍ରର ପ୍ରକୃତ ଆଦର୍ଶ, ସରକାର ନୀତି ଏବଂ ବିଚାରଧାରା ସମ୍ପର୍କରେ ଜନସାଧାରଣଙ୍କୁ ସଚେତନ କରାଇ ଦେଇଥାନ୍ତି । ସେହିମାନଙ୍କର ସକ୍ରିୟ ସହଯୋଗ ସରକାରକୁ ଅଧିକ କାର୍ଯ୍ୟକ୍ଷମ ଓ ନୀତିନିଷ୍ଠ କରାଇଥାଏ । ଜନସାଧାରଣଙ୍କ ଆସ୍ଥାଭାଜନ ହେବା ପ୍ରତ୍ୟେକ ବିରୋଧୀଦଳ ସଦସ୍ୟଙ୍କ ମୁଖ୍ୟ କର୍ତ୍ତବ୍ୟ । ତେଣୁ ଗୃହ ମଧ୍ୟରେ ସେମାନେ ଏପରି କିଛି ଆଚରଣ କରିବା ଅନୁଚିତ, ଯାହା ତାଙ୍କୁ ଜନସାଧାରଣଙ୍କ ନିକଟରେ ନିନ୍ଦିତ କରାଇବ । କେବଳ ସମାଲୋଚନା ନୁହେଁ, ଧୈର୍ଯ୍ୟ ଓ ବାସ୍ତବତାକୁ ଅନୁଧ୍ୟାନ କରି ସେମାନେ ବିଭିନ୍ନ ପ୍ରସ୍ତାବ ସମ୍ପର୍କରେ ସ୍ୱକୀୟ ଚିନ୍ତାଧାରା ପ୍ରକଟ କରିବା ଆବଶ୍ୟକ । ସରକାରଙ୍କ ପ୍ରତ୍ୟେକ କାର୍ଯ୍ୟର ଅନୁସନ୍ଧାନ କରିବା ସହିତ ଦେଶ ଓ ଜନସ୍ୱାର୍ଥ ବିରୋଧୀ କାର୍ଯ୍ୟର ବିରୋଧ କରିବା ସେମାନଙ୍କର ମୌଳିକ କର୍ତ୍ତବ୍ୟ । କେବଳ ତ୍ରୁଟି ବାଛିବା ବିରୋଧୀ ଦଳଙ୍କର କାମ ନୁହେଁ । ସେହି ତ୍ରୁଟିକୁ ସରକାରକୁ ଅବଗତ କରାଇବା

ଏବଂ ତାହାର ଯଥାର୍ଥ ନିରାକରଣ ନିମିତ୍ତ ପରାମର୍ଶ ପ୍ରଦାନ କରିବା ପ୍ରତ୍ୟେକ ବିରୋଧୀଦଳ ସଦସ୍ୟଙ୍କର ଆଦର୍ଶ । ବିରୋଧୀଦଳଙ୍କ ଆଚରଣ ଓ ସମାଲୋଚନା ସର୍ବଦା ମାର୍ଜିତ ଓ ଶୁଦ୍ଧ ହେବା ଆବଶ୍ୟକ । ସମାଲୋଚନା ବେଳେ ବିରୋଧୀଦଳ କଦାପି ଗୃହର ଅବମାନନା କିମ୍ବା ସଦସ୍ୟଙ୍କର ଅପମାନ ହେବାପରି ଶବ୍ଦ ପ୍ରୟୋଗ କରିବା ଅନୁଚିତ । ଜଣେ ଜଣେ ଉପଦେଶକର ଭୂମିକା ଗ୍ରହଣ କରି ସରକାରଙ୍କୁ ଉଚିତ ମାର୍ଗ ପ୍ରଦର୍ଶନ କରିବା ବିରୋଧୀ ଦଳର ମୁଖ୍ୟ କର୍ତ୍ତବ୍ୟ । ଜାତୀୟ ସଙ୍କଟ ସମୟରେ ସରକାରଙ୍କୁ ନୈତିକ ସମର୍ଥନ ପ୍ରଦାନ କରିବା ବିରୋଧୀଦଳର ସର୍ବଶ୍ରେଷ୍ଠ କର୍ତ୍ତବ୍ୟ । ବିଶେଷଭାବରେ ବହିଃଆକ୍ରମଣର ସମ୍ଭାବନା ସମୟରେ କିମ୍ବା ବୈଦେଶିକ ସ୍ତରରେ ବିପଦ ଅନୁଭୂତ ହେଉଥିବା ସମୟରେ ବିରୋଧୀଦଳଗୁଡ଼ିକ ସରକାରଙ୍କ ସହିତ ମିଶି କାର୍ଯ୍ୟ କରିବା ଆବଶ୍ୟକ । କାରଣ ସେମାନଙ୍କର ମନେରଖିବା ଆବଶ୍ୟକ, ଦେଶର ସ୍ୱାର୍ଥ ସମସ୍ତ ଉର୍ଦ୍ଧ୍ୱରେ । ତେଣୁ ଯେଉଁ କ୍ଷେତ୍ରରେ ଦେଶର ସ୍ୱାର୍ଥ ପ୍ରତି ବିପଦର ଆଶଙ୍କା ଦେଖାଦେବ, ସେ କ୍ଷେତ୍ରରେ ବିରୋଧୀଦଳ ସରକାରୀଦଳ ସହିତ ବିଭିନ୍ନ କ୍ଷେତ୍ରରେ ସହଯୋଗ କରିବା ବିଜ୍ଞତାର ପରିଚୟ ହେବ । ସରକାରୀଦଳ ଜନସାଧାରଣଙ୍କ ସମର୍ଥନ ହରାଇଲେ ବିରୋଧୀ ଦଳ ପରବର୍ତ୍ତୀ ସମୟରେ ଆସନକ୍ଷମତା ଦଖଲ କରିଥାଏ । ତେଣୁ ବିରୋଧୀ ଦଳର ଭୂମିକା ଗ୍ରହଣ କରିବା ସମୟରେ ସେମାନେ ଏପରି କିଛି କାର୍ଯ୍ୟ କରିବା ଅନୁଚିତ ଯାହା ତାଙ୍କୁ ପରବର୍ତ୍ତୀ ସମୟରେ ସରକାର ଗଠନରେ ଅସୁବିଧାରେ ପକାଇବ । ଏହି ଦୃଷ୍ଟିରୁ ଗୃହ ମଧ୍ୟରେ ବିରୋଧୀ ଦଳମାନଙ୍କର ବିଶେଷତଃ ଗଣତନ୍ତ୍ର ରାଷ୍ଟ୍ରରେ ବିଶେଷ ଭୂମିକା ରହିଛି ।

ସୁସ୍ଥ ବିରୋଧୀଦଳ ଦେଶପକ୍ଷେ ହିତକର । ଗଣତନ୍ତ୍ର ରାଷ୍ଟ୍ରରେ ଜନସାଧାରଣଙ୍କ ସ୍ୱାର୍ଥ ପ୍ରତି ପ୍ରଥମ ଦୃଷ୍ଟି ପ୍ରଦାନ କରିବା ପ୍ରତ୍ୟେକ ବିରୋଧୀଦଳର ଆଦର୍ଶ ହେବା ଆବଶ୍ୟକ । ସେହିମାନଙ୍କ ସଚେତନ ଓ ସକ୍ରିୟ ଭୂମିକା ସରକାରଙ୍କୁ ସ୍ୱେଚ୍ଛାଚାରୀ ହେବାରେ ବାଧା ପ୍ରଦାନ କରିଥାଏ । ସେମାନଙ୍କର ସହଯୋଗମୂଳକ ମନୋବୃତ୍ତି ଦେଶର ବିକାଶରେ ସହାୟକ ହୋଇଥାଏ । ଜାତୀୟ ପ୍ରଗତି ଓ ନିରାପତ୍ତାକୁ ଆଖିଆଗରେ ରଖି ବିରୋଧୀଦଳ ନିଜ ଭୂମିକାକୁ ଫଳପ୍ରଦ କରିବା ଆବଶ୍ୟକ । ସେମାନେ ସର୍ବଦା ମନେରଖିବା ଆବଶ୍ୟକ, ସରକାରୀ ଦଳର ପ୍ରତିଯୋଗୀ ଭାବରେ ଆସନ ଲାଭ କରିଛନ୍ତି । ତେଣୁ ସରକାରଙ୍କ କାର୍ଯ୍ୟପଦ୍ଧତି ସମ୍ପର୍କରେ ଆଲୋଚନା ସମୟରେ ସରକାରଙ୍କ ଯେଉଁସବୁ ତ୍ରୁଟି ବିଚ୍ୟୁତି ସେମାନେ ପ୍ରଦର୍ଶନ କରୁଛନ୍ତି, ନିଜ କାର୍ଯ୍ୟରେ ଯେପରି ତାହାର ପୁନରାବୃତ୍ତି ନ ହୁଏ, ସେଥିପ୍ରତି ସତତ ଧ୍ୟାନଶୀଳ ହେବା ଉଚିତ । ନାଗରିକଙ୍କ ଆଶା ଓ ବିଶ୍ୱାସକୁ ସାକାର କରିବା, ସରକାରଙ୍କ ଜନସ୍ୱାର୍ଥ ସମ୍ବଳିତ କାର୍ଯ୍ୟକ୍ରମକୁ ଗଠନମୂଳକ ସମର୍ଥନ କରିବା, ଦେଶର ବିକାଶ ଓ ସମ୍ମାନ ବୃଦ୍ଧି ପ୍ରତି ଧ୍ୟାନଶୀଳ ହେବା ଏବଂ ସର୍ବୋପରି ଗଣତନ୍ତ୍ରର ଜାଗ୍ରତ ପ୍ରହରୀ ରୂପେ କାର୍ଯ୍ୟ କରିବା ପ୍ରତ୍ୟେକ ବିରୋଧୀ ଦଳର କର୍ତ୍ତବ୍ୟ । ସେମାନଙ୍କ ଆଦର୍ଶ ଓ କର୍ତ୍ତବ୍ୟନିଷ୍ଠା ଉପରେ ହିଁ ଗଣତନ୍ତ୍ରର ପବିତ୍ରତା ନିର୍ଭର କରେ । ତେଣୁ ଏକ ଗଣତନ୍ତ୍ର ରାଷ୍ଟ୍ରରେ ବିରୋଧୀଦଳର ଭୂମିକା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ।

●

# ଭାରତର ଗଣତନ୍ତ୍ରରେ ନାଗରିକର ମୌଳିକ ଅଧିକାର

**(ଉପକ୍ରମ, ମୌଳିକ ଅଧିକାର ସମ୍ପର୍କୀୟ ଚିନ୍ତାଧାରାର ଉଦ୍ରେକ, ସାମ୍ବିଧାନିକ ବ୍ୟବସ୍ଥା, ମୌଳିକ ଅଧିକାରର କେତେକ ବୈଶିଷ୍ଟ୍ୟ, ବିଭାଗୀକରଣ, କେତେକ କ୍ଷେତ୍ରରେ ମୌଳିକ ଅଧିକାରର ସଙ୍କୋଚନ, ସମାଲୋଚନା, ଉପସଂହାର)**

ପ୍ରତ୍ୟେକ ସ୍ୱାଧୀନ ରାଷ୍ଟ୍ରର ଗୋଟିଏ ଗୋଟିଏ ସମ୍ବିଧାନ ରହିଥାଏ । ସମ୍ବିଧାନ ଦେଶର ଦର୍ପଣ ସଦୃଶ । ଏହା ପୁଣି ଦେଶର ନୀତିନିୟମ ନିର୍ଦ୍ଧାରକ । ଗୋଟିଏ ଦେଶର ଆଶା-ଆକାଂକ୍ଷା, କାର୍ଯ୍ୟପଦ୍ଧତି, ନୀତି-ନିୟମ ସମ୍ବିଧାନର କଳେବର ମଣ୍ଡନ କରିଥାଏ । ତାହାକୁ ଅନୁସରଣ କରି ଦେଶର ଶାସନକାର୍ଯ୍ୟ ପରିଚାଳିତ ହୋଇଥାଏ । ଭାରତ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ସ୍ୱାଧୀନତା ଲାଭକଲା ଏବଂ ୧୯୫୦ ମସିହା ଜାନୁଆରୀ ୨୬ ତାରିଖଠାରୁ ଏକ ସାଧାରଣତନ୍ତ୍ର ରାଷ୍ଟ୍ରରେ ପରିଣତ ହେଲା । ଏହି ଦିନଠାରୁ ଭାରତର ସ୍ୱତନ୍ତ୍ର ସମ୍ବିଧାନ କାର୍ଯ୍ୟକାରୀ ହେବାକୁ ଲାଗିଲା । ଗଣତନ୍ତ୍ର ରାଷ୍ଟ୍ରରେ ବ୍ୟକ୍ତିର ସୁରକ୍ଷା ଓ ସୁବିଧା ନିମିତ୍ତ ଜନସାଧାରଣଙ୍କୁ କେତେକ ଅଧିକାର ପ୍ରଦାନ କରାଯାଇଛି । ଯଦି କୌଣସି ସମୟରେ ବ୍ୟକ୍ତି ଏହି ଅଧିକାରରୁ ବଞ୍ଚିତ ହୁଏ, ତେବେ ଏହାର ପୁନର୍ଲାଭ ନିମିତ୍ତ ସେ ଉଚ୍ଚନ୍ୟାୟାଳୟ ବା ଉଚ୍ଚତମ ନ୍ୟାୟାଳୟର ଦ୍ୱାରସ୍ଥ ହୋଇପାରିବ । ମଣିଷର ସାମାଜିକ, ରାଜନୀତିକ ଓ ଆର୍ଥନୀତିକ ବ୍ୟବସ୍ଥାକୁ ଦୃଷ୍ଟିରେ ରଖି ମୌଳିକ ଅଧିକାରଗୁଡ଼ିକ ସୃଷ୍ଟି କରାଯାଇଛି । ଭାରତୀୟ ସମ୍ବିଧାନର ଏହାହିଁ ହେଉଛି ସର୍ବଶ୍ରେଷ୍ଠ ଲୋଭନୀୟ ବୈଶିଷ୍ଟ୍ୟ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଗଣତନ୍ତ୍ର ସାମ୍ବିଧାନିକ ସରକାର ଉପରେ ଗୁରୁତ୍ୱ ଆରୋପ କଲା । ଏହି ସରକାର କେତେକ ନିୟମରେ ଆବଦ୍ଧ ହୋଇଥିବାରୁ ସ୍ୱେଚ୍ଛାଚାରୀ ସରକାର ପରି ଲୋକବିରୋଧୀ ନୁହେଁ । ଇଂଲଣ୍ଡରେ ଜନସାଧାରଣ ସେମାନଙ୍କର ମୌଳିକ ଅଧିକାରଗୁଡ଼ିକୁ କାର୍ଯ୍ୟପାଳିକା ଶକ୍ତିର ଅପବ୍ୟବହାରରୁ ରକ୍ଷା କରିବା ପାଇଁ କେତେଗୁଡ଼ିଏ ବ୍ୟବସ୍ଥା ଗ୍ରହଣ କରିଥିଲେ । ମାତ୍ର ବ୍ୟବସ୍ଥାପକ ସଭା ଯେକୌଣସି ମୁହୂର୍ତ୍ତରେ ଇଂଲଣ୍ଡବାସୀଙ୍କ ଏହି ଅଧିକାରଗୁଡ଼ିକୁ ସଙ୍କୁଚିତ କରି ଦେଶର ଅଧିକାର ଲାଭ କରିଛି । ଆମେରିକାରେ ସମ୍ବିଧାନ ପ୍ରଣେତାଗଣ ଲୋକଙ୍କର ମୌଳିକ ଅଧିକାରଗୁଡ଼ିକୁ ଉଭୟ ବ୍ୟବସ୍ଥାପକ ସଭା ଓ କାର୍ଯ୍ୟପାଳିକା ଶକ୍ତିଠାରୁ ମୁକ୍ତ ରଖିବାକୁ ଚେଷ୍ଟା କରିଥିବାରୁ ଏହା ଅଧିକ ଗଣତାନ୍ତ୍ରିକ । କୌଣସି ମୁହୂର୍ତ୍ତରେ ଆମେରିକା କଂଗ୍ରେସ ଏହି ମୌଳିକ ଅଧିକାରଗୁଡ଼ିକୁ ସଙ୍କୁଚିତ କରିବାକୁ ଚେଷ୍ଟାକଲେ ନ୍ୟାୟପାଳିକା ଲୋକମାନଙ୍କୁ ଏ କ୍ଷେତ୍ରରେ ସୁରକ୍ଷା ପ୍ରଦାନ କରିବାକୁ ସମର୍ଥ ହୋଇପାରିବ । ମାତ୍ର ଇଂଲଣ୍ଡରେ ସଂସଦ ଅଧିକ କ୍ଷମତାଶାଳୀ ହୋଇଥିବାରୁ ନ୍ୟାୟପାଳିକା ମଧ୍ୟ ଇଂଲଣ୍ଡବାସୀଙ୍କ ଅଧିକାରଗୁଡ଼ିକୁ ସୁରକ୍ଷା ପ୍ରଦାନ କରିବାକୁ ସମର୍ଥ ହୋଇଥାଏ । ଭାରତୀୟ ସମ୍ବିଧାନର ମୌଳିକ ଅଧିକାର ପ୍ରଣୟନ

ସମୟରେ ପ୍ରଣେତାଗଣ ଆମେରିକା ସାମ୍ବିଧାନିକ ବ୍ୟବସ୍ଥାଦ୍ୱାରା ଅଧିକମାତ୍ରାରେ ପ୍ରଭାବିତ ହୋଇଛନ୍ତି । ୧୯୩୧ ମସିହାରେ ଭାରତୀୟ ଜାତୀୟ କଂଗ୍ରେସର କରାଚୀ ଅଧିବେଶନରେ ପଣ୍ଡିତ ଜବାହରଲାଲ ନେହେରୁ ମୌଳିକ ଅଧିକାର ସମ୍ପର୍କରେ ଯେଉଁ ପ୍ରସ୍ତାବ ଆଗତ କରିଥିଲେ ତା'ର ସାମାନ୍ୟ ପରିବର୍ତ୍ତନ କରାଯାଇ ଭାରତୀୟ ସମ୍ବିଧାନରେ ତାହାକୁ ରଖାଯାଇଛି । ସମ୍ବିଧାନର ତୃତୀୟ ପରିଚ୍ଛେଦରେ ଏହା ସ୍ଥାନିତ ହୋଇଛି । ବ୍ୟକ୍ତିର ବ୍ୟକ୍ତିତ୍ୱର ବିକାଶରେ ଏହାର ଉପଯୋଗିତାକୁ ଲକ୍ଷ୍ୟକରି ଉକ୍ତ ଅଧିକାରଗୁଡ଼ିକୁ ମୌଳିକ ଅଧିକାର ବୋଲି ନାମିତ କରାଯାଇଛି । ପ୍ରଥମେ ସମ୍ବିଧାନ ପ୍ରଣୟନ ସମୟରେ ବ୍ୟକ୍ତିର ସାତଟି ମୌଳିକ ଅଧିକାର ସମ୍ପର୍କରେ ଉଲ୍ଲେଖ କରାଯାଇଥିଲା । ମାତ୍ର ୧୯୭୮ ମସିହାରେ ୪୪ତମ ସଂଶୋଧନରେ ସମ୍ପତ୍ତିଗତ ଅଧିକାରକୁ ଉଚ୍ଛେଦ କରାଯାଇଛି । ଏହା ମୌଳିକ ଅଧିକାର ଅନ୍ତର୍ଭୁକ୍ତ ନ ହୋଇ ଆଇନଗତ ଅଧିକାରଭୁକ୍ତ ହୋଇଛି । ଏହି ଆଇନ ଅନୁଯାୟୀ ଜଣେ ବ୍ୟକ୍ତିର ସମ୍ପତ୍ତି ଅଧିକାର, କ୍ରୟ, ବିକ୍ରୟ ବା ଉପଭୋଗ କରିବାର କ୍ଷମତା ରହିଛି । ମାତ୍ର ଯଦି କାର୍ଯ୍ୟପାଳିକା ସେହି ସମ୍ପତ୍ତିକୁ ନିଜ ଅଧିକାରଭୁକ୍ତ କରେ ଅଥବା ବ୍ୟବସ୍ଥାପକ ସଭା ଆଇନ ପ୍ରଣୟନ କରି ତାହାକୁ ବ୍ୟକ୍ତିଠାରୁ ଉଚ୍ଛେଦ କରେ, ତେବେ ଏଥିପାଇଁ ବ୍ୟକ୍ତି ନ୍ୟାୟାଳୟର ଆଶ୍ରୟ ନେଇପାରିବ ନାହିଁ । ମାତ୍ର ଯଦି ତା'ର ମୌଳିକ ଅଧିକାର ଉଚ୍ଛେଦ ହୁଏ ସେ ନ୍ୟାୟାଳୟର ଆଶ୍ରୟ ନେଇ ତାହାକୁ ପୁନଃ ଫେରି ପାଇଥାଏ । ଏହି ଦୃଷ୍ଟିରୁ ମୌଳିକ ଅଧିକାରଗୁଡ଼ିକର ସାମ୍ବିଧାନିକ ବିଶେଷତ୍ୱ ରହିଛି ଓ ତାହା ଅଧିକ ପରିମାଣରେ ସୁରକ୍ଷିତ ।

ଭାରତୀୟ ନାଗରିକ ମୌଳିକ ଅଧିକାରଗୁଡ଼ିକ ବ୍ୟତୀତ ଅନ୍ୟ କେତେକ ଅଧିକାର ଲାଭ କରିଥାଏ । ସମ୍ବିଧାନର ୩୨ ଧାରା ଅନୁଯାୟୀ ଯଦି କୌଣସି ବ୍ୟକ୍ତି ମୌଳିକ ଅଧିକାରରୁ ବଞ୍ଚିତ ହୋଇଛି ବୋଲି ଅନୁଭବ କରେ, ତେବେ ସେ ଏଥିପ୍ରତି ଉଚ୍ଚତମ ନ୍ୟାୟାଳୟର ଦ୍ୱାରସ୍ଥ ହୋଇପାରିବ । ମାତ୍ର ଅନ୍ୟ ଅଧିକାରଗୁଡ଼ିକ ପାଇଁ ସେ ଉଚ୍ଚ ନ୍ୟାୟାଳୟ ବା ଅନ୍ୟ ନ୍ୟାୟାଳୟମାନଙ୍କର ସହାୟତା ନେଇପାରିବ । କେତେକ ମୌଳିକ ଅଧିକାର ରହିଛି, ଯାହା କେବଳ ନାଗରିକମାନଙ୍କୁ ପ୍ରଦାନ କରାଯାଇଥାଏ । ଆଉ କେତେକ ମୌଳିକ ଅଧିକାର ଉଭୟ ବିଦେଶୀ ଓ ନାଗରିକ ଉପଭୋଗ କରିବାକୁ ସମର୍ଥ ହୋଇଥାନ୍ତି । ୧୫ଧାରା ଅନୁଯାୟୀ ପ୍ରତ୍ୟେକ ନାଗରିକ ଧର୍ମ, ଜାତି, ଲିଙ୍ଗ ଏବଂ ଜନ୍ମସ୍ଥାନ ନିର୍ବିଶେଷରେ ନିରାପତ୍ତା ଲାଭ କରିପାରିବେ । ୧୬ ଧାରା ଅନୁସାରେ ସରକାରୀ ନିଯୁକ୍ତି କ୍ଷେତ୍ରରେ ସମସ୍ତେ ସମାନ ସୁଯୋଗ ଲାଭ କରିପାରିବେ । ୧୯ ଧାରା ଅନୁଯାୟୀ ସମସ୍ତେ ବାକ୍ ସ୍ୱାଧୀନତା, ସଙ୍ଗଠନ ଗଠନ, ଆନ୍ଦୋଳନ, ଇଚ୍ଛା ଅନୁରୂପ ବୃତ୍ତି, ଗୃହ ନିର୍ମାଣ ଆଦି କରିପାରିବେ । ୩୦ ଧାରାରେ ସଂଖ୍ୟାନ୍ୟୂନ ବ୍ୟକ୍ତିମାନେ ସାଂସ୍କୃତିକ ଏବଂ ଶିକ୍ଷାଗତ ଅଧିକାର ଲାଭ କରିପାରିବେ । କେତେକ ଅଧିକାର ରହିଛି, ଯାହା ବିଦେଶୀ ଓ ନାଗରିକ ନିର୍ବିଶେଷରେ ସମସ୍ତେ ଭାରତର ମାଟିରେ ତାହା ଲାଭ କରିପାରିବେ । ସେଗୁଡ଼ିକ ହେଉଛି–ଆଇନ୍ ଚକ୍ଷୁରେ ସମସ୍ତେ ସମାନ । ବ୍ୟକ୍ତିଗତ ସୁରକ୍ଷା, ଶୋଷଣ ବିରୋଧୀ ଅଧିକାର ଏବଂ ଧର୍ମଗତ ଅଧିକାର । ଭାରତୀୟ ସମ୍ବିଧାନର ଏହି ମହାନତା ଭାରତୀୟ ଜୀବନଦର୍ଶନର ପ୍ରତିଫଳନ କହିଲେ ଭୁଲ୍ ହେବ ନାହିଁ ।

ସମ୍ବିଧାନର ତୃତୀୟ ପରିଚ୍ଛେଦରେ ୬ପ୍ରକାର ମୌଳିକ ଅଧିକାର ସମ୍ପର୍କରେ ଆଲୋଚନା କରାଯାଇଛି । ପ୍ରଥମ ମୌଳିକ ଅଧିକାର ହେଉଛି ସମାନତାର ଅଧିକାର । ସମ୍ବିଧାନର ୧୪ରୁ ୧୮ ଧାରା ପର୍ଯ୍ୟନ୍ତ ଏହି ଅଧିକାର ସମ୍ପର୍କରେ ଆଲୋଚିତ ହୋଇଛି । ୧୪ ଧାରାରେ ଉଲ୍ଲେଖ ଅଛି– 'The State shall not deny to any person equality before law or the equal protection of the laws within the territory of India.' ଭାରତବର୍ଷର ସମସ୍ତ ନାଗରିକ ଆଇନ୍ ଦୃଷ୍ଟିରେ ସମାନ ଏବଂ ଆଇନ୍ ସମସ୍ତଙ୍କୁ ସୁରକ୍ଷିତ ରଖିବାର ପ୍ରତିଶ୍ରୁତି ଦେଇଛି । ଧାରା ୧୫ ଭାରତର ନିରପେକ୍ଷ ଦୃଷ୍ଟିଭଙ୍ଗୀକୁ ପ୍ରମାଣିତ କରିଛି । ଏହାଦ୍ୱାରା ଜାତୀୟ ଏକତା ଦୃଢ଼ୀଭୂତ ହୋଇଛି ବୋଲି ନିର୍ବିବାଦରେ କୁହାଯାଇପାରେ । କାରଣ ଏହି ଧାରାରେ ପକ୍ଷପାତ ନୀତିକୁ ସମ୍ପୂର୍ଣ୍ଣ ଉଚ୍ଛେଦ କରାଯାଇଛି । ଏଥିରେ ସ୍ପଷ୍ଟଭାବେ ଉଲ୍ଲେଖ ରହିଛି–ଜାତି, ଧର୍ମ, ଲିଙ୍ଗ, ଜନ୍ମସ୍ଥାନ ଆଦି ଭେଦରେ କୌଣସି ନାଗରିକଙ୍କୁ ରାଷ୍ଟ୍ର ତା'ର ଅଧିକାରରୁ ବଞ୍ଚିତ କରିପାରିବ ନାହିଁ । ୧୬ ଧାରା ଅନୁଯାୟୀ ପ୍ରତ୍ୟେକ ନାଗରିକ ନିଯୁକ୍ତି କ୍ଷେତ୍ରରେ ସମାନ ଅଧିକାର ଲାଭ କରିବେ । ଅବଶ୍ୟ ଏ କ୍ଷେତ୍ରରେ କେତେକ ଅନଗ୍ରସର ଜାତି ପାଇଁ ରାଷ୍ଟ୍ର କିଛି ସରକାରୀ ଚାକିରି ସଂରକ୍ଷଣ କରିପାରିବାର କ୍ଷମତା ଲାଭ କରିଛି । ୧୭ଧାରା ଅନୁଯାୟୀ କୌଣସି ନାଗରିକ ଅଛୁଆଁ ନୁହନ୍ତି । ଯଦି କୌଣସି ବ୍ୟକ୍ତି ଛୁଆଁଅଛୁଆଁ ଭେଦଭାବ ସୃଷ୍ଟି କରେ, ତେବେ ସେ ଆଇନ୍‌ଦ୍ୱାରା ଦଣ୍ଡିତ ହେବ ବୋଲି ସ୍ପଷ୍ଟ ଉଲ୍ଲେଖ ରହିଛି । ରାଷ୍ଟ୍ର କୌଣସି ବ୍ୟକ୍ତିଙ୍କୁ ସଂଜ୍ଞା ବା ସମ୍ମାନ ପ୍ରଦାନ କରି ଅନ୍ୟମାନଙ୍କଠାରୁ ତାକୁ ସ୍ୱତନ୍ତ୍ର ଭାବରେ ଗଣନା କରିପାରିବ ନାହିଁ ବୋଲି ୧୮ଧାରାରେ କୁହାଯାଇଛି । ଦ୍ୱିତୀୟ ମୌଳିକ ଅଧିକାର ହେଉଛି ବାକ୍ ସ୍ୱାଧୀନତାର ଅଧିକାର । ୧୯ରୁ ୨୨ ଧାରା ମଧ୍ୟରେ ଏହି ଅଧିକାର ସମ୍ବନ୍ଧରେ ଆଲୋଚନା ହୋଇଛି । ୧୯ ଧାରାରେ ସାତ ପ୍ରକାର ସ୍ୱାଧୀନତା ସମ୍ପର୍କରେ କୁହାଯାଇଥିଲା । ମାତ୍ର ୪୪ତମ ସଂଶୋଧନ ପରେ ଏହାର ସଂଖ୍ୟା ଛଅକୁ ହ୍ରାସ ପାଇଛି । ଏଥିରେ ସମ୍ପତ୍ତିଗତ ଅଧିକାର ବାଦ ପଡ଼ିଛି । ଏହି ଧାରା ଅନୁସାରେ ପ୍ରତ୍ୟେକ ବ୍ୟକ୍ତି ବାକ୍ ସ୍ୱାଧୀନତା ଏବଂ ସ୍ୱାଧୀନ୍‌ଭାବରେ ମତ ଅଭିବ୍ୟକ୍ତ କରିବାର ଅଧିକାର ପାଇଛନ୍ତି । ଭାରତର ଯେକୌଣସି ସ୍ଥାନରେ ବିନା ଅସ୍ତ୍ରଶସ୍ତ୍ରରେ ଏକତ୍ରିତ ହେବାର ଅଧିକାର ଭାରତୀୟ ନାଗରିକଙ୍କୁ ସମ୍ବିଧାନ ପ୍ରଦାନ କରିଛି । ନିଜର ବା ସମାଜର ଉନ୍ନତି ପାଇଁ ସଙ୍ଗଠନ ବା ସମିତି ଗଠନ କରିବାର ଅଧିକାର ସେମାନଙ୍କର ରହିଛି । ଭାରତ ମଧ୍ୟରେ ସ୍ୱଚ୍ଛନ୍ଦରେ ଯେ କୌଣସି ସ୍ଥାନରେ ବୁଲିବାର କୌଣସି କଟକଣା ନାହିଁ । ଭାରତର ଯେକୌଣସି ସ୍ଥାନରେ ବସବାସ କରିବାର ଅଧିକାର ନାଗରିକମାନେ ପାଇଛନ୍ତି । ନିଜର ବଞ୍ଚିବା ପାଇଁ ସେମାନେ ଯେ କୌଣସି ବୃତ୍ତି ଅବଲମ୍ବନ କରିବାର ଅଧିକାର ପାଇଛନ୍ତି । ଏହା ସତ୍ତ୍ୱେ ଦୁଇଟି ଅଧିକାର ଉପରେ ସମ୍ବିଧାନ କିଛି ପରିମାଣରେ କଟକଣା ଜାରିକରିଛି । ସମସ୍ତଙ୍କର ବାକ୍ ଅଧିକାର ରହିଥିଲେ ହେଁ, ଯେକୌଣସି କଥା କହିବାର ଅଧିକାର ନାହିଁ । ଯେଉଁ କଥା ଅନ୍ୟର ସମ୍ମାନ ହାନି କରେ ବା ରାଷ୍ଟ୍ରର ନିରାପତ୍ତା ପ୍ରତି ବିପଦ ସୃଷ୍ଟି କରେ, ସେପରି କଥାପ୍ରତି ଅଙ୍କୁଶ ମରାଯାଇଛି । ସେହିପରି ଅନୁଷ୍ଠାନ ବା ସଙ୍ଗଠନ ଗଢ଼ିବାର ଅଧିକାର ଥିଲେହେଁ, ଯେଉଁ ଅନୁଷ୍ଠାନ ଦ୍ୱାରା ରାଷ୍ଟ୍ର, ବ୍ୟକ୍ତି ବା ଦେଶର ସାର୍ବଭୌମତ୍ୱ ଓ ଅଖଣ୍ଡତା ପ୍ରତି

ବିପଦ ରହିଛି; ସେପରି ଅନୁଷ୍ଠାନକୁ ବାସନ୍ଦ କରିବାର ଅଧିକାର ରାଷ୍ଟ୍ରର ରହିଛି । ସେଥିପାଇଁ ୨୧ ଧାରାରେ ସୂଚନା ଦିଆଯାଇ କୁହାଯାଇଛି—"No person shall be deprived of his life or personal liberty except according to procedure established by law." ୨୨ ଧାରାରେ କୌଣସି ବ୍ୟକ୍ତିକୁ ମନଇଚ୍ଛା ଗିରଫ କରାଯାଇପାରିବ ନାହିଁ ବୋଲି କୁହାଯାଇଛି । ଗିରଫ ହୋଇଥିବା ବ୍ୟକ୍ତି ତା'ର ଗିରଫର କାରଣ ସମ୍ପର୍କରେ ଜାଣିବାର ଅଧିକାର ରହିଛି । ଏଥିପାଇଁ ଅଦାଲତରେ ସେ ନିଜ ପାଇଁ ଓକିଲ ମଧ୍ୟ ଦେଇ ଦୋଷମୁକ୍ତ ହୋଇପାରିବ । ଶୋଷଣ ବିରୋଧୀ ଅଧିକାର ହେଉଛି ତୃତୀୟ ମୌଳିକ ଅପରାଧ । ୨୩ ଏବଂ ୨୪ଧାରା ଏ ସମ୍ପର୍କରେ ବିସ୍ତୃତ ଆଲୋଚନା କରିଛି । ଶୋଷଣ ଏକ ଅମାନବିକ ପ୍ରକୃତି । ଶୋଷଣ ଦ୍ୱାରା ବ୍ୟକ୍ତିର ସ୍ୱାଧୀନତା କ୍ଷୁଣ୍ଣ ହୁଏ । ସ୍ୱାଧୀନତାର ପ୍ରକୃତ ସ୍ୱାଦ ସେ ଉପଭୋଗ କରିପାରେ ନାହିଁ । ତେଣୁ ଦାସତ୍ୱ ପ୍ରଥା, ବେଠି ପ୍ରଥା, ୧୪ ବର୍ଷରୁ କମ୍ ପିଲାମାନଙ୍କୁ ବିଭିନ୍ନ ଖଣି, କଳକାରଖାନା ବା ବିପଜ୍ଜନକ ସ୍ଥାନରେ ନିଯୁକ୍ତି ପ୍ରଥାକୁ ଏଥିରେ ବିରୋଧ କରାଯାଇଛି । ଧର୍ମଗତ ସ୍ୱାଧୀନତା ଅଧିକାର ହେଉଛି ୪ର୍ଥ ମୌଳିକ ଅଧିକାର । ଭାରତରେ ବହୁଧର୍ମ ରହିଛି । ବିଭିନ୍ନ ଧର୍ମର ସମନ୍ୱୟ ଘଟିଛି ଭାରତବର୍ଷରେ । ସ୍ୱାଧୀନତା ଆନ୍ଦୋଳନ ସମୟରେ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ୍ ତଥା ଅନ୍ୟାନ୍ୟ ଧର୍ମାବଲମ୍ବୀମାନେ ଏକତ୍ରିତ ହୋଇ ବ୍ରିଟିଶ ରାଜତ୍ୱ ବିରୋଧୀରେ ସଂଗ୍ରାମ କରିଥିଲେ । ତେଣୁ ଧର୍ମାବଲମ୍ବୀଙ୍କ ମଧ୍ୟରେ ସଦ୍ଭାବ ପ୍ରତିଷ୍ଠା କରିବା ଆମମାନଙ୍କର ପରମ କର୍ତ୍ତବ୍ୟ । ୨୫ରୁ ୨୮ ଧାରା ମଧ୍ୟରେ ଭାରତର ଧର୍ମନିରପେକ୍ଷ ନୀତିର ଆଲୋଚନା କରାଯାଇଛି । କୌଣସି ବ୍ୟକ୍ତିକୁ ଧର୍ମ ଗ୍ରହଣ କିମ୍ବା ପ୍ରଚାର ପ୍ରସାର ନିମିତ୍ତ ଚାନ୍ଦା ଦେବାକୁ ବାଧ କରାଯାଇପାରିବ ନାହିଁ କିମ୍ବା ଶିକ୍ଷାନୁଷ୍ଠାନରେ ନିର୍ଦ୍ଦିଷ୍ଟ ଧର୍ମପାଠ କରାଯିବ ନାହିଁ ବୋଲି ସୂଚିତ ହୋଇଛି । କାହା ଉପରେ ବାଧକରି କୌଣସି ଧର୍ମକୁ ମଧ୍ୟ ଲଦି ଦିଆଯାଇପାରିବ ନାହିଁ । ନିଜ ବିବେକ ଅନୁଯାୟୀ ଧର୍ମ ଗ୍ରହଣ ପ୍ରଚାର କରିବାର ଅଧିକାର ବ୍ୟକ୍ତିର ରହିଛି । ସମ୍ବିଧାନର ୩ୟ ପରିଚ୍ଛେଦର ୨୯ ଏବଂ ୩୦ ଧାରାରେ ସାଂସ୍କୃତିକ ଓ ଶିକ୍ଷାଗତ ଅଧିକାର ସମ୍ପର୍କରେ କୁହାଯାଇଛି । ଏହା ହେଉଛି ବ୍ୟକ୍ତିର ପଞ୍ଚମ ମୌଳିକ ଅଧିକାର । ଭାରତରେ ବିଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ଚଳଣି ଓ ଆଚାରର ବ୍ୟକ୍ତି ବାସ କରୁଥିବାରୁ ବହୁ ସଂସ୍କୃତିର ମିଳନ ଭାରତରେ ଦେଖାଯାଏ । ପ୍ରତ୍ୟେକ ଗୋଷ୍ଠୀ ବା ବ୍ୟକ୍ତିର ସଂସ୍କୃତି ଓ ଶିକ୍ଷାକୁ ସ୍ୱାଧୀନତା ପ୍ରଦାନ କରିଛି ଭାରତୀୟ ସମ୍ବିଧାନ । ୨୯ ଧାରା ଅନୁଯାୟୀ "Any section of the citizens residing in the territory of India or any part there of having a distinct language script or culture of its own shall have the right to conserve the same." ସଂଖ୍ୟାଲଘୁ ସମ୍ପ୍ରଦାୟ ନିଜର ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରିବାର ଅଧିକାର ଲାଭ କରିଛନ୍ତି । ତେଣୁ ୨୯ ଓ ୩୦ ଧାରାରେ ସମସ୍ତ ଜାତି, ଧର୍ମ ଓ ବର୍ଣ୍ଣର ସାମୂହିକ ବିକାଶ ନିମିତ୍ତ ଧ୍ୟାନ ଦିଆଯାଇଥିବାରୁ ଏହା ଭାରତର ନିରପେକ୍ଷ ନୀତିକୁ ପ୍ରମାଣିତ କରିଛି । ସାମ୍ବିଧାନିକ ପ୍ରତିକାରଗତ ଅଧିକାର ବ୍ୟକ୍ତିର ୬ଷ୍ଠ ମୌଳିକ ଅଧିକାର ଓ ଏହା ୩୨ ଧାରା ଅନ୍ତର୍ଭୁକ୍ତ ଭାରତୀୟ ନାଗରିକଙ୍କ କୌଣସି ଅଧିକାରରେ ହସ୍ତକ୍ଷେପ କରାଗଲେ, ଏଥିପାଇଁ ସେ ସୁପ୍ରିମ କୋର୍ଟ ବା ଅନ୍ୟ ନ୍ୟାୟାଳୟର ଆଶ୍ରୟ

ନେଇପାରିବେ । ହାଇକୋର୍ଟ ଏବଂ ସୁପ୍ରିମକୋର୍ଟ ନାଗରିକମାନଙ୍କର ସାମ୍ବିଧାନିକ ଅଧିକାର ରକ୍ଷା କରିବାକୁ ପ୍ରଚୁର କ୍ଷମତା ଲାଭ କରିଛନ୍ତି ।

୩୫୨ ଧାରା ଅନୁଯାୟୀ ଯେତେବେଳେ ଜାତୀୟ ଜରୁରୀ ପରିସ୍ଥିତି ଘୋଷିତ ହୋଇଥାଏ, ସେତେବେଳେ ୧୯ ଧାରା ସମ୍ପୂର୍ଣ୍ଣ ପ୍ରତ୍ୟାହାର କରାଯାଇଥାଏ । ସେହି ସମୟରେ ନାଗରିକଙ୍କ ମୌଳିକ ଅଧିକାର ସଙ୍କୁଚିତ ହୋଇଥାଏ । ରାଷ୍ଟ୍ରପତି ଅନ୍ୟ ଏକ ଅଧାଦେଶ ଦ୍ୱାରା ମଧ ନାଗରିକର ସାମ୍ବିଧାନିକ ଅଧିକାରକୁ ସଙ୍କୁଚିତ ବା ପ୍ରତ୍ୟାହାର କରିପାରନ୍ତି । ଏହି ସମୟରେ କୌଣସି ନ୍ୟାୟାଳୟ ସେମାନଙ୍କ ଅଧିକାର ସମ୍ପର୍କରେ ଜନସାଧାରଣଙ୍କୁ ସହାୟତା କରିପାରିବ ନାହିଁ । ଜରୁରୀକାଳୀନ ପରିସ୍ଥିତିର ପ୍ରତ୍ୟାହାର ପରେ ନାଗରିକମାନେ ପୁଣି ସେମାନଙ୍କର ଅଧିକାର ଫେରି ପାଇଥାନ୍ତି ।

କେତେକ ସମାଲୋଚନା କରି କହିଥାନ୍ତି, ଭାରତୀୟ ସମ୍ବିଧାନରେ ନାଗରିକଙ୍କ ମୌଳିକ ଅଧିକାର ସମ୍ପର୍କରେ ଯାହା କୁହାଯାଇଛି, ତାହା ସ୍ପଷ୍ଟ ଓ ସ୍ୱଚ୍ଛ ନୁହେଁ । ଗୋଟିଏ ଗୋଟିଏ ଧାରାର ବିଭିନ୍ନ ଅର୍ଥ ମଧ କରାଯାଇପାରେ । ଏପରିକି ଗୋଟିଏ ଗୋଟିଏ ଧାରାର ବହୁ ସୀମା ଓ ପ୍ରତିବନ୍ଧକ ରହିଛି । ଏତଦ୍‌ବ୍ୟତୀତ କାର୍ଯ୍ୟ କରିବାର ଅଧିକାର, ବିଶ୍ରାମ ବା ଶିକ୍ଷାର ଅଧିକାର ସମ୍ବନ୍ଧରେ କୌଣସି ଆଲୋଚନା ବା ସୂଚନା ରହି ନାହିଁ । ଏହା ସତ୍ତ୍ୱେ ମୌଳିକ ଅଧିକାରଗୁଡ଼ିକ ନିରପେକ୍ଷ ହୋଇଥିବାରୁ ସମସ୍ତଙ୍କ ଦ୍ୱାରା ସମ୍ମାନ ଲାଭ କରିଛି । ଭାରତ ଏକ ଜନମଙ୍ଗଳ ରାଷ୍ଟ୍ର ହୋଇଥିବାରୁ ବ୍ୟକ୍ତିବିଶେଷଙ୍କୁ ଅବାଧ ସ୍ୱାଧୀନତା ପ୍ରଦାନ କରିବାର ଅର୍ଥ ସ୍ୱେଚ୍ଛାଚାରକୁ ପ୍ରଶ୍ରୟ ଦେବା । ତେଣୁ କେତେକ କ୍ଷେତ୍ରରେ କିଛି ନିୟନ୍ତ୍ରଣ ରହିବା ଆବଶ୍ୟକ । ବ୍ୟକ୍ତିର ନୈତିକ ଓ ଆଧ୍ୟାତ୍ମିକ ବିକାଶ କ୍ଷେତ୍ରରେ ମୌଳିକ ଅଧିକାରର ଭୂମିକା ଗୁରୁତ୍ୱପୂର୍ଣ୍ଣ ହେଲେହେଁ ଦେଶର ସାର୍ବଭୌମତ୍ୱ ଓ ଅଖଣ୍ଡତା ନିକଟରେ ଏହା ବଡ଼ ନୁହେଁ । ଦେଶର ସ୍ୱାର୍ଥ ପାଇଁ ଏହି ଅଧିକାରକୁ ସଙ୍କୁଚିତ କରିବାରେ କୌଣସି ଅଯଥାର୍ଥତା ନାହିଁ । ତେଣୁ ଏ କ୍ଷେତ୍ରରେ ଯେଉଁମାନେ ଭାରତର ସମ୍ବିଧାନକୁ ସମାଲୋଚନା କରନ୍ତି, ସେମାନେ ସମ୍ପୂର୍ଣ୍ଣ ଭାବରେ ଏକ ଦେଶଦର୍ଶୀ ।

ଭାରତୀୟ ସମ୍ବିଧାନରେ ପ୍ରଦତ୍ତ ମୌଳିକ ଅଧିକାରଗୁଡ଼ିକ ଭାରତୀୟ ସଂସ୍କୃତି, ଆଦର୍ଶ ଓ ବିଚାରଧାରାର ଯଥାର୍ଥ ପରିପ୍ରକାଶ । ଏହା ମାନବିକ ମୂଲ୍ୟବୋଧକୁ ସମ୍ମାନ ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ନାଗରିକମାନଙ୍କର ସମସ୍ତ ପ୍ରକାର ସୁରକ୍ଷା ନିମିତ୍ତ ଉଦ୍ଦିଷ୍ଟ । ତେଣୁ ଭାରତୀୟ ନାଗରିକ ଏହି ମୌଳିକ ଅଧିକାରର ଉପଯୁକ୍ତ ମର୍ଯ୍ୟାଦା ଦେଇପାରିଲେ ଏବଂ ସମ୍ବିଧାନ ପ୍ରଦତ୍ତ ନିର୍ଦ୍ଦେଶ ଅନୁଯାୟୀ କାର୍ଯ୍ୟ କରିପାରିଲେ, ଏହା ନିଶ୍ଚିତ ଭାବରେ ଭାରତର ଓ ବ୍ୟକ୍ତିର ବିକାଶରେ ସହାୟକ ହୋଇପାରିବ । ଭାରତୀୟ ସମ୍ବିଧାନର ସେହି ମହତ ଆଦର୍ଶ ଓ ମହାନ୍ ପରମ୍ପରାକୁ ରକ୍ଷା କରିବା ପ୍ରତ୍ୟେକ ନାଗରିକର ପରମ କର୍ତ୍ତବ୍ୟ ।



# ସ୍ୱାଧୀନତା ସଂଗ୍ରାମକୁ ଓଡ଼ିଶାର ଅବଦାନ

**(ଉପକ୍ରମ, ଭାରତରେ ସ୍ୱାଧୀନତା ସଂଗ୍ରାମ ଓ ଓଡ଼ିଶା, ଉନବିଂଶ ଶତକରେ ଓଡ଼ିଶାର ଭୂମିକା, ଭାରତଛାଡ଼ ଆନ୍ଦୋଳନ ଓ ଓଡ଼ିଶା, ମୁକ୍ତି ସଂଗ୍ରାମରେ ଓଡ଼ିଶାର ନାରୀ, ଉପସଂହାର)**

୧୧୯୨ ଖ୍ରୀଷ୍ଟାବ୍ଦର ଦ୍ୱିତୀୟ ତିରୋରୀ ଯୁଦ୍ଧରେ ଭାରତର ଶେଷ ହିନ୍ଦୁ ସ୍ୱାଧୀନ ନରପତି ପୃଥ୍ୱୀରାଜ ଚୌହାନ ନିଧନ ହେବା ପରେ ଭାରତ ପରାଧୀନତାର ଶୃଙ୍ଖଳରେ ଆବଦ୍ଧ ହେଲା । ଏହାପରେ ଏ ମାଟିରେ ପାଦ ଦେଇଛନ୍ତି ଶକ, ହୁଣ, କୁଶାଣ, ମୁସଲମାନ, ମୋଗଲ, ପର୍ତ୍ତୁଗୀଜ, ଓଲନ୍ଦାଜ, ଦିନାମାର, ଫରାସୀ ଓ ଇଂରେଜ ଆଦି କେତେ ଜାତି । ଯୁଗେ ଯୁଗେ ଭାରତର ଐଶ୍ୱର୍ଯ୍ୟ, ପ୍ରାଚୁର୍ଯ୍ୟ ଓ ସହନଶୀଳତା ବହୁ ବିଦେଶୀଙ୍କୁ ଏହି ମାଟିକୁ ଆକର୍ଷିତ କରିଛି । କେତେ ଜାତି ଭାରତରେ ଭାରତୀୟ ହୋଇ ଜୀବନଯାପନ କରିଛନ୍ତି ତ ଆଉ କେତେ ନିଜର ସ୍ୱାର୍ଥ ପରିପୂରଣ ପରେ ଛାଡ଼ି ଚାଲିଯାଇଛନ୍ତି ନିଜ ଦେଶକୁ । ମାତ୍ର ଇଂରେଜମାନେ ଭାରତ ଅଧିକାର କରିବା ପରେ ସେମାନଙ୍କର ସାମ୍ରାଜ୍ୟବାଦୀ ନୀତି ଭାରତୀୟମାନଙ୍କୁ ଅସନ୍ତୁଷ୍ଟ କରିଥିଲା । ଗୋଟିଏ ବ୍ୟବସାୟୀ ଜାତି ଭାବରେ ସେମାନେ ଭାରତକୁ ଆସିଥିଲେ । ଉଦ୍ଦେଶ୍ୟ ଥିଲା ଭାରତର ଧନରତ୍ନ ଇଂଲଣ୍ଡକୁ ବୋହିନେବା । ଏହି ଉଦ୍ଦେଶ୍ୟ ସାଧନ ଉଦ୍ଦେଶ୍ୟରେ ସେମାନେ ତାଙ୍କର ସାମ୍ରାଜ୍ୟବାଦୀ ନୀତି ଭାରତୀୟଙ୍କ ଉପରେ ଲଦି ଦେବାକୁ ଚାହୁଁଥିଲେ । ସେମାନଙ୍କର ଏହି ନୀତି ଭାରତୀୟମାନଙ୍କୁ ଏକତ୍ରିତ କରି ଇଂରେଜ ବିରୋଧରେ ସଂଗ୍ରାମ କରିବାକୁ ପ୍ରେରଣା ଦେଇଥିଲା । ଭାରତର ଅନ୍ୟାନ୍ୟ ପ୍ରଦେଶ ସହିତ ଓଡ଼ିଶା ମଧ୍ୟ ମୁକ୍ତି ସଂଗ୍ରାମରେ ଯୋଗଦାନ କରି ଭାରତର ଜାତୀୟ ସ୍ରୋତରେ ନିଜକୁ ମିଶାଇଦେଲା । ଏକ ଭାରତୀୟ ପରିଚୟ ନେଇ ଇଂରେଜ ଶାସନ ବିରୋଧରେ ଆରମ୍ଭ ହେଲା ମୁକ୍ତି ସଂଗ୍ରାମ ।

ଭାରତର ପ୍ରଥମ ମୁକ୍ତି ସଂଗ୍ରାମ ଓଡ଼ିଶାରେ ଆରମ୍ଭ ହୋଇଥିଲା । ଖୋର୍ଦ୍ଧାର ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ରଙ୍କୁ ତାଙ୍କ ପ୍ରକୃତ ପ୍ରାପ୍ୟରୁ ବଞ୍ଚିତ କରିବାରୁ ଖୋର୍ଦ୍ଧା ପାଇକଙ୍କ ଭାବପ୍ରବଣ ମନକୁ ଏହା ବିଶେଷ ବ୍ୟଥିତ କରିଥିଲା । ତେଣୁ ପାଇକମାନେ ସମବେତ ହୋଇ ଇଂରେଜ ଶାସନର ତୀବ୍ର ବିରୋଧ କଲେ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ । ମାତ୍ର ଇଂରେଜମାନଙ୍କ କୂଟ ଚକ୍ରାନ୍ତର ଶିକାର ହୋଇ ପାଇକମାନେ ପରାଜିତ ହେଲେ ଏବଂ ବକ୍ସି ଏଥିପାଇଁ ଦଣ୍ଡିତ ମଧ୍ୟ ହେଲେ । ମୁକୁନ୍ଦଦେବ ଦ୍ୱିତୀୟ ମୁକ୍ତି ନିମିତ୍ତ ସ୍ୱପ୍ନ ଦେଖିବାରୁ ତାଙ୍କୁ କାରାଗାରରେ ନିକ୍ଷେପ କରାଗଲା ଓ କ୍ଷୁଧା ଏବଂ ପୀଡ଼ନରେ ସେ ସେଠାରେ ମୃତ୍ୟୁବରଣ କଲେ । ଇଂରେଜମାନଙ୍କ ଏହି କଠୋର ଶାସନରେ ସମସ୍ତେ ମ୍ରିୟମାଣ ହୋଇପଡ଼ିଥିବା ସମୟରେ ୧୮୮୫ ମସିହାରେ ଗଠିତ

ହେଲା ଭାରତୀୟ ଜାତୀୟ କଂଗ୍ରେସ । ଏହାର ପ୍ରତିଷ୍ଠାତା ଥିଲେ ଜଣେ ଉଦାର ହୃଦୟସମ୍ପନ୍ନ ଇଂରେଜ । ତାଙ୍କର ନାମ ଥିଲା ଏ. ଓ. ହ୍ୟୁମ୍ । ଏହାପରେ ଏହି ଜାତୀୟ କଂଗ୍ରେସରେ ଯେଉଁ ଭାରତୀୟମାନେ ଯୋଗ ଦେଇଥିଲେ ଏହାରି ମଧ୍ୟରେ ସେମାନେ ଭାରତ ସ୍ୱାଧୀନତାର ସ୍ୱପ୍ନ ଦେଖିଲେ । ଜାତୀୟ କଂଗ୍ରେସର ଆହ୍ୱାନରେ ଓଡ଼ିଶା ମଧ୍ୟ ଏହି ସଂଗ୍ରାମରେ ଯୋଗଦାନ କରି ଇଂରେଜ ଶାସନ ବିରୋଧରେ ଲଢ଼ିବାକୁ ବଦ୍ଧପରିକର ହୋଇଥିଲା । ଗାନ୍ଧିଜୀଙ୍କ ଆଗମନ ସ୍ୱାଧୀନତା ସଂଗ୍ରାମକୁ ତୀବ୍ରତର କଲା ଏବଂ ଶେଷରେ ଇଂରେଜମାନେ ଏ ଦେଶରୁ ବିତାଡ଼ିତ ହୋଇଥିଲେ ।

୧୮୦୩ ମସିହାରେ ଓଡ଼ିଶା ଇଂରେଜ ଶାସନାଧୀନ ହୋଇଥିଲା । ୧୮୧୭ ମସିହାରେ ବିପ୍ଲବ ପରେ ଇଂରେଜମାନେ ଓଡ଼ିଶା ଅଧିବାସୀଙ୍କୁ ସନ୍ଦେହ ଚକ୍ଷୁରେ ଦେଖିବାକୁ ଲାଗିଲେ । ସାମାନ୍ୟମାତ୍ର ବିଶୃଙ୍ଖଳାର ସୂଚନା ପାଇବା ମାତ୍ରେ ଇଂରେଜମାନେ ଅତି ନିଷ୍ଠୁର ଭାବରେ ବିଦ୍ରୋହ ଦମନ କରୁଥିଲେ । ଦ୍ୱିତୀୟ ମୁକୁନ୍ଦଦେବଙ୍କ ଶୋଚନୀୟ ମୃତ୍ୟୁ ଇଂରେଜମାନଙ୍କ ଅମାନବିକତାର ପ୍ରକୃଷ୍ଟ ଉଦାହରଣ । ଜାତୀୟ କଂଗ୍ରେସ ଗଠିତ ହେବା ପରେ ଓଡ଼ିଶାରୁ କୁଳବୃଦ୍ଧ ମଧୁସୂଦନ ଦାସ ପ୍ରଥମେ ଏହାର ସଦସ୍ୟ ହୋଇଥିଲେ ୧୮୮୬ ମସିହାରେ । ଏକ ଜାତୀୟ ଭାବରେ ଉଦ୍‌ବୁଦ୍ଧ ହୋଇ ଓଡ଼ିଆମାନେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେବାକୁ ଲାଗିଲେ । କୁଳବୃଦ୍ଧ ମଧୁସୂଦନଙ୍କ ପ୍ରେରଣାରେ ବହୁ ଓଡ଼ିଆ ଏହି ସଂଗ୍ରାମରେ ପ୍ରତ୍ୟକ୍ଷ ଭାବରେ ଅଂଶ ଗ୍ରହଣ କରିଥିଲେ । ମଧୁସୂଦନ ଦାସଙ୍କ ବ୍ୟତୀତ ଏହି ସମୟରେ ବିଚିତ୍ରାନନ୍ଦ ଦାସ, ଫକୀରମୋହନ ସେନାପତି, ଗୌରୀଶଙ୍କର ରାୟ ଆଦି କେତେକ କ୍ଷେତ୍ରରେ ନେତୃତ୍ୱ ନେଇ ଓଡ଼ିଶାବାସୀଙ୍କ ହୃଦୟରେ ଜାତୀୟବାଦୀ ଚିନ୍ତାଧାରାର ଉଦ୍ରେକ କରିଥିଲେ । ବିଂଶ ଶତାବ୍ଦୀରେ ଏହି ଚେତନା ଅଧିକ ପ୍ରଭାବଶାଳୀ ହେବାକୁ ଲାଗିଲା ଓ ସମଗ୍ର ଭାରତରେ ଏହା କ୍ରାନ୍ତିକାରୀ ପରିବର୍ତ୍ତନ ଆନୟନ ଦିଗରେ ସମର୍ଥ ହେଲା ।

୧.୯୧୫ ମସିହାରେ ମହାତ୍ମାଗାନ୍ଧି ଦକ୍ଷିଣ ଆଫ୍ରିକାରୁ ଫେରିବା ପରେ ଭାରତର ରାଜନୈତିକ ଆକାଶରେ ବହୁ ପରିବର୍ତ୍ତନ ସାଧିତ ହେବାକୁ ଲାଗିଲା । ଚରମପନ୍ଥୀମାନେ ରକ୍ତାକ୍ତ ସଂଗ୍ରାମ ମାଧ୍ୟମରେ ସ୍ୱାଧୀନତାର ସ୍ୱପ୍ନ ଦେଖୁଥିଲେ । ମାତ୍ର ମହାତ୍ମାଗାନ୍ଧି ଯେଉଁ ଉପାୟରେ ଦକ୍ଷିଣ ଆଫ୍ରିକାରେ କଳାଲୋକମାନଙ୍କୁ ସେମାନଙ୍କର ଅଧିକାର ଫେରାଇ ଦେବାକୁ ସମର୍ଥ ହୋଇଥିଲେ, ସେହି ଅହିଂସା ଓ ଅସହଯୋଗ ମାଧ୍ୟମରେ ସେ ଦେଖୁଥିଲେ ଭାରତ ସ୍ୱାଧୀନତାର ସ୍ୱପ୍ନ । ଚରମପନ୍ଥୀଗଣ ନେତୃତ୍ୱରୁ ଓହରିଯିବା ପରେ ଗାନ୍ଧିଜୀ ୧୯୨୦ ମସିହାଠାରୁ ଏ ଜାତିକୁ ନେତୃତ୍ୱ ଦେବାକୁ ଆରମ୍ଭ କଲେ । ତାଙ୍କ ନେତୃତ୍ୱରେ ସମଗ୍ର ଭାରତବର୍ଷରେ ନୂତନ ଆଲୋଡ଼ନ ଦେଖାଦେଲା । ଓଡ଼ିଶା ମଧ୍ୟ ଏଥିରୁ ନିଜକୁ ଦୂରରେ ରଖିପାରି ନ ଥିଲା । ଗୋପବନ୍ଧୁ ଦାସ ଗାନ୍ଧିଜୀଙ୍କ ଦ୍ୱାରା ପ୍ରଭାବିତ ହୋଇ ଓଡ଼ିଶାରେ ସ୍ୱାଧୀନତାର ମନ୍ତ୍ର ଜନସାଧାରଣଙ୍କ କାନରେ ଫୁଙ୍କିବାକୁ ଲାଗିଲେ । ପଣ୍ଡିତ ନୀଳକଣ୍ଠ ଦାଶ, ଗୋଦାବରୀଶ ମିଶ୍ର, କୃପାସିନ୍ଧୁ

ମିଶ୍ର, ଆଚାର୍ଯ୍ୟ ହରିହର ଆଦି ଏହି ସଂଗ୍ରାମରେ ଗୋପବନ୍ଧୁଙ୍କୁ ପ୍ରତ୍ୟକ୍ଷ ଭାବରେ ସାହାଯ୍ୟ କରୁଥିଲେ । ମହାତ୍ମାଗାନ୍ଧିଙ୍କ ଓଡ଼ିଶା ଆଗମନ ପରେ ଏହି ଆନ୍ଦୋଳନ ଓଡ଼ିଶାରେ ତୀବ୍ର ରୂପ ଧାରଣ କଲା । ସ୍କୁଲ କଲେଜର ଛାତ୍ରମାନେ ମଧ୍ୟ ପାଠପଢ଼ା ଛାଡ଼ି ଏଥିରେ ଯୋଗଦେଲେ । ନବକୃଷ୍ଣ ଚୌଧୁରୀ, ବିଶ୍ୱନାଥ ଦାସ, ମାଳତୀ ଚୌଧୁରୀ, ହରେକୃଷ୍ଣ ମହତାବ, ଗୋପବନ୍ଧୁ ଚୌଧୁରୀ, ବୀରକିଶୋର ଦାସ, ରାଜକୃଷ୍ଣ ବୋଷ, ବାଞ୍ଛାନିଧି ମହାନ୍ତି, ସୁରେନ୍ଦ୍ରନାଥ ଦ୍ୱିବେଦୀ, କୃଷ୍ଣପ୍ରସାଦ ମହାନ୍ତି, କୁନ୍ତଳାକୁମାରୀ ସାବତ, ରେବାରାୟ, ଅପର୍ଣ୍ଣା ଦେବୀ, ସରଳାଦେବୀ ଆଦି ମହାନ୍ ନେତା ଓ ନେତ୍ରୀ ଜାତୀୟ ଆନ୍ଦୋଳନରେ ଭାଗ ନେଇ ଭାରତକୁ ସ୍ୱାଧୀନତା ଦେବାପାଇଁ ଆପ୍ରାଣ ଉଦ୍ୟମ କରିଥିଲେ । ସେହିମାନଙ୍କ ପ୍ରତ୍ୟକ୍ଷ ସହଯୋଗ ତଥା ଉଦ୍ୟମ ଯୋଗୁଁ ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମ ଅଧିକ ସକ୍ରିୟ ହୋଇପଡ଼ିଥିଲା । ୧୯୩୦ ମସିହାର ଲବଣ ସତ୍ୟାଗ୍ରହ ଆନ୍ଦୋଳନରେ ଓଡ଼ିଶାର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ । ବାଲେଶ୍ୱରର ଇଞ୍ଚୁଡ଼ିରେ ଯେଉଁ ଲବଣ ସତ୍ୟାଗ୍ରହ ଆରମ୍ଭ ହୋଇଥିଲା, ତା'ର ସୁଦୂରପ୍ରସାରୀ ଫଳ ପରିଲକ୍ଷିତ ହୋଇଥିଲା ସ୍ୱାଧୀନତା ସଂଗ୍ରାମରେ । ୧୯୩୦ ମସିହା ଏପ୍ରିଲ ୧୩ ତାରିଖରେ ଇଞ୍ଚୁଡ଼ି ନିକଟରେ ସତ୍ୟାଗ୍ରହୀ ଓ ଗୋରା ପୁଲିସ ଫୌଜଙ୍କ ମଧ୍ୟରେ ଯେଉଁ ସଂଘର୍ଷ ହୋଇଥିଲା, ସେଥିରେ ଅନେକ ସତ୍ୟାଗ୍ରହୀ ଆହତ ଓ ନିହତ ହୋଇଥିଲେ । ଏହି ସତ୍ୟାଗ୍ରହ ପରେ ଇଞ୍ଚୁଡ଼ି ହୋଇଥିଲା ଦ୍ୱିତୀୟ ଦାଣ୍ଡି । ଏଥିରେ ନେତୃତ୍ୱ ନେଉଥିବା ସୁରେନ୍ଦ୍ର ଦାସଙ୍କୁ ମହାତ୍ମାଗାନ୍ଧି ଦ୍ୱିତୀୟ ସର୍ଦ୍ଦାର ଉପାଧି ଦେଇଥିଲେ । ଦୀର୍ଘ ଦୁଇବର୍ଷ ଧରି ଏହି ସତ୍ୟାଗ୍ରହ ଚାଲିଥିଲା । ଏଥିରେ ପ୍ରାୟ ୬୦ ହଜାର ସତ୍ୟାଗ୍ରହୀ ଯୋଗଦେଇଥିଲେ । ବାସ୍ତବରେ ଲବଣ ସତ୍ୟାଗ୍ରହ ଓଡ଼ିଶାରେ ସବୁଠାରୁ ଅଧିକ ଜନଜାଗରଣ ସୃଷ୍ଟି କରିବାକୁ ସମର୍ଥ ହୋଇଥିଲା । ଓଡ଼ିଶାବାସୀଙ୍କ ଏହି ଅଭୂତପୂର୍ବ ଆନ୍ଦୋଳନ ଲକ୍ଷ୍ୟକରି ମହାତ୍ମାଗାନ୍ଧି ମଧ୍ୟ ଅଭିଭୂତ ହୋଇପଡ଼ିଥିଲେ ।

୧୯୪୨ ମସିହାରେ ଇଂରେଜମାନଙ୍କୁ ଭାରତ ଛାଡ଼ିବା ନିମିତ୍ତ ଆହ୍ୱାନ ଦିଆଯାଇଥିଲା । ଭାରତ ଇତିହାସରେ ଏହା 'ଭାରତଛାଡ଼ ଆନ୍ଦୋଳନ' ବା 'ଅଗଷ୍ଟ ବିପ୍ଳବ' ଭାବରେ ଖ୍ୟାତ । ୧୯୩୯ ମସିହାରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଥିଲା । ସେହି ଯୁଦ୍ଧରେ ଇଂରେଜମାନେ କେନ୍ଦ୍ରୀୟ ସଂସଦ ବା କଂଗ୍ରେସର ପରାମର୍ଶ ନ କରି ଭାରତ ଏହି ଯୁଦ୍ଧରେ ସାମିଲ ହେଲା ବୋଲି ଘୋଷଣା କରିଥିଲେ । ଏପରିକି ୧୯୩୫ ମସିହାର ଭାରତ ଶାସନ ଆଇନ୍‌କୁ ମଧ୍ୟ ସଂଶୋଧନ କରିଦେଇଥିଲେ । ଏହି ଆଇନ୍ ଦ୍ୱାରା ଭାରତୀୟଙ୍କ ବ୍ୟକ୍ତିଗତ ସ୍ୱାଧୀନତା କ୍ଷୁଣ୍ଣ କରିଦିଆଗଲା । ଇଂରେଜମାନଙ୍କ ଏହି ନୀତିକୁ କଂଗ୍ରେସ ତୀବ୍ର ବିରୋଧ କଲା । ୱାର୍ଦ୍ଧାଠାରେ ବସିଥିବା କଂଗ୍ରେସ କମିଟି (ସେପ୍ଟେମ୍ବର ୧୦-୧୪) ଇଂରେଜ ସରକାରଙ୍କୁ ଜଣାଇଥିଲା ଯେ କେବଳ ଏକ ସ୍ୱାଧୀନ ଭାରତ ଫାଶିବାଦ ବିରୋଧରେ ଯୁଦ୍ଧ କରିପାରିବ, ତେଣୁ ପ୍ରଥମେ ଭାରତକୁ ପୂର୍ଣ୍ଣ ସ୍ୱାଧୀନତା ପ୍ରଦାନ କରାଯାଉ । ମାତ୍ର ଇଂରେଜ ସରକାର ସେଥିରେ ରାଜି ନ ହେବାରୁ କଂଗ୍ରେସ ସାତଟି ରାଜ୍ୟରେ ଥିବା କଂଗ୍ରେସ ମନ୍ତ୍ରିମଣ୍ଡଳକୁ ଇସ୍ତଫା ଦେବାକୁ କହିଥିଲେ । ୧୯୪୦ ମସିହାରେ ଆଇନ ଅମାନ୍ୟ ଆନ୍ଦୋଳନ ନିମିତ୍ତ ନିଷ୍ପତ୍ତି ନିଆଯାଇଥିଲା ।

କଂଗ୍ରେସ କାର୍ଯ୍ୟକାରୀ କମିଟିର ଏକ ବୈଠକ ୱାର୍ଦ୍ଧାଠାରେ ୧୯୪୨ ମସିହା ଜୁଲାଇ ୧୪ ତାରିଖରେ ବସିଥିଲା ଏବଂ ଏଥିରେ ଭାରତଛାଡ଼ ଆଗତ ପ୍ରସ୍ତାବ ହୋଇଥିଲା । ଅଖିଳ ଭାରତ କଂଗ୍ରେସ କମିଟିର ଅନ୍ୟ ଏକ ଅଧିବେଶନ ବମ୍ବେ (ମୁମ୍ବାଇ)ରେ ଅଗଷ୍ଟ ୮ ତାରିଖରେ ବସି ଏହି ଭାରତଛାଡ଼ ପ୍ରସ୍ତାବ ଅନୁମୋଦିତ ହୋଇଥିଲା । ଏହାର ପରଦିନ ଅଗଷ୍ଟ ୯ ତାରିଖରେ ଇଂରେଜ ସରକାର ମହାତ୍ମାଗାନ୍ଧି, ପଣ୍ଡିତ ନେହେରୁ, ଆଚାର୍ଯ୍ୟ କୃପାଳିନୀ, ମୌଲାନା ଆଦିଙ୍କୁ ବନ୍ଦୀକଲେ । ନେତାମାନଙ୍କ ଗିରଫଦାରୀ ଖବର ପ୍ରଚାର ହେବାମାତ୍ରେ ଭାରତରେ ଗଣଆନ୍ଦୋଳନ ଆରମ୍ଭ ହୋଇଗଲା । ଏହାର ପ୍ରଭାବ ଓଡ଼ିଶାରେ ମଧ୍ୟ ବିଶେଷଭାବରେ ଅନୁଭୂତ ହେଲା । ୧୯୩୯ ମସିହା କଂଗ୍ରେସର ନିଷ୍ପତ୍ତି ଅନୁଯାୟୀ ତତ୍କାଳୀନ ଓଡ଼ିଶାର ମନ୍ତ୍ରିମଣ୍ଡଳ ଇସ୍ତଫା ଦେଇଥିଲେ । ସତ୍ୟାଗ୍ରହ ସମ୍ପର୍କରେ ଶିକ୍ଷାଦେବାକୁ କଟକର ବରୀଠାରେ ଏକ ପ୍ରଶିକ୍ଷଣ କେନ୍ଦ୍ର ଖୋଲା ଯାଇଥିଲା । ଏହି ସମୟରେ ପ୍ରଚାରିତ ହେଲା ଯେ ଜାପାନୀ ସୈନ୍ୟ ଓଡ଼ିଶା ଉପକୂଳରେ ଅବତରଣ କରି କଲିକତା ମାନ୍ଦ୍ରାଜ ଆଡ଼କୁ ଅଗ୍ରସର ହେବେ । ତେଣୁ ଉତ୍କଳ ପ୍ରଦେଶ କମିଟି ୧୯୪୨ ଜାନୁୟାରୀ ୧୦ ଓ ୧୧ ତାରିଖରେ ଆଲୋଚନା କରି ଆଭ୍ୟନ୍ତରୀଣ ଶାନ୍ତିରକ୍ଷା ନିମିତ୍ତ କେତେକ ନିଷ୍ପତ୍ତି ଗ୍ରହଣ କରିଥିଲେ । ମୀରାବେନ୍ ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ ଓଡ଼ିଶା ଆସି କଂଗ୍ରେସର ବିଭିନ୍ନ କାର୍ଯ୍ୟକ୍ରମ ସମ୍ପର୍କରେ ସୂଚନା ପ୍ରଦାନ କରି ଜନସଚେତନତା ସୃଷ୍ଟି କରିଥିଲେ । ୱାର୍ଦ୍ଧା ପ୍ରସ୍ତାବକୁ କାର୍ଯ୍ୟକାରୀ କରିବାକୁ ଉତ୍କଳ କଂଗ୍ରେସ କମିଟି ନିଷ୍ପତ୍ତି ନେଇଥିଲା । ସେହି ସମୟରେ କଂଗ୍ରେସର ସାଙ୍ଗଠନିକ ସମ୍ପାଦକ ରାମନନ୍ଦନ ମିଶ୍ର କଟକ ଆସି କଂଗ୍ରେସ କର୍ମୀମାନଙ୍କୁ ସଙ୍ଗଠିତ କରିଥିଲେ । ଅଗଷ୍ଟ ୯ ଆନ୍ଦୋଳନ ଓଡ଼ିଶାରେ ତୀବ୍ର ହେବାରୁ ସୁରେନ୍ଦ୍ର ଦ୍ୱିବେଦୀ ଓ ମାଳତୀ ଚୌଧୁରୀଙ୍କୁ ଛାଡ଼ି ୨୪ ଜଣ ନେତାଙ୍କୁ ଗିରଫ କରାଯାଇଥିଲା । ଏହାଦ୍ୱାରା ଛାତ୍ରମାନେ ସ୍କୁଲ, କଲେଜ ଛାଡ଼ି ଏହି ଆନ୍ଦୋଳନରେ ଭାଗନେଇଥିଲେ । ସାଧାରଣ ଲୋକେ ମଧ୍ୟ ଏହି ଆନ୍ଦୋଳନରେ ସ୍ୱତଃପ୍ରବୃତ୍ତ ଭାବରେ ସାମିଲ ହୋଇ ଏହାକୁ ଅଧିକ ତୀବ୍ର କରିଥିଲେ । ଏପରିକି ଓଡ଼ିଶାର ଗଡ଼ଜାତମାନଙ୍କରେ ମଧ୍ୟ ଏହାର ପ୍ରଭାବ ପରିଲକ୍ଷିତ ହୋଇଥିଲା । ତେଣୁ ଭାରତଛାଡ଼ ଆନ୍ଦୋଳନରେ ଯେ ଓଡ଼ିଶା ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଗ୍ରହଣ କରିଥିଲା ଅସ୍ୱୀକାର କରାଯାଇ ନ ପାରେ ।

ଭାରତର ସ୍ୱାଧୀନତା ସଂଗ୍ରାମରେ କେବଳ ଓଡ଼ିଶାର ପୁରୁଷମାନେ ନୁହନ୍ତି, ନାରୀମାନେ ମଧ୍ୟ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ଗଞ୍ଜାମ ଉପରେ ଇଷ୍ଟଇଣ୍ଡିଆ କମ୍ପାନୀର ଅଯଥା ହସ୍ତକ୍ଷେପକୁ ତତ୍କାଳୀନ ପାରଳାର ରାଜା ନାରାୟଣ ଗଜପତି ଦେବ ସ୍ୱୀକାର ନ କରି ତତ୍କାଳୀନ ପ୍ରଶାସକ କୀଟସ୍‌ଫୋର୍ଡ଼ସଙ୍କ ବିରୋଧରେ ଯୁଦ୍ଧ ଘୋଷଣା କରିଥିଲେ । ପାରଳାରାଜାଙ୍କ ମୃତ୍ୟୁ ପରେ ରାଣୀ ହାରାମଣୀଦେବୀ ଇଂରେଜମାନଙ୍କ ବିରୋଧରେ ସଂଗ୍ରାମ ଜାରି ରଖିଥିଲେ । ସେତେବେଳେ ଅନେକ ଆଦିବାସୀ ରମଣୀ ଏଥିରେ ରାଣୀଙ୍କୁ ସହାୟତା କରିଥିଲେ । କୋୟାରାଣୀ ବାଙ୍ଗାରାଦେବୀ ଓ ହରପାର୍ବତୀ ଆଦି ରମଣୀଙ୍କ ନାମ ଏ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ । ଗାନ୍ଧିଜୀଙ୍କ ଆହ୍ୱାନରେ ବହୁ ରମଣୀ ପ୍ରତ୍ୟକ୍ଷ ଭାବେ ସଂଗ୍ରାମରେ ଝାସ ଦେଇଥିଲେ । କେତେକ ନାରୀ

ସେମାନଙ୍କ ଅଗ୍ନିବର୍ଷୀ କବିତା ମାଧ୍ୟମରେ ଲୋକମାନଙ୍କ ମନରେ ଜାତୀୟ ଚେତନା ସୃଷ୍ଟି କରିଥିଲେ । ଏହି ରମଣୀମାନଙ୍କ ମଧ୍ୟରେ କୁନ୍ତଳାକୁମାରୀ ସାବତ, ରେବାରାୟ, ସୁଲକ୍ଷଣା ଦେବୀ, ସରଳାଦେବୀ, ସୀତାଦେବୀ ଖାଡ଼ଙ୍ଗା, ସୁଚିତ୍ରା ଦେବୀ, କୋକିଳାଦେବୀ ଆଦିଙ୍କ ନାମ ଉଲ୍ଲେଖଯୋଗ୍ୟ । ଅସହଯୋଗ ଆନ୍ଦୋଳନ ପରେ ଶ୍ରୀମତୀ ଲାବଣ୍ୟ ଦେବୀ, ଚଞ୍ଚଳା ଦେବୀ, ଯମୁନା ଦେବୀ ଆଦି ନାରୀମାନଙ୍କୁ ନେଇ ମହିଳା ବନ୍ଧୁ ସମିତି ଗଠନ କରାଯାଇ ନାରୀଚେତନା ଜାଗରଣ କରାଯାଇଥିଲା । ୧୯୨୪ ମସିହା ପ୍ରାଦେଶିକ କଂଗ୍ରେସ କମିଟି ଅଧିବେଶନରେ ସରୋଜିନୀ ଚୌଧୁରୀ, ରମାଦେବୀ ପ୍ରଭୃତି ଉପସ୍ଥିତ ରହି ମହିଳାମାନଙ୍କ ଉପରେ ନୈତିକ ପ୍ରଭାବ ପକାଇବାକୁ ଚେଷ୍ଟା କରିଥିଲେ । ରାସମଣୀ ଓ ସ୍ୱର୍ଣ୍ଣଲତା ଦେଈ ବ୍ରହ୍ମପୁର ସ୍ୱରାଜ ଆଶ୍ରମରେ ଉତ୍କଳ ନାରୀ ସମ୍ମିଳନୀର ଅଧିବେଶନ ଆହ୍ୱାନ କରିଥିଲେ । ୧୯୩୦ ମସିହା ଜାନୁଆରୀ ୨୬ ତାରିଖରେ ପୂର୍ଣ୍ଣ ସ୍ୱରାଜ ଦିବସ ପାଳନ ନିମିତ୍ତ ଇଂରେଜ ସରକାର ଅନୁମତି ନ ଦେବାରୁ ରମାଦେବୀ ନିଜ ବାସଭବନରେ ଏକ ସଭାର ଆୟୋଜନ କରିଥିଲେ । ଗ୍ରାମ ଗ୍ରାମ ବୁଲି ନାରୀମାନଙ୍କ ମନରେ ଜାଗରଣ ସୃଷ୍ଟି କରିଥିଲେ । ୧୯୩୦ର ଲବଣ ସତ୍ୟାଗ୍ରହରେ ରମାଦେବୀ, ମାଳତୀ ଚୌଧୁରୀ ଆଦିଙ୍କ ନେତୃତ୍ୱରେ ବହୁ ନାରୀ ଏଥିରେ ଯୋଗ ଦେଇଥିଲେ । ଅନେକ ମହିଳା ସତ୍ୟାଗ୍ରହୀ ମଦ ଦୋକାନ ଆଗରେ ନିଶା ନିବାରଣ ପାଇଁ ଧ୍ୱନି ଦେଇ ଗିରଫ ହୋଇଥିଲେ । ୧୯୩୪ ମସିହାରେ ଗାନ୍ଧିଜୀଙ୍କ ଓଡ଼ିଶା ଆଗମନ ବେଳେ ରମାଦେବୀଙ୍କ ନେତୃତ୍ୱରେ ବହୁ ରମଣୀ ସହଯୋଗ କରିଥିଲେ । ୧୯୪୨ ମସିହା ଭାରତଛାଡ଼ ଆନ୍ଦୋଳନ ବେଳେ ମାଳତୀ ଚୌଧୁରୀଙ୍କୁ ଗିରଫ କରାଯିବା ଦ୍ୱାରା ଶ୍ରୀମତୀ ମଙ୍ଗଳାଦେବୀ, ଅନ୍ନପୂର୍ଣ୍ଣା ମହାରଣା ଆଦିଙ୍କ ନେତୃତ୍ୱରେ ଶହ ଶହ ରମଣୀ ଇଂରେଜ ଶାସନ ବିରୋଧରେ ଧ୍ୱନି ଦେଇ ଗିରଫ ହୋଇଥିଲେ । ତେଣୁ ଭାରତର ସ୍ୱାଧୀନତା ଆନ୍ଦୋଳନରେ ଓଡ଼ିଆ ରମଣୀଙ୍କ ଏହି ତ୍ୟାଗପୂତ କାହାଣୀ ଚିର ଅମର ହୋଇ ରହିବ ।

ଅତୀତରେ ଓଡ଼ିଆ ପାଇକମାନଙ୍କର ବୀରତ୍ୱ କାହାଣୀ ସମଗ୍ର ଭାରତବର୍ଷରେ ଥିଲା ଅଦ୍ୱିତୀୟ । ଏହି ବୀର ଜାତି ଦେଶର ସ୍ୱାଧୀନତା ଓ ସମ୍ମାନ ରକ୍ଷା ପାଇଁ ସର୍ବଦା ବହିଃଶତ୍ରୁ ଉପରେ ଆକ୍ରମଣ କରି ସେମାନଙ୍କୁ ଛିନ୍ନ ବିଚ୍ଛିନ୍ନ କରିଛନ୍ତି । ଭାରତର ସ୍ୱାଧୀନତା ସଂଗ୍ରାମର ପ୍ରଥମ ମୂଳଭିତ୍ତି ଓଡ଼ିଶାର ପାଇକ ବିଦ୍ରୋହରୁ ସୂତ୍ରପାତ ହୋଇଥିଲା । ପରବର୍ତ୍ତୀ ସମୟରେ ସର୍ବଭାରତୀୟ ସ୍ତରରେ ଯେଉଁ ମୁକ୍ତି ସଂଗ୍ରାମର ଡାକରା ଦିଆଯାଇଥିଲା, ସେଥିରେ ଓଡ଼ିଶାର ବହୁ ତରୁଣ, ତରୁଣୀ ଯୋଗଦାନ କରି ଦେଶମାତୃକାର ସେବା ପାଇଁ ନିଜକୁ ଉତ୍ସର୍ଗ କରିଥିଲେ । ଅନେକ ମଧ୍ୟ ଶହୀଦ ହୋଇଥିଲେ । ତଥାପି ଇଂରେଜ ଶାସନର ବିଲୋପ ନିମିତ୍ତ ସେମାନେ ନେଇଥିଲେ ଅଗ୍ନି ଶପଥ । ତେଣୁ ଭାରତୀୟ ସ୍ୱାଧୀନତା ଆନ୍ଦୋଳନରେ ଏହି ସ୍ୱାଧୀନଚେତା ଓଡ଼ିଶାର ନରନାରୀଗଣଙ୍କ ଭୂମିକା ସର୍ବଦା ସ୍ମରଣୀୟ ହୋଇ ରହିବ ।

●

# ଭାରତରେ ସ୍ୱାଧୀନତା ଆନ୍ଦୋଳନ

(ଉପକ୍ରମ, ସ୍ୱାଧୀନତା ଆନ୍ଦୋଳନର କେତେକ ଦିଗ, ଜାତୀୟ କଂଗ୍ରେସ ଗଠନ, ବଙ୍ଗଭଙ୍ଗ, ପ୍ରଥମ ବିଶ୍ୱଯୁଦ୍ଧ ଓ ଭାରତର ଜାତୀୟତା, ଗାନ୍ଧିଙ୍କ ନେତୃତ୍ୱ, ଜାଲିଆନାବାଗ ହତ୍ୟାକାଣ୍ଡ, ଖିଲାଫତ୍ ଆନ୍ଦୋଳନ, ୧୯୧୯ର ଅସହଯୋଗ ଆନ୍ଦୋଳନ, ଆଇନ ଅମାନ୍ୟ ଆନ୍ଦୋଳନ, ସାଇମନ କମିଶନ, ଲାହୋର ପ୍ରସ୍ତାବ, ଦାଣ୍ଡିଯାତ୍ରା, ଗାନ୍ଧି ଇର୍‌ଉଇନ୍ ଚୁକ୍ତି, ୨ୟ ଗୋଲଟେବୁଲ ବୈଠକ, ଭାରତଛାଡ଼ ଆନ୍ଦୋଳନ, କ୍ରିପ୍‌ସ ମିଶନ, ସ୍ୱାଧୀନତା ପ୍ରାପ୍ତି, ଉପସଂହାର)

ସ୍ୱାଧୀନ ଭାବରେ ଜୀବନଯାପନ କରିବାକୁ କିଏ ନ ଚାହେଁ ? ମଣିଷ ତା' ଜୀବନର ବିଭିନ୍ନ ସୋପାନରେ ସ୍ୱାଧୀନତାକୁ ଉପଭୋଗ କରିବାକୁ ଚାହେଁ । କାରଣ ସ୍ୱାଧୀନତା ତା'ର ଜନ୍ମଗତ ଅଧିକାର । ଏହି ଅଧିକାରରୁ କେହି ତାକୁ ବଞ୍ଚିତ କଲେ ସେ ପ୍ରତିକ୍ରିୟାଶୀଳ ହେବା ସ୍ୱାଭାବିକ । ପରାଧୀନ ବ୍ୟକ୍ତି ହରାଇଥାଏ ସ୍ୱାଭିମାନ ଓ କାର୍ଯ୍ୟଦକ୍ଷତା । ବହୁଦିନ ଧରି ଏକ ଐତିହ୍ୟ ଓ ସଂସ୍କୃତିସମ୍ପନ୍ନ ଦେଶ ଭାରତ ବୈଦେଶିକମାନଙ୍କ ଦ୍ୱାରା ଲୁଣ୍ଠିତ ହୋଇଥିଲା । ଦିନେ ଯେଉଁ ଦେଶ ସମଗ୍ର ବିଶ୍ୱକୁ ବିଭିନ୍ନ କ୍ଷେତ୍ରରେ ଦିଗ୍‌ଦର୍ଶନ ପ୍ରଦାନ କରୁଥିଲା, ପରାଧୀନ ଜୀବନକୁ ବରଣ କରିନେବା ପରେ ସେ ହେଲା ସ୍ଥାଣୁ ଓ କର୍ମକୁଣ୍ଠ । ମାତ୍ର ପୁଣି ଦିନେ ତା'ର ଚୈତନ୍ୟ ଉଦୟ ହେଲା । ନିଜର ଅପହୃତ ସ୍ୱାଧୀନତାକୁ ଫେରି ପାଇବାକୁ ତା' ମନରେ ସୃଷ୍ଟି ହେଲା ଅକୁଣ୍ଠ ପିପାସା । ଭାରତରେ ଆରମ୍ଭ ହେଲା ସ୍ୱାଧୀନତା ଆନ୍ଦୋଳନ । ଅନେକ ମୂଲ୍ୟବାନ ଜୀବନ ଏଥିରେ ବଳିପଡ଼ିଲା । ବହୁ ଉତ୍ସର୍ଗୀକୃତ ପ୍ରାଣ ବିନିମୟରେ ଭାରତ ପୁଣି ଲାଭ କଲା ତା'ର ସ୍ୱାଧୀନତା ।

ଦୀର୍ଘ ୭୫୦ ବର୍ଷର ପରାଧୀନତା ଗୋଟିଏ ଜାତିର ଇତିହାସରେ କମ୍ ଦୁର୍ଭାଗ୍ୟପୂର୍ଣ୍ଣ ଘଟଣା ନୁହେଁ । ମୋଗଲ, ପଠାଣ ଓ ଇଂରେଜମାନେ ଏ ଦେଶକୁ ଦୀର୍ଘଦିନ ଧରି ଶାସନ କରିଛନ୍ତି । ଇଂରେଜ ଶାସନ କାଳରେ ଏ ଦେଶର କ୍ଷତି ଘଟିଛି ଅନେକ । ଇଂରେଜମାନଙ୍କ କୁଶାସନ ଓ ଅତ୍ୟାଚାର ବିରୋଧରେ ସଂଘଟିତ ହେଲା ୧୮୫୭ ମସିହାରେ ସିପାହୀ ବିଦ୍ରୋହ । ମାତ୍ର ଇଂରେଜମାନଙ୍କର କୂଟନୀତି ଏହି ବିଦ୍ରୋହକୁ ଦମନ କରାଇ ଦେଇଥିଲେହେଁ ବିପ୍ଳବର ଅଗ୍ନି ସମ୍ପୂର୍ଣ୍ଣ ନିର୍ବାପିତ ହୋଇ ନ ଥିଲା । ୧୬୦୦ ମସିହାରେ ଇଷ୍ଟଇଣ୍ଡିଆ କମ୍ପାନୀ ଗୋଟିଏ ବଣିକ ଜାତି ଭାବରେ ଭାରତମାଟିରେ ପାଦ ଦେଇଥିଲେ । ମାତ୍ର ନିଜର ଚତୁରତା ଦ୍ୱାରା ଏମାନେ ୧୮୫୮ ମସିହା ପର୍ଯ୍ୟନ୍ତ ଭାରତକୁ ଶାସନ କଲେ । ୧୮୫୮ ମସିହାରେ ବ୍ରିଟିଶ ସରକାର ନିଜେ ଭାରତର ଶାସନ କ୍ଷମତା ହାତକୁ ନେଲେ । ଭାରତୀୟମାନଙ୍କ ମନରେ ରାଜନୀତିକ ଚେତନା ଜାଗ୍ରତ ଉଦ୍ଦେଶ୍ୟରେ ଆଲାନ୍ ଅକ୍ଟାଭିଆନ ହ୍ୟୁମଙ୍କ ତତ୍ତ୍ୱାବଧାନରେ ଭାରତୀୟ ଜାତୀୟ କଂଗ୍ରେସ ଜନ୍ମନେଲା ୧୮୮୪ ମସିହା ଡିସେମ୍ବର ମାସରେ । ଏହାର ସଭା ବମ୍ବେ (ମୁମ୍ବାଇ)ରେ ଅନୁଷ୍ଠିତ ହୋଇଥିଲା ୧୮୮୫ ମସିହା ଡିସେମ୍ବର ୨୭ ତାରିଖରେ । ଏହି ସଭାର ମୁଖ୍ୟ ପୃଷ୍ଠପୋଷକ ଥିଲେ ଏ. ଓ. ହ୍ୟୁମ ଏବଂ ସଭାପତିତ୍ୱ କରିଥିଲେ ଡବ୍ଲ୍ୟୁ. ସି. ବାନାର୍ଜୀ । ସହରରେ ବସବାସ କରୁଥିବା ଶିକ୍ଷିତ ସମ୍ପ୍ରଦାୟ ପ୍ରଥମେ.ଏହାଦ୍ୱାରା ଆକୃଷ୍ଟ ହୋଇଥିଲେ । ଏହି କଂଗ୍ରେସର ଗଠନ

ସମୟରେ ଇଂରେଜ ଶାସନ ବିରୋଧରେ ସଂଗ୍ରାମ କରିବାର ଅଭିଳାଷ ଆଦୌ ନ ଥିଲା । ପରବର୍ତ୍ତୀ ସମୟରେ କଂଗ୍ରେସର କାର୍ଯ୍ୟକାରୀ ଢଙ୍ଗରେ ପରିବର୍ତ୍ତନ ଆସିଥିଲା । ବିଭିନ୍ନ ବ୍ୟକ୍ତିଙ୍କ ଏଥିରେ ସମ୍ମିଳନ ଦ୍ୱାରା ଇଂରେଜ ସରକାରଙ୍କ ଠାରୁ ଏମାନେ ରାଜନୀତିକ ସ୍ୱାଧୀନତା ଲାଭ କରିବାକୁ ଚାହିଁଲେ । ବିଂଶ ଶତକର ପ୍ରଥମ ଦଶକରେ ଏହା ଦୁଇଭାଗରେ ବିଭକ୍ତ ହୋଇଗଲା । ନରମପନ୍ଥୀ ଦଳ ବିଭିନ୍ନ ପ୍ରସ୍ତାବ ଓ ଚୁକ୍ତି ମାଧ୍ୟମରେ ଇଂରେଜମାନଙ୍କଠାରୁ ଅଧିକ ସୁବିଧା ପାଇପାରିବେ ବୋଲି ଆଶା କରୁଥିବା ସମୟରେ ଅନ୍ୟ ଚରମପନ୍ଥୀ ଦଳ ସଂଗ୍ରାମ, ସରକାରୀ ବିରୋଧୀ କାର୍ଯ୍ୟକ୍ରମ ଦ୍ୱାରା ସୁବିଧା ହାସଲ କରିବାକୁ ଯୁକ୍ତି କଲେ । ବାଳଗଙ୍ଗାଧର ତିଳକ, ବିପିନ ଚନ୍ଦ୍ର ପାଲ୍ ଏବଂ ଲାଲା ଲାଜପତ ରାୟ ଏହି ଚରମପନ୍ଥୀଙ୍କ ନେତୃତ୍ୱ ନେଉଥିଲେ । ୧୮୯୮ରୁ ୧୯୦୫ ପର୍ଯ୍ୟନ୍ତ ଲର୍ଡ଼ କର୍ଜନ ଭାରତର ଗଭର୍ଣ୍ଣର ଜେନେରାଲ ଥିବା ସମୟରେ ଭାରତୀୟଙ୍କ ମଧ୍ୟରେ ବିଭେଦ ସୃଷ୍ଟିକରି ଶାସନ କରିବା ନୀତିକୁ ଅବଲମ୍ବନ କରିଥିଲେ । ଅଧିକ ଜାତୀୟତାବାଦୀ ନେତା ବଙ୍ଗଳାଦେଶରେ ଥିବାରୁ ସେ ୧୯୦୫ ମସିହାରେ ବଙ୍ଗଭଙ୍ଗ ନିମିତ୍ତ ଆଦେଶ ଦେଲେ । ଅଧିକ ହିନ୍ଦୁ ବସବାସ କରୁଥିବା ଅଞ୍ଚଳ ପଶ୍ଚିମବଙ୍ଗଳା ଏବଂ ଅଧିକ ମୁସଲମାନ ବାସ କରୁଥିବା ଅଞ୍ଚଳ ପୂର୍ବବଙ୍ଗଳା ରୂପେ ପରିଚିତ ହେଲା । ଏହା ବିରୋଧରେ ବଙ୍ଗଳାଦେଶରେ ତୀବ୍ର ପ୍ରତିକ୍ରିୟା ଆରମ୍ଭ ହେଲା । ଲର୍ଡ଼ ହାର୍ଡ଼ିଞ୍ଜ ଗଭର୍ଣ୍ଣର ଜେନେରାଲ ହୋଇ ଆସିବା ପରେ ୧୯୧୧ ମସିହାରେ ବଙ୍ଗଭଙ୍ଗ ପ୍ରସ୍ତାବ ରଦ୍ଦ କଲେ ।

୧୯୧୪ ମସିହାରେ ପ୍ରଥମ ବିଶ୍ୱଯୁଦ୍ଧ ଆରମ୍ଭ ହେଲା । ଭାରତୀୟମାନେ ସ୍ୱାଧୀନତା ପାଇବେ ବୋଲି ଆଶା କରି ଏହି ଯୁଦ୍ଧରେ ଇଂରେଜମାନଙ୍କୁ ସାହାଯ୍ୟ କଲେ । ମାତ୍ର ଯୁଦ୍ଧ ପରେ ଭାରତୀୟମାନଙ୍କୁ ନିରାଶ ହେବାକୁ ପଡ଼ିଲା । ମହାତ୍ମାଗାନ୍ଧି ସତ୍ୟାଗ୍ରହ ଓ ଅହିଂସା ଆନ୍ଦୋଳନ ମାଧ୍ୟମରେ ଦକ୍ଷିଣ ଆଫ୍ରିକାର କଳାଲୋକମାନଙ୍କୁ କିଛି ସ୍ୱାଧୀନତା ପ୍ରଦାନ କରିଥିଲେ । ସେ ଭାରତକୁ ଫେରିବା ପରେ କଂଗ୍ରେସ ତାଙ୍କୁ ସ୍ୱାଗତ କରି ଏହାର ନେତୃତ୍ୱ ନେବାକୁ ଅନୁରୋଧ କରିଥିଲେ । ୧୯୧୯ ମସିହାରେ ବ୍ରିଟିଶ ସରକାର ରାଓଲାଟ ନିୟମ ଜାରିକରି ଯେଉଁ ଲୋକମାନଙ୍କ ପ୍ରତି ସନ୍ଦେହ ହେଉଥିଲା, ତାଙ୍କୁ ଗିରଫ କରିପାରୁଥିଲେ । ଭାରତୀୟମାନେ ଏହି ଆଇନକୁ କଳା ଆଇନ୍ ବୋଲି ଆଖ୍ୟାୟିତ କରିଥିଲେ । ଗାନ୍ଧିଜୀ ଏହି ନିୟମ ବିରୋଧରେ ଆନ୍ଦୋଳନ କରି ଗିରଫ ହେଲେ । ଗାନ୍ଧିଜୀଙ୍କ ଗିରଫ ବିରୋଧରେ ୧୯୧୯ ମସିହା ଏପ୍ରିଲ ୧୩ ତାରିଖରେ ଜାଲିଆନୱାଲାବାଗ ଠାରେ ଅମୃତସରର ଜନସାଧାରଣ ଏକତ୍ରିତ ହୋଇ ସଭା କରୁଥିବା ସମୟରେ ଜେନେରାଲ ଡାୟାର କେତେକ ସୈନ୍ୟଙ୍କୁ ନେଇ ଅନ୍ଧାଧୁନ୍ଦ ଗୁଳି କରିବାରୁ ଶହ ଶହ ବ୍ୟକ୍ତି ଟଳି ପଡ଼ିଲେ । ଏହି ହତ୍ୟାକାଣ୍ଡ ଘଟଣା ଭାରତରେ ବ୍ୟାପିଯିବାରୁ ଭାରତୀୟ ଜନସାଧାରଣ ଉତ୍‌କ୍ଷିପ୍ତ ହୋଇପଡ଼ିଥିଲେ । ସେହି ୧୯୧୯ରେ ଖିଲାଫତ୍ ଆନ୍ଦୋଳନ କରି ମୁସଲମାନମାନେ ଇଂରେଜମାନଙ୍କ ବିରୋଧରେ ବିଭିନ୍ନ ପଦକ୍ଷେପ ଗ୍ରହଣ କରିଥିଲେ । କଂଗ୍ରେସ ଗାନ୍ଧିଜୀଙ୍କ ନେତୃତ୍ୱରେ ଏହି ଆନ୍ଦୋଳନରେ ମୁସଲମାନମାନଙ୍କ ସହିତ ହାତ ମିଳାଇଥିଲେ । ଏହା ଦ୍ୱାରା ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ଐକ୍ୟ ସୃଷ୍ଟି ହୋଇଥିଲା ।

ଏହାପରେ କଂଗ୍ରେସ ଅଧିକ ସଙ୍ଗଠିତ ଭାବରେ ଇଂରେଜମାନଙ୍କ ବିରୋଧରେ ସ୍ୱାଧୀନତା ସଂଗ୍ରାମ କରିବାକୁ ଆଗେଇ ଆସିଥିଲା । ୧୯୨୧ ମସିହାର ଅସହଯୋଗ ଆନ୍ଦୋଳନ ହେଉଛି ଇଂରେଜ ଶାସନ ବିରୋଧରେ ପ୍ରଥମ ମୁଖ୍ୟ ଆନ୍ଦୋଳନ । ୧୯୨୧ ମସିହା ସେପ୍ଟେମ୍ବର ମାସରେ କଲିକତାଠାରେ ହୋଇଥିବା ଅଧିବେଶନରେ ଇଂରେଜମାନଙ୍କ ବିରୋଧରେ ଅସହଯୋଗ ଆନ୍ଦୋଳନ କରିବାକୁ ପ୍ରସ୍ତାବ ଦିଆଯାଇଥିଲା ଓ ସେହି ବର୍ଷ ଡିସେମ୍ବର ମାସରେ ନାଗପୁର ଅଧିବେଶନରେ ଏହା ଗୃହୀତ ହୋଇଥିଲା । ଏହି ପ୍ରସ୍ତାବକୁ ମହମ୍ମଦ ଅଲ୍ଲି ଜିନ୍ନା ଓ ମଦନମୋହନ ମାଲବ୍ୟଙ୍କ ବ୍ୟତୀତ ଅନ୍ୟ ସମସ୍ତେ ସମର୍ଥନ କରିଥିଲେ । ଏଥିରେ ମୁଖ୍ୟତଃ ବିଦେଶୀ ପଦାର୍ଥର ପରିତ୍ୟାଗ ଓ ସ୍ୱଦେଶୀ ପଦାର୍ଥ କ୍ରୟ, ବ୍ରିଟିଶ ସରକାରଙ୍କ ଦ୍ୱାରା ପ୍ରଦତ୍ତ ଉପାଧି ଏବଂ ସମ୍ମାନ ପରିତ୍ୟାଗ, ସରକାରୀ କାର୍ଯ୍ୟ ପରିତ୍ୟାଗ, ବ୍ରିଟିଶ ଅଦାଲତ ପରିତ୍ୟାଗ, ସରକାରଙ୍କ ଦ୍ୱାରା ଅନୁଦାନ ପାଉଥିବା ବିଦ୍ୟାଳୟ ଓ ମହାବିଦ୍ୟାଳୟ ପରିତ୍ୟାଗ, ନିର୍ବାଚନରେ ଅଂଶଗ୍ରହଣ ଓ ଭୋଟ ନ ଦେବାର ନିଷ୍ପତ୍ତି, ମେସୋପଟାମିଆରେ ସୈନିକ, କିରାଣି ବା କର୍ମଚାରୀ ଭାବରେ କାର୍ଯ୍ୟ ନ କରିବାକୁ ନିଷ୍ପତ୍ତି ନିଆଯାଇଥିଲା । ଏହାଛଡ଼ା ଏଥିରେ ଜାତୀୟ ଶିକ୍ଷା ଅନୁଷ୍ଠାନ ନିର୍ମାଣ, ବ୍ରିଟିଶ ଅଦାଲତ ପରିବର୍ତ୍ତେ ପଞ୍ଚାୟତ ଗଠନ, ଚରକା ଦ୍ୱାରା ସୂତା ଓ ଲୁଗା ବୁଣିବା, ସାମ୍ପ୍ରଦାୟିକ ସଦ୍ଭାବ ରକ୍ଷା, ଛୁଆଁଅଛୁଆଁ ଭେଦଭାବ ବିଲୋପ ଆଦି ସମ୍ପର୍କରେ ନିଷ୍ପତ୍ତି ଗୃହୀତ ହୋଇଥିଲା । ସଂକ୍ଷେପରେ କହିଲେ ସମସ୍ତ ବିଦେଶୀ ଦ୍ରବ୍ୟ ପରିତ୍ୟାଗ ଓ ଜାତିକୁ ନୂତନ ଭାବରେ ଗଠନ କରିବାକୁ ଏଥିରେ ପ୍ରସ୍ତାବ ଦିଆଯାଇଥିଲା । ୧୯୨୨ ମସିହାରେ ଗାନ୍ଧିଜୀ ବ୍ରିଟିଶ ସରକାରଙ୍କୁ ତାଙ୍କର ସମସ୍ତ ଦମନମୂଳକ କାର୍ଯ୍ୟ ବନ୍ଦ କରିବାକୁ ପ୍ରସ୍ତାବ ଦେଇଥିଲେ । ନଚେତ୍ ସେ ସତ୍ୟାଗ୍ରହ ଆରମ୍ଭ କରିବେ ବୋଲି ସ୍ପଷ୍ଟ କରି ଦେଇଥିଲେ । ଗାନ୍ଧିଜୀ ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରିବା ପୂର୍ବରୁ ୧୯୨୨ ମସିହା ଫେବୃଆରୀ ୫ ତାରିଖରେ ଚୌରିଚୌରାଠାରେ କେତେକ ଉତ୍କ୍ଷିପ୍ତ ବ୍ୟକ୍ତି ଥାନା ଉପରେ ଆକ୍ରମଣ କରି ୨୨ ଜଣ ପୋଲିସଙ୍କୁ ନିର୍ମମ ହତ୍ୟା କରିଥିଲେ । ଏଥିରେ ଦୁଃଖିତ ହୋଇ ଗାନ୍ଧିଜୀ ଆଇନଅମାନ୍ୟ ଆନ୍ଦୋଳନ ବନ୍ଦ କରି ଦେଇଥିଲେ ।

ଭାରତରେ ଆଇନ ଅମାନ୍ୟ ଆନ୍ଦୋଳନ ଦୁଇ ଥରରେ ଆରମ୍ଭ ହୋଇଥିଲା । ପ୍ରଥମ ଥର ୧୯୩୦ରୁ ୧୯୩୧ ପର୍ଯ୍ୟନ୍ତ ଓ ଦ୍ୱିତୀୟ ଥର ୧୯୩୨ରୁ ୧୯୩୪ ପର୍ଯ୍ୟନ୍ତ ଗତି କରିଥିଲା । ଇତିମଧ୍ୟରେ ଚିତ୍ତରଞ୍ଜନ ଦାସ ଓ ମୋତିଲାଲ ନେହେରୁ କଂଗ୍ରେସରୁ ବାହାରିଯାଇ ସ୍ୱରାଜ୍ୟ ପାର୍ଟି ଗଢ଼ିଥିଲେ । ୧୯୨୭ ମସିହାରେ ଭାରତର ଶାସନ ନୀତିକୁ ନୂତନ ଢାଞ୍ଚା ଦେବାପାଇଁ ସାଇମନ କମିଶନ ଗଢ଼ାଯାଇଥିଲା । ଏଥିରେ କୌଣସି ଭାରତୀୟଙ୍କୁ ରଖାଯାଇ ନ ଥିବାରୁ ବିଭିନ୍ନ ସ୍ଥାନରେ ଏମାନେ ବିଭିନ୍ନ ପ୍ରତିବନ୍ଧକର ସମ୍ମୁଖୀନ ହେଲେ । କଂଗ୍ରେସ ସାଇମନ କମିଶନଙ୍କ ରିପୋର୍ଟକୁ ଗ୍ରହଣ ନ କରି ୧୯୨୯ ମସିହାରେ ଲାହୋର ଠାରେ ସମ୍ପୂର୍ଣ୍ଣ ସ୍ୱରାଜ୍ୟ ନିମିତ୍ତ କଂଗ୍ରେସର ପ୍ରସ୍ତାବ ଗୃହୀତ ହେଲା ଏବଂ ଜାନୁଆରୀ ୨୬କୁ ପୂର୍ଣ୍ଣ ସ୍ୱରାଜ ଦିବସ ରୂପେ ଗ୍ରହଣ କରିବାକୁ ନିଷ୍ପତ୍ତି ନିଆଗଲା ।

ଇଂରେଜ ସରକାରଙ୍କ ପ୍ରତିକୂଳ ଆଚରଣ ଦେଖି ଗାନ୍ଧିଜୀ ଆଇନ ଅମାନ୍ୟ ଆନ୍ଦୋଳନ ଓ ଲବଣ ଆଇନ୍ ଭାଙ୍ଗିବାକୁ ନିଷ୍ପତ୍ତି ନେଲେ । ୧୯୩୦ ମସିହା ମାର୍ଚ୍ଚ ୧୨ ତାରିଖରେ ଗାନ୍ଧିଜୀ ସାବରମତୀ ଆଶ୍ରମରୁ ଦାଣ୍ଡି ଗ୍ରାମକୁ ଯାତ୍ରା କଲେ । ଅପ୍ରେଲ ୬ ତାରିଖରେ ଦାଣ୍ଡିରେ ପହଞ୍ଚି ଲୁଣ ମାରିବାକୁ ଲାଗିଲେ । ଭାରତର ବିଭିନ୍ନ ସ୍ଥାନରେ ଲବଣ ଆଇନ୍‌କୁ ଭାଙ୍ଗି ଲୁଣ ମରାଗଲା । ଓଡ଼ିଶାର ଇଞ୍ଚୁଡ଼ି ଓ ଅସ୍ତରଙ୍ଗରେ ଏହି ଲବଣ ଆଇନ ଅମାନ୍ୟ ସମ୍ପୂର୍ଣ୍ଣ ସଫଳ ହୋଇଥିଲା । ଗାନ୍ଧିଜୀଙ୍କ ଆଇନ୍ ଅମାନ୍ୟ ଆନ୍ଦୋଳନରେ ଭାରତର ବିଭିନ୍ନ ପ୍ରାନ୍ତରୁ ଲୋକମାନେ ଆସି ଯୋଗଦେଲେ । ଛାତ୍ରଛାତ୍ରୀ ସ୍କୁଲ କଲେଜ ତ୍ୟାଗ କରି ଏଥିରେ ସହଯୋଗ କଲେ । ବିଦେଶୀ ଦ୍ରବ୍ୟ ପରିତ୍ୟାଗ କରାଗଲା । ମଦଦୋକାନ ଆଗରେ ପିକେଟିଂ ହେଲା । ସରକାର ବଳପ୍ରୟୋଗ କରି ଏହାକୁ ଦମନ କରିବାକୁ ଚାହିଁଲେ । ୧୯୩୦ ମସିହା ମେ ମାସ ୪ ତାରିଖରେ ଗାନ୍ଧିଜୀଙ୍କ ସହିତ ବହୁ କଂଗ୍ରେସ ନେତା ଜେଲବରଣ କଲେ । କଂଗ୍ରେସର ବହୁ ନେତା କାରାଗାରରେ ଥିବାରୁ କଂଗ୍ରେସ ୧୯୩୦ ମସିହା ଡିସେମ୍ବର ମାସରେ ଲଣ୍ଡନରେ ଅନୁଷ୍ଠିତ ହେବାକୁ ଥିବା ଗୋଲଟେବୁଲ ବୈଠକ ପରିତ୍ୟାଗ କଲେ । ୧୯୩୧ ମସିହା ଜାନୁଆରୀ ଶେଷ ସପ୍ତାହରେ ଗାନ୍ଧିଜୀ ଜେଲରୁ ମୁକ୍ତିଲାଭ କରିବା ପରେ ସେହି ବର୍ଷ ମାର୍ଚ୍ଚ ୫ ତାରିଖରେ ଗାନ୍ଧି ଇରଉଇନ୍ ଚୁକ୍ତି ସ୍ୱାକ୍ଷରିତ ହେଲା । ଏହି ଚୁକ୍ତି ଅନୁଯାୟୀ ସରକାର କୌଣସି ଦମନମୂଳକ କାର୍ଯ୍ୟ କରିପାରିବେ ନାହିଁ । ଯେଉଁମାନେ ଜେଲ୍‌ରେ ଅଛନ୍ତି ସେମାନଙ୍କୁ ମୁକ୍ତ କରାଯିବ । ଲୋକମାନେ ଲୁଣ ମାରିବାର ଅଧିକାର ପାଇବେ । ବିଦେଶୀ ଲୁଗା ଓ ମଦ ଦୋକାନ ଆଗରେ ଶାନ୍ତିପୂର୍ଣ୍ଣ ପିକେଟିଂ ହୋଇପାରିବ । ଏହାପରେ ୧୯୩୧ ମସିହା ସେପ୍ଟେମ୍ବର ମାସରେ ଲଣ୍ଡନରେ ହେବାକୁ ଥିବା ଦ୍ୱିତୀୟ ଗୋଲଟେବୁଲ ବୈଠକରେ ଯୋଗଦେବାକୁ ଗାନ୍ଧିଜୀ ଯାଇଥିଲେ । ମାତ୍ର ଏହି ବୈଠକ ଫଳପ୍ରଦ ନ ହେବାରୁ ଗାନ୍ଧିଜୀ ଭାରତ ଫେରିଆସିବା ମାତ୍ରେ ତାଙ୍କୁ ଗିରଫ କରାଗଲା । ଏହାଦ୍ୱାରା ଆନ୍ଦୋଳନ ତୀବ୍ର ରୂପ ଧାରଣ କରିବାରୁ ସରକାର ଦମନମୂଳକ ନୀତି ଆରମ୍ଭ କଲେ । କେତେକ ସ୍ଥାନରେ ହିଂସାତ୍ମକ କାଣ୍ଡ ଘଟିବାରୁ ଗାନ୍ଧିଜୀ ୧୯୩୩ ମସିହା ଜୁଲାଇ ୧୪ ତାରିଖରେ ଆଇନ ଅମାନ୍ୟ ଆନ୍ଦୋଳନକୁ ବନ୍ଦ କରିବାକୁ ନିର୍ଦ୍ଦେଶ ଦେଲେ ।

ଅଗଷ୍ଟ ୧୯୪୨ ମସିହାରେ ଜାତୀୟ କଂଗ୍ରେସ ଦ୍ୱାରା ଭାରତଛାଡ଼ ଆନ୍ଦୋଳନ ଡାକରା ଦିଆଗଲା । ଅଗଷ୍ଟ ମାସରେ ଏହି ବିପ୍ଳବ ହୋଇଥିବାରୁ ଏହାକୁ ଅଗଷ୍ଟ ବିପ୍ଳବ ମଧ୍ୟ କୁହାଯାଇଥାଏ । ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଯାଇଥାଏ । ଭାରତୀୟମାନଙ୍କୁ ବ୍ରିଟିଶ ସରକାର ସପକ୍ଷରେ ଲଢ଼ିବାକୁ ଏକ ବାତାବରଣ ସୃଷ୍ଟି ପାଇଁ ସାର୍ ଷ୍ଟାଫୋର୍ଡ଼ କ୍ରିପ୍‌ସ ୧୯୪୨ ମାର୍ଚ୍ଚ ୨୨ ତାରିଖରେ ଭାରତ ଆସିଥିଲେ । ସେ ଭାରତର ବିଭିନ୍ନ ନେତାଙ୍କ ସହିତ ଆଲୋଚନା କରି କହିଲେ– ଯୁଦ୍ଧ ପରେ ଭାରତ ପାଇଁ ଏକ ସ୍ୱାୟତ୍ତ ଶାସନ ବ୍ୟବସ୍ଥା କରାଯିବ ଓ ଭାରତର ନିର୍ବାଚିତ ପ୍ରତିନିଧି ଏଥିରେ ସଦସ୍ୟ ରହିବେ । ତାଙ୍କର ଏହି ପ୍ରସ୍ତାବ ଉଭୟ କଂଗ୍ରେସ ଓ ମୁସଲିମ୍‌ଲିଗ୍ ଦ୍ୱାରା ଗ୍ରହଣୀୟ ହୋଇ ନ ଥିଲା । ଗାନ୍ଧିଜୀ ପ୍ରସ୍ତାବ ଦେଇ କହିଥିଲେ, ଜାପାନର ଫାଶିବାଦୀ ସରକାରକୁ କେବଳ ସ୍ୱାଧୀନ ଭାରତ ବିରୋଧ କରିପାରେ । ତେଣୁ ଭାରତର ସ୍ୱାଧୀନତା ଉପରେ ସେ ଗୁରୁତ୍ୱ ଦେବାରୁ

ଇଂରେଜ ଶାସକ ଏହାକୁ ମାନି ନ ଥିଲେ । କଂଗ୍ରେସ କାର୍ଯ୍ୟକାରୀ କମିଟିର ଏକ ସଭା ୱାର୍ଦ୍ଧାଠାରେ ୧୯୪୨ ମସିହା ଜୁଲାଇ ୧୪ ତାରିଖରେ ବସି 'ଭାରତଛାଡ଼' ପ୍ରସ୍ତାବ ଗୃହୀତ ହେଲା । ବମ୍ବେ ଅଧିବେଶନରେ ଏହା କାର୍ଯ୍ୟକାରୀ ହେବାକୁ ସ୍ଥିର ହେଲା । ପ୍ରଥମଥର ପାଇଁ ଗାନ୍ଧିଜୀ 'କର ବା ମର' ନୀତିରେ କାର୍ଯ୍ୟପନ୍ଥା ଗ୍ରହଣ କରିବାକୁ ଆହ୍ୱାନ ଦେଲେ ! ଅଗଷ୍ଟ ୯ ତାରିଖରେ ଗାନ୍ଧିଜୀଙ୍କ ସମେତ ବହୁ ନେତା ଗିରଫ ହେଲେ । ବ୍ରିଟିଶ୍ ସରକାରଙ୍କ ଦମନଲୀଳା ଅବ୍ୟାହତ ରହିଲା । ଏହାଦ୍ୱାରା ସ୍କୁଲ ଓ କଲେଜକୁ ଛାତ୍ରମାନେ ଗଲେ ନାହିଁ; ସରକାରୀ କର୍ମଚାରୀ ଅଫିସ ଗଲେ ନାହିଁ କିମ୍ବା ଶ୍ରମିକ କଳକାରଖାନାକୁ ଗଲେ ନାହିଁ । ଶାନ୍ତିପୂର୍ଣ୍ଣ ଭାବରେ ଏହି ଆନ୍ଦୋଳନ ଆରମ୍ଭ ହୋଇଥିଲେହେଁ, ଇଂରେଜମାନଙ୍କ ଅମାନୁଷିକ ଆଚରଣ ପାଇଁ କେତେକ ସ୍ଥାନରେ ରେଳଷ୍ଟେସନ, ପୋଷ୍ଟଅଫିସ ଓ ଥାନାମାନଙ୍କରେ ନିଆଁ ଲଗାଇ ଦିଆଗଲା । 'ଭାରତଛାଡ଼' ଆନ୍ଦୋଳନକୁ ମୁସ୍‌ଲିମ୍‌ଲିଗ ଓ କମ୍ୟୁନିଷ୍ଟମାନେ ସମର୍ଥନ କରୁନଥିଲେ । ଜିନ୍ନା ସେତେବେଳେ ଇଂରେଜଙ୍କ ସହାୟତାରେ ମୁସଲମାନମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ରାଷ୍ଟ୍ର ଗଠନର ପକ୍ଷପାତୀ ଥିଲେ । କମ୍ୟୁନିଷ୍ଟମାନେ ରୁଷିଆର ଆଦର୍ଶ ଅନୁସରଣ କରୁଥିବାରୁ ଓ ସେତେବେଳେ ୨ୟ ବିଶ୍ୱଯୁଦ୍ଧରେ ରୁଷିଆ ଓ ଇଂଲଣ୍ଡ ଗୋଟିଏ ସାମରିକ ଶକ୍ତି ରୂପେ ଲଢୁଥିବାରୁ ଭାରତ ଛାଡ଼ ଆନ୍ଦୋଳନକୁ କମ୍ୟୁନିଷ୍ଟମାନେ ସମର୍ଥନ କରୁନଥିଲେ ।

୧୯୪୫ ମସିହା ଜୁଲାଇ ମାସରେ ବ୍ରିଟେନ୍‌ରେ ଶ୍ରମିକଦଳ ଶାସନ କ୍ଷମତାକୁ ଆସିଲା । ଏହି ଦଳ ଭାରତ ସ୍ୱାଧୀନତାର ସଂଗ୍ରାମ ପ୍ରତି ପୂର୍ବରୁ ସମ୍ବେଦନା ଜଣାଉଥିଲା । ଆଟଲି ପ୍ରଧାନମନ୍ତ୍ରୀ ହେବାରୁ ୧୯୪୬ ମସିହାରେ କ୍ୟାବିନେଟ ମିଶନ୍ ପ୍ଲାନ ଗଠନ କରିଥିଲେ । ମାର୍ଚ୍ଚ ୧୯୪୬ରେ ଏହି କମିଶନ୍ ସ୍ୱତନ୍ତ୍ର ପାକିସ୍ଥାନ ଗଠନକୁ ସମର୍ଥନ କରି ନ ଥିଲା । ସେହି ପ୍ରସ୍ତାବକୁ ମୁସଲମାନ ସମ୍ପ୍ରଦାୟ ଗ୍ରହଣ କରିପାରିଲେ ନାହିଁ । ଭାରତରେ ଗୋଟିଏ ସାମ୍ବିଧାନିକ ସଭା ଗଠନ କରାଗଲା ଓ ଏଥିରେ ଡଃ ରାଜେନ୍ଦ୍ରପ୍ରସାଦ ରାଷ୍ଟ୍ରପତି ରୂପେ କାର୍ଯ୍ୟ କଲେ । ଡଃ ଭୀମରାଓ ଆମ୍ବେଦକର ଡ୍ରାଫ୍‌ଟିଙ୍ଗ କମିଟିର ଚେୟାରମ୍ୟାନ ରୂପେ ନିର୍ବାଚିତ ହେଲେ । ଫେବୃଆରୀ ୧୯୪୭ରେ ମାଉଣ୍ଟବ୍ୟାଟେନ ଭାରତର ଗଭର୍ଣ୍ଣର ଜେନେରାଲ ଓ ଭାଇସ୍‌ରାୟ ଭାବରେ ନିଯୁକ୍ତି ପାଇ ଆସିଲେ । ତାଙ୍କ ମଧ୍ୟସ୍ଥତାରେ କଂଗ୍ରେସ ଏବଂ ମୁସଲିମ୍‌ଲିଗ୍ ବହୁ ଆଲୋଚନା ପରେ ଭାରତକୁ ଭାଗ ଭାଗ କରିବାକୁ ମନସ୍ଥ କଲେ । ଏହାପରେ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଭାରତ ସ୍ୱାଧୀନତା ଲାଭ କଲା ଓ ୧୯୫୦ ମସିହା ୨୬ ଜାନୁଆରୀ ଠାରୁ ନୂତନ ସମ୍ବିଧାନ ଭାରତରେ କାର୍ଯ୍ୟକାରୀ ହେଲା ।

ବହୁ ସଂଗ୍ରାମ ଓ ସାଧନାର ଫଳଶ୍ରୁତି ଭାରତର ସ୍ୱାଧୀନତା । ଏହି ସ୍ୱାଧୀନତା ଲାଭ କରିବା ପାଇଁ ଯେଉଁ ସଂଗ୍ରାମୀମାନେ ଜୀବନପାତ କରିଛନ୍ତି, ସେମାନେ ସବୁଦିନ ପାଇଁ ଭାରତ ଇତିହାସରେ ଚିରଞ୍ଜୀବୀ ହୋଇ ରହିବେ । ସ୍ୱାଧୀନତା ଲାଭ ପରେ ଭାରତ ଏକ ଗଣତନ୍ତ୍ର ଦେଶରେ ପରିଣତ ହୋଇଛି । ଶାସନ କ୍ଷମତା ଇଂରେଜମାନଙ୍କ ହାତରୁ ଭାରତୀୟମାନଙ୍କ ହାତକୁ ଆସିଛି । ନିଜକୁ ନିଜେ ଗଢ଼ିବାର ଅଧିକାର ଲାଭ କରିଛି । ସଂଗ୍ରାମର ସେହି ଦିନଗୁଡ଼ିକ ଆଜି ଅତୀତର

ସ୍ମୃତି । ସେଦିନର ଅବସ୍ଥା ହୁଏତ ଆଜି ଆମେ ପରିକଳ୍ପନା କରିପାରିବା ନାହିଁ । ତଥାପି ସ୍ୱାଧୀନତାର ସେହି ଅମୃତ ଫଳକୁ ଅବାଞ୍ଛିତ ଭାବରେ ପରିତ୍ୟାଗ ନ କରି ତାକୁ ସାଇତି ରଖିବା ଭାରତୀୟ ନାଗରିକ ଭାବରେ ଆମର ସର୍ବପ୍ରଥମ କର୍ତ୍ତବ୍ୟ ।

●

# ଭାରତର ପଞ୍ଚଶୀଳ ନୀତି

**(ଉପକ୍ରମ, ପଞ୍ଚଶୀଳ କ'ଣ ?, ଏହାର ଆବଶ୍ୟକତା ଓ ଉଦ୍ଦେଶ୍ୟ, ବିଶ୍ୱଶାନ୍ତି ପରିପ୍ରେକ୍ଷୀରେ ପଞ୍ଚଶୀଳର ଭୂମିକା, ଉପସଂହାର)**

ମଣିଷ ପୃଥିବୀରେ ଶାନ୍ତିରେ ବଞ୍ଚିବାକୁ ଚାହେଁ । ଆଦିମ ମଣିଷ ବଣଜଙ୍ଗଲରେ ବସବାସ କରୁଥିବା ସମୟରେ ସାମାନ୍ୟମାତ୍ର ଘଟଣାକୁ କେନ୍ଦ୍ରକରି ପରସ୍ପର ମଧ୍ୟରେ ଗଣ୍ଡଗୋଳ ଲାଗି ଯାଉଥିଲା । ଦୁର୍ବଳ ଉପରେ ସବଳର ଆକ୍ରମଣ ଆଦିମ ମଣିଷକୁ ସମାଜ ସୃଷ୍ଟି ନିମିତ୍ତ ପ୍ରେରଣା ଦେଇଥିଲା । ନିଜର ନିରାପତ୍ତା ନିମିତ୍ତ ମଣିଷ ଗଠନ କରିଥିଲା ସମାଜ । ସମାଜର ନିରାପତ୍ତା ଯୋଗୁଁ ମଣିଷ ଶାନ୍ତି ଓ ସହୃଦୟତାର ସହିତ ବଞ୍ଚିବାକୁ ପ୍ରେରଣା ପାଇଥିଲା । ସମୟକ୍ରମେ ବିଜ୍ଞାନର ଆବିଷ୍କାର ଫଳରେ ମଣିଷ ଗୋଟିଏ ପରେ ଗୋଟିଏ ଉନ୍ନତିର ପାହାଚ ଅତିକ୍ରମ କରିବାକୁ ସମର୍ଥ ହେଲା । ଧୀରେ ଧୀରେ ମଣିଷ ହେଲା ବସ୍ତୁବାଦୀ । ଅନ୍ୟ ଉପରେ ପ୍ରଭାବ ବିସ୍ତାର କରିବାର ମନୋବୃତ୍ତି ଯୋଗୁଁ ବିଜ୍ଞାନର ଅପପ୍ରୟୋଗ କରିବାକୁ ଲାଗିଲା । ଏଥିପାଇଁ ଆରମ୍ଭ ହେଲା ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ଯୁଦ୍ଧ । ଅସ୍ତ୍ରଶସ୍ତ୍ରରେ ଶକ୍ତିଶାଳୀ ରାଷ୍ଟ୍ର ଦୁର୍ବଳ ରାଷ୍ଟ୍ର ଉପରେ ଆକ୍ରମଣ କରି ତାକୁ ପରାଧୀନ କଲା । ପୁଣି ସ୍ୱାଧୀନତା ଲାଭ ନିମିତ୍ତ ଚାଲିଲା ପ୍ରତିଯୋଗିତା । ଏହି ପ୍ରକ୍ରିୟାରେ ଶାନ୍ତିପ୍ରିୟ ମଣିଷ ଅବସାଦଗ୍ରସ୍ତ ହୋଇଯିବାକୁ ଲାଗିଲା । ବିଶ୍ୱକୁ ଆସନ୍ନ ବିପଦରୁ ରକ୍ଷା କରିବା ପାଇଁ ପ୍ରଣୟନ କରାଗଲା ବିଭିନ୍ନ ଯୋଜନା । ଭାରତ ମଧ୍ୟ ସ୍ୱାଧୀନତା ଲାଭ ପରେ ବିଶ୍ୱରେ ଶାନ୍ତି ପ୍ରତିଷ୍ଠା ନିମିତ୍ତ ଏହି ଉଦ୍ୟମରେ ନିଜକୁ ସାମିଲ କଲା । ଭାରତର ଶାନ୍ତିପୂର୍ଣ୍ଣ ନୀତି ମୁଖ୍ୟତଃ ପଞ୍ଚଶୀଳ ନାମରେ ଖ୍ୟାତ ।

ବିଶ୍ୱର ରାଜନୀତି ଓ ବୈଦେଶିକ ନୀତି ପ୍ରତିମୁହୂର୍ତ୍ତରେ ପରିବର୍ତ୍ତନଶୀଳ । ଗୋଟିଏ ଦେଶର ବୈଦେଶିକ ନୀତିରେ ସେ ଦେଶର ଆଦର୍ଶବତ୍ତା ଓ ଉଦ୍ଦେଶ୍ୟ ପ୍ରତିଫଳିତ ହୋଇଥାଏ । ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ବିଶ୍ୱର ରାଜନୀତିକୁ ଲକ୍ଷ୍ୟକରି ଭାରତର ବୈଦେଶିକ ନୀତି ପାଇଁ କେତେକ ନୀତି ପ୍ରଣୟନ କରିଥିଲେ । ଏହାର ନାମ ପଞ୍ଚଶୀଳ । ଏଥିରୁ ବିଶ୍ୱପ୍ରତି ଭାରତର ଆଭିମୁଖ୍ୟ ସ୍ପଷ୍ଟ ହୋଇଥାଏ । ମୁଖ୍ୟତଃ ତାଙ୍କର ପଞ୍ଚଶୀଳ ନୀତିରେ ଗାନ୍ଧିଜୀଙ୍କ ଆଦର୍ଶ ପ୍ରତିଫଳିତ । ବିଶ୍ୱଶାନ୍ତି ପାଇଁ ମଧ୍ୟ ଏହି ପାଞ୍ଚଟି ନୀତିର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ସେଗୁଡ଼ିକ ହେଲା—୧-Peaceful coexistence ବା ଶାନ୍ତିପୂର୍ଣ୍ଣ ସହାବସ୍ଥାନ ୨-non-interference ବା କୌଣସି ରାଷ୍ଟ୍ରର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ ନ କରିବା

୩-Mutual respect for each other's territorial integrity and Sovereignty ବା ଅନ୍ୟ ଦେଶର ସାର୍ବଭୌମତ୍ୱ ଓ ଅଖଣ୍ଡତା ପ୍ରତି ସମ୍ମାନ ପ୍ରଦର୍ଶନ କରିବା ୪-non-aggression ବା ପାରସ୍ପରିକ ଅନାକ୍ରମଣ ୫-non-alignment or neutrality, ନିରପେକ୍ଷତା ବା ସମସ୍ତଙ୍କ କଲ୍ୟାଣ ପାଇଁ କାର୍ଯ୍ୟ କରିବା । ଭାରତର ଏହି ପାଞ୍ଚଟି ନୀତିକୁ ପଣ୍ଡିତ ନେହେରୁ ପଞ୍ଚଶୀଳ ନାମରେ ଅଭିହିତ କରିଥିଲେ । ୧୯୫୫ ମସିହାରେ ଅନୁଷ୍ଠିତ ଆଲୋଚନା ସଭାରେ ଆଫ୍ରିକା ଓ ଏସିଆର ୨୯ଟି ଦେଶ ନିର୍ବିବାଦରେ ଭାରତର ପଞ୍ଚଶୀଳକୁ ସମର୍ଥନ ଜ୍ଞାପନ କରିଥିଲେ । ଏପରିକି ରୁଷିଆ, ଯୁଗୋସ୍ଲୋଭିଆ, ପୋଲାଣ୍ଡ, ଅଷ୍ଟ୍ରିଆ ଆଦି ଦେଶଗୁଡ଼ିକ ମଧ ଏଥିପ୍ରତି ନିଜର ସମର୍ଥନ ପ୍ରଦାନ କରିଥିଲେ । ଏହି ପାଞ୍ଚଟି ନୀତି ମଧରେ ବିଶ୍ୱର ସମସ୍ତ ରାଷ୍ଟ୍ରର ସ୍ୱାର୍ଥ ଜଡ଼ିତ ଥିବାରୁ ଭାରତର ଏହି ନୀତି ବହୁସ୍ଥାନରେ ପ୍ରଶଂସା ଲାଭ କରିଛି । ସ୍ନେହ, ପ୍ରୀତି ଓ ଶ୍ରଦ୍ଧାର ମନ୍ଦାକିନୀଧାରା ପ୍ରବାହ କ୍ଷେତ୍ରରେ ପଞ୍ଚଶୀଳର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ । ପରୋକ୍ଷରେ କହିଲେ ଉପରୋକ୍ତ ପାଞ୍ଚୋଟି ନୀତି ହେଉଛି ଭାରତର ମୁଖ୍ୟ ବୈଦେଶିକ ନୀତି ।

ଇତିମଧ୍ୟରେ ବିଶ୍ୱରେ ଦୁଇଦୁଇଟି ବିଶ୍ୱଯୁଦ୍ଧ ସଂଘଟିତ ହୋଇଯାଇଛି । ମଣିଷ ଅନୁଭବ କରିଛି ମଣିଷର ନୃଶଂସତା ଓ ଦାନବତାକୁ । ବିଶ୍ୱରୁ ଶାନ୍ତି ଏବଂ ପ୍ରୀତି ଲୋପ ହୋଇଯାଇଛି ବୋଲି ତା'ର ଧାରଣା ସୃଷ୍ଟି ହୋଇଛି । ବିଜ୍ଞାନ ମଣିଷକୁ କିପରି କ୍ରୁର ଏବଂ ପ୍ରତିଶୋଧପରାୟଣ କରିପାରେ, ତା'ର ଜ୍ୱଳନ୍ତ ନିଦର୍ଶନ ଦୁଇଦୁଇଟି ବିଶ୍ୱଯୁଦ୍ଧ । ଏହି ପରିପ୍ରେକ୍ଷୀରେ ଶାନ୍ତିର ବାର୍ତ୍ତା ପ୍ରଚାର କରିବା ଆଜି ବିଶ୍ୱର ମୁଖ୍ୟ କର୍ତ୍ତବ୍ୟ ହୋଇପଡ଼ିଛି । ପରସ୍ପର ପ୍ରତି ସହାନୁଭୂତିଶୀଳ ହେବା, ଅନ୍ୟର ବିପଦରେ ସହାୟତା ପ୍ରଦାନ କରିବା ମଣିଷର ଶ୍ରେଷ୍ଠ କର୍ତ୍ତବ୍ୟ । ଆମେ ଆଜି ମଣିଷର ସେହି କର୍ତ୍ତବ୍ୟକୁ ସମ୍ପୂର୍ଣ୍ଣ ବିସ୍ମୃତ ହୋଇଛୁ । ଅନ୍ୟ ଉପରେ ଆଧିପତ୍ୟ ବିସ୍ତାର କରିବାର ନିଶା ମଣିଷକୁ ପାଗଳ କରିଛି । ଏପରି ଆଚରଣ ବିଶ୍ୱର ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଓ ପ୍ରଗତିର ସମ୍ପୂର୍ଣ୍ଣ ପରିପନ୍ଥୀ । ବିଶ୍ୱର ସାମ୍ପ୍ରତିକ ଅବସ୍ଥାରେ ଭାରତର ପଞ୍ଚଶୀଳ ନୀତିର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ ମନେହୁଏ । ଯଦି ସମଗ୍ର ବିଶ୍ୱ ଭାରତର ଏହି ନୀତିକୁ ଗ୍ରହଣ କରି ନେଇପାରନ୍ତା ତେବେ ତୃତୀୟ ବିଶ୍ୱଯୁଦ୍ଧର ଆଶଙ୍କାକୁ ସହଜରେ ଏଡ଼ାଇ ଦିଆଯାଇପାରନ୍ତା । ଏହାଦ୍ୱାରା ମଣିଷ ମଣିଷ, ରାଷ୍ଟ୍ର ରାଷ୍ଟ୍ର ମଧରେ ରହିଥିବା ଅସୂୟା ଓ ବିଭେଦକୁ ଦୂର କରିବା ସହଜସାଧ ମନେହୁଏ । ସମସ୍ତଙ୍କର ବଞ୍ଚିବାର ସମାନ ଅଧିକାର ରହିଛି । କାହାର ଅଧିକାର ଉପରେ ହସ୍ତକ୍ଷେପ କଲେ, ସେ ପ୍ରତିକ୍ରିୟାଶୀଳ ହେବା ଅବଶ୍ୟମ୍ଭାବୀ । ପଞ୍ଚଶୀଳର ଶାନ୍ତିପୂର୍ଣ୍ଣ ସହାବସ୍ଥାନ ନୀତି ମୁଖ୍ୟତଃ ସମସ୍ତ ମଣିଷଙ୍କୁ ଶାନ୍ତିପୂର୍ଣ୍ଣ ଭାବରେ ବଞ୍ଚିବାକୁ ସାହାଯ୍ୟ କରିପାରିବ । ଗୋଟିଏ ଦେଶ ନିଜର ସୁବିଧା ନିମିତ୍ତ କେତେକ ଆଭ୍ୟନ୍ତରୀଣ ନୀତି ଧାର୍ଯ୍ୟ କରିଥାଏ । ଏହା ତା'ର ଶାସନନୀତିକୁ ପ୍ରଶାସନିକ ବ୍ୟାପାରରେ ସହାୟତା କରେ । ଅନ୍ୟ ଗୋଟିଏ ରାଷ୍ଟ୍ରର କୌଣସି ଅଧିକାର ନାହିଁ, ତା'ର ପଡ଼ୋଶୀ ବା ଅନ୍ୟ ରାଷ୍ଟ୍ରର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ କରିବା । ଏହାଦ୍ୱାରା ପରସ୍ପର ପ୍ରତି ସନ୍ଦେହ ଭାବ ସୃଷ୍ଟି ହୋଇଥାଏ ଓ ଶତ୍ରୁତାର ମୂଳଦୁଆ ପଡ଼େ । ତେଣୁ ଗୋଟିଏ ରାଷ୍ଟ୍ର ଅନ୍ୟ ରାଷ୍ଟ୍ରର ଆଭ୍ୟନ୍ତରୀଣ ବ୍ୟାପାର କ୍ଷେତ୍ରରେ ମୁଣ୍ଡ ଖେଳାଇବା ସମ୍ପୂର୍ଣ୍ଣ ଅନୁଚିତ । ଗୋଟିଏ ସ୍ୱାଧୀନ

ରାଷ୍ଟ୍ର ସର୍ବଦା ତା'ର ଅଖଣ୍ଡତା ଓ ସାର୍ବଭୌମତ୍ୱ ରକ୍ଷା ଦିଗରେ ଗୁରୁତ୍ୱ ଆରୋପ କରିଥାଏ । ସେହିଠାରେ ହିଁ ରାଷ୍ଟ୍ରର ମର୍ଯ୍ୟାଦା ରକ୍ଷିତ ହୋଇଥାଏ, ଯେଉଁଠାରେ ତା'ର ଅଖଣ୍ଡତା ଏବଂ ସାର୍ବଭୌମତ୍ୱ ସୁରକ୍ଷିତ । ଗୋଟିଏ ରାଷ୍ଟ୍ରର ଏହି ଅଖଣ୍ଡତା ଓ ସାର୍ବଭୌମତ୍ୱ ଉପରେ ଅନ୍ୟରାଷ୍ଟ୍ରର ମୁଣ୍ଡ ଖେଳାଇବା ଅନାବଶ୍ୟକ । ବରଂ ତା'ର ସୁରକ୍ଷା ପ୍ରତି ସମ୍ମାନ ତଥା ସମ୍ବେଦନଶୀଳ ଆଚରଣ ପ୍ରଦର୍ଶନ କଲେ ଦେଶ ଦେଶ ମଧ୍ୟରେ ସହଯୋଗ ତଥା ସଦ୍‌ଭାବ ବୃଦ୍ଧି ପାଇଥାଏ । ଶାନ୍ତିପୂର୍ଣ୍ଣ ବାତାବରଣ ସୃଷ୍ଟି ହୋଇଥାଏ । ଅତୀତରେ ଯୁଦ୍ଧଖୋର ନୀତି ମାନବ ସଭ୍ୟତାକୁ ସଙ୍କଟର ଗହ୍ୱରକୁ ଟାଣି ନେଇଛି । ଏହାଦ୍ୱାରା ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ଶତ୍ରୁତା ବୃଦ୍ଧି ପାଇଛି । ଅନେକ ମୂଲ୍ୟବାନ ଜୀବନ ଅକାଳରେ ବିନଷ୍ଟ ହୋଇଛି । ମଣିଷର ଅପରିଣାମଦର୍ଶିତାର ପ୍ରକୃତ ଦୃଷ୍ଟାନ୍ତ ହେଉଛି ଯୁଦ୍ଧ । ତେଣୁ ପ୍ରତ୍ୟେକ ରାଷ୍ଟ୍ର ଅନ୍ୟ ରାଷ୍ଟ୍ର ଉପରେ ଆକ୍ରମଣ ନ କରିବାକୁ ପ୍ରତିଶ୍ରୁତିବଦ୍ଧ ହେବା ଆବଶ୍ୟକ । ଏହାଦ୍ୱାରା ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ବିଶ୍ୱାସର ବାତାବରଣ ସୃଷ୍ଟି ହୋଇ ପାରିବ ଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ପ୍ରତିଷ୍ଠା ହୋଇପାରିବ । ଯୁଦ୍ଧ ପାଇଁ ଆବଶ୍ୟକୀୟ ଅସ୍ତ୍ରଶସ୍ତ୍ରର ଖର୍ଚ୍ଚ ମାନବର କଲ୍ୟାଣ ନିମିତ୍ତ ବ୍ୟୟ କରାଯାଇପାରିଲେ, ଦେଶରୁ କ୍ଷୁଧାକୁ ଦୂର କରାଯାଇ ପାରିବ ଓ ଆର୍ଥିକ ପ୍ରଗତି ସମ୍ଭବ ହୋଇପାରିବ । ନିରପେକ୍ଷ ଭାବରେ ସମଗ୍ର ବିଶ୍ୱର କଲ୍ୟାଣ ପାଇଁ କାର୍ମ୍ୟ କଲେ ପୃଥିବୀରେ ରାମରାଜ୍ୟର ପ୍ରତିଷ୍ଠା ହୋଇପାରିବ । ଦେଶ ହେବ ସମୃଦ୍ଧିଶାଳୀ । ସଂଘର୍ଷର ଅବସାନ ଘଟିବ ଏବଂ ଯେଉଁ ମୂଲ୍ୟବୋଧରେ ସଙ୍କଟ ଦେଖାଯାଇଛି, ତା'ର ମଧ ଅବସାନ ହେବ । ଏହି ଉଦ୍ଦେଶ୍ୟ ନେଇ ଭାରତର ପଞ୍ଚଶୀଳ ନୀତି ସୃଷ୍ଟି ହୋଇଛି । ଏହାର ଲକ୍ଷ୍ୟ ସମଗ୍ର ମାନବ ସମାଜର କଲ୍ୟାଣସାଧନ । ଉଦ୍ଦେଶ୍ୟ ପୃଥିବୀରୁ ଯୁଦ୍ଧର ଭୟଙ୍କରତା ଦୂର ।

ବିଶ୍ୱଶାନ୍ତି ପାଇଁ ମିଳିତ ଜାତିସଂଘ ସୃଷ୍ଟି ହୋଇଛି । ପ୍ରଥମ ବିଶ୍ୱଯୁଦ୍ଧ ପରେ ଗଠିତ ହୋଇଥିଲା ଲିଗ୍ ଅଫ ନେସନ୍ । ଏହା କୌଣସି ଆଖଦୃଶିଆ କାର୍ଯ୍ୟ କରିବା ପୂର୍ବରୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଯାଇଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧର ଭୟଙ୍କର ରୂପ ସମଗ୍ର ମାନବ ସମାଜକୁ ସ୍ତବ୍ଧ କରିଦେଇଥିଲା । ପୃଥିବୀର ମଣିଷମାନଙ୍କ ମଧ୍ୟରେ ଶାନ୍ତି ଏବଂ ପ୍ରୀତିର ବାର୍ତ୍ତା ପ୍ରଚାର ପାଇଁ ସୃଷ୍ଟି ହେଲା ମିଳିତ ଜାତିସଂଘ । ଠିକ୍ ସେହିପରି ଭାରତର ପଞ୍ଚଶୀଳ ନୀତି ପାରସ୍ପରିକ ବୁଝାମଣା ଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ପାଇଁ ଉଦ୍ଦିଷ୍ଟ । ଅନେକ ସାମ୍ରାଜ୍ୟବାଦୀ ରାଷ୍ଟ୍ର ଏବେ ମଧ୍ୟ ଅନ୍ୟ ଉପରେ ନିଜର ବଡ଼ଭାଇପଣିଆ ସାବ୍ୟସ୍ତ କରିବାକୁ ଉନ୍ମୁଖ । ଏହାଦ୍ୱାରା ବିଶ୍ୱଶାନ୍ତି ବ୍ୟାହତ ହେଉଛି । ମାରଣାସ୍ତ୍ର ନିର୍ମାଣରେ ପ୍ରଚୁର ଅର୍ଥ ବ୍ୟୟ କରାଯାଉଛି । ଏହି ଅର୍ଥକୁ ମଣିଷର ମଙ୍ଗଳ ପାଇଁ ଖର୍ଚ୍ଚ କରାଯାଇପାରିଲେ, ପୃଥିବୀରୁ କ୍ଷୁଧା ଓ ରୋଗକୁ ଦୂର କରାଯାଇପାରନ୍ତା । ବିଶ୍ୱକୁ ସବୁ କ୍ଷେତ୍ରରେ ପ୍ରଗତି କରାଯାଇପାରନ୍ତା । ତେଣୁ ପଞ୍ଚଶୀଳ ନୀତି ଆଜି ସମଗ୍ର ବିଶ୍ୱଦ୍ୱାରା ଗୃହୀତ ହୋଇପାରିଲେ ପୃଥିବୀ ହୁଅନ୍ତା ଯୁଦ୍ଧମୁକ୍ତ; ଶାନ୍ତି ଓ ପ୍ରୀତିର ଝରଣା ବିଶ୍ୱକୁ କରନ୍ତା ପୁଲକିତ; ବିଶ୍ୱଭ୍ରାତୃତ୍ୱର ବନ୍ଧନ ହୁଅନ୍ତା ସୁଦୃଢ଼ । ପାରସ୍ପରିକ ବୁଝାମଣା ନିମିତ୍ତ ପଥ ପରିଷ୍କାର ହୋଇପାରନ୍ତା । ସମଗ୍ର ବିଶ୍ୱ ବସୁଧୈବ କୁଟୁମ୍ବକମ୍ ନୀତିରେ ଅନୁପ୍ରାଣିତ ହୋଇ ପାରସ୍ପରିକ ସୁଖ ଦୁଃଖରେ ସହାନୁଭୂତିଶୀଳ ହୋଇପାରନ୍ତେ ।

ବିଶ୍ୱକୁ ଯୁଦ୍ଧଭୟରୁ ରକ୍ଷା କରିବା ପାଇଁ ବିଶ୍ୱର ସମସ୍ତ ଚିନ୍ତାଶୀଳ ବ୍ୟକ୍ତି ଉଦ୍‌ବିଗ୍ନ । କେବଳ ମାତ୍ର ଅବିଶ୍ୱାସଭାବ ଓ ସାମ୍ରାଜ୍ୟବିସ୍ତାର ନୀତି ଯୋଗୁଁ ଶାନ୍ତି ବ୍ୟାହତ ହେଉଛି । ମଣିଷ ପ୍ରତି ମଣିଷର ଯେଉଁ ସହାନୁଭୂତି ଓ ଦରଦ ରହିବା କଥା, ତାହା ରହିପାରୁ ନାହିଁ । କଳୁଷିତ ବାତାବରଣ ମଧ୍ୟରେ ବିଶ୍ୱ ଆଜି ଅଣନିଃଶ୍ୱାସୀ । ଏହି ପରିପ୍ରେକ୍ଷୀରେ ପୁଣି ଶାନ୍ତି ଓ ସଦ୍ଭାବ ଫେରାଇ ଆଣିବା ଆଜି ସମଗ୍ର ମାନବସମାଜର ମୁଖ୍ୟ କର୍ତ୍ତବ୍ୟ ହୋଇପଡ଼ିଛି । ଏଥିପାଇଁ କେତେଗୁଡ଼ିଏ ନୀତିର ପ୍ରଣୟନ ଆବଶ୍ୟକ ରହିଛି । ଯଦି ବିଶ୍ୱ ଭାରତର ପଞ୍ଚଶୀଳ ନୀତିକୁ ସହୃଦୟତାର ସହିତ ଗ୍ରହଣ କରିପାରନ୍ତା, ତେବେ ବିଶ୍ୱରେ ନିଶ୍ଚିତ ଭାବରେ ଶାନ୍ତି ପ୍ରତିଷ୍ଠିତ ହୋଇପାରନ୍ତା । ମନୁଷ୍ୟ ମନୁଷ୍ୟର ଶତ୍ରୁ ନ ହୋଇ ମିତ୍ର ହୁଅନ୍ତା । ବିଶ୍ୱ ଧ୍ୱଂସ ପାଇଁ ପାଗଳ ମଣିଷ ପୁଣି ବିଶ୍ୱର ସୁରକ୍ଷା ପାଇଁ ଉଦ୍‌ବିଗ୍ନ ହୁଅନ୍ତା । ବିଜ୍ଞାନକୁ ମାନବସମାଜର ଅପକାର ପାଇଁ ବ୍ୟବହାର କରିବା ପରିବର୍ତ୍ତେ ସମଗ୍ର ମାନବ ସଭ୍ୟତାର ମଙ୍ଗଳ ଉଦ୍ଦେଶ୍ୟରେ ଲଗାଇ ପାରନ୍ତା । ଏହାଦ୍ୱାରା ଏକ କ୍ଷୁଧାମୁକ୍ତ ଓ ରୋଗମୁକ୍ତ ପୃଥିବୀ ଗଠନ ହୋଇପାରନ୍ତା । ସଂକୀର୍ଣ୍ଣ ଚିନ୍ତାଧାରା କବଳରୁ ମୁକ୍ତ ହୋଇ ମହାମାନବିକ ଚିନ୍ତାଧାରାଦ୍ୱାରା ମଣିଷସମାଜ ଉଦ୍‌ବୁଦ୍ଧ ହୁଅନ୍ତା । ସାମ୍ପ୍ରତିକ ପରିପ୍ରେକ୍ଷୀରେ ତେଣୁ ପଞ୍ଚଶୀଳ ନୀତିର ଉପଯୋଗିତା ଅକଳନୀୟ ।



## ଉତ୍କଳ ସମ୍ମିଳନୀ ଓ ଉତ୍କଳପ୍ରଦେଶ ଗଠନ

**(ଉପକ୍ରମ, ଉତ୍କଳ ସମ୍ମିଳନୀ ଗଠନର ଇତିହାସ, ଉଦ୍ଦେଶ୍ୟ, ଉତ୍କଳ ସମ୍ମିଳନୀ ଓ ଉତ୍କଳ ପ୍ରଦେଶ ଗଠନ, ସାମ୍ପ୍ରତିକ ପରିପ୍ରେକ୍ଷୀରେ ଉତ୍କଳ ସମ୍ମିଳନୀର ଆଭିମୁଖ୍ୟ ଓ ଉତ୍କଳପ୍ରଦେଶର ଭବିଷ୍ୟତ ନୀତି, ଉପସଂହାର)**

ଗୋଟିଏ ଜାତି ବଡ଼ ହୋଇଥାଏ ତା'ର ଭାଷା ଓ ଦେଶକୁ ନେଇ । ଭାଷା ସୁରକ୍ଷିତ ରହି ନ ପାରିଲେ, ଦେଶର ଭୌଗୋଳିକ ସ୍ଥିତି ନିର୍ଦ୍ଦିଷ୍ଟ ହୋଇ ନ ପାରିଲେ, ଦେଶର ସାମୂହିକ ବିକାଶ ସମ୍ପୂର୍ଣ୍ଣ ବ୍ୟର୍ଥ ହୋଇପଡ଼ିଥାଏ । ଅତୀତ ଭାରତର ଇତିହାସ ପର୍ଯ୍ୟବେକ୍ଷଣ କଲେ ଉତ୍କଳୀୟମାନଙ୍କ ବୀରତ୍ୱ ଓ ଶୌର୍ଯ୍ୟର ବହୁ ଉଦାହରଣ ଦେଖିବାକୁ ମିଳେ । ଏକ ବିରାଟ ଓ ସ୍ୱାଭିମାନୀ ଦେଶରୂପେ ଉତ୍କଳର ସୁରକ୍ଷିତ ସ୍ଥାନ ଇତିହାସରେ ରହିଥିଲା । ଏପରିକି ମୋଗଲ ଓ ମୁସଲମାନମାନଙ୍କ ରାଜତ୍ୱ ସମୟରେ ମଧ୍ୟ ଉତ୍କଳୀୟମାନଙ୍କ ବୀରତ୍ୱର ପଟାନ୍ତର ନ ଥିଲା । ମାତ୍ର ଇଂରେଜମାନଙ୍କ ଶାସନ ସମୟର ପ୍ରଥମ ଭାଗରେ ଉତ୍କଳୀୟଗଣ ଯେପରି ନିଜ ସ୍ୱାଭିମାନର ପରିଚୟ ପ୍ରଦାନ କରିଥିଲେ, ପରବର୍ତ୍ତୀ କାଳରେ ତାହା ଆଉ ଦେଖାଯାଇ ନ ଥିଲା । ଇଂରେଜମାନଙ୍କ ଚତୁରତା ପାଶରେ ବନ୍ଦୀ ଜୀବନ ଅତିବାହିତ କରୁଥିବା ଉତ୍କଳୀୟମାନେ ବିସ୍ମୃତ ହେଲେ ସେମାନଙ୍କର ଅତୀତର ଶୌର୍ଯ୍ୟ ଓ ବୀରତ୍ୱ । ଭାରତର ବିଭିନ୍ନ ପ୍ରଦେଶ ସହିତ ଉତ୍କଳର ସୀମାନ୍ତ ରାଜ୍ୟଗୁଡ଼ିକ ମିଶିଯିବା ଫଳରେ ଏହାର ଆୟତନ ସଙ୍କୁଚିତ ହୋଇପଡ଼ିଲା । କପିଳେନ୍ଦ୍ରଦେବଙ୍କ ଶାସନ କାଳରେ ଉତ୍କଳର ସୀମା

ବିସ୍ତୃତ ଲାଭ କରିଥିଲା ଗଙ୍ଗାଠାରୁ କାବେରୀ ନଦୀ ପର୍ଯ୍ୟନ୍ତ । ଏପରିକି ଆନ୍ଧ୍ରପ୍ରଦେଶ, ମଧ୍ୟପ୍ରଦେଶ, ପଶ୍ଚିମବଙ୍ଗଳାର ଅନେକ ଅଞ୍ଚଳ ଏହାର ସୀମା ପରିସରଭୁକ୍ତ ହୋଇଥିଲା । ପରାଧୀନତାର ପାଶରେ ଆବଦ୍ଧ ହେବା ପରେ କ୍ଷୟ ରୋଗାକ୍ରାନ୍ତ ହୋଇ ଏହା ସଙ୍କୁଚିତ ଅବସ୍ଥା ପ୍ରାପ୍ତ ହେଲା । ପରାଧୀନ ଭାରତବର୍ଷରେ ପୁଣି ଉତ୍କଳର ପୂର୍ବ ଆଭିଜାତ୍ୟ ଏବଂ ସମ୍ମାନ ଫେରାଇ ଆଣିବା ପାଇଁ ଉତ୍କଳ ଗୌରବ ମଧୁସୂଦନ ଦାସ ଚେଷ୍ଟା କଲେ । ତାଙ୍କର କର୍ତ୍ତବ୍ୟ ନିଷ୍ଠା, ପରିଶ୍ରମ ଓ ଉତ୍ସର୍ଗୀକୃତ ନିଷ୍ଠା ଯୋଗୁଁ ଜନ୍ମନେଲା 'ଉତ୍କଳ ସମ୍ମିଳନୀ' । ଖଣ୍ଡବିଖଣ୍ଡିତ ଉତ୍କଳର ପୁନଃ ମିଶ୍ରଣ ପାଇଁ ଏହା ପ୍ରଥମେ ପଦକ୍ଷେପ ଗ୍ରହଣ କଲା । ଉତ୍କଳ ସ୍ୱାଭିମାନର ପ୍ରତୀକ 'ଉତ୍କଳ ସମ୍ମିଳନୀ' ।

୧୮୦୩ ମସିହାରେ ଓଡ଼ିଶା ଇଂରେଜ ଶାସନାଧୀନ ହୁଏ । ୧୮୧୭ ମସିହାରେ ବକ୍‌ସି ଜଗବନ୍ଧୁଙ୍କ ନେତୃତ୍ୱରେ ପ୍ରଥମ ସ୍ୱାଧୀନତା ଆନ୍ଦୋଳନ ଆରମ୍ଭ ହେଲା । ଓଡ଼ିଶା ଇତିହାସରେ ଏହା ପାଇକ ବିଦ୍ରୋହ ନାମରେ ଖ୍ୟାତ । ଏହି ସଂଗ୍ରାମରେ ଓଡ଼ିଶାର ପାଇକମାନେ ଅଭୂତପୂର୍ବ ବୀରତ୍ୱର ପରାକାଷ୍ଠା ପ୍ରଦର୍ଶନ କରିଥିଲେ । ଦୁର୍ଦ୍ଧର୍ଷ ଓଡ଼ିଆଙ୍କର ମନୋବଳ ଭାଙ୍ଗିଦେବା ଉଦ୍ଦେଶ୍ୟରେ କୂଟକପଟର ଆଶ୍ରୟ ନେଲେ ଚତୁର ଇଂରେଜ ଜାତି । ଏହି ଉଦ୍ଦେଶ୍ୟରେ ସେମାନେ ଓଡ଼ିଶାକୁ ଖଣ୍ଡବିଖଣ୍ଡିତ କରିଦେବାକୁ ଲାଗିଲେ । ଓଡ଼ିଶାକୁ ଏକତ୍ରିତ କରିବା ପାଇଁ ଓଡ଼ିଆମାନଙ୍କ ମନରେ ସୃଷ୍ଟି ହେଲା ଉନ୍ମାଦନା । ବ୍ରହ୍ମପୁରଠାରେ ପ୍ରଥମେ ୧୮୭୨ ମସିହା ଡିସେମ୍ବର ୧୫ ତାରିଖରେ ଗଠିତ ହେଲା 'ଗଞ୍ଜାମ ହିତବାଦିନୀ ସଭା' । ଉତ୍କଳ ହିତୈଷୀ ବିଚିତ୍ରାନନ୍ଦ ଦାସ ୧୮୭୪ ମସିହା ନଭେମ୍ବର ୨୮ ତାରିଖରେ ଓଡ଼ିଶାର ରାଜା ଓ ଜମିଦାରମାନଙ୍କୁ ଏକାଠି କରି ଓଡ଼ିଶାର ହିତ ନିମିତ୍ତ ଏକ ଆଲୋଚନା ସଭାର ଆୟୋଜନ କରିଥିଲେ । କଟକଠାରେ ପ୍ରଥମକରି ୧୮୮୨ ମସିହା ଅଗଷ୍ଟ ୧୬ ତାରିଖରେ 'ଉତ୍କଳସଭା' ଗଠନ କରାଗଲା । ଏହାର ପ୍ରଥମ ସଭାପତି ଥିଲେ କାଶୀନାଥ ଦାଶ । ଏହାପରେ ୧୮୮୩ ଓ ୧୮୮୫ ମସିହାରେ ଯଥାକ୍ରମେ ବୈକୁଣ୍ଠନାଥ ଦେ ଓ ପାରଳାଖେମୁଣ୍ଡି ରାଜଭ୍ରାତାଙ୍କ ଉଦ୍ୟମରେ ଗଠିତ ହେଲା 'ଜାତୀୟ ସମିତି' ଓ 'ଉତ୍କଳ ହିତୈଷିଣୀ ସମାଜ' । ଉତ୍କଳ ସମ୍ମିଳନୀର ପ୍ରଥମ ଭିତ୍ତିପ୍ରସ୍ତର ସ୍ଥାପିତ ହୋଇଥିଲା ୧୯୦୩ ମସିହା ଜାନୁଆରୀ ୯ ତାରିଖରେ । ଖଲ୍ଲିକୋଟ ରାଜା ହରିହର ମର୍ଦ୍ଦରାଜଙ୍କ ରମ୍ଭା ରାଜପ୍ରାସାଦରେ ମିଳିତ ହୋଇ ମଧୁସୂଦନ ଦାସ, ମୟୂରଭଞ୍ଜ ମହାରାଜ ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ, ଧରାକୋଟ ରାଜା ମଦନମୋହନ ସିଂହଦେଓ, ମଞ୍ଜୁଷା ରାଜା ବାସୁଦେବ ରାଜମଣି ଦେଓ, ଫକୀରମୋହନ ସେନାପତି, ରାଧାନାଥ ରାୟ, ନୀଳମଣି ବିଦ୍ୟାରତ୍ନ ଆଦି ଉତ୍କଳର ଏକତ୍ରୀକରଣ ପାଇଁ ଆଲୋଚନା ଆରମ୍ଭ କରିଥିଲେ । ୧୯୦୩ ମସିହା ଏପ୍ରିଲ ୧୧ ଓ ୧୨ ତାରିଖରେ ବ୍ରହ୍ମପୁରରେ 'ଗଞ୍ଜାମ ଜାତୀୟ ସମ୍ମିଳନୀ' ଅନୁଷ୍ଠିତ ହୋଇଥିଲା । ସେବର୍ଷ ଜୁନ୍ ୨୨ ତାରିଖରେ ମଧୁସୂଦନ ଦାସଙ୍କ ଅଧ୍ୟକ୍ଷତାରେ କଟକରେ 'ଉତ୍କଳସଭା'ର ବୈଠକ ବସିଥିଲା । ୧୯୦୫ ମସିହାରେ ସମ୍ବଲପୁର ଓଡ଼ିଶାରେ ମିଶିଲା । ଊନବିଂଶ ଶତାବ୍ଦୀରେ ଓଡ଼ିଶା କହିଲେ କଟକ, ପୁରୀ ଓ ବାଲେଶ୍ୱରର ୭କୋଟି ଜନସଂଖ୍ୟା ବିଶିଷ୍ଟ ଅଞ୍ଚଳକୁ ବୁଝାଉଥିଲା । ୧୯୦୩ ମସିହା ଡିସେମ୍ବର ୩ ତାରିଖରେ ପ୍ରଥମ ଉତ୍କଳ ସମ୍ମିଳନୀରେ ବିଚ୍ଛିନ୍ନାଞ୍ଚଳର ସମ୍ମିଶ୍ରଣ ସହିତ ୧୧ଟି ପ୍ରସ୍ତାବ ଧାର୍ଯ୍ୟ କରାଯାଇଥିଲା । ୧୯୧୩ ମସିହାରେ ଉତ୍କଳ ସମ୍ମିଳନରେ ନବମ ଅଧିବେଶନ

ପୁରୀଠାରେ ଅନୁଷ୍ଠିତ ହୋଇଥିଲା ଓ ମଧୁବାବୁ ତା'ର ସଭାପତି ହୋଇ କହିଥିଲେ 'ଉତ୍କଳ ସମ୍ମିଳନୀ'ର ଉଦ୍ଦେଶ୍ୟ ସମସ୍ତ ଉତ୍କଳବାସୀଙ୍କର ମଙ୍ଗଳ ସାଧନ । ସମଗ୍ର ଉତ୍କଳବାସୀ କହିଲେ ଏକ ଜାତି ବୁଝାଏ ।' ୧୯୧୪ ମସିହାରେ ପାରଳାଖେମୁଣ୍ଡିଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀରେ ଜୟପୁରର ମହାରାଜା ଶ୍ରୀ ଶ୍ରୀ ବିକ୍ରମଦେବ ବର୍ମା ଓଡ଼ିଶା ସମ୍ପର୍କରେ କହିଥିଲେ, ବିଚ୍ଛିନ୍ନ ହୋଇ ବିଭିନ୍ନ ଶାସନାଧୀନରେ ରହିଥିବାରୁ ଓଡ଼ିଆମାନଙ୍କର ସମୂହଶକ୍ତିର ବିକାଶ ପାଇପାରୁ ନାହିଁ । × × ମାନ୍ଦ୍ରାଜ ଅନ୍ତର୍ଗତ ଓଡ଼ିଶା ପ୍ରଦେଶ ଜୟପୁର କି ଗଞ୍ଜାମ ଅର୍ଥାତ୍ ପ୍ରାକୃତିକ ଓଡ଼ିଶାର ଏକ ଅବିଚ୍ଛିନ୍ନ ଅଂଶ । ପ୍ରାୟ ସମସ୍ତ ଗଞ୍ଜାମ ଜିଲ୍ଲା ଓ ଜୟପୁର ଓଡ଼ିଆ ରାଜାମାନଙ୍କଦ୍ୱାରା ଅଧିକୃତ ଏବଂ ଓଡ଼ିଆ ଲୋକଙ୍କ ଦ୍ୱାରା ଅଧୁଷିତ ହେଲେ ସୁଦ୍ଧା, ଦୁଃଖର ବିଷୟ କ୍ଷମତାଶାଳୀ ତୈଲଙ୍ଗମାନଙ୍କ ପ୍ରଭାବରେ ଓଡ଼ିଆ ଶକ୍ତି ଏକାବେଳକେ ମ୍ରିୟମାଣ ହୋଇଅଛି ।'' ୧୯୦୩ଠାରୁ ୧୯୯୬ ମଧ୍ୟରେ ଉତ୍କଳ ସମ୍ମିଳନୀର ବାର୍ଷିକ ଅଧିବେଶନ ପ୍ରାୟ ୪୦ଥର ବସିଛି ଏବଂ ବିଭିନ୍ନ ବିଷୟରେ ମୁଖ୍ୟତଃ ଓଡ଼ିଶାର ଭବିଷ୍ୟତ ଓ ମଙ୍ଗଳ ସମ୍ବନ୍ଧରେ ଆଲୋଚନା ହୋଇଛି ।

ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ ସମ୍ପର୍କରେ ମଧୁସୂଦନ ଦାସ ଗୋଟିଏ କବିତାରେ ଚମତ୍କାର କଥା କହିଛନ୍ତି । ସେହି କବିତାର ଗୋଟିଏ ପଦ ହେଉଛି–''ଏହି ସମ୍ମିଳନୀ ଜାତି ପ୍ରାଣସିନ୍ଧୁ କୋଟି ପ୍ରାଣବିନ୍ଦୁ ଧରେ । ତୋର ପ୍ରାଣବିନ୍ଦୁ ମିଶାଇ ଦେ ଭାଇ ଡେଇଁ ପଡ଼ି ସିନ୍ଧୁ ନୀରେ ।'' ଓଡ଼ିଶାର ସାମୂହିକ ଉନ୍ନତି ବିଧାନ ଥିଲା ଏହି ସମ୍ମିଳନୀର ମୁଖ୍ୟ ଉଦ୍ଦେଶ୍ୟ । ଏହି ଉଦ୍ଦେଶ୍ୟର ପରିପୂରଣ ନିମିତ୍ତ ଏହାର କର୍ମକର୍ତ୍ତାଗଣ ବିଭିନ୍ନ ସମୟରେ ଯୋଜନା ପ୍ରଣୟନ କରିବା ସଙ୍ଗେ ସଙ୍ଗେ ତତ୍କାଳୀନ ଇଂରେଜ ସରକାରଙ୍କ ନିକଟରେ ବିଭିନ୍ନ ଦାବି ଉପସ୍ଥାପନ କରିଥିଲେ । ଏହାଦ୍ୱାରା ପାରଳାଖେମୁଣ୍ଡି ଓଡ଼ିଶା ମଧ୍ୟରେ ମିଶିପାରିଥିଲା । ଓଡ଼ିଶାକୁ ଏକ ସ୍ୱତନ୍ତ୍ରପ୍ରଦେଶ ରୂପେ ଗଠନ କରିବା କ୍ଷେତ୍ରରେ ଏହି ସମ୍ମିଳନୀର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ଓଡ଼ିଶାର ଭାଷା, ସାହିତ୍ୟ, ସଂସ୍କୃତି ଓ ସର୍ବୋପରି ଓଡ଼ିଶାର ସୁରକ୍ଷା ଥିଲା ଏହାର ମୁଖ୍ୟ ଉଦ୍ଦେଶ୍ୟ ।

ଉତ୍କଳ ସମ୍ମିଳନୀ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନିମିତ୍ତ ଯେଉଁ ଦାବି କରିଥିଲା ତାଦ୍ୱାରା ସାଇମନ କମିଶନ ବସିଥିଲା ଏବଂ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ୧୯୩୬ ମସିହା ଏପ୍ରିଲ ୧ ତାରିଖରେ ଘୋଷିତ ହେଲା । ୧୯୩୩ ମସିହାରେ ଇଂରେଜ ସରକାରଙ୍କ ଶ୍ୱେତପତ୍ରରେ ଉଲ୍ଲେଖ କରାଯାଇଥିଲା ଯେ, ୧୯୩୨ ମସିହାରେ ଓଡ଼ନେଲ କମିଟି ଜୟପୁର ଇଷ୍ଟେଟ୍‌ର ଯେଉଁ ଅଂଶକୁ ଓଡ଼ିଶା ସହିତ ମିଶିବା ପାଇଁ ସୁପାରିସ କରିଥିଲେ ତାହା ଓଡ଼ିଶାରେ ମିଶିବ । ପାରଳାଖେମୁଣ୍ଡି ଓ ଜଳନ୍ତରର ମାଳଅଞ୍ଚଳ ତଥା ପାରଳାଖେମୁଣ୍ଡି ସହର ଓ ଜମିଦାରୀର କେତେକ ଅଂଶ ଓଡ଼ିଶାର ଅଂଶବିଶେଷ ରୂପେ ପରିଚିତ ହେବ । ଉତ୍କଳସମ୍ମିଳନୀର ଉଦ୍ଦେଶ୍ୟ ଥିଲା–ପ୍ରବାସୀ ଓ ବିଚ୍ଛିନ୍ନାଞ୍ଚଳ ଓଡ଼ିଆମାନଙ୍କର ସ୍ୱାର୍ଥ ସଂରକ୍ଷଣ, ଉତ୍କଳର ଭୌଗୋଳିକ ଓ ଭାଷାଗତ ଏକତାସ୍ଥାପନ, ଉତ୍କଳୀୟ ସାହିତ୍ୟ, ସଂସ୍କୃତି ତଥା ସାମାଜିକ ଜୀବନର ପୁନଃ ପ୍ରତିଷ୍ଠା ଏବଂ ଜାଗରଣ, ଉତ୍କଳର ସାମୂହିକ ସ୍ୱାର୍ଥ ପାଇଁ ସ୍ୱରଉତ୍ତୋଳନ । ଅବଶ୍ୟ ଉତ୍କଳ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠିତ ହେବାପରେ ଏହି ସମସ୍ତ ଲକ୍ଷ୍ୟ ସମ୍ପୂର୍ଣ୍ଣ ପରିପୂରଣ

ହୋଇପାରି ନାହିଁ । ତଥାପି ଏହାଦ୍ୱାରା ଯେ ଓଡ଼ିଶାର ମହତ୍ତ୍ୱ ବୃଦ୍ଧି ପାଇଛି, ଏକଥା ଅସ୍ୱୀକାର କରାଯାଇ ନ ପାରେ ।

ସାମ୍ପ୍ରତିକ ପରିପ୍ରେକ୍ଷୀରେ ଉତ୍କଳ ସମ୍ମିଳନୀର ଗୁରୁତ୍ୱ ବୃଦ୍ଧିପାଇଛି । ଏବେ ମଧ୍ୟ ଓଡ଼ିଶାର ବହୁ ଅଞ୍ଚଳ ଅନ୍ୟ ପ୍ରଦେଶ ସହିତ ମିଶିକରି ରହିଛି । ୧୯୩୧ ମସିହାରେ ଯେଉଁ ଓଡ଼ନେଲ କମିଟି ବସିଥିଲା, ତଦ୍ଦ୍ୱାରା ଓଡ଼ିଶା ସହିତ ମିଶି ରହିଥିବା ଷଢ଼େଇକଳା ଓ ଖରସୁଆଁ ବିହାର ସହିତ ମିଶିଗଲା । ଏବେ ପୁନର୍ମିଶ୍ରଣ କ୍ଷେତ୍ରରେ ସଂଗ୍ରାମ ଅବ୍ୟାହତ ରହିଥିଲେ ହେଁ ଭବିଷ୍ୟତ କଣ ହେବ କୁହାଯାଇ ନ ପାରେ । ସେହିଭଳି ମଞ୍ଜୁଷା ଆନ୍ଧ୍ରପ୍ରଦେଶ ଏବଂ ମେଦିନୀପୁର ଆଦି ଅଞ୍ଚଳ ପଶ୍ଚିମବଙ୍ଗଳା ସହିତ ମିଶିକରି ରହିଛି । ଏହି ଅଞ୍ଚଳମାନଙ୍କରେ ଧୀରେ ଧୀରେ ଓଡ଼ିଶାର ସଂସ୍କୃତି ଓ ଆଦର୍ଶ ପରମ୍ପରାଲୁପ୍ତ ହୋଇଗଲାଣି । ଅତୀତରେ ପଣ୍ଡିତ ଗୋଦାବରୀଶ ମିଶ୍ର ସିଂହଭୂମି ଯାଇ ଓଡ଼ିଶାର ଭାଷା ଓ ସଂସ୍କୃତିର ସୁରକ୍ଷା ନିମିତ୍ତ ଉପଯୁକ୍ତ ପଦକ୍ଷେପମାନ ଗ୍ରହଣ କରିଥିଲେ । ଅଥଚ ରାଜନୈତିକ ପଦକ୍ଷେପ ଅଭାବରୁ ତାହା ସାକାର ହୋଇପାରୁ ନାହିଁ । ସେତେବେଳେ ଉତ୍କଳ ସମ୍ମିଳନୀର ପ୍ରାରମ୍ଭିକ ସଙ୍ଗୀତ ରୂପେ ଗୋଦାବରୀଶ ମହାପାତ୍ରଙ୍କ 'ଉଠ କଙ୍କାଳ' ଗୀତ ପାଠ କରାଯାଇଥିଲା ଓ ଉତ୍କଳୀୟଙ୍କ ମନରେ ଅପୂର୍ବ ଉନ୍ମାଦନା ସୃଷ୍ଟି କରିବାକୁ ସମର୍ଥ ହୋଇଥିଲା । ଏବେ ସେହି ଗୀତ କୌଣସି ଓଡ଼ିଆଙ୍କ ମନରେ ଜାତୀୟତା ଭାବ ସୃଷ୍ଟି କରିବାକୁ ସମର୍ଥ ହୋଇପାରୁ ନାହିଁ । ସ୍ୱାଧୀନତା ଲାଭ ପରେ ସ୍ୱରାଷ୍ଟ୍ରମନ୍ତ୍ରୀ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କ ନେତୃତ୍ୱରେ କେତେକ ଗଡ଼ଜାତ ଓଡ଼ିଶା ସହିତ ମିଶିଥିଲା । ଏହା ୧୯୪୮-୪୯ ମସିହାରେ ସମ୍ପାଦିତ ହୋଇଥିଲା । ମାତ୍ର ସେହି ଓଡ଼ିଶାକୁ ସମ୍ପୂର୍ଣ୍ଣ ଓଡ଼ିଶା ବୋଲି ଦାବି କରାଯାଇ ନ ପାରେ । ଫଜଲ ଅଲ୍ଲୀ କମିଶନ ୧୯୫୬ ମସିହାରେ ବସିଥିଲା । ଏହାକୁ ରାଜ୍ୟ ପୁନର୍ଗଠନ କମିଶନ କୁହାଯାଏ । ଏଥିରେ ଓଡ଼ିଶାର ଭୌଗୋଳିକ ସୀମା ସମ୍ପର୍କରେ ଅନେକ ସନ୍ଦେହର ପ୍ରଶ୍ନ ଉଙ୍କିମାରିଲା । ବହୁ ବିଚ୍ଛିନ୍ନାଞ୍ଚଳ ଏବେ ମଧ୍ୟ ଓଡ଼ିଶାରେ ମିଶିପାରି ନାହିଁ । ଅଥଚ ସେଠାରେ ଓଡ଼ିଶାର ଭାଷା ଓ ସଂସ୍କୃତି ବଞ୍ଚିବା ପାଇଁ ସଂଗ୍ରାମ କରୁଥିବା ସମୟରେ ଓଡ଼ିଶାର ନେତୃତ୍ୱ ନେଉଥିବା ରାଜନୀତିକ ନେତାଗଣ ନିର୍ବିକାର ରହିଛନ୍ତି । ଧୀରେ ଧୀରେ ଆଞ୍ଚଳିକ ବୈଷମ୍ୟ ବୃଦ୍ଧି ପାଉଛି । ବିଚ୍ଛିନ୍ନାଞ୍ଚଳମାନଙ୍କରେ ଓଡ଼ିଆ ଭାଷା ଲୁପ୍ତ ପାଇବାକୁ ବସିଲାଣି । ୧୯୧୬ ମସିହାରେ ଉତ୍କଳ ସମ୍ମିଳନୀର ବାର୍ଷିକ ଅଧିବେଶନରେ ଏଥିପାଇଁ ଉଦ୍‌ବେଗ ପ୍ରକାଶ ପାଇଥିଲା । ମାତ୍ର ଦୁଇ ବର୍ଷ ଅତିକ୍ରମ କରିଯାଇଥିଲେ ମଧ୍ୟ ତା'ର କୌଣସି ପ୍ରଭାବ ଅନୁଭୂତ ହୋଇଥିବା ପରି ମନେହୁଏ ନାହିଁ । ସରକାରଙ୍କର ସମସ୍ତ କାର୍ଯ୍ୟ ଓଡ଼ିଆରେ ଚାଲିବାକୁ ନିର୍ଦ୍ଦେଶ ଦିଆଯାଇଥିଲେ ମଧ୍ୟ ବାସ୍ତବରେ ତାହା କାର୍ଯ୍ୟକାରୀ ହୋଇପାରୁ ନାହିଁ । କାରଣ ଅନେକେ ଓଡ଼ିଆରେ ଶଦ୍ଧ ବନାନ ଲେଖିବା ପାଇଁ ଅକ୍ଷମ । ଆମ ଭାଷା, ସଂସ୍କୃତି ଓ ଐତିହ୍ୟର ସୁରକ୍ଷା ପାଇଁ ଆମେ ଏଯାବତ୍ ମାନସିକ ସ୍ତରରେ ପ୍ରସ୍ତୁତ ହୋଇଥିବା ପରି ମନେହୁଏ ନାହିଁ । ୧୯୧୩ ମସିହାରେ ସେଦିନ ଉତ୍କଳ ସମ୍ମିଳନୀରେ ଉତ୍କଳ ଗୌରବ ମଧୁସୂଦନ ଉତ୍କଳ ଜାତିର ସଂଜ୍ଞା ନିର୍ଦ୍ଦେଶ କରି କହିଥିଲେ—''ଉତ୍କଳ ଜାତିର ଅର୍ଥ ଯେଉଁମାନେ ଆପଣାକୁ ଉତ୍କଳ ସନ୍ତାନ ବୋଲି ମନେ କରନ୍ତି ଏବଂ ଉତ୍କଳର ଅତୀତ ଗୌରବରେ ଯେଉଁମାନେ ଆପଣାକୁ ଗୌରବାନ୍ୱିତ ମନେକରନ୍ତି ଓ ଭାବୀ ଗୌରବକୁ ଆକାଂକ୍ଷା କରନ୍ତି, ସେହିମାନଙ୍କୁ ମୁଁ ଉତ୍କଳ

ଜାତି ବୋଲି ଜ୍ଞାନ କରେ ।'' ଆଜି ଓଡ଼ିଶାରେ ଏହିଭଳି ଜଣେ ବ୍ୟକ୍ତିବିଶେଷଙ୍କର ଅଭାବ । ଏ କ୍ଷେତ୍ରରେ ଉତ୍କଳ ସମ୍ମିଳନୀର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଯେଉଁ ମଧୁବାବୁ ଉତ୍କଳ ସମ୍ମିଳନୀ ମାଧ୍ୟମରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ କରିବାକୁ ସମର୍ଥ ହୋଇଥିଲେ, ଆଜି ସେହି ଉତ୍କଳ ସମ୍ମିଳନୀ ବିଚ୍ଛିନ୍ନାଞ୍ଚଳକୁ ପୁନଃ ଓଡ଼ିଶାରେ ସମ୍ମିଶ୍ରିତ କରିବା ପାଇଁ ଉଚିତ ପଦକ୍ଷେପ ଗ୍ରହଣ କରିବା ଆବଶ୍ୟକ । ଓଡ଼ିଆମାନଙ୍କ ମନରେ ଜାତୀୟ ଚେତନା ସୃଷ୍ଟି କରି ଓଡ଼ିଶା ବାହାରେ ଥିବା ଓଡ଼ିଆ ବୀରଙ୍କୁ ଓଡ଼ିଶାର ଜାତୀୟ ସ୍ରୋତରେ ସାମିଲ କରିବା ପାଇଁ ତତ୍ପର ହେବା ଉଚିତ । ମନେରଖିବା ଆବଶ୍ୟକ, ଏହା ଏକ ସ୍ୱାଭିମାନର ପ୍ରଶ୍ନ । ଏହି ପ୍ରଶ୍ନକୁ ଏଡ଼ାଇ ଯିବାର ଅର୍ଥ ଓଡ଼ିଆମାନଙ୍କର ଦୁର୍ବଳତାକୁ ପ୍ରକାଶ କରିଦେବା । ଜାତୀୟ ସ୍ତରରେ ଏହି ପ୍ରଶ୍ନକୁ କେନ୍ଦ୍ର କରି ବିତର୍କ ହେବା ବାଞ୍ଛନୀୟ । ଦୁଃଖର ବିଷୟ, ବର୍ତ୍ତମାନ ଓଡ଼ିଶାରେ ଏପରି ଏକ ଜାତୀୟ ନେତାଙ୍କର ଅଭାବ ରହିଛି, ଯିଏ ଏହାକୁ ନେଇ ଏକ ମାନସିକ ଆନ୍ଦୋଳନ ସୃଷ୍ଟି କରିପାରିବ । ଏହି ଛିନ୍ନବିଚ୍ଛିନ୍ନ ଓଡ଼ିଶାର ଦୁରବସ୍ଥାକୁ ଲକ୍ଷ୍ୟ କରି ଉତ୍କଳ ସମ୍ମିଳନୀ ଏଥିପ୍ରତି ଦାୟିତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିପାରିଲେ ହୁଏତ କିଛି ସୁଫଳ ମିଳିପାରେ ।

ବର୍ତ୍ତମାନ ଓଡ଼ିଶାରେ 'ଉତ୍କଳ ସମ୍ମିଳନୀ' ଏକ ଗୁରୁତ୍ୱପୂର୍ଣ୍ଣ ଅନୁଷ୍ଠାନ । ଆଜି ମାଡ୍ରାସ (ଚେନ୍ନାଇ), କଲିକତା (କୋଲ୍‌କତା) ଓ ବମ୍ବେ (ମୁମ୍ବାଇ)ରେ ପରିଣତ ହୋଇଥିବା ସମୟରେ 'ଓଡ଼ିଶା' ଉତ୍କଳରେ ପରିଣତ ହେବା ଆବଶ୍ୟକ । ଉତ୍କଳ ସହିତ ଓଡ଼ିଆମାନଙ୍କର ଯେଉଁ ସ୍ୱାଭିମାନ ଜଡ଼ିତ, ଓଡ଼ିଶା ସହିତ ସେପରି ନୁହେଁ । ଆମର ଅଧିକାଂଶ ଉପାଧି ପୂର୍ବରେ 'ଉତ୍କଳ' ଶବ୍ଦ ଜଡ଼ିତ, ଯଥା–ଉତ୍କଳଗୌରବ, ଉତ୍କଳମଣି, ଉତ୍କଳ କେଶରୀ, ଉତ୍କଳ ବୀର ଆଦିରେ 'ଉତ୍କଳ' ଶବ୍ଦର ମହତ୍ତ୍ୱ ସହଜରେ ଉପଲବ୍ଧ ହୋଇଥାଏ । ତେଣୁ 'ଓଡ଼ିଶା' ପରିବର୍ତ୍ତେ ବର୍ତ୍ତମାନ 'ଉତ୍କଳ' ନାମ ସଂଯୋଜିତ ହେଲେ ଆମେ ଆମର ଅତୀତ ଗୌରବକୁ ଫେରିପାଇବା । ଆଜି ଦିନରେ ସମସ୍ତ ଉତ୍କଳବାସୀ ଏହାର ସର୍ବାଙ୍ଗୀନ ଉନ୍ନତି ନିମିତ୍ତ ନିଜକୁ ଉତ୍ସର୍ଗ କରିପାରିଲେ ଏହାର ବିକାଶ ତ୍ୱରାନ୍ୱିତ ହେବା ସଙ୍ଗେ ସଙ୍ଗେ ମହତ୍ତ୍ୱ ବୃଦ୍ଧି ପାଇବ ।

●

# ସାହିତ୍ୟ ପାଠର ଉପାଦେୟତା

**(ଉପକ୍ରମ, ସାହିତ୍ୟର ଲକ୍ଷ୍ୟ ଓ ଉଦ୍ଦେଶ୍ୟ, ସମାଜ ଜୀବନ ସହିତ ସମ୍ପର୍କ, ବ୍ୟକ୍ତି ଜୀବନ ଉପରେ ଏହାର ପ୍ରଭାବ, ସାହିତ୍ୟ ପାଠର ଉପଯୋଗିତା, ଜାତି ଗଠନରେ ସାହିତ୍ୟର ଭୂମିକା, ଉପସଂହାର)**

ଯାହା ସମାଜ ଓ ବ୍ୟକ୍ତିର ହିତସାଧନ କରେ ତାହା ସାହିତ୍ୟ । ନିରସ ମନରେ ସରସତା ଭରିଦେବା ଏହାର ଲକ୍ଷ୍ୟ । ଅନ୍ୟ ଭାବରେ କହିଲେ କେବଳ ଆନନ୍ଦଦାନ ସାହିତ୍ୟର ସର୍ବଶେଷ ଲକ୍ଷ୍ୟ ନୁହେଁ । ସୁସ୍ଥ ସାମାଜିକ ପରମ୍ପରା ଗଠନରେ ଏହାର ଭୂମିକା ମହତ୍ତ୍ୱପୂର୍ଣ୍ଣ । ଭାବ ପ୍ରକାଶର

ମାଧ୍ୟମ ହେଉଛି ଭାଷା । ଏହି ଭାଷା ହିଁ ବଣଜଙ୍ଗଲରେ ବସବାସ କରୁଥିବା ମଣିଷକୁ ସଙ୍ଗଠିତ କରିଥିଲା । ତା'ର ବୌଦ୍ଧିକ ଚିନ୍ତାର ଉନ୍ମେଷ କରାଇଥିଲା । ଭାବଜଗତ ସହିତ ବସ୍ତୁଜଗତର ସଂଯୋଗ କରାଇ ସାହିତ୍ୟ ମଣିଷକୁ କରିପାରିଛି ସଭ୍ୟ ଶିକ୍ଷିତ । ସାମାଜିକ ସମ୍ପର୍କ ଗଠନର ଏକ ମାଧ୍ୟମ ରୂପେ ସାହିତ୍ୟର ଅବଦାନକୁ ଅସ୍ୱୀକାର କରାଯାଇ ନ ପାରେ । ସୌନ୍ଦର୍ଯ୍ୟର ଉପାସନା ନିମିତ୍ତ ସର୍ବପ୍ରଥମେ ଏହା ମଣିଷକୁ ପ୍ରେରିତ କରିଥିଲା । ଭାବର ଆଦାନପ୍ରଦାନ ମାଧ୍ୟମରେ ମଣିଷ ଏହାଦ୍ୱାରା ବଞ୍ଚିବାର ଖୋରାକ ପାଇଥିଲା । ମର୍ତ୍ତ୍ୟରେ ସ୍ୱର୍ଗର ନନ୍ଦନକାନନ ସୃଷ୍ଟି କରିପାରେ ସାହିତ୍ୟ । ଏହା ହୁଏତ ମଣିଷର ଶାରୀରିକ ବୃଦ୍ଧିରେ ସହାୟତା କରି ନ ପାରେ, ମାତ୍ର ମାନସିକ ଅଭିବୃଦ୍ଧି ନିମିତ୍ତ ସାହିତ୍ୟର ଉପଯୋଗିତା ଅତୁଳନୀୟ ।

ମାନବିକତାର ବିକାଶ ନିମିତ୍ତ ସାହିତ୍ୟରେ ପ୍ରଚୁର ସୁଯୋଗ ରହିଛି । ଦେହର ଆବଶ୍ୟକତା ପୂରଣ ହୋଇଗଲେ ମଣିଷ ସମ୍ପୂର୍ଣ୍ଣ ଆନନ୍ଦ ଲାଭ କରିପାରେ ନାହିଁ । ମାନବର ପ୍ରକୃତ ପରିଚୟ ତା'ର ବୌଦ୍ଧିକ ବିକାଶରେ । ସାହିତ୍ୟ ହିଁ ମଣିଷର ଚିନ୍ତାରାଜ୍ୟକୁ ବିସ୍ତୃତ କରିଥାଏ । ତାକୁ ପ୍ରଦାନ କରେ ବିମଳ ଆନନ୍ଦ । ଲୌକିକ ଆନନ୍ଦ ଅପେକ୍ଷା ସାହିତ୍ୟ ଅନ୍ୟ ଏକ ଅଲୌକିକ ଆନନ୍ଦ ପ୍ରଦାନ କରିଥାଏ । ଭୂମିରୁ ଭୂମା ଆଡ଼କୁ ଗତି କରାଇବାର କ୍ଷମତା କେବଳ ସାହିତ୍ୟର ହିଁ ରହିଛି । ହୋରାସ୍‌ଙ୍କ ପରି ଆଲୋଚକ ସାହିତ୍ୟର ଦୁଇଟି ଆବଶ୍ୟକତା ସମ୍ବନ୍ଧରେ ସୂଚନା ପ୍ରଦାନ କରିଛନ୍ତି । ପ୍ରଥମତଃ ମଣିଷର ଦୈନନ୍ଦିନ ବ୍ୟବହାରରେ ଏହା ଆସିଥାଏ ଏବଂ ଦ୍ୱିତୀୟରେ ଏହା ଆନନ୍ଦ ପ୍ରଦାନ କରିଥାଏ । ପ୍ରାଚ୍ୟ ଆଳଙ୍କାରିକ ମମ୍ମଟ କାବ୍ୟ ବା ସାହିତ୍ୟର ଲକ୍ଷ୍ୟ ସମ୍ପର୍କରେ ସୂଚନା ପ୍ରଦାନ କରି କହିଛନ୍ତି–

କାବ୍ୟଂ ଯଶସେଽର୍ଥ କୃତେ ବ୍ୟବହାର ବିଦେ ଶିବେତର କ୍ଷତୟେ
ସଦ୍ୟ ପରି ନିର୍ବୃତ୍ତୟେ କାନ୍ତାସମ୍ମିତୟୋପଦେଶଯୁଜେ ।

ଅର୍ଥାତ୍ ଏହା ଯଶ, ଅର୍ଥ, ବ୍ୟବହାର ଜ୍ଞାନ, ଅମଙ୍ଗଳର ବିନାଶ, ପରମାନନ୍ଦ ଲାଭ ତଥା କାନ୍ତାସମ୍ମିତ ଉପଦେଶ ପ୍ରଦାନ କରିଥାଏ । ମଣିଷ ମନରେ ସାହିତ୍ୟ ସୌନ୍ଦର୍ଯ୍ୟବୋଧର ଜାଗ୍ରତ କରିଥାଏ । ଦୁଃଖରେ ମଧ୍ୟ ଆନନ୍ଦ ପ୍ରଦାନ କରିବାର କ୍ଷମତା ସାହିତ୍ୟର ରହିଛି । ତେଣୁ ଲାବର୍ଣ୍ଣ କହନ୍ତି–The greatest mystery of poetry is its power to invest the saddest things with beauty. ବ୍ୟକ୍ତି ଓ ଜଗତ ସମ୍ବନ୍ଧରେ ଏହା ମାନବର ଜ୍ଞାନ ପରିସରକୁ ବୃଦ୍ଧି କରିଥାଏ । ବିଶ୍ୱର ବିଭିନ୍ନ ଜାତି, ସଭ୍ୟତା, ସଂସ୍କୃତି ଆଦି ସମ୍ପର୍କରେ ସାହିତ୍ୟ ମାଧ୍ୟମରେ ହିଁ ଜ୍ଞାନ ଲାଭ ହୋଇଥାଏ । ବିକୃତ ଏବଂ କୁତ୍ସିତକୁ ସୁନ୍ଦର ଓ ଅନୁପମ କରିବାର ଶକ୍ତି ସାହିତ୍ୟର ରହିଛି । ସମାଜ ଓ ସମୟକୁ ପ୍ରଭାବିତ କରି ସାହିତ୍ୟ ଏକ ନୂତନ ଜଗତ ସୃଷ୍ଟି କରିପାରେ । ଚିତ୍ତବିନୋଦନ ସହିତ ଚତୁର୍ବର୍ଗ ଫଳ ପ୍ରଦାନ କେବଳ ସାହିତ୍ୟ କ୍ଷେତ୍ରରେ ହିଁ ସମ୍ଭବ । ନୈତିକ ମୂଲ୍ୟବୋଧର ଜାଗ୍ରତ କରି ଏହା ସମାଜକୁ କରେ ସୁସ୍ଥ ଓ ସୁନ୍ଦର । ଭ୍ରାତୃତ୍ୱ ଏବଂ ପ୍ରେମର ବାଣୀ ପ୍ରଚାର କରି ସମାଜସୃଷ୍ଟ ମଣିଷଙ୍କ ମଧ୍ୟରେ ସଂଯୋଗର ସେତୁ ସ୍ଥାପନ କରେ ।

ସମାଜ ସହିତ ସାହିତ୍ୟର ରହିଛି ନିଗୂଢ଼ ସମ୍ପର୍କ । କାରଣ ସାହିତ୍ୟ ହେଉଛି ସମାଜର ମୁକୁର । ଧର୍ମ ପ୍ରଚାରକ ଓ ସଂସ୍କାରକ ସାହିତ୍ୟ ମାଧ୍ୟମରେ ସମାଜକୁ ସଙ୍ଗଠିତ କରିବାର ଉଦ୍ୟମ କରିଛନ୍ତି । ସାହିତ୍ୟ ଠିକ୍ ଅର୍ଥରେ ଇତିହାସ ନ ହେଲେହେଁ ଏହାଦ୍ୱାରା ସାମାଜିକ ଉତ୍‌ଥାନ ପତନର ଧାରାଟି ସ୍ପଷ୍ଟ ହୋଇଥାଏ । ପ୍ରାଚୀନ ସାହିତ୍ୟରୁ ମଣିଷ ତତ୍କାଳୀନ ମାନବସମାଜର ଜୀବନଧାରା ସମ୍ପର୍କରେ ଅବଗତ ହୋଇଥାଏ । ଅତୀତ ଜୀବନଚିତ୍ର ସାହିତ୍ୟ ଦ୍ୱାରା ଉପଲବ୍ଧ ହେଉଥିବାରୁ ସାମାଜିକ ପରିବର୍ତ୍ତନଧାରା ଏଥିରୁ ସ୍ପଷ୍ଟ ହୋଇପଡ଼େ । ସମାଜରେ ଚଳପ୍ରଚଳ କରିବାକୁ ହେଲେ ଯେଉଁ ପ୍ରକାର ନୀତି-ନିୟମର ବଶବର୍ତ୍ତୀ ହେବାକୁ ହୋଇଥାଏ, ସେ ସମ୍ପର୍କରେ ସାହିତ୍ୟ ଶିକ୍ଷାଦାନ କରିଥାଏ । ସାମାଜିକ ଆଚାର ବିଚାର, ଚାଲିଚଳଣି ଆମେ ସାହିତ୍ୟରୁ ଲାଭ କରିଥାଉ । ରାମାୟଣ, ମହାଭାରତ, ପୁରାଣ ଆଦି ଭାରତୀୟ ସାମାଜିକ ବ୍ୟବସ୍ଥାକୁ ବହୁକାଳ ଧରି ନିୟନ୍ତ୍ରଣ କରିଆସିଛି । ସମାଜର ପରିବର୍ତ୍ତନ ଧାରାଟି ମଧ୍ୟ ସାହିତ୍ୟର କଳେବର ମଣ୍ଡନ କରୁଥିବାରୁ ସାମାଜିକ ଇତିହାସର ଚଳନ୍ତି ଧାରା ଯେ ସାହିତ୍ୟ, ଅସ୍ୱୀକାର କରାଯାଇ ନ ପାରେ । ସାମାଜିକ ଓ ସାଂସ୍କୃତିକ ଚେତନା ସୃଷ୍ଟି କ୍ଷେତ୍ରରେ ଏହାର ଅବଦାନର ତୁଳନା ନାହିଁ । ଦୂର ଅତୀତ ସାହିତ୍ୟ ଦ୍ୱାରା ନିକଟତର ହୋଇଥାଏ । ସମାଜକୁ ଉଚିତ ମାର୍ଗରେ ପରିଚାଳିତ କରିବା କ୍ଷେତ୍ରରେ ସାହିତ୍ୟ ଯଥାର୍ଥ ଦିଗ୍‌ଦର୍ଶନ ଦେଇଥାଏ । ଏହି ଦୃଷ୍ଟିରୁ ସାହିତ୍ୟର ଉପାଦେୟତା ଅତୁଳନୀୟ ।

ବହୁ କ୍ଷେତ୍ରରେ ବ୍ୟକ୍ତି ଜୀବନକୁ ନିୟନ୍ତ୍ରିତ କରିବା କ୍ଷେତ୍ରରେ ସାହିତ୍ୟ ଅଗ୍ରଣୀ ଭୂମିକା ଗ୍ରହଣ କରିଥାଏ । ନୈତିକ ଜୀବନଯାପନ ପାଇଁ ଏହା ପ୍ରେରଣା ଦିଏ । ବ୍ୟକ୍ତି ଚରିତ୍ରକୁ ଶୃଙ୍ଖଳିତ ଏବଂ ଗଠନ କରିବା କ୍ଷେତ୍ରରେ ସାହିତ୍ୟର ଭୂମିକା ଗୁରୁତ୍ୱପୂର୍ଣ୍ଣ । 'ସୁ' ଏବଂ 'କୁ' ମଧ୍ୟରେ ପାର୍ଥକ୍ୟ ନିର୍ଦ୍ଦିଷ୍ଟ କରି 'ସୁ'କୁ ଗ୍ରହଣ କରିବା ପାଇଁ ଏହା ମଣିଷକୁ ଉପଦେଶ ପ୍ରଦାନ କରିଥାଏ । କାନ୍ତାପରି ଉପଦେଶ ଦେଇ ଚିତ୍ତକୁ ଉଲ୍ଲସିତ କରେ । ରାମ ଏବଂ ରାବଣ ଚରିତ୍ର ମଧ୍ୟରେ ରହିଥିବା ଅସଙ୍ଗତିକୁ ଆମ ଆଗରେ ଟୋକି ଧରେ । ଆଦର୍ଶ ଚରିତ୍ରମାନଙ୍କର ଜୀବନ ପ୍ରଣାଳୀ ସମ୍ବନ୍ଧରେ ଆଲୋଚନା କରି ସେହିପରି ଜୀବନ ଗ୍ରହଣ କରିବାକୁ ଉପଦେଶ ଦିଏ । ପରସ୍ପରକୁ ସ୍ନେହ, ଶ୍ରଦ୍ଧା କରିବାକୁ ଶିକ୍ଷା ଦିଏ । ଅବସର ସମୟରେ ଚିତ୍ତବିନୋଦନର ଏକ ଶ୍ରେଷ୍ଠ ସାମଗ୍ରୀ ରୂପେ ପରିଣତ ହୋଇଥାଏ । ମଣିଷର ଜ୍ଞାନର ଦିଗନ୍ତକୁ ବିସ୍ତୃତ କରେ । ଏହା ଜ୍ଞାନର ଅନନ୍ତ ଭଣ୍ଡାର ହୋଇଥିବାରୁ ମଣିଷର ଚିତ୍ତ ବିସ୍ତୃତି ଘଟାଇଥାଏ । ବିଶ୍ୱରେ ଘଟିଯାଉଥିବା ବିଭିନ୍ନ ଘଟଣାବଳୀ ସମ୍ପର୍କରେ ସାହିତ୍ୟ ମାଧ୍ୟମରେ ଜ୍ଞାନଲାଭ ହୋଇଥାଏ । ମଣିଷ ପାଇଁ ସାହିତ୍ୟ ବନ୍ଧୁ, ଉପଦେଶକ ଓ ଦିଗ୍‌ଦର୍ଶକ ଭାବେ କାର୍ଯ୍ୟ କରିଥାଏ । ନିରୋଳା ମୁହୂର୍ତ୍ତରେ ସାହଚର୍ଯ୍ୟ ଯୋଗାଇ ଦେଇ ମଣିଷକୁ ବିରକ୍ତି ଭାବରୁ ରକ୍ଷା କରେ । ପୁରାଣ ଓ ଆଧ୍ୟାତ୍ମିକ ଶିକ୍ଷା ମାନବକୁ ସତ୍‌ଶିକ୍ଷା ପ୍ରଦାନ କରିଥାଏ । ମଣିଷ ଚରିତ୍ରକୁ ଶୃଙ୍ଖଳିତ ଓ ମାର୍ଜିତ କରେ । ତେଣୁ ବ୍ୟକ୍ତି ଚରିତ୍ର ଗଠନ କ୍ଷେତ୍ରରେ ସାହିତ୍ୟର ଭୂମିକା ଏହି ଦୃଷ୍ଟିରୁ ମହତ୍ତ୍ୱପୂର୍ଣ୍ଣ ।

ସାହିତ୍ୟ ପାଠର ଉପଯୋଗିତା ବହୁବିଧ । ଏହା କେବଳ ସାମାଜିକ ଜ୍ଞାନ ପ୍ରଦାନ କିମ୍ବା ଆନନ୍ଦ ବିତରଣ କରେ ନାହିଁ; ପରନ୍ତୁ ଜୀବନଯନ୍ତ୍ରଣାରେ ସତତ ସନ୍ତୁଳିତ ମଣିଷ

ପ୍ରାଣରେ ବଞ୍ଚିବାର ପ୍ରଲୋଭନ ସୃଷ୍ଟି କରିଥାଏ । ଉନ୍ନତ ଜୀବନଯାପନ ପାଇଁ ସାହିତ୍ୟ ମଣିଷ ସମାଜକୁ ଦିଗ୍‌ଦର୍ଶନ ପ୍ରଦାନ କରିଥାଏ । ବିଭିନ୍ନ ଦେଶ, ଜାତି, ସଭ୍ୟତା ଓ ସଂସ୍କୃତି ସମ୍ବନ୍ଧରେ ସାହିତ୍ୟ ଦ୍ୱାରା ଜ୍ଞାନଲାଭ ହୋଇଥାଏ । ଅତୀତର ଘଟଣାବଳୀ ଓ ଚରିତ୍ରମାନଙ୍କର କାର୍ଯ୍ୟକଳାପକୁ ବିଶ୍ଳେଷଣ କରି ବର୍ତ୍ତମାନ ସମୟକୁ କିପରି ଶୁଭ୍ର ସୁନ୍ଦର କରାଯାଇପାରିବ, ସେ ସମ୍ପର୍କରେ ସାହିତ୍ୟ ଦିଗ୍‌ଦର୍ଶନ ଦେଇଥାଏ । ସାରଳାଦାସଙ୍କ ସୃଷ୍ଟିରୁ ଆମେ ଯେପରି ତତ୍କାଳୀନ ସମାଜର ଜୀବନଧାରଣ ପ୍ରଣାଳୀ ସମ୍ବନ୍ଧରେ ଶିକ୍ଷାଲାଭ କରିଥାଉ, ଅନୁରୂପ ଭାବେ ପଞ୍ଚସଖାଙ୍କ ସାହିତ୍ୟରୁ ଷୋଡ଼ଶ ଶତାବ୍ଦୀ ଓଡ଼ିଶାର ଆଧ୍ୟାତ୍ମିକ ଭାବନା ସମ୍ବନ୍ଧରେ ଜ୍ଞାନଲାଭ କରିଥାଉ । ତେଣୁ ଆମର ପ୍ରାଚୀନ ସଭ୍ୟତା, ସଂସ୍କୃତି ଓ ସାମାଜିକ ଜୀବନ ସମ୍ପର୍କରେ ସାହିତ୍ୟ ହିଁ ସୂଚନା ପ୍ରଦାନ କରିଥାଏ । ସେହିପରି ଆଦିବାସୀଙ୍କ ଜୀବନଧାରଣ ପଦ୍ଧତି ସମ୍ପର୍କରେ ଆମର କୌଣସି ଧାରଣା ନ ଥିଲେହେଁ, ଗୋପୀନାଥ ମହାନ୍ତିଙ୍କ ଉପନ୍ୟାସ ଆମକୁ ସେମାନଙ୍କର ନିକଟତର କରାଇବାରେ ସାହାଯ୍ୟ କରିଥାଏ । ତେଣୁ ସମାଜର ବ୍ୟକ୍ତିବିଶେଷଙ୍କ ମଧ୍ୟରେ ରହିଥିବା ପାର୍ଥକ୍ୟର ରେଖାକୁ ସାହିତ୍ୟ ସଙ୍କୁଚିତ କରିଥାଏ । ମଣିଷ ଅନ୍ଧାରୀ ମନର ବହୁ କଥା ଆଜି ସାହିତ୍ୟରେ ଉଦ୍‌ଘାଟିତ ହୋଇପାରିଛି । ମଣିଷର ଚରିତ୍ର ସମ୍ପର୍କରେ ସାହିତ୍ୟ ସମ୍ପ୍ରତି ଏକ ସ୍ୱଷ୍ଟ ଜ୍ଞାନ ପ୍ରଦାନ କରିବାକୁ ସମର୍ଥ ହୋଇପାରିଛି । ଏହାଦ୍ୱାରା ମାନବ ଚରିତ୍ର ମଧ୍ୟରେ ରହିଥିବା ଅସଙ୍ଗତିର ସୂତ୍ରଟି ଧରା ପଡ଼ିଯାଇଛି । ଅନୁଭୂତିକୁ ପ୍ରାଞ୍ଜଳ ଏବଂ ଭାବକୁ ଶୃଙ୍ଖଳିତ ରୂପେ ପ୍ରକାଶ କରିବା କ୍ଷେତ୍ରରେ ସାହିତ୍ୟ ହେଉଛି ଉପଯୁକ୍ତ ମାଧ୍ୟମ । ସମାଜର ଦୋଷଦୁର୍ବଳତାକୁ ଦୂର କରିବାକୁ ସାହିତ୍ୟ ବୈପ୍ଳବିକର ଭୂମିକା ଗ୍ରହଣ କରିପାରେ । ରୁଷର ଅକ୍ଟୋବର ବିପ୍ଳବ, ଫରାସୀରାଷ୍ଟ୍ର ବିପ୍ଳବ କ୍ଷେତ୍ରରେ ସାହିତ୍ୟର ସେହି ବୈପ୍ଳବିକ ଭୂମିକାର ତୁଳନା ନାହିଁ । ପୁଣି ସମାଜର କୁସଂସ୍କାର ଏବଂ ଅନ୍ଧବିଶ୍ୱାସକୁ ଏହା ଅକ୍ଳେଶରେ ପଦାରେ ପକାଇ ତା'ର ନିରାକରଣ ନିମିତ୍ତ ଉଚିତ ମାର୍ଗ ପ୍ରଦର୍ଶନ କରିଥାଏ । ସଂସାରର ରୂଢ଼ ବାସ୍ତବତା ଠାରୁ ମଣିଷକୁ ଦୂରେଇ ନେଇ ତା' ପ୍ରାଣରେ ବଞ୍ଚିବାର ଉନ୍ମାଦନା ସୃଷ୍ଟି କରିପାରେ ସାହିତ୍ୟ । ଜୀବନଯନ୍ତ୍ରଣାରୁ ସାମୟିକ ମୁକ୍ତି ଦେବା କ୍ଷେତ୍ରରେ ସାହିତ୍ୟ ବିଶ୍ୱସ୍ତ ବନ୍ଧୁଟିଏର ଭୂମିକା ମଧ୍ୟ ଗ୍ରହଣ କରିପାରେ ।

ଜାତିକୁ ସଙ୍ଗଠିତ କରିବା କ୍ଷେତ୍ରରେ ସାହିତ୍ୟର ଅପୂର୍ବ ଭୂମିକା ରହିଛି । ଆମେରିକାର ସ୍ୱାଧୀନତା ଆନ୍ଦୋଳନ ସମୟରେ, ରୁଷ୍‌ର କଠୋର ଜାର୍ ଶାସନ ବିରୋଧରେ, ଫରାସୀର ଷୋଡ଼ଶ ଲୁଇଙ୍କ ଅତ୍ୟାଚାର ବିରୋଧରେ ସାହିତ୍ୟ ଜାତିକୁ ସଙ୍ଗଠିତ କରି ଯେଉଁ ଅତୁଳନୀୟ ସାହସିକ ପଦକ୍ଷେପ ଗ୍ରହଣ କରିଛି, ଇତିହାସରେ ତା'ର ତୁଳନା ନାହିଁ । ଭାରତର ସ୍ୱାଧୀନତା ସଂଗ୍ରାମରେ ମଧ୍ୟ ସାହିତ୍ୟ ଦେଶପ୍ରୀତି ମନ୍ତ୍ରରେ ଜାତିକୁ ସଙ୍ଗଠିତ କରି ଇଂରେଜ ଶାସନ ବିରୋଧରେ ସ୍ୱର ଉତ୍ତୋଳନ କରିବାକୁ ପ୍ରେରଣା ଦେଇଥିଲା । ନିର୍ବୀର୍ଯ୍ୟ ଜାତି ପ୍ରାଣରେ କେବଳ ସାହିତ୍ୟର ଅଗ୍ନିବର୍ଷୀ ବାଣୀ ମୃତ୍ୟୁସଞ୍ଜୀବନୀ ପରି କାର୍ଯ୍ୟ କରିପାରେ । ଦେଶର ଶାସକମାନଙ୍କର ଅପାରଗତା ବିରୋଧରେ ସାହିତ୍ୟ ଦେଶବାସୀଙ୍କୁ ଜାଗ୍ରତ କରିଥାଏ । ଭୀରୁ ଓ ଦୁର୍ବଳ ପ୍ରାଣରେ

ଭରିଦିଏ ଶତସିଂହର ବଳ । ଯାହା ଅସୀ ଦ୍ୱାରା ସମ୍ଭବ ନୁହେଁ, ତାହା ସାହିତ୍ୟର ମସି ଦ୍ୱାରା ସମ୍ଭବ ହୋଇଥାଏ ।

ମଣିଷ ଜୀବନର ବିଭିନ୍ନ କ୍ଷେତ୍ରରେ ସାହିତ୍ୟ ପାଠର ବିଭିନ୍ନ ଉପାଦେୟତା ସ୍ୱୀକାର୍ଯ୍ୟ । ଏହା ନୈତିକ ମୂଲ୍ୟବୋଧ ଜାଗ୍ରତ କରିବା ସଙ୍ଗେ ସଙ୍ଗେ ମଣିଷକୁ ମଣିଷ ପରି ଦେଖିବାକୁ ପ୍ରେରଣା ଯୋଗାଇଥାଏ । ଜୀବନକୁ କରେ ଶୁଭ୍ର, ସୁନ୍ଦର । ସତ୍ୟ, ଶିବ ଏବଂ ସୁନ୍ଦରର ଜୟଗାନ କରି ବିପଥଗାମୀ ମଣିଷକୁ ସତ୍ ପଥରେ ପରିଚାଳିତ କରେ । ନିଷ୍ଠୁର ବାସ୍ତବତାରେ ମ୍ରିୟମାଣ ମଣିଷ ପ୍ରାଣରେ ସୃଷ୍ଟି କରେ ବଞ୍ଚିବାର ଉନ୍ମାଦନା । ହୃଦୟରେ ପ୍ରଶାନ୍ତିର ପ୍ରଲେପ ବୋଳିଥାଏ ସାହିତ୍ୟ । ଚିନ୍ତାକୁ ମହନୀୟ କରେ; ଭାବକୁ ଦିଏ ପ୍ରକାଶର ପୋଷାକ । କଳ୍ପନାର ରଙ୍ଗରେ ରଙ୍ଗାୟିତ କରେ ମଣିଷର ହୃଦୟ ଓ ପ୍ରାଣକୁ । ଉନ୍ନତ ଚିନ୍ତାଧାରାର ପ୍ରକାଶ ମାଧ୍ୟମ ହେଉଛି ସାହିତ୍ୟ । ସାହିତ୍ୟ ପାଠର ବହୁବିଧ ଉପଯୋଗିତା ଯୋଗୁଁ ତାହା ଆଜି ମଣିଷର ଏତେ ପ୍ରିୟ ହୋଇପାରିଛି ।

●

## ସାହିତ୍ୟ ଓ ସଂସ୍କୃତି

**(ଉପକ୍ରମ, ସାହିତ୍ୟର ପରିଭାଷା, ସଂସ୍କୃତିର ସ୍ୱରୂପ, ସାହିତ୍ୟ ସହିତ ସଂସ୍କୃତିର ସମ୍ପର୍କ, ଓଡ଼ିଆ ସାହିତ୍ୟରେ ସଂସ୍କୃତିର ରୂପରେଖ, ଉପସଂହାର)**

ମଣିଷ ସମାଜ-ଜୀବନ ଅତିବାହିତ କରିବା ପରେ ତା'ର ଆଚାର-ବ୍ୟବହାର, ଜୀବନଧାରା ପଦ୍ଧତିରେ କେତେକ ପରିବର୍ତ୍ତନ ସାଧିତ ହେଲା । ଏଥିରୁ ସେ ନିଜର ଅନ୍ତର୍ନିହିତ ଭାବଧାରା ସମ୍ପର୍କରେ ଜ୍ଞାନଲାଭ କଲା । ନିଜର ଚଳଣିରେ କେତେକ ସଂସ୍କାର ଆଣିବାକୁ ଉଦ୍ୟତ ହେଲା । ସଂସ୍କାର ମନୋବୃତ୍ତିରୁ ସଂସ୍କୃତିର ହେଲା ସୃଷ୍ଟି । ଜୀବନ ପ୍ରତି ଦୃଷ୍ଟିଭଙ୍ଗୀରେ ଲକ୍ଷଣୀୟ ପରିବର୍ତ୍ତନ ଆସିଲା । ମଣିଷ ସଭ୍ୟତାର ବିକାଶ ସଙ୍ଗେ ସଙ୍ଗେ ସାମାଜିକ ଆଚାର ହେଲା ପରିମାର୍ଜିତ । ଏକପ୍ରକାର ଜୀବନଧାରା ଯୋଗୁଁ ମଣିଷ ମଣିଷ ମଧ୍ୟରେ ସାଂସ୍କୃତିକ ସମ୍ପର୍କ ପ୍ରତିଷ୍ଠିତ ହେଲା । ସାମାଜିକ ରୀତିନୀତି, ଆଚାର-ବ୍ୟବହାର, ଚାଲିଚଳଣ, ଧର୍ମ, କଳା ଆଦି ସାମଗ୍ରିକ ଭାବରେ ସଂସ୍କୃତି ନାମ ନେଇ ଆତ୍ମପ୍ରକାଶ କଲା । ସାହିତ୍ୟ ହେଲା ଏହି ପ୍ରକାଶର ଏକ ମାଧ୍ୟମ । ତେଣୁ ସାହିତ୍ୟ ସହିତ ସଂସ୍କୃତିର ନିବିଡ଼ ସମ୍ପର୍କ ବିଦ୍ୟମାନ ।

ସାହିତ୍ୟ ମାନବ ଜୀବନର ଲଳିତ ପରିପ୍ରକାଶ । ସମାଜ ଓ ବ୍ୟକ୍ତିର ହିତ ସାଧନ ଏହାର ଲକ୍ଷ୍ୟ । ମାନବ ସମାଜର ଅନ୍ତର୍ନିହିତ ଭାବଧାରା କଳାତ୍ମକ ରୀତିରେ ଏଥିରେ ପ୍ରକାଶ ଲାଭ କରି ଅତୀତ ସହିତ ବର୍ତ୍ତମାନର ସଂଯୋଗ ସ୍ଥାପନ କରିଥାଏ ଓ ଏହି କାରଣରୁ ଭବିଷ୍ୟତ ପଥପ୍ରଦର୍ଶନର ମାର୍ଗ ପରିଷ୍କାର କରେ । ସାମାଜିକ ଏବଂ ବ୍ୟକ୍ତିଗତ ଜୀବନର ମଙ୍ଗଳ ସାଧନ ସାହିତ୍ୟର ଲକ୍ଷ୍ୟ । ଏହା କେବଳ ମାନବର ହିତସାଧନ କରେ ନାହିଁ; ପରନ୍ତୁ ତାକୁ ରୁଚିବନ୍ତ ଓ ମାର୍ଜିତ କରିବାରେ

ସହାୟତା କରିଥାଏ । ଜୀବନ-ଯୁଦ୍ଧରେ ବାରମ୍ବାର ପରାହତ ମଣିଷ ପ୍ରାଣରେ ବଞ୍ଚିବାର ଉନ୍ମାଦନା ସୃଷ୍ଟି କରେ । ଏହି ଦୃଷ୍ଟିରୁ ମାନବ ଜୀବନରେ ସାହିତ୍ୟର ଆବଶ୍ୟକତା ରହିଛି ।

ସଂସ୍କୃତି ଶବ୍ଦର ଇଂରାଜୀ ପ୍ରତିଶବ୍ଦ ହେଉଛି Culture । ଏହାର ଅର୍ଥ କୃଷ୍ଟି ବା ସଂସ୍କାର । ମଣିଷର ଦୈନନ୍ଦିନ ଜୀବନ ସହିତ ସଂସ୍କୃତି ଗଭୀର ଭାବରେ ଜଡ଼ିତ । ବହିଃରଙ୍ଗ ଚାଲିଚଳଣି ଏବଂ ଅନ୍ତରଙ୍ଗ ଚିନ୍ତାଧାରା ଓ ଆଚାର-ବିଚାର ମଧ୍ୟରେ ଗୋଟିଏ ନିର୍ଦ୍ଦିଷ୍ଟ ସମାଜର ସାଂସ୍କୃତିକ ବୈଶିଷ୍ଟ୍ୟ ନିରୂପିତ ହୋଇଥାଏ, ସଂସ୍କୃତିର ରୂପାନ୍ତର ହୋଇଥାଏ । ଆବଶ୍ୟକତା ଅନୁଯାୟୀ ତା'ର ବେଶରେ ପରିବର୍ତ୍ତନ ଆସିଥାଏ । ମାଥ୍ୟୁ ଆର୍‌ନୋଲ୍‌ଡଙ୍କ ମତରେ "It places it in the ever increasing efficacy, and in the general harmonious expansion of those gift of thought and feeling, which make the peculiar dignity, wealth and happiness of human nature. × × It is making endless additions to itself' in the endless expansion of its power, in endless growth in wisdom and beauty, that the spirit of the human race finds its ideal." ସଂସ୍କୃତି ଏକ ମିଶ୍ରିତ ପ୍ରକ୍ରିୟା । ବିଶ୍ୱରେ ବିଭିନ୍ନ ସଂସ୍କୃତି ମଧ୍ୟରୁ ଭାରତୀୟ ସଂସ୍କୃତି ସର୍ବୋତ୍ତମ । ଆଦର୍ଶ ଓ ତ୍ୟାଗ ଉପରେ ଏହି ସଂସ୍କୃତି ଅଧିଷ୍ଠିତ । ଉଦାର ଧର୍ମନୀତି ଏହାର ପ୍ରାଣ । ସମନ୍ୱୟ ଏବଂ ବିଶ୍ୱଜନୀନତାରେ ଏହାର ସଫଳତା । ସେଥିପାଇଁ ଭାରତୀୟ ସଂସ୍କୃତିର ବୈଶିଷ୍ଟ୍ୟ ପ୍ରତିପାଦନ କରାଯାଇ ବେଦରେ କୁହାଯାଇଛି–

ସମାନୋ ମନ୍ତ୍ରଃ ସମିତିଃ ସମାନୀ । ସମାନଂ ମନଃ ସହଚିତ୍ତମେଷାମ୍
ସମାନଂ ମନ୍ତ୍ରଂ ଅଭିମନ୍ତ୍ରୟେ ବଃ । ସମାନେନ ବୋ ହବିଷାଜୁହୋମି
ସମାଜୀବ ଆକୂତିଃ ସମାନୋ ହୃଦୟାନିବଃ । ସମାନମସ୍ତୁବୋ ମନଃ ।
ଯଥା ବଃ ସୁସହାସତି

ସାହିତ୍ୟ ସହିତ ସଂସ୍କୃତିର ସମ୍ପର୍କ ଅଚ୍ଛେଦ୍ୟ । ସମୟାନୁଯାୟୀ ସଂସ୍କୃତି ପରିବର୍ତ୍ତନଶୀଳ ହେଲେହେଁ, ନିଜକୁ ପ୍ରକାଶ କରିବାର ଯୋଗ୍ୟତା ତା'ର ନାହିଁ । ଏଥିପାଇଁ ଆବଶ୍ୟକ ହୋଇଥାଏ ଏକ ମାଧ୍ୟମର । ସେହି ମାଧ୍ୟମ ହେଉଛି ସାହିତ୍ୟ । ଗୋଟିଏ ଦେଶର ସାହିତ୍ୟ ଅଧ୍ୟୟନ କଲେ ସେ ଦେଶର ସଂସ୍କୃତି ସମ୍ବନ୍ଧରେ ଜ୍ଞାନ ଲାଭ ହୋଇଥାଏ । ତେଣୁ ସଂସ୍କୃତିର ବାହ୍ୟ ପ୍ରକାଶ ସାହିତ୍ୟରେ ଘଟିଥାଏ । ବହୁ ସମୟରେ ଦେଶର ସଂସ୍କୃତି ସାହିତ୍ୟକୁ ପ୍ରଭାବିତ କରିଥାଏ । ସେଥିପାଇଁ ସାହିତ୍ୟରେ ମଧ୍ୟ ପରିବର୍ତ୍ତନ ସାଧିତ ହୋଇଥାଏ । ସାହିତ୍ୟର ଆତ୍ମିକ ବିଭବର ପରିବର୍ତ୍ତନ ମୂଳରେ ସଂସ୍କୃତିର ଅବଦାନ ସର୍ବାଦୌ ସ୍ମରଣୀୟ । ମଣିଷର ଅଭ୍ୟନ୍ତର କଥା ଓ ଆଚରଣ ହେଉଛି ସଂସ୍କୃତି । ପରିବର୍ତ୍ତିତ ସମୟରେ ଏହାର ରୂପ ଏବଂ ରଙ୍ଗରେ ହୁଏ ପରିବର୍ତ୍ତନ । ସାହିତ୍ୟର ପ୍ରଚାରକର ଭୂମିକା ଯୋଗୁଁ ଏହାର ସ୍ୱରୂପ ସମ୍ବନ୍ଧରେ ମାନବସମାଜ ଅବଗତ ହୋଇଥାଏ । ଏହି ଦୃଷ୍ଟିରୁ ସାହିତ୍ୟ ସହିତ ସଂସ୍କୃତିର ନିବିଡ଼ ସମ୍ପର୍କ ବିଦ୍ୟମାନ । ସାହିତ୍ୟ ବ୍ୟତିରେକେ ଯେପରି ସଂସ୍କୃତିର ମୂଳ ନିର୍ଦ୍ଧାରଣ କରିବା ଅସମ୍ଭବ, ସେହିପରି ସଂସ୍କୃତି ବ୍ୟତିରେକେ

ସାହିତ୍ୟର ଯୁଗରୁଚିରେ ପରିବର୍ତ୍ତନ ଆସିବା ମଧ ଅସମ୍ଭବ । ତେଣୁ ଗୋଟିଏ ଉପାଦାନକୁ ତ୍ୟାଗକରି ଅନ୍ୟ ଉପାଦାନଟିକୁ ଆଲୋଚନା କଲେ ତା'ର ଚିରନ୍ତନ ମୂଲ୍ୟ ଖଣ୍ଡିତ ହୋଇପଡ଼ିଥାଏ ।

ସାହିତ୍ୟ ସଂସ୍କୃତିର ଜୀବନ୍ତ ରୂପାୟନ । ସାହିତ୍ୟ ମାଧ୍ୟମରେ ହିଁ ସଂସ୍କୃତିର ସ୍ୱରୂପ ଧରାପଡ଼ିଥାଏ । ବିଶ୍ୱର ସମସ୍ତ ସାହିତ୍ୟ କ୍ଷେତ୍ରରେ ଏହି ଚିରନ୍ତନ ସତ୍ୟଟିକୁ ଅସ୍ୱୀକାର କରାଯାଇ ନ ପାରେ । ସଂସ୍କୃତି ପରିବର୍ତ୍ତନଶୀଳ । ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ଚିନ୍ତାଧାରା, ସମାଜନୀତି, ରାଜନୀତି ଓ ବାହ୍ୟ ପ୍ରଭାବ ମଧ ସଂସ୍କୃତିର ପରିବର୍ତ୍ତନରେ ସହାୟତା କରିଥାଏ । ଦ୍ରୁତ ବ୍ୟକ୍ତି ଚେତନାର ପରିବର୍ତ୍ତନରେ ଏହା ମଧ ପରିବର୍ତ୍ତିତ ହୋଇଥାଏ । ଏହି ପରିବର୍ତ୍ତନର ଧାରା କେବଳ ସାହିତ୍ୟ ମାଧ୍ୟମରେ ହିଁ ଧରା ଦେଇଥାଏ । ଯୁଗର ମାନସ ଭୂମିରୁ ଜନ୍ମ ନେଇଥାଏ ଯୁଗ ସାହିତ୍ୟ । ଧର୍ମ, ଦର୍ଶନ, ଚିନ୍ତାଧାରାର ପରିବର୍ତ୍ତନରେ ସମାଜ ହୁଏ ପରିବର୍ତ୍ତିତ । ଏହାର ସମବାୟରେ ସଂସ୍କୃତିର ସମଗ୍ର ରୂପ ଫୁଟି ଉଠିଥାଏ । ସାରଳାଦାସଙ୍କ ସମୟ ଥିଲା ଯୁଗ ନିର୍ମାଣର ସମୟ । ଓଡ଼ିଶାର ଜନଜୀବନ, ଧର୍ମ ଏବଂ ସାଧନାକୁ ଭିତ୍ତିକରି ଏହା ଗଢ଼ି ଉଠିଥିଲା । ଜନସାଧାରଣଙ୍କ ବିଶ୍ୱାସ ଓ ସାଂସ୍କୃତିକ ଐତିହ୍ୟକୁ ଉପଜୀବ୍ୟ କରି ସାରଳା ସାହିତ୍ୟ ସୃଷ୍ଟି ହୋଇଥିବାରୁ ଏଥିରେ ଓଡ଼ିଶାର ତତ୍କାଳୀନ ଜନଜୀବନଧାରା ଓ ସଂସ୍କୃତି ଜୀବନ୍ତ ରୂପ ଲାଭ କରିପାରିଛି । ପଞ୍ଚସଖାଙ୍କ ସମୟରୁ ଓଡ଼ିଶାର ସାମାଜିକ ତଥା ଧାର୍ମିକ ଜୀବନରେ କେତେକ ପରିବର୍ତ୍ତନ ଦେଖା ଦେଇଛି । ଚୈତନ୍ୟଙ୍କ ଆଗମନ ସହିତ ଓଡ଼ିଶାରେ ଏକ ଧାର୍ମିକ ଆନ୍ଦୋଳନ ମୁଣ୍ଡ ଟେକିଛି । ତେଣୁ ଏହି ସମୟରେ ଓଡ଼ିଶାର ସଂସ୍କୃତି ବିଶେଷ ଭାବରେ ଧର୍ମଦ୍ୱାରା ପ୍ରଭାବିତ ହୋଇପାରିଛି । ରୀତିଯୁଗ ବେଳକୁ ସାମାଜିକ ଜୀବନ କ୍ଷେତ୍ରରେ ଅନ୍ୟ ଏକ ପରିବର୍ତ୍ତନ ଆସିଛି । ଓଡ଼ିଶାର ଐତିହ୍ୟ ମୋଗଲମାନଙ୍କ ଆକ୍ରମଣରେ ଖଣ୍ଡବିଖଣ୍ଡିତ ହୋଇପଡ଼ିଛି । ପରାଧୀନ ନରପତି ମୋଗଲମାନଙ୍କ ଅନୁକମ୍ପାର ପାତ୍ର ରୂପେ ବଞ୍ଚିରହିବାକୁ ଶ୍ରେୟ ମଣିଛନ୍ତି । କେନ୍ଦ୍ରର ଆଦର୍ଶ ଅନୁକରଣୀୟ ହୋଇଛି ପ୍ରାଦେଶିକ ଶାସନରେ । ତେଣୁ ମୋଗଲ ଦରବାରର ବିଳାସିତା ଏବଂ ଶୃଙ୍ଗାରିକତା ସାହିତ୍ୟକୁ ପ୍ରଭାବିତ କରିଛି । ଧର୍ମର ଆବରଣ ମଧ୍ୟରେ ଶୃଙ୍ଗାରିକତାର ପ୍ରାବଲ୍ୟ ହୋଇଛି ଏ ସାହିତ୍ୟର ଆଦର୍ଶ । ଇଂରେଜ ଶାସନାଧୀନ ହେବାପରେ ନୂତନ ଶିକ୍ଷା, ଚେତନା ଓଡ଼ିଶାର ସାଂସ୍କୃତିକ ଜୀବନକୁ ଅନ୍ୟ ଭାବରେ ପ୍ରଭାବିତ କରିଛି । ସଂସ୍କୃତିର ହୋଇଛି ପୁନର୍ଜନ୍ମ । ପୁଣି ସ୍ୱାଧୀନ ଚିନ୍ତାଧାରା ଜାତୀୟ ଜାଗରଣକୁ ତ୍ୱରାନ୍ୱିତ କରିଛି । ଜାତୀୟବାଦୀ ଚିନ୍ତାଧାରା ସାହିତ୍ୟକୁ ପ୍ରଭାବିତ କରିଛି । ଏହାପରେ ସୁଦୂର ମୋହ, ଭାବପ୍ରବଣତା ସବୁଜ କବିଙ୍କୁ ମତୁଆଲା କରିଛି । ଆକାଶଚାରୀ କଳ୍ପନା ସାହିତ୍ୟର ହୋଇଛି ଉପଜୀବ୍ୟ ବିଷୟ । ସଂସ୍କୃତିରେ ଦେଖାଦେଇଛି ଅବକ୍ଷୟ । ସ୍ୱାଧୀନତା ଲାଭ ପରେ ସ୍ୱାଧୀନ ଚିନ୍ତା ଓ ବିଶ୍ୱର ପରିବର୍ତ୍ତିତ ଭାବଧାରା ତଥା ଘଟଣାବଳୀ ସାହିତ୍ୟକୁ ପ୍ରଭାବିତ କରିଛି । ବିଶ୍ୱଯୁଦ୍ଧ, ଶିଳ୍ପବିପ୍ଳବ, ବ୍ୟର୍ଥ ଆଶା-ଆକାଂକ୍ଷା, ଏକାକୀତ୍ୱବୋଧ ଆଦି ଅନେକ ଚିନ୍ତାଧାରା ଦ୍ୱାରା ସାହିତ୍ୟିକମାନେ ସଂକ୍ରମିତ ହୋଇଛନ୍ତି । ତେଣୁ ସଂସ୍କୃତିରେ ସୃଷ୍ଟି ହୋଇଛି ଅନ୍ୟ ଏକ ମୋଡ଼ । ଯୁଗରୁଚି ଅନୁଯାୟୀ ସଂସ୍କୃତିର ପରିବର୍ତ୍ତନ ଘଟିବା ସହିତ ସାହିତ୍ୟରେ ମଧ ପରିବର୍ତ୍ତନ ସଂଘଟିତ ହୋଇଛି ।

ସଂସ୍କୃତିର ପରିବର୍ତ୍ତନ ସାହିତ୍ୟରେ ପରିବର୍ତ୍ତନ ଘଟାଇଥାଏ । ମାତ୍ର ସଂସ୍କୃତିର ପରିବର୍ତ୍ତନ ଦ୍ରୁତ ହୋଇନଥିବାରୁ ଏହା ଏତେ ଶୀଘ୍ର ଆଖିରେ ଧରା ପଡ଼ିନଥାଏ । ସାହିତ୍ୟ ଦ୍ୱାରା ହିଁ ପରିବର୍ତ୍ତନ ଧାରା ସ୍ପଷ୍ଟ ହୋଇଥାଏ । ସୁତରାଂ ସଂସ୍କୃତି ଓ ସାହିତ୍ୟ ସର୍ବଦା ପାଖାପାଖି ଗତିଶୀଳ । ଜଣକର ପରିବର୍ତ୍ତନ ହେଲେ ଅନ୍ୟଟିରେ ତା'ର ପ୍ରଭାବ ଖୁବ୍ ଶୀଘ୍ର ପରିଲକ୍ଷିତ ହୋଇଥାଏ । ଏହି ଦୃଷ୍ଟିରୁ ସାହିତ୍ୟ ଏବଂ ସଂସ୍କୃତି ପରସ୍ପରଠାରୁ ପୃଥକ୍ ନୁହନ୍ତି, ବରଂ ଖୁବ୍ ଅନ୍ତରଙ୍ଗ ।

●

## ସାହିତ୍ୟ ଓ ସୌନ୍ଦର୍ଯ୍ୟବୋଧ

**(ଉପକ୍ରମ, ସୌନ୍ଦର୍ଯ୍ୟବୋଧ କ'ଣ ?, ସାହିତ୍ୟରେ ସୌନ୍ଦର୍ଯ୍ୟବୋଧର ଆବଶ୍ୟକତା, ସୌନ୍ଦର୍ଯ୍ୟର ଚିରନ୍ତନତା, ସାହିତ୍ୟରେ ସୌନ୍ଦର୍ଯ୍ୟ ଚେତନା, ଉପସଂହାର)**

For beauty they have sought in every age.
He who perceives it is from himself set free. (ଗେଟେ)

ଆନନ୍ଦ ପ୍ରଦାନ ସାହିତ୍ୟର ଲକ୍ଷ୍ୟ । ଆନନ୍ଦ ହିଁ ସୌନ୍ଦର୍ଯ୍ୟ । ସୌନ୍ଦର୍ଯ୍ୟାନୁଭୂତି ମଣିଷକୁ ସ୍ୱର୍ଗୀୟ ଆନନ୍ଦ ପ୍ରଦାନ କରିଥାଏ । ସାହିତ୍ୟ ପାଠଦ୍ୱାରା ଏହି ପ୍ରକାର ଅନୁଭୂତି ପ୍ରାପ୍ତ ହୋଇଥାଏ । ସୌନ୍ଦର୍ଯ୍ୟ ସନାତନ ଓ ଚିରନ୍ତନ । ଏହା ମଣିଷକୁ ଭୂମିରୁ ଭୂମାକୁ ନେଇଥାଏ । ସୌନ୍ଦର୍ଯ୍ୟବିହୀନ ସୃଷ୍ଟି କଦାପି ସାହିତ୍ୟ ପଦବାଚ୍ୟ ହୋଇ ନ ପାରେ । ସାଧାରଣ ଦୃଷ୍ଟି ଅପେକ୍ଷା ସାହିତ୍ୟିକ ଦୃଷ୍ଟିରେ ଏକ ସ୍ୱତନ୍ତତା ଥାଏ । ଏହି ସ୍ୱତନ୍ତତା ସୃଷ୍ଟି ହୋଇଥାଏ ତାଙ୍କର ସୌନ୍ଦର୍ଯ୍ୟବୋଧରୁ । ସୁନ୍ଦରରୁ ହିଁ ସୌନ୍ଦର୍ଯ୍ୟର ସୃଷ୍ଟି । ସୌନ୍ଦର୍ଯ୍ୟ ଏକ ପ୍ରେରଣା ରୂପେ ସାହିତ୍ୟିକମାନଙ୍କ ନିକଟରେ କାର୍ଯ୍ୟ କରିଥାଏ । କୌଣସି ସାହିତ୍ୟର ବିଚାର କରିବାର ଅର୍ଥ ତା' ମଧ୍ୟରେ ନିହିତ ଥିବା ସୌନ୍ଦର୍ଯ୍ୟବୋଧର ହିଁ ଆକଳନ କରିବା । ତେଣୁ କୌଣସି ସୃଷ୍ଟିର ପର୍ଯ୍ୟାଲୋଚନା ସମୟରେ ତନ୍ମଧ୍ୟରେ ନିହିତ ସୌନ୍ଦର୍ଯ୍ୟ ତତ୍ତ୍ୱର ହିଁ ଅବଧାରଣା କରାଯାଇଥାଏ । ଏହି ସୌନ୍ଦର୍ଯ୍ୟ ଚେତନା ସ୍ରଷ୍ଟାର କାବ୍ୟ ଚେତନାଠାରୁ ତା'ର ଜୀବନ ଚେତନା ପର୍ଯ୍ୟନ୍ତ ବିସ୍ତୃତ । ଏହା ସତ୍ୟର ରୂପାନ୍ତର । ସେଇଥିପାଇଁ କୀଟ୍ସ କହିଥିଲେ–"Beauty is truth, truth is beauty." । ଏହାର କମନୀୟତା ପାଠକ ପ୍ରାଣରେ ପୁଲକ ସୃଷ୍ଟି କରେ । ସେଇଥିପାଇଁ କୌଣସି କଳାର କଳନା ସମୟରେ ସୌନ୍ଦର୍ଯ୍ୟତତ୍ତ୍ୱ ଅନୁଶୀଳନର ଆବଶ୍ୟକ ହୋଇଥାଏ । /

ସୌନ୍ଦର୍ଯ୍ୟ ଏକ ପ୍ରତ୍ୟୟ; ଯାହା ସୁନ୍ଦର ବସ୍ତୁ ମାଧ୍ୟମରେ ପ୍ରକାଶିତ ହୋଇଥାଏ । ସକ୍ରେଟିସ୍‌ଙ୍କ ମତରେ ଯାହା ନିଜର ଉଦ୍ଦେଶ୍ୟକୁ ଉତ୍ତମ ରୂପେ ଚରିତାର୍ଥ କରିପାରୁଥିବ, ତାହା ସୁନ୍ଦର । ପ୍ଲେଟୋଙ୍କ ମତରେ ବସ୍ତୁର ନିଜସ୍ୱ ସୌନ୍ଦର୍ଯ୍ୟ କିଛି ନାହିଁ । ସୁନ୍ଦର ବସ୍ତୁଦ୍ୱାରା ତାହା ପ୍ରତୀକିତ ହୋଇଥାଏ । ସତ୍ୟ, ଶିବ ଓ ସୁନ୍ଦର ମଧ୍ୟରେ ଐକ୍ୟ ପ୍ରତିଷ୍ଠା ପାଇଁ ପ୍ରଥମେ ପ୍ଲେଟୋ ପ୍ରୟାସ କରିଛନ୍ତି । ତେଣୁ ସେ ପରିମାଣ ଏବଂ ସାଦୃଶ୍ୟ ଯୋଗୁଁ ସୌନ୍ଦର୍ଯ୍ୟ ସୃଷ୍ଟି ହୋଇଥାଏ

ବୋଲି ମତବ୍ୟକ୍ତ କରିଛନ୍ତି । ସୌନ୍ଦର୍ଯ୍ୟ ସର୍ବଦା ପ୍ରଜ୍ଞାକୁ ଅପେକ୍ଷା ରଖେ । ଯାହାର ଶ୍ରବଣ, ଦର୍ଶନ, ପଠନ ଏବଂ ମନନରେ ଚିତ୍ତ ବିସ୍ତୃତି ଘଟିଥାଏ, ହୃଦୟରେ ଆହ୍ଲାଦଭାବ ସୃଷ୍ଟି ହୋଇଥାଏ, ମାନବୀୟ ପ୍ରଜ୍ଞାକୁ ଉଦୀପ୍ତ କରିଥାଏ, ତାହାହିଁ ସୌନ୍ଦର୍ଯ୍ୟ । ହ୍ୟୁମ୍‌ଙ୍କ ମତରେ ଯାହା ଆତ୍ମାର ସନ୍ତୋଷ ବିଧାନ କରେ, ତାହା ସୌନ୍ଦର୍ଯ୍ୟ । ଏହା ଏକ ଇନ୍ଦ୍ରିୟଗ୍ରାହ୍ୟ ଗୁଣ । R. S. Sastriଙ୍କ ମତରେ ସୌନ୍ଦର୍ଯ୍ୟର ସ୍ୱରୂପ ଆକଳନ କରିବା କଷ୍ଟସାଧ । କାରଣ ଏହା ଶୂନ୍ୟଲମ୍ବୀ, ଭାସମାନ ଏବଂ ଦୀପ୍ତିଯୁକ୍ତ–Beauty is inexplicable, it is a hovering, floating, and glittering shadow, whose outline eludes the grasp of definition. ବସ୍ତୁର ଯେଉଁ ଆଭାସ କଳ୍ପନାଦ୍ୱାରା ସୁଖର ଅନୁଭୂତି ପ୍ରଦାନ କରିଥାଏ, ତାହାକୁ ବୋସାଙ୍କେ ସୌନ୍ଦର୍ଯ୍ୟାନୁଭୂତି ବୋଲି କହିଛନ୍ତି । ଆନନ୍ଦଭାବର ମୂର୍ତ୍ତରୂପ ସୌନ୍ଦର୍ଯ୍ୟ । କ୍ରୋଚେ ସୌନ୍ଦର୍ଯ୍ୟ ମାନବର କ୍ରିୟା ବ୍ୟାପାର ଏବଂ ଆତ୍ମଶକ୍ତିରେ ନିହିତ ବୋଲି କହିଥାନ୍ତି । ରୂପ ସୌନ୍ଦର୍ଯ୍ୟର ଅଧିଷ୍ଠାନ କ୍ଷେତ୍ର । ଏହା ଅସୀମର ସମଗ୍ର ବିରାଜମାନତାର ଏକ ପ୍ରତିରୂପ; ତେଣୁ ସ୍ୱୟଂସମ୍ପୂର୍ଣ୍ଣ । ବ୍ରାଡ଼ଲେଙ୍କ ମତରେ–Beauty–We may perhaps say, is the image of the total presence of the infinite within any limits it may choose to assume. ଏହା ମଣିଷ ହୃଦୟର ଏକ ପବିତ୍ର ସମ୍ପଦ । ଭାରତୀୟ ଆଳଙ୍କାରିକଗଣ ରସ, ବକ୍ରୋକ୍ତି, ଅଳଙ୍କାର ଆଦି ବାଦ ସମ୍ପର୍କରେ ଆଲୋଚନା କଲାବେଳେ ସାହିତ୍ୟର ଏହି ସୌନ୍ଦର୍ଯ୍ୟବୋଧ ସମ୍ପର୍କରେ ସୂଚନା ପ୍ରଦାନ କରିଛନ୍ତି । ମାତ୍ର ପାଶ୍ଚାତ୍ୟ ସାହିତ୍ୟରେ ଯେପରି ସୌନ୍ଦର୍ଯ୍ୟ ତତ୍ତ୍ୱ ଉପରେ ସ୍ୱତନ୍ତ୍ର ଏବଂ ସ୍ୱୟଂସମ୍ପୂର୍ଣ୍ଣ ଗ୍ରନ୍ଥ ରଚନା କରାଯାଇଛି, ଭାରତୀୟ ସାହିତ୍ୟରେ ସେପରି ଶାସ୍ତ୍ର ରଚନା କରାଯାଇପାରି ନାହିଁ ।

ସୌନ୍ଦର୍ଯ୍ୟବୋଧ ନ ଥିଲେ, ସାହିତ୍ୟ ସୃଷ୍ଟି ହୋଇ ନ ପାରେ । ସାହିତ୍ୟ ସାର୍ବଜନୀନ ହେବାକୁ ହେଲେ, ସେଥିରେ ସୌନ୍ଦର୍ଯ୍ୟବୋଧ ରହିବାର ଜରୁରୀ ଆବଶ୍ୟକତା ରହିଛି । ଭାବର ପ୍ରାକୃତିକତାରେ ଓ ଶୈଳୀର ସ୍ୱତଃସ୍ଫୂର୍ତ୍ତତାରେ ସାହିତ୍ୟିକ ସୌନ୍ଦର୍ଯ୍ୟ ଫୁଟି ଉଠିଥାଏ । ସୁନ୍ଦର ଶବ୍ଦ ସଂଯୋଜନା ଏବଂ ଭାବର ମହନୀୟତା ଯୋଗୁଁ ଏହା ହୋଇଉଠେ ଅଧିକ ଚିତ୍ତାକର୍ଷକ । ଚିତ୍ରକଳ୍ପ, ପ୍ରତୀକ ଆଦିର ଉପଯୁକ୍ତ ବିନିଯୋଗରେ ପ୍ରାକୃତିକ ସୌନ୍ଦର୍ଯ୍ୟ ପ୍ରକାଶଲାଭ କରିଥାଏ ସାହିତ୍ୟରେ । ପ୍ରାଚ୍ୟ ଆଳଙ୍କାରିକ "ରମଣୀୟାର୍ଥ ପ୍ରତିପାଦକ ଶବ୍ଦଃ କାବ୍ୟମ୍" କହିବାଦ୍ୱାରା ରମଣୀୟ ଅର୍ଥପୂର୍ଣ୍ଣ ଶବ୍ଦର ସଂଯୋଜନା ଦ୍ୱାରା ସାହିତ୍ୟରେ ସୌନ୍ଦର୍ଯ୍ୟ ପରିସ୍ଫୁଟିତ ହୋଇଥାଏ ବୋଲି ସୂଚନା ଦେଇଛନ୍ତି । ପ୍ରାକୃତିକ ସୌନ୍ଦର୍ଯ୍ୟ ଅପେକ୍ଷା କବି କଳ୍ପନାର ସୌନ୍ଦର୍ଯ୍ୟ ଅଧିକ ମନୋହର ଓ ଚିତ୍ତୋଦ୍ରେକକାରୀ । ଗୋଟିଏ ଫୁଲ ଦର୍ଶନରେ ମନରେ ଯେତିକି ଆନନ୍ଦ ଭାବ ସୃଷ୍ଟି ହୋଇନଥାଏ, ସେହି ଫୁଲର କାଳ୍ପନିକ ବର୍ଣ୍ଣନାରେ ତତୋଽଧିକ ଆନନ୍ଦ ଜାତ ହୋଇଥାଏ । ତେଣୁ କବି ବା ସାହିତ୍ୟିକର କାଳ୍ପନିକ ସୌନ୍ଦର୍ଯ୍ୟ ବାସ୍ତବ ଜଗତର ପ୍ରାକୃତିକ ସୌନ୍ଦର୍ଯ୍ୟ ଅପେକ୍ଷା ଅଧିକ ମୁଗ୍‌ଧକର । କାବ୍ୟ ଏକ କବି କର୍ମ । କବି ତାଙ୍କର ତୃତୀୟ ନୟନ ଦ୍ୱାରା ଯେଉଁ ନୂତନ ସୃଷ୍ଟି ସମ୍ଭବ କରିଥାନ୍ତି, ତାହା ଅଧିକ ରମଣୀୟ । ଏହା ମଧ୍ୟରେ ପ୍ରକାଶିତ ସୌନ୍ଦର୍ଯ୍ୟ ବାସ୍ତବ ଓ ଜୀବନ୍ତ

ପରି ପ୍ରତୀୟମାନ ହୋଇଥାଏ । ସାହିତ୍ୟିକ ସୌନ୍ଦର୍ଯ୍ୟରେ ଆନନ୍ଦ ପରିପୂର୍ଣ୍ଣ ରହିଥାଏ । କବିର ଅନୁଭବ ବା ଉପଲବ୍ଧି ଯେତେବେଳେ ରସଘନ ରୂପ ନେଇ ଭାଷା ମାଧମରେ ପ୍ରକାଶ ଲାଭ କରେ, ସେତେବେଳେ ତାହା ସୌନ୍ଦର୍ଯ୍ୟର ରୂପ ଗ୍ରହଣ କରେ । ବାହ୍ୟଜଗତ ସହିତ ଅନ୍ତଃଜଗତର ସମନ୍ୱୟରେ ସୃଷ୍ଟି ହୁଏ କାଳଜୟୀ ସୃଷ୍ଟି । ଏଥିରୁ ଯେଉଁ ଆନନ୍ଦ ଲାଭ ହୋଇଥାଏ, ତାହାହିଁ ପ୍ରକୃତ ସୌନ୍ଦର୍ଯ୍ୟାନୁଭବ । କବିର କଳ୍ପନା ସୌନ୍ଦର୍ଯ୍ୟ କାବ୍ୟରେ ରୂପାୟିତ ହୋଇ ପାଠକକୁ ଚିରନ୍ତନ ଆନନ୍ଦ ପ୍ରାପ୍ତି କରାଇଥାଏ । ସୁନ୍ଦର ସାଦୃଶ ଯୋଜନା ଦ୍ୱାରା କବି ଯେଉଁ ଚିତ୍ରକଳ୍ପ ଓ ପ୍ରତୀକ ଆଦିର ସୃଷ୍ଟି କରିଥାଏ; ତାହା ପାଠକ ମନରେ ସୌନ୍ଦର୍ଯ୍ୟାନୁଭୂତି ସୃଷ୍ଟି କରିଥାଏ । ସାହିତ୍ୟ ସୌନ୍ଦର୍ଯ୍ୟରୁ ବିଶୁଦ୍ଧ ସୁଖ ପ୍ରାପ୍ତି ହୋଇଥାଏ । ଇନ୍ଦ୍ରିୟ ଦ୍ୱାରା ଉପଲବ୍ଧ ସୁଖ କ୍ଷଣିକ । ମାତ୍ର ସାହିତ୍ୟର ସୌନ୍ଦର୍ଯ୍ୟରୁ ଉପଲବ୍ଧ ସୁଖ ଚିରନ୍ତନ । ଏଥିରେ ବ୍ୟକ୍ତିର ସ୍ୱାର୍ଥ ଲାଳସା ଜଡ଼ିତ ନ ଥାଏ । ଏହା ମାନବକୁ କ୍ଷଣିକମାତ୍ରେ କଳ୍ପଲୋକକୁ ନେଇଯାଇପାରେ ଏବଂ ପାର୍ଥିବ ଜଗତ ଠାରୁ ଦୂରେଇ ଦେଇ ତା'ର ମନ ଓ ପ୍ରାଣକୁ ସୌନ୍ଦର୍ଯ୍ୟ ସାଗରରେ ବୁଡାଇ ଦେଇଥାଏ । ଏହି କାରଣରୁ ସାହିତ୍ୟରେ ସୌନ୍ଦର୍ଯ୍ୟବୋଧର ଆବଶ୍ୟକତା ରହିଛି । ସୌନ୍ଦର୍ଯ୍ୟ ଚିରନ୍ତନ । ଏଥିରେ କ୍ଷୟବୃଦ୍ଧି ନାହିଁ । ସେଥିପାଇଁ କୀଟ୍‌ସ ଲେଖିଥିଲେ–A thing of beauty is joy for ever. ଏହାର ଅନୁସରଣରେ ରାଧାନାଥ ରାୟ କହିଥିଲେ–

ସୁନ୍ଦର ପଣର ଚିରନ୍ତନ ରୀତି
ସୁନ୍ଦର ତୃପ୍ତିରେ ଅବସାଦ ନାହିଁ
ଯେତେ ଦେଖୁଥିଲେ ନୂଆ ଦିଶୁଥାଇ ।

ସୌନ୍ଦର୍ଯ୍ୟ ଏକ ଭାବ । ଏହା ସବୁ ମଣିଷ ହୃଦୟରେ ସୃଷ୍ଟି ହୋଇ ନ ପାରେ । ଯେଉଁମାନଙ୍କର ଅନୁଭବ କରିବାର ଶକ୍ତି ରହିଛି, ସେହିମାନେ ହିଁ ଏହାର ଉପାସକ, ଭୋକ୍ତା ଓ ଦ୍ରଷ୍ଟା । ସୌନ୍ଦର୍ଯ୍ୟବୋଧ ଚିରନ୍ତନ ହୋଇଥିବାରୁ, ଏହା ନିତ୍ୟନୂତନ ସୃଷ୍ଟି କରିବାକୁ ପ୍ରେରଣା ଯୋଗାଇ ଦେଇଥାଏ । ଦେଶ, କାଳ, ପାତ୍ର ନିର୍ବିଶେଷରେ ମଣିଷକୁ ଏହା ଅଲୌକିକ ଆନନ୍ଦ ପ୍ରଦାନ କରିଥାଏ । ଏହା ସମ୍ବେଗାତ୍ମକ । ହୃଦୟର ଭାବ ସହିତ ଏକାତ୍ମ ଭାବେ ଏହା ବିଜଡ଼ିତ ଥିବାରୁ ତା'ର ଚିରନ୍ତନ ମୂଲ୍ୟକୁ ଅସ୍ୱୀକାର କରାଯାଇ ନ ପାରେ ।

ସୌନ୍ଦର୍ଯ୍ୟ ବ୍ୟତିରେକେ ସାହିତ୍ୟର କଳ୍ପନା କରାଯାଇ ନ ପାରେ । ମାନବର ଏହି ସୌନ୍ଦର୍ଯ୍ୟ ଚେତନାହିଁ ତାକୁ ସାହିତ୍ୟ ସୃଷ୍ଟି ନିମିତ୍ତ ପ୍ରେରଣା ପ୍ରଦାନ କରିଛି । କବି ବା ସାହିତ୍ୟିକର ପ୍ରକୃତିର ନୈସର୍ଗିକ ବର୍ଣ୍ଣନାରେ, ପାର୍ଥିବ ଜଗତ ଓ ଜୀବନର ବର୍ଣ୍ଣନାରେ ଏହି ସୌନ୍ଦର୍ଯ୍ୟବୋଧ ଫୁଟି ଉଠିଛି । ସାରଳାଦାସଙ୍କ ଠାରୁ ସାମ୍ପ୍ରତିକ କାଳପର୍ଯ୍ୟନ୍ତ ସମସ୍ତ କବି ବା ସାହିତ୍ୟିକ ସେମାନଙ୍କ ସୃଷ୍ଟିରେ ସୌନ୍ଦର୍ଯ୍ୟବୋଧର ପରିପ୍ରକାଶ ନିମିତ୍ତ ଆନ୍ତରିକ ପ୍ରଯତ୍ନ କରିଛନ୍ତି । ନାରୀ ରୂପ ବର୍ଣ୍ଣନାରେ, ପ୍ରକୃତି ବର୍ଣ୍ଣନାରେ, ମଣିଷର ବିଭିନ୍ନ ଭାବ ପ୍ରସଙ୍ଗରେ, ଚାତୁର୍ଯ୍ୟ ପ୍ରକାଶରେ, ଅଳଙ୍କାର ପ୍ରଦର୍ଶନରେ ଏହାର ପ୍ରକାଶ ଘଟିଛି । ପ୍ରେମର ଅଫୁରନ୍ତ ପ୍ରବାହରେ, ଆଧାତ୍ମିକ ଭାବ

ଭାବନାରେ ପୁଣି ରୂପଦୃଷ୍ଟି ଚାତୁର୍ଯ୍ୟରେ ଓଡ଼ିଆ କବିଗଣ ସେମାନଙ୍କ ସୃଷ୍ଟିରେ ସୌନ୍ଦର୍ଯ୍ୟବୋଧର ଅବତାରଣା କରିଛନ୍ତି । କବିର ରସଦୃଷ୍ଟି ଓ ଭାବଦୃଷ୍ଟି ସାହିତ୍ୟକୁ କରିଛି ସୌନ୍ଦର୍ଯ୍ୟମୟ । ତେଣୁ ସୌନ୍ଦର୍ଯ୍ୟ ଚେତନା ବ୍ୟତିରେକେ ସାହିତ୍ୟ ସୃଷ୍ଟି ଯେ ସମ୍ପୂର୍ଣ୍ଣ ଅସମ୍ଭବ, ବିଶ୍ୱର ଯେକୌଣସି ସାହିତ୍ୟକୁ ଲକ୍ଷ୍ୟ କଲେ ତା'ର ସ୍ପଷ୍ଟ ପ୍ରମାଣ ମିଳିଥାଏ ।

ସୌନ୍ଦର୍ଯ୍ୟାନୁଭବ ସାହିତ୍ୟର ଜନନୀ । ତେଣୁ ସାହିତ୍ୟ ଏବଂ ସୌନ୍ଦର୍ଯ୍ୟ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । କବିର ସୌନ୍ଦର୍ଯ୍ୟ ଦୃଷ୍ଟି ତାକୁ ସାହିତ୍ୟ ସୃଷ୍ଟି ନିମିତ୍ତ ପ୍ରେରଣା ଦେଇଥାଏ । ଏହା ସାହିତ୍ୟକୁ ପ୍ରାଣଦାନ କରେ; ରସସିକ୍ତ କରେ । ପାଠକ ପ୍ରାଣରେ ସୃଷ୍ଟି କରେ ଅଫୁରନ୍ତ ଆନନ୍ଦ ପ୍ରବାହ । ସୌନ୍ଦର୍ଯ୍ୟ ଚିତ୍ତର ଏକ ବିଶେଷ ଅବସ୍ଥା ହୋଇଥିବାରୁ ଏହା ଚିତ୍ତକୁ ବିସ୍ତାରିତ କରିଥାଏ । ସୌନ୍ଦର୍ଯ୍ୟ ଦୃଷ୍ଟି ମାନବକୁ ସ୍ଥୂଳ ଜଗତରୁ ସୂକ୍ଷ୍ମ ଜଗତ ଆଡ଼କୁ ନେଇଯାଇଥାଏ । ତା'ର ପ୍ରାଣରେ ସୃଷ୍ଟି କରେ ଉଦ୍‌ବେଳନ । କବିପ୍ରାଣର ସୌନ୍ଦର୍ଯ୍ୟ ଭାବନା ତା'ର ସୃଷ୍ଟିକୁ କରେ ମହାନ । ଏହି ଦୃଷ୍ଟିରୁ ସାହିତ୍ୟ ଓ ସୌନ୍ଦର୍ଯ୍ୟବୋଧ ଅବିଚ୍ଛେଦ୍ୟ ।

●

## ସାହିତ୍ୟ ଓ ଆଦର୍ଶବାଦ

**(ଉପକ୍ରମ, ଆଦର୍ଶବାଦର ଆବଶ୍ୟକତା, ଆଦର୍ଶବାଦର ସାମାଜିକ ଦିଗ, ସାହିତ୍ୟରେ ଆଦର୍ଶବାଦ, ଉପସଂହାର)**

ମାନବ ଏବଂ ସମାଜର ହିତ ସାଧନ ପାଇଁ ସାହିତ୍ୟର ସୃଷ୍ଟି । ଏହା କେବଳ ମାନବର ସୌନ୍ଦର୍ଯ୍ୟବୋଧର ପ୍ରକାଶକ ନୁହେଁ; ଜୀବନ ଗଠନରେ ମଧ୍ୟ ଏହାର ଭୂମିକା ଗୁରୁତ୍ୱପୂର୍ଣ୍ଣ । ପରମ୍ପରା ଓ ଜାତିର ସଂସ୍କୃତି ଏହାର ଭିତ୍ତିଭୂମି । ଯାହା ଜୀବନକୁ କଳଙ୍କିତ ଓ ଉଚ୍ଛୃଙ୍ଖଳ କରେ, ତାହା ଏଥିରେ ପରିତ୍ୟଜ୍ୟ । ଆଦର୍ଶ ଜୀବନଯାପନ ପାଇଁ ସାହିତ୍ୟରେ ରହିଥାଏ ପ୍ରେରଣା । ଆଦର୍ଶ ରାଷ୍ଟ୍ର ଗଠନରେ ଏହାର ଭୂମିକା ତେଣୁ ମହତ୍ତ୍ୱପୂର୍ଣ୍ଣ । ସମାଜ ଉପରେ ସାହିତ୍ୟର ଅପ୍ରତିହତ ପ୍ରଭାବ ରହିଥିବାରୁ ସାହିତ୍ୟ ସର୍ବଦା ଆଦର୍ଶବାଦ ଉପରେ ଗୁରୁତ୍ୱ ପ୍ରଦାନ କରିବା ଆବଶ୍ୟକ । ମଣିଷର ଆଶା ଆକାଂକ୍ଷାକୁ ଉଚିତ ମାର୍ଗରେ ପରିଚାଳିତ କରିବା କ୍ଷେତ୍ରରେ ସାହିତ୍ୟ ପଥନିର୍ଦ୍ଦେଶ କରିଥାଏ । କାଳରେ ଜନ୍ମଲାଭ କରିଥିଲେ ମଧ୍ୟ ଏହା କାଳାତୀତ । ଏହାର ସାର୍ବଜନୀନ ଚିନ୍ତାଧାରା ଯୁଗେ ଯୁଗେ ସମାଜ ଓ ମାନବକୁ ଦିଗ୍‌ଦର୍ଶନ ଦେଇଆସିଛି । ଏଣୁ ଅନାଦର୍ଶ ସାହିତ୍ୟ ସମାଜକୁ ବିପଥଗାମୀ କରାଇଥାଏ, ସମାଜ ଜୀବନକୁ ପଙ୍ଗୁ କରିଦିଏ । ସେହି କାରଣରୁ ଆଦର୍ଶବାଦର ପ୍ରତିଷ୍ଠା ପାଇଁ ସାହିତ୍ୟ ସର୍ବଦା ଅଗ୍ରଣୀ ଭୂମିକା ଗ୍ରହଣ କରିବା ଆବଶ୍ୟକ ।

ଆଦର୍ଶବାଦ ଜୀବନକୁ କରେ ମାର୍ଜିତ, ଶୃଙ୍ଖଳିତ ଓ ସଂଯତ । ଆଦର୍ଶ ବ୍ୟକ୍ତି ସମାଜକୁ ଦିଗ୍‌ଦର୍ଶନ ଦେଲେ ସମାଜ ହୋଇଥାଏ ଶୁଭ୍ର ସୁନ୍ଦର । ସାହିତ୍ୟ ଜୀବନର କଥା କୁହେ । କିନ୍ତୁ ଆଦର୍ଶ ଜୀବନଯାପନ ପ୍ରଣାଳୀ ଉପରେ ଗୁରୁତ୍ୱ ଦେଇଥାଏ । ପାପ ଏବଂ ପୁଣ୍ୟର ବିଚାର କରି

ପାପୀ ଦଣ୍ଡିତ ହୁଏ । ଆଦର୍ଶବାଦୀଙ୍କୁ ପ୍ରଶଂସା କରେ । ଆଦର୍ଶ ନ ଥିଲେ ପଲ୍ଲବ ସଦୃଶ ଜୀବନ ହୋଇଥାଏ ଅବଜ୍ଞାର ପାତ୍ର । ସଂଯମ ଆଚରଣ ପାଇଁ ଏହାହିଁ ସୋପାନ ପ୍ରସ୍ତୁତ କରିଥାଏ । ଯୁଗେ ଯୁଗେ ଆଦର୍ଶ ଓ ଅନାଦର୍ଶର ସଂଘର୍ଷରେ ଆଦର୍ଶ ହିଁ ଜୟଲାଭ କରିଛି । ସାମାଜିକ ସଂହତି ସୃଷ୍ଟି କରିବା କ୍ଷେତ୍ରରେ ଆଦର୍ଶବାଦର ଗୁରୁତ୍ୱପୂର୍ଣ୍ଣ ଅବଦାନ ରହିଛି । ବିଶ୍ୱକୁ ଗୋଟିଏ ପରିବାରରେ ଏହା ପରିଣତ କରିପାରେ । 'ବସୁଧୈବ କୁଟୁମ୍ବକମ୍' ନୀତିରେ ଏହା ବିଶ୍ୱାସ କରେ । ଆଦର୍ଶବାଦର ବିଲୋପରେ ସମାଜରେ ସୃଷ୍ଟି ହୁଏ ବିଶୃଙ୍ଖଳା । ନୈତିକତାର ବିଲୁପ୍ତିରେ ମଣିଷ ହୁଏ ହିଂସ୍ର ଓ ଅସଂଯତ । ବ୍ୟଭିଚାର, ଅନାଚାର ସମାଜ ଜୀବନକୁ ପଙ୍ଗୁ କରିଦିଏ । ସାମାଜିକ ଗତିଧାରା ନିଷ୍ପ୍ରାଣ ହୋଇଉଠେ । ମଣିଷ ନିଜର ଦାୟିତ୍ୱବୋଧ ବିସ୍ମୃତ ହୋଇ ବ୍ୟକ୍ତିସ୍ୱାର୍ଥ ନିମିତ୍ତ ସମୂହ ସ୍ୱାର୍ଥକୁ ଜଳାଞ୍ଜଳି ଦେବାକୁ ପଶ୍ଚାଦ୍‌ପଦ ହୁଏ ନାହିଁ । ଅସତ୍ ଚିନ୍ତାଧାରା ମଣିଷକୁ କବଳିତ କରେ । ମାତ୍ର ଆଦର୍ଶବାଦ ସତ୍ ଓ ନୀତିର ଜୟଗାନ କରିଥାଏ । ସମାଜକୁ ଗୋଟିଏ ପ୍ରୀତିବନ୍ଧନରେ ବାନ୍ଧି ସାମାଜିକ ସଂହତି ପ୍ରତିଷ୍ଠା କରେ । ହୋମର, ଭର୍ଜିଲ ପ୍ରଭୃତି ସ୍ରଷ୍ଟା ଆଦର୍ଶମୟ ଜୀବନଯାପନ ପାଇଁ ସେମାନଙ୍କ ସୃଷ୍ଟିରେ ଆଦର୍ଶବାଦର ଜୟଗାନ କରିଛନ୍ତି । ଆଦର୍ଶବାଦ ହିଁ ମଣିଷ ମନରୁ ପଶୁପ୍ରବୃତ୍ତିକୁ ଦୂର କରି ଦୈବୀ ଗୁଣର ସମାବେଶ ଘଟାଇଥାଏ । ସତ୍ୟ, ଶିବ ଏବଂ ସୁନ୍ଦରର ଜୟଗାନ କରିଥାଏ । ଭାରତୀୟ ସଭ୍ୟତା ଓ ସଂସ୍କୃତି ଆଦର୍ଶବାଦର ପୃଷ୍ଠଭୂମି ଉପରେ ପ୍ରତିଷ୍ଠିତ । ଯୁଗେ ଯୁଗେ ସମଗ୍ର ବିଶ୍ୱକୁ ଭାରତ ତା'ର ସଂଯମ ଆଚରଣ ଯୋଗୁଁ ଦିଗ୍‌ଦର୍ଶନ ଦେଇ ଆସିଛି । ଏ କ୍ଷେତ୍ରରେ ଭାରତୀୟ ବେଦ, ଉପନିଷଦ ଓ ପୁରାଣ ସାହିତ୍ୟଗୁଡ଼ିକର ଅବଦାନ କମ୍ ନୁହେଁ । ଦେଶର ସୁଷ୍ଠୁ ବିକାଶ ଏବଂ ସମାଜର ସୁସ୍ଥ ପରିଚାଳନା ନିମିତ୍ତ ଆଦର୍ଶବାଦର ପରିପ୍ରଚାର ଆବଶ୍ୟକ । ଏହା କେବଳ ମାନବର ଚରିତ୍ର ଗଠନରେ ସହାୟତା କରିନଥାଏ, ପରନ୍ତୁ ଦେଶକୁ ଓ ରାଷ୍ଟ୍ରକୁ ସଙ୍ଗଠିତ କରି ବିକାଶ ପଥରେ ଆଗେଇ ନେଇଥାଏ ।

ସମାଜ କହିଲେ କେତେଗୁଡ଼ିଏ ବ୍ୟକ୍ତିଙ୍କର ସମଷ୍ଟିଗତ ସହାବସ୍ଥାନକୁ ବୁଝାଇଥାଏ । ଯେପରି ଗୋଟିଏ କୁଣ୍ଡ କ୍ଷୀରରେ ବିନ୍ଦୁଏ ମାତ୍ର ବିଷ ସମଗ୍ର କ୍ଷୀରକୁ ବିଷରେ ପରିଣତ କରିଦେଇଥାଏ, ଅନୁରୂପଭାବେ ସମାଜର ଗୋଟିଏ ମାତ୍ର ଅନାଦର୍ଶ ବ୍ୟକ୍ତି ସମଗ୍ର ସାମାଜିକ ଜୀବନକୁ କଳୁଷିତ କରିଦିଏ । ଆଦର୍ଶର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ସମାଜ ପ୍ରତି କ୍ଷେତ୍ରରେ ଉନ୍ନତିର ସୋପାନ ଆରୋହଣ କରିଥାଏ । ସାମାଜିକ ସହାବସ୍ଥାନ ପାଇଁ ଆଦର୍ଶବାଦ ଅତ୍ୟନ୍ତ ଅପରିହାର୍ଯ୍ୟ । ନୈତିକ ଉନ୍ନତି କ୍ଷେତ୍ରରେ ଏହାର ଅବଦାନ ଅତୁଳନୀୟ । ସମାଜକୁ ଶୃଙ୍ଖଳିତ କରିବା କ୍ଷେତ୍ରରେ ସାହିତ୍ୟର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ସାମୟିକ ଆନନ୍ଦଦାନ ବା ଉତ୍ତେଜନା ଉଦ୍ଦେଶ୍ୟରେ ସାହିତ୍ୟ ସୃଷ୍ଟି ହେଲେ ତାହା ସମାଜରେ ବ୍ୟଭିଚାର ଓ ଅସଂଯମତା ସୃଷ୍ଟି କରିଥାଏ । ତେଣୁ କୁହାଯାଇଥାଏ—Art is great but life is greater than art. ଜୀବନର ବାସ୍ତବଚିତ୍ର ନାମରେ ନଗ୍ନ ଓ ଅଶ୍ଳୀଳ ଚିତ୍ର ପ୍ରଦାନ ସାହିତ୍ୟର ଆଦୌ କାମ୍ୟ ନ ହେବା ଉଚିତ । ଏହାଦ୍ୱାରା ସାମାଜିକ ଶୃଙ୍ଖଳା ପ୍ରତିହତ ହୋଇଥାଏ । ଆଦର୍ଶ ଶାସକ କେବଳ ଆଦର୍ଶ ଶାସନ ହିଁ ଦେଇପାରେ । ଠିକ୍ ସେହିପରି ଆଦର୍ଶ ସାହିତ୍ୟ, ଆଦର୍ଶ ସମାଜ ଗଠନରେ ସହାୟତା କରିଥାଏ ।

ସମାଜ ଭଲମନ୍ଦ, ପାପପୁଣ୍ୟ, ଧର୍ମ ଏବଂ ଅଧର୍ମର ଏକୀଭୂତ ରୂପ । ଏହାସତ୍ତ୍ୱେ ସାହିତ୍ୟିକ ସୁସ୍ଥ ବାତାବରଣ ସୃଷ୍ଟି କରିବାକୁ ହେଲେ କେବଳ ସମାଜୋଚିତ ଆଦର୍ଶ ଘଟଣାବଳୀକୁ ହିଁ ତା'ର କଳେବର ମଧ୍ୟରେ ସ୍ଥାନ ଦେବା ଆବଶ୍ୟକ ।

ଉଚ୍ଚକୋଟୀର ସାହିତ୍ୟ ସୃଷ୍ଟି ଯୁଗେ ଯୁଗେ ଆଦର୍ଶବାଦର ପ୍ରଚାର କରିଆସିଛି । ଆମର ପ୍ରାଚୀନ ଭାରତୀୟ ସାହିତ୍ୟରେ ଆଦର୍ଶବାଦର ଜୟଗାନ ରହିଛି । ବେଦରେ ଆଦର୍ଶ ରାଜାଙ୍କ ସମ୍ପର୍କରେ ଓ ତାଙ୍କର କାର୍ଯ୍ୟାବଳୀ ବିଷୟରେ ବହୁ ଉପଦେଶ ପ୍ରଦାନ କରାଯାଇଛି । ରାମାୟଣ ମୁଖ୍ୟତଃ ଆଦର୍ଶବାଦକୁ ହିଁ ଭିତ୍ତିକରି ରଚିତ । ରାମଚନ୍ଦ୍ର ପିତୃସତ୍ୟ ପାଳନକରି ଯେପରି ଆଦର୍ଶ ପୁତ୍ରର ପରିଚୟ ପ୍ରଦାନ କରିଛନ୍ତି, ସେହିପରି ପ୍ରଜାମାନଙ୍କର ମତକୁ ସମ୍ମାନ ଦେବାକୁ ଯାଇ ନିଷ୍କଳଙ୍କ ପତ୍ନୀ ସୀତାଙ୍କୁ ପରିତ୍ୟାଗ କରି ଆଦର୍ଶ ଶାସକ ରୂପେ ନିଜକୁ ପରିଚିତ କରିପାରିଛନ୍ତି । ରାମଚନ୍ଦ୍ର କେବଳ ଆଦର୍ଶ ପୁତ୍ର ବା ଆଦର୍ଶ ଶାସକ ନୁହନ୍ତି, ସେ ମଧ୍ୟ ଜଣେ ଆଦର୍ଶ ପତି ଓ ଆଦର୍ଶ ଭ୍ରାତା । ସୀତାଙ୍କ ଅବର୍ତ୍ତମାନରେ ଦ୍ୱିତୀୟ ଦାରା ଗ୍ରହଣ ବିଷୟ କେବେ ଚିନ୍ତାକରି ପାରିନାହାନ୍ତି । ସେହିପରି ଭରତ ଓ ଲକ୍ଷ୍ମଣ ପିତୃସତ୍ୟ ଲଙ୍ଘନ କରି ଆଦର୍ଶ ଭାଇର ପରିଚୟ ପ୍ରଦାନ କରିଛନ୍ତି । ମହାଭାରତରେ ମଧ୍ୟ ସତ୍ ଓ ଅସତ୍‌ର ଦ୍ୱନ୍ଦ୍ୱ ମଧ୍ୟରେ ସତ୍‌ର ହିଁ ଜୟ ହୋଇଛି । ସମସ୍ତ ଶକ୍ତି ସତ୍ତ୍ୱେ ଅସତ୍ ପଥରେ ଗତି କରୁଥିବାରୁ ମାନୀ ଦୁର୍ଯ୍ୟୋଧନ ପରାଜିତ ଓ ନିଧନ ହୋଇଛି । ସତ୍ ପଥରେ ଗତି କରୁଥିବା ଯୁଧିଷ୍ଠିର ବିଭିନ୍ନ ପ୍ରତିକୂଳ ଅବସ୍ଥା ସତ୍ତ୍ୱେ ଶେଷରେ ବିଜୟର ଜୟମାଲ୍ୟ ପରିଧାନ କରିଛନ୍ତି । ତେଣୁ ରାମାୟଣ ଓ ମହାଭାରତ ଭାରତୀୟ ସମାଜ ଏବଂ ସଂସ୍କୃତିରେ ଆଦର୍ଶବୋଧର ପ୍ରତିଷ୍ଠା ପାଇଁ ହିଁ ରଚିତ ହୋଇଥିଲା । ଭାଗବତର ସୁବାଣୀ ଯୁଗେ ଯୁଗେ ଭାରତୀୟ ସମାଜକୁ ସଂଯମତା ଓ ଶୃଙ୍ଖଳା ରକ୍ଷା ପାଇଁ ପ୍ରେରଣା ଦେଇ ଆସିଛି । ଫକୀରମୋହନ ତାଙ୍କର ଗଳ୍ପ ଏବଂ ଉପନ୍ୟାସମାନଙ୍କରେ ଅନ୍ୟାୟ ଆଚରଣ କରୁଥିବା ବ୍ୟକ୍ତିଙ୍କୁ ଚରମ ଶାସ୍ତି ପ୍ରଦାନ କରି ଆଦର୍ଶବାଦ ପ୍ରତିଷ୍ଠା କରିଛନ୍ତି । ରାଧାନାଥ ତାଙ୍କର କେତେକ ସୃଷ୍ଟିରେ ଅନୈତିକ କଥାବସ୍ତୁ ସଂଯୋଜିତ କରିଥିବାରୁ ତାଙ୍କୁ ତୀବ୍ର ସମାଲୋଚନାର ଶିକାର ହେବାକୁ ପଡ଼ିଛି । ଗଙ୍ଗାଧରଙ୍କ ପ୍ରତିଟି ସୃଷ୍ଟି ଭାରତୀୟ ଆଦର୍ଶବୋଧର ଜୟଗାନ କରିଛି । ମଧୁସୂଦନଙ୍କ ସୃଷ୍ଟିରେ ମଧ୍ୟ ସଂଯତ ଆଚରଣ ଓ ଶୃଙ୍ଖଳିତ ଜୀବନ ଯାପନ ପାଇଁ ବହୁ ଉପଦେଶ ପ୍ରଦାନ କରାଯାଇଛି । ନନ୍ଦକିଶୋରଙ୍କ ସୃଷ୍ଟି ସେହି ଆଦର୍ଶବୋଧ ଉପରେ ଗୁରୁତ୍ୱ ଆରୋପ କରିଛି । ପ୍ରତ୍ୟେକ ଉଚ୍ଚମାନ ସୃଷ୍ଟିର ବୈଶିଷ୍ଟ୍ୟ ହେଉଛି ସମାଜର କଲ୍ୟାଣ ସାଧନ । ସଂଯତ ଓ ଶୃଙ୍ଖଳିତ ଆଚରଣ ହିଁ ସମାଜର ମଙ୍ଗଳ ସାଧନ କରିଥାଏ । ସାହିତ୍ୟିକ ସମାଜର ଦିଗ୍‌ଦର୍ଶକ ହୋଇଥିବାରୁ ସାମାଜିକ ସମ୍ମାନବୋଧ ପାଇଁ ରୁଚିପୂର୍ଣ୍ଣ ସାହିତ୍ୟ ସୃଷ୍ଟି କରିବା ସେମାନଙ୍କର ପ୍ରଥମ କର୍ତ୍ତବ୍ୟ ।

କଳା ସୃଷ୍ଟିର ଉଦ୍ଦେଶ୍ୟ ବିଭିନ୍ନ । ସେହି ବିଭିନ୍ନ ଉଦ୍ଦେଶ୍ୟ ମଧ୍ୟରୁ ଆଦର୍ଶବାଦର ପ୍ରତିଷ୍ଠା ଅନ୍ୟତମ ମୁଖ୍ୟ ଉଦ୍ଦେଶ୍ୟ ହେବା ଉଚିତ । ମାତ୍ର ଏହାସତ୍ତ୍ୱେ କଳାର କଳାଧର୍ମ ଯେପରି ନଷ୍ଟ ନ ହୁଏ, ସେଥିପ୍ରତି ସାହିତ୍ୟିକ ତୀକ୍ଷ୍ଣ ନଜର ଦେବା ଆବଶ୍ୟକ । ନଚେତ୍ ତାହା ପ୍ରଚାରଧର୍ମୀ

ହୋଇପଡ଼ିବାର ବହୁ ସମ୍ଭାବନା ରହିଛି । ତେଣୁ ଅପସାହିତ୍ୟ ସୃଷ୍ଟି ନ କରି ସ୍ରଷ୍ଟା ସମାଜକୁ ଓ ବ୍ୟକ୍ତିକୁ ଦିଗ୍‌ଦର୍ଶନ ଦେବାପରି ସାହିତ୍ୟ ସୃଷ୍ଟି କଲେ ତାହା ଉଭୟ ବ୍ୟକ୍ତି ଏବଂ ସମାଜର ମଙ୍ଗଳ ସାଧନ କରିପାରିବ । ସାର୍ବକାଳୀନ ମଣିଷର ଚିତ୍ର ସାହିତ୍ୟର ଧ୍ୟେୟ ହେବା ଆବଶ୍ୟକ । ଏହି ସାର୍ବକାଳୀନ ମଣିଷର ଚିତ୍ର ଅଙ୍କନ ସମୟରେ ସ୍ରଷ୍ଟା ନିଜର ସାମାଜିକ ଅଙ୍ଗୀକାରକୁ ଭୁଲିଯିବା ଆଦୌ ଉଚିତ ନୁହେଁ । ସେହି କାରଣରୁ ସାହିତ୍ୟରେ ଆଦର୍ଶବାଦର ଯଥାର୍ଥ ରୂପାୟନ ହେବା ଅପରିହାର୍ଯ୍ୟ ।



## ସାହିତ୍ୟ ଓ ନୈତିକତା

**(ଉପକ୍ରମ, ସାହିତ୍ୟର ଲକ୍ଷ୍ୟ, ସାହିତ୍ୟରେ ନୈତିକତାର ଭୂମିକା, ନୀତିହୀନ ସାହିତ୍ୟର ଅପକାରୀ ଦିଗ, ଉପସଂହାର)**

ମାନବିକ ଚେତନାର ବିମଳ ପରିପ୍ରକାଶ ହେଉଛି ସାହିତ୍ୟ । ଜୀବନ ସହିତ ଏହା ଓତପ୍ରୋତ ଜଡ଼ିତ । କୌଣସି ସମୟରେ ଜୀବନଠାରୁ ଅଲଗା ହୋଇ ସାହିତ୍ୟ ଭିନ୍ନ ସରଣୀରେ ଗତି କରି ନାହିଁ । ଯାହା ଜୀବନ ପ୍ରତି ଉପଯୋଗୀ, ତାହା ହିଁ ସାହିତ୍ୟର ଶ୍ରେୟ । ଜୀବନକୁ ନୈତିକ ଆଦର୍ଶ ଭାବଧାରା ଦ୍ୱାରା ଅନୁପ୍ରାଣିତ କରିବା ସାହିତ୍ୟର କର୍ତ୍ତବ୍ୟ । ସମାଜକୁ ମଧ୍ୟ ସଂସ୍କାର ତଥା ମାର୍ଜିତ ରୂପ ପ୍ରଦାନ କରିବା ସାହିତ୍ୟର ଅନ୍ୟତମ ଲକ୍ଷ୍ୟ । ପ୍ରାଥମିକ ସ୍ତରରେ ଧର୍ମଭାବର ପ୍ରଚାର ଉଦ୍ଦେଶ୍ୟରେ ସାହିତ୍ୟ ସୃଷ୍ଟି ଲାଭ କରିଥିଲା । ଧର୍ମରେ ସର୍ବଦା ନୈତିକତା ଉପରେ ଗୁରୁତ୍ୱ ଆରୋପ କରାଯାଇଥାଏ । ଧର୍ମରୁ ଜୟ ଏବଂ ପାପରୁ କ୍ଷୟ—ଏହାହିଁ ଥିଲା ମାନବ ସମାଜକୁ ସାହିତ୍ୟର ଆଦ୍ୟବାର୍ତ୍ତା । ରୁଚିର ପରିବର୍ତ୍ତନ ଅନୁଯାୟୀ ସାହିତ୍ୟର ଆଙ୍ଗିକ ଓ ଆତ୍ମିକରେ ଲକ୍ଷଣୀୟ ପରିବର୍ତ୍ତନ ସଂଘଟିତ ହେଲେହେଁ, ସମାଜ ପ୍ରତି ସାହିତ୍ୟର କର୍ତ୍ତବ୍ୟବୋଧରେ କୌଣସି ପରିବର୍ତ୍ତନ ଘଟି ନାହିଁ । ଜୀବନକୁ ଉଚିତ ମାର୍ଗରେ ପରିଚାଳିତ କରିବା ପାଇଁ ଏହା ମାନବ ସମାଜକୁ ପ୍ରେରଣା ପ୍ରଦାନ କରିଥାଏ । 'ସୁ' ଏବଂ 'କୁ' ମଧ୍ୟରେ ପାର୍ଥକ୍ୟ ନିର୍ଦ୍ଦିଷ୍ଟ କରି 'ସୁ'ର ଉପାସନା ନିମିତ୍ତ ଉତ୍ସାହ ଦେଇଥାଏ । ଜୀବନକୁ ପରୀକ୍ଷା କରିବା ପାଇଁ ସାହିତ୍ୟ ଆଦର୍ଶ ଓ ନୀତିବାଦର କଷଟି ପଥର ବ୍ୟବହାର କରିଥାଏ । ଏହି ଦୃଷ୍ଟିରୁ ସାହିତ୍ୟରେ ନୈତିକତାର ଗୁରୁତ୍ୱପୂର୍ଣ୍ଣ ସ୍ଥାନ ରହିଛି ।

ସାହିତ୍ୟର ଲକ୍ଷ୍ୟ ମାନବ ଜୀବନକୁ ସରସ ସୁନ୍ଦର କରି ଗଢ଼ିତୋଳିବା । ସାହିତ୍ୟ ଉପାସନା କରେ ସତ୍ୟ, ଶିବ, ସୁନ୍ଦରର । ନୀତିବାଣୀ ମାଧ୍ୟମରେ ସମାଜକୁ ଶୃଙ୍ଖଳିତ କରେ । ସାହିତ୍ୟ ନୀତିଶାସ୍ତ୍ର ନ ହେଲେ ହେଁ, ସମାଜକୁ ସୁସ୍ଥ ଓ ସୁନ୍ଦର କରିବା ତାହାର ଧର୍ମ । ଏହି ଦୃଷ୍ଟିରୁ ନୀତିହୀନତା ସମାଜ ଜୀବନର ପରିପନ୍ଥୀ ହୋଇଥିବାରୁ, ସାହିତ୍ୟ ଏହାଠାରୁ ନିରାପଦ ଦୂରତ୍ୱରେ ରହିବା ଆବଶ୍ୟକ । ସମାଜ ପ୍ରତି ଯାହା କଲ୍ୟାଣ କରେ, ସାହିତ୍ୟରେ ତାହା ଧ୍ୟେୟ ହେବା ଉଚିତ ।

ମାନବର ଚିରନ୍ତନ ଭାବସତ୍ତାକୁ ଜାଗ୍ରତ କରି ତାହାକୁ ନୀତିନିଷ୍ଠ ଭାବେ ପରିଚାଳିତ କରିବାକୁ ସାହିତ୍ୟ ଦେଇଥାଏ ପ୍ରେରଣା । ସେଇଥିପାଇଁ ବେଦରେ କୁହାଯାଇଛି ''ବିଶ୍ୱଶ୍ରେୟଃ କାବ୍ୟମ୍'' । ହିତେନ ସହ ବର୍ତ୍ତମାନ ହିଁ ସାହିତ୍ୟ । ଯାହା ମଣିଷ ଓ ସମାଜର ମଙ୍ଗଳ କରେ, ତାହାହିଁ ସାହିତ୍ୟ । ସାହିତ୍ୟର ନିର୍ଦ୍ଦିଷ୍ଟ ସୀମା ନାହିଁ । ବାସ୍ତବ ଜୀବନର ରୂପକାର ଭାବରେ ସୁନ୍ଦର, କୁତ୍ସିତ, ପାପ, ପୁଣ୍ୟ—ସମସ୍ତ ତାହାର ଅନ୍ତର୍ଭୁକ୍ତ ହୋଇପାରିବ । କୌଣସି ସୀମାରେଖା ଟାଣି ତାକୁ ନିର୍ଦ୍ଦିଷ୍ଟ ସୀମାରେଖା ମଧ୍ୟରେ ଆବଦ୍ଧ କରିଦେଲେ, ତା'ର ମହତ୍ତ୍ୱ ହାନି ଘଟିବ । ତଥାପି ସମାଜର ଦିଗନିର୍ଦ୍ଦେଶକ ଭାବରେ ସାହିତ୍ୟକୁ କେତୋଟି ଦିଗ ପ୍ରତି ଦୃଷ୍ଟି ପ୍ରଦାନ କରିବାକୁ ପଡ଼ିବ । ତେଣୁ ଯେଉଁ ସାହିତ୍ୟ ସମାଜକୁ ଉପଯୁକ୍ତ ଦିଗ୍‌ଦର୍ଶନ ଦେବାକୁ ସମର୍ଥ ହୋଇଥାଏ, ସମାଜରେ ଉଚ୍ଚ ମାନବିକ ମୂଲ୍ୟବୋଧର ପ୍ରତିଷ୍ଠା କ୍ଷେତ୍ରରେ କ୍ଷମ ହୁଏ, ତାହାହିଁ ଯଥାର୍ଥ ରୁଚିପୂର୍ଣ୍ଣ ସାହିତ୍ୟ ପଦବାଚ୍ୟ ।

ସାହିତ୍ୟରେ ନୈତିକତାର ଭୂମିକା ସମ୍ବନ୍ଧରେ ଆଲୋଚକମାନଙ୍କ ମଧ୍ୟରେ ମତାନ୍ତର ଦେଖାଯାଏ । ଯଦି ସାହିତ୍ୟକୁ କେତେକ ନିର୍ଦ୍ଦିଷ୍ଟ ନୀତିନିୟମ ମଧ୍ୟରେ ଆବଦ୍ଧ କରି ଦିଆଯାଏ, ତେବେ ତାହା ସ୍ୱତଃସ୍ଫୂର୍ତ୍ତ ହୋଇପାରେ ନାହିଁ । Wordsworth କହିଥିଲେ—ସାହିତ୍ୟ ହେଉଛି Spontaneous overflow of powerful feelings. ତେଣୁ ସ୍ରଷ୍ଟା ତା'ର ସୃଷ୍ଟି ସମୟରେ ନୈତିକତା ଚାପର ବଶବର୍ତ୍ତୀ ହେଲେ, ସେ ତା'ର ସୌନ୍ଦର୍ଯ୍ୟବୋଧ ହରାଇ ବସିଥାଏ ବୋଲି କେତେକ ମତପ୍ରଦାନ କରିଥାନ୍ତି । ଏହା ସତ୍ତ୍ୱେ ନୀତିହୀନତାର ପ୍ରଚାର ଦ୍ୱାରା ସାମାଜିକ ଜୀବନରେ ଯେଉଁ ବିଶୃଙ୍ଖଳା ଓ ବ୍ୟଭିଚାର ସୃଷ୍ଟି ହୋଇଥାଏ, ତାହା ସମାଜ ଜୀବନକୁ ସମ୍ପୂର୍ଣ୍ଣ ପଙ୍ଗୁ କରିଦେଇଥାଏ । ସେଥିପାଇଁ ଭରତ ତାଙ୍କ 'ନାଟ୍ୟଶାସ୍ତ୍ର'ରେ ସାହିତ୍ୟର ପ୍ରକୃତ ଲକ୍ଷ୍ୟ ସମ୍ବନ୍ଧରେ ସୂଚନା ପ୍ରଦାନ କରିବାକୁ ଯାଇ କହିଛନ୍ତି—

ଧର୍ମ ଯଶସ୍ୟମାୟୁଷଂ ହିତବୁଦ୍ଧି ବିବର୍ଦ୍ଧନମ୍
ଲୋକପଦେଶ ଜନନଂ ନାଟ୍ୟମେତଦ୍ ଭବିଷ୍ୟତ୍

ଅର୍ଥାତ୍ ଏହା ଧର୍ମ, ଯଶ, ଆୟୁଷ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ଲୋକମାନଙ୍କର ହିତସାଧନ, ହିତବୁଦ୍ଧି ବୃଦ୍ଧି ଏବଂ ଉପଦେଶ ପ୍ରଦାନ କରିବ । ତେଣୁ ଭରତ ପରୋକ୍ଷରେ ସାହିତ୍ୟରେ ନୀତିବାଦର ପ୍ରଚାର ହେବା ଉଚିତ ବୋଲି ମତ ପ୍ରଦାନ କରିଛନ୍ତି । ଭାମହ ମଧ୍ୟ ନାଟ୍ୟଶାସ୍ତ୍ରକାରଙ୍କ ମତକୁ ସମର୍ଥନ କରିଛନ୍ତି । ପ୍ଲାଟୋ ତାଙ୍କ କଳ୍ପିତ ସୃଷ୍ଟିରେ ନୀତିହୀନ ସ୍ରଷ୍ଟାକୁ ବହିଷ୍କାର କରିବାକୁ ମତପ୍ରଦାନ କରିଛନ୍ତି । ସମାଜରେ ବଞ୍ଚିରହିବାକୁ ହେଲେ ସଂଯମତା ଓ ଶୃଙ୍ଖଳାଜ୍ଞାନର ଆବଶ୍ୟକତା ରହିଛି । କେବଳ ଆନନ୍ଦ ଦାନ କରିଦେଲେ ସାହିତ୍ୟର କର୍ତ୍ତବ୍ୟ ଶେଷ ହୋଇଯାଏ ନାହିଁ । ମଣିଷର ଚେତନାକୁ କିପରି ମହତ୍ତର ଦିଗକୁ ଉତ୍ତରିତ କରିହେବ, ସେଥିପ୍ରତି ମଧ୍ୟ ସାହିତ୍ୟ ଲକ୍ଷ୍ୟ ରଖିବା ଉଚିତ । ଏହି କାରଣରୁ 'କଳା ପାଇଁ କଳା' ମତବାଦ ସାହିତ୍ୟ ରାଜ୍ୟରେ ବେଶିଦିନ ତିଷ୍ଠି ରହିପାରିଲା ନାହିଁ । ପ୍ରସିଦ୍ଧ କବି ଶେଲୀ ମଧ୍ୟ ତାଙ୍କର ''କବିତା ସପକ୍ଷରେ'' ପ୍ରବନ୍ଧରେ ସତ୍ୟ

ଏବଂ ସୁନ୍ଦରକୁ କବି ହୃଦୟଙ୍ଗମ କରିବା ଉଚିତ ବୋଲି କହିଛନ୍ତି । ତେଣୁ ପରୋକ୍ଷରେ ସେ ମଧ୍ୟ ସାହିତ୍ୟରେ ନୈତିକତାର ମୂଲ୍ୟବୋଧକୁ ସ୍ୱୀକାର କରିଛନ୍ତି । ପ୍ରସିଦ୍ଧ ଦାର୍ଶନିକ ରାଧାକ୍ରିଷ୍ଣନ୍ 'On Literature' ପ୍ରବନ୍ଧରେ ସାହିତ୍ୟର ପ୍ରକୃତ ଉଦ୍ଦେଶ୍ୟ ବିଶ୍ୱର ମଙ୍ଗଳ ସାଧନ ବୋଲି କହିଛନ୍ତି । ଆଲୋଚକ Mathew Arnold ନୀତିହୀନ କବିତାର ସମ୍ପୂର୍ଣ୍ଣ ବିରୋଧୀ ଥିଲେ । ତାଙ୍କ ମତରେ 'A poetry of revolt against moral ideas is a poetry of revolt against life, a poetry of indifference towards moral ideas is a poetry of indifference towards life." ଏହି କାରଣରୁ ବହୁ ପ୍ରାଚୀନ କାଳରୁ ସାହିତ୍ୟରେ ନୈତିକତା ଉପରେ ଗୁରୁତ୍ୱ ଆରୋପ କରାଯାଇଛି । ଆମର ବେଦ, ଉପନିଷଦ, ରାମାୟଣ, ମହାଭାରତ, ଭାଗବତ ଆଦି ଗ୍ରନ୍ଥରେ ନୀତି ସମ୍ବନ୍ଧରେ ବହୁ କଥା କୁହାଯାଇଛି । ଏପରିକି ପାରାଡାଇଜ୍ ଲଷ୍ଟ ଓ ଡିଭାଇନ କମେଡ଼ିରେ ମଧ୍ୟ ବହୁ ନୀତିବାଣୀ ରହିଛି । ଆଦର୍ଶବୋଧର ପରିପ୍ରଚାର, ଶୁଦ୍ଧ ସଂଯତ ଜୀବନ ନିର୍ବାହ ପାଇଁ ସାହିତ୍ୟ ପ୍ରେରଣା ଦେବା ଆବଶ୍ୟକ ବୋଲି ବହୁ ପଣ୍ଡିତ ମତବ୍ୟକ୍ତ କରିଛନ୍ତି । ସାମୟିକ ରୋମାଞ୍ଚ ସୃଷ୍ଟି କରୁଥିବା ସାହିତ୍ୟର ଆୟୁଷ କ୍ଷଣସ୍ଥାୟୀ । ଆଦର୍ଶବାଦ ଦ୍ୱାରା ପରିଚାଳିତ ମଣିଷ କଦାପି ସମାଜର ଅମଙ୍ଗଳ କାମନା କରିପାରେ ନାହିଁ । ନୀତିହୀନ ସାହିତ୍ୟ ସମାଜରେ ସୃଷ୍ଟି କରେ ବ୍ୟଭିଚାରର ପ୍ଲାବନ । ମଣିଷକୁ କରେ ହିଂସ୍ର ଓ କାମୋତ୍ତେଜକ । ମଙ୍ଗଳମୟ ଓ ପବିତ୍ର ସୃଷ୍ଟି ବିପର୍ଯ୍ୟସ୍ତ ହୋଇଉଠେ ଏହି ପ୍ରକାର ସାହିତ୍ୟ ଦ୍ୱାରା । ଜୀବନ ଗଠନ ସାହିତ୍ୟର ଅନ୍ୟତମ ଲକ୍ଷ୍ୟ ହୋଇଥିବାରୁ ନୀତିପୂର୍ଣ୍ଣ ସାହିତ୍ୟର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । କ୍ଷଣସ୍ଥାୟୀ ମଣିଷକୁ ସୁପଥରେ ପରିଚାଳିତ କରିବା ପାଇଁ ନୀତିପୂର୍ଣ୍ଣ ସାହିତ୍ୟର ଆବଶ୍ୟକତା ଅତ୍ୟନ୍ତ ଜରୁରୀ ।

ନୀତିହୀନ ସାହିତ୍ୟ ସମାଜକୁ କଳୁଷିତ କରିଥାଏ । ମଣିଷ ଜୀବନକୁ ବିପଥଗାମୀ କରିବାରେ ସହାୟତା କରେ । ମଣିଷର ପଶୁ ପ୍ରବୃତ୍ତିକୁ ଉତ୍ତେଜିତ କରି ସମାଜରେ ହିଂସାଭାବ ସୃଷ୍ଟି କରିଥାଏ । ଏହା 'ସୁ'କୁ ପରାଭୂତ କରି 'କୁ' ପ୍ରବୃତ୍ତିକୁ ଉତ୍ସାହିତ କରେ । ସଂଯମହୀନତାର ପରିପ୍ରଚାର ଯୋଗୁଁ ସାମାଜିକ ଜୀବନ ବିପର୍ଯ୍ୟସ୍ତ ହୋଇଉଠେ । ଏହି କାରଣରୁ ବହୁ ମୂଲ୍ୟବାନ୍ ସୃଷ୍ଟି ଶ୍ରେଷ୍ଠ କଳାକୃତି ହୋଇଥିଲେହେଁ, ତୀବ୍ର ସମାଲୋଚନାର ଶରବ୍ୟ ହେବାକୁ ବାଧ୍ୟ ହୋଇଛି । ଗଙ୍ଗାଧର ଓ ମଧୁସୂଦନଙ୍କ ସୃଷ୍ଟି ଆଦର୍ଶ ଓ ନୀତିବାଦର ପ୍ରଚାର କରିଥିବାରୁ ତାହା ପ୍ରଶଂସା ଲାଭ କରିଛି । ମାତ୍ର ରାଧାନାଥଙ୍କ କେତେକ ସୃଷ୍ଟିରେ ଅନୈତିକ କାହାଣୀ ସଂଯୋଜିତ ହୋଇଥିବାରୁ, ସମାଲୋଚନାର ଶରବ୍ୟ ହୋଇଛି । ସମାଜକୁ ଦିଗ୍‌ଦର୍ଶନ ଦେବାର ଦାୟିତ୍ୱ ସାହିତ୍ୟିକର । ସେଇଥିପାଇଁ ଆମର ପୁରାଣକାରମାନେ ତା'ଙ୍କ କୃତିରେ ସର୍ବଦା ସୁନୀତି ଓ ସୁରୁଚିର ଉପାସନା କରିଛନ୍ତି । ପାପୀ ଏବଂ ନୀତିହୀନ ବ୍ୟକ୍ତିଙ୍କୁ କଠୋର ଦଣ୍ଡରେ ଦଣ୍ଡିତ କରିଛନ୍ତି । ଏହାର ପଶ୍ଚାତ୍‌ରେ ସାମାଜିକ ମଙ୍ଗଳ ସାଧନ ହିଁ ସ୍ରଷ୍ଟାର ଲକ୍ଷ୍ୟ ହୋଇଛି । ନୈତିକତାରେ ଋଦ୍ଧିମନ୍ତ ସାହିତ୍ୟ ଆଦର୍ଶ ସମାଜ ଗଠନରେ ସହାୟତା କରିଥାଏ । ସେଥିପାଇଁ ନୀତିହୀନ ସାହିତ୍ୟ ସର୍ବାଦୌ ପରିତ୍ୟାଜ୍ୟ ବୋଲି ବହୁ ପଣ୍ଡିତ ମତବ୍ୟକ୍ତ କରିଥାନ୍ତି ।

ସମାଜ ପ୍ରତି ସାହିତ୍ୟର କର୍ତ୍ତବ୍ୟର ତୁଳନା ନାହିଁ । ତେଣୁ ସାହିତ୍ୟିକ ନିଜର କର୍ତ୍ତବ୍ୟ ପ୍ରତି ସଚେତନ ରହି ସାହିତ୍ୟ ସୃଷ୍ଟି କଲେ ସମାଜର ଅଶେଷ ମଙ୍ଗଳ ସାଧିତ ହୋଇପାରିବ । ମାତ୍ର କେତେକ କ୍ଷେତ୍ରରେ ଦେଖାଯାଉଛି, ସାହିତ୍ୟ ତା'ର କର୍ତ୍ତବ୍ୟପଥରୁ ବିଚ୍ୟୁତ ହୋଇପଡ଼ିଛି । ଶସ୍ତାନାମ ନେବାପାଇଁ ପ୍ରଚାରଧର୍ମୀ ସାହିତ୍ୟ ସୃଷ୍ଟିଲାଭ କରୁଛି । କାଳଜୟୀ ସୃଷ୍ଟି କେବଳ ସମାଜକୁ ଦିଗ୍‌ଦର୍ଶନ ଦେବାରେ ସମର୍ଥ ହୋଇଥାଏ । ମାତ୍ର କ୍ଷଣିକ ଉତ୍ତେଜନା ନିମିତ୍ତ ସୃଷ୍ଟି ହେଉଥିବା ସାହିତ୍ୟ କଦାପି ସମାଜର ମଙ୍ଗଳ ସାଧନ କରିପାରେ ନାହିଁ । ଏହି କାରଣରୁ ସାହିତ୍ୟରେ ଆଦର୍ଶବୋଧ ଓ ନୀତିବୋଧର ପ୍ରକାଶ କରାଯାଇପାରିଲେ ସମାଜକୁ ଶୃଙ୍ଖଳିତ ଏବଂ ମାର୍ଜିତ କରିବାକୁ ତାହା ସହାୟତା କରିପାରିବ । ନୈତିକତାର ବାସ୍ତବତାକୁ ଆଖିଆଗରେ ରଖି ସୃଷ୍ଟିଲାଭ କରୁଥିବା କଳା କେବଳ କାଳଜୟୀ ହୋଇପାରେ । ତେଣୁ ସାହିତ୍ୟରେ ନୈତିକ ମୂଲ୍ୟବୋଧର ଯେ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି, ଅସ୍ୱୀକାର କରାଯାଇ ନ ପାରେ ।

●

# ସାହିତ୍ୟ ଓ ରାଜନୀତି

**(ଉପକ୍ରମ, ସାହିତ୍ୟ ଓ ରାଜନୀତିର ମୌଳିକ ଲକ୍ଷଣ, ସାମ୍ପ୍ରତିକ ସମାଜ ଓ ରାଜନୀତି, ରାଜନୀତି ସହିତ ସାହିତ୍ୟର ସମ୍ବନ୍ଧ, ଯୁଗେ ଯୁଗେ ସାହିତ୍ୟରେ ରାଜନୀତିକ ଚେତନା, ଉପସଂହାର)**

ସମାଜର ସାମଗ୍ରିକ ଜୀବନର ଲଳିତ ପରିପ୍ରକାଶ ହେଉଛି ସାହିତ୍ୟ । ସମାଜ ଜୀବନର ସୁଖ-ଦୁଃଖ, ହସ-କାନ୍ଦ, ଚାଲି-ଚଳଣି, କାର୍ଯ୍ୟ-କଳାପ ସାହିତ୍ୟରେ ହୋଇଥାଏ ରୂପାୟିତ । ତେଣୁ ସମାଜର ବିଭିନ୍ନ ଭାବପ୍ରବାହ ସାହିତ୍ୟର କଳେବର ମଣ୍ଡିତ ହେବା ସ୍ୱାଭାବିକ । ଅତୀତ କାଳରୁ ସାମ୍ପ୍ରତିକ କାଳ ପର୍ଯ୍ୟନ୍ତ ରାଜନୀତି ବହୁପରିମାଣରେ ସମାଜକୁ ନିୟନ୍ତ୍ରଣ କରିଆସିଛି । ଏହା ପ୍ରଭାବରୁ ସମାଜ କିମ୍ବା ସାହିତ୍ୟ ମୁକ୍ତ ହୋଇପାରି ନାହିଁ । ସମ୍ପ୍ରତି ରାଜନୀତି କାୟା ବିସ୍ତାର କରି ସମଗ୍ର ସମାଜକୁ କବଳିତ କରିସାରିଛି । ଅତୀତ ପରି ବର୍ତ୍ତମାନ ରାଜନୀତି ଆଉ ବ୍ୟକ୍ତିକୈନ୍ଦ୍ରିକ ହୋଇ ରହିପାରି ନାହିଁ । ରାଜତନ୍ତ୍ର ପରିଣତ ହୋଇଛି ଗଣତନ୍ତ୍ରରେ । ସମାଜର ସାଧାରଣ ବ୍ୟକ୍ତିଟିଏ ମଧ୍ୟ ରାଜନୀତିକ ଘନଘଟାରେ ନିଜକୁ ସାମିଲ କରିଦେବାକୁ ପଛାଇ ଯାଉ ନାହିଁ । ସାହିତ୍ୟ ସମାଜ ଜୀବନର ପ୍ରତିଫଳନ ହୋଇଥିବାରୁ, ରାଜନୀତିକ ପ୍ରଭାବରୁ ଆଜି ଆଉ ସାହିତ୍ୟ ମୁକ୍ତ ନୁହେଁ । ବିଭିନ୍ନ ରାଜନୀତିକ କ୍ରିୟା-ପ୍ରତିକ୍ରିୟା ସାହିତ୍ୟରେ ହେଉଛି ପ୍ରତିଫଳିତ । ଜନମାନସରେ ରାଜନୀତିକ ଚେତନା ସୃଷ୍ଟି କରିବା କ୍ଷେତ୍ରରେ ସାହିତ୍ୟ ଏକ ପ୍ରଧାନ ଆୟୁଧ ଭାବରେ ବ୍ୟବହୃତ ହେଉଛି । ସାହିତ୍ୟ ବ୍ୟକ୍ତି ସୃଷ୍ଟି ହେଲେହେଁ ସେଥିରେ ଯେପରି ସାମୂହିକ ଚେତନା ପ୍ରକାଶଲାଭ କରିଥାଏ; ଠିକ୍ ସେହିପରି ରାଜନୀତି ସମ୍ପ୍ରତି ବ୍ୟକ୍ତିର ଚାରିକାନ୍ଥ ଭେଦକରି ସମୂହ ଜନତାକୁ ଆଶ୍ରୟ କରିଛି ଓ ତାହା ହୋଇଛି ସାମୂହିକ ଗଣଚେତନାରେ ରୂପାନ୍ତରିତ । ସେଥିପାଇଁ ରାଜନୀତିକୁ ପ୍ରଭାବିତ କରିବା କ୍ଷେତ୍ରରେ ସାହିତ୍ୟର ମୁଖ୍ୟ ଭୂମିକା ରହିଛି ।

ସାହିତ୍ୟର ମୂଳ ଲକ୍ଷ୍ୟ ସମାଜର ସାମଗ୍ରିକ ଉନ୍ନତି ସାଧନ । ମାନବିକ ଚିନ୍ତାଚେତନାର କ୍ରମରୂପ ସାହିତ୍ୟରେ ହୁଏ ରୂପାୟିତ । ରାଜନୀତିର ପ୍ରଥମ ଲକ୍ଷ୍ୟ ହେଉଛି ସାମୂହିକ ଜନତାର ମଙ୍ଗଳ ସାଧନ । ସମାଜର ସମଗ୍ର ବ୍ୟକ୍ତିବିଶେଷ ହେଉଛନ୍ତି ଉଭୟ ସାହିତ୍ୟ ଓ ରାଜନୀତିର ମୂଳ ଆଧାର । ସେମାନଙ୍କର ସାମଗ୍ରିକ କଲ୍ୟାଣ କାମନା ଉଭୟଙ୍କର ଅଭିପ୍ରେତ ହୋଇଥିବାରୁ ସାହିତ୍ୟ ଓ ରାଜନୀତି ପରସ୍ପରଠାରୁ ଦୂରବର୍ତ୍ତୀ ନୁହନ୍ତି । ସାହିତ୍ୟରେ ମଣିଷ ଜୀବନର ଆଶା ଆକାଂକ୍ଷା ରୂପାୟିତ ହୁଏ । ରାଜନୀତି ଏହାକୁ ସାକାର କରେ । ସାହିତ୍ୟ ଯୋଜନା ପ୍ରଣୟନ କରେ; ମାତ୍ର ରାଜନୀତି ଏହାକୁ କାର୍ଯ୍ୟକାରୀ କରିଥାଏ । ମଣିଷ ଜୀବନର ମୌଳିକ ଆବଶ୍ୟକତା ପୂରଣ କରିବା ଉଭୟ ସାହିତ୍ୟ ଓ ରାଜନୀତିର ମୂଳ ଲକ୍ଷ୍ୟ । ସାହିତ୍ୟ ବ୍ୟବହାର ଜ୍ଞାନ ଶିକ୍ଷା ଦେବା ସମୟରେ ତା'ର ଉପଯୁକ୍ତ ବିନିଯୋଗ କରେ ରାଜନୀତି ମଣିଷର ଦୈନନ୍ଦିନ ଜୀବନରେ । ଉଭୟ ସମାଜ ଓ ବ୍ୟକ୍ତି ଜୀବନକୁ ସୁସ୍ଥ ସୁନ୍ଦର ଓ ନିରାମୟ କରି ଗଢ଼ିତୋଳିବା ସାହିତ୍ୟ ଏବଂ ରାଜନୀତିର ଲକ୍ଷ୍ୟ ହୋଇଥିବାରୁ ଉଭୟଙ୍କର ସମ୍ପର୍କ ନିବିଡ଼ ।

ସାମ୍ପ୍ରତିକ ସମାଜରେ ରାଜନୀତି ଏକ ପ୍ରମୁଖ ଭୂମିକା ଗ୍ରହଣ କରିଛି । ସଚେତନ ଭାବରେ କୌଣସି ବ୍ୟକ୍ତିବିଶେଷ ଆଜି ଏଥିରୁ ମୁକ୍ତ ହେବା ସମ୍ଭବ ନୁହେଁ । ଗାନ୍ଧିଜୀଙ୍କ ମତରେ ସର୍ପର କୁଣ୍ଡଳୀ ପରି ଏହା ସମସ୍ତଙ୍କୁ ଆବୃତ କରି ରଖିଛି । ରାଜନୀତି ଆଜି ଆଉ କୌଣସି ନିର୍ଦ୍ଦିଷ୍ଟ ଭୂଖଣ୍ଡ ମଧ୍ୟରେ ଆବଦ୍ଧ ନୁହେଁ । ସମଗ୍ର ବିଶ୍ୱକୁ ଏହା କବଳିତ କରିଯାଇଛି । ରାଜତନ୍ତ୍ରର ଯୁଗ ଶେଷ ହୋଇଛି । ଗଣତନ୍ତ୍ର ବିଜୟ ଉଲ୍ଲାସରେ ରାଜରାସ୍ତା ଉପରେ ଗତିଶୀଳ । ସାମ୍ୟବାଦୀ ରାଜନୀତି ଅଳ୍ପ କେତେକ ସ୍ଥାନରେ ରହିଥିଲେହେଁ, ଅଧିକାଂଶ କ୍ଷେତ୍ରରେ ଗଣତନ୍ତ୍ରକୁ ଶ୍ରେଷ୍ଠ ରାଜନୀତିକ ମତବାଦ ରୂପେ ଗ୍ରହଣ କରାଯାଇଛି । ଆଜି ଆଉ ରାଜନୀତି ବ୍ୟକ୍ତିକୈନ୍ଦ୍ରିକ ରାଜାଙ୍କର ନୀତି ନୁହେଁ, ଏହା ସମୂହ ଗଣବାସୀଙ୍କ ଆଶା ଆକାଂକ୍ଷାର ପ୍ରତୀକ । ଗୋଟିଏ ଦେଶର ରାଜନୀତିକ ଚିନ୍ତା ଚେତନା ଅକ୍ଳେଶରେ ଅନ୍ୟ ଏକ ଦେଶକୁ ସଂକ୍ରମିତ ହୋଇଯାଉଛି । ସେଥିପାଇଁ ସମୟେ ସମୟେ କୌଣସି ଦେଶର ସାମ୍ରାଜ୍ୟବାଦୀ ଚିନ୍ତାଧାରା ସମଗ୍ର ବିଶ୍ୱକୁ ସଙ୍କଟମୟ ପରିସ୍ଥିତି ଦିଗକୁ ଟାଣି ନେଇଯାଉଛି । କ୍ଷମତାଲିପ୍ସା, ଅସହିଷ୍ଣୁତା ଆଜି ରାଜନୀତିକୁ ଏପରି କବଳିତ କରି ରଖିଛି ଯେ ସାମ୍ପ୍ରତିକ ସମାଜ ଓ ମଣିଷ ଏକ ସଙ୍କଟଜନକ ପରିସ୍ଥିତି ମଧ୍ୟଦେଇ ଗତି କରିବାକୁ ବାଧ୍ୟ ହେଉଛି । ରାଜନୀତିରେ ମୂଲ୍ୟବୋଧର ଅବକ୍ଷୟ ଘଟୁଥିବାରୁ ସାମାଜିକ ଜୀବନ ବିପର୍ଯ୍ୟସ୍ତ ହୋଇପଡୁଛି । ତେଣୁ ସାମ୍ପ୍ରତିକ ସମାଜରେ ରାଜନୀତିର ମୌଳିକ ଗୁଣରେ ଯେଉଁ ପରିବର୍ତ୍ତନ ଆସିଛି ତାକୁ ଉଚିତ ମାର୍ଗ ପ୍ରଦର୍ଶନର ଦାୟିତ୍ୱ ବର୍ତ୍ତମାନ ସାହିତ୍ୟର । ସମାଜକୁ ସଙ୍ଗଠିତ ଓ ରାଜନୀତିକୁ ପରିମାର୍ଜିତ କରିବା କ୍ଷେତ୍ରରେ ସାହିତ୍ୟର ଭୂମିକା ସର୍ବାଦୌ ଗୁରୁତ୍ୱପୂର୍ଣ୍ଣ ।

ସାହିତ୍ୟ ସହିତ ରାଜନୀତିର ନିଗୂଢ଼ ସମ୍ପର୍କ ବିଦ୍ୟମାନ । ରାଜନୀତିକ ଚେତନାର ବାର୍ତ୍ତାବହ ରୂପେ କେଉଁ ଆବହମାନ କାଳରୁ ସାହିତ୍ୟ ସ୍ୱୀକୃତି ଲାଭ କରିଆସିଛି । ଅତୀତରେ ରାଜନୀତି ବ୍ୟଷ୍ଟିକୈନ୍ଦ୍ରିକ ହୋଇଥିବାରୁ ସାହିତ୍ୟରେ କେବଳ ରାଜନୀତିଜ୍ଞମାନଙ୍କର ପ୍ରଶସ୍ତିଗାନ

କରାଯାଇଛି । ସ୍ରଷ୍ଟା ରାଜଦରବାରର ଏକ ଅଂଶବିଶେଷ ହୋଇଥିବାରୁ କୌଣସି କ୍ଷେତ୍ରରେ ରାଜାଙ୍କ ବିରୋଧରେ ସ୍ୱର ଉତ୍ତୋଳନ କରିବାକୁ ସମର୍ଥ ହୋଇପାରି ନାହିଁ । ଏହା ସତ୍ତ୍ୱେ ରାଜାଙ୍କର ନୀତି ସମ୍ବନ୍ଧୀୟ ବହୁ ଅମୂଲ୍ୟ ଉପଦେଶ ସାହିତ୍ୟର କଳେବରକୁ ଯେ ପରିପୁଷ୍ଟ କରିଛି, ତାହା ଅସ୍ୱୀକାର କରାଯାଇ ନ ପାରେ । ବୈଦିକ ସାହିତ୍ୟର ବିଭିନ୍ନ ସୂକ୍ତିରେ ରାଜାଙ୍କର କର୍ତ୍ତବ୍ୟ ସମ୍ବନ୍ଧରେ ସୂଚନା ପ୍ରଦାନ କରାଯାଇଛି । ଋଗ୍‌ବେଦର ଦଶମ ମଣ୍ଡଳର ୧୭୩ ସୂକ୍ତିରେ ଏହାର ମନ୍ମୟ ଆଲେଖ୍ୟ ରହିଛି । ପ୍ରଜାଙ୍କର ଇଚ୍ଛାକୁ ସମ୍ମାନ ପ୍ରଦର୍ଶନ କରିବା, ଦେଶର ସୁଖଦୁଃଖରେ ଭାଗୀଦାର ହେବା, କର୍ତ୍ତବ୍ୟରେ ଅବିଚଳିତ ରହିବା ରାଜାଙ୍କର କର୍ତ୍ତବ୍ୟ ବୋଲି ଏଥିରେ ସୂଚନା ଦିଆଯାଇଛି । ରାମାୟଣ ଏବଂ ମହାଭାରତରେ ମଧ ଏପରି ଉଦାହରଣ ବିରଳ ନୁହେଁ । ରାବଣର ମୃତ୍ୟୁ ସମୟରେ ଏବଂ ଭୀଷ୍ମଙ୍କ ଶରଶଯ୍ୟାରେ ରାବଣ ଏବଂ ଭୀଷ୍ମ ଯଥାକ୍ରମେ ରାମଚନ୍ଦ୍ର ଓ ଯୁଧିଷ୍ଠିରଙ୍କୁ ରାଜାଙ୍କ କର୍ତ୍ତବ୍ୟ ତଥା ରାଜନୀତି ସମ୍ବନ୍ଧରେ ବହୁ ଅମୂଲ୍ୟ ଉପଦେଶ ପ୍ରଦାନ କରିଛନ୍ତି । କାଳିଦାସ, ମାଘ ଆଦିଙ୍କ ରଚନାବଳୀରେ ରାଜପ୍ରଶସ୍ତି କରାଯାଇଥିଲେହେଁ, ପରୋକ୍ଷରେ ରାଜକର୍ତ୍ତବ୍ୟ ସମ୍ପର୍କରେ ସଚେତନ କରାଇ ଦିଆଯାଇଛି । ମଧ୍ୟଯୁଗୀୟ ସାହିତ୍ୟରେ ଏହାର ଉଦାହରଣ ଦେଖିବାକୁ ମିଳିଥାଏ । ଓଡ଼ିଆ କବି ଦୀନକୃଷ୍ଣ ଦାସ ତାଙ୍କର 'ରସକଲ୍ଲୋଳ' କାବ୍ୟରେ ରାଜାଙ୍କର ଅମାନବିକତାକୁ ସମାଲୋଚନା କରିବାକୁ କୁଣ୍ଠା ପ୍ରକାଶ କରିନାହାନ୍ତି । ମିଲ୍‌ଟନ, ପୋପ୍, ଡ୍ରାଇଡେନ ପ୍ରଭୃତି ସାହିତ୍ୟିକ ସଂକୀର୍ଣ୍ଣ ରାଜନୀତିକୁ ତୀବ୍ର ସମାଲୋଚନା କରିବାକୁ ପରାଙ୍‌ମୁଖ ହୋଇ ନାହାନ୍ତି । ସଭ୍ୟତାର ବିକାଶ ସହିତ ସାହିତ୍ୟ ବିଭିନ୍ନ କ୍ଷେତ୍ରରେ ରାଜନୀତି ଉପରେ ପ୍ରଭାବ ବିସ୍ତାର କରିଛି । ଏପରିକି କେତେକ କ୍ଷେତ୍ରରେ ସାହିତ୍ୟ ଦେଶର ସମ୍ପୂର୍ଣ୍ଣ ରାଜନୀତିର ପ୍ରେକ୍ଷାପଟ୍ଟକୁ ପରିବର୍ତ୍ତନ କରିବାରେ ସମର୍ଥ ହୋଇଛି । ରୁଷୋ ଓ ଭଲ୍‌ଟେୟାର ପ୍ରଭୃତି ସାହିତ୍ୟିକ ଫରାସୀ ରାଷ୍ଟ୍ରବିପ୍ଳବ ସମୟରେ ସାହିତ୍ୟ ମାଧ୍ୟମରେ ଯେଉଁ ରାଜନୀତିକ ଚେତନା ସୃଷ୍ଟି କରିଥିଲେ, ତା'ର ତୁଳନା ନାହିଁ । ଅତ୍ୟାଚାରୀ ଶାସକ ଷୋଡ଼ଶ ଲୁଇଙ୍କ ବିରୋଧରେ ସାହିତ୍ୟ ହିଁ ଜନଜାଗରଣ ସୃଷ୍ଟି କରିପାରିଥିଲା । ୧୯୧୭ ମସିହାରେ ରୁଷରେ ସଂଘଟିତ ହୋଇଥିବା ଅକ୍ଟୋବର ବିପ୍ଳବ ବା ବଲ୍‌ସେଭିକ ଆନ୍ଦୋଳନରେ ରୁଷର ସାହିତ୍ୟିକଗଣ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ନିଷ୍ଠୁର ଜାର୍ ଶାସନ ବିରୋଧରେ ମାକ୍‌ସିମ୍‌ଗର୍କି, ଦସ୍ତୋଭସ୍କି, ପୁଷ୍କିନ୍, ମାୟାକୋଭସ୍କି, ଟିଖୋନର, ପାଭେଲ ଭାସିଲୋଭ ଆଦି ସାହିତ୍ୟିକଗଣ ସାହିତ୍ୟ ମାଧ୍ୟମରେ ଉଗ୍ର ସ୍ୱର ଉତ୍ତୋଳନ କରିବା ସଙ୍ଗେ ସଙ୍ଗେ ମାତୃଭୂମିର ରକ୍ଷା, ତା'ର ଗୌରବ ଓ ଆତ୍ମସମ୍ମାନ ପାଇଁ ଜୀବନ ଉତ୍ସର୍ଗ ନିମିତ୍ତ ଜନସାଧାରଣଙ୍କୁ ପ୍ରେରଣା ଦେଇଥିଲେ । ଭାରତର ସ୍ୱାଧୀନତା ଆନ୍ଦୋଳନରେ ଭାରତୀୟ ସାହିତ୍ୟିକଙ୍କ ଅବଦାନ ମଧ କମ୍ ନୁହେଁ । ସାହିତ୍ୟ ମାଧ୍ୟମରେ ଗାନ୍ଧିବାଦର ପ୍ରଚାର କରିବା ସଙ୍ଗେ ସଙ୍ଗେ ଭାରତୀୟମାନଙ୍କ ମନରେ ଜାତୀୟ ଚେତନାର ଜାଗ୍ରତ କ୍ଷେତ୍ରରେ ତତ୍କାଳୀନ ସାହିତ୍ୟିକଗଣ ବଳିଷ୍ଠ ଭୂମିକା ଗ୍ରହଣ କରିଥିଲେ । ଆମେରିକାର ସ୍ୱାଧୀନତା ଆନ୍ଦୋଳନରେ ସେ ଦେଶର ସାହିତ୍ୟିକଗଣ ପ୍ରମୁଖ ଭୂମିକା ଗ୍ରହଣ କରି ଜନମାନସରେ ଜାତୀୟ ଚେତନା ଜାଗ୍ରତ କରିପାରିଥିଲେ । ଗ୍ରୀସ୍‌ରେ ମଧ ସକ୍ରେଟିସ୍ ତାଙ୍କ ଦର୍ଶନ ମାଧ୍ୟମରେ ତତ୍କାଳୀନ ସ୍ୱେଚ୍ଛାଚାରୀ ଶାସକ ବିରୋଧରେ ଜନଚେତନା ଜାଗ୍ରତ

କରିପାରିଥିଲେ । ସତ୍ୟ ଓ ନ୍ୟାୟର ପ୍ରତିଷ୍ଠା ପାଇଁ ସେ ଆତ୍ମବଳି ଦେଲେ ସତ୍ୟ ମାତ୍ର ତାଙ୍କର ଦର୍ଶନ ଓ ସାହିତ୍ୟ କଦାପି ଶାସକଙ୍କର ଅନ୍ୟାୟ ଏବଂ ଅନୀତିକୁ ଗ୍ରହଣ କରି ପାରି ନ ଥିଲା । ସାହିତ୍ୟ ସର୍ବଦା ସତ୍ୟ ଓ ନ୍ୟାୟର ହିଁ ପ୍ରଚାର କରିଥାଏ । ରାଜନୀତିକ ଆଦର୍ଶ ଆଗରେ କୌଣସିକାଳେ ସାହିତ୍ୟ ବଳି ପଡ଼ି ନାହିଁ । ରାଜନୀତିର ଅନାଦର୍ଶ ବିରୋଧରେ ସଂଗ୍ରାମ କରି ତାକୁ ସ୍ୱଚ୍ଛ ଏବଂ ପବିତ୍ର କରିବା କ୍ଷେତ୍ରରେ ସାହିତ୍ୟ ଯୁଗେ ଯୁଗେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଆସିଛି ।

ସାହିତ୍ୟ ରାଜନୀତିକ ଚେତନାର ମୂର୍ତ୍ତିମନ୍ତ ରୂପ ହୋଇଥିବାରୁ ବହୁ ରାଜନୀତିକ ମତବାଦ ସାହିତ୍ୟର କଳେବର ମଣ୍ଡନ କରିଛି । ରୁଷ ବିପ୍ଳବର ନାୟକ ସାହିତ୍ୟକୁ ସାଧାରଣ ମଣିଷଙ୍କର ବୋଲି ଦାବି କରି କହିଥିଲେ–Art belongs to the people. Its roots should be deeply implanted in the very thick of the labouring masses. ସାହିତ୍ୟ ମାଧ୍ୟମରେ ଯେପରି ଜନଜାଗରଣ ସୃଷ୍ଟି କରାଯାଇପାରେ, ଅନ୍ୟ କୌଣସି ମାଧ୍ୟମ ସେପରି ଉପଯୋଗୀ ହୋଇନପାରେ । ରାଜନୀତିକ ମତବାଦ ସାହିତ୍ୟ ମାଧ୍ୟମରେ ହିଁ ପ୍ରତିଷ୍ଠା ଲାଭ କରେ । ବହୁ ସମୟରେ ରାଜନୀତିକ ଚିନ୍ତାଧାରା ସାହିତ୍ୟଦ୍ୱାରା ପ୍ରଭାବିତ ହୋଇଥାଏ । Uncle Tom's cabin, Ape and Essence, Mother ଆଦି ସାହିତ୍ୟକୃତି ଦ୍ୱାରା କିପରି ରାଜନୀତିକ ଚିନ୍ତାଧାରା ପ୍ରଭାବିତ ହୋଇଛି, ତାହା ଉଣାଅଧିକେ ସମସ୍ତେ ଜାଣନ୍ତି । ଟଲଷ୍ଟୟ, ଦସ୍ତଭସ୍କି ତୁର୍ଗନେଭ, ହେନେରୀ ଜେମସ୍, ସାଇଲୋନ୍, ଜର୍ଜ ଅରୱେଲ ଆଦି ସ୍ରଷ୍ଟା ବିଭିନ୍ନ ରାଜନୀତିକ ଚିନ୍ତାଧାରାକୁ ସାହିତ୍ୟ ମାଧ୍ୟମରେ ପ୍ରକାଶ କରି ଖ୍ୟାତି ଅର୍ଜନ କରିଛନ୍ତି । ଭାରତୀୟ ସାହିତ୍ୟିକମାନଙ୍କ ମଧ୍ୟରେ ବଙ୍କିମଚନ୍ଦ୍ର, ରବୀନ୍ଦ୍ରନାଥ, ମୁଲକରାଜ ଆନନ୍ଦ, ରାଜାରାଓ ଏ କ୍ଷେତ୍ରରେ ଯଶସ୍ୱୀ ସ୍ରଷ୍ଟା । ଓଡ଼ିଆ ସାହିତ୍ୟିକମାନଙ୍କ ମଧ୍ୟରେ କାଳିନ୍ଦୀଚରଣଙ୍କ ମାଟିର ମଣିଷ, ଲୁହାର ମଣିଷ, ମୁକ୍ତାଗଡ଼ର କ୍ଷୁଧା, ଗୋପବନ୍ଧୁଙ୍କ କାରାକବିତା, ବନ୍ଦୀର ଆତ୍ମକଥା, କେତେକ ପ୍ରବନ୍ଧ, ହରେକୃଷ୍ଣ ମହତାବଙ୍କ ଅବ୍ୟାପାର, ଟାଉଟର, ତୃତୀୟପର୍ବ, ୧୯୭୫, ଭଗବତୀ ଚରଣ ପାଣିଗ୍ରାହୀଙ୍କ ଦା' ହାତୁଡ଼ି, ଶିକାର, ରାମପ୍ରସାଦ ସିଂଙ୍କ ହୋମଶିଖା, ସମାପ୍ତି, ଅଗ୍ନିପଥେ, ସଚ୍ଚିରାଉତରାୟ, ଅନନ୍ତ ପଟ୍ଟନାୟକ, ମନମୋହନ ମିଶ୍ର ଆଦିଙ୍କ ଅନେକ କବିତାରେ, ସୁରେନ୍ଦ୍ର ମହାନ୍ତିଙ୍କ ଅନ୍ଧଦିଗନ୍ତ, ଗଣେଶ୍ୱର ମିଶ୍ରଙ୍କ 'ନେତା', ଶାନ୍ତନୁ ଆଚାର୍ଯ୍ୟଙ୍କ 'ଶକୁନ୍ତଳା', ଗୋପାଳ ଛୋଟରାୟଙ୍କ ପରକଲମ ଆଦିରେ ବିଭିନ୍ନ ରାଜନୀତିକ ଚେତନା ପ୍ରକାଶଲାଭ କରିଛି । ତେଣୁ ସାହିତ୍ୟ ରାଜନୀତିଠାରୁ ଦୂରେଇ ନ ଯାଇ ବରଂ ରାଜନୈତିକ ଚେତନାର ରୂପକାର ଭାବେ ନିଜର ପ୍ରଭାବ ବିସ୍ତାର କରିପାରିଛି ।

ଆଜି ରାଜନୀତି ବହୁ କ୍ଷେତ୍ରରେ ନୈତିକ ମୂଲ୍ୟ ହରାଇ ଧୀରେ ଧୀରେ ଅବକ୍ଷୟତାକୁ ପ୍ରାପ୍ତି ହେଉଛି । ଏ କ୍ଷେତ୍ରରେ ସାହିତ୍ୟ ତା'ର ଗୁରୁଦାୟିତ୍ୱ ଗ୍ରହଣ କରି କିପରି ରାଜନୀତିକୁ ସୁସ୍ଥ ଓ ମଙ୍ଗଳମୟ କରାଯାଇପାରିବ, ସେ କ୍ଷେତ୍ରରେ ପଦକ୍ଷେପ ଗ୍ରହଣ କରିବା ଉଚିତ । କୁତ୍ସିତ ରାଜନୀତିକୁ ସମାଲୋଚନା କରି ତାକୁ ଉଚିତ ଦିଗ୍‌ଦର୍ଶନ ପ୍ରଦାନ କରିବା ଆଦି ସାହିତ୍ୟିକର

କର୍ତ୍ତବ୍ୟ । କାରଣ ରାଜନୀତି ସହିତ ସାହିତ୍ୟର ସମ୍ପର୍କ ଅତୀବ ନିବିଡ଼ । ଅତୀତରେ ଯେପରି ସାହିତ୍ୟ ବିଶ୍ୱରେ ଗଣଚେତନା ଜାôତ କରି ରାଜନୀତିର ଗତିଧାରାକୁ ସମ୍ପୂର୍ଣ୍ଣ ପରିବର୍ତ୍ତନ କରି ପାରିଥିଲା, ସାମ୍ପ୍ରତିକ ରାଜନୀତିର କ୍ଷୟିଷ୍ଣୁ ଭାବଧାରାକୁ ପରିବର୍ତ୍ତନ କରିବା କ୍ଷେତ୍ରରେ ସେହିପରି ଭୂମିକା ଗ୍ରହଣ କରିପାରିଲେ ତା'ର ସୃଷ୍ଟି ସାର୍ଥକ ହୋଇପାରିବ ।

●

## ସାହିତ୍ୟ ଓ ସମାଜ

**(ଉପକ୍ରମ, ସାହିତ୍ୟ ସହିତ ସମାଜର ସମ୍ବନ୍ଧ, ସାହିତ୍ୟର ସାମାଜିକ ଅଙ୍ଗୀକାର-ବଦ୍ଧତା, ସମାଜର ପରିବର୍ତ୍ତନରେ ସାହିତ୍ୟର ଭୂମିକା, ସମାଜରେ ସାହିତ୍ୟର କଲ୍ୟାଣକାରୀ ରୂପ, ଉପସଂହାର)**

ସାହିତ୍ୟ ସମାଜର ମୁକୁର । ଉଭୟଙ୍କର ସମ୍ବନ୍ଧ ଅତ୍ୟନ୍ତ ନିବିଡ଼ । ସମାଜର ସଙ୍ଗଠନ ପରେ ସାହିତ୍ୟର ସୃଷ୍ଟି । ଗୋଟିକୁ ଛାଡ଼ି ଅନ୍ୟଟି କଦାପି ବଞ୍ଚି ରହି ନ ପାରେ । ସମାଜରୁ ସାହିତ୍ୟ ଉପାଦାନ ଗ୍ରହଣ କରି ଯେପରି ପରିପୁଷ୍ଟ ହୋଇଥାଏ, ସେହପରି ସମାଜର ଦିଗ୍‌ଦର୍ଶକ ଭାବରେ କାର୍ଯ୍ୟକରି ସାହିତ୍ୟ ସାମାଜିକ ଜୀବନକୁ ଶୃଙ୍ଖଳିତ କରିଥାଏ । ସେଥିପାଇଁ Mathew Arnold କହିଥିଲେ—Literature is the mirror of society. ମଣିଷର ସାମାଜିକ ଜୀବନର ଚରମ ସତ୍ୟ ଶୃଙ୍ଖଳିତ ରୂପନେଇ ସାହିତ୍ୟରେ ପ୍ରକାଶଲାଭ କରେ । ସାହିତ୍ୟ ସୃଷ୍ଟି ମାଧ୍ୟମରେ ସମସାମୟିକ ସମୟ ଓ ସମାଜ ପ୍ରତିଫଳିତ ହୋଇଥାଏ । ସାହିତ୍ୟ ଜାଣି ଜାଣି ସମାଜର କଥା କୁହେ ନାହିଁ । ସଚେତନ ସ୍ରଷ୍ଟାର ସୃଷ୍ଟିରେ ପରୋକ୍ଷରେ ସମାଜ ଆତ୍ମପ୍ରକାଶ କରିଥାଏ । ଏହି ଆତ୍ମପ୍ରକାଶ ମୂଳରେ ରହିଥାଏ ସ୍ରଷ୍ଟାର ସହାନୁଭୂତି ଓ ଅନୁକମ୍ପା । ସେହି ଦୃଷ୍ଟିରୁ ସାହିତ୍ୟ ଓ ସମାଜ ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ, ପରସ୍ପରର ପରିପୂରକ । ଏକ ବ୍ୟତିରେକେ ଅନ୍ୟଟି ନିଷ୍ପ୍ରାଣ ଓ ଶୁଷ୍କ ।

ସମାଜର ସାଧାରଣ ସଂଜ୍ଞା କହିଲେ କେତେକ ଲୋକଙ୍କର କୌଣସି ଏକ ନିର୍ଦ୍ଦିଷ୍ଟ ଭୂଖଣ୍ଡରେ ସମଷ୍ଟିଗତ ବସବାସକୁ ବୁଝାଇଥାଏ । ଗୋଷ୍ଠୀ ଶକ୍ତି ସମାଜ ଗଠନରେ ସର୍ବଦା କ୍ରିୟାଶୀଳ । କିନ୍ତୁ ସାହିତ୍ୟ ଗୋଷ୍ଠୀର ନୁହେଁ, ବ୍ୟଷ୍ଟିର । ତଥାପି ଏଥିରେ ଗୋଷ୍ଠୀ ଚେତନାର ଆତ୍ମସମୀକ୍ଷା ଓ ଗୋଷ୍ଠୀ ଜୀବନର ପ୍ରତିଟି କ୍ରିୟାକଳାପ ପରିପ୍ରକାଶିତ ହୋଇଥାଏ । ସେଥିପାଇଁ ସାହିତ୍ୟ ସ୍ରଷ୍ଟା ନିକଟରେ ବ୍ୟଷ୍ଟି ନୁହେଁ, ଗୋଷ୍ଠୀ ହିଁ ମୂଲ୍ୟବାନ । ସ୍ରଷ୍ଟା ସମାଜର ଅଂଶବିଶେଷ ହୋଇଥିବାରୁ ସମାଜର ମୂଲ୍ୟବୋଧ ସମ୍ପର୍କରେ ସେ ସଚେତନ ରହିଥାଏ । ସମାଜର ଅନ୍ତଃଚେତନାର ପ୍ରକାଶିତ ରୂପ ସାହିତ୍ୟ । ସମାଜ ପରିବର୍ତ୍ତନଶୀଳ; ମାତ୍ର ସାହିତ୍ୟ ଚିରନ୍ତନ । ମଣିଷ ତଥା ସମାଜ ଜୀବନର ଉତ୍‌ଥାନ ପତନ, ସଂଘର୍ଷ ଓ ସଂଘାତ, ହସକାନ୍ଦ ସାହିତ୍ୟରେ ହୁଏ ରୂପାୟିତ । ସମାଜରୁ ରସ ଗ୍ରହଣ କରି ସାହିତ୍ୟ ପରିପୁଷ୍ଟ ହେଉଥିବାରୁ ଏବଂ ସାମାଜିକ

ଜୀବନ ପରିଧି ମଧ୍ୟରେ ସ୍ରଷ୍ଟା ଆତଯାତ ହେଉଥିବାରୁ ସୃଷ୍ଟି ମଧ୍ୟରେ ସମାଜ ପ୍ରତିଫଳିତ ହେବା ସ୍ୱାଭାବିକ । ସାମାଜିକ ଆଭିମୁଖ୍ୟ ହିଁ ସାହିତ୍ୟ ମାଧ୍ୟମରେ ପ୍ରକାଶିତ ହୋଇଥାଏ । ସମାଜକୁ ରକ୍ଷା କରିବା ସାହିତ୍ୟିକର ଯେପରି କର୍ତ୍ତବ୍ୟ, ସାହିତ୍ୟକୁ ସୁରକ୍ଷା ଯୋଗାଇଦେବା ସମାଜର ସେହିପରି କର୍ତ୍ତବ୍ୟ । ବିଭିନ୍ନ ଦିଗରୁ ପରସ୍ପର ପରସ୍ପରକୁ ସାହାଯ୍ୟ କରୁଥିବାରୁ ସାହିତ୍ୟ ଏବଂ ସମାଜର ସମ୍ବନ୍ଧ ଅତୀବ ନିଗୂଢ଼ ।

ପ୍ରତ୍ୟେକ ସାହିତ୍ୟର କିଛି ନା କିଛି ସାମାଜିକ ଅଙ୍ଗୀକାରବଦ୍ଧତା ରହିଛି । ଏଥିରୁ ବିଚ୍ୟୁତ ହେଲେ ସାହିତ୍ୟ ତା'ର କର୍ତ୍ତବ୍ୟରେ ଅବହେଳା କଲା ବୋଲି ବୁଝିବାକୁ ହେବ । ବୈଦିକ ସାହିତ୍ୟରୁ ସେ ସମୟର ସାମାଜିକ ବ୍ୟବସ୍ଥା ସମ୍ବନ୍ଧରେ ସୂଚନା ମିଳିଥାଏ । ରାମାୟଣ, ମହାଭାରତ ଆଦିରୁ ତତ୍କାଳୀନ ସାମାଜିକ ଚିନ୍ତାଧାରାର ପରିଚୟ ମିଳିଥାଏ । ସେହିପରି ସାରଳାଦାସ, ପଞ୍ଚସଖା, ରୀତିସାହିତ୍ୟ ଓ ଆଧୁନିକ ସାହିତ୍ୟରୁ ଚତୁର୍ଦ୍ଦଶ ଶତକ ଓଡ଼ିଶାଠାରୁ ଏକବିଂଶ ଶତକର ଓଡ଼ିଶାର ସାମାଜିକ ଜୀବନ ସମ୍ବନ୍ଧରେ ଧାରଣା ଆସିଥାଏ । ସାହିତ୍ୟର ପ୍ରଭାବରୁ ହିଁ ସାମାଜିକ ଚେତନା ଜନ୍ମଲାଭ କରିବାର ସୁଯୋଗ ପାଇଥାଏ । ସମାଜ ଜୀବନକୁ ଉନ୍ନତ, ମାର୍ଜିତ ଓ ଶୃଙ୍ଖଳିତ କରିବାରେ ସାହିତ୍ୟର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ପ୍ରତ୍ୟେକ ସ୍ରଷ୍ଟାର ଏକ ସାମାଜିକ ଆଦର୍ଶ ଓ ଆଭିମୁଖ୍ୟ ରହିବା ଆବଶ୍ୟକ । ସାହିତ୍ୟ ସ୍ରଷ୍ଟାଙ୍କୁ ସେଥିପାଇଁ ସମାଜର ଯନ୍ତ୍ରୀ ବୋଲି କୁହାଯାଇଥାଏ । ଏହାର ପ୍ରକୃତ ଉଦ୍ଦେଶ୍ୟ ହେଉଛି ସମାଜ ଉଦ୍ଦେଶ୍ୟ ସାଧନ ନିମିତ୍ତ ଯେଉଁ ଦିଗକୁ ଅଗ୍ରସର ହେଉଛି, ସେଥିପ୍ରତି ସରଣୀ ପ୍ରସ୍ତୁତ କରିବା ଓ ତାକୁ ପ୍ରେରଣା ଯୋଗାଇଦେବା ସାହିତ୍ୟର ମୁଖ୍ୟ କର୍ତ୍ତବ୍ୟ । ସମାଜ ଜୀବନର ନିଛକ ରୂପ ପ୍ରକାଶ କରିପାରିଲେ ଓ ସମାଜକୁ ଉଚିତ ଦିଗ୍‌ଦର୍ଶନ ଦେଇପାରିଲେ ସାହିତ୍ୟ ହୋଇଥାଏ କାଳଜୟୀ । ସାହିତ୍ୟର ବହୁମୁଖୀ ଦାୟିତ୍ୱରୁ ସମାଜ ସମ୍ପର୍କୀୟ ଦାୟିତ୍ୱ ମୁଖ୍ୟ ବୋଲି ପରିଗଣିତ ହୋଇଥାଏ । ସମାଜ ସହିତ ଏକାତ୍ମବୋଧରୁ ହିଁ ସାହିତ୍ୟର ସାମାଜିକ ଦାୟିତ୍ୱବୋଧ ସୃଷ୍ଟି ହୋଇଥାଏ । ସମାଜ ଜୀବନକୁ ନିୟନ୍ତ୍ରଣ କରିବା କ୍ଷେତ୍ରରେ ମଧ୍ୟ ସାହିତ୍ୟର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ସାହିତ୍ୟ ସ୍ରଷ୍ଟା, ଶିକ୍ଷକ ପୁଣି ଦିଗ୍‌ଦର୍ଶକ । ସମାଜର ଅଧୋପତିତ ଅବସ୍ଥାରେ ସେ ଉଚିତ ଶିକ୍ଷା ପ୍ରଦାନ କରିଥାଏ, ପୁଣି ପଥଭ୍ରଷ୍ଟ ସମୟରେ ସମାଜକୁ ଉପଯୁକ୍ତ ପଥ ନିର୍ଦ୍ଦେଶ କରିଥାଏ । ଭବିଷ୍ୟତର ମଣିଷ ଅତୀତ ସାହିତ୍ୟରୁ ତତ୍କାଳୀନ ସାମାଜିକ ଅବସ୍ଥା ସମ୍ପର୍କରେ ଜ୍ଞାତ ହେବା ସଙ୍ଗେ ସଙ୍ଗେ ବର୍ତ୍ତମାନକୁ ସରସ ସୁନ୍ଦର କରିବା ପାଇଁ ପାଥେୟ ଲାଭ କରିଥାଏ । ତେଣୁ ସାହିତ୍ୟର ଏହି ସାମାଜିକ ଅଙ୍ଗୀକାରବଦ୍ଧତା ତାର ଚିରନ୍ତନ ମୂଲ୍ୟବୋଧର ନିୟାମକ

ସାମାଜିକ ପରିବର୍ତ୍ତନ କ୍ଷେତ୍ରରେ ସାହିତ୍ୟର ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ କଦାପି ଅସ୍ୱୀକାର କରାଯାଇ ନ ପାରେ । ସାମାଜିକ ସଙ୍ଗଠନ ଓ ଆଦର୍ଶ ବିଚାରଧାରା ମାଧ୍ୟମରେ ସେ ସମାଜରେ ପରିବର୍ତ୍ତନର ଆନୟନ କରିଥାଏ । ବିଶ୍ୱ ଇତିହାସ ପ୍ରତି ଦୃକ୍‌ପାତ କଲେ ସମାଜର ପରିବର୍ତ୍ତନରେ ସାହିତ୍ୟ କିପରି ମହତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି ତା'ର ବହୁ ଦୃଷ୍ଟାନ୍ତ ମିଳିଥାଏ । ରାଜନୀତିକ ଓ ସାମାଜିକ ଜୀବନରେ ଏହା ବୈପ୍ଲବିକ ପରିବର୍ତ୍ତନ ସାଧିତ କରିପାରେ । ଫରାସୀ ରାଷ୍ଟ୍ରବିପ୍ଳବ କ୍ଷେତ୍ରରେ ଋଷୋ ଓ ଭଲଟାୟାରଙ୍କ ପରି ସାହିତ୍ୟିକଙ୍କ ଅବଦାନ ସର୍ବାଦୌ ସ୍ମରଣୀୟ । ସାହିତ୍ୟ

ମାଧ୍ୟମରେ ହିଁ ସେମାନେ ସାମାଜିକ ବିପ୍ଳବ ସଂଘଟିତ କରିଥିଲେ । ନିଷ୍ଠୁର ଜାର୍ ଶାସକଙ୍କ ବିରୋଧରେ ରୁଷ୍‌ର ସାହିତ୍ୟିକମାନେ ସାହିତ୍ୟ ମାଧ୍ୟମରେ ହିଁ ଜନସଚେତନତା ସୃଷ୍ଟି କରିପାରିଥିଲେ । ସାମ୍ୟବାଦ ପ୍ରତିଷ୍ଠା କ୍ଷେତ୍ରରେ ରୁଷ ସାହିତ୍ୟିକଙ୍କ ଅବଦାନ ସର୍ବାଦୌ ସ୍ମରଣୀୟ । ବିଶ୍ୱଯୁଦ୍ଧ ପରେ ଏହି ଯୁଦ୍ଧର ଭୟଙ୍କର ରୂପ T. S. Eliotଙ୍କ ପରି ଅନ୍ୟାନ୍ୟ ବହୁ ସ୍ରଷ୍ଟାଙ୍କ ସୃଷ୍ଟିରେ ଆତ୍ମପ୍ରକାଶ କରି ଭବିଷ୍ୟତ ମଣିଷକୁ ସତର୍କବାଣୀ ଶୁଣାଇଥିଲା । ଭାରତୀୟ ସ୍ୱାଧୀନତା ସଂଗ୍ରାମ ଆନ୍ଦୋଳନରେ ଭାରତୀୟ ସାହିତ୍ୟିକମାନଙ୍କ ଅବଦାନ ଅତୁଳନୀୟ । ଓଡ଼ିଶାରେ ଗୋପବନ୍ଧୁ, ଗୋଦାବରୀଶ, ନୀଳକଣ୍ଠ, ବୀରକିଶୋର, ବାଞ୍ଛାନିଧି ପ୍ରଭୃତି ବହୁ ଜାତୀୟ କବି ସ୍ୱାଧୀନତା ସଂଗ୍ରାମ ଆନ୍ଦୋଳନରେ ସାହିତ୍ୟ ମାଧ୍ୟମରେ ଜନସଚେତନତା ସୃଷ୍ଟି କରିପାରିଥିଲେ । ଫକୀରମୋହନଙ୍କ ସାହିତ୍ୟ ତତ୍କାଳୀନ ସାମାଜିକ ବ୍ୟବସ୍ଥା ଓ ବ୍ୟକ୍ତି ଚରିତ୍ର ସମ୍ବନ୍ଧରେ ନିଛକ ଚିତ୍ର ପ୍ରଦାନ କରି ଏକପ୍ରକାର ସାମାଜିକ ଆନ୍ଦୋଳନ ନିମିତ୍ତ ପଥ ପରିଷ୍କାର କରିଥିଲା । ସମାଜକୁ ସୁସ୍ଥ, ସୁନ୍ଦର ଓ ନିରାମୟ କରିବା ପାଇଁ ସାହିତ୍ୟ ସ୍ୱପ୍ନ ଦେଖିଥାଏ । ମାନବିକ ଚେତନାର ସୁସଂଗଠିତ ଓ କଳାତ୍ମକ ଅଭିବ୍ୟକ୍ତି ହେଉଛି ସାହିତ୍ୟ । ସାମାଜିକ ଆଦର୍ଶ ପ୍ରତିଷ୍ଠା ପାଇଁ ଯୁଗେ ଯୁଗେ ସାହିତ୍ୟ ବିପ୍ଳବ କରିଆସିଛି । ଯେଉଁଠାରେ ସାହିତ୍ୟିକ ଲକ୍ଷ୍ୟ କରିଛି ସମାଜରେ ଦୁର୍ନୀତି, ଅନ୍ୟାୟ, ଅନୀତି ସେଠାରେ ସେ ସାହିତ୍ୟ ମାଧ୍ୟମରେ ହିଁ ସାମାଜିକ ପରିବର୍ତ୍ତନ ଆଣିବାକୁ ଚେଷ୍ଟା କରିଛି । ସମାଜର ଦୁର୍ବଳତାକୁ ପଦାରେ ପ୍ରକାଶ କରିଛି । ତେଣୁ ସମାଜ ଜୀବନକୁ ପ୍ରଭାବିତ କରିବା କ୍ଷେତ୍ରରେ ଏବଂ ସାମାଜିକ ସଂସ୍କାର ଆନ୍ଦୋଳନ ଦିଗରେ ସାହିତ୍ୟର ବହୁମୁଖୀ ଉଦ୍ୟମର ତୁଳନା ନାହିଁ ।

ସାହିତ୍ୟର ସମାଜର କଲ୍ୟାଣକାରୀ ଦିଗର ମଧ୍ୟ ତୁଳନା ନାହିଁ । ସମାଜର ଦ୍ୱନ୍ଦ୍ୱ ଉତ୍‌ଥାନ ପତନ ସହିତ ମାନବର ବଞ୍ଚିବା ଓ ମରିବା ଏକାତ୍ମ ହୋଇଥିବାରୁ ସାହିତ୍ୟର ଭୂମିକା ଏ କ୍ଷେତ୍ରରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପ୍ରାଚୀନ ଆଳଙ୍କାରିକମାନେ ସାହିତ୍ୟ ପାଠଦ୍ୱାରା ଚତୁର୍ବର୍ଗ ଫଳ ପ୍ରାପ୍ତି ହୋଇଥାଏ ବୋଲି ମତପ୍ରଦାନ କରିଥାନ୍ତି । ପୁଣି ଯଶ, ଅର୍ଥ ଓ ବ୍ୟବହାର ଜ୍ଞାନ ଶିକ୍ଷା ଦେବାରେ ସାହିତ୍ୟ ପ୍ରମୁଖ ଭୂମିକା ଗ୍ରହଣ କରିଥାଏ । ସମାଜର ସାମଗ୍ରିକ କଲ୍ୟାଣ ସାଧନ ହିଁ ସାହିତ୍ୟର ଲକ୍ଷ୍ୟ । ମଣିଷ ଜୀବନକୁ ଉନ୍ନତ, ମାର୍ଜିତ, ଶୃଙ୍ଖଳିତ ଏବଂ ସମାଜକୁ ସଂସ୍କାର କରି ଉଭୟ ମଣିଷ ଓ ସମାଜର ସେ ମଙ୍ଗଳ ସାଧନ କରିଥାଏ । ମଣିଷର ନିରସ ପ୍ରାଣରେ ସରସତା ଭରିଦେଇ ତାକୁ ବଞ୍ଚିବାର ଖୋରାକ ଯୋଗାଇ ଦେଇଥାଏ । ନିରାଶ ଜୀବନରେ ସେ ଶୁଣାଏ ଆଶାର ବାଣୀ । ବିଶ୍ୱରୁ ଯୁଦ୍ଧର ଭୟଙ୍କାରିତା ଦୂର କରିବାକୁ ଯାଇ ସାହିତ୍ୟ ଆଜି ଶୁଣାଉଛି ମୈତ୍ରୀ ଓ ଶାନ୍ତିର ବାଣୀ । ରାବଣକୁ ମଣିଷ ନିନ୍ଦା କରୁଛି । ମାତ୍ର ରାମରାଜ୍ୟ ପରିକଳ୍ପନାକୁ ଅନ୍ତରରେ ସ୍ୱାଗତ ଜଣାଉଛି । ଏହା କେବଳ ସାହିତ୍ୟ ଦ୍ୱାରା ହିଁ ସମ୍ଭବ ହୋଇପାରିଛି । ସାହିତ୍ୟ 'ସୁ' ଓ 'କୁ' ମଧ୍ୟରେ ପାର୍ଥକ୍ୟ ନିର୍ଦ୍ଦିଷ୍ଟ କରିଥାଏ । ସମାଜକୁ ଶୁଦ୍ଧ, ସଂସ୍କାର କରି ମଣିଷ ପ୍ରାଣରେ ବଞ୍ଚିବାର ସମ୍ଭାବନା ଜାଗ୍ରତ କରେ । ବିଶ୍ୱ ଇତିହାସରେ ବହୁ ସ୍ରଷ୍ଟା ସାହିତ୍ୟ ମାଧ୍ୟମରେ ସାମାଜିକ ଚେତନା ସୃଷ୍ଟି କରିବା ସଙ୍ଗେ ସଙ୍ଗେ ସମାଜକୁ ନୂତନ ପ୍ରେରଣା ପ୍ରଦାନ କରି ଆସିଛନ୍ତି । ମଣିଷର ସୌନ୍ଦର୍ଯ୍ୟପିପାସାକୁ ସାହିତ୍ୟ କରିଛି ଜାଗ୍ରତ । ତା ମନରେ ଭରିଦେଇଛି ଆନନ୍ଦ । ଶାନ୍ତି ପ୍ରୀତିର

ବାର୍ତ୍ତା ପ୍ରଚାର କରି ସାହିତ୍ୟ ସମଗ୍ର ବିଶ୍ୱରୁ ଯୁଦ୍ଧଭୟ ଦୂର କରିବାକୁ ଅଗ୍ରଣୀ ଭୂମିକା ଗ୍ରହଣ କରିଛି । ତେଣୁ ସାହିତ୍ୟର ଏହି ସମାଜ କଲ୍ୟାଣକାରୀ ରୂପ ସର୍ବଦା ଅଭିନନ୍ଦନୀୟ ଓ ସ୍ୱାଗତଯୋଗ୍ୟ ।

ସମାଜର ଉନ୍ନତି ପାଇଁ, ସମାଜକୁ ସୁସ୍ଥ-ସୁନ୍ଦର କରି ଗଢ଼ି ତୋଳିବା ପାଇଁ ସାହିତ୍ୟର ଯେଉଁପରି ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି, ଅନୁରୂପ ଭାବେ ସାହିତ୍ୟକୁ ସମୃଦ୍ଧ କରିବା ପାଇଁ, ତାକୁ ନୂତନ ରୂପ ପ୍ରଦାନ କରିବା ପାଇଁ ସମାଜର ମଧ୍ୟ ମହତ୍ତ୍ୱପୂର୍ଣ୍ଣ ଭୂମିକା ରହିଛି । ସମାଜରୁ ପ୍ରେରଣା ଲାଭ କରି ସାହିତ୍ୟ ହୁଏ ପରିପୁଷ୍ଟ । ସମାଜକୁ ସାହିତ୍ୟ ନିୟନ୍ତ୍ରଣ କରି ତାକୁ କରେ ଶୁଦ୍ଧ ଓ ମାର୍ଜିତ । ସମାଜର ମଙ୍ଗଳ ଓ ଉନ୍ନତି କାମନା ସାହିତ୍ୟର ଲକ୍ଷ୍ୟ । ବହୁବିଧ ଉପାଦାନ ଯୋଗାଇ ଦେଇ ସମାଜ ସାହିତ୍ୟକୁ କରେ ମହତ୍ତର । ଗୋଟିଏ ଶରୀର ହେଲେ ଅନ୍ୟଟି ଆତ୍ମା । ଯେପରି ଆତ୍ମା ବ୍ୟତିରେକେ ଶରୀର ଓ ଶରୀର ବ୍ୟତିରେକେ ଆତ୍ମାର କୌଣସି ଅସ୍ତିତ୍ୱ ନାହିଁ, ସେହିପରି ସମାଜ ବିନା ସାହିତ୍ୟ ଓ ସାହିତ୍ୟ ବିନା ସମାଜର ମଧ୍ୟ କୌଣସି ମୂଲ୍ୟ ନାହିଁ ।



# ସାହିତ୍ୟରେ ସୁନୀତି ଓ ସୁରୁଚି

**(ଉପକ୍ରମ, ସମାଜରେ ସୁନୀତି ଓ ସୁରୁଚିର ଆବଶ୍ୟକତା, ବ୍ୟକ୍ତି ଚରିତ୍ର ଗଠନରେ ଏହାର ଭୂମିକା, ସାହିତ୍ୟରେ ସୁନୀତି ଓ ସୁରୁଚିର ପ୍ରକାଶ, ଉପସଂହାର)**

ସାହିତ୍ୟ ମାନବ ଜୀବନର ରୂପକାର; ସମାଜର ଦିଗ୍‌ଦର୍ଶକ । ଏହା ଯେପରି ସମାଜରେ ବିପ୍ଳବ ସଂଘଟିତ କରି ତାକୁ ଏକ ନୂତନ ରୂପ ପ୍ରଦାନ କରିପାରେ, ଠିକ୍ ସେହିପରି ଅନୀତି ଏବଂ ଅନ୍ୟାୟର ବାଣୀ ପ୍ରଦାନ କରି ସମାଜକୁ ପଙ୍ଗୁ କରିଦେଇପାରେ । ସମାଜରେ ସୁସ୍ଥ ବାତାବରଣ ସୃଷ୍ଟି କ୍ଷେତ୍ରରେ ଏହାର ଯେପରି ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି, ଅସୁସ୍ଥତାର ପରିବେଶ ସୃଷ୍ଟି କ୍ଷେତ୍ରରେ ଏହାର ସେହିପରି ନିନ୍ଦନୀୟ ଭୂମିକା ରହିଛି । ମାତ୍ର ସମାଜର ହିତାକାଂକ୍ଷୀ ଦୃଷ୍ଟିରୁ ସମାଜରେ ସୁନୀତି ଓ ସୁରୁଚିର ବାଣୀ ପ୍ରଚାର କରିବା ସାହିତ୍ୟର ପ୍ରଥମ ଓ ଶ୍ରେଷ୍ଠ ଲକ୍ଷ୍ୟ । ଯାହା ସମାଜର ହିତ ସାଧନ କରିପାରେ, ତାହାହିଁ ସାହିତ୍ୟ । ତେଣୁ ନୀତିବାଣୀର ପ୍ରଚାର ଦ୍ୱାରା ସମାଜର ଦୁଷ୍ଟବ୍ରଣକୁ ମୂଳୋତ୍ପାଟନ କରିବା ଏହାର କର୍ତ୍ତବ୍ୟ । ଏହି ଦୃଷ୍ଟିରୁ ସାହିତ୍ୟ ସର୍ବଦା ସୁନୀତି ଓ ସୁରୁଚିର ଉପାସକ ହେବା ବିଧେୟ ବୋଲି ବହୁ ପଣ୍ଡିତ ମତବ୍ୟକ୍ତ କରିଥାନ୍ତି ।

ଏକାଧିକ ବ୍ୟକ୍ତିବିଶେଷଙ୍କର ସହାବସ୍ଥାନରେ ସମାଜ ଗଠିତ ହୋଇଥାଏ । ତେଣୁ ସମାଜରେ ବସବାସ କରୁଥିବା ବ୍ୟକ୍ତିବିଶେଷଙ୍କ ମଧ୍ୟରେ ଉତ୍ତମ ସମ୍ପର୍କ ସ୍ଥାପନ ହୋଇ ନ ପାରିଲେ ସାମାଜିକ ଜୀବନ ଅସହ୍ୟ ହୋଇ ଉଠିଥାଏ । ପୁନରାୟ ସମାଜର ଉନ୍ନତି ଓ ବିକାଶ ନିମିତ୍ତ ଜନସାଧାରଣଙ୍କ ମଧ୍ୟରେ ସହଯୋଗମୂଳକ ସମ୍ବନ୍ଧ ସ୍ଥାପିତ ହେବାର ଜରୁରୀ ଆବଶ୍ୟକତା ରହିଛି । ବ୍ୟକ୍ତି ବା ବ୍ୟଷ୍ଟି ସ୍ୱାର୍ଥପରାୟଣ ହୋଇଉଠିଲେ ସାମୂହିକ ସ୍ୱାର୍ଥର ବ୍ୟାଘାତ ଘଟିଥାଏ । ବିଶ୍ୱାସପୂର୍ଣ୍ଣ

ବାତାବରଣ ମଣିଷ ଜୀବନର ମଙ୍ଗଳ ସାଧନ କରିଥାଏ । ସେଥିପାଇଁ ପ୍ରତ୍ୟେକ ମଣିଷ ସୁନୀତି ଓ ସୁରୁଚିର ଉପାସକ ହେବା ବିଧେୟ । ସମାଜ ଏକ ସଙ୍ଗଠନ, ଯେଉଁଥିରେ ବିଭିନ୍ନ ରୁଚି ଏବଂ ଚିନ୍ତାଧାରାର ମଣିଷ ବସବାସ କରିଥାନ୍ତି । ତେଣୁ ସମାଜକୁ ସୁନ୍ଦର ଏବଂ ରୁଚିପୂର୍ଣ୍ଣ କରିବାକୁ ହେଲେ ବ୍ୟକ୍ତିବିଶେଷ ସୁନୀତି ଓ ସୁରୁଚି ପ୍ରତି ସର୍ବଦା ଧ୍ୟାନଶୀଳ ହେବା ଆବଶ୍ୟକ । ଜଣେ ବ୍ୟକ୍ତିର ଆଚରହୀନ ବ୍ୟବହାର ସମଗ୍ର ଜୀବନକୁ କଳୁଷିତ କରିଦେଇପାରେ । ବିବେକାନୁମୋଦିତ କାର୍ଯ୍ୟ ସମାଜର ବିକାଶରେ ସହାୟକ । ଅନେକ ସମୟରେ ବିଭିନ୍ନ ପ୍ରତିକୂଳ ପରିବେଶ ମଣିଷର ଆଚରଣରେ ପରିବର୍ତ୍ତନ ଆଣିଥାଏ । ଏ କ୍ଷେତ୍ରରେ ସାହିତ୍ୟର ଭୂମିକା ନିଶ୍ଚିତଭାବେ ଉଲ୍ଲେଖଯୋଗ୍ୟ । ଗୁରୁ ଯେପରି ଛାତ୍ରକୁ ଉଚିତ ମାର୍ଗ ଦର୍ଶନରେ ସହାୟତା ପ୍ରଦାନ କରିଥାନ୍ତି, ସେହିପରି ସାହିତ୍ୟ ସମାଜର ବ୍ୟକ୍ତିବିଶେଷଙ୍କୁ ଉପଯୁକ୍ତ ପଥ ନିର୍ଦ୍ଦେଶ କରିଥାଏ । ସମାଜ ଉଭୟ ରାମ ରାବଣ, କୌରବ ଏବଂ ପାଣ୍ଡବମାନଙ୍କର ଆଶ୍ରୟସ୍ଥଳ । ବ୍ୟକ୍ତିଗତ ସ୍ୱାର୍ଥ, ଅସୂୟାଭାବ, ପରଶ୍ରୀକାତରତା ବହୁ ବ୍ୟକ୍ତିଙ୍କର ଚାରିତ୍ରିକ ବିଶେଷତ୍ୱ । ଚରିତ୍ର ସଂଶୋଧନ କ୍ଷେତ୍ରରେ ସାହିତ୍ୟର ଏକ ବିଶେଷ ଭୂମିକା ରହିଥିବାରୁ ଏହା ସମାଜକୁ କଳଙ୍କମୁକ୍ତ, ବ୍ୟକ୍ତଚରିତ୍ରକୁ ସଂଶୋଧନ କରିପାରେ । ତେଣୁ ସାହିତ୍ୟ ସୁନୀତିପୂର୍ଣ୍ଣ ତଥା ସୁରୁଚିସମ୍ପନ୍ନ ହୋଇପାରିଲେ ସମାଜର ଅଶେଷ ମଙ୍ଗଳ ସାଧିତ ହୋଇଥାଏ ।

ବ୍ୟକ୍ତିର କାର୍ଯ୍ୟକଳାପ ସମାଜର ଜୀବନଧାରାକୁ ନିୟନ୍ତ୍ରଣ କରିଥାଏ । ବ୍ୟକ୍ତି ଚରିତ୍ର ସଂଶୋଧନ ହୋଇ ନ ପାରିଲେ ସାମାଜିକ ପ୍ରଗତି ପଙ୍ଗୁ ହୋଇପଡ଼ିଥାଏ । ତେଣୁ ସୁନୀତି ଏବଂ ସୁରୁଚିପୂର୍ଣ୍ଣ ବ୍ୟକ୍ତି ଚରିତ୍ର ଗଠନରେ ଏହା ଅଶେଷ ସହାୟତା କରିଥାଏ । ସୁନୀତି ଏବଂ ସୁରୁଚିର ବ୍ୟକ୍ତି କଦାପି ସମାଜର ଅମଙ୍ଗଳ କାମନା କରିପାରେ ନାହିଁ । ଆଜି ମଣିଷର ଜୀବନ ଦ୍ୱିଧାବିଭକ୍ତ । କେତେବେଳେ କେଉଁ ମୋହ ତାକୁ କେଉଁଆଡ଼କୁ ଟାଣି ନେଉଛି, ତାହା କଳନା କରିବା କଷ୍ଟସାଧ୍ୟ । ମଣିଷ ଜୀବନରେ ସଂସ୍କାର ଆଣିବାକୁ ହେଲେ, ତା'ର ଚରିତ୍ରକୁ ସଂଶୋଧନ କରିବାକୁ ହେଲେ ପ୍ରଥମେ ତାକୁ ସୁନୀତିର ଉପାସକ ହେବାକୁ ପଡ଼ିବ । ସୁନୀତିକୁ ଅନୁସରଣ କରୁଥିବା ବ୍ୟକ୍ତି ଆପେ ଆପେ ସୁରୁଚିକୁ ଗ୍ରହଣ କରି ନେଇଥାଏ । ଏଥିପାଇଁ ଆମ ସାହିତ୍ୟରେ ସେହିପରି ବାର୍ତ୍ତା ରହିବା ଆବଶ୍ୟକ । କୁରୁଚିପୂର୍ଣ୍ଣ ସାହିତ୍ୟ ସମାଜର ଅଧୋଗତି ଆଣିଥାଏ । ଅଧର୍ମ, ଅତ୍ୟାଚାର, ପାପାଚାରକୁ ପ୍ରଶ୍ରୟ ଦେଇଥାଏ, ବ୍ୟକ୍ତି ଚରିତ୍ରରେ କଳୁଷ ଭରି ଦେଇଥାଏ । ମାତ୍ର ରୁଚିପୂର୍ଣ୍ଣ ତଥା ନୀତିପୂର୍ଣ୍ଣ ସାହିତ୍ୟ ସୃଷ୍ଟିକୁ କରେ ସୁନ୍ଦର ମଧୁମୟ । ବ୍ୟକ୍ତି ଚରିତ୍ରରୁ ପଶୁତ୍ୱ ଗୁଣକୁ ବର୍ଜିଦେଇ ଦେବତ୍ୱ ଗୁଣର ଉତ୍କର୍ଷ ସାଧନ କରେ । ସୃଷ୍ଟି ହୁଏ ମଧୁର, ବ୍ୟକ୍ତି ହୁଏ ଚରିତ୍ରବାନ୍ ।

ସମାଜର ଆବଶ୍ୟକତାକୁ ଆଖିରେ ରଖି ସାହିତ୍ୟର ସୃଷ୍ଟି ହୋଇଛି । ବେଦ ରଚନା ସମୟରେ ଆମର ପ୍ରାଜ୍ଞ ଋଷିମାନଙ୍କ ସମ୍ମୁଖରେ ଜୀବନ ଓ ଜଗତ ହିଁ ଥିଲା ସବୁଠାରୁ ବଡ଼ । ମଣିଷ ଜୀବନକୁ ମଧୁର ଏବଂ ନୀତିନିଷ୍ଠ କରିବାକୁ ତଥା ସମାଜକୁ ସୁନ୍ଦର ଓ ଆଚାରନିଷ୍ଠ କରିବା ପାଇଁ ସେମାନେ ବେଦରେ ବହୁ ନୀତିପୂର୍ଣ୍ଣ ବାଣୀର ଅବତାରଣା କରିଛନ୍ତି । ମନୁଭବ – ଏହା ଥିଲା ବେଦର ବାଣୀ । ଉପଯୁକ୍ତ ମଣିଷ ହେବା ନିମିତ୍ତ ଏଥିରେ ପ୍ରେରଣା ନିହିତ ଥିଲା । ପୁରାଣ ଯୁଗରେ ମଣିଷ ଚରିତ୍ରକୁ ସଙ୍ଗଠିତ ତଥା ନୀତିପୂର୍ଣ୍ଣ କରିବା ପାଇଁ ପୁରାଣ ସାହିତ୍ୟରେ ଗୁରୁତ୍ୱ

ଆରୋପ କରାଯାଇଥିଲା । ତେଣୁ ନ୍ୟାୟ-ନୀତି ଧର୍ମ-ଅଧର୍ମ, ପାପ-ପୁଣ୍ୟ, ନୀତି-ଅନୀତି ଆଦି ସମ୍ବନ୍ଧରେ ଏଥିରେ କଥା ଛଳରେ ବହୁ ଉପଦେଶ ପ୍ରଦାନ କରାଯାଇଛି । ସତ୍ୟର ଜୟ ଓ ପାପର କ୍ଷୟ—ଏହାହିଁ ହୋଇଛି ପୁରାଣ ସାହିତ୍ୟର ବାଣୀ । ପ୍ରତ୍ୟେକ ସ୍ଥାନରେ ଧର୍ମର ଜୟ ଉଦ୍‌ଘୋଷିତ । ରାମାୟଣରେ ରାବଣ ଅନ୍ୟାୟ ପଥରେ ଗତି କରିଥିବାରୁ ସ୍ୱର୍ଣ୍ଣପୁରୀ ଲଙ୍କା ସମୂଳେ ଧ୍ୱଂସ ପାଇଯାଇଛି । ଅମିତ ପରାକ୍ରମଶାଳୀ ରାବଣ ଶେଷରେ ମୃତ୍ୟୁବରଣ କରିଛି । ମାତୃ ଜାତିର ଅବମାନନା କରିଥିବାରୁ ସେ ଧ୍ୱଂସର ଶିକାର ହୋଇଛି । ମାତ୍ର ତା'ର ଅନୁଜ ବିଭୀଷଣ ଧର୍ମ ପଥରେ ଗତି କରିଥିବାରୁ ଭଗବାନ୍ ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ରଙ୍କର ଆଶିଷ ଲାଭ କରିପାରିଛି । ରାବଣ ନିଧନ ପରେ ସେ ହୋଇଛି ଲଙ୍କାର ରାଜା । ମହାଭାରତରେ ଠିକ୍ ସେହିପରି ନ୍ୟାୟ ଅନ୍ୟାୟର ଯୁଦ୍ଧରେ ଅନ୍ୟାୟର ହୋଇଛି ପରାଜୟ । ସମସ୍ତ ଶକ୍ତି ଐଶ୍ୱର୍ଯ୍ୟ ଥାଇ ମଧ ଦୁର୍ଯ୍ୟୋଧନ ମୃତ୍ୟୁ ହାତରୁ ନିଜକୁ ରକ୍ଷା କରିପାରି ନାହିଁ । ଭୀଷ୍ମ, ଦ୍ରୋଣ, କର୍ଣ୍ଣ ପ୍ରଭୃତି ମହାବୀର ଏହି ଅନ୍ୟାୟ ଯୁଦ୍ଧରେ ପ୍ରାଣବଳି ଦେଇଛନ୍ତି । ବାଲ୍ମୀକି, ବ୍ୟାସ ଆଦି ମୁନିଋଷିଗଣ ସମାଜରେ ନ୍ୟାୟ ଓ ସତ୍ୟର ପ୍ରତିଷ୍ଠା ପାଇଁ ସାହିତ୍ୟକୁ ମାଧ୍ୟମ ରୂପେ ଗ୍ରହଣ କରିଛନ୍ତି । ତେଣୁ ସେମାନଙ୍କ ସାହିତ୍ୟ ହୋଇଛି ସୁନୀତି ଏବଂ ସୁରୁଚିର ଉପାସକ । ଭାଗବତ ଓଡ଼ିଆ ସାହିତ୍ୟ କାହିଁକି ସମଗ୍ର ଭାରତୀୟ ସାହିତ୍ୟର ଏକ ଅମୂଲ୍ୟ ସମ୍ପଦ । ସୁନୀତି ବାଣୀର ଏହା ଏକ ଗନ୍ତାଘର । ମଣିଷ ଜୀବନର ଗଠନ ପାଇଁ ଏଥିରେ ଅନେକ ମହତ୍ ବାଣୀ ପ୍ରଦତ୍ତ ହୋଇଛି । ଭାରତର ସାମାଜିକ ବ୍ୟବସ୍ଥାକୁ ଉଚିତ ମାର୍ଗରେ ପରିଚାଳିତ କରିବା କ୍ଷେତ୍ରରେ ଏହାକୁ ଏକ ନୀତିନିର୍ଦ୍ଦେଶିକା ଗ୍ରନ୍ଥ ଭାବରେ ଗ୍ରହଣ କରାଯାଇପାରେ । ଆଧୁନିକ ଯୁଗରେ ମଧ ବହୁ ଲେଖକ ସମାଜକୁ ସୁସ୍ଥସୁନ୍ଦର କରିବା ପାଇଁ ବହୁ ନୀତିପୂର୍ଣ୍ଣ କଥାର ଅବତାରଣା କରିଛନ୍ତି । ଫକୀରମୋହନଙ୍କ କ୍ଷୁଦ୍ରଗଳ୍ପ ଓ ଉପନ୍ୟାସ, ମଧୁସୂଦନଙ୍କ କବିତା ଏବଂ ପ୍ରବନ୍ଧ, ଗଙ୍ଗାଧରଙ୍କ କାବ୍ୟକବିତା, ନନ୍ଦକିଶୋର, ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ, କୃପାସିନ୍ଧୁ, ବିଶ୍ୱନାଥ କର ଆଦିଙ୍କ ସୃଷ୍ଟିରେ ବହୁ ନୀତିବାଣୀର ଉଲ୍ଲେଖ ରହିଛି । ସୁନୀତି ଏବଂ ସୁରୁଚିର ଉପାସନା ନିମିତ୍ତ ଏଥିରେ ରହିଛି ପ୍ରେରଣା । ତେଣୁ ଯୁଗେ ଯୁଗେ ସାହିତ୍ୟ ସୁନୀତି ଏବଂ ସୁରୁଚିର କଥା କହି ସାମାଜିକ ଜୀବନକୁ ସଙ୍ଗଠିତ ତଥା ସମୃଦ୍ଧ କରିବାକୁ ଚେଷ୍ଟା କରିଆସିଛି ।

ସାମାଜିକ ନ୍ୟାୟ ପ୍ରତିଷ୍ଠା ସାହିତ୍ୟର ଧର୍ମ । ଏଥିପାଇଁ ସାହିତ୍ୟ ତା'ର କଳେବର ମଧ୍ୟରେ ସର୍ବଦା ରୁଚି ଏବଂ ନୀତିର କଥା ହିଁ ସ୍ଥାନ ଦେବା ଆବଶ୍ୟକ । ସମୟେ ସମୟେ ସାହିତ୍ୟରେ ପ୍ରତିଫଳିତ କୁରୁଚିପୂର୍ଣ୍ଣ କଥା ସମାଜକୁ ବିପଦ ଦିଗକୁ ଟାଣି ନେଇଛି । ଏହାକୁ ପାଠକରି ଯୁବସମାଜ ଉଦ୍‌ଭ୍ରାନ୍ତ ହୋଇ ବହୁ ନାରକୀୟ ଘଟଣା ସଂଘଟିତ କରୁଛନ୍ତି । ତେଣୁ ସମାଜକୁ ଆଖିଆଗରେ ରଖି ଏବଂ ତା'ର ମଙ୍ଗଳ ଉଦ୍ଦେଶ୍ୟରେ ସାହିତ୍ୟ ରଚିତ ହେବା ଉଚିତ । ଏକବିଂଶ ଶତାବ୍ଦୀର ଆଦ୍ୟ ଭାଗରେ ଆମର ସାମାଜିକ ଜୀବନ ବହୁଭାବରେ କଳୁଷିତ ହୋଇପଡୁଥିବାର ଲକ୍ଷ୍ୟ କରାଯାଇଛି । ସାମାଜିକ ଜୀବନରେ ଦେଖାଦେଇଛି ସ୍ଖଳନ । ଏ କ୍ଷେତ୍ରରେ ସାହିତ୍ୟର ଏକ ବିଶେଷ ଭୂମିକା ବିଦ୍ୟମାନ । ତେଣୁ ବର୍ତ୍ତମାନ ପରିପ୍ରେକ୍ଷୀରେ ସାହିତ୍ୟରେ କେବଳ ସୁନୀତି ତଥା ସୁରୁଚି କଥାର ଅବତାରଣା ହେବା ବାଞ୍ଛନୀୟ ।

●

# ଜାତୀୟ ସଙ୍କଟରେ ସାହିତ୍ୟର ଭୂମିକା

(ଉପକ୍ରମ, ଜାତୀୟ ସଙ୍କଟର କାରଣ, ଜାତୀୟତାର ଆବଶ୍ୟକତା, ଜାତିର ଜୀବନ ଗଠନରେ ସାହିତ୍ୟ, ଜାତୀୟ ସଙ୍କଟ କ୍ଷେତ୍ରରେ ସାହିତ୍ୟର ଭୂମିକା, ଉପସଂହାର)

ସାହିତ୍ୟ କେବଳ ବ୍ୟକ୍ତି ଚରିତ୍ର ଗଠନରେ ସହାୟତା କରିନଥାଏ । ଜାତି ଗଠନରେ ସାହିତ୍ୟର ଭୂମିକା ମଧ୍ୟ ଗୁରୁତ୍ୱପୂର୍ଣ୍ଣ । ଜାତୀୟ ଜୀବନକୁ ସଙ୍ଗଠିତ ତଥା ଶୃଙ୍ଖଳିତ କରିବା କ୍ଷେତ୍ରରେ ଏହାର ଅବଦାନ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ବ୍ୟକ୍ତି ଯେତେବେଳେ ନିଜର ବ୍ୟକ୍ତିଗତ ସ୍ୱାର୍ଥ ଜଳାଞ୍ଜଳି ଦେଇ ସମୂହ ସ୍ୱାର୍ଥ ଉଦ୍ଦେଶ୍ୟରେ ନିଜକୁ ଉତ୍ସର୍ଗ କରେ ସେତେବେଳେ ଜାତୀୟତାର ବୀଜ ବପନ ହୋଇଥାଏ । ଆତ୍ମସ୍ୱାର୍ଥ ଏଥିରେ ଅତ୍ୟନ୍ତ ଗୌଣ । ଜାତିର ମୁକ୍ତି ଓ ଉନ୍ନତିରେ ବ୍ୟକ୍ତିର ମୁକ୍ତି ଏବଂ ଉନ୍ନତି ସମ୍ଭବ ହୋଇଥାଏ । ସଂକୀର୍ଣ୍ଣ ସ୍ୱାର୍ଥ ଜାତୀୟତାର ପରିପନ୍ଥୀ । କୌଣସି ଗୋଟିଏ ବ୍ୟକ୍ତିର ଆତ୍ମିକ କିମ୍ବା ଶାରୀରିକ ଉନ୍ନତିରେ ଦେଶର ଉନ୍ନତି କଦାପି ସାଧିତ ହୋଇନଥାଏ । ଏଥିପାଇଁ ଆବଶ୍ୟକ ରହିଛି ସାମୂହିକ ପ୍ରଚେଷ୍ଟା । ଆଲୋକ ଓ ଅନ୍ଧକାର ପରି ଜାତି ଜୀବନରେ ମଧ୍ୟ ଆଲୋକ ଏବଂ ଅନ୍ଧକାର ଆସିଥାଏ । ଏହି ଅନ୍ଧକାରର ଦୂରୀକରଣ କରିବା କ୍ଷେତ୍ରରେ ବ୍ୟକ୍ତିର ଯେପରି ଭୂମିକା ରହିଛି, ସାହିତ୍ୟର ତତୋଽଧିକ ଭୂମିକା ରହିଛି । ଏହି କାରଣରୁ ଦେଶ ଏବଂ ଜାତିର ସଙ୍କଟ କାଳରେ ସାହିତ୍ୟର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ ।

ଜାତୀୟ ସଙ୍କଟର ବିଭିନ୍ନ କାରଣ ରହିଛି । ଜାତି ଯେତେବେଳେ ନିର୍ବୀର୍ଯ୍ୟ ଓ ସ୍ୱାର୍ଥପରାୟଣ ହୋଇଉଠେ, ସେତେବେଳେ ଜାତୀୟ ସଙ୍କଟ ଦେଖା ଦେଇଥାଏ । ସାମ୍ପ୍ରଦାୟିକ ବିଭେଦ, ଜାତି, ବର୍ଣ୍ଣଗତ ବୈଷମ୍ୟ, ଆର୍ଥନୀତିକ ଅସମତା ମଧ୍ୟ ଜାତୀୟ ସଙ୍କଟ ନିମିତ୍ତ ପଥ ପରିଷ୍କାର କରିଥାଏ । ପରସ୍ପର ପ୍ରତି ହିଂସା, ଅସହନଶୀଳତା, ଆତ୍ମସ୍ୱାର୍ଥ ଆଦି ଏହାର ଅନ୍ୟତମ କାରଣ । ଜାତି ଓ ସ୍ୱାର୍ଥଗତ ବିଭେଦର କାରଣରୁ ଭାରତର ସ୍ୱାଧୀନତା ରବି ଅସ୍ତମିତ ହୋଇଥିଲା । ଜୟଚନ୍ଦ୍ରଙ୍କ ବିଶ୍ୱାସଘାତକତା ଏବଂ ବ୍ୟକ୍ତିଗତ ସ୍ୱାର୍ଥ ଯୋଗୁ ଦ୍ୱିତୀୟ ତିରୋରୀ ଯୁଦ୍ଧରେ ଭାରତର ଶେଷ ସ୍ୱାଧୀନ ହିନ୍ଦୁ ନରପତି ପୃଥ୍ୱୀରାଜ ଚୌହାନ ନିଧନ ହୋଇଥିଲେ । ଶିଖିମନାଇଙ୍କ ବିଶ୍ୱାସଘାତକତାରୁ ଉତ୍କଳ ପରପଦାନତ ହୋଇଥିଲା । ଦେଶର ଉନ୍ନତି ଓ ସଙ୍ଗଠନ କ୍ଷେତ୍ରରେ ସ୍ୱାଭିମାନ ଏକ ବଡ଼ ପ୍ରଶ୍ନ । ଯାହାର ସ୍ୱାଭିମାନ ନାହିଁ, ଦେଶପ୍ରତି କର୍ତ୍ତବ୍ୟବୋଧ ନାହିଁ, ସେମାନେ ଉଭୟ ଦେଶ ଏବଂ ଜାତିର ପରମ ଶତ୍ରୁ । ଏତଦ୍‌ବ୍ୟତୀତ କୁଶିକ୍ଷା, ଅନ୍ଧବିଶ୍ୱାସ ମଧ୍ୟ ଜାତୀୟ ସଙ୍କଟ ପାଇଁ କେତେକ ପରିମାଣରେ ଦାୟୀ । ଜାତୀୟତା ଏକ ଅଖଣ୍ଡ ବସ୍ତୁ । ଏହା ସହିତ ମଣିଷର ମାନସିକତା ବହୁପରିମାଣରେ ଜଡ଼ିତ । କୌଣସି କାରଣରୁ ଏହି ମାନସିକତା ବିଖଣ୍ଡିତ ହେଲେ ଜାତିର ଅଧୋପତନ ହୁଏ ଏବଂ ଜାତି ସଙ୍କଟର ସମ୍ମୁଖୀନ ହୋଇଥାଏ ।

ଜାତିକୁ ସମୃଦ୍ଧ, ଉନ୍ନତ ଓ ସଙ୍ଗଠିତ କରିବାକୁ ହେଲେ ଜାତୀୟତାର ଆବଶ୍ୟକତା ରହିଛି । ଜାତିର ଭାବ ଏବଂ ଆତ୍ମା ସହିତ ଜାତୀୟତା ଓତପ୍ରୋତ ଜଡ଼ିତ । କୌଣସି କ୍ଷେତ୍ରରେ ଏହାର

ବ୍ୟତିକ୍ରମ ଘଟିଲେ ଜାତି ହୁଏ ପର ପଦାନତ । ଖଣ୍ଡିତ ଆଶା ଆକାଂକ୍ଷାଠାରୁ ଏହା ବହୁ ଦୂରରେ । ଭାଷା, ସଂସ୍କୃତି, ଆର୍ଥିକ ଜୀବନ ତଥା ସାମାଜିକ ବିଚାରଧାରା ସହିତ ଜାତୀୟତାର ଗଭୀର ସମ୍ପର୍କ ବିଦ୍ୟମାନ । ଏକତା ହିଁ ଜାତୀୟତାର ପ୍ରାଣ । ଜାତିର ବିଭ୍ରାନ୍ତିକର ଚିନ୍ତାଧାରା ଏହାକୁ ବିପଥଗାମୀ କରାଇଥାଏ । ଜତୀୟ ଭାବନା ବିଖଣ୍ଡିତ ହେଲେ ଜାତିର ଆତ୍ମରକ୍ଷାର ଶକ୍ତି ଲୋପ ପାଇଥାଏ । ସେଥିପାଇଁ କୁହାଯାଇଥାଏ ଜାତୀୟତା ଏକ ସ୍ୱୟଂସମ୍ପୂର୍ଣ୍ଣ ବସ୍ତୁ । କାଳରେଖାରେ ଏହାକୁ କଦାପି ଖଣ୍ଡ ବିଖଣ୍ଡିତ କରାଯାଇ ନ ପାରେ । ଦେଶର ବିକାଶ ଏହା ଉପରେ ସମ୍ପୂର୍ଣ୍ଣ ରୂପେ ନିର୍ଭର କରିଥାଏ । ଦେଶର ଆର୍ଥିକ ପ୍ରଗତି, ସାଂସ୍କୃତିକ ଐକ୍ୟ, ସଂହତି, ସାମାଜିକ ଜୀବନଧାରା ଜାତୀୟତା ଉପରେ ନିର୍ଭର କରିଥାଏ । ଜାତି ଜାତି, ସମ୍ପ୍ରଦାୟ-ସମ୍ପ୍ରଦାୟ ମଧ୍ୟରେ ଆଜି ଯେଉଁ ବିଭେଦ ଦେଖା ଦେଉଛି ତା'ର ଏକମାତ୍ର କାରଣ ଜାତୀୟତାର ଅଭାବ । ଜାତୀୟତା ଦେଶ ଏବଂ ଜାତିର ଶକ୍ତି । ଏହା ପ୍ରାଣକୁ ବୀର ଭାବନାରେ ପୁଲକିତ କରେ । ମନ ମଧ୍ୟରେ ଭରି ଦେଇଥାଏ ଅମାପ ଶକ୍ତି । ଜାତୀୟ ଭାବସମ୍ପନ୍ନ ବ୍ୟକ୍ତି ଜାତିର ସ୍ୱାର୍ଥ ଓ ସମୃଦ୍ଧି ପାଇଁ ବୀର ଦର୍ପରେ ଅମଡ଼ା ମାଡ଼ି ଚାଲିଯାଇଥାଏ । ଏହି ଦୃଷ୍ଟିରୁ ଯେ କୌଣସି ଦେଶ ଏବଂ ଜାତି ପକ୍ଷରେ ଜାତୀୟତାର ଅପରିହାର୍ଯ୍ୟ ଆବଶ୍ୟକତାକୁ ଅସ୍ୱୀକାର କରାଯାଇ ନ ପାରେ । ଏହା ଦୁର୍ବଳର ବଳ, ଶକ୍ତିହୀନର ଶକ୍ତି ଏବଂ ଜାତିର ପ୍ରାଣ ।

ସାହିତ୍ୟ ଜାତିକୁ ସଙ୍ଗଠିତ କରିବାର ଏକ ଉତ୍କୃଷ୍ଟ ମାଧ୍ୟମ । ଜାତୀୟ ଜୀବନ ଗଠନରେ ଏହା ମୃତ୍ୟୁସଞ୍ଜୀବନୀ ସୁଧା । ଜାତିର ମାନସକୁ ଏହା ସମୃଦ୍ଧ କରେ । ସେଇଥିପାଇଁ ଅରବିନ୍ଦ କହିଥିଲେ—The work of the poet depends not only on himself and his age but on the mentality of the nation to which he belongs and the spiritual, aesthetic tradition and environment which it creates for him. ଜାତୀୟବାଦୀ କବି ଜାତି ଇତିହାସର ବାର୍ତ୍ତାବହ, ଜାତୀୟ ଚେତନାର ଉଗ୍ର ପୁରୋଧା । ଜାତୀୟବାଦୀ କବି ଜାତିର ଇତିହାସ, ସଂସ୍କୃତି ଓ ରାଜନୀତିକୁ ବିଶ୍ଳେଷଣ ପୂର୍ବକ ସୁପ୍ତ ଜନମାନସରେ ଜାତୀୟତାର ନବତରଙ୍ଗ ଖେଳାଇଥାଏ । ଗୋଟିଏ ଜାତିର ସାଂସ୍କୃତିକ ତଥା ରାଜନୀତିକ କାର୍ଯ୍ୟକଳାପ, ଆକାଂକ୍ଷା ଏବଂ ରୁଚିର ଜୀବନ୍ତ ପ୍ରକାଶ ଜାତୀୟବାଦୀ ସାହିତ୍ୟରେ ଘଟିଥାଏ । ଏହା ଜନମାନସରେ ଜାତୀୟଭାବ ଉଦ୍ରେକ କରି ତାକୁ ଆତ୍ମଶକ୍ତିରେ କରେ ବଳୀୟାନ୍ । ଜାତୀୟ ମାନସକୁ ନବଉନ୍ମାଦନାରେ ଉନ୍ମାଦିତ କରି ଦେଶ ଗଠନରେ ଅଗ୍ରଣୀ ଭୂମିକା ପ୍ରଦାନ କରିଥାଏ । ସାହିତ୍ୟ ବାସ୍ତବତାର ରୂପକାର । ବାସ୍ତବ ଜୀବନକୁ ଗଢ଼ି ତୋଳିବାର ଦାୟିତ୍ୱ ତା'ର । ବିଶ୍ୱ ଇତିହାସକୁ ଲକ୍ଷ୍ୟକଲେ ବହୁକ୍ଷେତ୍ରରେ ସାହିତ୍ୟ ସଙ୍ଗଠନର ଭୂମିକାର ଭୂରିଭୂରି ନିଦର୍ଶନ ଦେଖିବାକୁ ମିଳିଥାଏ । ଜାତିର ଅଧଃପତନ ସମୟରେ ଜାତୀୟତାବାଦୀ ସାହିତ୍ୟ ଦେଶ ଏବଂ ଜାତିର ଅଗ୍ରଗତି କ୍ଷେତ୍ରରେ ନେତୃତ୍ୱ ନେଇଥାଏ । ଜାତିକୁ ନୂତନ ପ୍ରେରଣା, ନୂଆ ଆଲୋକ ପ୍ରଦାନ କରି ତା' ପ୍ରାଣରେ ଭରି ଦେଇଥାଏ ଅମାପ ଶକ୍ତି । ଇଂରାଜୀରେ ଏକ ପ୍ରବଚନ ରହିଛି—Pen is mighter than sword. ଅସୀ ମସି ଅପେକ୍ଷା ଅଧିକ ଶକ୍ତିଶାଳୀ । ବିଶ୍ୱର ବହୁ

କ୍ରାନ୍ତିକାରୀ ପରିବର୍ତ୍ତନରେ ସାହିତ୍ୟ ମୁଖ୍ୟ ଭୂମିକା ଗ୍ରହଣ କରି ଆସିଛି । ଜାତିକୁ ଉଚିତ ମାର୍ଗ ଦର୍ଶନ କରାଇବା କ୍ଷେତ୍ରରେ ମଧ୍ୟ ସାହିତ୍ୟର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ।

ବିଶ୍ୱର ବିଭିନ୍ନ କ୍ଷେତ୍ରରେ ଯେତେବେଳେ ଜାତୀୟ ସଙ୍କଟ ଦେଖାଦେଇଛି ସେତେବେଳେ ସାହିତ୍ୟ ଅନେକ ସ୍ଥଳରେ ଉଲ୍ଲେଖନୀୟ କାର୍ଯ୍ୟ ସମ୍ପାଦନ କରିଛି । ୧୭୮୯ ମସିହାରେ ଫରାସୀରେ ଯେଉଁ ରାଷ୍ଟ୍ରବିପ୍ଳବ ସଂଘଟିତ ହୋଇଥିଲା, ସେଥିରେ ଫରାସୀ ସାହିତ୍ୟର ଭୂମିକା ଥିଲା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ରାଜତନ୍ତ୍ରର ବିଲୋପ ସାଧନ କରିବା ପାଇଁ ରଷୋ, ଭଲ୍‌ଟେୟାର ପ୍ରଭୃତି ସାହିତ୍ୟକୁ ହିଁ ନିଜର ମାଧ୍ୟମରୂପେ ଗ୍ରହଣ କରିଥିଲେ । ସେମାନଙ୍କ ସୃଷ୍ଟିରୁ ପ୍ରକାଶଲାଭ କରିଥିବା ସାହିତ୍ୟର ଅଗ୍ନିସ୍ଫୁଲିଙ୍ଗରେ ସମଗ୍ର ଫ୍ରାନ୍‌ସ ଜଳିବାକୁ ଲାଗିଲା । ଅତ୍ୟାଚାରୀ, ଏକଛତ୍ରବାଦୀ ଶାସକ ସମବେତ ଜନତାଙ୍କ ସମ୍ମୁଖରେ ମଥାନତ କରିବାକୁ ବାଧ୍ୟ ହୋଇଥିଲା । ତେଣୁ ଫରାସୀ ରାଷ୍ଟ୍ରବିପ୍ଳବରେ ଫରାସୀ ସାହିତ୍ୟହିଁ ନେଇଥିଲା ପ୍ରକୃତ ନେତୃତ୍ୱ । ଇଟାଲୀ ଏବଂ ଆମେରିକାର ସ୍ୱାଧୀନତା ଆନ୍ଦୋଳନରେ ସାହିତ୍ୟର ଭୂମିକା ଥିଲା ମହତ୍ତ୍ୱପୂର୍ଣ୍ଣ । ୧୯୧୭ ମସିହାରେ ରୁଷ୍‌ର ଅକ୍ଟୋବର ବିପ୍ଳବରେ ସାହିତ୍ୟିକମାନେ ଦେଶବାସୀଙ୍କ ପ୍ରାଣରେ ସାହିତ୍ୟ ମାଧ୍ୟମରେ ନୂତନ ଆଶା ଓ ଆଶ୍ୱାସନା ସୃଷ୍ଟି କରିଥିଲେ । ମାକସିମଗର୍କି, ଦସ୍ତୟଭସ୍କି, ଟୁଖେନଭ ଆଦି ସାହିତ୍ୟିକ ନିଷ୍ଠୁର ଜାର ଶାସନ ବିରୋଧରେ ଲେଖନୀ ଚାଳନା କରି ସାଧାରଣ ଜନତାଙ୍କ ପ୍ରାଣରେ ବିପ୍ଳବର ବୀଜ ବପନ କରିଥିଲେ । ଏକଛତ୍ର ଶାସନର ଅବସାନ ଘଟି ରୁଷରେ ଯେଉଁ ସାମ୍ୟବାଦୀ ଶାସନର ପ୍ରଚଳନ ହେଲା, ସେଥିରେ ସାହିତ୍ୟର ରହିଥିଲା ମୁଖ୍ୟ ଭୂମିକା । ଭାରତର ସ୍ୱାଧୀନତା ସଂଗ୍ରାମ ଆନ୍ଦୋଳନରେ ସାହିତ୍ୟର ଭୂମିକା କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ । ପଣ୍ଡିତ ଜବାହରଲାଲ ନେହେରୁ, ରବୀନ୍ଦ୍ରନାଥ ଟାଗୋର, ବଙ୍କିମଚନ୍ଦ୍ର, ପ୍ରେମଚନ୍ଦ, ସରୋଜିନୀ ନାଇଡୁ ଆଦି ବ୍ୟକ୍ତିଗଣ ସାହିତ୍ୟ ମାଧ୍ୟମରେ ଭାରତୀୟଙ୍କ ମନରେ ବିପ୍ଳବର ବୀଜ ବପନ କରିଥିଲେ । ମହାତ୍ମାଗାନ୍ଧି ମଧ୍ୟ ବିଭିନ୍ନ ପତ୍ରିକାରେ ଜନସଚେତନତା ବୃଦ୍ଧି ପାଇଁ ସାହିତ୍ୟ ମାଧ୍ୟମରେ ବୈପ୍ଳବିକ ପରିବର୍ତ୍ତନ ଆଣିଥିଲେ । ଓଡ଼ିଶାରେ ଗୋପବନ୍ଧୁ, ଗୋଦାବରୀଶ ମିଶ୍ର, ଗୋଦାବରୀଶ ମହାପାତ୍ର, ଫକୀରମୋହନ ସେନାପତି, ଗଙ୍ଗାଧର ମେହେର, କୁନ୍ତଳାକୁମାରୀ, ବୀରକିଶୋର ଆଦି ଜାତୀୟବାଦୀ ସ୍ରଷ୍ଟାଗଣ ସାହିତ୍ୟଦ୍ୱାରା ଜାତୀୟତାର ବହ୍ନି ପ୍ରଜ୍ୱଳିତ କରିଥିଲେ । ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନ ସମୟରେ ମଧ୍ୟ ଫକୀରମୋହନ, ଗଙ୍ଗାଧର, ଗୌରୀଶଙ୍କର ରାୟ ଆଦି ସାହିତ୍ୟିକଗଣ ବୈପ୍ଳବିକ ପଦକ୍ଷେପ ଗ୍ରହଣ କରି ଓଡ଼ିଆ ଭାଷାର ସୁରକ୍ଷା କରିପାରିଥିଲେ । ଉତ୍କଳଗୌରବ ମଧୁସୂଦନ ଦାସ ସ୍ୱଚ୍ଛ ହେଲେ ମଧ୍ୟ ସାହିତ୍ୟ ମାଧ୍ୟମରେ ଓଡ଼ିଆମାନଙ୍କ ମନରେ ଜାତୀୟଚେତନା ସୃଷ୍ଟି କରିପାରିଥିଲେ । ସାମାଜିକ କୁସଂସ୍କାର ଦୂରୀକରଣ କ୍ଷେତ୍ରରେ ସାହିତ୍ୟର ଭୂମିକା ମଧ୍ୟ ଅତୀବ ଗୁରୁତ୍ୱପୂର୍ଣ୍ଣ । ତେଣୁ ବିଶ୍ୱରେ ଯେତେବେଳେ କୌଣସି ସଙ୍କଟଜନକ ପରିସ୍ଥିତି ସୃଷ୍ଟି ହୋଇଛି, ସେତେବେଳେ ସାହିତ୍ୟ ହିଁ ଜନଚେତନା ଜାଗ୍ରତ ପାଇଁ ବିପ୍ଳବୀର ଭୂମିକା ଗ୍ରହଣ କରିଛି ।

ଜାତିକୁ ଦିଗ୍‌ଦର୍ଶନ ଦେବା କ୍ଷେତ୍ରରେ ପ୍ରତି ଯୁଗରେ ସାହିତ୍ୟ ହିଁ ନେତୃତ୍ୱ ନେଇଛି । ଚୀନ ଭାରତ ଏବଂ ପାକିସ୍ଥାନ ଭାରତ ଯୁଦ୍ଧ ସମୟରେ ସାହିତ୍ୟର ଭୂମିକା ଥିଲା ଅତୀବ ମହତ୍ତ୍ୱପୂର୍ଣ୍ଣ । ସମ୍ପ୍ରତି ଭାରତ କେତେକ କାରଣରୁ ସଙ୍କଟଜନକ ପରିସ୍ଥିତି ମଧ୍ୟଦେଇ ଗତି କରୁଛି । ବର୍ତ୍ତମାନ ଭାରତର ଅଖଣ୍ଡତା, ସାର୍ବଭୌମତ୍ୱ ଓ ଐକ୍ୟ ପ୍ରତିଷ୍ଠା ପାଇଁ ସାହିତ୍ୟିକମାନେ ଅଗ୍ରଣୀ ଭୂମିକା ଗ୍ରହଣ କରିବା ଆବଶ୍ୟକ । ଧର୍ମ, ରାଜନୀତି, ସାମ୍ପ୍ରଦାୟିକତା, ଜାତିଗତ ଭେଦଭାବ ବର୍ତ୍ତମାନ ଭାରତର ଅଗ୍ରଗତିରେ ପ୍ରତିବନ୍ଧକ ହୋଇ ଦଣ୍ଡାୟମାନ ହୋଇଛି । ଏହି ପରିପ୍ରେକ୍ଷୀରେ ସାହିତ୍ୟ ଗୁରୁଦାୟିତ୍ୱ ଗ୍ରହଣ କରି ଭାରତୀୟମାନଙ୍କ ମନରେ ସଦ୍‌ଭାବ ସୃଷ୍ଟି କରି ଜାତୀୟ ଐକ୍ୟ ରକ୍ଷା ଲାଗି ଦୃଢ଼ ଭୂମିକା ଗ୍ରହଣ କରିବା ଉଚିତ । ଅତୀତରେ ଯେପରି ସାହିତ୍ୟ ସଙ୍କଟଜନକ ପରିସ୍ଥିତିରେ ଜାତିକୁ ଉଚିତ ଦିଗ୍‌ଦର୍ଶନ ପ୍ରଦାନ କରି ନିଜର ମହତ୍ତ୍ୱପୂର୍ଣ୍ଣ ଭୂମିକା ସାଧନ କରିଥିଲା ବର୍ତ୍ତମାନ ତା'ର ଜରୁରୀ ଆବଶ୍ୟକତା ରହିଛି । ଜାତୀୟ ପ୍ରଗତି ଓ ବିକାଶକୁ ସାହିତ୍ୟ ଯେ ତ୍ୱରାନ୍ୱିତ କରିବାକୁ ସମ୍ପୂର୍ଣ୍ଣ ସମର୍ଥ, ଏଥିରେ ଦ୍ୱିମତ ହେବାର ନାହିଁ ।

●

# କଳା ପାଇଁ କଳା

**(ଉପକ୍ରମ, କଳାର ଉଦ୍ଦେଶ୍ୟ ଓ ଲକ୍ଷ୍ୟ, କଳା ଓ ଆନନ୍ଦ, କଳାପାଇଁ କଳା ମତବାଦର ଇତିହାସ, କଳା ଏବଂ ନୈତିକତା, କଳାରେ ଜୀବନର ସ୍ଥାନ, ଉପସଂହାର)**

କଳାର ଇତିହାସ ସହିତ ମଣିଷ ଜୀବନର ଇତିହାସ ଘନିଷ୍ଠ ଭାବରେ ଜଡ଼ିତ । ଯୁଗ ଯୁଗ ଧରି ମଣିଷ ଏହି କଳା ମାଧ୍ୟମରେ ନିଜକୁ ପ୍ରକାଶ କରିବାର ଆଶାପୋଷଣ କରି ଆସିଛି । ମଣିଷର ଜୀବନ ପରି କଳାର ରହସ୍ୟ ଏବେ ମଧ୍ୟ ସଂଶୟାଚ୍ଛନ୍ନ । ସୃଷ୍ଟିର ରହସ୍ୟ ଭେଦ କରିବା ସବୁ ମଣିଷ ପକ୍ଷରେ ଅସମ୍ଭବ । ମାତ୍ର କଳାକାର ତା'ର କଳା ମାଧ୍ୟମରେ ଏହି ରହସ୍ୟ ଉନ୍ମୋଚନ କରିବାକୁ ଚେଷ୍ଟା କରି ଆସିଅଛି । ତେଣୁ ଜଗତ ଓ ଜୀବନ ଭିନ୍ନ ଏକ ରୂପ ନେଇ କଳାରେ ଆତ୍ମପ୍ରକାଶ କରିଛି । ମଣିଷର ଜୀବନ କ୍ଷଣସ୍ଥାୟୀ । ଅଥଚ ପୃଥିବୀରେ ଅମର ହୋଇ ରହିବାର ତା'ର ବାସନାର ଅନ୍ତ ନାହିଁ । କଳା ହେଉଛି ସେହିପରି ଏକ ମାଧ୍ୟମ, ଯେଉଁଥିରେ ମଣିଷ ତା'ର ମୃତ୍ୟୁପରେ ମଧ୍ୟ ସବୁଦିନ ପାଇଁ ବଞ୍ଚି ରହିଥାଏ । ଏକ ଅପୂର୍ଣ୍ଣ ସତ୍ତାକୁ ପୂର୍ଣ୍ଣତା ପ୍ରଦାନ କ୍ଷେତ୍ରରେ କଳାର ଭୂମିକା ସର୍ବଦା ଗୁରୁତ୍ୱପୂର୍ଣ୍ଣ । ତେଣୁ କଳା ମଣିଷ ମନର ଏକ ମନ୍ମୟ ଅଭିବ୍ୟକ୍ତି । ଏହାର ସୃଷ୍ଟି ମଣିଷ ଜୀବନକୁ ସରସ ସୁନ୍ଦର କରିବା ପାଇଁ । ସମଷ୍ଟିର ଅଭିବ୍ୟକ୍ତି, ବ୍ୟକ୍ତି ସୃଷ୍ଟିରେ ପ୍ରକାଶ ଲାଭ କରି କଳା ମାଧ୍ୟମରେ ଜଗତ ଏବଂ ଜୀବନ ଦ୍ୟୋତିତ ହୋଇଥାଏ ।

ମଣିଷ ଜୀବନକୁ ସବୁଦିଗରୁ ସରସ ସୁନ୍ଦର କରି ଗଢ଼ିବା କଳାର ପ୍ରଥମ ଉଦ୍ଦେଶ୍ୟ ଓ ଲକ୍ଷ୍ୟ । ଅବଶ୍ୟ କଳାର କୌଣସି ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନାହିଁ । ଏହାର ଲକ୍ଷ୍ୟ ବହୁମୁଖୀ । ମଣିଷକୁ

ନିଜକୁ ଚିହ୍ନାଇବାରେ ଓ ତା'ର ବ୍ୟକ୍ତିତ୍ୱର ପରିଚୟ ଦେବା କ୍ଷେତ୍ରରେ କଳାର ଭୂମିକା ଅତୀବ ମହତ୍ତ୍ୱପୂର୍ଣ୍ଣ । ଏହା ଯେପରି ମଣିଷ ଜୀବନରେ ଆନନ୍ଦ ଭରି ଦେଇଥାଏ, ଠିକ୍ ସେହିପରି ଜଗତର ରହସ୍ୟକୁ ଉନ୍ମୋଚନ କରିବାରେ ସହାୟତା କରିଥାଏ । ସୃଷ୍ଟି ସୌନ୍ଦର୍ଯ୍ୟର ଉନ୍ମୋଚନ ଏହାର ଅନ୍ୟତମ ଲକ୍ଷ୍ୟ । ସୌନ୍ଦର୍ଯ୍ୟର ନିରାଜନା ପାଇଁ ମଣିଷକୁ ଏହା ପ୍ରେରିତ କରେ । ମଣିଷ ଆବେଗ ଓ ଅବ୍ୟକ୍ତ ଭାବ ଏହା ମାଧ୍ୟମରେ ପ୍ରକାଶ ଲାଭ କରେ । ବାସ୍ତବ ଜୀବନର କଠୋରତା ତଥା ମଣିଷର ବ୍ୟକ୍ତିତ୍ୱର ପରିଚୟ କଳା ଦ୍ୱାରା ଅଭିବ୍ୟକ୍ତ ହୋଇଥାଏ । ଅପୂର୍ଣ୍ଣରୁ ପୂର୍ଣ୍ଣତା ଦିଗକୁ ଏହାର ଗତି । ରୂପାନନ୍ଦ ଓ ଚିଦାନନ୍ଦ ଏହାର ସର୍ବଶ୍ରେଷ୍ଠ ଲକ୍ଷ୍ୟ ହେଲେହେଁ ଜୀବନ ଏବଂ ଜଗତ ସହିତ ଏହାର ସମ୍ପର୍କ ଅଚ୍ଛେଦ୍ୟ । ଏହି ଦୃଷ୍ଟିରୁ କଳା ସୃଷ୍ଟି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

କଳାର ମୁଖ୍ୟ ଲକ୍ଷ୍ୟ ଆନନ୍ଦ ପ୍ରଦାନ । ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ବିଦ୍ୱାନ ଗଣ କଳା ସୃଷ୍ଟିର ପ୍ରଥମ ଲକ୍ଷ୍ୟ ଆନନ୍ଦ ପ୍ରଦାନ ବୋଲି ମତପ୍ରଦାନ କରିଥାନ୍ତି । ନିରସ ଜୀବନରେ ଏହା ସରସତା ଭରିଦେଇଥାଏ । ଆରିଷ୍ଟଟଲ, କୀଟ୍ସ ଇତ୍ୟାଦି ଆନନ୍ଦ ଦାନକୁ କଳାର ଶ୍ରେଷ୍ଠ ଲକ୍ଷ୍ୟ ବୋଲି ଗ୍ରହଣ କରିଛନ୍ତି । ମଣିଷ ମନର ଯନ୍ତ୍ରଣାକୁ ଉପଶମ କରି କଳା ତା'ର ପ୍ରାଣରେ ଭରିଦିଏ ଆନନ୍ଦର ଫଲ୍‌ଗୁ । ସେଥିପାଇଁ ମଣିଷ ଜୀବନରେ କଳାର ଆଦର ସବୁଠାରୁ ଅଧିକ । ଜୀବନକୁ ସରସ ଏବଂ ମଧୁର କରି ଗଢ଼ିବା ପ୍ରତ୍ୟେକ ମଣିଷର ଲକ୍ଷ୍ୟ । ଏହି ଲକ୍ଷ୍ୟକୁ ସାକାର କରିବା ଦିଗରେ କଳା ସହାୟତା ଯୋଗାଇ ଦେଇଥାଏ । ପ୍ରାଚ୍ୟ ସାହିତ୍ୟରେ 'ରସବାଦ' ଏକ ପ୍ରମୁଖ ବାଦ ରୂପେ ପରିଚିତ । ଏହି ବାଦର ସର୍ବଶେଷ ଲକ୍ଷ୍ୟ ମଣିଷ ପ୍ରାଣରେ ଆନନ୍ଦର ଫଲ୍‌ଗୁ ସୃଷ୍ଟି କରିବା । ସେଥିପାଇଁ ରସହୀନ କାବ୍ୟକୁ ମର୍ଯ୍ୟାଦା ପ୍ରଦାନ କରାଯାଇ ନାହିଁ । ଆନନ୍ଦମୟ ଚିତ୍ତର ମନ୍ମୟ ଅଭିବ୍ୟକ୍ତି କଳା ହୋଇଥିବାରୁ କୌଣସି ମୁହୂର୍ତ୍ତରେ ଏହା ଆନନ୍ଦ ଦାନ ପଥରୁ ବିଚ୍ୟୁତ ହୋଇ ନ ପାରେ । କଠୋର ବାସ୍ତବତାରେ ଅହରହ ପୀଡ଼ିତ ମଣିଷ ଜୀବନକୁ କିଛି ସମୟପାଇଁ ସେଥିରୁ ବିଚ୍ୟୁତ କରି ତା'ର ଜୀବନକୁ ସରସତାରେ ଭରିଦେବା ପାଇଁ କଳା ସୃଷ୍ଟି ମାଧ୍ୟମରେ ଉଦ୍ୟମ ରହିଥାଏ । ଏହା ସତ୍ତ୍ୱେ କଳା ସାମାଜିକ ଅଙ୍ଗୀକାରବଦ୍ଧତାକୁ ଭୁଲିଯିବା ଅନୁଚିତ । ତେଣୁ ଦୀର୍ଘଦିନ ଧରି କଳାର ମୁଖ୍ୟ ଲକ୍ଷ୍ୟ ଆନନ୍ଦ ପ୍ରଦାନ ନା ସାମାଜିକ ଅଙ୍ଗୀକାର ବଦ୍ଧତା, ସେ ସମ୍ବନ୍ଧରେ ବିତର୍କ ଲାଗି ରହିଛି ।

କଳା ପାଇଁ କଳା ବା Art for art's sake ଏକ ବିଶିଷ୍ଟ ମତବାଦ ରୂପେ ଫ୍ରାନ୍ସ ଦେଶରେ ଜନ୍ମ ଗ୍ରହଣ କରିଥିଲା । ଏହି ମତବାଦ ମୁଖ୍ୟତଃ ସୃଷ୍ଟିର ରୂପପକ୍ଷ ଓ ଭାବପକ୍ଷ ଉପରେ ଗୁରୁତ୍ୱ ପ୍ରଦାନ କଲେହେଁ, ଆନନ୍ଦ ଦାନ ଉପରେ ଏହା ବିଶେଷ ଗୁରୁତ୍ୱ ଆରୋପ କରିଥାଏ । ଏହି ମତବାଦର ପୃଷ୍ଠପୋଷକମାନଙ୍କ ମତରେ ନୈତିକତା ଓ ସାମାଜିକ ଚେତନା ସହିତ କଳାର କୌଣସି ସମ୍ପର୍କ ନାହିଁ । ଜୀବନ ସହିତ ଏହାର ସମ୍ପର୍କ ନିବିଡ଼ ନୁହେଁ । କେବଳ କଳାରେ ହିଁ କଳାର ପରିପୂର୍ଣ୍ଣତା । ସମାଜକୁ ନୀତିବାଣୀ ଶୁଣାଇବା କିମ୍ବା ଧର୍ମଗ୍ରନ୍ଥ ପରି ଆଚାରନିଷ୍ଠ ବାଣୀ ପ୍ରଦାନ କରିବା କଳାର ଯଥାର୍ଥ ଲକ୍ଷ୍ୟ ନୁହେଁ । କଳା ସୌନ୍ଦର୍ଯ୍ୟର ପ୍ରତୀକ ହୋଇଥିବାରୁ ଆନନ୍ଦ

ଦାନ ହିଁ ଏହାର ପରମ ଲକ୍ଷ୍ୟ । କଳା କହିଲେ ଏଠାରେ କେବଳ ଲଳିତ କଳାକୁହିଁ ବୁଝାଇଥାଏ । ଏହା ମଧ୍ୟରେ ସଙ୍ଗୀତ, ଚିତ୍ର, ସ୍ଥାପତ୍ୟ, ନୃତ୍ୟ, କବିତା ଆଦି ଅନ୍ତର୍ଭୁକ୍ତ । ଏହା ସର୍ବଦା ପ୍ରତିଭାକୁ ଅପେକ୍ଷା ରଖେ । ପ୍ରକାଶଭଙ୍ଗୀ ଉପରେ ଏହା ସର୍ବଦା ଗୁରୁତ୍ୱ ଆରୋପ କରିଥାଏ । ଏହା ସ୍ୱଚ୍ଛନ୍ଦ ଓ ସାବଲୀଳ । କୌଣସି ପ୍ରକାର କଟକଣା ବା ନୀତିନିୟମ ଏହାର ସାବଲୀଳ ପ୍ରକାଶଭଙ୍ଗୀରେ ପ୍ରତିବନ୍ଧକ ସୃଷ୍ଟି କରିଥାଏ । ଉପଯୁକ୍ତ ଶୈଳୀର ଆରୋପ ଦ୍ୱାରା ଏହା ଲୋକଚିତ୍ତକୁ ଆକୃଷ୍ଟ କରିଥାଏ । ଇନ୍ଦ୍ରିୟଗ୍ରାହ୍ୟ ଆନନ୍ଦ ପ୍ରଦାନ କରିବା ଏହାର ଲକ୍ଷ୍ୟ । ମଣିଷର ଜ୍ୱାଳାମୟ ଜୀବନରୁ ନୈତିକତାକୁ ବିଦାୟ ଦିଆଯାଇ ପାରିଥିବାରୁ କଳା ହୋଇପାରିଛି ବିଶୁଦ୍ଧ କଳା । ପୃଷ୍ଠପୋଷକମାନଙ୍କ ମତରେ କଳା ତା'ର ରୂପଗତ ମୂଲ୍ୟ ଯୋଗୁ ହିଁ ଜନସାଧାରଣଙ୍କ ଦ୍ୱାରା ଆଦୃତ ହୋଇଥାଏ । ରଚନାର ଧ୍ୱନି, ଲାଳିତ୍ୟ ପାଠକର ହୃଦୟକୁ ଆକର୍ଷଣ କରିଥାଏ । ସୁନ୍ଦର ପ୍ରତିମୂର୍ତ୍ତିଟିର ରଙ୍ଗ ଓ କାରୁକଳା ମଣିଷର ଚିତ୍ତକୁ ଆକୃଷ୍ଟ କରିଥାଏ । ସେଥିପାଇଁ ଆଳଙ୍କାରିକ ଧନଞ୍ଜୟ କହିଥିଲେ–

ଆନନ୍ଦ ନିସ୍ୟନ୍ଦିଷୁ ରୂପକେଷୁ, ବ୍ୟୁତ୍ପତ୍ତି ମାତ୍ରଂ ଫଳମଳ୍ପ ବୁଦ୍ଧି
ଯୋଽପ୍ରୀତି ହାସାଦିବଦାହ ସାଧୁଃ, ତସ୍ମୈନମଂ ସ୍ୱାଦଃ ପରାଙ୍‌ମୁଖାୟ ।

ପ୍ରତ୍ୟେକ କଳାତ୍ମକ ସୃଷ୍ଟି ସୌନ୍ଦର୍ଯ୍ୟର ଆଧାର । ଏହି ସୌନ୍ଦର୍ଯ୍ୟବୋଧ ହିଁ ଆନନ୍ଦର ମୂଳଉତ୍ସ । ସେଥିପାଇଁ କୁହାଯାଇଥାଏ–To admire art because it can uplift the individual– ଫ୍ରାନ୍‌ସର ଭିକ୍ଟର କୋଜିନ, ଏହି ମତବାଦର ପ୍ରଥମ ସ୍ରଷ୍ଟା । ଫ୍ଲେବେୟାର ବଦଲେୟାର ପ୍ରଭୃତି ଏହି ମତବାଦର ପୃଷ୍ଠପୋଷକ ହୋଇଥିବାରୁ ଏହା ଦିନେ ପାଶ୍ଚାତ୍ୟ ଜଗତରେ ଏକ ବିଶିଷ୍ଟ ମତବାଦ ରୂପେ ମୁଣ୍ଡ ଟେକିଥିଲା । ଊନବିଂଶ ଶତକର ଶେଷପାଦ ବେଳକୁ ଇଂଲଣ୍ଡରେ ଏହି ମତବାଦ ପ୍ରସାର ଲାଭ କରିଥିଲା । ହ୍ୱିସ୍‌ଲର ଏହାକୁ ଇଂଲଣ୍ଡରେ ଲୋକପ୍ରିୟ କରାଇବାରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ଓସକାର ୱାଇଲଡ୍‌ଙ୍କ ଦ୍ୱାରା ଏହା ଅଧିକ ପ୍ରସାର ଲାଭ କଲା । କଳାକୁ ଆନନ୍ଦର ଏକ ମାଧ୍ୟମ ରୂପେ ଗ୍ରହଣ କରି କଳାର ନନ୍ଦନତତ୍ତ୍ୱ ଉପରେ ଗୁରୁତ୍ୱ ପ୍ରଦାନ କରାଗଲା । ସୁଇନ୍ ବର୍ଣ୍ଣ, ପୋ, ପେଟର, ଡେଭିଡ୍‌ସନ, ସାଇମଣ୍ଡସ୍ ଆଦି କଳାର ନୈତିକତା ଉପରେ ଗୁରୁତ୍ୱ ଆରୋପ ନ କରି ତା'ର ଆନନ୍ଦଦାନ ଉପରେ ଗୁରୁତ୍ୱ ପ୍ରଦାନ କଲେ । ଏହି ଚିନ୍ତାଧାରାର ପରବର୍ତ୍ତୀ ବିକାଶ ରୂପ 'ସ୍ୱଭାବବାଦ'ର ପ୍ରତିଷ୍ଠା କଲା । ବିଂଶ ଶତକରେ ଏହି ସ୍ୱଭାବବାଦ ଅଧିକ ଲୋକପ୍ରିୟ ହୋଇଥିଲା । କଳା ପାଇଁ କଳା ଏବଂ ସ୍ୱଭାବବାଦ ମଧ୍ୟରେ ପାର୍ଥକ୍ୟ ବିଶେଷ ନୁହେଁ । ଏହି ମତବାଦୀଙ୍କ ମତରେ ମଣିଷ ପ୍ରକୃତିର କ୍ରୀଡ଼ନକ ହୋଇଥିବାରୁ ବଂଶଗତ ଓ ପରିବେଶଗତ ସ୍ୱଭାବ ଦ୍ୱାରା ସେ ପରିଚାଳିତ ହୋଇଥାଏ । ଉଭୟ ମତବାଦୀ ରଚନାର ଶୈଳୀ ଏବଂ ବିଷୟବସ୍ତୁ ଉପରେ ହିଁ ଗୁରୁତ୍ୱ ଦେଇଥାନ୍ତି । ସୌନ୍ଦର୍ଯ୍ୟ ବ୍ୟତିରେକେ କଳା କଦାପି କଳା ପଦବାଚ୍ୟ ହୋଇ ନ ପାରେ ବୋଲି ଏମାନେ ବିଶ୍ୱାସ କରନ୍ତି । ଭାବନାର କଳାତ୍ମକ ପରିପ୍ରକାଶ ସାହିତ୍ୟରେ ଘଟିଥାଏ ଏବଂ କଳ୍ପନାରେ ଏହି ଅନୁଭବର ପରିପୂର୍ତ୍ତି ସାଧିତ ହୋଇଥାଏ ।

'କଳାପାଇଁ କଳା' ସୃଷ୍ଟି ଉପରେ ଗୁରୁତ୍ୱ ପ୍ରଦାନ କରୁଥିବା ବ୍ୟକ୍ତି ତା'ର ନୈତିକ ଦିଗ ପ୍ରତି ସମ୍ପୂର୍ଣ୍ଣ ବୀତସ୍ପୃହ । ମଣିଷ ଜୀବନକୁ ସଙ୍ଗଠିତ ଓ ଶୃଙ୍ଖଳିତ କରିବାକୁ ହେଲେ କଳାରେ ନୈତିକତାର ସ୍ଥାନ ରହିବା ବାଞ୍ଛନୀୟ । ବିଶ୍ୱର ପ୍ରାୟ ସବୁ ସାହିତ୍ୟ ପ୍ରଥମେ ଏହି ନୀତିବାଦକୁ ହିଁ ଆଶ୍ରୟ କରି ସୃଷ୍ଟି ହୋଇଥିଲା । ସମାଜରେ ଚଳପ୍ରଚଳ ହେବାକୁ ହେଲେ କେତେକ ନୀତିନିୟମ ପାଳନ କରିବାର ଆବଶ୍ୟକତା ରହିଛି । ନଚେତ୍ ସାମାଜିକ ଜୀବନ ବିପର୍ଯ୍ୟସ୍ତ ହୋଇପଡ଼ିବାର ବହୁ ସମ୍ଭାବନା ରହିଛି । ଏହି କାରଣରୁ ପ୍ଲାଟୋ ତାଙ୍କ କଳ୍ପିତ ରାଜ୍ୟରୁ କଳାକାରମାନଙ୍କୁ ବହିଷ୍କାର କରିବାର ଇଚ୍ଛା ପ୍ରକାଶ କରିଥିଲେ । ମାଥ୍ୟୁ ଆର୍‌ନୋଲ୍‌ଡ ନୈତିକତା ପ୍ରତି ବିଦ୍ରୋହୀ ସାହିତ୍ୟ ସୃଷ୍ଟିକୁ ଜୀବନ ପ୍ରତି ବିଦ୍ରୋହୀ ବୋଲି ମତ ପ୍ରଦାନ କରିଛନ୍ତି । ତାଙ୍କ ମତରେ ଯାହା ନୈତିକତାକୁ ବିରୋଧ କରେ, ତାହା ଜୀବନକୁ ମଧ୍ୟ ବିରୋଧ କରେ । A poetry of revolt against moral ideas is a poetry of revolt against life, a poetry of indifference towards moral ideas is a poetry of indifference towards life." ରସକିନ, ହୁଇଟ୍‌ମ୍ୟାନ ପ୍ରଭୃତି ସାହିତ୍ୟରେ ନୈତିକତା ଉପରେ ଗୁରୁତ୍ୱ ଆରୋପ କରିଥାନ୍ତି । ସାମାଜିକ ଦାୟିତ୍ୱବୋଧ ସାହିତ୍ୟର ସର୍ବପ୍ରଥମ ଲକ୍ଷ୍ୟ ନ ହେଲେହେଁ, ଗୌଣଲକ୍ଷ୍ୟ ମଧ୍ୟ ନୁହେଁ । ଆରିଷ୍ଟଟଲ କଳାକୁ ଜୀବନର ଆଦର୍ଶମୟ ଅନୁକରଣ ବୋଲି କହିଛନ୍ତି । ସାହିତ୍ୟ ସୃଷ୍ଟି କେବଳ ସୌନ୍ଦର୍ଯ୍ୟର ସୀମିତ ଗଣ୍ଡି ମଧ୍ୟରେ ଆବଦ୍ଧ ରହିବା ଅନୁଚିତ । କଳା ବର୍ତ୍ତମାନରେ ଜନ୍ମଲାଭ କଲେହେଁ ତା'ର ଦୃଷ୍ଟି ସୁଦୂରପ୍ରସାରୀ । ସମାଜର ନୈତିକ ଜାଗରଣ ଏହାର ଅନ୍ୟତମ ଉଦ୍ଦେଶ୍ୟ ହେବା ବିଧେୟ । ପ୍ରାଚ୍ୟ ପଣ୍ଡିତଗଣ ମଧ୍ୟ ସାହିତ୍ୟର ଲକ୍ଷ୍ୟ ''ଯଶସେଽର୍ଥେ କୃତେ ବ୍ୟବହାର ବିଦେ ଶିବେତର କ୍ଷତୟେ'' ବୋଲି କହିଛନ୍ତି । ନୈତିକ ଆଦର୍ଶ ସମାଜରୁ ଅମଙ୍ଗଳର ଦୂରୀକରଣ କରିଥାଏ । ଜୀବନର ମୌଳିକ ନୀତିଠାରୁ ଦୂରେଇ ଗଲେ ସାହିତ୍ୟ ବା କଳା ତା'ର ଉପଯୁକ୍ତ କର୍ତ୍ତବ୍ୟ ସଂଶୋଧନରେ ଅକ୍ଷମ ହୋଇଥାଏ ।

ଜୀବନ ସହିତ କଳାର ସମ୍ପର୍କ ଅତୀବ ନିବିଡ଼ । ଗ୍ରୀକ୍ ଦାର୍ଶନିକ ପ୍ଲାଟୋଙ୍କ ମତରେ ସାହିତ୍ୟ ହେଉଛି ଜୀବନର ଅନୁକରଣ । ଜୀବନର ବାସ୍ତବ ସତ୍ୟକୁ ଉପେକ୍ଷା କଲେ, ସାହିତ୍ୟ ତା'ର ଚିରନ୍ତନ ମୂଲ୍ୟବୋଧ ହରାଇଥାଏ । ଡ୍ରାଇଡ଼େନ୍ ସାହିତ୍ୟକୁ ବାସ୍ତବ ଜୀବନର ପ୍ରତିରୂପ ଭାବରେ ଗ୍ରହଣ କରିଛନ୍ତି । ସାଧାରଣ ବ୍ୟକ୍ତିବିଶେଷଙ୍କ ଅପେକ୍ଷା କଳାକାରମାନେ ଜୀବନ ସମ୍ପର୍କରେ ଅଧିକ ସଚେତନ ବୋଲି ସ୍କଟ୍‌ଜେମସ୍ ମତପ୍ରଦାନ କରିଛନ୍ତି । ବାସ୍ତବ ଜୀବନକୁ ଗୌଣ କରି ଯେଉଁ ସାହିତ୍ୟ ସୃଷ୍ଟି, ତାହା ପ୍ରକୃତ ସାହିତ୍ୟ ପଦବାଚ୍ୟ ନୁହେଁ । ମାନବ ଜୀବନର ମନ୍ମୟ ଅଭିବ୍ୟକ୍ତି ସାହିତ୍ୟ ହୋଇଥିବାରୁ, ଜୀବନର ବାସ୍ତବ ଭୂମିରୁ ରସ ଗ୍ରହଣ କରି ଏହାର ପରିପୁଷ୍ଟ ହେବା ବାଞ୍ଛନୀୟ । ବାସ୍ତବ ଜୀବନର କେବଳ ଫଟୋଗ୍ରାଫିକ ହେବା ସାହିତ୍ୟର ଲକ୍ଷ୍ୟ ନୁହେଁ; ବରଂ ଏହା ଜୀବନ ସମ୍ପର୍କୀୟ ଚିନ୍ତାଧାରାର ଏକ ପ୍ରତିଲିପି ହେବା ଆବଶ୍ୟକ । ଜୀବନର ବହୁବିଧ ସମସ୍ୟା, ସାମାଜିକ ସଂସ୍ଥିତି ଓ ସମାଧାନ ସାହିତ୍ୟରେ ରୂପ ଗ୍ରହଣ କରି ତା'ର ସାମାଜିକ ଅଙ୍ଗୀକାରବଦ୍ଧତାର ପରିଚୟ ପ୍ରଦାନ କରିବା ଉଚିତ । ସାମାଜିକ ଦାୟିତ୍ୱବୋଧ ସୃଷ୍ଟି ଏହାର ଅନ୍ୟତମ ଲକ୍ଷ୍ୟ । ତେଣୁ ଜୀବନ ପାଇଁ ସାହିତ୍ୟ ସୃଷ୍ଟି ବା Art for life's sake ଆଜି ପ୍ରଧାନ ଧ୍ୟେୟ ହେବା ଆବଶ୍ୟକ ହୋଇଉଠିଛି ।

ସାହିତ୍ୟ ମାନବ ଜୀବନର ବିମଳ ପରିପ୍ରକାଶ । ଆନନ୍ଦଦାନ ସହିତ ସମାଜରେ ନୈତିକ ମୂଲ୍ୟବୋଧର ଜାଗ୍ରତ ଓ ଜୀବନର ବାସ୍ତବ ଦିଗର ପରିପ୍ରକାଶ ଏହାର ଅନ୍ୟତମ ଲକ୍ଷ୍ୟ । ଜୀବନ ଏବଂ ସମାଜକୁ ଉପେକ୍ଷା କଲେ କଳା ତା'ର ଯଥାର୍ଥ ଦାୟିତ୍ୱ ସମାହିତ କରିପାରେ ନାହିଁ । ନୈତିକତାର ପ୍ରଚାର କଳାର ପ୍ରକୃତ ଲକ୍ଷ୍ୟ ନ ହେଲେ ମଧ୍ୟ ମଣିଷ ମନରେ 'ସୁ' ଓ 'କୁ' ନୀତି ମଧ୍ୟରେ ଥିବା ପାର୍ଥକ୍ୟକୁ ସ୍ପଷ୍ଟ କରିଥାଏ । ଜୀବନ ସହିତ ସାହିତ୍ୟର ସମ୍ବନ୍ଧ ନିବିଡ଼ ହୋଇଥିବାରୁ ଏହା ଜୀବନର ମହାଭାଷ୍ୟ ହେବା ଉଚିତ । ତେଣୁ କେବଳ ରୂପ ପକ୍ଷ ଉପରେ ଗୁରୁତ୍ୱ ଆରୋପ କରୁଥିବା ସାହିତ୍ୟିକ ଆନ୍ଦୋଳନ ଅଚିରେ ତା'ର ଶକ୍ତି ହରାଇ ବସିଲା । ସାହିତ୍ୟର ପ୍ରକୃତ ଲକ୍ଷ୍ୟ ସାଧିତ ହୋଇ ନ ପାରିବାରୁ ଜନମାନସରେ ତା'ର ପ୍ରଭାବ ହ୍ରାସ ପାଇଁ ସାହିତ୍ୟ ଇତିହାସରେ କେବଳ ଏକ ମତବାଦ ରୂପେ ବଞ୍ଚିରହିଲା ।



## ତମର ପ୍ରିୟ ଲେଖକ

(ଉପକ୍ରମ, ପ୍ରିୟ ଲେଖକ ଫକୀରମୋହନଙ୍କ ଜୀବନୀ, ତାଙ୍କ ସାହିତ୍ୟ ସୃଷ୍ଟିର ପରିଚୟ, ତାଙ୍କ ଗଳ୍ପ ଉପନ୍ୟାସରେ ଓଡ଼ିଶାର ସାମାଜିକ ଜୀବନ, କାଳଜୟୀ ସୃଷ୍ଟି, ଉପସଂହାର)

ଲେଖକ ମାତ୍ରେ ହିଁ ପ୍ରିୟ । ସେମାନେ ସମାଜ-ଜୀବନର ଆଦର୍ଶ । ଜାତିର ପ୍ରାଣ ସ୍ପନ୍ଦନ ସେମାନଙ୍କ ସୃଷ୍ଟିରେ ଆତ୍ମପ୍ରକାଶ କରୁଥିବାରୁ ଜାତି ସମ୍ବିଧାନର ପ୍ରଣେତା । ଦେଶର ଜାତି ଜାତି, ସମ୍ପ୍ରଦାୟ ସମ୍ପ୍ରଦାୟ ମଧ୍ୟରେ ସେହିମାନେ ହିଁ ଭ୍ରାତୃତ୍ୱର ଐକ୍ୟ ପ୍ରତିଷ୍ଠା କରିଥାନ୍ତି । ଦେଶର ସଙ୍କଟଜନକ ଅବସ୍ଥାରେ ମୁଖ୍ୟ ଭୂମିକା ଗ୍ରହଣ କରି ସେମାନେ ଜାତିପ୍ରାଣରେ ଜାତୀୟତାର ନବତରଙ୍ଗ ଖେଳାଇ ଦେଇଥାନ୍ତି । ଦେଶର ସାଂସ୍କୃତିକ ଜୀବନର ରୂପକାର ସେମାନେ । ସାରଳାଦାସଙ୍କ ଠାରୁ ଆରମ୍ଭ କରି ସାମ୍ପ୍ରତିକ କାଳପର୍ଯ୍ୟନ୍ତ ସମସ୍ତ ଲେଖକଙ୍କ ଲେଖା ପଢ଼ିବାକୁ ମୁଁ ଖୁବ୍ ଭଲପାଏ । ଜାତି ଇତିହାସର ଏକ ଧାରାବାହିକ ଚିତ୍ର ସେମାନଙ୍କ କୃତିରେ ଉପଲବ୍ଧ ହୋଇଥାଏ । ସ୍ୱାଧୀନତା ଆନ୍ଦୋଳନରେ ଏହି ସ୍ରଷ୍ଟାଗଣ ଜାତିକୁ ସଙ୍ଗଠିତ କରିବାର ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ଦେଶ ଗଠନରେ ଏମାନଙ୍କର ଭୂମିକା ସର୍ବାଦୌ ସ୍ମରଣୀୟ । ଏହିମାନଙ୍କ ସୃଷ୍ଟି ମଧ୍ୟଦେଇ ମୁଁ ଲାଭ କରିଥାଏ ମଣିଷ ଜୀବନର ପରିଚୟ । ଏହା ସତ୍ତ୍ୱେ ଫକୀରମୋହନ ମୋ ନିକଟରେ ଅଧିକ ପ୍ରିୟ । କାରଣ ତାଙ୍କ ସୃଷ୍ଟିରେ ଓଡ଼ିଆ ଜାତିର ଆଶା ଆକାଂକ୍ଷା ଯେପରି ପ୍ରତିଫଳିତ, ସେହିପରି ଓଡ଼ିଶାର ଜନଜୀବନର ଏକ ପୁଷ୍କଳ ଚିତ୍ର ପରିସ୍ଫୁଟ । ଭାଷା ସୁରକ୍ଷା ଆନ୍ଦୋଳନ, ପାଠ୍ୟପୁସ୍ତକ ପ୍ରଣୟନ, ଛାପାଖାନା ପ୍ରତିଷ୍ଠା, ପତ୍ରିକା ପ୍ରକାଶନ ଓ ସାହିତ୍ୟ ସୃଷ୍ଟି ଆଦି ସମସ୍ତ କ୍ଷେତ୍ରରେ ସେ ବିପ୍ଳବୀର ଭୂମିକା ଗ୍ରହଣ କରିଛନ୍ତି । ତାଙ୍କର ସାଧନା ଓ ସିଦ୍ଧି ଓଡ଼ିଆ ସାହିତ୍ୟକୁ ଏକ ସୁଦୃଢ଼ ଭିତ୍ତି ପ୍ରଦାନ କରିପାରିଛି । ଏହି ଦୃଷ୍ଟିରୁ ମୋ ଆଖିରେ ସେ ସବୁଠାରୁ ପ୍ରିୟ ଲେଖକ ।

ଫକୀରମୋହନ ୧୮୪୩ ମସିହା ଜାନୁଆରୀ ୧୩ ତାରିଖରେ ବାଲେଶ୍ୱରର ମଲ୍ଲୀକାଶପୁର ଗ୍ରାମରେ ପିତା ଲକ୍ଷ୍ମଣ ଚରଣ ସେନାପତି ଓ ମାତା ତୁଳସୀ ଦେଈଙ୍କ ଔରସରୁ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିଲାଦିନର ନାମ ଥିଲା ବ୍ରଜମୋହନ । ବିଭିନ୍ନ ବ୍ୟାଧିରେ ପୀଡ଼ିତ ବ୍ରଜମୋହନଙ୍କୁ ପିତାମହୀ କୁଚିଳା ଦେଈ ଦୁଇପୀରଙ୍କୁ ଅର୍ପଣ କରିଦେଇଥିଲେ । ରୋଗମୁକ୍ତ ହେବା ପରେ ସେ ପରିଚିତ ହୋଇଥିଲେ ଫକୀରମୋହନରେ । ପିଲାଟି ଦିନରୁ ପିତାମାତାଙ୍କୁ ହରାଇ ପିତାମହୀଙ୍କ ଆଦର ଓ ଯତ୍ନରେ ବଢ଼ିଥିଲେ । ନଅବର୍ଷ ବୟସରେ ତାଙ୍କର ପାଠପଢ଼ା ଆରମ୍ଭ ହୋଇଥିଲା । ଚାହାଳି ପାଠ ଶେଷ ପରେ ବାଲେଶ୍ୱରରେ ଥିବା ଗୋଟିଏ ପାର୍ସି ଅବୈତନିକ ସ୍କୁଲରେ ନିଜେ ନାମଲେଖାଇ ପାଠ ପଢ଼ିଥିଲେ । ଫକୀରମୋହନଙ୍କ ବଡ଼ବାପା ତାଙ୍କୁ ପାଠପଢ଼ାର ସୁଯୋଗ ନ ଦେଇ ଗୁମାସ୍ତା ଅଧୀନରେ ମେଟ୍ କାର୍ଯ୍ୟ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ମାହାଲ ଉଠିଯିବା ପରେ ସେ ନିଜ ଚେଷ୍ଟାରେ ପୁଣି ବାରବାଟୀ ସ୍କୁଲରେ ଅଧ୍ୟୟନ କରିଥିଲେ । ବର୍ଷ ଶେଷ ପରୀକ୍ଷାରେ ସର୍ବୋଚ୍ଚ ନମ୍ବର ରଖି ଉତ୍ତୀର୍ଣ୍ଣ ହୋଇଥିଲେହେଁ ଅର୍ଥାଭାବରୁ ପରବର୍ତ୍ତୀ ଶ୍ରେଣୀରେ ପଢ଼ିବାର ସୁଯୋଗ ପାଇନଥିଲେ । ଅଧ୍ୟୟନ ସମୟରେ ତାଙ୍କ ମେଧାର ପରିଚୟ ମିଳିଥିଲା । ସେହି ବିଦ୍ୟାଳୟରେ ଅଢ଼େଇଟଙ୍କା ବେତନରେ ସେ ଆରମ୍ଭ କଲେ ତାଙ୍କର ଶିକ୍ଷକ ଜୀବନ । ତେରବର୍ଷ ବୟସରେ ତାଙ୍କର ପ୍ରଥମ ବିବାହ ହୋଇଥିଲେହେଁ, ଦାମ୍ପତ୍ୟ ଜୀବନ ଥିଲା ଅତ୍ୟନ୍ତ ଦୁଃସହ । ପ୍ରଥମ ପତ୍ନୀଙ୍କ ତିରୋଧାନ ପରେ ୧୮୭୧ ମସିହାରେ ସେ କୃଷ୍ଣାକୁମାରୀଙ୍କୁ ବିବାହ କରନ୍ତି । ଏହି ଦ୍ୱିତୀୟ ବିବାହ ତାଙ୍କ ଜୀବନକୁ ସୁଖ ଏବଂ ସମୃଦ୍ଧିରେ ପରିପୂର୍ଣ୍ଣ କରିଥିଲା । ନିଜ ଚେଷ୍ଟାରେ ସେ ଅନେକ କିଛି ପୁସ୍ତକ ଅଧ୍ୟୟନ କରିବାକୁ ସମର୍ଥ ହୋଇଥିଲେ । ୧୮୬୯ ମସିହାରେ ଓଡ଼ିଆ ଭାଷା ବିଲୋପ ନିମିତ୍ତ ବଙ୍ଗାଳୀମାନେ ଯେଉଁ ଚକ୍ରାନ୍ତ କରିଥିଲେ, ଫକୀରମୋହନ ବିଭିନ୍ନ ସଭାସମିତିରେ ବକ୍ତୃତା ଏବଂ 'ସମ୍ବାଦବାହିକା'ରେ ଲେଖାଲେଖି କରି ତା'ର ତୀବ୍ର ବିରୋଧ କରିଥିଲେ । ତେଣୁ ବଙ୍ଗାଳୀମାନଙ୍କ ଦୃଷ୍ଟିରେ ସେ ଥିଲେ ''ବେଟା ରିଂ ଲିଡ଼ର'' । ପାଠ୍ୟପୁସ୍ତକର ଅଭାବ ପରିପୂରଣ ପାଇଁ ସେ ବ୍ୟାକରଣ, ଇତିହାସ, ଅଙ୍କ ଆଦି ପାଠ୍ୟପୁସ୍ତକ ପ୍ରଣୟନ କରିଥିଲେ । ୧୮୬୮ ମସିହାରେ ସେ ଗୋଟିଏ ଛାପାଖାନା ସ୍ଥାପନ କରି 'ବୋଧଦାୟିନୀ ଏବଂ ସମ୍ବାଦବାହିକା' ପତ୍ରିକା ପ୍ରକାଶ କରିଥିଲେ । ଓଡ଼ିଆଭାଷା ଓ ଦେଶର ଉନ୍ନତି ନିମିତ୍ତ ତାଙ୍କର ଅବଦାନ ଚିରସ୍ମରଣୀୟ ହୋଇ ରହିବ । ଶିକ୍ଷକ ଜୀବନ ପରେ ସେ ପ୍ରଶାସନିକ ଜୀବନକୁ ଗ୍ରହଣ କରି ନେଇଥିଲେ । ଏହି ସମୟରେ ସେ ନୀଳଗିରି, ଡୋମପଡ଼ା, ଢେଙ୍କାନାଳ, ଦଶପଲ୍ଲା, ପାଲଲହଡ଼ା, କେନ୍ଦୁଝର ଏବଂ କେନ୍ଦ୍ରାପଡ଼ା ଆଦିରେ କାର୍ଯ୍ୟକରି ପ୍ରଶାସକର ସୁଖ୍ୟାତି ଅର୍ଜନ କରିଥିଲେ । ଜୀବନର ବିଚିତ୍ର ଅନୁଭୂତି ତାଙ୍କ ସାହିତ୍ୟ ସୃଷ୍ଟିକୁ ବୈଚିତ୍ର୍ୟମୟ କରିବାରେ ସହାୟତା କରିଥିଲା ।

ଢେଙ୍କାନାଳରେ ପ୍ରଶାସକ ଭାବରେ କାର୍ଯ୍ୟରତ ଥିବା ସମୟରେ ଜ୍ୟେଷ୍ଠପୁତ୍ରର ଅକାଳ ବିୟୋଗରେ ଧୈର୍ଯ୍ୟହରା ପତ୍ନୀଙ୍କୁ ସାନ୍ତ୍ୱନା ଦେବା ପାଇଁ ସେ ରାମାୟଣ, ମହାଭାରତ ଆଦିର ଅନୁବାଦ କାର୍ଯ୍ୟରେ ହାତ ଦେଇଥିଲେ । ଏହା ପରେ ଖିଳ ହରିବଂଶ, ଶ୍ରୀମଦ୍‌ଭାଗବତ ଗୀତା,

ଉପନିଷଦ ସଂଗ୍ରହ, ମେଘଦୂତର ବଙ୍ଗଳାନୁବାଦ ଆଦି କ୍ଷେତ୍ରରେ ନିଜର ପରାକାଷ୍ଠା ପ୍ରଦାନ କରିଥିଲେ । ଗଳ୍ପ, ଉପନ୍ୟାସ ରଚନା ପୂର୍ବରୁ ଜୀବନର ବିଚିତ୍ର ଅନୁଭୂତିକୁ ନେଇ ସେ ରଚନା କରିଥିଲେ ରାଶି ରାଶି କବିତା । ତାଙ୍କର ସେହି କବିତାଗୁଡ଼ିକ ପୁଷ୍ପମାଳା, ଅବସର ବାସରେ, ପୂଜାଫୁଲ, ଧୂଳି ଆଦି କବିତା ସଂକଳନ ତଥା ପରିଶିଷ୍ଟ କବିତାବଳୀରେ ସ୍ଥାନ ପାଇଛି । ଜୀବନର ବିସ୍ତୃତ ଦିଗକୁ ତାଙ୍କର କବିତା ସ୍ପର୍ଶ କରିଛି । ଅନୁଭୂତିର ପ୍ରଗାଢ଼ତା ଓ ବିଭିନ୍ନ ଅନୁଭୂତି ଏଗୁଡ଼ିକୁ ବେଶ୍ ରୋଚକ ଓ ବାସ୍ତବଧର୍ମୀ କରିପାରିଛି । ତାଙ୍କର 'ଉତ୍କଳ ଭ୍ରମଣଂ'ରେ ଓଡ଼ିଶାର ବହୁସ୍ଥାନ, ବହୁବ୍ୟକ୍ତି ଓ ବହୁଅନୁଭୂତି ସ୍ଥାନ ଲାଭ କରିପାରିଛି । ୧୯୦୯ ମସିହାରେ ପ୍ରକାଶିତ ହୋଇଥିବା 'ବୌଦ୍ଧାବତାର କାବ୍ୟ'ଟି ନବୀନଚନ୍ଦ୍ର ସେନ୍‌ଙ୍କ 'ଅମିତାଭ' କାବ୍ୟର ଅନୁସରଣରେ ରଚିତ । ଏଥିରେ ବୁଦ୍ଧଦେବଙ୍କର ଜନ୍ମଠାରୁ ବୋଧିସତ୍ତ୍ୱ ଲାଭ ପର୍ଯ୍ୟନ୍ତ ଘଟଣାକୁ ବର୍ଣ୍ଣନା କରାଯାଇଛି । ଏତଦ୍‌ବ୍ୟତୀତ ବହୁ ପ୍ରବନ୍ଧ, ରମ୍ୟ ରଚନା ଆଦି ରଚନା କରି ଏହି ବିଭାଗଟିକୁ ସମୃଦ୍ଧ କରିଛନ୍ତି । ତାଙ୍କ 'ଆତ୍ମଜୀବନୀ' ଓଡ଼ିଆ ସାହିତ୍ୟର ଆତ୍ମଜୀବନୀ ଇତିହାସରେ ଏକ ମାଇଲ ସ୍ତମ୍ଭ । ଫକୀରମୋହନଙ୍କ କଥା-ସାହିତ୍ୟ ତାଙ୍କୁ ସିଦ୍ଧିର ଚରମସୀମାରେ ଉପନୀତ କରାଇପାରିଛି । ଓଡ଼ିଆ ସାହିତ୍ୟ ପ୍ରଥମ ଗାଳ୍ପିକ ଏବଂ ପ୍ରଥମ ସାର୍ଥକ ଔପନ୍ୟାସିକ ଭାବରେ ସେ ଖ୍ୟାତି ଲାଭ କରିଛନ୍ତି । ତାଙ୍କର ଚାରୋଟି ଉପନ୍ୟାସ ଏବଂ କୋଡ଼ିଏଟି କ୍ଷୁଦ୍ର ଗଳ୍ପ ଓଡ଼ିଶାର ତତ୍କାଳୀନ ସାମାଜିକ ଜୀବନର ଚଳନ୍ତି ଇତିହାସ । ସାର୍ଥକ କଥାକାର ଭାବରେ ଏବେ ମଧ୍ୟ ତାଙ୍କର ସିଦ୍ଧି ଅକଳ୍ପନୀୟ ।

ଫକୀରମୋହନଙ୍କ କ୍ଷୁଦ୍ରଗଳ୍ପ ଓ ଉପନ୍ୟାସରେ ଓଡ଼ିଶାର ଦୁଇଶହ ବର୍ଷର ଇତିହାସ ଉତ୍‌କୀର୍ଣ୍ଣ । ତାଙ୍କର 'ଛମାଣ ଆଠଗୁଣ୍ଠ' ଉପନ୍ୟାସରେ ଭୂମିକୈନ୍ଦ୍ରିକ ସମସ୍ୟା ମୁଖ୍ୟ ହୋଇ ଦେଖାଦେଇଛି । ପାରମ୍ପରିକ ଜମିଦାରଙ୍କ ବିଲୋପ ଏବଂ ନୂତନ ଜମିଦାରଙ୍କ ଆବିର୍ଭାବ (ବାଘସିଂହ ବଂଶ ଓ ରାମଚନ୍ଦ୍ର ମଙ୍ଗରାଜ) ଦ୍ୱାରା ଓଡ଼ିଶାର ସାମାଜିକ ଜୀବନରେ ଯେଉଁ ସଙ୍କଟ ଦେଖା ଦେଇଥିଲା, ତା'ର ସୁନ୍ଦର ବର୍ଣ୍ଣନା ଏଥିରେ ପ୍ରଦତ୍ତ । ଏଥିରେ ପରିଲକ୍ଷିତ ଚରିତ୍ରଗୁଡ଼ିକ ସମ୍ପୂର୍ଣ୍ଣ ଓଡ଼ିଆ । 'ନୂତନ ସୃଷ୍ଟ ଜମିଦାରଙ୍କ ସମ୍ପତ୍ତି ପ୍ରତି ଲୋଭ ଯୋଗୁଁ ଗରିବମାନଙ୍କୁ ଶୋଷଣ ଓ ପରିଣାମସ୍ୱରୂପ ବାଘସିଂହ ବଂଶର ଉଚ୍ଛେଦ ତଥା ସାରିଆ ଭଗିଆର ନେତଗାଈ ଏବଂ ଛ'ମାଣ ଆଠଗୁଣ୍ଠ ଜମି ଅପହରଣ, ପରିଶେଷରେ ଗୋବିନ୍ଦ ଭଣ୍ଡାରି ଦ୍ୱାରା ଚମ୍ପାର ମୃତ୍ୟୁ, ସାରିଆ ମୃତ୍ୟୁ ଅପରାଧରେ ମଙ୍ଗରାଜଙ୍କର କାରଗାର ବରଣ, ସେଠାରେ ତା'ର ମୃତ୍ୟୁକୁ ଚମତ୍କାର ଭାବରେ ବର୍ଣ୍ଣନା କରାଯାଇଛି' । 'ଲଛମା' ଏକ ଐତିହାସିକ ଉପନ୍ୟାସ । ଏଥିରେ ମରହଟ୍ଟାକାଳୀନ ଅତ୍ୟାଚାରର ଚିତ୍ର ପ୍ରଦତ୍ତ କରାଯାଇଛି । ବର୍ଗୀମାନଙ୍କର ରାହାଜାନି, ଜଗନ୍ନାଥଯାତ୍ରୀଙ୍କ ପ୍ରତି ବର୍ଗୀମାନଙ୍କର ଡକାୟତି, ମରହଟ୍ଟା ଓ ଆଲିବର୍ଦ୍ଦି ଖାଁଙ୍କ ମଧ୍ୟରେ ଯୁଦ୍ଧ ଓ ପରିଶେଷରେ ଭାସ୍କରପଣ୍ଡିତଙ୍କୁ ହତ୍ୟା ଏହାର ମୁଖ୍ୟ ଘଟଣା । ଏହାରି ମଧ୍ୟଦେଇ ବାଦଲ ସିଂ ଏବଂ ଲଛମାର ପ୍ରେମକାହାଣୀ ମଧ୍ୟ ବର୍ଣ୍ଣିତ ହୋଇଛି । 'ମାମୁଁ' ଉପନ୍ୟାସରେ ଇଂରାଜୀ ଶିକ୍ଷିତ ଯୁବକମାନଙ୍କର ଶୋଷଣ ପ୍ରକ୍ରିୟା, ଅର୍ଥଲାଳସା ଓ ତା'ର ଶୋଚନୀୟ

ପରିଣତି ସମ୍ପର୍କରେ ବର୍ଣ୍ଣନା କରାଯାଇଛି । କର୍ମଫଳ ଉପରେ ଏଥିରେ ଗୁରୁତ୍ୱ ପ୍ରଦାନ କରାଯାଇଛି । 'ପ୍ରାୟଶ୍ଚିତ୍ତ'ରେ ଜାତିଗତ ଅଭିମାନ, ଶିକ୍ଷିତ ଯୁବକମାନଙ୍କର ବିଚିତ୍ର କ୍ରିୟାକଳାପର ସୁନ୍ଦର ବର୍ଣ୍ଣନା ରହିଛି । ତାଙ୍କର କ୍ଷୁଦ୍ର ଗଳ୍ପଗୁଡ଼ିକ ମଧ ଓଡ଼ିଆ ସମାଜର ବିଭିନ୍ନ ଘଟଣାକୁ ଅବଲମ୍ବନ କରି ରଚିତ । ରେବତୀ ଗଳ୍ପରେ ଯେପରି ନାରୀଶିକ୍ଷା ପ୍ରତି ସମ୍ବେଦନା ପ୍ରକାଶ ପାଇଛି, ସେହିପରି ଡାକମୁନ୍‌ସୀ ଗଳ୍ପରେ ଶିକ୍ଷିତ ଯୁବକମାନଙ୍କର ପିତା ପ୍ରତି ଅବହେଳାଭାବ, ପେଟେଣ୍ଟମେଡ଼ିସିନ୍‌ର ଶିକ୍ଷିତ ବ୍ୟକ୍ତିର ମଦ୍ୟ ଓ ବେଶ୍ୟା ପ୍ରତି ଆସକ୍ତି, ରାଣ୍ଡୀପୁଅ ଅନନ୍ତାର ଜାତି ପାଇଁ ପ୍ରାଣୋତ୍ସର୍ଗ, ଧୂଳିଆବାବାର ଧର୍ମ ନାମରେ ଭଣ୍ଡାମି, ଅଧର୍ମବିତ୍ତରେ ଅର୍ଥଲୋଭର କୁପରିଣାମ, ଗାରୁଡ଼ି ମନ୍ତ୍ରରେ ସାମାଜିକ କୁସଂସ୍କାର ବିଲୋପ ପାଇଁ ଆହ୍ୱାନ, ମାଧମହାନ୍ତିଙ୍କ କନ୍ୟାସୁନାରେ କନ୍ୟାସୁନା ପ୍ରତି ଅର୍ଥଗୃଧ୍ନୁ ପିତାମାତାଙ୍କର ଆଚରଣ, ବାଲେଶ୍ୱରୀ ରାହାଜାନିରେ ଊନବିଂଶ ଶତକ ପ୍ରଥମଭାଗ ଓଡ଼ିଶାର ଡକାୟତି ଘଟଣା, ସଭ୍ୟ ଜମିଦାରରେ ମିଥ୍ୟା ଅଭିମାନର ପରିଣତି, କାଳିକାପ୍ରସାଦ ଗୋରାପ ଓ କମଳାପ୍ରସାଦ ଗୋରାପରେ ଅତୀତ ଓଡ଼ିଶାର ନୌବାଣିଜ୍ୟ ଓ ତା'ର ବିପର୍ଯ୍ୟୟ, ବାଲେଶ୍ୱରୀ ପଙ୍ଗାଲୁଣରେ ବାଲେଶ୍ୱରର ଲବଣ ଶିଳ୍ପ ଏବଂ ଜାହାଜାନି, ବ୍ୟବସାୟର ଅଧଃପତନ ଓ ବିପର୍ଯ୍ୟସ୍ତ ଚିତ୍ର ଆଦି ବର୍ଣ୍ଣିତ । ଓଡ଼ିଶାର ସାମାଜିକ ଜୀବନର ବହୁଘଟଣା ତାଙ୍କ ସୃଷ୍ଟିରେ ଆତ୍ମପ୍ରକାଶ କରିଛି । ତାଙ୍କ ସୃଷ୍ଟ ଚରିତ୍ରଗୁଡ଼ିକ ସାମାଜିକ ଜୀବନର ଏକ ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀର ପ୍ରତିନିଧିତ୍ୱ କରିଥାଏ । ହାସ୍ୟରସ ମାଧ୍ୟମରେ ବାସ୍ତବଜୀବନର ଚିତ୍ର ପ୍ରଦର୍ଶନ କରିବାରେ ଫକୀରମୋହନ ବେଶ୍ ଧୁରନ୍ଧର । ଏହି ଦୃଷ୍ଟିରୁ ଫକୀରମୋହନ କଥା-ସାହିତ୍ୟ ଯଥାର୍ଥରେ ଓଡ଼ିଶାର ସାମାଜିକ ଜୀବନର ଏକ ଜୀବନ୍ତ ଇତିହାସ ।

ଫକୀରମୋହନଙ୍କ ସୃଷ୍ଟି ସମ୍ପୂର୍ଣ୍ଣ ଭାବରେ କାଳଜୟୀ । ତାଙ୍କର ଚରିତ୍ର ଚିତ୍ରଣ, ବର୍ଣ୍ଣନାଚାତୁରୀ, କଥାବସ୍ତୁ ସମ୍ପୂର୍ଣ୍ଣଭାବେ ଓଡ଼ିଶାର ପ୍ରତିନିଧିତ୍ୱ କରିବାକୁ ସମର୍ଥ । ଏକ ନିର୍ଦ୍ଦିଷ୍ଟ ସମୟରେ ରଚିତ ହୋଇଥିଲେ ହେଁ ବିଷୟ ବୈଚିତ୍ର୍ୟ ଦୃଷ୍ଟିରୁ ଏହା ଚିରନ୍ତନ । ତାଙ୍କର ନାରୀ ଏକାଧାରରେ ଚଣ୍ଡୀ ଓ ଦେବୀ । ଏପରି ଚରିତ୍ର ଏବେ ମଧ ଆମ ସମାଜରେ ଦୁର୍ଲଭ ନୁହନ୍ତି । କଳାଦୃଷ୍ଟିରୁ ମଧ ତାଙ୍କର ଅଧିକାଂଶ ସୃଷ୍ଟି କାଳଜୟୀ । ତାଙ୍କ 'ଆତ୍ମଜୀବନୀ' ଓଡ଼ିଶାର ଅର୍ଦ୍ଧଶତାବ୍ଦୀର ସାମାଜିକ ଜୀବନର ଆଲେଖ୍ୟ । ଏଥିରୁ ତତ୍କାଳୀନ ଓଡ଼ିଶା ସମ୍ପର୍କରେ ବହୁ ତଥ୍ୟ ଉପଲବ୍ଧ ହୋଇଥାଏ । ତାଙ୍କ ସୃଷ୍ଟି ବିଭିନ୍ନ ଅନୁଭୂତିରେ ପରିପୂର୍ଣ୍ଣ । ସେଥିପାଇଁ ଫକୀରମୋହନଙ୍କ ସାହିତ୍ୟକୃତିରେ ବାସ୍ତବ ମଣିଷର ଜୀବନ୍ତ ଚିତ୍ର ରହିଛି । କଳ୍ପନା ଅପେକ୍ଷା ବାସ୍ତବତା ଅଧିକ ହୋଇଥିବାରୁ ଏହା ଯୁଗ ଯୁଗ ଧରି ଅମର ହୋଇ ରହିବ, ଏଥିରେ ଦ୍ୱିମତ ନାହିଁ ।

ଫକୀରମୋହନଙ୍କ ସାହିତ୍ୟରୁ ଓଡ଼ିଶାର ସାମାଜିକ ବିବର୍ତ୍ତନଧାରାର ଏକ ଧାରାବାହିକ ଇତିହାସ ଉପଲବ୍ଧ ହୋଇଥାଏ । ଜଗତ ଏବଂ ଜୀବନକୁ ସେ ଯେପରି ଚିହ୍ନିଥିଲେ; ଓଡ଼ିଶାର ଅନ୍ତନାଡ଼ିକୁ ସେ ଯେପରି ଅନୁଭବ କରିଥିଲେ, ବୋଧହୁଏ ଏଯାବତ୍ ଅନ୍ୟ କୌଣସି ସ୍ରଷ୍ଟାଙ୍କ କ୍ଷେତ୍ରରେ ତାହା ସମ୍ଭବ ହୋଇପାରି ନାହିଁ । ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ସେ ବହୁ ନୂତନ ପରମ୍ପରାର ସ୍ରଷ୍ଟା । ପାଠ୍ୟପୁସ୍ତକ ରଚନା, ଇତିହାସ, ଅନୁବାଦ, ଭ୍ରମଣ ସାହିତ୍ୟ, କାବ୍ୟକବିତା, ପ୍ରବନ୍ଧ-

ରମ୍ୟରଚନା-ସମାଲୋଚନା, କଥାସାହିତ୍ୟ, ଜୀବନୀ ସାହିତ୍ୟ ପ୍ରତ୍ୟେକ କ୍ଷେତ୍ରରେ ସେ ଥିଲେ ଜଣେ ଅସାଧାରଣ ଶିଳ୍ପୀ । ମଣିଷ ଜୀବନର ଆତ୍ମଲିପି ଓ ମାନବବାଦର ଜୟଗାନ ତାଙ୍କ ସୃଷ୍ଟିକୁ ଦେଇଛି ନୂତନ ରୂପରେଖ । ଏହି ଦୃଷ୍ଟିରୁ ଫକୀରମୋହନ ହେଉଛନ୍ତି ମୋର ସବୁଠାରୁ ପ୍ରିୟ ଲେଖକ ।

●

# ଭାରତର ସାମ୍ପ୍ରତିକ ଶିକ୍ଷାନୀତି

**(ଉପକ୍ରମ, ଭାରତର ପ୍ରାଚୀନ ଶିକ୍ଷା, ଇଂରାଜୀ ଶିକ୍ଷାନୀତିର ପ୍ରଭାବ, ସ୍ୱାଧୀନତା ପରବର୍ତ୍ତୀ ଶିକ୍ଷାର କେତେକ ଦିଗ, ବୃତ୍ତି ଓ ବୈଷୟିକ ଶିକ୍ଷା, ଶିକ୍ଷାପଦ୍ଧତିର କେତେକ ସମସ୍ୟା ଓ ସମାଧାନ ଦିଗ, ଉପସଂହାର)**

ଗୋଟିଏ ଜାତିର ବିକାଶ ସେ ଦେଶର ଶିକ୍ଷାପଦ୍ଧତି ଉପରେ ବହୁ ପରିମାଣରେ ନିର୍ଭର କରେ । ଶିକ୍ଷାଦ୍ୱାରା ବ୍ୟକ୍ତି ହୁଏ ମାର୍ଜିତ ଓ ସଂସ୍କୃତିସମ୍ପନ୍ନ । ସମାଜର ଅଗ୍ରଗତିରେ ଶିକ୍ଷା ମୁଖ୍ୟ ଭୂମିକା ଗ୍ରହଣ କରିଥାଏ । ଏହି ଶିକ୍ଷା ହିଁ ମଣିଷକୁ ପଶୁଠାରୁ ଭିନ୍ନ କରି ଚିହ୍ନାଇ ଥାଏ । ତେଣୁ ପ୍ରକୃତ ଶିକ୍ଷା ସର୍ବଦା ଜାତୀୟ ଆଶା ଆକାଂକ୍ଷାର ପ୍ରତିଫଳନ । ମାନବ ଚରିତ୍ରକୁ ମାର୍ଜିତ, ରୁଚିସମ୍ପନ୍ନ ଓ ପ୍ରଗତିଶୀଳ କରିବା କ୍ଷେତ୍ରରେ ଏହାର ଅବଦାନର ତୁଳନା ନାହିଁ । ଜାତିର ଆଶା ଏବଂ ଆକାଂକ୍ଷାକୁ ଲକ୍ଷ୍ୟ କରି ଶିକ୍ଷା ନୀତିରେ ପରିବର୍ତ୍ତନ କରାଯାଇଥାଏ । ଜାତୀୟ ଜୀବନକୁ ସୁସଂଗଠିତ ତଥା ମାନବର ଅଭୀପ୍ସାର ପୂର୍ତ୍ତିପାଇଁ ବାରମ୍ବାର ଶିକ୍ଷାପଦ୍ଧତିରେ ସଂସ୍କାର ଅଣାଯାଇଥାଏ । ଭାରତ ଏପରି ଏକ ଦେଶ, ଯେଉଁଠାରେ ବହୁ ବର୍ଣ୍ଣ, ଧର୍ମ, ରୁଚି ଏବଂ ଭାଷାର ଲୋକ ବସବାସ କରନ୍ତି । ଏହି ବୈଷମ୍ୟକୁ ଲକ୍ଷ୍ୟ କରି ଭାରତର ଶିକ୍ଷା ପଦ୍ଧତି ନିରୂପିତ ହେବା ଆବଶ୍ୟକ । ମଣିଷ ଜୀବନକୁ ସୁଶୃଙ୍ଖଳିତ ଓ ଜାତିକୁ ଏକତାର ସୂତ୍ରରେ ଆବଦ୍ଧ କରିବା କ୍ଷେତ୍ରରେ ଶିକ୍ଷାର ଏକ ବିଶେଷ ଭୂମିକା ରହିଥିବାରୁ ସମ୍ପ୍ରତି ଭାରତର ଶିକ୍ଷାନୀତିରେ ଆମୂଳଚୂଳ ପରିବର୍ତ୍ତନ ଆସିବାର ଆବଶ୍ୟକତା ଅନୁଭୂତ ହୋଇଛି ।

ଭାରତର ପ୍ରାଚୀନ ଐତିହ୍ୟ ଓ ଗୌରବର ତୁଳନା ନାହିଁ । ବୈଦିକ ଋଷି ସମଗ୍ର ବିଶ୍ୱର ସଂହତି, ନିରାମୟତା ଓ ମଙ୍ଗଳ ପାଇଁ ସାଧନା କରୁଥିଲେ । ସେହିମାନଙ୍କର ସାଧନା ଏବଂ ସିଦ୍ଧିର ଭିତ୍ତି ଉପରେ ଭାରତର ସଂସ୍କୃତି ଏବଂ ସଭ୍ୟତା ଗଢ଼ିଉଠିଛି । ଭାରତର ଐକ୍ୟ ଏବଂ ସଂହତି ରକ୍ଷା ଉଦ୍ଦେଶ୍ୟରେ ସେମାନେ ରଚନା କରିଯାଇଛନ୍ତି ଅସଂଖ୍ୟ ସୂକ୍ତ । ଭାରତୀୟ ସଂସ୍କୃତିର ମହାନତା ଏହି ସୂକ୍ତଗୁଡ଼ିକରୁ ଉପଲବ୍ଧ । ସେଥିପାଇଁ ବୈଦିକ ଶିକ୍ଷା ପଦ୍ଧତି ଯୁଗେ ଯୁଗେ ଶ୍ରେଷ୍ଠ ଶିକ୍ଷାପଦ୍ଧତି ଭାବରେ ଗୃହୀତ ହୋଇଛି । ଚରିତ୍ର ଗଠନ, ଜ୍ଞାନର ଦିଗ୍‌ବଳୟର ବିକାଶ, ସୁନୀତିର ପ୍ରତିଷ୍ଠା, ସର୍ବୋପରି ନୈତିକ ମୂଲ୍ୟବୋଧ ଉପରେ ଗୁରୁତ୍ୱ ପ୍ରଦାନ ଥିଲା ଏହି ଶିକ୍ଷାନୀତିର ମୂଳଲକ୍ଷ୍ୟ । ତପୋବନର ଶାନ୍ତ-କାନ୍ତ ପରିବେଶ ମଧ୍ୟରେ ଆଚାର୍ଯ୍ୟମାନଙ୍କ ପ୍ରତ୍ୟକ୍ଷ

ତତ୍ତ୍ୱାବଧାନରେ ଏ ଦେଶର ଭବିଷ୍ୟତ ବଂଶଧରଗଣ ଶିକ୍ଷାଲାଭ କରୁଥିଲେ । ଶାସ୍ତ୍ରଜ୍ଞାନ ଲାଭ ସହିତ ସେମାନେ ଶିକ୍ଷା କରୁଥିଲେ ଦୟା, ତ୍ୟାଗ, ସଂଯମତା, ସହିଷ୍ଣୁତା, କଠୋର କର୍ମପ୍ରବଣତା ଏବଂ ପରୋପକାର । ନଗରର କୁଟିଳତା ସେମାନଙ୍କୁ ସ୍ପର୍ଶ କରି ନ ଥିଲା । ଏକ ସ୍ୱର୍ଗୀୟ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ଦେଶ ଏବଂ ଜାତିର ମଙ୍ଗଳାର୍ଥେ ନିଜକୁ ଉତ୍ସର୍ଗ କରୁଥିଲେ । ଗୁରୁକୁଳ ଆଶ୍ରମରେ ବିଦ୍ୟା ଶିକ୍ଷା ସମୟରେ ସେମାନେ ଯେପରି ଗୁରୁ ଆଶ୍ରମର ପବିତ୍ରତା ରକ୍ଷା କରୁଥିଲେ, ଶିକ୍ଷା ସମାପ୍ତି ପରେ ସମାଜକୁ ଫେରିଆସିବା ପରେ ସମାଜକୁ ଶୃଙ୍ଖଳିତ, ମାର୍ଜିତ ତଥା ଆଚାରନିଷ୍ଠ କରିବା ପାଇଁ ନିଜକୁ ନିୟୋଜିତ କରୁଥିଲେ । ଗୁରୁ ଆଶ୍ରମରେ ଶାସ୍ତ୍ରବିଦ୍ୟା ସହିତ ସମାଜବିଦ୍ୟା, ବିଜ୍ଞାନ, ନୀତିଶାସ୍ତ୍ର ଇତ୍ୟାଦି ଶିକ୍ଷା କରୁଥିଲେ । ଏହିଠାରୁ ସେମାନେ ଶିକ୍ଷାଲାଭ କରୁଥିଲେ ଆତ୍ମନିର୍ଭରଶୀଳତା । ଶାରୀରିକ ଶ୍ରମ ମାଧ୍ୟମରେ ଗୁରୁ-ଆଶ୍ରମ ଏବଂ ସମାଜକୁ ଫେରିଆସିବା ପରେ ସମାଜର ବିକାଶ ନିମିତ୍ତ ସେମାନେ ଧ୍ୟାନ ଦେଉଥିଲେ । ଜୀବନର ବାଧାବିଘ୍ନକୁ ସମ୍ମୁଖୀନ ହେବାପାଇଁ ସେ ଏଠାରୁ ଶିକ୍ଷା କରୁଥିଲେ ନୈତିକ ଶିକ୍ଷା । ଗାର୍ହସ୍ଥ୍ୟ ଜୀବନଯାପନ ସମୟରେ ମଧ୍ୟ ସେ ସଂଯମତା ଆଚରଣ କରୁଥିଲେ । ପରିବାରରେ ପବିତ୍ର ବାତାବରଣ ସୃଷ୍ଟି କରିବାରେ ଗୁରୁକୁଳର ଶିକ୍ଷା ତାଙ୍କୁ ବହୁଭାବରେ ସହାୟତା ଦେଉଥିଲା । ଭାରତୀୟ ତପୋବନ ଆଶ୍ରମର ମହାନତା ସେଥିପାଇଁ ବିଶ୍ୱର ବହୁ ଜ୍ଞାନୀଙ୍କୁ ଆକର୍ଷିତ କରୁଥିଲା । ବୌଦ୍ଧଯୁଗୀୟ ନାଳନ୍ଦା ଓ ତକ୍ଷଶିଳା ଶିକ୍ଷାନୁଷ୍ଠାନ ସେତେବେଳେ ବିଶ୍ୱର ବହୁ ଜ୍ଞାନପିପାସୁ ପରିବ୍ରାଜକମାନଙ୍କୁ ଆକୃଷ୍ଟ କରିଥିଲା । ସମଗ୍ର ବିଶ୍ୱରେ ଭାରତର ଶିକ୍ଷାପଦ୍ଧତି ଥିଲା ଉନ୍ନତମାନର । ଜୀବନ ଗଠନ ଥିଲା ଏହି ଶିକ୍ଷାର ମୂଳ ଆଦର୍ଶ । ସମୟକ୍ରମେ ଗୁରୁକୁଳ ଆଶ୍ରମର ଶିକ୍ଷାପଦ୍ଧତିର ସ୍ଥାନ ଗ୍ରହଣ କଲା ପାଶ୍ଚାତ୍ୟ ଶିକ୍ଷା ଏବଂ ଭାରତ ତା'ର ଐତିହ୍ୟ, ଆତ୍ମନିର୍ଭରଶୀଳତା, ପବିତ୍ରତା ତଥା ନୈତିକତା ହରାଇ ପରମୁଖାପେକ୍ଷିତାକୁ ଗ୍ରହଣ କରିନେଇ ଆତ୍ମସନ୍ତୋଷ ଲାଭ କଲା ।

ଇଂରେଜମାନେ ବ୍ୟବସାୟୀ ଜାତି ଭାବରେ ଭାରତକୁ ଆଗମନ କରି ଶେଷରେ ଦେଶର ଶାସନଭାର ଗ୍ରହଣ କଲେ । ସେମାନେ ଯେପରି ଚକ୍ରାନ୍ତକତା କରି ଦେଶର ସ୍ୱାଧୀନତା ଅପହରଣ କଲେ, ସେହିପରି ଚକ୍ରାନ୍ତକତା କରି ଏ ଦେଶର ପ୍ରାଚୀନ ଶିକ୍ଷାପଦ୍ଧତିକୁ ଧୂଳିସାତ୍ କଲେ । ଇଂରେଜମାନଙ୍କ ଆଗମନ ସମୟରେ ଏ ଦେଶରେ ଚାଟଶାଳୀ ଶିକ୍ଷା ପ୍ରଚଳିତ ଥିଲା । ଯଦିଓ ଏହି ଶିକ୍ଷାରେ ବହୁ ତ୍ରୁଟି ରହିଥିଲା, ତଥାପି ଏହା କଦାପି ଚାକିରିମୁଖୀ ଶିକ୍ଷାପଦ୍ଧତି ନ ଥିଲା । ଅବଧାନଗଣ ସେମାନଙ୍କ ସୀମିତ ଜ୍ଞାନର ପରିସର ମଧ୍ୟରେ ଶିକ୍ଷାଦାନ କରୁଥିଲେ । ଏହା ସତ୍ତ୍ୱେ ଭାରତୀୟମାନେ ଥିଲେ ସ୍ୱାବଲମ୍ବନଶୀଳ । ଶିକ୍ଷା କରିଥିଲେ ନିଜ ଗୋଡ଼ରେ ନିଜେ ଠିଆ ହେବାକୁ । ଇଂରାଜୀ ଜାତି ଶାସନକ୍ଷମତା ଗ୍ରହଣ କରିବା ପରେ ଭାରତୀୟ ଶିକ୍ଷାନୀତିକୁ ସମ୍ପୂର୍ଣ୍ଣ ପରିବର୍ତ୍ତନ କରିବା ଉଦ୍ଦେଶ୍ୟରେ ପଦକ୍ଷେପମାନ ଗ୍ରହଣ କଲେ । ମାତ୍ର ଏହା ସମସ୍ତ ଭାରତୀୟଙ୍କ ଦ୍ୱାରା ଗ୍ରହଣୀୟ ନ ହେବାରୁ କୂଟକପଟ ନୀତି ଆଚରଣ କରାଗଲା । ଉଦ୍ଦେଶ୍ୟ ଥିଲା ପ୍ରଶାସନରେ ସହାୟତା କରିବା ନିମିତ୍ତ କେତେକ ବେତନଭୋଗୀ କର୍ମଚାରୀ ବା କିରାଣି ସୃଷ୍ଟିର । ନୂତନ ଶିକ୍ଷାନୀତିକୁ ଆଖିରେ ରଖି ସୃଷ୍ଟି କରାଗଲା ବିଦ୍ୟାଳୟ, ମହାବିଦ୍ୟାଳୟମାନ ।

୧୮୩୫ ଓ ୧୮୪୪ ମସିହାରେ ଲର୍ଡ଼ ମାକ୍‌ଲେ ଏବଂ ଲର୍ଡ଼ ହାର୍ଡ଼ିଞ୍ଜ ସରକାରୀ ଚାକିରି ନିମିତ୍ତ ଇଂରାଜୀ ଶିକ୍ଷାକୁ ବାଧ୍ୟତାମୂଳକ କଲେ । ନିଜର ଆବଶ୍ୟକତାକୁ ଦୃଷ୍ଟିରେ ରଖି ଇଂରେଜମାନେ ବିଦ୍ୟାଳୟ, ମହାବିଦ୍ୟାଳୟ ପ୍ରତିଷ୍ଠା କଲେ । ଅତୀତ ଭାରତର ଶିକ୍ଷାର ମୂଳ ଲକ୍ଷ୍ୟ ଯେଉଁ ଆତ୍ମନିର୍ଭରଶୀଳତା ଥିଲା ତାହା ସମ୍ପୂର୍ଣ୍ଣ ଲୁପ୍ତ ହୋଇଗଲା । ଶିକ୍ଷା ମାଧ୍ୟମ ହେଲା ଚାକିରିର । ଇଂରେଜ ପ୍ରଶାସନର ଆନୁଗତ୍ୟ ପ୍ରକାଶ କରିବା ଥିଲା ଏହି ଶିକ୍ଷାନୀତିର ପ୍ରଥମ ଲକ୍ଷ୍ୟ । ରକ୍ତ ଓ ବର୍ଣ୍ଣରେ ଭାରତୀୟ ହେଲେହେଁ ରୁଚି ଓ ବିଚାରରେ ଭାରତୀୟ ହେଲେ ଇଂରେଜ । ପବିତ୍ର ଗ୍ରାମ୍ୟ ସଭ୍ୟତା ଧୀରେ ଧୀରେ କଳୁଷିତ ହେବାକୁ ଲାଗିଲା । ସହରୀ ସଭ୍ୟତାର ମୋହ ଓ ବିଳାସମୟ ଜୀବନଯାପନ ପ୍ରଣାଳୀ ଗ୍ରାମୀଣ ସଭ୍ୟତାକୁ ଗ୍ରାସ କଲା । ପ୍ରାଚୀନ ଆଦର୍ଶ, ରୁଚିବୋଧର ପତନ ଘଟିଲା । ଦାସତ୍ୱର ମୋହ ପାଶରେ ବନ୍ଦୀ ହେଲେ ଏ ଦେଶର ଶିକ୍ଷିତ ସମ୍ପ୍ରଦାୟ । ଆତ୍ମନିର୍ଭରଶୀଳତା ନୁହେଁ, ପରମୁଖାପେକ୍ଷିତା ଥିଲା ଇଂରାଜୀ ଶିକ୍ଷାର ଆଦର୍ଶ । ସେହି ଆଦର୍ଶର ମୋହ ଭାରତୀୟ ଯୁବସମ୍ପ୍ରଦାୟଙ୍କୁ ପଥଭ୍ରଷ୍ଟ କଲା । ସ୍ୱାଧୀନ ଭାବରେ ଜୀବନଯାପନ କରିବାକୁ ଶିକ୍ଷା ପ୍ରଦାନ କରିବା ଯଥାର୍ଥ ଶିକ୍ଷାର ଉଦ୍ଦେଶ୍ୟ । ମାତ୍ର ଇଂରାଜୀ ଶିକ୍ଷାରେ ଠିକ୍ ତା'ର ବିପରୀତ ଘଟିଲା । ଦୁଃଖର ବିଷୟ ଆମେ ଇଂରେଜମାନଙ୍କଠାରୁ ତାଙ୍କ ଶିକ୍ଷାପଦ୍ଧତିର ସମସ୍ତ ଅବିଗୁଣ ଗ୍ରହଣ କରିଥିଲେହେଁ କର୍ତ୍ତବ୍ୟନିଷ୍ଠା, କଷ୍ଟସହିଷ୍ଣୁତା ଓ ସମୟାନୁବର୍ତ୍ତିତା ପରି ସୁଗୁଣଗୁଡ଼ିକୁ ଆଦୌ ଗ୍ରହଣ କରିପାରୁ ନାହୁଁ । ସ୍ୱାଧୀନତା ପରେ ମଧ୍ୟ ଇଂରାଜୀ ଶିକ୍ଷାର ଅନ୍ଧମୋହ ଏଯାବତ୍ ଆମ ମନରୁ ଦୂର ହୋଇପାରି ନାହିଁ । ଗୋଟିଏ ସ୍ୱାଧୀନ ଦେଶରେ ସ୍ୱାଧୀନ ଶିକ୍ଷାପଦ୍ଧତି ପ୍ରଚଳନ ହେବା ଆବଶ୍ୟକ । ଅଥଚ ଆମ ଶିକ୍ଷାପଦ୍ଧତିରେ ଏଯାବତ୍ କୌଣସି ଗୁଣାତ୍ମକ ପରିବର୍ତ୍ତନ ହୋଇପାରି ନାହିଁ ।

ସ୍ୱାଧୀନତା ଲାଭ ପରେ ଏ ଦେଶର ଶିକ୍ଷାପଦ୍ଧତିରେ ପରିବର୍ତ୍ତନ ଆନୟନ ନିମିତ୍ତ ବହୁ କମିଶନ ଓ କମିଟି ଗଠିତ ହୋଇଛି । କୋଠାରୀ କମିଶନ, ମୁଦାଲିୟର କମିଶନ, ରାଧାକ୍ରିଷ୍ଣନ କମିଶନ, ଆଚାର୍ଯ୍ୟ ରାମମୂର୍ତ୍ତି କମିଟି, ଅରୁଣଘୋଷ କମିଟି ଆଦି ବହୁ କମିଶନ ଏବଂ କମିଟି ଗଠିତ ହୋଇଛି । ସେମାନେ ସେମାନଙ୍କର ସୁଚିନ୍ତିତ ମତାମତ ପ୍ରଦାନ କରିଯାଇଛନ୍ତି । ମାତ୍ର ଶିକ୍ଷାର କୌଣସି ଗୁଣାତ୍ମକ ପରିବର୍ତ୍ତନ ହୋଇଥିବାର ଲକ୍ଷ୍ୟ କରାଯାଏ ନାହିଁ । ପ୍ରତିଶିକ୍ଷାର ଶେଷ ଲକ୍ଷ୍ୟ ଚାକିରି ହିଁ ହୋଇଛି । ସେହି ପରନିର୍ଭରଶୀଳତା ହୋଇଛି ଆମ ଶିକ୍ଷାର ଲକ୍ଷ୍ୟ । ଭାରତର ଶିକ୍ଷାପଦ୍ଧତିର ପ୍ରଥମ ସୋପାନ ପ୍ରାଥମିକ ଶିକ୍ଷା । ଶିକ୍ଷାର ମୂଳଭିତ୍ତି ପ୍ରାଥମିକ ଶିକ୍ଷା ହୋଇଥିବାରୁ ଏହାର ଗୁଣାତ୍ମକ ବିକାଶ ନିମିତ୍ତ ଲକ୍ଷ୍ୟ ପ୍ରଦାନ କରାଯିବା ଆବଶ୍ୟକ । ଭାରତର ଲୋକସଂଖ୍ୟା ଅନୁପାତରେ ପ୍ରାଥମିକ ବିଦ୍ୟାଳୟ ନାହିଁ । ବିଦ୍ୟାଳୟ ଅନୁପାତରେ ଶିକ୍ଷକ ନାହାନ୍ତି । କେଉଁଠାରେ କାଗଜପତ୍ରରେ ବିଦ୍ୟାଳୟ ଚାଲିଥିବା ସମୟରେ ବାସ୍ତବ ବିଦ୍ୟାଳୟ ନାହିଁ । ପୁଣି ବିଦ୍ୟାଳୟର ଅବସ୍ଥା ନ କହିବା ଭଲ । ଝାଟିମାଟିର ଘରେ ପାଠପଢ଼ା ଚାଲିଥିବା ସମୟରେ ପବନ, ବର୍ଷା ଓ ବନ୍ୟାରେ ତାହା ଭାଙ୍ଗିଯାଉଛି । ୩/୪ ଶ୍ରେଣୀ ପାଇଁ ଗୋଟିଏ ବଖରା । ୪/୫ ଜଣ ଶିକ୍ଷକଙ୍କର ଆବଶ୍ୟକତା ଥିବା ସମୟରେ ମାତ୍ର ଜଣେ ଦୁଇଜଣ ଶିକ୍ଷକ କାର୍ଯ୍ୟ ଚଳାଉଛନ୍ତି ।

ଶିକ୍ଷକମାନଙ୍କ ଉପରେ ସରକାର ଏତେ ଦାୟିତ୍ୱ ନ୍ୟସ୍ତ କରିଛନ୍ତି ଯେ, ସ୍ୱାଧୀନ ଭାବରେ ଶିକ୍ଷା ପ୍ରଦାନ କରିବା ସେମାନଙ୍କ ଦ୍ୱାରା ସମ୍ଭବ ହେଉ ନାହିଁ । ସରକାରୀ ଜନଗଣନା ଠାରୁ ଆରମ୍ଭ କରି ନିର୍ବାଚନ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ସଂସାଧନ କରିବା ସେମାନଙ୍କର ଦାୟିତ୍ୱ । ଉପଯୁକ୍ତ ତାଲିମପ୍ରାପ୍ତ ଶିକ୍ଷକଙ୍କର ଅଭାବରୁ ଶିକ୍ଷାଦାନରେ ବିପର୍ଯ୍ୟସ୍ତ ଅବସ୍ଥା ଲକ୍ଷ୍ୟ କରାଯାଉଛି । ପରିଦର୍ଶନ ଦାୟିତ୍ୱରେ ଥିବା ଅଧିକାରୀ ମଫସଲ ଅଞ୍ଚଳକୁ ଆଦୌ ଯାଉ ନ ଥିବାରୁ ଶିକ୍ଷାର ଗୁଣାତ୍ମକମାନ ବୃଦ୍ଧି ପାଉ ନାହିଁ । ଶିକ୍ଷାର ଗୁଣାତ୍ମକ ବୃଦ୍ଧି ପାଇଁ ବୈଜ୍ଞାନିକ ପଦ୍ଧତିରେ ଶିକ୍ଷା ପ୍ରଦାନ କରାଯିବା ଆବଶ୍ୟକ । ଏହା ପ୍ରତି ଶିଶୁମାନଙ୍କୁ ଆକୃଷ୍ଟ କରିବା ପାଇଁ ଯେଉଁ କ୍ରୀଡ଼ା ପଦ୍ଧତି ଶିକ୍ଷାର ଆବଶ୍ୟକ ତାହା ପ୍ରାଥମିକ ଶିକ୍ଷାରେ ଏଯାବତ୍ ଅନୁସୃତ ହୋଇପାରି ନାହିଁ । ଉଚ୍ଚ ପ୍ରାଥମିକ ଶିକ୍ଷା ବ୍ୟବସ୍ଥା ମଧ ସେହିପରି ତ୍ରୁଟିପୂର୍ଣ୍ଣ । ଉପଯୁକ୍ତ ଶିକ୍ଷକ ନିଯୁକ୍ତି, ଶ୍ରେଣୀଗୃହ ନିର୍ମାଣ ଆଦିରେ ଘୋର ଅବ୍ୟବସ୍ଥା । ଭାରତରେ ଉଚ୍ଚପ୍ରାଥମିକ ଶିକ୍ଷା ସ୍ତରରେ ବହୁ ଛାତ୍ର ସେମାନଙ୍କର ପାଠପଢ଼ା ବନ୍ଦ କରି ଦେଇଛନ୍ତି । ସେମାନଙ୍କୁ ବିଦ୍ୟାଳୟ ମଧରେ ରଖାଇବାର କୌଣସି ଆକର୍ଷଣୀୟ ପଦକ୍ଷେପ ଏଯାବତ୍ ଗ୍ରହଣ କରାଯାଇ ନାହିଁ । ଶିକ୍ଷକମାନଙ୍କର ଅଭାବ, ଶିକ୍ଷା ସରଞ୍ଜାମର ଅପ୍ରତୁଳତା ଏହାର ଅନ୍ୟତମ ତ୍ରୁଟିପୂର୍ଣ୍ଣ ଦିଗ । ଉଚ୍ଚପ୍ରାଥମିକ ଶିକ୍ଷାବ୍ୟବସ୍ଥା ମଧ ଅନୁରୂପ ତ୍ରୁଟିଯୁକ୍ତ । ଏହି ଶିକ୍ଷା ଲାଭ କରୁଥିବା ଯୁବକ ଜୀବନ ସଂଗ୍ରାମରେ ଆଦୌ ତିଷ୍ଠିପାରନ୍ତି ନାହିଁ । ଏହାର ପରିମାର୍ଜନ ନିମିତ୍ତ କମିଟି ବସିଛି । ଧାନମୂଳକ ଶିକ୍ଷାର ଅୟମାରମ୍ଭ ଏହିଠାରୁ ହେବା ଉଚିତ ବୋଲି ମତ ପ୍ରକାଶ ପାଇଛି । କିନ୍ତୁ ସରକାରଙ୍କ ତରଫରୁ ସମୟୋଚିତ ପଦକ୍ଷେପର ଅଭାବ ଯୋଗୁଁ ଏହା ସାକାର ହୋଇପାରି ନାହିଁ । ଏହାପରେ ଯେଉଁ ବିଶ୍ୱବିଦ୍ୟାଳୟ ଶିକ୍ଷାର ଆରମ୍ଭ ତାହା ମଧ ଜୀବନର ଆବଶ୍ୟକତା ପୂରଣ କରିବାରେ ଅସମର୍ଥ । ସ୍ନାତକ ବା ସ୍ନାତକୋତ୍ତର ଉପାଧି ଲାଭ ପରେ ଶହ ଶହ ସଂଖ୍ୟାରେ ବେକାର ସୃଷ୍ଟି ହେଉଛନ୍ତି । ବିଶ୍ୱବିଦ୍ୟାଳୟ ଶିକ୍ଷାପଦ୍ଧତିର ଗୁଣାତ୍ମକ ମାନବୃଦ୍ଧି ପାଇଁ ଦୃଷ୍ଟି ଦିଆଯାଇ ପାରି ନାହିଁ । ଫଳରେ ବହୁସଂଖ୍ୟକ ଛାତ୍ର ବେକାର ହୋଇ ଘରେ ବସି ରହୁଛନ୍ତି । ଶିକ୍ଷାର ମୂଲ୍ୟ ହ୍ରାସ ପାଉଛି । ତେଣୁ ବିଶ୍ୱବିଦ୍ୟାଳୟ ଶିକ୍ଷାକୁ ସଙ୍କୁଚିତ କରି ଏହାର ମାନ ବୃଦ୍ଧି କରିବା ଉଚିତ । ସ୍ନାତକୋତ୍ତର ସ୍ତରରେ ଗବେଷଣା ନିମିତ୍ତ ଉପଯୁକ୍ତ ବାତାବରଣ ସୃଷ୍ଟି ହେବା ଆବଶ୍ୟକ । ଜାତୀୟ ଶିକ୍ଷାନୀତିକୁ କର୍ମାଭିମୁଖୀ କରିବା ପାଇଁ ଅଧିକ ଦୃଷ୍ଟି ଦିଆଯିବା ବାଞ୍ଛନୀୟ ।

ବୃତ୍ତିଗତ ଶିକ୍ଷା ଓ ବୈଷୟିକ ଶିକ୍ଷା ପ୍ରତି ଅଧିକ ଗୁରୁତ୍ୱ ଦେବା ନିମିତ୍ତ ଗଠିତ ଏକାଧିକ କମିଶନ ମତ ପ୍ରଦାନ କରିଛନ୍ତି । ଏହି ଶିକ୍ଷା କର୍ମାଭିମୁଖୀ ଶିକ୍ଷା ହୋଇଥିବାରୁ ଏଠାରୁ ଉତ୍ତୀର୍ଣ୍ଣ ଛାତ୍ରଛାତ୍ରୀ ଯେ କୌଣସି କ୍ଷେତ୍ରରେ ନିଜର ଜୀବିକା ଅର୍ଜନ ପାଇଁ ସମର୍ଥ ହୋଇଥାନ୍ତି । ମହାତ୍ମାଗାନ୍ଧି ମଧ ଏହି ଶିକ୍ଷା ପ୍ରତି ଅନୁକୂଳ ମତପ୍ରଦାନ କରିଥିଲେ । ଗାନ୍ଧିଜୀ ଶାରୀରିକ ଶିକ୍ଷା ତଥା ହସ୍ତକର୍ମ ପାଇଁ ଶିକ୍ଷାନୀତିରେ ବ୍ୟବସ୍ଥା ରହିବା ଉଚିତ ବୋଲି କହିଥିଲେ । କୋଠାରୀ କମିଶନ ମଧ ଅନୁରୂପ ସୁପାରିସ କରିଥିଲେ । ୧୯୮୬ ମସିହାରେ ନବୋଦୟ ବିଦ୍ୟାଳୟ ଯୋଜନା ଶିକ୍ଷା କ୍ଷେତ୍ରରେ ନୂତନ ଦିଗନ୍ତ ସୃଷ୍ଟି କରିବ ବୋଲି ଆଶା କରାଯାଉଥିଲା । ମାତ୍ର କାର୍ଯ୍ୟରେ ତାହା ବିପରୀତ

ହେଲା । ଯେହେତୁ ଭାରତରେ କାରିଗରୀ ବିଦ୍ୟା ଓ ବିଜ୍ଞାନ ଶିକ୍ଷାର ଉପାଦେୟତା ଅନୁଭବ କରି ଏହା ପ୍ରଚଳନ ନିମିତ୍ତ ପରାମର୍ଶ ଦେଇଥିଲେ । କେତେକ କ୍ଷେତ୍ରରେ ଏହା ଗୃହୀତ ହୋଇଥିଲେ ହେଁ ଆଶାଜନକ ସଫଳତା ଅର୍ଜନ କରିପାରି ନାହିଁ । ଏପରିକି ବୈଷୟିକ ଶିକ୍ଷାପ୍ରାପ୍ତ ବହୁଯୁବକ ବେକାର ହୋଇ ଘରେ ବସିଛନ୍ତି । ବର୍ତ୍ତମାନ ପରିପ୍ରେକ୍ଷୀରେ ଭାରତୀୟ ଶିକ୍ଷାନୀତିରେ ଆମୂଳଚୂଳ ପରିବର୍ତ୍ତନ ହେବା ଆବଶ୍ୟକ ।

ଆମ ଶିକ୍ଷା ପଦ୍ଧତିରେ ଅନେକ ସମସ୍ୟା ରହିଛି । ପ୍ରାଥମିକ ଶିକ୍ଷାକୁ ଅଧିକ ଗତିଶୀଳ କରିବା ପାଇଁ କଳାପଟା ଅଭିଯାନ ଆରମ୍ଭ ହୋଇଛି । ମାତ୍ର ଏଥିପାଇଁ ଯେତିକି ଅର୍ଥ ବରାଦ ହେବାକଥା, ତାହା ହୋଇପାରି ନାହିଁ । ରାଷ୍ଟ୍ରୀୟ ଶିକ୍ଷା ମିଶନ ସାକ୍ଷରତା ହାର ବୃଦ୍ଧି କରିବାକୁ ବିଭିନ୍ନ ଯୋଜନା କରିଛି । ମାତ୍ର ତାହା ମଧ୍ୟ ଆଶାଜନକ ସଫଳତା ପାଇପାରି ନାହିଁ । ୧୦+୨+୩ ଶିକ୍ଷାନୀତି ଯେଉଁ ଆଦର୍ଶକୁ ନେଇ ପ୍ରଚଳନ କରାଯାଇଥିଲା, ପ୍ରୟୋଗ କ୍ଷେତ୍ରରେ ଠିକ୍ ତା'ର ଓଲଟା ହେଲା । ପାରମ୍ପରିକ ଶିକ୍ଷାର ଏହା ଏକ ନବୀକରଣ ରୂପ କହିଲେ ଭୁଲ ହେବ ନାହିଁ । ସମଗ୍ର ଭାରତରେ ଏକପ୍ରକାର ଶିକ୍ଷାନୀତି ପ୍ରଚଳନ ପାଇଁ ମତପ୍ରକାଶ ପାଇଥିଲା । ଅଥଚ ତାହା ଫଳପ୍ରଦ ହୋଇପାରିଲା ନାହିଁ । ପରୀକ୍ଷା ପଦ୍ଧତି ତ୍ରୁଟିପୂର୍ଣ୍ଣ ହୋଇଥିବାରୁ ମେଧାବୀ ଛାତ୍ର ସେମାନଙ୍କର ଯଥାର୍ଥ ମୂଲ୍ୟ ପାଇପାରୁ ନାହାନ୍ତି । ଶିକ୍ଷା ଜୀବନଗଠନ, ମଣିଷ ଗଠନ ଏବଂ ଚରିତ୍ର ଗଠନ ଉପରେ ଗୁରୁତ୍ୱ ଦେବା ଆବଶ୍ୟକ । ବିବେକାନନ୍ଦ ଶିକ୍ଷାର ଉଦ୍ଦେଶ୍ୟ ସମ୍ପର୍କରେ କହିଥିଲେ "We must have life building man making and character-making education." ଏହା ଠିକ୍ ରୂପେ ଅନୁସୃତ ହୋଇପାରି ନାହିଁ । ବର୍ତ୍ତମାନ ପରିପ୍ରେକ୍ଷୀରେ ମାଧ୍ୟମିକ ସ୍ତରରୁ ଧନ୍ଦାମୂଳକ ଓ ବୈଷୟିକ ଶିକ୍ଷାର ପ୍ରଚଳନ ହେବା ସହିତ ଶିକ୍ଷା ବଜେଟ୍ ବୃଦ୍ଧି ପାଇବା ଉଚିତ । ପ୍ରାଥମିକ ସ୍ତରରେ କଳାପଟା ଅଭିଯାନକୁ ଅଧିକ ସକ୍ରିୟ, ତାଲିମପ୍ରାପ୍ତ ଶିକ୍ଷକମାନଙ୍କର ନିଯୁକ୍ତି, ଶିକ୍ଷା ପ୍ରତି ଶିଶୁମାନଙ୍କର ଆଗ୍ରହ ବୃଦ୍ଧି ଏବଂ କର୍ମାଭିମୁଖୀ ଶିକ୍ଷା ପ୍ରତି ଅଧିକ ଗୁରୁତ୍ୱ ଦେବା ସଙ୍ଗେ ସଙ୍ଗେ ଜନସଚେତନତା ସୃଷ୍ଟି ଓ ଶିକ୍ଷାଧିକାରୀମାନଙ୍କର ଦାୟିତ୍ୱବୋଧ ବୃଦ୍ଧି ପାଇଁ ଆବଶ୍ୟକୀୟ ପଦକ୍ଷେପ ଗ୍ରହଣ କରାଗଲେ, ଜାତୀୟ ଶିକ୍ଷାନୀତି ବହୁପରିମାଣରେ ଜନମାନସର ଆଶା ଓ ଆକାଂକ୍ଷା ପୂରଣ କରିପାରିବ ।

ଉତ୍ତମ ଶିକ୍ଷାପଦ୍ଧତି ଦେଶର ମହତ୍ତ୍ୱ ବଢ଼ାଏ । ଶିକ୍ଷାକୁ ଜୀବନର ଏକ ବିଶିଷ୍ଟ ଅଙ୍ଗଭାବରେ ଗ୍ରହଣ କରିବା ଆବଶ୍ୟକ । ଶିକ୍ଷା ସଂସ୍କାର ନିମିତ୍ତ ବର୍ତ୍ତମାନ ସବୁସ୍ତରରେ ଉଦ୍ୟମ ହେବାର ଆବଶ୍ୟକତା ରହିଛି । ପ୍ରାଥମିକ ଶିକ୍ଷାଠାରୁ ବିଶ୍ୱବିଦ୍ୟାଳୟ ଶିକ୍ଷା ପର୍ଯ୍ୟନ୍ତ ପ୍ରତ୍ୟେକ ସ୍ତରରେ ଗୁଣାତ୍ମକ ପରିବର୍ତ୍ତନ ନ ହେଲେ ଶିକ୍ଷାର ପ୍ରକୃତ ଉଦ୍ଦେଶ୍ୟ ଫଳପ୍ରଦ ହୋଇପାରିବ ନାହିଁ । ବିଦେଶୀୟ ଚିନ୍ତାଧାରାକୁ ପରିବର୍ତ୍ତନ କରି ବର୍ତ୍ତମାନ ଭାରତ ପାଇଁ ଯେଉଁ ନୂତନ ଶିକ୍ଷାର ଆବଶ୍ୟକତା ରହିଛି, ସେଥିପ୍ରତି ବିଶେଷ ଦୃଷ୍ଟି ଦେବା ଆବଶ୍ୟକ ।

ଭାରତୀୟ ଶିକ୍ଷାପଦ୍ଧତି ଭାରତର ସଂସ୍କୃତି ଓ ଐତିହ୍ୟର ଯଥାର୍ଥ ପ୍ରତିଫଳନ ହେଲେ ଏବଂ ବୃତ୍ତିଗତ ଶିକ୍ଷା ମାଧ୍ୟମରେ କୌଳିକ ବୃତ୍ତିକୁ ପୁନରୁଜ୍ଜୀବିତ କରାଯାଇପାରିଲେ ଆମ ଶିକ୍ଷାନୀତିରେ ଯେଉଁ ସଙ୍କଟ ସୃଷ୍ଟି ହୋଇଛି, ତାହା ଅଚିରେ ଦୂରୀଭୂତ ହୋଇପାରିବ ।

●

## ପ୍ରାଥମିକ ଶିକ୍ଷା

**(ଉପକ୍ରମ, ପ୍ରାଥମିକ ଶିକ୍ଷାର ସ୍ୱରୂପ, ଭାରତ ତଥା ଓଡ଼ିଶାରେ ପ୍ରାଥମିକ ଶିକ୍ଷା, ପ୍ରାଥମିକ ଶିକ୍ଷାକୁ ସାର୍ବଜନୀନ କରିବା ପାଇଁ କେତେକ ପଦକ୍ଷେପ , ପ୍ରାଥମିକ ଶିକ୍ଷା ବିଫଳ ହେବାର କେତେକ କାରଣ, ନିରାକରଣ ଉପାୟ, ଉପସଂହାର)**

ଗ୍ରାମରେ ସାଧାରଣତଃ ଏକ ଢଗ ବୋଲାଯାଇଥାଏ – ''ଯାହା ହୋଇନି ବାଳକାଳେ, ତାହା ହେବନି କାଳେ କାଳେ ।'' ପ୍ରକୃତରେ ମଣିଷର ବାଲ୍ୟ ସମୟ ହିଁ ସମସ୍ତ ପ୍ରକାର ଶିକ୍ଷାର ମୂଳ ସୋପାନ । କଞ୍ଚା ମାଟିପିଣ୍ଡୁଳାଟିକୁ ଯେପରି ଚାହିଁଲେ, ସେମିତି ମୂର୍ତ୍ତିରେ ପରିଣତ କରିହେବ । ବାଲ୍ୟ ସମୟ ହିଁ ଭବିଷ୍ୟତ ମଣିଷର କଞ୍ଚା ମାଟିପିଣ୍ଡୁଳା । ପିଲାଟିକୁ ଯେପରି ଗଢ଼ାଯିବାକୁ ଚେଷ୍ଟା କରାଯିବ, ତା'ର ଭବିଷ୍ୟତ ସେହିପରି ଉଜ୍ଜ୍ୱଳମୟ ହେବ । ଏଥିପାଇଁ ସବୁ ଦେଶରେ ପ୍ରାଥମିକ ଶିକ୍ଷା ଉପରେ ଗୁରୁତ୍ୱ ପ୍ରଦାନ କରାଯାଇଛି । ଶିକ୍ଷାର ମୂଳସୋପାନ ପ୍ରାଥମିକ ଶିକ୍ଷା । ଏହିଠାରୁ ହିଁ ମଣିଷ ଜୀବନର ପ୍ରଥମ ଭିତ୍ତିପ୍ରସ୍ତର ସ୍ଥାପିତ ହୁଏ । ପ୍ରାଥମିକ ଶିକ୍ଷା ଗୁରୁତ୍ୱ ହରାଇଲେ ଉଚ୍ଚତର ଶିକ୍ଷା ବିପର୍ଯ୍ୟସ୍ତ ହୋଇଉଠେ । ଭାରତୀୟ ସମ୍ବିଧାନରେ ୪୫ ଧାରାରେ ପ୍ରାଥମିକ ଶିକ୍ଷାକୁ ସାର୍ବଜନୀନ କରିବା ଏବଂ ୬ ବର୍ଷ ଠାରୁ ୧୪ ବର୍ଷ ପର୍ଯ୍ୟନ୍ତ ସମସ୍ତଙ୍କୁ ମାଗଣା ଓ ବାଧ୍ୟତାମୂଳକ ଶିକ୍ଷା ପ୍ରଦାନ ଉପରେ ଗୁରୁତ୍ୱ ଦିଆଯାଇଛି । ସମ୍ବିଧାନର ୪୧ ଅନୁଚ୍ଛେଦରେ ଯେଉଁ ଅଧିକାର ଓ ଘୋଷଣା ଲିପିବଦ୍ଧ ହୋଇଛି, ତନ୍ମଧ୍ୟରେ ଶିକ୍ଷାର ଅଧିକାର ବିଷୟ ଉଲ୍ଲିଖିତ ରହିଛି । ଗୋଟିଏ ମଣିଷ ପାଇଁ ଗୋଟିଏ ଜାତିର ସାମଗ୍ରିକ ବିକାଶ ପାଇଁ ଶିକ୍ଷାର ଗୁରୁତ୍ୱ ସର୍ବାଧିକ । ମାତ୍ର ଉପଯୁକ୍ତ ସମୟରେ ପ୍ରାଥମିକ ଶିକ୍ଷାଲାଭ କରି ନପାରିଲେ, ମଣିଷର ବ୍ୟକ୍ତିତ୍ୱ ପରିସ୍ଫୁଟିତ ହେବା ଅସମ୍ଭବ । ଭାରତରେ ପ୍ରାଥମିକ ଶିକ୍ଷାର ଗୁଣାତ୍ମକ ଓ ପରିମାଣାତ୍ମକ ବିକାଶ ପାଇଁ ଯୋଜନା ପ୍ରସ୍ତୁତ ହୋଇଥିଲେ ହେଁ, ଉପଯୁକ୍ତ ଅଭିନିବେଶ ଓ ଆନ୍ତରିକତା ଅଭାବରୁ ତାହା ଏପର୍ଯ୍ୟନ୍ତ ସଫଳ ହୋଇପାରି ନାହିଁ । ପ୍ରାଥମିକ ଶିକ୍ଷା ଏକ ନ୍ୟାଯ୍ୟ ଅଧିକାର ହୋଇଥିଲେ ହେଁ, ତାହା ଏଯାବତ୍ ଫଳପ୍ରଦ ନ ହେବା ଗଭୀର ପରିତାପର ବିଷୟ ।

ପ୍ରତ୍ୟେକ ଶିକ୍ଷାର ମୂଳଭିତ୍ତି ପ୍ରାଥମିକ ଶିକ୍ଷା ହୋଇଥିବାରୁ ପାଶ୍ଚାତ୍ୟ ଦେଶମାନଙ୍କରେ ଏହି ଶିକ୍ଷା ପ୍ରତି ବିଶେଷ ଗୁରୁତ୍ୱ ଆରୋପ କରାଯାଇଥାଏ । ଶିକ୍ଷା ବଜେଟ୍‌ର ଅଧିକାଂଶ ଭାଗ ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ବ୍ୟୟ କରାଯାଇଥାଏ । ମାତ୍ର ଭାରତରେ, ଠିକ୍ ତା'ର ଓଲଟା । ବାଧ୍ୟତାମୂଳକ ପ୍ରାଥମିକ ଶିକ୍ଷା ସମ୍ପର୍କରେ ବାରମ୍ବାର କୁହାଯାଉଥିଲେ ମଧ୍ୟ କାର୍ଯ୍ୟକ୍ଷେତ୍ରରେ ଠିକ୍

ତା'ର ବିପରୀତ ଘଟୁଛି । ଚଞ୍ଚଳ ଓ ଚପଳମତି ପିଲାମାନଙ୍କୁ ଆଗ୍ରହୀ କରିବାକୁ ଯେଉଁ ଉଦ୍ୟମ ଆବଶ୍ୟକ, ଭାରତରେ ତାହା ଦେଖାଯାଏ ନାହିଁ । ସବୁଠାରୁ ଦୁଃଖର ବିଷୟ ପ୍ରାଥମିକ ଶିକ୍ଷା ପାଇଁ ଯେତିକି ଅଟକଳ କରାଯାଇଥାଏ, ତାହା ମଧ୍ୟ ଠିକ୍ ଭାବରେ ଖର୍ଚ୍ଚ କରାଯାଇପାରେ ନାହିଁ । ପ୍ରାଥମିକ ଶିକ୍ଷା ଉପରେ ଗୁରୁତ୍ୱ ଦିଆନଗଲେ, ସମ୍ପୂର୍ଣ୍ଣ ସାକ୍ଷରତା ଯୋଜନା ନିରର୍ଥକ ହୋଇପଡ଼ିବ । ଏବେ ମଧ୍ୟ ଭାରତରେ ବହୁ ସ୍ଥାନରେ ପ୍ରାଥମିକ ବିଦ୍ୟାଳୟ ନାହିଁ କିମ୍ବା ସେଠାରେ ଶିକ୍ଷକ ନାହାନ୍ତି । ଏତଦ୍ ବ୍ୟତୀତ ସରକାରୀ ରେକର୍ଡରେ ବିଦ୍ୟାଳୟ ଥିଲେ ମଧ୍ୟ ପ୍ରକୃତରେ ବିଦ୍ୟାଳୟ ପାଇଁ ଗୃହ ନାହିଁ । ଭାରତରେ ପ୍ରତିବର୍ଷ ପ୍ରାକୃତିକ ବିପର୍ଯ୍ୟୟ ଲାଗି ରହିଥିବାରୁ, ନଡ଼ାଛପର ଘର ବନ୍ୟା କିମ୍ବା ବାତ୍ୟା ଦ୍ୱାରା ନଷ୍ଟ ହୋଇଯାଉଛି । ଯତ୍ନ ଓ ଆନ୍ତରିକତାର ଅଭାବ ଯୋଗୁଁ ପ୍ରାଥମିକ ଶିକ୍ଷା କେବଳ ଧୂଆଁବାଣରେ ପରିଣତ ହୋଇଛି । ପ୍ରାଥମିକ ଶିକ୍ଷା ଏବଂ ସାକ୍ଷରତା ମିଶନକୁ ସାର୍ବଜନୀନ ଓ ପ୍ରସାରିତ କରିବା ପାଇଁ ସରକାରୀ ତଥା ବେସରକାରୀ ସ୍ତରରେ ଯେଉଁ ଉଦ୍ୟମ ହେବା କଥା, ତାହା ହୋଇପାରୁ ନାହିଁ । ଏକବିଂଶ ଶତାବ୍ଦୀ ସୁଦ୍ଧା ଭାରତରେ ସମ୍ପୂର୍ଣ୍ଣ ସାକ୍ଷରତା ପାଇଁ ଯେଉଁ ସମୟ ଧାର୍ଯ୍ୟ କରାଯାଇଥିଲା, ପ୍ରାଥମିକ ଶିକ୍ଷା ପ୍ରତି ଅବହେଳା କାରଣରୁ ତାହା ସମ୍ପୂର୍ଣ୍ଣ ହୋଇପାରି ନାହିଁ । ସର୍ବୋଚ୍ଚ ନ୍ୟାୟାଳୟ ''ମାଗଣା ଶିକ୍ଷା ଶିଶୁର ମୌଳିକ ଅଧିକାର'' ବୋଲି ଘୋଷଣା କରିଥିଲେ ହେଁ ତାହା ଏବେବି ସୁଦୂର ପରାହତ ବୋଲି ମନେ ହୁଏ । ଜନସାଧାରଣଙ୍କ ସହିତ ଶିକ୍ଷାର ଘନିଷ୍ଠ ସମ୍ବନ୍ଧ ସ୍ଥାପନ ନିମିତ୍ତ ମତପ୍ରକାଶ ପାଇଥିଲେ ହେଁ ବାସ୍ତବରେ ତାହା କାର୍ଯ୍ୟକାରୀ ହୋଇପାରି ନାହିଁ । ଅଭିଭାବକ, ଶିକ୍ଷକ ଓ ସରକାର – ପ୍ରତ୍ୟେକ ସଚେତନ ନ ହେଲେ ପ୍ରାଥମିକ ଶିକ୍ଷାକୁ ସାର୍ବଜନୀନ କରିବା ସମ୍ଭବ ନୁହେଁ । ଶିକ୍ଷା ବିଭାଗର କର୍ମକର୍ତ୍ତାଗଣ ଏ କ୍ଷେତ୍ରରେ ବିଶେଷ ତତ୍ପର ଥିଲା ପରି ମଧ୍ୟ ମନେ ହେଉ ନାହିଁ । ଆର୍ଥିକ ବିକାଶ ତଥା ଗଣଶିକ୍ଷା ମାଧ୍ୟମରେ ଯେଉଁ ଯୋଗସୂତ୍ର ରହିବା କଥା, ତାହା ରହିପାରୁ ନାହିଁ । ଶିକ୍ଷାର ବିକାଶ ଦ୍ୱାରା ଜାତୀୟ ସଂହତି ଦୃଢ଼ ହୁଏ, ବୋଧଶକ୍ତି ବୃଦ୍ଧି ପାଏ ଓ ରାଷ୍ଟ୍ରର ପ୍ରଗତି ତ୍ୱରାନ୍ୱିତ ହୁଏ । ଶିକ୍ଷାର ପ୍ରାଥମିକ ସୋପାନ ପ୍ରାଥମିକ ଶିକ୍ଷା ହୋଇଥିବାରୁ ଏହା ପ୍ରତି ସବୁ ସ୍ତରରେ ସଚେତନତା ସୃଷ୍ଟି ହେବା ଆବଶ୍ୟକ । ସମ୍ବିଧାନ ପ୍ରଣୟନ ସମୟରେ ପ୍ରାଥମିକ ଶିକ୍ଷା ଉପରେ ଯେଉଁ ପରିମାଣରେ ଗୁରୁତ୍ୱ ଦିଆଯାଉଥିଲା, ତାକୁ ସେହି ରୂପେ କାର୍ଯ୍ୟକାରୀ କରାଇଥିଲେ ଆଜି ପ୍ରାଥମିକ ଶିକ୍ଷା ଏପରି ଅବହେଳିତ ହୋଇନଥାନ୍ତା ।

ସମସ୍ତଙ୍କ ପାଇଁ ପ୍ରାଥମିକ ଶିକ୍ଷା-ସମ୍ବିଧାନରେ ଓ ସରକାରଙ୍କ ଦ୍ୱାରା ବାରମ୍ବାର ଘୋଷଣା କରାଯାଇଥିଲେ ହେଁ ଏବଂ ଏହି ଶିକ୍ଷା ବ୍ୟବସ୍ଥାର ସମୟସୀମା ବହୁବାର ଧାର୍ଯ୍ୟ କରାଯାଇଥିଲେ ମଧ୍ୟ ସ୍ୱାଧୀନତାର ୬୦ ବର୍ଷ ପରେ ସୁଦ୍ଧା ଭାରତର କେରଳ ବ୍ୟତୀତ ଅନ୍ୟ କୌଣସି ରାଜ୍ୟରେ ସମ୍ଭବ ହୋଇପାରି ନାହିଁ । ପରିସଂଖ୍ୟାନରୁ ଜଣାଯାଏ ଭାରତର ୬ ବର୍ଷରୁ ୧୪ ବର୍ଷ ମଧ୍ୟରେ ପ୍ରାୟ ଶତକଡ଼ା ୫୦ ଭାଗ ଶିଶୁ ବିଦ୍ୟାଳୟର ଦ୍ୱାର ମାଡ଼ି ନାହାନ୍ତି । ଅର୍ଥାତ୍ ବର୍ତ୍ତମାନ ୬ ରୁ ୧୪ ବର୍ଷ ମଧ୍ୟରେ ପ୍ରାୟ ୯ କୋଟିରୁ ଅଧିକ ପିଲାଙ୍କ ମଧ୍ୟରୁ ଅଧେ ପାଠଶାଳାକୁ ଯାଉନାହାନ୍ତି । ସରକାର ତାଙ୍କ ହିସାବରେ ପ୍ରକାଶ କରିଛନ୍ତି ପ୍ରାଥମିକ ଶିକ୍ଷାକୁ ମୌଳିକ ଶିକ୍ଷାର ମର୍ଯ୍ୟାଦା

ଦେଲେ ନବମ ପଞ୍ଚବାର୍ଷିକ ଯୋଜନାରେ ୪୦ ହଜାର କୋଟି ଟଙ୍କା ଖର୍ଚ୍ଚ ହେବ । ପୂର୍ବରୁ ଏହି ବାବଦରେ ସର୍ବମୋଟ ୯ ହଜାର କୋଟି ଟଙ୍କା ଖର୍ଚ୍ଚ ହେଉଥିଲା । ବର୍ତ୍ତମାନ ସରକାରଙ୍କ ଦ୍ୱାରା ଏତେ ପରିମାଣର ଟଙ୍କା ପ୍ରାଥମିକ ଶିକ୍ଷା ପାଇଁ ଖର୍ଚ୍ଚ କରିବା ସମ୍ଭବପର ନୁହେଁ । ଯେତିକି ଟଙ୍କା ଖର୍ଚ୍ଚ କରାଯାଉଛି, ତାହା ଠିକ୍ ବାଟରେ ମଧ୍ୟ ଖର୍ଚ୍ଚ କରାଯାଉ ନାହିଁ । ଶିକ୍ଷା କ୍ଷେତ୍ରରେ ଭାରତ ତା'ର ଜି.ଏନ୍. ପି. (Gross National Product) ବା ଜାତୀୟ ଆୟର ଶକତଡ଼ା ୩ ଦଶମିକ ୭ ଭାଗ ବ୍ୟୟ କରୁଛନ୍ତି । ଭାରତରେ ୧୯୬୧ ମସିହାରେ ନିରକ୍ଷରଙ୍କ ସଂଖ୍ୟା ୩୩ କୋଟି ୩୦ ଲକ୍ଷ ଥିବା ବେଳେ ୧୯୮୧ ମସିହାକୁ ଏହା ବୃଦ୍ଧି ପାଇ ୪୩ କୋଟି ୭୦ ଲକ୍ଷରେ ପହଞ୍ଚିଥିଲା । ଆଶ୍ଚର୍ଯ୍ୟର ବିଷୟ ଚୀନ୍, ବର୍ମା, ଇଣ୍ଡୋନେସିଆ, ଶ୍ରୀଲଙ୍କା ଆଦି ଦେଶ ଭାରତଠାରୁ କମ୍ ଅର୍ଥ ଖର୍ଚ୍ଚ କରୁଥିଲେ ମଧ୍ୟ ସେମାନଙ୍କର ସାକ୍ଷର ସଂଖ୍ୟା ଆମଠାରୁ ଅଧିକ । ଏହାର କାରଣ ସେମାନେ ସେମାନଙ୍କର ଶିକ୍ଷା ବଜେଟ୍‌କୁ ଉଚିତ ମାର୍ଗରେ ଖର୍ଚ୍ଚ କରୁଥିବା ସମୟରେ ଆମେ ତାହାର ଯଥାର୍ଥ ବିନିଯୋଗ କରିପାରୁ ନାହୁଁ । ଅନ୍ୟ ଦେଶମାନଙ୍କରେ ବଜେଟ୍‌ର ମୁଖ୍ୟ ଅଂଶ ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ବ୍ୟୟ କରାଯାଉଥିବା ସମୟରେ ଆମ ଦେଶର ବଜେଟ୍‌ର ମୁଖ୍ୟ ଅଂଶ ଉଚ୍ଚଶିକ୍ଷା କ୍ଷେତ୍ରରେ ଖର୍ଚ୍ଚ କରାଯାଇଥାଏ । ପ୍ରାଥମିକ ଶିକ୍ଷା ମୌଳିକ ଭିତ୍ତିଭୂମି ହୋଇଥିବାରୁ ପାଶ୍ଚାତ୍ୟ ଦେଶମାନଙ୍କରେ ଏହି ଶିକ୍ଷା ପ୍ରତି ଅଧିକ ଗୁରୁତ୍ୱ ଦିଆଯାଇଥାଏ । ଆମ ଦେଶରେ ଠିକ୍ ତା'ର ବିପରୀତ ଘଟୁଛି । ଓଡ଼ିଶାରେ ପ୍ରାଥମିକ ଶିକ୍ଷା ଅଧିକ ଅବହେଳିତ । ଓଡ଼ିଶାରେ ୧୯୮୮-୮୯ ମସିହାରେ ଶିକ୍ଷାକ୍ଷେତ୍ରରେ ୩୨୩ କୋଟି ଟଙ୍କା ଖର୍ଚ୍ଚ ହୋଇଥିବା ସମୟରେ ୧୯୯୬-୯୭ ରେ ୧୦୭୭ କୋଟି ଟଙ୍କା ଖର୍ଚ୍ଚ ହୋଇଛି । ମାତ୍ର ସାକ୍ଷରତା ସଂଖ୍ୟା ଅନୁରୂପ ବୃଦ୍ଧି ପାଇ ନାହିଁ । ଓଡ଼ିଶାରେ ପ୍ରାୟ ୬୬ ଭାଗ ଶିଶୁ ପ୍ରାଥମିକ ବିଦ୍ୟାଳୟ ସ୍ତରରେ ପାଠପଢ଼ା ବନ୍ଦ କରିଥାନ୍ତି । ସମୁଦାୟ ୫୬ ହଜାର ୬୫୬ ଟି ଆନୁଷ୍ଠାନିକ ଓ ଅଣଆନୁଷ୍ଠାନିକ ପ୍ରାଥମିକ ବିଦ୍ୟାଳୟ ଓଡ଼ିଶାରେ ଥିବା ସମୟରେ ୧ ଲକ୍ଷ ୨୫ ହଜାରରୁ କିଛି ଅଧିକ ଶିକ୍ଷକ ଶିକ୍ଷୟିତ୍ରୀମାନେ ଶିକ୍ଷାଦାନ ନିମିତ୍ତ ନିଯୁକ୍ତି ପାଇଛନ୍ତି । ୧୨ ହଜାର ୮୫୫ ଟି ଗ୍ରାମରେ ଏକ କିଲୋମିଟର ମଧ୍ୟରେ ପ୍ରାଥମିକ ବିଦ୍ୟାଳୟଟିଏ ନାହିଁ । ୨୦୩୧ ଟି ବିଦ୍ୟାଳୟ ମାତ୍ର ଗୋଟିଏ ବଖରା ଘର ମଧ୍ୟରେ ଚାଲିଛି । ୧୦୮୪ ଟି ପ୍ରାଥମିକ ବିଦ୍ୟାଳୟ ବିନା ଗୃହରେ ଚାଲିଛି । ଅଧିକାଂଶ ପ୍ରାଥମିକ ବିଦ୍ୟାଳୟ ଝାଟିମାଟି ଘର ହୋଇଥିବାରୁ ବର୍ଷା ଦିନେ, ବନ୍ୟା ସମୟରେ ସେଠାରେ ପାଠପଢ଼ା ହୋଇପାରେ ନାହିଁ । ଓଡ଼ିଶାରେ ପ୍ରଥମରୁ ପଞ୍ଚମ ଶ୍ରେଣୀ ମଧ୍ୟରେ ପ୍ରାୟ ୫୩ ଭାଗ ପିଲା ପାଠପଢ଼ା ଛାଡୁଛନ୍ତି । ଅନେକ ଶିକ୍ଷକ ପଦବୀ ଖାଲି ପଡ଼ିଥିଲେ ମଧ୍ୟ ସରକାର ନୂତନ ନିଯୁକ୍ତି ଦେଉନାହାନ୍ତି । ସବୁଠାରୁ ଆଶ୍ଚର୍ଯ୍ୟର ବିଷୟ ଗୋଟିଏ ପ୍ରାଥମିକ ବିଦ୍ୟାଳୟରେ ୨/୩ ଟି ଶ୍ରେଣୀ ଥିଲେ ମଧ୍ୟ ଜଣେ ଜଣେ ଶିକ୍ଷକ ରହିଛନ୍ତି । କୌଣସି କାରଣରୁ ସେହି ଶିକ୍ଷକଟି ଅନୁପସ୍ଥିତ ରହିଲେ ଶିକ୍ଷାଦାନ ବନ୍ଦ ହୋଇଯାଏ । ଶିକ୍ଷାର ମାନ ଦିନକୁ ଦିନ ହ୍ରାସ ପାଉଥିବାରୁ ଗୁଣାତ୍ମକ ଶିକ୍ଷା ସୁଦୂରପରାହତ ହୋଇପଡ଼ିଛି । ଭାରତରେ ପ୍ରାୟ ୩ ଲକ୍ଷ ଗ୍ରାମରେ ଆଦୌ ବିଦ୍ୟାଳୟ ନ ଥିବା ସମୟରେ ୪ କୋଟି ଶିଶୁ ବିଭିନ୍ନ କାର୍ଯ୍ୟରେ

ନିଯୁକ୍ତ ରହି ବିଦ୍ୟାଳୟ ଯାଇପାରୁ ନାହାନ୍ତି । ଏଥିରୁ ଭାରତର ପ୍ରାଥମିକ ଶିକ୍ଷା କିପରି ଅବହେଳିତ, ତାହା ସହଜରେ ଅନୁମାନ କରାଯାଇପାରେ ।

ପ୍ରାଥମିକ ଶିକ୍ଷାକୁ ସାର୍ବଜନୀନ କରିବା ପାଇଁ ଭାରତ ସରକାର କେତେକ ପଦକ୍ଷେପ ଗ୍ରହଣ କରିଛନ୍ତି । ୧୯୮୭ ମସିହାରେ ଜାତୀୟ ଶିକ୍ଷାନୀତି ପ୍ରଣୟନ କରାଯାଇ ସମସ୍ତଙ୍କୁ ପ୍ରାଥମିକ ଶିକ୍ଷା ପ୍ରଦାନ କରାଯିବା ଉପରେ ଗୁରୁତ୍ୱ ପ୍ରଦାନ କରାଯାଇଛି । ଏଥିରେ କୁହାଯାଇଛି ୧୯୯୫ ସୁଦ୍ଧା ୧୪ ବର୍ଷ ମଧ୍ୟରେ ସବୁପିଲାଙ୍କୁ ବାଧ୍ୟତାମୂଳକ ଭାବେ ମାଗଣାରେ ଶିକ୍ଷା ପ୍ରଦାନ କରାଯିବ । ସମ୍ବିଧାନର ୪୨ ଧାରା ଅନୁଯାୟୀ ୧୯୭୫ ମସିହା ମଧ୍ୟରେ ଏହି କାର୍ଯ୍ୟ ପୂରଣ କରିବାର ଥିଲା । କଳାପଟା ଅଭିଯାନ ଦ୍ୱାରା ଏହି ଲକ୍ଷ୍ୟ ପୂରଣ କରାଯାଇରିବ ବୋଲି ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିଲା । ଶିକ୍ଷଣ ପ୍ରଶିକ୍ଷଣ କାର୍ଯ୍ୟକୁ ଅଧିକ ସଂଗଠିତ କରିବା ପାଇଁ DIET ସୃଷ୍ଟି ହେଲା । ୧୯୮୮ ମେ ୫ ତାରିଖରୁ ଜାତୀୟ ସାକ୍ଷରତାମିଶନ୍ ଗଢ଼ାହେଲା । ଏଥିରେ ପ୍ରୌଢ଼ ଶିକ୍ଷା ଉପରେ ଗୁରୁତ୍ୱ ପ୍ରଦାନ କରାଗଲା । ସପ୍ତମ ଯୋଜନାରେ ଜାତୀୟ ସାକ୍ଷରତା ମିଶନ୍ ପାଇଁ ଛଅଶହ କୋଟି ଖର୍ଚ୍ଚ ହୋଇଥିବା ସମୟରେ କଳାପଟା ଅଭିଯାନ ପାଇଁ ଚାରିଶହ କୋଟି ଖର୍ଚ୍ଚ ହେବାପାଇଁ ବ୍ୟବସ୍ଥା କରାଗଲା । ୧୯୯୦ ମସିହାରେ ଗଠିତ ହୋଇଥିବା ରାମମୂର୍ତ୍ତି କମିଟି ୧୯୯୧ ମସିହାରେ ସଂସଦରେ ତା'ର ରିପୋର୍ଟ ଉପସ୍ଥାପନ କରିଥିଲେ । ଏଥିରେ ସରକାରଙ୍କ ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ଥିବା କେତେକ ତ୍ରୁଟି ସୂଚାଇ ଦିଆଯାଇଥିଲା । ଏହାପରେ ପୁଣି ସରକାର ଜନାର୍ଦ୍ଦନ ରେଡ଼ି କମିଟି ବସାଇଥିଲେ । ୧୯୯୦ ମସିହାରେ ଶିକ୍ଷା ସମ୍ବନ୍ଧୀୟ ବିଶ୍ୱ ସମ୍ମିଳନୀରେ ଏକବିଂଶ ଶତାବ୍ଦୀ ପ୍ରାରମ୍ଭ ସୁଦ୍ଧା ସମସ୍ତଙ୍କୁ ସାକ୍ଷର କରିବା ନିମିତ୍ତ ଆହ୍ୱାନ ଦିଆଯାଇଥିଲା । ୧୯୯୩ ମସିହା ଡିସେମ୍ବର ୧୬ ତାରିଖରେ ଦିଲ୍ଲୀଠାରେ ପୃଥିବୀର ୯ଟି ଜନବହୁଳ ରାଷ୍ଟ୍ର ଯଥା – ଚୀନ୍, ଭାରତ, ଇଣ୍ଡୋନେସିଆ, ପାକିସ୍ଥାନ, ବ୍ରାଜିଲ୍, ମେକ୍ସିକୋ, ଇଜିପ୍ଟ, ନାଇଜେରିଆ, ବାଂଲାଦେଶ ସମ୍ମିଳିତ ହୋଇ ଶିଖର ସମ୍ମିଳନୀର ଲକ୍ଷ୍ୟପୂରଣ ନିମିତ୍ତ ଏକମତ ହୋଇଥିଲେ । ସମଗ୍ର ପୃଥିବୀର ଏକ ତୃତୀୟାଂଶ ନିରକ୍ଷର ଭାରତରେ ରହିଛନ୍ତି । ସବୁଠାରୁ ଦୁଃଖର ବିଷୟ ହେଉଛି ପୃଥିବୀର ପ୍ରାୟ ୬ ରୁ ୧୪ ବର୍ଷ ମଧ୍ୟରେ ବିଦ୍ୟାଳୟକୁ ଯାଉନଥିବା ପିଲାଙ୍କ ମଧ୍ୟରୁ ଶତକଡ଼ା ୨୨ ଭାଗ ଭାରତରେ ଅଛନ୍ତି । ୧୯୯୨ ମସିହାରେ ଜାତୀୟ ଶିକ୍ଷାନୀତିର ସଂଶୋଧନ କରାଯାଇ ପାଠ୍ୟକ୍ରମରେ ଉପଯୋଗିତା ତଥା ଗୁଣାତ୍ମକ ମୂଲ୍ୟ ବୃଦ୍ଧି ଉପରେ ଗୁରୁତ୍ୱ ଦିଆଯାଇଛି । ଏହାଦ୍ୱାରା ରାଷ୍ଟ୍ରୀୟ ସ୍ତରରେ ସାକ୍ଷରତା ହାର ଶତକଡ଼ା ୫୪ ଭାଗ ଓ ଓଡ଼ିଶାରେ ଏହା ଶତକଡ଼ା ୫୦ ଭାଗରେ ପହଞ୍ଚିଛି ବୋଲି ବର୍ତ୍ତମାନ ଦାବି କରାଯାଉଛି । ୧୯୯୪ ମସିହାରେ ଭାରତ ସରକାରଙ୍କ ଦ୍ୱାରା ଗଠିତ ହୋଇଥିବା ଅରୁଣଘୋଷ କମିଟି ସରକାରଙ୍କର ଏହି ଘୋଷଣାରେ ସନ୍ଦେହ ପ୍ରକାଶ କରିଛନ୍ତି । ବର୍ତ୍ତମାନ ଆମ ଦେଶରେ ୭ ଲକ୍ଷରୁ ଅଧିକ ପ୍ରାଥମିକ ବିଦ୍ୟାଳୟ ଓ ୩ ଲକ୍ଷରୁ ଅଧିକ ଅଣଆନୁଷ୍ଠାନିକ ଶିକ୍ଷାକେନ୍ଦ୍ର ରହିଛି । ପ୍ରାଥମିକ ଶିକ୍ଷାକୁ ଗଣମୁଖୀ କରିବା ଉଦ୍ଦେଶ୍ୟରେ ଜିଲ୍ଲା ପ୍ରାଥମିକ ଶିକ୍ଷା କାର୍ଯ୍ୟକ୍ରମ (District Primary Education

Programme) ମାଧ୍ୟମରେ କେତେକ ପଦକ୍ଷେପ ଗ୍ରହଣ କରାଯାଇଛି । ଭାରତର ପ୍ରାୟ ୧୨୦ ଟି ଜିଲ୍ଲାରେ ଏହା କାର୍ଯ୍ୟକାରୀ ହୋଇଛି । ଏହା ସତ୍ତ୍ୱେ ଭାରତରେ ପ୍ରାଥମିକ ଶିକ୍ଷା ପ୍ରତି ଯେଉଁ ପରିମାଣରେ ଆଗ୍ରହ ପ୍ରକାଶ କରାଯିବା କଥା ତାହା କରାଯାଇପାରି ନାହିଁ । ଏକବିଂଶ ଶତାବ୍ଦୀର ପ୍ରାରମ୍ଭରେ ସରକାରଙ୍କ ଲକ୍ଷ୍ୟ କେତେକ ପରିମାଣରେ ସାକାର ହୋଇପାରିବ ତାହା ସନ୍ଦେହଜନକ ହୋଇପଡ଼ିଛି ।

ଭାରତରେ ପ୍ରାଥମିକ ଶିକ୍ଷା ସଫଳ ନ ହେବାର କେତେକ କାରଣ ରହିଛି । ପ୍ରଥମ କାରଣ ସ୍ୱରୂପ ଭାରତର ଆର୍ଥିକ ଅବସ୍ଥାକୁ ଗ୍ରହଣ କରାଯାଇପାରେ । ପ୍ରାଥମିକ ଶିକ୍ଷା ପାଇଁ ଯେଉଁ ପରିମାଣରେ ଅର୍ଥ ବଜେଟ୍‌ରେ ଗୃହୀତ ହେବା କଥା, ତାହା ହୋଇପାରୁ ନାହିଁ । ଯୋଜନାର ଅସଫଳତା ପ୍ରାଥମିକ ଶିକ୍ଷା ବିଫଳ ହେବାର ଅନ୍ୟତମ କାରଣ । ଯେଉଁମାନେ ଏହି ଦାୟିତ୍ୱରେ ରହୁଛନ୍ତି, ସେମାନେ ସେମାନଙ୍କର କାର୍ଯ୍ୟ ସୁଚାରୁ ରୂପେ ସମ୍ପାଦନ କରିପାରୁ ନାହାନ୍ତି । ବିଶେଷକରି ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ ଓ ଗ୍ରାମମାନଙ୍କରେ ପ୍ରତିଷ୍ଠିତ ପ୍ରାଥମିକ ବିଦ୍ୟାଳୟ କିପରି ଚାଲିଛି, ସେ ସମ୍ପର୍କରେ ଏହି ପଦାଧିକାରୀମାନେ ସାମାନ୍ୟ ମାତ୍ର ସଚେତନ ନୁହନ୍ତି । ସହର କିମ୍ବା ଆଖପାଖରେ ଥିବା ବିଦ୍ୟାଳୟମାନଙ୍କୁ ଏମାନେ କେବଳ ପରିଦର୍ଶନରେ ଯାଇଥାନ୍ତି । ସେଥିପାଇଁ ଗ୍ରାମାଞ୍ଚଳରେ ଗଢ଼ି ଉଠିଥିବା ବିଦ୍ୟାଳୟମାନଙ୍କର ମାନ ଧୀରେ ଧୀରେ କମିଯାଉଛି । ପୁନରାୟ ଯେତିକି ଅର୍ଥ ପ୍ରାଥମିକ ଶିକ୍ଷା ଉଦ୍ଦେଶ୍ୟରେ ଯୋଗାଇ ଦିଆଯାଉଛି, ବାଟମାରଣା ଯୋଗୁଁ ସମ୍ପୂର୍ଣ୍ଣ ଅର୍ଥ ମଧ୍ୟ ଏଥିରେ ଖର୍ଚ୍ଚ କରାଯାଇପାରୁ ନାହିଁ । ସରକାରୀ ହିସାବରେ ଯେଉଁ ପରିମାଣରେ ସାକ୍ଷରତା ହାର ହିସାବ ଦିଆଯାଉଛି, ବାସ୍ତବ କ୍ଷେତ୍ରରେ ତାହା ତା'ଠାରୁ ଯଥେଷ୍ଟ କମ୍ । ପ୍ରାଥମିକ ବିଦ୍ୟାଳୟମାନଙ୍କରେ ବହୁସଂଖ୍ୟକ ଶିକ୍ଷକ ଶିକ୍ଷୟିତ୍ରୀ ପଦବୀ ଖାଲି ପଡ଼ିଥିଲେ ହେଁ, ସେଗୁଡ଼ିକର ପୂରଣ ପାଇଁ ସରକାରୀ ସ୍ତରରେ ଆଦୌ ଉଦ୍ୟମ ହେଉ ନାହିଁ । ଏପରିକି ୩/୪ ଶ୍ରେଣୀ ପାଇଁ କେଉଁଠାରେ ଜଣେ ମାତ୍ର ଶିକ୍ଷକ ଥିବା ସମୟରେ ଅନ୍ୟ କେଉଁଠାରେ ଆଦୌ ଶିକ୍ଷକ ନାହାନ୍ତି । ଅଥଚ ହଜାର ହଜାର ସି.ଟି., ବି.ଇଡ୍. ପ୍ରାପ୍ତ ଯୋଗ୍ୟ ବ୍ୟକ୍ତି ବେକାର ହୋଇ ଘରେ ବସିଛନ୍ତି । ଆବଶ୍ୟକ ତୁଳନାରେ କମ୍ ଶିକ୍ଷକ ଥିଲେ ମଧ୍ୟ ସରକାର ଶିକ୍ଷକମାନଙ୍କ ଉପରେ ବହୁ କାର୍ଯ୍ୟ ନ୍ୟସ୍ତ କରିଥାନ୍ତି । ଜନଗଣନାଠାରୁ ଆରମ୍ଭ କରି ଗାଈଗୋରୁ, ଛେଳିମେଣ୍ଢା ହିସାବ, ନିର୍ବାଚନ କାର୍ଯ୍ୟ ଆଦି ସେମାନଙ୍କୁ କରିବାକୁ ପଡ଼େ । ଫଳରେ ସେମାନେ ଶିକ୍ଷାଦାନ କାର୍ଯ୍ୟରେ ନିଜକୁ ଯେଉଁ ପରିମାଣରେ ନିୟୋଜିତ କରିବାର କଥା, ତାହା କରିପାରନ୍ତି ନାହିଁ । ମଧ୍ୟାହ୍ନଭୋଜନ ଦ୍ୱାରା ପାଠପଢ଼ା ମଧ୍ୟ ବ୍ୟାହତ ହେଉଛି । ଜଣେ ଶିକ୍ଷକ ପ୍ରାୟ ୧୦ ଟା ଠାରୁ ୩ ଟା ପର୍ଯ୍ୟନ୍ତ ଏହି କାର୍ଯ୍ୟରେ ନିଯୁକ୍ତ ଥାନ୍ତି । ସେହି ଶିକ୍ଷକର କାର୍ଯ୍ୟ ବିଦ୍ୟାଳୟରେ ପୂରଣ ହୋଇପାରେ ନାହିଁ । ନିମ୍ନମାନର ଖାଦ୍ୟ ମଧ୍ୟ ଛାତ୍ରଛାତ୍ରୀଙ୍କ ସ୍ୱାର୍ଥ ପ୍ରତି ବିପଦ ସୃଷ୍ଟି କରୁଛି । ଅଧିକାଂଶ ଶିକ୍ଷକ ପାହାଡ଼ିଆ କିମ୍ବା ନିପଟ ମଫସଲ ଗ୍ରାମରେ ଶିକ୍ଷକତା କରିବାକୁ ଚାହାନ୍ତି ନାହିଁ । ଦୃଢ଼ କାର୍ଯ୍ୟାନୁଷ୍ଠାନ ଅଭାବରୁ ସେହି ଅଞ୍ଚଳରେ ବହୁ ଶିକ୍ଷକ ପଦବୀ ଖାଲି ରହିଛି । ତେଣୁ ପ୍ରାଥମିକ ଶିକ୍ଷାର ଗୁଣାତ୍ମକ ରୂପାୟନ ହୋଇପାରୁ ନାହିଁ । ଗରିବ ବା ଆଦିବାସୀ

ଜାତିର ପିଲାମାନଙ୍କୁ ବିଦ୍ୟାଳୟ ଶିକ୍ଷା ପ୍ରତି ଆକୃଷ୍ଟ କରାଯାଇପାରୁ ନ ଥିବାରୁ ଅଧିକାଂଶ ପିଲା ମଝିରୁ ପାଠ ଛାଡ଼ି ଦେଉଛନ୍ତି । ଅଭିଭାବକମାନେ ଶିଶୁମାନଙ୍କୁ ଚାକିରିରେ ରଖାଇ ବା ଅନ୍ୟ କୌଣସି କାର୍ଯ୍ୟରେ ନିଯୁକ୍ତ କରାଇ କିଛି ଅର୍ଥ ଲାଭ କରୁଥିବାରୁ, ଶିକ୍ଷା ପ୍ରତି ଆଦୌ ଆଗ୍ରହ ପ୍ରକାଶ କରୁନାହାନ୍ତି । ପୁନରାୟ ସବୁ ଗ୍ରାମରେ କିମ୍ବା ୧ କି.ମି. ମଧ୍ୟରେ ପ୍ରାଥମିକ ବିଦ୍ୟାଳୟ ନ ଥିବାରୁ ଇଚ୍ଛା ସତ୍ତ୍ୱେ ମଧ୍ୟ କୋମଳମତି କେତେକ ଶିଶୁ ଏତେ ବାଟ ଚାଲିଯାଇ ବିଦ୍ୟାଳୟରେ ଅଧ୍ୟୟନ କରିବା ସମ୍ଭବ ହେଉ ନାହିଁ । ସବୁଠାରୁ ଉଦ୍‌ବେଗର ବିଷୟ ହେଉଛି ବର୍ତ୍ତମାନ ପ୍ରାୟ ନଅକୋଟି ପିଲାଙ୍କ ମଧ୍ୟରୁ ପ୍ରାୟ ଚାରିକୋଟିରୁ ଅଧିକ ପିଲା ବିଦ୍ୟାଳୟକୁ ଯାଉନାହାନ୍ତି । ଯଦି ସରକାର ଅଧାପିଲାଙ୍କୁ ବିଦ୍ୟାଳୟ ଓ ଶିକ୍ଷକ ଯୋଗାଇବାକୁ ଅସମର୍ଥ, ସମସ୍ତ ପିଲା ବିଦ୍ୟାଳୟକୁ ଗଲେ କେଉଁପରି ଅବସ୍ଥା ସୃଷ୍ଟି ହେବ ସହଜରେ ଅନୁମେୟ । ଦୁର୍ନୀତି, ପ୍ରିୟାପ୍ରୀତି ତୋଷଣ ତଥା ରାଜନୈତିକ ଅସାଧୁତା କାରଣରୁ ମଧ୍ୟ ପ୍ରାଥମିକ ଶିକ୍ଷା ବହୁପରିମାଣରେ ବିପର୍ଯ୍ୟସ୍ତ ହୋଇପଡୁଛି । ଏବେଠାରୁ ସତର୍କ ନ ହେଲେ ଭାରତରେ ଯେଉଁ ପରିମାଣରେ ଜନସଂଖ୍ୟା ବୃଦ୍ଧି ପାଉଛି ଭବିଷ୍ୟତରେ ପ୍ରାଥମିକ ଶିକ୍ଷା ଯେ ଏକ ପ୍ରହସନରେ ପରିଣତ ହେବ ଏଥିରେ ଦ୍ୱିମତ ହେବାର କିଛି ନାହିଁ ।

ଭାରତ ପରି ଏକ ଜନବହୁଳ ରାଷ୍ଟ୍ରରେ ପ୍ରାଥମିକ ଶିକ୍ଷାକୁ ସମ୍ପୂର୍ଣ୍ଣ ସଫଳ କରିବା ହୁଏତ ସମ୍ଭବ ହୋଇ ନ ପାରେ । ତଥାପି କେତେକ ପଦକ୍ଷେପ ଗ୍ରହଣ କଲେ ଏହି ଅସୁବିଧା ବହୁପରିମାଣରେ ଦୂରୀଭୂତ ହୋଇପାରିବ । ପ୍ରାଥମିକ ଶିକ୍ଷାର ସଫଳତା କ୍ଷେତ୍ରରେ ରାଜନୈତିକ ଇଚ୍ଛାଶକ୍ତି ବହୁପରିମାଣରେ ସାହାଯ୍ୟ କରିପାରିବ । ଭୋଟ ରାଜନୀତିରେ ଅଶିକ୍ଷିତ ବ୍ୟକ୍ତିଙ୍କୁ ଯେଉଁ ପରିମାଣରେ ଠକା ଯାଇପାରିବ ଶିକ୍ଷିତ ବ୍ୟକ୍ତିଙ୍କୁ ସେହି ପରିମାଣରେ ଠକାଯାଇ ପାରିବ ନାହିଁ । ଶିକ୍ଷାଦ୍ୱାରା ଅଜ୍ଞତା ଓ ନିର୍ବୋଧତା ଦୂର ହୋଇଥାଏ । କେତେକ ଅସାଧୁ ରାଜନୀତିକ ଲୋକମାନଙ୍କୁ ଅନ୍ଧକାରରେ ରଖି ନିଜର ଫାଇଦା ଉଠାଇବାକୁ ଚାହୁଁଥିବାରୁ ପ୍ରାଥମିକ ଶିକ୍ଷାର ଯଥାର୍ଥ ବିକାଶ ହୋଇପାରୁ ନାହିଁ । ତେଣୁ ପ୍ରାଥମିକ ଶିକ୍ଷାକୁ ଭୋଟ ବ୍ୟାଙ୍କରେ ରାଜନୀତି ନ କରି ସାମୂହିକ ସ୍ୱାର୍ଥ ପାଇଁ ବ୍ୟୟ କରାଗଲେ, ଏହାର ବିକାଶକୁ କେହି ରୋଧ କରିପାରିବେ ନାହିଁ । ଶିକ୍ଷା ବିଭାଗର ଦାୟିତ୍ୱ ଯେଉଁମାନଙ୍କ ହସ୍ତରେ ରହିଛି, ସେମାନେ ଆନ୍ତରିକତାର ସହିତ ଏହାର ବିକାଶ ପାଇଁ ଧ୍ୟାନ ଦେଲେ, ପ୍ରାଥମିକ ଶିକ୍ଷା ନିଶ୍ଚିତ ଭାବରେ ସଫଳ ହୋଇପାରନ୍ତା । ଯେଉଁ ଅଧିକାରୀମାନେ ଦାୟିତ୍ୱରେ ତ୍ରୁଟି କରିବେ, ସରକାରୀ ସ୍ତରରେ ସେମାନଙ୍କ ବିରୋଧରେ କଠୋର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବା ଉଚିତ । ଖାଲିପଡ଼ିଥିବା ଶିକ୍ଷକ ପଦବୀ ଯଥାଶୀଘ୍ର ପୂରଣ କରାଯିବା ସଙ୍ଗେ ସଙ୍ଗେ ଯେଉଁ ଅଞ୍ଚଳରେ ପ୍ରାଥମିକ ବିଦ୍ୟାଳୟ ନାହିଁ ଯୁଦ୍ଧକାଳୀନ ଭିତ୍ତିରେ ସେଠାରେ ବିଦ୍ୟାଳୟ ସ୍ଥାପନ କରାଯିବା ଆବଶ୍ୟକ । ଝାଟିମାଟି ଘର ଉଠାଇଦେଇ ପିଲାମାନଙ୍କର ସୁବିଧା ପାଇଁ ପକ୍‌କା ଘର ତିଆରି କରିବା ଉଚିତ । ଏଥିପାଇଁ ଶିକ୍ଷା ବଜେଟ୍‌ରେ ଅଧିକ ପରିମାଣର ଅର୍ଥ ବରାଦ୍ କରିବା ଆବଶ୍ୟକ । ଯେଉଁ ଶିକ୍ଷକ ଦୀର୍ଘଦିନ ଧରି ନିପଟ ମଫସଲ ବା ଆଦିବାସୀ ଅଞ୍ଚଳରେ କାର୍ଯ୍ୟ କରୁଛନ୍ତି, ଅଗ୍ରାଧିକାର ଭିତ୍ତିରେ

ସେମାନଙ୍କୁ ସହର ଓ ସହରାଞ୍ଚଳରେ କାର୍ଯ୍ୟ କରୁଥିବା ଶିକ୍ଷକଙ୍କୁ ବାଧ୍ୟତାମୂଳକ ଭାବରେ ଏହି ଅଞ୍ଚଳକୁ ବଦଳି କରାଯିବା ଉଚିତ । ଯେଉଁମାନେ ଆଦେଶର ଖିଲାପ କରିବେ, ସେମାନଙ୍କ ବିରୋଧରେ କଠୋର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବା ବିଧେୟ । ସମସ୍ତ ପ୍ରାଥମିକ ବିଦ୍ୟାଳୟରେ ମଧ୍ୟାହ୍ନ ଭୋଜନର ଆବଶ୍ୟକତା ନାହିଁ । ଯେଉଁଠାରେ ସରକାର ଏହାର ଆବଶ୍ୟକତା ଅନୁଭବ କରୁଛନ୍ତି ସେଠାରେ ସ୍ୱତନ୍ତ୍ର ଜଣେ ବ୍ୟକ୍ତିଙ୍କୁ ଏହି ମଧ୍ୟାହ୍ନ ଭୋଜନ ଦାୟିତ୍ୱରେ ରଖନ୍ତୁ । ଏହାଦ୍ୱାରା ଜଣେ ଶିକ୍ଷକ ଏହି ଦାୟିତ୍ୱରୁ ଅବ୍ୟାହତ ପାଇ ଶିକ୍ଷାଦାନରେ ନିଜକୁ ନିୟୋଜିତ କରିପାରିବ । ମଧ୍ୟାହ୍ନ ଭୋଜନରେ ନିମ୍ନମାନର ଖାଦ୍ୟ ଯୋଗାଇ ଦିଆ ନଯାଇ ପୁଷ୍ଟିସାର ଖାଦ୍ୟର ବ୍ୟବସ୍ଥା ହେଉ । ଯେଉଁମାନଙ୍କ ରୋଜଗାର ଉପରେ ଲୋଭ କରି ଅଭିଭାବକମାନେ ନିଜ ପିଲାଙ୍କୁ ବିଦ୍ୟାଳୟକୁ ପଠାଉ ନାହାନ୍ତି, ପ୍ରଶାସନ ଓ ସରକାରୀ ସ୍ତରରେ ସେହି ଅଭିଭାବକମାନଙ୍କୁ ସଚେତନ କରାଇବାର ଉଦ୍ୟମ ହେବା.ସଙ୍ଗେ ସଙ୍ଗେ ଗରିବ ପିଲାମାନଙ୍କ ପ୍ରତି କିଛି ଆର୍ଥିକ ବ୍ୟବସ୍ଥା କରାଯିବା ଆବଶ୍ୟକ । ଶିକ୍ଷାର ମୂଲ୍ୟବୋଧ ଓ ଉପକାରିତା ସମ୍ପର୍କରେ ସେମାନଙ୍କୁ ବୁଝାଇବା ଆବଶ୍ୟକ । ମଝିରୁ ପାଠ ଛାଡୁଥିବା ପିଲାମାନଙ୍କ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରାଯିବା ଉଚିତ । ଆବଶ୍ୟକ ହେଲେ ସେମାନଙ୍କ ଅଭିଭାବକମାନଙ୍କୁ ସାମାନ୍ୟ ଅର୍ଥ ସହାୟତା ଦେବା ବିଧେୟ । ରାଷ୍ଟ୍ରୀୟ ସାକ୍ଷରତା ମିଶନ ପରିବର୍ତ୍ତେ ଜାତୀୟ ପ୍ରାଥମିକ ଶିକ୍ଷାମିଶନ ଗଠନ କରାଗଲେ ଏଥିରୁ ଅଧିକ ସୁଫଳ ମିଳିବ । ସ୍ୱେଚ୍ଛାସେବୀ ସଙ୍ଗଠନଗୁଡ଼ିକ ଏ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିପାରିବେ । ସରକାର, ସ୍ୱେଚ୍ଛାସେବୀ ସଙ୍ଗଠନ ଓ ଜନସାଧାରଣ ମିଳିତ ଭାବରେ ସହଯୋଗମୂଳକ ମନୋବୃତ୍ତି ନେଇ କାର୍ଯ୍ୟ କଲେ ଭାରତବର୍ଷରେ ପ୍ରାଥମିକ ଶିକ୍ଷା ନିଶ୍ଚିତ ଭାବରେ ସଫଳ ହୋଇପାରିବ ।

ଶିକ୍ଷା ମାନବର ଅଧିକାର । ଏହାକୁ ସଫଳ କରିବା ପ୍ରତ୍ୟେକ ମଣିଷର ନୈତିକ କର୍ତ୍ତବ୍ୟ । ଶିକ୍ଷା ଦ୍ୱାରା ମଣିଷର ସାମାଜିକ କୁସଂସ୍କାର ଓ ଅନ୍ଧବିଶ୍ୱାସ ଦୂର ହୋଇଥାଏ । ସଚେତନ ନାଗରିକ ଭାବରେ ରାଷ୍ଟ୍ରର ସ୍ୱାର୍ଥ ନିମିତ୍ତ ସେ କାର୍ଯ୍ୟ କରିବାକୁ ଆଗ୍ରହ ପ୍ରକାଶ କରେ । ଜାତୀୟ ସଂହତି ଶିକ୍ଷାର ବିକାଶ ଯୋଗୁଁ ସମ୍ଭବ ହୋଇଥାଏ । ଦେଶର ଅଜ୍ଞତା ଓ ନିର୍ବୋଧତା ଦୂର କରିବା କ୍ଷେତ୍ରରେ ଏହାର ଅବଦାନ ସ୍ୱୀକାର୍ଯ୍ୟ । ସାମାଜିକ ଶ୍ରେଣୀ ସଂଘର୍ଷ ବହୁପରିମାଣରେ ହ୍ରାସ ପାଇଥାଏ । ତେଣୁ ଶିକ୍ଷାର ବିକାଶ ଯେ କୌଣସି ରାଷ୍ଟ୍ରର ଏକ ନୈତିକ କର୍ତ୍ତବ୍ୟ ହେବା ଆବଶ୍ୟକ । ସମ୍ବିଧାନରେ ପ୍ରାଥମିକ ଶିକ୍ଷାକୁ ସାର୍ବଜନୀନ କରିବା ନିମିତ୍ତ ଆମେ ଯେଉଁ ଅଙ୍ଗୀକାରବଦ୍ଧ ଥିଲୁ, ସେ ସମୟ ଅତିକ୍ରମ କରିଯାଇଛି । ତା ସତ୍ତ୍ୱେ ମଧ୍ୟ ବର୍ତ୍ତମାନଠାରୁ ଆନ୍ତରିକତାର ସହିତ ସବୁସ୍ତରରେ ଉଦ୍ୟମ ଜାରି ରହିଲେ ବହୁ ବାଧାବିଘ୍ନ ଅପସରିଯିବ ଓ ପ୍ରାଥମିକ ଶିକ୍ଷା ସାର୍ବଜନୀନ ଶିକ୍ଷା ଭାବରେ ଗୃହୀତ ହୋଇପାରିବ ।



# ଭାରତରେ ମାଧମିକ ଶିକ୍ଷା

(ଉପକ୍ରମ, ମାଧମିକ ଶିକ୍ଷାର ଉଦ୍ଦେଶ୍ୟ, ବିଭିନ୍ନ କମିଶନ ଓ ମାଧମିକ ଶିକ୍ଷା, ସ୍ୱାଧୀନତା ପୂର୍ବରୁ ଭାରତରେ ମାଧମିକ ଶିକ୍ଷା, ସ୍ୱାଧୀନୋତ୍ତର କାଳରେ ମାଧମିକ ଶିକ୍ଷାର ସମସ୍ୟା ଓ ସମାଧାନ, ଉପସଂହାର)

ଶିକ୍ଷାକ୍ଷେତ୍ରରେ ମାଧମିକ ଶିକ୍ଷାର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଉଚ୍ଚତର ଶିକ୍ଷା ଏବଂ ପ୍ରାଥମିକ ଶିକ୍ଷା ମଧ୍ୟରେ ଏହା ଏକ ସଂଯୋଗକାରୀ ସେତୁ । ବିଶ୍ୱବିଦ୍ୟାଳୟ ଶିକ୍ଷା ନିମିତ୍ତ ଏହା ଭିତ୍ତି ସ୍ଥାପନ କରୁଥିବାରୁ ଏହାର ଗୁଣାତ୍ମକ ବିକାଶ ନିତାନ୍ତ ଅପରିହାର୍ଯ୍ୟ । ଅତୀତ ଭାରତର ପ୍ରାଚୀନ ଶିକ୍ଷାପଦ୍ଧତିରେ ମାଧମିକ ଶିକ୍ଷା ନ ଥିଲା । ମୁଖ୍ୟତଃ ଇଂରେଜମାନଙ୍କ ଦ୍ୱାରା ଭାରତ ଅଧିକୃତ ହେବାପରେ ଏ ପ୍ରକାର ଶିକ୍ଷାର ପ୍ରଚଳନ ହୋଇଛି । ବୟସ ଅନୁପାତରେ ମାଧମିକ ଶିକ୍ଷା ଲାଭ କରୁଥିବା ଛାତ୍ରଛାତ୍ରୀ ଏକ ସନ୍ଧି ସମୟରେ ଉପନୀତ ହୋଇଥିବାରୁ, ଏଥିପାଇଁ ବିଶେଷ ଦୃଷ୍ଟିପ୍ରଦାନର ଆବଶ୍ୟକତା ରହିଛି । ଯୌବନ ସମୟ ହିଁ ମଣିଷ ଜୀବନର ସର୍ବଶ୍ରେଷ୍ଠ ସମୟ । ଉପଯୁକ୍ତ ତତ୍ତ୍ୱାବଧାନ ଅଭାବରୁ ଏହି ସମୟରେ ବହୁ ପିଲା ପଥଭ୍ରଷ୍ଟ ହୋଇଥାନ୍ତି । ପୁନରାୟ ଯଥାର୍ଥ ତତ୍ତ୍ୱାବଧାନଯୋଗୁଁ ବହୁ ଛାତ୍ରଛାତ୍ରୀ ଏହି ସମୟରୁ ହିଁ ଭବିଷ୍ୟତ ପାଇଁ ନୂତନ ସରଣୀ ପ୍ରସ୍ତୁତ କରିବାକୁ ସମର୍ଥ ହୋଇଥାନ୍ତି । ଏଥିପାଇଁ ମାଧମିକ ଶିକ୍ଷାର ଗୁଣାତ୍ମକ ବିକାଶ ବାଞ୍ଛନୀୟ ।

ସମାଜ ଜୀବନକୁ ସୁସ୍ଥ ସୁନ୍ଦର କରି ଗଢ଼ିବା କ୍ଷେତ୍ରରେ ମାଧମିକ ଶିକ୍ଷାର ଗୁରୁତ୍ୱପୂର୍ଣ୍ଣ ଭୂମିକା ସର୍ବଦା ସ୍ୱୀକୃତ । ଉଚ୍ଚତର ଶିକ୍ଷା ନିମିତ୍ତ ଜୀବନକୁ ପ୍ରସ୍ତୁତ କରୁଥିବାରୁ ଏହା ଏକ ଜୀବନଗଢ଼ା କାରଖାନା । ପ୍ରୌଢ଼ଶିକ୍ଷା ଏବଂ ପ୍ରାଥମିକ ଶିକ୍ଷା ପାଇଁ ମାଧମିକ ଶିକ୍ଷା ହିଁ ଶିକ୍ଷକ ଯୋଗାଇ ଦେଇଥାଏ । ଯେ କୌଣସି ଦେଶରେ ମାଧମିକ ସ୍ତରର ଶିକ୍ଷାକୁ ଅଧିକ ଗୁରୁତ୍ୱ ପ୍ରଦାନ କରାଯାଇଥାଏ । କାରଣ ଏହିଠାରୁ ହିଁ ବହୁ ଛାତ୍ର ସେମାନଙ୍କ ଅଧ୍ୟୟନ ଶେଷ କରି ଜୀବନ ସଂଗ୍ରାମ ପାଇଁ ନିଜକୁ ପ୍ରସ୍ତୁତ କରିଥାନ୍ତି । ଦେଶକୁ ଗଠନ କରିବାର ଦାୟିତ୍ୱ ଗ୍ରହଣ କରିଥାନ୍ତି । ଉଚ୍ଚତର ଶିକ୍ଷାଲାଭ କରୁଥିବା ଛାତ୍ରଙ୍କ ଅପେକ୍ଷା ମାଧମିକ ଶିକ୍ଷାଲାଭ କରୁଥିବା ଛାତ୍ରଙ୍କ ସଂଖ୍ୟା ଅଧିକ ହୋଇଥିବାରୁ ବିଭିନ୍ନ କ୍ଷେତ୍ରରେ ନିଯୁକ୍ତି ଲାଭ କରି ଦେଶର ସର୍ବାଙ୍ଗୀନ ବିକାଶ ଦିଗରେ ମନୋନିବେଶ କରିଥାନ୍ତି । ପୁନରାୟ ଆଧୁନିକ ଶିକ୍ଷାର ପ୍ରବେଶ ଦ୍ୱାର ମାଧମିକ ଶିକ୍ଷା । ଜୀବନ ଗଠନର ପ୍ରଥମ ପାବଚ୍ଛ ଏବଂ ସମାଜକୁ ବୁଝିବାର ବୟସ ଏହି ସମୟରୁ ହିଁ ଆରମ୍ଭ ହେଉଥିବାରୁ ଏହି ଶିକ୍ଷାର ଗୁଣାତ୍ମକ ବିକାଶ ଦିଗରେ ପଦକ୍ଷେପ ଗ୍ରହଣ କରିବା ଆବଶ୍ୟକ ।

ପ୍ରଥମେ ଭାରତରେ ମିଶନାରୀମାନଙ୍କ ଉଦ୍ୟମରେ ମାଧମିକ ସ୍କୁଲ ସ୍ଥାପନ ହୁଏ । ଅଷ୍ଟାଦଶ ଶତକର ଶେଷଭାଗରେ ଏହି ଶିକ୍ଷାର ମୂଳଭିତ୍ତି ସ୍ଥାପିତ ହୁଏ ଏବଂ ଉନବିଂଶ ଶତକରେ ଏହା ବିକାଶଲାଭ କରେ । ଇଂରେଜମାନେ ମାଧମିକ ଶିକ୍ଷା ପ୍ରଚଳନକୁ ଗୁରୁତ୍ୱ ଦେବାର ଏକମାତ୍ର କାରଣ ହେଉଛି ଭାରତରେ ଇଂରାଜୀ ଶିକ୍ଷାର ବିସ୍ତାର । ପ୍ରଥମେ ଲର୍ଡ଼ ମାକ୍‌ଲେ ୧୮୩୫

ମସିହାରେ ଭାରତରେ ମାଧ୍ୟମିକ ଶିକ୍ଷାର ବିସ୍ତାର ସମ୍ବନ୍ଧରେ ଏକ ରିପୋର୍ଟ ପ୍ରଦାନ କରିଥିଲେ । ଏଥିରେ ସେ ଇଂରାଜୀ ଶିକ୍ଷାର ବିସ୍ତାର ନିମିତ୍ତ ସୁପାରିସ କରିଥିଲେ ଏବଂ ତତ୍କାଳୀନ ଭାରତର ଭାଇସରାୟ ଲର୍ଡ଼ ଉଇଲିୟମ ବେଣ୍ଟିଙ୍କ୍ ତାହା ଗ୍ରହଣ କରି ମାଧ୍ୟମିକ ଶିକ୍ଷାର ବିସ୍ତାର ପାଇଁ ସରକାରୀ ସ୍ତରରେ ଅର୍ଥର ବରାଦ କରିଥିଲେ । ଉଡ଼ସ୍ ଡେସପାଚରେ ମଧ୍ୟ ମାଧ୍ୟମିକ ଶିକ୍ଷାର ବିସ୍ତାର ଉପରେ ଗୁରୁତ୍ୱ ଆରୋପ କରାଯାଇଥିଲା । ଏଥିରେ ଅନୁଦାନ ନିମିତ୍ତ ବ୍ୟବସ୍ଥା କରାଯାଇଥିବାରୁ ପରବର୍ତ୍ତୀ କାଳରେ ମାଧ୍ୟମିକ ଶିକ୍ଷାର ବିସ୍ତାର କ୍ଷେତ୍ରରେ ସହାୟତା କରିଥିଲା । ଏହି ସମୟରେ ମାଧ୍ୟମିକ ଶିକ୍ଷାକ୍ଷେତ୍ରରେ କେତେକ ତ୍ରୁଟି ପରିଲକ୍ଷିତ ହେବାରୁ ହଣ୍ଟରଙ୍କ ଅଧ୍ୟକ୍ଷତାରେ ଏକ କମିଶନ ଗଠନ କରାଯାଇଥିଲା । ୧୮୮୨ ମସିହାରେ ଏହି କମିଶନ ପରାମର୍ଶ ଦେଇ ମାଧ୍ୟମିକ ଶିକ୍ଷାକୁ ଦୁଇଭାଗରେ ବିଭକ୍ତ କରିବାକୁ କହିଥିଲେ । ଯେଉଁମାନେ ଉଚ୍ଚତର ଶିକ୍ଷାଲାଭରେ ଆଗ୍ରହୀ ସେମାନଙ୍କୁ 'କ' ଶ୍ରେଣୀଭୁକ୍ତ ଓ ଯେଉଁମାନେ ମାଧ୍ୟମିକ ସ୍ତରରେ ଶିକ୍ଷା ସମାପ୍ତ କରି ବୃତ୍ତି ବା ଚାକିରି କ୍ଷେତ୍ରରେ ପ୍ରବେଶ କରିବାକୁ ଇଚ୍ଛୁକ ସେମାନଙ୍କୁ 'ଖ' ଶ୍ରେଣୀଭୁକ୍ତ କରାଯାଇଥିଲା । ହଣ୍ଟର କମିଶନ୍‌ଙ୍କ ସୁପାରିସ ଉପରେ ସରକାର କୌଣସି ଗୁରୁତ୍ୱ ନ ଦେବାରୁ ଏହା କାର୍ଯ୍ୟକାରୀ ହୋଇ ପାରିନ ଥିଲା ଏବଂ ପୂର୍ବ ନୀତି ଅନୁଯାୟୀ ମାଧ୍ୟମିକ ଶିକ୍ଷାର ବିସ୍ତାର ହୋଇଥିଲା । ୧୯୦୨ ମସିହା ବେଳକୁ ଭାରତରେ ମାଧ୍ୟମିକ ବିଦ୍ୟାଳୟର ସଂଖ୍ୟା ୫୧୨୪ରେ ପହଞ୍ଚିଥିଲା । ୧୯୦୪ ମସିହାରେ ଭାରତୀୟ ବିଶ୍ୱବିଦ୍ୟାଳୟ ଆଇନ୍ ପ୍ରବର୍ତ୍ତନ କରାଗଲା । ଏହି ଆଇନ ଅନୁଯାୟୀ ଯେଉଁମାନେ ମାଟ୍ରିକୁଲେସନ୍ ପରୀକ୍ଷା ଦେବାକୁ ଚାହାନ୍ତି, ସେମାନେ ବିଶ୍ୱବିଦ୍ୟାଳୟଠାରୁ ଅନୁମତି ଆଣିବେ । ଏହାଦ୍ୱାରା କେତେକ ମାଧ୍ୟମିକ ବିଦ୍ୟାଳୟ ସମ୍ପୂର୍ଣ୍ଣ ବନ୍ଦ ହୋଇଗଲା ଓ ଆଉ କେତେକ ନୂତନ ବିଦ୍ୟାଳୟ ଗଢ଼ିଉଠିଲା । ୧୯୧୭ ମସିହାରେ କଲିକତା ବିଶ୍ୱବିଦ୍ୟାଳୟ କମିଶନ ମତପ୍ରଦାନ କରି କହିଥିଲେ, ଯେପର୍ଯ୍ୟନ୍ତ ମାଧ୍ୟମିକ ଶିକ୍ଷାର ତ୍ରୁଟିକୁ ଦୂରୀକରଣ କରାଯାଇ ନ ପାରିଛି ଏବଂ ଏହାକୁ ରୂପରେଖ ପ୍ରଦାନ କରାନଯାଇଛି, ସେପର୍ଯ୍ୟନ୍ତ ବିଶ୍ୱବିଦ୍ୟାଳୟ ଶିକ୍ଷାରେ କୌଣସି ଗୁଣାତ୍ମକ ପରିବର୍ତ୍ତନ ହୋଇପାରିବ ନାହିଁ । ମାଧ୍ୟମିକ ଶିକ୍ଷାକୁ ଅଧିକ ସଙ୍ଗଠିତ ଓ ଗୁଣାତ୍ମକ କରିବା ନିମିତ୍ତ ଏହି କମିଶନ ପ୍ରତ୍ୟେକ ପ୍ରଦେଶରେ ଏକ ମାଧ୍ୟମିକ ବୋର୍ଡ଼ ଗଠନ କରିବାକୁ ପରାମର୍ଶ ଦେଇଥିଲେ । ୧୯୨୯ ମସିହାରେ ହରତୋଗ କମିଟି ମାଧ୍ୟମିକ ଶିକ୍ଷାର ପ୍ରସାର ଉପରେ ଗୁରୁତ୍ୱ ଦେଇଥିଲେ । କାରଣ ଅଧିକ ସାଧାରଣ ସ୍ତରର ପିଲା ଏହି ଶିକ୍ଷା ପାଇଥାନ୍ତି । ମାଟ୍ରିକୁଲେସନ୍ ପରୀକ୍ଷାରେ ଛାତ୍ରମାନଙ୍କର ଅଧିକ ପରିମାଣରେ ବିଫଳତା ଯୋଗୁଁ ଏହା ଜନପ୍ରିୟ ହୋଇପାରୁ ନ ଥିବାରୁ କମିଟି ଉଦ୍‌ବେଗ ପ୍ରକାଶ କରିଥିଲା । ୧୯୩୬-୩୭ ମସିହାରେ ଆବୋଟ୍ ଏବଂ ଉଡ୍ ସେମାନଙ୍କ ରିପୋର୍ଟରେ ସୁପାରିସ କରି କହିଥିଲେ ଉଚ୍ଚ ମାଧ୍ୟମିକ ବିଦ୍ୟାଳୟ ପର୍ଯ୍ୟନ୍ତ ଭାରତୀୟ ଭାଷା ଶିକ୍ଷାଦାନର ମାଧ୍ୟମ ହେବା ଆବଶ୍ୟକ । ୧୯୪୪ର ସରଜେଣ୍ଟ ବିବରଣୀରେ ମାଧ୍ୟମିକ ବିଦ୍ୟାଳୟର ଶିକ୍ଷାଦାନ ସମୟ ୬ବର୍ଷ ହେବାକୁ କୁହାଯାଇଥିଲା । ୧୧ ବର୍ଷରୁ କମ୍ କୌଣସି ପିଲା ମାଧ୍ୟମିକ ବିଦ୍ୟାଳୟରେ ପ୍ରବେଶ ପାଇଁ ଅନୁମତି ନ ଦିଆଯିବାକୁ ସରକାରଙ୍କୁ ସୁପାରିସ କରାଯାଇଥିଲା । ଏହି କମିଟି ମାଧ୍ୟମିକ ଶିକ୍ଷାର ଗୁଣାତ୍ମକ ବିକାଶ ନିମିତ୍ତ କେତେକ

ସୁଚିନ୍ତିତ ପରାମର୍ଶ ଦେଇଥିଲେ । ବିଭିନ୍ନ କମିଶନ ଓ କମିଟିର ସୁପାରିସ ସତ୍ତ୍ୱେ ମାଧ୍ୟମିକ ଶିକ୍ଷା ଉପରେ କୌଣସି ନିୟନ୍ତ୍ରଣ ଜାରି ହୋଇ ପାରିନ ଥିଲା । ୧୯୧୬-୧୭ ମସିହାରେ ମାଧ୍ୟମିକ ବିଦ୍ୟାଳୟର ସଂଖ୍ୟା ୧୯୫୩ ଥିବା ସମୟରେ ୧୯୪୭-୪୮ ମସିହା ବେଳକୁ ଏହା ୪୮୮୩ରେ ପହଞ୍ଚିଥିଲା । ସ୍ୱାଧୀନତା ପରେ ମଧ୍ୟ ମାଧ୍ୟମିକ ଶିକ୍ଷାରେ ସଂସ୍କାର ଆଣିବା ନିମିତ୍ତ କେତେକ କମିଶନ ଓ କମିଟି ଗଠନ କରାଯାଇଥିଲା । ଏହି କମିଶନ ଓ କମିଟିମାନଙ୍କ ମଧ୍ୟରେ ୧୯୪୮ର ତାରାଚାନ୍ଦ କମିଟି, ବିଶ୍ୱବିଦ୍ୟାଳୟ ଶିକ୍ଷା କମିଶନ ୧୯୪୮-୪୯, ମାଧ୍ୟମିକ ଶିକ୍ଷା କମିଶନ ୧୯୫୨-୫୩ ଆଦି ପ୍ରଧାନ ।

ସ୍ୱାଧୀନତା ପୂର୍ବବର୍ତ୍ତୀ ଭାରତରେ ମାଧ୍ୟମିକ ଶିକ୍ଷା ବିସ୍ତାରର ପ୍ରଧାନ ଉଦ୍ଦେଶ୍ୟ ଥିଲା ଇଂରାଜୀ ଶିକ୍ଷା ବିସ୍ତାର ଓ ପ୍ରଶାସନରେ ସହାୟତା କରିବା ନିମିତ୍ତ କେତେକ ବେତନଭୋଗୀ କର୍ମଚାରୀଙ୍କର ସୃଷ୍ଟି । ଯଦିଓ ମାଧ୍ୟମିକ ଶିକ୍ଷାର ଗୁଣାତ୍ମକ ମୂଲ୍ୟବୃଦ୍ଧି ନିମିତ୍ତ ବହୁ କମିଶନ ଓ କମିଟି ଗଠନ ହୋଇଥିଲା ଏବଂ ସେମାନଙ୍କର ବିଭିନ୍ନ ସୁପାରିସ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା, ତଥାପି ଇଂରେଜ ସରକାର ସେମାନଙ୍କ ସୁପାରିସ ପ୍ରତି ବିଶେଷ ଗୁରୁତ୍ୱ ଆରୋପ କରି ନ ଥିଲେ । ଫଳରେ ସରକାରୀ ଓ ଘରୋଇ ସ୍ତରରେ ଅନେକ ମାଧ୍ୟମିକ ବିଦ୍ୟାଳୟ ସୃଷ୍ଟି ହୋଇଥିଲା । ଏହି ବିଦ୍ୟାଳୟଗୁଡ଼ିକ ଗୁଣାତ୍ମକ ଶିକ୍ଷାର ବିସ୍ତାର ନିମିତ୍ତ ବିଶେଷ ଗୁରୁତ୍ୱ ଦେଇ ନ ଥିଲା । ସମୟକ୍ରମେ ସରକାରଙ୍କ କୃପାଦୃଷ୍ଟି ଲାଭ କରି ନ ପାରିବାରୁ କେତେକ ବିଦ୍ୟାଳୟ ନିଜର ସତ୍ତା ହରାଇଥିଲା ଓ ତା' ସ୍ଥାନରେ ସରକାରଙ୍କ ପ୍ରୋତ୍ସାହନରେ ଅନ୍ୟ କେତେକ ବିଦ୍ୟାଳୟ ଗଢ଼ି ଉଠିଥିଲା । ଅବଶ୍ୟ ମାଧ୍ୟମିକ ଶିକ୍ଷା ପ୍ରତି ଧୀରେ ଧୀରେ ଜନସଚେତନତା ବୃଦ୍ଧି ପାଇଥିବାରୁ ଆଶାଜନକ ଭାବେ ଛାତ୍ରସଂଖ୍ୟା ମଧ୍ୟ ବୃଦ୍ଧି ପାଇଥିଲା । ତେଣୁ ସ୍ୱାଧୀନତା ପୂର୍ବରୁ ଭାରତରେ ଏକ ମଧ୍ୟବିତ୍ତ ଶ୍ରେଣୀ ସୃଷ୍ଟିଲାଭ କରିପାରିଥିଲେ । ଏ କ୍ଷେତ୍ରରେ ଲର୍ଡ଼ ମାକଲେ ଏବଂ ଲର୍ଡ଼ ହାର୍ଡ଼ିଞ୍ଜଙ୍କ ପଦକ୍ଷେପ ସର୍ବାଦୌ ସ୍ମରଣୀୟ । ସେମାନଙ୍କ ପ୍ରଚେଷ୍ଟା ଯୋଗୁଁ ଭାରତର ପାରମ୍ପରିକ ବିଦ୍ୟାଳୟ ଏକପ୍ରକାର ଲୋପ ପାଇଥିଲା କହିଲେ ଆଦୌ ଭୁଲ ହେବ ନାହିଁ ।

ସ୍ୱାଧୀନତା ପରବର୍ତ୍ତୀ ସମୟରେ ମାଧ୍ୟମିକ ଶିକ୍ଷାର ଗୁରୁତ୍ୱ ଉପଲବ୍ଧି କରି ଦେଶୀୟ ସରକାର ଏହାର ଗୁଣାତ୍ମକ ବିକାଶ ଦିଗରେ କେତେକ ପଦକ୍ଷେପ ଗ୍ରହଣ କରିଥିଲେ । ସେହି କାରଣରୁ କେତୋଟି କମିଶନ ଏବଂ କମିଟି ଗଠନ କରାଯାଇଥିଲା । ତାରାଚାନ୍ଦ କମିଟି ସରକାରଙ୍କୁ ସୁପାରିସ କରି କହିଥିଲେ, ମାଧ୍ୟମିକ ବିଦ୍ୟାଳୟଗୁଡ଼ିକ ବହୁପକ୍ଷୀୟ ହେବା ଉଚିତ । ଏହାର ବିଭିନ୍ନ ଉଦ୍ଦେଶ୍ୟ ମଧ୍ୟ ରହିବା ଆବଶ୍ୟକ । ମାତ୍ର ଆଞ୍ଚଳିକ ଅବସ୍ଥା ଓ ପରିବେଶକୁ ଲକ୍ଷ୍ୟକରି କେତେକ ଏକପକ୍ଷୀୟ ବିଦ୍ୟାଳୟକୁ ମଧ୍ୟ ପ୍ରୋତ୍ସାହନ ଦିଆଯାଇପାରେ । ମାଧ୍ୟମିକ ଶିକ୍ଷାର ସମସ୍ୟା ଅବହିତ ନିମିତ୍ତ ଗୋଟିଏ ସ୍ୱତନ୍ତ୍ର କମିଶନ ନିଯୁକ୍ତ କରିବା ବାଞ୍ଛନୀୟ ବୋଲି ଏହି କମିଟି ସୁପାରିସ କରିଥିଲେ । ବିଶ୍ୱବିଦ୍ୟାଳୟ ଶିକ୍ଷା କମିଶନ ମୁଖ୍ୟତଃ ବିଶ୍ୱବିଦ୍ୟାଳୟ ଶିକ୍ଷାର ବିଭିନ୍ନ ଦିଗ ଆଲୋଚନା କରିବାକୁ ସୃଷ୍ଟି ହୋଇଥିଲେହେଁ, ମାଧ୍ୟମିକ ଶିକ୍ଷା ସମ୍ପର୍କରେ ଏହା କେତେକ ପରାମର୍ଶ ଦେଇଥିଲେ । ସେ ମାଧ୍ୟମିକ ଶିକ୍ଷାକୁ ଶିକ୍ଷାକ୍ଷେତ୍ରରେ ଏକ ଦୁର୍ବଳ ଯୋଗସୂତ୍ର ବୋଲି କହିଥିଲେ । ତାଙ୍କ

ମତରେ ଜଣେ ଛାତ୍ର ୧୨ ବର୍ଷ ବିଦ୍ୟାଳୟରେ ଅଧ୍ୟୟନ କରିସାରିବା ପରେ ବିଶ୍ୱବିଦ୍ୟାଳୟ ଶିକ୍ଷା ପାଇବାକୁ ପ୍ରବେଶପତ୍ର ପାଇବା ଉଚିତ । ମୁଦାଲିଅର କମିଶନ ମାଧ୍ୟମିକ ଶିକ୍ଷାର ବହୁ ତ୍ରୁଟି ଲକ୍ଷ୍ୟକରି ଏହାର ପରିଶୋଧନ ନିମିତ୍ତ କେତେକ ପରାମର୍ଶ ଦେଇଥିଲେ । ସେ ପରାମର୍ଶ ଦେଇ କହିଥିଲେ ମାଧ୍ୟମିକ ଶିକ୍ଷା ଛାତ୍ରମାନଙ୍କ ମଧ୍ୟରେ ଗଣତାନ୍ତ୍ରିକ ମୂଲ୍ୟବୋଧ ଜାଗ୍ରତ କରିବା ଆବଶ୍ୟକ । ଗତାନୁଗତିକ, ଯାନ୍ତ୍ରିକ ଶିକ୍ଷା ପରିବର୍ତ୍ତେ ସମୟାନୁକୂଳ ଶିକ୍ଷା ପରିବର୍ତ୍ତନ ପାଇଁ କମିଶନ ପରାମର୍ଶ ଦେଇଥିଲେ । ଶିକ୍ଷାକୁ ନେତୃତ୍ୱ ଗଠନର ମାଧ୍ୟମ ରୂପେ ଗ୍ରହଣ କରିବା ସଙ୍ଗେ ସଙ୍ଗେ ଏହି ସ୍ତରରେ ଧନ୍ଦାମୂଳକ ଶିକ୍ଷାର ପ୍ରବର୍ତ୍ତନ ପାଇଁ ଓ ମାଧ୍ୟମିକ ଶିକ୍ଷାକୁ ପୁନଃ ସଙ୍ଗଠିତ କରିବା ପାଇଁ ଉଦ୍ୟମ ଜାରି ରହିବା ଆବଶ୍ୟକ ବୋଲି କହିଥିଲେ । ଏତଦ୍‌ବ୍ୟତୀତ ମାଧ୍ୟମିକ ଶିକ୍ଷାର ଗୁଣାତ୍ମକ ବିକାଶ ନିମିତ୍ତ ଏହି କମିଶନ ବହୁ ମୂଲ୍ୟବାନ୍ ପରାମର୍ଶ ଦେଇଥିଲେ । ପରବର୍ତ୍ତୀ ସମୟରେ ମାଧ୍ୟମିକ ଶିକ୍ଷାର ଉଲ୍ଲେଖନୀୟ ବିସ୍ତାର ହୋଇଛି । ଆନ୍ଧ୍ରପ୍ରଦେଶ, କର୍ଣ୍ଣାଟକ, ଉତ୍ତରପ୍ରଦେଶ, ଗୁଜୁରାଟ, କେରଳ, ତାମିଲନାଡୁ, ଅରୁଣାଚଳପ୍ରଦେଶ, ଲାକ୍ଷାଦ୍ୱୀପ, ଆଣ୍ଡାମାନ ଓ ନିକୋବର ଦ୍ୱୀପପୁଞ୍ଜ ତଥା ନାଗାଲାଣ୍ଡ, ଦାଦ୍ରା ଓ ନଗରହାବେଳି, ଜାମ୍ମୁ ଓ କାଶ୍ମୀର ଆଦିର ସରକାରୀ ମାଧ୍ୟମିକ ବିଦ୍ୟାଳୟରେ ମାଗଣାରେ ଏହି ଶିକ୍ଷାପ୍ରଦାନ କରାଯାଉଥିବା ସମୟରେ ମଧ୍ୟପ୍ରଦେଶ, ରାଜସ୍ଥାନ, ମଣିପୁର, ତ୍ରିପୁରା ଓ ଓଡ଼ିଶା ଆଦି ପ୍ରଦେଶରେ ମାଧ୍ୟମିକ ସ୍ତରରେ କେବଳ ବାଳିକାମାନଙ୍କୁ ମାଗଣାରେ ଶିକ୍ଷା ପ୍ରଦାନ କରାଯାଉଛି । ସ୍ୱାଧୀନତା ପରବର୍ତ୍ତୀ ସମୟରେ ମାଧ୍ୟମିକ ଶିକ୍ଷାର ବିସ୍ତାର ଆଶାଜନକ ହୋଇପାରିଛି । ୧୯୫୦-୫୧ ମସିହାରେ ୯ ବର୍ଷରୁ ୧୨ ବର୍ଷ ମଧ୍ୟରେ ୧୨.୨ ଲକ୍ଷ ପିଲା ଅଧ୍ୟୟନ କରୁଥିବା ସମୟରେ ୧୯୯୧-୯୨ ମସିହା ବେଳକୁ ଏହାର ସଂଖ୍ୟା ପହଞ୍ଚିଥିଲା ୧୫୨.୫ ଲକ୍ଷରେ । ସେହିପରି ଉଚ୍ଚମାଧ୍ୟମିକ ସ୍ତରରେ ୧୯୫୦-୫୧ ମସିହାରେ ୭,୨୮ ଲକ୍ଷ୍ୟ ଅଧ୍ୟୟନରତ ଥିବା ସମୟରେ ୧୯୯୧-୯୨ ମସିହାରେ ଏହାର ସଂଖ୍ୟା ହୋଇଥିଲା ୯୨,୩୦୫ ଲକ୍ଷ । ୧୯୮୯ ମସିହାରେ ନୂତନ ଶିକ୍ଷାନୀତିରେ ଜାତୀୟ ଯୁକ୍ତ ବିଦ୍ୟାଳୟ ଉପରେ ବିଶେଷ ଗୁରୁତ୍ୱ ପ୍ରଦାନ କରାଯାଇଛି । ଏଥିରୁ ସ୍ପଷ୍ଟ ହୋଇଥାଏ, ସ୍ୱାଧୀନତା ପରେ ମାଧ୍ୟମିକ ଶିକ୍ଷା ଉପରେ ବିଶେଷ ଗୁରୁତ୍ୱ ପ୍ରଦାନ କରାଯାଇଛି । ବହୁ ଛାତ୍ରଛାତ୍ରୀ ମଧ୍ୟ ଅଧ୍ୟୟନ କରୁଛନ୍ତି । ମାତ୍ର ଯେଉଁ ପରିମାଣରେ ଗୁଣାତ୍ମକ ଶିକ୍ଷାର ବିକାଶ ହେବା କଥା ତାହା ହୋଇପାରିଛି ବୋଲି ମନେହୁଏ ନାହିଁ ।

ମାଧ୍ୟମିକ ଶିକ୍ଷାସ୍ତରରେ କେତେକ ତ୍ରୁଟି ଓ ସମସ୍ୟା ରହିଥିବାର ଦେଖାଯାଏ । ପ୍ରଥମ ସମସ୍ୟା ହେଉଛି ମାଧ୍ୟମିକ ଶିକ୍ଷା ସମ୍ପୂର୍ଣ୍ଣ ରୂପେ ନିର୍ଦ୍ଦିଷ୍ଟ ଲକ୍ଷ୍ୟଶୂନ୍ୟ । ଯେଉଁଥିପାଇଁ ଶିକ୍ଷା ସମାପ୍ତି ପରେ ଛାତ୍ରଛାତ୍ରୀ କୌଣସି କ୍ଷେତ୍ରରେ ନିଯୁକ୍ତି ଲାଭ କରିପାରୁ ନାହାନ୍ତି । ମାଧ୍ୟମିକ ଶିକ୍ଷାକୁ ଉଚ୍ଚତର ଶିକ୍ଷାର ଏକ ମାଧ୍ୟମରୂପେ ଗ୍ରହଣ କରାନଯାଇ ତାକୁ ସମ୍ପୂର୍ଣ୍ଣ ସ୍ୱାଧୀନ କରିବା ଆବଶ୍ୟକ । ଏତଦ୍‌ବ୍ୟତୀତ ଏହି ଶିକ୍ଷା କିପରି ଉତ୍ପାଦନକ୍ଷମ ହୋଇପାରିବ, ବୃତ୍ତିଗତ ନିପୁଣତା ତଥା ବ୍ୟକ୍ତିତ୍ୱର ବିକାଶରେ ସହାୟତା କରିପାରିବ ସେଥିପ୍ରତି ଦୃଷ୍ଟି ପ୍ରଦାନ କରାଯିବା ବାଞ୍ଛନୀୟ । ଏହାର ପାଠ୍ୟକ୍ରମ ଗତାନୁଗତିକ ହୋଇଥିବାରୁ ଛାତ୍ରଛାତ୍ରୀ ନିଜ ରୁଚି ଅନୁଯାୟୀ ବିଷୟ ଗ୍ରହଣ କରିପାରୁ

ନାହାନ୍ତି । ପୁଣି ଏହି ପାଠ୍ୟକ୍ରମର ବାସ୍ତବଜୀବନ ସହିତ କୌଣସି ସମ୍ପର୍କ ନାହିଁ । ସେଥିପାଇଁ ଜୀବନରେ ସହାୟତା କରିବାପରି ପାଠ୍ୟକ୍ରମ ନିର୍ବାଚିତ ହେବା ଆବଶ୍ୟକ । ବିଶେଷକରି ବାଣିଜ୍ୟ, ବୃତ୍ତି ବା କୃଷି ସମ୍ପର୍କୀୟ ବିଷୟବସ୍ତୁ ପ୍ରତି ଗୁରୁତ୍ୱଦେବା ଉଚିତ । ସାମାଜିକ ଜୀବନ ସହିତ ସମ୍ପର୍କ ରକ୍ଷା କରୁଥିବା ପାଠ୍ୟର ପ୍ରଚଳନ ହେଲେ ଶିକ୍ଷା ସମାପ୍ତ ପରେ ଛାତ୍ରଛାତ୍ରୀ ବହୁପରିମାଣରେ ସ୍ୱାବଲମ୍ବନଶୀଳ ହୋଇପାରିବେ । ଛାତ୍ର ବିଶୃଙ୍ଖଳା ମାଧ୍ୟମିକ ଶିକ୍ଷା କ୍ଷେତ୍ରରେ ଅନ୍ୟତମ ସମସ୍ୟା ହୋଇ ଦେଖାଦେଇଛି । ତ୍ରୁଟିପୂର୍ଣ୍ଣ ପାଠ୍ୟକ୍ରମ, ଲକ୍ଷ୍ୟହୀନ ଶିକ୍ଷା, ତ୍ରୁଟିପୂର୍ଣ୍ଣ ପରୀକ୍ଷା ପଦ୍ଧତି ଯୋଗୁଁ ଏହିପ୍ରକାର ବିଶୃଙ୍ଖଳା ସୃଷ୍ଟି ହେଉଛି । ସାମାଜିକ ମୂଲ୍ୟର ଅବକ୍ଷୟ ମଧ୍ୟ ଏହି ବିଶୃଙ୍ଖଳା ପାଇଁ ବହୁପରିମାଣରେ ଦାୟୀ । ନଗ୍ନ ଚଳଚ୍ଚିତ୍ର, ଉଦ୍ଦୀପକ ସଙ୍ଗୀତ, ବ୍ୟକ୍ତି ଚରିତ୍ରର ଅସାମଞ୍ଜସ୍ୟ ଆଦି ଏହାର ଅନ୍ୟତମ କାରଣ । ଉପରୋକ୍ତ କାରଣଗୁଡ଼ିକୁ ସଂଶୋଧନ କରାଯାଇପାରିଲେ ଏବଂ ଛାତ୍ରଛାତ୍ରୀମାନଙ୍କୁ କ୍ରୀଡ଼ା, ସାମାଜିକ କାର୍ଯ୍ୟ, ନୈତିକ ଶିକ୍ଷା ଆଦିରେ ସମ୍ପୃକ୍ତ କରାଗଲେ ଏହି ବିଶୃଙ୍ଖଳା ବହୁପରିମାଣରେ ଦୂର କରାଯାଇପାରିବ । ଘରୋଇ ବିଦ୍ୟାଳୟମାନଙ୍କର ସଂଖ୍ୟାବୃଦ୍ଧି ଅନ୍ୟ ଏକ ସମସ୍ୟା ହୋଇ ଦେଖାଦେଇଛି । ଶିକ୍ଷା ପ୍ରସାର ନାମରେ ଛତୁ ଫୁଟିବା ପରି ବିଦ୍ୟାଳୟ ସ୍ଥାପନ ମାଧ୍ୟମିକ ଶିକ୍ଷାର ଗୁଣାତ୍ମକ ମୂଲ୍ୟରେ ହାନି ଘଟାଇଛି । ଏଥିରେ ନିଯୁକ୍ତ ଶିକ୍ଷକ ମଧ୍ୟ ନିମ୍ନମାନର ହୋଇଥିବାରୁ, ଗୁଣାତ୍ମକ ଶିକ୍ଷାରେ ଅସମର୍ଥ ହେଉଛନ୍ତି । ତେଣୁ ସରକାର ବିଦ୍ୟାଳୟ ସଂଖ୍ୟାକୁ ହ୍ରାସକରି ଉଚ୍ଚମାନର ତାଲିମପ୍ରାପ୍ତ ଶିକ୍ଷକମାନଙ୍କୁ ନିଯୁକ୍ତି ପ୍ରଦାନ କଲେ ଶିକ୍ଷାର ନିଶ୍ଚିତ ଉନ୍ନତି ହୋଇପାରିବ । ପୁନରାୟ ଆର୍ଥିକ ସଙ୍କଟଯୋଗୁଁ ଶିକ୍ଷାର ମାନ ହ୍ରାସ ପାଉଛି । ଶିକ୍ଷା ନିମିତ୍ତ ଯେଉଁସବୁ ଉପକରଣର ଆବଶ୍ୟକତା ରହିଛି, ଅର୍ଥାଭାବରୁ ବିଦ୍ୟାଳୟ ତାହା ଯୋଗାଇ ଦେବାରେ ଅସମର୍ଥ ହେଉଛି । ତେଣୁ ଛାତ୍ରଛାତ୍ରୀ ବାସ୍ତବ ଜ୍ଞାନ ପାଇବାରୁ ବଞ୍ଚିତ ହେଉଛନ୍ତି । ସରକାରୀ ସ୍ତରରେ ଏହି ଅଭାବର ଦୂରୀକରଣ ପାଇଁ ଚେଷ୍ଟା ହେବା ଉଚିତ । ସମାଜ ଜୀବନ ସହିତ ଶିକ୍ଷାର କୌଣସି ସମ୍ପର୍କ ରହୁନଥିବାରୁ ଏହି ଶିକ୍ଷା ସମାଜର କୌଣସି ଉପକାର କରିପାରୁ ନାହିଁ । ଏହି ଅଭାବର ଦୂର ପାଇଁ ପାଠ୍ୟକ୍ରମରେ ପରିବର୍ତ୍ତନ ଆଣିବା ଆବଶ୍ୟକ । ମାଧ୍ୟମିକ ଶିକ୍ଷାସ୍ତରରେ ଧନ୍ଦାମୂଳକ ଶିକ୍ଷାର ପରିବର୍ତ୍ତନ ହେବା ବାଞ୍ଛନୀୟ । କୋଠାରୀ କମିଶନ ସେଥିପାଇଁ ତାଙ୍କ ରିପୋର୍ଟରେ ଲେଖିଥିଲେ "The link between education and productivity can be forged through vocationalisation of education specially at the secondary school level.." ତ୍ରୁଟିପୂର୍ଣ୍ଣ ପରୀକ୍ଷା ପଦ୍ଧତି, ପରୀକ୍ଷା ସମୟରେ ଛାତ୍ରଛାତ୍ରୀମାନଙ୍କର ଅସାଧୁ ଉପାୟ ଅବଲମ୍ବନ ଆଦିକୁ ଦୂର କରାଯାଇପାରିଲେ ମାଧ୍ୟମିକ ଶିକ୍ଷା ଅଧିକ ଗୁଣାତ୍ମକ ହୋଇପାରନ୍ତା ।

ଶିକ୍ଷା କ୍ଷେତ୍ରରେ ମାଧ୍ୟମିକ ଶିକ୍ଷାର ଗୁରୁତ୍ୱପୂର୍ଣ୍ଣ ଭୂମିକା ବିଦ୍ୟମାନ । ଏହା ଛାତ୍ରଛାତ୍ରୀମାନଙ୍କୁ ଉପଯୁକ୍ତ ଦିଗ୍‌ଦର୍ଶନ ଦେଇନପାରିଲେ ଭାରତର ଶିକ୍ଷାନୀତି ସଂପୂର୍ଣ୍ଣ ଭୁଷୁଡ଼ି ପଡ଼ିବ । ଅଧିକାଂଶ କ୍ଷେତ୍ରରେ ଘରୋଇ ପରିଚାଳନା ସମିତି ନିମ୍ନମାନର ଶିକ୍ଷକମାନଙ୍କ ଠାରୁ ଅର୍ଥ ନେଇ ନିଯୁକ୍ତି ଦେଉଛନ୍ତି ଓ କିଛି ବର୍ଷ ପରେ ତାହା ସରକାରଙ୍କ ଅନୁଦାନ ଲାଭ କରୁଛି ।

ଏହି ଶିକ୍ଷକମାନେ କଦାପି ଉନ୍ନତମାନର ଶିକ୍ଷା ପ୍ରଦାନ କରିପାରିବେ ନାହିଁ । ତେଣୁ ଶିକ୍ଷକ ନିଯୁକ୍ତି ସମୟରେ ସରକାର ନିଜ ତରଫରୁ ଏକ କମିଟି ଗଠନ କରାଇ ତା ମାଧ୍ୟମରେ ଶିକ୍ଷକମାନଙ୍କୁ ନିଯୁକ୍ତି କରିବା ଆବଶ୍ୟକ । ଘରୋଇ ଭାବରେ ମାଧ୍ୟମିକ ଶିକ୍ଷାକୁ ଉତ୍ସାହ ପ୍ରଦାନ କରାଯିବା ଅନୁଚିତ । ସମସ୍ତ ମାଧ୍ୟମିକ ବିଦ୍ୟାଳୟକୁ ସରକାର ନିଜ ହାତକୁ ନେଇ ଏହାର ଗୁଣାତ୍ମକ ବିକାଶ ପ୍ରତି ଦୃଷ୍ଟି ପ୍ରଦାନ କଲେ ଉଭୟ ଛାତ୍ରଛାତ୍ରୀ ଓ ସମାଜର ମଙ୍ଗଳ ହୋଇପାରିବ ।



# ବିଶ୍ୱବିଦ୍ୟାଳୟ ଶିକ୍ଷା ଅତୀତ ଓ ବର୍ତ୍ତମାନ

**(ଉପକ୍ରମ, ବିଶ୍ୱବିଦ୍ୟାଳୟ ଶିକ୍ଷାର ଉଦ୍ଦେଶ୍ୟ, ପ୍ରାଚୀନ ଭାରତରେ ବିଶ୍ୱବିଦ୍ୟାଳୟ ଶିକ୍ଷାର ପରମ୍ପରା, ଇଂରେଜ ଶାସନରେ ବିଶ୍ୱବିଦ୍ୟାଳୟ ଶିକ୍ଷା, ସ୍ୱାଧୀନତା ପରବର୍ତ୍ତୀ ଭାରତରେ ବିଶ୍ୱବିଦ୍ୟାଳୟ ଶିକ୍ଷା, ବିଶ୍ୱବିଦ୍ୟାଳୟ ଶିକ୍ଷାର ତ୍ରୁଟି ଓ ସମସ୍ୟା, ସମାଧାନର ଉପାୟ, ଉପସଂହାର)**

ବିଶ୍ୱବିଦ୍ୟାଳୟ ଶିକ୍ଷା ସର୍ବୋଚ୍ଚ ଶିକ୍ଷା । ବହୁ କମ୍ ଛାତ୍ରଛାତ୍ରୀ ଏଥିରେ ପଢ଼ିବାର ସୁଯୋଗ ଲାଭ କରିଥାନ୍ତି । ଏହି ସର୍ବୋଚ୍ଚ ଶିକ୍ଷାନୁଷ୍ଠାନ ଉପରେ ସମସ୍ତଙ୍କର ଆଖି । ଏଠାରୁ ଉତ୍ତୀର୍ଣ୍ଣ ଛାତ୍ରଛାତ୍ରୀଙ୍କ ନିକଟରୁ ଦେଶ ବହୁତ କିଛି ଆଶା କରେ । ଏହା ପ୍ରତି ମଧ ମଣିଷ ମନରେ ଶ୍ରଦ୍ଧା, ସମ୍ମାନ ଓ ଆଗ୍ରହ ରହିଛି । ଜାତୀୟ ଜୀବନ ଗଠନ ତଥା ଦେଶର ସାଂସ୍କୃତିକ ବିକାଶ କ୍ଷେତ୍ରରେ ଏହାର ଅବଦାନ ଅତୁଳନୀୟ । ଏଠାରୁ ଉତ୍ତୀର୍ଣ୍ଣ ଛାତ୍ରଛାତ୍ରୀ ଦେଶର ବିଭିନ୍ନ କ୍ଷେତ୍ରରେ ନିଜର ପାରଦର୍ଶିତା ପ୍ରତିପାଦନ କରିଥାନ୍ତି । ମାତ୍ର ଏକଥା ସତ୍ୟ, ଦେଶର ଜନସଂଖ୍ୟା ଅନୁପାତରେ ବିଶ୍ୱବିଦ୍ୟାଳୟର ସଂଖ୍ୟା ସୀମିତ । ଏହା ଏକ ବ୍ୟୟବହୁଳ ଶିକ୍ଷା ହୋଇଥିବାରୁ ଆର୍ଥିକ ସଙ୍କଟ ମଧ୍ୟରେ ଗତିକରୁଥିବା ମେଧାବୀ ଛାତ୍ର ଏହାର ସୁଯୋଗ ଲାଭ କରିପାରି ନ ଥାନ୍ତି । ଏହା ସତ୍ତ୍ୱେ ଜନମାନସରେ ଏହି ଶିକ୍ଷାନୁଷ୍ଠାନ ପ୍ରତି ସ୍ୱତନ୍ତ୍ର ସମ୍ମାନ ରହିଛି । ବିଶ୍ୱବିଦ୍ୟାଳୟରେ ପ୍ରବେଶ କରିବା ପାଇଁ ଅଧିକାଂଶ ଛାତ୍ରଛାତ୍ରୀଙ୍କର ଆଗ୍ରହ ଓ ଆକାଂକ୍ଷା ରହିଥିଲେହେଁ ସୀମିତ ପିଲା ପ୍ରବେଶାଧିକାର ପାଇଥାନ୍ତି । ଜାତୀୟ ଜୀବନକୁ ଶୃଙ୍ଖଳିତ ତଥା ସଙ୍ଗଠିତ କରିବା କ୍ଷେତ୍ରରେ ଏହାର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ସେଥିପାଇଁ ବିଶ୍ୱବିଦ୍ୟାଳୟ ଶିକ୍ଷା ଅତି ଗୁରୁତ୍ୱପୂର୍ଣ୍ଣ ମନେହୋଇଥାଏ ।

ବିଶ୍ୱବିଦ୍ୟାଳୟ ଶିକ୍ଷାର ବହୁବିଧ ଉଦ୍ଦେଶ୍ୟ ରହିଛି । ସଂହତି ସ୍ଥାପନ ସହିତ ଗୁଣାତ୍ମକ ଶିକ୍ଷାର ପ୍ରଚଳନ ଏହାର ମୁଖ୍ୟ ଉଦ୍ଦେଶ୍ୟ । ବିଶ୍ୱବିଦ୍ୟାଳୟ ସ୍ନାତକ ଶ୍ରେଣୀ ପର୍ଯ୍ୟନ୍ତ ପରୀକ୍ଷା ପରିଚାଳନା କରିଥାଏ ଏବଂ ସ୍ନାତକୋତ୍ତର ଶ୍ରେଣୀର ପାଠ ପଢ଼ା କାର୍ଯ୍ୟ କରିଥାଏ । ଏହା ବ୍ୟତୀତ ଏକ ସାଂସ୍କୃତିକ ବାତାବରଣ ସୃଷ୍ଟି କରିବା ଏହାର ଅନ୍ୟତମ ଉଦ୍ଦେଶ୍ୟ । ପ୍ରକୃତ ଜ୍ଞାନର ବିକାଶ କରାଇବା ଏବଂ ଜାତୀୟ ଭାବଧାରା ଦ୍ୱାରା ଛାତ୍ର ସମାଜକୁ ଅନୁପ୍ରାଣିତ କରିବା ବିଶ୍ୱବିଦ୍ୟାଳୟ

ଶିକ୍ଷାର ବିଶେଷ ଲକ୍ଷ୍ୟ । ବିଭିନ୍ନ ଅଞ୍ଚଳରୁ ଛାତ୍ରଛାତ୍ରୀ ଏଠାରେ ଅଧ୍ୟୟନ କରିବାକୁ ଆସୁଥିବାରୁ ସେମାନଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ସୃଷ୍ଟି ସଙ୍ଗେ ସଙ୍ଗେ ଏକ ଭ୍ରାତୃତ୍ୱର ବନ୍ଧନ ମଧ୍ୟରେ ସମସ୍ତଙ୍କୁ ଆବଦ୍ଧ କରିବା କ୍ଷେତ୍ରରେ ଏହା ପ୍ରମୁଖ ଭୂମିକା ଗ୍ରହଣ କରିଥାଏ । ପୁସ୍ତକଗତ ବିଦ୍ୟା ଉପରେ ଗୁରୁତ୍ୱ ନ ଦେଇ ବ୍ୟାବହାରିକ ଜୀବନରେ ଏହା କିପରି ସାହାଯ୍ୟ କରିପାରିବ, ସେଥିପ୍ରତି ଦୃଷ୍ଟିଦେବା ବିଶ୍ୱବିଦ୍ୟାଳୟ ଶିକ୍ଷାର ଉଦ୍ଦେଶ୍ୟ ହେବା ଉଚିତ । ସର୍ବୋପରି ଶୃଙ୍ଖଳିତ, ସଙ୍ଗଠିତ ନାଗରିକ ସୃଷ୍ଟି କରିବାରେ ଏହାର ଅବଦାନ ଅଶେଷ । ବିଶ୍ୱବିଦ୍ୟାଳୟ ଶିକ୍ଷା କମିଶନ ବା ଡଃ ରାଧାକ୍ରିଷ୍ଣନ କମିଶନ (୧୯୪୮-୪୯) ବିଶ୍ୱବିଦ୍ୟାଳୟ ଶିକ୍ଷାର ଉଦ୍ଦେଶ୍ୟ ସମ୍ପର୍କରେ ଉଲ୍ଲେଖ କରି କହିଛନ୍ତି–(୧) ଜୀବନର ଏକ ଲକ୍ଷ୍ୟ ରହିଛି, ଏହା ସମ୍ପର୍କରେ ବିଶ୍ୱବିଦ୍ୟାଳୟ ଶିକ୍ଷା ଦେବା ଉଚିତ, (୨) ଜ୍ଞାନର ପରିବୃଦ୍ଧି ଏବଂ ଅନ୍ତର୍ନିହିତ ଗୁଣାବଳୀର ପ୍ରକାଶ ନିମିତ୍ତ ସୁଯୋଗ ପ୍ରଦାନ କରିବା ଆବଶ୍ୟକ, (୩) ସାମାଜିକ, ରାଜନୀତିକ ଏବଂ ଆର୍ଥନୀତିକ ଜୀବନ ସହିତ ପରିଚିତ କରିବାର ଜ୍ଞାନ ପ୍ରଦାନ କରିବା ବାଞ୍ଛନୀୟ, (୪) ଗଣତନ୍ତ୍ର ପାଇଁ ପ୍ରଶିକ୍ଷିତ କରିବା ବିଧେୟ, (୫) ବ୍ୟକ୍ତିତ୍ୱର ବିକାଶ ଓ ଆତ୍ମନିର୍ଭରଶୀଳତା ପାଇଁ ସୁଯୋଗ ପ୍ରଦାନ କରିବା ଆବଶ୍ୟକ, (୬) ମନର ଭୟ ଦୂରୀକରଣ, ବିବେକର ଜାଗ୍ରତ ଏହାର ଅନ୍ୟତମ ଲକ୍ଷ୍ୟ ହେବା ଉଚିତ, (୭) ସାଂସ୍କୃତିକ ପରମ୍ପରାର ପୁନର୍ଜୀବନ ପ୍ରତି ଲକ୍ଷ୍ୟ ଦେବ, (୮) ଶିକ୍ଷା ଏକ ଜୀବନବ୍ୟାପୀ ସାଧନା, ଏ ସମ୍ପର୍କରେ ଅବଗତ କରାଇବ, (୯) ବର୍ତ୍ତମାନ ଓ ଅତୀତ ବୁଝାମଣାର ବିକାଶ ସାଧନ ନିମିତ୍ତ ପଥ ପ୍ରସ୍ତୁତ କରିବ, (୧୦) ବୃତ୍ତି ଏବଂ ବ୍ୟାବସାୟିକ ପ୍ରଶିକ୍ଷଣ ପ୍ରଦାନ କରିବ । ୧୯୬୪-୬୬ ଶିକ୍ଷା କମିଶନ ମଧ୍ୟ ବିଶ୍ୱବିଦ୍ୟାଳୟ ଶିକ୍ଷାର ଲକ୍ଷ୍ୟ ସମ୍ବନ୍ଧରେ ସୁଚିନ୍ତିତ ମତାମତ ପ୍ରଦାନ କରିଛନ୍ତି । ଏହି ଦୃଷ୍ଟିକୋଣରୁ ବିଚାର କଲେ ବିଶ୍ୱବିଦ୍ୟାଳୟ ଶିକ୍ଷାର ନିଶ୍ଚିତ ରୂପେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ।

ବର୍ତ୍ତମାନର ସଂଜ୍ଞା ଦୃଷ୍ଟିରୁ ପ୍ରାଚୀନ ଭାରତରେ ବିଶ୍ୱବିଦ୍ୟାଳୟ ଶିକ୍ଷାପଦ୍ଧତି ଭିନ୍ନ ଥିଲେହେଁ ବ୍ୟକ୍ତିତ୍ୱର ବିକାଶ, ଐତିହ୍ୟ ତଥା ପରମ୍ପରାର ସମୃଦ୍ଧି ଥିଲା ସେହି ବିଶ୍ୱବିଦ୍ୟାଳୟର ଲକ୍ଷ୍ୟ । ସେତେବେଳେ ବିଶ୍ୱର ବହୁସ୍ଥାନରୁ ବୁଦ୍ଧିଜୀବୀଗଣ ଏହି ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରିବାକୁ ଆସୁଥିଲେ । ବୌଦ୍ଧଯୁଗର ନାଳନ୍ଦା, ତକ୍ଷଶିଳା, ପୁଷ୍ପଗିରି ବିହାର ବିଶ୍ୱର ପ୍ରସିଦ୍ଧ ଶିକ୍ଷାନୁଷ୍ଠାନ ଭାବରେ ଖ୍ୟାତି ଲାଭ କରିଥିଲା । ଏହି ବିଶ୍ୱବିଦ୍ୟାଳୟରେ ଆଧ୍ୟାତ୍ମିକ, ସ୍ୱାସ୍ଥ୍ୟ, ନୈତିକତା ତଥା ଜ୍ଞାନର ବହୁ ଶାଖା ସମ୍ବନ୍ଧରେ ଶିକ୍ଷାଦାନ କରାଯାଉଥିଲା । ଏହି ଶିକ୍ଷାର ବ୍ୟାବହାରିକ ମୂଲ୍ୟ ଥିବାରୁ ଏଠାରୁ ଶିକ୍ଷାଲାଭ କରୁଥିବା ଶିକ୍ଷାର୍ଥୀସମାଜ ଜୀବନର ବହୁବିଧ ଉପକାର ସାଧନ କରୁଥିଲେ । ସମାଜ ତଥା ବ୍ୟକ୍ତିତ୍ୱର ବିକାଶ କ୍ଷେତ୍ରରେ ଏହା ସହାୟତା କରିବା ସଙ୍ଗେ ସଙ୍ଗେ ଶୃଙ୍ଖଳିତ ଜୀବନ ଯାପନ ପାଇଁ ପ୍ରେରଣା ଦେଉଥିଲା । ତେଣୁ ପ୍ରାଚୀନ ଭାରତର ବିଶ୍ୱବିଦ୍ୟାଳୟ ଆଦର୍ଶର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ଥିଲା ।

ଇଂରେଜମାନେ ଭାରତ ଅଧିକାର କରିବା ପରେ ଶିକ୍ଷାର ବିସ୍ତାର ଦିଗରେ ପଦକ୍ଷେପ ଗ୍ରହଣ କରିଥିଲେ । ଏହି ପଦକ୍ଷେପସ୍ୱରୂପ ସେମାନେ ବିଶ୍ୱବିଦ୍ୟାଳୟ ଶିକ୍ଷାର ପ୍ରବର୍ତ୍ତନ କରିଥିଲେ ।

୧୮୭୫ ମସିହା ମଧ୍ୟରେ ସେମାନେ କେତେକ ସରକାରୀ ଓ ଘରୋଇ ମହାବିଦ୍ୟାଳୟ ସ୍ଥାପନ କରିଥିଲେ । ଏହି ମହାବିଦ୍ୟାଳୟମାନଙ୍କ ମଧ୍ୟରେ ମୁଖ୍ୟ ଥିଲା ବନାରସ ସଂସ୍କୃତ ମହାବିଦ୍ୟାଳୟ, କଲିକତା ଖ୍ରୀଷ୍ଟିୟାନ ମହାବିଦ୍ୟାଳୟ, ହିନ୍ଦୁ ମହାବିଦ୍ୟାଳୟ, ମାଡ୍ରାସ ଏବଂ ଆଗ୍ରା ମହାବିଦ୍ୟାଳୟ ଇତ୍ୟାଦି । ଏହା ଛଡ଼ା ଗୋଟିଏ ମେଡ଼ିକାଲ କଲେଜ ଓ ଗୋଟିଏ ଯାନ୍ତ୍ରିକ ବିଦ୍ୟାଳୟ । ୧୮୫୪ ମସିହାରେ ଉଡ୍‌ସ ଡେସ୍‌ପାଚର ସୁପାରିସ କ୍ରମେ ଲଣ୍ଡନ ବିଶ୍ୱବିଦ୍ୟାଳୟ ଛାୟାରେ ୧୮୫୭ ମସିହାରେ କଲିକତା, ବମ୍ବେ ଏବଂ ମାଡ୍ରାସ ଠାରେ ବିଶ୍ୱ ବିଦ୍ୟାଳୟ ସ୍ଥାପନ କରାଯାଇଥିଲା । ଏହି ବିଶ୍ୱବିଦ୍ୟାଳୟଗୁଡ଼ିକ ସେତେବେଳେ କେବଳ ପରୀକ୍ଷା ନିୟନ୍ତ୍ରଣ କାର୍ଯ୍ୟ କରୁଥିଲା । ୧୮୮୨ ମସିହାରେ ପଞ୍ଜାବ ଏବଂ ଆହ୍ଲାବାଦ ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇଥିଲା । ଲର୍ଡ କର୍ଜନ ଭାରତର ଭାଇସ୍‌ରାୟ ଥିବା ସମୟରେ ବିଶ୍ୱବିଦ୍ୟାଳୟ ଶିକ୍ଷା ବିଶେଷଭାବେ ପ୍ରସାର ଲାଭ କରିଥିଲା । ୧୯୦୨ ମସିହାରେ ବିଶ୍ୱବିଦ୍ୟାଳୟ କମିଶନଙ୍କ ସୁପାରିସ କ୍ରମେ ୧୯୦୪ ମସିହାରେ ଭାରତୀୟ ବିଶ୍ୱବିଦ୍ୟାଳୟ ଆଇନ ଗୃହୀତ ହୋଇଥିଲା । ଏହା ପରେ ଦୀର୍ଘ ତିରିଶ ବର୍ଷ ପର୍ଯ୍ୟନ୍ତ ଆଉ କୌଣସି ବିଶ୍ୱବିଦ୍ୟାଳୟ ସ୍ଥାପନ କରାଯାଇ ନ ଥିଲା । ମାତ୍ର ମହାବିଦ୍ୟାଳୟମାନଙ୍କର ସଂଖ୍ୟା ବୃଦ୍ଧି ହେବାରୁ କଲିକତା, ମାଡ୍ରାସ, ବମ୍ବେ, ପଞ୍ଜାବ୍ ଏବଂ ଆହ୍ଲାବାଦ ଠାରେ ଥିବା ସମୁଦାୟ ପାଞ୍ଚୋଟି ବିଶ୍ୱବିଦ୍ୟାଳୟ ଉପରେ କାର୍ଯ୍ୟଭାର ବୃଦ୍ଧି ପାଇବାରୁ ଅଧିକ ବିଶ୍ୱବିଦ୍ୟାଳୟ (୧୯୧୬), ପାଟନା ବିଶ୍ୱବିଦ୍ୟାଳୟ (୧୯୧୭), ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ (୧୯୧୭), ଓସମାନିଆ ବିଶ୍ୱବିଦ୍ୟାଳୟ (୧୯୧୮), ଆଲିଗଡ଼ ବିଶ୍ୱବିଦ୍ୟାଳୟ (୧୯୨୦), ଢାକା ବିଶ୍ୱବିଦ୍ୟାଳୟ (୧୯୨୦), ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟ (୧୯୨୨), ଦିଲ୍ଲୀ ବିଶ୍ୱବିଦ୍ୟାଳୟ (୧୯୨୬), ନାଗପୁର ବିଶ୍ୱବିଦ୍ୟାଳୟ (୧୯୨୩), ଆନ୍ଧ୍ର ବିଶ୍ୱବିଦ୍ୟାଳୟ ୧୯୨୬), ଆଗ୍ରା ବିଶ୍ୱବିଦ୍ୟାଳୟ (୧୯୨୭), ଆନାମାଲା ବିଶ୍ୱବିଦ୍ୟାଳୟ (୧୯୨୯), ତ୍ରିଭାଙ୍କୋର ବିଶ୍ୱବିଦ୍ୟାଳୟ (୧୯୩୭), ଉତ୍କଳ ବିଶ୍ୱବିଦ୍ୟାଳୟ (୧୯୪୩), ସାଗର ବିଶ୍ୱବିଦ୍ୟାଳୟ (୧୯୪୭), ରାଜପୁତନା ବିଶ୍ୱବିଦ୍ୟାଳୟ (୧୯୪୭) ଆଦି ସ୍ଥାପିତ ହୋଇଥିଲା । ଏହି ବିଶ୍ୱବିଦ୍ୟାଳୟଗୁଡ଼ିକ ଦୁଇଟି କାର୍ଯ୍ୟ ସମାହିତ କରୁଥିଲା । ପ୍ରଥମଟି ସ୍ନାତକର ପରୀକ୍ଷା ନିୟନ୍ତ୍ରଣ ଏବଂ ଦ୍ୱିତୀୟଟି ସ୍ନାତକୋତ୍ତର ଶିକ୍ଷାଦାନ । ଶିକ୍ଷାର ଗୁଣାତ୍ମକ ବିକାଶ ଦିଗରେ ଏହି ବିଶ୍ୱବିଦ୍ୟାଳୟଗୁଡ଼ିକ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ହେଁ, ଏଠାରୁ ଉତ୍ତୀର୍ଣ୍ଣ ବିଦ୍ୟାର୍ଥୀଙ୍କ ମୁଖ୍ୟ ଲକ୍ଷ୍ୟ ଥିଲା ସରକାରୀ ଚାକିରି । ଇଂରେଜ ସରକାର ମଧ୍ୟ ବିଶ୍ୱବିଦ୍ୟାଳୟ ଶିକ୍ଷା ମାଧ୍ୟମରେ ଏକ ଚାକିରିଜୀବୀ ଗୋଷ୍ଠୀ ସୃଷ୍ଟି କରିବାକୁ ଉଦ୍ୟମ କରି ସଫଳ ହୋଇଥିଲେ । ଫଳରେ ଭାରତୀୟ ଚିନ୍ତା ଓ ଚେତନାଠାରୁ ଏମାନେ ଦୂରେଇ ଯାଇ ପାଶ୍ଚାତ୍ୟ ଶିକ୍ଷା ପ୍ରତି ଅଧିକ ମୋହାଚ୍ଛନ୍ନ ହୋଇପଡ଼ିଥିଲେ । ସେମାନଙ୍କର ଶିକ୍ଷା ଚାକିରି ବ୍ୟତୀତ ଅନ୍ୟ କୌଣସି ସାମାଜିକ ମଙ୍ଗଳ ସାଧନ କରି ପାରୁ ନ ଥିଲା । ବ୍ୟକ୍ତିଗତ ସ୍ୱାର୍ଥସାଧନ ହିଁ ଥିଲା ଏହି ଶିକ୍ଷାର ମୂଳ ଉଦ୍ଦେଶ୍ୟ ।

ସ୍ୱାଧୀନତା ପରବର୍ତ୍ତୀ ସମୟରେ ଭାରତରେ ବହୁ ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ସୃଷ୍ଟି ହୋଇଛି । ୧୯୯୦-୯୧ ମସିହା ସୁଦ୍ଧା ଭାରତରେ ବିଶ୍ୱବିଦ୍ୟାଳୟ ଓ ବିଚାରଯୋଗ୍ୟ

ବିଶ୍ୱବିଦ୍ୟାଳୟ ସଂଖ୍ୟା ପ୍ରାୟ ୧୭୬ ରେ ପହଞ୍ଚିଥିଲା । ଭାରତରେ ବର୍ତ୍ତମାନ ସୁଦ୍ଧା ୯ ଟି କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ରହିଛି । ସେଗୁଡ଼ିକ ହେଲା – ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟ, ଦିଲ୍ଲୀ ବିଶ୍ୱବିଦ୍ୟାଳୟ, ଉତ୍ତର ପାର୍ବତ୍ୟ ବିଶ୍ୱବିଦ୍ୟାଳୟ, ବିଶ୍ୱ ଭାରତୀ, ହାଇଦ୍ରାବାଦ ବିଶ୍ୱବିଦ୍ୟାଳୟ, ଜାମିଆ ମିଲିଆ ଇସ୍‌ଲାମିଆ, ନୂଆଦିଲ୍ଲୀ, ପଣ୍ଡିଚେରୀ ବିଶ୍ୱବିଦ୍ୟାଳୟ, ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ, ଆଲିଗଡ଼ ମୁସଲିମ ବିଶ୍ୱବିଦ୍ୟାଳୟ ଇତ୍ୟାଦି । ବିଶ୍ୱବିଦ୍ୟାଳୟ ଶିକ୍ଷାର ସଂସ୍କାର ନିମିତ୍ତ ବହୁ କମିଶନ ବସିଛି । ଦେଶର ସର୍ବୋଚ୍ଚ ଶିକ୍ଷାକେନ୍ଦ୍ର ହୋଇଥିବାରୁ ଏହାର ପ୍ରଭାବ ଅନ୍ୟାନ୍ୟ ଶିକ୍ଷାକେନ୍ଦ୍ର ଉପରେ ପଡ଼ିବା ସ୍ୱାଭାବିକ । ଜାତିର ଭିତ୍ତିଭୂମି ଉପରେ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ନ ହେଲେ ଏହା ଜାତୀୟ ଚେତନାର ବାର୍ତ୍ତାବହ ହୋଇପାରିବ ନାହିଁ କିମ୍ବା ଦେଶ ମଧ୍ୟରେ ସାଂସ୍କୃତିକ ଐକ୍ୟ ପ୍ରତିଷ୍ଠା କରିପାରିବ ନାହିଁ । ସ୍ୱାଧୀନ ମୂଲ୍ୟବୋଧ ଉପରେ ବିଶ୍ୱବିଦ୍ୟାଳୟ ଶିକ୍ଷା ବିଶ୍ୱାସ କରିବା ଉଚିତ । ଜାତୀୟ ଜୀବନକୁ ସଂଗଠିତ କରିବା କ୍ଷେତ୍ରରେ ଏହାର ଗୁରୁତ୍ୱ ସର୍ବାଧିକ । ମାତ୍ର ଯାହା ଅନୁଭବ କରାଯାଏ, ଏହା ଏଯାବତ୍ ଇଂରାଜୀ ଶିକ୍ଷା ପଦ୍ଧତି ଠାରୁ ନିଜକୁ ସ୍ୱତନ୍ତ୍ର ରଖିବାର ସମର୍ଥ ହୋଇପାରି ନାହିଁ । ଜାତିର ମାନସିକ ଓ ବୌଦ୍ଧିକ ବିକାଶରେ ଯେପରି ସାହାଯ୍ୟ କରିବା କଥା, ତାହା କରିପାରି ନାହିଁ । ଦେଶକୁ ଯଥାର୍ଥ ମାର୍ଗରେ ଗତି କରାଇବା କ୍ଷେତ୍ରରେ ବିଶ୍ୱବିଦ୍ୟାଳୟ ଶିକ୍ଷାର ଏକ ପ୍ରମୁଖ ଭୂମିକା ରହିଛି । ଏହା ଏକ ସ୍ୱୟଂଚାଳିତ ଅନୁଷ୍ଠାନ । ରାଜ୍ୟର ରାଜ୍ୟପାଳ ଏହାର କୁଳାଧିପତି । ଗବେଷଣା କ୍ଷେତ୍ରରେ ବିଶ୍ୱବିଦ୍ୟାଳୟର ପରିସର ଅତ୍ୟନ୍ତ ବ୍ୟାପକ । କୋଠାରୀ କମିଶନ ତଥା ଅନ୍ୟାନ୍ୟ କମିଶନ୍ ବିଶ୍ୱବିଦ୍ୟାଳୟ ଶିକ୍ଷା ସମ୍ପୂର୍ଣ୍ଣ ସ୍ୱାଧୀନ ରକ୍ଷାକରି ଗତିକରିବା ଉଚିତ ବୋଲି ମତ ଦେଇଛନ୍ତି । ସିନେଟ୍, ସିଣ୍ଡିକେଟ୍ ଏବଂ ବୋର୍ଡ ଅଫ୍ ଷ୍ଟଡ଼ିଜ୍, ଶିକ୍ଷା ପରିଚାଳନା ଓ ନୂତନ ଶିକ୍ଷାନୀତି ଗ୍ରହଣ ଆଦି କ୍ଷେତ୍ରରେ ସ୍ୱାଧୀନ ଚିନ୍ତାଧାରା ବ୍ୟକ୍ତ କରିଛନ୍ତି । କୁଳପତି ପ୍ରକୃତ ମୁଖ୍ୟଭାବେ ବିଶ୍ୱବିଦ୍ୟାଳୟର କାର୍ଯ୍ୟ ପରିଚାଳନା କରିଥାନ୍ତି । ଏହା ସତ୍ତ୍ୱେ ବିଶ୍ୱବିଦ୍ୟାଳୟ ଶିକ୍ଷା ଯେଉଁ ପରିମାଣରେ ଗୁଣାତ୍ମକ ମୂଲ୍ୟ ପ୍ରଦାନ କରିବା କଥା, ତାହା କରିପାରୁ ନାହିଁ ।

ଭାରତରେ ବିଶ୍ୱବିଦ୍ୟାଳୟ ଶିକ୍ଷାର କେତେକ ସମସ୍ୟା ଓ ତ୍ରୁଟି ରହିଛି । ଭାରତୀୟ ସମାଜର ସମସ୍ୟା ହିଁ ବିଶ୍ୱବିଦ୍ୟାଳୟ ଶିକ୍ଷାର ସମସ୍ୟା । ଆମର ଆଦର୍ଶ ଓ ବାସ୍ତବତା ମଧ୍ୟରେ ସମ୍ପର୍କ ରହୁ ନ ଥିବାରୁ ତାହା ଶିକ୍ଷା କ୍ଷେତ୍ରକୁ ସଞ୍ଚରି ଯାଉଛି । ଏ ସମ୍ପର୍କରେ କୋଠାରୀ କମିଶନ ମତବ୍ୟକ୍ତ କରି କହିଛନ୍ତି– Looking at Indian Universities a century after their foundation, one cannot but help feel that they have failed to adopt themselves sufficiently to the vast and unique opportunities which surround them, they seem to have lost enthusiasm and initiative under the crushing problems which have beset them." ଏହି ସମସ୍ୟା ଓ ତ୍ରୁଟି ମଧ୍ୟରୁ ପ୍ରଥମଟି ହେଉଛି ଲକ୍ଷ୍ୟହୀନ ଶିକ୍ଷା । ଶିକ୍ଷା ଯଦି ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ସାଧନରେ ବ୍ୟର୍ଥ ହୁଏ, ତେବେ ତା'ର କୌଣସି ମୂଲ୍ୟ ନାହିଁ ।

ତ୍ରୁଟିପୂର୍ଣ୍ଣ ପାଠ୍ୟକ୍ରମ ଅନ୍ୟତମ ସମସ୍ୟା ରୂପେ ଦେଖାଦେଇଛି । ବର୍ତ୍ତମାନ ବିଶ୍ୱବିଦ୍ୟାଳୟ ସ୍ତରରେ ଯାହା ପାଠ କରାଯାଉଛି, ସେଥିରୁ ଅଧିକ ପୁରାତନ ଏବଂ ସମୟ ସହିତ ପାଦ ମିଳାଇ ଚଳିବାକୁ ଅସମର୍ଥ । ଏହି ପାଠ୍ୟକ୍ରମ ଛାତ୍ରଛାତ୍ରୀମାନଙ୍କର ଉଦ୍ଦେଶ୍ୟ ପୂରଣ କରିବାରେ ଅସମର୍ଥ ହେଉଥିବାରୁ ବୌଦ୍ଧିକ ବିକାଶ ହୋଇପାରୁ ନାହିଁ । ସେଥିପାଇଁ ରାଧାକ୍ରିଷ୍ଣନ୍ କମିଶନ ମତ ଦେଇ କହିଛନ୍ତି – A curriculum which had validity in the Vedic period or the renaissance cannot continue unaltered in the 20th century. ବିଶ୍ୱବିଦ୍ୟାଳୟ ଶିକ୍ଷାରେ ଏକ ନିର୍ଦ୍ଦିଷ୍ଟ ବିଷୟରେ ଶିକ୍ଷା ପ୍ରଦାନ କରାଯାଉଥିବାରୁ ତାହା ଶିକ୍ଷାର ପ୍ରକୃତ ଉଦ୍ଦେଶ୍ୟ ସାଧନରେ ବ୍ୟର୍ଥ ହେଉଛି । କଳାର ଛାତ୍ର ବିଜ୍ଞାନ ବା ବାଣିଜ୍ୟ ବିଷୟରେ ଅଜ୍ଞତା ଯୋଗୁଁ ବହୁ ସମୟରେ ସେ ଅସୁବିଧାର ସମ୍ମୁଖୀନ ହେଉଛି । ଉପଯୁକ୍ତ ତତ୍ତ୍ୱାବଧାନର ଅଭାବ ଏହି ଶିକ୍ଷାର ଗୁଣାତ୍ମକ ମୂଲ୍ୟ ବୃଦ୍ଧିରେ ସାହାଯ୍ୟ କରିପାରୁ ନାହିଁ । କେଉଁ ବିଷୟ ତା'ର ଜୀବନଧାରଣ ପାଇଁ ଆବଶ୍ୟକ, ତାହା ଠିକ୍ ଜାଣିପାରୁ ନାହିଁ । ଫଳରେ ଯାହା ନାହିଁ ତାହା ପଢ଼ି ନିଜ ଜୀବନର ଅଭାବକୁ ପୂରଣ କରିପାରୁ ନାହିଁ । ଶିକ୍ଷାର ଗୁଣାତ୍ମକ ମାନହ୍ରାସ ବିଦ୍ୟାଳୟ ଶିକ୍ଷାର ଅନ୍ୟତମ ତ୍ରୁଟି । ତ୍ରୁଟିପୂର୍ଣ୍ଣ ପରୀକ୍ଷା ପଦ୍ଧତି ଏହାର ଅନ୍ୟତମ ସମସ୍ୟା । ପରୀକ୍ଷାରେ ଅସାଧୁ ଉପାୟ ଅବଲମ୍ବନ, ନିର୍ବାଚିତ ବିଷୟ ଉପରୁ ପ୍ରଶ୍ନ ତଥା ଗୁଣାତ୍ମକ ପ୍ରଶ୍ନପତ୍ରର ଅଭାବ ଯୋଗୁଁ ଛାତ୍ରର ପ୍ରକୃତ ଜ୍ଞାନ ଶିକ୍ଷକ ଜାଣିବାରେ ଅସମର୍ଥ ହେଉଛି । ଛାତ୍ର ବିଶୃଙ୍ଖଳା ମଧ ବହୁକ୍ଷେତ୍ରରେ ସମସ୍ୟା ସୃଷ୍ଟି କରିଛି । କାରଣ ନ ଥାଇ ଧର୍ମଘଟ, ଛାତ୍ରସଂସଦ ଦ୍ୱାରା ଅଯୌକ୍ତିକ ଦାବି, ଦଙ୍ଗା, ଭଙ୍ଗାରୁଜା ଆଦି ସାଧାରଣ କଥାରେ ପଡ଼ିଯାଇଛି । ଶିକ୍ଷା ଏକ ଶୃଙ୍ଖଳିତ ପ୍ରକ୍ରିୟା । ବିଶୃଙ୍ଖଳା ଦ୍ୱାରା ଶିକ୍ଷା ତା'ର ପ୍ରକୃତ ମୂଲ୍ୟ ହରାଇ ବସୁଛି । ପୁଣି ବିଶ୍ୱବିଦ୍ୟାଳୟ ରାଜନୀତିର ବିଚରଣ ଭୂମିରେ ପରିଣତ ହୋଇଥିବାରୁ ଛାତ୍ରମାନେ ଲକ୍ଷ୍ୟଭ୍ରଷ୍ଟ ହେଉଛନ୍ତି । ଶିକ୍ଷା କ୍ଷେତ୍ରରେ ପବିତ୍ର ବାତାବରଣ କଳୁଷିତ ହୋଇଯାଇଛି, ଯେଉଁଥିପାଇଁ ବହୁ ସମୟରେ ଜାତୀୟ ସମ୍ପତ୍ତି ନଷ୍ଟ ହେଉଛି ଏବଂ ଜାତୀୟ ମୂଲ୍ୟବୋଧ ଭୁଷୁଡ଼ି ପଡୁଛି ।

ଏହି ସମସ୍ୟାର ସମାଧାନ ପାଇଁ ଆବଶ୍ୟକ ରହିଛି ପାଠ୍ୟକ୍ରମର ଆମୂଳଚୂଳ ପରିବର୍ତ୍ତନ । ଗୋଟିଏ ଛାତ୍ର ଏକ ନିର୍ଦ୍ଦିଷ୍ଟ ବିଷୟରେ ଧୁରୀଣ ହେବା ସତ୍ତ୍ୱେ ଅନ୍ୟାନ୍ୟ ବିଷୟରେ ଜ୍ଞାନଲାଭ କରିବା ବିଧେୟ । ତେଣୁ ଆବଶ୍ୟକତାକୁ ଆଖିଆଗରେ ରଖି ପାଠ୍ୟକ୍ରମରେ ପରିବର୍ତ୍ତନ ଆଣିବା ସାଂପ୍ରତିକ ପରିପ୍ରେକ୍ଷୀରେ ଅପରିହାର୍ଯ୍ୟ ହୋଇଉଠିଛି । ଲକ୍ଷ୍ୟହୀନ ଶିକ୍ଷା ମାନବ ସମାଜର କୌଣସି ଉଦ୍ଦେଶ୍ୟ ସାଧନ କରି ନ ପାରେ । ମଣିଷଗଠନ ଶିକ୍ଷାର ପ୍ରଥମ ଲକ୍ଷ୍ୟହେବା ଉଚିତ । ଏଥିପ୍ରତି ଦୃଷ୍ଟିପ୍ରଦାନ କରିବା ବର୍ତ୍ତମାନ ଅପରିହାର୍ଯ୍ୟ ହୋଇପଡ଼ିଛି । ଛାତ୍ରମାନେ ଚପଳମତି ହୋଇଥିବାରୁ ଉପଯୁକ୍ତ ବିଷୟ ନିର୍ବାଚନରେ ଅସମର୍ଥ ହୋଇଥାନ୍ତି । ତେଣୁ ବିଶ୍ୱବିଦ୍ୟାଳୟ ଶିକ୍ଷାକ୍ଷେତ୍ରରେ ଅଧ୍ୟୟନ ପୂର୍ବରୁ ଛାତ୍ରମାନଙ୍କୁ ପ୍ରତ୍ୟେକ ବିଷୟ ସଂପର୍କରେ ପୁଙ୍ଖାନୁପୁଙ୍ଖ ବୁଝାଇବା ସଙ୍ଗେ ସଙ୍ଗେ ଜୀବନ ସଂଗ୍ରାମ କ୍ଷେତ୍ରରେ ଯେଉଁ ପାଠ୍ୟ ସହାୟତା

କରିପାରିବ, ତାହା ପଠନ ନିମିତ୍ତ ପରାମର୍ଶ ଦେବା ଆବଶ୍ୟକ । ପରୀକ୍ଷା ପଦ୍ଧତିରେ ସଂସ୍କାର ଆଣି ପ୍ରଶ୍ନ ପତ୍ର ଓ ଉତ୍ତର ଖାତାକୁ ଗୋଟିଏ କରିବା ଆବଶ୍ୟକ । ସଂକ୍ଷିପ୍ତ ପ୍ରଶ୍ନୋତ୍ତର ସମଗ୍ର ପାଠ୍ୟବିଷୟକୁ ଅବଲମ୍ବନ କରି ପ୍ରସ୍ତୁତ କରାଗଲେ ଛାତ୍ରଛାତ୍ରୀ ବିଷୟ ସଂପର୍କରେ ସାମଗ୍ରିକ ଜ୍ଞାନ ଲାଭ କରିବାକୁ ସମର୍ଥ ହୋଇପାରିବେ । ଶିକ୍ଷାର ଗୁଣାତ୍ମକ ବିକାଶ ନିମିତ୍ତ ଶିକ୍ଷକମାନଙ୍କର ସମସ୍ୟା ପ୍ରତି ସରକାର ଗୁରୁତ୍ୱ ଦେବା ଉଚିତ । ସମସ୍ୟା ଘେରରେ ବନ୍ଦୀ ରହିଥିବା ଶିକ୍ଷକ ଉପଯୁକ୍ତ ଶିକ୍ଷାଦାନ କ୍ଷେତ୍ରରେ ଅସମର୍ଥ ହୋଇଥାଏ । ଛାତ୍ର ବିଶୃଙ୍ଖଳା ଦୂର ପାଇଁ ଛାତ୍ରମାନଙ୍କୁ ବିଭିନ୍ନ କାର୍ଯ୍ୟରେ ନିଯୁକ୍ତି କଲେ ସମୟାଭାବରୁ ବିଶୃଙ୍ଖଳା ଆଚରଣରୁ ବିରତ ରହିବେ । କ୍ରୀଡ଼ା, ଛାତ୍ରାବାସରେ ଏକତ୍ର ଅବସ୍ଥାନ, ବକ୍ତୃତା ପ୍ରତିଯୋଗିତା, ଆଲୋଚନାଚକ୍ର, ବିଭିନ୍ନ କାର୍ଯ୍ୟର ଦାୟିତ୍ୱ, ମେସ୍ ପରିଚାଳନା ଆଦିର କାର୍ଯ୍ୟ ସେମାନଙ୍କ ଉପରେ ନ୍ୟସ୍ତ କଲେ ଦାୟିତ୍ୱବୋଧ ବୃଦ୍ଧିପାଇବା ସହିତ କାର୍ଯ୍ୟବୃଦ୍ଧି ଏବଂ ସମୟର ସ୍ୱଳ୍ପତା ସେମାନଙ୍କୁ ବିଶୃଙ୍ଖଳିତ ଆଚରଣଠାରୁ ଦୂରରେ ରଖିପାରିବ । ବିଶ୍ୱବିଦ୍ୟାଳୟ ରାଜନୀତିକ ବାତାବରଣଠାରୁ ବହୁତଦୂରରେ ରହିବା ଆବଶ୍ୟକ । କାରଣ ଏହା ଦେଶର ଉପଯୁକ୍ତ ନାଗରିକ ସୃଷ୍ଟି କରିଥାଏ । ଛାତ୍ର ସମାଜର ରାଜନୈତିକ ଚେତନା ରହିବା ବିଧେୟ । ମାତ୍ର ବର୍ତ୍ତମାନ ଆମ ଦେଶରେ ଯେଉଁ ରାଜନୀତି ଚାଲୁଛି, ତଦ୍ଦ୍ୱାରା ଶିକ୍ଷାନୁଷ୍ଠାନର ମହତ୍ତ୍ୱହାନି ଘଟିବା ସଙ୍ଗେ ସଙ୍ଗେ ଛାତ୍ରସମାଜ ଅବାଟରେ ପାଦ ଦେଉଛନ୍ତି । ସେମାନଙ୍କର ଭବିଷ୍ୟତ ଲକ୍ଷ୍ୟ ବିଡ଼ମ୍ବିତ ହୋଇଯାଉଛି । ଏହି କାରଣରୁ ଶିକ୍ଷାନୁଷ୍ଠାନରେ ହରତାଳ, ଭଙ୍ଗାରୁଜା ବୃଦ୍ଧି ପାଉଛି । ତେଣୁ ବିଶ୍ୱବିଦ୍ୟାଳୟଗୁଡ଼ିକୁ ରାଜନୀତିର ବିଚରଣଭୂମି ନ କରି ସମସ୍ତ ପ୍ରଭାବରୁ ମୁକ୍ତରଖି ସ୍ୱାଧୀନ ଭାବରେ ନାଗରିକ ଗଠନ କରିବାର ଦାୟିତ୍ୱ ଅର୍ପଣ କରିବା ଆବଶ୍ୟକ ।

ଆଜି ବିଶ୍ୱବିଦ୍ୟାଳୟ ଶିକ୍ଷା ଛାତ୍ରସମାଜର ଲକ୍ଷ୍ୟ ପୂରଣରେ ବ୍ୟର୍ଥ ହୋଇଛି । ଏଥିପାଇଁ ବହୁ ସାମାଜିକ ଓ ରାଜନୀତିକ କାରଣମାନ ରହିଛି । ଦେଶ ଏବଂ ଜାତିର ମର୍ଯ୍ୟାଦା ତଥା ଐତିହ୍ୟ ରକ୍ଷାକ୍ଷେତ୍ରରେ ଏହାର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥିବାରୁ, ଏଥିପାଇଁ ସତ୍ ଉଦ୍ୟମ ଆବଶ୍ୟକ । ବିଶ୍ୱବିଦ୍ୟାଳୟ ଶିକ୍ଷାକ୍ଷେତ୍ରରେ ଯେଉଁ ସମସ୍ୟାମାନ ରହିଛି, ତା'ର ଯଥାର୍ଥ ଦୂରୀକରଣ ହୋଇପାରିଲେ ଏହି ଶିକ୍ଷାର ମହତ୍ ଉଦ୍ଦେଶ୍ୟ ସାଧିତ ହୋଇପାରନ୍ତା । ଦେଶର ସମ୍ମାନ, ଗୌରବ ବିଶ୍ୱବିଦ୍ୟାଳୟ ଶିକ୍ଷାର ମହତ୍ତ୍ୱ ଉପରେ ନିର୍ଭର କରେ । ତେଣୁ ଯେଉଁମାନେ ଚିନ୍ତାଶୀଳ ବ୍ୟକ୍ତି, ସେମାନେ ଏହି ଶିକ୍ଷାର ସଂସ୍କାର କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ଗ୍ରହଣ କରିବା ଉଚିତ । ଶିକ୍ଷାନୁଷ୍ଠାନର ପବିତ୍ରତା ରକ୍ଷା ପାଇଁ ସବୁ ସ୍ତରରେ ଉଦ୍ୟମ ଜାରିରହିବା ବାଞ୍ଛନୀୟ । ଆଦର୍ଶ ଓ ବାସ୍ତବତାକୁ ଆଖିଆଗରେ ରଖି ବିଶ୍ୱବିଦ୍ୟାଳୟ ଶିକ୍ଷାର ପରିବର୍ତ୍ତନ ଆଣିଲେ ଏହାର ପ୍ରକୃତ ଉଦ୍ଦେଶ୍ୟ ସାଧିତ ହୋଇପାରିବ ।



# ବୈଷୟିକ ଶିକ୍ଷା

**(ଉପକ୍ରମ, ବୈଷୟିକ ଶିକ୍ଷା କ'ଣ ?, ଏହି ଶିକ୍ଷାର ଉପଯୋଗିତା; ପାରମ୍ପରିକ ଶିକ୍ଷାଠାରୁ ଏହାର ସ୍ୱତନ୍ତ୍ରତା, ବୈଷୟିକ ଶିକ୍ଷାର କେତେକ ଦିଗ, ବୈଷୟିକ ଶିକ୍ଷାର ଅସୁବିଧା, ଉପସଂହାର)**

ଯାହା ମଣିଷର ସାମଗ୍ରିକ ବିକାଶରେ ସାହାଯ୍ୟ କରେ ତାହାହିଁ ଶିକ୍ଷା । ଏହି ସାମଗ୍ରିକ ବିକାଶ ମଧ୍ୟରେ ଗାନ୍ଧିଜୀ ସ୍ୱାବଲମ୍ବନଶୀଳତା ଉପରେ ଅଧିକ ଗୁରୁତ୍ୱ ଦେଇଥିଲେ । ତେଣୁ ଶିକ୍ଷା ମଣିଷକୁ ସ୍ୱାବଲମ୍ବନଶୀଳ କରାଇବା ଆବଶ୍ୟକ । ଯେଉଁ ଶିକ୍ଷା ମଣିଷକୁ ଆତ୍ମନିର୍ଭରଶୀଳ କରି ନ ପାରେ ବା ଯାହା ମଣିଷର ଅଭାବ ପୂରଣରେ ଅସମର୍ଥ ତାହା ଯଥାର୍ଥ ଶିକ୍ଷା ନୁହେଁ । ଗାନ୍ଧିଜୀ ସେଥିପାଇଁ Literacy ବା ସାକ୍ଷରତାକୁ ଶିକ୍ଷାରୂପେ ଗ୍ରହଣ କରି ପାରିନଥିଲେ । ଆଜି ପୃଥିବୀର ଆବଶ୍ୟକତା ବଢ଼ିଯାଇଛି । ତାହିଁଲେ ମଧ୍ୟ ମଣିଷ ଏଥିରୁ ତଳକୁ ଖସିପାରିବ ନାହିଁ । ମଣିଷର ଆବଶ୍ୟକତା ପରି ଶିକ୍ଷାର ମଧ୍ୟ ବିଭିନ୍ନ ଉପାଦାନ ଖୋଲିଯାଇଛି । ତେଣୁ ଯେଉଁ ଶିକ୍ଷା ଅନ୍ତତଃ ମଣିଷର ପେଟ ପୂରାଇ ପାରିବ, ତା'ର ଆବଶ୍ୟକତାକୁ ପୂରଣ କରିପାରିବ, ବର୍ତ୍ତମାନ ସେହିପ୍ରକାର ଶିକ୍ଷାର ଉପଯୋଗିତା ରହିଛି । ସେହି କାରଣରୁ ବିଜ୍ଞାନ ଯୁଗରେ ବୈଷୟିକ ଶିକ୍ଷା ଉପରେ ଅଧିକ ଗୁରୁତ୍ୱ ଆରୋପ କରାଯାଉଛି ।

ଯେଉଁ ଶିକ୍ଷାରେ ବ୍ୟାବହାରିକ ଜ୍ଞାନର ପ୍ରାଧାନ୍ୟ ଥାଏ ବା ବିଷୟ ସତ୍ତା ଉପରେ ଗୁରୁତ୍ୱ ଦିଆଯାଇଥାଏ ତାହା ବୈଷୟିକ ଶିକ୍ଷା । ସାଧାରଣ ଶିକ୍ଷାର ଶେଷ ଲକ୍ଷ୍ୟ ଚାକିରି । ଚାକିରି ନ ପାଇଲେ ସାଧାରଣ ଶିକ୍ଷା ଲାଭ କରିଥିବା ବ୍ୟକ୍ତିଟି ବେକାର ହୋଇ ବସେ । ମାତ୍ର ବୈଷୟିକ ଜ୍ଞାନଥିବା ବ୍ୟକ୍ତି ଚାକିରି ନ ପାଇଲେ ମଧ୍ୟ କେବେ ବେକାର ଜୀବନ ଅତିବାହିତ କରେ ନାହିଁ । ବୈଷୟିକ ଶିକ୍ଷା ବୁଦ୍ଧିର ବିକାଶ କରିବା ସହିତ ତା'ର ବିଷୟ ସମ୍ବନ୍ଧୀୟ ବିଭିନ୍ନ ଆବଶ୍ୟକତାକୁ ପୂରଣ କରିଥାଏ । ପ୍ରତ୍ୟକ୍ଷଜ୍ଞାନ ଅର୍ଜନରେ ଏହା ସହାୟତା କରେ । ଜୀବନକୁ ସୁସ୍ଥ ସୁନ୍ଦର କରି ଗଢ଼ି ତୋଳିବାରେ ଏହାର ଅବଦାନ କମ୍ ନୁହେଁ । ଆମର ଅତୀତ କୌଳିକ ବୃତ୍ତି ସହିତ ଏହାର ବହୁପରିମାଣରେ ସମ୍ପର୍କ ରହିଛି । ଅତୀତରେ କୌଳିକ ବୃତ୍ତିକୁ ଅନୁସରଣ କରୁଥିବା ବ୍ୟକ୍ତି ବେକାର ଜୀବନର ତିକ୍ତତା ସମ୍ପର୍କରେ ଅନଭିଜ୍ଞ ଥିଲା । ତେଣୁ ସେ ପାରମ୍ପରିକ ଶିକ୍ଷା ଉପରେ ଆଦୌ ଗୁରୁତ୍ୱ ଦେଉ ନ ଥିଲା । ସଂପ୍ରତି ଭାରତର ଅବସ୍ଥା ତାହାହିଁ ହୋଇଛି । ଏହି ଅବସ୍ଥାରୁ ରକ୍ଷାପାଇବାକୁ ହେଲେ ବୈଷୟିକ ଶିକ୍ଷାର ଜରୁରୀ ଆବଶ୍ୟକତା ରହିଛି ।

ଇଂରେଜ ଶାସନ ସମୟରେ ପ୍ରଶାସନରେ ସାହାଯ୍ୟ କରିବା ନିମିତ୍ତ କେତେକ କିରାଣୀଙ୍କର ଆବଶ୍ୟକ ହେଉଥିଲା । ତେଣୁ ଇଂରେଜ ଶାସକ କିରାଣୀ ଅଭାବ ଦୂରୀକରଣ ପାଇଁ ଭାରତରେ ଶିକ୍ଷା ବ୍ୟବସ୍ଥା ପ୍ରଚଳନ କରିଥିଲେ । ସେମାନେ ବୈଷୟିକ ଶିକ୍ଷା ଉପରେ ବିଶେଷ ପ୍ରାଧାନ୍ୟ ଦେଇ ନଥିଲେ । ସ୍ୱାଧୀନତା ପରେ ଇଂରେଜମାନଙ୍କର ବିଶ୍ୱସ୍ତତାର ପରିଚୟ ଦେବା

ନିମିତ୍ତ ଆମେ ତାଙ୍କରି ଶିକ୍ଷା ପଦ୍ଧତିକୁ ଅନୁସରଣ କଲୁ । ଶିକ୍ଷାର ଗୁଣାତ୍ମକ ବିକାଶ ଦିଗରେ ଆଦୌ ଦୃଷ୍ଟିପାତ କଲୁ ନାହିଁ । ଇଂରେଜମାନଙ୍କ ଶିକ୍ଷାପଦ୍ଧତିରେ ଆତ୍ମନିର୍ଭରଶୀଳ ହେବା ପାଇଁ କୌଣସି ପ୍ରେରଣା ନ ଥିଲା । ବରଂ ପରମୁଖାପେକ୍ଷିତା ଥିଲା ଏହି ଶିକ୍ଷା ନୀତିର ଅନ୍ୟତମ ବୈଶିଷ୍ଟ୍ୟ । ଏହି ଶିକ୍ଷାପଦ୍ଧତି ମଣିଷକୁ ଜୀବନ ସଂଗ୍ରାମ ପ୍ରତି ବିମୁଖ କରେ । ଏହା କର୍ମମୁଖୀ ନୁହେଁ । ଚାକିରି ଏହି ଶିକ୍ଷାର ଶେଷ ଲକ୍ଷ୍ୟ ହୋଇଥିବାରୁ ଜୀବନର ବହୁବିଧ ଆବଶ୍ୟକତା ପୂରଣ କ୍ଷେତ୍ରରେ ଏହା ବ୍ୟର୍ଥ ହୋଇଥାଏ । ସେଥିପାଇଁ ଗାନ୍ଧିଜୀ ଭାରତବର୍ଷରେ କର୍ମାଭିମୁଖୀ ଶିକ୍ଷାର ଆବଶ୍ୟକତା ରହିଛି ବୋଲି ଅନୁଭବ କରି ଏହାର ବିଭିନ୍ନ ଦିଗ ସଂପର୍କରେ 'ହରିଜନ' ପତ୍ରିକାରେ ଆଲୋଚନା କରିଥିଲେ । କୁଟୀର ଶିଳ୍ପ ପ୍ରତି ଗୁରୁତ୍ୱ ଦେଇ ଗାନ୍ଧିଜୀ ଭାରତୀୟ ଅର୍ଥନୀତିର ଦିଗ ପରିବର୍ତ୍ତନ କରିବାକୁ ଚାହୁଁଥିଲେ । ଲୁଗାବୁଣା, ଅରଟ ସାହାଯ୍ୟରେ ସୂତା ବୁଣା ଆଦି କାର୍ଯ୍ୟ ମାଧମରେ ଗ୍ରାମୀଣ ଅର୍ଥନୀତିକୁ ସମୃଦ୍ଧ କରିବାକୁ ଚାହୁଁଥିଲେ । ବର୍ତ୍ତମାନ ଭାରତରେ କୋଟି କୋଟି ସଂଖ୍ୟାର ବେକାର ଦେଖାଯିବାର କାରଣ ବୈଷୟିକ ଶିକ୍ଷାର ଅଭାବ । ସାର୍ଟିଫିକେଟ ମଣିଷର ପେଟ ପାଇଁ ଦାନା ଯୋଗାଡ଼ କରିପାରେ ନାହିଁ । ବରଂ ମଣିଷକୁ ନିରାଶାର ସାଗରରେ ବୁଡାଇ ଦେଇଥାଏ । ସଂପ୍ରତି ବେକାରମାନଙ୍କର ସଂଖ୍ୟା ଯେପରି ବୃଦ୍ଧି ପାଉଛି ବୈଷୟିକ ଶିକ୍ଷାର ବିକାଶ ଓ ଉନ୍ନତି ନ ହେଲେ ଏହାକୁ ରୋକାଯାଇ ପାରିବ ନାହିଁ । ଜୀବନ ସଂଗ୍ରାମରେ ସହାୟତା ପ୍ରଦାନ କରୁଥିବାରୁ ଓ ମଣିଷକୁ ସ୍ୱାବଲମ୍ବନଶୀଳ କରିବାରେ ସାହାଯ୍ୟ ଦେଉଥିବାରୁ ବୈଷୟିକ ଶିକ୍ଷାର ଆବଶ୍ୟକତା ରହିଛି ।

ସାଧାରଣତଃ ପାରମ୍ପରିକ ଶିକ୍ଷା କହିଲେ ଇଂରେଜ ଶାସନ ସମୟରୁ ପ୍ରଚଳିତ ହୋଇ ଆସୁଥିବା ଶିକ୍ଷା ବ୍ୟବସ୍ଥା । ଏହି ଶିକ୍ଷାରେ ଭବିଷ୍ୟତ ପାଇଁ କୌଣସି ପ୍ରତିଶ୍ରୁତି ନାହିଁ । ଜୀବନ ଗଠନ ପାଇଁ ଏହି ଶିକ୍ଷାରେ କୌଣସି ବାର୍ତ୍ତା ନାହିଁ । ଗୋଟିଏ ଶିକ୍ଷାନୀତି ଭାରତବର୍ଷରେ ବହୁଦିନରୁ ପ୍ରଚଳିତ ହୋଇଆସୁଥିବାରୁ ମଣିଷର ଆବଶ୍ୟକତା ପୂରଣ କ୍ଷେତ୍ରରେ ତାହା ଆଜି ବ୍ୟର୍ଥ ହୋଇଛି । ପାରମ୍ପରିକ ଶିକ୍ଷାର ସାର୍ଟିଫିକେଟ ଜୀବନରେ କୌଣସି ଆନନ୍ଦ ଭରିଦେଇପାରେ ନାହିଁ । ବରଂ ଏହି ସ୍ୱୀକୃତିପତ୍ର ଛାତ୍ରକୁ ଶ୍ରମବିମୁଖ କରେ । ନିଜର କୌଳିକ ବୃତ୍ତି ପ୍ରତି ହେୟ ଭାବ ସୃଷ୍ଟି କରାଏ । ନିରାଶା ମଧ୍ୟରେ ଶିକ୍ଷିତ ଛାତ୍ରଟି ନିଜର ଦିଗ ହଜାଏ । ମାତ୍ର ବୈଷୟିକ ଶିକ୍ଷା କର୍ମାଭିମୁଖୀ ଓ ଶ୍ରମାଭିମୁଖୀ ହୋଇଥିବାରୁ ଚାକିରି ପ୍ରତି ଏହା ବିଶେଷ ଗୁରୁତ୍ୱ ପ୍ରଦାନ କରେ ନାହିଁ । ବ୍ୟକ୍ତିକୁ ଆତ୍ମନିର୍ଭରଶୀଳ ହେବାପାଇଁ ଶିକ୍ଷାଦିଏ । ଆର୍ଥିକ କ୍ଷେତ୍ରରେ ନିଜକୁ ପ୍ରତିଷ୍ଠା କରିବା ନିମିତ୍ତ ଏହା ପ୍ରେରଣା ଦିଏ । ମଣିଷ ତା'ର ବ୍ୟାବହାରିକ ଜୀବନରେ ବୈଷୟିକ ଶିକ୍ଷାଠାରୁ ବହୁକିଛି ଶିକ୍ଷା କରେ । ଡାକ୍ତରୀ, ଇଞ୍ଜିନିୟରିଂ, ବିଭିନ୍ନ ଶିଳ୍ପ, କୃଷକ କୃଷିକରି ଯେତିକି ଶସ୍ୟ ଉତ୍ପାଦନ କରିଥାଏ, ବୈଷୟିକ ଶିକ୍ଷାଲାଭ କରିଥିବା ଜଣେ ଛାତ୍ର କୃଷିକାର୍ଯ୍ୟ କଲେ ତା'ଠାରୁ ଅଧିକ ଶସ୍ୟ ଉତ୍ପାଦନ କରେ । ବୈଷୟିକ ଜ୍ଞାନସଂପନ୍ନ ବ୍ୟକ୍ତି ଚାକିରି ନ ପାଇଲେ ମଧ ନିଜ ଚେଷ୍ଟାରେ ଲବ୍ଧଜ୍ଞାନକୁ ବିନିଯୋଗ କରି ଆତ୍ମନିର୍ଭରଶୀଳ ହୋଇପାରେ । ଏପରିକି ସେ ଅନ୍ୟ କେତେକ ବେକାରଙ୍କୁ ମଧ ଏ କ୍ଷେତ୍ରରେ ସହାୟତା ପ୍ରଦାନ କରିପାରେ । ପାରମ୍ପରିକ ଶିକ୍ଷାଲାଭ କରୁଥିବା ବ୍ୟକ୍ତିଟିଏ

ଇଂରାଜୀ ଚଳଣି ଦ୍ୱାରା ପ୍ରଭାବିତ ହୋଇ କୃଷିକାର୍ଯ୍ୟ ବା ଅନ୍ୟ କୌଣସି କାର୍ଯ୍ୟ କରିବାକୁ ପରାଙ୍‌ମୁଖୀ ହୋଇଥାଏ । ମାତ୍ର ବୈଷୟିକ ଶିକ୍ଷା ଅର୍ଜନ କରିଥିବା ବ୍ୟକ୍ତି ନିଜ ଚେଷ୍ଟାରେ କୃଷି ଦ୍ୱାରା ହେଉ କିମ୍ବା ଅନ୍ୟ କୌଣସି ଶିଳ୍ପ ଅଥବା ବ୍ୟବସାୟ ମାଧ୍ୟମରେ ନିଜର ଗୁଜୁରାଣ ମେଣ୍ଟାଇବାକୁ ସମର୍ଥ ହୋଇଥାଏ ।ଏହି ଦୃଷ୍ଟିରୁ ପାରମ୍ପରିକ ଶିକ୍ଷା ଅପେକ୍ଷା ବୈଷୟିକ ଶିକ୍ଷାର ଗୁରୁତ୍ୱ ଓ ଉପଯୋଗିତା ଅଧିକ ।

ବୈଷୟିକ ଶିକ୍ଷାର ବିଭିନ୍ନ ଦିଗ ରହିଛି । ଜଣେ ବ୍ୟକ୍ତି ନିଜର ଇଚ୍ଛାନୁଯାୟୀ ଯେ କୌଣସି ଦିଗଟିକୁ ଗ୍ରହଣ କରିପାରେ । କୃଷି, ଡାକ୍ତରୀ, ସର୍ଟହ୍ୟାଣ୍ଡ, ପଶୁପାଳନ, ମତ୍ସ୍ୟଚାଷ, ଲୁଗାବୟନ, ଇଞ୍ଜିନିୟରିଂ, ବୁକ୍ କିପିଂ, ଯନ୍ତ୍ରଶିଳ୍ପ, ବିଭିନ୍ନ କୁଟୀର ଶିଳ୍ପ, କଂସାବାସନ ତିଆରି ଆଦି ବହୁ ବିଷୟ ଏହାର ଅନ୍ତର୍ଭୁକ୍ତ । ଏହି ଶିକ୍ଷାଦ୍ୱାରା ଉଭୟ ଦେଶ ଓ ବ୍ୟକ୍ତିର ଆର୍ଥିକ ପ୍ରଗତି ହୋଇଥାଏ । ଏହାଦ୍ୱାରା ଆମର କୌଳିକ ବୃତ୍ତି ମଧ୍ୟ ସମ୍ମାନ ଲାଭ କରେ । ଅତୀତରେ ବଢ଼େଇକାର୍ଯ୍ୟ କରୁଥିବା ବ୍ୟକ୍ତିଟିର ପିଲା ସେହି କାର୍ଯ୍ୟରେ ନିଯୁକ୍ତ ହେଉଥିଲା । ମାତ୍ର ପାରମ୍ପରିକ ଶିକ୍ଷାଦ୍ୱାରା ବଢ଼େଇର ପିଲାଟିଏ ମଧ୍ୟ ତା'ର କୌଳିକ କାର୍ଯ୍ୟ କରିବାକୁ ଘୃଣା ବା ଲଜ୍ଜାବୋଧ କଲା । ବୈଷୟିକ ଶିକ୍ଷା ମୁଖ୍ୟତଃ ଶ୍ରମମୁଖୀ ହୋଇଥିବାରୁ ଏହି ଶିକ୍ଷା ଲାଭ କରୁଥିବା ବ୍ୟକ୍ତି କୌଳିକ ବୃତ୍ତି କରିବାକୁ ସଂକୋଚ କରେ ନାହିଁ । ବରଂ ନିଜର ଜ୍ଞାନ ପ୍ରୟୋଗ କରି ତାକୁ ଅଧିକ ଆଧୁନିକ ତଥା ଆକର୍ଷଣୀୟ କରିବାକୁ ଚେଷ୍ଟା କରିଥାଏ । ଏତଦ୍‌ବ୍ୟତୀତ ମଣିଷର ରୋଜଗାରରେ ଏହା ପ୍ରତ୍ୟକ୍ଷ ଭାବେ ସହଯୋଗ କରୁଥିବାରୁ ଏହାର ଉପଯୋଗିତା ମଧ୍ୟ ସର୍ବାଧିକ ।

ଏହି ଶିକ୍ଷାର ବିକାଶପାଇଁ ସରକାରୀ ସ୍ତରରେ ଉଦ୍ୟମ ଜାରି ରହିଛି । ବିଭିନ୍ନ କମିଟି ଓ କମିଶନ ଏହାର ଉପଯୋଗିତା ସମ୍ପର୍କରେ ଅନେକ କଥା କହିଛନ୍ତି । କାରିଗରୀ ଶିକ୍ଷାର ଉନ୍ନତି ପାଇଁ ବିଭିନ୍ନ ଯୋଜନାରେ ବ୍ୟବସ୍ଥା କରାଯାଇଛି । କୃଷି ଓ ବୈଷୟିକ ବିଦ୍ୟାଳୟ ସ୍ଥାପନ କରାଯାଇ ଏହାର ବିକାଶ ଦିଗରେ ବିଭିନ୍ନ ପଦକ୍ଷେପ ଗ୍ରହଣ କରାଯାଇଛି । ସରକାରଙ୍କ ୧୦+୨+୩ ଶିକ୍ଷା ପଦ୍ଧତିରେ ପ୍ରଥମ ଦଶ ବର୍ଷ ସାଧାରଣ ଶିକ୍ଷା ଓ ତତ୍‌ପର ଦୁଇ ବର୍ଷ ବୈଷୟିକ ଶିକ୍ଷାଦେବାର ବ୍ୟବସ୍ଥା କରାଯାଇଥିଲେହେଁ ଓଡ଼ିଶାରେ ସେହି ପାରମ୍ପରିକ ରୀତିରେ ଶିକ୍ଷା ଚାଲିଛି । ଦେଶର ଆର୍ଥିକ ବିକାଶ ପାଇଁ ଏହି ଶିକ୍ଷାର ଉପଯୋଗିତା ରହିଛି । ଦେଶର ପ୍ରଗତି ଏବଂ ବିକାଶ ଏହି ଶିକ୍ଷା ଉପରେ ବହୁପରିମାଣରେ ନିର୍ଭରଶୀଳ । ମାତ୍ର ଭାରତପରି ଏକ ଆର୍ଥିକ ଅନଗ୍ରସର ଦେଶରେ ଏହାର କେତେକ ଅସୁବିଧା ପରିଲକ୍ଷିତ ହୋଇଥାଏ । ଏହି ଶିକ୍ଷା ପାଇଁ ପ୍ରଚୁର ପରିମାଣରେ ଅର୍ଥର ଆବଶ୍ୟକତା ରହିଛି । ମାତ୍ର ସରକାର ଯଥାସମୟରେ ଅର୍ଥ ଯୋଗାଇ ଦେବାକୁ ଅସମର୍ଥ ହେଉଛନ୍ତି । କାରିଗରୀ ବିଦ୍ୟା ବା ଅନ୍ୟ କେତେକ ବିଦ୍ୟାରେ ଶିକ୍ଷା ନିମିତ୍ତ ଯେଉଁ ଯନ୍ତ୍ରପାତିର ଆବଶ୍ୟକ, ତାହା ଯଥାସମୟରେ ଶିକ୍ଷାନୁଷ୍ଠାନମାନଙ୍କରେ ମିଳେ ନାହିଁ । ବୈଷୟିକ ଜ୍ଞାନ ଲାଭ କରିଥିଲେ ମଧ୍ୟ ବ୍ୟକ୍ତିଟିଏ ସେହି ବିଦ୍ୟା ସମ୍ବନ୍ଧରେ ପୋଖତ ହୋଇପାରେ ନାହିଁ । ତା'ର ପୁସ୍ତକଗତ ଜ୍ଞାନ ଥାଏ; ମାତ୍ର ବ୍ୟାବହାରିକ ଜ୍ଞାନ ନ ଥାଏ । ତେଣୁ ଆଦୌ ବୈଷୟିକ ଶିକ୍ଷା ପାଇ ନ ଥିବା ପିଲାଟିଏ ଜଣେ ମିସ୍ତ୍ରୀ ପାଖରେ ରହି ଯେପରି କାରିଗରୀ ବିଦ୍ୟାରେ ନିପୁଣତା ଲାଭ କରିଥାଏ,

ଇଞ୍ଜିନିୟରିଂ ମହାବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହୋଇଥିବା ଯନ୍ତ୍ରୀଟିଏ ସେପରି ନିପୁଣତା ଲାଭ କରିନଥାଏ । ଦ୍ୱିତୀୟ କଥା ହେଉଛି, ଏବେ ବୈଷୟିକ ଜ୍ଞାନାର୍ଜନ କରି ମଧ୍ୟ ବହୁ ବ୍ୟକ୍ତି ବେକାର ଜୀବନକୁ ଆଦରି ନେଇଛନ୍ତି । ସେମାନଙ୍କୁ ସରକାର ଯେଉଁ ସୁଯୋଗ ଦେବା କଥା ତାହା ଦେଇପାରୁ ନାହାନ୍ତି । ବୈଷୟିକ ଜ୍ଞାନ ଥିଲେ ମଧ୍ୟ ପରିଶ୍ରମ ବିମୁଖତା ଯୋଗୁଁ ସେମାନେ ତାକୁ ବ୍ୟକ୍ତିଗତ ଯୋଜନା କ୍ଷେତ୍ରରେ ପ୍ରୟୋଗ କରିପାରୁ ନାହାନ୍ତି । ଏପରିକି କୃଷି ମହାବିଦ୍ୟାଳୟରୁ କୃଷି ସମ୍ପର୍କରେ ବିଶେଷ ଜ୍ଞାନଲାଭ କରି ଉତ୍ତୀର୍ଣ୍ଣ ହେବା ପରେ ମଧ୍ୟ କୃଷି କାର୍ଯ୍ୟ କରିବାକୁ କୁଣ୍ଠିତ ହେଉଛନ୍ତି । ପ୍ରଶିକ୍ଷଣର ଅଭାବ, ସୁଯୋଗର ଉପଯୁକ୍ତ ବିନିଯୋଗର ଅଭାବ ଯୋଗୁଁ ବୈଷୟିକ ଶିକ୍ଷା ଭାରତରେ ଯେପରି ଗୃହୀତ ହେବା କଥା, ତାହା ହୋଇପାରି ନାହିଁ ।

ଆଜିର ଯୁଗ ବିଜ୍ଞାନର ଯୁଗ । ବିଜ୍ଞାନ ସର୍ବଦା ବୈଷୟିକ ଜ୍ଞାନ ଉପରେ ପ୍ରାଧାନ୍ୟ ଦେଇଥାଏ । ଦେଶର ଉନ୍ନତି ବୈଷୟିକ ଶିକ୍ଷା ଉପରେ ମଧ୍ୟ ବହୁପରିମାଣରେ ନିର୍ଭର କରେ । ଏହା ବ୍ୟକ୍ତିକୁ ଆତ୍ମନିର୍ଭରଶୀଳ ଏବଂ ଜାତି ଓ ଦେଶକୁ ଏହା ସ୍ୱାବଲମ୍ବନଶୀଳ କରାଏ । ଆଜି ବିଶ୍ୱରେ ଯେଉଁ ଦେଶ ଯେତେପରିମାଣରେ ବୈଷୟିକ ଜ୍ଞାନ ସମୃଦ୍ଧ, ସେହି ଦେଶ ଆର୍ଥିକ କ୍ଷେତ୍ରରେ ମଧ୍ୟ ସେହିପରି ସମୃଦ୍ଧ । ଆର୍ଥିକ ବିକାଶ ଏହାଦ୍ୱାରା ତ୍ୱରାନ୍ୱିତ ହୁଏ । ବ୍ୟକ୍ତି ମନରୁ କର୍ମବିମୁଖତା ଦୂର କରେ । ବୌଦ୍ଧିକ ଶିକ୍ଷା ଏବଂ ବୈଷୟିକ ଶିକ୍ଷାର ମିଳନ ହେଲେ ଦେଶର ବିକାଶ ଓ ପ୍ରଗତିର ଗତିରୋଧ ଅସମ୍ଭବ ହୋଇପଡ଼େ । ବର୍ତ୍ତମାନ ସରକାରୀ ଏବଂ ବେସରକାରୀ ସ୍ତରରେ ଏହି ଶିକ୍ଷାକୁ ଅଧିକ ଉପଯୋଗୀ ଓ ଲୋକପ୍ରିୟ କରିବାପାଇଁ ପଦକ୍ଷେପମାନ ଗ୍ରହଣ କରାଯାଉଛି । ବୈଷୟିକ ଶିକ୍ଷାସମ୍ପନ୍ନ ବ୍ୟକ୍ତି ତା'ର ଶିକ୍ଷାକୁ କିପରି ଯଥାଯଥ ଉପଯୋଗ କରିପାରିବ, ସେଥିପାଇଁ ସୁଯୋଗକୁ ଅପେକ୍ଷା କରାଯାଇଛି । ଏହାସତ୍ତ୍ୱେ ପରିଶ୍ରମ ବିମୁଖ ହେଲେ ଏହି ଶିକ୍ଷାର କୌଣସି ମୂଲ୍ୟ ରହିବ ନାହିଁ । ତେଣୁ ଏହି ଶିକ୍ଷାର ଗୁରୁତ୍ୱ ସବୁ ସ୍ତରରେ ଉପଲବ୍ଧି ହୋଇପାରିଲେ ଏହା ନିଶ୍ଚିତଭାବରେ ଲୋକପ୍ରିୟ ଓ ବିକାଶ ଲାଭ କରିପାରିବ ।

●

## ଶାରୀରିକ ଶିକ୍ଷା

**(ଉପକ୍ରମ, ଶାରୀରିକ ଶିକ୍ଷାର ଗୁରୁତ୍ୱ, ଭାରତରେ ଶାରୀରିକ ଶିକ୍ଷାର ପରମ୍ପରା, ଏହି ଶିକ୍ଷାର ସାମାଜିକ ଉପଯୋଗିତା, ବାଧ୍ୟତାମୂଳକ ଶାରୀରିକ ଶିକ୍ଷା, ଉପସଂହାର)**

ସୁସ୍ଥ ଶରୀର ମଣିଷର ଅମୂଲ୍ୟ ସମ୍ପଦ । ସେଥିପାଇଁ କୁହାଯାଇଥାଏ 'Health is wealth'. ପ୍ରାଚୁର୍ଯ୍ୟ ଜରାଜୀର୍ଣ୍ଣ ବ୍ୟକ୍ତିକୁ ଆନନ୍ଦ ଦେଇପାରେନା । ବିଳାସ ଓ ସମ୍ପଦ ବ୍ୟାଧିଗ୍ରସ୍ତ ପ୍ରଫୁଲ୍ଲିତ କରିପାରେନା । ମାନସିକ ବିକାଶ ପାଇଁ ଯେପରି ଶିକ୍ଷାର ଆବଶ୍ୟକତା ରହିଛି, ଶରୀରର ବିକାଶ ପାଇଁ ମଧ୍ୟ ସେହିପରି ଶିକ୍ଷାର ଆବଶ୍ୟକତା ରହିଛି । ସେଥିପାଇଁ ଆଜି ବିଶ୍ୱରେ ରୋଗମୁକ୍ତ

ଏକ ସୁସ୍ଥ ଶରୀର ପାଇଁ ଉଦ୍ୟମ ଜାରି ରହିଛି । ସୁସ୍ଥ ଶରୀର ମନକୁ ପ୍ରଫୁଲ୍ଲ ରଖେ, ମାନସିକ ଶକ୍ତିର ବିକାଶରେ ସହାୟତା କରେ । ସେଥିପାଇଁ ଶରୀର ଚର୍ଚ୍ଚା ଉପରେ ଆଜି ଗୁରୁତ୍ୱ ପ୍ରଦାନ କରାଯାଉଛି । ଦେହର ସୁସ୍ଥତା ଭାଗ୍ୟ ଓ ଭଗବାନ୍‌ଙ୍କର ଆଶୀର୍ବାଦ କିମ୍ବା ଅଭିଶାପ ନୁହେଁ । ଏହା ସମ୍ପୂର୍ଣ୍ଣ ମାନବକୃତ । ସେଥିପାଇଁ ସେଦିନ ମହାଭାରତର ଶ୍ରେଷ୍ଠ ବୀର କର୍ଣ୍ଣ କହିଥିଲେ 'ଉଚ୍ଚକୁଳରେ ଜନ୍ମହେବା ଭାଗ୍ୟାଧୀନ ହୋଇପାରେ; କିନ୍ତୁ ବ୍ୟକ୍ତିତ୍ୱ ମୋର ଅଧୀନ' । ମାନବ ଚାହିଁଲେ ତା'ର ଶରୀରକୁ ସୁସ୍ଥ ସବଳ ରଖିପାରିବ । ଶାରୀରିକ ଶକ୍ତି ହିଁ ସମାଜରେ ମଣିଷକୁ ନିରାପତ୍ତା ଯୋଗାଇଥାଏ । ଏହି କାରଣରୁ ଆଜି ବିଭିନ୍ନ ସ୍ତରରେ ଶାରୀରିକ ଶିକ୍ଷାର ବିକାଶ ନିମିତ୍ତ ବିଭିନ୍ନ ପଦକ୍ଷେପ ଗ୍ରହଣ କରାଯାଉଛି ।

ଶାରୀରିକ ଶିକ୍ଷା ପ୍ରତିକ୍ଷେତ୍ରରେ ଆବଶ୍ୟକ । ସଂପ୍ରତି ଯେକୌଣସି ପ୍ରଶାସନିକ ଚାକିରି, ପୋଲିସ କିମ୍ବା ସୈନ୍ୟବିଭାଗର ନିଯୁକ୍ତି ପାଇଁ ଶାରୀରିକ ଗଠନକୁ ବିଶେଷ ଯୋଗ୍ୟତା ଭାବରେ ଗ୍ରହଣ କରାଯାଉଛି । ଗାନ୍ଧିଜୀ ମଧ ତାଙ୍କର ଶିକ୍ଷାନୀତିରେ ଶାରୀରିକ ଶିକ୍ଷା ପ୍ରତି ଗୁରୁତ୍ୱ ଆରୋପ କରିଥିଲେ । ଶରୀରକୁ ଶକ୍ତିଶାଳୀ ଏବଂ ରୋଗହୀନ କରିବାକୁ ହେଲେ ଏହି ଶିକ୍ଷାର ଗୁରୁତ୍ୱ ରହିଛି । ଶିକ୍ଷାର ମୂଳ ଉଦ୍ଦେଶ୍ୟ ହେଉଛି ଶାରୀରିକ ଓ ମାନସିକ ବିକାଶ । ଶରୀର ଅସୁସ୍ଥ ରହିଲେ ମାନସିକ ବିକାଶ ସାଧିତ ହୋଇପାରେ  ନାହିଁ । ତେଣୁ ଶରୀରତତ୍ତ୍ୱବିତ୍‌ମାନେ ପିଲାଟିର ସ୍ୱାସ୍ଥ୍ୟର ବିକାଶ ନିମିତ୍ତ ଲକ୍ଷ୍ୟଦେବା ପାଇଁ ପିତାମାତାଙ୍କୁ ଉପଦେଶ ଦେଇଥାନ୍ତି । ଜୀବନ ସଂଗ୍ରାମରେ ଶରୀର ଉପଯୋଗିତା ସବୁକ୍ଷେତ୍ରରେ ସ୍ୱୀକୃତ । କଠିନକର୍ମ କେବଳ ସୁସ୍ଥ ଶରୀରଧାରୀ ମଣିଷର ପକ୍ଷେ ସମ୍ଭବ । କେବଳ ପୁଷ୍ଟିସାର ଅଥବା ସ୍ୱାଦଯୁକ୍ତ ଖାଦ୍ୟ ଶରୀରର ବିକାଶରେ ସହାୟକ ହୋଇପାରେ ନାହିଁ । ଏଥିପାଇଁ ଆବଶ୍ୟକ ରହିଛି ବ୍ୟାୟାମ, କୁସ୍ତି, କସରତ ଓ କ୍ରୀଡ଼ାର । ଅଧିକ ପୁଷ୍ଟିସାର ଖାଦ୍ୟ ବ୍ୟାୟାମ ବା କସରତ ବ୍ୟତିରେକେ ଚର୍ବିବହୁଳ ହୋଇପଡ଼େ । ଏହାଦ୍ୱାରା ଶରୀରର ସୌନ୍ଦର୍ଯ୍ୟ ନଷ୍ଟ ହୁଏ ଏବଂ ଶରୀର ବିଭିନ୍ନ ରୋଗର ଗନ୍ତାଘରରେ ପରିଣତ ହୋଇଯାଏ । ବର୍ତ୍ତମାନ ବହୁ ବ୍ୟକ୍ତି ହୃଦ୍‌କ୍ରିୟା ବନ୍ଦ ବା ବିଭିନ୍ନ କାରଣରୁ ମୃତ୍ୟୁବରଣ କରୁଛନ୍ତି । ଏହାର ପ୍ରଥମ କାରଣ ହେଉଛି ଶାରୀରିକ ଶ୍ରମର ଅଭାବ । ଶାରୀରିକ ଶିକ୍ଷାଦ୍ୱାରା ମାଂସପେଶୀ ଦୃଢ଼ ହୁଏ, ଶରୀର ସୁସ୍ଥ ରହେ, କାର୍ଯ୍ୟ ପାଇଁ ଆଗ୍ରହ ସୃଷ୍ଟି ହୁଏ । ନୀରୋଗ ଶରୀର ମଣିଷର ବୁଦ୍ଧିକୁ ତୀକ୍ଷ୍ଣ ଓ ଶାଣିତ କରିଥାଏ । ବର୍ତ୍ତମାନ ଯେପରି ଅସାମାଜିକ କାର୍ଯ୍ୟ ସମାଜରେ ବୃଦ୍ଧି ଲାଭ କରୁଛି, ତା'ର ମୁକାବିଲା ପାଇଁ ଶାରୀରିକ ଶିକ୍ଷାର ଆବଶ୍ୟକ ପଡୁଛି । ଶାରୀରିକ ଶିକ୍ଷା ହିଁ ଶକ୍ତି ଓ ସାହସ ଉଦ୍ରେକ କରିଥାଏ । ବିଭିନ୍ନ କ୍ରୀଡ଼ା, ବ୍ୟାୟାମ, କୁସ୍ତି ଆଦି ଦ୍ୱାରା ଶରୀର ପୁଷ୍ଟ ହେବା ସଙ୍ଗେ ସଙ୍ଗେ ମଣିଷ ଶୃଙ୍ଖଳିତ ଭାବରେ କାର୍ଯ୍ୟ କରିବାକୁ ଶିକ୍ଷା କରିଥାଏ ।

ସଭ୍ୟତାର ଆଲୋକ ଲାଭ କରିବାର ବହୁପୂର୍ବରୁ ମାନବ ଶରୀରର ଶକ୍ତି ସମ୍ପର୍କରେ ସଚେତନ ଥିଲା । ଯାଯାବର ଜୀବନ ଯାପନ ସମୟରେ ଜୋର ଯାର ମୁଲକ ତା'ର ନୀତିରେ ଗୋଷ୍ଠୀ ବା ଦଳ ବିଶ୍ୱାସ କରୁଥିଲେ । ଯେଉଁ ଦଳ ବା ଗୋଷ୍ଠୀ ଶକ୍ତିଶାଳୀ ଥିଲା, ଅନ୍ୟଦଳ ଉପରେ ସେ ପ୍ରାଧାନ୍ୟ ବିସ୍ତାର କରୁଥିଲା । ସବଳ ଠାରୁ ଦୁର୍ବଳ ରକ୍ଷା ପାଇବା ପାଇଁ ସମାଜର

ପରିକଳ୍ପନା କଲା । ସମାଜ ଗଠନ ପରେ ସବଳ ବ୍ୟକ୍ତି ଉପରେ କିଛିଟା ଅଙ୍କୁଶ ଲଗାଯାଇଥିଲେ ମଧ୍ୟ ତଥାପି ସବଳ ହିଁ ସମାଜର ଗୁରୁତ୍ୱପୂର୍ଣ୍ଣ ବ୍ୟକ୍ତି ରୂପେ ପରିଗଣିତ । ପୁରାଣ ଯୁଗରେ ଶାରୀରିକ ଶକ୍ତି ଉପରେ ଗୁରୁତ୍ୱ ଦିଆଯାଉଥିଲା । 'ଦୁର୍ଯ୍ୟୋଧନଙ୍କ ବିନା ଯୁଦ୍ଧେ ନ ଦେବାକୁ ସୂଚ୍ୟଗ୍ର ମେଦିନୀ' ଆସ୍ଫାଳନ ଏହି ଶାରୀରିକ ଶକ୍ତିକୁ ହିଁ ଗୁରୁତ୍ୱ ଦେଇଥିଲା । ସେଥିପାଇଁ ରାଜପୁତ୍ର ବା କ୍ଷତ୍ରିୟ ସନ୍ତାନ ପିଲାଟି ଦିନରୁ ଗୁରୁଙ୍କର ତତ୍ତ୍ୱାବଧାନରେ ଯୁଦ୍ଧ, କୁସ୍ତି, ମାଲବିଦ୍ୟା, ବ୍ୟାୟାମ ଆଦି ଶିକ୍ଷା କରୁଥିଲେ । ବଣଜଙ୍ଗଲରେ ବସବାସ କରୁଥିବା ସମାଜର ନିମ୍ନବର୍ଗର ଅଧିବାସୀମାନେ ମଧ୍ୟ ଶାରୀରିକ ଶିକ୍ଷାର ମହତ୍ତ୍ୱ ସମ୍ବନ୍ଧରେ ସଚେତନ ଥିଲେ । ମଧ୍ୟଯୁଗରେ ପାଇକଶାଳା ବା ଆଖଡ଼ାଶାଳାରେ ମାଲବିଦ୍ୟା ଶିକ୍ଷା ମାଧ୍ୟମରେ ଶରୀରର ପୁଷ୍ଟିସାଧନ ଉପରେ ଗୁରୁତ୍ୱ ଦିଆଯାଉଥିଲା । ମଫସଲ ଅଞ୍ଚଳରେ ପିଲାମାନେ ଯେଉଁ ଖେଳ ଖେଳିଥାନ୍ତି, ତାହା ମଧ୍ୟ ଶାରୀରିକ ଶିକ୍ଷା ବା ଶ୍ରମ ପର୍ଯ୍ୟାୟବାଚୀ । କୃଷକ ଓ ଦୈନିକ ମଜୁରିଆ ନିଜର ଜୀବିକା ପାଇଁ ଶାରୀରିକ ଶ୍ରମ କରିଥାନ୍ତି । ଅତୀତରେ ଶାରୀରିକ ଶିକ୍ଷା ଏକ ସମ୍ପୂର୍ଣ୍ଣ ପାଠ୍ୟକ୍ରମ ନ ହୋଇଥିଲେ ମଧ୍ୟ ବିଭିନ୍ନ ପରିଶ୍ରମ ଏହାର ଅଭାବ ପରିପୂରଣରେ ସମର୍ଥ ହେଉଥିଲା । ଇଂରେଜ ଶାସନ ସମୟରେ ନୂତନ ରୂପେ ଶରୀର ଚର୍ଚ୍ଚା ପାଇଁ ନୀତି ନିୟମ ପ୍ରଣୟନ କରାଗଲା । ଗ୍ରାମର ଆଖଡ଼ାଶାଳାକୁ ବିପ୍ଳବର ମୂଳ ସୋପାନ ଭାବରେ ଗ୍ରହଣ କରାଯାଇ ବନ୍ଦ କରିଦିଆଗଲା । ବିଭିନ୍ନ କ୍ରୀଡ଼ା ମାଧ୍ୟମରେ ଶାରୀରିକ ଶିକ୍ଷାକୁ ଉତ୍ସାହ ପ୍ରଦାନ କରାଗଲା । ଏଥିପାଇଁ ତାଲିମପ୍ରାପ୍ତ ଶିକ୍ଷକ ନିଯୁକ୍ତ ଦିଆଗଲା । ବିଦ୍ୟାଳୟ ଓ ମହାବିଦ୍ୟାଳୟମାନଙ୍କରେ ମଧ୍ୟ ଶାରୀରିକ ଶିକ୍ଷାର ଗୁରୁତ୍ୱ ଉପଲବ୍ଧି କରାଯାଇ ଏହାକୁ ସ୍ୱତନ୍ତ୍ର ଭାବରେ ଏକ ବିଷୟ ରୂପେ ଗ୍ରହଣ କରାଯାଇଛି । ଅବଶ୍ୟ ମହାବିଦ୍ୟାଳୟ ସ୍ତରରେ ଏଥି ପ୍ରତି ବିଶେଷ ଗୁରୁତ୍ୱ ପ୍ରଦାନ କରାଯାଉ ନାହିଁ । ମାତ୍ର ବିଦ୍ୟାଳୟମାନଙ୍କରେ ସ୍ୱତନ୍ତ୍ର ରୂପେ ଗୋଟିଏ ଖେଳ ପିରିୟଡ୍ ରହିଛି, P.E.T. (Physical Education Teacher) ବା ଖେଳ ଶିକ୍ଷକ ଅଥବା ଶାରୀରିକ ଶିକ୍ଷା ଶିକ୍ଷକ ଏହାର ଦାୟିତ୍ୱରେ ଅଛନ୍ତି । ଶରୀରର ପରିପୁଷ୍ଟି ନିମିତ୍ତ ଯେଉଁ କ୍ରୀଡ଼ାର ଆବଶ୍ୟକତା ରହିଛି ତାହା ବିଦ୍ୟାଳୟମାନଙ୍କରେ ଶିକ୍ଷା ଦିଆଯାଉଛି । ଏହି ଶିକ୍ଷକଗଣ ସମ୍ପୂର୍ଣ୍ଣଭାବରେ ତାଲିମପ୍ରାପ୍ତ । ବିଭିନ୍ନ ପ୍ରଶିକ୍ଷଣ ଅନୁଷ୍ଠାନରୁ ଉତ୍ତୀର୍ଣ୍ଣ ପରେ ବିଦ୍ୟାଳୟ ବା ମହାବିଦ୍ୟାଳୟରେ ଏମାନେ ନିଯୁକ୍ତି ପାଇଥାନ୍ତି । ଶିକ୍ଷକମାନଙ୍କୁ ତାଲିମ ଦେବାପାଇଁ ସ୍ୱତନ୍ତ୍ର ଅନୁଷ୍ଠାନମାନ ମଧ୍ୟ ସରକାରୀ ଓ ବେସରକାରୀ ସ୍ତରରେ ଗଠନ କରାଯାଇଛି । ଏପରିକି ବାଳିକା ବିଦ୍ୟାଳୟ ଓ ମହାବିଦ୍ୟାଳୟମାନଙ୍କରେ ମଧ୍ୟ ଏଥିପ୍ରତି ଅନୁରୂପ ବ୍ୟବସ୍ଥା କରାଯାଇଛି । ଯେଉଁ ଶିକ୍ଷୟିତ୍ରୀମାନେ ଏଥିରେ ନିଯୁକ୍ତି ପାଉଛନ୍ତି, ସେମାନେ ମଧ୍ୟ ତାଲିମପ୍ରାପ୍ତା । ସ୍ୱାଧୀନତା ପରେ ଶାରୀରିକ ଶିକ୍ଷାକୁ ଉତ୍ସାହ ଦେବା ନିମିତ୍ତ ବିଭିନ୍ନ କ୍ରୀଡ଼ା ଅନୁଷ୍ଠାନ ଗଠନ ସହିତ ବିଦ୍ୟାଳୟ ମହାବିଦ୍ୟାଳୟସ୍ତରରେ ଏହାର ଏକ ଏକ Unit ବା ଅଂଶ କାର୍ଯ୍ୟ କରୁଛି ।

ଶାରୀରିକ ଶିକ୍ଷାର ସାମାଜିକ ଉପଯୋଗିତା ନିଃସନ୍ଦେହରେ ଗୁରୁତ୍ୱପୂର୍ଣ୍ଣ । ବ୍ୟକ୍ତିକୁ ନେଇ ସମାଜର ସୃଷ୍ଟି । ବର୍ତ୍ତମାନ ସମାଜରେ ମୂଲ୍ୟବୋଧରେ ସଙ୍କଟ ଦେଖାଦେଇଛି । ଖୁନ୍, ଡକାୟତି, ଧର୍ଷଣ ଆଦିର ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଛି । 'ଜୋର ଯାର ମୁଲକ ତାର' ନୀତି

ଏବେ ମଧ୍ୟ ସମାଜରେ ବଳବତ୍ତର ରହିଛି । ଶାରୀରିକ ଦୁର୍ବଳ ବ୍ୟକ୍ତି ସର୍ବଦା ସବଳର ଅତ୍ୟାଚାରରେ ମୂହ୍ୟମାନ । ଏହି ଅସାମାଜିକ ଜୀବମାନଙ୍କର ପ୍ରତିରୋଧ ପାଇଁ ଆବଶ୍ୟକ ରହିଛି ଶାରୀରିକ ଶକ୍ତିର । ଏତଦ୍ ବ୍ୟତୀତ ଶାରୀରିକ ଶ୍ରମଦ୍ୱାରା ଶରୀର ରୋଗମୁକ୍ତ ହୋଇଥାଏ, ମନ ପ୍ରଫୁଲ୍ଲ ରହେ । ବିଳାସମୟ ଜୀବନଯାପନ ଶରୀରର ମେଦ ବୃଦ୍ଧି କରାଇ ରୋଗମାନଙ୍କୁ ଡାକି ଆଣିଥାଏ । ସେଥିପାଇଁ ସହରରେ ବିଳାସମୟ ଜୀବନଯାପନ କରୁଥିବା ବ୍ୟକ୍ତି ଯେଉଁ ପରିମାଣରେ ରୋଗର ଶିକାର ହୋଇଥାନ୍ତି, ଦୈନିକ ମଜୁରିଆ କିମ୍ବା କ୍ରୀଡ଼ାବିତ୍‌ମାନେ ସେହି ପରିମାଣରେ ରୋଗଦ୍ୱାରା ଆକ୍ରାନ୍ତ ହୋଇନଥାନ୍ତି । ଶାରୀରିକ ଶ୍ରମ କରୁଥିବା ବ୍ୟକ୍ତି ବାର୍ଦ୍ଧକ୍ୟ ପର୍ଯ୍ୟନ୍ତ ସୁସ୍ଥ ସବଳ ରହିପାରିଥାନ୍ତି । ଶାରୀରିକ ସୁସ୍ଥ ବ୍ୟକ୍ତି ଯେକୌଣସି କାର୍ଯ୍ୟ କରିବାକୁ ଆଗ୍ରହ ପ୍ରକାଶ କରିଥାଏ । ସମାଜର ବିକାଶ ଓ ପ୍ରଗତି ପାଇଁ ଆଜି ଦୈହିକ ଶକ୍ତିର ପ୍ରୟୋଜନ ରହିଛି । ଏହି ଶକ୍ତି କେବଳ ଶାରୀରିକ ଶିକ୍ଷା ଦ୍ୱାରା ଉପଲବ୍ଧ ହୋଇଥାଏ ।

ମଣିଷର ମନ ସହିତ ଶରୀରର ସମ୍ପର୍କ ଅଭେଦ୍ୟ । ଶାରୀରିକ ସୁସ୍ଥତା ମାନସିକ ବିକାଶ କ୍ଷେତ୍ରରେ ସହାୟତା କରିଥାଏ । ତେଣୁ ଆଜି ସମଗ୍ର ବିଶ୍ୱରେ ଶରୀର ଶିକ୍ଷା ପ୍ରତି ଗୁରୁତ୍ୱ ଦିଆଯାଉଛି । ବର୍ତ୍ତମାନ ଶାରୀରିକ ଶିକ୍ଷାକୁ ବାଧ୍ୟତାମୂଳକ କରାଯିବାର ପ୍ରୟୋଜନ ଉପଲବ୍ଧି ହେଉଛି । ବ୍ୟାୟାମ, କ୍ରୀଡ଼ା, କୁସ୍ତି ଆଦି ଦ୍ୱାରା ଶରୀରକୁ ଶକ୍ତିଶାଳୀ କରାଯାଇଥାଏ । ପିଲାଦିନରୁ ଏହି ଶିକ୍ଷା ପ୍ରତି ଆଗ୍ରହ ସୃଷ୍ଟି କରାଯାଇପାରିଲେ ଭବିଷ୍ୟତ ଚରିତ୍ର ଗଠନରେ ଏହା ସାହାଯ୍ୟ କରିଥାଏ । ଶରୀର ଚର୍ଚ୍ଚା ଦ୍ୱାରା ମଣିଷର ମନ ଉପରେ ନିୟନ୍ତ୍ରଣ ଆସିଥାଏ ଏବଂ ବ୍ୟକ୍ତିତ୍ୱର ବିକାଶ କ୍ଷେତ୍ରରେ ସହାୟତା କରିଥାଏ । ପ୍ରତ୍ୟେକ କାର୍ଯ୍ୟର ସଫଳତା ଅନ୍ତରାଳରେ ଶୃଙ୍ଖଳା ଜ୍ଞାନର ଆବଶ୍ୟକତା ରହିଛି । କ୍ରୀଡ଼ା, ବ୍ୟାୟାମ ଆଦି ଦ୍ୱାରା ଶୃଙ୍ଖଳାଜ୍ଞାନ ଆସିଥାଏ । ଶରୀରର ରକ୍ତ ସଞ୍ଚାଳନ, ପାକକ୍ରିୟା ଆଦି ପାଇଁ ଶାରୀରିକ ଶିକ୍ଷାର ପ୍ରୟୋଜନ ରହିଛି । ବିଦ୍ୟାଳୟ ଓ ମହାବିଦ୍ୟାଳୟ ସ୍ତରରେ କ୍ରୀଡ଼ା ମାଧ୍ୟମରେ ଶାରୀରିକ ଶିକ୍ଷାର ବିକାଶ କରାଯିବା ସଙ୍ଗେ ସଙ୍ଗେ ବିଦ୍ୟାଳୟ ଓ ମହାବିଦ୍ୟାଳୟକୁ ଯାଉନଥିବା ବ୍ୟକ୍ତିମାନଙ୍କ ପାଇଁ ବିଭିନ୍ନ ସ୍ଥାନରେ ଶାରୀରିକ ଶିକ୍ଷାକେନ୍ଦ୍ର ପ୍ରତିଷ୍ଠା କରିବାର ଆବଶ୍ୟକତା ରହିଛି । ଏହି ଶିକ୍ଷାଦାନ ନିମିତ୍ତ ପ୍ରଶିକ୍ଷଣପ୍ରାପ୍ତ ଯୋଗ୍ୟ ଶିକ୍ଷକମାନଙ୍କୁ ନିଯୁକ୍ତି ପ୍ରଦାନ କରାଯିବା ଉଚିତ । ତ୍ରୁଟିପୂର୍ଣ୍ଣ ଶାରୀରିକ ଶିକ୍ଷା ଶରୀରର ଉପକାର ସାଧନ କରିବା ପରିବର୍ତ୍ତେ, ଅପକାର ସାଧନ କରିଥାଏ । ସରକାରୀ ଓ ବେସରକାରୀ ସ୍ତରରେ ଏହି ଶିକ୍ଷାର ବିକାଶ ନିମିତ୍ତ ପଦକ୍ଷେପ ଗ୍ରହଣ କରାଯିବା ଆବଶ୍ୟକ । ବିଦ୍ୟାଳୟ ଏବଂ ମହାବିଦ୍ୟାଳୟରେ ଅନ୍ୟାନ୍ୟ ବିଷୟ ପରି କ୍ରୀଡ଼ାକୁ ମଧ୍ୟ ଏକ ବାଧ୍ୟତାମୂଳକ ବିଷୟରୂପେ ପାଠ୍ୟଖସଡ଼ାର ଅନ୍ତର୍ଭୁକ୍ତ କରାଯିବା ଉଚିତ । ଏହାଦ୍ୱାରା ବିଦ୍ୟାଳୟ ସ୍ତରରୁ ଶାରୀରିକ ଶିକ୍ଷା ପ୍ରତି ଯୁବସଂପ୍ରଦାୟର ଆଗ୍ରହ ସୃଷ୍ଟି ହୋଇପାରିବ ।

ମାନସିକ ବିକାଶ ପରି ଶରୀରର ବିକାଶ ଆଦି ଅପରିହାର୍ଯ୍ୟ ହୋଇପଡ଼ିଛି । ଆର୍ଥନୀତିକ ଦୃଷ୍ଟିକୋଣରୁ ସରକାର ବିଦ୍ୟାଳୟ ଏବଂ ମହାବିଦ୍ୟାଳୟମାନଙ୍କରୁ ଶାରୀରିକ ଶିକ୍ଷା ପ୍ରଦାନ କରୁଥିବା ଶିକ୍ଷକ ପଦବୀ ଉଠାଇ ଦେବାକୁ ଚେଷ୍ଟା କରୁଛନ୍ତି । ଏହା ନିଶ୍ଚିତ ଭାବରେ ଏକ ତ୍ରୁଟିପୂର୍ଣ୍ଣ

ପଦକ୍ଷେପ । ଶ୍ରମଭିତ୍ତିକ ଶିକ୍ଷାପରି ଶାରୀରିକ ଶିକ୍ଷା ମଧ ଅତ୍ୟନ୍ତ ଆବଶ୍ୟକ । ଉଚ୍ଛୃଙ୍ଖଳ ଯୁବସଂପ୍ରଦାୟଙ୍କୁ ଏହି ଶିକ୍ଷା ମାଧ୍ୟମରେ ବହୁପରିମାଣରେ ନିୟନ୍ତ୍ରଣ କରାଯାଇପାରିବ । ଏହି ଶିକ୍ଷା ମଧ ଯୁବସମାଜ ମଧ୍ୟରେ ସହଯୋଗ ମନୋବୃତ୍ତି ବୃଦ୍ଧି କରିଥାଏ । ଅନ୍ୟ ପ୍ରତି ସହାନୁଭୂତିଶୀଳ ହେବା, ବିପଦରେ ପଡ଼ିଥିବା ବ୍ୟକ୍ତିଙ୍କୁ ସାହାଯ୍ୟ କରିବା, ସର୍ବୋପରି ସମାଜର ସାମଗ୍ରିକ ବିକାଶ ପାଇଁ ସ୍ୱାର୍ଥହୀନ ଭାବେ କାର୍ଯ୍ୟରେ ପ୍ରବୃତ୍ତ ହେବା ନିମିତ୍ତ ଏହି ଶିକ୍ଷା ଉତ୍ସାହ ପ୍ରଦାନ କରିଥାଏ । ଏଣୁ ଛୋଟପିଲାମାନଙ୍କୁ ଶାରୀରିକ ଶିକ୍ଷା ପ୍ରତି ଯତ୍ନବାନ କରାଇବା ଯେପରି ପିତାମାତାଙ୍କର ନୈତିକ କର୍ତ୍ତବ୍ୟ ପରିବାର ବାହାରେ ବିଦ୍ୟାଳୟ ମହାବିଦ୍ୟାଳୟ ବା ଅନ୍ୟାନ୍ୟ ସ୍ଥାନରେ ଏହି ଶିକ୍ଷା ପ୍ରତି ଯୁବସମାଜର ଆଗ୍ରହ ସୃଷ୍ଟି କରାଇବା ସରକାରଙ୍କର ମଧ ଜାତୀୟ କର୍ତ୍ତବ୍ୟ । ତେଣୁ ପରିବାର ସରକାର ଏବଂ ସ୍ୱେଚ୍ଛାସେବୀ ସଙ୍ଗଠନ ସବୁସ୍ତରରେ ଶାରୀରିକ ଶିକ୍ଷା ପ୍ରତି ଗୁରୁତ୍ୱ ପ୍ରଦାନ କରାଗଲେ ଆମେ ଏକ ନୀରୋଗ ଭାରତର ସ୍ୱପ୍ନ ଦେଖିପାରିବା ।

●

## ସାମରିକ ଶିକ୍ଷା

**(ଉପକ୍ରମ, ଭାରତରେ ସାମରିକ ଶିକ୍ଷାର ପରମ୍ପରା, ସାମରିକ ଶିକ୍ଷାର ଆବଶ୍ୟକତା, ବିଶ୍ୱ ପରିପ୍ରେକ୍ଷୀରେ ସାମରିକ ଶିକ୍ଷା, ସ୍ୱାଧୀନତା ପରବର୍ତ୍ତୀ ଭାରତରେ ସାମରିକ ଶିକ୍ଷାର ଗୁରୁତ୍ୱ, ସାମରିକ ଶିକ୍ଷାର କେତେକ ଦିଗ, ଉପସଂହାର)**

ଭାରତ କେବଳ ଶସ୍ୟଶ୍ୟାମଳା ସୁଜଳା ସୁଫଳା ଦେଶ ନୁହେଁ; ଏହା ମଧ ବୀରପ୍ରସୂ । ଏହାର ଐତିହ୍ୟ ଅତୀବ ଗୌରବାବହ । ସତ୍ୟ, ଶାନ୍ତି, ଦୟା ଓ କ୍ଷମା ଏହାର ଆଦର୍ଶ । ଅହିଂସା ନୀତି ଏହାର ମୂଳନୀତି । ଏହା ସତ୍ତ୍ୱେ ଏ ବସୁନ୍ଧରା ବୀରଭୋଗ୍ୟା । ଡାରଉଇନ୍‌ଙ୍କ ବିବର୍ତ୍ତନ ବାଦର ତୃତୀୟ ମୌଳିକ ତତ୍ତ୍ୱ ହେଉଛି– 'Survival of the fittest.' ଏ ପୃଥିବୀରେ କେବଳ ଯୋଗ୍ୟତମର ହିଁ ବଞ୍ଚି ରହିବାର ଅଧିକାର ରହିଛି । ବଞ୍ଚି ରହିବାକୁ ହେଲେ ସଂଗ୍ରାମର ଆବଶ୍ୟକତା ଅଛି । ସଂଗ୍ରାମ କରିବାକୁ ହେଲେ ଶକ୍ତି ଓ ସାମର୍ଥ୍ୟର ପ୍ରୟୋଜନ । ସାମରିକ ଶିକ୍ଷା ମାନବ ମନରେ ଶକ୍ତି ଓ ସାମର୍ଥ୍ୟ ଉଦ୍ରେକ କରିଥାଏ । ଯୋଗ୍ୟତମ ବ୍ୟକ୍ତିର ଶୃଙ୍ଖଳା ଜ୍ଞାନ ରହିବା ବିଧେୟ । ଶୃଙ୍ଖଳା ପାଇଁ ପ୍ରୟୋଜନ ସାମରିକ ଜ୍ଞାନ । ଯୁଗେ ଯୁଗେ ପୃଥିବୀରେ ଶକ୍ତିଶାଳୀ ବ୍ୟକ୍ତି ହିଁ ରାଜତ୍ୱ କରିଆସିଛି । ଯେଉଁ ଦେଶର ସାମରିକ ଶକ୍ତି ଯେତିକି ପରିମାଣରେ ସମୃଦ୍ଧ, ସେହି ଦେଶ ସେତିକି ପରିମାଣରେ ଶକ୍ତିଶାଳୀ ଓ ବଳଶାଳୀ । ବୀରଭୋଗ୍ୟା ବସୁନ୍ଧରା ଶକ୍ତି ଏବଂ ସାମର୍ଥ୍ୟକୁ ସମ୍ମାନ କରେ । ଦୁଇ ଦୁଇଟି ବିଶ୍ୱଯୁଦ୍ଧ ଦେଶବାସୀଙ୍କୁ ଶିକ୍ଷା ଦେଇଛି ସାମରିକ ଶକ୍ତି କ୍ଷେତ୍ରରେ ସ୍ୱାବଲମ୍ବନଶୀଳ ହେବାପାଇଁ । ଆଜି ବିଶ୍ୱର ପ୍ରତି କ୍ଷେତ୍ରରେ ଅବିଶ୍ୱାସର ବାତାବରଣ । ଶାନ୍ତିର ବାର୍ତ୍ତା ପ୍ରଚାର କରୁଥିବା ଦେଶ ଲୁକ୍‌କାୟିତ ଭାବେ ସାମରିକ ଶକ୍ତି ଉପରେ ଗୁରୁତ୍ୱ ପ୍ରଦାନ କରୁଛି । ଅନ୍ୟ ଉପରେ ପ୍ରଭୁତ୍ୱ ବିସ୍ତାର କରିବାର ପ୍ରବୃତ୍ତି ମଣିଷର ସ୍ୱଭାବସିଦ୍ଧ । ଦୁର୍ବଳ ଉପରେ ସବଳର

ଅତ୍ୟାଚାର ଚିରନ୍ତନ ସତ୍ୟ । ଏହି ସତ୍ୟ ହିଁ ଦେଶ ଓ ଜାତିକୁ ସାମରିକ କ୍ଷେତ୍ରରେ ଶକ୍ତିଶାଳୀ କରିବାକୁ ପ୍ରୋତ୍ସାହନ ଦେଇଥାଏ । ଆଜି ବିଶ୍ୱରେ ସାମରିକ ଶକ୍ତିରେ ବଳବାନ୍ ଦେଶକୁ ଅନ୍ୟମାନେ ସମ୍ମାନ ପ୍ରଦର୍ଶନ କରୁଛନ୍ତି । ଦେଶର ସ୍ୱାଧୀନତା ଏବଂ ସାର୍ବଭୌମତ୍ୱ ସାମରିକ ଶକ୍ତି ଉପରେ ବହୁପରିମାଣରେ ନିର୍ଭରଶୀଳ । ପ୍ରତିରକ୍ଷା ବ୍ୟବସ୍ଥାକୁ ସୁଦୃଢ଼ କରିବାକୁ ହେଲେ ସାମରିକ ଶିକ୍ଷାର ପ୍ରୟୋଜନ ରହିଛି । ସେହି କାରଣରୁ ବିଶ୍ୱର ଆଜି ପ୍ରତ୍ୟେକ ଦେଶ ସାମରିକ ଶିକ୍ଷା ପ୍ରତି ଗୁରୁତ୍ୱ ଦେଉଛନ୍ତି । ବିଶ୍ୱ ରାଜନୀତି ଆଜି କ୍ଷମତାକୁ କେନ୍ଦ୍ର କରି ଗତିଶୀଳ ହେଉଥିବାରୁ ଭାରତ ମଧ ଏହି ସାମରିକ ଶିକ୍ଷାକୁ ବାଧ୍ୟତାମୂଳକ କରିବାର ପ୍ରୟୋଜନ ରହିଛି ।

କେଉଁ ସୁଦୂର ଅତୀତରୁ ଏ ଦେଶରେ ସାମରିକ ଶିକ୍ଷାର ଗୁରୁତ୍ୱ ଉପଲବ୍ଧି ହୋଇ ଆସିଛି । ଗରୁକୁଳ ଆଶ୍ରମରେ ଶିକ୍ଷାଲାଭ ସମୟରେ ମଧ ଅନ୍ୟାନ୍ୟ ଶିକ୍ଷା ସହିତ ଯୁଦ୍ଧ ଶିକ୍ଷା ପ୍ରଦାନ କରାଯାଉଥିଲା । ଦୁଇଟି ଉଦ୍ଦେଶ୍ୟ ସାଧନ ଉଦ୍ଦେଶ୍ୟରେ ଏପରି ଶିକ୍ଷା ଛାତ୍ରମାନଙ୍କୁ ଦିଆଯାଉଥିଲା । ପ୍ରଥମତଃ ନିଜର ସୁରକ୍ଷା ପାଇଁ ଓ ଦ୍ୱିତୀୟରେ ଦେଶ ବା ଗୋଷ୍ଠୀର ନିରାପତ୍ତା ପାଇଁ । ଯାଯାବର ଜୀବନ ଅତିବାହିତ ସମୟରେ ମଧ ନିଜ ଗୋଷ୍ଠୀ ବା ଦଳର ସୁରକ୍ଷା ନିମିତ୍ତ ପୁରୁଷସମାଜ ବିଭିନ୍ନ ଅସ୍ତ୍ରଶସ୍ତ୍ର ବିଦ୍ୟାରେ ପାରଙ୍ଗମ ହେଉଥିଲା । 'ଜୋର ଯାର ମୁଲକ ତାର' ନୀତି ମଣିଷ ସମାଜର ସୃଷ୍ଟିକାଳରୁ ହିଁ ଆରମ୍ଭ । ଭାରତୀୟମାନେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଉପରେ ଯେତିକି ଗୁରୁତ୍ୱ ଦିଅନ୍ତି, ଦେଶ ଓ ଜାତିର ରକ୍ଷା ପାଇଁ ସାମରିକ ଶକ୍ତି ଉପରେ ଅନୁରୂପ ଗୁରୁତ୍ୱ ଦିଅନ୍ତି । ସେଥିପାଇଁ ଅତୀତରେ ଭାରତ ଏକ ଦୁର୍ଦ୍ଧର୍ଷ ଜାତି ରୂପେ ପରିଗଣିତ ହେଉଥିଲା । କ୍ଷତ୍ରିୟର ଧର୍ମ ଯୁଦ୍ଧ । ଗୀତାରେ ବିଷାଦବାଦୀ ଅର୍ଜୁନଙ୍କୁ ଶ୍ରୀକୃଷ୍ଣ କ୍ଷତ୍ରିୟ ଧର୍ମ ସମ୍ପର୍କରେ ସୂଚନା ଦେବାକୁ ଯାଇ ଯୁଦ୍ଧ ନିମିତ୍ତ ଆହ୍ୱାନ କରିଥିଲେ । ରାମାୟଣ ଯୁଗରେ ବାଲ୍ମୀକି ଲବକୁଶଙ୍କୁ ଅନ୍ୟାନ୍ୟ ଶିକ୍ଷାଦେବା ସଙ୍ଗେ ସଙ୍ଗେ ଯୁଦ୍ଧବିଦ୍ୟା ସମ୍ପର୍କରେ ମଧ୍ୟ ଶିକ୍ଷା ପ୍ରଦାନ କରିଥିଲେ । ମହାଭାରତ ଯୁଗରେ କୌରବ ଓ ପାଣ୍ଡବମାନେ ଦ୍ରୋଣାଚାର୍ଯ୍ୟଙ୍କ ଠାରୁ, କର୍ଣ୍ଣ ପରଶୁରାମଙ୍କ ଠାରୁ ଯୁଦ୍ଧ ବିଦ୍ୟା ଶିକ୍ଷା କରିଥିଲେ । ଏପରିକି ସମାଜର ନିମ୍ନ ସ୍ତରରେ ବସବାସ କରୁଥିବା ବ୍ୟକ୍ତି ସାମରିକ ଶିକ୍ଷା ଲାଭ କରିବାକୁ ଆଗ୍ରହ ପ୍ରକାଶ କରୁଥିଲେ । ଏକଲବ୍ୟର ଯୁଦ୍ଧ ଶିକ୍ଷା ଏହାର ପ୍ରମାଣ ଦେଇଥାଏ । ଶ୍ରୀକୃଷ୍ଣ, ବଳରାମ ପିଲାଦିନରୁ ସମସ୍ତ ଯୁଦ୍ଧବିଦ୍ୟାରେ ପାରଙ୍ଗମ ଥିଲେ । ଭାରତର ରାଜପୁତ୍ ଜାତି ଥିଲେ ସମର ନିପୁଣ । ବିନା ଯୁଦ୍ଧରେ ଶତ୍ରୁକୁ ସୂଚ୍ୟଗ୍ରେ ମେଦିନୀ ନ ଦେବା ଥିଲା ଭାରତୀୟ ବୀରଙ୍କର ପଣ । ଦ୍ୱିତୀୟ ତିରୋରୀ ଯୁଦ୍ଧ ପର୍ଯ୍ୟନ୍ତ ଭାରତୀୟ ଥିଲେ ସମଗ୍ର ପୃଥିବୀରେ ଏକ ଦୁର୍ଦ୍ଧର୍ଷ ଜାତି । ସର୍ବଭାରତୀୟ ପରିପ୍ରେକ୍ଷୀରେ ଉତ୍କଳୀୟ ଥିଲେ ଆହୁରି ଦୁର୍ଦ୍ଧର୍ଷ । ଭାରତବର୍ଷରେ ଉତ୍କଳୀୟ ଏକ ବୀର ଜାତି ରୂପେ ପରିଗଣିତ ହେଉଥିଲେ । ବିଖ୍ୟାତ କଳିଙ୍ଗଯୁଦ୍ଧରେ ଓଡ଼ିଆ ବୀରମାନଙ୍କର ଯୁଦ୍ଧ ନିପୁଣତା ଇତିହାସ ସ୍ୱୀକାର କରେ । କେବଳ ପୁରୁଷ ସମାଜ ନୁହନ୍ତି, ଭାରତରେ ରାଜପୁତ୍ ରମଣୀମାନେ ମଧ ଯୁଦ୍ଧବିଦ୍ୟାରେ ନିଜର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଛନ୍ତି । ଝାନ୍ସୀର ରାଣୀ ଲକ୍ଷ୍ମୀବାଈ, ଅହଲ୍ୟାବାଈ ଆଦି ଏହାର ଜ୍ୱଳନ୍ତ ନିଦର୍ଶନ । ମଧ୍ୟଯୁଗୀୟ କାବ୍ୟସାହିତ୍ୟରେ ରାଜପୁତ୍ରମାନଙ୍କର ବାଲ୍ୟକାଳରୁ ସମରଶିକ୍ଷା ସମ୍ପର୍କୀୟ ବିବରଣୀ ଏହି ପରମ୍ପରାର ଯଥାର୍ଥ

ପ୍ରମାଣ । ପରାଧୀନ ଭାରତରେ ଭାରତୀୟ ବୀର ନିଜର ପରମ୍ପରା ଓ ଗରିମାକୁ ହରାଇ ବସିଲେ । ସ୍ଥାଣୁ ଓ ନିର୍ଜ୍ଜୀବ ଭାବରେ ସେମାନେ କେବଳ ସହ୍ୟ କଲେ ଅନ୍ୟର ନିର୍ଯାତନା । ପ୍ରତିବାଦର ସ୍ୱର କ୍ଷୀଣ ହୋଇ ଆସିଲା । ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ ଗୋଟିଏ ଭୀରୁତାର ପରିଚୟ ନେଇ ଏମାନେ ବଞ୍ଚି ରହିଲେ । ଇଂରେଜ ଶାସନ ସମୟରେ ଭାରତୀୟମାନେ ଯେଉଁ ଶିକ୍ଷାଲାଭ କଲେ, ସେଥିରେ ସାମରିକ ଶିକ୍ଷାକୁ ଅନ୍ତର୍ଭୁକ୍ତ କରାଯାଇ ନ ଥିଲା । ଇଂରେଜ ଜାତି ଆଦୌ ଚାହୁଁ ନ ଥିଲେ, ଏ ଜାତି ପୁଣି ସାମରିକ ଶିକ୍ଷାରେ ନିପୁଣତା ଲାଭ କରନ୍ତୁ । ତେଣୁ ଇଂରେଜ ଶିକ୍ଷା ପଦ୍ଧତିରେ କେବଳ ଭାରତରେ କିରାଣୀ ସୃଷ୍ଟି ନିମିତ୍ତ ଗୁରୁତ୍ୱ ପ୍ରଦାନ କରାଯାଇଥିଲା । ଅତୀତର ପରମ୍ପରା ସମ୍ପୂର୍ଣ୍ଣ ଭୁଷୁଡ଼ି ପଡ଼ିଲା । ସମୟ ବଦଳିଯାଇଛି । ସ୍ୱାଧୀନତା ପରେ ପୁନରାୟ ଭାରତର ଶିକ୍ଷାପଦ୍ଧତିରେ ଗୁରୁତ୍ୱ ଦେବାର ସମୟ ଆସିଛି । ନିଜକୁ ବିଶ୍ୱ ଦରବାରରେ ପ୍ରତିଷ୍ଠିତ କରିବାକୁ ହେଲେ ପ୍ରତ୍ୟେକ ଭାରତୀୟ ଛାତ୍ର ଅନ୍ୟାନ୍ୟ ଶିକ୍ଷା ସହିତ ସାମରିକ ଶିକ୍ଷା ଲାଭ କରିବା ବାଞ୍ଛନୀୟ ।

ଦେଶର ସ୍ୱାଧୀନତା ଓ ସାର୍ବଭୌମତ୍ୱ ରକ୍ଷା ପ୍ରତ୍ୟେକ ନାଗରିକର ପ୍ରଥମ କର୍ତ୍ତବ୍ୟ । ଦୀର୍ଘଦିନର ପରାଧୀନତା ପରେ ଭାରତ ସ୍ୱାଧୀନତା ଲାଭ କରିଛି । ଏହି ସ୍ୱାଧୀନତାର ସୁରକ୍ଷା ପ୍ରତ୍ୟେକ ଭାରତୀୟଙ୍କ ନୈତିକ କର୍ତ୍ତବ୍ୟ । ବର୍ତ୍ତମାନ ବିଶ୍ୱର ଅଧିକାଂଶ ବିକଶିତ ରାଷ୍ଟ୍ର ଯୁଦ୍ଧଖୋର ମନୋବୃତ୍ତି ପୋଷଣ କରୁଛନ୍ତି । ଏହାର ଉଚିତ ମୁକାବିଲା ନିମିତ୍ତ ଭାରତ ମଧ୍ୟ ସାମରିକ କ୍ଷେତ୍ରରେ ଶକ୍ତିଶାଳୀ ହେବା ଆବଶ୍ୟକ । ବିଶ୍ୱ ଶାନ୍ତିର ଅଭିଭାଷଣ କେବଳ ଏକ ଧୂଆଁ ବାଣ । ବିଶ୍ୱ ଶାନ୍ତି ପାଇଁ ଯେତେ ପ୍ରଚାର କରାଗଲେ ମଧ୍ୟ, ଏଥିରେ କୌଣସି ଦେଶର ଆନ୍ତରିକତା ଥିବା ପରି ମନେହୁଏ ନାହିଁ । ଗୋଟିଏ ପକ୍ଷରେ ବିଶ୍ୱଶାନ୍ତିର ଅଭିନୟ, ଅପରପକ୍ଷରେ ଅଣୁ ଅସ୍ତ୍ର ନିର୍ମାଣରେ ତତ୍ପରତା – ଏହାହିଁ ହୋଇଛି ସାଂପ୍ରତିକ ବିଶ୍ୱର ଆଦର୍ଶ । ସାମରିକ ଶିକ୍ଷା ଛାତ୍ର ଓ ଦେଶବାସୀଙ୍କ ମନରେ ଜାତୀୟ ଭାବର ଉଦ୍ରେକ କରାଇଥାଏ । ଶୃଙ୍ଖଳିତ ଜୀବନଯାପନ ନିମିତ୍ତ ପ୍ରେରଣା ଦେଇଥାଏ । ସମାଜରେ ବାସ କରିବାକୁ ହେଲେ ପ୍ରତ୍ୟେକ ବ୍ୟକ୍ତିର ଶୃଙ୍ଖଳାଜ୍ଞାନ ରହିବା ସର୍ବାଦୌ ଆବଶ୍ୟକ । ବହିଃଆକ୍ରମଣର ପ୍ରତିରୋଧ ଓ ବ୍ୟକ୍ତି ସୁରକ୍ଷା କ୍ଷେତ୍ରରେ ସାମରିକ ଶିକ୍ଷାର ଜରୁରୀ ଆବଶ୍ୟକତା ରହିଛି । ବର୍ତ୍ତମାନ ବ୍ୟକ୍ତି ଚରିତ୍ରରେ ଯେଉଁ ଅବକ୍ଷୟ ଆରମ୍ଭ ହୋଇଛି, ତା'ର ମୁକାବିଲା ପାଇଁ ମଧ୍ୟ ଏହି ଶିକ୍ଷା ଅତ୍ୟନ୍ତ ଜରୁରୀ । ଆଭ୍ୟନ୍ତରୀଣ ଶୃଙ୍ଖଳା ରକ୍ଷା, ବହିଃଶତ୍ରୁତାର ଉଚିତ ମୁକାବିଲା ଓ ନିଜର ସୁରକ୍ଷା ଏହି ତିନିକ୍ଷେତ୍ରରେ ସାଂପ୍ରତିକ ସମୟରେ ସାମରିକ ଶିକ୍ଷା ଏକ ମୌଳିକ ଶିକ୍ଷା ରୂପେ ଗୃହୀତ ହେବା ଆବଶ୍ୟକ । ଏହି ଶିକ୍ଷାକୁ ଏକ ସୀମିତ ପରିସର ମଧ୍ୟରେ ନ ରଖି ବ୍ୟାପକ କରିବା ଉଚିତ । ଛାତ୍ର ଜୀବନ ଆରମ୍ଭରୁ ପାଠ୍ୟଖସଡ଼ା ମଧ୍ୟରେ ଏହା ବାଧ୍ୟତାମୂଳକ ଶିକ୍ଷା ରୂପେ ଗ୍ରହଣ କରାଯିବା ଆବଶ୍ୟକ । ଅତୀତରେ ପ୍ରତ୍ୟେକ ବ୍ୟକ୍ତି ଯୁଦ୍ଧବିଦ୍ୟାରେ ନିପୁଣ ଥିବାରୁ ଶତ୍ରୁ ଆକ୍ରମଣ ସମୟରେ ସମବେତ ଭାବରେ ଏହାର ପ୍ରତିରୋଧ କରୁଥିଲେ । କୃଷି କର୍ମ ସମୟରେ କୃଷକର ପରିଚୟ ବହନ କରିଥିବା ବ୍ୟକ୍ତି ଯୁଦ୍ଧ ସମୟରେ ସୈନିକ ରୂପେ ଆବିର୍ଭୂତ ହୋଇପାରୁଥିଲା । ବର୍ତ୍ତମାନ ମଧ୍ୟ ସେହିପରି ଶିକ୍ଷାପଦ୍ଧତି ଅନୁସୃତ ହେବା ଏକାନ୍ତ ଜରୁରୀ ।

ଆଜି ସମଗ୍ର ବିଶ୍ୱରେ ସାମରିକ ଶିକ୍ଷା ଉପରେ ଗୁରୁତ୍ୱ ପ୍ରଦାନ କରାଯାଉଛି । ଆମେରିକା, ଫ୍ରାନ୍ସ, ଜର୍ମାନ୍, ଜାପାନ, ରୁଷିଆ, ଚୀନ୍, ଇଂଲଣ୍ଡ, ପାକିସ୍ଥାନ, ଇଟାଲୀ ଆଦି ଦେଶରେ ସାମରିକ ଶକ୍ତିର ସମୃଦ୍ଧି ନିମିତ୍ତ ପର୍ଯ୍ୟାପ୍ତ ପରିମାଣରେ ଅର୍ଥ ଖର୍ଚ୍ଚ କରାଯାଉଛି । ଅର୍ଥନୈତିକ ସମୃଦ୍ଧ ରାଷ୍ଟ୍ରମାନେ ଏ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ସଫଳତା ହାସଲ କରି ସାରିଛନ୍ତି । ଅତୀତରେ ଗ୍ରୀକ୍‌ରେ ସାମରିକ ଶିକ୍ଷା ପିଲାମାନଙ୍କ ନିମିତ୍ତ ବାଧ୍ୟତାମୂଳକ ଥିଲା । ସେଥିପାଇଁ ସ୍ପାର୍ଟାରେ ବାଲ୍ୟକାଳରୁ ଏହି ଶିକ୍ଷା ପିଲାମାନଙ୍କୁ ପ୍ରଦାନ କରାଯିବା ସଙ୍ଗେ ସଙ୍ଗେ ସେମାନଙ୍କ ମନରେ ଯୁଦ୍ଧ ନିମିତ୍ତ ଉତ୍ସାହ ଭାବ ସୃଷ୍ଟି କରାଯାଉଥିଲା । ଜର୍ମାନରେ ହିଟ୍‌ଲରଙ୍କ ଶାସନ ସମୟରେ ସାମରିକ ଶିକ୍ଷାକୁ ବାଧ୍ୟତାମୂଳକ କରାଯାଇଥିଲା । ନେପୋଲିଅନଙ୍କ ସମୟରେ ଫ୍ରାନ୍ସରେ ଠିକ୍ ଏହିପ୍ରକାର ବାତାବରଣ ସୃଷ୍ଟି ହୋଇଥିଲା । ପ୍ରତ୍ୟେକ ନାଗରିକ ସାମରିକ ବାହିନୀରେ ଯୋଗ ଦେବାର ଯୋଗ୍ୟତା ହାସଲ କରୁଥିଲେ । ବର୍ତ୍ତମାନ ଚୀନ୍‌ରେ ଛାତ୍ରମାନଙ୍କୁ ସାମରିକ ଶିକ୍ଷାରେ ନିପୁଣତା ଲାଭ କରିବା ପାଇଁ ବିଭିନ୍ନ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି । ଆମେରିକା, ଇଂଲଣ୍ଡ ଓ ରୁଷିଆରେ ଛାତ୍ରାବସ୍ଥାରୁ ସାମରିକ ଶିକ୍ଷା ଉପରେ ଗୁରୁତ୍ୱ ଦିଆଯାଉଛି । ଆମର ପଡ଼ୋଶୀ ଦେଶ ପାକିସ୍ଥାନରେ ମଧ୍ୟ ଭାରତ ବିରୋଧୀ ମନୋବୃତ୍ତିକୁ ଛାତ୍ରମାନଙ୍କ ଉପରେ ଲଦି ଦିଆଯାଉଛି । ଅତୀତ ପରାଜୟର ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ପାକିସ୍ଥାନ ସାମରିକ ଶିକ୍ଷା ପ୍ରତି ବିଶେଷ ଦୃଷ୍ଟି ପ୍ରଦାନ କରିଛି । ଅନ୍ୟାନ୍ୟ ଶିକ୍ଷା ସହିତ ସାମରିକ ଶିକ୍ଷାକୁ ବିଶ୍ୱର ବହୁ ଦେଶରେ ଶିକ୍ଷାନୀତିରେ ଗ୍ରହଣ କରାଯାଇସାରିଛି । ତେଣୁ ବିଶ୍ୱର ରାଜନୈତିକ ପରିବର୍ତ୍ତନ ଓ ସାମରିକ ଗୁରୁତ୍ୱକୁ ଉପଲବ୍ଧି କରି ଭାରତ ତା'ର ମୌଳିକ ଶିକ୍ଷା ଢାଞ୍ଚାରେ ପରିବର୍ତ୍ତନ ଆଣିବା ସହିତ, ସାମରିକ ଶିକ୍ଷାର ଅନ୍ୟତମ ମୌଳିକ ଲକ୍ଷ୍ୟ ରୂପେ ପାଠ୍ୟ ଖସଡ଼ା ପ୍ରସ୍ତୁତ କରିବା ଆବଶ୍ୟକ ।

୧୯୪୭ ମସିହାରେ ଭାରତ ସ୍ୱାଧୀନତା ଲାଭ କଲା । ସ୍ୱାଧୀନତା ପୂର୍ବରୁ ଏ ଦେଶରେ ଯେଉଁମାନେ ଶାସକ ଥିଲେ, ସେମାନଙ୍କର ମୂଳଲକ୍ଷ୍ୟ ଥିଲା ଭାରତକୁ ଗୋଟିଏ ପଙ୍ଗୁ ଅଥର୍ବ ରାଷ୍ଟ୍ରରେ ପରିଣତ କରିବା । ଯେଉଁ ଶିକ୍ଷା ଦ୍ୱାରା ମାନବର ଚାରିତ୍ରିକ, ଶାରୀରିକ ଓ ମାନସିକ ବିକାଶ ହୋଇଥାଏ, ସେପରି ଶିକ୍ଷାନୀତି ଶାସକଗଣ ପ୍ରଚଳନ କରିବାର ପକ୍ଷପାତୀ ନ ଥିଲେ । ବିଶେଷଭାବରେ ଭାରତର ସାମରିକ ଐତିହ୍ୟ ଓ ସଂସ୍କୃତିକୁ ଧ୍ୱଂସ କରିବା ନିମିତ୍ତ ଏହି ସ୍ୱାର୍ଥପର ଶାସକ ଗୋଷ୍ଠୀ ବିଭିନ୍ନ ଭାବରେ ଉଦ୍ୟମ ଜାରି ରଖିଥିଲେ । ସ୍ୱାଧୀନତା ଲାଭ ପରେ ସ୍ୱାଧୀନତାର ରକ୍ଷା ନିମିତ୍ତ ଦେଶୀୟ ସରକାର ଉଦ୍ୟମ ଆରମ୍ଭ କଲେ । ମହାତ୍ମାଗାନ୍ଧି ସମଗ୍ର ବିଶ୍ୱରୁ ଯୁଦ୍ଧ ଭୟ ଦୂରୀକରଣ ନିମିତ୍ତ ମାରଣାସ୍ତ୍ର ଉତ୍ପାଦନକୁ ବନ୍ଦ ରଖିବାକୁ ଆହ୍ୱାନ ଦେଇଥିଲେ । ମାତ୍ର ତାଙ୍କର ଆହ୍ୱାନର ବାସ୍ତବତା ସମସ୍ତେ ଉପଲବ୍ଧି କରୁଥିଲେ ହେଁ, ଆନ୍ତରିକତାର ସହିତ କେହି ତାହା ଗ୍ରହଣ କରିନଥିଲେ । ବିଜ୍ଞାନର ଉଦ୍ଦେଶ୍ୟ ମାନବ ସମାଜର ମଙ୍ଗଳ ସାଧନ । ମାତ୍ର ମାନବ ସମାଜ ବିଜ୍ଞାନକୁ ଆଜି ବିଶ୍ୱ ଧ୍ୱଂସ କ୍ଷେତ୍ରରେ ବ୍ୟବହାର କରିବାକୁ ଲାଗିଛି । ଭାରତ ମଧ୍ୟ ନିଜର ସ୍ଥିତିକୁ ସୁରକ୍ଷା ଦେବାପାଇଁ ସାମରିକ ଶିକ୍ଷା ଉପରେ ଗୁରୁତ୍ୱ

ପ୍ରଦାନ କରିବା ଉଚିତ । ବିଶେଷଭାବରେ ଏହାର ଦୁଇଟି ପଡ଼ୋଶୀ ରାଷ୍ଟ୍ର ଚୀନ୍ ଓ ପାକିସ୍ଥାନ ଯେପରି ଭାବରେ ନିଜର ସାମରିକ ଶକ୍ତିକୁ ଦୃଢ଼ କରିବା ପାଇଁ ପ୍ରଚୁର ପରିମାଣରେ ଅର୍ଥ ବ୍ୟୟ କରୁଛନ୍ତି, ଭାରତ ତାହା ଦେଖି ନୀରବରେ ବସି ରହିବା ଅନୁଚିତ । କୌଣସି କାରଣ ନ ଥାଇ ୧୯୬୨ ମସିହାରେ ଚୀନ୍‌ର ବର୍ବରୋଚିତ ଆକ୍ରମଣ, ପାକିସ୍ଥାନର ତିନି ତିନି ଥର ଆକ୍ରମଣ ଭାରତର ସ୍ଥିତି ପ୍ରତି ବିପଦ ସୃଷ୍ଟି କରିଛି । ଆଜି ଚୀନ୍ ବିଶ୍ୱର ଅନ୍ୟତମ ଶକ୍ତିଶାଳୀ ରାଷ୍ଟ୍ର । ପାକିସ୍ଥାନ, ଚୀନ୍, ଆମେରିକା ତଥା ଆରବଦେଶମାନଙ୍କଠାରୁ ବିପୁଳ ପରିମାଣରେ ଅସ୍ତ୍ରଶସ୍ତ୍ର ଆମଦାନୀ କରୁଛି । ସମସ୍ତ ଚେଷ୍ଟା ସତ୍ତ୍ୱେ ଏଯାବତ୍ ପାକିସ୍ଥାନ ସହିତ ସୁସମ୍ପର୍କ ସ୍ଥାପିତ ହୋଇପାରିଲା ନାହିଁ । ବଙ୍ଗଳା ଦେଶର ମତିଗତି ପ୍ରତି ମୁହୂର୍ତ୍ତରେ ପରିବର୍ତ୍ତନ ହେଉଛି । ତେଣୁ ଭାରତର ନିଜର ସ୍ୱାଧୀନତାକୁ ଅଖଣ୍ଡ ରଖିବା ପାଇଁ ସାମରିକ ଶିକ୍ଷାର ଗୁରୁତ୍ୱ ପ୍ରତି ଯୁବ ସମାଜକୁ ସଚେତନ କରାଇବା ଉଚିତ । ଏହି କାରଣକୁ ଉପଲବ୍ଧି କରି ଅନନ୍ତ ଶୟନମ୍ ଆୟାଙ୍ଗାର୍ ଜେନେରାଲ ସିଂହ ଆଦି ବାଧ୍ୟତାମୂଳକ ସାମରିକ ଶିକ୍ଷାଦାନ ଉପରେ ଗୁରୁତ୍ୱ ପ୍ରଦାନ କରିଛନ୍ତି । ଦୁଇ ଦୁଇଟି ମାରଣାସ୍ତ୍ର ପରିପୂର୍ଣ୍ଣ ପଡ଼ୋଶୀ ରାଷ୍ଟ୍ର ମଧ୍ୟଭାଗରେ ବାସ କରି ଭାରତ ନିଜର ସ୍ଥିତି ଓ ବିପଦକୁ ଆଦୌ ଭୁଲିଯିବା ଉଚିତ ନୁହେଁ । ଶାନ୍ତି ଓ ବିଶ୍ୱ ଭ୍ରାତୃତ୍ୱ ଉପରେ ଗୁରୁତ୍ୱ ପ୍ରଦାନ କରାଯିବା ସଙ୍ଗେ ସଙ୍ଗେ ଆତ୍ମରକ୍ଷା ନିମିତ୍ତ ମଧ୍ୟ ସଚେତନ ରହିବାକୁ ପଡ଼ିବ । ଭାରତର ସଂହତି ଓ ସାର୍ବଭୌମତ୍ୱକୁ ବିପନ୍ନ କରିବା ପାଇଁ ଆନ୍ତର୍ଜାତୀୟ ଶକ୍ତି ଆଜି ବେଶ୍ ସକ୍ରିୟ ହୋଇ ଉଠିଛନ୍ତି । ପଞ୍ଜାବ, କାଶ୍ମୀର, କୋଏମ୍ବାଟୁର, ଆସାମ, ଆନ୍ଧ୍ରପ୍ରଦେଶ ଆଦି ସ୍ଥାନରେ ସନ୍ତ୍ରାସବାଦୀ କାର୍ଯ୍ୟକଳାପ ସେହିମାନଙ୍କ ଚେଷ୍ଟା ଓ ପ୍ରୋତ୍ସାହନରେ ଲାଗି ରହିଛି । ଏପରିକି କେତେକ କ୍ଷେତ୍ରରେ ସେମାନେ ପ୍ରତ୍ୟକ୍ଷ ଭାବରେ ସଂଶ୍ଳିଷ୍ଟ ଥିବାର ପ୍ରମାଣ ମିଳିଛି । ଭାରତର ସୀମାନ୍ତରେ ବିନା କାରଣରେ ଅଚାନକ ଆକ୍ରମଣ ହେଉଛି । ନିରୀହ ବ୍ୟକ୍ତିମାନଙ୍କୁ ନିର୍ବିଚାରରେ ହତ୍ୟା କରାଯାଉଛି । ଏହିପରି ଅନ୍ତଃ ଓ ବାହ୍ୟ ଆକ୍ରମଣରୁ ରକ୍ଷା ପାଇଁ ଓ ନିଜର ସୁରକ୍ଷା ପାଇଁ ଭାରତ ତା'ର ପ୍ରତ୍ୟେକ ନାଗରିକଙ୍କୁ ସାମରିକ ଶିକ୍ଷା ପ୍ରଦାନ କରିବା ଆବଶ୍ୟକ ମନେ ହେଉଛି । ଯେଉଁ ନିରୀହ ବ୍ୟକ୍ତି ବିନା କାରଣରେ ଆକ୍ରମଣକାରୀଙ୍କ ଶିକାର ହେଉଛନ୍ତି, ଅନ୍ତତଃ ଏହି ଶିକ୍ଷାଦ୍ୱାରା ସେମାନେ ନିଜର ସୁରକ୍ଷା ଲାଗି ସମର୍ଥ ହୋଇପାରିବେ ଏବଂ ସନ୍ତ୍ରାସବାଦୀ ନିର୍ବିବାଦରେ ହତ୍ୟାର ତାଣ୍ଡବ ଲୀଳା ସୃଷ୍ଟି କରିବାକୁ ସାହସ କରିପାରିବେ ନାହିଁ । ସାମରିକ ଶିକ୍ଷା ପ୍ରତିରକ୍ଷା ପାଇଁ ଯେଉଁ ପରିମାଣରେ ଉପଯୋଗୀ, ଚରିତ୍ର ଗଠନ, ଶୃଙ୍ଖଳା ଜ୍ଞାନ ବୃଦ୍ଧି ଓ କର୍ତ୍ତବ୍ୟପରାୟଣତାର ଉଦ୍ରେକ ନିମିତ୍ତ ସେହି ପରିମାଣରେ ଆବଶ୍ୟକ ।

ବର୍ତ୍ତମାନ ବିଶ୍ୱର ପ୍ରାୟ ସମସ୍ତ ଦେଶ ସାମରିକ ଶିକ୍ଷାର ଗୁରୁତ୍ୱ ଉପଲବ୍ଧି କରିସାରିଲେଣି । ଇଜିପ୍ଟ, ରୁଷିଆ, ଚୀନ, ଆମେରିକା, ଇଂଲଣ୍ଡ ପ୍ରଭୃତି ଦେଶରେ ବିଦ୍ୟାଳୟ, ମହାବିଦ୍ୟାଳୟ, ବିଶ୍ୱବିଦ୍ୟାଳୟ ସ୍ତରରେ ସାମରିକ ଶିକ୍ଷା ପ୍ରଦାନ କରାଯାଇଥାଏ । ଅତୀତରେ ଇରାକ୍‌ର ପୂର୍ବତନ ରାଷ୍ଟ୍ରପତି ସଦ୍ଦାମ ହୁସେନ୍ ମଧ୍ୟ ଗୁପ୍ତରେ ତାଙ୍କ ଦେଶରେ ଏହାକୁ ବାଧ୍ୟତାମୂଳକ ଶିକ୍ଷାନୀତି ଭାବରେ ଗ୍ରହଣ କରିଥିଲେ । ସମସ୍ତ ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ଏଯାବତ୍ ଭାରତରେ

ବିଦ୍ୟାଳୟ ବା ମହାବିଦ୍ୟାଳୟ ସ୍ତରରେ ସାମରିକ ଶିକ୍ଷାକୁ ବାଧ୍ୟତାମୂଳକ ଶିକ୍ଷାନୀତି ଭାବରେ ଗ୍ରହଣ କରାନଯାଇ ଇଚ୍ଛାଧୀନ ବିଷୟ ରୂପେ ରଖାଯାଇଛି । ଅବଶ୍ୟ ପୂର୍ବପରି ଏହାକୁ ବର୍ତ୍ତମାନ ହାଲୁକା ଭାବରେ ଗ୍ରହଣ କରାଯାଉ ନାହିଁ । ବର୍ତ୍ତମାନ ପ୍ରତିରକ୍ଷା ଏକ ସମ୍ବେଦନଶୀଳ ପ୍ରଶ୍ନ ରୂପେ ଦେଖାଦେଇଛି । ଭାରତ ସରକାର ବିଦ୍ୟାଳୟ ଓ ମହାବିଦ୍ୟାଳୟ ସ୍ତରରେ ଯୁବସେନା ବାହିନୀ ବା National Cadet Corps (N.C.C.) ପ୍ରତିଷ୍ଠା କରିଛନ୍ତି । ପ୍ରଶିକ୍ଷଣ ଲାଭ କରିଥିବା ଶିକ୍ଷକଙ୍କୁ ଏହାର ଦାୟିତ୍ୱ ଅର୍ପଣ କରାଯାଉଛି । ପ୍ୟାଣ୍ଟ୍, ସାର୍ଟ, ଜୋତା, ଟୋପି, ସନ୍ତକ ଓ ଲଘୁଭୋଜନ ଦେବାର ବ୍ୟବସ୍ଥା ହୋଇଛି । ବିଭିନ୍ନ ଯୁଦ୍ଧ କୌଶଳ ରାଇଫଲ ଚାଳନା ତଥା ଶତ୍ରୁମାନଙ୍କ କବଳରୁ ଆତ୍ମରକ୍ଷା ଆଦି ସମ୍ବନ୍ଧରେ ଶିକ୍ଷା ପ୍ରଦାନ କରାଯାଉଛି । ସୈନିକ ସ୍କୁଲ ଖୋଲାଯାଇ ଅନ୍ୟାନ୍ୟ ଶିକ୍ଷା ସହିତ ସାମରିକ ଶିକ୍ଷା ଉପରେ ଗୁରୁତ୍ୱ ଦିଆଯାଉଛି । ବିଭିନ୍ନ ଯୁଦ୍ଧ କୌଶଳ ଶିକ୍ଷା ନିମିତ୍ତ କେନ୍ଦ୍ରମାନ ସ୍ଥାପିତ ହୋଇଛି । ଉଡ଼ାଜାହାଜ ଚାଳନ ବା ଆକାଶ ଯୁଦ୍ଧ ପାଇଁ Flying Club ବା ଉଡ୍‌ଡୟନ ସଂସ୍ଥା, ନୌବିଭାଗ (Indian Navy) ଆଦିର ବ୍ୟବସ୍ଥା ହୋଇଛି । ଏହା ସତ୍ତ୍ୱେ ସାମରିକ ଶିକ୍ଷା ଏକ ବାଧ୍ୟତାମୂଳକ ଶିକ୍ଷାରୂପେ ଗ୍ରହଣ କରାଯାଇପାରି ନାହିଁ । ସାମରିକ ଶିକ୍ଷା ପ୍ରତି ଆମ ଦେଶରେ ଯେଉଁପ୍ରକାର ଆଗ୍ରହ ସୃଷ୍ଟି ହେବାର କଥା, ତାହା ଏ ପର୍ଯ୍ୟନ୍ତ ହୋଇପାରି ନାହିଁ । ଶରୀରଗଠନ, ଶୃଙ୍ଖଳିତ ଜୀବନଯାପନ, କର୍ତ୍ତବ୍ୟପରାୟଣତା, ସମୟାନୁବର୍ତ୍ତିତା କ୍ଷେତ୍ରରେ ସାମରିକ ଶିକ୍ଷାର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଦେଶ ସେବାରେ ଯୁବସମାଜକୁ ଉଦ୍‌ବୁଦ୍ଧ କରିବାରେ ସାମରିକ ଶିକ୍ଷାର ପ୍ରୟୋଜନୀୟତା ଯେ କୌଣସି ବ୍ୟକ୍ତି ଉପଲବ୍ଧ କରିପାରେ । ଲକ୍ଷ୍ନୌରେ ଅନୁଷ୍ଠିତ ଜାତୀୟ ଶିକ୍ଷା ସମ୍ମିଳନୀରେ ବାଧ୍ୟତାମୂଳକ ସାମରିକ ଶିକ୍ଷା ଉପରେ ଗୁରୁତ୍ୱ ପ୍ରଦାନ କରାଯାଇଥିଲା । ତେଣୁ ସାମ୍ପ୍ରତିକ ପରିସ୍ଥିତିରେ N.C.C. ମାଧ୍ୟମରେ ଏହାର ଗୁରୁତ୍ୱ ବୃଦ୍ଧି କରିବାର ଆବଶ୍ୟକତା ରହିଛି । ନୂତନ କର୍ମ ପ୍ରେରଣା, ଜାତୀୟଭାବନା ସୃଷ୍ଟି କ୍ଷେତ୍ରରେ ସାମରିକ ଶିକ୍ଷାର ଗୁରୁତ୍ୱ ରହିଥିବାରୁ ଏହାକୁ ଭାରତର ଶିକ୍ଷା କ୍ଷେତ୍ରରେ ବାଧ୍ୟତାମୂଳକ କରାଯିବା ସଙ୍ଗେ ସଙ୍ଗେ ଛାତ୍ର ଓ ଯୁବସମାଜ କିପରି ଏହି ଶିକ୍ଷା ପ୍ରତି ଅଧିକରୁ ଅଧିକ ଆଗ୍ରହ ସୃଷ୍ଟି କରିବେ, ସେଥିପ୍ରତି ସରକାରୀ ସ୍ତରରେ ଉଦ୍ୟମ ଜାରି ରହିବା ଉଚିତ ।

ସାମରିକ ବା ପ୍ରତିରକ୍ଷା କ୍ଷେତ୍ରରେ ଭାରତ ଆଜି ଆଦୌ ପଛରେ ପଡ଼ି ଯାଇ ନାହିଁ । ଏହାସତ୍ତ୍ୱେ ବିଶ୍ୱର ଯୁଦ୍ଧଖୋର ନୀତିକୁ ଆଖି ଆଗରେ ରଖି ଭାରତକୁ ଆହୁରି ଅଧିକ ସାମରିକ ଶକ୍ତିର ବୃଦ୍ଧି କରିବାକୁ ପଡ଼ିବ । ସୀମାନ୍ତ ଅଞ୍ଚଳରେ ବସବାସ କରୁଥିବା ପ୍ରତ୍ୟେକ ବ୍ୟକ୍ତିଙ୍କୁ ଏହି ଶିକ୍ଷା ବାଧ୍ୟତାମୂଳକ ଭାବେ ପ୍ରଦାନ କରାଯିବା ନିମିତ୍ତ ପଦକ୍ଷେପ ଗ୍ରହଣ କରାଯିବା ଆବଶ୍ୟକ । ଦେଶବାସୀ ବିଶେଷକରି ଯୁବସମାଜ ମନରେ ଜାତୀୟ ଭାବନାର ଉଦ୍ରେକ କରାଇ ସେମାନଙ୍କୁ ଜାତୀୟ ସ୍ରୋତରେ ସାମିଲ୍ କରିବାକୁ ପଡ଼ିବ । ବାହ୍ୟଶକ୍ତି ଆକ୍ରମଣରେ ଉପଯୁକ୍ତ ଜବାବ ଦେବାକୁ ଭାରତ ସର୍ବଦା ପ୍ରସ୍ତୁତ ରହିବା ଆବଶ୍ୟକ । ପରିବର୍ତ୍ତିତ ପରିସ୍ଥିତିରେ ସାମରିକ ଶିକ୍ଷାର ଗୁରୁତ୍ୱ ଉପଲବ୍ଧି କରି ଭାରତ ସମୟୋଚିତ ପଦକ୍ଷେପ ଗ୍ରହଣ କରିପାରିଲେ ଆଉ

କୌଣସି ବହିଃଶତ୍ରୁ ତାକୁ ଧମକ ଦେଇପାରିବ ନାହିଁ । ଭାରତ ଆଜି ବିଶ୍ୱବାସୀଙ୍କୁ ଜଣାଇଦେବା ଉଚିତ, ସେ ଯେପରି ଶାନ୍ତି, ମୈତ୍ରୀ, ଭ୍ରାତୃଭାବର ପ୍ରଚାର କ୍ଷେତ୍ରରେ ବିଶ୍ୱକୁ ଉଦ୍‌ବୁଦ୍ଧ କରିବାକୁ ସମର୍ଥ, ତା'ପ୍ରତି ଅନ୍ୟାୟ ଆକ୍ରମଣର ଯଥାର୍ଥ ପ୍ରତ୍ୟୁତ୍ତର ଦେବାକୁ ମଧ୍ୟ ସମର୍ଥ । ସବୁ ସ୍ତରରେ ଉଦ୍ୟମ ଓ ସହଯୋଗ ଜାରି ନରହିଲେ, ଭାରତର ଏହି କାର୍ଯ୍ୟକ୍ରମ କୌଣସି ପ୍ରକାର ସଫଳ ହୋଇପାରିବ ନାହିଁ । ପ୍ରତ୍ୟେକ ଭାରତୀୟ 'ଜୟ ଯବାନ୍' ମନ୍ତ୍ରରେ ଦୀକ୍ଷିତ ହୁଅନ୍ତୁ, ଏହାହିଁ ବର୍ତ୍ତମାନ ସମୟର ଆହ୍ୱାନ ।

●

## ଧନ୍ଦାମୂଳକ ଶିକ୍ଷା

**(ଉପକ୍ରମ, ଭାରତରେ ଧନ୍ଦାମୂଳକ ଶିକ୍ଷାର ପ୍ରାଚୀନ ପରମ୍ପରା, ଧନ୍ଦାମୂଳକ ଶିକ୍ଷାର ଆବଶ୍ୟକତା, ପାରମ୍ପରିକ ଶିକ୍ଷା ଓ ଧନ୍ଦାମୂଳକ ଶିକ୍ଷା ମଧ୍ୟରେ ପାର୍ଥକ୍ୟ, ଧନ୍ଦାମୂଳକ ଶିକ୍ଷାର କେତେକ ଦିଗ, ଏହି ଶିକ୍ଷାର ଉପକାର ଓ ଅପକାର ଦିଗ, ଉପସଂହାର)**

ସମାଜରେ ମଣିଷକୁ ନିଜ ଭୂମିକା ସମ୍ପର୍କରେ ସଚେତନ ତଥା ପ୍ରସ୍ତୁତ କରାଇବା ହିଁ ଶିକ୍ଷାର ମୁଖ୍ୟ ଉଦ୍ଦେଶ୍ୟ । ଅର୍ଥାତ୍ ଶିକ୍ଷା ମଣିଷର ବ୍ୟକ୍ତିତ୍ୱର ବିକାଶରେ ସହାୟତା କରିଥାଏ । ହସ୍ତ, ମସ୍ତିଷ୍କ ଓ ହୃଦୟ—ଏହି ତିନୋଟିର ସୁଷ୍ଠୁ ବିକାଶ ଉପଯୁକ୍ତ ଶିକ୍ଷା ମାଧ୍ୟମରେ ସମ୍ଭବ ହୋଇଥାଏ । ଇଂରେଜ ଶାସକଗଣ ଯେଉଁ ଶିକ୍ଷାପଦ୍ଧତି ପ୍ରଚଳନ କରିଥିଲେ, ତାହା ଆମ ଦେଶ ପାଇଁ ସମ୍ପୂର୍ଣ୍ଣ ରୂପେ ଅନୁପଯୁକ୍ତ ଥିଲା । ପ୍ରଶାସନ କ୍ଷେତ୍ରରେ ସେମାନଙ୍କୁ ସହାୟତା କରିବା ନିମିତ୍ତ କିଛି କିରାଣୀ ସୃଷ୍ଟି କରିବା ଥିଲା ସେହି ଶିକ୍ଷା ପଦ୍ଧତିର ଉଦ୍ଦେଶ୍ୟ । ପୁନରାୟ ଇଂରେଜ ଶାସକମାନଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ କରିବା ସେହି ଶିକ୍ଷାନୀତିର ଅନ୍ୟତମ ଉଦ୍ଦେଶ୍ୟ । ଏହି ପ୍ରକାର ଶିକ୍ଷାନୀତିକୁ ସମାଲୋଚନା କରି ମହାତ୍ମାଗାନ୍ଧି କହିଥିଲେ, 'ଭାରତ ପରି ଏକ ଦରିଦ୍ର ଦେଶରେ ଏପରି ବ୍ୟୟବହୁଳ ଶିକ୍ଷାର ଆଦୌ ଆବଶ୍ୟକତା ନାହିଁ । ତାଙ୍କ ମତରେ ଯେଉଁ ଶିକ୍ଷା ମଣିଷର ମସ୍ତିଷ୍କକୁ ପୋଖତ ନ କରିପାରିଲା, ପେଟର କ୍ଷୁଧା ଦୂରୀକରଣରେ ସହାୟତା ଦେଇ ନ ପାରିଲା, ସେ ଶିକ୍ଷା ପ୍ରକୃତ ଶିକ୍ଷା ନୁହେଁ । ସେଥିପାଇଁ ମଣିଷର ଆବଶ୍ୟକତାକୁ ପରିପୂରଣ କରିପାରୁଥିବା ଏକ ଶିକ୍ଷାନୀତି ପ୍ରଣୟନ ନିମିତ୍ତ ସେ ମତପ୍ରଦାନ କରିଥିଲେ । ସ୍ୱାଧୀନତା ପରେ ଏ ଦେଶର ଚିନ୍ତାନାୟକଗଣ ଦେଶର ଓ ମଣିଷର ଆବଶ୍ୟକତାକୁ ଆଖିରେ ରଖି କେତେକ ଶିକ୍ଷାନୀତି ପ୍ରଣୟନ କଲେ । ଗାନ୍ଧିଜୀ ଯେପରି କର୍ମାଭିମୁଖୀ ଶିକ୍ଷା ଉପରେ ଗୁରୁତ୍ୱ ପ୍ରଦାନ କରୁଥିଲେ, ଭାରତୀୟ ଶିକ୍ଷାନୀତିର ପରିବର୍ତ୍ତନ ପାଇଁ ଗଠିତ ହୋଇଥିବା କମିଟି ମଧ୍ୟ ସେହିପରି ଶିକ୍ଷା ଉପରେ ଗୁରୁତ୍ୱ ପ୍ରଦାନ କଲେ । ଅନୁସୃତ ହୋଇଥିବା ଅନେକ ଶିକ୍ଷାନୀତି ମଧ୍ୟରୁ ଧନ୍ଦାମୂଳକ ଶିକ୍ଷା ସର୍ବୋତ୍କୃଷ୍ଟ ବୋଲି ବିବେଚିତ ହୋଇଛି ।

ଭାରତରେ ବିଂଶ ଶତାବ୍ଦୀର ଶେଷ ଭାଗରେ ଧନ୍ଦାମୂଳକ ଶିକ୍ଷା ଉପରେ ଗୁରୁତ୍ୱ ପ୍ରଦାନ କରାଯାଇଥିଲେହେଁ, ପ୍ରାଚୀନ ଭାରତରେ ବହୁପୂର୍ବରୁ ଏହି ପ୍ରକାର ଶିକ୍ଷାନୀତି ଅବଲମ୍ବନ ହୋଇ ଆସୁଥିଲା । ଗୁରୁକୁଳ ଆଶ୍ରମରେ ଶିଷ୍ୟ ଓ ଗୁରୁ ଏକ ବନ୍ଧୁତ୍ୱପୂର୍ଣ୍ଣ ପରିବେଶ ମଧ୍ୟରେ ଶିକ୍ଷା ଆଦାନ ପ୍ରଦାନ କରୁଥିଲେ । ଶିଷ୍ୟମାନେ ବିଭିନ୍ନ ବିଦ୍ୟାଶିକ୍ଷା ସହିତ କୃଷି ବିଦ୍ୟା, ଗୋଚାରଣ ବିଦ୍ୟା, ଗୋ-ବିଦ୍ୟା, ଭେଷଜ ଶିକ୍ଷା, ବିଭିନ୍ନ ଔଷଧ ପତ୍ର, ହସ୍ତକର୍ମ, ପୁରୋହିତ କର୍ମ ଆଦି ଶିକ୍ଷାଲାଭ କରୁଥିଲେ । ଫଳରେ ଗୁରୁ ଆଶ୍ରମରୁ ବିଦାୟ ନେବା ପରେ ସମାଜରେ ବିଭିନ୍ନ ଧନ୍ଦାକରି ପରିବାର ପ୍ରତିପୋଷଣ କରିବାରେ କୌଣସି ଅସୁବିଧା ହେଉ ନ ଥିଲା । ଜ୍ୟୋତିଷ ବିଦ୍ୟା, ସାହିତ୍ୟ, ବିଜ୍ଞାନ ଆଦି ବହୁ ବିଷୟରେ ଶିଷ୍ୟ ଜ୍ଞାନଲାଭ କରୁଥିବାରୁ, ଏହି ପ୍ରକାର ଶିକ୍ଷା ପ୍ରଣାଳୀକୁ ଧନ୍ଦାମୂଳକ ଶିକ୍ଷା ପର୍ଯ୍ୟାୟଭୁକ୍ତ କରାଯାଇପାରେ । ସମୟ ବଦଳିବା ସଙ୍ଗେ ସଙ୍ଗେ କୁଳବୃତ୍ତି ଉପରେ ମଧ୍ୟ ଗୁରୁତ୍ୱ ପ୍ରଦାନ କରାଗଲା । କାଷ୍ଠକର୍ମ ବା ବଢ଼େଇ କର୍ମ କରି ଜୀବନ ପ୍ରତିପୋଷଣ କରୁଥିବା ବ୍ୟକ୍ତି ତା'ର ସନ୍ତାନସନ୍ତତିମାନଙ୍କୁ ସେହି ବିଦ୍ୟା ଶିକ୍ଷା ଦେଉଥିଲା । ମୂର୍ତ୍ତି ନିର୍ମାଣ କରୁଥିବା ବା ତନ୍ତରେ ଲୁଗା ବୟନ କରୁଥିବା ବ୍ୟକ୍ତି ତା'ର ପରିବାର ସଦସ୍ୟଙ୍କୁ ଅନୁରୂପ ବିଦ୍ୟାରେ ପାରଙ୍ଗମ କରାଉଥିଲା । ଜୀବିକା ଅନ୍ୱେଷଣରେ ଗୃହତ୍ୟାଗ କରିବାର ଆବଶ୍ୟକତା ପଡୁ ନ ଥିଲା । ଶାସକ ଉପରେ ମଧ୍ୟ ନିର୍ଭର କରିବାକୁ ହେଉ ନ ଥିଲା । ପ୍ରତ୍ୟେକ ବ୍ୟକ୍ତି ନିଜ ଧନ୍ଦାରେ ପାରଦର୍ଶିତା ଅର୍ଜନ କରୁଥିବାରୁ ବେକାର ସମସ୍ୟା ବା ଚାକିରି ସମସ୍ୟା ଉତ୍କଟ ନ ଥିଲା । ପ୍ରତ୍ୟେକ ବ୍ୟକ୍ତି ନିଜ କ୍ଷେତ୍ରରେ ଥିଲେ ସ୍ୱାବଲମ୍ବନଶୀଳ । ପିତାଠାରୁ ପୁତ୍ର ଏବଂ ତାଠାରୁ ତା' ପୁତ୍ର—ପରମ୍ପରାକ୍ରମେ ଏହି ଶିକ୍ଷାଧାରା ସମାଜରେ ପ୍ରଚଳିତ ଥିଲା । ମାତ୍ର ଇଂରାଜୀ ଶିକ୍ଷା ଲାଭ କରିବା ପରେ ଭାରତୀୟମାନେ ନିଜର ବଂଶଗତ ବୃତ୍ତିକୁ ହେୟ ମନେକଲେ । ଇଂରାଜୀ ଶିକ୍ଷା ମୁଖ୍ୟତଃ ପ୍ରଶାସନିକ ସେବା କାର୍ଯ୍ୟ ନିମିତ୍ତ ଉଦ୍ଦିଷ୍ଟ ଥିବାରୁ ଏଥିରେ ସ୍ୱାବଲମ୍ବନଶୀଳ ହେବାର କୌଣସି ସୁଯୋଗ ନ ଥିଲା । ତେଣୁ ନିଜର କୌଳିକ ବୃତ୍ତିକୁ ଭୁଲିଯାଇଥିବା ଭାରତୀୟ ସରକାରୀ ଚାକିରି ପାଇବାରେ ଅସମର୍ଥ ହେବାରୁ ବେକାର ଜୀବନ ବରଣ କରିନେବାକୁ ବାଧ୍ୟ ହେଲା । ଫଳରେ ଭାରତରେ ବହୁ ପରିମାଣରେ ବେକାର ସୃଷ୍ଟି ହେବାକୁ ଲାଗିଲେ । ବର୍ତ୍ତମାନ ଭାରତର ଅନ୍ୟାନ୍ୟ ସମସ୍ୟା ପରି ବେକାର ସମସ୍ୟା ମଧ୍ୟ ଏକ ମୁଖ୍ୟ ସମସ୍ୟା ରୂପେ ମୁଣ୍ଡ ଟେକିଛି ।

ସ୍ୱାଧୀନତାର ବହୁକାଳ ପର୍ଯ୍ୟନ୍ତ ଭାରତରେ ସେହି ଇଂରେଜମାନଙ୍କ ଦ୍ୱାରା ପରିଚାଳିତ ଶିକ୍ଷାନୀତି ଅନୁସୃତ ହୋଇ ଆସୁଥିଲା । ସ୍ୱାଧୀନତା ଲାଭ କରିବାର କିଛିକାଳ ପରେ ଭାରତର ଶିକ୍ଷାନୀତିରେ ପରିବର୍ତ୍ତନ କରିବାର ଆବଶ୍ୟକତା ଏ ଦେଶର ଚିନ୍ତାନାୟକମାନେ ଅନୁଭବ କଲେ । ଏକ ସ୍ୱାବଲମ୍ବନଶୀଳ ଶିକ୍ଷାପଦ୍ଧତିର ଅଭାବ ଅନୁଭୂତ ହେଲା । ଯେଉଁ ଶିକ୍ଷା ମଣିଷକୁ ସ୍ୱାଧୀନ ଭାବରେ ଉପାର୍ଜନ କରିବାକୁ ସାମର୍ଥ୍ୟ ଯୋଗାଇପାରେ, ସେହିପରି ଏକ ଶିକ୍ଷାନୀତିର ପ୍ରଣୟନ ଉପରେ ଗୁରୁତ୍ୱ ଆରୋପ କରାଗଲା । ଶିକ୍ଷା ସମାପ୍ତ ପରେ ଯୁବସମ୍ପ୍ରଦାୟ କିପରି ନିଜ ଗୋଡ଼ରେ ଠିଆ ହୋଇପାରିବେ, ତାହାକୁ ଲକ୍ଷ୍ୟ କରି ଧନ୍ଦାମୂଳକ ଶିକ୍ଷାର ପ୍ରବର୍ତ୍ତନ କରାଗଲା । ଭାରତୀୟ ଶିକ୍ଷାପଦ୍ଧତିର ପୁନର୍ଗଠନ ପାଇଁ ଓ୍ୱାର୍ଦ୍ଧା କମିଟିଠାରୁ ଆରମ୍ଭ କରି ମୁଦାଲିୟର କମିଶନ, କୋଠାରୀ

କମିଶନ ପର୍ଯ୍ୟନ୍ତ ବିଭିନ୍ନ ମତାମତ ପ୍ରଦାନ କରିଛନ୍ତି । ୧୯୬୭ ମସିହାରେ କୋଠାରୀ କମିଶନ ତାଙ୍କ ରିପୋର୍ଟରେ ସ୍କୁଲ ଶିକ୍ଷାକୁ ୧୦ ବର୍ଷ ମଧ୍ୟରେ ସୀମିତ ରଖିଲେ ଏବଂ ସେକେଣ୍ଡାରୀ ସ୍ତରରେ ଅଧିକ ଦୁଇ ବର୍ଷ ବୃଦ୍ଧି କରି ବୈଷୟିକ ଶିକ୍ଷା ପ୍ରତି ଅଧିକ ଗୁରୁତ୍ୱ ଦେଲେ । ଏହି ବୈଷୟିକ ଶିକ୍ଷାକୁ ଯୁକ୍ତ ଦୁଇ ସ୍ତରରେ ପ୍ରଚଳନ କରିବାକୁ ଚାହିଁଲେ । ଏପରି କରିବାର ଉଦ୍ଦେଶ୍ୟ ହେଉଛି ଭାରତର ଶିକ୍ଷାପଦ୍ଧତି ବେକାର ସମସ୍ୟା ଦୂରୀକରଣ କ୍ଷେତ୍ରରେ ଆଦୌ ସମର୍ଥ ନ ଥିଲା । ବରଂ ଏହି ଶିକ୍ଷାଲାଭ ଦ୍ୱାରା ପ୍ରତିବର୍ଷ ଉଦ୍‌ବେଗଜନକ ଭାବରେ ବେକାର ସଂଖ୍ୟା ବୃଦ୍ଧି ପାଉଥିଲା । ଧନ୍ଦାମୂଳକ ଶିକ୍ଷାଲାଭ ପରେ ଛାତ୍ରଟି ସରକାରୀ ସ୍ତରରେ ହେଉ କିମ୍ବା ବ୍ୟକ୍ତିଗତ ସ୍ତରରେ ହେଉ କିଛି ରୋଜଗାର କରିବାକୁ ସମର୍ଥ ହୋଇପାରିବ । ଏହି ଶିକ୍ଷାନୀତିରେ ଜଣେ ଛାତ୍ର ଉଭୟ ପାରମ୍ପରିକ ଶିକ୍ଷା ଓ ବୈଷୟିକ ଶିକ୍ଷା ପାଇବାରେ ଅସୁବିଧାର ସମ୍ମୁଖୀନ ହୋଇନଥାଏ । ତେଣୁ କୃଷି, ଶିଳ୍ପ, ବ୍ୟବସାୟ, ପଶୁପାଳନ, ମାଛଚାଷ ଆଦି ବହୁ ବୃତ୍ତିମୂଳକ ବିଷୟକୁ ଏହାର ଅନ୍ତର୍ଭୁକ୍ତ କରାଯାଇଥିଲା । ଏହି ଶିକ୍ଷାପଦ୍ଧତିରେ ଗାନ୍ଧିଜୀଙ୍କ ଦ୍ୱାରା ପ୍ରବର୍ତ୍ତିତ କୁଟୀର ଶିଳ୍ପ ପୁନରାୟ ମୁଖ୍ୟ ସ୍ଥାନ ଲାଭ କରିଥିଲା । ଶିକ୍ଷାର ପରିସମାପ୍ତି ପରେ ସ୍ୱାବଲମ୍ବନଶୀଳ ହେବାକୁ ଏଥିରେ ବିଭିନ୍ନ ଉପାୟ ପ୍ରଦର୍ଶନ କରାଯାଇଥିବାରୁ ଭାରତ ପରି ଏକ ବେକାର ସମସ୍ୟାବହୁଳ ଦେଶରେ ଏହି ଶିକ୍ଷାର ଗୁରୁତ୍ୱ ସର୍ବାଧିକ ।

ପାରମ୍ପରିକ ଓ ଧନ୍ଦାମୂଳକ ଶିକ୍ଷା ମଧ୍ୟରେ କେତେକ ମୌଳିକ ପାର୍ଥକ୍ୟ ବିଦ୍ୟମାନ । ପାରମ୍ପରିକ ଶିକ୍ଷା ଲାଭ କରିସାରିବା ପରେ ଯୋଗ୍ୟତାନୁଯାୟୀ ସରକାରୀ ବା ବେସରକାରୀ ଚାକିରି ମିଳିବାରେ କୌଣସି ନିଶ୍ଚିତତା ନାହିଁ । ଏହି ଶିକ୍ଷାପଦ୍ଧତି ଯୁବକସଂମ୍ପ୍ରଦାୟଙ୍କୁ ସ୍ୱାବଲମ୍ବନଶୀଳ ହେବା ନିମିତ୍ତ କୌଣସି ସୁଯୋଗ ଦେବାକୁ ଅସମର୍ଥ । ଅନ୍ୟ କୌଣସି କ୍ଷେତ୍ରରେ ଉପାର୍ଜନକ୍ଷମ ହେବାକୁ ଏଥିରେ ପରିସରର ଅଭାବ ପରିଲକ୍ଷିତ । ସେହି ନିର୍ଦ୍ଦିଷ୍ଟ କାର୍ଯ୍ୟ ବ୍ୟତିରେକେ ଅନ୍ୟ କ୍ଷେତ୍ରରେ ଏହାର ପରିସର ସଙ୍କୁଚିତ । ତେଣୁ ପାରମ୍ପରିକ ଶିକ୍ଷାଲାଭ କରୁଥିବା ବ୍ୟକ୍ତି ଅଧିକ ପରିମାଣରେ ବେକାର ଜୀବନ ଅତିବାହିତ କରିଥାନ୍ତି । ଧନ୍ଦାମୂଳକ ଶିକ୍ଷା ଉପାର୍ଜନକ୍ଷମ ହେବା ନିମିତ୍ତ ସମସ୍ତ ସୁଯୋଗ ଯୋଗାଇ ଦେଇଥାଏ । ଏହି ଶିକ୍ଷାର ପରିସମାପ୍ତି ପରେ ମଧ୍ୟ ବିଦ୍ୱାନ ଛାତ୍ର ପାରମ୍ପରିକ ଶିକ୍ଷାପଦ୍ଧତିକୁ ଗ୍ରହଣ କରିବାରେ କୌଣସି ଅସୁବିଧା ନାହିଁ । ଶିକ୍ଷା ସହିତ ଅନ୍ୟାନ୍ୟ ବୈଷୟିକ ତାଲିମ୍ ପାଉଥିବାରୁ ଚାକିରି ନ ପାଇଲେ ମଧ୍ୟ ଜଣେ ସ୍ୱାବଲମ୍ବନଶୀଳ ହୋଇପାରିବ । ସରକାରଙ୍କ ଠାରୁ ଋଣ ଆଣି ବ୍ୟବସାୟ, କୃଷି, ଦୋକାନ ବା ଅନ୍ୟ କୌଣସି ସଂସ୍ଥା ଖୋଲି ଅକ୍ଳେଶରେ ଜଣେ ପରିବାର ପ୍ରତିପୋଷଣ କରିପାରିବ । ଆର୍ଥନୀତିକ ବୈଷମ୍ୟର ଦୂରୀକରଣ କ୍ଷେତ୍ରରେ ଏହି ଧନ୍ଦାମୂଳକ ବା ବୃତ୍ତିମୂଳକ ଶିକ୍ଷାର ପ୍ରୟୋଜନ ରହିଛି । କୋଠାରୀ କମିଶନ ଏହି ଶିକ୍ଷା ମଧ୍ୟରେ ମତ୍ସ୍ୟଚାଷ, ଗାଡ଼ିଚାଳନ, ସିଲାଇଶିକ୍ଷା, ଚମଡ଼ାକାର୍ଯ୍ୟ, କୃଷି କାର୍ଯ୍ୟ ଶିକ୍ଷା ଆଦି ବହୁ ବିଷୟ ଅନ୍ତର୍ଭୁକ୍ତ କରିଛନ୍ତି । ଯୁକ୍ତ ଦୁଇ ସ୍ତରରେ ଉପରୋକ୍ତ ଶିକ୍ଷାଗୁଡ଼ିକ ଉପରେ ଗୁରୁତ୍ୱ ପ୍ରଦାନ କରାଯାଇଛି । ଧନ୍ଦାମୂଳକ ଶିକ୍ଷା ଦ୍ୱାରା ଜଣେ ବ୍ୟକ୍ତି ନିଜର କୌଳିକ ବୃତ୍ତି ପ୍ରତି ଆଗ୍ରହ ପ୍ରକାଶ କରିଥାଏ । ମାତ୍ର ଇଂରାଜୀ ଶିକ୍ଷା ପଦ୍ଧତି (ପାରମ୍ପରିକ ଶିକ୍ଷା)ରେ ଛାତ୍ରଟିଏ

ନିଜର କୌଳିକ ବୃତ୍ତିକୁ ଘୃଣା କରିଥାଏ । ଆଜି ଯଦି ଭାରତବର୍ଷରେ କୌଳିକ ବୃତ୍ତିର ବିଲୋପ ହୋଇଥାଏ, ସେଥିପାଇଁ ଏହି ପାରମ୍ପରିକ ଶିକ୍ଷା ପଦ୍ଧତି ବହୁପରିମାଣରେ ଦାୟୀ । ଲର୍ଡ଼ ମାକ୍‌ଲେ ଭାରତରେ ଇଂରେଜୀ ଶିକ୍ଷାର ପ୍ରବର୍ତ୍ତନ ସମୟରେ ଯେଉଁ ଭବିଷ୍ୟତ ବାଣୀ କରିଥିଲେ, ତାହା ଅକ୍ଷରେ ଅକ୍ଷରେ ସତ୍ୟ ହୋଇଛି । ଧନ୍ଦାମୂଳକ ଶିକ୍ଷା ଏକାଧାରରେ ଜ୍ଞାନ, ପ୍ରଶିକ୍ଷଣ ଓ ଅଭିଜ୍ଞତା ପ୍ରଦାନ କରିଥାଏ । ଏହିପ୍ରକାର ଶିକ୍ଷାରେ ବହୁ ବିଷୟ ଅନ୍ତର୍ଭୁକ୍ତ । ଯଥା—କୃଷି, ଶିଳ୍ପ, ବ୍ୟବସାୟ, ବାଣିଜ୍ୟ, ଶିକ୍ଷା, ସର୍ବସାଧାରଣ ସେବା ଇତ୍ୟାଦି । ପାରମ୍ପରିକ ଶିକ୍ଷାରେ ଜଣେ ଛାତ୍ରକୁ ଏହି ସୁଯୋଗ ମିଳି ନ ଥାଏ । ତେଣୁ ସରକାରୀ ଚାକିରି ନ ପାଇଲେ, ସେ ବେକାର ଜୀବନ ବରଣ କରିବାକୁ ବାଧ ହୋଇଥାଏ । ମାତ୍ର ଧନ୍ଦାମୂଳକ ଶିକ୍ଷାରେ ଜଣେ ଯେ କୌଣସି କ୍ଷେତ୍ରରେ ନିଜକୁ ନିଯୁକ୍ତ କରିବାକୁ ସମର୍ଥ ।

ଧନ୍ଦାମୂଳକ ଶିକ୍ଷା ମୁଖ୍ୟତଃ ସୃଷ୍ଟି ହୋଇଥିଲା ଛାତ୍ର ଜୀବନପରେ ବ୍ୟକ୍ତିକୁ ସ୍ୱାବଲମ୍ୱନଶୀଳ କରିବା ପାଇଁ । ପ୍ରଥମ ଦଶ ବର୍ଷ ସ୍କୁଲ ଶିକ୍ଷାର ପରିସମାପ୍ତି ପରେ ଦୁଇ ବର୍ଷ କର୍ମାଭିମୁଖୀ ଶିକ୍ଷା ଦେବାର ବ୍ୟବସ୍ଥା ଏଥିରେ ରହିଛି । ଏହାପରେ ଅନ୍ୟ ତିନି ବର୍ଷ ଉଚ୍ଚତର ଶିକ୍ଷା ଲାଭ ପାଇଁ ଉଦ୍ଦିଷ୍ଟ । ଏହି ଦୁଇବର୍ଷ କର୍ମାଭିମୁଖୀ ଶିକ୍ଷାପରେ ଛାତ୍ରମାନେ ବିଭିନ୍ନ ଭାବରେ ଜୀବିକା ନିର୍ବାହ କରିବାକୁ ସମର୍ଥ ହୋଇପାରିବେ । ଯଦି କୌଣସି ଛାତ୍ର ଉଚ୍ଚତର ଶିକ୍ଷା ନିମିତ୍ତ ଆଗ୍ରହ ପ୍ରକାଶ କରେ, ତେବେ ସେ ଯୁକ୍ତ ଦୁଇସ୍ତର ପରେ ଯୁକ୍ତ ତିନି ସ୍ତରରେ ଅଧ୍ୟୟନ କରିପାରିବ । ମାତ୍ର ଭାରତବର୍ଷରେ ଏହି ଶିକ୍ଷାନୀତିକୁ ସୁଚାରୁ ରୂପେ ପ୍ରଣୟନ କରାଯାଇପାରିଲା ନାହିଁ । ୧୯୭୮ ମସିହାରେ ଏକ ଜାତୀୟ ଶିକ୍ଷାନୀତି ପ୍ରଣୟନ କରାଯିବାର ବିଚାର ବିମର୍ଶ ହେଲା । ମାତ୍ର ସେହି ସମ୍ମିଳନୀରେ ନିର୍ଦ୍ଦିଷ୍ଟ ନିଷ୍ପତ୍ତି ନେବା ପରିବର୍ତ୍ତେ ୧୦+୨+୩ ଶିକ୍ଷା ପଦ୍ଧତିକୁ ଗ୍ରହଣ କରାଯିବାର ମତାମତ ପ୍ରକାଶ ପାଇଲା । ଯେଉଁ ଉଦ୍ଦେଶ୍ୟକୁ ଆଖିଆଗରେ ରଖି ଧନ୍ଦାମୂଳକ ଶିକ୍ଷାର ପ୍ରବର୍ତ୍ତନ କରାଯାଇଥିଲା, ଉପଯୁକ୍ତ ସହଯୋଗ, ଅର୍ଥ ଓ ତାଲିମପ୍ରାପ୍ତ ଶିକ୍ଷକଙ୍କ ଅଭାବରୁ ତାହା ଠିକ୍ ରୂପେ କାର୍ଯ୍ୟକାରୀ ହେବାର ବାଧା ସୃଷ୍ଟି ହେଲା । ଆବଶ୍ୟକୀୟ ଛାତ୍ରଛାତ୍ରୀଙ୍କ ଅଭାବରୁ ଉଚ୍ଚ ମାଧ୍ୟମିକ ସ୍ତରରେ ଯୁକ୍ତ କରାଯାଇଥିବା ଏହି ଧନ୍ଦାମୂଳକ ଶିକ୍ଷା ଏକପ୍ରକାର ପରିତ୍ୟକ୍ତ ହୋଇଗଲା । ଏବେ ଭାରତରେ ୧୦+୨+୩ ଶିକ୍ଷା ପଦ୍ଧତିର ପ୍ରଚଳନ ହୋଇଥିଲେ ହେଁ ଏଥିରେ କୌଣସି ନୂତନତ୍ୱ ନାହିଁ । ସେହି ପାରମ୍ପରିକ ରୀତିରେ I.A., B.A. ପରି ସାଧାରଣ ଶିକ୍ଷା ବ୍ୟବସ୍ଥା ରହିଛି ।

ଧନ୍ଦାମୂଳକ ଶିକ୍ଷାର ଉଭୟ ଉପକାର ଓ ଅପକାର ଦୁଇଟି ଦିଗ ରହିଛି । ବ୍ୟକ୍ତି ବା ଛାତ୍ରଛାତ୍ରୀଙ୍କୁ ସ୍ୱାବଲମ୍ୱନଶୀଳ କରାଇବା ଏବଂ ବୃତ୍ତି ପ୍ରତି ଆଗ୍ରହ ସୃଷ୍ଟି କରିବା ମୁଖ୍ୟତଃ ଏହାର ଉପକାର ଦିଗ ରୂପେ ଗୃହୀତ । ମାତ୍ର ଉପଯୁକ୍ତ ତାଲିମ୍ ଓ ଉପକରଣ ଅଭାବରୁ ଏଥିରୁ ଉତ୍ତୀର୍ଣ୍ଣ ହେଉଥିବା ଛାତ୍ରଛାତ୍ରୀ ଆତ୍ମନିର୍ଭରଶୀଳ ହେବା ପରିବର୍ତ୍ତେ ଅନ୍ୟ ଉପରେ ନିର୍ଭର କରନ୍ତି କିମ୍ବା ବେକାର ଜୀବନଯାପନ କରନ୍ତି । ଗ୍ରେଡ୍ ଅନୁଯାୟୀ ଛାତ୍ରମାନଙ୍କୁ ଉଚ୍ଚତର ଶ୍ରେଣୀରେ ଅଧ୍ୟୟନ କରିବାର ସୁଯୋଗ ଦିଆଯାଉଥିବାରୁ C,D. ବା E ଗ୍ରେଡ୍ ଲାଭ କରୁଥିବା ପିଲାର ଉଚ୍ଚତର

ଅଧ୍ୟୟନର ସୁଯୋଗ ନାହିଁ । ଉଚ୍ଚଶିକ୍ଷାର ଆଦର କମିଯିବା ଯୋଗୁଁ ପିଲାର ବୌଦ୍ଧିକ କିମ୍ବା ମାନସିକ ବିକାଶ ହୋଇପାରିବ ନାହିଁ । ଉଚ୍ଚ ଚିନ୍ତା ପାଇଁ ସେମାନେ ଖୋରାକ ପାଇପାରିବେ ନାହିଁ । ପୁଣି ଏହି ଶିକ୍ଷାନୀତି ଯୋଗୁ ଗରିବ ମେଧାବୀ ପିଲା ଉଚ୍ଚଶିକ୍ଷାରୁ ବଞ୍ଚିତ ହେବେ । ଯେଉଁମାନଙ୍କ ନିକଟରେ ଅର୍ଥ ଅଛି, ସେମାନେ କେବଳ ଏହାର ସୁଯୋଗଲାଭ କରିବେ । ବୈଷୟିକ ଶିକ୍ଷା ପାଇଁ ଅଧିକ ଅର୍ଥ ଆବଶ୍ୟକ ହେଉଥିବାରୁ କେବଳ ବିତ୍ତଶାଳୀ ବ୍ୟକ୍ତିଙ୍କ ପିଲାମାନେ ହିଁ ଏହାର ସୁଯୋଗ ନେବେ । ଏହି ଦୃଷ୍ଟିରୁ ଏହାର ସୁଫଳ ମଧ୍ୟ ସମସ୍ତେ ଲାଭ କରିପାରିବେ ନାହିଁ ।

ଭାରତର ଶିକ୍ଷାନୀତିରେ ବର୍ତ୍ତମାନ ଆମୂଳଚୂଳ ପରିବର୍ତ୍ତନ ଆବଶ୍ୟକ । ପାରମ୍ପରିକ ସାଧାରଣ ଶିକ୍ଷା ମଣିଷର ଅଭାବ ପରିପୂରଣ କରିବାକୁ ସମ୍ପୂର୍ଣ୍ଣ ଅସମର୍ଥ । ଯେଉଁ ଶିକ୍ଷା ଛାତ୍ରସମାଜ ପେଟକୁ ଆହାର ଦେଇପାରିବ, ସେହିପରି ଶିକ୍ଷା ବର୍ତ୍ତମାନ ଆବଶ୍ୟକ । ଏହା ସହିତ ଉଚ୍ଚତର ବା ବିଶ୍ୱବିଦ୍ୟାଳୟ ଶିକ୍ଷାକୁ ମଧ୍ୟ ହେୟ କରିବା ଅନୁଚିତ । କାରଣ ମଣିଷର ଜ୍ଞାନ ଓ ଚିନ୍ତାଧାରାର ବିକାଶ ପାଇଁ ଏହା ସହାୟତା କରିଥାଏ । କେବଳ କମିଟି ବା କମିଶନ ବସାଇ ନୂଆ ଶିକ୍ଷାନୀତି ପ୍ରଣୟନ କରିଦେଲେ, ସମସ୍ୟାର ସମାଧାନ ହୋଇପାରିବ ନାହିଁ । ଏଥିପାଇଁ ସବୁ ସ୍ତରରେ ଆନ୍ତରିକ ଉଦ୍ୟମ ଆବଶ୍ୟକ । ଅବଶ୍ୟ ଏକଥା ସତ୍ୟ, ବର୍ତ୍ତମାନର ୧୦+୨+୩ ଶିକ୍ଷା ପଦ୍ଧତି ସମ୍ପୂର୍ଣ୍ଣ ତ୍ରୁଟିପୂର୍ଣ୍ଣ । ଏହା ଆଦୌ ଏକ ନୂତନ ଶିକ୍ଷାନୀତି ନୁହେଁ । ଧନ୍ଦାମୂଳକ ଶିକ୍ଷାର ଗୁରୁତ୍ୱ ସବୁ ସମୟରେ ରହିଛି । ମାତ୍ର ଭାରତ ପରି ଏକ ବିକାଶଶୀଳ ରାଷ୍ଟ୍ରରେ ଏହି ବ୍ୟବସ୍ଥା କେତେଦୂର ସଫଳ ହୋଇପାରିବ, ତାହା ଏକ ପ୍ରଶ୍ନବାଚୀ ହୋଇ ଠିଆ ହୋଇଛି । ତଥାପି ଏକ ଜନମଙ୍ଗଳ ରାଷ୍ଟ୍ରରେ ଯୁବସମ୍ପ୍ରଦାୟକୁ କାର୍ଯ୍ୟ ଯୋଗାଇ ଦେଇ ସ୍ୱାବଲମ୍ବନଶୀଳ କରିବା ତା'ର ମୁଖ୍ୟ ଉଦ୍ଦେଶ୍ୟ ହୋଇଥିବାରୁ ଏଥିପ୍ରତି ସବୁସ୍ତରରେ ସଚେତନତା ସୃଷ୍ଟି ହେବା ଆବଶ୍ୟକ ।

●

## ନାରୀ ଶିକ୍ଷା

**(ଉପକ୍ରମ, ସମାଜରେ ନାରୀର ଗୁରୁତ୍ୱ, ଭାରତରେ ନାରୀଶିକ୍ଷାର ପରମ୍ପରା, ମଧ୍ୟଯୁଗୀୟ ଭାରତରେ ନାରୀଶିକ୍ଷା, ଆଧୁନିକ ଭାରତରେ ନାରୀଶିକ୍ଷା ପ୍ରତି ସ୍ୱତନ୍ତ୍ର ଦୃଷ୍ଟିଭଙ୍ଗୀ ଓ ନାରୀ ପ୍ରଗତି, ନାରୀଶିକ୍ଷାର ଆବଶ୍ୟକତା, ଉପସଂହାର)**

ସମାଜରେ ନାରୀ ଓ ପୁରୁଷ ଏକ ମୁଦ୍ରାର ଦୁଇଟି ପାର୍ଶ୍ୱ । ସୁସ୍ଥ ସମାଜ ଗଠନରେ ନାରୀର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ଅଶିକ୍ଷା ନାରୀର ଦୃଷ୍ଟିଭଙ୍ଗୀକୁ ସଂକୀର୍ଣ୍ଣ କରେ । ଶିକ୍ଷାଦ୍ୱାରା ନାରୀ ହୁଏ ପ୍ରଶସ୍ତମନା । ନାରୀ ଅବହେଳିତା ହେଲେ ପରିବାରର ଶାନ୍ତି ସୁରକ୍ଷିତ ରହିପାରେ ନାହିଁ । ଦେଶର ସର୍ବାଙ୍ଗୀନ ଉନ୍ନତି ସାଧନ କ୍ଷେତ୍ରରେ ପୁରୁଷପରି ନାରୀର ମଧ୍ୟ ସମାନ ଭୂମିକା ରହିଛି । ସେହି କାରଣରୁ ସମାଜରେ ନାରୀଶିକ୍ଷା ଅପରିହାର୍ଯ୍ୟ ହୋଇ ଉଠିଛି । ଅତୀତରେ ଭୋଗବାଦୀ ଦୃଷ୍ଟିକୋଣରୁ ନାରୀକୁ ବିଚାର କରାଯାଇଥିବାରୁ ଶିକ୍ଷାକ୍ଷେତ୍ରରେ ବିଶେଷ ଉନ୍ନତି

କରିପାରି ନ ଥିଲା । ପର୍ଦ୍ଦା ମଧ୍ୟରେ ଗୃହର ଚାରିକାନ୍ଥ ଭିତରେ ସେ ଆବଦ୍ଧ ରହିଥିଲା । ଶିକ୍ଷାଲାଭ କରିବାର ଅଧିକାର ତା'ର ନ ଥିଲା । ସେ ଥିଲା ଅସୂର୍ଯ୍ୟଂପଶ୍ୟା । 'ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତା' ଭାରତୀୟ ସଂସ୍କୃତିର ଏହି ମହାନ ବାକ୍ୟ ପୁରୁଷପ୍ରଧାନ ସମାଜରେ କୌଣସି ମୂଲ୍ୟ ପାଇ ନ ଥିଲା । ନାରୀ କେବଳ ପୁରୁଷର ଥିଲା ସହଧର୍ମିଣୀ । ସହଧର୍ମିଣୀ ହେବାର ଯୋଗ୍ୟତା ସତେଯେପରି ସେ ହରାଇ ବସିଥିଲା । ପ୍ରତିକ୍ଷେତ୍ରରେ ପୁରୁଷ ପରି ନାରୀର ଯେ ସମାନ ଅଧିକାର ରହିଛି, ପୁରୁଷ ସମାଜକୁ ଏହା ବୁଝିବାରେ ବହୁତ ସମୟ ଲାଗିଥିଲା । ସମୟର ପରିବର୍ତ୍ତନ ସହିତ ଦୃଷ୍ଟିଭଙ୍ଗୀରେ ମଧ୍ୟ ପରିବର୍ତ୍ତନ ଆସିଲା । ପ୍ରତିଭା, ଜ୍ଞାନ, ବିଦ୍ୱତ୍ତା—ସବୁ ଦୃଷ୍ଟିରୁ ନାରୀ ଯେ ପୁରୁଷ ଠାରୁ ଆଦୌ ପଛରେ ନୁହେଁ,ତାହା ଅନୁଭୂତ ହେଲା । ଦୀର୍ଘଦିନ ଧରି ଅବହେଳିତ ଜୀବନଯାପନ କରିଥିବା ନାରୀ ତା'ର ଅଧିକାର ଫେରିପାଇଲା । ଉନବିଂଶ ଶତାବ୍ଦୀରେ ଭାରତରେ ଯେଉଁ ନବଜାଗରଣ ସୃଷ୍ଟି ହେଲା, ତାହା ଯୁଗ ଯୁଗ ଧରି ପ୍ରଚଳିତ ଭାରତର ସାମାଜିକ ବ୍ୟବସ୍ଥାକୁ ଭାଙ୍ଗି ଚୂରମାର କରିଦେଲା । ନାରୀଶିକ୍ଷାର ମହତ୍ତ୍ୱ ଅନୁଭବ କରି ସେଥିପ୍ରତି ସ୍ୱତନ୍ତ୍ର ଦୃଷ୍ଟି ପ୍ରଦାନ କରାଗଲା । ବର୍ତ୍ତମାନ ବିଶ୍ୱ ସହିତ ପ୍ରତିଯୋଗିତା କ୍ଷେତ୍ରରେ ଅବତୀର୍ଣ୍ଣ ହେବାକୁ ହେଲେ ନାରୀଶିକ୍ଷାର ଏକାନ୍ତ ଆବଶ୍ୟକତା ରହିଛି ।

ସମାଜରେ ନାରୀର ଭୂମିକା ବହୁବିଧ । ସେ ଏକାଧାରରେ ଜନନୀ, ଜାୟା, ଭଗିନୀ । ସେ ଶକ୍ତିମୟୀ; ସୃଷ୍ଟିକାରିଣୀ ଓ ସଂହାରକାରିଣୀ । ନାରୀ ଓ ପୁରୁଷର ମଧୁର ମିଳନରୁ ସମାଜର ସୃଷ୍ଟି ଓ ବିକାଶ । ସମାଜର ବିକାଶ କ୍ଷେତ୍ରରେ ନାରୀର ଭୂମିକା ଅଧିକ ଗୁରୁତ୍ୱପୂର୍ଣ୍ଣ । ନାରୀ ଶିକ୍ଷିତା ହେଲେ ସମାଜ ହୁଏ ପ୍ରଗତିଶୀଳ । ଶିଶୁର ଭବିଷ୍ୟତ ବହୁପରିମାଣରେ ମାତାର ଶିକ୍ଷା ଉପରେ ନିର୍ଭର କରେ । ମାତା ଶିକ୍ଷିତା ହୋଇ ନ ଥିଲେ ଶିଶୁକୁ ଉପଯୁକ୍ତ ନାଗରିକ କରି ଗଢ଼ି ତୋଳିବାରେ ବାଧା ସୃଷ୍ଟି ହୋଇଥାଏ । ପୁଣି ପୁରୁଷକୁ ଉପଯୁକ୍ତ ପଥ ପ୍ରଦର୍ଶନରେ ନାରୀ ସହାୟତା କରିଥାଏ । ନାରୀ ଅଶିକ୍ଷିତା ହୋଇଥିଲେ ପୁରୁଷର ସମସ୍ୟାବହୁଳ ଜୀବନରେ ସମାଧାନର ପଥ ନିର୍ଦ୍ଦେଶ କରିବାକୁ ଅସମର୍ଥ ହୁଏ । ପୁରୁଷର ଜ୍ୱାଳାମୟ ଜୀବନକୁ ନାରୀ ଶାନ୍ତି, ସ୍ନେହ ଓ ପ୍ରେମର ବାରି ସିଞ୍ଚି ଶୀତଳ କରେ । ପରିବାରରେ ଶାନ୍ତିର ବାତାବରଣ ସୃଷ୍ଟି କରିବା କ୍ଷେତ୍ରରେ ତା'ର ଭୂମିକା ଗୁରୁତ୍ୱପୂର୍ଣ୍ଣ । ତେଣୁ ସମାଜ ଓ ପରିବାରର ସୁଖଶାନ୍ତି ଅନେକ ପରିମାଣରେ ନାରୀର ଦୂରଦୃଷ୍ଟି ଓ ଉତ୍ସର୍ଗୀକୃତ ଜୀବନ ଉପରେ ନିର୍ଭର କରେ । ପରିବାରର ଆର୍ଥିକ ସ୍ଥିତି ଓ ସ୍ୱଚ୍ଛଳତା ନାରୀର ପରିଚାଳନାଗତ ଦକ୍ଷତା ଉପରେ ନିର୍ଭର କରେ । ଏହା ସମାଜର ଏକ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ହୋଇଥିବାରୁ, ନାରୀ ଶିକ୍ଷାର ଆବଶ୍ୟକତା ଅପରିହାର୍ଯ୍ୟ ।

ସମାଜର ସମୃଦ୍ଧି ଏବଂ ପ୍ରଗତି କ୍ଷେତ୍ରରେ ନାରୀର ଭୂମିକା କିପରି ଗୁରୁତ୍ୱପୂର୍ଣ୍ଣ, ପ୍ରାଚୀନ ଭାରତର ମନୀଷୀଗଣ ତାହା ଉପଲବ୍ଧି କରିଥିଲେ । ତେଣୁ ବୈଦିକ ଯୁଗରେ ମଧ୍ୟ ସମାଜରେ ନାରୀର ଏକ ସ୍ୱତନ୍ତ୍ର ସ୍ଥାନ ଥିଲା । ଏହି କାରଣରୁ ବହୁ ନାରୀ ଦେବୀଙ୍କର ପରିକଳ୍ପନା କରାଯାଇ ତାଙ୍କର ପୂଜାର୍ଚ୍ଚନା କରାଯାଉଥିଲା । ଐଶ୍ୱର୍ଯ୍ୟ, ଅର୍ଥ, ବିଦ୍ୟା, ଶକ୍ତି ଆଦିର ମୂଳଉତ୍ସ ରୂପେ ନାରୀକୁ ପରିକଳ୍ପନା କରାଯିବା ସହିତ ଦେବୀରୂପେ ସମ୍ମାନ ପ୍ରଦର୍ଶନ କରାଯାଉଛି । ଶିକ୍ଷା, ସଭ୍ୟତା,

ସଂସ୍କୃତି ସବୁ କ୍ଷେତ୍ରରେ ପ୍ରାଚୀନ ଭାରତ ଥିଲା ମହାନ୍ । ମୁନି ଆଶ୍ରମରେ ପୁରୁଷ ପରି ନାରୀ ମଧ୍ୟ ଶିକ୍ଷା ଗ୍ରହଣ କରି ନିଜର ବିଦ୍‌ବତ୍ତା ଓ ଜ୍ଞାନ ଦ୍ୱାରା ପୁରୁଷକୁ ଚମତ୍କୃତ କରି ପାରିଛନ୍ତି । ସୀତା, ଦ୍ରୌପଦୀ, ଅହଲ୍ୟା, କୁନ୍ତୀ, ତାରା, ସାବିତ୍ରୀ ଆଦି ମହନୀୟା ନାରୀ ଏବେ ମଧ୍ୟ ଆମ ସମାଜରେ ପୂଜିତା ଓ ଅର୍ଚ୍ଚିତା । ଶିକ୍ଷାଦୀକ୍ଷାରେ ସେମାନେ ଥିଲେ ଅତୁଳନୀୟା । ପ୍ରାଚୀନ ଭାରତରେ ଗାର୍ଗୀ, ମୈତ୍ରେୟୀ, ବିଶ୍ୱବାରା, ଘୋଷା, ଲୀଳାବତୀ, ଲୋପାମୁଦ୍ରା, ସଂଘମିତ୍ରା ଆଦି ବହୁ ନାରୀ ଶିକ୍ଷାର ବିଭିନ୍ନ କ୍ଷେତ୍ରରେ ନିଜର ବିଦ୍‌ବତ୍ତାର ପରିଚୟ ପ୍ରଦାନ କରିଯାଇଛନ୍ତି । ମୁନି ଆଶ୍ରମରେ ମୁନିପତ୍ନୀମାନଙ୍କର ଉତ୍ସର୍ଗୀକୃତ ଜୀବନ, ଗୂଢ଼ ବ୍ରହ୍ମତତ୍ତ୍ୱ ଆଲୋଚନା, ବେଦଶାସ୍ତ୍ର ଅଧ୍ୟୟନ, ଆଲୋଚନା ଓ ଲିଖନ ଭାରତୀୟ ସାମାଜିକ ଓ ସାଂସ୍କୃତିକ ଜୀବନକୁ ବହୁପରିମାଣରେ ଉଦ୍‌ବୁଦ୍ଧ କରିପାରିଥିଲା । ବହୁ ଶାସ୍ତ୍ରରେ ଧୂରୀଣା ପ୍ରାଚୀନ ଭାରତୀୟ ନାରୀ ଆମ ସମାଜର ଆଦର୍ଶ ଓ ଚିର ବନ୍ଦନୀୟା । ସେହିମାନଙ୍କ ଉତ୍ସର୍ଗୀକୃତ ଜୀବନ, ସାଧନା ଓ ସିଦ୍ଧି ଭାରତୀୟ ସମାଜକୁ ବିଶ୍ୱର ଶ୍ରେଷ୍ଠ ଆଦର୍ଶ କରି ଗଢ଼ିତୋଳିଥିଲା । ମାତ୍ର ପରାଧୀନ ଭାରତରେ ସେମାନଙ୍କ ପ୍ରତି ଅବହେଳା ପ୍ରଦର୍ଶନ କରାଯିବାରୁ ଏବଂ ସେମାନଙ୍କୁ ଉପଯୁକ୍ତ ସମ୍ମାନ ଦିଆନଯିବାରୁ ଭାରତୀୟ ଜୀବନ ବିକଳାଙ୍ଗ ହୋଇଉଠିଲା । ଲୁପ୍ତ ହେଲା ଭାରତର ଐତିହ୍ୟ ଓ ଗୌରବ । ନାରୀଶିକ୍ଷା ପ୍ରତି ଅନୁଦାର ଭାବ ପ୍ରକାଶ ପାଇଲା ।

ମଧ୍ୟଯୁଗୀୟ ଭାରତରେ ନାରୀଶିକ୍ଷା ଅବହେଳିତ ହୋଇପଡ଼ିଥିଲା । ମୁସଲମାନ ଶାସନ କାଳରେ ନାରୀ ସ୍ୱାଧୀନତା ବହୁପରିମାଣରେ ହ୍ରାସ ପାଇଥିଲା । ମୁସଲମାନ ନାରୀମାନେ ଯେପରି ବୁର୍ଖା ବ୍ୟବହାର କରୁଥିଲେ ହିନ୍ଦୁ ନାରୀମାନେ ସେହିପରି ପର୍ଦ୍ଦାପ୍ରଥାକୁ ଆଦରି ନେଇଥିଲେ । କାମୁକ ଶାସକମାନଙ୍କର କାମନାଗ୍ନିରୁ ରକ୍ଷା ପାଇଁ ହୁଏତ ହିନ୍ଦୁ ରମଣୀ ଏପରି ଏକ ଅବସ୍ଥାକୁ ଗ୍ରହଣ କରିବାକୁ ବାଧ୍ୟ ହୋଇଥିଲେ । ଏହି ସମୟରୁ ନାରୀ ପଛରେ ଅସୂର୍ଯ୍ୟଂପଶ୍ୟା ଶବ୍ଦଟି ବୋଧହୁଏ ବ୍ୟବହାର ହୋଇଛି । ନାରୀକୁ ଶକ୍ତିର ଉତ୍ସରୂପେ ପରିଗଣିତ କରିବା ପରିବର୍ତ୍ତେ ତାକୁ ଏକ ବିଳାସର ସାମଗ୍ରୀ ଭାବରେ ଗ୍ରହଣ କରାଗଲା । ପୁରୁଷର ମନୋରଞ୍ଜନ କରିବା ହେଲା ତା'ର ପ୍ରଥମ ଧର୍ମ । ବିଭିନ୍ନ କୁସଂସ୍କାର ଓ ଅନ୍ଧବିଶ୍ୱାସ ନାରୀକୁ ଗ୍ରାସ କଲା । ନାରୀ ଶିକ୍ଷା ସମ୍ପୂର୍ଣ୍ଣ ବିଡ଼ମ୍ବିତ ହୋଇପଡ଼ିଲା । ଅଳ୍ପକେତେକ ଅଭିଜାତ ଓ ସାମନ୍ତ ପରିବାରରେ ଗୃହର ଚାରିକାନ୍ଥ ମଧ୍ୟରେ ନାରୀକୁ ବିଭିନ୍ନ ଶିକ୍ଷା ପ୍ରଦାନ କରାଗଲା । ଅଥଚ ବହୁ ସାଧାରଣ ପରିବାର ନାରୀଶିକ୍ଷାଠାରୁ ଦୂରେଇ ଗଲେ । ସେମାନେ କେବଳ ପରିବାରର କାର୍ଯ୍ୟ ପାଇଁ ନିୟୋଜିତ ହେଲେ । ସ୍ୱାଧୀନ ଭାବରେ ମତ ବିନିମୟ ବା ଶିକ୍ଷା ଗ୍ରହଣ କରିବାର ଅଧିକାର ହରାଇ ବସିଲେ । ମଧ୍ୟଯୁଗରେ ଅଳ୍ପ କେତେଜଣ ରାଜପୁତ୍ ରମଣୀ ନିଜର ପ୍ରତିଭା ଓ ବିଦ୍‌ବତ୍ତା ପ୍ରକାଶ କରିବାକୁ ସମର୍ଥ ହୋଇଛନ୍ତି । ରାଣୀ ଦୁର୍ଗାବତୀ, ପଦ୍ମିନୀଙ୍କ ପରି କେତେକ ନାରୀ ଅନ୍ୟାୟ ବିରୋଧରେ ସଂଗ୍ରାମ କରି ନିଜର ସ୍ୱାଧୀନ ମନୋବୃତ୍ତିର ପରିଚୟ ପ୍ରଦାନ କରିଛନ୍ତି । ମୀରାବାଈଙ୍କ ପରି ନାରୀପ୍ରତିଭା ସମସ୍ତ ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ନିଜର ପ୍ରତିଭା ବିକାଶ କରିପାରିଛନ୍ତି । ଏହା ସତ୍ତ୍ୱେ ମଧ୍ୟଯୁଗୀୟ ଭାରତରେ ନାରୀଶିକ୍ଷା ସମ୍ପୂର୍ଣ୍ଣ ବିଡ଼ମ୍ବିତ ହୋଇପଡ଼ିଥିଲା ।

ଭାରତରେ ଇଂରେଜ ଶାସନ ସମୟରେ ନାରୀଶିକ୍ଷାର ଉନ୍ନତି ସାଧିତ ହେଲା । ଇଂରେଜ ଶାସକଗଣ ଭାରତୀୟ ସମାଜରେ ପରିପୂରିତ ପ୍ରାଚୀନ କୁସଂସ୍କାର ଓ ଅନ୍ଧବିଶ୍ୱାସ ମୂଳରେ କୁଠାରାଘାତ କଲେ । ନାରୀ ଶିକ୍ଷା ନିମିତ୍ତ ସେମାନେ ଅନୁକୂଳ ବାତାବରଣ ସୃଷ୍ଟି କଲେ । ଲର୍ଡ଼ ବେଣ୍ଟିଙ୍କଙ୍କ ସମୟରେ ଭାରତୀୟ ସମାଜରେ ବହୁ କାଳରୁ ପ୍ରଚଳିତ ଥିବା ପରଦା ପ୍ରଥା ଓ ସତୀଦାହ ପ୍ରଥାକୁ ଉଠାଇ ଦିଆଗଲା । ଉନବିଂଶ ଶତାବ୍ଦୀରେ ଭାରତରେ ଯେଉଁ ନବଜାଗରଣ ଆସିଲା, ସେଥିରେ ନାରୀଶିକ୍ଷା ପ୍ରତି ଆଦର ଭାବ ବଢ଼ିଲା । ନାରୀଶିକ୍ଷାର ଉନ୍ନତି ନିମିତ୍ତ ଭାରତର କେତେକ ଅଗ୍ରଗାମୀ ଦୂରଦୃଷ୍ଟିସମ୍ପନ୍ନ ବ୍ୟକ୍ତିତ୍ୱ ଇଂରେଜମାନଙ୍କୁ ସହାୟତା ପ୍ରଦାନ କଲେ । ଉନବିଂଶ ଶତାବ୍ଦୀରେ କେତେକ ବ୍ୟକ୍ତି ଏବଂ ଅନୁଷ୍ଠାନ ନାରୀଜାତି ତଥା ନାରୀଶିକ୍ଷାର ବିକାଶ ନିମିତ୍ତ ଅଣ୍ଟାଭିଡ଼ି ବାହାରିଲେ । ରାଜା ରାମମୋହନ ରାୟ ଓ ତାଙ୍କର ବ୍ରାହ୍ମ ସମାଜ, ଦୟାନନ୍ଦ ସରସ୍ୱତୀ ଓ ଆର୍ଯ୍ୟ ସମାଜ ଏ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିଥିଲେ । ଭାରତୀୟ ଜାତୀୟ ସାମାଜିକ ସମ୍ମିଳନୀରେ ନାରୀଶିକ୍ଷାର ବିକାଶ ନିମିତ୍ତ କେତେକ ପଦକ୍ଷେପ ଗ୍ରହଣ କରାଯାଇଥିଲା । ୧୯୦୫ ମସିହାରେ ଭାରତ ସେବକ ସମାଜ ନାରୀଶିକ୍ଷାର ଉନ୍ନତି ପାଇଁ କେତେକ ଆଖିଦୃଶିଆ କାର୍ଯ୍ୟକ୍ରମ ନିଜ ହାତକୁ ନେଇଥିଲା । ଏତଦ୍‌ବ୍ୟତୀତ ରାମକୃଷ୍ଣ ମିଶନ, ବଙ୍ଗଳା ମହିଳା ଶିକ୍ଷା ସଂଘ, ବିଶ୍ୱଭାରତୀ, ଭାରତୀୟ ସମାଜ, ଭାରତ ସ୍ତ୍ରୀମଣ୍ଡଳ, ରାଧାକୃଷ୍ଣନ କମିଟି, ହରଡୋଗ କମିଟି ଆଦି ନାରୀଶିକ୍ଷାର ବ୍ୟାପକ ପ୍ରସାର ନିମିତ୍ତ ସାଧୁ ଉଦ୍ୟମ କରିଥିଲେ । ସ୍ୱାମୀ ବିବେକାନନ୍ଦ, ରବୀନ୍ଦ୍ରନାଥ ଟାଗୋର, କାର୍ଭେ ଆଦି ନାରୀଶିକ୍ଷାର ସମ୍ପୂର୍ଣ୍ଣ ପକ୍ଷପାତୀ ଥିଲେ । ଶିକ୍ଷିତା ନାରୀ ଅନ୍ୟାୟ ବିରୋଧରେ ସଂଗ୍ରାମ କରିବାର ନୈତିକ ବଳ ହାସଲ କରିଥାଏ । ସେଥିପାଇଁ ଇତିହାସ ପୃଷ୍ଠାରେ ଝାନ୍‌ସୀର ରାଣୀ ଲକ୍ଷ୍ମୀବାଈ, ଅହଲ୍ୟାବାଈ, ରାଣୀ ଶୁକଦେଈ ନିଜର ବୀରତ୍ୱ ଓ ସାହସିକତା ପାଇଁ ଚିରଦିନ ଅମର ହୋଇ ରହିବେ । ସ୍ୱାଧୀନତା ସଂଗ୍ରାମ ସମୟରେ ବହୁ ନାରୀନେତ୍ରୀ ନିଜର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି । ସେମାନଙ୍କ ମଧ୍ୟରୁ ଭାରତର ପୂର୍ବତନ ପ୍ରଧାନମନ୍ତ୍ରୀ ସ୍ୱର୍ଗତା ଇନ୍ଦିରା ଗାନ୍ଧି, ଶ୍ରୀମତୀ ସରଳା ଦେବୀ, ରମାଦେବୀ, ମାଳତୀ ଚୌଧୁରୀ, ଅନ୍ନପୂର୍ଣ୍ଣା ମହାରଣା ଆଦିଙ୍କ ନାମ ଉଲ୍ଲେଖଯୋଗ୍ୟ । ଆଜି ଭାରତୀୟ ନାରୀ ବିଭିନ୍ନ କ୍ଷେତ୍ରରେ ନିଜକୁ ପ୍ରତିଷ୍ଠିତ କରିପାରିଛନ୍ତି । ପ୍ରଶାସକ, ବିଜ୍ଞାନ, କାରିଗରୀ, ସାହିତ୍ୟ, କଳା, ସଂସ୍କୃତି ଆଦି ସବୁ ବିଭାଗରେ ସେମାନେ କୃତିତ୍ୱର ଅଧିକାରିଣୀ । ଭାରତୀୟ ମହିଳା କଳ୍ପନା ଚାଓ୍ୱଲା ମହାକାଶଚାରୀ ରୂପେ ଆମେରିକାର ମହାକାଶ ଯାନ କଲମ୍ବିଆରେ ଯାତ୍ରାକରି ସଫଳତାର ସହିତ ଫେରିଆସିଛନ୍ତି । ତେଣୁ ଆଜି ବିଶ୍ୱରେ ନାରୀ ତା'ର ଅତୀତର ଗୌରବମୟ ଦିନଗୁଡ଼ିକୁ ପୁଣି ଫେରାଇ ଆଣିବାରେ ସମର୍ଥ ହୋଇପାରିଛି । ସ୍ୱାଧୀନତା ପରବର୍ତ୍ତୀ କାଳରେ ନାରୀଶିକ୍ଷାର ବିକାଶ ନିମିତ୍ତ ଭାରତରେ ସ୍ୱତନ୍ତ୍ର ବାଳିକା ବିଦ୍ୟାଳୟ ଆଦି ସ୍ଥାପନ ହୋଇଛି ଏବଂ ନାରୀଜାତି ତା'ର ସଦ୍‌ବ୍ୟବହାର କରି ପ୍ରଗତି ପଥରେ ଆଗେଇ ଚାଲିଛନ୍ତି ।

ନାରୀ ଜନ୍ମଦାତ୍ରୀ, ସମାଜ ଓ ପରିବାରର ମେରୁଦଣ୍ଡ । ତେଣୁ ପରିବାରର ନାରୀ ଶିକ୍ଷିତା ହୋଇଥିଲେ ସମସ୍ତ ପରିବାରଟି ଶିକ୍ଷିତ ହୋଇଥାନ୍ତି । ତେଣୁ କୁହାଯାଇଥାଏ ଗୋଟିଏ ନାରୀକୁ

ଶିକ୍ଷାଦେବା ଅର୍ଥ ସମଗ୍ର ସମାଜକୁ ଶିକ୍ଷାଦେବା । ଶୈଶବରେ ପିଲାଟିର ସମସ୍ତ ଦାୟିତ୍ୱ ମାତା ଉପରେ ନ୍ୟସ୍ତ ଥାଏ । ଜନନୀର ଏହି ସମୟର ଶିକ୍ଷା ପିଲାଟିର ସମଗ୍ର ଭବିଷ୍ୟତକୁ ଗଢ଼ିବାରେ ସାହାଯ୍ୟ କରେ । ଛତ୍ରପତି ଶିବାଜୀ, ମହାତ୍ମାଗାନ୍ଧି, ମଦର ଟେରେସା ଆଦିଙ୍କ ଉପରେ ସେମାନଙ୍କ ମାତାମାନଙ୍କର କମ୍ ପ୍ରଭାବ ପଡ଼ି ନାହିଁ । କେବଳ ଶିକ୍ଷିତା ମାତା ହିଁ ନିଜର ସନ୍ତାନଙ୍କୁ ଉପଯୁକ୍ତ କରି ଗଢ଼ି ତୋଳିଥାନ୍ତି । ଅଧିକାଂଶ ପୁରୁଷ ଜୀବନରେ ନାରୀମାନଙ୍କର ପ୍ରଭାବ ସେମାନଙ୍କ ଜୀବନର ମୋଡ଼ ବଦଳାଇ ଦେଇଛି । ଯୋସେଫାଇନ୍, ନୁରଜାହାନ, ମମତାଜ ଆଦି ନାରୀମାନେ ଏହାର ପ୍ରକୃଷ୍ଟ ଉଦାହରଣ । ନାରୀ ମଧ ସଂହାରକର୍ତ୍ରୀ । ତେଣୁ ପ୍ରତ୍ୟେକ ନାରୀ ଶିକ୍ଷିତା ହେଲେ ସମାଜର ବିକାଶ ସମ୍ଭବ ହୋଇପାରିବ । ନାରୀ ସ୍ୱାବଲମ୍ବନଶୀଳତା ପାଇଁ ଶିକ୍ଷାର ଯେପରି ଆବଶ୍ୟକତା ରହିଛି, ପରିବାରକୁ ସୁସ୍ଥ, ସୁନ୍ଦର କରିବା ପାଇଁ ସେହିପରି ଶିକ୍ଷାର ଗୁରୁଦାୟିତ୍ୱ ରହିଛି । ଆର୍ଥନୀତିକ ଦିଗରୁ ମଧ ଶିକ୍ଷିତା ନାରୀ ପୁରୁଷକୁ ବହୁ ପ୍ରକାର ସାହାଯ୍ୟ କରିପାରେ । ସନ୍ତାନର ଉପଯୁକ୍ତ ଲାଳନପାଳନ, ଶରୀରର ଯତ୍ନନେବା ଆଦି କ୍ଷେତ୍ରରେ ଶିକ୍ଷାର ଆବଶ୍ୟକତା ଅନୁଭୂତ ହୋଇଥାଏ । ତେଣୁ ନାରୀଶିକ୍ଷା ଦ୍ୱାରା ସମଗ୍ର ସମାଜ ସୁସ୍ଥ ହୋଇଥାଏ । ସମ୍ପ୍ରତି ଆମ ସମାଜରେ ଯେଉଁ କୁସଂସ୍କାର ରହିଛି, ଯୌତୁକପ୍ରଥାର ଯେଉଁ ତାଡ଼ନା ଲକ୍ଷ୍ୟ କରାଯାଉଛି, ସେ କ୍ଷେତ୍ରରେ ନାରୀ ଅଧିକା ଶିକ୍ଷିତା ହୋଇଥିଲେ ନିଜ ଗୋଡ଼ରେ ଠିଆ ହେବାପାଇଁ ସମର୍ଥ ହେବା ସଙ୍ଗେ ସଙ୍ଗେ ସାମାଜିକ କୁସଂସ୍କାର ଓ ଉତ୍କଟ ଯୌତୁକପ୍ରଥା ବିରୋଧରେ ସଂଗ୍ରାମ କରିବା ପାଇଁ ନୈତିକ ସାହସ ଲାଭ କରିପାରିବ । ଆଜିକାଲି ଆମ ସମାଜର ବିବାହ ବଜାରରେ ଚାକିରି କରୁଥିବା ନାରୀର ଚାହିଦା ବହୁ ଅଧିକ । ଏହିସବୁ କାରଣରୁ ସମାଜରେ ନାରୀଶିକ୍ଷାର ଆବଶ୍ୟକତା ରହିଛି ।

ଉଚିତ ଶିକ୍ଷା ବୁଦ୍ଧିକୁ ଶାଣିତ କରେ ଓ ଦୃଷ୍ଟିକୁ ପ୍ରସାରିତ କରେ । ଶିକ୍ଷା କେବଳ ପୁରୁଷ ସମାଜ ପାଇଁ ଉଦ୍ଦିଷ୍ଟ ନୁହେଁ । ସମାଜ ଓ ପରିବାରର ଗୁଣାତ୍ମକ ବିକାଶରେ ନାରୀର ଭୂମିକା ପୁରୁଷଠାରୁ ଅଧିକ ହୋଇଥିବାରୁ ପ୍ରଥମେ ନାରୀଙ୍କୁ ହିଁ ଶିକ୍ଷିତା ହେବାକୁ ପଡ଼ିବ । ବହୁଦିନ ପର୍ଯ୍ୟନ୍ତ ଆମ ସମାଜରେ ନାରୀ ଶିକ୍ଷା ପ୍ରତି ଆଗ୍ରହ ପ୍ରକାଶ ପାଇ ନ ଥିଲା । ତେଣୁ ସମାଜରେ ନାରୀମାନଙ୍କର ଭୂମିକା ଥିଲା ଗୌଣ । ମାତ୍ର ନାରୀଶିକ୍ଷା ପରେ ସମାଜର ପ୍ରଗତିରେ ତା'ର ଭୂମିକା କିପରି ଗୁରୁତ୍ୱପୂର୍ଣ୍ଣ ତାହା ଏବେ ସମସ୍ତେ ହୃଦୟଙ୍ଗମ କରୁଛନ୍ତି । ଆଜି ପ୍ରତ୍ୟେକ କ୍ଷେତ୍ରରେ ନାରୀ ତା'ର ନିପୁଣତା ଓ ପାରଦର୍ଶିତା ପ୍ରତିପାଦନ କରିବାକୁ ସମର୍ଥ ହୋଇଛି । ପ୍ରତି କ୍ଷେତ୍ରରେ ସେ ଉଲ୍ଲେଖଯୋଗ୍ୟ ସଫଳତାର ଅଧିକାରିଣୀ । ଦେଶ ଓ ଜାତିର କଲ୍ୟାଣ କ୍ଷେତ୍ରରେ ନାରୀ ବର୍ତ୍ତମାନ ଯେପରି ଭୂମିକା ଗ୍ରହଣ କରିଛି, ଶିକ୍ଷା ପାଇନଥିଲେ ହୁଏତ ତା'ଠାରୁ ଏହା ଆଶା କରାଯାଇ ନ ଥାନ୍ତା । ତେଣୁ ପରିବାର, ସମାଜ, ରାଷ୍ଟ୍ର ସର୍ବୋପରି ବିଶ୍ୱର ବିକାଶ ଓ ପ୍ରଗତି ନିମିତ୍ତ ନାରୀଶିକ୍ଷାର ଅପରିହାର୍ଯ୍ୟତା ନିଶ୍ଚୟ ସ୍ୱୀକାର୍ଯ୍ୟ ।

●

# ନୈତିକ ଶିକ୍ଷା

**(ଉପକ୍ରମ, ନୈତିକ ଶିକ୍ଷା କ'ଣ ?, ନୈତିକ ଶିକ୍ଷାର ଆବଶ୍ୟକତା, ଶିକ୍ଷାର ବିଭିନ୍ନ ସୋପାନରେ ନୈତିକ ଶିକ୍ଷାର ସ୍ୱରୂପ, ଧର୍ମ ଓ ନୈତିକ ଶିକ୍ଷା, ଭାରତ ଓ ବିଶ୍ୱ ପରିପ୍ରେକ୍ଷୀରେ ନୈତିକ ଶିକ୍ଷା, ଉପସଂହାର)**

ଭାରତର ସାମ୍ପ୍ରତିକ ପରିସ୍ଥିତିରେ ନୈତିକ ଶିକ୍ଷାର ଗୁରୁତ୍ୱ ସମସ୍ତେ ଉପଲବ୍ଧି କରୁଛନ୍ତି । ମଣିଷ କେବଳ ନିଜ ପାଇଁ ବଞ୍ଚେ ନାହିଁ । ସେ ମଧ୍ୟ ବଞ୍ଚେ ଅନ୍ୟମାନଙ୍କ ପାଇଁ । ପ୍ରାଚୀନ କାଳରେ ଭାରତର ମୁନିଋଷିମାନେ ଯାଗଯଜ୍ଞ କରୁଥିଲେ ପୃଥିବୀର ମଙ୍ଗଳ ଉଦ୍ଦେଶ୍ୟରେ ।

ସର୍ବେ ଭବନ୍ତୁ ସୁଖିନଃ, ସର୍ବେ ସନ୍ତୁ ନିରାମୟାଃ ।
ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିତ୍ ଦୁଃଖ୍ ଭାଗ ଭବେତ୍ ।

ଏହାହିଁ ଥିଲା ଭାରତୀୟ ମୁନି ଋଷିଙ୍କର ସାଧନାର ଉଦ୍ଦେଶ୍ୟ । ବିଶ୍ୱଭ୍ରାତୃତ୍ୱ ଓ ବିଶ୍ୱପ୍ରେମ ପ୍ରଚାର ଉଦ୍ଦେଶ୍ୟରେ ସେମାନେ ଘୂରି ବୁଲୁଥିଲେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ । ତାଙ୍କର ଜୀବନବ୍ୟାପୀ ସାଧନା ଥିଲା ଜନମଙ୍ଗଳ ଉଦ୍ଦେଶ୍ୟରେ । ଜଗତକୁ ସେମାନେ ନୈତିକ ଶିକ୍ଷା ଦେଉଥିଲେ । ପରିବାର, ସମାଜ, ରାଷ୍ଟ୍ର ଏବଂ ବିଶ୍ୱ—କେବଳ ନୈତିକ ଶିକ୍ଷାଦ୍ୱାରା ହିଁ ଉନ୍ନତିର ଚରମସୀମାରେ ପହଞ୍ଚିପାରେ । ବ୍ୟକ୍ତିର ବ୍ୟକ୍ତିତ୍ୱ ନୈତିକ ଶିକ୍ଷା ଦ୍ୱାରା ହିଁ ସମୃଦ୍ଧ ହୋଇପାରେ । ବର୍ତ୍ତମାନ ଭାରତରେ ମୂଲ୍ୟବୋଧର ଯେଉଁ ସଙ୍କଟ ସୃଷ୍ଟି ହୋଇଛି, ତାହା କେବଳ ନୈତିକ ଶିକ୍ଷାର ଅଭାବ ଯୋଗୁଁ ହୋଇଛି । ଏହି ପରିପ୍ରେକ୍ଷୀରେ ଭାରତର ଅଧିକାଂଶ ଚିନ୍ତାଶୀଳ ବ୍ୟକ୍ତି ନୈତିକ ଶିକ୍ଷାର ଗୁରୁତ୍ୱ ଉପଲବ୍ଧି କରି ଏହାର ପ୍ରଚଳନ ନିମିତ୍ତ ଆଗ୍ରହ ପ୍ରକାଶ କରିଛନ୍ତି ।

ନୀତି ସମ୍ବନ୍ଧୀୟ ଶିକ୍ଷା ନୈତିକ ଶିକ୍ଷା । ୧୯୫୯ ମସିହାରେ ଧାର୍ମିକ ଓ ନୈତିକ ଶିକ୍ଷା ସମ୍ବନ୍ଧରେ ଗଢ଼ାଯାଇଥିବା କମିଟି ନୈତିକ ମୂଲ୍ୟ ସମ୍ପର୍କରେ ବ୍ୟାଖ୍ୟା କରି କହିଛନ୍ତି "Anything that helps us to behave properly towards others is of moral value." ନିଜେ ଯେପରି ଅନ୍ୟକୁ ଠିକ୍ ସେହିପରି ବିଚାର କରିବା ହିଁ ନୈତିକତା । ଏହା ମଣିଷର ଆଚରଣକୁ ପରିମାର୍ଜନ କରିବା ସଙ୍ଗେ ସଙ୍ଗେ, ସମାଜ ଜୀବନରେ ତାହାକୁ ଉଚିତ ମାର୍ଗରେ ବ୍ୟବହାର କରିବାକୁ ପରାମର୍ଶ ଦେଇଥାଏ । ଆଜି ସମାଜରେ ନୀତି ବା ନୈତିକତାର ସ୍ଖଳନ ଘଟିଛି । ସାମୂହିକ ସ୍ୱାର୍ଥ ଅପେକ୍ଷା ବ୍ୟକ୍ତିଗତ ସ୍ୱାର୍ଥ ଅଧିକ ଗୁରୁତ୍ୱ ଲାଭ ପାଇଛି । ଜାତୀୟ ସ୍ତରରେ ମଧ୍ୟ ଅନୁରୂପ ଅବସ୍ଥା ସୃଷ୍ଟି ହୋଇଛି । ଏହାର ପ୍ରଥମ କାରଣ ହେଉଛି ଆମେ ଆମର ପ୍ରାଚୀନ ଆଦର୍ଶ, ନୀତିକୁ ସମ୍ପୂର୍ଣ୍ଣ ବିସ୍ମୃତ ହୋଇଛୁ । ପ୍ରାଥମିକ ଶିକ୍ଷାଠାରୁ ମହାବିଦ୍ୟାଳୟ ଶିକ୍ଷା ପର୍ଯ୍ୟନ୍ତ—ସବୁ ସ୍ତରରେ ନୈତିକ ଶିକ୍ଷାର ଆବଶ୍ୟକତା ରହିଛି । ଆଜି ଯୁବସମ୍ପ୍ରଦାୟ ମଧ୍ୟରେ ଯେଉଁ ଉଚ୍ଛୃଙ୍ଖଳତା ଦେଖାଯାଉଛି, ତାହା କେବଳ ନୈତିକ ଶିକ୍ଷାର ଅଭାବ ଯୋଗୁ ହିଁ ଘଟିଛି । ନୈତିକ ଶିକ୍ଷା ମଣିଷକୁ ମଣିଷ ରୂପେ ଦେଖିବାକୁ ପ୍ରେରଣା ଦିଏ । ସମାଜ ତଥା ରାଷ୍ଟ୍ରୀୟ ଜୀବନକୁ ଉଚିତ ମାର୍ଗରେ

ଗତି କରିବାରେ ସହାୟତା କରେ । ନୈତିକ ବଳରେ ବଳୀୟାନ ବ୍ୟକ୍ତି କାହାରିକୁ ଭୟ କରେ ନାହିଁ । ଅନ୍ୟାୟ, ଦୁର୍ନୀତି ଓ ଅପରାଧ ବିରୋଧରେ ସଂଗ୍ରାମ କରିବାକୁ ଏହା ପ୍ରେରିତ କରେ । ସମାଜକୁ ସୁସ୍ଥ, ସୁନ୍ଦର ରଖିବାକୁ ଯେଉଁ ଶିକ୍ଷା ମଣିଷର ନୀତିବୋଧକୁ ଜାଗ୍ରତ କରେ, ତାହାହିଁ ନୈତିକ ଶିକ୍ଷା ।

ବ୍ୟକ୍ତିର ସାମଗ୍ରିକ ବିକାଶରେ ସହାୟତା କରିବା ଶିକ୍ଷାର ଉଦ୍ଦେଶ୍ୟ । ବ୍ୟକ୍ତିର ବ୍ୟକ୍ତିତ୍ୱକୁ ପରିମାର୍ଜନା କରିବା ନୈତିକ ଶିକ୍ଷାର ଉଦ୍ଦେଶ୍ୟ । ଜୀବନ ସେତିକିବେଳେ ସାର୍ଥକ ହୁଏ, ଯେତେବେଳେ ସେଥିରେ ମାନବିକ ଗୁଣଗୁଡ଼ିକର ଅପୂର୍ବ ସମାବେଶ ଘଟେ । ମାନବିକ ଗୁଣ କହିଲେ ଦୟା, କ୍ଷମା, ସହୃଦୟତା, ସହଯୋଗ, ସତ୍ୟ, ନିଷ୍ଠା, ପ୍ରେମ ଇତ୍ୟାଦିକୁ ବୁଝାଇଥାଏ । ଯେତେବେଳେ ମଣିଷ ମନରୁ ଏହି ଗୁଣଗୁଡ଼ିକର ବିଲୋପ ଘଟେ, ସେତେବେଳେ ସମାଜରେ ଦେଖାଯାଏ ନୈତିକ ସ୍ଖଳନ । ହିଂସା, ଦ୍ୱେଷ, ପରଶ୍ରୀକାତରତା, ସ୍ୱାର୍ଥପରାୟଣତା ଏବଂ ଅହଂଭାବର ବୃଦ୍ଧି ଯୋଗୁଁ ମାନବିକ ମୂଲ୍ୟବୋଧରେ ଆଜି ସଙ୍କଟ ଦେଖାଯାଉଛି । ହିଂସା, ଦ୍ୱେଷପରି କୁଗୁଣଗୁଡ଼ିକର ବିଲୋପ ଘଟାଇ ଦୟା, ସ୍ନେହ, ପ୍ରେମ ପରି ସୁଗୁଣଗୁଡ଼ିକର ବିକାଶ ଘଟାଇବା ନୈତିକ ଶିକ୍ଷାର ଦାୟିତ୍ୱ । ଚରିତ୍ରର ସଂସ୍କାର ବା ଚରିତ୍ର ଗଠନ ନୈତିକ ଶିକ୍ଷାର ଅନ୍ୟତମ ଦାୟିତ୍ୱ । ବ୍ୟକ୍ତିର ଚାରିତ୍ରିକ ସ୍ଖଳନ ସମାଜ ଜୀବନକୁ କଳୁଷିତ କରିଥାଏ । ସେଥିପାଇଁ କୁହାଯାଇଥାଏ—

Wealth is lost, Nothing is lost.
Health is lost, Something is lost.
Character is lost, Everything is lost.

ନୈତିକତା ସହିତ ଚରିତ୍ରବତ୍ତାର ସମ୍ପର୍କ ଅତୀବ ନିଗୂଢ଼ । ଯିଏ ମାନବିକତାକୁ ସମ୍ମାନ ଦିଏ; ଅନ୍ୟର ସୁଖ ଓ ଶାନ୍ତି ପ୍ରତି ସହୃଦୟତା ପ୍ରକାଶ କରେ, ନୈତିକ ଶିକ୍ଷା ସେମାନଙ୍କ ଚରିତ୍ରକୁ ଅଧିକ ଆକର୍ଷଣୀୟ କରିଥାଏ । ମଣିଷକୁ ଭବିଷ୍ୟତର ସୁନାଗରିକରେ ପରିଣତ କରିବାକୁ ହେଲେ ପିଲାଟି ଦିନରୁ ତାକୁ ନୈତିକ ଶିକ୍ଷା ଦେବାକୁ ପଡ଼ିବ । ନୈତିକ ଶିକ୍ଷା ହିଁ ବିଶ୍ୱୈକପ୍ରାଣତା ସୃଷ୍ଟି କରିବା କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ଡଃ ରାଧାକ୍ରିଷ୍ଣନ୍ ସେଥିପାଇଁ ମତବ୍ୟକ୍ତ କରି କହିଥିଲେ—"The troubles in the whole world including India are due to the fact that education has become a mere intellectual exercise and not the acquisition of moral and spiritual values." ଯେପରି ଉଚିତ ସମୟରେ ତେଲର ପ୍ରୟୋଗଦ୍ୱାରା ମେସିନ୍‌ର କାର୍ଯ୍ୟଦକ୍ଷତା ବୃଦ୍ଧି ପାଇଥାଏ, ସେହିପରି ଯଥାସମୟରେ ନୈତିକ ଶିକ୍ଷାଦ୍ୱାରା ମଣିଷର ଚରିତ୍ର ମାର୍ଜନା ଏବଂ ସାମାଜିକ ଶୃଙ୍ଖଳତା ଦେଖା ଦେଇଥାଏ । ଆଜିର ଶିଶୁ ଆସନ୍ତାକାଲିର ନାଗରିକ । ଆଜିର ଯୁବକ ଆସନ୍ତାକାଲିର ସମାଜ ସଙ୍ଗଠକ । ସେମାନଙ୍କୁ ସମାଜ ଯେପରି ଗଢ଼ିବ, ସମାଜ ଜୀବନରେ ସେମାନେ ସେହିପରି କାର୍ଯ୍ୟ କରିବେ । ତେଣୁ ନୈତିକ ଶିକ୍ଷାଦ୍ୱାରା ସେମାନଙ୍କର

ଚରିତ୍ରକୁ ଶୋଧନ କରାଯାଇ ପାରିଲେ, ଅନ୍ୟାୟ ଓ ଅନୀତି ବିରୋଧରେ ସଂଗ୍ରାମ କରିବାକୁ ପ୍ରଥମରୁ ସେମାନଙ୍କୁ ପ୍ରେରଣା ଦିଆଯାଇପାରିଲେ, ସମାଜ-ଜୀବନ ବହୁପରିମାଣରେ ସୁସ୍ଥ ଓ ସୁନ୍ଦର ହୋଇ ଉଠିବ । ସେଥିପାଇଁ ଆଜିର ଏହି ଅସହାୟ, ଅବିଶ୍ୱାସ ଓ ସ୍ୱାର୍ଥପର ପୃଥିବୀକୁ ସଙ୍କଟରୁ ରକ୍ଷା କରିବାକୁ ହେଲେ ସବୁ ସ୍ତରରେ ନୈତିକ ଶିକ୍ଷା ଉପରେ ଗୁରୁତ୍ୱ ପ୍ରଦାନ କରାଯିବା ଆବଶ୍ୟକ ।

ବିଭିନ୍ନ ଶିକ୍ଷା କମିଶନ ପ୍ରାଥମିକ ଶିକ୍ଷାଠାରୁ ବିଶ୍ୱବିଦ୍ୟାଳୟ ଶିକ୍ଷା ପର୍ଯ୍ୟନ୍ତ ନୈତିକ ଶିକ୍ଷା ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ସେମାନଙ୍କ ମତରେ ପିଲାଦିନଠାରୁ ନୈତିକ ଶିକ୍ଷା ଲାଭ କରିଥିବା ଛାତ୍ରଟି ଭବିଷ୍ୟତରେ ଉତ୍ତମ ନାଗରିକ ହେବାର ସମସ୍ତ ଗୌରବ ଲାଭ କରିଥାଏ । ସୁନ୍ଦର ଆଚରଣ ନୈତିକ ଶିକ୍ଷାର ଏକ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ । ଜୀବନର ପ୍ରଥମ ଅନୁଭୂତିରୁ ପିଲାଟି ଏହା ତା'ର ପରିବେଶ ତଥା ଶିକ୍ଷାରୁ ଲାଭ କରିଥାଏ । ପରିବାର ଓ ସାମାଜିକ ପରିବେଶର ସ୍ୱଚ୍ଛତା ଏବଂ ଆଚରଣରୁ ଅନୁକରଣ ମାଧ୍ୟମରେ ଶିଶୁଟି ଶିକ୍ଷାଲାଭ କରେ ନୈତିକତା । ଅନ୍ୟମାନଙ୍କ ସହିତ କିପରି ଆଚରଣ କରିବାକୁ ହୁଏ ତାହା ସେ ପ୍ରଥମେ ପରିବାର, ତତ୍ପରେ ସମାଜରୁ ଶିକ୍ଷା କରିଥାଏ । ସେଥିପାଇଁ ପିତାମାତା ତଥା ଶିକ୍ଷକ ନିଜର ଆଚରଣକୁ ସ୍ୱଚ୍ଛ ତଥା ସଂଯମ କରିବା ଆବଶ୍ୟକ । ପ୍ରାଥମିକ ଶିକ୍ଷାରେ ପିଲାଟିର ରୁଚିବୋଧ ଉପରେ ଶିକ୍ଷକ ଗୁରୁତ୍ୱ ପ୍ରଦାନ କରିବା ଉଚିତ । ଗୀତ, ଗଳ୍ପ ଏବଂ ସଙ୍ଗୀତ ମାଧ୍ୟମରେ ପ୍ରାଥମିକ ଶିକ୍ଷାଲାଭ ସମୟରେ ଶିକ୍ଷକ ସେମାନଙ୍କୁ ନୈତିକ ଆଚରଣ ସମ୍ବନ୍ଧରେ ଶିକ୍ଷାଦାନ ଦେବା ବାଞ୍ଛନୀୟ । ଏହି ସମୟରେ ପାଠ୍ୟକ୍ରମ ଏବଂ ଶିକ୍ଷାଦାନ ପଦ୍ଧତି ସହଜ ଓ ସରଳ ହେଲେ ପିଲାଟି ବହୁ ବିଷୟରେ ଉତ୍ତମ ଶିକ୍ଷାଲାଭ କରିବାକୁ ସମର୍ଥ ହୋଇଥାଏ । ରାମାୟଣ, ମହାଭାରତ ଆଦିରୁ ସୁନ୍ଦର ଉପାଖ୍ୟାନ କହି ପିଲାଟି ମନରେ ସାମାଜିକ ସଚେତନତା ସୃଷ୍ଟି କରାଯାଇପାରେ । ରାମଚନ୍ଦ୍ରଙ୍କ ଜୀବନୀ ଆଲୋଚନା ସମୟରେ ତାଙ୍କର ଭ୍ରାତୃପ୍ରୀତି, ପିତାଙ୍କ ପ୍ରତି କର୍ତ୍ତବ୍ୟ ଓ ଶାସକ ଭାବରେ ତାଙ୍କର ଆଦର୍ଶ ସମ୍ପର୍କରେ ପିଲାମାନଙ୍କୁ କହିଲେ ତା'ର ପ୍ରଭାବ ପରବର୍ତ୍ତୀ ଜୀବନରେ ତାକୁ ଉତ୍ତମ ନାଗରିକ ହେବାକୁ ପ୍ରେରଣା ଦେଇପାରିବ । ଏକଲବ୍ୟ, ଶ୍ରବଣକୁମାର, ପ୍ରହ୍ଲାଦ, ଧ୍ରୁବ ଆଦିଙ୍କ ଚରିତ୍ର ପିଲାଟିର ଚରିତ୍ର ଗଠନରେ ବହୁପରିମାଣରେ ସହାୟତା କରିପାରିବ । ଏତଦ୍‌ବ୍ୟତୀତ ରାମାୟଣ, ମହାଭାରତ, ବିଭିନ୍ନ ପୁରାଣ, ପଞ୍ଚତନ୍ତ୍ର, ଜାତକକଥା ଆଦିରୁ ଶିକ୍ଷଣୀୟ ବିଷୟ ଗଳ୍ପ ମାଧ୍ୟମରେ ପ୍ରାଥମିକ ଶିକ୍ଷାରେ ପାଠ୍ୟକ୍ରମ ଭାବେ ଗୃହୀତ ହେଲେ ପିଲାଟିର ଚରିତ୍ର ଗଠନ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିବ । ଏହାଛଡ଼ା ମଧ୍ୟଯୁଗୀୟ ଭାରତ ଇତିହାସର ବୀରମାନଙ୍କର କାହାଣୀ ଛାତ୍ରମାନଙ୍କ ଜୀବନକୁ ଶୃଙ୍ଖଳିତ ଓ ସମାଜ ଉପଯୋଗୀ କରିପାରିବ । ମାଧ୍ୟମିକ ସ୍ତରରେ ଛାତ୍ରଟିର ମସ୍ତିଷ୍କ ବହୁପରିମାଣରେ ପରିପକ୍ୱ ହୋଇଯାଇଥାଏ । ଏହି କ୍ଷେତ୍ରରେ ସାମାଜିକ ଜୀବନ ସହିତ ତାଁକୁ ଜଡ଼ିତ କରି ତା'ର ଚରିତ୍ର ଗଠନ ପ୍ରତି ଦୃଷ୍ଟି ଦେବା ବିଧେୟ । ଆବଶ୍ୟକ ଅନୁଯାୟୀ ଚରିତ୍ର ଗଠନ ନିମିତ୍ତ ଯେଉଁ ଗଳ୍ପଗୁଡ଼ିକର ଉପାଦେୟତା ରହିଛି, ତାହା ମାଧ୍ୟମିକ ଶିକ୍ଷାର ପାଠ୍ୟକ୍ରମରେ ଗ୍ରହଣ କରିବା ଆବଶ୍ୟକ । ଏନ୍.ସି.ସି.,

ସ୍କାଉଟ୍ ଆଦି ଦ୍ୱାରା ସେମାନଙ୍କ ଜୀବନକୁ ଶୃଙ୍ଖଳିତ ଏବଂ ଚରିତ୍ରକୁ ସଂଯତ କରାଯାଇପାରିବ । ସେମାନେ ସମାଜର ଏକ ଅବିଚ୍ଛେଦ୍ୟ ଅଙ୍ଗ, ତାହା ଏହି ସମୟକୁ ସେମାନେ ଶିକ୍ଷା କରିବା ଉଚିତ । ସେମାନଙ୍କର ଅନୁଭୂତି ଓ ଭାବପ୍ରବଣତା ପ୍ରତି ମଧ ସମ୍ମାନ ପ୍ରଦର୍ଶନ କରିବା ଆବଶ୍ୟକ । ମହାବିଦ୍ୟାଳୟ ସ୍ତରରେ ପିଲାମାନେ ନିଜର ଭବିଷ୍ୟତ ଗଠନ ପାଇଁ ସୁଯୋଗ ଲାଭ କରିଥାନ୍ତି । ଏ କ୍ଷେତ୍ରରେ ନୈତିକ ଶିକ୍ଷା ଅଧିକ ପ୍ରସାରିତ ହେବା ବାଞ୍ଛନୀୟ । ସମଗ୍ର ବିଶ୍ୱ ଏକ ଏବଂ ଦେଶ, ଜାତି ପାଇଁ ସେମାନଙ୍କର କର୍ତ୍ତବ୍ୟବୋଧ ରହିଛି, ଏହି ପ୍ରକାର ଚିନ୍ତାଧାରା ନୈତିକ ଶିକ୍ଷା ମାଧମରେ ସେମାନଙ୍କର ହୃଦୟରେ ସୃଷ୍ଟି କରିବାର ଆବଶ୍ୟକତା ରହିଛି । ଶିକ୍ଷକର ଚରିତ୍ରବତ୍ତା ମହାବିଦ୍ୟାଳୟ ସ୍ତରରେ ଛାତ୍ରଛାତ୍ରୀଙ୍କ ଉପରେ ଗଭୀର ପ୍ରଭାବ ପକାଇଥାଏ । ତେଣୁ ଶିକ୍ଷକ ମଧ ଉତ୍ତମ ଚରିତ୍ର ସମ୍ପନ୍ନ ତଥା ସାଧୁସ୍ୱଭାବର ହେବା ଆବଶ୍ୟକ । ଜାତୀୟ ସେବା ସଂସ୍ଥା ସହିତ ଛାତ୍ରସମାଜକୁ ପ୍ରତ୍ୟକ୍ଷ ଭାବରେ ଜଡ଼ିତକରି ତାଙ୍କ ଚରିତ୍ରଗଠନ ପାଇଁ ଦୃଷ୍ଟି ଦେଲେ ସାମାଜିକ ଜୀବନରେ ସେମାନେ ଅଶେଷ ମଙ୍ଗଳ ସାଧନ କରିପାରିବେ । ତେଣୁ ପ୍ରାଥମିକ ଶିକ୍ଷାଠାରୁ ବିଶ୍ୱବିଦ୍ୟାଳୟ ଶିକ୍ଷା ପର୍ଯ୍ୟନ୍ତ ନୈତିକ ଶିକ୍ଷାର ଆବଶ୍ୟକତା ରହିଛି । ଶିକ୍ଷାୟତନ ବାହାରେ ମଧ ଏପ୍ରକାର ଶିକ୍ଷା ଦେବାର ସୁଯୋଗ ସରକାର ସୃଷ୍ଟିକରିପାରିଲେ ତାହା ଅଧିକ ଉପାଦେୟ ହେବା ସଙ୍ଗେ ସଙ୍ଗେ ସମାଜଜୀବନର ଅଶେଷ ମଙ୍ଗଳ ସାଧନ କରିପାରନ୍ତା ।

ଧର୍ମ ଏବଂ ନୈତିକ ଶିକ୍ଷାର ଉଦ୍ଦେଶ୍ୟ ଏକ । ଧର୍ମର ଅର୍ଥ, ଯାହା ମଣିଷକୁ ମଣିଷ ସହିତ ଗୋଟିଏ ଭ୍ରାତୃତ୍ୱର ବନ୍ଧନରେ ବନ୍ଦୀ କରିଥାଏ । ନୈତିକ ଶିକ୍ଷାର ଉଦ୍ଦେଶ୍ୟ ମଧ ସମଗ୍ର ମାନବସମାଜରେ ଭ୍ରାତୃଭାବର ପ୍ରଚାର କରାଇବା । ମଣିଷର ସାମଗ୍ରିକ ବିକାଶ ପାଇଁ ଏହାର ପ୍ରୟୋଜନ ରହିଛି । ସେଥିପାଇଁ ପାଶ୍ଚାତ୍ୟ ପଣ୍ଡିତ ରସ୍କି ଧର୍ମ ଶିକ୍ଷାର ଉପାଦେୟତା ସମ୍ବନ୍ଧରେ ସୂଚନା ଦେଇ କହିଛନ୍ତି, "It is through religious that the feet of youth can be set on the road to the absolute values, truth, beauty and goodness." ନୀତି ଓ ନିୟମକୁ ସମ୍ମାନ ପ୍ରଦର୍ଶନ କରିବା, ପର ଦୁଃଖରେ ସହଭାଗୀ ହେବା, ସାମାଜିକ ବିକାଶ ପାଇଁ କାୟ ମନବାକ୍ୟରେ ଚେଷ୍ଟା କରିବା ସର୍ବୋପରି ଏକ ବିଶ୍ୱସନୀୟ ପୃଥିବୀ ସୃଷ୍ଟି କରିବା ଧର୍ମଶିକ୍ଷାର ମୂଳଲକ୍ଷ୍ୟ । ନୈତିକ ଶିକ୍ଷାରେ ମଧ ଉପରୋକ୍ତ ବିଷୟଗୁଡ଼ିକ ଉପରେ ଗୁରୁତ୍ୱ ପ୍ରଦାନ କରାଯାଉଥିବାରୁ ଧର୍ମ ଏବଂ ନୈତିକ ଶିକ୍ଷାର ଉଦ୍ଦେଶ୍ୟ ଏକ ଓ ଅଭିନ୍ନ ବୋଲି ପ୍ରତୀୟମାନ ହୋଇଥାଏ । ଏହି ଦୃଷ୍ଟିରୁ ଶିକ୍ଷା ପାଠ୍ୟକ୍ରମରେ ଉଭୟ ଶିକ୍ଷା ପ୍ରତି ଗୁରୁତ୍ୱ ଆରୋପ କରାଯିବା ଆବଶ୍ୟକ ।

ଆଜି ସମଗ୍ର ବିଶ୍ୱରେ ଏକ ଅଶାନ୍ତ ବାତାବରଣ ସୃଷ୍ଟି ହୋଇଛି । ନୈତିକ ମୂଲ୍ୟବୋଧରେ ସଙ୍କଟ, ପରସ୍ପର ପ୍ରତି ଅବିଶ୍ୱାସଭାବ, ଅସହାୟତା ଓ ଜିଘାଂସା ମଣିଷ ସମାଜକୁ ରସାତଳଗାମୀ କରିବାକୁ ବସିଛି । ସେଥିପାଇଁ ରାଷ୍ଟ୍ର ରାଷ୍ଟ୍ର ମଧରେ ମାରାତ୍ମକ ଅସ୍ତ୍ର ପ୍ରତିଯୋଗିତା ବୃଦ୍ଧି ପାଇଛି । ଅଣୁ ଅସ୍ତ୍ର ଓ ପରମାଣୁ ବୋମା ନିର୍ମାଣ କରି ମଣିଷ ଆଜି ମଣିଷ ସମାଜକୁ ଧ୍ୱଂସ କରିବାକୁ

ବସିଛି । ପରସ୍ପର ପ୍ରତି ଅସୂୟାଭାବ ମଣିଷ ମନରୁ ପୋଛିଦେଇଛି ସ୍ନେହ, ପ୍ରେମ, ସଦିଚ୍ଛା ଓ ସହଯୋଗ ପରି ଉତ୍ତମ ଗୁଣଗୁଡ଼ିକୁ । ଏହି ପରିପ୍ରେକ୍ଷୀରେ ସବୁ ସ୍ତରରେ ନୈତିକ ଶିକ୍ଷା ଦିଆଯାଇ ମଣିଷ ମନକୁ ପୁଣି ଶୃଙ୍ଖଳିତ ଓ ସଂଯତ କରିବାର ଆବଶ୍ୟକତା ରହିଛି । ଭଲପାଇବାର ମନ୍ତ୍ରରେ ସମଗ୍ର ବିଶ୍ୱବାସୀଙ୍କୁ ପୁଣି ଏକତ୍ର କରାଇବା କ୍ଷେତ୍ରରେ ନୈତିକ ଶିକ୍ଷାର ଗୁରୁତ୍ୱ ସର୍ବାଧିକ । ଭାରତବର୍ଷର ସାମାଜିକ ଜୀବନରେ ମଧ୍ୟ ସଙ୍କଟ ଦେଖାଦେଇଛି । ଜାତି ଜାତି ମଧ୍ୟରେ, ଅଞ୍ଚଳ ଅଞ୍ଚଳ ମଧ୍ୟରେ, ଭାଷା ଭାଷା ମଧ୍ୟରେ ବିଭେଦ ସୃଷ୍ଟି ହୋଇଛି । ଭାରତର ପ୍ରାଚୀନ ଆଦର୍ଶ ଧୂଳିସାତ୍ ହୋଇଛି । ବ୍ୟକ୍ତିଗତ ସ୍ୱାର୍ଥ ମଣିଷକୁ ପଶୁ କରିଦେଇଛି । ତେଣୁ ଭାରତୀୟଙ୍କ ମଧ୍ୟରେ ପୁଣି ସହୃଦୟତାର ବାତାବରଣ ସୃଷ୍ଟି କରିବାକୁ ହେଲେ ନୈତିକ ଶିକ୍ଷା ଉପରେ ଗୁରୁତ୍ୱ ଦେବାକୁ ପଡ଼ିବ । ସମଗ୍ର ବିଶ୍ୱ ଏବଂ ଭାରତର ଯେଉଁ ନୈତିକ ସ୍ଖଳନ ଦେଖାଦେଇଛି, ତାହା କେବଳ ନୈତିକ ଶିକ୍ଷାଦ୍ୱାରା ହିଁ ଦୂର କରାଯାଇପାରିବ ।

ପ୍ରାଚୀନ ଭାରତର ଆଦର୍ଶଠାରୁ ଦୂରେଇ ଯାଇଥିବାରୁ ଆଜି ଆମେ ନୈତିକ ସଙ୍କଟର ସମ୍ମୁଖୀନ । ଜୀବନ ପ୍ରତି ଏକ ନେତିବାଚକ ଦୃଷ୍ଟି ନେଇ ମାନବ ସମାଜ ବିଚଳିତ । ଜୀବନର ମୂଲ୍ୟବୋଧ କାଚଘର ପରି ଭୁଷୁଡ଼ି ପଡୁଛି । ଏହିପରି ଏକ ଅସହାୟ ସ୍ଥିତିରୁ ମାନବ ସମାଜକୁ ରକ୍ଷା କରିବାକୁ ହେଲେ ନୈତିକ ଶିକ୍ଷାର ସହାୟତା ନେବାକୁ ପଡ଼ିବ । ଛୋଟପିଲାଠାରୁ ବୃଦ୍ଧ ପର୍ଯ୍ୟନ୍ତ ସମସ୍ତଙ୍କ ପାଇଁ ଏହି ଶିକ୍ଷାର ଆବଶ୍ୟକତା ରହିଛି ଜୀବନ ପ୍ରତି ବିମୁଖ ମଣିଷ ପ୍ରାଣରେ ଏହା ଶାନ୍ତିର ପ୍ରଲେପ ବୋଳିଥାଏ । ଏହା ଶିକ୍ଷାଦିଏ ମଣିଷକୁ ମଣିଷପରି ଭଲପାଇବାକୁ । ବିଶ୍ୱ ଭ୍ରାତୃତ୍ୱ ସୃଷ୍ଟିରେ ଏହାର ଅବଦାନ ଚିରସ୍ମରଣୀୟ । ତେଣୁ ସମଗ୍ର ବିଶ୍ୱକୁ ଆଜି ଗୋଟିଏ ବନ୍ଧନରେ ବନ୍ଦୀ କରିବାକୁ ହେଲେ ଏବଂ ମାନବିକତାବାଦ ପ୍ରତି ମଣିଷ ହୃଦୟରେ ଅନୁକମ୍ପା ଜାତ କରିବାକୁ ହେଲେ, ସବୁ ସ୍ତରରେ ନୈତିକ ଶିକ୍ଷା ଦେବାର ଆବଶ୍ୟକତା ରହିଛି ।

●

## ସହଶିକ୍ଷା

**(ଉପକ୍ରମ, ଭାରତରେ ସହଶିକ୍ଷାର ପରମ୍ପରା, ଆଧୁନିକ ସହଶିକ୍ଷା, ସହଶିକ୍ଷାର ଆଲୋକିତ ଦିଗ, ସହଶିକ୍ଷାର ବିପରୀତ ଦିଗ, ସହଶିକ୍ଷା ସମ୍ପର୍କୀୟ ଦୃଷ୍ଟିଭଙ୍ଗୀର ବିଚାର, ଉପସଂହାର)**

ବ୍ୟକ୍ତିତ୍ୱର ବିକାଶ ଶିକ୍ଷାର ଉଦ୍ଦେଶ୍ୟ । ଗାନ୍ଧିଜୀଙ୍କ ଭାଷାରେ "All round development of mind........" ସେଥିପାଇଁ ଶିକ୍ଷା କାହାର ବ୍ୟକ୍ତିଗତ ଅଧିକାର ନୁହେଁ । ପ୍ରତ୍ୟେକଙ୍କୁ ଉପଯୁକ୍ତ ଶିକ୍ଷା ପ୍ରଦାନ କରି ଦେଶର ଯଥାର୍ଥ ନାଗରିକ କରି ଗଢ଼ି ତୋଳିବା ରାଷ୍ଟ୍ରର କର୍ତ୍ତବ୍ୟ । ନାରୀ ଏବଂ ପୁରୁଷ ଉଭୟ ଶିକ୍ଷିତ ହେଲେ ପରିବାର ତଥା ଦେଶର ପ୍ରଗତି ହୋଇଥାଏ ।

ସମାଜ ଗଠନରେ ଉଭୟଙ୍କର ସମାନ ଭୂମିକା ରହିଥିବାରୁ ସୁସ୍ଥ ସମାଜ ପାଇଁ ଉଭୟେ ଶିକ୍ଷିତ ହେବା ଆବଶ୍ୟକ । ପୁରୁଷ ପ୍ରଧାନ ସମାଜରେ ନାରୀମାନଙ୍କର ଗୌଣ ଭୂମିକା ଯୋଗୁଁ ସମାଜ-ଜୀବନ କଳୁଷିତ ହୋଇ ଉଠୁଛି । ଆଧୁନିକ ଯୁଗରେ ଏହି ଦୃଷ୍ଟିଭଙ୍ଗୀର ବିଶେଷ କିଛି ପରିବର୍ତ୍ତନ ହୋଇଛି ବୋଲି ମନେହୁଏ ନାହିଁ । ସାମ୍ପ୍ରତିକ ପରିପ୍ରେକ୍ଷୀରେ ସହଶିକ୍ଷାର ଉପଯୋଗିତା ସମ୍ବନ୍ଧରେ ଭିନ୍ନ ଭିନ୍ନ ମତ ପରିଲକ୍ଷିତ ହୋଇଥାଏ । ବହୁ ସମୟରେ ଭୋଗବାଦୀ ଦୃଷ୍ଟିଭଙ୍ଗୀରୁ ନାରୀର ସଂଜ୍ଞା ନିରୂପିତ ହୋଇଥାଏ । ଏହା ପୁରୁଷର ସଂକୀର୍ଣ୍ଣ ଦୃଷ୍ଟିଭଙ୍ଗୀର ପରିଚୟ । ପୁରୁଷ ପରି ନାରୀ ମଧ୍ୟ ପ୍ରତ୍ୟେକ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇପାରେ । ଆଧୁନିକ ଯୁଗରେ ଆଜି ନାରୀ ଯୁଦ୍ଧକ୍ଷେତ୍ର, ଅନ୍ତରୀକ୍ଷକୁ ଗମନ କରି ଦୁଃସାଧ କାର୍ଯ୍ୟକୁ ସଫଳତାର ସହ ସାଧନ କରିପାରିଲାଣି । ତେଣୁ ନାରୀ ପକ୍ଷେ ବର୍ତ୍ତମାନ ଦୁଃସାଧ ବୋଲି କିଛି ନାହିଁ । ଯାହା ଅଭାବ, ତାହା କେବଳ ସୁଯୋଗ ଓ ଦୃଷ୍ଟିଭଙ୍ଗୀର । ଏହି ଦୃଷ୍ଟିରୁ ସହଶିକ୍ଷା ସମ୍ପର୍କରେ ଆଲୋଚନା କରାଯାଇପାରେ । ସାଧାରଣ ଭାବରେ ସହଶିକ୍ଷା କହିଲେ ଗୋଟିଏ ଶିକ୍ଷାନୁଷ୍ଠାନରେ ଛାତ୍ର ସହିତ ଛାତ୍ରୀମାନଙ୍କର ଏକତ୍ର ଅଧ୍ୟୟନକୁ ବୁଝାଏ । ମାତ୍ର ବର୍ତ୍ତମାନ ଭାରତର ଅଧିକାଂଶ ବିଦ୍ୟାଳୟରେ ବାଳକମାନଙ୍କ ସହିତ ବାଳିକା ଏକତ୍ର ଅଧ୍ୟୟନ କରୁଥିଲେହେଁ, ତାହା ପ୍ରକୃତ ଅର୍ଥରେ ସହଶିକ୍ଷା ନୁହେଁ । ବିଦ୍ୟାଳୟରେ ବାଳକଙ୍କ ସହିତ ବାଳିକାମାନଙ୍କର କୌଣସି ମତ ବିନିମୟ ବା ପାଠ ଆଲୋଚନା-ପର୍ଯ୍ୟାଲୋଚନା ହୋଇନଥାଏ । ସତେଯେପରି ଏହି ଦୁଇଟି ଗୋଷ୍ଠୀ ଦୁଇଟି ସ୍ୱତନ୍ତ୍ର ପଥର ପଥିକ । ତାହା ସହିତ କାହାର ସମ୍ପର୍କ ବା ସଦ୍ଭାବ ନାହିଁ । ମାତ୍ର ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ସ୍ତରରେ ସହଶିକ୍ଷାର କେତେକ ବୈଶିଷ୍ଟ୍ୟ ପରିଲକ୍ଷିତ ହୋଇଥାଏ । ସେଥିପାଇଁ ପ୍ରକୃତରେ ଉଚ୍ଚତର ଶ୍ରେଣୀମାନଙ୍କରେ ସହଶିକ୍ଷା ହିଁ ପ୍ରଚଳିତ ହୋଇଥାଏ । ତେବେ ସଂକ୍ଷେପରେ କହିଲେ ପୁରୁଷ ପରି ନାରୀ ଜୀବନରେ ମଧ୍ୟ ଶିକ୍ଷାର ଆବଶ୍ୟକତା ରହିଛି । ଦେଶର ସମୂହ ଉନ୍ନତି ବିକାଶ କ୍ଷେତ୍ରରେ ଉଭୟଙ୍କ ଅବଦାନ ରହିଥିବାରୁ ଶିକ୍ଷାକ୍ଷେତ୍ରରେ ନାରୀକୁ ଅବହେଳା କରାଯିବା ଅନୁଚିତ ।

ବହୁ ଆଲୋଚକ ଓ ଶାସ୍ତ୍ରକାର ପ୍ରାଚୀନ ଭାରତରେ ସହଶିକ୍ଷାର ପ୍ରଚଳନ ଥିଲା ବୋଲି ଦୃଢ଼ ଯୁକ୍ତି ଉପସ୍ଥାପନ କରିଥାନ୍ତି । ମାତ୍ର ଏକଥା ସତ୍ୟ ଯେ ବର୍ତ୍ତମାନ ଆମେ ଯେଉଁ ଅର୍ଥରେ ସହଶିକ୍ଷାକୁ ଗ୍ରହଣ କରିଛୁ, ସେହି ଅର୍ଥରେ ପ୍ରାଚୀନ ଭାରତରେ ସହଶିକ୍ଷାର ପ୍ରଚଳନ ଆଦୌ ନ ଥିଲା । କେତେକ କ୍ଷେତ୍ରରେ ପୁରୁଷ ସହିତ ନାରୀ ଏକତ୍ର ଶିକ୍ଷାଲାଭ କରୁଥିଲା । ନାରୀ ତା'ର ପାଣ୍ଡିତ୍ୟ ଓ ଅନ୍ତର୍ନିହିତ ଶକ୍ତିର ଯଥାର୍ଥ ପରିଚୟ ପ୍ରଦାନ କରିଥିଲା । ବୈଦିକ ଯୁଗରେ ଗାର୍ଗୀ ଥିଲେ ସେହିପରି ଜଣେ ନାରୀ । ତାଙ୍କର ଜ୍ଞାନ ଥିଲା ଅସୀମ । ତାଙ୍କ ପାଣ୍ଡିତ୍ୟରେ ଚମତ୍କୃତ ହୋଇଥିଲେ ଜ୍ଞାନବନ୍ତ ଋଷି ଯାଜ୍ଞବଲ୍କ୍ୟ । ବୈଦିକ ବା ଉପନିଷଦ ଯୁଗରେ ନାରୀକୁ ଯଥାର୍ଥ ସମ୍ମାନ ମିଳୁଥିଲା । ତପୋବନରେ ଋଷି ଆଶ୍ରମରେ ପ୍ରାଚୀନ ସହଶିକ୍ଷାର କେତେକ ଉଦାହରଣ ଦେଖିବାକୁ ମିଳେ । ବାଲ୍ମୀକି ଆଶ୍ରମର ଆତ୍ରେୟୀ ଓ କଣ୍ୱ ଆଶ୍ରମର ଶକୁନ୍ତଳା ଏହାର ଅନ୍ୟତମ ଉଦାହରଣ । ମୁନିକୁମାର ଓ ମୁନିକୁମାରୀ ପରିଚୟ ନେଇ ପରସ୍ପର ମଧ୍ୟରେ ଭାଇ ଓ ଭଉଣୀର

ଭାବ ରଖି ଏମାନେ ଶିକ୍ଷାକ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ । ପରସ୍ପର ମଧ୍ୟରେ ଶ୍ରଦ୍ଧା ଓ ସମ୍ମାନ ଅତୁଟ ରହିଥିଲା । ଆତ୍ମସଂଯମଭାବ ସେମାନଙ୍କୁ ମହାନ କରିଥିଲା । ମଧ୍ୟଯୁଗରେ ନାରୀର ସମସ୍ତ ସ୍ୱାଧୀନତା ଅପହୃତ ହେଲା । ସେ ହେଲା ଅସୂର୍ଯ୍ୟଂପଶ୍ୟା, କାମନାର ପ୍ରଜ୍ୱଳିତ ଦୀପଶିଖା । ଭୋଗବାଦୀ ପୁରୁଷ ନାରୀକୁ ଗ୍ରହଣ କରିନେଲା ଭୋଗର ସାମଗ୍ରୀ ରୂପେ । ସାମନ୍ତ ବା ଉଚ୍ଚବଂଶରେ ଗୃହ ମଧ୍ୟରେ ନାରୀକୁ ଶିକ୍ଷା ପ୍ରଦାନ କରାଗଲା । ଗୃହର ଚାରିକାନ୍ଥ ମଧ୍ୟରେ ଆବଦ୍ଧ ରହି ନାରୀ ବିକଳ ବିଳାପ କରିଉଠିଲା । ଭାରତରେ ମୁସଲମାନ ଶାସନର ଅବସାନ ପର୍ଯ୍ୟନ୍ତ ନାରୀକୁ ପରାଧୀନ ଜୀବନ ବିତାଇବାକୁ ପଡ଼ିଲା । ଇଂରେଜ ଶାସନ କାଳରେ ଦୃଢ଼ ପ୍ରଶାସନିକ ବ୍ୟବସ୍ଥା ଯୋଗୁଁ ପୁଣି ନାରୀ ପ୍ରତି ଆମ ସମାଜର ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆସିଲା । ତଥାପି ରକ୍ଷଣଶୀଳ ମନୋଭାବ ଯୋଗୁଁ ଊନବିଂଶ ଶତକର ଶେଷ ପର୍ଯ୍ୟନ୍ତ ଏହାର ବିଶେଷ କିଛି ପରିବର୍ତ୍ତନ ହୋଇ ନ ଥିଲା । କେତେଜଣ ଅଗ୍ରଗାମୀ ଦୂରଦୃଷ୍ଟିସମ୍ପନ୍ନ ବ୍ୟକ୍ତିବିଶେଷଙ୍କ ଉଦ୍ୟମ ଯୋଗୁଁ ନାରୀଶିକ୍ଷା ପାଇଁ ସମାଜରେ ଅନୁକୂଳ ବାତାବରଣ ସୃଷ୍ଟି ହେଲା ଏବଂ ତାହା ଦ୍ୱାରା ସହଶିକ୍ଷା ବ୍ୟବସ୍ଥା ମଧ୍ୟ ପ୍ରଚଳନ ହୋଇପାରିଲା ।

ପାଶ୍ଚାତ୍ୟ ଜଗତରେ ବହୁ ପୂର୍ବରୁ ସହଶିକ୍ଷାର ପ୍ରଚଳନ ହୋଇଥିଲା । କେତେକ କୁସଂସ୍କାର ଅନ୍ଧବିଶ୍ୱାସର ବଶବର୍ତ୍ତୀ ହୋଇ ଭାରତରେ ଏହାର ବହୁ ବିଳମ୍ବ ଘଟିଲା । ସ୍ୱାଧୀନଚେତା ଇଂରେଜ ଶାସକଗଣ ଭାରତରେ ନାରୀଶିକ୍ଷା ଓ ସହଶିକ୍ଷା ଉପରେ ଗୁରୁତ୍ୱ ପ୍ରଦାନ କଲେ । ସେମାନଙ୍କର ବଳିଷ୍ଠ ଓ ଦୃଢ଼ କାର୍ଯ୍ୟାନୁଷ୍ଠାନ ଯୋଗୁଁ ଭାରତରେ ସହଶିକ୍ଷା ପ୍ରଚଳନ ହୋଇପାରିଲା କହିଲେ ଭୁଲ ହେବ ନାହିଁ । ଭାରତର ପ୍ରଗତିବାଦୀ ଯୁବକ ସ୍ୱାମୀ ବିବେକାନନ୍ଦ ନାରୀ ଶିକ୍ଷାର ସମର୍ଥକ ଥିଲେ । ରାଜା ରାମମୋହନ ରାୟ ନାରୀଶିକ୍ଷାର ଦୃଢ଼ ସମର୍ଥକ ଥିବାରୁ ବ୍ରାହ୍ମ ସମାଜ ମାଧ୍ୟମରେ ନାରୀଶିକ୍ଷାର ଉନ୍ନତି ନିମିତ୍ତ ବିଭିନ୍ନ ପଦକ୍ଷେପ ଗ୍ରହଣ କରିଥିଲେ । ଦୟାନନ୍ଦ ସରସ୍ୱତୀଙ୍କ ପରି ସଂସ୍କାରବାଦୀ ବ୍ୟକ୍ତିତ୍ୱ ନାରୀଶିକ୍ଷାର ବିକାଶ ପାଇଁ ପ୍ରତ୍ୟକ୍ଷ ସଂଗ୍ରାମ କରିଥିଲେ । ଏ କ୍ଷେତ୍ରରେ 'ଆର୍ଯ୍ୟସମାଜ'ର ଭୂମିକାକୁ ଆଦୌ ଅବହେଳା କରାଯାଇ ନ ପାରେ । ଏତଦ୍‌ବ୍ୟତୀତ ଭାରତୀୟ ନାରୀସଂଘ, କାର୍ଭେଙ୍କ ମହିଳା ବିଶ୍ୱବିଦ୍ୟାଳୟ ଏ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିଛନ୍ତି । ପାଶ୍ଚାତ୍ୟ ଦେଶରେ ସର୍ବତ୍ର ସହଶିକ୍ଷାର ପ୍ରଚଳନ ଥିବାରୁ ସେହି ଆଦର୍ଶରେ ଭାରତରେ ମଧ୍ୟ ସହଶିକ୍ଷାର ବ୍ୟବସ୍ଥା କରାଗଲା । ଆର୍ଥନୀତିକ ଦୃଷ୍ଟିକୋଣରୁ ସର୍ବତ୍ର ସ୍ୱତନ୍ତ୍ର ନାରୀ ବିଦ୍ୟାଳୟ ବା ମହାବିଦ୍ୟାଳୟ ସ୍ଥାପନ କରିବା ମଧ୍ୟ ଅସମ୍ଭବ । ଏହି ଶିକ୍ଷାର ପ୍ରଚଳନକୁ ଅଳ୍ପ କେତେକ ସଂସ୍କାରବାଦୀ ସ୍ୱାଗତ ଜଣାଇଥିଲେହେଁ, ବହୁକ୍ଷେତ୍ରରେ ପ୍ରତିବନ୍ଧକ ସୃଷ୍ଟି ହେଲା । ଦୂରଦୃଷ୍ଟିର ଅଭାବରୁ ବହୁ ଅଭିଭାବକ ନିଜର କନ୍ୟାକୁ ସହଶିକ୍ଷା ପ୍ରବର୍ତ୍ତନ ଥିବା ଶିକ୍ଷାନୁଷ୍ଠାନରେ ପଢ଼ାଇବାକୁ ଆଗ୍ରହ ପ୍ରକାଶ କଲେ ାହିଁ । ଲଜ୍ଜା ଓ ସମାଲୋଚନାର ଭୟରୁ ମଧ୍ୟ ଅନେକ ଝିଅ ପୁଅମାନଙ୍କ ସହିତ ଏକତ୍ର ଶିକ୍ଷା ଗ୍ରହଣ କରିବାକୁ ରାଜି ହେଲେ ନାହିଁ । ତେଣୁ କନ୍ୟାମାନଙ୍କର ଲଜ୍ଜାବୋଧ ଅଭିଭାବକମାନଙ୍କର ଦୂରଦୃଷ୍ଟିହୀନତା ଓ ସମାଜର ରକ୍ଷଣଶୀଳ ମନୋଭାବ ଯୋଗୁଁ ବିଂଶ ଶତକର ପ୍ରଥମ ପାଦ

ପର୍ଯ୍ୟନ୍ତ ସହଶିକ୍ଷା ଯେଉଁ ପରିମାଣରେ ବିକାଶଲାଭ କରିବାର କଥା ତାହା କରିପାରିଲା ନାହିଁ । ସ୍ୱାଧୀନତା ପରେ ପରେ ଭାରତୀୟଙ୍କ ଦୃଷ୍ଟିଭଙ୍ଗୀରେ କେତେକାଂଶରେ ପରିବର୍ତ୍ତନ ଆସିଲା । କେତେଜଣ ଭାରତୀୟ ନାରୀଙ୍କର ଉଲ୍ଲେଖଯୋଗ୍ୟ କାର୍ଯ୍ୟକଳାପ ପୁରୁଷସମାଜରେ ନାରୀ ପ୍ରତି ସମ୍ମାନ ଓ ଶ୍ରଦ୍ଧା ଉଦ୍ରେକ କଲା । ବିଂଶଶତକର ଦ୍ୱିତୀୟ ପାଦ ବେଳକୁ ଭାରତରେ ସହଶିକ୍ଷା ନିମିତ୍ତ ଆଶାଜନକ ଉତ୍ସାହ ଓ ପ୍ରେରଣା ମିଳିବାରୁ ସହଶିକ୍ଷା ବିକାଶ ଲାଭ କରିବାର ସୁଯୋଗ ଲାଭ କଲା ।

ସହଶିକ୍ଷାର କେତେକ ଆଲୋକିତ ଦିଗ ରହିଛି । ଏହାଦ୍ୱାରା ନାରୀ ଓ ପୁରୁଷ ମଧ୍ୟରେ ଥିବା ଅସମାନତାର ପ୍ରାଚୀର ଦୂରୀଭୂତ ହୋଇଥାଏ । ସମାଲୋଚନାର ଭୟରୁ ଛାତ୍ରୀମାନେ ମୁକ୍ତି ଲାଭ କରିଥାନ୍ତି । ଛାତ୍ରୀମାନଙ୍କ ପ୍ରତି ଛାତ୍ରମାନଙ୍କ ମନରେ ଯେଉଁ ହେୟ ଓ ହୀନଭାବ ଥାଏ, ସହଶିକ୍ଷା ଦ୍ୱାରା ତାହା ଦୂର ହୋଇଥାଏ । ପୁରୁଷ ସହିତ ନାରୀ ଏକତ୍ର କାମ କରି ନିଜର ପ୍ରତିଭା ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ଆତ୍ମତୃପ୍ତି ଲାଭ କରିଥାଏ । ପୁରୁଷ ବା ଛାତ୍ରଠାରୁ ଛାତ୍ରୀ ଦୂରେଇ ରହୁଥିବା ସମୟରେ ଛାତ୍ର ମନରେ ଯେଉଁ ଭୋଗ ଲାଳସା ବୃଦ୍ଧି ପାଇଥାଏ, ସହଶିକ୍ଷାର ବନ୍ଧୁତ୍ୱ ବାତାବରଣ ଦ୍ୱାରା ତାହା ଦୂରୀଭୂତ ହୋଇଥାଏ । ପରସ୍ପର ମଧ୍ୟରେ ସହୃଦୟତା ସୃଷ୍ଟି ହୁଏ । ପ୍ରତିଦିନ ଛାତ୍ରଛାତ୍ରୀ ପରସ୍ପର ସମ୍ପର୍କରେ ଆସୁଥିବାରୁ ସେମାନଙ୍କ ମଧ୍ୟରେ ଥିବା କୁରୁଚିର ଅବସାନ ଘଟେ । ଛାତ୍ର ଓ ଛାତ୍ରୀ ପରସ୍ପର ସହିତ ମିଳିମିଶି କାର୍ଯ୍ୟକରିବାକୁ ସହଶିକ୍ଷା ପ୍ରେରଣା ଦେଇଥାଏ । ଏହାଦ୍ୱାରା କର୍ତ୍ତବ୍ୟନିଷ୍ଠା ଓ ସମୟାନୁବର୍ତ୍ତିତା ବୃଦ୍ଧିପାଏ । ଛାତ୍ରୀମାନଙ୍କର ଧୈର୍ଯ୍ୟ, ସହିଷ୍ଣୁତା ଓ ନିଷ୍ଠା ଏବଂ ଛାତ୍ରମାନଙ୍କର କଷ୍ଟସହିଷ୍ଣୁତା ସାହସ ତଥା ନେତୃତ୍ୱ ଗୁଣର ସମାବେଶ ସମାଜକୁ ପ୍ରଗତି ପଥରେ ଆଗେଇ ନେଇଥାଏ । ଏହାଦ୍ୱାରା ନାରୀ ମନରେ ପୁରୁଷସମାଜ ପ୍ରତି ଥିବା ନିକୃଷ୍ଟ ଓ ସଂକୀର୍ଣ୍ଣ ଭାବର ବିଲୋପ ଘଟେ । ପ୍ରତିଯୋଗିତାମୂଳକ ମନୋବୃତ୍ତିର ବିକାଶଯୋଗୁଁ ସମାଜର ବହୁବିଧ ଉପକାର ସାଧିତ ହୁଏ । ଭାରତପରି ଏକ ବିକାଶଶୀଳ ରାଷ୍ଟ୍ରରେ ଛାତ୍ର ଓ ଛାତ୍ରୀମାନଙ୍କ ନିମିତ୍ତ ସ୍ୱତନ୍ତ୍ର ଶିକ୍ଷାନୁଷ୍ଠାନ ଗଠନ କରିବା ସର୍ବଦା ସମ୍ଭବ ନୁହେଁ । ଆର୍ଥନୀତିକ ଦିଗରୁ ମଧ୍ୟ ସହଶିକ୍ଷାର ଆବଶ୍ୟକତା ରହିଛି । ହୁଏତ କେତେକ ଗ୍ରାମୀଣ ଅଞ୍ଚଳରେ ଛାତ୍ରୀମାନଙ୍କର ଅଭାବ ଯୋଗୁଁ ସ୍ୱତନ୍ତ୍ର ଛାତ୍ରୀ ଶିକ୍ଷାନୁଷ୍ଠାନ ବନ୍ଦ ହୋଇଯାଇପାରେ । ଏ କ୍ଷେତ୍ରରେ ସହଶିକ୍ଷାର ଆବଶ୍ୟକତା ଅନୁଭୂତ ହୋଇଥାଏ । ପୁଣି କେତେକ କ୍ଷେତ୍ରରେ ନାରୀ ଓ ପୁରୁଷର ଏକତ୍ର ଶିକ୍ଷା କରିବାର ଆବଶ୍ୟକତା ରହିଛି । ଇଞ୍ଜିନିୟରିଂ ବା ମେଡିକାଲ ଶିକ୍ଷାରେ ନାରୀ ଓ ପୁରୁଷ ମିଳିତ ଭାବରେ ଶିକ୍ଷାଲାଭ କରିବା ଉଚିତ । ଏ କ୍ଷେତ୍ରରେ ସ୍ୱତନ୍ତ୍ର ଶିକ୍ଷାନୁଷ୍ଠାନ ବ୍ୟୟବହୁଳ ଏବଂ ସରକାରଙ୍କ ପକ୍ଷେ ଅସମ୍ଭବ ମଧ୍ୟ । ଏହି ଦୃଷ୍ଟିରୁ ସହଶିକ୍ଷା ସ୍ୱାଗତଯୋଗ୍ୟ ।

ଏହା ସତ୍ତ୍ୱେ ସହଶିକ୍ଷାର କେତେକ ଅପକାର ଦିଗ ରହିଛି । ଯୌବନରେ ପାଦ ଦେଇଥିବା ଯୁବକଯୁବତୀମାନେ ସହଶିକ୍ଷାଦ୍ୱାରା ବହୁପରିମାଣରେ କାମନାର ଶିକାର ହେବାର ସମ୍ଭାବନା ରହିଛି । ଅନେକ ସମୟରେ ଯୌନଚିନ୍ତା ସେମାନଙ୍କୁ ଶିକ୍ଷାର ମହତ୍ ଆଦର୍ଶଠାରୁ ଦୂରେଇ

ନେଇଥାଏ । କୁରୁଚିର ଶିକାର ହୋଇ ଏମାନେ ଅନେକ ସମୟରେ ସମାଜବିରୋଧୀ କାର୍ଯ୍ୟ କରିବାକୁ ପଶ୍ଚାତ୍‌ପଦ ହୋଇନଥାନ୍ତି । ସଂଯମହୀନତା ଯୋଗୁଁ ମାନସିକ ବିଭ୍ରାନ୍ତିର ଶିକାର ହେବା ସଙ୍ଗେ ସଙ୍ଗେ ବୌଦ୍ଧିକ ଚେତନାର ବିଲୁପ୍ତି ଘଟିଥାଏ । ଅବୈଧ ପ୍ରେମ ଓ ଯୌନଲାଳସାର ପରିତୃପ୍ତି ପାଇଁ ସଦ୍ୟ ଯୌବନ ଲାଭ କରିଥିବା ଛାତ୍ର ଛାତ୍ରୀ ସହଶିକ୍ଷାକୁ ଉପଯୁକ୍ତ ସ୍ଥାନ ମନେକରିଥାନ୍ତି । ଏହାଦ୍ୱାରା ବାସ୍ତବ ଶିକ୍ଷାର ଆଦର୍ଶ 'ପରିପୂର୍ତ୍ତି' ହୋଇପାରେ ନାହିଁ । ତୁଳସୀଦାସଙ୍କ ପରି ଆତ୍ମସଂଯମୀ ବ୍ୟକ୍ତି ମଧ ନାରୀ ଓ ପୁରୁଷର ଏକତ୍ର ଶିକ୍ଷାଭ୍ୟାସକୁ ବିରୋଧ କରିଛନ୍ତି । ପାଶ୍ଚାତ୍ୟ ଦେଶ ମୁଖ୍ୟତଃ ଶୀତପ୍ରଧାନ ହୋଇଥିବାରୁ ସେଠାରେ କାମନାଲାଳସା ବିଳମ୍ବରେ ଆସିଥାଏ । ତରୁଣୀ ପ୍ରାୟ ମହାବିଦ୍ୟାଳୟ ବା ବିଶ୍ୱବିଦ୍ୟାଳୟରେ ଶିକ୍ଷା ଗ୍ରହଣ ସମୟରେ ଯୌବନର ଉନ୍ମାଦନା ଅନୁଭବ କରିଥାନ୍ତି । ମାତ୍ର ସେତେବେଳକୁ ଜୀବନ ଓ ଜଗତ ପ୍ରତି ସେମାନଙ୍କର ଏକ ବିସ୍ତୃତ ଦୃଷ୍ଟିଭଙ୍ଗୀ ସୃଷ୍ଟି ହୋଇସାରିଥିବାରୁ ଯୌନ ସ୍ଖଳନର ଶିକାର୍ ହୋଇ ନ ଥାନ୍ତି । ମାତ୍ର ଭାରତପରି ଗୋଟିଏ ଗ୍ରୀଷ୍ମ ପ୍ରଧାନ ଦେଶରେ ଖୁବ୍ ଶୀଘ୍ର ବିଦ୍ୟାଳୟରେ ଅଧ୍ୟୟନ କରିବା ସମୟରେ ଝିଅମାନେ ଯୌବନର ସମସ୍ତ ଉନ୍ମାଦନା ଲାଭ କରି ସାରିଥାନ୍ତି । ଅଥଚ ଜୀବନ ଜଗତକୁ ଜାଣିବାର ଜ୍ଞାନ ତାଙ୍କର ନ ଥାଏ । ଏହି ବୟସରେ ପଦ ସ୍ଖଳନ ହେବାର ସମ୍ଭାବନା ବହୁତ ବେଶି । ପୁଅମାନେ ଏହି ବୟସରେ ମଧ କାମୋନ୍ମାଦ ହୋଇ ଅନେକ ଅଘଟଣ ଘଟାଇଥାନ୍ତି କିମ୍ବା ଯୌନଲାଳସା ପରିପୂର୍ଣ୍ଣ କରି ନ ପାରିଲେ ପ୍ରତିଶୋଧ ପରାୟଣ ହୋଇ ଅସାମାଜିକ କାର୍ଯ୍ୟ କରିବସନ୍ତି । ତେଣୁ ମହାବିଦ୍ୟାଳୟ ପୂର୍ବରୁ ଭାରତରେ ସହଶିକ୍ଷାର ପ୍ରଚଳନ ହେବା ଅନୁଚିତ ବୋଲି ଚିନ୍ତାଶୀଳ ବ୍ୟକ୍ତି ମତପ୍ରଦାନ କରିଥାନ୍ତି । ପୁନରାୟ ନାରୀମାନଙ୍କ ନିମିତ୍ତ କେତେକ ସ୍ୱତନ୍ତ୍ର ପାଠ୍ୟର ଆବଶ୍ୟକତା ରହିଛି । ଗୃହବିଜ୍ଞାନ, ସନ୍ତାନର ଯତ୍ନ, ଗୃହକର୍ମ ଆଦି ବିଷୟରେ ସେମାନେ ବିଶେଷ ଜ୍ଞାନ ଲାଭ କରିବା ଉଚିତ । ସହଶିକ୍ଷାରେ ତାହା ସମ୍ଭବ ହୋଇପାରିବ ନାହିଁ । ସାମାଜିକ ଜୀବନରେ ନାରୀକୁ ବହୁବିଧ କର୍ମ କରିବାକୁ ପଡୁଥିବାରୁ ପୁରୁଷଙ୍କ ଅପେକ୍ଷା କେତେକ ବିଷୟରେ ତାଙ୍କୁ ଅଧିକ ଜ୍ଞାନ ଲାଭ କରିବାକୁ ପଡ଼େ, ଯାହା ସହଶିକ୍ଷାରେ ସମ୍ଭବ ନୁହେଁ । ଗୋଟିଏ ପାଠ୍ୟକ୍ରମ ବ୍ୟବସ୍ଥା ସହଶିକ୍ଷାରେ ପ୍ରଚଳିତ ଥିବାରୁ କେତେକ କ୍ଷେତ୍ରରେ ନାରୀ ତା'ର ମାଧୁର୍ଯ୍ୟ ଓ ସହନଶୀଳତା ହରାଇଥାଏ । ଏହି କାରଣରୁ କେତୋଟି ନାରୀସୁଲଭ ଗୁଣର ଅବଲୁପ୍ତି ଘଟିଥାଏ । ସେଥିପାଇଁ ଭାରତରେ ସହଶିକ୍ଷାର ଆବଶ୍ୟକତା ନାହିଁ ବୋଲି କେତେକ ମତବ୍ୟକ୍ତ କରିଥାନ୍ତି ।

ସହଶିକ୍ଷାର ଉଭୟ ଉପକାର ଓ ଅପକାର ଦିଗ ସମ୍ପର୍କରେ ଯେଉଁମାନେ ଆଲୋଚନା କରନ୍ତି ସେମାନଙ୍କ ମତ ଏକଦେଶଦର୍ଶୀ । ସାଧାରଣତଃ ଉଚ୍ଚତର ଶ୍ରେଣୀରେ ସହଶିକ୍ଷାର ବହୁ ଉପକାର ରହିଛି । ଏହି ସମୟରେ ତରୁଣତରୁଣୀ ପରସ୍ପରକୁ ବୁଝିବା ନିମିତ୍ତ ଜ୍ଞାନଲାଭ କରିସାରିଥାନ୍ତି । ଦୈହିକ ଆକର୍ଷଣ ଅପେକ୍ଷା କର୍ତ୍ତବ୍ୟ ସଚେତନତାକୁ ସେମାନେ ସେତେବେଳେ ଅଧିକ ଗୁରୁତ୍ୱ ଦେଇଥାନ୍ତି । ଏହି କ୍ଷେତ୍ରରେ ସହଶିକ୍ଷା ସେମାନଙ୍କ ଚିନ୍ତାଧାରାରେ ସମନ୍ୱୟ ସ୍ଥାପନ କରେ । ନିଜର ଭବିଷ୍ୟତ ସେମାନଙ୍କ ନିକଟରେ ବଡ଼ ହୋଇଥିବାରୁ ଆତ୍ମସଂଯମତାର ସହିତ ସମସ୍ତ କାର୍ଯ୍ୟ କରିଥାନ୍ତି । ତେଣୁ ତରୁଣ ଓ ତରୁଣୀ ମିଳିତ ଭାବରେ କାର୍ଯ୍ୟ କଲେ

ସେମାନଙ୍କ ମନରେ କର୍ମପ୍ରବଣତା ବୃଦ୍ଧି ହୁଏ । ଏହି ସମୟରେ ପ୍ରଣୟ ପ୍ରବୃତ୍ତି ଦ୍ୱାରା ପରିଚାଳିତ ନ ହୋଇ ବିବେକାନୁମୋଦିତ କାର୍ଯ୍ୟ କରିଥାନ୍ତି । ମାତ୍ର ଭାରତରେ ୧୭।୧୮ ବର୍ଷ ବୟସ ପର୍ଯ୍ୟନ୍ତ ସହଶିକ୍ଷାର ଆବଶ୍ୟକତା ନାହିଁ । କାରଣ ଏହି ସମୟରେ ଉଚ୍ଛୃଙ୍ଖଳ ଯୁବକ ଯୁବତୀ ନିଜ ଭବିଷ୍ୟତକୁ ନଷ୍ଟ କରିଦେବାର ବହୁ ସମ୍ଭାବନା ରହିଛି । ଭାବପ୍ରବଣତା ଓ ଚପଳତାର ବଶବର୍ତ୍ତୀ ହୋଇ ଏହି ସମୟରେ ବହୁ କୁକାର୍ଯ୍ୟ କରିବାକୁ ସେମାନେ କୁଣ୍ଠିତ ହୋଇ ନ ଥାନ୍ତି । ବିସ୍ତୃତ ଦୃଷ୍ଟିକୋଣରୁ ବିଚାର କଲେ ବିଜ୍ଞାନ, ବୈଷୟିକ କଳା ବା ବାଣିଜ୍ୟ ପ୍ରତି କ୍ଷେତ୍ରରେ ନାରୀର ପୁରୁଷ ସହିତ ଶିକ୍ଷା ଗ୍ରହଣ କରିବାର ସମାନ ଅଧିକାର ରହିଛି । ନୈତିକ ଓ ଆତ୍ମସଂଯମର ଶିକ୍ଷା ଦେଇ ସେମାନଙ୍କୁ ସହଶିକ୍ଷାରେ ସହଭାଗୀ କଲେ କିଛି ଅନିଷ୍ଟ ହେବାର ସମ୍ଭାବନା ନାହିଁ । ନାରୀ ପାଇଁ ଗୃହବିଜ୍ଞାନ, ସ୍ୱାସ୍ଥ୍ୟରକ୍ଷା ବା ଶିଶୁଯତ୍ନ ସମ୍ପର୍କୀୟ କେତୋଟି ଅଧିକ ବିଷୟରେ ଶିକ୍ଷାଦାନ କରି ଅନ୍ୟ ବିଷୟରେ ପୁରୁଷ ସହିତ ସମାନ ଶିକ୍ଷାଦେଲେ କୌଣସି କ୍ଷତି ନାହିଁ । ଆଜି ନାରୀ ଓ ପୁରୁଷ ମଧ୍ୟରେ ବିଶେଷ କିଛି ପାର୍ଥକ୍ୟ ନାହିଁ । ସବୁକ୍ଷେତ୍ରରେ ନାରୀ ନିଜ ପ୍ରତିଭାର ପରିଚୟ ଦେଇ ପୁରୁଷ ସହିତ ସମମର୍ଯ୍ୟାଦା ଲାଭ କରିପାରିଛି । ଏହି ଦୃଷ୍ଟିରୁ ସହଶିକ୍ଷାର ଗୁରୁତ୍ୱ ନିଶ୍ଚିତ ରହିଛି ।

ପ୍ରତ୍ୟେକ ଶିକ୍ଷାର ଉପକାର ଓ ଅପକାର ଦିଗ ରହିଛି । ଜୀବନ ସଂଗ୍ରାମରେ ସହଯାତ୍ରୀ ନାରୀକୁ କୌଣସି କ୍ଷେତ୍ରରେ ହେୟ ମନେ କରିବା ଅନୁଚିତ । କେତେକାଂଶରେ ଏହାର ଅପକାରିତା ରହିଛି । ଭାରତୀୟ ଜୀବନରେ ନାରୀ ଓ ପୁରୁଷର ସ୍ୱତନ୍ତ୍ର କର୍ତ୍ତବ୍ୟ ରହିଛି । ମାତ୍ର ଆଜି ବିଜ୍ଞାନ ସେହି ସ୍ୱତନ୍ତ୍ରତାର ପୂର୍ଣ୍ଣଚ୍ଛେଦ ଟାଣିଛି । ସମାଜର ସୁଷ୍ଠୁ ବିକାଶ ପାଇଁ ଉଭୟଙ୍କର ସହଯୋଗ ଅପରିହାର୍ଯ୍ୟ ହୋଇପଡ଼ିଛି । ସହଶିକ୍ଷା ନାରୀ ଓ ପୁରୁଷର ସଂକୀର୍ଣ୍ଣ ମନୋଭାବକୁ ଯେ ପ୍ରସାରିତ କରେ, ଏଥିରେ ଦ୍ୱିମତ ହେବାର କିଛି ନାହିଁ । ଯେଉଁ ସମୟରେ ପଦ ସ୍ଖଳନ ହେବାର ଭୟ ରହିଛି, ଉପଯୁକ୍ତ ବାତାବରଣ ସୃଷ୍ଟି କରି ନୈତିକତାର ଜାଗରଣ କରିପାରିଲେ ସହଜରେ ତାହା ଦୂରୀଭୂତ ହୋଇପାରିବ । ସାମଗ୍ରିକ ଭାବରେ ଅପକାର ତୁଳନାରେ ଉପକାରର ମାତ୍ରା ଅଧିକ ହୋଇଥିବାରୁ ଭାରତବର୍ଷରେ ସହଶିକ୍ଷାର ଆବଶ୍ୟକତା ରହିଛି ।

●

## ପ୍ରୌଢ଼ଶିକ୍ଷା

**(ଉପକ୍ରମ, ପ୍ରୌଢ଼ଶିକ୍ଷାର ଉଦ୍ଦେଶ୍ୟ, ପ୍ରୌଢ଼ଶିକ୍ଷାର ରାଜନୀତିକ ଓ ସାମାଜିକ ଦିଗ, ପ୍ରୌଢ଼ଶିକ୍ଷା ଅସଫଳ ହେବାର କାରଣ, ଏହାର ବିଭିନ୍ନ ଦିଗ, ଉପସଂହାର)**

ଶିକ୍ଷା କ୍ଷେତ୍ରରେ ବାଳ, ଯୁବକ ବା ପ୍ରୌଢ଼ର ବାଛବିଚାର ନାହିଁ । ଶିକ୍ଷା ସାର୍ବଜନୀନ । ଏହାକୁ ଗ୍ରହଣ କରିବାର ଅଧିକାର ସମସ୍ତଙ୍କର ରହିଛି । ଭାରତର ଶିକ୍ଷାପଦ୍ଧତି ସମ୍ବନ୍ଧରେ ଟୟନବି ସାହେବ ଅତୀତରେ ଯେଉଁ ମତାମତ ଦେଇଥିଲେ, ତାହା ଯଥାର୍ଥ । ଅକ୍ଷର ଶିଖିପାରିଲେ

ବା ଭାଗବତ ପଢ଼ିପାରିଲେ ଆମ ସମାଜରେ ଜଣେ ଶିକ୍ଷିତ ବ୍ୟକ୍ତି ରୂପେ ପରିଗଣିତ ହୋଇପାରୁଥିଲା । କିନ୍ତୁ ଶିକ୍ଷାର ପ୍ରକୃତ ଲକ୍ଷ୍ୟ ତାହା ନୁହେଁ । ଅନ୍ଧକାରରୁ ଆଲୋକ ଦିଗକୁ ନେଇଯିବା ଶିକ୍ଷାର ଉଦ୍ଦେଶ୍ୟ । ଏହି କାରଣରୁ ପ୍ରାଚୀନ ଭାରତରେ ଅଳ୍ପ କେତେକ ପଣ୍ଡିତ ଓ ବୁଦ୍ଧିଜୀବୀଙ୍କୁ ଛାଡ଼ିଦେଲେ ଅଧିକାଂଶ ବ୍ୟକ୍ତି ଶିକ୍ଷାର ମହତ୍ତ୍ୱ ସମ୍ପର୍କରେ ଅବଗତ ନ ଥିଲେ । ପୁଣି ଭାରତ ଏକ କୃଷିପ୍ରଧାନ ଦେଶ ହୋଇଥିବାରୁ କୃଷିଜୀବୀଙ୍କର ଅକ୍ଷର ଶିକ୍ଷାର ମଧ ଆବଶ୍ୟକତା ପଡୁ ନ ଥିଲା । ଦିନତମାମ ପରିଶ୍ରମ କରିସାରିବା ପରେ ସନ୍ଧ୍ୟାବେଳେ ପୁରାଣପଣ୍ଡାଠାରୁ ଅଧାୟେ ଭାଗବତ ବା ପୁରାଣ ଶୁଣି ନିଜର ଜ୍ଞାନପିପାସାକୁ ଚରିତାର୍ଥ କରାଉଥିଲା । ତା'ର ଦୈନନ୍ଦିନ ବ୍ୟାବହାରିକ ଜୀବନରେ ଅନୁଷ୍ଠାନଗତ ଶିକ୍ଷାର ଆବଶ୍ୟକତା ଆଦୌ ପଡୁ ନ ଥିଲା । ହୁଏତ ଶିକ୍ଷା ପାଇଁ ଶିକ୍ଷାର ଆବଶ୍ୟକତା ରହିଛି । ମାତ୍ର ତା'ର ସଂଖ୍ୟା ନିହାତି ନଗଣ୍ୟ । ଜୀବିକା ସହିତ ଶିକ୍ଷାର ଯେତେବେଳେ ପ୍ରତ୍ୟକ୍ଷ ସମ୍ବନ୍ଧ ସ୍ଥାପିତ ହୁଏ, ସେତେବେଳେ ଶିକ୍ଷା ପ୍ରତି ମଣିଷର ଆଗ୍ରହ ସୃଷ୍ଟି ହୋଇଥାଏ । ଊନବିଂଶ ଶତାବ୍ଦୀରେ ଇଂରେଜମାନଙ୍କ ଶାସନ ସମୟରେ ଏହିପରି ଏକ ଅବସ୍ଥା ସୃଷ୍ଟି ହୋଇଥିଲା । ଲର୍ଡ଼ ମାକ୍‌ଲେଙ୍କ ଶିକ୍ଷାନୀତି (୧୮୩୫) ଓ ଲର୍ଡ଼ ହାର୍ଡ଼ିଞ୍ଜଙ୍କ (୧୮୪୪) ଶିକ୍ଷା ଖସଡ଼ାରେ ଇଂରାଜୀ ଶିକ୍ଷାକୁ ସରକାରୀ ଚାକିରିର ମାଧ୍ୟମ ରୂପେ ଗ୍ରହଣ କରାଗଲା । ଯେଉଁମାନେ ରକ୍ଷଣଶୀଳତାର ଊର୍ଦ୍ଧ୍ୱରେ ଥିଲେ ଇଂରାଜୀ ଶିକ୍ଷାକୁ ସ୍ୱାଗତ କରି ସେମାନେ ଯଥେଷ୍ଟ ଅଗ୍ରଗତି କରିପାରିଲେ । ମାତ୍ର ରକ୍ଷଣଶୀଳତା ପାଇଁ ଓଡ଼ିଶାର ଜନସାଧାରଣ ପୁଣି ଶିକ୍ଷା କ୍ଷେତ୍ରରେ ପଛରେ ପଡ଼ିଗଲେ । ସ୍ୱାଧୀନତା ପରେ ଦେଶୀୟ ସରକାର ଶିକ୍ଷା ପ୍ରତି ଗୁରୁତ୍ୱ ଆରୋପ କଲେ । ଇଂରେଜ ଶାସନ ସମୟରେ ଶିକ୍ଷା ଥିଲା ସରକାରୀ ଚାକିରିର ଲକ୍ଷ୍ୟ; ମାତ୍ର ସ୍ୱାଧୀନତା ପରେ ଶିକ୍ଷା ହେଲା ଏକ ସମ୍ମାନର ପ୍ରଶ୍ନ । ସେହି କାରଣରୁ ଯେଉଁ ପ୍ରୌଢ଼ମାନେ ଅଶିକ୍ଷା ଅନ୍ଧାରରେ ରହି ସରକାରଙ୍କ ବିଭିନ୍ନ କାର୍ଯ୍ୟକ୍ରମ ସମ୍ପର୍କରେ ଅବଗତ ହୋଇ ନ ପାରି ନିଜକୁ ଜାତୀୟ ସ୍ରୋତରେ ସାମିଲ କରିପାରୁ ନାହାନ୍ତି, ସେହିମାନଙ୍କ ଉଦ୍ଦେଶ୍ୟରେ ପ୍ରୌଢ଼ଶିକ୍ଷା କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି ।

ଭାରତର ପଞ୍ଚମ ପଞ୍ଚବାର୍ଷିକ ଯୋଜନାରେ ପ୍ରଥମେ ପ୍ରୌଢ଼ଶିକ୍ଷା ଯୋଜନା ଆରମ୍ଭ ହୋଇଥିଲା । ଏହି ଯୋଜନାର ଲକ୍ଷ୍ୟ ସେ ସମୟରେ ଯାହା ଧାର୍ଯ୍ୟ କରାଯାଇଥିଲା, ବର୍ତ୍ତମାନ ତା'ର ଠିକ୍ ବିପରୀତ ଚାଲିଛି । ସେତେବେଳେ ପ୍ରୌଢ଼ଶିକ୍ଷାର ଅର୍ଥ ଅକ୍ଷର ଶିଖିବା ବା ଦସ୍ତଖତ କରି ଶିଖିବା ନ ଥିଲା । ସରକାରୀ ସ୍ତରରେ ଯେଉଁ ବିଭିନ୍ନ ଯୋଜନା ଓ ନୀତି ନିୟମମାନ ପ୍ରଣୟନ କରାଯାଉଛି ସେ ସମ୍ପର୍କରେ ଅବଗତ ହେବା ଏବଂ ସେ ସମ୍ପର୍କରେ ଜାଗରଣ ସୃଷ୍ଟି କରିବା । ଏତଦ୍‌ବ୍ୟତୀତ ଗ୍ରାମ ତଥା ସମାଜର ବିଭିନ୍ନ ସମସ୍ୟା ସମ୍ବନ୍ଧରେ ସରକାରଙ୍କୁ ଅବଗତ କରାଇବା, ଗ୍ରାମର ବିକାଶ ପାଇଁ ଜନସଚେତନତା ସୃଷ୍ଟି କରିବା ଆଦି ମଧ ପ୍ରୌଢ଼ ଶିକ୍ଷାର ଥିଲା ଅନ୍ୟତମ ଲକ୍ଷ୍ୟ । ମାତ୍ର ସେ ଉଦ୍ଦେଶ୍ୟ ପରିବର୍ତ୍ତିତ ହୋଇ ଆଜି ପ୍ରୌଢ଼ମାନଙ୍କୁ ଦି'ଅକ୍ଷର ଲେଖିପଢ଼ି ଶିଖାଇବା ଏବଂ ମିଶାଣ, ଫେଡ଼ାଣ, ଗୁଣନ ଓ ହରଣ ଆଦି ଶିକ୍ଷା ଦେବା ଏହାର ମୁଖ୍ୟ ଲକ୍ଷ୍ୟ ହୋଇ ଉଠିଛି । ଏଥିପାଇଁ କୋଟି କୋଟି ଟଙ୍କା ଖର୍ଚ୍ଚ ହେଉଛି । ପ୍ରୌଢ଼ଶିକ୍ଷା

ନାମରେ ବହୁ ଅର୍ଥ ଅପବ୍ୟୟ ମଧ୍ୟ ହେଉଛି । ମାତ୍ର ସରକାର ନିଜ ଲକ୍ଷ୍ୟ ପୂରଣରେ ସଫଳ ହୋଇପାରି ନାହାନ୍ତି । ଗୋଟିଏ ଗଣତନ୍ତ୍ର ଦେଶରେ ସରକାରଙ୍କ ବିଭିନ୍ନ କାର୍ଯ୍ୟକ୍ରମ ସମ୍ପର୍କରେ ଅବଗତ ହେବା ଯେ କୌଣସି ଜଣେ ନାଗରିକଙ୍କର ପ୍ରଥମ କର୍ତ୍ତବ୍ୟ । ଜଣେ ଅଶିକ୍ଷିତ ବ୍ୟକ୍ତିଙ୍କର ମଧ୍ୟ ଅନୁରୂପ ଅଧିକାର ରହିଛି । ଦେଶର ପ୍ରଗତି ଓ ବିକାଶ ସାମୂହିକ ଜନସାଧାରଣଙ୍କର ଇଚ୍ଛା ଓ କାର୍ଯ୍ୟକାରିତା ଶକ୍ତି ଉପରେ ବହୁପରିମାଣରେ ନିର୍ଭର କରେ । ଯେଉଁମାନେ ଯୌବନ ସମୟ ଅତିକ୍ରମ କରି ପ୍ରୌଢ଼ାବସ୍ଥାରେ ପହଞ୍ଚିଛନ୍ତି, ସମାଜରେ ସେମାନଙ୍କର ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ରହିଛି । ପିଲାମାନଙ୍କୁ ବିଭିନ୍ନ ବିଷୟରେ ଶିକ୍ଷା ପ୍ରଦାନ କରି ସେମାନଙ୍କ ଦୃଷ୍ଟିର ଦିଗ୍‌ବଳୟକୁ ଅଧିକ ସମ୍ପ୍ରସାରିତ କରିବା ସେମାନଙ୍କର କର୍ତ୍ତବ୍ୟ । ମାତ୍ର ଯେତେବେଳେ ସେମାନେ ନିଜେ ନିରକ୍ଷର, ସରକାର ତଥା ଦେଶବିଦେଶର ବିଭିନ୍ନ ଖବର ରଖିବାକୁ ଅସମର୍ଥ, ତାଙ୍କଠାରୁ ଏ ଦେଶର ଭବିଷ୍ୟତ ନାଗରିକ କି ପ୍ରକାର ଶିକ୍ଷା ଲାଭ କରିବ ? ପୁନରାୟ କୃଷି ତଥା ଗ୍ରାମମାନଙ୍କର ବିକାଶ ନିମିତ୍ତ ସରକାରୀ ସ୍ତରରେ ବିଭିନ୍ନ ଯୋଜନା ଓ କାର୍ଯ୍ୟକ୍ରମ ଗ୍ରହଣ କରାଯାଉଛି । ଅନେକ ସମୟରେ ଏହି ପ୍ରୌଢ଼ମାନଙ୍କର ଅଜ୍ଞତାର ସୁଯୋଗ ନେଇ ଯୋଜନାଧିକାରୀମାନେ ଅର୍ଥ ଆତ୍ମସାତ୍ କରିଥାନ୍ତି । ବିକାଶ ପାଇଁ ଆସିଥିବା ବହୁ ଅର୍ଥ ବାଟମାରଣା ହୋଇଯାଏ । ତେଣୁ ସରକାରଙ୍କ ଯୋଜନା ଓ ବିକାଶମୂଳକ କାର୍ଯ୍ୟକ୍ରମ କେବଳ କାଗଜପତ୍ର ଓ ନାଲିଫିତା ମଧ୍ୟରେ ରହିଯାଇଥାଏ । ସରକାରଙ୍କ ଯୋଜନା ଓ ବିକାଶମୂଳକ କାର୍ଯ୍ୟକ୍ରମ ସମ୍ବନ୍ଧରେ ସଚେତନ କରାଇବା ପାଇଁ ତଥା ଶିକ୍ଷାର ବିକାଶ ଉଦ୍ଦେଶ୍ୟରେ ପଞ୍ଚମ ଯୋଜନା କାଳରେ ଭାରତରେ ପ୍ରୌଢ଼ଶିକ୍ଷା କାର୍ଯ୍ୟକ୍ରମ ଗ୍ରହଣ କରାଯାଇଥିଲା ।

ସମଗ୍ର ବିଶ୍ୱରେ ଭାରତର ନିରକ୍ଷର ସଂଖ୍ୟା ସର୍ବାଧିକ । ଗୋଟିଏ ଗଣତନ୍ତ୍ର ଦେଶରେ ପ୍ରତ୍ୟେକ ନାଗରିକଙ୍କୁ ଶିକ୍ଷା ପ୍ରଦାନ କରିବା ରାଷ୍ଟ୍ରର ପ୍ରଧାନ କର୍ତ୍ତବ୍ୟ । ଅଶିକ୍ଷା ବା ନିରକ୍ଷରତା ଯୋଗୁଁ କୁସଂସ୍କାର ଓ ଅନ୍ଧବିଶ୍ୱାସ ବୃଦ୍ଧିପାଏ । ଦେଶର ପ୍ରଗତି ବାଧାପ୍ରାପ୍ତ ହୁଏ । ମହାତ୍ମାଗାନ୍ଧି ଭାରତର ପ୍ରତିଟି ଜନସାଧାରଣଙ୍କୁ ଶିକ୍ଷା ଯୋଗାଇ ଦେବାର ପକ୍ଷପାତି ଥିଲେ । ଗାନ୍ଧିଜୟନ୍ତୀ ଦିବସରେ (ଅକ୍ଟୋବର ୨) ୧୯୭୮ ମସିହାଠାରୁ ପ୍ରୌଢ଼ଶିକ୍ଷା କାର୍ଯ୍ୟକ୍ରମ ସରକାର ପ୍ରବର୍ତ୍ତନ କଲେ । ୧୯୮୬ ମସିହାରେ ରାଷ୍ଟ୍ରୀୟ ଶିକ୍ଷାନୀତି କାର୍ଯ୍ୟକାରୀ କରାଗଲା । ୧୯୮୮ ମସିହାରେ (ମେ ୫ ତାରିଖ) ରାଷ୍ଟ୍ରୀୟ ବା ଜାତୀୟ ସାକ୍ଷରତା ମିଶନ ଗଠନ କରାଗଲା । ଏଥିରେ ମୁଖ୍ୟତଃ ୬ ବର୍ଷରୁ ୧୪ ବର୍ଷ ମଧ୍ୟରେ ପିଲାଙ୍କୁ ପ୍ରାଥମିକ ଶିକ୍ଷା ଓ ୧୫ ବର୍ଷ ଠାରୁ ୩୫ ବର୍ଷ ମଧ୍ୟରେ ବ୍ୟକ୍ତିମାନଙ୍କୁ ସାକ୍ଷର କରିବା ନିମିତ୍ତ ବିଭିନ୍ନ କାର୍ଯ୍ୟକ୍ରମମାନ ପ୍ରସ୍ତୁତ କରାଗଲା । ସପ୍ତମ ଯୋଜନାରେ ପ୍ରୌଢ଼ଶିକ୍ଷା କାର୍ଯ୍ୟକ୍ରମ ପାଇଁ ଛଅଶହ କୋଟି ଟଙ୍କା ଅର୍ଥ ବରାଦ କରାଗଲା । ରାଜନୀତିକ ଉଦ୍ଦେଶ୍ୟ ସାଧନ ପାଇଁ ଏହି କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଇଥିବାରୁ ଏହା ବହୁପରିମାଣରେ ଅସଫଳ ହେଲା ବୋଲି କେତେକ ମତପ୍ରଦାନ କରନ୍ତି । ୧୯୯୦ ମସିହାରେ ଗଠନ କରାଯାଇଥିବା ଆଚାର୍ଯ୍ୟ ରାମମୂର୍ତ୍ତି କମିଟି ଏହି ଶିକ୍ଷା କାର୍ଯ୍ୟକ୍ରମର କେତେକ ତ୍ରୁଟି ବିଚ୍ୟୁତି ଦର୍ଶାଇଥିଲେ । ୧୯୯୪ ମସିହାରେ ଗଠିତ ହୋଇଥିବା ଅରୁଣ ଘୋଷ କମିଟି ମଧ୍ୟ

ଏହାର କେତେକ ଦୋଷତ୍ରୁଟି ନିର୍ଦ୍ଦେଶ କରିବା ସଙ୍ଗେ ସଙ୍ଗେ ବ୍ୟୟ କରାଯାଇଥିବା ଅର୍ଥ ଠିକ୍ ବାଟରେ ଉପଯୋଗ ହୋଇ ନାହିଁ ବୋଲି ସନ୍ଦେହ ପ୍ରକାଶ କରିଛନ୍ତି । ଯେଉଁ ପଦାଧିକାରୀଗଣ ଏହାର ଦାୟିତ୍ୱରେ ରହିଛନ୍ତି, ସେମାନେ ଠିକ୍ ଭାବେ ନିଜର କାର୍ଯ୍ୟ ସାଧନ କରି ନାହାନ୍ତି । ରାଜନୈତିକ ବ୍ୟକ୍ତିବିଶେଷ ଆନ୍ତରିକତାର ସହିତ ଏହି କାର୍ଯ୍ୟକ୍ରମର ସଫଳତା ନିମିତ୍ତ ଆଦୌ ଦୃଷ୍ଟି ଦେଇ ନାହାନ୍ତି । ବାହ୍ୟ ପ୍ରଚାର ଉଦ୍ଦେଶ୍ୟରେ ଏହାକୁ ଏକ ମହତ୍ କାର୍ଯ୍ୟ ବୋଲି କହିବୁଲୁଥିଲେ ହେଁ ରାଜନୈତିକ ଅଭିସନ୍ଧି ନେଇ ଏହାର ଅସଫଳତା କାମନା କରିଛନ୍ତି । ସାମାଜିକ ଦୃଷ୍ଟିକୋଣରୁ ବିଚାର କଲେ ପ୍ରୌଢ଼ଶିକ୍ଷାର ବହୁ ଉପକାର ଦିଗ ରହିଛି । ଆମର ପ୍ରାଚୀନପନ୍ଥୀ ବହୁପରିମାଣରେ କୁସଂସ୍କାର ଓ ଅନ୍ଧବିଶ୍ୱାସର ବଶବର୍ତ୍ତୀ । ଶିକ୍ଷାର ଜ୍ଞାନାଲୋକ କୁସଂସ୍କାର ଦୂର କରିଥାଏ । ପ୍ରୌଢ଼ମାନେ ଗ୍ରାମର ମୁରବି । ସେମାନଙ୍କ ମନରୁ ଅନ୍ଧବିଶ୍ୱାସ ଦୂର ହୋଇଗଲେ ସମାଜ ଜୀବନରୁ ଏହିପରି କୁସଂସ୍କାର ଆପେ ଆପେ ଦୂର ହୋଇଯିବ । ସମାଜକୁ ସେମାନେ ନୂଆ ଦୃଷ୍ଟିରେ ଦେଖିବେ । ହଇଜା ବା ବସନ୍ତ ଠାକୁରାଣୀ ନ ହୋଇ ଏକ ରୋଗ ବୋଲି ଜାଣିବେ । ପଣା ବା ଭୋଗ ପରିବର୍ତ୍ତେ ଔଷଧ ଖାଇବେ । ଅଜ୍ଞାନତା ଦୂରହେବ । ସରକାର ବିଭିନ୍ନ କାର୍ଯ୍ୟକ୍ରମ ସମ୍ବନ୍ଧରେ ଜ୍ଞାନଲାଭ କରି ତା'ର ସଫଳ ରୂପାୟନ ଦିଗରେ ଧ୍ୟାନ ନିବେଶ କରିବେ । ଅସାଧୁ ପଦାଧିକାରୀମାନଙ୍କର ସମାଜବିରୋଧୀ କାର୍ଯ୍ୟର ପ୍ରତିବାଦ କରିପାରିବେ । ଉପଯୁକ୍ତ ବିଚାର କରିପାରିବେ । ଗ୍ରାମର ବହୁ ସମସ୍ୟା ସେମାନଙ୍କ ଦ୍ୱାରା ସମାଧାନ ହୋଇପାରିବ ।

ଭାରତରେ ବିଭିନ୍ନ ଯୋଜନାରେ ପ୍ରୌଢ଼ଶିକ୍ଷା ପାଇଁ ପ୍ରଚୁର ଅର୍ଥ ବ୍ୟୟ ବରାଦ ହୋଇଛି । ଦଶମ ଯୋଜନା କାଳରେ ଆହୁରି ଅଧିକ ଅର୍ଥ ବ୍ୟୟବରାଦ ହେବ । ଏହା ସତ୍ତ୍ୱେ ପ୍ରୌଢ଼ଶିକ୍ଷା କାର୍ଯ୍ୟକ୍ରମ ଯେଉଁ ପରିମାଣରେ ସଫଳ ହେବା କଥା, ତାହା ହୋଇପାରୁ ନାହିଁ । ବାସ୍ତବରେ ପିଲାମାନଙ୍କ ଦ୍ୱାରା ଅକ୍ଷର ଶିକ୍ଷା ଯେଉଁପରିମାଣରେ ସହଜ, ପ୍ରୌଢ଼ମାନଙ୍କ କ୍ଷେତ୍ରରେ ତାହା ସେପରି ସହଜ ନୁହେଁ । ବାଧବାଧକତାରେ କୌଣସି ପାଠପଢ଼ା ହୋଇପାରେ ନାହିଁ । ଯେଉଁ ଶିକ୍ଷାଅଧିକାରୀ ବା ଶିକ୍ଷକ ପ୍ରୌଢ଼ମାନଙ୍କର ଶିକ୍ଷା ଦାୟିତ୍ୱ ଗ୍ରହଣ କରିଥାନ୍ତି, ଜଣେ ପ୍ରୌଢ଼ଙ୍କୁ ଶିକ୍ଷା ଦେବାପାଇଁ ଯେତିକି ଧୈର୍ଯ୍ୟ ଆବଶ୍ୟକ, ତାହା ତାଙ୍କର ନ ଥାଏ । ପ୍ରୌଢ଼ଶିକ୍ଷା ନିମିତ୍ତ ସେମାନଙ୍କୁ ଯେଉଁପରିମାଣର ଅର୍ଥ ଦିଆଯାଏ, ତାହା ଅତି ସାମାନ୍ୟ । ତେଣୁ ଜଣେ ଶିକ୍ଷକର ଶିକ୍ଷାଦାନରେ ଯେଉଁ ପରିମାଣରେ ଆନ୍ତରିକତା ରହିବା କଥା ତାହା ରହିପାରୁ ନ ଥିବାରୁ ଏହି କାର୍ଯ୍ୟକ୍ରମ ସଫଳ ହୋଇପାରୁ ନାହିଁ । ପୁନରାୟ ଯେଉଁମାନେ ଏହି ଶିକ୍ଷାର ଦାୟିତ୍ୱରେ ଅଛନ୍ତି, ସେମାନେ ଯଥାସମୟରେ ପରିଦର୍ଶନ କରୁନାହାନ୍ତି କିମ୍ବା ଯେଉଁ ଆନୁସାଙ୍ଗିକ ଉପାଦାନ ଯୋଗାଇ ଦେବା କଥା ତାହା ଯୋଗାଇ ଦେଉ ନାହାନ୍ତି । 'ପ୍ରୌଢ଼ ଶିକ୍ଷାକେନ୍ଦ୍ର' ମୁଖ୍ୟତଃ ରାତ୍ରି ସମୟରେ ଚାଲିଥାଏ । ଯେଉଁ ପ୍ରୌଢ଼ମାନେ ଦିବସସାରା ପରିଶ୍ରମ କରି ଆସିଥାନ୍ତି, ରାତ୍ରି ହେବା ମାତ୍ରେ ଅକ୍ଷର ଶିକ୍ଷା ଅପେକ୍ଷା ବିଶ୍ରାମର ପ୍ରୟୋଜନ ସେମାନଙ୍କ ନିକଟରେ ଅଧିକ ଅନୁଭୂତ ହୋଇଥାଏ । ତେଣୁ ପାଠ ପଢ଼ିବା ପ୍ରତି ଗୁରୁତ୍ୱ ନ ଦେଇ ବିଶ୍ରାମ ପ୍ରତି ଅଧିକ ଗୁରୁତ୍ୱ ଦେଉଥିବାରୁ ଏହି କାର୍ଯ୍ୟକ୍ରମ ସଫଳ ହୋଇପାରୁ ନାହିଁ । ବହୁ ସମୟରେ ଶିକ୍ଷକ, ନିର୍ଦ୍ଦେଶକ ଓ ପ୍ରୌଢ଼ ଶିକ୍ଷାକେନ୍ଦ୍ର ମଧ୍ୟରେ

ଠିକ୍ ଯୋଗସୂତ୍ର ସ୍ଥାପିତ ହୋଇ ପାରୁନଥିବାରୁ ଏହା ବିଫଳ ହେଉଛି । ଜନସଚେତନତା ସୃଷ୍ଟି ନ ହେଲେ କିମ୍ବା ପ୍ରୌଢ଼ମାନେ ଏହାର ଗୁରୁତ୍ୱ ନିଜେ ହୃଦୟଙ୍ଗମ ନ କଲେ ତଥା ସବୁସ୍ତରରେ ଆନ୍ତରିକ ଉଦ୍ୟମ ଜାରି ନ ରହିଲେ ପ୍ରୌଢ଼ଶିକ୍ଷା ପାଇଁ ଯେତେ ଅର୍ଥ ବରାଦ କଲେ ମଧ ତାହା ସଫଳ ହୋଇପାରିବ ନାହିଁ ।

ସାକ୍ଷରତା ଉଦ୍ଦେଶ୍ୟରେ ସରକାର ପ୍ରୌଢ଼ଶିକ୍ଷା କାର୍ଯ୍ୟକ୍ରମରେ ଯେଉଁପରିମାଣ ଅର୍ଥ ଖର୍ଚ୍ଚ କରୁଛନ୍ତି, ତାହାକୁ ପ୍ରାଥମିକ ଶିକ୍ଷାକ୍ଷେତ୍ରରେ ବିନିଯୋଗ କଲେ ସରକାର ନିଶ୍ଚିତ ଭାବରେ ଅଧିକ ସାକ୍ଷର ଲାଭ କରିପାରନ୍ତେ । ପୁନରାୟ ଶିକ୍ଷାର ଅର୍ଥକୁ କେବଳ ଅକ୍ଷର ଶିକ୍ଷା ମଧ୍ୟରେ ଆବଦ୍ଧ କରିଦେଲେ ପ୍ରକୃତ ଶିକ୍ଷାର ମହତ୍ତ୍ୱ ହାନି ହୋଇଥାଏ । ଶିକ୍ଷା ଗ୍ରହଣରେ ନିର୍ଦ୍ଦିଷ୍ଟ ବୟସ ନ ଥିଲେହେଁ ମାନସିକତାର ପ୍ରୟୋଜନ ରହିଛି । ତେଣୁ ଜଣକର ମାନସିକ ଅବସ୍ଥାକୁ ଲକ୍ଷ୍ୟରଖି ଶିକ୍ଷାଦାନରେ ତାକୁ ପ୍ରବୃତ୍ତ କରାଇପାରିଲେ ଶିକ୍ଷାଦାନ ସଫଳ ହୋଇଥାଏ । କେବଳ ସରକାରଙ୍କ ଅର୍ଥକୁ ଖର୍ଚ୍ଚ କରିବା ପାଇଁ କାର୍ଯ୍ୟକ୍ରମ ଗ୍ରହଣ କଲେ ତାହା କେବେ ସଫଳ ହୋଇପାରେ ନାହିଁ । ବର୍ତ୍ତମାନ ଭାରତରେ ପ୍ରୌଢ଼ଶିକ୍ଷା ଠିକ୍ ଏହି ଅବସ୍ଥାରେ ପହଞ୍ଚିଛି । ସରକାର ଚାହୁଁଛନ୍ତି ପ୍ରୌଢ଼ମାନେ ସାକ୍ଷର ହୁଅନ୍ତୁ, କେନ୍ଦ୍ର ପରିଚାଳକ ଏବଂ ଦାୟିତ୍ୱରେ ଥିବା ପଦାଧିକାରୀ ଚାହୁଁଛନ୍ତି ସରକାରଙ୍କ ଅର୍ଥ ଖର୍ଚ୍ଚ ହେଉ । ଶିକ୍ଷାର ପ୍ରକୃତ ଉଦ୍ଦେଶ୍ୟ ଏହାଦ୍ୱାରା ସାଧିତ ହେଉନଥିବାରୁ ପ୍ରୌଢ଼ଶିକ୍ଷା କାର୍ଯ୍ୟକ୍ରମ ବିଫଳତାରେ ପର୍ଯ୍ୟବସିତ ହେଉଛି । ଶିକ୍ଷା ଏକ ନିରବଛିନ୍ନ ପ୍ରକ୍ରିୟା । ଆଜି ଅକ୍ଷର ଶିକ୍ଷା କରିବା ପରେ ମଝିରେ କିଛି ବ୍ୟବଧାନ ଦେଇଦେଲେ ପୁଣି ଅକ୍ଷର ଭୁଲି ହୋଇଯିବ । ଅର୍ଥ, ସମୟ ଖର୍ଚ୍ଚ କରି ମଧ ଯେଉଁ ନିରକ୍ଷରକୁ ସେହି ନିରକ୍ଷର । ତେଣୁ ସରକାର କୌଣସି କାର୍ଯ୍ୟକ୍ରମ ଗ୍ରହଣ କରିବା ପୂର୍ବରୁ ବୁଝି ବିଚାରି କରିବା ଉଚିତ । ଯୋଜନା ପ୍ରସ୍ତୁତ କରିଦେବା ବହୁତ ସହଜ ମାତ୍ର ତାକୁ କାର୍ଯ୍ୟକାରୀ କରିବା ବହୁତ କଠିନ । ପ୍ରୌଢ଼ଶିକ୍ଷା ନିମିତ୍ତ ନିଯୁକ୍ତ ଶିକ୍ଷକ, ନିର୍ଦ୍ଦେଶକ ଓ ପରିଚାଳକ ଆନ୍ତରିକତାର ସହିତ କାର୍ଯ୍ୟ କରୁ ନ ଥିବାରୁ ସେମାନଙ୍କ ପ୍ରତି କଠୋର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ଆବଶ୍ୟକ । ଏହାର ସାମାଜିକ ଦିଗ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ହୋଇଥିବାରୁ ସମସ୍ତେ ପୂର୍ଣ୍ଣପ୍ରାଣରେ ସହଯୋଗ ପ୍ରଦାନ କଲେ ପ୍ରୌଢ଼ଶିକ୍ଷା କାର୍ଯ୍ୟକ୍ରମ ନିଶ୍ଚିତ ସଫଳ ହୋଇପାରିବ ।

ପ୍ରୌଢ଼ଶିକ୍ଷା କାର୍ଯ୍ୟକ୍ରମରେ ସରକାର ଯେଉଁ ପରିମାଣରେ ଲେଖା ଓ ପଢ଼ା ଉପରେ ଗୁରୁତ୍ୱ ଦେଉଛନ୍ତି, ତାହା ବାସ୍ତବରେ ଯଥେଷ୍ଟ ନୁହେଁ । ଏହାଦ୍ୱାରା ସରକାରଙ୍କର ପ୍ରକୃତ ଉଦ୍ଦେଶ୍ୟ ସାଧିତ ହୋଇପାରିବ ନାହିଁ । କୋଠାଘର ମଧ୍ୟରେ ବସି ଯୋଜନା ପ୍ରସ୍ତୁତ କରିଦେଲେ ଚଳିବ ନାହିଁ । ପ୍ରକୃତ ସ୍ଥାନକୁ ଆସି ସର୍ବେକ୍ଷଣ ପୂର୍ବକ ବାସ୍ତବତାକୁ ଆଖି ଆଗରେ ରଖି କାର୍ଯ୍ୟକ୍ରମ ପ୍ରସ୍ତୁତ କଲେ, ସରକାରଙ୍କ ଉଦ୍ଦେଶ୍ୟ କିଛି ପରିମାଣରେ ସଫଳ ହୋଇପାରିବ । ପଞ୍ଚମ ଯୋଜନାରେ ଯେଉଁ ଉଦ୍ଦେଶ୍ୟରେ ପ୍ରୌଢ଼ଶିକ୍ଷା କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଇଥିଲା, ବର୍ତ୍ତମାନ ତାହା ଅନ୍ୟ ଅର୍ଥରେ ଗୃହୀତ ହୋଇଛି । କେବଳ ସାମାନ୍ୟ ଲେଖାପଢ଼ା ପ୍ରୌଢ଼ଶିକ୍ଷା କାର୍ଯ୍ୟକ୍ରମ ସଫଳ ହୋଇଛି ବୋଲି ସରକାର ଆତ୍ମସନ୍ତୋଷ ଲାଭ କରୁଛନ୍ତି । ମାତ୍ର ଏହାଦ୍ୱାରା ଲାଭ ଅପେକ୍ଷା

କ୍ଷତି ଅଧିକ । ଭାରତର କୋଟି କୋଟି ଗରିବଙ୍କ ଅର୍ଥକୁ ଏପରି ଅପବ୍ୟୟ କରିବାର କୌଣସି ଅଧିକାର ସରକାରଙ୍କର ନାହିଁ । ଯଦି ପ୍ରକୃତରେ ସରକାର ଆନ୍ତରିକତାର ସହିତ ଏହାର ସଫଳତା କାମନା କରୁଥାନ୍ତି, ତେବେ ଜାତୀୟସ୍ତରଠାରୁ ଆରମ୍ଭ କରି ପଞ୍ଚାୟତସ୍ତର ପର୍ଯ୍ୟନ୍ତ ଏକ ପରିବର୍ତ୍ତନର ବାତାବରଣ ସୃଷ୍ଟି କରନ୍ତୁ ଏବଂ ସମସ୍ତଙ୍କର ସହଯୋଗ ନେଇ ଏହି କାର୍ଯ୍ୟରେ ଆଗେଇଯାଆନ୍ତୁ ।

●

# ମାତୃଭାଷାରେ ଶିକ୍ଷାଦାନ

**(ଉପକ୍ରମ, ଶିକ୍ଷାକ୍ଷେତ୍ରରେ ମାତୃଭାଷାର ଗୁରୁତ୍ୱ, ପ୍ରାଚୀନ ଭାରତରେ ଶିକ୍ଷାଦାନର ମାଧ୍ୟମ, ଇଂରାଜୀ ଶିକ୍ଷାର ପ୍ରାଧାନ୍ୟ ଓ ଶିକ୍ଷାଦାନ ମାଧ୍ୟମ, ସ୍ୱାଧୀନତା ପରବର୍ତ୍ତୀ ସମୟରେ ଆଞ୍ଚଳିକ ଭାଷାର ଗୁରୁତ୍ୱ, ଆଞ୍ଚଳିକ ଭାଷା ସମ୍ବନ୍ଧରେ ଅନୁକୂଳ ଓ ପ୍ରତିକୂଳ ମତ, ଉପସଂହାର)**

ମାତୃଭୂମି ମାତୃଭାଷାରେ ମମତା ଯା ହୃଦେ ଜନମି ନାହିଁ
ତାକୁ ଯେବେ ଜ୍ଞାନୀ ପଣରେ ଗଣିବା ଅଜ୍ଞାନ ରହିବେ କାହିଁ ? (ଗଙ୍ଗାଧର)

ଶିଶୁଟିର ବଞ୍ଚିରହିବା ପାଇଁ ମାତା କ୍ଷୀରର ଯେପରି ଆବଶ୍ୟକତା ରହିଛି, ଭାବପ୍ରକାଶ ପାଇଁ ମାତୃଭାଷାର ମଧ୍ୟ ଅନୁରୂପ ଆବଶ୍ୟକତା ରହିଛି । ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ମାତୃଭାଷା ମାନବର ସହଚର । ସଭ୍ୟତାର ପ୍ରାକ୍ କାଳରେ ମଣିଷର ଭାଷା କ'ଣ ଥିଲା, ତାହା ଏବେବି ଏକ ବିବଦମାନ ବିଷୟ । ସଭ୍ୟତାର ଆଲୋକ ଦେଖିବା ପରେ ସେ ଚତୁର୍ଦ୍ଦିଗରେ ଯାହା ଶୁଣିବାକୁ ପାଇଲା, ତାହାହିଁ ତା'ର ହେଲା ନିଜର ଭାଷା । ଶିଶୁ ପ୍ରଥମ ଆଖି ମେଲାଇ ଦେଖିଲା ତା'ର ଜନ୍ମଦାତ୍ରୀ ମା'କୁ । ପ୍ରଥମ କଥା କହିବାକୁ ଶିଖିବା ସମୟରେ ପ୍ରଥମ ପରିଚୟ ପାଇଲା ମାତୃଭାଷାର । ତା'ର ଶରୀରର ପୁଷ୍ଟି ପାଇଁ ମାତାକ୍ଷୀରର ଅତ୍ୟାବଶ୍ୟକ ଉପାଦାନ ପରି ଭାବର ପରିପୁଷ୍ଟ ପାଇଁ ମାତୃଭାଷାର ଆବଶ୍ୟକ ଅନୁଭୂତ ହେଲା । ଭାବପ୍ରକାଶର ମାଧ୍ୟମ ଭାଷା ଓ ସେହି ଭାଷା ହିଁ ତା'ର ମାତୃଭାଷା । ମାଟି, ପାଣି, ପବନ ପରି ମାତୃଭାଷା ମଧ୍ୟ ଅତି ନିବିଡ଼ । ମଣିଷ ମାତୃଭାଷା ମାଧ୍ୟମରେ ନିଜକୁ ଯେପରି ପ୍ରକାଶ କରିପାରେ, ଅନ୍ୟ ଭାଷା ମାଧ୍ୟମରେ ସେହିପରି ପ୍ରକାଶ କରିବା ଦୁଃସାଧ ବ୍ୟାପାର । ଜୀବନର ଉଷାକାଳରୁ ମଣିଷର ନିବିଡ଼ ପରିଚୟ ଏଥି ସହିତ । ସେଥିପାଇଁ ମାତୃଭାଷା ମାଧ୍ୟମରେ ଶିକ୍ଷାପ୍ରଦାନ ପାଇଁ ଗୁରୁତ୍ୱ ଆରୋପ କରାଯାଉଛି । ଭାବକୁ ସରଳ ଏବଂ ଭାଷାକୁ ସହଜ ଭାବରେ ପ୍ରକାଶ କରିବା କ୍ଷେତ୍ରରେ ମାତୃଭାଷା ସହିତ ଅନ୍ୟ କୌଣସି ଭାଷାକୁ ତୁଳନା କରାଯାଇ ନ ପାରେ ।

ଶିଶୁଟିର ଜ୍ଞାନ ଉଦୟ ହେବା ପରଠାରୁ ମାତୃଭାଷା ସହିତ ପରିଚୟ ଲାଭ କରିଥାଏ । ମଣିଷର ସାମାଜିକ ଓ ସାଂସ୍କୃତିକ ଜୀବନ ସହିତ ଏହାର ଥାଏ ଅନ୍ତରଙ୍ଗ ପରିଚୟ । ପ୍ରତ୍ୟେକ ଭାବର ଅନ୍ତରଙ୍ଗ ପରିପ୍ରକାଶ ମାତୃଭାଷା ମାଧ୍ୟମରେ ହିଁ ସାଧିତ ହୋଇଥାଏ । ପ୍ରଥମେ ମଣିଷ

ଯାହା ଚିନ୍ତାକରେ ତା'ର ମାଧମ ମାତୃଭାଷା । ମାନସିକ ବିକାଶ କ୍ଷେତ୍ରରେ ଏହାର ଅବଦାନ ଅତୁଳନୀୟ । ଶିକ୍ଷାର ଉଦ୍ଦେଶ୍ୟ କୌଣସି ଏକ ନିର୍ଦ୍ଦିଷ୍ଟ ବିଷୟ ସମ୍ପର୍କରେ ପରିପୂର୍ଣ୍ଣ ଧାରଣା । ଏହି ଧାରଣା ସୃଷ୍ଟି ହୋଇଥାଏ ମାନସିକ ସ୍ତରରେ ଓ ଅବବୋଧ କଥା ପ୍ରକାଶ ଲାଭ କରେ ମାତୃଭାଷାରେ । ଅନ୍ତର୍ନିହିତ ଭାବର ସ୍ୱଚ୍ଛନ୍ଦ ପରିପ୍ରକାଶ କେବଳ ମାତୃଭାଷା ଦ୍ୱାରା ସମ୍ଭବ । ପ୍ରଥମେ ଏହି ଭାଷା ମାଧମରେ ଭାବ ସ୍ଥୂଳରୂପ ଗ୍ରହଣ କରିବା ପରେ କୃତ୍ରିମ ଢ଼ଙ୍ଗରେ ଅନ୍ୟ ଭାଷାରେ ପ୍ରକାଶ କରାଯାଇଥାଏ । ଶିଶୁ ଜନ୍ମଠାରୁ ଯେଉଁ ଭାଷା ପରିବାର ଏବଂ ପରିବେଶରୁ ଲାଭ କରିଥାଏ, ତାହାରି ମାଧମରେ ଶିକ୍ଷା ଲାଭ କଲେ ସହଜରେ ତା'ର ବୋଧଗମ୍ୟ ହୋଇଥାଏ । ଏହା ପ୍ରାକୃତିକ ଓ ଆବରଣହୀନ । ଭାବ ସମ୍ପ୍ରସାରଣ ଓ ଅବବୋଧ ଉଭୟ କ୍ଷେତ୍ରରେ ଏହାର ଉପାଦେୟତା ସ୍ୱୀକାର୍ଯ୍ୟ । ଅନ୍ୟ ଭାଷା ଶିକ୍ଷା କରି ତା' ମାଧମରେ ଭାବପ୍ରକାଶ କଲେ ଭାବର ସ୍ୱଚ୍ଛନ୍ଦ ବିଚରଣ ସାଧିତ ହୋଇପାରେ ନାହିଁ । ଶିକ୍ଷାର ମୌଳିକ ଉଦ୍ଦେଶ୍ୟ କେବଳ ମାତୃଭାଷା ଦ୍ୱାରା ହିଁ ସଫଳତା ଲାଭ କରେ । ଏହି କାରଣରୁ ମାତୃଭାଷା ଦ୍ୱାରା ଶିକ୍ଷାଦାନର ଉପାଦେୟତା ବହୁକାଳରୁ ସ୍ୱୀକୃତ ।

ଭାରତ ଏପରି ଏକ ଦେଶ, ଯେଉଁଠାରେ ବହୁ ଧର୍ମ, ସମ୍ପ୍ରଦାୟ, ବର୍ଣ୍ଣ ଏବଂ ଭାଷାର ଲୋକ ବସବାସ କରନ୍ତି । ଭୌଗୋଳିକ ପରିବେଶ ଏବଂ ଆଚାରପଦ୍ଧତି ମଧ ଭିନ୍ନ ଭିନ୍ନ । ସେଥିପାଇଁ ସମଗ୍ର ଭାରତବର୍ଷରେ ଗୋଟିଏ ଭାଷାରେ ବାକ୍ୟାଳାପ କରିବା ସମ୍ଭବପର ନୁହେଁ । ଭାରତରେ ପ୍ରାୟ ୧୮ଟି ଭାଷା ମୁଖ୍ୟ ଭାଷା ରୂପେ ବ୍ୟବହୃତ ହେଉଥିବା ସମୟରେ ୧୬୫୬ଟି କଥିତ ଭାଷା ରହିଛି । ଏହି କାରଣରୁ କୌଣସି ଗୋଟିଏ ଭାଷାକୁ ସମଗ୍ର ଭାରତର ଭାଷା ବୋଲି ଦାବି କରିବା କଷ୍ଟକର ବ୍ୟାପାର । ଭାରତ ସରକାର ସମ୍ବିଧାନରେ ହିନ୍ଦୀଭାଷାକୁ ରାଷ୍ଟ୍ରଭାଷାର ମର୍ଯ୍ୟାଦା ପ୍ରଦାନ କରିଥିଲେହେଁ, ଏହା ସର୍ବସମ୍ମତ ଭାଷା ରୂପେ ସ୍ୱୀକୃତି ଲାଭ କରିପାରି ନାହିଁ । ହିନ୍ଦୀ ଭାଷାକୁ ନେଇ ଉତ୍ତରଭାରତ ଓ ଦକ୍ଷିଣଭାରତରେ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଛି । ଅତୀତ ଭାରତରେ ଭାଷାକୁ ନେଇ କେବେ କଳହ ସୃଷ୍ଟି ହୋଇନ ଥିଲା । ଦେବଭାଷା ସଂସ୍କୃତ ଥିଲା ରାଷ୍ଟ୍ରଭାଷା । ସେହି ଭାଷା ମାଧମରେ ଶିକ୍ଷା ପ୍ରଦାନ କରାଯାଉଥିଲା । ଆଞ୍ଚଳିକ ଭାଷାର ଗୁରୁତ୍ୱ ଆଦୌ ନ ଥିଲା । ଦରବାର ତଥା ସାହିତ୍ୟାନୁଷ୍ଠାନମାନଙ୍କରେ ସଂସ୍କୃତରେ ଶାସ୍ତ୍ର ଚର୍ଚ୍ଚା ଚାଲିଥିଲା । ଭାରତରେ ହିନ୍ଦୁ ରାଜତ୍ୱ ଥିବା ପର୍ଯ୍ୟନ୍ତ ସଂସ୍କୃତ ହିଁ ଥିଲା ରାଷ୍ଟ୍ରଭାଷା, ସାହିତ୍ୟିକ ଭାଷାର ମାଧମ । ଦ୍ୱିତୀୟ ତିରୋରୀ ଯୁଦ୍ଧରେ ପୃଥ୍ୱୀରାଜ ଚୌହାନଙ୍କର ନିଧନ ପରେ ହିନ୍ଦୁ ରାଜତ୍ୱର ଅବସାନ ଘଟିଲା । ଭାଷାକୁ ନେଇ ସୃଷ୍ଟି ହେଲା ସଙ୍କଟ । ମୋଗଲ ଏବଂ ମୁସଲମାନମାନଙ୍କ ରାଜତ୍ୱରେ ପାର୍ଶୀ ବା ଉର୍ଦ୍ଦୁ ଭାଷାର ପ୍ରାଧାନ୍ୟ ବୃଦ୍ଧି ପାଇଲା । ସରକାରୀ ତଥା ଶିକ୍ଷାକ୍ଷେତ୍ରରେ ଏହାକୁ ରାଜଭାଷା ତଥା ଶିକ୍ଷାଦାନର ମାଧମ ରୂପେ ଗ୍ରହଣ କରାଗଲା । ମୁସଲମାନ ଶାସନର ଅବସାନ ପର୍ଯ୍ୟନ୍ତ ଏହି ପ୍ରକ୍ରିୟା ଭାରତରେ ଚାଲୁ ରହିଥିଲା । ମୁସଲମାନ ଶାସକମାନଙ୍କ ହାତରୁ ଭାରତର ଶାସନ କ୍ଷମତା ଇଂରେଜମାନେ ଗ୍ରହଣ କରିବା ପରେ ନିଜ ଭାଷାର ପ୍ରଚାର ଓ ପ୍ରସାର ପାଇଁ ଗୁରୁତ୍ୱ ପ୍ରଦାନ କଲେ । ରକ୍ଷଣଶୀଳ ଭାରତୀୟ

ପ୍ରଥମେ ଇଂରାଜୀ ଭାଷାକୁ ଗ୍ରହଣ କରିବାକୁ କୁଣ୍ଠା ପ୍ରକାଶ କରିଥିଲେହେଁ, ପଦମର୍ଯ୍ୟାଦା, ସାମାଜିକ ସମ୍ମାନ ତଥା ଚାକିରିର ଲୋଭନୀୟ ଆକର୍ଷଣ ଯୋଗୁଁ ଭାରତରେ ଇଂରାଜୀ ଭାଷାର ଚେର ଗଭୀରତର ହେବାକୁ ଲାଗିଲା । ଇଂରାଜୀ ସରକାରୀ ଭାଷା ରୂପେ ସ୍ୱୀକୃତି ଲାଭ କଲା । ବିଦ୍ୟାଳୟ, ମହାବିଦ୍ୟାଳୟ ସ୍ତରରେ ଇଂରାଜୀ ହେଲା ଶିକ୍ଷାର ମାଧ୍ୟମ । ଇଂରାଜୀ ଭାଷାର ପ୍ରସାର ଓ ପ୍ରାଧାନ୍ୟ ବଢ଼ିବା ସଙ୍ଗେ ସଙ୍ଗେ ଆଞ୍ଚଳିକ ଭାଷା ଗୌଣ ହୋଇଗଲା । ମୁଷ୍ଟିମେୟ ବ୍ୟକ୍ତି ଏହି ଭାଷାର ଅଧିକାରୀ ହୋଇଥିଲେହେଁ ରାଜଭାଷା ଯୋଗୁଁ ଏହାର ମର୍ଯ୍ୟାଦା ବୃଦ୍ଧି ପାଇଥିଲା । ପୁନଂରାୟ ଇଂରାଜୀ ଏକ ଆନ୍ତର୍ଜାତୀୟ ଭାଷାର ମର୍ଯ୍ୟାଦା ଲାଭ କରିଥିବାରୁ ଏହି ଭାଷାରେ ଶିକ୍ଷିତ ଯୁବକ ବିଭିନ୍ନ ଲୋଭନୀୟ ପଦ ପଦବୀରେ ଅଧିଷ୍ଠିତ ହୋଇପାରୁଥିଲେ । ଇଂରାଜୀ ଭାଷା ଶିକ୍ଷିତ ବ୍ୟକ୍ତିମାନଙ୍କର ସମାଜରେ ମଧ୍ୟ ଏକ ସ୍ୱତନ୍ତ୍ର ସ୍ଥାନ ରହିଥିଲା । ଭାରତୀୟମାନେ ଏହି ଭାଷା ମୋହରେ ନିଜର ଭାଷା, ସଂସ୍କୃତି ତଥା ଐତିହ୍ୟକୁ ବିସ୍ମୃତ ହେଲେ । ଇଂରାଜୀ ଭାଷା ଦ୍ୱାରା ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆସିଥିଲେ ମଧ୍ୟ ବୌଦ୍ଧିକ ବିକାଶ ହୋଇପାରି ନାହିଁ । ଏହା କେବଳ ପରମୁଖାପେକ୍ଷୀ ହେବାକୁ ଆମକୁ ବାଧ୍ୟ କରିଛି । ଭାରତ ସ୍ୱାଧୀନତା ଲାଭ କରିବା ପରେ ସମ୍ବିଧାନରେ ପନ୍ଦରଟି ଭାଷାକୁ ସ୍ୱୀକୃତି ପ୍ରଦାନ କରିବା ସଙ୍ଗେ ସଙ୍ଗେ ହିନ୍ଦୀକୁ ଜାତୀୟ ଭାଷାର ମର୍ଯ୍ୟାଦା ପ୍ରଦାନ କରିଛି । ତଥାପି ଇଂରାଜୀ ଏକ ସହଯୋଗକାରୀ ଭାଷାରୂପେ ବ୍ୟବହୃତ ହେବାର ବ୍ୟବସ୍ଥା ରହିଛି । ଏହା ସତ୍ତ୍ୱେ ପ୍ରତ୍ୟେକ ରାଜ୍ୟ ନିଜର ଆଞ୍ଚଳିକ ଭାଷାକୁ ଶିକ୍ଷାଦାନର ମାଧ୍ୟମ ରୂପେ ଗ୍ରହଣ କରିବାର ବ୍ୟବସ୍ଥା ରହିଛି ।

ଇଂରେଜମାନଙ୍କର ଭାରତ ଅଧିକାର, ଭାରତର ଇତିହାସକୁ ଏକ ନୂତନ ମୋଡ଼ ପ୍ରଦାନ କରିଥିଲା । ଶାସିତ ଉପରେ ପ୍ରାଧାନ୍ୟ ବିସ୍ତାର ପ୍ରତ୍ୟେକ ଶାସକର ଲକ୍ଷ୍ୟ । ଏହି ଲକ୍ଷ୍ୟ ସାଧନ ଉଦ୍ଦେଶ୍ୟରେ ସେ ବିଭିନ୍ନ ପ୍ରକାର ପଦକ୍ଷେପ ଗ୍ରହଣ କରିଥାଏ । ଭାରତରେ ଇଂରାଜୀ ଭାଷାର ପ୍ରସାର ମାଧ୍ୟମରେ ଇଂରେଜ ଜାତି ନିଜ ଶାସନର ମୂଳଦୁଆକୁ ମଜଭୁତ କରିବାକୁ ଚାହିଁଥିଲେ । ଏ କ୍ଷେତ୍ରରେ କେତେଜଣ ଦେଶୀୟ ବ୍ୟକ୍ତିଙ୍କ ସହଯୋଗ ସେମାନଙ୍କୁ ଅଧିକ ଉତ୍ସାହିତ କରିଥିଲା । ଇଂରାଜୀ ଶିକ୍ଷାର ଯଥାର୍ଥ ବିକାଶ ହୋଇପାରୁନଥିବାରୁ ଏଥିରେ ଅସନ୍ତୋଷ ପ୍ରକାଶ କରି ରାଜା ରାମମୋହନ ରାୟ ବଡ଼ଲାଟ ଲର୍ଡ଼ ଆମହଷ୍ଟଙ୍କ ନିକଟକୁ ଏକ ପତ୍ର ଲେଖିଥିଲେ । ରାମମୋହନଙ୍କ ପତ୍ର ମାଇକେଲଙ୍କ ଶିକ୍ଷା ପ୍ରସ୍ତାବର ମୂଳସୂତ୍ର । ଲର୍ଡ଼ ମାକଲେଙ୍କ ଶିକ୍ଷା ସମ୍ପର୍କୀୟ ପ୍ରସ୍ତାବ ୨.୨.୧୮୩୫ରେ ପ୍ରକାଶିତ ହେଲା । ସେହି ପ୍ରସ୍ତାବରେ ଉଲ୍ଲେଖ ଥିଲା, ଦେଶର ଇଂରେଜ ଶାସକ ଏବଂ ଶାସିତଙ୍କ ମଧ୍ୟରେ ଏପରି ଏକ ଶ୍ରେଣୀ ସୃଷ୍ଟି ହେବ, ଯେଉଁମାନେ ରକ୍ତ ଏବଂ ବର୍ଣ୍ଣରେ ଭାରତୀୟ ହେଲେହେଁ, ରୁଚି, ନୀତି, ମତ ଏବଂ ବୁଦ୍ଧିରେ ହେବେ ଇଂରେଜ । ୧୮୪୨ ମସିହାରେ Council of Education ଗଠିତ ହେଲା । ୧୮୪୪ ମସିହାରେ ଲର୍ଡ଼ ହାର୍ଡ଼ିଞ୍ଜ୍ ଇଂରାଜୀ ଭାଷାରେ ଶିକ୍ଷିତ ଯୁବକମାନଙ୍କୁ ସରକାରୀ ଚାକିରିରେ ନିଯୁକ୍ତି ଦେବାକୁ ଘୋଷଣା କରିବାରୁ ଏହି ଶିକ୍ଷା ପ୍ରତି ଭାରତୀୟମାନଙ୍କର

ବିଶେଷ ଆଗ୍ରହ ସୃଷ୍ଟି ହେଲା । ୧୮୫୪ରେ ଚାର୍ଲସ୍ ଉଡ୍‌ଙ୍କ ଦ୍ୱାରା 'ଉଡ୍‌ସ ଡେସପାଚ' ପ୍ରସ୍ତୁତ ହୋଇଥିଲା । ଶିକ୍ଷା ସଂକ୍ରାନ୍ତୀୟ ବହୁ ଗୁରୁତ୍ୱପୂର୍ଣ୍ଣ ନିର୍ଦ୍ଦେଶ ଏଥିରେ ରହିଥିବାରୁ ଏହାକୁ ଭାରତବର୍ଷୀୟ ଶିକ୍ଷା ସନନ୍ଦ କୁହାଯାଇଥାଏ । ୧୮୫୭ ମସିହାରେ ମାନ୍ଦ୍ରାଜ, କଲିକତା ଓ ବମ୍ବେରେ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେବାରୁ ଇଂରାଜୀ ଉଚ୍ଚଶିକ୍ଷା ନିମିତ୍ତ ପଥ ପରିଷ୍କାର ହୋଇଯାଇଥିଲା । ଫଳରେ ବହୁସଂଖ୍ୟକ ଭାରତୀୟ ଇଂରାଜୀ ଶିକ୍ଷାପ୍ରତି ଆଗ୍ରହ ପ୍ରକାଶ କଲେ ଓ ଦେଶୀୟ ଭାଷାର ପ୍ରସାର ବାଧାପ୍ରାପ୍ତ ହୋଇଥିଲା । ଇଂରାଜୀ ଶିକ୍ଷାର ବିସ୍ତାର ଦ୍ୱାର ଭାରତରେ ଏକ ମଧ୍ୟବିତ୍ତ ଇଂରାଜୀ ଗୋଷ୍ଠୀ ଆବିର୍ଭାବ ଲାଭ କଲେ । ଏହି ଶିକ୍ଷା ଦ୍ୱାରା ଦଳେ ବେତନଭୋଗୀ କର୍ମଚାରୀ ସୃଷ୍ଟି ହେଲେ, ଯେଉଁମାନେ ଭାରତୀୟ ସଂସ୍କୃତି ଏବଂ ପରମ୍ପରା ପ୍ରତି ଏକ ନେତିବାଚକ ଦୃଷ୍ଟିଭଙ୍ଗୀ ପ୍ରକାଶ କଲେ । ସ୍ୱାଧୀନତା ପରବର୍ତ୍ତୀ କାଳରେ ମଧ୍ୟ ଏପରି ମୋହରେ କୌଣସି ପରିବର୍ତ୍ତନ ହୋଇଛି ବୋଲି ମନେହୁଏ ନାହିଁ । ଇଂରାଜୀ ଶିକ୍ଷା ପ୍ରତି ଏକ ମୋହାସକ୍ତ ଆକର୍ଷଣ ଏହାର ମୂଳ କାରଣ ।

ସ୍ୱାଧୀନତା ଲାଭ କରିବା ପରେ ଭାରତୀୟ ଶିକ୍ଷାନୀତି ସମ୍ବନ୍ଧରେ ବହୁ ଆଲୋଚନା ହୋଇଛି । ସ୍ୱାଧୀନ ଭାରତର ସମ୍ବିଧାନ ୧୫ ବର୍ଷ ମଧ୍ୟରେ ଇଂରାଜୀ ପରିବର୍ତ୍ତେ ହିନ୍ଦୀକୁ ମୁଖ୍ୟ ଭାଷା ରୂପେ ଗ୍ରହଣ କରିବାକୁ ମତ ଦେଇଥିଲା । ରାଧାକ୍ରିଷ୍ଣନ୍ କମିଶନ (୧୯୪୮-୪୯) ମାଧ୍ୟମିକ ଏବଂ ବିଶ୍ୱବିଦ୍ୟାଳୟ ସ୍ତରରେ ତିନୋଟି ଭାଷା ଉପରେ ଗୁରୁତ୍ୱ ଆରୋପ କରିଥିଲେ । ଏଥିରେ ମାତୃଭାଷା ପ୍ରତି ବିଶେଷ ମହତ୍ତ୍ୱ ପ୍ରଦାନ କରାଯାଇଥିଲା । ମୁଦାଲିୟର କମିଶନ (୧୯୫୩) ହିନ୍ଦୀକୁ ପାଠ୍ୟକ୍ରମରେ ଗୁରୁତ୍ୱ ଦିଆଯିବା ବିଷୟ କହିବା ସଙ୍ଗେ ସଙ୍ଗେ ଇଂରାଜୀ ଭାଷାର ଗୁରୁତ୍ୱକୁ ଅସ୍ୱୀକାର କରିଥିଲେ । କୋଠାରୀ କମିଶନ (୧୯୬୪-୬୬) ତିନୋଟି ଭାଷାର ଗୁରୁତ୍ୱ ସମ୍ପର୍କରେ ସୁପାରିସ କରିଥିଲେ । ପ୍ରଥମତଃ ମାତୃଭାଷା ଦ୍ୱିତୀୟରେ ରାଷ୍ଟ୍ରଭାଷା ବା ହିନ୍ଦୀ ଏବଂ ଯେକୌଣସି ଗୋଟିଏ ଭାରତୀୟ ବା ପାଶ୍ଚାତ୍ୟ ଭାଷା । କମିଶନ ବିଜ୍ଞାନ ଏବଂ ପ୍ରଯୁକ୍ତିବିଦ୍ୟା ସମ୍ପର୍କୀୟ ପୁସ୍ତକ ଆଞ୍ଚଳିକ ଭାଷାରେ ରଚିତ ହେବା ଆବଶ୍ୟକ ବୋଲି ସୁପାରିସ କରିଥିଲେ । ସର୍ବଭାରତୀୟ ସ୍ତରରେ ଇଂରାଜୀ ଭାଷା ଶିକ୍ଷାର ମାଧ୍ୟମ ହେବା ଉଚିତ ବୋଲି ମତ ପ୍ରକାଶ ପାଇଥିଲା । ହିନ୍ଦୀ ଭାଷାକୁ ସବୁ ସ୍ତରରେ ପଠନ କରାଯିବା ଆବଶ୍ୟକ ବୋଲି କୁହାଯାଇଥିଲେ ହେଁ କାହା ଉପରେ ଏହି ଭାଷାକୁ ଜବରଦସ୍ତ ଲଦି ଦିଆଯାଇ ପାରିବ ନାହିଁ ବୋଲି ସୁପାରିସରେ କୁହାଯାଇଥିଲା । ଇଂରାଜୀ ଭାଷା ପ୍ରତି ଅକାରଣ ମୋହଯୋଗୁ ମାତୃଭାଷା ତା'ର ଗୁରୁତ୍ୱ ହରାଉଥିବାରୁ ମହାତ୍ମାଗାନ୍ଧି ଉଦ୍‌ବେଗ ପ୍ରକାଶ କରିଥିଲେ । ଯେକୌଣସି କଠିନ ବିଷୟକୁ ମାତୃଭାଷା ଦ୍ୱାରା ଯେପରି ଅବବୋଧ କରାଯାଇପାରେ, ଅନ୍ୟ କୌଣସି ଭାଷା ଦ୍ୱାରା ତାହା ସମ୍ଭବ ନୁହେଁ । ସେଥିପାଇଁ ସ୍ୱାଧୀନତା ପରବର୍ତ୍ତୀ ସମୟରେ ଆଞ୍ଚଳିକ ଭାଷାକୁ ଶିକ୍ଷାର ମାଧ୍ୟମ ରୂପେ ଗ୍ରହଣ କରାଯିବା ପାଇଁ ବିଭିନ୍ନ ସ୍ତରରେ ମତପ୍ରକାଶ ପାଇଥିଲା । ଜୀବରାମ ମେହେଟ୍ଟା ଏବଂ ଡଃ ସତ୍ୟେନ୍ ବୋଷ ଡାକ୍ତରୀବିଦ୍ୟା ଏବଂ ବିଜ୍ଞାନ ସମ୍ବନ୍ଧୀୟ ପାଠକୁ ମାତୃଭାଷା ମାଧ୍ୟମରେ ଶିକ୍ଷା ଦିଆଯାଇ ପାରିବ ବୋଲି ମତ ପ୍ରଦାନ କରିଥିଲେ ।

ଅବଶ୍ୟ ମାତୃଭାଷାରେ ଉପଯୁକ୍ତ ପାଠ୍ୟପୁସ୍ତକର ଅଭାବ ମାତୃଭାଷା ମାଧ୍ୟମରେ ଶିକ୍ଷାଦାନ ବ୍ୟବସ୍ଥାକୁ ବହୁକ୍ଷେତ୍ରରେ ବାଧା ଦେଇଛି । ମାତ୍ର ମାତୃଭାଷା ଦ୍ୱାରା ଯେକୌଣସି ବିଷୟ ଯେତେ ଶୀଘ୍ର ଛାତ୍ରଛାତ୍ରୀଙ୍କ ଦ୍ୱାରା ଗ୍ରହଣୀୟ ହୋଇଥାଏ, ବିଦେଶୀ ଇଂରାଜୀ ଭାଷାଦ୍ୱାରା ତାହା ସେପରି ଗ୍ରହଣୀୟ ହୋଇପାରି ନ ଥାଏ । ଭାରତୀୟଙ୍କ ଦ୍ୱାରା ଇଂରାଜୀ ଭାଷାକୁ ଶୀଘ୍ର ଆୟତ୍ତ କରିବା କଷ୍ଟକର ବ୍ୟାପାର । ଏବେ ମାତୃଭାଷା ମାଧ୍ୟମରେ ଶିକ୍ଷାଦାନ ଧୀରେ ଧୀରେ ଲୋକପ୍ରିୟ ହେଉଛି । ବିଜ୍ଞାନ, ବାଣିଜ୍ୟ, କଳା ଆଦିର ବହୁ ପାଠ୍ୟପୁସ୍ତକ ମାତୃଭାଷାରେ ପ୍ରକାଶ ଲାଭ କରିସାରିଲାଣି । ଭାବ ଆହରଣ କ୍ଷେତ୍ରରେ ମାତୃଭାଷା ଉପଯୁକ୍ତ ମାଧ୍ୟମ । ଇଂରାଜୀ ଭାଷା ଶିକ୍ଷାଦାନ ଭାରତ ମାଟିରେ ଭାରତୀୟଙ୍କୁ ବିଦେଶୀ କରିଦେଇଛି । ସେମାନଙ୍କର ବୌଦ୍ଧିକ ବିକାଶ ସାଧିତ ହୋଇପାରୁ ନାହିଁ କିମ୍ବା ସେମାନଙ୍କ ମଧ୍ୟରେ ମୌଳିକ ଚିନ୍ତାଧାରା ସୃଷ୍ଟିଲାଭ କରିପାରୁ ନାହିଁ । ତେଣୁ ୧୯୬୮ ମସିହାରେ ପାର୍ଲାମେଣ୍ଟରେ ମାତୃଭାଷା ମାଧ୍ୟମରେ ଶିକ୍ଷାଦାନ ପ୍ରସ୍ତାବଟି ଗୃହୀତ ହେବାପରେ ମାତୃଭାଷା ପ୍ରତି ଧୀରେ ଧୀରେ ଗୁରୁତ୍ୱ ବୃଦ୍ଧି ପାଇବାରେ ଲାଗିଛି ।

ଆଞ୍ଚଳିକ ଭାଷା ମାଧ୍ୟମରେ ଶିକ୍ଷାଦାନ ପଦ୍ଧତିକୁ ଯେଉଁମାନେ ବିରୋଧ କରନ୍ତି, ସେମାନଙ୍କର ମତ ହେଉଛି, ଏହାଦ୍ୱାରା ଆଞ୍ଚଳିକ ଗୁରୁତ୍ୱ ବୃଦ୍ଧିପାଇବ । ଦେଶର ସାର୍ବଭୌମତ୍ୱ ପ୍ରତି ବିପଦ ଦେଖାଦେବ । ଭାରତର ବିଭିନ୍ନ ଅଞ୍ଚଳର ଆଞ୍ଚଳିକ ଭାଷା ଭିନ୍ନ ହୋଇଥିବାରୁ ଜାତୀୟ ସଂହତି ସୁରକ୍ଷିତ ହୋଇପାରିବ ନାହିଁ । ଇଂରାଜୀ ଭାଷା ଶିକ୍ଷାର ମାଧ୍ୟମ ହେଲେ ସର୍ବଭାରତୀୟ ସ୍ତରରେ ଏକ ପ୍ରକାର ଶିକ୍ଷାନୀତି ପ୍ରଚଳିତ ହୋଇପାରିବ ଏବଂ ଶିକ୍ଷାଗତ ସଂହତି ସ୍ଥାପିତ ହୋଇପାରିବ । ଆଞ୍ଚଳିକ ଭାଷା ଅଞ୍ଚଳ ଅଞ୍ଚଳ ମଧ୍ୟରେ ସଂହତି ସୃଷ୍ଟି କରିପାରିବ ନାହିଁ । ଗୋଟିଏ ଅଞ୍ଚଳର ବ୍ୟକ୍ତିବିଶେଷ ଅନ୍ୟ ଅଞ୍ଚଳରେ ବିଦେଶୀ ହୋଇ ରହିଯିବେ ଏବଂ ଗୋଟିଏ ଦେଶର ଅଧିବାସୀ ହୋଇ ମଧ୍ୟ ଭାଷାକୁ ନେଇ ମତାନ୍ତର ଏବଂ ମନାନ୍ତର ସୃଷ୍ଟି ହେବାର ଅବକାଶ ରହିଛି । ଇଂରାଜୀ ଏକ ଆନ୍ତର୍ଜାତୀୟ ଭାଷା ହୋଇଥିବାରୁ ଏହାର ପରିସର ବ୍ୟାପକ । ଏହି ଭାଷାରେ ବିଶ୍ୱର ସମସ୍ତ ଉତ୍କୃଷ୍ଟ ପାଠ୍ୟପୁସ୍ତକ ରଚିତ । ଆଞ୍ଚଳିକ ଭାଷା ଦ୍ୱାରା ଶିକ୍ଷାଲାଭ କଲେ ଜଣେ ଭାରତୀୟ ଜ୍ଞାନବିଜ୍ଞାନ ଅଧ୍ୟୟନ ନିମିତ୍ତ ବିଦେଶକୁ ଯାଇପାରିବ ନାହିଁ । ପୁଣି କେତେକ ଶବ୍ଦ ରହିଛି ଯାହାକୁ ଆଞ୍ଚଳିକ ଭାଷାରେ ପ୍ରକାଶ କରାଯାଇ ନ ପାରେ । ଏ କ୍ଷେତ୍ରରେ ଗୁରୁତର ବିଭ୍ରାଟ ସୃଷ୍ଟି ହେବ । ଗୋଟିଏ ପ୍ରଦେଶରେ ଅନ୍ୟ ଭାଷାଭାଷୀ ବ୍ୟକ୍ତି ବାସ କରୁଥିଲେ ଆଞ୍ଚଳିକ ଭାଷାରେ ଶିକ୍ଷାଦାନ ସେମାନଙ୍କୁ ଅସୁବିଧାରେ ପକାଇବ । ସେଥିପାଇଁ ସର୍ବଭାରତୀୟ ସ୍ତରରେ ଗୋଟିଏ ଭାଷା ବା ଇଂରାଜୀ ଶିକ୍ଷାଦାନର ମାଧ୍ୟମ ହେବା ଉଚିତ ବୋଲି ଇଂରାଜୀ ସପକ୍ଷବାଦୀଙ୍କ ମତ । ଜାତୀୟବାଦୀଙ୍କ ମତରେ ଗୋଟିଏ ସ୍ୱାଧୀନ ଦେଶରେ ସ୍ୱାଧୀନ ଭାଷା ରହିବା ଆବଶ୍ୟକ । ଏହା ମଣିଷ ମନରେ ଜାତୀୟ ଉଦ୍ରେକ କରେ ଓ ପାଠ୍ୟଦାନ ପଦ୍ଧତିକୁ ସରଳ କରାଏ । ଗୋଟିଏ ବିଦେଶୀ ଭାଷା ଯୋଗୁଁ ମାତୃଭାଷା ଅବହେଳିତ ହେବା ଘୋର ଲଜ୍ଜାକର ବିଷୟ । ଦୁର୍ବୋଧତା ଦୂର ହୋଇ ଲୋକମାନଙ୍କୁ ଗୋଟିଏ ଭାଷାର ବନ୍ଧନ

ମଧ୍ୟରେ କେବଳ ମାତୃଭାଷା ଆବଦ୍ଧ କରିପାରେ । ପ୍ରତିଭାର ବିକାଶରେ ଏହା ସହାୟକ ହୋଇଥାଏ । ତେଣୁ ଆଞ୍ଚଳିକ ଭାଷା ମାଧ୍ୟମରେ ଶିକ୍ଷା ପ୍ରଦାନ ପଦ୍ଧତି ସମ୍ପର୍କରେ ଏହିପରି ଅନୁକୂଳ ଓ ପ୍ରତିକୂଳ ମନ୍ତବ୍ୟ ପ୍ରକାଶ ପାଇଥାଏ ।

ସେ ଯାହାହେଉନା କାହିଁକି ଆଞ୍ଚଳିକ ଭାଷାର ଗୁରୁତ୍ୱ ପ୍ରତି କ୍ଷେତ୍ରରେ ସ୍ୱୀକାର୍ଯ୍ୟ । ମାଧ୍ୟମିକ ସ୍ତର ଠାରୁ ବିଶ୍ୱବିଦ୍ୟାଳୟ ସ୍ତର ପର୍ଯ୍ୟନ୍ତ ଆଜି ମାତୃଭାଷା ମାଧ୍ୟମରେ ଶିକ୍ଷାଦାନ ପ୍ରଚଳିତ ହୋଇଛି । ଏହା ପ୍ରତି ଆଗ୍ରହ ମଧ୍ୟ ବୃଦ୍ଧି ପାଉଛି । ସ୍ୱାଧୀନ ଦେଶର ସ୍ୱାଧୀନ ଭାଷା ସ୍ୱାଭିମାନର ବିଷୟ । ଇଂରେଜ ଛାଡି ଚାଲିଯିବା ପରେ ସେମାନଙ୍କ ପ୍ରତି କୃତଜ୍ଞତା ପ୍ରକାଶ କରିବାର କୌଣସି କାରଣ ନାହିଁ । ଅବଶ୍ୟ ଭାରତରେ ଗୋଟିଏ ନିର୍ଦ୍ଦିଷ୍ଟ ଜାତୀୟ ଭାଷା ରହିବା ଉଚିତ । ଏହି ଭାଷା ମାଧ୍ୟମରେ ଭାରତର ବିଭିନ୍ନ ଅଞ୍ଚଳ ମଧ୍ୟରେ ସଂହତି ସ୍ଥାପିତ ହୋଇପାରିବ, ଏହା ସତ୍ତ୍ୱେ କୌଣସି କ୍ଷେତ୍ରରେ ଆଞ୍ଚଳିକ ଭାଷାର ଗୁରୁତ୍ୱକୁ ଅବହେଳା କରାଯିବା ଅନୁଚିତ । ଗୋଟିଏ ସ୍ୱାଧୀନ ଦେଶର ନାଗରିକ ଭାବେ ନିଜର ଆଞ୍ଚଳିକ ଭାଷାର ମହତ୍ତ୍ୱ ବୃଦ୍ଧି କରିବା ଆମ୍ଭମାନଙ୍କର ଏକ ନୈତିକ କର୍ତ୍ତବ୍ୟ ।



# ଶିକ୍ଷାରେ ସାହିତ୍ୟ ଓ ବିଜ୍ଞାନର ସ୍ଥାନ

**(ଉପକ୍ରମ, ଶିକ୍ଷାର ମୌଳିକ ଲକ୍ଷ୍ୟ ଓ ଉଦ୍ଦେଶ୍ୟ, ସାହିତ୍ୟ ପାଠର ଆବଶ୍ୟକତା, ବିଜ୍ଞାନର ଉଦ୍ଦେଶ୍ୟ, ସତ୍ୟ, ଶିବ ଓ ସୁନ୍ଦରର ସମନ୍ୱୟ ସାହିତ୍ୟ ଏବଂ ବିଜ୍ଞାନ, ଶିକ୍ଷା ସହିତ ସାହିତ୍ୟ ଓ ବିଜ୍ଞାନର ସମ୍ପର୍କ, ଉପସଂହାର)**

ଶିକ୍ଷାରେ ସାହିତ୍ୟ ଓ ବିଜ୍ଞାନର ସମ୍ପର୍କକୁ ନେଇ ଆଲୋଚକଙ୍କ ମଧ୍ୟରେ ମତଦ୍ୱୈଧ ଦେଖାଯାଏ । ଆଜିର ଜଗତ ବିଜ୍ଞାନର ଜଗତ । ବିଜ୍ଞାନ ବ୍ୟତିରେକେ ଗୋଟିଏ ମୁହୂର୍ତ୍ତ ଅତିବାହିତ କରିବା କୌଣସି ମଣିଷ ପକ୍ଷରେ ସମ୍ଭବ ନୁହେଁ । ମଣିଷ ଜୀବନକୁ ବିଜ୍ଞାନ ସମ୍ପୂର୍ଣ୍ଣ କବଳିତ କରିନେଇଛି । ତା'ର ଜୀବନକୁ କରିଛି ସରସ, ସୁନ୍ଦର ପୁଣି ନୃଶଂସ ଓ ଭୟଙ୍କର । ଧ୍ୱଂସ ଏବଂ ନୂତନ ସର୍ଜନକାରୀ ଭାବେ ବିଜ୍ଞାନ ଆଜି ଦ୍ୱିତୀୟ ଈଶ୍ୱର । ସେଥିପାଇଁ ଅନେକ ଶିକ୍ଷାର ବିଜ୍ଞାନର ଭୂମିକା ଉପରେ ବିଶେଷ ଗୁରୁତ୍ୱ ପ୍ରଦାନ କରିଥାନ୍ତି । ଅନେକ କୁହନ୍ତି, ବିଜ୍ଞାନ ମଣିଷକୁ ଆଜି କେବଳ ବସ୍ତୁବାଦୀରେ ପରିଣତ କରିଦେଇଛି । ମଣିଷ ଜୀବନର ଶେଷ ଲକ୍ଷ୍ୟ ଶାନ୍ତି ଓ ସମ୍ମାନର ସହିତ ବଞ୍ଚିବା । ସାହିତ୍ୟ ମଣିଷ ପ୍ରାଣରେ ଶାନ୍ତିର ପ୍ରଲେପ ଦେଇଥାଏ । ସୁ ଏବଂ କୁ ମଧ୍ୟରେ ପାର୍ଥକ୍ୟ ନିର୍ଦ୍ଦେଶ କରି 'ସୁ' କୁ ଗ୍ରହଣ କରିବା ପାଇଁ ପ୍ରେରଣା ଦେଇଥାଏ । ଜୀବନର ବାସ୍ତବ ଦିଗ ସମ୍ବନ୍ଧରେ ସୂଚନା ଦିଏ । ବଞ୍ଚି ରହିବାର ମୌଳିକ ଉପାଦାନ ଯୋଗାଇ ଦେଇଥାଏ । ଏହି ଦୃଷ୍ଟିରୁ ଶିକ୍ଷାରେ ସାହିତ୍ୟର ଭୂମିକା ମଧ୍ୟ ଗୁରୁତ୍ୱପୂର୍ଣ୍ଣ । ପ୍ରତ୍ୟେକ ମଣିଷର ଦୁଇଟି ପକ୍ଷ ରହିଛି । ଗୋଟିଏ ଆତ୍ମପକ୍ଷ ଓ ଅନ୍ୟଟି ଶରୀରପକ୍ଷ । ସାହିତ୍ୟ ଏବଂ

ବିଜ୍ଞାନ ମଣିଷ ପ୍ରାଣର ଏହି ଦୁଇଟି ଅଭାବ ପୂରଣରେ ସମର୍ଥ ହୋଇଥିବାରୁ ଶିକ୍ଷାରେ ଉଭୟ ପାଠର ଆବଶ୍ୟକତା ରହିଛି ।

ଶିକ୍ଷାର ମୌଳିକ ଲକ୍ଷ୍ୟ ଓ ଉଦ୍ଦେଶ୍ୟ ହେଉଛି ସମାଜର ମଙ୍ଗଳ କାମନା ଏବଂ ବ୍ୟକ୍ତିର ବ୍ୟକ୍ତିତ୍ୱର ବିକାଶ ସାଧନା । ବ୍ୟକ୍ତିର ସର୍ବାଙ୍ଗୀନ ଉନ୍ନତି କ୍ଷେତ୍ରରେ ଶିକ୍ଷା ସହାୟତା କରୁଥିବାରୁ ଟି.ପି.ନନ୍ କହିଛନ୍ତି, "Education is the complete development of the individuality of child." ମହାତ୍ମାଗାନ୍ଧି ବ୍ୟାପକ ଦୃଷ୍ଟିକୋଣରୁ ଶିକ୍ଷାର ଉଦ୍ଦେଶ୍ୟ ସମ୍ବନ୍ଧରେ ଆଲୋଚନା କରିଛନ୍ତି । ଏହାଦ୍ୱାରା ମଣିଷର ଶାରୀରିକ, ମାନସିକ ଓ ଆଧ୍ୟାତ୍ମିକ ଗୁଣଗୁଡ଼ିକର ବିକାଶ ହୋଇଥାଏ ବୋଲି ସେ ମତ ଦେଇଛନ୍ତି — By education I mean an all-round drawing out of the best in the child and man – body, mind and spirit. ତେବେ ସାଧାରଣ ଭାବରେ କହିଲେ ଶିକ୍ଷାର ଲକ୍ଷ୍ୟ ମାନବର ସାମଗ୍ରିକ ବିକାଶ । ବିକାଶ କ୍ଷେତ୍ରରେ ହୁଏତ ବହୁ ଆନୁସଙ୍ଗିକ ଉପାଦାନଗୁଡ଼ିକର ଆବଶ୍ୟକତା ରହିଛି । ମାତ୍ର ତା'ର ଉଚିତ ବ୍ୟବହାର ପାଇଁ ଶିକ୍ଷା କେବଳ ପଥ ନିର୍ଦ୍ଦେଶ କରିବାକୁ ସମର୍ଥ ହୋଇଥାଏ । ଜୀବନକୁ ଏକ ବ୍ୟାପକ ଦୃଷ୍ଟିକୋଣରୁ ଦେଖିବା ପାଇଁ ଶିକ୍ଷା ହିଁ ମାର୍ଗ ପ୍ରସ୍ତୁତ କରିଥାଏ । ତେଣୁ ବିଜ୍ଞାନ ଓ ସାହିତ୍ୟ ପରି ଶିକ୍ଷା ଭୌତିକ ଏବଂ ମାନସିକ ସୁଖପ୍ରଦାନ କରୁଥିବାରୁ ସମାଜ-ଜୀବନରେ ଏହାର ମୂଲ୍ୟର କଳନା ନାହିଁ ।

ମଣିଷ ଅମୃତର ସନ୍ତାନ । ଅମରତ୍ୱ ଲାଭ ପାଇଁ ତା'ର ଆଜୀବନ ସାଧନା । ଅମୃତ ପରି ଏକ ଦିବ୍ୟ ଚେତନାର ଅଧିକାରୀ ହେବା କ୍ଷେତ୍ରରେ ସାହିତ୍ୟର ଅବଦାନ ଅତୁଳନୀୟ । ସମାଜର ହିତ ସାଧନ ମଧ୍ୟ ସାହିତ୍ୟର ଅନ୍ୟତମ ଲକ୍ଷ୍ୟ । ମଣିଷ ଜୀବନର ସମସ୍ତ ଅବ୍ୟକ୍ତ ବେଦନା ଏହା ମାଧ୍ୟମରେ ପ୍ରକାଶ ଲାଭ କରେ । ଆମର ପ୍ରାଚୀନ ଆଚାର୍ଯ୍ୟଗଣ ସାହିତ୍ୟ ଦ୍ୱାରା ଚତୁର୍ବର୍ଗ ଫଳପ୍ରାପ୍ତି ହୋଇଥାଏ ବୋଲି ସ୍ୱୀକାର କରିଛନ୍ତି । ଜୀବନର କଲ୍ୟାଣ ସାଧନା ଦିଗରେ ସାହିତ୍ୟର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଏହା ବଞ୍ଚିବା ପାଇଁ ମଣିଷକୁ ପ୍ରେରଣା ଦିଏ । ମାନବ ମାନବ ମଧ୍ୟରେ, ଦେଶ ଦେଶ ମଧ୍ୟରେ ଓ ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ସାହିତ୍ୟ ମାନବିକ ସଂପ୍ରୀତିର ସେତୁ ସୃଷ୍ଟି କରିଥାଏ । ସାହିତ୍ୟ ମଣିଷ ମନରେ କେବଳ ସୌନ୍ଦର୍ଯ୍ୟବୋଧ ସୃଷ୍ଟି କରେ ନାହିଁ, ବ୍ୟକ୍ତିର ଅନ୍ତର୍ନିହିତ ଭାବଧାରାକୁ ମଧ୍ୟ ପ୍ରକାଶ କରେ । ଜୀବନ ସହିତ ଏହା ସମ୍ପର୍କ ସ୍ଥାପନ କରୁଥିବାରୁ ଏବଂ ଶିକ୍ଷାର ମୌଳିକ ଲକ୍ଷ୍ୟ ମଧ୍ୟ ତାହା ହୋଇଥିବାରୁ ଶିକ୍ଷାରେ ସାହିତ୍ୟର ସ୍ଥାନ ଅତୀବ ଗୁରୁତ୍ୱପୂର୍ଣ୍ଣ । ଆଦର୍ଶବାଦର ପ୍ରଚାର ଶିକ୍ଷାର ଅନ୍ୟତମ ଲକ୍ଷ୍ୟ । ସାହିତ୍ୟରେ ମଧ୍ୟ ବହୁ ସମୟରେ ଆଦର୍ଶବାଦର ପ୍ରତିଫଳନ ଘଟିଥାଏ । ପ୍ରତ୍ୟେକ ମଣିଷକୁ ଜାତି, ଧର୍ମ, ବର୍ଣ୍ଣ ଓ ଆର୍ଥିକ ସ୍ୱଚ୍ଛଳତା ନିର୍ବିଶେଷରେ ଏକ ପ୍ରକାର ସୁଯୋଗ ପ୍ରଦାନ କରିବା ଏବଂ ସମସ୍ତଙ୍କ ନିମିତ୍ତ ସମାନ ସୁବିଧା ସୃଷ୍ଟି କରିବା ଶିକ୍ଷାର ଉଦ୍ଦେଶ୍ୟ । ସାହିତ୍ୟ ରାଜ୍ୟରେ କେହି ଅଛୁଆଁ ନୁହନ୍ତି । ସମସ୍ତଙ୍କ ପାଇଁ ଏହାର ଦ୍ୱାର ଉନ୍ମୁକ୍ତ । ମଣିଷ ମନରେ ସାହିତ୍ୟ ସୃଷ୍ଟିକରେ ରସର ଝରଣା । ଜୀବନର ସତ୍ୟ ଓ ବାସ୍ତବ ଦିଗ ସମ୍ବନ୍ଧରେ ଏହା ସୂଚନା ପ୍ରଦାନ କରିବା

ସଙ୍ଗେ ସଙ୍ଗେ, ମାନବର ଆଶା, ଆକାଂକ୍ଷା, ଆନନ୍ଦ ଓ ବିଷାଦ ସହିତ ପରିଚିତ କରାଏ । ଅତୀତ ସହିତ ବର୍ତ୍ତମାନର ସମ୍ପର୍କ ସ୍ଥାପନ କରି ଭବିଷ୍ୟତ ନିମିତ୍ତ ସରଣୀ ପ୍ରସ୍ତୁତି କରେ । ସମାଜର ବାସ୍ତବ ସ୍ୱରୂପକୁ ଉପଲବ୍ଧ କରାଏ । ଶିକ୍ଷାର ଲକ୍ଷ୍ୟ ଯେପରି ପୂର୍ଣ୍ଣାଙ୍ଗ ମଣିଷ ଗଠନ, ସାହିତ୍ୟର ଲକ୍ଷ୍ୟ ସେହିପରି ସ୍ୱୟଂପୂର୍ଣ୍ଣ ମଣିଷ । ମାନବିକ ମୂଲ୍ୟବୋଧର ଜାଗରଣ, ଆତ୍ମବିକାଶ ନିମିତ୍ତ ପଥ ପ୍ରସ୍ତୁତି; ସାଂସ୍କୃତିକ ଚେତନାର ବିକାଶ; ସତ୍ୟ, ପାପ ଓ ନ୍ୟାୟ ମଧ୍ୟରେ ସୀମାରେଖା ସ୍ପଷ୍ଟ କରିବା ସାହିତ୍ୟର ଉଦ୍ଦେଶ୍ୟ । ପ୍ରକୃତ ଜ୍ଞାନର ବିକାଶ ମଧ୍ୟ ସାହିତ୍ୟର ଅନ୍ୟ ଏକ ମହତ୍ତର ଆଦର୍ଶ । କିଛି କଳ୍ପନା ଓ ରୋମାଞ୍ଚକର ପରିବେଶ ସୃଷ୍ଟି କରି ଏହା ମଣିଷର ତପ୍ତ ପ୍ରାଣରେ ମନ୍ଦାକିନୀର ଧାରା ପ୍ରଭାବିତ କରୁଥିବାରୁ କେତେକ ସାହିତ୍ୟକୁ ଅବାସ୍ତବ ବୋଲି କହିଥାନ୍ତି । ମାତ୍ର ଏହା ସମ୍ପୂର୍ଣ୍ଣ ଠିକ୍ ନୁହେଁ । କାରଣ ମଣିଷର ଅଶାନ୍ତ ପ୍ରାଣକୁ ଯଦି କିଛି କଳ୍ପନାର ଅନୁରଞ୍ଜନରେ ଶାନ୍ତି ମିଳିପାରିଲା, ତାକୁ ବଞ୍ଚିବାର ରାହା ଯୋଗାଇପାରିଲା ଏବଂ ସର୍ବୋପରି ଏହାହିଁ ଯଦି ପ୍ରକୃତରେ ଶିକ୍ଷାର ଲକ୍ଷ୍ୟ ହୋଇଥାଏ, ତେବେ ସାହିତ୍ୟରେ ଅପରାଧ ଏବଂ ଅବାସ୍ତବର ପ୍ରଶ୍ନ ଆସିଲା କୁଆଡୁ ? ଆଜି ବିଶ୍ୱରେ ସ୍ନେହ, ପ୍ରେମ, ଦୟା, ମୈତ୍ରୀଭାବ ଆଦି ଉତ୍ତମ ଗୁଣଗୁଡ଼ିକର ଅବକ୍ଷୟ ଘଟୁଛି । ମଣିଷ ପ୍ରତି ମଣିଷ ହୃଦୟରେ ବିଶ୍ୱାସ ନାହିଁ । ସବୁ କ୍ଷେତ୍ରରେ ଉତ୍ତେଜନା ଓ ଧ୍ୱଂସାତ୍ମକ କାର୍ଯ୍ୟକଳାପ ମଣିଷ ଜୀବନର ସୌକୁମାର୍ଯ୍ୟ ନଷ୍ଟ କରିଦେଉଛି । ଏ କ୍ଷେତ୍ରରେ ସାହିତ୍ୟର ଭୂମିକା ଗୁରୁତ୍ୱପୂର୍ଣ୍ଣ । କାରଣ ସାହିତ୍ୟ ସୃଷ୍ଟି କରେ ବିଶ୍ୱସନୀୟ ବାତାବରଣ, ମଣିଷ ପ୍ରାଣରେ ଜଗାଏ ସ୍ନେହ, ପ୍ରେମ, ଦୟା ଓ ମୈତ୍ରୀର ଭାବ, ଜୀବନକୁ ପରିପୂର୍ଣ୍ଣ କରିବାକୁ ଯୋଗାଇଦିଏ ମାନସିକ ଆହାର । ଆତ୍ମୋପଲବ୍ଧି ଏବଂ ଆତ୍ମବିକାଶ ନିମିତ୍ତ ସାହିତ୍ୟ ଯେପରି ପ୍ରେରଣା ଯୋଗାଏ, ତାହା ତା'ର ସେହି ମହନୀୟ ଆଦର୍ଶକୁ ପ୍ରତିପାଦନ କରିଥାଏ । ଜାତୀୟ ଜୀବନକୁ ସଙ୍ଗଠିତ କରିବା କ୍ଷେତ୍ରରେ ଏହାର ଅବଦାନ ଚିରସ୍ମରଣୀୟ । ଆତ୍ମା ଓ ଶରୀରର ବିକାଶ ସାଧନ ସାହିତ୍ୟର ଲକ୍ଷ୍ୟ । ଶିକ୍ଷାର ଲକ୍ଷ୍ୟ ମଧ୍ୟ ଅନୁରୂପ ହୋଇଥିବାରୁ ଶିକ୍ଷାରେ ସାହିତ୍ୟର ସ୍ଥାନ ଅତୀବ ମହତ୍ୱପୂର୍ଣ୍ଣ ।

ବିଜ୍ଞାନ ମାନବସମାଜକୁ ସଭ୍ୟତାର ଆଲୋକ ଦେଖାଇଛି । ଆଜି ଯଦି ଆମ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆସିଥାଏ ସେଥିପାଇଁ ବହୁପରିମାଣରେ ଦାୟୀ ବିଜ୍ଞାନ । ଯୁଗ ଯୁଗ ଧରି ମଣିଷ ସମାଜରେ ପ୍ରଚଳିତ ଅନ୍ଧବିଶ୍ୱାସ ଓ କୁସଂସ୍କାର ବିରୋଧରେ ପ୍ରଥମେ ବିଜ୍ଞାନ ହିଁ ସ୍ୱର ଉତ୍ତୋଳନ କରିଥିଲା । ଶିକ୍ଷାର ଉଦ୍ଦେଶ୍ୟ ମାନବକୁ ଅନ୍ଧକାରରୁ ଆଲୋକ ଦିଗକୁ ଗତି କରାଇବା । ବିଜ୍ଞାନ ମଣିଷର ଅନ୍ତରରୁ ଅନ୍ଧକାରକୁ ବିନାଶ କରି ଜ୍ଞାନାଲୋକକୁ ବିକାଶ କରାଇଥାଏ । ତେଣୁ ଶିକ୍ଷାର ମୌଳିକ ଲକ୍ଷ୍ୟ ସହିତ ବିଜ୍ଞାନର ସାମଞ୍ଜସ୍ୟ ରହୁଥିବାରୁ ଶିକ୍ଷାରେ ବିଜ୍ଞାନର ମୁଖ୍ୟ ଭୂମିକା ରହିଛି । ସମାଜର ସାମଗ୍ରିକ ବିକାଶ ବିଜ୍ଞାନର ପରମ ଲକ୍ଷ୍ୟ । ପ୍ରଯୁକ୍ତିବିଦ୍ୟାର ବିକାଶ ଦ୍ୱାରା ମଣିଷର ଆର୍ଥନୀତିକ ପ୍ରଗତି ସାଧିତ ହୋଇଛି । ଆଜି ମଣିଷ ଚନ୍ଦ୍ରଗ୍ରହରେ ପାଦ ଦେଲାଣି । ସେଠାରେ ବସବାସ ନିମିତ୍ତ ପରୀକ୍ଷା ନିରୀକ୍ଷା ଚଳାଇଛି । ମଣିଷ ଜୀବନକୁ ସୁଖସ୍ୱାଚ୍ଛନ୍ଦ୍ୟରେ ରଖିବା ନିମିତ୍ତ ଅନେକ କିଛି ଆବିଷ୍କାର ହେଲାଣି । ତେଣୁ ବିଶ୍ୱରେ

ଯେଉଁ ଦେଶ ବିଜ୍ଞାନ କ୍ଷେତ୍ରରେ ଯେତେ ଅଗ୍ରଗତି କରିଛି, ତା'ର ବିକାଶ ସେହି ପରିମାଣରେ ସାଧିତ ହୋଇଛି । ବିଜ୍ଞାନ ବ୍ୟତିରେକେ ଆଜିର ବିଶ୍ୱ ସମ୍ପୂର୍ଣ୍ଣ ଅକଳନୀୟ । ବିଜ୍ଞାନ ଶିକ୍ଷାର ଗୁରୁତ୍ୱ ଉପଲବ୍ଧି କରି ବିଭିନ୍ନ କମିଶନ ଉଚ୍ଚ ପ୍ରାଥମିକ ସ୍ତରରୁ ବିଜ୍ଞାନପାଠର ପ୍ରଚଳନ ନିମିତ୍ତ ମତପ୍ରଦାନ କରିଛନ୍ତି । ସରକାର ମଧ ଏହାର ଗୁରୁତ୍ୱ ଅନୁଭବ କରି ବିଭିନ୍ନ ସ୍ତରରେ ବିଜ୍ଞାନପାଠ ନିମିତ୍ତ ସୁବନ୍ଦୋବସ୍ତ କରିଛନ୍ତି । ବିଜ୍ଞାନ ଶିକ୍ଷା ମଣିଷକୁ ଅଧିକ ପରିମାଣରେ ବାସ୍ତବତାବାଦୀ କରିବା ସଙ୍ଗେ ସଙ୍ଗେ ତା'ର ଧୈର୍ଯ୍ୟ ଓ ବିଚାରଶକ୍ତିକୁ ଶାଣିତ କରିଥାଏ । ଶିକ୍ଷା ଯେପରି ବିନା କାରଣରେ, ବିନା ପ୍ରମାଣରେ କୌଣସି ବିଷୟକୁ ଅନ୍ଧଭାବରେ ଗ୍ରହଣ କରେ ନାହିଁ, ଅନୁରୂପ ଭାବରେ ବିଜ୍ଞାନ ବସ୍ତୁଟିର ପରୀକ୍ଷାନିରୀକ୍ଷା ପରେ ସେ ସମ୍ପର୍କରେ ଶେଷ ମତ ପ୍ରଦାନ କରେ । ଶିକ୍ଷାପରି ବିଜ୍ଞାନର ସିଦ୍ଧାନ୍ତ ମଧ ସର୍ବଶ୍ରେଷ୍ଠ । ଚିକିତ୍ସା ବିଜ୍ଞାନ ମଣିଷକୁ ବ୍ୟାଧି ବିରୋଧରେ ସଂଗ୍ରାମ କରିବାକୁ ପ୍ରେରଣା ଦେଇଛି । ବିଭିନ୍ନ ବୈଷୟିକ ଜ୍ଞାନର ପ୍ରୟୋଗ କରି ମଣିଷ ଆଜି ଶିଳ୍ପ, କୃଷି ଆଦି କ୍ଷେତ୍ରରେ ଉଲ୍ଲେଖନୀୟ ଅଗ୍ରଗତି କରିପାରିଛି । ଏସବୁ ମାନବ ସଭ୍ୟତାକୁ ବିଜ୍ଞାନର ଅବଦାନ । ଶିକ୍ଷାର ଏକ ବିଶିଷ୍ଟ ଅଂଶ ରୂପେ ବିଜ୍ଞାନ ପାଠ୍ୟକ୍ରମରେ ସ୍ଥାନ ଲାଭ କରିଛି ଓ ଏହି ପାଠ୍ୟର ବିକାଶ ନିମିତ୍ତ ବିଭିନ୍ନ ସ୍ତରରେ ଉଦ୍ୟମ ଜାରି ରହିଛି ।

ମାନବ ସଭ୍ୟତାର ବିକାଶ ଦିନରୁ ହିଁ ମଣିଷ ସତ୍ୟ, ଶିବ ଓ ସୁନ୍ଦରର ଉପାସନା କରିଆସିଛି । ବିଜ୍ଞାନ ସତ୍ୟର ଉପାସକ । ବିଭିନ୍ନ ପରୀକ୍ଷା ଦ୍ୱାରା ବସ୍ତୁର ବସ୍ତୁସତ୍ୟକୁ ଉଦ୍‌ଘାଟନ କରିବା ତା'ର ଉଦ୍ଦେଶ୍ୟ । ଅନ୍ଧଭାବରେ ବିଜ୍ଞାନ କାହାରିକୁ ଗ୍ରହଣ କରିପାରେ ନାହିଁ । ପରୀକ୍ଷା ଦ୍ୱାରା ସର୍ବଶେଷ ସତ୍ୟରେ ଉପନୀତ ହେବା ହିଁ ବିଜ୍ଞାନର ଲକ୍ଷ୍ୟ । କେବଳ ସତ୍ୟ ନୁହେଁ ବିଜ୍ଞାନ ମଧ ଶିବର ଉପାସକ । ମାନବସମାଜର ମଙ୍ଗଳ ସାଧନ ଉଦ୍ଦେଶ୍ୟରେ ବିଜ୍ଞାନର ଆବିଷ୍କାର କରାଯାଇଥିଲା । ଅବଶ୍ୟ କେତେକ ମାନବସମାଜ ବିରୋଧୀ ବ୍ୟକ୍ତି ବିଜ୍ଞାନକୁ ମଣିଷର ଅହିତ ସାଧନ ଉଦ୍ଦେଶ୍ୟରେ ପ୍ରୟୋଗ କରୁଛନ୍ତି । ମାତ୍ର ବିଜ୍ଞାନର ପ୍ରକୃତ ଉଦ୍ଦେଶ୍ୟ ତାହା ନୁହେଁ । ବିଜ୍ଞାନକୁ ବିଭିନ୍ନ କ୍ଷେତ୍ର, ଯଥା – କୃଷି, ପ୍ରଯୁକ୍ତି ଆଦି କ୍ଷେତ୍ରରେ ପ୍ରୟୋଗ କରାଯାଇ ଦେଶରୁ କ୍ଷୁଧା ଦୂରୀକରଣ ତଥା ମଣିଷ ଜୀବନକୁ ସୁଖସ୍ୱାଚ୍ଛନ୍ଦ୍ୟ ପୂର୍ଣ୍ଣ କରାଯାଇ ପାରିବ । ବିଜ୍ଞାନର ଉଦ୍ଦେଶ୍ୟ ସୁନ୍ଦରର ସଂରକ୍ଷଣ । ଏଥି ନିମିତ୍ତ ବିଜ୍ଞାନର ବିଭିନ୍ନ ଉଦ୍ଭାବନ ମଧ ସ୍ମରଣୀୟ । ଯାହା ସୁନ୍ଦର, ତା'ର ସଂରକ୍ଷଣ ପାଇଁ ବିଜ୍ଞାନ ଆଜି ବିଭିନ୍ନ ଉପାୟ ଆବିଷ୍କାର କରିଛି । ସତ୍ୟ, ଶିବ, ସୁନ୍ଦରର ପ୍ରତିଷ୍ଠା କ୍ଷେତ୍ରରେ ବିଜ୍ଞାନର ଅବଦାନକୁ କଦାପି ଅସ୍ୱୀକାର କରାଯାଇ ନ ପାରେ । ଅନୁରୂପ ଭାବେ ସାହିତ୍ୟ ମଧ ସତ୍ୟ, ଶିବ ଓ ସୁନ୍ଦରର ଉପାସକ । ଜୀବନର ଯାହା ବଡ଼ ସତ୍ୟ ଅର୍ଥାତ୍ ସମାଜରେ ବଞ୍ଚିରହିବାକୁ ଏହା ମଣିଷକୁ ପ୍ରେରଣା ଯୋଗାଏ । ଜୀବନର ସତ୍ୟ ସମ୍ପର୍କରେ ଅବଗତ କରାଏ । ଜନ୍ମ ଏବଂ ମୃତ୍ୟୁପରି ନିଷ୍ଠୁର ସତ୍ୟକୁ ସେ ତା'ର କଳେବରରେ ସ୍ଥାନ ଦେଇ ବାସ୍ତବତାକୁ ଆହ୍ୱାନ କରେ । ଅମଙ୍ଗଳର ବିନାଶ ସାହିତ୍ୟର ଅନ୍ୟତମ ଲକ୍ଷ୍ୟ । ମାନବସମାଜରୁ ଅମଙ୍ଗଳର ବିନାଶ କରି ଶାନ୍ତିରେ ବଞ୍ଚିବା ନିମିତ୍ତ କେବଳ ସାହିତ୍ୟ ହିଁ ପ୍ରେରଣା ଦେଇଥାଏ । କାହାରି ଅନିଷ୍ଟ ନ କରିବା ଏବଂ ଏକ ଶାନ୍ତି ଓ ସୌହାର୍ଦ୍ଦ୍ୟର ବାତାବରଣ ସୃଷ୍ଟି କରିବା ସାହିତ୍ୟର ଲକ୍ଷ୍ୟ । ସୁରୁଚି

ଓ ସୁନୀତିର ଉପାସକ ସାହିତ୍ୟ । ସୁନ୍ଦରର ଉପାସକ ସାହିତ୍ୟ । ସାହିତ୍ୟରେ କୁତ୍ସିତର ସ୍ଥାନ ନାହିଁ । ବରଂ କୁତ୍ସିତକୁ ଅଧିକ ସୁନ୍ଦରତର କରେ ସାହିତ୍ୟ । ଏ ବିଶ୍ୱ ମଧୁମୟ, ମଙ୍ଗଳମୟ ଓ ସୁନ୍ଦରମୟ ବୋଲି କଳ୍ପନା କରେ ସାହିତ୍ୟ । ବିଜ୍ଞାନ ଓ ସାହିତ୍ୟ – ଉଭୟ ସତ୍ୟ, ଶିବ ଏବଂ ସୁନ୍ଦରର ଉପାସକ ହୋଇଥିବାରୁ ସେମାନଙ୍କର ସମ୍ପର୍କ ଅତୀବ ନିଗୂଢ଼ ।

ଶିକ୍ଷାରେ ଉଭୟ ସାହିତ୍ୟ ଓ ବିଜ୍ଞାନର ଗୁରୁତ୍ୱପୂର୍ଣ୍ଣ ଭୂମିକା ବିଦ୍ୟମାନ । ଉଭୟର ଉଦ୍ଦେଶ୍ୟ ବ୍ୟକ୍ତି ଏବଂ ସମାଜର ମଙ୍ଗଳ ସାଧନ । ଶିକ୍ଷାର ମାନବ ଜୀବନ ସହିତ ଅଭେଦ୍ୟ ସମ୍ପର୍କ ରହିଛି । ମାନବ ସମାଜକୁ ଉଚିତ ମାର୍ଗ ପ୍ରଦର୍ଶନ ଏହାର ଅନ୍ତିମ ଲକ୍ଷ୍ୟ । ଏହି ଲକ୍ଷ୍ୟ ସାଧନ ଦିଗରେ ଯେଉଁମାନେ ସହାୟତା ପ୍ରଦାନ କରିଥାନ୍ତି, ସେମାନଙ୍କ ନିମିତ୍ତ ଶିକ୍ଷାର ଦ୍ୱାର ଚିର ଉନ୍ମୁକ୍ତ । ମାନବର ସମ୍ପୂର୍ଣ୍ଣ ବିକାଶ ସାଧନ ଶିକ୍ଷା ସାହିତ୍ୟ ଓ ବିଜ୍ଞାନର ଉଦ୍ଦେଶ୍ୟ । ବାସ୍ତବ ଜୀବନର ଘାତପ୍ରତିଘାତକୁ ସମ୍ମୁଖୀନ ହେବା ନିମିତ୍ତ ଏମାନେ ମଣିଷକୁ ପ୍ରେରଣା ଯୋଗାଇ ଦେଇଥାନ୍ତି । ଜୀବନକୁ ସୁସ୍ଥ ସୁନ୍ଦର କରି ଗଢ଼ିବା ନିମିତ୍ତ ଏମାନେ ସରଣୀ ପ୍ରସ୍ତୁତ କରନ୍ତି । ଆତ୍ମିକ ଓ ଶାରୀରିକ ବିକାଶରେ ସହାୟତା ପ୍ରଦାନ କରନ୍ତି । ଅମଙ୍ଗଳର ବିନାଶ, ବିଷାଦ ଜୀବନରେ ରସର ଝରଣା ସୃଷ୍ଟି ଯେପରି ସାହିତ୍ୟର ଉଦ୍ଦେଶ୍ୟ, ବାସ୍ତବ ଜୀବନରେ ସତ୍ୟର ଉଦ୍‌ଘାଟନ ଓ ସାମାଜିକ କୁସଂସ୍କାର ଦୂରୀକରଣ ମଧ୍ୟ ସେହିପରି ବିଜ୍ଞାନର ଉଦ୍ଦେଶ୍ୟ । ଶିକ୍ଷା ଭବିଷ୍ୟତର ପଥପ୍ରଦର୍ଶକ ହୋଇଥିବାରୁ ସାହିତ୍ୟ ଏବଂ ବିଜ୍ଞାନର ଏବଂବିଧ ଉଦ୍ଦେଶ୍ୟକୁ ସାକାର କରିବା ନିମିତ୍ତ ଶିକ୍ଷା ତା'ର ଦ୍ୱାର ଉନ୍ମୁକ୍ତ ରଖିଥାଏ ।

ଉପସଂହାରରେ ଏତିକି କୁହାଯାଇପାରେ ଯେ ମଣିଷ ଜୀବନ ପାଇଁ ସାହିତ୍ୟ ଏବଂ ବିଜ୍ଞାନ କେହି ଅଲୋଡ଼ା ନୁହନ୍ତି । ଏହାର ଉଦ୍ଦେଶ୍ୟ ମହତ । ମାତ୍ର ସମୟେ ସମୟେ ମଣିଷ ବ୍ୟକ୍ତିଗତ ଉଦ୍ଦେଶ୍ୟ ସାଧନ ଉଦ୍ଦେଶ୍ୟରେ ଏମାନଙ୍କର ଅପପ୍ରୟୋଗ କରିଥାନ୍ତି । ଏହି କାରଣରୁ ସାହିତ୍ୟ ଏବଂ ବିଜ୍ଞାନର ଲକ୍ଷ୍ୟ ସାମୟିକ ଭାବେ ସଂଶୟାଚ୍ଛନ୍ନ ହୋଇପଡ଼େ । ଏହାସତ୍ତ୍ୱେ ଏମାନଙ୍କର ଚିରନ୍ତନ ମୂଲ୍ୟବୋଧକୁ କଦାପି ଅସ୍ୱୀକାର କରାଯାଇ ନ ପାରେ । ସାହିତ୍ୟ ଏବଂ ବିଜ୍ଞାନ ମଧ୍ୟରେ ଏକ ସୀମାରେଖା ଟଣା ଯାଇପାରିଲେ ମଧ୍ୟ ତା'ର ମୂଲ୍ୟବୋଧରେ କୌଣସି ପ୍ରକାର ଅବକ୍ଷୟ ଦେଖାଯାଇ ନ ପାରେ । ଆଜିର ସମୟରେ ବିଜ୍ଞାନର ଅବଦାନ ଅତୀବ ମହତ୍ତ୍ୱପୂର୍ଣ୍ଣ । କାରଣ ମଣିଷର ଦୈନନ୍ଦିନ ଜୀବନର ବହୁ ଅଭାବ ବିଜ୍ଞାନ ହିଁ ପରିପୂରଣ କରିଥାଏ । ସେହିପରି ସାହିତ୍ୟ ସୁ ଏବଂ କୁ ମଧ୍ୟରେ ସ୍ପଷ୍ଟ ପାର୍ଥକ୍ୟ ରେଖା ନିର୍ଦ୍ଦିଷ୍ଟ କରାଇ 'ସୁ' କୁ ଗ୍ରହଣ କରିବା ନିମିତ୍ତ ପ୍ରେରଣା ପ୍ରଦାନ କରିଥାଏ । ବିଜ୍ଞାନର ଅପକାର ଦିଗକୁ ଏହା ସମାଲୋଚନା କରେ । ଶିକ୍ଷା ମଧ୍ୟ ଉଭୟ ସାହିତ୍ୟ ଏବଂ ବିଜ୍ଞାନର ମହତ୍ତ୍ୱପୂର୍ଣ୍ଣ ଦିଗଗୁଡ଼ିକୁ ନିଜ ମଧ୍ୟରେ ସାଇତି ରଖି ଭବିଷ୍ୟତ ବଂଶଧରମାନଙ୍କ ପ୍ରତି ଜୀବନଧାରଣର ମାନ ପ୍ରସ୍ତୁତ କରିଥାଏ ।



# ଭାରତୀୟ ପରୀକ୍ଷା ପଦ୍ଧତି

**(ଉପକ୍ରମ, ପରୀକ୍ଷାର ଉଦ୍ଦେଶ୍ୟ, ଭାରତୀୟ ପରୀକ୍ଷାର ଅତୀତ, ସାଂପ୍ରତିକ ପରୀକ୍ଷା ପଦ୍ଧତିର ପୃଷ୍ଠଭୂମି, ପରୀକ୍ଷାର କେତେକ ଦିଗ, ସାଂପ୍ରତିକ ପରୀକ୍ଷା ପଦ୍ଧତିର କେତେକ ତ୍ରୁଟି, ତ୍ରୁଟି ନିରାକରଣ ନିମିତ୍ତ ଭାରତୀୟ ଶିକ୍ଷା କମିଶନଙ୍କ ସଂଶୋଧିତ ପ୍ରସ୍ତାବ, ସମାଧାନ ଉପାୟ, ଉପସଂହାର)**

ଜୀବନରେ ପରୀକ୍ଷା ଏକ ସ୍ୱାଭାବିକ ଧର୍ମ । ଜୀବନ ସଂଗ୍ରାମରେ ଜୟଲାଭ କରିବା ପାଇଁ ମଣିଷକୁ ବିଭିନ୍ନ କ୍ଷେତ୍ରରେ ବାରମ୍ବାର ପରୀକ୍ଷା ଦେବାକୁ ହୋଇଥାଏ । ମଣିଷର ଜନ୍ମ ରହସ୍ୟ ଉନ୍ମୋଚନ ସମୟରେ ଡାରଉଇନ୍‌ଙ୍କ ବିବର୍ତ୍ତନବାଦ ଠିକ୍ ଏହି କଥା ହିଁ କହିଥିଲା । ମଣିଷର ବଞ୍ଚିରହିବା ପାଇଁ ଆବଶ୍ୟକ ଜୀବନ ସଂଗ୍ରାମ । ଯିଏ ସଂଗ୍ରାମରେ ଜୟଲାଭ କରିପାରେ, ତା'ର କେବଳ ଏହି ପୃଥିବୀରେ ବଞ୍ଚି ରହିବାର ଅଧିକାର ଅଛି । ସେଥିପାଇଁ ଜୀବନ ଏକ ପରୀକ୍ଷା ସ୍ଥାନ । ପରୀକ୍ଷାରୁ ହିଁ ମଣିଷ ଜୀବନର ସଫଳତା ଓ ବିଫଳତା ଜଣାପଡ଼େ । ଛାତ୍ର ଜୀବନରେ ମଣିଷ ଜୀବନ ପରି ମଧ୍ୟ ପରୀକ୍ଷାର ଉପାଦେୟତା ରହିଛି । ଅଧ୍ୟୟନ ଠାରୁ ଚାକିରିରେ ନିଯୁକ୍ତି ପର୍ଯ୍ୟନ୍ତ ତାକୁ ବିଭିନ୍ନ ପରୀକ୍ଷାର ସମ୍ମୁଖୀନ ହେବାକୁ ପଡ଼ିଥାଏ । ମାତ୍ର ଏଠାରେ ଆମେ କେବଳ ବିଦ୍ୟାଳୟ, ମହାବିଦ୍ୟାଳୟ, ବିଶ୍ୱବିଦ୍ୟାଳୟ ପରୀକ୍ଷା ପଦ୍ଧତି ସମ୍ପର୍କରେ ଆଲୋଚନା କରୁଛୁ । ଭାରତର ସାଂପ୍ରତିକ ଶିକ୍ଷା ପଦ୍ଧତି ଇଂରେଜ ଶାସନର ଔପନିବେଶିକ ଦାନ । ସେହି ଦୃଷ୍ଟିରୁ ପ୍ରଚଳିତ ପରୀକ୍ଷା ପଦ୍ଧତି ମଧ୍ୟ ଇଂରେଜ ଶାସନକାଳୀନ ପରୀକ୍ଷାର ବିଶ୍ୱସ୍ତ ଅନୁକରଣ ବ୍ୟତୀତ ଅନ୍ୟ କିଛି ନୁହେଁ । ଇତିମଧ୍ୟରେ ବହୁ ସମୟ ଅତିକ୍ରମ କରିଯାଇଛି, ଅଥଚ ଆମ ପରୀକ୍ଷା ପଦ୍ଧତିରେ କୌଣସି ସଂଶୋଧନ ହୋଇପାରି ନାହିଁ । ଏବେ ବି ଛାତ୍ର ସମାଜରେ ଏହା ଏକ ମୁଣ୍ଡବ୍ୟଥାର କାରଣ ହୋଇଛି । ସମୟ ସହିତ ପାଦ ମିଳାଇ ଆମ ପରୀକ୍ଷା ଗତି କରିପାରୁ ନ ଥିବାରୁ ସମାଲୋଚନାର ଶରବ୍ୟ ହୋଇଛି ।

ପରୀକ୍ଷାର ମୁଖ୍ୟ ଉଦ୍ଦେଶ୍ୟ ଛାତ୍ରଛାତ୍ରୀଙ୍କର ଧୀଶକ୍ତି ପରୀକ୍ଷା । ଗୋଟିଏ ଶିକ୍ଷା ବର୍ଷରେ ସେମାନଙ୍କୁ ପ୍ରଦାନ କରାଯାଇଥିବା ଶିକ୍ଷାକୁ ସେମାନେ କେତେ ପରିମାଣରେ ଗ୍ରହଣ କରି ପାରିଛନ୍ତି, ତାହା କଳନା କରିବା ଏହି ପରୀକ୍ଷାର ଲକ୍ଷ୍ୟ । ପରୀକ୍ଷାଦ୍ୱାରା ଛାତ୍ରସମାଜ ନିଜକୁ ପରବର୍ତ୍ତୀ ଉଚ୍ଚତର ଶିକ୍ଷାଲାଭ ପାଇଁ ଯୋଗ୍ୟ କରିଥାନ୍ତି । ଶିକ୍ଷକମାନେ ମଧ୍ୟ ଏହି ପରୀକ୍ଷାରୁ ନିଜ ବିଦ୍ୟାଦାନ ସମ୍ବନ୍ଧରେ କଳନା କରିବାର ସୁଯୋଗ ଲାଭ କରିଥାନ୍ତି । ଛାତ୍ରମାନଙ୍କର ପରିଶ୍ରମ ଓ ଅଧ୍ୟୟନ ପ୍ରବୃତ୍ତିକୁ ଏହା ବୃଦ୍ଧି କରିଥାଏ । ପରୀକ୍ଷା ପରେ ତା'ର ମୂଲ୍ୟାୟନ କରାଯାଇ ପରବର୍ତ୍ତୀ ଶ୍ରେଣୀରେ ଅଧ୍ୟୟନ ପାଇଁ ସେ କେତେ ପରିମାଣରେ ଯୋଗ୍ୟ ତାହା ଏଥିରୁ ଜଣାଯାଇଥାଏ । ସାଧାରଣ ନିଯୁକ୍ତି ପାଇଁ ଏହା ଏକ ପୂର୍ବ ପ୍ରସ୍ତୁତି କହିଲେ ଭୁଲ ହେବ ନାହିଁ । ଜୀବନରେ ବାସ୍ତବ ପରୀକ୍ଷାକୁ ସମ୍ମୁଖୀନ ହେବା ଲାଗି ଛାତ୍ରସମାଜକୁ ଏହି ପରୀକ୍ଷା ମାଧମରେ

ପ୍ରସ୍ତୁତ ରହିବାର ନିର୍ଦ୍ଦେଶ ଦିଆଯାଇଥାଏ । ବିଶ୍ୱବିଦ୍ୟାଳୟ ବା ମହାବିଦ୍ୟାଳୟ ସ୍ତରରେ କେବଳ ପରୀକ୍ଷା ମାଧ୍ୟମରେ ଜଣଙ୍କର ଜ୍ଞାନ ସମ୍ପର୍କରେ ଜାଣି ହୋଇଥାଏ । ତେଣୁ Sir Nicheel Sadler ଙ୍କ ମତରେ " To close down examinations would be to give the signal for educational saturation." ପରୀକ୍ଷା ଦ୍ୱାରା ଛାତ୍ର ନିଜର ତ୍ରୁଟି ସମ୍ବନ୍ଧରେ ଅବଗତ ହୋଇଥାଏ । ଜ୍ଞାନର ଗଭୀରତା ଏହାଦ୍ୱାରା ପ୍ରମାଣିତ ହୋଇଥାଏ । ବହୁ ଛାତ୍ରଛାତ୍ରୀଙ୍କ ମଧ୍ୟରୁ କିଏ ବାସ୍ତବରେ ପ୍ରତିଭାବାନ୍ ତାହା ପରୀକ୍ଷାରୁ ହିଁ ଜଣାଯାଇଥାଏ । ଏହାଦ୍ୱାରା ଶିକ୍ଷା, ଶିକ୍ଷକ ଓ ଶିକ୍ଷାନୁଷ୍ଠାନର ମାନଦଣ୍ଡ ପରୀକ୍ଷିତ ହୋଇଥାଏ । ଜୀବନ ପରୀକ୍ଷାର ପୂର୍ବ ପ୍ରସ୍ତୁତି ପାଇଁ ଏହା ମଧ୍ୟ ଏକ ମାଧ୍ୟମ ହୋଇଥିବାରୁ ଏହାର ଉଦ୍ଦେଶ୍ୟ ଅତୀବ ମହତ୍ ।

ଅତୀତରେ ଗୁରୁକୁଳ ଆଶ୍ରମରେ ଶିକ୍ଷାଦାନ ସମୟରେ ଆଚାର୍ଯ୍ୟଗଣ ସେମାନଙ୍କର ଛାତ୍ରଙ୍କୁ ମଧ୍ୟ ବିଭିନ୍ନ କ୍ଷେତ୍ରରେ ପରୀକ୍ଷା କରାଉଥିଲେ । ସାଂପ୍ରତିକ ପରୀକ୍ଷା ପଦ୍ଧତି ଠାରୁ ତାହା ଥିଲା ସମ୍ପୂର୍ଣ୍ଣ ଭିନ୍ନ । ଗୁରୁକୁଳ ଶିକ୍ଷା ସମାଜ-ଜୀବନର ଆବଶ୍ୟକତା ପୂରଣ ଉଦ୍ଦେଶ୍ୟରେ ପ୍ରଦତ୍ତ ହେଉଥିବାରୁ, ଜଣେ ସାମାଜିକ ମଣିଷ ରୂପେ ଛାତ୍ରଟିଏ କେତେ ପରିମାଣରେ ଯୋଗ୍ୟ, ତାହା ଜାଣିବା ଥିଲା ସେହି ପରୀକ୍ଷାର ଉଦ୍ଦେଶ୍ୟ । ତେଣୁ ତାହା ଥିଲା ଅତ୍ୟନ୍ତ କଠୋର । କେବଳ ଶାସ୍ତ୍ର ବିଦ୍ୟା ନୁହେଁ, ଆଚରଣ, ଚରିତ୍ର, ସାମାଜିକ ବିଦ୍ୟା – ପ୍ରତ୍ୟେକ କ୍ଷେତ୍ରରେ ଛାତ୍ର ବା ଶିଷ୍ୟ ଉତ୍ତୀର୍ଣ୍ଣ ହେଲେ ତା'ର ସାଧନା ସିଦ୍ଧି ହୋଇଛି ବୋଲି ପ୍ରମାଣିତ ହେଉଥିଲା । ଗୁରୁକୁଳ ଆଶ୍ରମ ପରୀକ୍ଷାରୁ ଉତ୍ତୀର୍ଣ୍ଣ ହେବା ପରେ, ଜୀବନଧାରଣ ନିମିତ୍ତ ତାକୁ ଅନ୍ୟ କୌଣସି କ୍ଷେତ୍ରରେ ପରୀକ୍ଷା ଦେବାକୁ ପଡୁ ନ ଥିଲା । କଠୋର ସାଧନା ଓ ଏହି ସାଧନାରୁ ସିଦ୍ଧିଲାଭ ପରେ ସାମାଜିକ ଜୀବନରେ ପ୍ରତ୍ୟକ୍ଷ ଅଂଶ ଗ୍ରହଣ – ଏହାହିଁ ଥିଲା ଗୁରୁକୁଳ ଆଶ୍ରମର ଶିକ୍ଷା ଓ ପରୀକ୍ଷା ଦାନ ପଦ୍ଧତି ।

ଭାରତର ସାଂପ୍ରତିକ ପରୀକ୍ଷା ପଦ୍ଧତି ଇଂରେଜ ଶାସନ କାଳୀନ ପରୀକ୍ଷା ପଦ୍ଧତିର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ । ଇଂରେଜ ଶାସନ କାଳରେ ଏହି ପରୀକ୍ଷା ପଦ୍ଧତିର ପ୍ରଚଳନ କରାଯାଇଥିଲା, ବହୁ ପରୀକ୍ଷାର୍ଥୀଙ୍କ ମଧ୍ୟରୁ କେତେକ ସରକାରୀ ଚାକିରି ପାଇବା ପାଇଁ ଯୋଗ୍ୟପ୍ରାର୍ଥୀଙ୍କୁ ବାଛିବା ନିମିତ୍ତ । ଏହି ପରୀକ୍ଷା ପଦ୍ଧତିରେ ଜଣେ ପରୀକ୍ଷାର୍ଥୀଙ୍କ ପ୍ରକୃତ ଜ୍ଞାନ, ପାଣ୍ଡିତ୍ୟ, ବିଷୟବସ୍ତୁ ସମ୍ପର୍କରେ ମୌଳିକ ଧାରଣା ବା ପ୍ରତିଭା ଅନୁମାନ କରିବା କଷ୍ଟସାଧ୍ୟ । ଏହି ପରୀକ୍ଷାପଦ୍ଧତି ବାସ୍ତବରେ ପରୀକ୍ଷାର୍ଥୀର ମୌଳିକ ଜ୍ଞାନ, ଧାରଣା, ବୋଧଶକ୍ତି, ବିଶ୍ଳେଷଣ ଶକ୍ତିର ଯଥାର୍ଥ ପରିଚୟ ଦେବା ଅପେକ୍ଷା ତା'ର ସ୍ମରଣଶକ୍ତି ବା ମନେରଖିବାର ଶକ୍ତି ସମ୍ବନ୍ଧରେ ଧାରଣା ଦେଇଥାଏ । ପାଶ୍ଚାତ୍ୟ ଶିକ୍ଷାପଦ୍ଧତିର ଅନୁସରଣରେ ଏହି ପରୀକ୍ଷାପଦ୍ଧତି ପରିକଳ୍ପନା କରାଯାଇ ଥିବାରୁ ଭାରତୀୟ ପରିପ୍ରେକ୍ଷୀରେ ଏହାର ଆବଶ୍ୟକତା ଅନୁଭୂତ ହୋଇନଥାଏ । ତେଣୁ ଏହା ବର୍ତ୍ତମାନ ଜୀବନ ଗଠନରେ ସହାୟତା ନ କରି କେବଳ ପ୍ରମାଣପତ୍ର ବା ସାର୍ଟିଫିକେଟ ହାସଲ କ୍ଷେତ୍ରରେ ସହାୟତା କରୁଛି । ଏହି ସାର୍ଟିଫିକେଟ ବାସ୍ତବ ଜୀବନରେ ତା'ର ବିଶେଷ କିଛି

ଉପକାର ସାଧନ କରିପାରୁ ନାହିଁ । ବରଂ ବହୁପରିମାଣରେ ତା'ର କୌଳିକ ବୃତ୍ତି ଠାରୁ ଦୂରେଇ ନେଇ ବେକାର ଜୀବନଯାପନ କରିବାକୁ ବାଧ କରୁଛି । ଏହି ପରିପ୍ରେକ୍ଷୀରେ ଭାରତର ଶିକ୍ଷା ଓ ପରୀକ୍ଷା ପଦ୍ଧତିରେ ସମ୍ପୂର୍ଣ୍ଣ ସଂଶୋଧନ ଆଣି ବାସ୍ତବତାକୁ ଆଖିରେ ରଖି ନୂତନ ପରୀକ୍ଷା ପଦ୍ଧତି ପ୍ରଚଳନ କରିବା ଆବଶ୍ୟକ ।

ବର୍ତ୍ତମାନ ଭାରତରେ ଯେଉଁ ପରୀକ୍ଷା ପଦ୍ଧତି ପ୍ରଚଳିତ, ତା'ର ଦୁଇଟି ଦିଗ ରହିଛି । ଗୋଟିଏ ସଂକ୍ଷିପ୍ତ ଉତ୍ତର ଏବଂ ଅନ୍ୟଟି ବିଶ୍ଳେଷଣାତ୍ମକ ଉତ୍ତର । ସଂକ୍ଷିପ୍ତ ପ୍ରଶ୍ନାବଳୀର ଉତ୍ତର ନିର୍ଦ୍ଦିଷ୍ଟ ଏବଂ ପରୀକ୍ଷାର୍ଥୀଙ୍କ ଏହାର ଉତ୍ତର ପ୍ରଦାନ କ୍ଷେତ୍ରରେ କୌଣସି ନିଜସ୍ୱ ସ୍ୱାଧୀନତା ନାହିଁ । ଏକ ନିର୍ଦ୍ଦିଷ୍ଟ ଉତ୍ତର ଦେବାକୁ ସେ ବାଧ ହୋଇଥାଏ । ପୁଣି ଏ କ୍ଷେତ୍ରରେ ପରୀକ୍ଷାର୍ଥୀର ପସନ୍ଦ ଉପରେ ଆଦୌ ଗୁରୁତ୍ୱ ଦିଆଯାଇନଥାଏ । ଯେତିକି ପ୍ରଶ୍ନ ପଚରାଯାଇଥାଏ, ସେତିକିର ଉତ୍ତର ଦେବାକୁ ସେ ବାଧ । ମାତ୍ର ବିଶ୍ଳେଷଣାତ୍ମକ ପ୍ରଶ୍ନରେ ପରୀକ୍ଷାର୍ଥୀ ସ୍ୱାଧୀନ ଭାବରେ ନିଜ ପସନ୍ଦ ଅନୁଯାୟୀ ଉତ୍ତର ଦେବାର ଅଧିକାର ରହିଛି । ଏହି ଉତ୍ତରରୁ ଛାତ୍ରର ପ୍ରକାଶଭଙ୍ଗୀ, ବିଶ୍ଳେଷଣାତ୍ମକ ଜ୍ଞାନ, ବିଷୟବସ୍ତୁର ସଜ୍ଜୀକରଣ ଆଦି ସମ୍ପର୍କରେ ଧାରଣା ମିଳିଥାଏ । ମାତ୍ର ସଂକ୍ଷିପ୍ତ ପ୍ରଶ୍ନୋତ୍ତର ସମ୍ପୂର୍ଣ୍ଣ ପାଠ୍ୟକ୍ରମର ବିଷୟବସ୍ତୁକୁ ଭିତ୍ତି କରି ପଚରା ଯାଉଥିବାରୁ, ଏଥିରୁ ଛାତ୍ରର ବିଷୟବସ୍ତୁ ସମ୍ପର୍କୀୟ ସାମଗ୍ରିକ ଜ୍ଞାନର ପରିଚୟ ମିଳେ । ଏତଦ୍ ବ୍ୟତୀତ କେତେକ କ୍ଷେତ୍ରରେ ବାଚନିକ ପରୀକ୍ଷାର ସମ୍ମୁଖୀନ ହେବାକୁ ପଡ଼ିଥାଏ । ଏଥିରୁ ଛାତ୍ରର ପରିସ୍ଥିତି, ପରିବେଶ ତଥା ବାସ୍ତବ ଜ୍ଞାନ ସମ୍ବନ୍ଧରେ ଧାରଣା ଆସିଥାଏ । ବିଜ୍ଞାନ ତଥା ଅନ୍ୟ କେତେକ ଔଦ୍ୟୋଗିକ ପରୀକ୍ଷାରେ ବିଜ୍ଞାନାଗାର ବା ଯନ୍ତ୍ରପାତିର ସାହାଯ୍ୟ ନେଇ ପରୀକ୍ଷାର୍ଥୀଙ୍କ ସେହି ସମ୍ପର୍କୀୟ ବାସ୍ତବ ଜ୍ଞାନର ପରୀକ୍ଷା କରାଯାଇଥାଏ । ସାଂପ୍ରତିକ ପରିସ୍ଥିତିରେ ଏହି ପରୀକ୍ଷା ପଦ୍ଧତି ବହୁ ପଣ୍ଡିତମାନଙ୍କ ଦ୍ୱାରା ସମାଲୋଚିତ ହୋଇଛି । ସେମାନଙ୍କ ମତରେ ଏହି ପଦ୍ଧତି ପରୀକ୍ଷାର୍ଥୀଙ୍କ ପ୍ରକୃତ ଜ୍ଞାନ ବିଚାର କରିବାରେ ସମ୍ପୂର୍ଣ୍ଣ ଅସମର୍ଥ ।

ଭାରତର ପରୀକ୍ଷା ପଦ୍ଧତି ତ୍ରୁଟିପୂର୍ଣ୍ଣ ବୋଲି ନିଯୁକ୍ତ ବହୁ କମିଶନ ଓ କମିଟି ସେମାନଙ୍କର ରିପୋର୍ଟରେ ପ୍ରକାଶ କରିଛନ୍ତି । ସେମାନଙ୍କ ମତରେ ଏହି ପଦ୍ଧତି ସମ୍ପୂର୍ଣ୍ଣ ଅବାସ୍ତବ, ଦୁର୍ବଳ, ଖାମଖିଆଲ ଓ ଆବଶ୍ୟକହୀନ । ଓ୍ୱାର୍ଦ୍ଧା କମିଟି ତାଙ୍କର ସୁପାରିସରେ ଲେଖିଥିଲେ "As a measure of the work of individual pupils or the schools by a consensus of expert opinion, examinations are neither valid nor complete. They are inadequate and unreliable, capricious and arbitrary." ରାଧାକ୍ରିଷ୍ଣନ୍ କମିଶନ, କୋଠାରୀ କମିଶନ ଆଦି ଭାରତୀୟ ପରୀକ୍ଷା ପଦ୍ଧତିରେ ପରିବର୍ତ୍ତନ ଆଣିବା ନିମିତ୍ତ ସୁପାରିସ କରିଥିଲେ । ବିଶ୍ଳେଷଣାତ୍ମକ କେତୋଟି ପ୍ରଶ୍ନ ପଚରା ଯାଇଥିଲେ ହେଁ ତନ୍ମଧ୍ୟରୁ ଗୋଟିଏ କିମ୍ବା ଦୁଇଟି ପ୍ରଶ୍ନର ଉତ୍ତର କରିବାକୁ କୁହାଯାଇଥାଏ । ସମସ୍ତ ପ୍ରଶ୍ନର ମୂଲ୍ୟ ସମାନ ହେଲେ ହେଁ ସମସ୍ତ ପ୍ରଶ୍ନ ଏକ ପ୍ରକାର ନୁହେଁ । ତନ୍ମଧ୍ୟରୁ ଅନେକ ପ୍ରଶ୍ନର ଉତ୍ତର ମଧ୍ୟ ପରୀକ୍ଷାର୍ଥୀଙ୍କୁ ଆସି ନଥାଏ । ଅଥଚ ଯେକୌଣସି ଜାଣିଥିବା ଉତ୍ତର

ଲେଖିପାରିଲେ ପରୀକ୍ଷାର୍ଥୀ ଭଲ ନମ୍ବର ପାଇଥାଏ । ଏଥିରୁ ପରୀକ୍ଷାର୍ଥୀର ଯଥାର୍ଥ ଜ୍ଞାନର ପ୍ରମାଣ ମିଳିନଥାଏ । ସଂକ୍ଷିପ୍ତ ପ୍ରଶ୍ନର ଉତ୍ତର ଏକପ୍ରକାର ହୋଇଥିବାରୁ ଏଥିରୁ ପରୀକ୍ଷାର୍ଥୀର ପ୍ରକୃତ ବୋଧଜ୍ଞାନର ପରିଚୟ ମିଳିନଥାଏ । ଅନେକ ବିଶେଷଜ୍ଞଙ୍କ ମତ ସାଂପ୍ରତିକ ପରୀକ୍ଷା ପଦ୍ଧତି ଛାତ୍ରଛାତ୍ରୀଙ୍କ ମଧ୍ୟରେ ମୁଖସ୍ଥ କରି ଲେଖିବାର ମନୋବୃତ୍ତି ବୃଦ୍ଧି କରିଥାଏ । ସମ୍ପୂର୍ଣ୍ଣ ପାଠ୍ୟକ୍ରମ ଆୟତ୍ତ ନ କରି ମଧ୍ୟ ନିର୍ବାଚିତ କେତୋଟି ପ୍ରଶ୍ନର ଉତ୍ତର ଜାଣି ପରୀକ୍ଷାର୍ଥୀ ପରୀକ୍ଷାରେ ପୁସ୍ତକ ମାଧ୍ୟମରେ ପରୀକ୍ଷା ବୈତରଣୀ ଅକ୍ଳେଶରେ ପାରି ହୋଇପାରୁଛନ୍ତି । ଏହି ପରୀକ୍ଷା ପଦ୍ଧତି ଦ୍ୱାରା ପରୀକ୍ଷାର୍ଥୀଙ୍କ ପ୍ରକୃତ ଜ୍ଞାନର ପରୀକ୍ଷା ହୋଇପାରୁ ନାହିଁ । ମୌଳିକ ଶିକ୍ଷା ( ୧ ୯୩୮ ) ସମ୍ପର୍କରେ ରିପୋର୍ଟ ଦେବା ସମୟରେ ଜାକିର ହୁସେନ୍ ଲେଖିଥିଲେ "The system of examinations prevailing in our country has proved a curse to education; A bad system of education has, if anything, been made worse by according to examinations a place out of all proportion to their utility. As a measure of the work of the individual pupils of the schools by consensus of expert opinion, examinations are neither valid nor complete. They are inadequate and unreliable and arbitrary. We should take care to guard against their painful influence. ଏହି ପରୀକ୍ଷା ପଦ୍ଧତି ଜ୍ଞାନର ପରିଧିକୁ ସୀମିତ କରିଦେଉଛି । ଶିକ୍ଷାର ମାନ ହ୍ରାସ କରୁଛି । ସ୍ମରଣ ଶକ୍ତିର ପ୍ରଖରତା ପ୍ରତିପାଦନ କରାଉଛି; ମାତ୍ର ସୃଜନଶୀଳତା ଓ ଚିନ୍ତାଶକ୍ତିର ପରିଚୟ ମିଳୁ ନାହିଁ । ଏହାଦ୍ୱାରା ଛାତ୍ରସମାଜ ବହୁପରିମାଣରେ ଭାଗ୍ୟବାଦୀ ହୋଇପଡୁଛନ୍ତି । କମ୍ ପରିଶ୍ରମରେ ସଫଳତା ଲାଭ ନିମିତ୍ତ ଚେଷ୍ଟା କରି ଅସାଧୁ ଉପାୟ ଅବଲମ୍ବନ କରୁଛନ୍ତି । ଏହି ପରୀକ୍ଷା ପଦ୍ଧତିରେ ପରୀକ୍ଷାର୍ଥୀଙ୍କର କୌଣସି ବିଷୟରେ ସ୍ପଷ୍ଟ ଧାରଣା ଅଛି କି ନାହିଁ ଜାଣି ହେଉ ନାହିଁ । ବର୍ଣ୍ଣନାତ୍ମକ ଉତ୍ତରରେ ଛାତ୍ରର ଯୁକ୍ତିସଙ୍ଗତ ବିଚାରଶକ୍ତି ଏବଂ ବିଷୟ ସମ୍ପର୍କରେ ପୁଙ୍ଖାନୁପୁଙ୍ଖ ଜ୍ଞାନ ଥିବାର ଜଣାଯାଏ ନାହିଁ । ଏହି ପରୀକ୍ଷାରେ କୌଣସି ପରୀକ୍ଷାର୍ଥୀର ମୌଳିକତା, ବିଚାରଶକ୍ତି, ସାଧୁତା, ସୁଶୀଳତା ଓ ବିଶ୍ୱସନୀୟତା ସମ୍ବନ୍ଧରେ ଜାଣିହୁଏ ନାହିଁ । ପରୀକ୍ଷାରେ ଯେକୌଣସି ପ୍ରକାର କୃତକାର୍ଯ୍ୟ ହେବା ଏବଂ ମୁଖସ୍ଥ କରିବାର ପ୍ରବୃତ୍ତିକୁ ବୃଦ୍ଧି କରିବା ଏହାର ଅନ୍ତିମ ଲକ୍ଷ୍ୟ ବୋଲି ଜଣାଯାଏ । ପୁନରାୟ ଏହି ପରୀକ୍ଷା ଶ୍ରେଣୀର ବିଭାଗ ଛାତ୍ରଛାତ୍ରୀଙ୍କ ମଧ୍ୟରେ ଶ୍ରେଷ୍ଠତ୍ୱ ଓ ହୀନତ୍ୱ ମନୋଭାବ ସୃଷ୍ଟିକରେ । ପରୀକ୍ଷା ପାଇଁ ଛାତ୍ର ନିଜକୁ ପ୍ରସ୍ତୁତ କରୁଥିବାରୁ ପରୀକ୍ଷା ପରେ ଏହି ଶିକ୍ଷାର କୌଣସି ମୂଲ୍ୟ ସେମାନେ ଅନୁଭବ କରିପାରନ୍ତି ନାହିଁ । କେତେକ କ୍ଷେତ୍ରରେ ପ୍ରଶ୍ନପତ୍ର ପ୍ରସ୍ତୁତ ସମୟରେ ପ୍ରଶ୍ନପତ୍ର କର୍ତ୍ତାଙ୍କ ଏକଦେଶଦର୍ଶିତାର ପ୍ରମାଣ ଦେଖିବାକୁ ମିଳେ । ପରୀକ୍ଷା ଖାତା ମୂଲ୍ୟାୟନ ସମୟରେ କେତେକ ଶିକ୍ଷକଙ୍କ ଅସାଧୁତା, ସ୍ୱାର୍ଥପର ମନୋବୃତ୍ତି ମୂଲ୍ୟାୟନର ସାଧୁତା ନଷ୍ଟ କରିଥାଏ । ଏହିପରି ବହୁକାରଣରୁ ସାଂପ୍ରତିକ ପରୀକ୍ଷା ପଦ୍ଧତି ତ୍ରୁଟିଯୁକ୍ତ ବୋଲି ମନେ ହୋଇଥାଏ ।

ଭାରତୀୟ ଶିକ୍ଷା କମିଶନ (Indian Education Commission) ପରୀକ୍ଷା ପଦ୍ଧତିର ସଂସ୍କାର ନିମିତ୍ତ କେତେକ ପରାମର୍ଶ ଦେଇଛନ୍ତି । କମିଶନ ମୁଖ୍ୟତଃ ଲିଖିତ ପରୀକ୍ଷା ଉପରେ ଅଧିକ ଗୁରୁତ୍ୱ ଦେଇଛନ୍ତି । ପ୍ରାଥମିକ ସ୍ତରରେ ଲିଖିତ ପରୀକ୍ଷା ସହିତ କେତେକ ମୌଖିକ ପରୀକ୍ଷା କରିବାର ଆବଶ୍ୟକତା ରହିଛି । ଏହି ମୌଖିକ ପରୀକ୍ଷା ମୁଖ୍ୟତଃ ଛାତ୍ରଛାତ୍ରୀଙ୍କର ପରିବେଶ ତଥା ଅଞ୍ଚଳର ଗୁରୁତ୍ୱକୁ ଆଖି ଆଗରେ ରଖି ଶିକ୍ଷକ ପ୍ରସ୍ତୁତ କରିବେ । କ୍ରମବର୍ଦ୍ଧିଷ୍ଣୁ ନଥି (Cumulative record) ଦ୍ୱାରା ଶିକ୍ଷକ ଛାତ୍ରଛାତ୍ରୀମାନଙ୍କର ବିକାଶ ପ୍ରତି ଦୃଷ୍ଟି ଦେବା ଆବଶ୍ୟକ ବୋଲି କମିଶନ ମତ ଦେଇଛନ୍ତି । ପ୍ରାଥମିକ ସ୍ତରରେ ବର୍ଷ ଶେଷରେ ବିଭିନ୍ନ ସ୍କୁଲର ଛାତ୍ରଛାତ୍ରୀମାନଙ୍କୁ ନେଇ ଏକ ସାମୂହିକ ପରୀକ୍ଷା ଶିକ୍ଷା ଅଧିକାରୀଙ୍କ ପ୍ରତ୍ୟକ୍ଷ ଦାୟିତ୍ୱରେ ହେବା ଉଚିତ । ଏହା ଦ୍ୱାରା ଆନ୍ତଃବିଦ୍ୟାଳୟ ମଧ୍ୟରେ ତୁଳନାତ୍ମକ ବିଚାର କରାଯାଇ କେଉଁ ବିଦ୍ୟାଳୟ ଶିକ୍ଷା କ୍ଷେତ୍ରରେ କେତେ ଉନ୍ନତି କରିଛି, ଜଣାଯିବା ସଙ୍ଗେ ସଙ୍ଗେ ଏକ ପ୍ରତିଯୋଗିତାମୂଳକ ପରିବେଶ ସୃଷ୍ଟି କରାଯାଇପାରିବ । ଏତଦ୍ ବ୍ୟତୀତ ପ୍ରତ୍ୟେକ ବିଦ୍ୟାଳୟର ଭଲ ଭଲ ଛାତ୍ରଛାତ୍ରୀଙ୍କୁ ନେଇ ପରୀକ୍ଷା କରାଯାଇ ଉତ୍ତମ ପିଲାମାନଙ୍କୁ ପ୍ରଶଂସାପତ୍ର ପ୍ରଦାନ କରିବା ଉପରେ ଏହି କମିଶନ ଗୁରୁତ୍ୱ ଦେଇଛନ୍ତି । ବିଂଶ ଶତାବ୍ଦୀରେ ଶିକ୍ଷାର ମାନ ନିର୍ଦ୍ଧାରଣ କରିବା ନିମିତ୍ତ ସଂକ୍ଷିପ୍ତ ପ୍ରଶ୍ନୋତ୍ତର ଉପରେ କମିଶନମାନେ ଗୁରୁତ୍ୱ ଦେଇଛନ୍ତି । ଏହି ପରୀକ୍ଷାକୁ ନୂତନ ପରୀକ୍ଷା ପଦ୍ଧତି ବୋଲି କୁହାଯାଇଛି । ଏଥିରୁ ଛାତ୍ରଛାତ୍ରୀମାନଙ୍କର ଜ୍ଞାନ, ସ୍ମରଣ ଶକ୍ତି, ବିଚାର ପଦ୍ଧତି, ପରିସ୍ଥିତିର ବିଚାରଶକ୍ତି ଆଦି ସମ୍ବନ୍ଧରେ ଜାଣି ହୋଇଥାଏ । ସମ୍ପୂର୍ଣ୍ଣ ପାଠ୍ୟକ୍ରମକୁ ଆଖି ଆଗରେ ରଖି ପ୍ରଶ୍ନପତ୍ର ପ୍ରସ୍ତୁତ କରାଯାଇଥାଏ । ଏହାଦ୍ୱାରା ଛାତ୍ରଛାତ୍ରୀ ପ୍ରଶ୍ନୋତ୍ତର ପୁସ୍ତକର ସାହାଯ୍ୟ ନ ନେଇ ପ୍ରକୃତ ପାଠ୍ୟପୁସ୍ତକର ସାହାଯ୍ୟ ନେଇଥାଏ । ସେଥିପାଇଁ ସେ ନିର୍ଦ୍ଦିଷ୍ଟ କେତୋଟି ପ୍ରଶ୍ନ ପ୍ରସ୍ତୁତ ନ କରି ସମ୍ପୂର୍ଣ୍ଣ ପାଠ୍ୟକ୍ରମକୁ ଆୟତ୍ତ କରିବାକୁ ଚେଷ୍ଟା କରିଥାଏ । ସଂକ୍ଷିପ୍ତ ପ୍ରଶ୍ନୋତ୍ତର ସହିତ ଗୋଟିଏ ଦୁଇଟି ବିଶ୍ଳେଷଣାତ୍ମକ ପ୍ରଶ୍ନର ଉତ୍ତର ଦେବାକୁ ମଧ୍ୟ ପଚରା ଯାଇଥାଏ । ବିଶ୍ଳେଷଣାତ୍ମକ ପ୍ରଶ୍ନରୁ ଛାତ୍ରର ଯୁକ୍ତିବତ୍ତା, ପ୍ରକାଶଭଙ୍ଗୀର ସ୍ୱଚ୍ଛତା ଏବଂ ଭାଷାଗତ ଜ୍ଞାନର ପରିଚୟ ମିଳିଥାଏ । ପରୀକ୍ଷା ପରେ ଶିକ୍ଷା ବୋର୍ଡ ବା ବିଶ୍ୱବିଦ୍ୟାଳୟ ସମସ୍ତ ବିଷୟର ନମ୍ବର ମିଶାଇ ଗ୍ରେଡ୍ ବା ଶ୍ରେଣୀ ଦେବା ଅପେକ୍ଷା ପ୍ରତ୍ୟେକ ବିଷୟ ପାଇଁ ଗ୍ରେଡ୍ ଦେବା ଆବଶ୍ୟକ । ଏହାଦ୍ୱାରା ନିଯୁକ୍ତି ଅଧିକାରୀ ତା'ର ମନୋନୀତ ବିଷୟକୁ ଆଖି ଆଗରେ ରଖି ନିଯୁକ୍ତି ଦେବା ଦ୍ୱାରା ଉଭୟ ନିଯୁକ୍ତିଦାତା ଏବଂ ଛାତ୍ରଛାତ୍ରୀ ଉପକୃତ ହୋଇଥାନ୍ତି ।

ପରୀକ୍ଷା ପଦ୍ଧତିର ସଂସ୍କାର ନିମିତ୍ତ ବହୁକ୍ଷେତ୍ରରେ ଆପତ୍ତି ଅଭିଯୋଗମାନ ଆସୁଛି । ଯେପର୍ଯ୍ୟନ୍ତ ଆମର ବ୍ୟକ୍ତିଗତ ଚରିତ୍ର ସଂଶୋଧିତ ହୋଇପାରି ନାହିଁ, ସେ ପର୍ଯ୍ୟନ୍ତ ପରୀକ୍ଷା ପଦ୍ଧତିରେ ସଂସ୍କାର ଆଣିବା ସମ୍ଭବ ନୁହେଁ । ପରୀକ୍ଷା ସମୟରେ କେତେକ ଛାତ୍ର, ଶିକ୍ଷକ ବା ଅଭିଭାବକ ଯେଉଁ ପ୍ରକାର ଅପ୍ରୀତିକର ପରିସ୍ଥିତି ସୃଷ୍ଟି କରୁଛନ୍ତି, ତାହା ସମ୍ପୂର୍ଣ୍ଣ ପରୀକ୍ଷା ପଦ୍ଧତିକୁ କଳୁଷିତ କରିଦେଉଛି । ଅସତ୍ ଉପାୟ ଅବଲମ୍ବନରେ ଛାତ୍ରସମାଜ ଭଲ ଶ୍ରେଣୀ ବା ନମ୍ବର ରଖିବାକୁ ଚେଷ୍ଟା କରୁଛନ୍ତି । ଏଥିରେ ସେମାନଙ୍କୁ ସହାୟତା କରୁଛନ୍ତି କେତେକ ଶିକ୍ଷକ ଓ ଅଭିଭାବକ ।

ପରୀକ୍ଷା ପରିଚାଳନାର ଦାୟିତ୍ୱ ଠିକ୍ ଭାବେ ସମ୍ପନ୍ନ କରୁନାହାନ୍ତି । ମନୋବୃତ୍ତିରେ ପରିବର୍ତ୍ତନ ନ ଘଟିଲେ, ପରୀକ୍ଷା ସଂଶୋଧନ ନିମିତ୍ତ ଯେତେ ପ୍ରକାର ଉପାୟ ଅବଲମ୍ବନ କଲେ ମଧ୍ୟ ତାହା ସଫଳ ହୋଇପାରିବ ନାହିଁ । ପୁନରାୟ ପରୀକ୍ଷା ପରେ ନିଯୁକ୍ତିର ସମ୍ଭାବନା କ୍ଷୀଣ ଥିବାରୁ, ସାର୍ଟିଫିକେଟ ଉପରେ ବିଶେଷ କେହି ଗୁରୁତ୍ୱ ଦେଉନାହାନ୍ତି । ଯେକୌଣସି ଉପାୟରେ ଉତ୍ତୀର୍ଣ୍ଣ ହୋଇଯିବା ଆଜି ହୋଇଛି ପରୀକ୍ଷାର ଆଦର୍ଶ । ଶିକ୍ଷକ, ସରକାର, ଅଭିଭାବକ ଓ ପରୀକ୍ଷା ପରିଚାଳନା ଦାୟିତ୍ୱରେ ଥିବା ଅଧିକାରୀ ମିଳିତ ଭାବରେ କାର୍ଯ୍ୟ ନ କଲେ ପରୀକ୍ଷା ପଦ୍ଧତିରେ ସଂସ୍କାର ଆଣିବା ଆଦୌ ସମ୍ଭବପର ନୁହେଁ ।

ଶିକ୍ଷାବର୍ଷ ଶେଷରେ ପରୀକ୍ଷାର ଆବଶ୍ୟକତା ରହିଛି । ଏହାଦ୍ୱାରା ଛାତ୍ରସମାଜ ନିଜର ପ୍ରକୃତ ଜ୍ଞାନର ପରୀକ୍ଷା ଦେବାକୁ ସମର୍ଥ ହୋଇଥାନ୍ତି । ବାସ୍ତବ ଜୀବନର ସମ୍ମୁଖୀନ ହେବା ପାଇଁ ଉପାଦାନ ଲାଭ କରିଥାନ୍ତି । ମାତ୍ର ଆଜି ଯେପରି ପରୀକ୍ଷା ଚାଲିଛି, ସେଥିରୁ ପିଲାଟିର ପ୍ରକୃତ ଜ୍ଞାନ କଳ୍ପନା କରିବା କଷ୍ଟକର ହୋଇପଡୁଛି । ଅନେକ ସମୟରେ ପରୀକ୍ଷା ରାଜନୈତିକ ବ୍ୟକ୍ତିବିଶେଷଙ୍କ ଇଚ୍ଛାନୁଯାୟୀ ପରିଚାଳିତ ହେଉଛି । ଏହାଦ୍ୱାରା ପରୀକ୍ଷାର ମାନରେ ହ୍ରାସ ଘଟୁଛି । ବର୍ତ୍ତମାନ ଏହି ପଦ୍ଧତିରେ ସମ୍ପୂର୍ଣ୍ଣ ପରିବର୍ତ୍ତନ ଆଣିବାର ସମୟ ଆସିଛି । ସମସ୍ତେ ସହଯୋଗପୂର୍ବକ ଏହି ବ୍ୟବସ୍ଥାରେ ପରିବର୍ତ୍ତନ ଆଣିପାରିଲେ, ଛାତ୍ରସମାଜଙ୍କୁ ସେମାନଙ୍କର ଯଥାର୍ଥ ନ୍ୟାୟ ପ୍ରଦାନ କରିପାରିବା । ପରୀକ୍ଷାକୁ କେନ୍ଦ୍ର କରି ଯେଉଁ ଗଣ୍ଡଗୋଳ ସୃଷ୍ଟି ହେଉଛି, ତାକୁ ମଧ୍ୟ ଦୂରୀକରଣ କରିପାରିବା । ବର୍ତ୍ତମାନ ଏହା ଆମ ସମସ୍ତଙ୍କର ଏକ ନୈତିକ ଦାୟିତ୍ୱ ହୋଇପଡ଼ିଛି ।



# ଜାତୀୟ ସଂହତି ପ୍ରତିଷ୍ଠାରେ ଶିକ୍ଷାର ଭୂମିକା

**(ଉପକ୍ରମ, ଜାତୀୟ ସଂହତି କ'ଣ ?, ଜାତୀୟ ସଂହତି ବାଧାପ୍ରାପ୍ତ ହେବାର କେତେକ କାରଣ (ଜାତୀୟ ଚେତନାର ଅଭାବ, ସଂକୀର୍ଣ୍ଣ ଆଞ୍ଚଳିକ ମନୋଭାବ, ସାଂପ୍ରଦାୟିକତା, ଭାଷାସମସ୍ୟା, ଜାତିଗତ ସମସ୍ୟା, ନିରକ୍ଷରତା, ରାଜନୀତିକ ବିରୋଧୀଭାବ, ଧର୍ମାନ୍ଧତା, ସୀମାବିବାଦ), ସମସ୍ୟାର ସମାଧାନ ଉପାୟ (ଜାତୀୟବାଦୀ ମନୋଭାବର ଉଦ୍ରେକ, ପରିବହନର ଉନ୍ନତି, ଧର୍ମନିରପେକ୍ଷତା, କେନ୍ଦ୍ରୀୟ ସେବା ବ୍ୟବସ୍ଥା, ନୈତିକ ଶିକ୍ଷାର ଉନ୍ନତି, ଜାତିଗତ ବୈଷମ୍ୟର ବିଲୋପ), ଜାତୀୟ ସଂହତି କ୍ଷେତ୍ରରେ ଶିକ୍ଷାର ଭୂମିକା, ଉପସଂହାର)**

ସମଗ୍ର ବିଶ୍ୱରେ ଭାରତ ଏକ ବିଚିତ୍ର ଦେଶ । ବହୁଭାଷା, ବର୍ଣ୍ଣ, ରୁଚି ଓ ଧର୍ମର ଲୋକେ ବାସ କରନ୍ତି ଏଠାରେ । ସାମାଜିକ, ସାଂସ୍କୃତିକ ଓ ରାଜନୀତିକ କ୍ଷେତ୍ରରେ ଏହି

କାରଣରୁ ମତପାର୍ଥକ୍ୟ ଦେଖାଯାଇଥାଏ । ''ଦେଶକେ ଫାଙ୍କ୍, ନଈକେ ବାଙ୍କ'' ନୀତିରେ କେତେକ କ୍ଷେତ୍ରରେ ବୈସାଦୃଶ୍ୟ ପରିଲକ୍ଷିତ ହେବା ସ୍ୱାଭାବିକ । ଏହା ସତ୍ତ୍ୱେ ବିଭିନ୍ନତା ମଧ୍ୟରେ ସାଦୃଶ୍ୟ, ଅନୈକ୍ୟ ମଧ୍ୟରେ ଐକ୍ୟ ହେଉଛି ଭାରତୀୟ ସଂସ୍କୃତିର ବୈଶିଷ୍ଟ୍ୟ । କେଉଁ ପ୍ରାଚୀନ କାଳରୁ ମୁନିଋଷିଗଣ ଭାରତରେ ଐକ୍ୟ ପ୍ରତିଷ୍ଠା କରିବା ନିମିତ୍ତ ଉଦ୍ୟମ କରିଯାଇଛନ୍ତି । ଭାରତର ଚାରି ଦିଗରେ ଚାରିଧାମ – ଯଥାକ୍ରମେ ରାମେଶ୍ୱର, ଦ୍ୱାରିକା, ଜଗନ୍ନାଥ ପୁରୀ ଓ ବଦ୍ରିନାଥଙ୍କ ପରିକଳ୍ପନା କରାଯାଇଛି । ଭାରତୀୟ ସଂସ୍କୃତିରେ ଯେଉଁ ନଦୀମାନଙ୍କୁ ସମ୍ମାନ ପ୍ରଦର୍ଶନ କରାଯାଇଥାଏ, ସେମାନେ ମଧ୍ୟ ଭାରତର କୌଣସି ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ପ୍ରବାହିତ ନୁହନ୍ତି । ଦକ୍ଷିଣର କୃଷ୍ଣା, କାବେରୀ ଏବଂ ଗୋଦାବରୀ, ପଶ୍ଚିମର ସିନ୍ଧୁ, ଉତ୍ତରର ଗଙ୍ଗା, ଯମୁନା, ସରଯୁ ଏବଂ ଗୋମତୀ ଏବଂ ପୂର୍ବର ବ୍ରହ୍ମପୁତ୍ର ନଦୀଗୁଡ଼ିକ ଭାରତର ଚାରିଦିଗର ମହତ୍ତ୍ୱ ପ୍ରତିପାଦନ କରିଥାନ୍ତି । ଧର୍ମପ୍ରଚାର ସମୟରେ ଭାରତର ଚାରୋଟି ଦିଗ ଏହାର ପ୍ରସାର କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିଛନ୍ତି । ସମଗ୍ର ଭାରତବର୍ଷକୁ ଆମର ପୂର୍ବାଚାର୍ଯ୍ୟଗଣ ଗୋଟିଏ ରଜ୍ଜୁରେ ବନ୍ଧନ କରିବାକୁ ଆପ୍ରାଣ ଉଦ୍ୟମ କରି ସଫଳକାମ ହୋଇଛନ୍ତି । ଏକତାର ମନ୍ତ୍ର ପ୍ରଚାରିତ ହୋଇଛି ଭାରତରେ । ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ସମସ୍ତେ ନିଜକୁ ଭାରତୀୟ ବୋଲି ଗର୍ବକରି ଗୌରବାନ୍ୱିତ ହୋଇଛନ୍ତି । କାଶ୍ମୀରଠାରୁ କନ୍ୟାକୁମାରୀ – ଭାରତ ଏକ ଓ ଅଭିନ୍ନ, ଏହାହିଁ ଭାରତୀୟ ସଂସ୍କୃତିର ବୈଶିଷ୍ଟ୍ୟ । ଆଜି ଭାରତର ସେହି ଏକତା କ୍ଷେତ୍ରରେ କିଛି ପରିମାଣରେ ସନ୍ଦେହ ସୃଷ୍ଟି ହୋଇଛି । ବର୍ତ୍ତମାନ ପ୍ରତ୍ୟେକ ଭାରତୀୟ ଜାତୀୟ ସଂହତି ରକ୍ଷା କରିବା କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିବା ଆବଶ୍ୟକ । ସମୟର ଏହି ଆହ୍ୱାନକୁ ଗ୍ରହଣ କରି ନ ପାରିଲେ, ଭାରତର ଅତୀତ ମର୍ଯ୍ୟାଦା ଓ ସମ୍ମାନ ଭୂଲୁଣ୍ଠିତ ହୋଇପଡ଼ିବା ବିଚିତ୍ର ନୁହେଁ ।

ଗୋଟିଏ ଦେଶ ମଧ୍ୟରେ ବସବାସ କରୁଥିବା ଜନସାଧାରଣଙ୍କ ମଧ୍ୟରେ ଏକତାର ଭାବକୁ ଜାତୀୟ ସଂହତି କୁହାଯାଏ । ସେହି ଲୋକମାନଙ୍କର ଦେଶ ପାଇଁ ଉତ୍ସର୍ଗିତ କାର୍ଯ୍ୟକଳାପ ଦେଶର ବିକାଶ କ୍ଷେତ୍ରରେ ସହାୟତା କରିଥାଏ । ଭାରତରେ ବିଭିନ୍ନ ଧର୍ମ, ସଂପ୍ରଦାୟ ଓ ରୁଚିର ବ୍ୟକ୍ତି ବାସ କରୁଥିଲେ ହେଁ ଭାରତ ଗୋଟିଏ ଜାତି ଏବଂ ଏହାର ହୃଦୟ ମଧ୍ୟ ଏକ– 'ଏହି ଚିନ୍ତାଧାରା ହିଁ ଜାତୀୟ ସଂହତି ପାଇଁ ପଥ ପରିଷ୍କାର କରିଥାଏ । ଜାତୀୟ ସଂହତିର ଅର୍ଥ ଓ ଉଦ୍ଦେଶ୍ୟ ସମ୍ପର୍କରେ କୁହାଯାଇଛି "As a feeling among people to share certain common objectives, purposes or ideals and giving them high place over smaller or sectional loyalities. In other words, it has been defined as a feeling of oneness which may transcend all groups or cultural difference and synthesise the different religions, castes, linguisitic communities emotionally into a compact whole." ବ୍ୟକ୍ତିଗତ ସ୍ୱାର୍ଥର ଊର୍ଦ୍ଧ୍ୱରେ ଜାତିର ସ୍ୱାର୍ଥ, ସମଗ୍ର ଭାରତୀୟ ଏକ ଓ ଅଭିନ୍ନ, ଦେଶର ପ୍ରଗତି ପାଇଁ ସମସ୍ତ ସଂକୀର୍ଣ୍ଣ ଭାବ ପରିତ୍ୟାଗପୂର୍ବକ ଜାତୀୟ ସ୍ରୋତରେ ସାମିଲ

କରିଦେବା ଭାବ ହିଁ ଜାତୀୟ ଭାବ । ଏହି ଭାବରେ ଭାବିତ ହେଲେ ଜାତୀୟ ସଂହତି ପ୍ରତିଷ୍ଠା ହୋଇଥାଏ । ଦେଶର ସ୍ୱାଭିମାନ ଓ ସାର୍ବଭୌମତ୍ୱର ରକ୍ଷା ପାଇଁ ଏକ ପ୍ରାଣ, ଏକମନ ନେଇ କାର୍ଯ୍ୟ କରିବା ଜାତୀୟତାର ମୂଳମନ୍ତ୍ର ଏବଂ ଏହାହିଁ ଜାତୀୟ ସଂହତିର ମୂଳଭିତ୍ତି ।

ଆଜି ଭାରତର ଜାତୀୟ ସଂହତିର ସୁରକ୍ଷା ଉପରେ ପ୍ରଶ୍ନବାଚୀ ମୁଣ୍ଡ ଟେକି ଉଠିଛି । ସମସ୍ତ ପ୍ରତିକୂଳତା ସତ୍ତ୍ୱେ ବର୍ତ୍ତମାନ ଭାରତୀୟଙ୍କ ମନରେ ଏକତ୍ୱ ଭାବର ବୃଦ୍ଧି ପାଇଁ ପଦକ୍ଷେପ ଗ୍ରହଣ କରାଯିବା ଏକାନ୍ତ ଜରୁରୀ । ୧୯୬୧ ମସିହାରେ Emotional Integration Committee ଗଠନ କରାଯାଇଥିଲା ଓ ଏହାର ଅଧ୍ୟକ୍ଷ ଥିଲେ ଡଃ. ସମ୍ପୂର୍ଣ୍ଣାନନ୍ଦ । ସେ ତାଙ୍କ ସୁପାରିସରେ ଲେଖିଥିଲେ "One of the hardest problems before us today is the building up of a national mind by curbing the religious, linguistic and communal conflicts which tend to disunite us." ଭାରତର ଜାତୀୟ ସଂହତି ପ୍ରତିଷ୍ଠା କ୍ଷେତ୍ରରେ ବାଧାପ୍ରଦାନ କରୁଥିବା କେତେକ ମୁଖ୍ୟକାରଣ ମଧ୍ୟରୁ ପ୍ରଥମଟି ହେଉଛି ଜାତୀୟ ଚେତନାର ଅଭାବ । ''ଆମେ ଭାରତୀୟ ଓ କାୟମନବାକ୍ୟରେ ଭାରତର ସେବା କରିବା ଧର୍ମ'' – ଏହି ଭାବ ଆମ ଠାରୁ ଧୀରେ ଧୀରେ ଦୂରେଇଯିବାକୁ ଲାଗିଛି । ଦେଶପ୍ରେମ, ଜାତୀୟତା ଭାବଧାରା ଦ୍ୱାରା ଆମେ ସମ୍ପୂର୍ଣ୍ଣ ଉଦ୍‌ବୁଦ୍ଧ ହୋଇପାରୁ ନାହୁଁ । ସଂକୀର୍ଣ୍ଣ ବ୍ୟକ୍ତିଗତ ସ୍ୱାର୍ଥ ପାଇଁ ଆମେ ଜାତୀୟ ସ୍ୱାର୍ଥକୁ ବଳି ଦେବା ପାଇଁ ପ୍ରସ୍ତୁତ । ଜାତୀୟ ଚେତନା ଦ୍ୱାରା ଉଦ୍‌ବୁଦ୍ଧ ହୋଇ ନ ପାରିଲେ, ଦେଶର ସାର୍ବଭୌମ ଓ ସୁରକ୍ଷା ବିପନ୍ନ ହୋଇପଡ଼ିବ । ତେଣୁ ବର୍ତ୍ତମାନର ଯୁବସମାଜ ଜାତୀୟ ଭାବଧାରା ପ୍ରେରିତ ନ ହେଲେ ପୁଣି ଅତୀତର ସେହି ଅନ୍ଧକାର ଦିନଗୁଡ଼ିକୁ ସ୍ୱାଗତ କରିବାକୁ ବାଧ ହେବା । ସଂକୀର୍ଣ୍ଣ ଆଞ୍ଚଳିକ ମନୋଭାବ ଜାତୀୟ ସଂହତିର ପରିପନ୍ଥୀ । ଉଗ୍ର ଆଞ୍ଚଳିକତାବୋଧ ପାଇଁ ଅଞ୍ଚଳ ଅଞ୍ଚଳ ମଧ୍ୟରେ ମନାନ୍ତର ଓ ମତାନ୍ତର ସୃଷ୍ଟି ହେଉଛି । ଏହାଦ୍ୱାରା ଜାତୀୟ ସଂହତି ମଧ୍ୟ ବିପନ୍ନ ହୋଇପଡୁଛି । ଭାଷାକୁ ଆଧାର କରି ଅଞ୍ଚଳମାନ ସୃଷ୍ଟି ହେବା ପରେ ନିଜ ଅଞ୍ଚଳର ଗୁରୁତ୍ୱ ବୃଦ୍ଧି ପାଇଁ ସମସ୍ତେ ଚେଷ୍ଟା କରିବା ସଙ୍ଗେ ସଙ୍ଗେ ଅନ୍ୟ ଅଞ୍ଚଳର ସ୍ୱାର୍ଥ ପ୍ରତି ଆଖିବୁଜି ଦେଉଛନ୍ତି । ଏପରିକି ରାଜନୀତିକ ନେତା ସମଗ୍ର ଭାରତବର୍ଷ କଥା ଚିନ୍ତା ନ କରି ନିଜ ଅଞ୍ଚଳର ସ୍ୱାର୍ଥ ପ୍ରତି ଅଧିକ ପରିମାଣରେ ସଚେତନ ହୋଇପଡୁଛନ୍ତି । କାବେରୀ ଏବଂ କୃଷ୍ଣା ନଦୀର ଜଳବଣ୍ଟନକୁ କେନ୍ଦ୍ର କରି ରାଜ୍ୟ ରାଜ୍ୟ ମଧ୍ୟରେ ବିବାଦ ବେଶ୍ ସ୍ପଷ୍ଟ ହୋଇପଡ଼ିଛି । ରାଷ୍ଟ୍ରୀୟ ନିରାପତ୍ତା କ୍ଷେତ୍ରରେ ଏହି ପ୍ରକାର ମନୋଭାବ ବିପଦ ସୃଷ୍ଟି କରିଛି । ସାଂପ୍ରଦାୟିକତାବୋଧ ଭାରତର ଜାତୀୟ ସଂହତି ପ୍ରତି ପରୋକ୍ଷରେ ଏକ ଆହ୍ୱାନ ଦେଇଛି । ଧର୍ମ ଓ ମତକୁ କେନ୍ଦ୍ର କରି ସଂଘର୍ଷ ସୃଷ୍ଟି ହେଉଛି । ଭାରତର ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟିଆନମାନେ ନିଜକୁ ଭାରତୀୟ ମନେ ନ କରି ବରଂ ହିନ୍ଦୁ, ମୁସଲମାନ ବା ଖ୍ରୀଷ୍ଟିଆନ ଭାବରେ ପରିଚିତ ହେବାକୁ ଗୌରବାନ୍ୱିତ ମନେ କରୁଛନ୍ତି । ସାମ୍ପ୍ରଦାୟିକ ସଦ୍ଭାବ ସୃଷ୍ଟି ହେବା ପରିବର୍ତ୍ତେ ସଂଘର୍ଷ ସୃଷ୍ଟି ହେଉଛି । ନିର୍ଦ୍ଦିଷ୍ଟ ସମ୍ପ୍ରଦାୟର ପୂଜାପାର୍ବଣ ସମୟରେ ଅନ୍ୟ ସଂପ୍ରଦାୟ ଛୋଟ ଛୋଟ ଘଟଣାକୁ ନେଇ

ଗଣ୍ଡଗୋଳ ସୃଷ୍ଟି କରୁଛନ୍ତି । ଆଜି ବିଜ୍ଞାନର ଆଶୀର୍ବାଦ ଦ୍ୱାରା ଯେତେବେଳେ ସମଗ୍ର ବିଶ୍ୱ ବୃହତ୍ତର ସ୍ୱାର୍ଥକୁ ଆଖି ଆଗରେ ରଖି ଅଗ୍ରସର ହେଉଛନ୍ତି, ସେତେବେଳେ ଭାରତରେ ବସବାସ କରୁଥିବା ବିଭିନ୍ନ ସଂପ୍ରଦାୟ ନିଜ ନିଜ ମଧ୍ୟରେ ସଦ୍‌ଭାବ ସୃଷ୍ଟି ନ କରି ଶତ୍ରୁତା ସୃଷ୍ଟି କରିବା ଦ୍ୱାରା ଜାତୀୟ ସଂହତି ବିପନ୍ନ ହୋଇ ପଡୁଛି । ଅଯଥା ଧର୍ମକୁ କେନ୍ଦ୍ର କରି ଜାତୀୟ ଐକ୍ୟକୁ ଖଣ୍ଡ ବିଖଣ୍ଡିତ କରାଯାଉଛି । ଭାରତରେ ଭାଷାକୁ କେନ୍ଦ୍ରକରି ମଧ୍ୟ ଅତୀତରେ ବହୁ ଗଣ୍ଡଗୋଳ ସୃଷ୍ଟି ହୋଇଛି । ଭାରତରେ ଧର୍ମକୁ କେନ୍ଦ୍ରକରି ଜାତୀୟ ଐକ୍ୟକୁ ଖଣ୍ଡବିଖଣ୍ଡିତ କରାଯାଏ । ଭାରତୀୟ ସମ୍ବିଧାନ ପନ୍ଦରଟି ଭାଷାକୁ ଜାତୀୟ ଭାଷାର ସ୍ୱୀକୃତି ଦେଇଥିଲେ ମଧ୍ୟ ବହୁ ଉପଭାଷା ବା ଆଞ୍ଚଳିକ ଭାଷା ରହିଛି । ଭାଷାକୁ ଭିତ୍ତି କରି ପ୍ରଦେଶ ମଧ୍ୟ ଗଠନ କରାଗଲା । ମାତ୍ର ରାଷ୍ଟ୍ରଭାଷାକୁ କେନ୍ଦ୍ର କରି ଉତ୍ତରଭାରତ ଓ ଦକ୍ଷିଣଭାରତ ମଧ୍ୟରେ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଛି । ଦକ୍ଷିଣଭାରତ ହିନ୍ଦୀକୁ ରାଷ୍ଟ୍ରଭାଷାର ମର୍ଯ୍ୟାଦା ଦେବାକୁ ନାରାଜ । ଜାତୀୟ ପୁରସ୍କାର ବଣ୍ଟନରେ ମଧ୍ୟ ଭାଷାକୁ ଭିତ୍ତି କରି ପୁରସ୍କାର ପ୍ରଦାନ କରାଯାଉଥିବାରୁ ତାହା ବିଭିନ୍ନ ସମସ୍ୟା ସୃଷ୍ଟି କରୁଛି । ନିଜ ଭାଷାର ମହତ୍ତ୍ୱ ପ୍ରତିପାଦନ ନିମିତ୍ତ ସମସ୍ତେ ସଚେଷ୍ଟ ହେବାରୁ ଭାଷାଗତ ଦ୍ୱନ୍ଦ୍ୱ ସୃଷ୍ଟି ହୋଇ ଜାତୀୟ ଐକ୍ୟ ପ୍ରତି ବିପଦ ସୃଷ୍ଟି କରୁଛି । ଜାତିଗତ ସମସ୍ୟା ଜାତୀୟ ସଂହତି ପ୍ରତିଷ୍ଠା କ୍ଷେତ୍ରରେ ଅନ୍ୟତମ ମୁଖ୍ୟ ପ୍ରତିବନ୍ଧକ । ବୈଦିକ ଯୁଗରେ କର୍ମର ସୁଷମ ବଣ୍ଟନ ପାଇଁ ଜାତିଭେଦ ସୃଷ୍ଟି କରାଯାଇଥିଲା । ପରବର୍ତ୍ତୀ ସମୟରେ ଜାତିଆଣ ଭାବକୁ କେନ୍ଦ୍ର କରି ସଙ୍କଟ ସୃଷ୍ଟି ହେଲା । ଜାତିକୁ ଆଳ କରି ପ୍ରତିନିଧିତ୍ୱ ବ୍ୟବସ୍ଥା କରାଗଲା । ରାଜନୈତିକ ନେତାମାନେ ଆଜି ଜାତିକୁ ଏକ ଅମୋଘ ଅସ୍ତ୍ରରୂପେ ବ୍ୟବହାର କରିବାକୁ ଆରମ୍ଭ କରିଦେଇଛନ୍ତି । ସଂରକ୍ଷଣ ବ୍ୟବସ୍ଥା ଦ୍ୱାରା ଜାତି ଜାତି ମଧ୍ୟରେ ସଂଘର୍ଷ ଦେଖାଯାଉଛି । ଜାତୀୟ ସଂହତି ପ୍ରତିଷ୍ଠାରେ ଏହି ଜାତିଆଣଭାବ ଆଜି ଅନ୍ୟତମ ମୁଖ୍ୟ ପ୍ରତିବନ୍ଧକ ରୂପେ ଦେଖାଦେଇଛି । ନିରକ୍ଷରତା ଜାତୀୟ ସଂହତି ପ୍ରତି ବିପନ୍ନ ହେବାର ଅନ୍ୟତମ କାରଣ । ବିଶ୍ୱରେ ସର୍ବାଧିକ ନିରକ୍ଷର ବ୍ୟକ୍ତି ଭାରତରେ ବାସ କରନ୍ତି । ଏହି ନିରକ୍ଷର ବ୍ୟକ୍ତି କେବେ ଦେଶ ସମ୍ବନ୍ଧରେ ଚିନ୍ତା କରିବାକୁ ଇଚ୍ଛା ପ୍ରକାଶ କରି ନ ଥାନ୍ତି । ରାଜନୈତିକ ନେତା ଏହି ବ୍ୟକ୍ତିମାନଙ୍କୁ ଭୁଲାଇ ନିଜର ଫାଇଦା ହାସଲ କରିଥାନ୍ତି । ଦେଶର ପ୍ରଗତି ଓ ବିକାଶ ସମ୍ପର୍କରେ ଆଦୌ ଧ୍ୟାନ ଦେଇନଥାନ୍ତି । ଜାତୀୟତା ଭାବ ଦ୍ୱାରା ଏମାନେ ଉଦ୍‌ବୁଦ୍ଧ ହୋଇପାରନ୍ତି ନାହିଁ । ରାଜନୀତିକ ବିରୋଧୀଭାବ ଜାତୀୟ ସଂହତି ପ୍ରତି ସବୁଠାରୁ ବଡ଼ ବିପଦ । ଗୋଟିଏ ରାଜନୈତିକ ଦଳ ଅନ୍ୟ ଏକ ରାଜନୈତିକ ଦଳଙ୍କୁ ସହଜରେ ଗ୍ରହଣ କରି ପାରିନଥାନ୍ତି । ବିରୋଧୀ ଦଳ ସେମାନଙ୍କର ପ୍ରକୃତ ଭୂମିକା ଭୁଲିଯାଇ କେବଳ ସମାଲୋଚନା ହିଁ କରିଥାନ୍ତି । ଏହି ସଂକୀର୍ଣ୍ଣମନା ରାଜନୀତିକ ନେତା ଆଞ୍ଚଳିକତା, ଜାତି ଓ ଧର୍ମକୁ କେନ୍ଦ୍ର କରି ସମାଜରେ ବିଭ୍ରାଟ ସୃଷ୍ଟି କରିଥାନ୍ତି । ନିଜର ବ୍ୟକ୍ତିଗତ ସ୍ୱାର୍ଥ ପାଇଁ ରାଷ୍ଟ୍ରୀୟ ସ୍ୱାର୍ଥକୁ ବଳିଦେବା ପାଇଁ କୁଣ୍ଠା ପ୍ରକାଶ କରି ନ ଥାନ୍ତି । ଜାତୀୟ ସଂହତି ପ୍ରତିଷ୍ଠା କ୍ଷେତ୍ରରେ ଏହିପରି ରାଜନୀତିଜ୍ଞ ନେତାଗଣ ପ୍ରଥମ ବିପଦ କହିଲେ ଭୁଲ ହେବ ନାହିଁ । ଆଜି ଧର୍ମକୁ କେନ୍ଦ୍ର କରି ରାଜନୀତି

ଚାଲିଛି । ଧର୍ମର ପ୍ରକୃତ ଅର୍ଥ ଏହି ସ୍ୱାର୍ଥବାଦୀ ରାଜନୈତିକ ନେତା ବୁଝିବାରେ ସମ୍ପୂର୍ଣ୍ଣ ଅସମର୍ଥ । ଅଥଚ ଧର୍ମକୁ ନେଇ ବିଭିନ୍ନ ଦଳ ଗଠନ ଏବଂ ସାଂପ୍ରଦାୟିକ ଦଙ୍ଗା ଜାତୀୟ ଐକ୍ୟ ପ୍ରତିଷ୍ଠାରେ ଘୋର ଅନ୍ତରାୟ ସୃଷ୍ଟି ହେଉଛି । ସୀମା ବିବାଦକୁ କେନ୍ଦ୍ର କରି ଅଞ୍ଚଳ ଅଞ୍ଚଳ ମଧ୍ୟରେ ଶତ୍ରୁତା ସୃଷ୍ଟି ହେଉଛି । ଗୋଟିଏ ରାଜ୍ୟ ତା'ର ସୀମାର ପରିସୀମା ନେଇ ସନ୍ତୁଷ୍ଟ ନୁହେଁ । ଯେପରି ଓଡ଼ିଶାର ଷଡ୍ଢେଇକଳା ଏବଂ ଖରସୁଆଁ ଏବେ ମଧ୍ୟ ବିହାରରେ ମିଶି ରହିଛି, ସେହିପରି ଓଡ଼ିଶା ଏବଂ ଆନ୍ଧ୍ରପ୍ରଦେଶ, କଲିକତା, ଆସାମ ଏବଂ ନାଗାଲାଣ୍ଡ, କର୍ଣ୍ଣାଟକ ଏବଂ ମହାରାଷ୍ଟ୍ର ମଧ୍ୟରେ ଏହି ସୀମାବିବାଦର ସମସ୍ୟା ଏଯାବତ୍ ସମାଧାନ ହୋଇପାରି ନାହିଁ । ଏହାଦ୍ୱାରା ଜାତୀୟ ସଂହତି ବିପନ୍ନ ହେଉଛି । ପୁଣି କେତେକ ନିର୍ଦ୍ଦିଷ୍ଟ ଦଳ ସ୍ୱତନ୍ତ୍ର ରାଜ୍ୟ ଦାବି କରି ବିବାଦ ଆରମ୍ଭ କରିଛନ୍ତି । ଦାର୍ଜିଲିଂର ଜନସାଧାରଣ ସ୍ୱତନ୍ତ୍ର ରାଜ୍ୟ ଦାବିରେ ଅଟଳ । ଉପରୋକ୍ତ ସମସ୍ୟାବଳୀର ସମାଧାନ ହୋଇ ନ ପାରିଲେ ଭାରତର ଜାତୀୟ ସଂହତି ପ୍ରତି ଥିବା ବିପଦ ଦୂର ହୋଇପାରିବ ନାହିଁ ।

ଜାତୀୟ ସଂହତିର ସୁରକ୍ଷା ପାଇଁ ଜାତୀୟତାବାଦୀ ମନୋବୃତ୍ତିର ଆବଶ୍ୟକତା ରହିଛି । ଭାରତରେ ବସବାସ କରୁଥିବା ପ୍ରତ୍ୟେକ ଭାରତୀୟ ନିଜକୁ ଭାରତୀୟ ବୋଲି ଗର୍ବ କରିବା ଉଚିତ । ଦେଶର ସାମୂହିକ ସ୍ୱାର୍ଥରକ୍ଷା ପାଇଁ ବ୍ୟକ୍ତିଗତ ସ୍ୱାର୍ଥକୁ ବଳି ଦେବା ଆବଶ୍ୟକ । ଭାରତୀୟ ଜାତୀୟ ଭାବଧାରା ନିଜ ମଧ୍ୟରେ ସୃଷ୍ଟି ହୋଇ ନ ପାରିଲେ ଜାତୀୟ ସଂହତି କଦାପି ଦୃଢ଼ ହୋଇପାରିବ ନାହିଁ । ରାଜ୍ୟ ରାଜ୍ୟ ମଧ୍ୟରେ ଗମନାଗମନ ଓ ପରିବହନର ସୁବିଧା ଦ୍ୱାରା ଆଞ୍ଚଳିକ ମନୋଭାବ ଦୂର ହୋଇ ପରସ୍ପର ମଧ୍ୟରେ ଏକ ମୈତ୍ରୀଭାବ ସୃଷ୍ଟି ହୋଇଥାଏ । ପରସ୍ପର ମଧ୍ୟରେ ଥିବା ବୁଝାମଣାର ଅଭାବ ଦୂର ହୋଇଥାଏ, ବାଣିଜ୍ୟ ସମ୍ପର୍କ ବୃଦ୍ଧି ଯୋଗୁଁ ଭାବର ଆଦାନ ପ୍ରଦାନ ସମ୍ଭବ ହୋଇଥାଏ । ଏହି ପ୍ରକ୍ରିୟା ଜାତୀୟ ସଂହତି ପ୍ରତିଷ୍ଠାରେ ସହାୟତା କରିଥାଏ । ଭାରତୀୟ ସମ୍ବିଧାନ ଭାରତକୁ ଏକ ଧର୍ମନିରପେକ୍ଷ ରାଷ୍ଟ୍ର ଭାବରେ ଗ୍ରହଣ କରିଛି । ତେଣୁ ସବୁ ଧର୍ମର ଏଠାରେ ସମାନ ଅଧିକାର ରହିଛି ଏବଂ ଧର୍ମ ଗ୍ରହଣ କ୍ଷେତ୍ରରେ ମଧ୍ୟ କାହାରିକୁ ବାଧା ପ୍ରଦାନ କରାଯାଇ ପାରିବ ନାହିଁ । ଗୋଟିଏ ଧର୍ମର ବ୍ୟକ୍ତି ଅନ୍ୟ ଧର୍ମକୁ ଅବଜ୍ଞା ପ୍ରଦର୍ଶନ କରିପାରିବେ ନାହିଁ କିମ୍ବା ପର୍ବ ପାଳନ ବେଳେ ବାଧା ଦେଇପାରିବେ ନାହିଁ । ଏହି ଧର୍ମନିରପେକ୍ଷତା ଭାବ ବିଭିନ୍ନ ଧାର୍ମିକ ସଂପ୍ରଦାୟ ମଧ୍ୟରେ ଐକ୍ୟ ସ୍ଥାପନ କରିପାରିବ ଓ ତାହା ଜାତୀୟ ସଂହତିକୁ ସୁରକ୍ଷିତ କରିପାରିବ । କେନ୍ଦ୍ରୀୟ ସେବା ବ୍ୟବସ୍ଥା ଦ୍ୱାରା ଗୋଟିଏ ବ୍ୟକ୍ତି ଜୀବିକା ନିମିତ୍ତ ଭାରତର ବିଭିନ୍ନ ସ୍ଥାନରେ ନିଯୁକ୍ତି ଲାଭ କରିଥାଏ । ଏହାଦ୍ୱାରା ସେ ବିଭିନ୍ନ ବ୍ୟକ୍ତିଙ୍କ ସଂସ୍ପର୍ଶରେ ଆସିଥାଏ । ବିଭିନ୍ନ ଧର୍ମ, ଭାଷାଭାଷୀଙ୍କ ସହିତ ପରିଚୟ ଦ୍ୱାରା ଭାବର ଆଦାନ ପ୍ରଦାନ ହୋଇଥାଏ । କର୍ମଚାରୀଙ୍କ ମଧ୍ୟରେ ଏହି କାରଣରୁ ଯେଉଁ ଭ୍ରାତୃଭାବ ସୃଷ୍ଟି ହୁଏ, ତାହା ଜାତୀୟ ସଂହତିକୁ ଦୃଢ଼ କରିବାରେ ସହାୟତା କରିଥାଏ । ନୈତିକ ଶିକ୍ଷାଦ୍ୱାରା ଜାତୀୟ ସଂହତି ପ୍ରତିଷ୍ଠା କରାଯାଇପାରେ । ଭାରତରେ ବାସ କରୁଥିବା ପ୍ରତ୍ୟେକ ବ୍ୟକ୍ତି ଭାରତର ସାମଗ୍ରିକ ବିକାଶ ନିମିତ୍ତ ନିଜକୁ ଉତ୍ସର୍ଗ କରିବା ନିଜର ନୈତିକ କର୍ତ୍ତବ୍ୟ ବୋଲି

ଭାବିନେବା ଉଚିତ । ଏହି ନୈତିକ ଶିକ୍ଷା ଦ୍ୱାରା ''ଆମେ ଏକ ଭାରତର ସନ୍ତାନ'' ଏହିପରି ଏକ ମନୋବୃତ୍ତି ଜନସାଧାରଣଙ୍କ ମଧ୍ୟରେ ସୃଷ୍ଟି ହୋଇଥାଏ । ତେଣୁ ସରକାର ପ୍ରତ୍ୟେକ ଭାରତୀୟଙ୍କୁ ଏହି ନୈତିକ ଶିକ୍ଷା ପ୍ରଦାନ କରି ସେମାନଙ୍କ ମଧ୍ୟରେ ଜାତୀୟ ଭାବ ଉଦ୍ରେକ କରିବା ଆବଶ୍ୟକ । ଭାରତରେ ଜାତି ଜାତି ମଧ୍ୟରେ ଯେଉଁ ଭେଦଭାବ ରହିଛି, ତା'ର ସମ୍ପୂର୍ଣ୍ଣ ଦୂରୀକରଣ ହେବା ଉଚିତ । କାରଣ ଜାତିଗତ ବୈଷମ୍ୟ ଜାତୀୟ ସଂହତି ପ୍ରତି ବଡ଼ ବିପଦ । ଜାତିଭେଦ ପ୍ରଥା ଯୋଗୁଁ ଜାତିକୁ କେନ୍ଦ୍ର କରି ରାଜନୀତି ଚାଲିଛି । ଜାତିଭେଦ ପ୍ରଥାର ସମ୍ପୂର୍ଣ୍ଣ ବିଲୋପ ସଙ୍ଗେ ସଙ୍ଗେ ଭିନ୍ନ ଭିନ୍ନ ଜାତି ମଧ୍ୟରେ ବୈବାହିକ ସମ୍ପର୍କ ବୃଦ୍ଧି ପାଇଲେ ଏହି କୁପ୍ରଥା ବହୁପରିମାଣରେ ଦୂର ହୋଇପାରନ୍ତା । ଏତଦ୍ ବ୍ୟତୀତ ଭୌଗୋଳିକ ଅବସ୍ଥିତି ତଥା ଆର୍ଥିକ ଅବସ୍ଥା ମଧ୍ୟ କେତେକ କ୍ଷେତ୍ରରେ ଜାତୀୟ ସଂହତି ପ୍ରତିଷ୍ଠାରେ ଅନ୍ତରାୟ ସୃଷ୍ଟି କରେ । ପୁଣି ରାଷ୍ଟ୍ରୀୟ ଭାଷାକୁ ନେଇ ଅଞ୍ଚଳ ଅଞ୍ଚଳ ମଧ୍ୟରେ କୌଣସି ଦ୍ୱନ୍ଦ୍ୱ ସୃଷ୍ଟି ହେବା ଅନୁଚିତ । ସ୍ୱାଧୀନତା ପରେ ଇଂରାଜୀକୁ ସଂଯୋଗକାରୀ ଭାଷା ଭାବରେ ରଖିବାର କୌଣସି ପ୍ରୟୋଜନ ନାହିଁ । ଗୋଟିଏ ଭାରତୀୟ ଭାଷା ଏହି ସ୍ଥାନ ଲାଭ କରିବା ଉଚିତ । ଏହି ଦୃଷ୍ଟିରୁ ଭାରତୀୟ ସମ୍ବିଧାନରେ 'ହିନ୍ଦୀ'କୁ ଯେଉଁ ରାଷ୍ଟ୍ରଭାଷାର ସମ୍ମାନ ପ୍ରଦର୍ଶନ କରାଯାଇଛି, ଆମେ ସମସ୍ତେ ଭାରତରେ ବିନା ଦ୍ୱିଧାରେ ତାହା ଗ୍ରହଣ କରିବା ବାଞ୍ଛନୀୟ । ଏହାଦ୍ୱାରା ଆମର ଏକତା ସୁଦୃଢ଼ ହେବା ସଙ୍ଗେ ସଙ୍ଗେ ଜାତୀୟ ସଂହତି ପ୍ରତିଷ୍ଠା ହୋଇପାରିବ ।

ଜାତୀୟ ସଂହତି ପ୍ରତିଷ୍ଠା କ୍ଷେତ୍ରରେ ଶିକ୍ଷାର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ । ଏହି ଲକ୍ଷ୍ୟ ସାଧନ ନିମିତ୍ତ ବିଭିନ୍ନ କମିଶନମାନଙ୍କ ଶିକ୍ଷାନୀତିରେ କେତେକ ପରାମର୍ଶ ଦେଇଛନ୍ତି । ମାଧ୍ୟମିକ ଶିକ୍ଷା କମିଶନ ବା ମୁଦାଲିୟର କମିଶନ (୧୯୫୨-୫୩) ଆଞ୍ଚଳିକବାଦ, ପ୍ରାଦେଶିକ ମନୋଭାବ ଆଦିର ଦୂରୀକରଣ ନିମିତ୍ତ ଶିକ୍ଷାର ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିବାର ଅଛି ବୋଲି କହିଛନ୍ତି । ସେହିପରି କୋଠାରୀ କମିଶନ (୧୯୬୪-୬୬) ଜାତୀୟ ସଂହତିର ଗୁରୁତ୍ୱ ଉପଲବ୍ଧି କରି କହିଛନ୍ତି "Social and national integration in crucial to the creation of a strong, united country, which is an essential precondition for all progress. It has a varied content economic, social, cultural and political and different facets are closely interconnected XXX social and national integration is a major problem which will have to be tackled in several fronts, including education." ତେଣୁ ବିଭିନ୍ନ ଶିକ୍ଷା କମିଶନ ସୁପରିକଳ୍ପିତ ଶିକ୍ଷା ବ୍ୟବସ୍ଥା ଦ୍ୱାରା ଜାତୀୟ ସଂହତିକୁ ପ୍ରତିଷ୍ଠା କରାଯାଇପାରିବ ବୋଲି ମତ ପ୍ରଦାନ କରିଛନ୍ତି । ଶିକ୍ଷାର ଲକ୍ଷ୍ୟ ସମାନତାଭାବ । କୋମଳମତି ପିଲା ଅଧ୍ୟୟନ ସମୟରେ ସାନବଡ଼ ଏବଂ ଉଚ୍ଚନୀଚ ଭେଦଭାବର ଊର୍ଦ୍ଧ୍ୱରେ ଥାନ୍ତି । ଏକାଠି ଅଧ୍ୟୟନ କରିବାକୁ ସେମାନେ ଆନନ୍ଦ ପାଇଥାନ୍ତି । ସେମାନଙ୍କର ସେହି ମନୋଭାବକୁ ଶିକ୍ଷା ଅପରିବର୍ତ୍ତିତ ରଖିପାରିଲେ ପରବର୍ତ୍ତୀ ଜୀବନରେ ଜାତୀୟ ସଂହତି ପ୍ରତିଷ୍ଠାରେ ସେମାନେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାନ୍ତି । ସମଗ୍ର ଦେଶରେ ଏକ ଜାତୀୟ ଶିକ୍ଷାନୀତି ପ୍ରଣୀତ ହେଲେ ତାହା ମଧ୍ୟ ଜାତୀୟ

ସଂହତିକୁ ସମୃଦ୍ଧ କରିବାରେ ସହାୟକ ହୋଇଥାଏ । ପରସ୍ପର ମଧ୍ୟରେ ଭାବର ଆଦାନପ୍ରଦାନ ନିମିତ୍ତ ରାଜ୍ୟ ରାଜ୍ୟ ମଧ୍ୟରେ ଛାତ୍ର ଏବଂ ଶିକ୍ଷକ ବିନିମୟର ଆବଶ୍ୟକତା ରହିଛି । ଛାତ୍ର ସମ୍ମିଳନୀ, ସାଂସ୍କୃତିକ କାର୍ଯ୍ୟକ୍ରମ, କ୍ରୀଡ଼ା, ଶିକ୍ଷକ ସମ୍ମିଳନୀ ଆଦି କାର୍ଯ୍ୟାବଳୀ ଦ୍ୱାରା ଅଞ୍ଚଳ ଅଞ୍ଚଳ ମଧ୍ୟରେ ସମ୍ପର୍କ ଦୃଢ଼ୀଭୂତ ହୋଇଥାଏ । ପର୍ଯ୍ୟଟନ ଦ୍ୱାରା ଗୋଟିଏ ଅଞ୍ଚଳର ପିଲା ଅନ୍ୟ ଅଞ୍ଚଳର ସାଂସ୍କୃତିକ ଓ ସାମାଜିକ ଜୀବନଧାରା ଦ୍ୱାରା ପରିଚିତ ହୋଇଥାନ୍ତି ଏବଂ ପରସ୍ପର ମଧ୍ୟରେ ଐକ୍ୟ ସ୍ଥାପନ ନିମିତ୍ତ ଆଗ୍ରହ ପ୍ରକାଶ କରିଥାନ୍ତି । ଜାତୀୟ ସେବା ସଂସ୍ଥା ଏବଂ ସମର ଶିକ୍ଷାର୍ଥୀ ବାହିନୀ କାର୍ଯ୍ୟପନ୍ଥା ଦ୍ୱାରା ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ସେବାପରାୟଣ ମନୋବୃତ୍ତି ବୃଦ୍ଧି ହୋଇଥାଏ । ଶିବିରରେ ବିଭିନ୍ନ ଅଞ୍ଚଳର ପିଲା ଯୋଗ ଦେଉଥିବାରୁ ସେମାନେ ପରସ୍ପରକୁ ବୁଝିବାରେ ସୁଯୋଗ ପାଆନ୍ତି ଏବଂ ଜାତୀୟ ସଂହତି ପ୍ରତିଷ୍ଠା କ୍ଷେତ୍ରରେ ଏହା ସହାୟତା କରିଥାଏ । ସମବେତ ପ୍ରାର୍ଥନା ସଭା ମଧ୍ୟ ଜାତୀୟ ସଂହତି ସୃଷ୍ଟିରେ ସହାୟତା କରିଥାଏ । ଏହାଦ୍ୱାରା ଛାତ୍ରମାନଙ୍କ ମନରେ ଜାତୀୟ ଭାବନା ଏବଂ ଦେଶପ୍ରୀତି ଜାଗ୍ରତ ହୋଇଥାଏ । ପୁଣି ବିଭିନ୍ନ ଜାତୀୟ ଦିବସ ଯଥା – ସ୍ୱାଧୀନତା ଦିବସ, ସାଧାରଣତନ୍ତ୍ର ଦିବସ, ଗାନ୍ଧିଜୟନ୍ତୀ, ନେତାଜୀ ଜୟନ୍ତୀ,ନେହେରୁ ଜୟନ୍ତୀ ଆଦି ପାଳନ କରାଯିବା ଦ୍ୱାରା ଛାତ୍ରମାନଙ୍କ ମନରେ ଦେଶଭକ୍ତି ଓ ଜାତିପ୍ରେମ ସୃଷ୍ଟି ହୋଇଥାଏ । ବାଧ୍ୟତାମୂଳକ ଶିକ୍ଷାଦ୍ୱାରା ନିରକ୍ଷରତା ଦୂର ହୋଇଥାଏ ଏବଂ ଜାତୀୟ ଐକ୍ୟ ପ୍ରତିଷ୍ଠା ସମ୍ଭବ ହୋଇଥାଏ । ଏତଦ୍ ବ୍ୟତୀତ ଗୋଷ୍ଠୀ ସଙ୍ଗୀତ, ଜାତୀୟ ସଙ୍ଗୀତ, ମୁକ୍ତ ନାମ ଲେଖା ପଦ୍ଧତି, ଜାତୀୟ ସଂହତି ସମିତି ଆଦି ଗଠନ ଦ୍ୱାରା ମଧ୍ୟ ଜାତୀୟ ସଂହତି ପ୍ରତିଷ୍ଠାରେ ସହାୟତା କରିଥାଏ । ୧୯୮୬ ମସିହା ଜାତୀୟ ଶିକ୍ଷାନୀତିରେ ଜାତୀୟ ସଂହତି ପ୍ରତିଷ୍ଠା ପାଇଁ ବିଭିନ୍ନ ଉପାୟ ପ୍ରଦର୍ଶନ କରାଯାଇଛି । ସେହି ଉପାୟଗୁଡ଼ିକୁ ଯଥାରୀତି ପାଳନ କରାଗଲେ, ଭାରତର ଜାତୀୟ ସଂହତି ନିଶ୍ଚିତ ଭାବେ ଦୃଢ଼ ହୋଇପାରିବ ।

ଦେଶର ବିକାଶ ଓ ପ୍ରଗତି ବହୁପରିମାଣରେ ଜାତୀୟ ସଂହତି ଉପରେ ନିର୍ଭର କରେ । ଦେଶର ସାର୍ବଭୌମତ୍ୱ ରକ୍ଷାକ୍ଷେତ୍ରରେ ଏହାର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଜାତି, ଧର୍ମ, ଭାଷା ଆଦିର ସଂକୀର୍ଣ୍ଣଭାବ ଜାତୀୟ ସଂହତିର ପରିପନ୍ଥୀ । ଭାରତୀୟ ଭାବରେ ଭାରତମାତାର ସେବା ପାଇଁ ନିଜକୁ ଉତ୍ସର୍ଗ କରିବା ଆବଶ୍ୟକ । ସଂକୀର୍ଣ୍ଣ ଭାବ ଜାତିର ପରାଧୀନତାକୁ ଡାକିଆଣେ । ସମସ୍ତ ପ୍ରକାର ଭେଦଭାବ ଭୁଲି, ସଂକୀର୍ଣ୍ଣ ସ୍ୱାର୍ଥର ଊର୍ଦ୍ଧ୍ୱରେ ରହି, କୁସଂସ୍କାର ଓ ଅନ୍ଧବିଶ୍ୱାସକୁ ମନରୁ ଦୂରେଇ ଦେଇ ଏକମନ ତଥା ଏକପ୍ରାଣରେ ଭାରତର ସର୍ବାଙ୍ଗୀନ ଉନ୍ନତି ନିମିତ୍ତ ପ୍ରତିଜ୍ଞାବଦ୍ଧ ହେଲେ ଜାତୀୟ ସଂହତିର ଉଦ୍ଦେଶ୍ୟ ଓ ଲକ୍ଷ୍ୟ ସମ୍ପୂର୍ଣ୍ଣ ପରିପୂରଣ ହୋଇପାରିବ, ଏଥିରେ ସନ୍ଦେହ ନାହିଁ ।



# ମାନବ ସେବାରେ ବିଜ୍ଞାନ

(ଉପକ୍ରମ, ବିଜ୍ଞାନ ଓ ମଣିଷ, ବିବିଧ କ୍ଷେତ୍ରରେ ବିଜ୍ଞାନର ଉପାଦେୟତା, ବିଜ୍ଞାନର ଅନ୍ୟ ଦିଗ, ମାନବର ବିକାଶରେ ବିଜ୍ଞାନର ଭୂମିକା, ଉପସଂହାର)

ଅତୀତର ବଣଜଙ୍ଗଲରେ ବସବାସ କରୁଥିବା ମଣିଷକୁ ସାମ୍ପ୍ରତିକ ସ୍ଥିତିରେ ପହଞ୍ଚାଇବା କ୍ଷେତ୍ରରେ ଯଦି କାହାର ବିଶେଷ ଗୁରୁତ୍ୱପୂର୍ଣ୍ଣ ଭୂମିକା ଥାଏ, ତେବେ ତାହା ହେଉଛି ବିଜ୍ଞାନର । ବର୍ତ୍ତମାନର ଯୁଗ ବିଜ୍ଞାନର ଯୁଗ । ବିଜ୍ଞାନ ବ୍ୟତିରେକେ ମଣିଷ ସମ୍ପ୍ରତି ମୁହୂର୍ତ୍ତଟିଏ ମଧ ବଞ୍ଚିବାକୁ ସମର୍ଥ ହୋଇପାରିବ ନାହିଁ । ବର୍ତ୍ତମାନ ସ୍ଥିତି ଯେ ବିଜ୍ଞାନର ସର୍ବଶେଷ ସ୍ଥିତି, ଆଦୌ କୁହାଯାଇ ନ ପାରେ । ପ୍ରତି ମୁହୂର୍ତ୍ତରେ ବିଶ୍ୱରେ ବିଜ୍ଞାନ ବଳରେ ନୂତନ ଉଦ୍ଭାବନ ଓ ଆବିଷ୍କାର ଚାଲିଛି । ଅତୀତରେ ଯାହା ଥିଲା ମଣିଷର କଳ୍ପନାତୀତ ବର୍ତ୍ତମାନ ମଣିଷର ତାହା ହୋଇଛି ସହଜଲବ୍‌ଧ । ବିଜ୍ଞାନ ଆଜି ମଣିଷର ଏକ ଅତ୍ୟାବଶ୍ୟକ ଅଙ୍ଗ ହୋଇପଡ଼ିଛି । ତା' କବଳରୁ ମୁକ୍ତିଲାଭ କରିବା ଆଦୌ ସମ୍ଭବ ନୁହେଁ । ଏହା ମଣିଷ ଜୀବନକୁ ସୁଖ ସ୍ୱାଚ୍ଛନ୍ଦ୍ୟରେ ଭରିଦେଇଛି, ତାକୁ କଳ୍ପନାର ସୀମା ପାର କରାଇଛି । ତେଣୁ ସେଥିପାଇଁ ବର୍ତ୍ତମାନର ଯୁଗକୁ ବିଜ୍ଞାନର ଯୁଗ କୁହାଯାଉଛି ।

ବର୍ତ୍ତମାନ ବିଜ୍ଞାନଠାରୁ ମଣିଷକୁ ଅଲଗା କରି ଚିହ୍ନିହେବ ନାହିଁ । ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ପ୍ରତିକ୍ଷେତ୍ରରେ ବିଜ୍ଞାନ ମଣିଷର ଆବଶ୍ୟକତା ପୂରଣ କରୁଛି । ମଣିଷର ସମୟ ଓ ଦୂରତ୍ୱକୁ ଏହା ହ୍ରାସ କରିଛି । ମଣିଷ ଜୀବନରେ ଭରିଦେଇଛି ସୁଖ ଓ ସମୃଦ୍ଧି । ବଣଜଙ୍ଗଲର ମଣିଷ ନିଜର ଦୈନନ୍ଦିନ ଆବଶ୍ୟକତା ପରିପୂରଣ ପାଇଁ ବାରମ୍ବାର ସ୍ଥାନ ପରିବର୍ତ୍ତନ କରୁଥିଲା । ବର୍ତ୍ତମାନ ବିଜ୍ଞାନ ଦ୍ୱାରା ଗୋଟିଏ ସ୍ଥାନରେ ଥାଇ ତାହାର ସମସ୍ତ ଆବଶ୍ୟକତା ଓ ଅଭାବ ମଣିଷ ପୂରଣ କରିପାରୁଛି । ଅବଶ୍ୟ ଏକଥା ସତ୍ୟ ଯେ ମଣିଷ ହିଁ ବିଜ୍ଞାନର ଉଦ୍ଭାବନ କର୍ତ୍ତା । ବିଜ୍ଞାନର ଆଜିର ସ୍ଥିତି ପାଇଁ ମଣିଷର ଭୂମିକା ଗୁରୁତ୍ୱପୂର୍ଣ୍ଣ । ମାତ୍ର ମଣିଷର ଉଦ୍ଭାବନ ଓ ପରିଶ୍ରମ ପରିବର୍ତ୍ତେ ବିଜ୍ଞାନ ତାକୁ ଦେଇଛି ଅନେକ । ମଣିଷର ଜୀବନକୁ ଏହା ସମ୍ପୂର୍ଣ୍ଣ ବିବର୍ତ୍ତିତ କରିଦେଇଛି । ମାନବ ସେବା କ୍ଷେତ୍ରରେ ବିଜ୍ଞାନର ଅବଦାନକୁ ଭାଷାରେ ପ୍ରକାଶ କରାଯାଇ ନ ପାରେ । ସମଗ୍ର ବିଶ୍ୱର ସୁଖ ଓ କଲ୍ୟାଣ ସାଧନ କ୍ଷେତ୍ରରେ ବିଜ୍ଞାନର ଗୁରୁତ୍ୱ ଅତୀବ ମହତ୍ତ୍ୱପୂର୍ଣ୍ଣ । ଏହା ମଣିଷ ଜୀବନକୁ ସହଜ, ସୁନ୍ଦର ଓ ମୂଲ୍ୟବାନ କରିପାରିଛି । ଅନ୍ୟ ଭାବରେ କହିଲେ, ମଣିଷ ବିଜ୍ଞାନର୍ ଉଦ୍ଭାବନକର୍ତ୍ତା ହେଲେହେଁ, ବର୍ତ୍ତମାନ ମଣିଷ ବିଜ୍ଞାନ ନିକଟରେ ନିଜକୁ ସମ୍ପୂର୍ଣ୍ଣ ବିକ୍ରି କରି ଦେଇଛି । ସେଥିପାଇଁ ତା'ର ଅଭାବରେ ସେ ଗୋଟିଏ ମାତ୍ର ମୁହୂର୍ତ୍ତ ସମୟ ବିତାଇବା ପାଇଁ ସମ୍ପୂର୍ଣ୍ଣ ଅକ୍ଷମ ।

ମାନବ ଜୀବନର ବିବିଧ କ୍ଷେତ୍ରରେ ବିଜ୍ଞାନର ଉପାଦେୟତା ସ୍ୱୀକାର୍ଯ୍ୟ । ମଣିଷ ଜୀବନରେ ଏହା ସୁଖ ଓ ସନ୍ତୋଷ ଭରିଦେଇଛି । ସ୍ୱପ୍ନକୁ କରିଛି ବାସ୍ତବ । ଅତୀତରେ ଗୋଟିଏ

ସ୍ଥାନରୁ ଅନ୍ୟ ଏକ ସ୍ଥାନକୁ ଯିବାକୁ ହେଲେ ମଣିଷ ନିଜ ପାଦ କିମ୍ବା ଶଗଡ଼ ଗାଡ଼ିର ଆଶ୍ରୟ ନେଉଥିଲା । ଏଥିପାଇଁ ତା'ର ବହୁ ସମୟ ନଷ୍ଟ ହେଉଥିଲା । ବୈଜ୍ଞାନିକ ଆବିଷ୍କାର ଫଳରେ ଯୋଗାଯୋଗ ବ୍ୟବସ୍ଥା ସୁଗମ ହୋଇପାରିଛି । ମୋଟର, ଟ୍ରେନ୍ ଓ ଉଡ଼ାଜାହାଜ ଖୁବ୍ କମ୍ ସମୟ ମଧ୍ୟରେ ମଣିଷକୁ ତା'ର ଲକ୍ଷ୍ୟସ୍ଥଳରେ ପହଞ୍ଚାଇ ପାରୁଛି । ବର୍ତ୍ତମାନ ଜଣେ ବ୍ୟକ୍ତି ତା'ର ମଧ୍ୟାହ୍ନ ଭୋଜନ ଦିଲ୍ଲୀରେ ଗ୍ରହଣ କରି ରାତ୍ରିଭୋଜନ ଲଣ୍ଡନରେ ଗ୍ରହଣ କରିବାରେ କୌଣସି ଅସୁବିଧା ନାହିଁ । ତେଣୁ ସମୟ ଓ ଦୂରତ୍ୱ ଆଜି ଆଉ ମଣିଷ ଆଗରେ ପ୍ରତିବନ୍ଧକ ରୂପେ ଠିଆହୋଇ ନାହିଁ । ଏହା ଯେ ସମ୍ପୂର୍ଣ୍ଣ ଭାବରେ ବିଜ୍ଞାନର ବାହାଦୁରୀ, ଅସ୍ୱୀକାର କରାଯାଇ ନ ପାରେ । ବାର୍ତ୍ତାପ୍ରେରଣ କ୍ଷେତ୍ରରେ ମଧ ଏହା ଆମର ଜୀବନଯାତ୍ରାକୁ ସୁଗମ କରିପାରିଛି । ଗୋଟିଏ ସ୍ଥାନରୁ ଅନ୍ୟ ଏକ ଦୂର ସ୍ଥାନରେ ବାର୍ତ୍ତା ପହଞ୍ଚିବାକୁ ମାସାଧିକ କାଳ ଲାଗୁଥିଲା । ବର୍ତ୍ତମାନ ରେଡ଼ିଓ, ଟେଲିଫୋନ, ଟେଲିଗ୍ରାମ ବା ଟେଲିଭିଜନ ମାଧ୍ୟମରେ ଗୋଟିଏ ମୁହୂର୍ତ୍ତରେ ଯେକୌଣସି ବାର୍ତ୍ତା ପ୍ରେରଣ କରାଯାଇପାରେ । ଡାକଘର ମାଧ୍ୟମରେ ଆମେ ଦୂର ସମ୍ପର୍କୀୟମାନଙ୍କ ପାଖକୁ ଟଙ୍କା ପଠାଇପାରୁଛୁ କିମ୍ବା ଚିଠିଦ୍ୱାରା ସମ୍ବାଦ ପ୍ରେରଣ କରିପାରୁଛୁ । ରେଡ଼ିଓ ଏବଂ ଦୂରଦର୍ଶନ ବିଶ୍ୱର ସମସ୍ତ ଖବର ଖୁବ୍ କମ୍ ସମୟ ମଧ୍ୟରେ ଆମ ପାଖରେ ପହଞ୍ଚାଇପାରୁଛି । ଏହା କେବଳ ସମ୍ଭବ ହୋଇପାରିଛି ବିଜ୍ଞାନ ଦ୍ୱାରା । ଗ୍ରୀଷ୍ମ ଋତୁରେ ପ୍ରଖର ରୌଦ୍ରତାପରୁ ରକ୍ଷା ପାଇବା ପାଇଁ ବିଜ୍ଞାନ ଆମକୁ ଯୋଗାଇ ଦେଇଛି ପଙ୍ଖା, କୁଲର ଇତ୍ୟାଦି । ଜିନିଷ ସଂରକ୍ଷଣ ନିମିତ୍ତ ଆମେ ପାଇପାରୁଛୁ ଥଣ୍ଡାଘର ଓ ଫ୍ରିଜ୍, ଶୀତଦିନେ ମଧ ହିଟର ବା ଶୀତ ତାପନିୟନ୍ତ୍ରିତ ଘରଯୋଗୁଁ ଥଣ୍ଡାର ପ୍ରକୋପରୁ ରକ୍ଷା ପାଇପାରିଛୁ । ଗ୍ୟାସ ଏବଂ ଅନ୍ୟାନ୍ୟ ରୋଷାଇ ସରଞ୍ଜାମ ଆମକୁ ସ୍ୱଳ୍ପ ସମୟ ମଧ୍ୟରେ ଖାଦ୍ୟ ଯୋଗାଇଦେଇ ପାରୁଛି । ବିଭିନ୍ନ ଶିଳ୍ପ ପ୍ରତିଷ୍ଠା ଯୋଗୁଁ ଆମେ ବହୁ ପ୍ରକାର ଅତ୍ୟାବଶ୍ୟକ ଦ୍ରବ୍ୟ ସୁଲଭ ମୂଲ୍ୟରେ ପାଇପାରୁଛୁ । ବିଜ୍ଞାନର ବିକାଶଯୋଗୁଁ ଅନେକ ଦୁରାରୋଗ୍ୟ ବ୍ୟାଧି ସହଜରେ ଭଲ ହୋଇପାରୁଛି । ଏଥିପାଇଁ ବିଜ୍ଞାନ ଆମକୁ ବହୁ ଦୁର୍ମୂଲ୍ୟ ଔଷଧ, ଇଞ୍ଜେକ୍ସନ ଇତ୍ୟାଦି ପ୍ରଦାନ କରିଛି । ଏକ୍ସ-ରେ ଦ୍ୱାରା ଶରୀର ମଧ୍ୟରେ ଥିବା ବିଭିନ୍ନ ରୋଗ ଆବିଷ୍କାର କରାଯାଇପାରୁଛି । ନମନୀୟ ଅସ୍ତ୍ର ଚିକିତ୍ସା ଦ୍ୱାରା ବିକୃତ ଅଙ୍ଗକୁ ସୁନ୍ଦର ଓ ବିଭିନ୍ନ ଅଙ୍ଗରୋପଣ ସହଜସାଧ୍ୟ ହୋଇପାରିଛି । ଅତୀତରେ ବସନ୍ତ ଓ ହଇଜା ଆମ ସମାଜରେ ଦେବୀର ଆସନ ଲାଭ କରିଥିଲେ । ବିଜ୍ଞାନ ଏହାକୁ ଏକ ରୋଗ ରୂପେ ପ୍ରମାଣ କରି ଔଷଧଦ୍ୱାରା ଏହାକୁ ବର୍ତ୍ତମାନ ସମ୍ପୂର୍ଣ୍ଣ ଦୂର କରିପାରୁଛି । ଏତଦ୍‌ବ୍ୟତୀତ ବହୁ ଦୁଃସାଧ୍ୟ ରୋଗ ସହଜରେ ଚିକିତ୍ସା କରାଯାଇ ଉପଶମ ହୋଇପାରୁଛି । ମଣିଷର ସ୍ୱାସ୍ଥ୍ୟକୁ ରୋଗମୁକ୍ତ ଓ ସୁନ୍ଦର ରଖିବା ପାଇଁ ବିଜ୍ଞାନର ଅବଦାନ ସର୍ବାଦୌ ସ୍ମରଣୀୟ । ଅନ୍ଧବିଶ୍ୱାସ ଓ କୁସଂସ୍କାର ଦୂରୀକରଣ କ୍ଷେତ୍ରରେ ଏହାର ଭୂମିକା ବିଶେଷ ଗୁରୁତ୍ୱପୂର୍ଣ୍ଣ । ଏତଦ୍‌ବ୍ୟତୀତ ବିଭିନ୍ନ ପ୍ରାକୃତିକ ଦୁର୍ବିପାକରୁ ବିଜ୍ଞାନ ମଣିଷକୁ ରକ୍ଷା କରିପାରୁଛି । କୌଣସି ଦୁର୍ବିପାକ ଆରମ୍ଭ ହେବା ପୂର୍ବରୁ ଏହାର ପୂର୍ବସୂଚନା ବିଜ୍ଞାନ ଦେଇପାରୁଥିବାରୁ ମଣିଷ ନିଜକୁ ସତର୍କ କରିପାରୁଛି । ମନକୁ ପ୍ରଫୁଲ୍ଲ ରଖିବା ପାଇଁ ଚଳଚ୍ଚିତ୍ର, ରେଡ଼ିଓ ଓ ଟେଲିଭିଜନ ଆଦିର

ଉଦ୍ଭାବନ ହୋଇଛି । ଦେଶର ଖାଦ୍ୟସମସ୍ୟା ଦୂରୀକରଣ ପାଇଁ ଆମେ ବର୍ତ୍ତମାନ ବୈଜ୍ଞାନିକ ଉପାୟରେ କୃଷିକରି ପ୍ରଚୁର ଫସଲ ଉତ୍ପାଦନ କରିପାରୁଛୁ । ଗୋଟିଏ ଜମିରୁ ଏକକାଳୀନ ବହୁପ୍ରକାର ଫସଲ ଆମଦାନୀ କରି ଆମର ଆର୍ଥନୀତିକ ସ୍ଥିତିକୁ ଦୃଢ଼ କରିପାରୁଛୁ । ବୁଦ୍ଧି ଏବଂ ଜ୍ଞାନର ବିକାଶ ଘଟାଇ ମଣିଷ ମନ ମଧ୍ୟରେ ଥିବା ସଂକୀର୍ଣ୍ଣ ଚିନ୍ତାଧାରାକୁ ବିଜ୍ଞାନ ଦୂର କରିପାରିଛି । ଆଜି ଆଉ ଚନ୍ଦ୍ର ଓ ମଙ୍ଗଳକୁ ମଣିଷ ଦେବତା ଭାବରେ ପୂଜା କରୁ ନାହିଁ । ମଣିଷ ବିଜ୍ଞାନ ବଳରେ ଚନ୍ଦ୍ର ଏବଂ ମଙ୍ଗଳ ଗ୍ରହରେ ପଦାର୍ପଣ କରିସାରିଲାଣି । ଏବେ ସେଠାରେ ଉପନିବେଶ ସ୍ଥାପନ ପାଇଁ ଯୋଜନା ଚାଲିଲାଣି । ବିଜ୍ଞାନଦ୍ୱାରା ପୃଥିବୀରେ ମଣିଷର ଜୀବନୀଶକ୍ତି ବୃଦ୍ଧି ପାଇଛି । ଭାଗ୍ୟ ଓ ଭଗବାନ୍‌ଙ୍କ ଉପରେ ନିର୍ଭର କରି ମଣିଷ ଆଜି ଆତ୍ମସଚେତନ ଭାବରେ ନିଜର କର୍ମ ଉପରେ ବିଶ୍ୱାସ କରୁଛି । ବୈଜ୍ଞାନିକ ଯନ୍ତ୍ରପାତିର ଉଦ୍ଭାବନ ଦ୍ୱାରା ମଣିଷର ପରିଶ୍ରମ ହ୍ରାସ ପାଇଛି । ଏକାଧିକ ମଣିଷର କାର୍ଯ୍ୟ ଗୋଟିଏ ମେସିନ୍ କ୍ଷଣକ ମଧ୍ୟରେ କରିପାରୁଛି । ତେଣୁ ବର୍ତ୍ତମାନ ପୃଥିବୀରେ ବିଜ୍ଞାନ ବ୍ୟତିରେକେ ମଣିଷ ମୁହୂର୍ତ୍ତଟିଏ ମଧ୍ୟ ବଞ୍ଚିବା କଷ୍ଟକର ବ୍ୟାପାର ।

ଏହା ସତ୍ତ୍ୱେ ବିଜ୍ଞାନର କେତେକ ଅପକାର ମଣିଷ ଅଙ୍ଗେ ଲିଭାଇ ସାରିଲାଣି । ବିଜ୍ଞାନ ଯେପରି ପ୍ରାଚୁର୍ଯ୍ୟ ଓ ବିଳାସଦ୍ୱାରା ମଣିଷର ଜୀବନକୁ ସୁଖମୟ କରିଛି, ସେହିପରି ତା'ର ଅକଲ୍ୟାଣକର କାର୍ଯ୍ୟଦ୍ୱାରା ମାନବ ସଭ୍ୟତା ପାଇଁ ଏକ ଅଭିଶାପରେ ପରିଣତ ହୋଇଛି । ଦୁଇ ଦୁଇଟି ବିଶ୍ୱଯୁଦ୍ଧରେ ମଣିଷ ପ୍ରତ୍ୟକ୍ଷ କରିଛି ବିଜ୍ଞାନର ଧ୍ୱଂସକାରୀ ଶକ୍ତିକୁ । ସମଗ୍ର ବିଶ୍ୱକୁ ଗୋଟିଏ ମୁହୂର୍ତ୍ତରେ ଧ୍ୱଂସ କରିବାକୁ ବିଜ୍ଞାନ ବହୁ ମାରଣାସ୍ତ୍ର ମଣିଷ ହାତରେ ଧରାଇ ଦେଇଛି । ମଣିଷକୁ ଏହା କରିଛି ସ୍ୱାର୍ଥପର । ସମସ୍ତ ମାନବିକ ଗୁଣଗୁଡ଼ିକୁ ବିଲୋପକରି ତାକୁ ହିଂସ୍ର ଜାନୁଆରରେ ପରିଣତ କରିଛି । ଆଜି ମଣିଷ ନିଜର ବ୍ୟକ୍ତିଗତ ସ୍ୱାର୍ଥ ପାଇଁ ସମଗ୍ର ବିଶ୍ୱର କ୍ଷତି କରିବାକୁ ଉନ୍ମୁଖ । ତା'ର ହୃଦୟ ସଙ୍କୁଚିତ ହୋଇଯାଇଛି । ଆଣବିକ ଅସ୍ତ୍ରଶସ୍ତ୍ରର ପ୍ରତିଯୋଗିତା ଯୋଗୁଁ ବିଶ୍ୱ ଏକ ଭୟଙ୍କର ଅନ୍ଧାର ଆଡ଼କୁ ଛୁଟି ଚାଲିଛି । କେଉଁ ମୁହୂର୍ତ୍ତରେ ଏହାର ଧ୍ୱଂସ ହେବ ତାହା କେହି କହିପାରିବେ ନାହିଁ । ମୃତ୍ୟୁ ଚିନ୍ତା ମଣିଷକୁ ଏପରି ମ୍ରିୟମାଣ କରିଛି ଯେ ତା' ମନରୁ ଆନନ୍ଦ ଉଲ୍ଲାସଭାବ ସମ୍ପୂର୍ଣ୍ଣ ଦୂରୀଭୂତ ହୋଇଯାଇଛି । ପରମାଣୁ ଓ ଉଦ୍‌ଜାନ ବୋମା ମାନବ ସଭ୍ୟତାର ଧ୍ୱଂସ୍ ପାଇଁ ସୃଷ୍ଟି ହୋଇଛି । ଏହାର ସଂଯତ ପ୍ରୟୋଗ ହୋଇ ନପାରିଲେ, ବିଶ୍ୱର ସମ୍ପୂର୍ଣ୍ଣ ଭୂମି ଏକ ପୋଡ଼ାଭୂମିରେ ପରିଣତ ହୋଇଯିବ । ଆଜି ତାରକାଯୁଦ୍ଧ ମଣିଷକୁ ସଂଶୟ ଦୋଳାରେ ଦୋଳାୟିତ କରିଛି । ତେଣୁ ବିଜ୍ଞାନ ମଣିଷ ମନରୁ ସ୍ନେହ, କ୍ଷମା, ଦୟା ଓ ମାନବିକ ଗୁଣଗୁଡ଼ିକର ବିଲୋପ କରାଇ ତା' ସ୍ଥାନରେ ଭରିଦେଇଛି ଜିଂଘାସା, ସ୍ୱାର୍ଥପରତା ଓ ଅମାନବିକତା । ଏହି ଦୃଷ୍ଟିରୁ ବିଜ୍ଞାନ ମଣିଷକୁ ଯେତେ ସୁଖସ୍ୱାଚ୍ଛନ୍ଦ୍ୟ ଦେଇଥିଲେ ମଧ୍ୟ ତା' ମନରେ ଶାନ୍ତି ଓ ପ୍ରୀତି ଭରିଦେଇପାରି ନାହିଁ ।

ମାନବର ବିକାଶରେ ବିଜ୍ଞାନର ଭୂମିକାକୁ କଦାପି ଅସ୍ୱୀକାର କରାଯାଇ ନ ପାରେ । ବିଜ୍ଞାନକୁ କୁମାର୍ଗରେ ଏହି ମଣିଷ ସମାଜ ହିଁ ବ୍ୟବହାର କରୁଛି । ବିଜ୍ଞାନର ଉଦ୍ଭାବନ ହୋଇଥିଲା

ମଣିଷକୁ ସୁଖ ଓ ଶାନ୍ତି ପ୍ରଦାନ ପାଇଁ । ମାତ୍ର ସଂକୀର୍ଣ୍ଣମନା ମଣିଷ ତାକୁ ବିପରୀତ ମାର୍ଗରେ ପ୍ରୟୋଗ କରି ତା'ର ଅମର୍ଯ୍ୟାଦା କରିଛି । ମଣିଷର ପ୍ରୟୋଗକାରୀ ଇଚ୍ଛା ଉପରେ ହିଁ ବିଜ୍ଞାନର ସଫଳତା ବା ବିଫଳତା ନିର୍ଭର କରିଥାଏ । ଯେପରି ଆଟମ ବା ଅଣୁକୁ ମରୁଭୂମିରେ ପ୍ରୟୋଗ କରାଯାଇ ତାକୁ ଶସ୍ୟଶ୍ୟାମଳା କ୍ଷେତ୍ରରେ ପରିଣତ କରାଯାଇପାରେ, ସେହିପରି ଆଟମ୍ ବମ୍‌ରେ ପରିଣତ କରି ମଣିଷ ସମାଜର ଧ୍ୱଂସସାଧନ ମଧ୍ୟ କରାଯାଇପାରେ । ଏହାସତ୍ତ୍ୱେ ବିଜ୍ଞାନର ଅବଦାନକୁ କଦାପି ଭୁଲାଯାଇ ନ ପାରେ । ଆଜି ମଣିଷ ଯେଉଁ ଅବସ୍ଥାରେ ପହଞ୍ଚିଛି, ସେଥିରେ ବିଜ୍ଞାନର ଭୂମିକା ସର୍ବାଦୌ ଗୁରୁତ୍ୱପୂର୍ଣ୍ଣ । ତେଣୁ ମାନବସଭ୍ୟତା ସହିତ ବିଜ୍ଞାନର ସମ୍ପର୍କ ଅତି ନିବିଡ଼ କହିବା ଅନାବଶ୍ୟକ ।

ବିଜ୍ଞାନ ଜଗତ ବିଶ୍ୱକୁ ଆଜି ନୂତନ ଭାବରେ ଦେଖିବାକୁ ଦୃଷ୍ଟିଶକ୍ତି ପ୍ରଦାନ କରିଛି । ମଣିଷର ପ୍ରୟୋଗ ଉପରେ ହିଁ ବିଜ୍ଞାନର ଉପକାର ଓ ଅପକାର ନିର୍ଭର କରେ । ଯଦି ମଣିଷର ସାମଗ୍ରିକ (ଶାରୀରିକ ଓ ମାନସିକ) ବିକାଶରେ ଏହା ସହାୟତା କରିପାରିଲା, ତେବେ ମଣିଷର ପରମ ମିତ୍ର ରୂପେ ବିଜ୍ଞାନ ପରିଗଣିତ ହେବ । ଯଦି ମଣିଷର ଧ୍ୱଂସ ପାଇଁ ଏହା କବର ଖୋଳେ, ତେବେ ବିଜ୍ଞାନ ହେବ ମାନବ ସଭ୍ୟତାର ପରମ ଶତ୍ରୁ । ସମସ୍ତ ଉପକାର ସତ୍ତ୍ୱେ ତା'ର ଧ୍ୱଂସାତ୍ମକ ଗୁଣ ଯୋଗୁଁ ବିଜ୍ଞାନର ଅବଦାନକୁ କେହି ସ୍ୱୀକାର କରିବେ ନାହିଁ । ମଣିଷ ଚାହେଁ ଶାନ୍ତି ଓ ଆନନ୍ଦ । ଯଦି ବିଜ୍ଞାନ ମଣିଷର ଏହି ଇଚ୍ଛାକୁ ପରିପୂରଣ କରିପାରେ, ତେବେ ସାର୍ଥକ ହେବ ତା'ର ଉଦ୍ଭାବନ । ନଚେତ୍ ମାନବ ଜାତିର ଇତିହାସରେ ଏହା ଏକ ଅଭିଶାପ ରୂପେ ଚିରଦିନ ନିନ୍ଦିତ ହିଁ ହେବ ।

●

## ଭାରତ ଓ ପରମାଣୁ ଶକ୍ତି

**(ଉପକ୍ରମ, ଭାରତର ବୈଦେଶିକ ନୀତି, ପରମାଣୁ ଶକ୍ତି (ବୋମା) ବିରୋଧରେ ମତବାଦ, ସପକ୍ଷବାଦୀଙ୍କ ଯୁକ୍ତି, ସାମ୍ପ୍ରତିକ ବିଶ୍ୱ ଓ ପରମାଣୁ ବୋମା, ଉପସଂହାର)**

ଅତୀତର ମଣିଷ ଆରଣ୍ୟକ ପରିବେଶରୁ ମୁକ୍ତିଲାଭ କରି ଆଜି ସଭ୍ୟଶିକ୍ଷିତ ହୋଇପାରିଛି । ବିଜ୍ଞାନର ଆବିଷ୍କାର ଦ୍ୱାରା ମଣିଷ ପୃଥିବୀରେ ଶ୍ରେଷ୍ଠ ଜୀବ ରୂପେ ଆତ୍ମପ୍ରକାଶ କରିପାରିଛି ! ତା' ଆଗରେ ଜ୍ଞାନବିଜ୍ଞାନର ସମସ୍ତ ଦ୍ୱାର ଆଜି ମୁକ୍ତ । ସେ ପାଣିରେ ବୁଡ଼ିପାରୁଛି, ଆକାଶରେ ଉଡ଼ିପାରୁଛି । ଯାହା ଅତୀତରେ ଥିଲା ସ୍ୱପ୍ନ, ବର୍ତ୍ତମାନ ତାହା ବିରାଟ ବାସ୍ତବତା । ଏହି ବାସ୍ତବତାକୁ ଆଖିଆଗରେ ରଖି ସେ ନିଜର ସର୍ବନିମ୍ନ କାର୍ଯ୍ୟକ୍ରମ ପ୍ରସ୍ତୁତ କରୁଛି । ବିଜ୍ଞାନ ଦ୍ୱାରା ମାନବ ସଭ୍ୟତା ଯେ ଜ୍ଞାନାଲୋକର ଶେଷ ସୋପାନରେ ପହଞ୍ଚିସାରିଲାଣି, ଅସ୍ୱୀକାର କରାଯାଇ ନ ପାରେ । ମାତ୍ର ଏହା ସହିତ ସେ ମଧ୍ୟ ପରୋକ୍ଷରେ ନିଜର ଧ୍ୱଂସର ରାଗିଣୀ ତୋଳିଛି । ପରମାଣୁ ବୋମାର ଆବିଷ୍କାର ଦ୍ୱାରା ପୃଥିବୀରେ ଯୁଦ୍ଧର ଭୟଙ୍କାରିତା ଦେଖାଦେଇଛି । ବିଶ୍ୱଧ୍ୱଂସ

ପାଇଁ ଏହି ପରମାଣୁ ବା ଉଦ୍‌ଜାନ ବୋମା ନିର୍ମାଣ ହୋଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ମନରେ ପ୍ରଶ୍ନ ଉଠେ, ମାନବ ସଭ୍ୟତାର ଧ୍ୱଂସ ପାଇଁ ନା ମଙ୍ଗଳ ପାଇଁ ବିଜ୍ଞାନର ସୃଷ୍ଟି ? ଉତ୍ତର ଅତି ସହଜ । ମାତ୍ର ଯେଉଁମାନେ ଏହାର ପ୍ରୟୋଗକର୍ତ୍ତା; ସେହିମାନେ ହିଁ କହିପାରିବେ, ବିଶ୍ୱଧ୍ୱଂସ ହେବା ଉଚିତ କି ନୁହେଁ । ଭାରତ ଏ ସମ୍ପର୍କରେ ତା'ର ସ୍ପଷ୍ଟ ନୀତି ଘୋଷଣା କରି ସାରିଥିଲେହେଁ, ସାମ୍ପ୍ରତିକ ବିଶ୍ୱକୁ ଲକ୍ଷ୍ୟକରି ସେ ତା' ମତର ପୁନର୍ବିଚାର କରିବାକୁ ବାଧ ହେଉଛି ।

ଭାରତର ବୈଦେଶିକ ନୀତି ଶାନ୍ତିପୂର୍ଣ୍ଣ ସହାବସ୍ଥାନ । ତେଣୁ ମୁଖ୍ୟତଃ ପଞ୍ଚଶୀଳ ନୀତି ଉପରେ ଭାରତର ବୈଦେଶିକ ନୀତି ପ୍ରତିଷ୍ଠିତ । କେଉଁ ପ୍ରାଚୀନ କାଳରୁ ଏହାର ମୁନିଋଷିମାନେ ଜଗତର କଲ୍ୟାଣ ପାଇଁ ଓ ଶାନ୍ତିରେ ବସବାସ ପାଇଁ ଦେବତାମାନଙ୍କ ଉଦ୍ଦେଶ୍ୟରେ ଯଜ୍ଞାଦି କ୍ରିୟା କରୁଥିଲେ । ଏହି ଭୂମିରେ ପଦାର୍ପଣ କରି ଚଣ୍ଡାଶୋକ ପରିଣତ ହୋଇଥିଲେ ଧର୍ମାଶୋକରେ । ମହାତ୍ମାଗାନ୍ଧି ଶାନ୍ତି ଓ ଅହିଂସା ଆନ୍ଦୋଳନରେ ଭାରତକୁ ସ୍ୱାଧୀନ କରିଥିଲେ । ତେଣୁ ଭାରତ କୌଣସି ମୁହୂର୍ତ୍ତରେ ଯୁଦ୍ଧ ଚାହେଁ ନାହିଁ; ବରଂ ଶାନ୍ତି ସ୍ଥାପନ ପାଇଁ ସେ ବାରମ୍ବାର ଯୁକ୍ତି କରିଆସିଛି । କେତେକ ଭାରତର ଏହି ଯୁକ୍ତିକୁ ଦୁର୍ବଳତର ଯୁକ୍ତି ବୋଲି ଆକ୍ଷେପ କରିଛନ୍ତି । ଏହା ସତ୍ତ୍ୱେ ଭାରତର ବୈଦେଶିକ ନୀତି ବହୁ ରାଷ୍ଟ୍ରଙ୍କ ଦ୍ୱାରା ପ୍ରଶଂସିତ ହୋଇଛି ।

ଭାରତ ଆଣବିକ ବୋମା ପ୍ରସ୍ତୁତ କରିବା ଉଚିତ କି ନୁହେଁ, ଏ ସମ୍ପର୍କରେ ଦୁଇପ୍ରକାର ମତ ପରିଲକ୍ଷିତ ହୋଇଥାଏ । ଗୋଟିଏ ଦଳ ଆଣବିକ ବୋମା ପ୍ରସ୍ତୁତିର ବିରୋଧରେ ମତ ପୋଷଣ କରୁଥିବା ସମୟରେ, ଆଉ ଦଳେ ଏହା ସପକ୍ଷରେ ଯୁକ୍ତି କରିଥାନ୍ତି । ଯେଉଁମାନେ ଏହା ବିରୋଧରେ ମତ ପୋଷଣ କରନ୍ତି, ସେମାନଙ୍କର ଯୁକ୍ତି ହେଉଛି, ସମଗ୍ର ବିଶ୍ୱରେ ଭାରତ ଏକ ଶାନ୍ତିକାମୀ ଦେଶ ରୂପେ ପରିଚିତ । ଏଥିପାଇଁ ବିଶ୍ୱର ବିଭିନ୍ନ ରାଷ୍ଟ୍ର ତାକୁ ସମ୍ମାନ ପ୍ରଦର୍ଶନ କରିଥାନ୍ତି । ଅତୀତରେ କୌଣସି ରାଷ୍ଟ୍ର ଉପରେ ଆକ୍ରମଣ ହେଲେ ଭାରତ ଘୋର ପ୍ରତିକ୍ରିୟା ପ୍ରକାଶ କରିଛି । ସଂଘର୍ଷକୁ ଶାନ୍ତିପୂର୍ଣ୍ଣ ଭାବରେ ସମାଧାନ କରିବାକୁ ସେ ପରାମର୍ଶ ଦେଉଥିବା ସମୟରେ ନିଜେ ପରମାଣୁବୋମା ପ୍ରସ୍ତୁତ କଲେ ତା'ର ନୈତିକତାର ଅଧୋଗତି ହେବ । ବିଶ୍ୱରେ ସେ ଯେଉଁ ସମ୍ମାନ ଲାଭ କରିଛି, ତାହା ହ୍ରାସ ପାଇବ । ପୁନରାୟ ଭାରତ ଏକ ବିକାଶଶୀଳ ରାଷ୍ଟ୍ର ହୋଇଥିବାରୁ, ଅଧିକାଂଶ ଅର୍ଥ ଦେଶର ଆର୍ଥିକ ବିକାଶ ପାଇଁ ଖର୍ଚ୍ଚ ହେଉଛି । କୃଷିପ୍ରଧାନ ଦେଶ ଭାବରେ ଏହାର ଆର୍ଥିକ ଅବସ୍ଥା ସେପରି ସୁଦୃଢ଼ ନୁହେଁ । ଯଦି ପରମାଣୁ ବୋମା ନିର୍ମାଣ କ୍ଷେତ୍ରରେ ସେ ଅର୍ଥବ୍ୟୟ କରେ, ତେବେ ତା'ର ଅନେକ ଯୋଜନା ପଣ୍ଡ ହୋଇଯିବ । ଆର୍ଥିକ ସ୍ଥିତି ଦୋହଲି ପଡ଼ିବ । ଏବେବି ଭାରତର ଶତକଡ଼ା ୩୬ ଭାଗ ଲୋକ ଦାରିଦ୍ର୍ୟ ସୀମାରେଖା ତଳେ ବସବାସ କରୁଛନ୍ତି । ପରମାଣୁ ବୋମା ନିର୍ମାଣରେ ଯେଉଁ ପ୍ରଭୂତ ପରିମାଣରେ ଅର୍ଥ ବ୍ୟୟ ହେବ, ତଦ୍ୱାରା ଏହି ଦାରିଦ୍ର୍ୟ ସୀମାରେଖା ଆହୁରି ଉପରକୁ ବୃଦ୍ଧି ପାଇବ । ପୁନରାୟ ଭାରତ ବିଶ୍ୱରେ ଶାନ୍ତି ପାଇଁ ଯୁକ୍ତି କରୁଥିବା ସମୟରେ ନିଜେ ପରମାଣୁ ଶକ୍ତିର ଅଧିକାରୀ ହେଲେ, ତା'ର ଭାବମୂର୍ତ୍ତିରେ ଆଞ୍ଚ ଆସିବ । ତେଣୁ ନିଜର ସମ୍ମାନ ଓ ଆର୍ଥିକ ଦୃଷ୍ଟିକୁ ବିଚାର କରି ଭାରତ ପରମାଣୁ ବୋମା ନିର୍ମାଣ କ୍ଷେତ୍ରରେ ଅର୍ଥବ୍ୟୟ କରିବା ଅନୁଚିତ ବୋଲି ମତ ପ୍ରକାଶ ପାଇଥାଏ ।

ଯେଉଁମାନେ ଭାରତ ପରମାଣୁ ଶକ୍ତି ବା ବୋମା ନିର୍ମାଣ କରିବା ଅନୁଚିତ ବୋଲି ମତପ୍ରଦାନ କରିଥାନ୍ତି, ସେମାନେ ମୁଖ୍ୟତଃ ଏହାର ନୈତିକ ଦିଗଟିକୁ ବିଚାର କରିଥାନ୍ତି ମାତ୍ର ବାସ୍ତବ ଦିଗଟିକୁ ଭୁଲିଯାଇଥାନ୍ତି । ବାସ୍ତବତାକୁ ନେଇ ବଞ୍ଚିବା ମଣିଷର କର୍ତ୍ତବ୍ୟ । ଶାନ୍ତି ପାଇଁ ଯୁକ୍ତି କରୁଥିବା ଭାରତ ଉପରେ ୧୯୬୨ ମସିହାରେ ଚୀନ ଅତର୍କିତ ଆକ୍ରମଣ କରି ତା'ର ଏକ ବିରାଟ ଅଞ୍ଚଳ ନିଜ ଅଧିକାରକୁ ନେଇଗଲା । କେଉଁ ନୈତିକତା ସେତେବେଳେ ଭାରତକୁ ସାହାଯ୍ୟ କଲା ? ବର୍ତ୍ତମାନ ବିଶ୍ୱରେ ଯେଉଁ ରାଷ୍ଟ୍ର ଯେତେ ପରିମାଣରେ ଆଣବିକ ଶକ୍ତିର ଅଧିକାରୀ, ବିଶ୍ୱରେ ସେହି ଦେଶ ସେତେ ପରିମାଣରେ ସମ୍ମାନିତ । ଚୀନ ଦ୍ୱାରା ପରାଜିତ ହେବାଯୋଗୁଁ ବିଶ୍ୱରେ ଭାରତର ସମ୍ମାନ ହ୍ରାସ ପାଇଛି । ମାତ୍ର ୧୯୭୧ ମସିହାରେ ଭାରତ ପାକିସ୍ଥାନ ଯୁଦ୍ଧରେ ଆମେ ଜୟଲାଭ କରିଥିବାରୁ, ଆମର ସମ୍ମାନ ବୃଦ୍ଧି ପାଇଛି । ଦୁର୍ବଳ ରାଷ୍ଟ୍ର କୌଣସି କ୍ଷେତ୍ରରେ ବିଶ୍ୱରୁ ସମ୍ମାନ ଆଶା କରି ନ ପାରେ । ନୈତିକତା ଆଜି କେବଳ ଏକ ମୁଖରୋଚକ ଶବ୍ଦରେ ପରିଣତ ହୋଇଛି, ଏହାର ବାସ୍ତବ ମୂଲ୍ୟ ଆଦୌ ନାହିଁ । ଅନେକ କ୍ଷେତ୍ରରେ ଯୁକ୍ତରାଷ୍ଟ୍ର ଆମେରିକା ସମସ୍ତ ନୀତିକୁ ବିସର୍ଜନ ଦେଇ ଅନ୍ୟ ରାଷ୍ଟ୍ର ଉପରେ ଆକ୍ରମଣ କରିଛି । କିଛି ସମୟ ପାଇଁ ସେ ସାମାନ୍ୟ ସମାଲୋଚିତ ହୋଇଥିଲେହେଁ ଆର୍ଥିକ ସ୍ୱଚ୍ଛଳତା ଏବଂ ଆଣବିକ ଶକ୍ତିର ଅଧିକାରୀ ହୋଇଥିବାରୁ ଏବେ ମଧ ବିଶ୍ୱର ସମସ୍ତ ରାଷ୍ଟ୍ରଙ୍କ ଠାରୁ ତା'ର ସମ୍ମାନ ଊର୍ଦ୍ଧ୍ୱରେ । ଗୋଟିଏ ସାର୍ବଭୌମ ଗଣତନ୍ତ୍ର ରାଷ୍ଟ୍ର ଭାବରେ ଭାରତ ମଧ ନିଜର ନିରାପତ୍ତା ପ୍ରତି ଦୃଷ୍ଟି ଦେବା ସର୍ବାଦୌ ଆବଶ୍ୟକ । ଯୁଦ୍ଧପାଗଳ ରାଷ୍ଟ୍ରମାନଙ୍କୁ ସତର୍କ କରାଇଦେବା ପାଇଁ ଭାରତ ପରମାଣୁ ବୋମାର ଅଧିକାରୀ ହେବା ଉଚିତ । କେବଳ ସେତିକି ନୁହେଁ, ଭାରତର ଦୁଇ ପଡ଼ୋଶୀ ଦେଶ ଚୀନ ଓ ପାକିସ୍ଥାନ ଆଣବିକ ବୋମାର ଅଧିକାରୀ ହୋଇସାରିଥିବା ସମୟରେ, ଭାରତ ଏ କ୍ଷେତ୍ରରେ ଦ୍ୱିଧାବୋଧ କାହିଁକି କରିବ ? ଏବେ ମଧ ଚୀନ ଓ ପାକିସ୍ଥାନ ଭାରତକୁ ନିଜର ଶତ୍ରୁ ଦେଶ ବୋଲି ଭାବି ଚାଲିଛନ୍ତି । ଯେକୌଣସି ମୁହୂର୍ତ୍ତରେ ଏହି ଦୁଇ ଦେଶ ତରଫରୁ ଭାରତ ପ୍ରତି ବିପଦ ଆଶଙ୍କା କରାଯାଇପାରେ । ତେଣୁ ଭାରତ ନିଜର ନିରାପତ୍ତାକୁ ଆଖିରେ ରଖି ନିଜର ଆଣବିକ କାର୍ଯ୍ୟକ୍ରମର ପୁନର୍ବିଚାର କରିବା ଆବଶ୍ୟକ । ଅତୀତରେ ଉଭୟ ଯୁକ୍ତରାଷ୍ଟ୍ର ଆମେରିକା ଓ ରୁଷ ଭାରତକୁ ନିମନ୍ତ୍ରଣ କରିଥିଲେ ଆଣବିକ କାର୍ଯ୍ୟକ୍ରମ କ୍ଷେତ୍ରରେ ସେମାନଙ୍କର ସହାୟତା ଗ୍ରହଣ ପାଇଁ । ଭାରତ ସେପରି ପ୍ରସ୍ତାବ ଗ୍ରହଣ ନ କରି ବୁଦ୍ଧିମତାର ପରିଚୟ ଦେଇଛି । ନଚେତ୍ ବର୍ତ୍ତମାନ ସୁଦ୍ଧା ସେମାନଙ୍କର ଗୋଡ଼ାଣିଆ ହେବାକୁ ପଡୁଥାନ୍ତା । ଭାରତ ମଧ ଏନ୍. ପି. ଟି.ରେ ସ୍ୱାକ୍ଷର ନ କରି ଦୂରଦୃଷ୍ଟିର ପରିଚୟ ପ୍ରଦାନ କରିଛି । ଯଦି ସେଥିରେ ସ୍ୱାକ୍ଷର କରିଥାନ୍ତା, ଭବିଷ୍ୟତରେ ଭାରତ କଦାପି ଆଣବିକ ଅସ୍ତ୍ରଶସ୍ତ୍ର ନିର୍ମାଣ କରିପାରି ନ ଥାନ୍ତା । ଏପରିକି ସି.ଟି.ବି.ଟିରେ ମଧ ସ୍ୱାକ୍ଷର ନ କରିବା ଭାରତ ପକ୍ଷେ ମଙ୍ଗଳକର ହୋଇଛି । ଏକଥା ସତ୍ୟ, ଆଣବିକ ଅସ୍ତ୍ରଶସ୍ତ୍ର ନିର୍ମାଣ ଦ୍ୱାରା ପ୍ରଚୁର ପରିମାଣର ଅର୍ଥ ବ୍ୟୟ ହେବ । ଭାରତର ଆର୍ଥିକ ସ୍ଥିତି ଦୁର୍ବଳ ହୋଇଥିବାରୁ, ଏହା ତା' ଉପରେ ଏକ ବୋଝ ସଦୃଶ ହେବ । ଏହା ସତ୍ତ୍ୱେ ସ୍ୱାଧୀନତା ରକ୍ଷା ପାଇଁ ଭାରତ ଆଣବିକ

ଅସ୍ତ୍ରଶସ୍ତ୍ର ନିର୍ମାଣ କରିବା ଆବଶ୍ୟକ । ବର୍ତ୍ତମାନ ଏସିଆ ଭୂଖଣ୍ଡରେ ଯେଉଁ ପରିମାଣରେ ଅସ୍ତ୍ରଶସ୍ତ୍ର ପ୍ରତିଯୋଗିତା ଆରମ୍ଭ ହୋଇଛି, ସେଥିରୁ ଭାରତ ନିଜକୁ ଦୂରେଇ ରଖିଲେ ତା'ର ସ୍ଥିତି ବିପନ୍ନ ହୋଇପଡ଼ିବ । ମିଥ୍ୟା ସମ୍ମାନ ଓ ନୈତିକତାର ଦ୍ୱାହି ଦେଇ ଅନ୍ୟ ଦୃଷ୍ଟିରେ ହୀନପ୍ରଭ ହୋଇପଡ଼ିବାର କୌଣସି ମାନେ ନାହିଁ । ନିକଟରେ ପାକିସ୍ଥାନର ପ୍ରଧାନମନ୍ତ୍ରୀ ଘୋଷଣା କରିଛନ୍ତି, ତାଙ୍କ ଦେଶବାସୀ ଗୋଟିଏ ବେଳା ନ ଖାଇ ଅଣୁଅସ୍ତ୍ର ନିର୍ମାଣ କରିବେ । ଭାରତ ମଧ ଠିକ୍ ସେହି ନୀତି ଅବଲମ୍ବନ କରିବା ଆବଶ୍ୟକ ।

ସାମ୍ପ୍ରତିକ ବିଶ୍ୱରେ ଅଧିକାଂଶ ରାଷ୍ଟ୍ର ଅଣୁଅସ୍ତ୍ରର ଅଧିକାରୀ ହୋଇସାରିଲେଣି । ଆମେରିକା, ରୁଷ, ଚୀନ୍, ଇଂଲଣ୍ଡ, ଜର୍ମାନ୍, ଫ୍ରାନ୍ସ, ପାକିସ୍ଥାନ ଆଦି ଦେଶ ସେମାନଙ୍କ ନିକଟରେ ବହୁପରିମାଣରେ ଅଣୁଅସ୍ତ୍ର ଗଚ୍ଛିତ ରଖିଛନ୍ତି । ଏହି ଅସ୍ତ୍ରପାଗଳ ଦେଶମାନେ ଯେକୌଣସି ମୁହୂର୍ତ୍ତରେ ବିଶ୍ୱ ଧ୍ୱଂସ କରିଦେଇପାରନ୍ତି । ଶାନ୍ତି ପାଇଁ ଆହ୍ୱାନ ଦେଉଥିବା ଦେଶ ପରୋକ୍ଷରେ ମାରାତ୍ମକ ଅସ୍ତ୍ରଶସ୍ତ୍ର ନିର୍ମାଣ କରିବାରେ ଲାଗିଛନ୍ତି । ଆମେରିକା, ରୁଷ, ଫ୍ରାନ୍ସ, ଜର୍ମାନ, ଇଂଲଣ୍ଡ, ଚୀନ ଆଦି ଦେଶଗୁଡ଼ିକ ବହୁଥର ପରମାଣୁ ବୋମା ପରୀକ୍ଷା କରି ନିଜ ଶକ୍ତିର ପରିଚୟ ଦେଇସାରିଛନ୍ତି । ପ୍ରତିକ୍ଷେତ୍ରରେ ସେମାନେ ମୁକାବିଲା ମୂଳକ ପଦକ୍ଷେପ ଗ୍ରହଣ କରିବାକୁ ପ୍ରସ୍ତୁତ । ଏହାଦ୍ୱାରା ସମଗ୍ର ବିଶ୍ୱ ଯେ କି ପ୍ରକାର ଆତଙ୍କର ସମ୍ମୁଖୀନ ହେଉଛି, ତାହା ସେମାନେ ଜାଣି ପାରୁନାହାନ୍ତି । ବିଶ୍ୱର ଏହି ଯୁଦ୍ଧପାଗଳ ଦେଶମାନଙ୍କ ଗତିରୀତିକୁ ନିରୀକ୍ଷଣ କରି ଭାରତ ଉପଯୁକ୍ତ ପଦକ୍ଷେପ ଗ୍ରହଣ କରିନପାରିଲେ ପଛରେ ଅନୁତାପ କରିବାହିଁ ସାର ହେବ ।

ଅବଶ୍ୟ ସମ୍ପ୍ରତି ବିଶ୍ୱରେ ଅନ୍ୟତମ ଶକ୍ତିଶାଳୀ ରାଷ୍ଟ୍ରରୂପେ ଭାରତ ନିଜର ସ୍ଥିତି ଜାହିର କରିସାରିଛି । ୧୯୭୪ ମସିହାରେ ପ୍ରଥମ ଆଣବିକ ବୋମା ପରୀକ୍ଷାକରି ଭାରତ ନିଜ ଶକ୍ତିର ପରିଚୟ ଦେଇଥିଲା । ୧୯୯୮ ମସିହାରେ ଲଗାତର ପାଞ୍ଚୋଟି ପରମାଣୁ ଓ ଉଦଜାନ ବୋମା ପରୀକ୍ଷା କରି ନିଜକୁ ବିଶ୍ୱର ଅନ୍ୟାନ୍ୟ ପରମାଣୁ ଶକ୍ତିଶାଳୀ ଦେଶଙ୍କ ସମକକ୍ଷ କରିପାରିଛି । ଏତଦ୍‌ବ୍ୟତୀତ ପୃଥ୍ୱୀ, ଅଗ୍ନି ଆଦି କ୍ଷେପଣାସ୍ତ୍ର ନିର୍ମାଣ କରି ନିଜର ନିରାପତ୍ତା ବ୍ୟବସ୍ଥାକୁ ସୁଦୃଢ଼ କରିପାରିଛି । ଭାରତ ସବୁ ସମୟରେ କହିଆସିଛି, ସେ ତା'ର ପରମାଣୁ ଶକ୍ତିକୁ ଦେଶର ସମୃଦ୍ଧି ଓ ମଙ୍ଗଳ କ୍ଷେତ୍ରରେ ହିଁ ବିନିଯୋଗ କରିବ । କାରଣ ଭାରତ ଯୁଦ୍ଧନୀତିକୁ ଘୃଣା କରେ । ମାତ୍ର ଯେତେବେଳେ ତା'ର ସ୍ୱାଧୀନତା ଓ ସାର୍ବଭୌମତ୍ୱ ଉପରେ ବିପଦ ଦେଖାଦେବ କିମ୍ବା କୌଣସି ପଡ଼ୋଶୀ ଦେଶ ବା ବହିଃଶତ୍ରୁ ଭାରତକୁ ଆକ୍ରମଣ କରିବେ, ସେତେବେଳେ ଦେଶର ସ୍ୱାଧୀନତା ରକ୍ଷା ପାଇଁ ସେ ଏହି ପରମାଣୁ ଶକ୍ତିର ପ୍ରୟୋଗ କରିବାକୁ ବାଧ ହେବ । ପରମାଣୁ ଶକ୍ତିର ଅଧିକାରୀ ହେବା ସତ୍ତ୍ୱେ ଭାରତର ସଂଯମ ଆଚରଣ ବିଶ୍ୱରେ ଯେ ତା'ର ସମ୍ମାନ ବୃଦ୍ଧି କରିଛି, କହିବା ବାହୁଲ୍ୟ ମାତ୍ର ।

•

# ବିଜ୍ଞାନ ଓ କୃଷି

**(ଉପକ୍ରମ, ପ୍ରାଚୀନ ଭାରତର କୃଷିପଦ୍ଧତି, ଖାଦ୍ୟ ସମସ୍ୟା, ବୈଜ୍ଞାନିକ ପ୍ରଣାଳୀରେ କୃଷି ବ୍ୟବସ୍ଥା, ବୈଜ୍ଞାନିକ କୃଷି ପଦ୍ଧତିରେ ଯନ୍ତ୍ରପାତି, ବିହନ, ସାର ଓ ଔଷଧ, ଜଳସେଚନ, ଉପସଂହାର)**

ଖାଦ୍ୟ ଓ ଜଳ ମଣିଷର ପ୍ରାଥମିକ ଆବଶ୍ୟକତା । ବୋଧହୁଏ ମାନବର ଏ ଦୁଇଟି ସମସ୍ୟା ପରିପୂରଣ ହୋଇଗଲେ ଅନ୍ୟାନ୍ୟ ସମସ୍ୟା ତା' ନିକଟରେ ଏତେ ବିରାଟ ହୋଇ ଦେଖାଦେବ ନାହିଁ । ପ୍ରାଚୀନ କାଳରେ ମଣିଷ ଯେତେବେଳେ ବଣଜଙ୍ଗଲରେ ବାସ କରୁଥିଲା, କୃଷି ସମ୍ପର୍କରେ ଅନଭିଜ୍ଞ ଥିଲା, ସେତେବେଳେ କ୍ଷୁଧାର ଉପଶମ ପାଇଁ ଜଙ୍ଗଲର ଫଳମୂଳ ଖାଉଥିଲା ଓ ତୃଷା ନିବାରଣ ପାଇଁ ଝରଣା ବା ନଦୀକୂଳକୁ ଧାଉଁଥିଲା, ଖାଦ୍ୟର ଅଭାବ ତାଙ୍କୁ ଯାଯାବର ଜୀବନଯାପନ ପାଇଁ ବାଧ କରୁଥିଲା । ବାରମ୍ବାର ଖାଦ୍ୟାନ୍ୱେଷଣରେ ଗୋଟିଏ ସ୍ଥାନରୁ ଅନ୍ୟ ଏକ ସ୍ଥାନକୁ ଯିବାକୁ ପଡୁଥିଲା । କୌଣସି ଏକ ଶୁଭ ଲଗ୍ନରେ କୃଷି କରିବାର ସାମାନ୍ୟ ଉପାୟ ସେ ଉଦ୍ଭାବନ କଲା । କୃଷି ସମ୍ପର୍କରେ ଅବଗତ ହେବା ପରେ ସେ ଆରମ୍ଭ କଲା ତା'ର ସାମାଜିକ ଜୀବନଯାପନ ପ୍ରଣାଳୀ । ମାନବ ସଭ୍ୟତାର ବିକାଶରେ ଯେଉଁ କେତେକ ବିଶେଷ କାରଣ ବିଦ୍ୟମାନ, ତନ୍ମଧ୍ୟରୁ ଏହି କୃଷି କାରଣଟି ହିଁ ସବୁଠାରୁ ମୁଖ୍ୟ ।

ଲୌହ ଯୁଗରେ ମଣିଷ ଲୁହା ସାହାଯ୍ୟରେ ଯନ୍ତ୍ରପାତି ନିର୍ମାଣ କରିବା ପରେ କୃଷିର ଉନ୍ନତି ପାଇଁ ଚେଷ୍ଟା କରିଛି । ମାତ୍ର ବର୍ତ୍ତମାନ ପରି ସେତେବେଳେ କୃଷିର ଏପରି ବିକାଶ ହୋଇ ପାରି ନ ଥିଲା । ପ୍ରକୃତି ଉପରେ ନିର୍ଭର କରି ସେ ଚାଷକାର୍ଯ୍ୟ କରୁଥିଲା । ମୁଖ୍ୟତଃ ବର୍ଷାଦିନେ ହିଁ କୃଷିକାର୍ଯ୍ୟ ହେଉଥିଲା । ଲଙ୍ଗଳ ଓ ବଳଦ ସାହାଯ୍ୟରେ ବିଲ ଚାଷକରି କୃଷକ ତା'ର ବର୍ଷକ ପୂର୍ବର ସଞ୍ଚିତ ବିହନକୁ ଜମିରେ ବୁଣୁଥିଲା । ସାର ଭାବରେ ପ୍ରୟୋଗ କରୁଥିଲା ଖତ ଓ ଗୋବର । ମାତ୍ର ପୋକର ଆକ୍ରମଣରୁ ରକ୍ଷା ପାଇଁ ତା' ପାଖରେ କୌଣସି ଉପାୟ ନ ଥିଲା । ଠିକ୍ ପାଗଯୋଗରେ ଚାଷ କରି ନ ପାରିଲେ ପୁଣି ଆଉ ଗୋଟିଏ ବର୍ଷ ପାଇଁ ଅପେକ୍ଷା କରିବାକୁ ପଡୁଥିଲା । ମଟାଳ ବା ପଥୁରିଆ ମାଟିରେ ଚାଷ କରିବା କଷ୍ଟ ହୋଇ ପଡୁଥିଲା । ଜଳସେଚନର ସୁବିଧା ନ ଥିବାରୁ ବର୍ଷାଜଳ ଉପରେ ନିର୍ଭର କରି ଚାଷକାର୍ଯ୍ୟ କରିବାକୁ ହେଉଥିଲା । ସମୟେ ସମୟେ ଠିକ୍ ସମୟରେ ବର୍ଷା ହେଉ ନ ଥିବାରୁ ମରୁଡ଼ି ପଡୁଥିଲା ଓ ଫସଲ ହାନି ହେଉଥିଲା । ଏପରିକି ବନ୍ୟା ଓ ବାତ୍ୟା ଦ୍ୱାରା ଥରେ ଫସଲ ହାନି ହେଲେ "ଚାଷୀ ହୁଡ଼ିଲେ ବରଷେ" ନ୍ୟାୟରେ ତାକୁ ଅପେକ୍ଷା କରିବାକୁ ପଡୁଥିଲା ଅନ୍ୟ ଗୋଟିଏ ବର୍ଷ ପାଇଁ । ଚାଷ କାର୍ଯ୍ୟ ବର୍ଷକ ପରେ ମାତ୍ର ହେଉଥିଲା । ବର୍ତ୍ତମାନ ସମୟ ତୁଳନାରେ ଲୋକସଂଖ୍ୟା କମ୍ ଥିବାରୁ କୌଣସି ଉପାୟରେ ସେମାନେ ଜୀବନ ନିର୍ବାହ କରିବାକୁ ସମର୍ଥ ହେଉଥିଲେ । ଧୀରେ ଧୀରେ ଜନସଂଖ୍ୟା ବୃଦ୍ଧି ହେବାରୁ ପ୍ରାଚୀନ ପଦ୍ଧତି ଚାଷ ମଣିଷର ଆବଶ୍ୟକତା ପୂରଣ କରିବାରେ

ସମର୍ଥ ହୋଇପାରିଲା ନାହିଁ କିମ୍ବା ସଦାବେଳେ ପାଣିପାଗକୁ ଚାହିଁ ଚାଷକାର୍ଯ୍ୟ ସମ୍ଭବ ହେଲା ନାହିଁ । ଏହି ଆବଶ୍ୟକତାରୁ କୃଷିକ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ଆସିଲା ଓ ବୈଜ୍ଞାନିକ ପଦ୍ଧତିରେ ଚାଷକାର୍ଯ୍ୟ ଆରମ୍ଭ ହେଲା ।

'ଆବଶ୍ୟକ ଉଦ୍ଭାବନର ଜନନୀ'—ଖାଦ୍ୟ ସମସ୍ୟାର ଅଭାବ ଯୋଗୁଁ ମଣିଷ ନୂତନ ଢଙ୍ଗରେ ଚାଷ କରିବାକୁ ଉପାୟ ଖୋଜିଲା । ଅତୀତରେ ଜନସଂଖ୍ୟା ଏତେ ଅଧିକ ନଥିଲେ । ବର୍ତ୍ତମାନ ଭାରତର ଲୋକସଂଖ୍ୟା ୧୦୦ କୋଟିରୁ ଅଧିକ । ଏତେ ସଂଖ୍ୟକ ଲୋକଙ୍କପାଇଁ ସେହି ପାରମ୍ପରିକ କୃଷି ପଦ୍ଧତି ଉପଯୋଗୀ ହୋଇପାରିଲା ନାହିଁ । ଆବଶ୍ୟକ ପଡ଼ିଲା ପ୍ରଚୁର ପରିମାଣର ଖାଦ୍ୟଶସ୍ୟ । ଚାଷଜମିର ପରିମାଣ ଯେତିକି ଥିଲା, ତାହାର ବୃଦ୍ଧି ଘଟିଲା ନାହିଁ; ମାତ୍ର ଲୋକସଂଖ୍ୟା ଆଶାତୀତ ପରିମାଣରେ ବୃଦ୍ଧି ପାଇଲା । ଦେଶକୁ ଏହି ଖାଦ୍ୟ ସଙ୍କଟରୁ ରକ୍ଷା କରିବା ପାଇଁ ବୈଜ୍ଞାନିକମାନେ ନୂତନ ପଦ୍ଧତିରେ କୃଷି କରିବାର ଉପାୟ ଆବିଷ୍କାର କଲେ । ଜାପାନ ଆଦି ଦେଶ ଏହି ନୂତନ କୃଷି ପଦ୍ଧତି ଦ୍ୱାରା ସେମାନଙ୍କ ଦେଶକୁ ସ୍ୱାବଲମ୍ବନଶୀଳ କରାଇପାରିଲେ । ଗୋଟିଏ ଜମିରୁ କିପରି ଏକାଧିକଥର କୃଷି ପଦାର୍ଥ ଉତ୍ପାଦନ କରାଯାଇପାରିବ, ସେଥିପାଇଁ ଗବେଷଣା ଚାଲିଲା ଏବଂ ପରିଶେଷରେ ଏହି ବୈଜ୍ଞାନିକ ପଦ୍ଧତିରେ କୃଷି ଯୋଗୁଁ ଆମେ ଆମର ଉତ୍କଟ ଖାଦ୍ୟଶସ୍ୟ ସମସ୍ୟାକୁ କେତେକ ପରିମାଣରେ ସମାଧାନ କରିପାରିଲୁ ।

ବୈଜ୍ଞାନିକ ପ୍ରଣାଳୀରେ କୃଷିବ୍ୟବସ୍ଥା ଯୋଗୁଁ ଆମେ ଆମର ଅଭାବକୁ କେତେକାଂଶରେ ଦୂରୀଭୂତ କରିପାରିଛୁ । କୃଷି କାର୍ଯ୍ୟ ପାଇଁ ପ୍ରଥମ ଆବଶ୍ୟକ ହେଉଛି ଜମି । ମାତ୍ର ଜମି ପରିମାଣ ବୃଦ୍ଧି ପାଇବାର ସମ୍ଭାବନା ନାହିଁ । ପୂର୍ବରୁ ଯେଉଁ ଜମିରୁ ୮୦କୋଟି ମଣିଷଙ୍କ ପାଇଁ ଖାଦ୍ୟ ଯୋଗାଡ଼ କରିବାକୁ ପଡୁଥିଲା, ବର୍ତ୍ତମାନ ସେହି ଜମିରୁ ୧୦୮ କୋଟି ବ୍ୟକ୍ତିଙ୍କ ପାଇଁ ଖାଦ୍ୟ ଯୋଗାଡ଼ କରିବାକୁ ପଡ଼ିବ । ତେଣୁ ବର୍ଷକୁ ହାରାହାରି ଗୋଟିଏ ଜମିରୁ ତିନୋଟି ଫସଲ ଉତ୍ପାଦନ କରିବାର ଆବଶ୍ୟକତା ରହିଛି । ନୂତନ ଚାଷ ପ୍ରଣାଳୀ ଅନୁଯାୟୀ ବର୍ତ୍ତମାନ କୃଷକ ଧାନଚାଷ ପରେ ସେହି ଜମିରୁ ଡାଲିଜାତୀୟ ଫସଲ ବା ବିଭିନ୍ନ ପରିବାପତ୍ର ଅମଳ କରୁଛନ୍ତି । କୃଷିକୁ ଅଧିକ ବାସ୍ତବମୁଖୀ କରିବା ପାଇଁ କୃଷି ଗବେଷଣା କେନ୍ଦ୍ର, କୃଷି ବିଶ୍ୱବିଦ୍ୟାଳୟମାନ ସ୍ଥାପନ କରାଯାଇଛି । ପାରମ୍ପରିକ ବିହନ ଦ୍ୱାରା ଚାଷକାର୍ଯ୍ୟ କରିବାର ସମୟ ସରିଯାଇଛି । ସେଥିପାଇଁ ଆବିଷ୍କାର ହୋଇଛି ବହୁ ଅମଳକ୍ଷମ ବିହନମାନ । କଟକର ବିଦ୍ୟାଧରପୁର ଓ ଅନ୍ୟାନ୍ୟ ସ୍ଥାନରେ ସ୍ଥାପିତ ହୋଇଥିବା ଧାନ ଗବେଷଣା କେନ୍ଦ୍ରଗୁଡ଼ିକ ଗବେଷଣା କରି ବିଭିନ୍ନ କିସମର ବିହନମାନ ଆବିଷ୍କାର କରିଛନ୍ତି । ଜୟା, ପଦ୍ମା, ଆଇ ଆର ଆଠ, ରତ୍ନା, ତିଳୋତ୍ତମା ଆଦି ଅଧିକ ଅମଳକ୍ଷମ ବିହନ ସାହାଯ୍ୟରେ ଚାଷୀ ଅଧିକ ପରିମାଣରେ ଶସ୍ୟ ଉତ୍ପାଦନ କରିବାକୁ ସମର୍ଥ ହୋଇଛି । ଏତଦ୍‌ବ୍ୟତୀତ ପାରମ୍ପରିକ ଲଙ୍ଗଳ ଓ ବଳଦ ସାହାଯ୍ୟରେ ଚାଷ ନ କରି ବର୍ତ୍ତମାନ ଟ୍ରାକ୍ଟର, ପାୱାରଟ୍ରେଲର ସାହାଯ୍ୟରେ କମ୍ ସମୟରେ ଅଧିକ ଜମି ଚାଷ କରିପାରୁଛନ୍ତି । ମଟାଳ ବା ପଥୁରିଆ ମାଟି, ଯାହା ଲଙ୍ଗଳ ଦ୍ୱାରା ଚାଷ

କରିବାକୁ କଷ୍ଟ ହେଉଥିଲା, ତାହା ଟ୍ରାକ୍ଟର ସାହାଯ୍ୟରେ ସୁଗମ ହୋଇପାରିଛି । ଜମିରେ ହିଡ଼ ଦେଇ ତାକୁ କ୍ଷୁଦ୍ର କ୍ଷୁଦ୍ର ଅଂଶରେ ବିଭକ୍ତ କରିବା ଦ୍ୱାରା ବହୁପରିମାଣ ଜମି ଅଯଥାରେ ନଷ୍ଟ ହେଉଛି । କୋଠ ଚାଷ କରିଆରେ ଜମିରୁ ହିଡ଼ ଉଠାଇଦେଇ ଚାଷ କଲେ ଚାଷୀ ଅଧିକ କିଛି ପରିମାଣରେ ଚାଷ ଜମି ପାଇପାରନ୍ତା । ତେଣୁ ବର୍ତ୍ତମାନ ସେଥିପ୍ରତି ଦୃଷ୍ଟିଦେବାର ସମୟ ମଧ୍ୟ ଆସିଛି । ଏହା ଯୋଗୁଁ କିଛି ପରିମାଣରେ ଚାଷଜମି ସମସ୍ୟା ସମାଧାନ ହୋଇପାରନ୍ତା । ଅତୀତରେ କୀଟନଷ୍ଟ କରିବାକୁ କୌଣସି ଔଷଧ ଆବିଷ୍କୃତ ହୋଇ ନ ଥିବାରୁ ବହୁ ସମୟରେ ଫସଲ ହାନି ଘଟୁଥିଲା । ସମ୍ପ୍ରତି ଗବେଷଣା ଦ୍ୱାରା ବହୁପ୍ରକାର କୀଟନାଶକ ଔଷଧ ଆବିଷ୍କୃତ ହୋଇଛି । ଡେମୋକ୍ରିନ୍, ଫଲଡ଼ିନ୍, ଗ୍ରାମାକ୍ସିନ, ଏଣ୍ଡ୍ରିନ୍ ଆଦି ଔଷଧର ଆବିଷ୍କାର ଦ୍ୱାରା ଚାଷୀମାନେ ଏହାର ପ୍ରୟୋଗ କରି ଫସଲକୁ କୀଟମାନଙ୍କ ଆକ୍ରମଣରୁ ରକ୍ଷା କରି ପାରୁଛନ୍ତି । ଏତଦ୍‌ବ୍ୟତୀତ ବିଭିନ୍ନ ପ୍ରକାର ମୂଲ୍ୟବାନ ସାର ଆବିଷ୍କୃତ ହୋଇଛି । ସେହି ସାରଗୁଡ଼ିକ ମଧ୍ୟରେ ଗ୍ରୋମୋର, କାଲସିୟମ, ପଟାସ, ଆମୋନିୟମ ସଲ୍‌ଫେଟ, ଫସଫରସ ଆଦି ପ୍ରଧାନ । ଚାଷୀ ଏହି ସାରର ପ୍ରୟୋଗ ଦ୍ୱାରା ଅଧିକ ପରିମାଣରେ ଫସଲ ଉତ୍ପାଦନ କରିବାକୁ ସମର୍ଥ ହୋଇଛି । ଏତଦ୍‌ବ୍ୟତୀତ କୃଷି ଗବେଷକମାନେ ବିଭିନ୍ନ ସ୍ଥାନର ମାଟି ପରୀକ୍ଷା କରି କେଉଁ ମାଟିରେ କିପ୍ରକାର ସାର ପ୍ରୟୋଗ କରାଯିବ ଏବଂ କେଉଁ ପ୍ରକାର ଫସଲର ଉପଯୋଗୀ, ସେ ସମ୍ପର୍କରେ ଚାଷୀମାନଙ୍କୁ ସୂଚନା ପ୍ରଦାନ କରୁଛନ୍ତି । ଗ୍ରାମସେବକମାନଙ୍କୁ ନିଯୁକ୍ତ କରାଯାଇ ଚାଷୀମାନଙ୍କୁ ବିଭିନ୍ନ ଚାଷ ପାଇଁ ପରାମର୍ଶ ଓ ଉପାୟ ବତାଇ ଦିଆଯାଉଛି । ବିହନ ସଂରକ୍ଷଣ ପାଇଁ ଔଷଧ ଆବିଷ୍କାର ହୋଇଥିବା ଯୋଗୁଁ ନଷ୍ଟ ହେବାର ସମ୍ଭାବନା ରହୁ ନାହିଁ । ଏପରିକି ସରକାର ବୈଜ୍ଞାନିକ ଉପାୟରେ ଥଣ୍ଡା ଘରେ ବର୍ଷ ବର୍ଷ ଧରି ବିହନ ସଂରକ୍ଷଣ କରିବାର ବ୍ୟବସ୍ଥା କରିଛନ୍ତି । ସରକାରଙ୍କ ଦ୍ୱାରା ବଣ୍ଟନ କରାଯାଉଥିବା ବିହନ ଖରାପ ହେଲେ ଚାଷୀମାନେ କ୍ଷତିପୂରଣ ଦାବି କରି ପାରୁଛନ୍ତି । କୃଷି ପାଇଁ ବିଭିନ୍ନ ଋଣ ଯୋଗାଇ ଦିଆଯାଉଥିବାରୁ ଧୀରେ ଧୀରେ ଲୋକମାନଙ୍କର କୃଷି ପ୍ରତି ଆଗ୍ରହ ସୃଷ୍ଟି ହେବାରେ ଲାଗିଛି । ସମ୍ପ୍ରତି ସରକାର କୃଷିକୁ ଏକ ଶିଳ୍ପର ମାନ୍ୟତା ଦେବା ପାଇଁ ଚିନ୍ତା କରୁଛନ୍ତି । ଏହାଦ୍ୱାରା ଶିକ୍ଷିତ ବେକାରମାନେ କୃଷି ପ୍ରତି ଆଗ୍ରହ ପ୍ରକାଶ କରିବେ ବୋଲି ଆଶା କରାଯାଉଛି । ତେଣୁ କୃଷିକ୍ଷେତ୍ରରେ ବିଜ୍ଞାନର ଅବଦାନ ଅତୀବ ତାତ୍ପର୍ଯ୍ୟପୂର୍ଣ୍ଣ । ବିଶ୍ୱର ବହୁ ରାଷ୍ଟ୍ର ଏହି ବୈଜ୍ଞାନିକ କୃଷି ପ୍ରଣାଳୀ ଦ୍ୱାରା ନିଜ ଦେଶକୁ ଖାଦ୍ୟଶସ୍ୟ କ୍ଷେତ୍ରରେ ସ୍ୱାବଲମ୍ବନଶୀଳ କରିପାରିଛନ୍ତି ।

କୃଷି ପାଇଁ ଜଳସେଚନର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ବର୍ଷାପାଣି ଉପରେ ନିର୍ଭର କରି ସମ୍ପ୍ରତି କୃଷି କାର୍ଯ୍ୟ କରିବା ସମ୍ଭବପର ନୁହେଁ । ବର୍ତ୍ତମାନ ପୃଥିବୀର ପାଣିପାଗରେ ଯେପରି ଘନଘନ ପରିବର୍ତ୍ତନ ଘଟୁଛି, ସେଥିରେ ବର୍ଷା ଉପରେ ଆଦୌ ନିର୍ଭର କରାଯାଇ ନ ପାରେ । ସେହି କାରଣରୁ ବୈଜ୍ଞାନିକମାନେ ବିଭିନ୍ନ ପ୍ରକାର ବିହନ ଆବିଷ୍କାର କରିଛନ୍ତି । ଖୁବ୍ କମ୍ ଜଳରେ ମଧ୍ୟ ଚାଷ କରାଯାଇପାରୁଥିବା ବିହନ ଆବିଷ୍କାର ହୋଇସାରିଛି । ସରକାର ତାଙ୍କର ବିଭିନ୍ନ ଯୋଜନାରେ ଜଳସେଚନ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ୭ମ, ୮ମ, ୯ମ ଓ ୧୦ମ

ପଞ୍ଚବାର୍ଷିକ ଯୋଜନାରେ ଏଥିପାଇଁ ପ୍ରଭୂତ ଅର୍ଥର ବ୍ୟବସ୍ଥା କରାଯାଇଛି । ଯେଉଁଠାରେ କେନାଲ ବା ଜଳର ସୁବିଧା ନାହିଁ, ଉଠାଜଳସେଚନ ଦ୍ୱାରା ସେଠାକୁ ଜଳ ପଠାଇବାର ବ୍ୟବସ୍ଥା ହୋଇଛି । ଏହିସବୁ କାରଣ ପାଇଁ ବର୍ତ୍ତମାନ ଭାରତ ଅନେକ ପରିମାଣରେ ଖାଦ୍ୟଶସ୍ୟ କ୍ଷେତ୍ରରେ ନିଜକୁ ସ୍ୱାବଲମ୍ବନଶୀଳ କରିପାରିଛି ।

ଭାରତ ଏକ କୃଷିପ୍ରଧାନ ଦେଶ । ଏହାର ଅର୍ଦ୍ଧାଧିକ ବ୍ୟକ୍ତି ମୁଖ୍ୟତଃ କୃଷି ଉପରେ ନିର୍ଭର କରି ଜୀବନ ନିର୍ବାହ କରିଥାନ୍ତି । ମାତ୍ର ଏକଥା ସତ୍ୟ, ଏଯାବତ୍ ଅନେକ କୃଷକ ବୈଜ୍ଞାନିକ ପ୍ରଣାଳୀରେ କୃଷି କାର୍ଯ୍ୟ କରିବା ସମ୍ପର୍କରେ ଅନଭିଜ୍ଞ । ସେହି ପୁରୁଣା ପଦ୍ଧତିରେ କୃଷି କରୁଥିବା ସମୟରେ ସେମାନେ ବହୁ କ୍ଷତିର ସମ୍ମୁଖୀନ ହୋଇଥାନ୍ତି । ଆଜି ବିଜ୍ଞାନର ସହାୟତାରେ କୃଷିର ବହୁ ଅଗ୍ରଗତି ହୋଇଛି । ପାରମ୍ପରିକ କୃଷିନୀତି ସମ୍ପୂର୍ଣ୍ଣ ଅଚଳ ହୋଇପଡ଼ିଲାଣି । ସରକାର ବିଭିନ୍ନ ଗଣମାଧ୍ୟମ ଯଥା ରେଡ଼ିଓ ଓ ଟେଲିଭିଜନରେ ଏ ସମ୍ପର୍କରେ ବହୁ ସୂଚନା ମଧ୍ୟ ଦେଉଛନ୍ତି । ଏହା ସତ୍ତ୍ୱେ ବହୁ କୃଷକ ଏ ସମ୍ବନ୍ଧରେ ଜାଣିପାରୁ ନାହାନ୍ତି । ତେଣୁ ସରକାର ସ୍ୱେଚ୍ଛାସେବୀ ସଙ୍ଗଠନ ବା କୃଷି ଅଧିକାରୀଙ୍କ ମାଧ୍ୟମରେ ମଫସଲ ଅଞ୍ଚଳରେ ବସବାସ କରୁଥିବା କୃଷକମାନଙ୍କୁ ଏହି ବୈଜ୍ଞାନିକ ଚାଷପ୍ରଣାଳୀ ସମ୍ବନ୍ଧରେ ଅବଗତ କରାଇପାରିଲେ ଆମର ଖାଦ୍ୟ ସମସ୍ୟା ଯେ ବହୁପରିମାଣରେ ଦୂରୀଭୂତ ହୋଇପାରନ୍ତା, ଏଥିରେ ସନ୍ଦେହ ନାହିଁ ।



## ବିଶ୍ୱ ଶାନ୍ତି ପ୍ରତିଷ୍ଠାରେ ବିଜ୍ଞାନ

**(ଉପକ୍ରମ, ଶାନ୍ତି ଓ ସମ୍ପର୍କ ପ୍ରତିଷ୍ଠା, ମାନବର ଆବଶ୍ୟକତା ପରିପୂରଣ, ବେତାର ଓ ଦୂରଦର୍ଶନର ଶାନ୍ତି ପ୍ରତିଷ୍ଠାରେ ଭୂମିକା, ବିଜ୍ଞାନର କୁପ୍ରୟୋଗ, ବିଜ୍ଞାନର କାଳଜୟୀ ରୂପ, ଉପସଂହାର)**

ମଣିଷ କେବଳ ବଞ୍ଚିବା ପାଇଁ ଜନ୍ମ ହୋଇ ନାହିଁ । ସେ ଚାହେଁ ଶାନ୍ତିରେ ବଞ୍ଚିବା ପାଇଁ । ଅନ୍ତତଃ ବିଶ୍ୱ ରଙ୍ଗମଞ୍ଚରେ ମଣିଷ ପରି କ୍ଷଣସ୍ଥାୟୀ ଅଭିନେତା ଅଭିନେତ୍ରୀ ତା'ର ସ୍ୱଳ୍ପକାଳ ସ୍ଥାୟିତ୍ୱ ମଧ୍ୟରେ ଅନ୍ୟ ସହିତ ସୁସମ୍ପର୍କ ସ୍ଥାପନ କରି ଶାନ୍ତିପୂର୍ଣ୍ଣ ବାତାବରଣ ମଧ୍ୟରେ ଜୀବନ ଅତିବାହିତ କରିବାକୁ ଚାହେଁ । ତେଣୁ ଯୁଗେ ଯୁଗେ ବିଶ୍ୱର ମହାମନୀଷୀଗଣ ସର୍ବଦା ଶାନ୍ତିର ଡାକରା ଦେଇଛନ୍ତି । ଆଜି ବିଜ୍ଞାନ ଯୋଗୁଁ ବିଶ୍ୱ ଏତେ ପରିମାଣରେ କ୍ଷୁଦ୍ର ହୋଇପଡ଼ିଛି ଯେ, ଗୋଟିଏ ଦେଶର ଚିନ୍ତାଚେତନା ଅନ୍ୟ ଦେଶକୁ ସଂକ୍ରମିତ ହେବାକୁ ଖୁବ୍ କମ୍ ସମୟ ଲାଗୁଛି । ଗୋଟିଏ ଦେଶର ଅଶାନ୍ତ ବାତାବରଣ ପ୍ରଭାବ ସମଗ୍ର ବିଶ୍ୱରେ ଅନୁଭୂତ ହେଉଛି । ଗୋଟିଏ ଦେଶର ଯୁଦ୍ଧ ଅନ୍ୟଦେଶକୁ ଭୀତତ୍ରସ୍ତ କରୁଛି । ବିଜ୍ଞାନ ଯୋଗୁଁ ବିଶ୍ୱରେ ଯେଉଁ ମାରଣାସ୍ତ୍ରମାନ ସୃଷ୍ଟି ହୋଇଛି ତଦ୍ୱାରା ସମସ୍ତ ଶାନ୍ତିକାମୀ ମଣିଷ ପ୍ରାଣରେ ଗଭୀର ଆଘାତ ଲାଗିଛି । କ୍ଷମତା ପାଇଁ, ପ୍ରାଚୁର୍ଯ୍ୟ ପାଇଁ ଓ ଅହଂ ପାଇଁ ମଣିଷ ମଣିଷର ଶତ୍ରୁ ହୋଇ ଉଠୁଛି । ଏ କ୍ଷେତ୍ରରେ ବିଜ୍ଞାନର ଧ୍ୱଂସକାରୀ

ଦିଗଟିକୁ ସୂଚିତ କରାଯାଇପାରେ । ମାତ୍ର ବିଜ୍ଞାନକୁ ଉପଯୁକ୍ତ ମାର୍ଗରେ ପ୍ରୟୋଗ କରାଯାଇପାରିଲେ, ବିଶ୍ୱ ଶାନ୍ତି କ୍ଷେତ୍ରରେ ଏହା ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିପାରିବ ଓ ତାହାହିଁ ହେଉଛି ପ୍ରତ୍ୟେକ ମଣିଷର କାମ୍ୟ ।

ବିଶ୍ୱଶାନ୍ତି ଓ ସମ୍ପର୍କ ପ୍ରତିଷ୍ଠା କ୍ଷେତ୍ରରେ ବିଜ୍ଞାନର ମୂଲ୍ୟବାନ ଭୂମିକାକୁ କୌଣସି କାଳେ ଅସ୍ୱୀକାର କରାଯାଇ ନ ପାରେ । ବିଂଶଶତକରେ ବିଜ୍ଞାନ ସମଗ୍ର ବିଶ୍ୱକୁ ଗ୍ରାସ କରିଗଲା । ଏହାର ଆବିଷ୍କାର. ମଣିଷ ପ୍ରାଣରେ ସୃଷ୍ଟିକରିଥିଲା ଆନନ୍ଦର କଲ୍ଲୋଳ । ଯାହା ଥିଲା ସ୍ୱପ୍ନର ବସ୍ତୁ, ଅକଳ୍ପନୀୟ ବିଜ୍ଞାନ ଦ୍ୱାରା ତାହା ହୋଇପାରିଲା ସମ୍ଭବ । ବିଶ୍ୱର ଯେକୌଣସି ପ୍ରାନ୍ତରେ ଥିବା ମଣିଷକୁ ଅନ୍ୟ ମଣିଷ ନିକଟରେ ଅନ୍ତରଙ୍ଗ କରାଇବାରେ ତାକୁ ମାତ୍ର ଲାଗିଛି କ୍ଷଣକାଳ ସମୟ । ଉଡ଼ାଜାହାଜ, ପାଣିଜାହାଜ, ରାଡ଼ାର, ଟ୍ରେନ୍, ମୋଟର ଆଦି ଦ୍ୱାରା ଖୁବ୍ କମ୍ ସମୟ ମଧ୍ୟରେ ଯୋଗାଯୋଗ ସ୍ଥାପନ କରାଯାଇପାରୁଛି । ଆନ୍ତର୍ଜାତିକ ସମ୍ପର୍କ ସ୍ଥାପନ କ୍ଷେତ୍ରରେ ବର୍ତ୍ତମାନ ଆଉ କୌଣସି ବାଧା ନାହିଁ । ଟେଲିଫୋନ୍ ମାଧ୍ୟମରେ ଗୋଟିଏ ମୁହୂର୍ତ୍ତ ମଧ୍ୟରେ ବିଶ୍ୱର ଯେକୌଣସି ପ୍ରାନ୍ତରେ ଥିବା ମଣିଷ ସହିତ କଥାବାର୍ତ୍ତା କରିହେଉଛି, ଭାବର ଆଦାନ ପ୍ରଦାନ ହୋଇପାରୁଛି । ନିଜର ସମସ୍ୟାକୁ ଏବଂ ଅନ୍ୟର ସମସ୍ୟାକୁ ପରସ୍ପର ଆଦାନ ପ୍ରଦାନ ମାଧ୍ୟମରେ ଆପଣେଇ ନେଇପାରୁଛି । ଅନ୍ୟର ଦୃଷ୍ଟିଭଙ୍ଗୀ ସହିତ ସ୍ୱଳ୍ପ ସମୟ ମଧ୍ୟରେ ପରିଚିତ ହୋଇ ହେଉଛି । ବିଜ୍ଞାନ ଦ୍ୱାରା ମହାକାଶରେ ବିଭିନ୍ନ ସେଟେଲାଇଟ୍ ଖଞ୍ଜାଯାଇ ବିଶ୍ୱ ସମ୍ପର୍କରେ ଜାଣିହେଉଛି । ବିଜ୍ଞାନର ଆଶୀର୍ବାଦରୁ ହିଁ ମଣିଷ ମଣିଷର ନିକଟତର ହୋଇପାରିଛି । ଜଳ, ସ୍ଥଳ, ଆକାଶ—ସବୁଆଡ଼େ ବିଜୟୀ ମଣିଷ । ଚନ୍ଦ୍ର ଏକ ଦେବତା ନୁହେଁ, ମଙ୍ଗଳ ଏକ ଦେବତା ନୁହେଁ, ତାହା ପ୍ରଥମେ ଆମକୁ ବିଜ୍ଞାନ ଜଣାଇଦେଇଛି । ଚନ୍ଦ୍ର ଗ୍ରହରେ ମଣିଷ ଦିନ ଦିନ ଧରି ଅତିବାହିତ କରି ପୁଣି ପୃଥିବୀପୃଷ୍ଠକୁ ଫେରି ଆସିପାରିଲାଣି । ତେଣୁ ମଣିଷ ପାଇଁ ଆଜି ଅସମ୍ଭବ କିଛି ନାହିଁ । ଚନ୍ଦ୍ର ଗ୍ରହରେ ଥାଇ ମଧ୍ୟ ସେ ପୃଥିବୀପୃଷ୍ଠର ମଣିଷ ସହିତ ଯୋଗାଯୋଗ ରକ୍ଷାକରିପାରୁଛି । ବିଜ୍ଞାନର ଆଶୀର୍ବାଦ ଯୋଗୁଁ ଆଜି ସମଗ୍ର ବିଶ୍ୱ ଯେ କେତେ ନିକଟତର ଓ ଆପଣାର ହୋଇପାରିଛି, ଏଥିରୁ ଏହା ସହଜରେ ଅନୁମେୟ ।

ମାନବର ବିଭିନ୍ନ ଆବଶ୍ୟକ ପରିପୂରଣ କ୍ଷେତ୍ରରେ ବିଜ୍ଞାନର ଅବଦାନକୁ ଅସ୍ୱୀକାର କରାଯାଇ ନ ପାରେ । ଅତୀତରେ ଯେଉଁ ରୋଗ ନାମ ଶୁଣିଲେ ମାନବ ସମାଜରେ ଆତଙ୍କ ଖେଳି ଯାଉଥିଲା, ଆଜି ତାକୁ ବିଜ୍ଞାନ ଦ୍ୱାରା ସହଜରେ ଉପଶମ କରାଯାଇପାରୁଛି । ଚିକିତ୍ସାଶାସ୍ତ୍ରକୁ ବିଜ୍ଞାନର ମହନୀୟ ଅବଦାନ ମଣିଷ ଜାତି ପାଇଁ ପରମ ଆଶୀର୍ବାଦ ରୂପେ କାର୍ଯ୍ୟ କରିଛି । ବସନ୍ତ, ମ୍ୟାଲେରିଆ ପରି କେତେକ ରୋଗ କ୍ୱଚିତ ଦେଖିବାକୁ ମିଳୁଛି । ହଇଜା ଏକ ଦେବୀ ନୁହେଁ ରୋଗ, ତାହା ବିଜ୍ଞାନ ହିଁ ପ୍ରମାଣିତ କରିଛି । କ୍ୟାନ୍ସର, କୁଷ୍ଠ, ଯକ୍ଷ୍ମା ଆଦି ଆଜି ଆଉ ଦୁରାରୋଗ୍ୟ ବ୍ୟାଧି ହୋଇ ରହି ନାହିଁ । ଯଥାସମୟରେ ଚିକିତ୍ସା କଲେ ଏହାକୁ ସହଜରେ ନିରାକରଣ କରାଯାଇପାରୁଛି । ଏକ୍ସ-ରେ ସହାୟତାରେ କିମ୍ବା ସ୍କାନିଙ୍ଗ ଦ୍ୱାରା ହୃଦୟ ମଧ୍ୟରେ ଥିବା ରୋଗକୁ ଚିହ୍ନଟ କରାଯାଇପାରୁଛି । କୁଅଙ୍ଗ ଅଥବା ଅଚଳ ଅଙ୍ଗକୁ ବହିଷ୍କାର କରାଯାଇ

ତା' ସ୍ଥାନରେ ନୂତନ ଅଙ୍ଗ ରୋପଣ କରାହୋଇପାରୁଛି । କୃଷି ଏବଂ ଶିଳ୍ପର ବିକାଶ ଦ୍ୱାରା ମଣିଷର ବହୁ ଦୈନନ୍ଦିନ ଅଭାବ ପୂରଣ ହୋଇପାରିଛି । ମଣିଷର ଆବଶ୍ୟକତାକୁ ଆଖି ଆଗରେ ରଖି ବିଜ୍ଞାନ ପ୍ରତିମୁହୂର୍ତ୍ତରେ ନୂତନ ଜିନିଷମାନ ଉଦ୍ଭାବନ କରୁଛି । ସୁଖ ଓ ସ୍ୱାଚ୍ଛନ୍ଦ୍ୟ ଭରିଦେବା ପାଇଁ ବିଜ୍ଞାନ ପ୍ରତି ନିୟତ ମଣିଷର ସେବା କରିଚାଲିଛି । ପ୍ରାକୃତିକ ଦୁର୍ବିପାକ ପଡ଼ିବା ପୂର୍ବରୁ ବିଜ୍ଞାନ ମାନବ ସମାଜକୁ ଜଣାଇଦେଇ ତାକୁ ସତର୍କ କରାଇପାରୁଛି । ମୁଦ୍ରାଯନ୍ତ୍ର ପ୍ରତିଷ୍ଠା ଦ୍ୱାରା ମଣିଷ ଭାବ ଓ ଚିନ୍ତା କାଳ କାଳ ପାଇଁ ସାଇତା ହୋଇ ରହିପାରୁଛି । ଗୋଟିଏ ଦେଶର ଚିନ୍ତାଧାରା ବିଭିନ୍ନ ପୁସ୍ତକ ମାଧ୍ୟମରେ ଅନ୍ୟ ଦେଶକୁ ସହଜରେ ଗତି କରିପାରୁଛି । ଫଳରେ ଚିନ୍ତା ଓ ଭାବ ବିନିମୟ କ୍ଷେତ୍ରରେ କୌଣସି ପ୍ରତିବନ୍ଧକ ସୃଷ୍ଟି ହେଉ ନାହିଁ । ଏଣୁ ମାନବର ବହୁବିଧ ଆବଶ୍ୟକ ପରିପୂରଣ କ୍ଷେତ୍ରରେ ବିଜ୍ଞାନ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିବାରୁ ସମଗ୍ର ମାନବ ସଭ୍ୟତା ପାଇଁ ଏହା ଏକ ଦେବତା ବା ଆଶୀର୍ବାଦ ସ୍ୱରୂପ ହୋଇପାରିଛି ।

ବେତାର ଓ ଦୂରଦର୍ଶନ ବିଜ୍ଞାନର ମାନବ ସଭ୍ୟତାକୁ ଅନ୍ୟତମ ଶ୍ରେଷ୍ଠ ଅବଦାନ । ଏହାଦ୍ୱାରା ପୃଥିବୀର ଯେକୌଣସି ପ୍ରାନ୍ତରର ଖବର ଗୋଟିଏ ମୁହୂର୍ତ୍ତରେ ମଣିଷ ନିକଟରେ ପହଞ୍ଚିପାରୁଛି । ବେତାର ଦ୍ୱାରା ଖବର ଶୁଣି ହେଉଥିବା ସମୟରେ ଦୂରଦର୍ଶନ ଦ୍ୱାରା ଦେଖିବା ସହିତ ଶୁଣିବା–ଦୁଇଟି କାର୍ଯ୍ୟ କରିହେଉଛି । ଅନ୍ୟ ମଣିଷର ଚାଲିଚଳଣ-ଭାବଧାରା ଓ ଚିନ୍ତାଚେତନା ସହିତ ପରିଚିତ ହେବାର ସୁଯୋଗ ମିଳୁଛି । ବିଶ୍ୱଶାନ୍ତି ପ୍ରତିଷ୍ଠା କ୍ଷେତ୍ରରେ ଏହି ଦୁଇଟି ଗଣମାଧ୍ୟମର ଭୂମିକା ଅତୀବ ମହତ୍ତ୍ୱପୂର୍ଣ୍ଣ । ଯୁଦ୍ଧ ସମୟରେ ଏହା ମଧ୍ୟରେ ବିଭିନ୍ନ ବାର୍ତ୍ତା ଜାଣିହୋଇଥାଏ । ଶାନ୍ତିକାମୀ ମଣିଷର ବାର୍ତ୍ତା ମଧ୍ୟ ରେଡ଼ିଓ ଓ ଦୂରଦର୍ଶନରେ ପ୍ରଚାରିତ ହୋଇଥାଏ । ଏହି ଗଣମାଧ୍ୟମ ଦୁଇଟିର ସଦୁପଯୋଗ କରି ବିଶ୍ୱରେ ଶାନ୍ତି ପ୍ରତିଷ୍ଠା ନିମିତ୍ତ ଉଦ୍ୟମ ଜାରି ରହିଲେ ମାନବ ସମାଜର ଅଶେଷ ମଙ୍ଗଳ ସାଧିତ ହୋଇପାରନ୍ତା । ଆଜି ବିଶ୍ୱ ଯେପରି ଧ୍ୱଂସ ଦିଗକୁ ଗତିକରୁଛି, ରେଡ଼ିଓ ଏବଂ ଟେଲିଭିଜନର ଯଥାର୍ଥ ଭୂମିକା ଉପଲବ୍ଧି କରି ମାନବ ସେହି ଧ୍ୱଂସମୁଖରୁ ବିଶ୍ୱକୁ ରକ୍ଷା କରିବା ଆବଶ୍ୟକ । କେବଳ ରାଜନୀତିକ ବ୍ୟକ୍ତିବିଶେଷଙ୍କ ବାର୍ତ୍ତା ପ୍ରଚାର ନ କରି, ଯେଉଁମାନେ ବିଶ୍ୱର ଯଥାର୍ଥ ମଙ୍ଗଳ ପାଇଁ ଚିନ୍ତା କରନ୍ତି, ସେମାନଙ୍କୁ ଏଥିରେ ଅଗ୍ରାଧିକାର ପ୍ରଦାନ କରାଗଲେ ମଣିଷ ହୃଦୟ ମଧ୍ୟରେ ପରିପୂର୍ଣ୍ଣ ରହିଥିବା ହିଂସା, ଦ୍ୱେଷ ଓ ଅସୂୟା ଭାବକୁ ସହଜରେ ଦୂର କରାଯାଇପାରନ୍ତା ।

ଏହା ସତ୍ତ୍ୱେ ବିଜ୍ଞାନର ଅନେକ କୁପ୍ରଭାବ ସମାଜକୁ ବିଚଳିତ କରିଛି । ମଣିଷ ବିଜ୍ଞାନର ଅପପ୍ରୟୋଗ କରି ମଣିଷ ସମାଜର ଧ୍ୱଂସ ପାଇଁ ପଥ ପରିଷ୍କାର କରିଛି । ବିଭିନ୍ନ ମାରଣାସ୍ତ୍ର ନିର୍ମାଣ, ପରମାଣୁ ଓ ଉଦ୍‌ଜାନ ବୋମା ଆଦିର ନିର୍ମାଣ ଯୋଗୁଁ ପୃଥିବୀରେ ଯୁଦ୍ଧ ଭୟ ଦେଖାଦେଇଛି । ଦୁଇ ଦୁଇଟି ବିଶ୍ୱଯୁଦ୍ଧରେ ବିଜ୍ଞାନ ତା'ର ଧ୍ୱଂସକାରୀ ଶକ୍ତିର ପରିଚୟ ପ୍ରଦାନ କରିଛି । ଜାପାନର ହିରୋସୀମା ଓ ନାଗାସାକି ଏବେ ମଧ୍ୟ ବିଜ୍ଞାନର ସେହି ପ୍ରଳୟଙ୍କରିତାକୁ ଭୁଲିପାରି ନାହିଁ । ମାନବ ସମାଜର ମଙ୍ଗଳ ନିମିତ୍ତ ସୃଷ୍ଟି ହୋଇଥିବା ବିଜ୍ଞାନ ଶେଷରେ ମଣିଷର ଯେଉଁ ଅପକାର ସାଧନ କଲା, ଇତିହାସ ତାକୁ କ୍ଷମା ଦେଇପାରିବ ନାହିଁ । ପୃଥିବୀରେ ବହୁ

ମଣିଷ ଅର୍ଦ୍ଧାହାର ଓ ଅନାହାରରେ ସମୟ କଟାଉଥିବା ସମୟରେ କୋଟି କୋଟି ଟଙ୍କା ଅପବ୍ୟୟରେ ବିଭିନ୍ନ ମାରଣାସ୍ତ୍ର ନିର୍ମାଣ କରିବାର କୌଣସି ଯଥାର୍ଥତା ନାହିଁ । ସେହି ଅର୍ଥକୁ ମାନବସମାଜର ମଙ୍ଗଳ ଉଦ୍ଦେଶ୍ୟରେ ବ୍ୟୟ କରାଯାଇପାରିଲେ, ପୃଥିବୀରୁ କ୍ଷୁଧାଭୟ ଦୂର କରାଯାଇପାରନ୍ତା । ବିଜ୍ଞାନଦ୍ୱାରା ଭୌତିକ ସମ୍ପଦ ବୃଦ୍ଧି ପାଇଥିବା ସମୟରେ ବିଶ୍ୱଶାନ୍ତି ବିପଦାପନ୍ନ ହୋଇପଡ଼ିଛି । ଆମେରିକା, ରୁଷ, ଚୀନ୍, ଫ୍ରାନ୍ସ, ଇଂଲଣ୍ଡ, ଜର୍ମାନ୍, ଭାରତ, ପାକିସ୍ଥାନ ଆଦି ଦେଶ ପରମାଣୁ ଓ ଉଦ୍‌ଜାନ ବୋମା ପରୀକ୍ଷା କରି ବିଶ୍ୱରେ ଯୁଦ୍ଧ ଭୟ ସୃଷ୍ଟି କରିଛନ୍ତି । ତୃତୀୟ ବିଶ୍ୱଯୁଦ୍ଧ ହେଲେ କୌଣସି ଦେଶର ମଙ୍ଗଳ ହେବା ନାହିଁ । ଜଳ, ସ୍ଥଳ, ଆକାଶ ସବୁଆଡ଼େ ମାରଣାସ୍ତ୍ର ବିଛାଇ ହୋଇ ପଡ଼ିଛି । ବିଜ୍ଞାନର ଏହି ଧ୍ୱଂସକାରୀ ରୂପ ମାନବସମାଜ ପାଇଁ ନିଶ୍ଚିତ ଭାବରେ ଏକ ଅଭିଶାପ ।

ବିଜ୍ଞାନର କାଳଜୟୀ ରୂପକୁ କଦାପି ଅସ୍ୱୀକାର କରାଯାଇ ନ ପାରେ । ବିଜ୍ଞାନର ଉଦ୍ଭାବନ ହୋଇନଥିଲେ, ମଣିଷସମାଜ କଦାପି ବର୍ତ୍ତମାନର ଅବସ୍ଥାରେ ପହଞ୍ଚି ପାରିନଥାନ୍ତା । ଆହୁରି ଅନେକ ଶତାବ୍ଦୀ ଲାଗିଥାନ୍ତା, ବର୍ତ୍ତମାନର ସମୟରେ ଉପନୀତ ହେବାପାଇଁ । ଆଜି ବିଜ୍ଞାନ ମଣିଷର ଶାରୀରିକ ଓ ମାନସିକ ପରିଶ୍ରମ ହ୍ରାସ କରିଛି । ତାକୁ ସୁଖ ଏବଂ ସ୍ୱାଚ୍ଛନ୍ଦ୍ୟର ଚରମସୀମାରେ ପହଞ୍ଚାଇଛି । ଦ୍ୱିତୀୟ ଭଗବାନ୍‌ଙ୍କ ରୂପନେଇ ମାନବର ଅଶେଷ କଲ୍ୟାଣ ସାଧନ କରିଛି । ଯାହା ଜଣେ ମଣିଷ ଦ୍ୱାରା ବର୍ଷ ବର୍ଷ ସମୟ ମଧ୍ୟରେ ସମ୍ଭବ ହୋଇପାରି ନ ଥାନ୍ତା, ବିଜ୍ଞାନଦ୍ୱାରା ତାହା ଗୋଟିଏ ମୁହୂର୍ତ୍ତରେ ସାଧିତ ହୋଇପାରୁଛି । ବିଜ୍ଞାନର କଲ୍ୟାଣକାରୀ ରୂପର ତୁଳନା ନାହିଁ । ମାତ୍ର ଅଳ୍ପ କେତେଜଣ ଅପରିଣାମଦର୍ଶୀ ମଣିଷ ଏହାର କୁପ୍ରୟୋଗ କରି ମାନବ ସମାଜରେ ଅଶାନ୍ତି ଓ ଆତଙ୍କ ସୃଷ୍ଟି କରୁଛନ୍ତି । ଏହାଦ୍ୱାରା ବିଜ୍ଞାନର ଯଥାର୍ଥ ଉଦ୍ଦେଶ୍ୟ ସାଧନରେ ପ୍ରତିବନ୍ଧକ ସୃଷ୍ଟି ହେଉଛି । ଏସବୁ ସତ୍ତ୍ୱେ ବିଜ୍ଞାନର ମଣିଷ ସମାଜ ପ୍ରତି ଅବଦାନକୁ କଦାପି ହେୟ ମନେ କରାଯାଇ ନ ପାରେ ।

ମଣିଷର ଜ୍ଞାନର ପରିପକ୍ୱତାରୁ ବିଜ୍ଞାନର ଜନ୍ମ । ମାନବ ତା'ର ସେହି ପରିପକ୍ୱ ଜ୍ଞାନର ପରିଚୟ ଦେଇ ବିଜ୍ଞାନକୁ ମଣିଷ ସମାଜର ମଙ୍ଗଳ ଉଦ୍ଦେଶ୍ୟରେ ପ୍ରୟୋଗ କରିପାରିଲେ ବିଶ୍ୱଶାନ୍ତି ପ୍ରତିଷ୍ଠା ସମ୍ଭବ ହୋଇପାରନ୍ତା । ଏକଥା ସତ୍ୟ, ଆଜି କୌଣସି ଦେଶ ନିଜର ବଡ଼ଭାଇପଣିଆ ସାବ୍ୟସ୍ତ କରି ଅନ୍ୟ ଦେଶ ଉପରେ ଆଧିପତ୍ୟ ବିସ୍ତାର କରିପାରିବ ନାହିଁ । ମାତ୍ର କେତେକ ଯୁଦ୍ଧପାଗଳ ବ୍ୟକ୍ତି ପ୍ରତିହିଂସାପରାୟଣ ହୋଇ ନିଜର ଅନିଷ୍ଟ ସାଧନ କରିବା ସଙ୍ଗେ ସଙ୍ଗେ ଅନ୍ୟର ମଧ୍ୟ ଅନିଷ୍ଟ ସାଧନ କରିଥାନ୍ତି । ଏହିମାନଙ୍କ ହାତରେ ବିଜ୍ଞାନ ''ମାଙ୍କଡ଼ ହାତରେ ନିଆଁ ବରିଆ'' ସଦୃଶ । ତେଣୁ ବିଜ୍ଞାନର ସୃଷ୍ଟି ମଣିଷର ଧ୍ୱଂସ ପାଇଁ ନୁହେଁ, ମଣିଷର ଶାନ୍ତି ଓ ପ୍ରୀତି ପାଇଁ । ଯେତେବେଳେ ମଣିଷ ପ୍ରାଣରେ ଅନ୍ୟ ପ୍ରତି ଦୟା, ସ୍ନେହ, ପ୍ରୀତି ଓ ଶ୍ରଦ୍ଧା ଭାବର ପରିପ୍ରକାଶ ହେବ, ସେତେବେଳେ ବିଜ୍ଞାନ ମଣିଷସମାଜର ଅଭିଶାପ ନ ହୋଇ ପରମ ଆଶୀର୍ବାଦ ହୋଇପଡ଼ିବ ।



# ବିଜ୍ଞାନ ଓ ସାହିତ୍ୟ

**(ଉପକ୍ରମ, ବିଜ୍ଞାନ ଓ ସାହିତ୍ୟ, ସାମ୍ୟ ବୈଷମ୍ୟ, ଲକ୍ଷ୍ୟରେ ଭିନ୍ନତା, ସମାଜର ବିକାଶରେ ଉଭୟଙ୍କର ଭୂମିକା, ଉପସଂହାର)**

ବିଜ୍ଞାନ ଓ ସାହିତ୍ୟ ପରସ୍ପରର ପରିପନ୍ଥୀ ନୁହନ୍ତି, ପରିପୂରକ । ଜୀବନର ସୃଷ୍ଟି ସହିତ ସାହିତ୍ୟ ସମ୍ବନ୍ଧିତ । ତେଣୁ ଜୀବନ ସହିତ ସାହିତ୍ୟର ସମ୍ପର୍କ ଅତ୍ୟନ୍ତ ସୁଦୃଢ଼ । ଜଗତରେ ଜୀବନର ସୃଷ୍ଟି ପରେ ତାକୁ ଶୃଙ୍ଖଳିତ ଓ ବାସ୍ତବମୁଖୀ କରିବାରେ ବିଜ୍ଞାନର ଭୂମିକା ଗୁରୁତ୍ୱପୂର୍ଣ୍ଣ । ମଣିଷର ଆତ୍ମା ଓ ହୃଦୟ ସହିତ ସାହିତ୍ୟର ସମ୍ପର୍କ ଏତେ ନିଗୂଢ଼ ଯେ, ସାହିତ୍ୟ ବ୍ୟତିରେକେ ମଣିଷକୁ କଳ୍ପନା କରିବା ସମ୍ଭବ ନୁହେଁ । ପୁଣି ବାସ୍ତବବାଦୀ ମଣିଷ ତା'ର ଦୈନନ୍ଦିନ ଜୀବନରେ ଯେଉଁ ସମସ୍ୟା ଓ ଆବଶ୍ୟକତାର ଅନୁଭବ କରୁଛି, ତା'ର ପରିପୂରଣରେ ବିଜ୍ଞାନର ରହିଛି ଗୁରୁତ୍ୱପୂର୍ଣ୍ଣ ଭୂମିକା । ମଣିଷ ଇନ୍ଦ୍ରିୟଦ୍ୱାରା ଉପଲବ୍ଧି କରୁଥିବା ଅଭିଜ୍ଞତା ଓ ଅନୁଭୂତି ମଧ୍ୟରେ ଯେଉଁ ସମ୍ବନ୍ଧ ରହିଛି, ତାହାକୁ ବିଜ୍ଞାନହିଁ ଆବିଷ୍କାର କରିଥାଏ । ଜୀବନକୁ ସୁସ୍ଥ, ସୁନ୍ଦର ଓ ନିରାମୟ କରିବା ଉଭୟଙ୍କର ଲକ୍ଷ୍ୟ । ଜୀବନ ଏବଂ ଜଗତ ମଧ୍ୟରେ ରହିଥିବା ରହସ୍ୟକୁ ଉପଲବ୍ଧି କରିବା ସାହିତ୍ୟ ଓ ବିଜ୍ଞାନର ଲକ୍ଷ୍ୟ । ଉଭୟ ବିଜ୍ଞାନ ଏବଂ ସାହିତ୍ୟ ମଣିଷର ଆବଶ୍ୟକତାରୁ ସୃଷ୍ଟି ହୋଇଥିବାରୁ ଜୀବନ ସହିତ ଉଭୟଙ୍କର ନିବିଡ଼ ସମ୍ପର୍କ ରହିଛି । ଏହି ଦୃଷ୍ଟିରୁ ଗୋଟିକଠାରୁ ଅନ୍ୟଟିକୁ ପୃଥକ କରି ବିଚାର କରାଯାଇନପାରେ ।

ବିଜ୍ଞାନର ଅର୍ଥ ବିଶେଷ ଜ୍ଞାନ । କୌଣସି ଏକ ବସ୍ତୁକୁ ବିଭିନ୍ନ ଭାବରେ ପରୀକ୍ଷାକରି ଚରମ ସତ୍ୟରେ ଉପନୀତ ହେବା ବିଜ୍ଞାନର ଲକ୍ଷ୍ୟ । ସାହିତ୍ୟ ମଧ୍ୟ ସତ୍ୟ, ଶିବ ଏବଂ ସୁନ୍ଦରର ଉପାସକ । ସାହିତ୍ୟ ଓ ବିଜ୍ଞାନ, କେହି କାହାଦ୍ୱାରା ପ୍ରଭାବିତ ନୁହନ୍ତି ବରଂ ସେମାନେ ଯେତେବେଳେ ମଣିଷସମାଜର ଉପକାର ସାଧନରେ ବ୍ରତୀ ହୋଇ ଗୋଟିଏ ସରଳରେଖାରେ ଗତି କରନ୍ତି, ସେତେବେଳେ ମାନବ ସମାଜର ଅଶେଷ ମଙ୍ଗଳ ସାଧିତ ହୋଇଥାଏ । ସେଥିପାଇଁ କେହି କାହାକୁ ହୀନ ପ୍ରତିପାଦିତ କରିନଥାନ୍ତି । ମାନବର ବିକ୍ଷିପ୍ତ ଚିନ୍ତାଧାରାକୁ ଧରିରଖେ ସାହିତ୍ୟ; ସେହି ଚିନ୍ତାଧାରାକୁ ଶୃଙ୍ଖଳିତ ଭାବରେ ପ୍ରକାଶ କରେ ବିଜ୍ଞାନ । ମଣିଷ ଜୀବନର ଅତଳ ରହସ୍ୟକୁ ସାହିତ୍ୟ ଆବିଷ୍କାର କରିବା ସମୟରେ ସେହି ରହସ୍ୟମୟ ଦିଗର ଯଥାର୍ଥ ଏବଂ ଜ୍ଞାତଶୀଳ କରିବାର ଦାୟିତ୍ୱ ବିଜ୍ଞାନର । ପ୍ରକୃତି ଜଗତର ରହସ୍ୟ ନିୟନ୍ତ୍ରିତ ସମ୍ବନ୍ଧ ସୂତ୍ରକୁ ଆବିଷ୍କାର କରିବା କ୍ଷେତ୍ରରେ ବିଜ୍ଞାନର ରହିଛି ଗୁରୁତ୍ୱପୂର୍ଣ୍ଣ ଭୂମିକା । ମଣିଷ ମନରେ ସନ୍ଦେହର ବୀଜକୁ ଦୂରୀଭୂତ କରି ତାକୁ ବାସ୍ତବ ସତ୍ୟରେ ଉପନୀତ କରାଇଥାଏ ବିଜ୍ଞାନ । ମଣିଷର ମନରେ ବଞ୍ଚିବାର ପ୍ରେରଣା କିନ୍ତୁ ସୃଷ୍ଟି କରେ ସାହିତ୍ୟ । କେତେକ ବ୍ୟକ୍ତି ମତାମତ ପ୍ରଦାନ କରି କହିଥାନ୍ତି, ଆଧୁନିକ ଯୁଗରେ ସାହିତ୍ୟର ଉପଯୋଗିତା ନାହିଁ, ଉପଯୋଗିତା ରହିଛି କେବଳ ବିଜ୍ଞାନର । ସେମାନଙ୍କର ଏହି ଚିନ୍ତାଧାରା ସମ୍ପୂର୍ଣ୍ଣ ଏକଦେଶଦର୍ଶୀ । ବିଜ୍ଞାନର ପରିପ୍ରକାଶ

ପାଇଁ ଯେଉଁ ମାଧ୍ୟମର ଆବଶ୍ୟକ ହୋଇଥାଏ, ତାହାହିଁ ହେଉଛି ସାହିତ୍ୟ । ବିଜ୍ଞାନ କୌଣସି ଏକ ନିର୍ଦ୍ଦିଷ୍ଟ ସତ୍ୟରେ ଉପନୀତ ହେବାପରେ ତାହାକୁ ମାନବ ସମାଜ ଆଗରେ ଧରିରଖିବା ଦାୟିତ୍ୱ ସାହିତ୍ୟର । ପୁଣି ସାହିତ୍ୟ କେବଳ କଳ୍ପନାର କଥା କୁହେ ନାହିଁ; ଜୀବନର ସତ୍ୟ ଓ ବାସ୍ତବତାକୁ ଅନୁସନ୍ଧାନ କରିବା ମଧ୍ୟ ସାହିତ୍ୟର ଲକ୍ଷ୍ୟ । ସାହିତ୍ୟ ଏକ ବ୍ୟାପକ ଜିନିଷ । ଏହାର ନିର୍ଦ୍ଦିଷ୍ଟ ସୀମା ନିର୍ଦ୍ଧାରଣ କରିବା ଆଦୌ ସମ୍ଭବ ନୁହେଁ । ବାସ୍ତବତା ଏବଂ ଆବେଗ– ମଣିଷ ମନରୁ ଏହି ଦୁଇଟିକୁ କାଢ଼ିନେଲେ ସେ କଦାପି ବଞ୍ଚି ରହିପାରିବ ନାହିଁ ।

ସାହିତ୍ୟ ଓ ବିଜ୍ଞାନ ଉଭୟର ଉଦ୍ଦେଶ୍ୟ ମାନବର ସାମଗ୍ରିକ ବିକାଶ । ଏହା ସତ୍ତ୍ୱେ କେତେକ କ୍ଷେତ୍ରରେ ଉଭୟଙ୍କ ମଧ୍ୟରେ ପାର୍ଥକ୍ୟ ସ୍ପଷ୍ଟ । ସାହିତ୍ୟର ସମ୍ବନ୍ଧ ମଣିଷର ଆତ୍ମା ଓ ହୃଦୟ ସହିତ; ବିଜ୍ଞାନର ସମ୍ବନ୍ଧ ମଣିଷର ମସ୍ତିଷ୍କ ଓ ବୁଦ୍ଧି ସହିତ । ମଣିଷର ବିବିଧ ଆଚରଣ, ରୀତିନୀତି, ଆନନ୍ଦ, ବିଶ୍ୱାସ ଓ ଆକାଂକ୍ଷା କଳାତ୍ମକ ରୂପନେଇ ସାହିତ୍ୟରେ ଅଭିବ୍ୟକ୍ତ ହୋଇଥାଏ । କଳ୍ପନା ମାଧ୍ୟମରେ ମାନବିକ ସତ୍ୟକୁ ସାହିତ୍ୟରେ ରୂପାୟନ କରାଯାଏ । ମାତ୍ର ବିଜ୍ଞାନ ବିନା ପରୀକ୍ଷାରେ କୌଣସି ବସ୍ତୁର ସତ୍ୟକୁ ବିଶ୍ୱାସ କରେ ନାହିଁ । ପରୀକ୍ଷାଗାରରେ ବସ୍ତୁର ସତ୍ୟକୁ ଉପଲବ୍ଧି କରିସାରିବା ପରେ ସେ ଏକ ମୀମାଂସାରେ ଉପନୀତ ହୋଇଥାଏ । ସାହିତ୍ୟ କୌଣସି ଏକ ଫୁଲର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ତାକୁ ତା' ସୃଷ୍ଟିରେ କାଳଜୟୀ ମୂଲ୍ୟ ପ୍ରଦାନ କରିପାରେ । ମାତ୍ର ବିଜ୍ଞାନ କେବେ ଫୁଲର ସୌନ୍ଦର୍ଯ୍ୟରେ ମୁଗ୍ଧ ହୁଏ ନାହିଁ । ଏହି ସୌନ୍ଦର୍ଯ୍ୟର ଅନ୍ତରାଳରେ ଯେଉଁସବୁ ଉପାଦାନକୁ ନେଇ ଫୁଲଟିଏ ଗଠିତ, ବିଜ୍ଞାନ ତା'ର ପରୀକ୍ଷା କରି ବସ୍ତୁ ସତ୍ୟରେ ଉପନୀତ ହୋଇଥାଏ । ଏଣୁ ସାହିତ୍ୟ ମଣିଷର ଭାବ ଉପରେ ଗୁରୁତ୍ୱ ପ୍ରଦାନ କରୁଥିବା ସମୟରେ ବୈଜ୍ଞାନିକ ବସ୍ତୁ ସହିତ କେବଳ ସମ୍ପର୍କ ସ୍ଥାପନ କରିଥାଏ । ସାହିତ୍ୟର ପରୀକ୍ଷାଗାର ମଣିଷର ହୃଦୟ ଓ ତା' ଭାବରାଜ୍ୟରେ ଆଉଟୁପାଉଟୁ ହେଉଥିବା ବିଭିନ୍ନ ଭାବ । ମାତ୍ର ବିଜ୍ଞାନର ପରୀକ୍ଷାଗାର ସ୍ୱତନ୍ତ୍ର; ବହୁ ଉପାଦାନର ସମଷ୍ଟି । ସାହିତ୍ୟ ସତ୍ୟକୁ ହୁଏତ ଆଖିରେ ଦେଖାଇ ଦିଆଯାଇ ନ ପାରେ; ମାତ୍ର ବିଜ୍ଞାନ ସତ୍ୟକୁ ସମସ୍ତଙ୍କ ସମ୍ମୁଖରେ ଉପସ୍ଥାପିତ କରାଯାଇପାରେ । ସେଥିପାଇଁ ବିଜ୍ଞାନ ଅନୁମାନଭିତ୍ତିକ ନୁହେଁ । ଯାହା ସତ୍ୟ, ଯାହାକୁ ପରୀକ୍ଷା କରି ପ୍ରମାଣ କରାଯାଇପାରେ ତାହାକୁହିଁ କେବଳ ବିଜ୍ଞାନ ଗ୍ରହଣ କରିଥାଏ । ସତ୍ୟର ଅନୁସନ୍ଧିତ୍ସା ସହିତ ପରୀକ୍ଷାପୂର୍ବକ ତାହାକୁ ପ୍ରତିଷ୍ଠା କରିବା ବିଜ୍ଞାନର ଲକ୍ଷ୍ୟ । ମାତ୍ର ସାହିତ୍ୟ ମାନବ ଜୀବନର ସମ୍ବେଦନଶୀଳ ଦିଗଟି ଉପରେ ଅଧିକ ଗୁରୁତ୍ୱ ଦିଏ । ଯୁକ୍ତି ନୁହେଁ, ଭାବ ଓ ବିଶ୍ୱାସ ସାହିତ୍ୟର ମୂଳାଧାର । ବସ୍ତୁସତ୍ୟ ଅପେକ୍ଷା ଭାବସତ୍ୟ ସାହିତ୍ୟ ନିକଟରେ ଅଧିକ ମହତ୍ତ୍ୱପୂର୍ଣ୍ଣ । ମଣିଷର ହୃଦୟ, ତା' ଜୀବନର ବହୁ ଅକୁହା କାହାଣୀ, ଯୁଗଯୁଗର ବିଶ୍ୱାସ, ଆଶା-ଆକାଂକ୍ଷା ସାହିତ୍ୟର ପ୍ରେରଣା ଭୂମି । ଯେଉଁଠାରେ ବିଜ୍ଞାନ ଜଗତର ଶେଷ, ସେହିଠାରୁ ଆରମ୍ଭ ସାହିତ୍ୟର ଜଗତ । ବାସ୍ତବ ସହିତ ଯୁଦ୍ଧ କରି ବଞ୍ଚିବା ପାଇଁ ବିଜ୍ଞାନ ଯୁକ୍ତି କରୁଥିବା ସମୟରେ ଆଦର୍ଶ ଓ କଳ୍ପନାକୁ ବିଶ୍ୱାସ କରି ବଞ୍ଚିବା ନିମିତ୍ତ ସାହିତ୍ୟ ପ୍ରେରଣା ଦେଇଥାଏ । ତେଣୁ ସାହିତ୍ୟ ନିକଟରେ କଳ୍ପିତ ଆଦର୍ଶ

ମୁଖ୍ୟ, ବିଜ୍ଞାନ ପାଖରେ ପରୀକ୍ଷା ଦ୍ୱାରା ଉପନୀତ ହୋଇଥିବା ମୀମାଂସା ହିଁ ବଡ଼ । ତେଣୁ ବିଜ୍ଞାନ ଓ ସାହିତ୍ୟ ନିଜ ନିଜ ପରିସର ମଧ୍ୟରେ ମହାନ୍ ଓ ଶ୍ରେଷ୍ଠ । ଲକ୍ଷ୍ୟରେ କିଛି ଭିନ୍ନତା ପରିଲକ୍ଷିତ ହେଲେହେଁ ମଣିଷ ଜୀବନକୁ ସରସ ସୁନ୍ଦର କରି ଗଢ଼ି ତୋଳିବା ହିଁ ଉଭୟର ଉଦ୍ଦେଶ୍ୟ । ସେହି ଦୃଷ୍ଟିରୁ କାହାକୁ ମହାନ୍ ଓ ଅନ୍ୟ କାହାକୁ ନିକୃଷ୍ଟ କହିବାର କୌଣସି କାରଣ ନାହିଁ ।

ସାହିତ୍ୟ ଓ ବିଜ୍ଞାନ–ସମାଜର ବିକାଶରେ ଉଭୟଙ୍କର ସମଭୂମିକା ବିଦ୍ୟମାନ । ମଣିଷ ଜୀବନକୁ ବାସ୍ତବ, ସୁସ୍ଥ ଓ ସୁନ୍ଦର କରି ଗଢ଼ିବା ହିଁ ଉଭୟଙ୍କର ଲକ୍ଷ୍ୟ । ଯୁଗଯୁଗ ଧରି ସମାଜରେ ପ୍ରଚଳିତ ଯେଉଁ ଅନ୍ଧବିଶ୍ୱାସ ଓ କୁସଂସ୍କାର ମାନବ ଜୀବନର ସମ୍ପୂର୍ଣ୍ଣ ପରିପନ୍ଥୀ, ବିଜ୍ଞାନ ତା'ର ବିରୋଧ କରେ । ଏହି ପ୍ରକାର କୁସଂସ୍କାର ମଣିଷର ଉନ୍ନତି ନ ଘଟାଇ ବରଂ ଅବନତି ଘଟାଇଥାଏ । ସମାଜ ଜୀବନକୁ ସ୍ଥାଣୁ କରିଥାଏ । ସେହି କୁସଂସ୍କାରର ମୂଲ୍ୟହୀନତା ପ୍ରତିପାଦନ କରି ବିଜ୍ଞାନ ମଣିଷ ସମାଜର ଅଶେଷ ଉପକାର ସାଧନ କରିଥାଏ । ସେଥିପାଇଁ ଏବେ ଆଉ ହଇଜା କିମ୍ବା ବସନ୍ତକୁ ଦେବୀ କୁହାନଯାଇ 'ରୋଗ' ବୋଲି କୁହାଯାଉଛି ଏବଂ ବିଜ୍ଞାନଦ୍ୱାରା ଆବିଷ୍କୃତ ଔଷଧ ମାଧ୍ୟମରେ ଏହାର ସମ୍ପୂର୍ଣ୍ଣ ନିରାକରଣ କରାଯାଇପାରୁଛି । କଠୋର ବାସ୍ତବତାକୁ ପ୍ରତିପଦରେ ଅନୁସରଣ କରି ବଞ୍ଚିରହିବା ସମ୍ଭବପର ନୁହେଁ । ସେଥିପାଇଁ ଆବଶ୍ୟକ ହୁଏ କିଛି କଳ୍ପନା, କିଛି ପ୍ରେରଣା ଓ ସହୃଦୟତା । ସାହିତ୍ୟ ମଣିଷ ମନର ଏହି ଅଭାବବୋଧକୁ ପରିପୂରଣ କରି ତା'ର କଲ୍ୟାଣ କରିଥାଏ । ବଞ୍ଚିରହିବା ପାଇଁ ମନରେ ଆଶା ଏବଂ ବିଶ୍ୱାସ ସୃଷ୍ଟି କରିଥାଏ । ବିଜ୍ଞାନର ପ୍ରୟୋଗାତ୍ମକ ମୂଲ୍ୟ ଜ୍ଞାନର ଭଣ୍ଡାରକୁ ଉନ୍ମୁକ୍ତ କରୁଥିବା ସମୟରେ ସାହିତ୍ୟର ମାନବବାଦୀ ଚିନ୍ତାଧାରା ସମାଜରେ ମଣିଷ ମଣିଷକୁ ଭଲପାଇବା ଶିଖାଇଛି । ମଣିଷର ଦୁଃଖମୋଚନ ଏବଂ ତା'ର ସୁଖ ଓ ସମୃଦ୍ଧି କାମନା ଉଭୟ ସାହିତ୍ୟ ଓ ବିଜ୍ଞାନର ଲକ୍ଷ୍ୟ । ଯେପରି ସାହିତ୍ୟର ପ୍ରେରଣା ସବୁ ମଣିଷକୁ ଗୋଟିଏ ସମାଜ ଜୀବନ ମଧ୍ୟରେ ବାନ୍ଧି ରଖିଥାଏ, ସେହିପରି ବିଜ୍ଞାନ ସେହି ସାମାଜିକ ଜୀବନର ଅଧିକାଂଶ ଆବଶ୍ୟକତା ପୂରଣ କରି ତାକୁ ବଞ୍ଚିବାର ରାହା ଯୋଗାଇଥାଏ । ଯେଉଁଠାରେ ସାହିତ୍ୟ ତା'ର ସାମାଜିକ ଦାୟିତ୍ୱ ପାଳନରେ ଅସମର୍ଥ ହୁଏ, ସେତେବେଳେ ସେ ତା'ର ମୂଲ୍ୟ ହରାଏ । ରୁଚିହୀନ ଓ ଆଦର୍ଶହୀନ ସାହିତ୍ୟ ସମାଜକୁ ବିକଳାଙ୍ଗ କରେ, ବିକାଶରେ ଅନ୍ତରାୟ ସୃଷ୍ଟି କରେ । ସେହିପରି ବିଜ୍ଞାନର ମଧ୍ୟ କେତେକ ଅପକାରୀ ଦିଗ ରହିଛି । ବିଜ୍ଞାନ ମଣିଷକୁ ଭୌତିକ ସୁଖ ଦେଇଛି; ମାତ୍ର ତା' ଅନ୍ତରରୁ ସ୍ନେହ ପ୍ରେମକୁ ଦୂରେଇ ଦେଇଛି । ମଣିଷ ହାତରେ ବିଜ୍ଞାନ ଧରାଇ ଦେଇଛି ଅନେକ ମଣିଷ ବିଧ୍ୱଂସୀ ମାରଣାସ୍ତ୍ର । ଏହାର ପ୍ରୟୋଗ କରି ମଣିଷ ସମାଜରେ ଧ୍ୱଂସର ଲୀଳା ସୃଷ୍ଟି କରୁଛି । ପରମାଣୁ ଓ ଉଦ୍‌ଜାନ ବୋମା ପୃଥିବୀରୁ ମାନବ ସଭ୍ୟତାର ଧ୍ୱଂସ ପାଇଁ ହିଁ ସୃଷ୍ଟି ହୋଇଛି । ଯେପରି ଅପସାହିତ୍ୟ ବା ରୁଚିହୀନ ସାହିତ୍ୟକୁ ଯଥାର୍ଥ ପରୀକ୍ଷା କରି ବିଜ୍ଞାନୋଚିତ ଭାବରେ ସମାଜରେ ତା'ର ପ୍ରଚାର କଲେ ସାହିତ୍ୟ ଓ ସମାଜ ଉଭୟର ମଙ୍ଗଳ ହୋଇଥାଏ, ସେହିପରି ବିଜ୍ଞାନର ବିଶ୍ୱଧ୍ୱଂସୀ ରୂପକୁ ପରିତ୍ୟାଗ କରିବା ପାଇଁ ଓ

ଏହାର ଅପପ୍ରୟୋଗ ନିମିତ୍ତ ବ୍ୟାକୁଳ ମଣିଷ ହୃଦୟରେ ସତ୍ୟ, ଶାନ୍ତି, ଦୟା, କ୍ଷମା ଆଦି ମାନବିକ ଗୁଣଗୁଡ଼ିକ ଜାଗ୍ରତ କରି ସାହିତ୍ୟ ମଧ୍ୟ ବିଜ୍ଞାନକୁ ସଂଯତ କରି ସମାଜର ଅଶେଷ ମଙ୍ଗଳ ସାଧନ କରିପାରିବ । ଆଜି ମଣିଷ ମନ ମଧ୍ୟରେ ନୈତିକତା, ମାନବିକତା, ବାସ୍ତବତା ଓ ସତ୍ୟ ଜାଗ୍ରତ କରିବାର ଦାୟିତ୍ୱ ଉଭୟ ସାହିତ୍ୟ ଏବଂ ବିଜ୍ଞାନର । ଉଭୟର ସମନ୍ୱୟ ଘଟିପାରିଲେ ମାନବ ଜୀବନ ନମ୍ର ଓ ମଧୁମୟ ହୋଇଉଠିବ ।

ସାହିତ୍ୟର ରହସ୍ୟଘେରା ପୃଥିବୀକୁ ବିଜ୍ଞାନ ପ୍ରମାଣ ଦ୍ୱାରା ସାବ୍ୟସ୍ତ କରେ । ସାହିତ୍ୟ ବିଶ୍ୱ ଭ୍ରାତୃତ୍ୱ ସୃଷ୍ଟିରେ ଯେଉଁ ପଦକ୍ଷେପ ଗ୍ରହଣ କରେ, ବିଜ୍ଞାନ ତାକୁ ଅଧିକ ବାସ୍ତବବାଦୀ କରିବା ଦିଗରେ ଯତ୍ନବାନ୍ ହେବା ବିଧେୟ । ବିଜ୍ଞାନର ପଦାର୍ଥଜ୍ଞାନ ମଣିଷର ଶାରୀରିକ ଉନ୍ନତି ଘଟାଇବା ସମୟରେ ସାହିତ୍ୟର କଲ୍ୟାଣକାରୀ ରୂପ ମନରେ ଆତ୍ମିକ ଉନ୍ନତି ସାଧନ କରିଥାଏ । ଯେପରି ଅପସାହିତ୍ୟ ସମାଜକୁ କଳୁଷିତ କରେ, ମଣିଷର ନୈତିକ ଅଧୋପତନ ଘଟାଏ, ଠିକ୍ ସେହିପରି ବିଜ୍ଞାନର ଅପପ୍ରୟୋଗ ବିଶ୍ୱକୁ ଧ୍ୱଂସ ଦିଗକୁ ଅଗ୍ରସର କରାଇଥାଏ । ସୃଷ୍ଟିକୁ ଉଚିତ ମାର୍ଗରେ ପରିଚାଳିତ କରିବାର ଦାୟିତ୍ୱ ମାନବର । ବିଜ୍ଞାନ ଏବଂ ସାହିତ୍ୟର ସଂଯତ ଓ ମାର୍ଜିତ ପ୍ରୟୋଗ କରିପାରିଲେ ମଣିଷ ପୃଥିବୀକୁ ସୁନ୍ଦର ଓ ମନୋରମ କରିପାରିବ । ତେଣୁ ସମାଜର ପ୍ରଗତି ଓ ବିକାଶ କ୍ଷେତ୍ରରେ ଉଭୟର ଅବଦାନ ଅତୁଳନୀୟ ହୋଇଥିବାରୁ ବିଜ୍ଞାନ ଏବଂ ସାହିତ୍ୟ ପରସ୍ପରର ପରିପନ୍ଥୀ ନ ହୋଇ ପରିପୂରକ ହୋଇଛନ୍ତି ।

●

# ଧର୍ମ ଓ ବିଜ୍ଞାନ

**(ଉପକ୍ରମ, ବିଜ୍ଞାନ ଏବଂ ଧର୍ମର ଉଦ୍ଦେଶ୍ୟ, ବିଜ୍ଞାନ ଓ ଧର୍ମ ମଧ୍ୟରେ ପାର୍ଥକ୍ୟ, ମାନଦସମାଜ ପାଇଁ ଉଭୟଙ୍କର ଆବଶ୍ୟକତା, ଉପସଂହାର)**

ବିଜ୍ଞାନ ଓ ଧର୍ମ ଦୁଇଟି ଭିନ୍ନ ବୋଲି ଜଣାଯାଉଥିଲେହେଁ, ବସ୍ତୁତଃ ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଦୃଷ୍ଟିରୁ ସେମାନଙ୍କର ବିଶେଷ କିଛି ପାର୍ଥକ୍ୟ ଥିବାପରି ଜଣାଯାଏ ନାହିଁ । ଧର୍ମ କେଉଁ ପ୍ରାଚୀନ କାଳରୁ ମଣିଷ ସମାଜରେ ଆତ୍ମପ୍ରକାଶ କରିଛି । ଅନ୍ୟ ଭାବରେ କହିଲେ, ମାନବ ସମାଜର ପ୍ରାଚୀନତା ପରି ଧର୍ମର ପ୍ରାଚୀନତା । ଯେବେଠାରୁ ମଣିଷ ପୃଥିବୀ ପୃଷ୍ଠରେ ଜନ୍ମଲାଭ କରିଛି, ସେବେଠାରୁ ଧର୍ମ ତା'ର ସାଥୀ ହୋଇ ରହିଛି । ଘନ ଅରଣ୍ୟରେ ବସବାସ କରୁଥିବା ମଣିଷ ସୂର୍ଯ୍ୟଙ୍କର ପ୍ରଖର ରଶ୍ମି, ପବନର ଭୟଙ୍କର ରୂପ, ମେଘର କଳା ଅନ୍ଧାର ରୂପ, ଚନ୍ଦ୍ରର ଆହ୍ଲାଦକ କିରଣ, ପ୍ରକୃତିର ସୌନ୍ଦର୍ଯ୍ୟ ତାକୁ ଭୀତ, ଚକିତ ଓ ଆନନ୍ଦ ଦେଇଛି । ମୁଖ୍ୟତଃ ଆଦିମ ମଣିଷ ମନରେ ଧର୍ମଭାବ ସୃଷ୍ଟି ହୋଇଛି ଆନନ୍ଦରୁ, ଆଶ୍ଚର୍ଯ୍ୟବୋଧରୁ ଓ ଭୟଭାବରୁ । ତେଣୁ ମଣିଷ ସଭ୍ୟତା ପୃଥିବୀରେ ଯେତେ ପ୍ରାଚୀନ, ଧର୍ମ ମଧ୍ୟ ସେହି ପରିମାଣରେ ପ୍ରାଚୀନ । ବିଜ୍ଞାନ ଷୋଡ଼ଶ,

ସପ୍ତଦଶ ଶତାବ୍ଦୀରୁ ସୃଷ୍ଟି ହୋଇଥିଲେହେଁ ମୁଖ୍ୟତଃ ଊନବିଂଶ ଏବଂ ବିଂଶ ଶତାବ୍ଦୀରେ ଏହା ଚରମସୀମାରେ ଉପନୀତ ହୋଇଛି । ତେଣୁ ଧର୍ମ ତୁଳନାରେ ବିଜ୍ଞାନ ଯେ ଅର୍ବାଚୀନ, ଅସ୍ୱୀକାର କରାଯାଇ ନ ପାରେ । ମଣିଷର ବିକାଶରେ ଉଭୟର ଅବଦାନ ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ ଏହାକୁ ପରସ୍ପରର ବିରୋଧୀ ବୋଲି ମନେ କରିବାର କୌଣସି କାରଣ ନାହିଁ ।

ବିଜ୍ଞାନ—ବିଶେଷ ଜ୍ଞାନ । ଏହି ଜ୍ଞାନ ପ୍ରୟୋଗ କରି ମଣିଷ ଭୌତିକ ସୁଖ ଲାଭ କରିଥାଏ । ମଣିଷ ଜୀବନକୁ ସୁନ୍ଦର ଓ ନିରାମୟ କରିବା କ୍ଷେତ୍ରରେ ବିଜ୍ଞାନର ଅବଦାନ ମହତ୍ତ୍ୱପୂର୍ଣ୍ଣ । ମଣିଷକୁ ଆଜିର ଅବସ୍ଥାରେ ପହଞ୍ଚାଇବା କ୍ଷେତ୍ରରେ ବିଜ୍ଞାନର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । 'ଧାରୟତି ଇତି ଧର୍ମ'—ଯାହା ପୃଥିବୀକୁ ଧାରଣ କରେ, ଯାହା ମଣିଷକୁ ଉଚିତ ମାର୍ଗରେ ଗତି କରିବା ପାଇଁ ନିର୍ଦ୍ଦେଶ ଦିଏ, ତାହାହିଁ ଧର୍ମ । ବଞ୍ଚିବା ପାଇଁ ଯେଉଁ ପଥ ଶ୍ରେୟ, ଧର୍ମ ତା'ର ନିର୍ଦ୍ଦେଶ କରିଥାଏ । ଏହା ମଣିଷ ମନରେ ଉଦାରତା, ସ୍ନେହ, ପ୍ରେମ, ଶ୍ରଦ୍ଧା, ସହାନୁଭୂତି ଆଦି ଭାବର ଜାଗ୍ରତ କରେ । ମଣିଷର ପଶୁପ୍ରବୃତ୍ତିକୁ ଦମନ କରି ତା'କୁ ଦେବତାର ସିଂହାସନରେ ଉପବିଷ୍ଟ କରାଏ । ବିଜ୍ଞାନର ବିଶେଷ ଲକ୍ଷ୍ୟ ମଣିଷକୁ ଆନନ୍ଦ ପ୍ରଦାନ କରିବା; ତାକୁ ସତ୍ୟର ପଥ ନିର୍ଦ୍ଦେଶ କରିବା । ଅନ୍ଧବିଶ୍ୱାସ ଓ କୁସଂସ୍କାରଠାରୁ ଦୂରେଇନେଇ ଯାହା ବାସ୍ତବ ସତ୍ୟ ତା'ର ମୁକାବିଲା କରାଇବା । ଏହି ଦୁଇଟିର ପରିସର ଭିନ୍ନ ହୋଇଥିଲେହେଁ, ଲକ୍ଷ୍ୟ ମଣିଷକୁ ଉନ୍ନତି ଦିଗରେ ଗତି କରାଇବା, ତା'ର ସାମଗ୍ରିକ ବିକାଶ ସାଧନ କରିବା । ବୈଜ୍ଞାନିକ ପରୀକ୍ଷାଗାରରେ ବସ୍ତୁର ପରୀକ୍ଷା କରି ଏକ ନିର୍ଦ୍ଦିଷ୍ଟ ସତ୍ୟରେ ଉପନୀତ ହେଲେ, ତାହାକୁ ମାନବ ସମାଜରେ ପ୍ରଚାର କରାଯାଇଥାଏ । ବିନା ପ୍ରମାଣରେ ବିଜ୍ଞାନ କିଛି ବିଶ୍ୱାସ କରିନଥାଏ । ଆଜି ବିଜ୍ଞାନର ସରହଦ ବହୁ ବିସ୍ତୃତ । ବିଜ୍ଞାନ ବ୍ୟତିରେକେ ବର୍ତ୍ତମାନ ପୃଥିବୀରେ କ୍ଷଣମାତ୍ର ବଞ୍ଚିବା ହୁଏତ ଅସମ୍ଭବ ହୋଇପାରେ । ବିଜ୍ଞାନ ନିକଟରେ ବସ୍ତୁ ସତ୍ୟ ହୋଇଥିବା ସମୟରେ ଧର୍ମ ନିକଟରେ ବ୍ୟକ୍ତିର ହୃଦୟ ଓ ଭାବ ସତ୍ୟ । ଅତୀତରେ ଧର୍ମ ହିଁ ଥିଲା ସମାଜର ମୂଳପିଣ୍ଡ । ଈଶ୍ୱର ପ୍ରତି ବିଶ୍ୱାସଭାବ ଯୋଗୁଁ ମଣିଷ କୌଣସି ଅନ୍ୟାୟ ଅନୀତି କାର୍ଯ୍ୟ କରିବାକୁ ଭୟ କରୁଥିଲା । ସତ୍‌ପଥରେ ଚାଲିବା ପାଇଁ ଧର୍ମ ହିଁ ମଣିଷ ମନରେ ପ୍ରେରଣା ଭରି ଦେଉଥିଲା । ମଣିଷର ଚିନ୍ତାକୁ ମାର୍ଜିତ ଏବଂ ଶୃଙ୍ଖଳିତ କରିବାରେ ଧର୍ମ ପ୍ରମୁଖ ଭୂମିକା ଗ୍ରହଣ କରିଥାଏ । ସତ୍ୟ, ନ୍ୟାୟ ଓ ପରୋପକାର ଧର୍ମର ମୂଳଭିତ୍ତି । ମଣିଷର ଚରିତ୍ରକୁ ଶୃଙ୍ଖଳିତ ତଥା ସଂଯତ କରିବା କ୍ଷେତ୍ରରେ ଧର୍ମର ମୁଖ୍ୟ ଭୂମିକା ରହିଛି । ଜ୍ଞାନ ଏବଂ ସତ୍ୟର ଅନ୍ୱେଷଣ ପାଇଁ ବିଜ୍ଞାନ ପ୍ରେରଣା ଦେବା ସମୟରେ ସେହି ସତ୍ୟର ପ୍ରତିଷ୍ଠା ପାଇଁ ଧର୍ମ ମାନବକୁ ଉଦ୍‌ବୁଦ୍ଧ କରିଥାଏ । ଉଭୟଙ୍କ ପରିସର ଓ କାର୍ଯ୍ୟପ୍ରଣାଳୀ ଭିନ୍ନ; ମାତ୍ର ଲକ୍ଷ୍ୟ ଏକ ଓ ତାହା ହେଉଛି ମାନବ ସମାଜର ଉନ୍ନତି ବିଧାନ ।

ବିଜ୍ଞାନ ମସ୍ତିଷ୍କ ସଂଜାତ । ବୁଦ୍ଧି ସହିତ ଏହାର ସମ୍ପର୍କ । ମାତ୍ର ଧର୍ମ ହୃଦୟରୁ ହିଁ ସୃଷ୍ଟି । ବିଜ୍ଞାନ ପ୍ରମାଣ ଉପରେ ଗୁରୁତ୍ୱ ପ୍ରଦାନ କରୁଥିବା ସମୟରେ ଧର୍ମ ବିଶ୍ୱାସ ଉପରେ ହିଁ ଗୁରୁତ୍ୱ

ଦେଇଥାଏ । ବିଜ୍ଞାନ ମଣିଷକୁ ଭୌତିକ ସୁଖ ପ୍ରଦାନ କରୁଥିବା ସମୟରେ ଧର୍ମ ଆତ୍ମିକ ବିକାଶ ସଂସାଧନ କରିଥାଏ । ବିଜ୍ଞାନ ବୁଦ୍ଧିକୁ ତୀକ୍ଷ୍ଣ କରେ, ମାତ୍ର ଧର୍ମ ହୃଦୟକୁ ପ୍ରସାରିତ କରେ । ବିଜ୍ଞାନ ପରିଦୃଷ୍ଟମାନ ପଦାର୍ଥ ଉପରେ ଗବେଷଣା କରି ତା'ର ସତ୍ୟ ଉପଲବ୍ଧି କରିଥାଏ । ଧର୍ମ ଏକ ଅଦେଖା ସତ୍ତା ଉପରେ ବିଶ୍ୱାସ କରେ । ପ୍ରକୃତିର ନିୟମକୁ ବିଶ୍ଳେଷଣ କରି ତନ୍ମଧ୍ୟରୁ ବାସ୍ତବ ସତ୍ୟ ଉଦ୍‌ଘାଟନ କରିବା ବିଜ୍ଞାନର କର୍ତ୍ତବ୍ୟ । ଧର୍ମ ପ୍ରକୃତିକୁ ବିଶ୍ଳେଷଣ ନ କରି ମଧ୍ୟ ତନ୍ମଧ୍ୟରେ ଈଶ୍ୱରଙ୍କ ଅବସ୍ଥିତି ଉପଲବ୍ଧି କରିଥାଏ । ଯୁକ୍ତି ଓ ପ୍ରମାଣକୁ ଭିତ୍ତି କରି ବିଜ୍ଞାନ ସାରାଂଶ ନିର୍ଣ୍ଣୟ କରୁଥିବା ସମୟରେ ଧର୍ମ ବିଶ୍ୱାସକୁ ମୂଳ ପୁଞ୍ଜି କରି ମାନସିକ ଶାନ୍ତି ପ୍ରଦାନ କରିଥାଏ । ଅନ୍ଧବିଶ୍ୱାସ ଓ କୁସଂସ୍କାରକୁ ବିଜ୍ଞାନ ବିଶ୍ୱାସ କରେ ନାହିଁ । ଧର୍ମ କେତେକ କ୍ଷେତ୍ରରେ ଏହା ଉପରେ ଆସ୍ଥାଶୀଳ ଥିବାରୁ ବିଜ୍ଞାନ ଏହାକୁ ସନ୍ଦେହ ଚକ୍ଷୁରେ ଦେଖିଥାଏ । ଅଦୃଶ୍ୟ ଶକ୍ତି ବିଜ୍ଞାନ ନିକଟରେ ମୂଲ୍ୟହୀନ । ଯାହାର ଅସ୍ତିତ୍ୱ ନାହିଁ, ଯାହାକୁ ଯୁକ୍ତି ମାଧ୍ୟମରେ ପ୍ରମାଣିତ କରିହେବ ନାହିଁ, ତା' ଉପରେ ଅଯଥା ସମୟ ନଷ୍ଟ କରିବା ସପକ୍ଷରେ ବିଜ୍ଞାନ ଯାଏ ନାହିଁ । ମାତ୍ର ଧର୍ମ କହେ, ଏ ବିଶ୍ୱ ଈଶ୍ୱରଙ୍କ ଦ୍ୱାରା ସୃଷ୍ଟ । ପ୍ରତ୍ୟେକ ମଣିଷ ଅନ୍ତରରେ ଈଶ୍ୱର ଅବସ୍ଥାନ କରିଥାନ୍ତି । ତେଣୁ କୌଣସି ମଣିଷ ଅନ୍ତରରେ ଦୁଃଖ ଦେବାର ଅର୍ଥ ଈଶ୍ୱର ବିରୋଧୀ ହେବା । ପ୍ରକୃତିକୁ ନଷ୍ଟ କରୁଥିବାରୁ, ଜଗତକୁ ବିକୃତ କରୁଥିବାରୁ ଧର୍ମ ବିଜ୍ଞାନକୁ ସମାଲୋଚନା କରେ । ଅସୀମ ଓ ବ୍ୟାପକ ପରିସର ମଧ୍ୟରେ ଧର୍ମ ବିଚରଣ କରିବା ସମୟରେ ବିଜ୍ଞାନ ଏକ ନିର୍ଦ୍ଦିଷ୍ଟ ପରିସୀମା ମଧ୍ୟରେ ସୀମାବଦ୍ଧ ହୋଇ ରହିଥାଏ । ଧର୍ମର ବିଶ୍ୱାସର ଏକ ନିର୍ଦ୍ଦିଷ୍ଟ ସୀମା ରହିଛି । ସେହି ସୀମା ବାହାରକୁ ଯିବାର ଶକ୍ତି ତା'ର ନାହିଁ କିମ୍ବା ସେ ବିଶ୍ୱାସ କରୁଥିବା ସତ୍ତାକୁ କୌଣସି ମୁହୂର୍ତ୍ତରେ ଅସ୍ୱୀକାର କରିପାରେ ନାହିଁ । ଅଥଚ ବିଜ୍ଞାନର ଏ କ୍ଷେତ୍ରରେ କୌଣସି ସୀମା ନାହିଁ । ହୁଏତ ଆଜିର ବୈଜ୍ଞାନିକ ସତ୍ୟ ପରବର୍ତ୍ତୀ ସମୟରେ ମିଥ୍ୟା ହୋଇପାରେ । ଅତୀତରେ ବୈଜ୍ଞାନିକମାନେ ସ୍ଥିର ସିଦ୍ଧାନ୍ତରେ ଉପନୀତ ହୋଇ କହିଥିଲେ, ପୃଥିବୀ ଚତୁଃପାର୍ଶ୍ୱରେ ସୂର୍ଯ୍ୟ ଘୂରୁଛି । ମାତ୍ର ପରବର୍ତ୍ତୀ ସମୟରେ ଏହି ବୈଜ୍ଞାନିକ ମତବାଦ ମିଥ୍ୟା ବୋଲି ସାବ୍ୟସ୍ତ ହୋଇଥିଲା । ତେଣୁ ବୈଜ୍ଞାନିକ ସତ୍ୟର ସୀମାନିର୍ଦ୍ଦିଷ୍ଟ । ସେଥିପାଇଁ ଗାନ୍ଧିଜୀ କହିଥିଲେ, ମୁଁ ପବନ ବା ପାଣି ବ୍ୟତିରେକେ ବଞ୍ଚିରହିପାରେ; ମାତ୍ର ଧର୍ମ ବ୍ୟତିରେକେ କଦାପି ବଞ୍ଚି ରହିପାରିବି ନାହିଁ । ସେଥିପାଇଁ ବିଜ୍ଞାନର ଅଭୂତପୂର୍ବ ବିକାଶ ସତ୍ତ୍ୱେ, ତଥାପି ପୃଥିବୀରେ ଧର୍ମ ନିଜର ସତ୍ତା ଜାରି ରଖିଛି । ଏବେ ମଧ୍ୟ ଖ୍ରୀଷ୍ଟିଆନ ଗୀର୍ଜାରେ, ମୁସଲମାନ ମସ୍‌ଜିଦ୍‌ରେ ଓ ହିନ୍ଦୁ ମନ୍ଦିରରେ ଈଶ୍ୱରଙ୍କୁ ଧ୍ୟାନ କରୁଛି । ବିଜ୍ଞାନ ମଣିଷ ମନରୁ ଯୁଗ ଯୁଗ ଧରି ବସା ବାନ୍ଧିଥିବା ଏହି ବିଶ୍ୱାସକୁ କଦାପି ଦୂର କରିପାରି ନାହିଁ କିମ୍ବା ପାରିବ ନାହିଁ ମଧ୍ୟ । ଏପରିକି ଅନେକ ବୈଜ୍ଞାନିକ ମଧ୍ୟ ଈଶ୍ୱରଙ୍କ ଅଦୃଷ୍ଟ ଶକ୍ତି ଉପରେ ବିଶ୍ୱାସ କରିଥାନ୍ତି । ଧର୍ମ ଏକ ଅଦୃଶ୍ୟ ଶକ୍ତି ହେଲେହେଁ ବିଜ୍ଞାନକୁ ବହୁ କ୍ଷେତ୍ରରେ ନିୟନ୍ତ୍ରଣ କରିବାର ପ୍ରମାଣ ରହିଛି ।

ମାନବସମାଜର ସୁସ୍ଥ ବିକାଶ ପାଇଁ ଉଭୟ ଧର୍ମ ଓ ବିଜ୍ଞାନର ଗୁରୁତ୍ୱପୂର୍ଣ୍ଣ ଭୂମିକା ବିଦ୍ୟମାନ । ମଣିଷର ଅଙ୍ଗ ପକ୍ଷର ହିତ ସାଧନ କରେ ବିଜ୍ଞାନ; ମାତ୍ର ଆତ୍ମପକ୍ଷର ହିତ ସାଧନ

କରିଥାଏ ଧର୍ମ । ମଣିଷ ବଞ୍ଚି ରହିବାକୁ ହେଲେ ତା'ର ଉଭୟ ଅଙ୍ଗ ଓ ଆତ୍ମା ରହିବା ଆବଶ୍ୟକ । ଅନୁରୂପଭାବେ ପୃଥିବୀକୁ ଶୁଭ୍ର ସୁନ୍ଦର କରିବାକୁ ହେଲେ ଉଭୟ ଧର୍ମ ଓ ବିଜ୍ଞାନ ପାଖାପାଖି ଅନ୍ତରଙ୍ଗ ଭାବେ ଗତି କରିବା ମଧ ଆବଶ୍ୟକ । ଧର୍ମ ଏବଂ ବିଜ୍ଞାନ-ଉଭୟର ଲକ୍ଷ୍ୟ ସତ୍ୟ ପ୍ରତିଷ୍ଠା । ବିଜ୍ଞାନ ମଣିଷ ମନରୁ ସମସ୍ତ ସୌକୁମାର୍ଯ୍ୟ ଓ ମାନବିକତା ବୋଧର ଅବସାନ ଘଟାଇ ତାକୁ ଏକ ଯନ୍ତ୍ରରେ ପରିଣତ କରିଦେଇଛି । ସେଥିପାଇଁ ସେ ବେଳେ ବେଳେ ପୃଥିବୀକୁ ଧ୍ୱଂସ କରିବାର ସ୍ୱପ୍ନ ଦେଖୁଛି । ଏ କ୍ଷେତ୍ରରେ ଧର୍ମ ସେହି ମଣିଷ ଅନ୍ତରରେ ସ୍ନେହ ଏବଂ ପ୍ରେମଭାବ ଉଦ୍ରେକ କରାଇ ତାକୁ ଧ୍ୱଂସ ପଥରୁ ନିବୃତ୍ତ କରାଉଛି । ସମାଜରେ ସମସ୍ତଙ୍କର ବଞ୍ଚିରହିବାର ଅଧିକାର ଅଛି ବୋଲି ତା' ମନରେ ବିଶ୍ୱାସ ସୃଷ୍ଟି କରୁଛି । ମଣିଷ ମନରେ ଆଧାତ୍ମିକ ଭାବର ଜାଗରଣ ହେଲେ ବିଶ୍ୱ ସୁନ୍ଦର ଓ କମନୀୟ ହୋଇଉଠେ । ସେହିପରି ଅନେକ ସମୟରେ କୁସଂସ୍କାର ଓ ଅନ୍ଧବିଶ୍ୱାସ ସମାଜ ଜୀବନକୁ ପଙ୍ଗୁ ଓ ସ୍ଥାଣୁ କରି ଦେଉଥିବା ସମୟରେ ବିଜ୍ଞାନ ଏହାର ସତ୍ୟ ଓ ବାସ୍ତବ ଦିଗ ପ୍ରତି ମଣିଷ ମନରେ ସଂଶୟ ସୃଷ୍ଟି କରାଇଥାଏ । ଯେଉଁଥିପାଇଁ ବର୍ତ୍ତମାନ ଆମ ସମାଜରୁ ବହୁପରିମାଣରେ କୁସଂସ୍କାର ଦୂରୀଭୂତ ହୋଇପାରିଛି । ଏ କ୍ଷେତ୍ରରେ ବିଜ୍ଞାନର ଅବଦାନକୁ କଦାପି ଅସ୍ୱୀକାର କରାଯିବା ଅନୁଚିତ । ଧର୍ମ ଏବଂ ବିଜ୍ଞାନ ଯିଏ ଯେଉଁ ବାଟରେ ଗତି କରୁନା କାହିଁକି ସମାଜର ସାମଗ୍ରିକ ବିକାଶ ଉଭୟର ଧେୟ ହେବା ଆବଶ୍ୟକ ।

ନିର୍ଦ୍ଦିଷ୍ଟ ସତ୍ୟରେ ଉପନୀତ ହେବା ଉଭୟର ଲକ୍ଷ୍ୟ ହୋଇଥିବାରୁ ସମାଜରେ ଧର୍ମ ଏବଂ ବିଜ୍ଞାନର ସମଭୂମିକା ବିଦ୍ୟମାନ । ଶାନ୍ତି ଓ ପ୍ରଗତି ପ୍ରତ୍ୟେକ ମଣିଷର ଲକ୍ଷ୍ୟ । ଧର୍ମ ମଣିଷ ମନରେ ଶାନ୍ତି ଭରି ଦେଉଥିବା ସମୟରେ ବିଜ୍ଞାନ ତାକୁ ପ୍ରଗତି ପଥରେ ଗତି କରାଇଥାଏ । ମଣିଷର କୁପ୍ରବୃତ୍ତିକୁ ଦମନ କରିବା କ୍ଷେତ୍ରରେ ଧର୍ମର ଯେପରି ଭୂମିକା ରହିଛି, ମଣିଷ ମନ ମଧ୍ୟରୁ କୁସଂସ୍କାର ଦୂରୀଭୂତ କରିବା କ୍ଷେତ୍ରରେ ବିଜ୍ଞାନର ଅନୁରୂପ ଭୂମିକା ରହିଛି । ବିଜ୍ଞାନ ଶରୀରକୁ ଓ ମନକୁ ଆନନ୍ଦ ପ୍ରଦାନ କରୁଥିବା ସମୟରେ ଧର୍ମ ଆତ୍ମାକୁ ଆହ୍ଲାଦ ଦେଇଥାଏ । ଏହି ଦୃଷ୍ଟିରୁ ଧର୍ମ ଏବଂ ବିଜ୍ଞାନ ପରସ୍ପରର ପରିପନ୍ଥୀ ନୁହନ୍ତି, ବରଂ ପରିପୂରକ । ତୁଳାଦଣ୍ଡର ଦୁଇପାର୍ଶ୍ୱରେ ଧର୍ମ ଏବଂ ବିଜ୍ଞାନ ରହି ସମାଜକୁ ସମତୁଳନ କରୁଛନ୍ତି, ଯାହାଦ୍ୱାରା ସମାଜରୂପକ ନିକିତି ଭାରସାମ୍ୟ ରକ୍ଷା କରି ଏଯାବତ୍ ତିଷ୍ଠି ରହିଛି ।

●

# ଚଳଚ୍ଚିତ୍ର ଓ ଆଧୁନିକ ଜଗତ

**(ଉପକ୍ରମ, ଚଳଚ୍ଚିତ୍ର ସୃଷ୍ଟିର ଇତିହାସ, ଆଧୁନିକ ଯୁଗରେ ଚଳଚ୍ଚିତ୍ରର ସମାଜ ଉପରେ ପ୍ରଭାବ, ଚଳଚ୍ଚିତ୍ରର ସାମାଜିକ ଦିଗ, ଚଳଚ୍ଚିତ୍ରର ଉପଯୋଗିତା, ଉପସଂହାର)**

ବିଜ୍ଞାନ ଆଧୁନିକ ମଣିଷକୁ ସୁଖସ୍ୱାଚ୍ଛନ୍ଦ୍ୟରେ ରଖିବା ପାଇଁ ବହୁ ଉପାଦାନ ଯୋଗାଇ ଦେଇଛି । ମଣିଷ ଶରୀରର ବିକାଶ ଓ ପୁଷ୍ଟି ନିମିତ୍ତ ଯେପରି ବହୁ ପଦାର୍ଥର ଉଦ୍ଭାବନ କରିଛି,

ସେହିପରି ମନକୁ ପ୍ରଫୁଲ୍ଲ ରଖିବା ନିମିତ୍ତ ସୃଷ୍ଟି କରିଛି ରେଡ଼ିଓ, ଗ୍ରାମୋଫୋନ୍, ଟେଲିଭିଜନ ଓ ଚଳଚ୍ଚିତ୍ର ଇତ୍ୟାଦି । କର୍ମକ୍ଳାନ୍ତ ମଣିଷ ଜୀବନରେ ଟିକିଏ ଆନନ୍ଦ ଭରିଦେବା ପାଇଁ ବିଜ୍ଞାନର ଏହି ଅବଦାନର ତୁଳନା ନାହିଁ । ଆଜି ମଣିଷ ଯାହା ଚାହୁଁଛି ବା ଖୋଜୁଛି, ସବୁ ତା'ର ହାତ ପାହାନ୍ତାରେ । ଚଳଚ୍ଚିତ୍ର ମଣିଷ ଜୀବନରେ ଭରିଦେଇଛି ସ୍ଫୂର୍ତ୍ତି ଓ ଆନନ୍ଦ । କ୍ଷଣିକ ପାଇଁ ମାନବକୁ ଏହା ଅନ୍ୟ ଏକ ଜଗତକୁ ଘେନିଯାଏ, ଯେଉଁଠାରେ ଶୋକ ଦୁଃଖ ବା ଜଗତର ଜଞ୍ଜାଳ ନ ଥାଏ । ଅଭିନେତା ଏବଂ ଅଭିନେତ୍ରୀମାନଙ୍କର ପ୍ରାକୃତିକ ଅଭିନୟ ତାକୁ ବିସ୍ମୃତ କରିଥାଏ ଜୀବନଯନ୍ତ୍ରଣା । ମାନବ ଜଗତକୁ ବିଜ୍ଞାନର ଏହି ଅବଦାନ ସବୁବେଳ ପାଇଁ ସ୍ମରଣ ରହିବ । ଆଜି ଚଳଚ୍ଚିତ୍ର ଏପରି ଭାବରେ ମଣିଷକୁ ପ୍ରଲୁବ୍ଧ କରିଛି ଯେ, ପ୍ରତିବର୍ଷ ଏକାଧିକ ଚଳଚ୍ଚିତ୍ର ଆତ୍ମପ୍ରକାଶ କରୁଛି ଓ ଆଶାଜନକ ଭାବରେ ବ୍ୟବସାୟ ସଫଳତା ଲାଭ କରୁଛି । ତେଣୁ ସାଂପ୍ରତିକ ସମାଜରେ ଚଳଚ୍ଚିତ୍ର କେତେ ପରିମାଣରେ ଆଦୃତ ହେଉଛି, ତାହା ଏଥିରୁ ସ୍ପଷ୍ଟ ହୋଇଥାଏ ।

ଆବଶ୍ୟକ ଉଦ୍ଭାବନର ଜନନୀ । ଏହି ଆବଶ୍ୟକତା ଯୋଗୁ ହିଁ ଚଳଚ୍ଚିତ୍ର ସୃଷ୍ଟିଲାଭ କରିଥିଲା । ବୋଧହୁଏ ଫରାସୀ ବୈଜ୍ଞାନିକ ଜୁଲସ ଡବାସଙ୍କ ଦ୍ୱାରା ନିର୍ମିତ ହୋଇଥିବା ବାଇସ୍କୋପ, ଚଳଚ୍ଚିତ୍ର ଉଦ୍ଭାବନର ପ୍ରଥମ ପଦକ୍ଷେପ । ଏହା ୧୮୫୧ ମସିହାର ଘଟଣା । ଏହାପରେ ୧୮୫୪ ମସିହାରେ ଇଂରେଜ ବୈଜ୍ଞାନିକ ଗିଲ୍, ୧୮୭୨ ଖ୍ରୀଷ୍ଟାବ୍ଦରେ ବୈଜ୍ଞାନିକ ଏଡ୍‌ୱାର୍ଡ ମେବ୍ରିଜ, ୧୮୮୨ ଖ୍ରୀ:ରେ ଫରାସୀ ବୈଜ୍ଞାନିକ ଡକ୍ଟର ମୋର, ୧୮୯୧ ମସିହାରେ ବୈଜ୍ଞାନିକ ଏଡ଼ିସନ୍ ଉନ୍ନତ ମାନର କ୍ୟାମେରା ନିର୍ମାଣ କରି ଚଳଚ୍ଚିତ୍ର ପାଇଁ ସରଣୀ ପ୍ରସ୍ତୁତ କରିଥିଲେ । ୧୮୭୭ ଖ୍ରୀ.ରେ ଫୋନୋଗ୍ରାଫ ଏବଂ ୧୯୦୮ ଖ୍ରୀ:ରେ ସାଇଲୋଫୋନ ଉଦ୍ଭାବିତ ହେବା ପରେ ଚଳଚ୍ଚିତ୍ର ନିମିତ୍ତ ସୁଦୃଢ଼ ଭିତ୍ତି ପ୍ରସ୍ତୁତ ହୋଇପାରିଥିଲା । ଏହାର ଉପଯୋଗ କରି ୧୯୩୧ ଖ୍ରୀ. ରେ ଫରାସୀ ବୈଜ୍ଞାନିକ ହେନେରୀ କ୍ରେଟେନ ସିନେମାସ୍କୋପ ଉଦ୍ଭାବନ କଲେ । ତତ୍ପରେ ସବାକ୍ ଚଳଚ୍ଚିତ୍ର ଧୀରେ ଧୀରେ ବିକାଶର ପଥରେ ପାଦ ଦେଇ ଆଜି ଶୀର୍ଷସୀମାରେ ଉପନୀତ ହୋଇଛି । ଭାରତରେ ପ୍ରଥମେ ୧୯୧୩ ଖ୍ରୀ. ରେ ଦାଦାସାହେବ ଫାଲକେ 'ହରିଶ୍ଚନ୍ଦ୍ର' ନାମରେ ପ୍ରଥମ ନିର୍ବାକ୍ ଚଳଚ୍ଚିତ୍ର ପ୍ରସ୍ତୁତ କରିଥିଲେ । ୧୯୩୦ ମସିହାରେ 'ଆଲାମଆରା' ନାମରେ ପ୍ରଥମ ସବାକ୍ ଚଳଚ୍ଚିତ୍ର ପରିବେଷିତ ହୋଇଥିଲା ବମ୍ବେର ଇମ୍ପେରିଆଲ ଫିଲ୍ମ କମ୍ପାନୀ ଦ୍ୱାରା । ଏହାପରେ ଭାରତରେ ସିନେମା ଗୃହ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ବହୁପରିମାଣରେ ଚଳଚ୍ଚିତ୍ରମାନ ପ୍ରସ୍ତୁତ କରାଗଲା । ଓଡ଼ିଆ ଭାଷାର ପ୍ରଥମ ଚଳଚ୍ଚିତ୍ର 'ସୀତାବିବାହ' ମୋହନ ଗୋସ୍ୱାମୀଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିଲା ଓ ଏହା ପ୍ରଥମରୁ ହିଁ ସବାକ୍ ଥିଲା । ଏବେ ଭାରତରେ ଚଳଚ୍ଚିତ୍ର ଏକ ଶିଳ୍ପର ମାନ୍ୟତା ଲାଭ କରିଛି । ବହୁ କମ୍ପାନୀ ବିଭିନ୍ନ ଚଳଚ୍ଚିତ୍ର ନିର୍ମାଣ କରି ପ୍ରଚୁର ଅର୍ଥ ଲାଭ କରୁଛନ୍ତି । ଓଡ଼ିଶା ମଧ୍ୟ ଏ କ୍ଷେତ୍ରରେ ପଛରେ ପଡ଼ି ନାହିଁ । ସମୟ ସହିତ ପାଦ ଦେଇ ଓଡ଼ିଆ ଚଳଚ୍ଚିତ୍ର ନିଜର ଗୁଣାତ୍ମକ ଓ ପରିମାଣାତ୍ମକ ବିକାଶ କରିପାରିଛି ।

ଚଳଚ୍ଚିତ୍ର ସୃଷ୍ଟି ସମୟରେ ଏହାର ପ୍ରଥମ ଉଦ୍ଦେଶ୍ୟ ଥିଲା ସମାଜକୁ ଶିକ୍ଷା ପ୍ରଦାନ । ତେଣୁ ପ୍ରଥମ ସ୍ତରରେ ନିର୍ମାଣ ହୋଇଥିବା ଚଳଚ୍ଚିତ୍ରଗୁଡ଼ିକ ମୁଖ୍ୟତଃ ଥିଲା ଶିକ୍ଷଣୀୟ । ସମାଜରେ ସୁରୁଚି ଓ ଆଦର୍ଶ ସ୍ଥାପନ କରିବା ଥିଲା ଏହାର ଲକ୍ଷ୍ୟ । ପରବର୍ତ୍ତୀ ସମୟରେ ଏହା ଏକ ବ୍ୟବସାୟରେ ପରିଣତ ହେବାରୁ ଏହାର ପ୍ରକୃତ ଉଦ୍ଦେଶ୍ୟ କେତେକାଂଶରେ ବାଧାପ୍ରାପ୍ତ ହେଲା । ସମାଜ ଉପରେ ଚଳଚ୍ଚିତ୍ରର ଗଭୀର ପ୍ରଭାବ ରହିଛି । ପ୍ରାମାଣିକ ଚିତ୍ର ଓ ସମ୍ବାଦ ଚିତ୍ରରେ ବହୁ ଶିକ୍ଷଣୀୟ ବିଷୟ ସ୍ଥାନ ଲାଭ କରିଥାଏ । ଏହାଦ୍ୱାରା ମହତ୍ ବ୍ୟକ୍ତିମାନଙ୍କର ଜୀବନୀ ବିଭିନ୍ନ ଦେଶର ସମ୍ବାଦ, କ୍ରୀଡ଼ା, ଯୋଜନା, କୃଷି ଓ ଶିକ୍ଷା ଆଦି ବିଷୟରେ ବହୁ ଜ୍ଞାତବ୍ୟ ତଥ୍ୟ ମିଳିଥାଏ । ଏହି ଚିତ୍ରଗୁଡ଼ିକ ମଣିଷର ସଂକୀର୍ଣ୍ଣ ଓ ସୀମିତ ଦୃଷ୍ଟିଭଙ୍ଗୀକୁ ପ୍ରସାରିତ କରିବା ସଙ୍ଗେ ସଙ୍ଗେ ଲୋକଶିକ୍ଷା ତଥା ସାଧାରଣ ଜ୍ଞାନ ବୃଦ୍ଧିରେ ସହାୟତା କରିଥାଏ । ସାମ୍ପ୍ରତିକ କାଳରେ ଚଳଚ୍ଚିତ୍ର ଏକ ବ୍ୟବସାୟରେ ପରିଣତ ହୋଇଥିବାରୁ ପ୍ରଯୋଜକମାନେ କେବଳ ମନୋରଞ୍ଜନ ଉଦ୍ଦେଶ୍ୟରେ ଏହାର ନିର୍ମାଣ କରୁଛନ୍ତି । ତେଣୁ ନାୟକନାୟିକାମାନଙ୍କର ରୋମାଣ୍ଟିକ ଦୃଶ୍ୟ, ଯୌନ ଉଦ୍ଦୀପକ ପୋଷାକ ବ୍ୟବହାର, ଅଶ୍ଳୀଳ ସଙ୍ଗୀତ ସଂଯୋଜନା ତଥା ଅର୍ଦ୍ଧ ଉଲଗ୍ନ ଶରୀର ପ୍ରଦର୍ଶନ କରି ରୁଚି ବିକାର ସୃଷ୍ଟି କରୁଛନ୍ତି । ଏହାଦ୍ୱାରା ଯୁବକଯୁବତୀମାନେ ସେମାନଙ୍କର ଅନୁସରଣ କରି ଅନୁରୂପ ବ୍ୟବହାର ପ୍ରଦର୍ଶନ କରୁଛନ୍ତି ଓ ସମାଜର ନୈତିକ ଅଧୋପତନ ଘଟୁଛି । ସିନେମାର ନାୟକନାୟିକାମାନେ ଯେଉଁ ପ୍ରକାର ପୋଷାକ ପରିଧାନ କରୁଛନ୍ତି ଓ ଯେଉଁଭଳି ବାଳ ଡିଜାଇନ୍ କରୁଛନ୍ତି, ଯୁବକଯୁବତୀମାନେ ତା'ର ବିଶ୍ୱସ୍ତ ଅନୁସରଣ କରି ନିଜ ବିକାରଗ୍ରସ୍ତ ରୁଚିକୁ ସମାଜରେ ପ୍ରଦର୍ଶନ କରୁଛନ୍ତି । ଏତଦ୍ ବ୍ୟତୀତ ସିନେମାରେ ପ୍ରଦର୍ଶିତ ହେଉଥିବା ଖୁନ୍, ଡକାୟତି ମଧ୍ୟ ଚପଳମତି ବାଳକବାଳିକାମାନଙ୍କ ଉପରେ ଗଭୀର ପ୍ରଭାବ ପକାଉଛି । ସମ୍ବାଦପତ୍ରମାନଙ୍କରୁ ପ୍ରତିଦିନ କିଛି ନା କିଛି ଏହି ପ୍ରକାର ଘଟଣାମାନ ଦେଖିବାକୁ ମିଳୁଛି । ଏପରିକି ବିଦ୍ୟାଳୟର ଛାତ୍ରମାନେ ମଧ୍ୟ ସିନେମା ଢଙ୍ଗରେ ହତ୍ୟା ଏବଂ ଚୋରି କରୁଥିବାର ପ୍ରମାଣ ରହିଛି । ଏହି ପ୍ରକାର ଦୃଶ୍ୟର ପରିବେଷଣ ସମାଜକୁ କିପରି ଅଧୋପତିତ କରୁଛି, ତାହା ଏଥିରୁ ପ୍ରମାଣିତ । ପୁଣି ଚଳଚ୍ଚିତ୍ରର ବିଷୟବସ୍ତୁ ଆମର ସମାଜ ଓ ସଂସ୍କୃତି ଠାରୁ ଦୂରେଇ ଯାଉଥିବାରୁ ଏଥିରେ ଭାରତୀୟତାର ଗନ୍ଧ ପର୍ଯ୍ୟନ୍ତ ନାହିଁ । ଶସ୍ତା ଆନନ୍ଦ ପ୍ରଦାନ କରିବା ଆଜି ଚଳଚ୍ଚିତ୍ରମାନର ମୁଖ୍ୟ ଉଦ୍ଦେଶ୍ୟ ହୋଇଥିବାରୁ ଏହା ଆମର ସାମାଜିକ ଜୀବନଠାରୁ ଦୂରେଇଯିବା ସଙ୍ଗେ ସଙ୍ଗେ ଜାତୀୟ ସ୍ରୋତରୁ ଯୁବକଯୁବତୀମାନଙ୍କୁ ବିଚ୍ୟୁତ କରୁଛି । ଯୌନ ଉଦ୍ଦୀପକ ଦୃଶ୍ୟ ଯୋଗୁଁ ଯୁବକଯୁବତୀମାନଙ୍କ ଠାରେ ଉଦଗ୍ର କାମଲାଳସା ବୃଦ୍ଧି ପାଉଛି, ଯେଉଁଥିପାଇଁ ଧର୍ଷଣ ଓ ଅପହରଣ ପରି କୁକାର୍ଯ୍ୟମାନ ସଙ୍ଘଟିତ ହେଉଛି । ଦେଶର ଐତିହ୍ୟ ଏବଂ ପରମ୍ପରା ବିଡ଼ମ୍ବିତ ହୋଇପଡୁଥିବାରୁ ସାମାଜିକ ସ୍ଖଳନ ଦେଖାଯାଉଛି । ଏ କ୍ଷେତ୍ରରେ ପ୍ରଯୋଜକମାନେ ସତର୍କ ହେଲେ ଏବଂ ଚଳଚ୍ଚିତ୍ର ସେନ୍ସର୍ ବୋର୍ଡ ଅଧିକ ମାତ୍ରାରେ ସଚେତନ ହେଲେ ସୁରୁଚିସମ୍ପନ୍ନ ଚଳଚ୍ଚିତ୍ରମାନ ନିର୍ମିତ ହୋଇପାରନ୍ତା ଏବଂ ସମାଜର ଅଶେଷ ମଙ୍ଗଳ ସାଧିତ ହୁଅନ୍ତା ।

ଉଦ୍ଦେଶ୍ୟ ଦୃଷ୍ଟିରୁ ବିଚାର କଲେ ଚଳଚ୍ଚିତ୍ରର ସାମାଜିକ ଦିଗ ଅତୀବ ମହତ୍ତ୍ୱପୂର୍ଣ୍ଣ । ଏହା ମଣିଷ ମନରେ ଆନନ୍ଦ ଭରିଦେବା ସଙ୍ଗେ ସଙ୍ଗେ ସମାଜରେ ଅନେକ ଶିକ୍ଷଣୀୟ ବିଷୟ ପ୍ରଚାର କରିଥାଏ । ଜନଶିକ୍ଷା କ୍ଷେତ୍ରରେ ଏହା ଏକ ଉପଯୁକ୍ତ ମାଧ୍ୟମ । ଚଳଚ୍ଚିତ୍ରରେ ବହୁ ନ ଦେଖିଥିବା ବସ୍ତୁ ଯଥା – ପାହାଡ଼, ପର୍ବତ, ନଦନଦୀ, ମରୁଭୂମି, ବିଭିନ୍ନ ଦେଶ – ଯାହା ଜଣେ ମଣିଷ ଜୀବନକାଳ ମଧ୍ୟରେ ଦେଖିବାର ସ୍ୱପ୍ନ ସୁଦ୍ଧା କରିନଥାଏ, ଏଥିରୁ ତାହା ଦର୍ଶନ କରି ସେହିସବୁ ସ୍ଥାନ ଓ ଅନ୍ୟାନ୍ୟ ପଦାର୍ଥ ସମ୍ପର୍କରେ ପ୍ରତ୍ୟକ୍ଷ ଜ୍ଞାନ ଲାଭ କରିଥାଏ । ବହୁ ରାଜନୀତିଜ୍ଞ, କୂଟନୀତିଜ୍ଞ, ମହାପୁରୁଷମାନଙ୍କୁ ଚଳଚ୍ଚିତ୍ରରେ ଦେଖିବାକୁ ମିଳୁଥିବାରୁ ବ୍ୟକ୍ତିବିଶେଷଙ୍କର ନୈତିକ ମୂଲ୍ୟ ବୃଦ୍ଧି ପାଇଥାଏ । ସରକାରଙ୍କ ଶିଶୁ ଚଳଚ୍ଚିତ୍ର ବିଭାଗ ଶିଶୁ ଉପଯୋଗୀ ଚଳଚ୍ଚିତ୍ର ନିର୍ମାଣ କରି କିଶୋରମାନଙ୍କର ବହୁ ଉପକାର ସାଧନ କରିଥାଏ । ସମ୍ବାଦ ସମୀକ୍ଷା ବିଭାଗ ତଥା ପ୍ରାମାଣିକ ଚିତ୍ର ବିଭାଗ ବହୁ ମୂଲ୍ୟବାନ୍ ଚିତ୍ର ଏବଂ ସମ୍ବାଦ ପରିବେଷଣ କରୁଥିବାରୁ ଜନସାଧାରଣଙ୍କ ଦୃଷ୍ଟିଭଙ୍ଗୀ ପ୍ରସାରିତ ହେବା ସଙ୍ଗେ ସଙ୍ଗେ ଅନେକ ଶିକ୍ଷଣୀୟ ବିଷୟ ଜାଣିବାକୁ ମିଳିଥାଏ । ପୌରାଣିକ ଏବଂ ଐତିହାସିକ ଚଳଚ୍ଚିତ୍ର ଆମର ପୁରାତନ ଐତିହ୍ୟ, ଜୀବନଧାରା ଏବଂ ସାମାଜିକ ବ୍ୟବସ୍ଥା ସମ୍ପର୍କରେ ଧାରଣା ପ୍ରଦାନ କରିଥାଏ । ଏହି ଦୃଷ୍ଟିରୁ ବିଚାର କଲେ ଉଚ୍ଚମାନର ଚଳଚ୍ଚିତ୍ରଗୁଡ଼ିକର ସାମାଜିକ ଦିଗ ଯେ ବହୁ ଉନ୍ନତ, ଏଥିରେ ଦ୍ୱିମତ ହେବାର କିଛି ନାହିଁ ।

ସାଂପ୍ରତିକ ସମାଜରେ ଚଳଚ୍ଚିତ୍ରରେ ଉପଯୋଗିତା ବହୁ ପରିମାଣରେ ଉପଲବ୍ଧ ହେଉଛି । କର୍ମକ୍ଳାନ୍ତ ମଣିଷର ମନରେ ଏହା ଭରି ଦେଇଥାଏ ଆନନ୍ଦ । ଦେଶ ବିଦେଶର ବିଭିନ୍ନ ଖବର ଏଥିରୁ ଜାଣିବାକୁ ମିଳୁଥିବାରୁ ଜନସାଧାରଣଙ୍କ ଜ୍ଞାନର ପରିସର ଅଭିବୃଦ୍ଧି ଘଟିଥାଏ । ଏତଦ୍ ବ୍ୟତୀତ ଚଳଚ୍ଚିତ୍ରର ଏକ ପ୍ରତ୍ୟକ୍ଷ ପ୍ରଭାବ ସମାଜ ଉପରେ ପଡୁଥିବାରୁ ସମାଜକୁ ସଂଗଠିତ କରିବା କ୍ଷେତ୍ରରେ ଏହାର ଭୂମିକା ମଧ୍ୟ ଗୁରୁତ୍ୱପୂର୍ଣ୍ଣ । ଏଥିରେ ବିଭିନ୍ନ ବିଜ୍ଞାପନମାନ ପ୍ରଚାରିତ ହେଉଥିବାରୁ ନୂଆ ନୂଆ ଉଦ୍ଭାବନ ବିଷୟରେ ଜାଣି ହୋଇଥାଏ । ମାତ୍ର ଅନେକ ସମୟରେ ଏଥିରେ କୁରୁଚିର ପ୍ରଦର୍ଶନ କରାଯାଉଥିବାରୁ ସମାଜରେ ତା'ର କୁପ୍ରଭାବ ପଡ଼ିଥାଏ । ଏହି ଦୃଷ୍ଟିରୁ କୌଣସି ନୂତନ ଚଳଚ୍ଚିତ୍ର ପ୍ରେକ୍ଷାଳୟମାନଙ୍କରେ ପ୍ରଦର୍ଶିତ ହେବା ପୂର୍ବରୁ ଆମର ଚଳଚ୍ଚିତ୍ର ପରୀକ୍ଷକ ସମିତି ସେଗୁଡ଼ିକୁ ଭଲଭାବରେ ଯାଞ୍ଚ କରିବା ଉଚିତ । ଯେଉଁ ଦୃଶ୍ୟଗୁଡ଼ିକର ସମାଜ ଉପରେ କୁପ୍ରଭାବ ପକାଇବାର ସମ୍ଭାବନା ଅଛି ବୋଲି ଅନୁଭୂତ ହେବ, ତାହାକୁ କାଟିଦେବା ଆବଶ୍ୟକ । ପୁନରାୟ ଚଳଚ୍ଚିତ୍ରରେ ସଂସ୍କାର ଆଣିବା ପାଇଁ ସମାଜ ଉପଯୋଗୀ ବିଷୟବସ୍ତୁକୁ ଗୁରୁତ୍ୱ ପ୍ରଦାନ କରିବା ଉଚିତ । ରୁଚିପୂର୍ଣ୍ଣ ଚଳଚ୍ଚିତ୍ର ଉଭୟ ସମାଜ ଓ ବ୍ୟକ୍ତିର ମଙ୍ଗଳ ସାଧନ କରିଥାଏ ।

ଆଜି ଆମ ସମାଜରେ ଚଳଚ୍ଚିତ୍ରର ବହୁଳ ପ୍ରଭାବ ପରିଲକ୍ଷିତ ହୋଇଥାଏ । ବିଜ୍ଞାନର ଏହି ଅବଦାନଟି ଅତୀବ ମୂଲ୍ୟବାନ ହେଲେହେଁ, ବେଳେ ବେଳେ ଯେପରି ବିଜ୍ଞାନର ଧ୍ୱଂସକାରୀ ରୂପ ସମାଜର କ୍ଷତି ସାଧନ କରିଥାଏ, ସେହିପରି ନଗ୍ନ ଓ କୁରୁଚି ସମ୍ପନ୍ନ ଚଳଚ୍ଚିତ୍ର ସମାଜର

ଅଧୋଗତି ଘଟାଇଥାଏ ଏବଂ ବ୍ୟକ୍ତିର ଚରିତ୍ର ହାନି କରାଇଥାଏ । ବିଜ୍ଞାନକୁ ସୁମାର୍ଗରେ ବିନିଯୋଗ କରିପାରିଲେ ଏହା ମାନବ ସମାଜର କଲ୍ୟାଣରେ ବ୍ରତୀ ହୋଇଥାଏ । ଅନୁରୂପ ଭାବରେ ଆଦର୍ଶ ଓ ସୁରୁଚିସମ୍ପନ୍ନ ଚଳଚ୍ଚିତ୍ର ବ୍ୟକ୍ତିର ବିକାଶ କରିବା ସହିତ ସମାଜକୁ ନୂତନ ଦିଗ୍‌ଦର୍ଶନ ପ୍ରଦାନ କରିଥାଏ । ସେହି କାରଣରୁ ଆମର ଚଳଚ୍ଚିତ୍ରଗୁଡ଼ିକ ସମାଜରେ ଆଦର୍ଶ ପ୍ରତିଷ୍ଠା ପାଇଁ ନିଜକୁ ନିୟୋଜିତ କରିବା ସର୍ବାଦୌ ଆବଶ୍ୟକ ।

●

# ଆଧୁନିକ ଯୁଗରେ ବେତାର

**(ଉପକ୍ରମ, ବେତାର ଉଦ୍ଭାବନ ରହସ୍ୟ, ମଣିଷ ଜୀବନର ବିଭିନ୍ନ କ୍ଷେତ୍ରରେ ବେତାରର ଉପଯୋଗିତା, କେତେକ କ୍ଷେତ୍ରରେ ବେତାରର ଦୁରୁପଯୋଗ, ଆଧୁନିକ ଜଗତ ଓ ବେତାର, ଉପସଂହାର)**

ଉନବିଂଶ ଶତାବ୍ଦୀ ମଣିଷକୁ ଦେଇଛି ଅନେକ କିଛି । ବଣଜଙ୍ଗଲର ମଣିଷକୁ ବିଜ୍ଞାନ କରିଛି ସଭ୍ୟ ଶିକ୍ଷିତ । ବିଶ୍ୱକୁ ଗୋଟିଏ ପରିବାରଭୁକ୍ତ କରିବା କ୍ଷେତ୍ରରେ ବିଜ୍ଞାନର ଅବଦାନ ଅତୁଳନୀୟ । ତେଣୁ ବର୍ତ୍ତମାନ ବିଶ୍ୱ ସଂକୁଚିତ ହୋଇପଡ଼ିଛି । ଦୂର ହୋଇଛି ନିକଟ । ସମୟ ଏବଂ ଦୂରତ୍ୱର ବ୍ୟବଧାନ ଘୁଞ୍ଚି ଯାଇଛି । ଏ କ୍ଷେତ୍ରରେ ବେତାର ବା ରେଡ଼ିଓର ଭୂମିକା ଗୁରୁତ୍ୱପୂର୍ଣ୍ଣ । ହଜାର ହଜାର ମାଇଲ ଦୂରର କଥା ବେତାର ସ୍ୱଳ୍ପ ସମୟ ମଧ୍ୟରେ ଆମ ପାଖରେ ପହଞ୍ଚାଇ ଦେଇପାରୁଛି । ବିଶ୍ୱର ବିଭିନ୍ନ ସ୍ଥାନରେ ଘଟୁଥିବା ଘଟଣାବଳୀକୁ ଗୋଟିଏ ମୁହୂର୍ତ୍ତରେ ମଣିଷ ନିକଟରେ ପରିବେଷଣ କରିପାରୁଛି । ଦୁର୍ବିପାକ ଆସିବା ପୂର୍ବରୁ ଏହା ସତର୍କ କରାଇ ଦେଇପାରୁଛି । ମଣିଷର ଅବସାଦଭରା ଜୀବନରେ ଶାନ୍ତିର ପ୍ରଲେପ ଢାଳିପାରୁଛି । ତେଣୁ ବର୍ତ୍ତମାନ ଯୁଗରେ ବେତାରର ଉଦ୍ଭାବନ ନିଶ୍ଚିତ ଭାବରେ ଚମକପ୍ରଦ । ଶିକ୍ଷା, ସାହିତ୍ୟ, କଳା, ସମ୍ବାଦ, ରାଜନୀତି, ଅର୍ଥନୀତି, କୃଷି ମନୋରଞ୍ଜନ-ପ୍ରତ୍ୟେକ କ୍ଷେତ୍ରରେ ବେତାରର ଭୂମିକା ଗୁରୁତ୍ୱପୂର୍ଣ୍ଣ । ମାନବ ସମାଜକୁ ବିଜ୍ଞାନର ଏହି ବିଶିଷ୍ଟ ଅବଦାନର ତୁଳନା ନାହିଁ ।

ଉନବିଂଶ ଶତକରେ ବିଶ୍ୱର ଏହି ଚମକପ୍ରଦ ଯନ୍ତ୍ରଟିର ଉଦ୍ଭାବନ ହୋଇଥିଲା । ଶବ୍ଦ ତରଙ୍ଗରେ ଖେଳି ବୁଲୁଥିବା ଧ୍ୱନିମାନଙ୍କୁ ଏହି ଯନ୍ତ୍ର ଟାଣିଆଣି ମଣିଷର କର୍ଣ୍ଣଗହ୍ୱରରେ ପ୍ରବେଶ କରାଇଥାଏ । କୌଣସି ତାରର ସାହାଯ୍ୟ ବିନା ଏହାକୁ ଧରି ରଖି ହେଉଥିବାରୁ ଏହାର ନାମ ବେତାର । ୧୮୯୫ ମସିହାରେ ଇଟାଲିର ବୈଜ୍ଞାନିକ ମାର୍କୋନି ଏହାର ଉଦ୍ଭାବନ କରିଥିଲେ । ସମୁଦ୍ରର ଜଳତରଙ୍ଗ ପରି ମଣିଷର କଣ୍ଠରୁ ଉଚ୍ଚାରିତ ସ୍ୱର ପବନରେ ଭାସି ବୁଲୁଥାଏ । ବିଦ୍ୟୁତ ତରଙ୍ଗର ରହସ୍ୟ ଜଣାପଡ଼ିବା ପରେ, ବୈଦ୍ୟୁତିକ ପ୍ରକ୍ରିୟାରେ ମଣିଷର କଣ୍ଠସ୍ୱରକୁ ଆୟତ୍ତ କରିବାର କୌଶଳ ଉଦ୍ଭାବନ ହୋଇଥିଲା । ଏହି ଶବ୍ଦ ରହସ୍ୟର ଉଦ୍ଭାବକ ମାର୍କୋନି ଏବଂ ତାଙ୍କର ମୂଲ୍ୟବାନ ସୃଷ୍ଟି ବେତାର । ପରବର୍ତ୍ତୀ ସମୟରେ ଏହା ବିଭିନ୍ନ

ପରିବର୍ତ୍ତନ ମଧ୍ୟ ଦେଇ ଆଜିର ରେଡ଼ିଓରେ ପରିଣତ ହୋଇଛି । ସଂପ୍ରତି ମଣିଷ ଜୀବନର ଏକ ଅନ୍ତରଙ୍ଗ ସଖାରୂପେ ବେତାର କାର୍ଯ୍ୟ କରୁଛି । ଏହା ବ୍ୟତିରେକେ ମଣିଷ ଜୀବନ ବର୍ତ୍ତମାନ ଅଧୁରା । କି ଶିକ୍ଷିତ, କି ଅଶିକ୍ଷିତ ସମସ୍ତଙ୍କ ନିକଟରେ ବେତାର ଆଜି ପ୍ରିୟ । ପୁଣି ଏହା ଏକ ବିଳାସର ସାମଗ୍ରୀ ନହୋଇ ଅତ୍ୟାବଶ୍ୟକ ସାମଗ୍ରୀର ମର୍ଯ୍ୟାଦା ଲାଭ କରିଛି । ଇଂଲଣ୍ଡରେ ପ୍ରଥମେ ବେତାର କେନ୍ଦ୍ର ପ୍ରତିଷ୍ଠିତ ହୋଇ ବିଭିନ୍ନ କାର୍ଯ୍ୟକ୍ରମ ପ୍ରସ୍ତୁତ ହୋଇଥିଲା । ପରବର୍ତ୍ତୀ ସମୟରେ ଏହାର ଲୋକପ୍ରିୟତା ଓ ଆବଶ୍ୟକତାକୁ ଆଖି ଆଗରେ ରଖି ବିଶ୍ୱର ବିଭିନ୍ନ ସ୍ଥାନରେ ବେତାର କେନ୍ଦ୍ର ପ୍ରତିଷ୍ଠିତ ହେଲା ।

ବର୍ତ୍ତମାନ ମଣିଷ ଜୀବନର ବିଭିନ୍ନ କ୍ଷେତ୍ରରେ ବେତାର ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିଛି । ସକାଳଠାରୁ ରାତ୍ରି ପର୍ଯ୍ୟନ୍ତ ଏଥିରେ ବିଭିନ୍ନ କାର୍ଯ୍ୟକ୍ରମ ପ୍ରଚାର କରାଯାଇ ମାନବର ବହୁବିଧ ଉପକାର ସାଧନ କରୁଛି । ଜାତୀୟ ଏବଂ ଆନ୍ତର୍ଜାତିକ କ୍ଷେତ୍ରରେ ଘଟୁଥିବା ବିଭିନ୍ନ ଘଟଣାବଳୀକୁ 'ସମ୍ବାଦ' ଭାବରେ ଏହା ଜନସାଧାରଣଙ୍କ ନିକଟରେ ପହଞ୍ଚାଉଥିବାରୁ ଦେଶ ବିଦେଶର ବିଭିନ୍ନ ଘଟଣା ସହିତ ମଣିଷ ଅବଗତ ହୋଇପାରୁଛି । ଏହାଦ୍ୱାରା ତା'ର ସାଧାରଣ ଜ୍ଞାନ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଦେଶବିଦେଶରେ ଆୟୋଜିତ ବିଭିନ୍ନ କାର୍ଯ୍ୟକ୍ରମ ସମ୍ବନ୍ଧରେ ଜାଣିପାରୁଛି । ରାଜନୀତିକ ଘଟଣାବଳୀର ପ୍ରଚାର ଯୋଗୁଁ ତା'ର ରାଜନୀତିକ ଚେତନା ଜାଗ୍ରତ ହେଉଛି । ମହାଶୂନ୍ୟରେ ରହି କିମ୍ବା ସମୁଦ୍ରର ଗଭୀର ଜଳରାଶିରେ ରହି ମଧ୍ୟ ସେ ସମସ୍ତ ଖବର ଏହି ବେତାର ଦ୍ୱାରା ରଖିପାରୁଛି । ସକାଳ ଠାରୁ ବିଳମ୍ବିତ ରାତ୍ରି ପର୍ଯ୍ୟନ୍ତ ବେତାର ବିଭିନ୍ନ ସମୟରେ ସମ୍ବାଦ ପରିବେଷଣ କରି ଦେଶବିଦେଶରେ ପ୍ରତି ମୂହୂର୍ତ୍ତରେ ଘଟୁଥିବା ଘଟଣାବଳୀ ସମ୍ପର୍କରେ ଆମ୍ଭକୁ ଅବଗତ କରାଉଛି । ଯୁଦ୍ଧ ସମୟରେ ଏହାର ବାର୍ତ୍ତା ପ୍ରଚାର କରି ଲୋକମାନଙ୍କ ମନରେ ଜାତୀୟ ଚେତନା ଜାଗ୍ରତ କରୁଛି । ଅନେକ ଦୂରରେ ଗୀତ ଗାଉଥିବା କଳାକାରମାନଙ୍କୁ ମଣିଷ ନିଜ ଘର ଭିତରେ ବସି ଶୁଣିପାରେ । ସେମାନଙ୍କ ସୁମଧୁର କଣ୍ଠସ୍ୱର ମଣିଷ ମନରୁ କ୍ଳାନ୍ତି ଓ ଅବସାଦକୁ ଦୂର କରି ତା' ମନରେ ଭରିଦିଏ ସ୍ଫୂର୍ତ୍ତି ଓ ଆନନ୍ଦ । ନୂତନ କଳାକାରମାନଙ୍କ ପାଇଁ ସଙ୍ଗୀତର ବିଭିନ୍ନ କାର୍ଯ୍ୟକ୍ରମ ପ୍ରଚାର କରି, ସେମାନଙ୍କର ସଙ୍ଗୀତ ଶିକ୍ଷା ପିପାସା ପୂରଣ କରେ । ଘର ଭିତରେ ଥାଇ ବିଶ୍ୱର ଯେକୌଣସି ପ୍ରାନ୍ତରେ ହେଉଥିବା ଖେଳ ଖବର ଶୁଣିପାରେ । ସାହିତ୍ୟ ଏବଂ କଳା ସମ୍ପର୍କୀୟ ବିଭିନ୍ନ କାର୍ଯ୍ୟକ୍ରମ ପରିବେଷିତ ହେଉଥିବାରୁ ଏବଂ ସେହି ସେହି କ୍ଷେତ୍ରରେ ପ୍ରବୀଣ ବ୍ୟକ୍ତିମାନେ ଅଂଶଗ୍ରହଣ କରୁଥିବାରୁ ମଣିଷର ବୌଦ୍ଧିକ ଜ୍ଞାନ ବୃଦ୍ଧି ପାଇଥାଏ ବେତାର ଶ୍ରବଣ ଦ୍ୱାରା । କୃଷକମାନଙ୍କ ପାଇଁ ମଧ୍ୟ ପଲ୍ଲୀ କାର୍ଯ୍ୟକ୍ରମରେ କୃଷି ସମ୍ପର୍କୀୟ ବିଭିନ୍ନ ତଥ୍ୟ ପ୍ରଚାର କରାଯାଇଥାଏ । କେଉଁ ସମୟରେ କେଉଁ ଚାଷ କିପରି କରିବାକୁ ହେବ, କେଉଁ ପ୍ରକାର ସାର ଓ କୀଟନାଶକ ଔଷଧ ପ୍ରୟୋଗ କରିବାକୁ ପଡ଼ିବ ଏବଂ କେଉଁ ବିହନ ଅଧିକ ଅମଳକ୍ଷମ, ସେ ସମ୍ପର୍କରେ ବିଶଦ ବିବରଣୀ ଏହି କାର୍ଯ୍ୟକ୍ରମରେ ପ୍ରଦତ୍ତ ହୋଇଥାଏ । ଏହାଛଡ଼ା ଚିଙ୍ଗୁଡ଼ିଚାଷ, ବିଭିନ୍ନ ମାଛ ଚାଷ, ଫଳଚାଷ ଆଦି ସମ୍ବନ୍ଧରେ ମଧ୍ୟ ବିବରଣୀ

ପ୍ରଦାନ କରାଯାଇଥାଏ । କୃଷି ପାଇଁ ସରକାରଙ୍କ ଦ୍ୱାରା ଗୃହୀତ ବିଭିନ୍ନ କୃଷି ନୀତି, ଯୋଜନା ଓ କୃଷି ଋଣ ବିଷୟରେ ଏଥିରେ ସୂଚନା ଦିଆଯାଇଥାଏ । ସାଂସ୍କୃତିକ ଓ ସାମାଜିକ ଚେତନା ସୃଷ୍ଟି ନିମିତ୍ତ ବେତାରରେ କେତେକ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଇଥାଏ । ଦେଶର ଜନସାଧାରଣ ମଧ୍ୟରେ ରାଜନୀତିକ ଚିନ୍ତାଧାରା ସୃଷ୍ଟି ପାଇଁ ଏହାର ଭୂମିକା ଗୁରୁତ୍ୱପୂର୍ଣ୍ଣ । ବିଜ୍ଞାନର ନୂତନ ଆବିଷ୍କାର ଓ ଉଦ୍ଭାବନ ସମ୍ପର୍କରେ ସୂଚନା ଦିଆଯାଉଥିବାରୁ ଏହା ଜନସାଧାରଣଙ୍କ ଅଶେଷ ଉପକାର ସାଧନ କରିଥାଏ । ବିଭିନ୍ନ ଚିକିତ୍ସକଙ୍କ ସହିତ ଆଲୋଚନା ପ୍ରସ୍ତୁତ ହେବା ଦ୍ୱାରା ବିଭିନ୍ନ ରୋଗ ଓ ତା'ର ନିରାକରଣ ସମ୍ପର୍କରେ ଆମର ଜ୍ଞାନ ଲାଭ ହୋଇଥାଏ । ସଦ୍ୟ ଉଦ୍ଭାବିତ ନୂତନ ଔଷଧମାନଙ୍କ ବିଷୟରେ ମଧ୍ୟ ଜାଣିପାରିଥାଉ । ଶିକ୍ଷାର ପ୍ରସାର ଓ ବିକାଶ କ୍ଷେତ୍ରରେ ବେତାର ଭୂମିକା ମହତ୍ତ୍ୱପୂର୍ଣ୍ଣ । ଏଥିରେ ବିଭିନ୍ନ ଶିକ୍ଷାକାର୍ଯ୍ୟକ୍ରମ ପ୍ରଚାର କରାଯାଇଥାଏ । ପ୍ରୌଢ଼ଶିକ୍ଷା ବା ସାର୍ବଜନୀନ ଶିକ୍ଷାର ପ୍ରସାର ପାଇଁ ଏହା ଏକ ଉତ୍କୃଷ୍ଟ ଗଣମାଧ୍ୟମ । 'ଶିଶୁ ସଂସାର' ରେ ଶିଶୁମାନଙ୍କ ପାଇଁ ବହୁ କାର୍ଯ୍ୟକ୍ରମ ପ୍ରସ୍ତୁତ ହୋଇଥାଏ । ଶିଶୁମାନଙ୍କ ମନୋରଞ୍ଜନ ଓ ସେମାନଙ୍କର ବୌଦ୍ଧିକ ବିକାଶ ଏହି କାର୍ଯ୍ୟକ୍ରମର ବିଶେଷ ଲକ୍ଷ୍ୟ ହୋଇଥିବାରୁ ଆମର ଶିଶୁମାନେ ଏଥିରୁ ବହୁପରିମାଣରେ ଲାଭବାନ୍ ହୋଇଥାନ୍ତି । ନୂତନ କଳାକାରମାନଙ୍କର କଳା ପରିବେଷଣ କରି ସେମାନଙ୍କୁ ଜନସାଧାରଣ ସହିତ ପରିଚିତ କରିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥାଏ ଏହି ବେତାର ବିଭାଗ । ନାଟକ ପରିବେଷଣ ଦ୍ୱାରା ନାଟ୍ୟପିପାସୁମାନେ ଆନନ୍ଦ ଲାଭ କରିଥାନ୍ତି । ଲଳିତକଳାର ବିକାଶ କ୍ଷେତ୍ରରେ ବେତାରର ଭୂମିକା ସର୍ବାଦୌ ଉଲ୍ଲେଖଯୋଗ୍ୟ । ଏତଦ୍‌ବ୍ୟତୀତ ପାଣିପାଗ ସମ୍ପର୍କରେ ପୂର୍ବ ସୂଚନା ପ୍ରଦାନ କରି ଚାଷୀ ଏବଂ ଶ୍ରମଜୀବୀମାନଙ୍କୁ ଏହା ସତର୍କ କରାଇ ଦେଇଥାଏ । କୌଣସି ସ୍ଥାନରେ ଘଟୁଥିବା ଘଟଣା, ଦୁର୍ଘଟଣା, ବିଭିନ୍ନ ପରିବହନର ସମୟ ନିର୍ଦ୍ଦିଷ୍ଟ ସମ୍ବନ୍ଧରେ ବହୁ ଜ୍ଞାତବ୍ୟ ତଥ୍ୟ ପ୍ରଦାନ କରିଥାଏ । ନିଯୁକ୍ତି ସୂଚନା ଦ୍ୱାରା ବେକାର ବସିଥିବା ଯୁବକଯୁବତୀମାନଙ୍କର ମଙ୍ଗଳ ସାଧନ ହୋଇଥାଏ । ତେଣୁ ସାମ୍ପ୍ରତିକ ମଣିଷ ସମାଜ ପାଇଁ ବେତାର ଯେ ଆଜି ଏକ ଅତ୍ୟାବଶ୍ୟକ ବସ୍ତୁରେ ପରିଣତ ହୋଇଛି, କହିବା ଅନାବଶ୍ୟକ ମାତ୍ର ।

କେତେକ କ୍ଷେତ୍ରରେ ବେତାରର ଦୁରୂପଯୋଗ ଏହାର ମହତ୍ତ୍ୱହାନି କରୁଛି । ଏହା ଏକ ଗଣମାଧ୍ୟମ ହୋଇଥିବାରୁ ବିଭିନ୍ନ ଅତିରଞ୍ଜିତ ସମାଚାର ପ୍ରଚାର କରାଯାଇ ଜନମାନସକୁ ବିଭ୍ରାନ୍ତ କରିବାର ଉଦ୍ୟମ ହେଉଛି । ଏବେ ସୁଦ୍ଧା ଏହା ସମ୍ପୂର୍ଣ୍ଣ ସରକାରୀ ନିୟନ୍ତ୍ରଣରୁ ମୁକ୍ତ ହୋଇ ନ ଥିବାରୁ ସରକାରରେ ଥିବା ରାଜନୀତିକ ବ୍ୟକ୍ତିବିଶେଷ ନିଜ ପାଇଁ ତଥା ଦଳ ପାଇଁ ବିଭିନ୍ନ କାର୍ଯ୍ୟକ୍ରମ ପ୍ରଚାର କରୁଛନ୍ତି । ବହୁ ମିଥ୍ୟା ସମ୍ବାଦ ପରିବେଷଣ କରି ଲୋକମାନଙ୍କ ମନରେ ସନ୍ଦେହ ଜାତ କରାଉଛନ୍ତି । ନିଜର ତଥା ଦଳର ଭାବମୂର୍ତ୍ତିକୁ ନିଷ୍କଳଙ୍କ ରଖିବା ପାଇଁ କୌଣସି ଲୋକମୁଖୀ ଯୋଜନା ନଥାଇ ମଧ୍ୟ ବିଭିନ୍ନ ଯୋଜନା ସମ୍ପର୍କରେ ପ୍ରଚାର କରୁଛନ୍ତି । ସମୟେ ସମୟେ ବ୍ୟକ୍ତିବିଶେଷଙ୍କ ଚରିତ୍ର ସଂହାର ଏଥିରେ କରାଯାଉଥିବାରୁ, ଏହାର ମର୍ଯ୍ୟାଦା ହାନି ଘଟୁଛି । ବିଜ୍ଞାପନ ମାଧ୍ୟମରେ କେତେକ ମିଥ୍ୟା ଆର୍ଥନୀତିକ ସଂସ୍ଥା

ସମ୍ବନ୍ଧରେ ସୂଚନା ଦିଆଯାଉଥିବାରୁ ଅଧିକ ଲାଭ ଉଦ୍ଦେଶ୍ୟରେ ସରଳ ଜନସାଧାରଣ ଅର୍ଥ ଜମା କରି ଠକାମିରେ ପଡୁଛନ୍ତି । ଏବେ ଏହି ବେତାର ଗଣମାଧ୍ୟମ ଏକ ବିଜ୍ଞାପନ ସଂସ୍ଥାରେ ପରିଣତ ହୋଇଥିବା ପରି ମନେହେଉଛି । ବିଭିନ୍ନ ବିଜ୍ଞାପନ ପ୍ରଚାରରେ ଏହାର ବହୁ ସମୟ ବ୍ୟୟିତ ହେଉଛି । ଏତଦ୍‌ବ୍ୟତୀତ ଯୋଗ୍ୟବ୍ୟକ୍ତିଙ୍କୁ ବେତାର ବିଭାଗର କର୍ମକର୍ତ୍ତାମାନେ ସେମାନଙ୍କ ବିଭିନ୍ନ କାର୍ଯ୍ୟକ୍ରମରେ ଯୋଗ ଦେବାର ସୁଯୋଗ ପ୍ରଦାନ କରୁନାହାନ୍ତି । ବହୁ ଯୋଗ୍ୟବ୍ୟକ୍ତି ଥିଲେ ହେଁ, ଚିହ୍ନା ପରିଚୟ ଓ ମୁହଁ ଦେଖି ଏହାର କର୍ମକର୍ତ୍ତାଗଣ ସେମାନଙ୍କର ବହୁ ନିମ୍ନ ମାନର କାର୍ଯ୍ୟକ୍ରମ ପ୍ରଚାର କରୁଛନ୍ତି । ଏହାଦ୍ୱାରା ବେତାରର ଗୁଣାତ୍ମକ ମାନ ହ୍ରାସ ହେଉଛି । ସାହିତ୍ୟ, କଳା ଆଦି ବିଭିନ୍ନ କ୍ଷେତ୍ରରେ ବେତାର କର୍ମକର୍ତ୍ତାଙ୍କ ଏହି ମନୋମୁଖୀ କାର୍ଯ୍ୟ ଏହାର ମହତ୍ତ୍ୱ ହାନି କରୁଛି ।

ଏହା ସତ୍ତ୍ୱେ ଆଧୁନିକ ଯୁଗରେ ବେତାର ଭୂମିକା ନିଶ୍ଚିତ ଭାବରେ ପ୍ରଶଂସାର୍ହ । ସାଧାରଣ ବ୍ୟକ୍ତିଟିଏ ଟେଲିଭିଜନ କ୍ରୟ କରି ତା'ର ଉପଯୋଗ କରିବା ସମ୍ଭବ ନୁହେଁ । ତେଣୁ ରେଡ଼ିଓଟିଏ କ୍ରୟ କରି ସେ ତା'ର ମାନସିକ ଅଭାବ ପରିପୂର୍ତ୍ତି କରିପାରୁଛି । ଏହା ବ୍ୟତୀତ ଏଥିରେ ବିଭିନ୍ନ ରୁଚିର କାର୍ଯ୍ୟକ୍ରମ ପ୍ରଚାର କରାଯାଉଥିବାରୁ ସବୁ ରୁଚିର ବ୍ୟକ୍ତିମାନଙ୍କ ପାଇଁ ଏହା ପ୍ରିୟ ହୋଇପାରୁଛି । ଗ୍ରାମରେ ବସବାସ କରୁଥିବା ନିରକ୍ଷର ବ୍ୟକ୍ତିମାନଙ୍କ ନିକଟରେ ସଂପ୍ରତି ଏହା ଗୋଟିଏ ଆଶୀର୍ବାଦ ପରି କାମ କରୁଛି । କୃଷିଠାରୁ ଆରମ୍ଭ କରି ବୌଦ୍ଧିକସ୍ତର ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଉଥିବାରୁ ଶିକ୍ଷିତ ଅଶିକ୍ଷିତ, ଶିଶୁବୃଦ୍ଧ, ଯୁବକ ନିର୍ବିଶେଷରେ ଏହା ସମସ୍ତଙ୍କ ନିକଟରେ ଗୃହୀତ ହୋଇପାରୁଛି । ତେଣୁ ଆଧୁନିକ ଯୁଗରେ ବେତାର ସର୍ବଶ୍ରେଷ୍ଠ ଗଣମାଧ୍ୟମ କହିଲେ ଆଦୌ ଭୁଲ ହେବ ନାହିଁ ।

ଦୂରଦର୍ଶନ କେନ୍ଦ୍ର ପ୍ରତିଷ୍ଠା ଦ୍ୱାରା ସହରମାନଙ୍କର ବେତାର କାର୍ଯ୍ୟକ୍ରମ ପ୍ରତି ଆକର୍ଷଣ ଧୀରେ ଧୀରେ ହ୍ରାସ ପାଉଥିଲେହେଁ, ମଫସଲରେ ବସବାସ କରୁଥିବା ଅଧିକାଂଶ ବ୍ୟକ୍ତିମାନଙ୍କ ପାଇଁ ଏହା ଏବେ ମଧ୍ୟ ଆକର୍ଷଣୀୟ ବିଭବ ରୂପେ ପରିଚିତ । ସମୟର ପରିବର୍ତ୍ତନକୁ ଆଖି ଆଗରେ ରଖି ଏହାର କର୍ମକର୍ତ୍ତାଗଣ, କାର୍ଯ୍ୟକ୍ରମରେ କିଛି ପରିବର୍ତ୍ତନ ଆଣିବା ଆବଶ୍ୟକ । ନିମ୍ନମାନର କାର୍ଯ୍ୟକ୍ରମ ପ୍ରସ୍ତୁତ ନକରି କିଛି ଗୁଣାତ୍ମକ ମାନର କାର୍ଯ୍ୟକ୍ରମ ପ୍ରସ୍ତୁତ କଲେ ଏହାର ମହତ୍ତ୍ୱ ବୃଦ୍ଧି ପାଇବ । କର୍ମକର୍ତ୍ତାଗଣଙ୍କର ମନେରଖିବା ଆବଶ୍ୟକ, ସେମାନେ ତାଙ୍କ ପାଇଁ କିମ୍ବା ସେମାନଙ୍କର ଚିହ୍ନାପରିଚିତ ଲୋକଙ୍କ ପାଇଁ କାର୍ଯ୍ୟକ୍ରମ ପ୍ରସ୍ତୁତ କରୁ ନାହାନ୍ତି । ଗଣଙ୍କ ପାଇଁ କାର୍ଯ୍ୟକ୍ରମ ପ୍ରସ୍ତୁତ ହେଉଛି । ତେଣୁ ଯେଉଁଥିରେ ଅଧିକାଂଶ ଗଣ ଉପକୃତ ହେବେ; ସେହିପରି କାର୍ଯ୍ୟକ୍ରମ ପ୍ରସ୍ତୁତ ହୋଇପାରିଲେ ତାହା ଲୋକମାନଙ୍କର ଆଶା ଏବଂ ଆକାଂକ୍ଷାକୁ ପୂରଣ କରିପାରିବ ଓ ପୁଣି ସେ ତା'ର ପୂର୍ବ ମର୍ଯ୍ୟାଦା ଫେରିପାଇବ ।



# ବିଜ୍ଞାନ ଓ ଦୂରଦର୍ଶନ

**(ଉପକ୍ରମ, ଦୂରଦର୍ଶନ ସୃଷ୍ଟି ଇତିହାସ, ସାମାଜିକ ଜୀବନରେ ଦୂରଦର୍ଶନ, ଦୂରଦର୍ଶନ କାର୍ଯ୍ୟକ୍ରମର ଉପଯୋଗିତା, ଦୂରଦର୍ଶନର କେତେକ ବିପରୀତ ଦିଗ, ଉପସଂହାର)**

ଆଜି ଦୂରଦର୍ଶନ ବା ଟେଲିଭିଜନ ସବୁଠାରୁ ଲୋକପ୍ରିୟ ଗଣମାଧମ । ଏହାର ସୃଷ୍ଟି ପରେ ବିଜ୍ଞାନ ତା'ର ଅଗ୍ରଗତିରେ ଆଉ କେତେ ପାଦ ଆଗକୁ ଚାଲିଗଲା ବୋଲି ସ୍ୱୀକାର କରିବାକୁ ହେବ । ଗୋଟିଏ ଜଡ଼ବସ୍ତୁ ମଧରେ ମଧ କିପରି ଅମିତ ବିସ୍ମୟକର ଶକ୍ତି ଲୁକ୍‌କାୟିତ ରହିଛି ତାହା ଦୂରଦର୍ଶନ ପ୍ରମାଣ କରିଦେଲା । ଦୂର ଜିନିଷକୁ ଯାହା ମାଧମରେ ନିକଟରେ ଦେଖାଯାଇଥାଏ, ତାହା ଦୂରଦର୍ଶନ । ଦୂରବୀକ୍ଷଣ ଯନ୍ତ୍ରରେ କେବଳ ଦୂର ଜିନିଷ ଦୃଷ୍ଟିଗୋଚର ହୋଇଥାଏ; ମାତ୍ର ଦୂରଦର୍ଶନରେ ଦୂର ଜିନିଷ ଦେଖାଯିବା ସଙ୍ଗେ ସଙ୍ଗେ ସେମାନଙ୍କର କଥାବାର୍ତ୍ତା, ହସ-ଖୁସି ମଧ ଶୁଣାଯାଇଥାଏ । ବିଜ୍ଞାନ ଜଗତରେ ଏହା ନିଶ୍ଚିତ ଭାବରେ ଏକ ବିସ୍ମୟକର ସୃଷ୍ଟି । ଆମେ ଗୀତାରେ ପଢିଥିଲୁ ବ୍ୟାସଦେବଙ୍କ ଠାରୁ ଅଞ୍ଜନ ପ୍ରାପ୍ତି ବା ଦିବ୍ୟ ଚକ୍ଷୁ ଲାଭକରି ସଞ୍ଜୟ ବହୁ ଦୂରରେ ସଂଘଟିତ ହେଉଥିବା ମହାଭାରତ ଯୁଦ୍ଧର ବିବରଣୀ ପ୍ରତ୍ୟକ୍ଷଦ୍ରଷ୍ଟା ପରି ଧୃତରାଷ୍ଟ୍ରଙ୍କ ସମ୍ମୁଖରେ ବ୍ୟାଖ୍ୟା କରୁଥିଲେ । ଆମେ ସେତେବେଳେ ତାହାକୁ ଗାଲୁଗପ୍ପ ବା ଅତିକଳ୍ପନା ବୋଲି ଗ୍ରହଣ କରିନେଇଥିଲୁ । ମାତ୍ର ଦୂରଦର୍ଶନର ଉଦ୍ଭାବନ ପରେ ପୌରାଣିକ ବା ଦ୍ୱାପର ଯୁଗର ସେହି ସତ୍ୟ ଆଧୁନିକ ଯୁଗରେ ସତ୍ୟ ରୂପେ ପ୍ରମାଣିତ ହେଲା । ସେହିପରି ପୁରାଣଯୁଗର ବହୁ କାହାଣୀର ଅଲୌକିକତା ଆଜି ଆଧୁନିକ ଯୁଗରେ ସତ୍ୟରୂପେ ଗୃହୀତ ହୋଇଛି । ତେଣୁ ବହୁପ୍ରାଚୀନ ଭାରତବର୍ଷରେ ମଧ ଆମର ପୂର୍ବସୂରୀଙ୍କର ଏହି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ରହିଥିଲା; ଯାହାକୁ ସେମାନେ କଳ୍ପନା ମାଧମରେ ପ୍ରକାଶ କରିଥିଲେ । ବିଜ୍ଞାନର ବିକାଶ ଯୋଗୁଁ ଆଜି ତାହା ସାକାର ରୂପ ଗ୍ରହଣ କରିଛି । ଦୂରଦର୍ଶନ ସେହିପରି ବିଜ୍ଞାନର ଏକ ଅମୃତମୟ ସୃଷ୍ଟି । ରୂପଗ୍ରାହୀ ବେତାର ଯନ୍ତ୍ର ଟେଲିଭିଜନ ଆଜି ଖାଲି କେବଳ ଏକ ବିଳାସପୂର୍ଣ୍ଣ ସାମଗ୍ରୀ ଭାବରେ ନୁହେଁ, ଗୋଟିଏ ଅତ୍ୟାବଶ୍ୟକ ସାମଗ୍ରୀ ରୂପେ ଆମ ସମାଜରେ ଗୃହୀତ ହେବାକୁ ଆରମ୍ଭ କଲାଣି । ଲୋକସମାଜ ଉପରେ ଏହାର ଅପ୍ରତିହିତ ପ୍ରଭାବରୁ ଏହା ଅନୁମାନ କରାଯିବା ଅଯଥାର୍ଥ ନୁହେଁ ।

ବିଂଶ ଶତକରେ ବିଜ୍ଞାନ ଦୂରଦର୍ଶନକୁ ଜନ୍ମ ଦେଇ ମାନବ ସମାଜର ଅଶେଷ ମଙ୍ଗଳ କରିଛି । ଏହାଦ୍ୱାରା ବିଜ୍ଞାନ ତା'ର ଉଦ୍ଭାବନ ଦିଗରେ ଏକ ନୂତନ ଦିଗନ୍ତ ସୃଷ୍ଟି କଲା କହିଲେ ଭୁଲ ହେବ ନାହିଁ । ତେଜସ୍କ୍ରିୟ ରଶ୍ମି ସାହାଯ୍ୟରେ ବହୁଦୂରରେ ଥିବା ବ୍ୟକ୍ତି ଏବଂ ବସ୍ତୁଗୁଡ଼ିକର ରୂପ ଏଥିରେ ପ୍ରତିଫଳିତ ହୋଇଥାଏ । ଜଣେ ବ୍ୟକ୍ତି ଘରେ ବସି ତାହାକୁ ସହଜରେ ନିକଟରେ ଦେଖିପାରିଥାଏ । ଏହା ପ୍ରଥମେ ସ୍କଟ୍ ବୈଜ୍ଞାନିକ ଜେ. ଏଲ. ବେୟାର୍ଡଙ୍କ ଦ୍ୱାରା ୧୯୪୪

ମସିହାରେ ଉଦ୍ଭାବିତ ହୋଇଥିଲା । ଏହାର ଲୋକପ୍ରିୟତା ଖୁବ୍ ଶୀଘ୍ର ବୃଦ୍ଧି ପାଇଥିଲା । କଥା ସହିତ ଚିତ୍ରର ସମନ୍ୱୟ ଦୂରଦର୍ଶନରେ ସଂଘଟିତ ହୋଇଥିବାରୁ ଏହା ଲୋକମାନଙ୍କ ଦ୍ୱାରା ଖୁବ୍ ଶୀଘ୍ର ଗୃହୀତ ହୋଇଥିଲା । ଭାରତରେ ଟେଲିଭିଜନ କାର୍ଯ୍ୟକ୍ରମ ପ୍ରଥମେ ଦିଲ୍ଲୀରେ ୧୯୬୫ ମସିହାରେ ଆରମ୍ଭ ହୋଇଥିଲା । ୧୯୭୨ ମସିହାରେ ବମ୍ବେଠାରେ ଟେଲିଭିଜନ କେନ୍ଦ୍ର ପ୍ରତିଷ୍ଠିତ ହୋଇଥିଲା । ବର୍ତ୍ତମାନ ଭାରତର ବିଭିନ୍ନ ସ୍ଥାନରେ ପରିଲକ୍ଷିତ ହେଉଥିବା ଟେଲିଭିଜନ ସ୍ତମ୍ଭ ମଧ୍ୟରେ ବମ୍ବେର ସ୍ତମ୍ଭ ସବୁଠାରୁ ଅଧିକ ଉଚ୍ଚ । ୧୯୭୫ ମସିହାରେ କଲିକତା ଠାରେ ଟେଲିଭିଜନ କେନ୍ଦ୍ର ସ୍ଥାପିତ ହେବା ପରେ ଧୀରେ ଧୀରେ ଭାରତର ଅନ୍ୟାନ୍ୟ ସ୍ଥାନରେ ଏହି କେନ୍ଦ୍ର ସ୍ଥାପିତ ହେବାକୁ ଲାଗିଲା । ୧୯୭୫ ଖ୍ରୀ. ଅଗଷ୍ଟ ମାସରେ ଢେଙ୍କାନାଳର ଅଙ୍କରାନ୍ତିପୁର ଠାରେ ପ୍ରଥମେ ଟେଲିଭିଜନ କାର୍ଯ୍ୟକ୍ରମ ଉଦ୍‌ଘାଟିତ ହୋଇଥିଲା । ପ୍ରଥମେ ଉପଗ୍ରହ ମାଧ୍ୟମରେ ଯେଉଁ ଛଅଗୋଟି ରାଜ୍ୟର ୨୪୦ଟି ଗ୍ରାମରେ ଏହି କାର୍ଯ୍ୟକ୍ରମ ପ୍ରସାରଣ କରିବାର ସ୍ଥିର ହୋଇଥିଲା; ତନ୍ମଧ୍ୟରୁ ଓଡ଼ିଶାର କେତେକ ଗ୍ରାମ ଏହାର ଅନ୍ତର୍ଭୁକ୍ତ ଥିଲା । ନବମ ଏସିଆଡ଼ ସମୟରେ ଅର୍ଥାତ୍ ୧୯୮୧ ମସିହାରେ ଓଡ଼ିଶାରେ ଏହା ପ୍ରଦର୍ଶିତ ହେବାର ବ୍ୟବସ୍ଥା ହୋଇଥିବାରୁ ଟେଲିଭିଜନ ଅଧିକ ଲୋକପ୍ରିୟ ହେବାକୁ ଲାଗିଲା । ବର୍ତ୍ତମାନ ଓଡ଼ିଶାର ଗ୍ରାମଗହଳିରେ ମଧ୍ୟ ଦୂରଦର୍ଶନ ଜନପ୍ରିୟତା ଲାଭ କରିସାରିଲାଣି ।

ସାମାଜିକ ଜୀବନରେ ଦୂରଦର୍ଶନ ବହୁପରିମାଣରେ ପ୍ରଭାବ ବିସ୍ତାର କରିପାରିଛି । ଚିତ୍ତ ବିନୋଦନ ସହିତ ଅନ୍ୟାନ୍ୟ ବହୁ କାର୍ଯ୍ୟକ୍ରମ ଏଥିରେ ସ୍ଥାନ ଲାଭ କରୁଥିବାରୁ ଏହା ଲୋକମାନଙ୍କର ଆଦରଲାଭ କରିପାରିଛି । ଚଳଚ୍ଚିତ୍ର, ସଙ୍ଗୀତ, କ୍ରୀଡ଼ା, କୃଷି, ବ୍ୟବସାୟ, ସାକ୍ଷାତକାର, ଆଲୋଚନା, ବିଜ୍ଞାନ, ରାଜନୀତି, ଆନ୍ତର୍ଜାତିକ ଘଟଣାବଳୀ, ସମ୍ବାଦ ଆଦି ବିଭିନ୍ନ ରୁଚିର କାର୍ଯ୍ୟକ୍ରମ ପ୍ରସାରିତ ହେଉଥିବାରୁ ଏହା ଭିନ୍ନ ଭିନ୍ନ ରୁଚିର ଲୋକମାନଙ୍କୁ ଆକୃଷ୍ଟ କରିପାରୁଛି । ନିର୍ବାଚନ ସମୟରେ ବିଭିନ୍ନ ରାଜନୀତିକ ନେତାମାନଙ୍କ ସହିତ ସାକ୍ଷାତକାର ଏବଂ ଆଲୋଚନା ଦ୍ୱାରା ଦଳ ତଥା ବ୍ୟକ୍ତିର ଆଦର୍ଶ ସମ୍ପର୍କରେ ଜନସାଧାରଣ ସଚେତନ ହୋଇପାରୁଛନ୍ତି । ବିଦେଶ ଓ ଦେଶର ସମ୍ବାଦ ପରିବେଷଣ ସମୟରେ ଦୂରଦର୍ଶନରେ ସେମାନଙ୍କ ଚିତ୍ରପଟ୍ଟ ଏବଂ କଥାବାର୍ତ୍ତା ଆମେ ଦେଖିଥାଉ ଓ ଶୁଣିଥାଉ । ରେଡ଼ିଓରେ କେବଳ ଶୁଣିବା କାର୍ଯ୍ୟ ହେଉଥିବା ସମୟରେ ଏଥିରେ ଉଭୟ ଶୁଣିବା ଏବଂ ଦେଖିବା କାର୍ଯ୍ୟ ହେଉଥିବାରୁ ଏହାର ଜନପ୍ରିୟତା ବୃଦ୍ଧି ପାଉଛି । ସରକାରଙ୍କ ଯୋଜନା ବିଷୟରେ କ୍ଷେତ୍ରାଧିକାରୀ ବା ସେହି ବିଭାଗର ଦାୟିତ୍ୱରେ ଥିବା ମନ୍ତ୍ରୀ ସୂଚନା ଦେଉଥିବାରୁ ତାହା ଅଧିକ ଆକର୍ଷଣୀୟ ହୋଇପାରୁଛି । ଏତଦ୍‌ବ୍ୟତୀତ ପଶୁପାଳନ, ମତ୍ସ୍ୟଚାଷ, ଅନ୍ୟାନ୍ୟ ପନିପରିବା କିମ୍ବା କୃଷି କିପରି କଲେ ଜଣେ ଚାଷୀ ଲାଭବାନ୍ ହୋଇପାରିବ, ସେ ସମ୍ପର୍କରେ ସୂଚନା ସହିତ କୃଷିକାର୍ଯ୍ୟ ଦେଖାଇ ଦିଆଯାଉଥିବାରୁ ଏହାର ପ୍ରତ୍ୟକ୍ଷ ପ୍ରଭାବ ଜନସାଧାରଣଙ୍କ ଉପରେ ପଡୁଛି । ସମ୍ବାଦ ପରିବେଷଣ ସମୟରେ ବ୍ୟକ୍ତିବିଶେଷଙ୍କୁ ଦୂରଦର୍ଶନରେ ଦେଖାଇ ଦିଆଯାଉଥିବାରୁ ସହଜରେ ସେମାନଙ୍କୁ ଚିହ୍ନି ହେଉଛି ଏବଂ ସେମାନଙ୍କର ବ୍ୟକ୍ତିତ୍ୱ ସହିତ ପରିଚିତ ହେବାର ସୁଯୋଗ ମିଳୁଛି । ସ୍ୱାସ୍ଥ୍ୟ ସମ୍ପର୍କୀୟ କାର୍ଯ୍ୟକ୍ରମରେ ପ୍ରବୀଣ ଚିକିତ୍ସକମାନେ

ଅଂଶ ଗ୍ରହଣ କରି ସ୍ୱାସ୍ଥ୍ୟରକ୍ଷା ସମ୍ପର୍କରେ ବୁଝାଇବା ସଙ୍ଗେ ସଙ୍ଗେ କେଉଁ କେଉଁ ପ୍ରକାର ପଦକ୍ଷେପ ଗ୍ରହଣ କଲେ ସ୍ୱାସ୍ଥ୍ୟର ଉନ୍ନତି ହୋଇପାରିବ ସେ ସମ୍ବନ୍ଧରେ ବିବିଧ ଉଦାହରଣ ମାଧ୍ୟମରେ ଦେଖାଇ ଦିଆଯାଉଥିବାରୁ ଏହାର ଅନୁକୂଳ ପ୍ରଭାବ ସମାଜ ଉପରେ ପଡୁଛି ଏବଂ ଜନସାଧାରଣ ଧୀରେ ଧୀରେ ନିଜର ସ୍ୱାସ୍ଥ୍ୟରକ୍ଷା ସମ୍ପର୍କରେ ସଚେତନ ହୋଇପାରୁଛନ୍ତି । ଏତଦ୍ ବ୍ୟତୀତ ପରିବେଶ ସୁରକ୍ଷା, ବୃକ୍ଷରୋପଣ ଓ ମୃତ୍ତିକା ସଂରକ୍ଷଣ ଆଦି ବିବିଧ କାର୍ଯ୍ୟକ୍ରମ ପରିବେଷିତ ହୋଇ ଜନସାଧାରଣଙ୍କ ସାମାଜିକ ସଚେତନତା ବୃଦ୍ଧି କରୁଛି । ମନୋରଞ୍ଜନ କାର୍ଯ୍ୟକ୍ରମ ପ୍ରସ୍ତୁତ କ୍ଷେତ୍ରରେ ଦୂରଦର୍ଶନର ଭୂମିକା ଅତୀବ ମହତ୍ତ୍ୱପୂର୍ଣ୍ଣ । ଚଳଚ୍ଚିତ୍ର, ସଙ୍ଗୀତ, ନାଟକ ତଥା ବିଭିନ୍ନ ସିରିଏଲ ସହିତ ନୃତ୍ୟ, ବାଦ୍ୟ ଆଦି କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଉଥିବାରୁ କଳା କ୍ଷେତ୍ରରେ ବିଭିନ୍ନ ରୁଚିର ବ୍ୟକ୍ତିଙ୍କୁ ଏହା ଆକୃଷ୍ଟ କରିପାରୁଛି ।

ଦୂରଦର୍ଶନ କାର୍ଯ୍ୟକ୍ରମ ସମ୍ପ୍ରତି ଆମର ଦୈନନ୍ଦିନ ଜୀବନକୁ ବହୁଭାବରେ ପ୍ରଭାବିତ କରିପାରିଛି । ଜନଶିକ୍ଷା କାର୍ଯ୍ୟକ୍ରମ ଏଥିରେ ପ୍ରସାରିତ ହେଉଥିବାରୁ ଧୀରେ ଧୀରେ ଶିକ୍ଷା ପ୍ରତି ଲୋକମାନଙ୍କର ଆଗ୍ରହ ବୃଦ୍ଧି ପାଉଛି । ବିଭିନ୍ନ ସ୍ଥାନର ମହତ୍ତ୍ୱ ପ୍ରଦର୍ଶନ କାର୍ଯ୍ୟକ୍ରମରେ ଭାରତର ବିଭିନ୍ନ ସ୍ଥାନ, ସେ ସ୍ଥାନର ବୈଶିଷ୍ଟ୍ୟ, ଲୋକମାନଙ୍କର ରୁଚି, ଚାଲିଚଳଣ ଆଦି ବିଭିନ୍ନ ବିଷୟରେ ଅବଗତ ହୋଇପାରୁଛୁ । ଜଣେ ବ୍ୟକ୍ତି ବିଭିନ୍ନ ସ୍ଥାନ ପରିଭ୍ରମଣ କରି ଏପରି ଜ୍ଞାନଲାଭ କରିବା ସହଜସାଧ୍ୟ ନୁହେଁ । ଦୂରଦର୍ଶନ ତା'ର କାର୍ଯ୍ୟକ୍ରମରେ ଏହିପରି କେତେକ ମୂଲ୍ୟବାନ୍ କାର୍ଯ୍ୟକ୍ରମକୁ ସ୍ଥାନ ଦେଉଥିବାରୁ ତାହା ଅଧିକ ଶିକ୍ଷାପ୍ରଦ ହୋଇପାରୁଛି । ଏତଦ୍‌ବ୍ୟତୀତ ଗୋଟିଏ ଗୋଟିଏ ଅଞ୍ଚଳର ଲୋକସଂସ୍କୃତି ସମ୍ପର୍କରେ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଇ ବିସ୍ମୃତ ହେବାକୁ ଯାଉଥିବା ଆଞ୍ଚଳିକ ଲୋକ ସଂସ୍କୃତିକୁ କିଛି ପରିମାଣରେ ରକ୍ଷା କରାଯାଇପାରୁଛି । ଧର୍ମ କ୍ଷେତ୍ରରେ ଦୂରଦର୍ଶନ ସମସ୍ତ ଧର୍ମକୁ ସମାନ ଗୁରୁତ୍ୱ ଦେଇ ପ୍ରଚାର କରୁଥବାରୁ ଭାରତରେ ବସବାସ କରୁଥିବା ବିଭିନ୍ନ ଧାର୍ମିକ ସମ୍ପ୍ରଦାୟ ମଧ୍ୟରେ ସଦ୍‌ଭାବ ପ୍ରତିଷ୍ଠା ହୋଇପାରୁଛି । ଜାତୀୟ ଐକ୍ୟ ଏବଂ ସଂହତି ପ୍ରତିଷ୍ଠା କ୍ଷେତ୍ରରେ ଏହା ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି । ନୂତନ ଉଦ୍ଭାବିତ ଓ ଆବିଷ୍କୃତ ପଦାର୍ଥମାନଙ୍କୁ ବିଜ୍ଞାପନ ଜରିଆରେ ପ୍ରଦର୍ଶିତ କରାଇ ଜନସାଧାରଣଙ୍କ ରୁଚି ପରିବର୍ତ୍ତନରେ ସହାୟତା କରିପାରୁଛି । ଦେଶର ସାଂସ୍କୃତିକ ବିକାଶ ଓ ଜନସାଧାରଣଙ୍କ ମଧ୍ୟରେ ସାମାଜିକ ଜାଗରଣ ଆନୟନ କ୍ଷେତ୍ରରେ ଦୂରଦର୍ଶନର ଭୂମିକା ନିଶ୍ଚିତ ଭାବରେ ମହତ୍ତ୍ୱପୂର୍ଣ୍ଣ ।

ଏହାସତ୍ତ୍ୱେ ଦୂରଦର୍ଶନର କେତେକ ବିପରୀତ ଦିଗ ମଧ୍ୟ ରହିଛି । ଯଦିଓ ଶିଶୁ ଚଳଚ୍ଚିତ୍ର ଓ ଶିଶୁ ଉପଯୋଗୀ କାର୍ଯ୍ୟକ୍ରମ ଶିଶୁମାନଙ୍କୁ ଖୁବ୍ ପ୍ରଭାବିତ କରିପାରୁଛି ତଥାପି ଶିଶୁ ଚରିତ୍ର ବିପରୀତ କେତେକ କାର୍ଯ୍ୟକ୍ରମ ଶିଶୁମାନଙ୍କ ଉପରେ କୁପ୍ରଭାବ ପକାଉଛି । ଅଧିକ ମନୋରଞ୍ଜନ କାର୍ଯ୍ୟକ୍ରମ ଯୋଗୁଁ ପିଲାମାନେ ଶିକ୍ଷା କ୍ଷେତ୍ରରେ ମନୋନିବେଶ ନକରି ଟେଲିଭିଜନ ପାଖରେ ବସି ଅଯଥା ସମୟ ଅପବ୍ୟୟ କରୁଛନ୍ତି । ପୁଣି ଏମିତି କେତେକ କାର୍ଯ୍ୟକ୍ରମ ରହିଛି, ଯାହା ପିଲାମାନଙ୍କର ଚରିତ୍ର ଉପରେ ଖରାପ ପ୍ରଭାବ ବିସ୍ତାର କରୁଛି । ଏବେ ମଧ୍ୟ ଦୂରଦର୍ଶନ ସ୍ୱାଧୀନ ଭାବରେ ନିଜର କାର୍ଯ୍ୟକ୍ରମ ପ୍ରସ୍ତୁତ କରିପାରୁ ନାହିଁ । ସରକାରଙ୍କ ନିର୍ଦ୍ଦେଶରେ କେତେକ

ପ୍ରଚାରମୂଳକ କାର୍ଯ୍ୟ ପ୍ରସାର କରିବାକୁ ବାଧ ହେଉଛି । ଅତ୍ୟଧିକ ବିଜ୍ଞାପନ ପ୍ରସାରଣ ମଧ୍ୟ ରୁଚିହୀନତାର ପରିଚୟ ପ୍ରଦାନ କରୁଛି । ଟେଲିଭିଜନରେ ପ୍ରଚାରିତ ବିଭିନ୍ନ ବ୍ୟବସାୟିକ ସଂସ୍ଥାର ପ୍ରଚାର ଅର୍ଥ ଏବଂ ଶରୀର ଉପରେ କୁପ୍ରଭାବ ପକାଉଛି । ଏ କ୍ଷେତ୍ରରେ ସାମାନ୍ୟ ସତର୍କମୂଳକ ପଦକ୍ଷେପ ଗ୍ରହଣ କରାଯାଇପାରିଲେ, ଦୂରଦର୍ଶନ ଅଧିକ ଲୋକପ୍ରିୟ ହୋଇପାରନ୍ତା ।

ଆଜି ଦୂରଦର୍ଶନ ସର୍ବଶ୍ରେଷ୍ଠ ଗଣମାଧ୍ୟମର ଭୂମିକା ଗ୍ରହଣ କରିଛି । ଏହାଦ୍ୱାରା ଆମର ଯେ କିଛି ସାମାଜିକ ପରିବର୍ତ୍ତନ ଘଟୁଛି, ଅସ୍ୱୀକାର କରାଯାଇ ନ ପାରେ । ଲୋକମାନଙ୍କ ମଧ୍ୟରେ ଶାନ୍ତି ସଦ୍‌ଭାବ ଏବଂ ସଂପ୍ରୀତିର ବାର୍ତ୍ତା ପ୍ରଚାର କରି ନିଶ୍ଚିତ ଭାବରେ ଏହା ପ୍ରଶଂସାର ଅଧିକାରୀ ହୋଇପାରିଛି । କର୍ମକ୍ଳାନ୍ତ ବ୍ୟକ୍ତି ମନରେ ଆନନ୍ଦ ସୃଷ୍ଟି କରିପାରୁଛି । ଶିଶୁ, ନାରୀ, ବ୍ୟବସାୟୀ, ଶିକ୍ଷାବିତ୍, କୃଷକ, କର୍ମଜୀବୀ ଆଦି ବିଭିନ୍ନ ଗୋଷ୍ଠୀଙ୍କ ପାଇଁ ଏଥିରେ କାର୍ଯ୍ୟକ୍ରମ ରହିଥିବାରୁ ଏହା ସମସ୍ତଙ୍କ ପାଇଁ ଗ୍ରହଣଯୋଗ୍ୟ ହୋଇପାରିଛି । ଯଦି ସାମାଜିକ ଓ ସାଂସ୍କୃତିକ ପରିବର୍ତ୍ତନରେ ଏହା ଏକ ମୁଖ୍ୟ ଭୂମିକା ଗ୍ରହଣ କରିପାରେ, ତେବେ ତା'ର ଉଦ୍ଭାବନ ଯେ ସମ୍ପୂର୍ଣ୍ଣ ସାର୍ଥକ ଓ ସମୟୋଚିତ ସ୍ୱୀକାର କରିବାକୁ ହେବ ।

●

# ଭାରତର ଖାଦ୍ୟସମସ୍ୟା

**[ ଉପକ୍ରମ, ଖାଦ୍ୟ ସମସ୍ୟା ଓ ମଣିଷ, ଖାଦ୍ୟାଭାବର ବିଭିନ୍ନ କାରଣ; (ଗତାନୁଗତିକ କୃଷି ନୀତି, ଜନସଂଖ୍ୟା ବୃଦ୍ଧି, ପ୍ରାକୃତିକ ଦୁର୍ବିପାକ, ସଞ୍ଚୟ କ୍ଷେତ୍ରରେ ଉଦାସୀନତା, ଭୂବନ୍ଦୋବସ୍ତର ଅଭାବ, ସରକାରୀକଳର ଉଦାସୀନ ଭାବ, ଖାଦ୍ୟଗ୍ରହଣରେ ଏକରୂପତା, କର୍ମଶକ୍ତିର ଅଭାବ, ଖର୍ଚ୍ଚ କ୍ଷେତ୍ରରେ ଖାମଖିଆଲି ମନୋଭାବ, କଳାବଜାରୀଙ୍କ ପ୍ରାଦୁର୍ଭାବ), ଖାଦ୍ୟ ସମସ୍ୟାର ନିରାକରଣ; ଉତ୍ପାଦନ ବୃଦ୍ଧି, ବୈଜ୍ଞାନିକ ପଦ୍ଧତିରେ କୃଷିକାର୍ଯ୍ୟ, ଭୂବନ୍ଦୋବସ୍ତ, ପରିବାର ନିୟନ୍ତ୍ରଣ, ଖାଦ୍ୟ ସଂରକ୍ଷଣ, ଖାଦ୍ୟରେ ପରିବର୍ତ୍ତନ, ସରକାରୀ ଉଦ୍ୟମରେ ଆନ୍ତରିକତା, ପ୍ରାକୃତିକ ବିପର୍ଯ୍ୟୟ ବିରୋଧରେ ପଦକ୍ଷେପ, ପତିତ ଜମିର ଚାଷଯୋଗ୍ୟ ଉପାୟ, ସହଯୋଗମୂଳକ ମନୋବୃତ୍ତି, ବିଭିନ୍ନ ଯୋଜନାରେ କୃଷି ପ୍ରତି ଗୁରୁତ୍ୱ ଆରୋପ, ସୁଷମ ବଣ୍ଟନ ବ୍ୟବସ୍ଥା, ଉପସଂହାର ]**

କେଉଁ ଆବହମାନ କାଳରୁ ଖାଦ୍ୟ ସମସ୍ୟା ଏକ ମୁଖ୍ୟ ସମସ୍ୟା ରୂପେ ଦେଖାଦେଇ ଆସିଛି । ମଣିଷର ଶରୀର ଆବଶ୍ୟକ କରେ ଶକ୍ତିର ଏବଂ ଏହି ଶକ୍ତିର ମୂଳଉତ୍ସ ହେଉଛି ଖାଦ୍ୟ । ମଣିଷର ବଞ୍ଚିରହିବା ନିମିତ୍ତ ଯେଉଁ କେତେକ ଆନୁଷଙ୍ଗିକ ଉପାଦାନର ଆବଶ୍ୟକତା ରହିଛି, ତନ୍ମଧ୍ୟରୁ ମୁଖ୍ୟ ହେଉଛି ଖାଦ୍ୟ । ଖାଦ୍ୟ ବ୍ୟତିରେକେ ମଣିଷର ଜୀବନ ଧାରଣ ଅସମ୍ଭବ । ଏପରିକି ଶିଶୁଟି ଜନ୍ମ ହେବା ମାତ୍ରେ ଖାଦ୍ୟର ଆବଶ୍ୟକ କରିଥାଏ । କେବଳ ମଣିଷ କାହିଁକି, ଜୀବନ

ଥିବା ପ୍ରତ୍ୟେକଟି ଜୀବଜନ୍ତୁ, ପଶୁପକ୍ଷୀ ଏପରିକି ବୃକ୍ଷଲତା ମଧ୍ୟ ଖାଦ୍ୟର ଆବଶ୍ୟକତା ଅନୁଭବ କରନ୍ତି । ମାନବର ସଭ୍ୟତା ଓ ଇତିହାସ ଖାଦ୍ୟ ସମସ୍ୟାକୁ କେନ୍ଦ୍ରକରି ଗଢ଼ିଉଠିଛି । ସେଥିପାଇଁ ଭାଗବତକାର ଲେଖିଛନ୍ତି–''ଅନ୍ନ ବିହୁନେ ହଂସ ହାନି । ଯୋଗ ସାଧିବୁ କାହା ଘେନି'' । ଯୋଗୀ, ଭୋଗୀ, ତ୍ୟାଗୀ–ସମସ୍ତଙ୍କ କ୍ଷେତ୍ରରେ ଏହି ସତ୍ୟକୁ ଅସ୍ୱୀକାର କରାଯାଇ ନ ପାରେ । ଜୀବନର ବଡ଼ ସତ୍ୟ 'ବଞ୍ଚିବା' ଏବଂ ଏହି ବଞ୍ଚିବା ପାଇଁ ଆବଶ୍ୟକ ଖାଦ୍ୟ । ଡାରଉଇନଙ୍କ ବିବର୍ତ୍ତନବାଦ 'ଜୀବନ ସଂଗ୍ରାମ' ସୂତ୍ରରେ ଏହାକୁହିଁ ଦେଖାଇ ଦିଆଯାଇଛି । ଆଜି ସମଗ୍ର ବିଶ୍ୱ ଖାଦ୍ୟସାମଗ୍ରୀର ଅଧିକରୁ ଅଧିକ ଉତ୍ପାଦନ ପାଇଁ ବ୍ୟସ୍ତ । ବର୍ତ୍ତମାନ ଭାରତର ମଧ୍ୟ ସବୁଠାରୁ ବଡ଼ ସମସ୍ୟା ଖାଦ୍ୟସମସ୍ୟା । ବିଶ୍ୱର ବିକାଶଶୀଳ ରାଷ୍ଟ୍ରଗୁଡ଼ିକ ଖାଦ୍ୟ ଉତ୍ପାଦନ କ୍ଷେତ୍ରରେ ସ୍ୱାବଲମ୍ବନଶୀଳ ହେବା ନିମିତ୍ତ ଉଦ୍ୟମ ଜାରି ରଖିଛନ୍ତି । କାରଣ ମଣିଷର ଏହି ପ୍ରାଥମିକ ସମସ୍ୟାଟି ପରିପୂରଣ ନ ହୋଇପାରିଲେ ଦେଶର ପ୍ରଗତି କିମ୍ବା ବିକାଶ ସମ୍ପୂର୍ଣ୍ଣ ଅସମ୍ଭବ ।

ମଣିଷ ଜନ୍ମ ହେବା ମାତ୍ରେ ଆବଶ୍ୟକ କରେ ଖାଦ୍ୟର । ମଣିଷ କ୍ଷୁଧାର ଦାସ । ସେ ସମସ୍ତ ପ୍ରକାର ଅଭାବ ସହ୍ୟ କରିପାରେ; ମାତ୍ର ଖାଦ୍ୟାଭାବ ସହ୍ୟ କରିବା ତା'ପକ୍ଷରେ ସମ୍ପୂର୍ଣ୍ଣ ଅସମ୍ଭବ । କ୍ଷୁଧାତୁର ମଣିଷ ଯେକୌଣସି ପାପକାର୍ଯ୍ୟ କରିବାକୁ ପଶ୍ଚାତ୍‌ପଦ ହୋଇନଥାଏ । ସେଇଥିପାଇଁ କୁହାଯାଇଛି–''ବୁଭୁକ୍ଷିତଂ କିଂ ନ କରୋତି ପାପଂ ।'' ସଭ୍ୟତା ଓ ସଂସ୍କୃତିର ବିକାଶ ପୂର୍ବରୁ ମଣିଷ ଯେତେବେଳେ ବଣଜଙ୍ଗଲରେ ବସବାସ କରୁଥିଲା, ସେତେବେଳେ ମଧ୍ୟ ଖାଦ୍ୟସମସ୍ୟା ତା' ନିକଟରେ ଏକ ଉତ୍କଟ ସମସ୍ୟା ହୋଇ ଦେଖାଦେଇଥିଲା । ଖାଦ୍ୟ ଅନ୍ୱେଷଣରେ ସେ ଘୂରି ବୁଲୁଥିଲା ଗୋଟିଏ ସ୍ଥାନରୁ ଅନ୍ୟ ଏକ ସ୍ଥାନକୁ ଯାଯାବରର ଜୀବନ ନେଇ । କ୍ଷୁଧା ଦୂରୀକରଣ ପାଇଁ କଞ୍ଚାଫଳ, କଞ୍ଚାମାଂସକୁ ବିନା ଦ୍ୱିଧାରେ ଭକ୍ଷଣ କରୁଥିଲା । ସେ ତା' ଜୀବନର ସବୁ ସମୟ ବ୍ୟୟ କରୁଥିଲା ଖାଦ୍ୟ ଅନ୍ୱେଷଣରେ । ସଭ୍ୟତାର ବିକାଶ ପରେ ମଣିଷ ଯେତେବେଳେ କୃଷିକୁ ଆଦରିନେଲା, ତା'ର ମୁଖ୍ୟ ଲକ୍ଷ୍ୟ ମଧ୍ୟ ଥିଲା ଏହି ଖାଦ୍ୟାଭାବର ପରିପୂରଣ । ପଶୁପାଳନ କରିଥିଲା ନିଜର ଖାଦ୍ୟାଭାବର ପରିପୂରଣ ପାଇଁ । ମଣିଷ ସଭ୍ୟ ଦୁନିଆରେ ପଦାର୍ପଣ କରିବା ପରେ ସେ ତା'ର ଅଭାବକୁ ପ୍ରତ୍ୟକ୍ଷ ଭାବରେ ପ୍ରକାଶ କରିବାକୁ ଚାହେଁ ନାହିଁ । ତଥାପି ଯେତେବେଳେ ସେ କ୍ଷୁଧା ଅନୁଭବ କରେ, ତା'ର ଆଦିମ ପ୍ରବୃତ୍ତି ବିପ୍ଳବ କରି ଉଠେ । କୃଷି ସଭ୍ୟତାର ବିକାଶ ପାଇଁ ସେ ବହୁ ଦେବଦେବୀଙ୍କୁ ପରିକଳ୍ପନା କରିଛି । ଆଲୋକଦାତା ସୂର୍ଯ୍ୟ, ସମୀରଦାତା ପବନ, ଜଳଦାତା ବର୍ଷା ଓ ନଦୀ ଆଦିଙ୍କୁ ସେ ଏହି ଦୃଷ୍ଟିକୋଣରୁ ଦେବଦେବୀ ରୂପେ ପୂଜା କରିଛି । କ୍ଷୁଧାତୁର ବ୍ୟକ୍ତି ନିକଟରେ ସମସ୍ତ ଆଦର୍ଶ ମୂଲ୍ୟହୀନ । ତା' ନିକଟରେ ଖାଦ୍ୟ ହିଁ ଦେବତା । ବୋଧହୁଏ ସେଥିପାଇଁ ଇଂରାଜୀରେ କୁହାଯାଇଛି "To a man with an empty stomach, food is God" କ୍ଷୁଧାତୁର ବ୍ୟକ୍ତି ଯେକୌଣସି ଅସାମାଜିକ କାର୍ଯ୍ୟ କରିବାକୁ ପଶ୍ଚାତ୍‌ପଦ ହୋଇନଥାଏ । ଡକାୟତି, ଖୁନ୍ ଓ ଚୋରି କ୍ଷୁଧାର ତାଡ଼ନାରୁ ଘଟିଥାଏ । ସଭ୍ୟତା ମଣିଷର ବହୁକ୍ଷେତ୍ରରେ ପରିବର୍ତ୍ତନ ସାଧନ କରିଥିଲେହେଁ, ତା'ର ଆଦିପ୍ରବୃତ୍ତି କ୍ଷୁଧା କ୍ଷେତ୍ରରେ କୌଣସି ପରିବର୍ତ୍ତନ କରିପାରି ନାହିଁ । କୌଣସି ଦର୍ଶନ, ଆଧ୍ୟାତ୍ମିକ

ଚେତନା, ଆଦର୍ଶବତ୍ତା ମଣିଷର କ୍ଷୁଧାତୁର ମନରେ ସନ୍ତୋଷ ଦେଇପାରି ନାହିଁ । ସ୍ନେହ, ପ୍ରେମ, ଦେଶାତ୍ମବୋଧ, କର୍ତ୍ତବ୍ୟନିଷ୍ଠା, ମାନବତାବାଦ–ସବୁ ଯେପରି କ୍ଷୁଧାତୁର ବ୍ୟକ୍ତି ନିକଟରେ ନିରର୍ଥକ । ଖାଦ୍ୟ ସମସ୍ୟା ସହିତ ମଣିଷ ଜୀବନ ଏପରି ଓତପ୍ରୋତ ଭାବରେ ଜଡ଼ିତ, ଯେଉଁଠାରେ ଗୋଟିକୁ ଛାଡ଼ି ଅନ୍ୟଟିର ପରିକଳ୍ପନା ଅସମ୍ଭବ ।

ଭାରତରେ ଖାଦ୍ୟାଭାବ ନିମିତ୍ତ ବହୁବିଧ କାରଣ ବିଦ୍ୟମାନ ହେଲେହେଁ, ଏଠାରେ ମୁଖ୍ୟ କେତୋଟି କାରଣ ସମ୍ବନ୍ଧରେ ଆଲୋଚନା କରାଗଲା । ଏବେ ମଧ ଭାରତର କୃଷକ ସମ୍ପ୍ରଦାୟ ପାରମ୍ପରିକ କୃଷିନୀତିରୁ ବିଚ୍ୟୁତ ହୋଇ ନାହିଁ । ଆଜି ବିଶ୍ୱରେ ଆମେରିକା, ଜାପାନ ତଥା ଅନ୍ୟାନ୍ୟ ଦେଶମାନଙ୍କରେ ବୈଜ୍ଞାନିକ ପଦ୍ଧତିରେ ଚାଷ କରାଯାଇ ପ୍ରଚୁର ପରିମାଣରେ ଖାଦ୍ୟଶସ୍ୟ ଉତ୍ପାଦନ କରାଯାଉଥିବା ବେଳେ ଭାରତରେ ସେହି ହଳ ଲଙ୍ଗଳ ଦ୍ୱାରା କୃଷିକାର୍ଯ୍ୟ ଚାଲିଛି । ପୁନରାୟ କୀଟନାଶକ ଔଷଧ, ସାର ଆଦିର ଅଭାବରୁ ଯେଉଁ ପରିମାଣରେ ଶସ୍ୟ ଉତ୍ପାଦିତ ହେବା କଥା, ତାହା ହୋଇପାରୁ ନାହିଁ । ଜନସଂଖ୍ୟା ବୃଦ୍ଧି ଖାଦ୍ୟାଭାବର ଅନ୍ୟତମ ମୁଖ୍ୟ କାରଣ । ଭାରତର ଲୋକସଂଖ୍ୟା ଯେଉଁ ପରିମାଣରେ ବୃଦ୍ଧି ପାଉଛି, ଏହି ଶତାବ୍ଦୀର ଶେଷ ବେଳକୁ ତାହା ୨୦୦ କୋଟିରେ ପହଞ୍ଚିଯାଇଥିବ । ଏତେ ଲୋକ ପାଇଁ ସେହି ସୀମିତ ଜମିରୁ ଖାଦ୍ୟଶସ୍ୟ ଉତ୍ପନ୍ନ କରି ସମସ୍ତଙ୍କୁ ଯୋଗାଇଦେବା ସମ୍ଭବ ହେବ ନାହିଁ । ଆମର ଜମି ସୀମିତ; ମାତ୍ର ଜନସଂଖ୍ୟା ଦ୍ରୁତ ଗତିରେ ବୃଦ୍ଧି ପାଉଛି । ଏବେଠାରୁ ସତର୍କତା ଅବଲମ୍ବନ ନ କଲେ ଭବିଷ୍ୟତରେ ଆମକୁ ଏକ ସଙ୍କଟଜନକ ପରିସ୍ଥିତିର ମୁକାବିଲା କରିବାକୁ ପଡ଼ିବ । ଭାରତ ଏପରି ଏକ ଦେଶ ଯେଉଁଠାରେ ସବୁବେଳେ ପ୍ରାକୃତିକ ଦୁର୍ବିପାକ ଲାଗି ରହିଛି । ବନ୍ୟା, ବାତ୍ୟା ଓ ମରୁଡ଼ି ଏହାର ଚିର ସହଚର । ରାଜସ୍ଥାନ, ବିହାର ଆଦି ପ୍ରଦେଶରେ ମରୁଡ଼ି ଦେଖାଯାଉଥିବା ସମୟରେ ଓଡ଼ିଶାରେ ସର୍ବଦା ବନ୍ୟା ଓ ବାତ୍ୟା ଲାଗି ରହିଛି । ପ୍ରାକୃତିକ ବିପର୍ଯ୍ୟୟ କାରଣରୁ ଭାରତର ବହୁପରିମାଣର ଫସଲ ନଷ୍ଟ ହେଉଛି । ଅନିୟମିତ ବର୍ଷା, ଅଚାନକ ପବନ ଓ ବନ୍ୟା ଫସଲହାନିର ମୁଖ୍ୟ କାରଣ । ଭାରତୀୟମାନଙ୍କର ସଞ୍ଚୟ କ୍ଷେତ୍ରରେ ଉଦାସୀନ ଭାବ ଖାଦ୍ୟାଭାବର ଅନ୍ୟତମ କାରଣ । ଅନେକ ବ୍ୟକ୍ତି ଅଛନ୍ତି ଯେଉଁମାନେ ଏକ ସମୟରେ ଯାହା ରୋଜଗାର କରନ୍ତି, ସମସ୍ତ ଖର୍ଚ୍ଚ କରିଦେଇଥାନ୍ତି । ଆଗାମୀ କାଲି ପାଇଁ ସେମାନଙ୍କ ମନରେ କୌଣସି ଚିନ୍ତା ନ ଥାଏ । ଦୁର୍ଦ୍ଦିନ ପାଇଁ ଖାଦ୍ୟଶସ୍ୟ ସଞ୍ଚୟ କରାଯାଉ ନ ଥିବାରୁ ବହୁ ଲୋକ ଖାଦ୍ୟାଭାବର ସମ୍ମୁଖୀନ ହୋଇଥାନ୍ତି । ପୁନରାୟ ଭୂ-ବନ୍ଦୋବସ୍ତର ଅଭାବ ଯୋଗୁଁ ଠିକ୍ ଭାବେ କୃଷି କାର୍ଯ୍ୟ କରିହୁଏ ନାହିଁ । ଭାରତର ଅଧିକାଂଶ କୃଷକ ଜମିହୀନ । ମୁଷ୍ଟିମେୟ ବ୍ୟକ୍ତିଙ୍କ ହସ୍ତରେ ପ୍ରଚୁର ପରିମାଣର ସମ୍ପତ୍ତି ରହିଛି, ଯେଉଁମାନେ କି ଆଦୌ ଚାଷୀ ନୁହନ୍ତି କିମ୍ବା ଚାଷକାର୍ଯ୍ୟ ପ୍ରତି ସେମାନଙ୍କ ମନରେ କୌଣସି ଉଦାରଭାବ ନାହିଁ । ପ୍ରକୃତ ଚାଷୀ ଜମିର ମାଲିକ ହୋଇନଥିବାରୁ ଅନ୍ୟ ଜମିକୁ ଠିକ୍ ରୂପେ ଚାଷ କରିବାକୁ ଇଚ୍ଛା ପ୍ରକାଶ କରେ ନାହିଁ । ଯେଉଁଥିପାଇଁ ସେହି ଜମିଗୁଡ଼ିକରୁ ଯେଉଁ ପରିମାଣରେ ଶସ୍ୟ ଉତ୍ପାଦିତ ହେବା କଥା, ତାହା ହୋଇପାରୁ ନାହିଁ ।

ଜମି ମାଲିକ ଚାଷ ପ୍ରତି ଉଦାସୀନ, ଭାଗ ଚାଷୀର ନିଜ ଜମି ହୋଇ ନ ଥିବାରୁ ସେ ମଧ କୃଷି ପ୍ରତି ଉଦାସୀନ । ଜମି ମାଲିକ ଏବଂ କୃଷକମାନଙ୍କର ଏହି ଉଦାସୀନ ମନୋଭାବ ଯୋଗୁଁ ଶସ୍ୟ ଉତ୍ପାଦନ ବହୁପରିମାଣରେ ହ୍ରାସ ଘଟୁଛି । ସରକାର ଯେଉଁ ପରିମାଣରେ କୃଷକମାନଙ୍କୁ ଉତ୍ସାହ ପ୍ରଦାନ କରିବା କଥା, ତାହା କରିପାରୁ ନାହାନ୍ତି । ଅନ୍ୟାନ୍ୟ ଦେଶରେ କୃଷିକୁ ଏକ ଶିଳ୍ପର ମର୍ଯ୍ୟାଦା ପ୍ରଦାନ କରାଯାଉଥିବାବେଳେ ଭାରତରେ ଏହା କେବଳ ଖାଦ୍ୟାଭାବ ପୂରଣ ପାଇଁ ଉଦ୍ଦିଷ୍ଟ । ଅନେକ ସମୟରେ ସରକାରଙ୍କର ଉଦାସୀନ ଭାବ ଚାଷୀମାନଙ୍କୁ ନିରୁତ୍ସାହିତ କରୁଛି । ସେମାନଙ୍କ ଦ୍ୱାରା ଉତ୍ପାଦିତ ଶସ୍ୟର ଯଥାର୍ଥ ମୂଲ୍ୟ ସେମାନେ ପାଇପାରୁ ନାହାନ୍ତି । ସରକାର ମଧ ତାଙ୍କଠାରୁ ଯଥାର୍ଥ ମୂଲ୍ୟ ଦେଇ ଶସ୍ୟ କ୍ରୟ କରୁନଥିବାରୁ କେତେକ ଅସାଧୁ ବ୍ୟବସାୟୀଙ୍କ ଦ୍ୱାରା କୃଷକ ସମ୍ପ୍ରଦାୟ ଶୋଷଣର ସମ୍ମୁଖୀନ ହେଉଛନ୍ତି । କଠିନ ପରିଶ୍ରମରେ ସାମାନ୍ୟ ମୂଲ୍ୟ ମିଳୁଥିବାରୁ କୃଷକ ସମ୍ପ୍ରଦାୟ କୃଷି କାର୍ଯ୍ୟ କରିବାକୁ ପରାଙ୍ମୁଖ ହେଉଛନ୍ତି ଓ ଖାଦ୍ୟଶସ୍ୟ ଉତ୍ପାଦନରେ ହ୍ରାସ ଘଟୁଛି । ଖାଦ୍ୟ ଗ୍ରହଣର ଏକରୂପତା ମଧ ନିର୍ଦ୍ଦିଷ୍ଟ ଖାଦ୍ୟାଭାବର କାରଣ ରୂପେ ଦେଖାଦେଇଥାଏ । ଅଧିକାଂଶ ଭାରତୀୟ ଏକପ୍ରକାର ଖାଦ୍ୟ ଖାଇବାରେ ଅଭ୍ୟସ୍ତ । କୌଣସି କାରଣରୁ ସେହି ଖାଦ୍ୟ ଉତ୍ପାଦନର ହ୍ରାସ ଘଟିଲେ ଖାଦ୍ୟାଭାବ ଦେଖାଦେଇଥାଏ । ଉଦାହରଣସ୍ୱରୂପ ଯେଉଁମାନେ ଭାତ ଖାଇବାରେ ଅଭ୍ୟସ୍ତ, ଧାନ ଉତ୍ପାଦନରେ ହ୍ରାସ ଘଟିଲେ ସେମାନେ ଗହମ କିମ୍ବା ଫଳମୂଳ ଅଥବା ଅନ୍ୟାନ୍ୟ ଖାଦ୍ୟ ଖାଇବା ଉଚିତ । ବିଭିନ୍ନ ଖାଦ୍ୟ ସହିତ ଭାରତୀୟମାନେ ନିଜକୁ ମିଶାଇପାରୁନଥିବାରୁ ଏକ ନିର୍ଦ୍ଦିଷ୍ଟ ଖାଦ୍ୟର ଅଭାବରେ ଖାଦ୍ୟାଭାବ ଦେଖାଦେଇଥାଏ । କର୍ମ ଶକ୍ତିର ଅଭାବ ଉତ୍ପାଦନ ହ୍ରାସର ଅନ୍ୟତମ କାରଣ । ଆମର କର୍ମକୁଣ୍ଠତା ବହୁପରିମାଣରେ ଉତ୍ପାଦନ ହ୍ରାସ କରିଥାଏ । କିଛି ସମୟ କାର୍ଯ୍ୟ କରିଦେବା ପରେ, ଆମେ ଭାବି ନେଇଥାଉ ଆଜିର କାର୍ଯ୍ୟ ଶେଷ ହୋଇଗଲା । ସମୟେ ସମୟେ ଗୋଟିଏ ଦିନ ପାଇଁ ଖାଦ୍ୟାଭାବ ପୂରଣ ହୋଇଗଲେ; ଆଉ ଅଧିକ ପରିଶ୍ରମ କରିବାକୁ ଆମେ କୁଣ୍ଠିତ ହୋଇଥାଉ । ଏହି କର୍ମକୁଣ୍ଠତା ଯୋଗୁଁ ଖାଦ୍ୟାଭାବ ଦେଖା ଦେଇଥାଏ । ଖର୍ଚ୍ଚ କ୍ଷେତ୍ରରେ ଖାମ୍‌ଖିଆଲି ମନୋଭାବ ବହୁପରିମାଣରେ ଆର୍ଥିକ ଅନଟନ ଓ ଖାଦ୍ୟାଭାବର କାରଣ ରୂପେ ଦେଖାଦେଇଥାଏ । ଏକ ଗଣନାରୁ ଜଣାଯାଇଛି, ଭାରତୀୟମାନେ ସେମାନଙ୍କ ଆୟର ଅଧିକାଂଶ ଭାଗ (ଏପରିକି ୮୦ ଭାଗ ମଧ) ଖାଦ୍ୟ କ୍ଷେତ୍ରରେ ଖର୍ଚ୍ଚ କରିଥାନ୍ତି । ହାତରେ ପାଣ୍ଠି ଥିଲେ, ଖର୍ଚ୍ଚ କ୍ଷେତ୍ରରେ ଏମାନେ ଆଦୌ କୁଣ୍ଠିତ ହୁଅନ୍ତି ନାହିଁ । ଭବିଷ୍ୟତରେ କୌଣସି ଯୋଜନା ଆଖିଆଗରେ ନ ରଖି ବର୍ତ୍ତମାନକୁ ଅଧିକ ସୁଖମୟ କରିବା ଉଦ୍ଦେଶ୍ୟରେ ପ୍ରଚୁର ପରିମାଣରେ ଅର୍ଥ ବ୍ୟୟ କରୁଥିବାରୁ ଭବିଷ୍ୟତର ଖାଦ୍ୟାଭାବକୁ ସମ୍ମୁଖୀନ ହୋଇପାରନ୍ତି ନାହିଁ । ଖର୍ଚ୍ଚ କ୍ଷେତ୍ରରେ ପରିମିତତା ଅବଲମ୍ବନ କରାଯିବା ଉଚିତ । ଅନେକ ସମୟରେ ଖାଦ୍ୟବ୍ୟବସାୟୀ ଅଥବା କଳାବଜାରୀମାନେ କୃତ୍ରିମ ଖାଦ୍ୟାଭାବ ସୃଷ୍ଟି କରିଥାନ୍ତି । ଏହି କଳାବଜାରୀମାନେ ପ୍ରଚୁର ପରିମାଣର ଲାଭ ଉଦ୍ଦେଶ୍ୟରେ ଖାଦ୍ୟ ଉତ୍ପାଦନ ସମୟରେ ବିପୁଳ ପରିମାଣରେ ଖାଦ୍ୟ ସଂଗ୍ରହ କରି ଲୁଚାଇ ଦେଇଥାନ୍ତି ।

ବଜାରରେ ଖାଦ୍ୟର କୃତ୍ରିମ ଅଭାବ ସୃଷ୍ଟି ହେବା ପରେ ଏଥିରୁ ସେମାନେ ପ୍ରଚୁର ଫାଇଦା ଉଠାଇଥାନ୍ତି । ତେଣୁ ଅସତ୍ ଓ ଅସାଧୁ ବ୍ୟବସାୟୀଙ୍କ ଲାଭଖୋର ମନୋବୃତ୍ତି ଅନେକ ସମୟରେ ବଜାରରେ ଖାଦ୍ୟାଭାବର କାରଣ ରୂପେ ଦେଖାଦେଇଥାଏ ।

ଖାଦ୍ୟ ସମସ୍ୟାର ନିରାକରଣ ନିମିତ୍ତ କେତେଗୁଡ଼ିଏ ପଦକ୍ଷେପ ଗ୍ରହଣ କରିବା ଉଚିତ । ବର୍ତ୍ତମାନ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଲା ଉତ୍ପାଦନ ବୃଦ୍ଧି । ବର୍ତ୍ତମାନ ଯେତିକି ପରିମାଣରେ ଖାଦ୍ୟଶସ୍ୟ ଉତ୍ପନ୍ନ ହେଉଛି, ତାହା ଲୋକସଂଖ୍ୟା ତୁଳନାରେ ଅପ୍ରଚୁର । ଏଥିପାଇଁ ଖାଦ୍ୟଶସ୍ୟ ଉତ୍ପାଦନ ବୃଦ୍ଧି କରିବାର ଆବଶ୍ୟକତା ରହିଛି । ପାରମ୍ପରିକ କୃଷି କାର୍ଯ୍ୟ ବର୍ତ୍ତମାନ ସମୟ ପାଇଁ ଆଦୌ ସହାୟକ ନୁହେଁ । ବୈଜ୍ଞାନିକ ପଦ୍ଧତିରେ କୃଷି କାର୍ଯ୍ୟ କଲେ ଉତ୍ପାଦନ ବୃଦ୍ଧି ପାଇଥାଏ । ଏହି କାରଣରୁ ଆମେରିକାରେ ଏତେ ପରିମାଣରେ ଖାଦ୍ୟଶସ୍ୟ ଉତ୍ପାଦିତ ହେଉଛି, ଯାହା ସେମାନେ ବାଧ୍ୟହୋଇ ନଷ୍ଟ କରୁଛନ୍ତି । ଉନ୍ନତ କୃଷି ଯନ୍ତ୍ର, ବହୁ ଅମଳକ୍ଷମ ବିହନ, ସାର, କୀଟନାଶକ ଔଷଧ ଆଦିର ବ୍ୟବହାର ଦ୍ୱାରା ଉତ୍ପାଦନ ବୃଦ୍ଧି ହୋଇଥାଏ । ହଳଲଙ୍ଗଳରେ ଚାଷ ବର୍ତ୍ତମାନ ସମୟ ଉପଯୋଗୀ ନୁହେଁ । ଏହାଦ୍ୱାରା ଅଧିକ ସମୟ ଅପଚୟ ହେବା ସଙ୍ଗେ ସଙ୍ଗେ ଅଳ୍ପ ଜମି ଚାଷ ହୋଇଥାଏ । ମାତ୍ର ଟ୍ରାକ୍ଟର ବା ପାୱାର ଟ୍ରିଲର ଦ୍ୱାରା ଚାଷ କଲେ ଖୁବ୍ କମ୍ ସମୟ ମଧ୍ୟରେ ଅଧିକ ଜମି ଚାଷ ହୋଇଥାଏ । ସମ୍ପ୍ରତି ଭୂ-ବନ୍ଦୋବସ୍ତ ଆଇନ ପରିବର୍ତ୍ତନର ଆବଶ୍ୟକତା ରହିଛି । ପ୍ରକୃତ ଚାଷୀଙ୍କ ନିକଟରେ ଜମି ନ ଥିବା ସମୟରେ, ଚାଷ କରୁନଥିବା ବ୍ୟକ୍ତିଙ୍କ ନିକଟରେ ଅଧିକ ଜମି ରହିଛି । ଆଇନ୍‌ଦ୍ୱାରା ଚାଷୀମାନଙ୍କୁ ଜମି ଯୋଗାଇ ଦିଆଗଲେ ଓ ସେମାନେ ତା'ର ସ୍ୱତ୍ୱାଧିକାରୀ ହେଲେ ଜମିର ଉପଯୁକ୍ତ ତତ୍ତ୍ୱ ନେବା ସଙ୍ଗେ ସଙ୍ଗେ ଉନ୍ନତ ପ୍ରଣାଳୀରେ ଚାଷ କରିବା ନିମନ୍ତେ ଉତ୍ସାହିତ ହୁଅନ୍ତେ । ଏହାଦ୍ୱାରା ଶସ୍ୟ ଉତ୍ପାଦନର ପରିମାଣ ବୃଦ୍ଧି ଲାଭ କରନ୍ତା । ଦ୍ୱିତୀୟରେ ଭାରତର ଯୌଥ ପରିବାର ବିଖଣ୍ଡିତ ହେବାଦ୍ୱାରା ଗୋଟିଏ ଚାଷଜମି କେତେ ଭାଗରେ ବିଭକ୍ତ ହୋଇଯିବା ଯୋଗୁଁ ଜମିର ଆୟତନ କମିଯାଏ । ସେଥିପାଇଁ ହିଡ଼ଦ୍ୱାରା ଅଯଥାରେ କେତେକ ଚାଷଜମି ନଷ୍ଟ ହୋଇଯାଏ । ଏହି ଛୋଟ ଖଣ୍ଡମାନଙ୍କୁ ଟ୍ରାକ୍ଟର ଆଦି ଦ୍ୱାରା ଚାଷ କରିବାରେ ଅସୁବିଧା ହୋଇଥାଏ । ସେହି କାରଣରୁ ସରକାର ଜମିମାନଙ୍କର ମୂଲ୍ୟ କଳନା କରି ତାକୁ ଗୋଟିଏ ଗୋଟିଏ ବଡ଼ ଚକଖଣ୍ଡରେ ବିଭକ୍ତ କଲେ ଚାଷକାର୍ଯ୍ୟ କରିବାରେ ଅସୁବିଧା ହେବ ନାହିଁ କିମ୍ବା ହିଡ଼ ଦ୍ୱାରା କିଛି ଜମି ନଷ୍ଟ ମଧ୍ୟ ହେବ ନାହିଁ । ଭାରତର ଲୋକସଂଖ୍ୟା ଯେଉଁପରି ଦ୍ରୁତ ଗତିରେ ବୃଦ୍ଧି ପାଉଛି, ଏଥିପାଇଁ ପରିବାର ନିୟନ୍ତ୍ରଣର ଜରୁରୀ ଆବଶ୍ୟକତା ରହିଛି । ଭାରତ ସରକାର ପ୍ରଥମ ପଞ୍ଚବାର୍ଷିକ ଯୋଜନାରେ ପରିବାର ନିୟନ୍ତ୍ରଣ ପାଇଁ ୬୫ କୋଟି ଟଙ୍କା, ଷଷ୍ଠ ପଞ୍ଚବାର୍ଷିକ ଯୋଜନାରେ ୧ ହଜାର କୋଟି ଟଙ୍କା, ସପ୍ତମ ପଞ୍ଚବାର୍ଷିକ ଯୋଜନାରେ ୧୦୫୦ କୋଟି ଟଙ୍କା ଏବଂ ଅଷ୍ଟମ ପଞ୍ଚବାର୍ଷିକ ଯୋଜନାରେ ୧୫୦୦ କୋଟି ଟଙ୍କା ବ୍ୟୟ କରାଯାଇଥିଲେହେଁ ଯେଉଁ ପରିମାଣରେ ସୁଫଳ ମିଳିବା କଥା, ତାହା ମିଳିପାରି ନାହିଁ । ଭାରତର ଜମି ସ୍ଥିର ଥିବା ସମୟରେ ଲୋକସଂଖ୍ୟା ଯେପରି ବୃଦ୍ଧି ପାଉଛି, ସମସ୍ତଙ୍କୁ ଖାଦ୍ୟଶସ୍ୟ

ଯୋଗାଇବାରେ ଅସୁବିଧା ସୃଷ୍ଟିହେବ । ଏହି କାରଣରୁ ଜନସାଧାରଣ ସଚେତନ ଭାବରେ ପରିବାର ନିୟନ୍ତ୍ରଣ କରି ପରିବାରକୁ ସୀମିତ ରଖିବା ଉଚିତ । ସରକାରଙ୍କଠାରୁ ମଧ୍ୟ ଜନସାଧାରଣ ଉପଯୁକ୍ତ ପ୍ରୋତ୍ସାହନ ଲାଭ କରିବା ଆବଶ୍ୟକ । ସରକାର ଓ ଜନସାଧାରଣଙ୍କ ସହଯୋଗରେ ପରିବାର ନିୟନ୍ତ୍ରଣ କାର୍ଯ୍ୟକ୍ରମ ସଫଳ ହୋଇପାରିବ । ଅନେକ ସମୟରେ ଉପଯୁକ୍ତ ସଂରକ୍ଷଣ ଅଭାବରୁ ବହୁ ଖାଦ୍ୟ ନଷ୍ଟ ହୋଇଯାଉଛି । ସରକାର ବିଭିନ୍ନ ସ୍ଥାନରେ ଶୀତଳ ଭଣ୍ଡାରମାନ ନିର୍ମାଣ କରି ନଷ୍ଟଯୋଗ୍ୟ ଖାଦ୍ୟଗୁଡ଼ିକୁ ସଂରକ୍ଷଣ କରିବା ଆବଶ୍ୟକ । ଏତଦ୍‌ବ୍ୟତୀତ ମଣିଷର ଯେତିକି ଖାଦ୍ୟ ଆବଶ୍ୟକ, ତାଠାରୁ ସେ ଅଧିକ ଖାଦ୍ୟ ଗ୍ରହଣ କରିବା ଅନୁଚିତ । ଏହାଦ୍ୱାରା ବଳକା ଖାଦ୍ୟ ନଷ୍ଟ ହୋଇଥାଏ । ଜନସାଧାରଣ ବିଭିନ୍ନ ଖାଦ୍ୟରେ ଅଭ୍ୟସ୍ତ ହେଲେ ଗୋଟିଏ ଖାଦ୍ୟର ଅଭାବରେ ଅନ୍ୟ ଖାଦ୍ୟ ଖାଇ ଜୀବନ ଧାରଣ କରିପାରିବେ । ତେଣୁ ଏକପ୍ରକାର ଖାଦ୍ୟ ନ ଖାଇ ଖାଦ୍ୟରେ ପରିବର୍ତ୍ତନ କରିବା ଆବଶ୍ୟକ । ସରକାର ଖାଦ୍ୟ ଉତ୍ପାଦନ ବୃଦ୍ଧି ନିମିତ୍ତ ଯେଉଁ ପଦକ୍ଷେପ ଗ୍ରହଣ କରୁଛନ୍ତି, ସେଥିରେ ତାଙ୍କର ଆନ୍ତରିକତା ରହିବା ଆବଶ୍ୟକ । କୃଷି ଋଣ ଯୋଗାଇ ଦେଇ ତଥା ଉନ୍ନତ ବିହନ, ସାର, ଔଷଧ ଆଦି ଯୋଗାଇ ସରକାର କୃଷକମାନଙ୍କୁ ଉତ୍ସାହିତ କରିବା ଉଚିତ । ଶସ୍ୟ ଉତ୍ପାଦନ ପରେ କଳାବଜାରୀଙ୍କ ଦ୍ୱାରା ତାହା କ୍ରୟ ନ କରାଇ ସରକାର ନିଜେ କ୍ରୟ କରି ଅଭାବ ସମୟରେ ସୁଷମ ଯୋଗାଣ ବ୍ୟବସ୍ଥା କଲେ ଖାଦ୍ୟାଭାବ ବହୁପରିମାଣରେ ଦୂରୀଭୂତ ହୋଇପାରିବ । ପ୍ରାକୃତିକ ବିପର୍ଯ୍ୟୟର ମୁକାବିଲା ନିମିତ୍ତ ସରକାର କେତେକ ପଦକ୍ଷେପ ଗ୍ରହଣ କରିବା ଉଚିତ । ବନ୍ୟା ପ୍ରକୋପରୁ ରକ୍ଷା ପାଇଁ ନଦୀବନ୍ଧ ଯୋଜନା, ବାତ୍ୟା ପାଇଁ ପୂର୍ବ ସୂଚନା ଓ ମରୁଡ଼ି ପାଇଁ ଉଠା ଜଳସେଚନ ଅଥବା କୂପଖନନ ଦ୍ୱାରା ଏହି ସମସ୍ୟାକୁ ବହୁପରିମାଣରେ ଦୂର କରାଯାଇପାରିବ । ଭାରତରେ ବହୁ ଜମି ପଡ଼ିଆ ରୂପେ ପଡ଼ି ରହିଛି । ସରକାରଙ୍କ ଦ୍ୱାରା ଉପଯୁକ୍ତ ପଦକ୍ଷେପ ଗ୍ରହଣ କରାଗଲେ ଏହାକୁ ଚାଷଜମିରେ ରୂପାନ୍ତରିତ କରାଯାଇପାରନ୍ତା ଓ ଏଥିରୁ ମଧ୍ୟ କିଛି ଅଧିକ ଶସ୍ୟ ଉତ୍ପନ୍ନ ହୋଇପାରନ୍ତା । ସରକାର ଏବଂ ଜନସାଧାରଣଙ୍କ ମଧ୍ୟରେ ସହଯୋଗମୂଳକ ମନୋବୃତ୍ତି ସୃଷ୍ଟି ହୋଇପାରିଲେ, ଖାଦ୍ୟ ସମସ୍ୟାକୁ ସମ୍ପୂର୍ଣ୍ଣ ନିୟନ୍ତ୍ରଣ କରାଯାଇପାରନ୍ତା । କୃଷକମାନଙ୍କୁ ସହାୟତା ପ୍ରଦାନ ପାଇଁ ସରକାର ସେମାନଙ୍କୁ ଯେପରି ଯଥାସମୟରେ ଋଣ ଓ ଅନ୍ୟାନ୍ୟ କୃଷି ଉପକରଣମାନ ଯୋଗାଇ ଦେବା ଆବଶ୍ୟକ ଶସ୍ୟ ଉତ୍ପାଦନ ପରେ କୃଷକମାନେ ସେହି ଋଣକୁ ମଧ୍ୟ ସଙ୍ଗେ ସଙ୍ଗେ ପରିଶୋଧ କରିବା ଆବଶ୍ୟକ । ସରକାର ପଞ୍ଚବାର୍ଷିକ ଯୋଜନାରେ କୃଷି ପ୍ରତି ଅଧିକ ଗୁରୁତ୍ୱ ପ୍ରଦାନ କରିବା ଉଚିତ । ଜଳସେଚନ ବ୍ୟବସ୍ଥା, କେନାଲ ନ ଥିବା ସ୍ଥାନରେ ଉଠାଜଳସେଚନ ବ୍ୟବସ୍ଥା ତଥା ପ୍ରାକୃତିକ ବିପର୍ଯ୍ୟୟର ମୁକାବିଲା ନିମିତ୍ତ ବିଭିନ୍ନ ପଞ୍ଚବାର୍ଷିକ ଯୋଜନାରେ ବ୍ୟବସ୍ଥା ରହିବା ଆବଶ୍ୟକ । ଏତଦ୍‌ବ୍ୟତୀତ ଖାଦ୍ୟର ସୁଷମ ବଣ୍ଟନ ବ୍ୟବସ୍ଥା ଦ୍ୱାରା ଖାଦ୍ୟାଭାବ ଦୂରୀକରଣ କରାଯାଇପାରିବ । କୃଷି ସମବାୟ ସଂସ୍ଥା ଗଠନ, ଖାଉଟି ଖୁଚୁରା ସରକାରୀ ଦୋକାନ ଆଦି ମାଧ୍ୟମରେ ସରକାର ଖାଦ୍ୟଶସ୍ୟକୁ ବିତରଣ ନିମିତ୍ତ ପଦକ୍ଷେପ ଗ୍ରହଣ କରିବା ଆବଶ୍ୟକ । କଳାବଜାରୀ ବ୍ୟବସାୟୀ ଯେପରି

ଖାଦ୍ୟଶସ୍ୟ ଲୁଚାଇ ରଖି ଏଥିରୁ ଫାଇଦା ନ ଉଠାନ୍ତି, ସେଥିପ୍ରତି ସରକାରୀ ସ୍ତରରେ ତୀକ୍ଷ୍ଣ ଦୃଷ୍ଟି ରହିବା ଉଚିତ ।

ମଣିଷର ବଞ୍ଚିବା ନିମିତ୍ତ ଖାଦ୍ୟ ଏକ ଅପରିହାର୍ଯ୍ୟ ଉପାଦାନ ହୋଇଥିବାରୁ ଏହା ସବୁଠାରୁ ଏକ ଗୁରୁତ୍ୱପୂର୍ଣ୍ଣ ସମସ୍ୟା । ଏ କ୍ଷେତ୍ରରେ ସରକାରଙ୍କର ଯେପରି ଭୂମିକା ରହିଛି, ଜନସାଧାରଣଙ୍କର ମଧ୍ୟ ସେହିପରି ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ସରକାର ଓ ଜନସାଧାରଣ ସହଯୋଗମୂଳକ ମନୋବୃତ୍ତି ନେଇ କାର୍ଯ୍ୟ କଲେ ଏହି ସମସ୍ୟାକୁ ସହଜରେ ଦୂରୀଭୂତ କରାଯାଇପାରିବ । ଗୋପାଳନ ଦ୍ୱାରା ଯେପରି ଖାଦ୍ୟ ସମସ୍ୟା ପୂରଣ ହୋଇଥାଏ, ଅନୁରୂପ ଭାବେ ଜମିର ସାର ସମସ୍ୟା ମଧ୍ୟ ପୂରଣ ହୋଇଥାଏ । ତେଣୁ ପଶୁପାଳନ, କୃଷିଋଣ ପ୍ରଦାନ, ବୈଜ୍ଞାନିକ ପଦ୍ଧତିରେ କୃଷି, ଭୂ-ସଂସ୍କାର, ସୁଷମ ବଣ୍ଟନ ବ୍ୟବସ୍ଥା, ଜଳସେଚନ, ସମବାୟ ସଂସ୍ଥା ଆଦିର ଗଠନ ଦ୍ୱାରା ଭାରତର ଖାଦ୍ୟସମସ୍ୟା ଯେ ବହୁପରିମାଣରେ ଦୂରୀଭୂତ ହୋଇପାରିବ, ଏଥିରେ ସନ୍ଦେହ ନାହିଁ ।

●

## ବେକାର ସମସ୍ୟା

**[ ଉପକ୍ରମ, ବେକାରର ସ୍ୱରୂପ ଓ ପ୍ରକୃତି, ବିଶ୍ୱ ପରିପ୍ରେକ୍ଷୀରେ ବେକାର ସମସ୍ୟା; ଭାରତରେ ବେକାର ସମସ୍ୟାର କେତେକ କାରଣ, (ତ୍ରୁଟିପୂର୍ଣ୍ଣ ଶିକ୍ଷା ବ୍ୟବସ୍ଥା, ଶିଳ୍ପ ଓ କୌଳିକ ପ୍ରଥା କ୍ଷେତ୍ରରେ ଅବହେଳା ମନୋଭାବ, ଶ୍ରମ ବିମୁଖତା, ବୈଷୟିକ ଶିକ୍ଷା କ୍ଷେତ୍ରରେ ତ୍ରୁଟି), ସମସ୍ୟା ସମାଧାନ ପାଇଁ ଗଠିତ କମିଟି, ବେକାର ସମସ୍ୟାର ସମାଧାନ (ମାନବ ସମ୍ବଳର ଉପଯୁକ୍ତ ବିନିଯୋଗ, କୁଟୀର ଶିଳ୍ପ ପ୍ରତି ଗୁରୁତ୍ୱ ଆରୋପ, କୃଷି ନୀତିରେ ପରିବର୍ତ୍ତନ, ଶିକ୍ଷାନୀତିରେ ପରିବର୍ତ୍ତନ ଓ କର୍ମାଭିମୁଖୀ ଶିକ୍ଷା, କୌଳିକ ବୃତ୍ତି ପ୍ରତି ଆଦର ଭାବ, ରାଜନୈତିକ ସାଧୁତା, ଯୋଜନା ପ୍ରଣୟନରେ ନୂତନ ଚାକିରି ସୃଷ୍ଟି), ଉପସଂହାର ]**

ବେକାର ସମସ୍ୟା କେବଳ ଭାରତ କାହିଁକି, ଆଜି ସମଗ୍ର ବିଶ୍ୱରେ ଏକ ମୁଖ୍ୟ ସମସ୍ୟା ହୋଇ ମୁଣ୍ଡ ଟେକିଛି । ବିଶେଷଭାବରେ ଶିକ୍ଷିତମାନଙ୍କ କ୍ଷେତ୍ରରେ ଏହା ଅତ୍ୟନ୍ତ ଉତ୍କଟ ରୂପ ଧାରଣ କରିଛି । 'ବେକାର'ର ସାଧାରଣ ସଂଜ୍ଞାରେ କୁହାଯାଇଛି କର୍ମ କରିବାର ଶକ୍ତିଥିବା ସତ୍ତ୍ୱେ କାର୍ଯ୍ୟାଭାବ କାରଣରୁ କାର୍ଯ୍ୟ ନ ପାଇଲେ, ବେକାର ରୂପେ ପରିଗଣିତ ହୋଇଥାଏ । ବେକାର ଅବସ୍ଥାଠାରୁ ବଡ଼ କ୍ଷତିକର ଅବସ୍ଥା ଆଉ କିଛି ନ ଥାଇପାରେ । ସେଥିପାଇଁ ରବର୍ଟ ହୁଭର କହିଥିଲେ—"No waste is greater than unemployment, no suffering is keener or frought with despair than that due to inability to get jobs by those who to work." ମାନବ ସମ୍ବଳର ଉପଯୁକ୍ତ ବିନିଯୋଗର ଅଭାବ ହିଁ

ବେକାର ଅବସ୍ଥା । ଏହାକୁ ଉତ୍ପାଦିତ ଶକ୍ତିର ଅପରାଧୀ ବିନଷ୍ଟ କହିଲେ ଭୁଲ ହେବ ନାହିଁ । ଏହା ଏକ ବିଶ୍ୱ ସମସ୍ୟା ହେଲେହେଁ ବିକାଶଶୀଳ ଦେଶମାନଙ୍କରେ ଏହାର ଅବସ୍ଥା ଅତ୍ୟନ୍ତ ଉତ୍କଟ । ସ୍ୱାଧୀନତାର ପରବର୍ତ୍ତୀ କାଳରେ ଭାରତରେ ବେକାର ସମସ୍ୟା ପ୍ରତି ବର୍ଷ ବୃଦ୍ଧି ପାଇଆସୁଛି । ଆମର ଶିକ୍ଷାବ୍ୟବସ୍ଥା ଏବଂ ଚାକିରି ସର୍ତ୍ତାବଳୀ ଏହି ସମସ୍ୟାର ସମାଧାନ ପାଇଁ ଅନୁପଯୁକ୍ତ ବୋଲି ମନେ ହେଉଛି । ବର୍ତ୍ତମାନ ସରକାରୀ ସ୍ତରରେ ଯେପରି ଚାକିରି କାଟ ନୀତି ଆରମ୍ଭ ହେଲାଣି, ଭବିଷ୍ୟତରେ ଏହି ଅବସ୍ଥା ଅଧିକ ଶୋଚନୀୟ ହୋଇପଡ଼ିବ । ଆଜିର ଶିକ୍ଷିତ ବ୍ୟକ୍ତି ଚାକିରି ଅଭାବରୁ ବହୁପ୍ରକାର ଅସାମାଜିକ କାର୍ଯ୍ୟରେ ଲିପ୍ତ । ଖାଦ୍ୟାଭାବ ଓ କର୍ମ ଅଭାବ ମଣିଷକୁ ଅପରାଧ କରିବାକୁ ବାଧ କରିଥାଏ । ଦେଶର ପ୍ରଗତି କ୍ଷେତ୍ରରେ ଏହା ଅନ୍ତରାୟ ସୃଷ୍ଟି କରୁଛି । ବର୍ତ୍ତମାନ ଠାରୁ ଦେଶର ଚିନ୍ତାଶୀଳ ବ୍ୟକ୍ତି ଓ ସରକାର ଉପାୟ ଆବିଷ୍କାର ନ କଲେ ଭବିଷ୍ୟତରେ ଏହି ବେକାର ସମସ୍ୟା ଯେ ଏକ ଗୁରୁତର ରୂପ ଧାରଣ କରିବ, କହିବା ଅନାବଶ୍ୟକ ମାତ୍ର ।

ଭାରତର ଅଧିବାସୀମାନେ ମୁଖ୍ୟତଃ ସହର ଓ ଗ୍ରାମାଞ୍ଚଳରେ ବାସ କରିଥାନ୍ତି । ସହରାଞ୍ଚଳ ଅପେକ୍ଷା ଗ୍ରାମାଞ୍ଚଳରେ ଅଧିକ ଲୋକ ରହିଥାନ୍ତି । ଗ୍ରାମାଞ୍ଚଳର ଅଧିବାସୀଗଣ ମୁଖ୍ୟତଃ କୃଷି ଉପରେ ନିର୍ଭରଶୀଳ । ଗ୍ରାମାଞ୍ଚଳ ଅଧିବାସୀ ବର୍ଷରେ ପ୍ରାୟ ୫ରୁ ୭ ମାସ ପର୍ଯ୍ୟନ୍ତ କୌଣସି କାର୍ଯ୍ୟ ପାଇନଥାନ୍ତି । ଭାରତର ପ୍ରାୟ ୭୦ ଭାଗ ଅଧିବାସୀ କୃଷି କାର୍ଯ୍ୟ କରି ଜୀବିକା ନିର୍ବାହ କରିଥାନ୍ତି । କୃଷି ଏକ ନିର୍ଦ୍ଦିଷ୍ଟ ଋତୁକାଳୀନ କାର୍ଯ୍ୟ ହୋଇଥିବାରୁ, ଅନ୍ୟ ସମୟରେ ଏହା ଉପରେ ନିର୍ଭର କରୁଥିବା ବ୍ୟକ୍ତି ବେକାର ହୋଇ ବସିଥାନ୍ତି । ଏହି କାରଣରୁ ଗ୍ରାମାଞ୍ଚଳର ଦରିଦ୍ରଙ୍କ ସଂଖ୍ୟା ସହରାଞ୍ଚଳ ଅପେକ୍ଷା ଅଧିକ । ଗ୍ରାମାଞ୍ଚଳର ଲୋକଶକ୍ତିର ଯଥାର୍ଥ ବିନିଯୋଗ ଅଭାବରୁ ଏବଂ ଗାନ୍ଧିଜୀଙ୍କ ପରିକଳ୍ପିତ କୁଟୀରଶିଳ୍ପର ବିଲୋପ ଯୋଗୁଁ ଗ୍ରାମବାସୀ କାର୍ଯ୍ୟାନୁସରଣରେ ସହରମୁଖୀ ହୋଇଥାନ୍ତି । ଗବେଷଣାରୁ ଜଣାଯାଇଥାଏ କୃଷି ଉପରେ ନିର୍ଭରଶୀଳ ପ୍ରାୟ ୭୦ ଭାଗ ଲୋକଙ୍କ ମଧ୍ୟରୁ ମାତ୍ର ୨୦ରୁ ୩୦ ଭାଗ ପ୍ରକୃତରେ ଜମିଥିବା କୃଷକ । ଅନ୍ୟମାନେ କେବଳ କୃଷି ଉପରେ ନିର୍ଭର କରୁଥିବା ଶ୍ରମଜୀବୀ । ଗ୍ରାମାଞ୍ଚଳର କ୍ଷୁଦ୍ରଶିଳ୍ପ ଓ କୁଟୀରଶିଳ୍ପ ଉପରେ ନିର୍ଭର କରୁଥିବା ବ୍ୟକ୍ତିବିଶେଷ ବୃହତ୍ ଶିଳ୍ପ ସହିତ ପ୍ରତିଯୋଗିତା କରି ନ ପାରି ବେକାର ଜୀବନକୁ ଅବଲମ୍ବନ କରିବାକୁ ବାଧ ହୋଇଛନ୍ତି । ସହରାଞ୍ଚଳର ବେକାରମାନଙ୍କୁ ମୁଖ୍ୟତଃ ଦୁଇଟି ଶ୍ରେଣୀରେ ବିଭକ୍ତ କରାଯାଇପାରେ । ଯଥା—ଶିକ୍ଷିତ ବେକାର ଏବଂ ଶିଳ୍ପ ଶ୍ରମିକ । ସହରରେ ବେକାର ସଂଖ୍ୟା ବୃଦ୍ଧି ପାଇବାର କାରଣ ହେଉଛି—ଜନସଂଖ୍ୟା ବୃଦ୍ଧି ଓ ଗ୍ରାମାଞ୍ଚଳରୁ ବହୁ ଶ୍ରମିକଙ୍କର ସହରାଞ୍ଚଳକୁ ଆଗମନ । ଜନସଂଖ୍ୟା ବୃଦ୍ଧି ଅନୁଯାୟୀ ନିଯୁକ୍ତି ସଂଖ୍ୟା ବୃଦ୍ଧି ହୋଇପାରୁ ନ ଥିବାରୁ ବେକାର ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଛି ଏବଂ ଏହି କାରଣରୁ ଭାରତରେ ଦରିଦ୍ରଙ୍କର ସଂଖ୍ୟା ଦିନକୁ ଦିନ ବଢ଼ିବାରେ ଲାଗିଛି ।

ବେକାର ସମସ୍ୟା ଆଜି ଏକ ଆଞ୍ଚଳିକ ସମସ୍ୟା ନ ହୋଇ, ବିଶ୍ୱବ୍ୟାପୀ ସମସ୍ୟାରେ ପରିଣତ ହୋଇଛି । ସମଗ୍ର ପୃଥିବୀରେ ୧୯୩୦ ଖ୍ରୀ. ମଧ୍ୟରେ ବାଣିଜ୍ୟ କ୍ଷେତ୍ରରେ ଗୁରୁତର

ସଙ୍କଟ ଉପସ୍ଥିତ ହୋଇଥିଲା । ବାଣିଜ୍ୟ ବ୍ୟବସାୟରେ ମାନ୍ଦାବସ୍ଥା ଯୋଗୁଁ ଇଉରୋପୀୟ ଦେଶମାନଙ୍କରେ ବେକାର ସମସ୍ୟା ଗୁରୁତର ରୂପ ଗ୍ରହଣ କଲା । ଶିଳ୍ପ ସମୃଦ୍ଧି ଦେଶଗୁଡ଼ିକର ପ୍ରଭୂତ ପରିମାଣ କ୍ଷତିର ସମ୍ମୁଖୀନ ହେଲେ । ପୁନରାୟ ଦ୍ୱିତୀୟ ମହାଯୁଦ୍ଧ ସମୟରେ ଏହି ଅବସ୍ଥା ଶୋଚନୀୟ ହୋଇପଡ଼ିଲା । ମାନବ ସମ୍ବଳ ପ୍ରତି ଗୁରୁତ୍ୱ ନ ଦେଇ କଳକାରଖାନା ବା ମେସିନ୍ ଉପରେ ଅଧିକ ଗୁରୁତ୍ୱ ପ୍ରଦାନ କରାଯିବାରୁ ବହୁ ମାନବ କାର୍ଯ୍ୟ ହରାଇ ବେକାର ହୋଇପଡ଼ିଲେ । ବିଶ୍ୱଯୁଦ୍ଧୋତ୍ତର କାଳରେ ପ୍ରତ୍ୟେକ ଦେଶ ଏହି ସମସ୍ୟାକୁ ଗଭୀର ଭାବରେ ହୃଦୟଙ୍ଗମ କଲେ ମଧ୍ୟ ପ୍ରତିଯୋଗିତାରେ ନିଜର ପ୍ରାଧାନ୍ୟ ସୂଚିତ କରିବାକୁ ମେସିନ୍ ଉପରେ ନିର୍ଭର କରିବାକୁ ଲାଗିଲେ । ଏକାଧିକ ମଣିଷର କାର୍ଯ୍ୟ ଗୋଟିଏ ମେସିନ୍‌ର କାର୍ଯ୍ୟ ଦ୍ୱାରା ସମ୍ଭବ ହେବାରୁ ମଣିଷର ଗୁରୁତ୍ୱ କମିଯାଇ ମେସିନ୍‌ର ଗୁରୁତ୍ୱ ବୃଦ୍ଧି ପାଇଲା । ଫଳରେ ମାନବସମ୍ବଳର ବିନିଯୋଗ ଅଭାବରୁ ବେକାର ସମସ୍ୟା ବହୁଗୁଣରେ ବଢ଼ିଗଲା । ଏବେ ସମଗ୍ର ବିଶ୍ୱରେ ଯେପରି ଭାବରେ ବେକାରମାନଙ୍କ ସଂଖ୍ୟା ଉଦ୍‌ବେଗଜନକ ପରିସ୍ଥିତିରେ ଉପନୀତ ହୋଇଛି, କେତେବେଳେ କ'ଣ ହେବ ଅନୁମାନ କରିବା କଷ୍ଟସାଧ୍ୟ । ତେଣୁ ବର୍ତ୍ତମାନଠାରୁ ବିଶ୍ୱ ସଚେତନତା ସୃଷ୍ଟିକରି ବେକାର ସମସ୍ୟାର ଦୂରୀକରଣ ନିମିତ୍ତ ପଦକ୍ଷେପ ଗ୍ରହଣ କରାନଗଲେ, ବିଶ୍ୱ ନିଶ୍ଚିତ ଭାବରେ ଏକ ସଙ୍କଟଜନକ ପରିସ୍ଥିତି ଦିଗକୁ ଗତି କରିବ ।

ଭାରତରେ ରୋଜଗାରର ସୀମା ଅନୁଯାୟୀ ଦାରିଦ୍ର୍ୟର ସୀମାରେଖା ନିର୍ଦ୍ଦିଷ୍ଟ କରାଯାଇଥାଏ । ସରକାରୀ ଭାଷା ଅନୁଯାୟୀ ଯେଉଁ ବ୍ୟକ୍ତିମାନେ ଆବଶ୍ୟକତା ଅନୁଯାୟୀ କାମ କରିବାର ସୁଯୋଗ ଲାଭ କରନ୍ତି ନାହିଁ ବା ନିଜ ଆୟରୁ ନିମ୍ନତମ ଆବଶ୍ୟକତା ପୂରଣ କରିବାକୁ ସମର୍ଥ ହୁଅନ୍ତି ନାହିଁ, ସେମାନଙ୍କୁ ଦରିଦ୍ର ଶ୍ରେଣୀଭୁକ୍ତ କରାଯାଇଥାଏ । ଆମ ଦେଶରେ ଦାରିଦ୍ର୍ୟର ସୀମାରେଖା ରୂପେ ପାଞ୍ଚଜଣ ଲୋକ ଥିବା ପରିବାରର ବାର୍ଷିକ ଆୟ ଏଗାରହଜାର ଟଙ୍କା ବୋଲି ଧରାଯାଇଛି । ଏହି ଦୃଷ୍ଟିରୁ ଭାରତରେ ଦାରିଦ୍ର୍ୟ ସୀମାରେଖା ତଳେ ୨୯.୯ ପ୍ରତିଶତ ବ୍ୟକ୍ତି ଥିବା ବେଳେ ଓଡ଼ିଶାରେ ଏହାର ସଂଖ୍ୟା ୪୪.୭ ପ୍ରତିଶତ । ସରକାରୀ ହିସାବରେ ଏତିକି ପ୍ରତିଶତ ବ୍ୟକ୍ତି ଥିଲେହେଁ, ବେସରକାରୀ ହିସାବରେ ଏହାର ସଂଖ୍ୟା ବହୁ ଅଧିକ । ବେକାର ସଂଖ୍ୟା ବୃଦ୍ଧି ଯୋଗୁଁ ଭାରତରେ ଦରିଦ୍ରମାନଙ୍କର ସଂଖ୍ୟା ବୃଦ୍ଧି ପାଉଛି । ଏହି ବେକାର ସଂଖ୍ୟାର ବୃଦ୍ଧି ନିମିତ୍ତ କେତେକ ପ୍ରମୁଖ କାରଣ ବିଦ୍ୟମାନ । ମୁଖ୍ୟ କାରଣ ରୂପେ ଆମ ପ୍ରଚଳିତ ଶିକ୍ଷା ପଦ୍ଧତିର ତ୍ରୁଟିକୁ ଗ୍ରହଣ କରାଯାଇପାରେ । ଇଂରେଜ ଶାସନ ସମୟରେ ଯେଉଁ ଶିକ୍ଷାପଦ୍ଧତି ଭାରତରେ ପ୍ରଚଳିତ ହୋଇଥିଲା, ଏବେ ସୁଦ୍ଧା ତା'ର ବିଶେଷ କିଛି ପରିବର୍ତ୍ତନ ହୋଇଛି ବୋଲି ମନେହୁଏ ନାହିଁ । ଇଂରେଜମାନଙ୍କ ସମୟରେ ଭାରତରେ ଯେଉଁ ଶିକ୍ଷାପଦ୍ଧତି ସୃଷ୍ଟି ହୋଇଥିଲା, ତାହା ମୁଖ୍ୟତଃ ଥିଲା ଭାରତରେ କିଛି କିରାଣୀ ସୃଷ୍ଟି ପାଇଁ । ଏହି ଦୃଷ୍ଟିରୁ କିରାଣୀ ଚାକିରି ପାଇଁ ସେତେବେଳେ ଭାରତୀୟମାନେ ଶିକ୍ଷା ଲାଭ କରୁଥିଲେ । ଏପରି ଶିକ୍ଷା ଲାଭ ପରେ ଯୁବସମ୍ପ୍ରଦାୟ ଅନ୍ୟ କୌଣସି କ୍ଷେତ୍ରରେ ନିଜକୁ ପ୍ରତିଷ୍ଠା କରିପାରେ ନାହିଁ । କିରାଣୀ ଚାକିରି ନ ମିଳିଲେ ସେମାନେ ବେକାର ଜୀବନକୁ

ଆଦରି ନେଇଥାନ୍ତି । ପାରମ୍ପରିକ ଶିକ୍ଷାପଦ୍ଧତିର ଏହି ତ୍ରୁଟି ଶିକ୍ଷିତ ଯୁବକକୁ ସ୍ୱାବଲମ୍ବନଶୀଳ କରିବା କ୍ଷେତ୍ରରେ ସାହାଯ୍ୟ କରିପାରୁ ନାହିଁ । ଏପରିକି ଏହି ପ୍ରକାର ଶିକ୍ଷାଲାଭ କରୁଥିବା ବ୍ୟକ୍ତି ନିଜର କୌଳିକ ବୃତ୍ତିକୁ ମଧ୍ୟ ଗ୍ରହଣ କରିବାକୁ ପସନ୍ଦ କରୁନାହାନ୍ତି । କୃଷକର ସନ୍ତାନ କୃଷିକାର୍ଯ୍ୟ କରିବାକୁ କିମ୍ବା ବ୍ୟବସାୟୀର ସନ୍ତାନ ବ୍ୟବସାୟ କରିବାକୁ ପରାଙ୍‌ମୁଖ । ଗୋଟିଏ କିରାଣୀ, ଚପରାସୀ ବା ପିଅନ ଚାକିରି ତା' ନିକଟରେ ଯେତିକି ଲୋଭନୀୟ, ନିଜର କୌଳିକ ବୃତ୍ତି ସେତିକି ଗ୍ରହଣୀୟ ନୁହେଁ । ଭାରତ ଅନ୍ୟାନ୍ୟ ବିକଶିତ ରାଷ୍ଟ୍ରପରି ଶିଳ୍ପ ସମୃଦ୍ଧ ହୋଇନଥିବାରୁ, ଶିଳ୍ପ କ୍ଷେତ୍ରରେ ଅଧିକ ଚାକିରି ସୃଷ୍ଟି ଲାଭ କରିବା ସମ୍ଭବ ନୁହେଁ । ଶିଳ୍ପକ୍ଷେତ୍ରରେ ଅସମୃଦ୍ଧ ଏବଂ କୌଳିକ ବୃତ୍ତିକୁ ଗ୍ରହଣ କରିବାକୁ ପରାଙ୍‌ମୁଖ ମନୋବୃତ୍ତି ଯୋଗୁଁ ଭାରତରେ ବହୁପରିମାଣରେ ବେକାର ସଂଖ୍ୟା ବୃଦ୍ଧି ପାଇ ଚାଲିଛି । ଶ୍ରମ ପ୍ରତି ବିମୁଖଭାବ ବେକାର ସମସ୍ୟାର ଅନ୍ୟତମ କାରଣ । ସାମାନ୍ୟ ଶିକ୍ଷିତ ବ୍ୟକ୍ତିଟିଏ ମଧ୍ୟ ଶାରୀରିକ ଶ୍ରମ କରିବାକୁ ଉଚିତ ମନେକରୁ ନାହିଁ । ପ୍ରତ୍ୟେକ ବ୍ୟକ୍ତି ଦାୟିତ୍ୱଶୂନ୍ୟ ଓ ଆରାମଦାୟକ କାର୍ଯ୍ୟ କରିବାକୁ ଆଗ୍ରହୀ । ଏହି ଦୃଷ୍ଟିରୁ ସରକାରୀ ଚାକିରି ଅତୀବ ଲୋଭନୀୟ । ଚାକିରି ବ୍ୟତିରେକେ ଶାରୀରିକ ଶ୍ରମ ଥିବା କାର୍ଯ୍ୟକରି ଆତ୍ମନିର୍ଭରଶୀଳ ହେବାକୁ ସେ ଆଦୌ ଚେଷ୍ଟା କରେ ନାହିଁ । ଚାକିରିର କ୍ଷେତ୍ର ସୀମିତ ହୋଇଥିବାରୁ ଏବଂ ଶ୍ରମ ପ୍ରତି ବିମୁଖଭାବ ବୃଦ୍ଧି ପାଉଥିବାରୁ ବେକାର ସଂଖ୍ୟା ମଧ୍ୟ ବଢ଼ିବାରେ ଲାଗିଛି । ଭାରତରେ ପ୍ରଚଳିତ ବୈଷୟିକ ଶିକ୍ଷା କ୍ଷେତ୍ରରେ ମଧ୍ୟ ତ୍ରୁଟି ପରିଲକ୍ଷିତ ହେଉଛି । ସେହି କାରଣରୁ ବୈଷୟିକ ଶିକ୍ଷା ଲାଭକରି ମଧ୍ୟ ଭାରତରେ ଲକ୍ଷ ଲକ୍ଷ ଡାକ୍ତର, ଇଞ୍ଜିନିୟର ଆଦି ବେକାର ହୋଇ ବସିଛନ୍ତି । ସବୁଠାରୁ ଦୁଃଖର କଥା କୃଷି ମହାବିଦ୍ୟାଳୟରେ ଶିକ୍ଷା ଲାଭ କରିବା ସତ୍ତ୍ୱେ ଆଜିର ଯୁବ ସମ୍ପ୍ରଦାୟ କୃଷି କାର୍ଯ୍ୟ କରିବାକୁ ହେୟ ମନେକରୁଛି । କୃଷି ସମ୍ପର୍କରେ ସ୍ନାତକ, ସ୍ନାତକୋତ୍ତର ଡିଗ୍ରୀ ଲାଭ କରିବା ପରେ ମଧ୍ୟ କୃଷି କାର୍ଯ୍ୟକୁ ଏକ ଅପମାନଜନକ କାର୍ଯ୍ୟ ବୋଲି ଭାବୁଛି । ତେଣୁ ଆଜିର ବୈଷୟିକ ଶିକ୍ଷା ଯୁବକମାନଙ୍କୁ ସେହି କାର୍ଯ୍ୟ ସମ୍ପାଦନାରେ ସହାୟତା କରିପାରୁ ନ ଥିବାରୁ ତାହା ତ୍ରୁଟିପୂର୍ଣ୍ଣ ବୋଲି ପ୍ରମାଣିତ ହୋଇଛି । ଏତଦ୍‌ବ୍ୟତୀତ ଭାରତର ଲୋକସଂଖ୍ୟା ଯେଉଁ ପରିମାଣରେ ବୃଦ୍ଧି ପାଉଛି, ସମସ୍ତଙ୍କୁ ଚାକିରି ଯୋଗାଇଦେବା କୌଣସି ସରକାର ପକ୍ଷେ ସମ୍ଭବ ନୁହେଁ । ଜନସଂଖ୍ୟା ବୃଦ୍ଧି ତୁଳନାରେ ଚାକିରି ସଂଖ୍ୟା ଧୀରେ ଧୀରେ ସଂକୁଚିତ ହୋଇପଡୁଥିବାରୁ ବେକାର ସଂଖ୍ୟା ବୃଦ୍ଧି ପାଇବା ସ୍ୱାଭାବିକ ।

ଭାରତର ବେକାର ଓ ଦରିଦ୍ରଙ୍କ ସଂଖ୍ୟା ନିରୂପଣ ପାଇଁ ଭଗବତୀ କମିଟି ୧୯୭୦ ମସିହାରେ ଗଠିତ ହୋଇଥିଲା । ଏହି କମିଟିର ରିପୋର୍ଟ ଅନୁଯାୟୀ ସେତେବେଳେ ୧୮.୭ ନିୟୁତ ବ୍ୟକ୍ତି ବେକାର ଜୀବନ ଯାପନ କରୁଥିଲେ । ଏହି ବେକାରମାନଙ୍କ ମଧ୍ୟରୁ ଗ୍ରାମାଞ୍ଚଳରେ ୧୬.୧ ନିୟୁତ ଏବଂ ସହରାଞ୍ଚଳରେ ୨.୬ ନିୟୁତ ବ୍ୟକ୍ତି ବାସ କରୁଥିଲେ । ୧୯୭୫ ମସିହାରେ ଜାତୀୟ ନମୁନା ପରୀକ୍ଷା (National Sample Survey)ରୁ ଜଣାଯାଏ ପ୍ରତି ପାଞ୍ଚଜଣରେ ଜଣେ ଭାରତୀୟ ଅତ୍ୟନ୍ତ ନିଃସ୍ୱ, ପ୍ରତି ତିନିଜଣ ଭାରତୀୟରୁ ଜଣେ ଭାରତୀୟ ନିଃସ୍ୱ ଏବଂ

ଲୋକସଂଖ୍ୟାର ଅଧା ଦାରିଦ୍ର୍ୟ ସୀମାରେଖା ତଳେ ବସବାସ କରୁଛନ୍ତି । 'ଯୋଜନା'ରେ ୧୯୭୭ ମେ ବିଶେଷାଙ୍କରୁ ଭାରତରେ ୨୯ ନିୟୁତରୁ ଅଧିକ ବ୍ୟକ୍ତି ବେକାର ଜୀବନଯାପନ କରୁଛନ୍ତି ବୋଲି ଜଣାଯାଇଥିଲା । ବର୍ତ୍ତମାନ ଏହାର ସଂଖ୍ୟା ବହୁଗୁଣରେ ବୃଦ୍ଧି ପାଇଛି । କେବଳ ଓଡ଼ିଶାରେ ବର୍ତ୍ତମାନ ପନ୍ଦରଲକ୍ଷରୁ ଅଧିକ ଶିକ୍ଷିତ ଯୁବକ କର୍ମନିଯୋଜନ ସଂସ୍ଥାରେ ନାମ ପଞ୍ଜିକରଣ କରି ଅପେକ୍ଷା କରିଛନ୍ତି । ଏତଦ୍‌ବ୍ୟତୀତ ବୟସ ଅତିକ୍ରମ କରିଯାଇଥିବାରୁ କେତେକଙ୍କର ନାମ ପଞ୍ଜିକରଣରୁ ବାଦ ପଡ଼ିଛି ଓ ବହୁସଂଖ୍ୟାରେ ବେକାର ଯୁବକ ନାମ ମଧ ପଞ୍ଜିକରଣ କରିନାହାନ୍ତି । ଏହି ଦୃଷ୍ଟିରୁ ବିଚାର କଲେ ସରକାରୀ ହିସାବ ତୁଳନାରେ ଭାରତରେ ବହୁ ଅଧିକସଂଖ୍ୟାରେ ବେକାର ଯୁବକଯୁବତୀ ଚାକିରି ଅପେକ୍ଷାରେ ବସି ରହିଛନ୍ତି ।

ବେକାର ସମସ୍ୟାର ସମ୍ପୂର୍ଣ୍ଣ ସମାଧାନ ଏକ କଷ୍ଟସାଧ୍ୟ ବ୍ୟାପାର । ତଥାପି ସରକାରୀ ସ୍ତରରେ କେତେକ ପଦକ୍ଷେପ ଗ୍ରହଣ କରାଗଲେ କେତେକାଂଶରେ ଏହି ସମସ୍ୟାର ସମାଧାନ ହୋଇପାରିବ । ପ୍ରଥମ ପଦକ୍ଷେପ ସ୍ୱରୂପ ସରକାର ମାନବ ସମ୍ବଳର ଉପଯୁକ୍ତ ବିନିଯୋଗ ଉପରେ ଗୁରୁତ୍ୱ ପ୍ରଦାନ କରିବା ଉଚିତ । ଯନ୍ତ୍ରପାତି ଉପରେ ଅଧିକ ନିର୍ଭର କଲେ, ମାନବ ସମ୍ବଳର ବିଶେଷ ବିନିଯୋଗ ହୋଇପାରିବ ନାହିଁ । ଏହି କାରଣରୁ ଚୀନ୍‌ରେ ଯନ୍ତ୍ରପାତି ଅପେକ୍ଷା ମନୁଷ୍ୟର ଶାରୀରିକ ଶ୍ରମ ଉପରେ ଅଧିକ ଗୁରୁତ୍ୱ ଦିଆଯାଉଛି । ଉଭୟ ଗ୍ରାମାଞ୍ଚଳ ଓ ସହରାଞ୍ଚଳରେ ସରକାରଙ୍କ ତରଫରୁ ଗୃହ ନିର୍ମାଣ, ଡାକ୍ତରଖାନା ନିର୍ମାଣ, ରାସ୍ତାଘାଟ ନିର୍ମାଣ, ଜଳସେଚନ ନିମିତ୍ତ କେନାଲ ଖନନ, ବନ୍ୟାନିୟନ୍ତ୍ରଣ ନିମିତ୍ତ ବନ୍ଧ ନିର୍ମାଣ, ମୃତ୍ତିକା ସଂରକ୍ଷଣ, ପ୍ରାଥମିକ ଶିକ୍ଷାର ବିସ୍ତାର, ସ୍ୱାସ୍ଥ୍ୟର ଉନ୍ନତି ନିମିତ୍ତ କାର୍ଯ୍ୟପନ୍ଥା ଆଦି ଗ୍ରହଣ କରାଗଲେ ବହୁସଂଖ୍ୟକ ଶ୍ରମଭିତ୍ତିକ ଚାକିରି ସୃଷ୍ଟି ହେବା ସଙ୍ଗେ ସଙ୍ଗେ ବହୁବିଧ ଜନମଙ୍ଗଳ କାର୍ଯ୍ୟ ମଧ କରାଯାଇପାରିବ । କୁଟୀର ଶିଳ୍ପ ଓ କ୍ଷୁଦ୍ରଶିଳ୍ପ ପ୍ରତି ଗୁରୁତ୍ୱ ପ୍ରଦାନ କରାଗଲେ ଗ୍ରାମାଞ୍ଚଳ ତଥା ସହରାଞ୍ଚଳରେ କିଛି ଲୋକ ଚାକିରି ପାଇପାରିବେ । ଗୁରୁଶିଳ୍ପର ଅଧିକାଂଶ କାର୍ଯ୍ୟ ମେସିନ୍‌ଦ୍ୱାରା ସମାହିତ ହେଉଥିବାରୁ ଓ ଏଥିରେ ବୈଷୟିକ ଜ୍ଞାନସମ୍ପନ୍ନ ବ୍ୟକ୍ତି ନିଯୁକ୍ତି ଲାଭ କରୁଥିବାରୁ ସାଧାରଣ ଲୋକମାନଙ୍କ କ୍ଷେତ୍ରରେ ଏହା ଚାକିରି ସୃଷ୍ଟି କରିବାକୁ ଅସମର୍ଥ । ସେଥିପାଇଁ ଗ୍ରାମ୍ୟ ଆର୍ଥନୀତିକ ଯୋଜନାକୁ ସଫଳ କରିବା ନିମିତ୍ତ ମହାତ୍ମାଗାନ୍ଧି କୁଟୀର ଶିଳ୍ପ ଏବଂ କ୍ଷୁଦ୍ର ଶିଳ୍ପକୁ ଉତ୍ସାହିତ କରିବା ପାଇଁ ମତବ୍ୟକ୍ତ କରିଥିଲେ । ଭାରତ ଏକ କୃଷିପ୍ରଧାନ ଦେଶ ହୋଇଥିବାରୁ ଏବଂ ଏହାର ଅଧିକାଂଶ ମାନବ ସମ୍ବଳ କୃଷିକ୍ଷେତ୍ରରେ ବ୍ୟବହୃତ ହେଉଥିବାରୁ, ସରକାର କୃଷି ନୀତିରେ ପରିବର୍ତ୍ତନ ଆଣିବା ଉଚିତ । କୃଷକମାନଙ୍କୁ ଅଳ୍ପ ସୁଧରେ ଋଣ ଯୋଗାଣ, ଉନ୍ନତ ବିହନ, ସାର, ଔଷଧ ଆଦି ଯୋଗାଇଦେବାର ବ୍ୟବସ୍ଥା କଲେ କୃଷକମାନେ ନିଜର ଅର୍ଥନୀତିକୁ ଦୃଢ଼ କରିବା ସଙ୍ଗେ ସଙ୍ଗେ କୃଷି ପ୍ରତି ଅଧିକ ଭାବରେ ମନୋନିବେଶ କରିପାରନ୍ତେ । ପ୍ରାକୃତିକ ବିପର୍ଯ୍ୟୟ ଯୋଗୁଁ ବହୁ ଋଷୀ ଚାଷ ପ୍ରତି ଅନାସକ୍ତ ଭାବ ପ୍ରକାଶ କରୁଛନ୍ତି । ପ୍ରାକୃତିକ ଦୁର୍ବିପାକ ସମୟରେ ସରକାର ଚାଷୀମାନଙ୍କୁ ଆର୍ଥିକ ତଥା ଅନ୍ୟାନ୍ୟ ସାହାଯ୍ୟ ଯୋଗାଇଦେଲେ ଚାଷୀକୁଳଙ୍କ ମଧରେ ଉତ୍ସାହ ସୃଷ୍ଟି ହୋଇପାରନ୍ତା । ଆମର

ପାରମ୍ପରିକ ଶିକ୍ଷା ପଦ୍ଧତି କେବଳ ବେକାର ସଂଖ୍ୟା ବୃଦ୍ଧି କରିବାରେ ସହାୟତା କରୁଛି । ତେଣୁ ଶିକ୍ଷାନୀତିରେ ପରିବର୍ତ୍ତନ କରି କର୍ମାଭିମୁଖୀ ଶିକ୍ଷା ଉପରେ ଗୁରୁତ୍ୱ ପ୍ରଦାନ କରାଯିବା ଆବଶ୍ୟକ । ବିକଶିତ ରାଷ୍ଟ୍ରମାନଙ୍କରେ ଛାତ୍ର ଶିକ୍ଷାଲାଭ କରିବା ସମୟରେ କୃଷିଶିକ୍ଷା, ମେସିନ ଚଳାଇବାର ଶିକ୍ଷା ଏବଂ ସ୍ୱାବଲମ୍ବନଶୀଳ ହେବା ନିମିତ୍ତ ଶିକ୍ଷା ଲାଭ କରିଥାଏ । ବିଦ୍ୟାଳୟ, ମହାବିଦ୍ୟାଳୟ ଆଦିର ପରିସର ମଧ୍ୟରେ ବହୁ ଚାଷଜମି ରଖାଯାଇ କୃଷିକାର୍ଯ୍ୟ କରାଯାଉଛି । ତେଣୁ ଶିକ୍ଷା ସମାପ୍ତ ପରେ ଚାକିରି ନ ମିଳିଲେ ମଧ୍ୟ ଛାତ୍ରମାନେ କୃଷି କାର୍ଯ୍ୟ କରିବାକୁ ଆଦୌ ଅପମାନଜନକ ମନେ କରୁନାହାନ୍ତି । ପୁଣି ବ୍ୟବସାୟ ସମ୍ପର୍କରେ ଶିକ୍ଷାପ୍ରଦାନ କରାଯାଉଥିବାରୁ ବେକାର ଯୁବକ ଶିକ୍ଷା କ୍ଷେତ୍ରରୁ ବିରତି ନେବାପରେ ସରକାରଙ୍କ ଠାରୁ ଋଣ ନେଇ ବ୍ୟବସାୟରେ ସଫଳତା ଲାଭ କରୁଛନ୍ତି । ଏହାଦ୍ୱାରା ଯୁବକ ସମାଜ ନିଜର କୌଳିକ ବୃତ୍ତିକୁ ଅତି ସହଜରେ ଆଦରି ନେବାକୁ ଉତ୍ସାହିତ ହେଉଛି । ଏ ଧରଣର ଶିକ୍ଷାପଦ୍ଧତି ଏଯାବତ୍ ଭାରତବର୍ଷରେ ପ୍ରବର୍ତ୍ତନ ହୋଇପାରି ନାହିଁ । ରାଜନୈତିକ ଅସାଧୁତା ବହୁ ସମୟରେ ଜ୍ଞାନୀ, ଗୁଣୀ, ପରିଶ୍ରମୀ ତଥା ବୁଦ୍ଧିମାନ ଛାତ୍ରଙ୍କୁ ଅସହାୟ କରିଦେଇଥାଏ । ଯେଉଁମାନଙ୍କର ପ୍ରକୃତ ଜ୍ଞାନ ଅଛି ସେମାନେ ଚାକିରି ପାଆନ୍ତି ନାହିଁ, ଅଥଚ ରାଜନୀତିର ଫାଇଦା ଉଠାଇ କମ୍ ଯୋଗ୍ୟତାସମ୍ପନ୍ନ ବ୍ୟକ୍ତି ଚାକିରି ପାଇଥାନ୍ତି । ପ୍ରିୟାପ୍ରୀତି ତୋଷଣ ନୀତି ଯୋଗୁଁ ଯୋଗ୍ୟବ୍ୟକ୍ତି ପ୍ରକୃତ ନ୍ୟାୟ ପାଇପାରୁ ନ ଥିବାରୁ ସମାଜରେ ସେମାନେ ନିଜକୁ ଅତ୍ୟନ୍ତ ଦୟନୀୟ ମନେ କରିଥାନ୍ତି । ତେଣୁ ରାଜନୈତିକ ସାଧୁତା ରହିଲେ ପ୍ରକୃତ ଯୋଗ୍ୟ ବ୍ୟକ୍ତି ନିଜ ଗୁଣର ଉପଯୁକ୍ତ ବିନିଯୋଗ ପାଇଁ ସୁଯୋଗ ଲାଭ କରନ୍ତେ ଓ ରାଷ୍ଟ୍ର ପ୍ରଗତି କରିପାରନ୍ତା । ବିଭିନ୍ନ ଯୋଜନାରେ ବହୁପରିମାଣରେ ଚାକିରି ସୃଷ୍ଟି ନିମିତ୍ତ ପଦକ୍ଷେପ ନିଆଗଲେ, ବେକାର ସମସ୍ୟା କିଛି ପରିମାଣରେ ଦୂର ହୋଇପାରନ୍ତା । ୧୯୭୦ ମସିହା ଡ଼ିସେମ୍ବର ମାସରେ ନିଯୁକ୍ତି ସମସ୍ୟା ସମ୍ପର୍କରେ ସମୀକ୍ଷା କରିବାପାଇଁ ସରକାର ଏକ କମିଟି ଗଠନ କରିଥିଲେ । ଫେବୃଆରୀ ୧୯୭୨ରେ ଏହି କମିଟି ତାଙ୍କର ମଧ୍ୟବର୍ତ୍ତୀ ରିପୋର୍ଟ ଦାଖଲ କରିଥିଲେ । ଚତୁର୍ଥ ପଞ୍ଚବାର୍ଷିକ ଯୋଜନାରେ ଏହି କମିଟି ବହୁପରିମାଣରେ ନିଯୁକ୍ତି ସୃଷ୍ଟି ପାଇଁ ୨୫୦ କୋଟି ଟଙ୍କା ଯୋଗାଇଦେବାକୁ ପ୍ରସ୍ତାବ ଦେଇଥିଲେ । ଏହି କମିଟି ମୁଖ୍ୟତଃ ଗ୍ରାମାଞ୍ଚଳ ବିକାଶ ଓ ଅର୍ଥନୀତିର ବିକାଶ ନିମିତ୍ତ ଗୁରୁତ୍ୱ ଦେଉଥିଲେ ଏବଂ କ୍ଷୁଦ୍ର ଜଳସେଚନ, ମୃତ୍ତିକା ସଂରକ୍ଷଣ, ଗ୍ରାମାଞ୍ଚଳ, ରାସ୍ତା ନିର୍ମାଣ, ପ୍ରାଥମିକ ଶିକ୍ଷାର ବିକାଶ, ଗ୍ରାମୀଣ ସ୍ୱାସ୍ଥ୍ୟର ବିକାଶ, ଗ୍ରାମ୍ୟ ଗୃହ ନିର୍ମାଣ, ବନ୍ୟା ନିୟନ୍ତ୍ରଣ, ଶସ୍ୟବୀମା, କୁଟୀର ଶିଳ୍ପ ଆଦି ଉପରେ ଅଧିକ ଗୁରୁତ୍ୱ ଦେବାକୁ ସରକାରଙ୍କୁ ପରାମର୍ଶ ଦେଇଥିଲେ । ଆନୁମାନିକ ଭାବେ ଏହି ଯୋଜନାଗୁଡ଼ିକ ୪୦ ଲକ୍ଷ ନିଯୁକ୍ତି ସୃଷ୍ଟି କରିପାରିବ ବୋଲି କଳନା କରାଯାଇଥିଲା । ୧୯୭୩ ମସିହାରେ କମିଟି ତାଙ୍କର ସର୍ବଶେଷ ରିପୋର୍ଟ ଦେଇଥିଲେ । ମାତ୍ର ଏହି ରିପୋର୍ଟ କାର୍ଯ୍ୟକାରୀ ହୋଇପାରିଲା ନାହିଁ । ତେଣୁ ସରକାର କେବଳ କମିଟି ଗଠନ କରିଦେଲେ ଚଳିବ ନାହିଁ; ସେହି କମିଟିର ପରାମର୍ଶକୁ ଆନ୍ତରିକତାର ସହିତ ଗ୍ରହଣ କରିବା ଉଚିତ । ଶିକ୍ଷିତ ବେକାରମାନଙ୍କୁ ବିଭିନ୍ନ କାର୍ଯ୍ୟ ପାଇଁ

ଋଣ ଯୋଗାଇଦେଲେ କିମ୍ବା ବେକାରୀ ଭତ୍ତା ପ୍ରଦାନ କଲେ ଏହି ସମସ୍ୟା ମଧ୍ୟ କେତେକାଂଶରେ ପୂରଣ ହୋଇପାରନ୍ତା ।

ବେକାର ସମସ୍ୟା ଆଜି ଏକ ସଙ୍କଟଜନକ ଅବସ୍ଥାରେ ପହଞ୍ଚିଛି । ସରକାର ସତର୍କତାର ସହିତ ପଦକ୍ଷେପ ଗ୍ରହଣ ନ କଲେ ଏହାର ସମାଧାନ ସମ୍ଭବ ନୁହେଁ । ଆଜିର ଯୁବସମାଜ ମଧ୍ୟ ଚାକିରି ପ୍ରତି ସମ୍ପୂର୍ଣ୍ଣ ନିର୍ଭରଶୀଳ ନ ହୋଇ ନିଜ ଗୋଡ଼ରେ ଠିଆ ହେବାପାଇଁ ପ୍ରସ୍ତୁତ ହେବା ଉଚିତ । ଯୋଜନାଗୁଡ଼ିକର ସଫଳ ରୂପାୟନ ଦିଗରେ ସରକାର ଓ ଜନସାଧାରଣ ସହଯୋଗ କଲେ ବହୁ ବେକାର ସମସ୍ୟା ସମାଧାନ ହୋଇପାରନ୍ତା । କୃଷିକୁ ଏକ ବ୍ୟବସାୟର ମର୍ଯ୍ୟାଦା ପ୍ରଦାନ କରିବାକୁ ପଦକ୍ଷେପ ଗ୍ରହଣ କରାଗଲେ ମାନବସମ୍ବଳର ବହୁଭାଗ ନିଯୁକ୍ତି ଲାଭ କରିପାରନ୍ତେ । ଶାରୀରିକଶ୍ରମ ପ୍ରତି ଅଗ୍ରାଧିକାର ଦିଆଗଲେ ଓ ପାରମ୍ପରିକ ଶିକ୍ଷା ପଦ୍ଧତିରେ ଆମୂଳଚୂଳ ପରିବର୍ତ୍ତନ କରାଗଲେ, ଶିକ୍ଷିତ ଯୁବକ ସ୍ୱାବଲମ୍ବନଶୀଳ ହେବାପାଇଁ ପ୍ରେରଣା ଲାଭ କରନ୍ତେ ଏବଂ ବେକାରସମସ୍ୟା ଏକ ଉତ୍କଟ ରୂପନେଇ ଭାରତର ଅର୍ଥନୀତିକୁ ବିପର୍ଯ୍ୟସ୍ତ କରିପାରନ୍ତା ନାହିଁ ।



## ଭାରତରେ ଶିଶୁ ଶ୍ରମିକ ସମସ୍ୟା

**(ଉପକ୍ରମ, ଶିଶୁ ଶ୍ରମିକର କାରଣ, ସମସ୍ୟା, ବିଶ୍ୱରେ ଶିଶୁଶ୍ରମିକ, ମାନବବାଦୀ ଚିନ୍ତାଧାରାର ଅବକ୍ଷୟ, ଶିଶୁଶ୍ରମିକ ନିରାକରଣ ଉପାୟ, ଉପସଂହାର)**

ସମ୍ପ୍ରତି ବିଶ୍ୱରେ ଶିଶୁଶ୍ରମିକ ସମସ୍ୟା ଏକ ବିରାଟ ସମସ୍ୟା ହୋଇ ଦେଖା ଦେଇଛି । ଆଜିର ଶିଶୁ ଆସନ୍ତାକାଲିର ନାଗରିକ—ଏ ବିଷୟରେ ଆମେ ପ୍ରାୟ କେହି ସଚେତନ ନୋହୁଁ । ଆଜି ବିଶ୍ୱରେ କୋଟି କୋଟି ଶିଶୁ ଜୀବିକା ଓ ଜୀବନ ରକ୍ଷା ପାଇଁ ଅତୀବ କଠିନ କାର୍ଯ୍ୟରେ ନିୟୋଜିତ । ଶିଶୁ ଶ୍ରମିକଙ୍କର ଉଚ୍ଛେଦ ପାଇଁ ବହୁ ସଙ୍ଗଠନ ଗଠନ କରାଯାଇଛି, ସଭାସମିତିରେ ବିଭିନ୍ନ ଜ୍ଞାନୀ ଗୁଣୀ ବ୍ୟକ୍ତି ଉତ୍ତେଜନାପୂର୍ଣ୍ଣ ଓ ଅଶ୍ଳୀଳ ଅଭିଭାଷଣମାନ ପ୍ରଦାନ କରୁଛନ୍ତି । ମାତ୍ର ଏପରି ଉତ୍କଟ ସମସ୍ୟାର ନିରାକରଣ ନିମିତ୍ତ କେହି ଆନ୍ତରିକତାର ସହ ପ୍ରଯତ୍ନ କରୁ ନାହାନ୍ତି । ବର୍ତ୍ତମାନ ସମଗ୍ର ବିଶ୍ୱରେ ଏହା ଏକ ଚାଲେଞ୍ଜ ହୋଇ ଦେଖା ଦେଇଛି । ଯେଉଁ ସମୟରେ ଶିଶୁଟି ହାତରେ ବହି ବ୍ୟାଗ୍ ଧରି ସ୍କୁଲକୁ ଯିବା କଥା, ପିତାମାତାଙ୍କ ଆଦରଯତ୍ନରେ ସମୟ ଅତିବାହିତ କରିବା କଥା; ଅଥଚ ସେହି ବୟସରେ ବହୁ ଶିଶୁ ବିଭିନ୍ନ କଠିନ କାର୍ଯ୍ୟରେ ନିୟୋଜିତ ହେଉଛନ୍ତି; ସେମାନଙ୍କ ସ୍ୱଳ୍ପ ଆୟ ପିତାମାତାଙ୍କ ହାତରେ ଧରାଇ ଦେଉଛନ୍ତି । ଭାରତରେ ଏହି ଶିଶୁଶ୍ରମିକ ସମସ୍ୟା ଅତ୍ୟନ୍ତ ଉତ୍କଟ । ଏହାର ନିରାକରଣ ପାଇଁ ବିଭିନ୍ନ ଯୋଜନା ପ୍ରସ୍ତୁତ କରାଯାଉଥିଲେ ହେଁ, ତାହା ଯଥାଯଥ ରୂପେ କାର୍ଯ୍ୟକାରୀ ହୋଇପାରୁ ନ ଥିବାରୁ ପ୍ରତିବର୍ଷ ଭାରତରେ ଶିଶୁଶ୍ରମିକମାନଙ୍କର ସଂଖ୍ୟା ବଢ଼ି ବଢ଼ି ଚାଲିଛି । ଦୁଃଖର

ବିଷୟ ଏକ ଗଣତନ୍ତ୍ର ରାଷ୍ଟ୍ରରେ ଶିଶୁ ତା'ର ଯଥାର୍ଥ ଅଧିକାର ଲାଭ କରିବାକୁ ଅସମର୍ଥ । ସମଗ୍ର ମାନବସମାଜ ପାଇଁ ଏହା ଯେ ଏକ ଘୋର ଲଜ୍ଜାକର ଓ ସମ୍ମାନହାନିକର ବିଷୟ, ଏଥିରେ ଦ୍ୱିରୁକ୍ତି ନାହିଁ ।

ଭାରତର ବହୁ ଲୋକ ଦାରିଦ୍ର୍ୟ ସୀମାରେଖା ତଳେ ବସବାସ କରୁଥିବାରୁ ଶିଶୁଟିଏ ଜନ୍ମ ହେବା ପରେ ସେମାନଙ୍କର ଉପଯୁକ୍ତ ତତ୍ତ୍ୱ ନେବାପାଇଁ ସେମାନଙ୍କ ନିକଟରେ ଆବଶ୍ୟକୀୟ ସମ୍ବଳର ଅଭାବ ଦେଖାଯାଇଥାଏ । ଏପରିକି ସାମାନ୍ୟ ପୁଷ୍ଟିକର ଖାଦ୍ୟ ଦେବାକୁ ସେମାନେ ଅସମର୍ଥ ହୋଇଥାନ୍ତି । ଏହି ଶିଶୁ ବାଲ୍ୟକାଳ କ'ଣ ଜାଣନ୍ତି ନାହିଁ । ପିଲାଟି ଦିନରୁ ବିଭିନ୍ନ କଳକାରଖାନା, ଦୋକାନ, ହୋଟେଲ, ବିଭିନ୍ନ ବ୍ୟକ୍ତିଙ୍କ ଗୃହରେ, ଗ୍ୟ'ବଗିଚ୍ୟ ତଥା ଅନ୍ୟାନ୍ୟ ବିଭିନ୍ନ ସ୍ଥାନରେ କାର୍ଯ୍ୟକରି ନିଜର ପରିବାରକୁ ଆର୍ଥିକ ସାହାଯ୍ୟ କରିଥାନ୍ତି । ପୁଣି କେତେକ ନିର୍ମମ ପିତା ଛୋଟ ଛୋଟ ଶିଶୁମାନଙ୍କୁ ଶ୍ରମିକ ଭାବରେ ଅର୍ଥ ଲାଭ ଆଶାରେ ବିକ୍ରି କରି ଦେଉଛନ୍ତି । ସାମାନ୍ୟ ଖାଦ୍ୟାଭାବରୁ ଭାରତରେ ପୁଷ୍ଟିହୀନ ଶିଶୁମାନଙ୍କର ସଂଖ୍ୟା ବଢ଼ିଚାଲିଛି । ବର୍ତ୍ତମାନ ଆମ ଦେଶରେ ଏହି ପୁଷ୍ଟିହୀନ ଶିଶୁଙ୍କ ସଂଖ୍ୟା ସାତକୋଟିରୁ ଅଧିକ ବୋଲି ଗଣନା କରାଯାଇଛି । ଶିଳ୍ପପତି ଏବଂ ଶିଶୁର ପିତାମାତା କେହି ଶିଶୁର ପ୍ରକୃତ ଯତ୍ନ ନେଇ ନ ଥାନ୍ତି । ପିତାମାତା କିଛି ଅର୍ଥ ଆଶାରେ ଶିଶୁମାନଙ୍କୁ ବିପଜ୍ଜନକ କଳକାରଖାନାରେ କାମ କରିବାକୁ ଛାଡ଼ି ଦିଅନ୍ତି । ଶିଶୁଙ୍କର ମଜୁରି କମ୍ ହୋଇଥିବାରୁ ଏବଂ ଅଳ୍ପ ଖର୍ଚ୍ଚରେ ଜିନିଷପତ୍ର ତିଆରି ହୋଇ ପାରୁଥିବାରୁ ଶିଳ୍ପପତିମାନେ ଆଗ୍ରହରେ ସେମାନଙ୍କୁ ନିଯୁକ୍ତି ଦେଇଥାନ୍ତି । ତୃତୀୟ ବିଶ୍ୱରେ ଶିଶୁ ଶ୍ରମିକଙ୍କର ନିର୍ଯ୍ୟାତନାର କାହାଣୀ ଯେ କୌଣସି ସମାଜ ସଚେତନ ବ୍ୟକ୍ତିଙ୍କୁ ବ୍ୟଥିତ କରିବ ନିଶ୍ଚୟ । ମେଦିନୀପୁର ଜିଲ୍ଲାର ଚା' ବଗିଚାରେ କାର୍ଯ୍ୟକରୁଥିବା ଶିଶୁଶ୍ରମିକ ବିଭିନ୍ନ ରୋଗରେ ଆକ୍ରାନ୍ତ ହେବା ବିଷୟ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ଚା' ବଗିଚାର ଛୋଟ ଛୋଟ ଚା' ଗଛରୁ ପୋକ ବାଛିବାକୁ ଶିଶୁମାନଙ୍କୁ ନିଯୁକ୍ତି କରାଯାଇଥାଏ । ସେହି ପୋକମାନଙ୍କ ଶରୀରରୁ ନିର୍ଗତ ବିଷାକ୍ତ ରସ ଶିଶୁମାନଙ୍କ ଦେହରେ ଲାଗିବାଦ୍ୱାରା ଘା' ହୋଇ ସେମାନେ ଅକଥନୀୟ କଷ୍ଟ ପାଇଥାନ୍ତି । ଦିଆସିଲି, ବାଣ ଆଦି କାରଖାନାରେ କର୍ତ୍ତବ୍ୟରତ ବହୁ ଶିଶୁ ଅକାଳରେ ପ୍ରାଣ ବିସର୍ଜନ କରିଥାନ୍ତି; ଅଥଚ ସେମାନଙ୍କ ସୁରକ୍ଷା ନିମିତ୍ତ କୌଣସି ପଦକ୍ଷେପ ଗ୍ରହଣ କରାଯାଏ ନାହିଁ । ତୃତୀୟ ବିଶ୍ୱରେ ଭାରତରେ ଶିଶୁଶ୍ରମିକଙ୍କର ସଂଖ୍ୟା ସର୍ବାଧିକ । ଅଥଚ ଏଥିପାଇଁ ଭାରତରେ କେହି ମୁଣ୍ଡ ଖେଳାନ୍ତି ନାହିଁ କିମ୍ବା ସେମାନଙ୍କ ସମସ୍ୟାର ସମାଧାନ ନିମିତ୍ତ କୌଣସି କ୍ଷେତ୍ରରେ ସକ୍ରିୟ ଅଂଶ ଗ୍ରହଣ କରିବାକୁ ଆଗ୍ରହ ପ୍ରକାଶ କରନ୍ତି ନାହିଁ ।

ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କ ଜନ୍ମ ଦିବସ ନଭେମ୍ବର ୧୪କୁ ଭାରତରେ ଶିଶୁଦିବସ ରୂପେ ପାଳନ କରାଯାଇଥାଏ । ଶିଶୁମାନଙ୍କୁ ସେ ଜୀବନଠାରୁ ଅଧିକ ଭଲ ପାଉଥିଲେ । ଶିଶୁମାନଙ୍କର ଅନ୍ତର୍ନିହିତ ପ୍ରତିଭାର ବିକାଶ ନିମିତ୍ତ ସେ ଯଥେଷ୍ଟ ଧ୍ୟାନ ଦେଇଥିଲେ । ଭାରତୀୟ ସମ୍ବିଧାନର ପ୍ରଣୟନ ସମୟରେ ଶିଶୁମାନଙ୍କର

ବିକାଶ ପ୍ରତି ଉପଯୁକ୍ତ ଧ୍ୟାନ ଦିଆଯିବାର ପ୍ରତିଶ୍ରୁତି ଦିଆଯାଇଥିଲା । ସମ୍ବିଧାନ ୧୫(୩) ଧାରାରେ ଶିଶୁ ଏବଂ ମହିଳାମାନଙ୍କ ପାଇଁ ଉପଯୁକ୍ତ ଧ୍ୟାନ ପ୍ରଦାନ କରାଯିବ ବୋଲି ଉଲ୍ଲେଖ ରହିଛି । ସମ୍ବିଧାନର ୨୪ ଧାରାରେ ୧୪ ବର୍ଷରୁ କମ୍ କୌଣସି ଶିଶୁଙ୍କୁ କାରଖାନା, ଖଣିଖାଦାନ କିମ୍ବା ବିପଦସଙ୍କୁଳ ସ୍ଥାନରେ କାର୍ଯ୍ୟ କରିବାକୁ ନିଷେଧ କରାଯାଇଛି । ସମ୍ବିଧାନର ୩୯ (ଙ) ଧାରାରେ ଶିଶୁମାନଙ୍କୁ ଅର୍ଥ ଉପାର୍ଜନ ସଂସ୍ଥାରେ କାର୍ଯ୍ୟ କରିବାକୁ ନ ଦେବା ପାଇଁ ରାଜ୍ୟମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି । ସମ୍ବିଧାନର ୪୫ ଧାରାରେ ପ୍ରତ୍ୟେକ ଶିଶୁଙ୍କୁ ପ୍ରାଥମିକ ଶିକ୍ଷା ପ୍ରଦାନ କରାଯିବାର ପ୍ରତିଶ୍ରୁତି ଦିଆଯାଇଥିଲେ ମଧ୍ୟ ବାସ୍ତବ କ୍ଷେତ୍ରରେ ଏହାର ବହୁ ବ୍ୟତିକ୍ରମ ଘଟୁଛି । ନିକଟ ଅତୀତରେ International Labour Organisation (ଆନ୍ତର୍ଜାତିକ ଶ୍ରମସଂସ୍ଥା)ର ଏକ ସମୀକ୍ଷା ବିବରଣୀରୁ ପୃଥିବୀର ସର୍ବାଧିକ ଶିଶୁଶ୍ରମିକ ଭାରତର ବୋଲି ଜଣାଯାଇଛି । ସରକାରୀ ହିସାବ ୧୬.୫% ମିଲିୟନ ବୋଲି କୁହାଯାଇଥିଲେ ହେଁ ବେସରକାରୀ ହିସାବ ଅନୁଯାୟୀ ଏହାର ସଂଖ୍ୟା ଆହୁରି ଅଧିକ । ୧୯୮୫ ମସିହାରେ ବରୋଦାର ଏକ ଗବେଷଣା ସଂସ୍ଥା ଭାରତର ୮୪ ମିଲିୟନ ଶିଶୁଶ୍ରମିକ ଅଛନ୍ତି ବୋଲି ମତପ୍ରଦାନ କରିଥିଲେ । ୧୯୫୧ ଜନଗଣନା ଅନୁଯାୟୀ ଭାରତରେ ସର୍ବମୋଟ ଶିଶୁ ସଂଖ୍ୟାର ୫.୫% ଭାଗ ଶ୍ରମିକ ବୋଲି କୁହାଯାଇଥିଲା । ଭାରତରେ ପ୍ରାୟ ୬୦ ନିୟୁତ ଶିଶୁ ଶ୍ରମିକ ବିଭିନ୍ନ ସ୍ଥାନରେ କାର୍ଯ୍ୟରତ ବୋଲି ଆନ୍ତର୍ଜାତିକ ଶ୍ରମିକ ସଙ୍ଗଠନର ବିବରଣୀରୁ ପ୍ରକାଶ । ଶିଶୁ ଶ୍ରମିକମାନଙ୍କର ଉଚ୍ଛେଦ ନିମିତ୍ତ ବିଭିନ୍ନ ସଙ୍ଗଠନ ଗଠନ କରାଯାଇଛି, ଭିନ୍ନ ଭିନ୍ନ କର୍ମଶାଳାରେ ଏ ସମ୍ପର୍କରେ ଉଦ୍‌ବେଗ ପ୍ରକାଶ କରାଯାଉଛି, ଆଇନ ପ୍ରଣୟନ କରାଯାଇଛି, ଶ୍ରମବିଭାଗ ତରଫରୁ ଆଲୋଚନାଚକ୍ର ଅନୁଷ୍ଠିତ ହେଉଛି; ମାତ୍ର ଭାରତବର୍ଷରେ ଶିଶୁଶ୍ରମିକମାନଙ୍କର ସଂଖ୍ୟା ପ୍ରତିବର୍ଷ ବଢ଼ି ଚାଲିଛନ୍ତି । ୧୯୯୬ ମସିହାରେ ୟୁନିସେଫ୍ ଦ୍ୱାରା ଶିଶୁଶ୍ରମିକଙ୍କ ଉପରେ ପ୍ରସ୍ତୁତ କରାଯାଇଥିବା ରିପୋର୍ଟରୁ ଜଣାଯାଏ, ସମଗ୍ର ବିଶ୍ୱରେ ପ୍ରାୟ ୨୫ କୋଟି ଶିଶୁଶ୍ରମିକ କାର୍ଯ୍ୟରତ । ତନ୍ମଧ୍ୟରୁ ଏକ ତୃତୀୟାଂଶ ଶିଶୁଶ୍ରମିକ ବିଭିନ୍ନ ସଂସ୍ଥାରେ କାର୍ଯ୍ୟରତ । ଭାରତବର୍ଷରେ ଶିଶୁଶ୍ରମିକ ରୂପେ କାର୍ଯ୍ୟ କରୁଥିବା ଶିଶୁଙ୍କ ମଧ୍ୟରୁ ଶତକଡ଼ା ୯୦ ଭାଗ ଉତ୍ତରପ୍ରଦେଶ, ମହାରାଷ୍ଟ୍ର, ଆନ୍ଧ୍ରପ୍ରଦେଶ, କର୍ଣ୍ଣାଟକ, ମଧ୍ୟପ୍ରଦେଶ, ବିହାର, ଗୁଜୁରାଟ, ଓଡ଼ିଶା, ରାଜସ୍ଥାନ ଓ ପଶ୍ଚିମବଙ୍ଗରେ କାର୍ଯ୍ୟରତ । ଭାରତରେ ଶତକଡ଼ା ୮୫ ଭାଗ ଶିଶୁ ଶ୍ରମିକ ଗ୍ରାମାଞ୍ଚଳରେ ବିଭିନ୍ନ କୃଷିକ୍ଷେତ୍ରରେ କାର୍ଯ୍ୟ କରୁଥିବା ସମୟରେ ଅବଶିଷ୍ଟ ଶିଶୁଶ୍ରମିକ ସହରର ବିଭିନ୍ନ ଶିଳ୍ପସଂସ୍ଥା, ଗୋତିଶ୍ରମିକ ବା ଦାଦନ ଶ୍ରମିକ ରୂପେ କାର୍ଯ୍ୟ କରୁଛନ୍ତି । ଭାରତର ଶିଶୁଶ୍ରମିକ ବିଭିନ୍ନ ପ୍ରତିକୂଳ ଅବସ୍ଥା ଦେଇ ଗତି କରୁଥିବାରୁ ସେମାନଙ୍କ ସ୍ୱାସ୍ଥ୍ୟରେ ଅବନତି ଘଟିଥାଏ । ନିମ୍ନମାନର ପରିବେଶ, କଠିନ ପରିଶ୍ରମ, ଛୁଟିହୀନ କାର୍ଯ୍ୟ, ସୁଷମ ଖାଦ୍ୟର ଅଭାବ, ଅଶାନ୍ତିମୟ ଜୀବନଯାପନ ଯୋଗୁଁ ଭାରତରେ ଶିଶୁଶ୍ରମିକ ଅକାଳରେ ମୃତ୍ୟୁମୁଖରେ ପଡ଼ିଥାନ୍ତି । ନିକଟରେ ଆମେରିକାର ପ୍ରତିନିଧିସଭା ଘୋଷଣା କରିଛି, ଭାରତର ଶିଶୁଶ୍ରମିକମାନଙ୍କଦ୍ୱାରା ନିର୍ମିତ ସାମଗ୍ରୀ ସେମାନେ ଆମଦାନୀ କରିବେ ନାହିଁ । ଭାରତରୁ ପ୍ରାୟ ପ୍ରତିବର୍ଷ ୧୦ କୋଟି ଡଲାରରୁ ଅଧିକ ମୂଲ୍ୟର

ସାମଗ୍ରୀ ଶିଶୁମାନଙ୍କଦ୍ୱାରା ନିର୍ମିତ ହୋଇ ଆମେରିକାକୁ ପଠାଯାଇଥାଏ । ଆମେରିକାର ସତର୍କବାଣୀ ସତ୍ତ୍ୱେ ଭାରତରେ ଏହାର କୌଣସି ପ୍ରଭାବ ପରିଲକ୍ଷିତ ହୋଇ ନାହିଁ । ସମଗ୍ର ମାନବଜାତି ନିମିତ୍ତ ଏହା ନିଶ୍ଚିତ ରୂପେ ପରିତାପର ବିଷୟ ।

କେବଳ ଭାରତରେ ନୁହେଁ, ସମଗ୍ର ବିଶ୍ୱରେ ଆଜି ଶିଶୁଶ୍ରମିକ ଏକ ବିରାଟ ସମସ୍ୟା ହୋଇ ଦେଖାଦେଇଛି । ୧୯୯୩ ମସିହା ଫେବୃଆରୀ ମାସରେ ରାଷ୍ଟ୍ର ସଂଘର ମାନବାଧିକାର କମିଶନ ଓ ଆନ୍ତର୍ଜାତିକ ଶ୍ରମ ସଙ୍ଗଠନର ମିଳିତ ଉଦ୍ୟମରେ ପୃଥିବୀରେ ଶିଶୁଶ୍ରମିକଙ୍କ ଉପରେ ଗବେଷଣା କରାଯାଇ ତଥ୍ୟପ୍ରକାଶ କରାଯାଇଥିଲା ଯେ, ବିଶ୍ୱରେ ପ୍ରାୟ ୨୦ କୋଟି ଶିଶୁ ଶୋଷଣର ଶିକାର ହୋଇଥାନ୍ତି । ଏହି ଶିକାରର ରୂପ ପୁଣି ଅତୀବ ବେଦନାଦାୟକ । ଏମାନଙ୍କ ମଧ୍ୟରୁ କେତେକ ଶ୍ରମିକ ସମ୍ପୂର୍ଣ୍ଣ ବିକ୍ରି ହୋଇଯାଇଥାନ୍ତି ତ ଅନ୍ୟ କେତେକ ବିଭିନ୍ନ ନିର୍ଯ୍ୟାତନା ମଧ୍ୟରେ ଜୀବନ ଅତିବାହିତ କରିଥାନ୍ତି । ଏହି ୨୦ କୋଟି ଶିଶୁଙ୍କ ମଧ୍ୟରୁ ଅଧାରୁ ଅଧିକ ସ୍କୁଲ ଦ୍ୱାର ପର୍ଯ୍ୟନ୍ତ ଦେଖିନଥାନ୍ତି । ଶିଶୁଶ୍ରମିକ ପ୍ରଥାର ଉଚ୍ଛେଦ ନିମିତ୍ତ ଭାରତ ଏବଂ ଅନ୍ୟ ୪୦ଟି ରାଷ୍ଟ୍ର ନରୱେର ଓସ୍ଲୋଠାରେ ଆନ୍ତର୍ଜାତିକ ଶିଶୁ ସମ୍ମିଳନୀରେ ଯୋଗ ଦେଇ ବିଭିନ୍ନ ଆଲୋଚନା କରିଥିଲେ । ସେଠାରେ ଶିଶୁଶ୍ରମିକ ପ୍ରଥା ସମ୍ପୂର୍ଣ୍ଣ ବେଆଇନ୍ ବୋଲି ଘୋଷିତ ହୋଇଥିଲେହେଁ, ଏହାର ବିଶେଷ କିଛି ପ୍ରଭାବ ବିଶ୍ୱ ଉପରେ ପଡ଼ିଛି ବୋଲି ମନେ ହୁଏନା । ୧୯୪୨ରେ ମଧ ରାଷ୍ଟ୍ରସଂଘର ଜେନିଭା ସନନ୍ଦ ଶିଶୁମାନଙ୍କର ବିଶେଷ ଯତ୍ନନେବ ବୋଲି ଘୋଷଣା କରିଥିଲା । ଏଥିରେ ଯେଉଁ ବିଶିଷ୍ଟ ୧୦ଟି ନୀତି ରହିଥିଲା, ତାକୁ କାର୍ଯ୍ୟ କରିବା ନିମିତ୍ତ ସଦସ୍ୟ ରାଷ୍ଟ୍ରମାନଙ୍କୁ ପ୍ରସ୍ତାବ ଦିଆଯାଇଥିଲା । ଶିଶୁମାନେ ଯେପରି ଅବହେଳିତ ନ ହୁଅନ୍ତି, ବିପଥଗାମୀ ନ ହୁଅନ୍ତି ସେଥିପ୍ରତି ଦୃଷ୍ଟି ଦେବାକୁ ଏଥିରେ ପ୍ରସ୍ତାବ ରହିଥିଲା । ମାତ୍ର କାର୍ଯ୍ୟକ୍ଷେତ୍ରରେ ତାହା ଦେଖା ନ ଯିବାରୁ ୧୯୯୦ ମସିହା ସେପ୍ଟେମ୍ବର ମାସରେ ପୃଥିବୀରେ ୭୧ଟି ରାଷ୍ଟ୍ରମୁଖ୍ୟ ମିଳିତ ହୋଇ ଏକ ସମ୍ମିଳନୀରେ ଘୋଷଣା କରିଥିଲେ ଯେ ଆଉ କୌଣସି ଶିଶୁଙ୍କୁ ଅବହେଳା କରାଯିବ ନାହିଁ । ୨୦୦୦ ମସିହା ମଧ୍ୟରେ ପୃଥିବୀରୁ ସମ୍ପୂର୍ଣ୍ଣରୂପେ ଶିଶୁ ମୃତ୍ୟୁକୁ ବିଲୋପ କରାଯିବା ପାଇଁ ଚେଷ୍ଟା କରାଯିବା ସଙ୍ଗେ ସଙ୍ଗେ ଶିଶୁମାନଙ୍କୁ ଆଦୌ ଅପୁଷ୍ଟିକର ଖାଦ୍ୟ ନ ଦିଆଯିବାର ପ୍ରସ୍ତାବ ଗୃହୀତ ହେଲା । ମାତ୍ର ୧୯୯୭ ମସିହା ଜୁନ୍ ମାସର ରିପୋର୍ଟରୁ ଯାହା ଜଣାଯାଏ, ଏହି ଲକ୍ଷ୍ୟ ସମ୍ପୂର୍ଣ୍ଣ ସୁଦୂରପରାହତ । ବିଶ୍ୱସ୍ତରରେ ଶିଶୁମାନଙ୍କର ଅଧିକାର ସୁରକ୍ଷା ନିମିତ୍ତ ବହୁ ଆଲୋଚନାଚକ୍ର ଅନୁଷ୍ଠିତ ହେଲେହେଁ ଉପଯୁକ୍ତ ସଦିଚ୍ଛା ଅଭାବରୁ ଏହା କାର୍ଯ୍ୟକାରୀ ହୋଇପାରୁ ନାହିଁ ।

ବାସ୍ତବରେ ଦେଖିବାକୁ ଗଲେ ମାନବବାଦୀ ଚିନ୍ତାଧାରାର ଅବକ୍ଷୟ ଯୋଗୁ ହିଁ ଆଜି ଶିଶୁମାନେ ଏପରି ଅସହାୟ ଓ ଅବହେଳିତ । ଛୋଟ ଛୋଟ ଝିଅପିଲାମାନଙ୍କୁ ନିଜ ଘରେ କାମ କରାଇବାକୁ ଯେଉଁ ବିଶିଷ୍ଟ ବ୍ୟକ୍ତିଗଣ ଆଗ୍ରହ ପ୍ରକାଶ କରିଥାନ୍ତି, ସେମାନେ କେବେ ସେମାନଙ୍କର ସ୍ୱାସ୍ଥ୍ୟର ଯତ୍ନ ନିଅନ୍ତି କି ? ହିସାବରୁ ଜଣାଯାଏ ପ୍ରାୟ ୪୦% ଶିଶୁ ବାଳିକା ଦାରିଦ୍ର୍ୟର ଶିକାର ହୋଇ ଏହି ପେଷାକୁ ଆଦରି ନେଇଥାନ୍ତି । ଅନେକ ସମୟରେ କାର୍ଯ୍ୟରତ

ଏହି ଶିଶୁ ବାଳିକା ଯୌନ ନିର୍ଯ୍ୟାତନାର ଶିକାର ହେଉଥିବାର ଖବର ମଧ୍ୟ ମିଳିଥାଏ । ଅନ୍ୟ ଏକ ଦୁଃଖଦ ଘଟଣା ହେଉଛି ପ୍ରାୟ ପ୍ରତିବର୍ଷ ୧୦ଲକ୍ଷ ବାଳିକାଙ୍କୁ ପ୍ରଲୁବ୍ଧ କରି ବେଶ୍ୟାବୃତ୍ତି ବ୍ୟବସାୟରେ ଲଗାଯାଇଥାଏ । ଅନ୍ୟ କେତେକ ବିପଜ୍ଜନକ କାର୍ଯ୍ୟରେ ଶିଶୁ ବାଳିକାମାନଙ୍କୁ ମଧ୍ୟ ନିୟୋଜିତ କରାଯାଇଥାଏ । ତାମିଲନାଡୁର ଶିବକାଶୀଠାରେ ବାଣ ତିଆରି କାର୍ଯ୍ୟରେ ମଧ୍ୟ ହଜାର ହଜାର କନ୍ୟାଶିଶୁ କର୍ତ୍ତବ୍ୟରତ । ବାଳକ ଶିଶୁ ମଧ୍ୟ ବିଭିନ୍ନ କ୍ଷେତ୍ରରେ କାର୍ଯ୍ୟକରି ନିଜର ଏବଂ ପରିବାରର ଭରଣପୋଷଣ କରିଥାନ୍ତି । ଓଡ଼ିଶାରେ ପ୍ରାୟ ୬୫ ହଜାର ଶିଶୁ ଶ୍ରମିକ କେନ୍ଦୁପତ୍ର ତୋଳିବା କାର୍ଯ୍ୟରେ ଓ ୬୦ ହଜାର ଶିଶୁ ଶ୍ରମିକ ବିଡ଼ି ତିଆରି କାର୍ଯ୍ୟରେ ନିୟୋଜିତ । ବ୍ୟବସାୟୀ ଶିଳ୍ପପତି ଅଧିକ ଲାଭ ଆଶାରେ କମ୍ ମଜୁରିରେ ଶିଶୁମାନଙ୍କୁ ନିଜ ବ୍ୟବସାୟ ବା ଶିଳ୍ପରେ କାର୍ଯ୍ୟ ଯୋଗାଇ ଦେଇଥାନ୍ତି । କେତେକ ଗରିବ ପିତାମାତା ନିଜର ଋଣ ପରିଶୋଧ କରି ନ ପାରି ପିଲାମାନଙ୍କୁ ଗୋତି ଶ୍ରମିକ ରୂପେ ମାଲିକମାନଙ୍କ ନିକଟରେ ସମର୍ପି ଦେଇଥାନ୍ତି । ଭାରତରେ ପ୍ରାୟ ୧୪ ନିୟୁତ ଏହି ପ୍ରକାର ଗୋତି ଶ୍ରମିକ ରହିଛନ୍ତି । କୃଷି କ୍ଷେତ୍ରରେ କାର୍ଯ୍ୟରତ ୬୪% ଭାଗ ହେଉଛନ୍ତି ଏହିପ୍ରକାର ଗୋତି ଶ୍ରମିକ । ଅନ୍ୟ ଏକ ଚାଞ୍ଚଲ୍ୟକର ଘଟଣା ହେଉଛି ଏବେ ମଧ୍ୟ ଭାରତର ବହୁ ଶିଶୁଙ୍କୁ ମଧ୍ୟପ୍ରାଚ୍ୟ ଏବଂ ଆରବ ରାଷ୍ଟ୍ରରେ ଭିକ୍ଷାବୃତ୍ତି କରିବା ଉଦ୍ଦେଶ୍ୟରେ ବିକ୍ରୟ କରାଯାଉଛି । ଶିଶୁଶ୍ରମିକ ନିୟନ୍ତ୍ରଣ ଆଇନ କେତେକ ଅମାନବିକ ବ୍ୟକ୍ତିଙ୍କର ଏହି କାର୍ଯ୍ୟକଳାପ ରୋକିବାକୁ ସମର୍ଥ ହୋଇପାରି ନାହିଁ । ମାନବବାଦୀ ଚିନ୍ତାଧାରାର ଅବକ୍ଷୟ ଓ ମୂଲ୍ୟବୋଧରେ ସଙ୍କଟ ଯୋଗୁଁ ଆଜି ଭାରତରେ ଶିଶୁଶ୍ରମିକମାନଙ୍କର ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଛି । ବ୍ୟବସାୟୀ, ଶିଳ୍ପପତି, ମାଲିକ ଆଦି ନିଜର ବ୍ୟକ୍ତିଗତ ସ୍ୱାର୍ଥର ଚରିତାର୍ଥ ନିମିତ୍ତ ଶିଶୁଶ୍ରମିକମାନଙ୍କୁ ବିଭିନ୍ନ କ୍ଷେତ୍ରରେ ଶୋଷଣ କରୁଛନ୍ତି । ଭାରତରେ ମାନବବାଦର ଅଭିବୃଦ୍ଧି ଓ ଶିଶୁମାନଙ୍କ ନିମିତ୍ତ ଆନ୍ତରିକତା ବୃଦ୍ଧି ନ ପାଇଲେ ଏହି ସମସ୍ୟାର ସମାଧାନ ସମ୍ଭବ ନୁହେଁ ବୋଲି ବିଶ୍ୱାସ ।

ଶିଶୁଶ୍ରମିକଙ୍କର ନିରାକରଣ ପାଇଁ ସରକାରୀ ସ୍ତରରେ ପ୍ରଯତ୍ନ ହେବା ବାଞ୍ଛନୀୟ । ମୁଖ୍ୟତଃ ଦିନମଜୁରିଆ ପରିବାରର ଶିଶୁମାନେ ଶ୍ରମିକ ରୂପେ କାର୍ଯ୍ୟ କରିଥାନ୍ତି । ଯଦି ରାଷ୍ଟ୍ର ସେହି ପରିବାରର ସର୍ବନିମ୍ନ ଆବଶ୍ୟକତା ପୂରଣ କରିପାରନ୍ତା, ହୁଏତ ଏପରି ଏକ ପରିସ୍ଥିତି ସୃଷ୍ଟି ହେବାର ସମ୍ଭାବନା କ୍ଷୀଣ ହୋଇପାରନ୍ତା । ଭୂମିହୀନ ଲୋକଙ୍କୁ ଭୂମି ଯୋଗାଇଦେଲେ ଏବଂ ଦୈନିକ ମଜୁରିଆଙ୍କୁ ପ୍ରତ୍ୟହ କାର୍ଯ୍ୟ ଯୋଗାଇଦେଇପାରିଲେ ବହୁ ପ୍ରତିଭାବାନ୍ ଶିଶୁ ଅକାଳରେ ସେମାନଙ୍କ ପ୍ରତିଭାକୁ ନଷ୍ଟ କରନ୍ତେ ନାହିଁ । ତେଣୁ ସରକାର ପ୍ରଥମେ ସେହି ଶିଶୁ ଶ୍ରମିକ ପରିବାରର ଆର୍ଥିକ ଦିଗକୁ ସମୃଦ୍ଧି କରିବା ଦିଗରେ ଯତ୍ନବାନ୍ ହେବା ଉଚିତ । ଶିଶୁଶ୍ରମିକଙ୍କ ନିମିତ୍ତ ପ୍ରଣୟନ କରାଯାଉଥିବା ଆଇନ୍‌କୁ ମଧ୍ୟ କଡ଼ାକଡ଼ି ପାଳନ କରାଯିବା ଉଚିତ । ଏହାଦ୍ୱାରା ଶିଶୁଶ୍ରମିକମାନଙ୍କ ମଧ୍ୟରେ ଲୁକ୍କାୟିତ ଥିବା ଅର୍ନ୍ତନିହିତ ପ୍ରତିଭାକୁ ସୁରକ୍ଷା କରାଯାଇପାରିବ । କିଏ କହିପାରିବ ଏହି ଶିଶୁଶ୍ରମିକମାନଙ୍କ ମଧ୍ୟରେ

ନ ଥିବେ ଶିଶୁ ଅଭିନେତ୍ରୀ ଶ୍ୟାମଲି, ଶିଶୁ ବଂଶୀବାଦକ ଏସ୍. ଶଶାଙ୍କ, ଶିଶୁ ସଙ୍ଗୀତ ନିର୍ଦ୍ଦେଶକ ଏମ୍. ଶ୍ରୀ ଓଲିଆ, ଶିଶୁ ଆର୍କିଟେକ୍ଟ ରୂପା ବସୁ, ଶିଶୁ କରାଟେ ମାଷ୍ଟର ମିହିର ପାଣ୍ଡେ, ଶିଶୁ ଫଟୋଗ୍ରାଫର ଶ୍ରାବସ୍ତୀ ଜୈନ ଇତ୍ୟାଦି । ସେମାନଙ୍କ ପ୍ରତିଭାର ବିକାଶ ନିମିତ୍ତ ଉପଯୁକ୍ତ ବାତାବରଣ ସୃଷ୍ଟି କରାଯାଇପାରିଲେ ଅକାଳରେ ଝଡ଼ି ପଡୁଥିବା ବହୁ ପ୍ରତିଭାଧର ଶିଶୁ ଶ୍ରମିକଙ୍କ ପ୍ରତିଭା ବିଶ୍ୱସ୍ତରରେ ମଧ୍ୟ ଆଲୋଡ଼ନ ସୃଷ୍ଟି କରିପାରନ୍ତା ।

ଶିଶୁ ସୁବର୍ଣ୍ଣଯୁଗର ନିର୍ମାତା । ସେମାନେ ଆସନ୍ତାକାଲିର ମନୋରମ ସକାଳ । ସମାଜ, ରାଷ୍ଟ୍ର ଓ ଏମାନଙ୍କ ମିଳିତ ଉଦ୍ୟମରେ ଆଜିର ଶିଶୁ ଆସନ୍ତାକାଲିର ସୁନାର ଭାରତ ଗଠନ କରିବାକୁ ସମର୍ଥ ହୋଇପାରିବ । ଏଥି ନିମିତ୍ତ ସବୁ ସ୍ତରରେ ଉଦ୍ୟମ ଜାରି ରହିବା ଆବଶ୍ୟକ । କାରଣ ଇଂରାଜୀରେ କୁହାଯାଇଛି Where children are there is the golden age, ମହାତ୍ମାଗାନ୍ଧି ସେଥିପାଇଁ କହିଥିଲେ—ଶିଶୁ ହସିଲେ ଦୁନିଆ ହସେ । ତା'ର ହସରେ ଉଙ୍କିମାରେ ଦେଶର ଆଗାମୀ ଭବିଷ୍ୟତ । ଏହି ଭବିଷ୍ୟତ ଭାରତର ରକ୍ଷା ପାଇଁ ଆଜି ସମସ୍ତ ଭାରତୀୟ ପ୍ରତିଜ୍ଞାବଦ୍ଧ ହେବା ଉଚିତ । ସେମାନଙ୍କ ପ୍ରତିଭାକୁ ଅକାଳରେ ନଷ୍ଟ ହେବାକୁ ନ ଦେଇ, ତା'ର ଉପଯୁକ୍ତ ସୁରକ୍ଷା ପାଇଁ ଆଜିଠାରୁ ଆସନ୍ତୁ ଆମେ ସଚେତନ ହେବା ।



# ବାଳଅପରାଧ ସମସ୍ୟା

**(ଉପକ୍ରମ, ବାଳଅପରାଧ କ'ଣ ?, ଭାରତରେ ବାଳଅପରାଧ, ବାଳଅପରାଧର କାରଣ, ନିରାକରଣ ଉପାୟ, ଉପସଂହାର)**

ବାଳଅପରାଧ ଆଜି ସମଗ୍ର ବିଶ୍ୱରେ ଏକ ବିରାଟ ସମସ୍ୟା ହୋଇ ଦେଖାଦେଇଛି । ଏଥିପାଇଁ ସମସ୍ତଙ୍କ ମନରେ ଉଦ୍‌ବେଗ । ଆଜିର ବାଳକ ଆସନ୍ତାକାଲିର ନାଗରିକ । ସେମାନେ ଚାହିଁଲେ ବିଶ୍ୱରେ ଶାନ୍ତି ଏବଂ ସଦ୍ଭାବନାର ବାର୍ତ୍ତା ପ୍ରଚାର କରିପାରିବେ । ଅଥଚ ସାମ୍ପ୍ରତିକ ସମାଜରେ ସେମାନଙ୍କର ଅନାଚରଣ କାର୍ଯ୍ୟାବଳୀ ବିଶ୍ୱ ପାଇଁ ମୁଣ୍ଡବ୍ୟଥାର କାରଣ ହୋଇଛି । ଏହାର ନିରାକରଣ ପାଇଁ ବିଭିନ୍ନ ସ୍ତରରେ ଉଦ୍‌ବେଗ ପ୍ରକାଶିତ ହେଉଥିଲେହେଁ ସମାଧାନ ନିମିତ୍ତ ବିଶେଷ ତତ୍ପରତା ପ୍ରକାଶ ପାଇପାରୁ ନାହିଁ । ସେମାନଙ୍କର ଭବିଷ୍ୟତ ନେଇ ଅସଂଖ୍ୟ ପ୍ରଶ୍ନବାଚୀ ଆଜି ମୁଣ୍ଡ ଟେକିଛି । ଯେଉଁମାନଙ୍କ ଉପରେ ଭାରତର ସୁନେଲି ଭବିଷ୍ୟତ ନିର୍ଭରଶୀଳ, ସେମାନେ ଯଦି ଦିଗଭ୍ରଷ୍ଟ ହୁଅନ୍ତି, ଆଗାମୀ ଶତାବ୍ଦୀର ଭାରତ କିପରି ରୂପରେଖ ଗ୍ରହଣ କରିବ ସେଥିନେଇ ବିଭିନ୍ନ ସ୍ତରରେ ଚିନ୍ତା ପ୍ରକଟିତ ହେଉଛି । ଶିଳ୍ପ ସଭ୍ୟତାର ଅଗ୍ରଗତି ଘଟିଛି, ବିଜ୍ଞାନ ଦ୍ରୁତ ପଦକ୍ଷେପରେ ଆଗେଇ ଚାଲିଛି, ମାନବ ସଭ୍ୟତାର ବିକାଶ ସହିତ ସହରୀ ସଭ୍ୟତାର ନବୀକରଣ ଘଟୁଛି ଅଥଚ ସେହି ପରିମାଣରେ ବାଳଅପରାଧ ମଧ୍ୟ ବଢ଼ି

ବଢ଼ି ଚାଲିଛି । ବିଶ୍ୱ ସ୍ତରରେ ଅତୀତରେ ବହୁ ବୁଦ୍ଧିଜୀବୀ ଏଥିପାଇଁ ନିଜର ପ୍ରତିକ୍ରିୟା ପ୍ରକାଶ କରିଛନ୍ତି; ବର୍ତ୍ତମାନ ବି କରୁଛନ୍ତି । ଏହା ସତ୍ତ୍ୱେ ବାଳଅପରାଧର ନିରାକରଣ ନିମିତ୍ତ ସେପରି କିଛି ଆଖିଦୃଶିଆ କାର୍ଯ୍ୟକ୍ରମ ଗ୍ରହଣ କରାଯାଇପାରି ନାହିଁ । ଅତୀତରେ ପାଶ୍ଚାତ୍ୟ ଦେଶମାନଙ୍କରେ ପୁରୁଷ ବାଳଅପରାଧୀମାନଙ୍କୁ ଶାସ୍ତି ଦେବା ଉଦ୍ଦେଶ୍ୟରେ ନିବିଡ଼ ଅରଣ୍ୟ ମଧ୍ୟରେ ଛାଡ଼ି ଦିଆଯାଉଥିଲା । ବାଳିକା ଅପରାଧୀମାନଙ୍କୁ ବେଶ୍ୟାମାନଙ୍କ ଦାୟିତ୍ୱରେ ରଖାଯାଉଥିଲା । ମାତ୍ର ଏହା ଦ୍ୱାରା ବାଳଅପରାଧ ହ୍ରାସ ପାଇଲା ନାହିଁ କିମ୍ବା ଏହାର କୌଣସି ପ୍ରଭାବ ମଧ ସେମାନଙ୍କ ଉପରେ ପଡ଼ିଲା ନାହିଁ । ପରବର୍ତ୍ତୀ କାଳରେ ମନସ୍ତାତ୍ତ୍ୱିକ ଉପାୟରେ ଏହାର କାରଣ ଅନୁସନ୍ଧାନ କରାଯାଇ ନିରାକରଣ ନିମିତ୍ତ ବିଭିନ୍ନ ଉପାୟ ଉଦ୍ଭାବନ କରାଗଲା ।

ପ୍ରଶ୍ନ ଉଠେ, ବାଳଅପରାଧ କ'ଣ ? ଛୋଟ ଛୋଟ ଶିଶୁ ସମାଜର ଧାରାବାହିକ ଜୀବନରେ ହଠାତ୍ ଯେତେବେଳେ ଏକ ପ୍ରତିବନ୍ଧକ ସୃଷ୍ଟି କରି ସାଧାରଣ ଜୀବନଯାତ୍ରାକୁ କଳୁଷିତ କରନ୍ତି, ଶିଶୁମାନଙ୍କର ସେହି ଅପରାଧକୁ ବାଳଅପରାଧ କୁହାଯାଇଥାଏ । ଅନେକ ସମୟରେ ସେମାନଙ୍କର ଅତୃପ୍ତ ଇଚ୍ଛା ଏବଂ ଖିଆଲ ସାକାର ରୂପ ଧାରଣ କରି ନ ପାରିଲେ, ନିଜର ଇଚ୍ଛାଶକ୍ତିକୁ ଜାହିର କରିବା ପାଇଁ ସେମାନେ ସମାଜ ଅସମ୍ମତ କେତେକ କାର୍ଯ୍ୟ କରିଥାନ୍ତି । ଯାହା ସମାଜର ସ୍ୱୀକୃତିକୁ ସମ୍ମାନ ଦିଏ ନାହିଁ, ଯେଉଁ କାର୍ଯ୍ୟ ସମାଜର ପରିପନ୍ଥୀ, ଯେଉଁ ବ୍ୟବହାର ଓ କାର୍ଯ୍ୟକଳାପ ସମାଜ ଜୀବନରେ ବିଶୃଙ୍ଖଳା ସୃଷ୍ଟି କରେ, ସର୍ବୋପରି ସମାଜର ସୁସ୍ଥ ବିକାଶରେ ଯାହା ଅନ୍ତରାୟ, ଯଦି ଅଳ୍ପ ବୟସର ବାଳକ ଓ ବାଳିକା ସେହିସବୁ କାର୍ଯ୍ୟ କରନ୍ତି, ତାହାକୁ ରାଷ୍ଟ୍ର ବାଳଅପରାଧ ଆଖ୍ୟା ଦେଇଥାଏ । ଭାରତର କେନ୍ଦ୍ରୀୟ ଆଇନରେ ବାଳଅପରାଧୀଙ୍କ ବୟସ ନିର୍ଦ୍ଦିଷ୍ଟ କରାଯାଇଛି । ସାଧାରଣତଃ ୧୬ ବର୍ଷରୁ କମ୍ ବୟସର ବାଳକ ଏବଂ ୧୮ ବର୍ଷରୁ କମ୍ ବୟସର ବାଳିକାଙ୍କୁ ବାଳଅପରାଧୀ ରୂପେ ଗ୍ରହଣ କରାଯାଇଥାଏ । ସେମାନଙ୍କର ଅନୈତିକ ଓ ସମାଜବିରୋଧୀ କାର୍ଯ୍ୟକଳାପ ବାଳଅପରାଧ ପଦବାଚ୍ୟ ।

ପାଶ୍ଚାତ୍ୟ ଦେଶ ତୁଳନାରେ ଭାରତରେ ବାଳଅପରାଧୀଙ୍କ ସଂଖ୍ୟା ତୁଳନାତ୍ମକ ଭାବରେ କମ୍ ହେଲେହେଁ, ଏଥିରେ ଆଶ୍ୱସ୍ତ ହେବାର କୌଣସି କାରଣ ନାହିଁ । କାରଣ ଭାରତ ପରି ଏକ ସଂସ୍କୃତିସମ୍ପନ୍ନ ଦେଶରେ ଶିଶୁମାନଙ୍କର ଏ ପ୍ରକାର କାର୍ଯ୍ୟକଳାପ ବା ଆଚରଣ ସମ୍ପୂର୍ଣ୍ଣ ରୂପେ ଅସ୍ୱୀକୃତୀୟ । ଅତୀତରେ ଭାରତରେ ବାଳଅପରାଧର ସଂଖ୍ୟା ଓ କାରଣ ଜାଣିବା ନିମିତ୍ତ ବିଭିନ୍ନ କମିଟି ଗଠନ କରାଯାଇଛି । ୧୯୭୨ ମସିହାରେ ଏ ସମ୍ପର୍କରେ ପରିସଂଖ୍ୟାନ କରାଯାଇ ଜଣାପଡ଼ିଛି ଯେ, ଏହି ମସିହା ସୁଦ୍ଧା ପ୍ରାୟ ୧୨୮୧୮୧ ବାଳକ ବାଳିକା ଭିନ୍ନ ଭିନ୍ନ ଅପରାଧ ଯୋଗୁଁ ଗିରଫ ହୋଇଥିଲେ । ମାତ୍ର ଏହାର ଦଶବର୍ଷ ପରେ ବାଳଅପରାଧୀଙ୍କ ଗଣନାରୁ ଏହାର ସଂଖ୍ୟା ଯଥେଷ୍ଟ ବୃଦ୍ଧି ପାଇଥିଲା । ଅର୍ଥାତ୍ ୧୦ ବର୍ଷ ମଧ୍ୟରେ ବାଳଅପରାଧୀଙ୍କ ସଂଖ୍ୟା ୪୦୧୫୬ ବଢ଼ିଯାଇଥିଲା । ପରିସଂଖ୍ୟାନରୁ ଜଣାଯାଏ ୧୯୮୨ ମସିହାରେ ବାଳଅପରାଧୀଙ୍କ ସଂଖ୍ୟା ୩୧.୩% ବୃଦ୍ଧି ପାଇ ୧୬୮୩୩୭ରେ ପହଞ୍ଚିଥିଲା । ଭାରତରେ ବାଳକ ଅପରାଧୀଙ୍କ ସଂଖ୍ୟା ବାଳିକା ଅପରାଧୀଙ୍କ ସଂଖ୍ୟାଠାରୁ

ଯଥେଷ୍ଟ ଅଧିକ ଥିଲେହେଁ, ବାଳିକା ଅପରାଧୀଙ୍କ ସଂଖ୍ୟା ନିଶ୍ଚିତ ଭାବରେ ଉଦ୍‌ବେଗଜନକ । ୧୯୭୨ର ବାଳକ ଅପରାଧୀଙ୍କଠାରୁ ୧୯୮୨ରେ ବାଳିକା ଅପରାଧୀଙ୍କ ସଂଖ୍ୟା ୪୭.୭% ବୃଦ୍ଧିପାଇଛି । ୧୯୮୩ ମସିହାରେ ଭାରତର ବାଳଅପରାଧୀଙ୍କ ସମ୍ପର୍କରେ ଗବେଷଣା କରି ଇଣ୍ଡିଆ ରିପୋର୍ଟରେ ୧୯୮୨ ମସିହା ସୁଦ୍ଧା ଏହି ଅପରାଧୀଙ୍କ ସଂଖ୍ୟା ନିର୍ଦ୍ଧାରଣ କରାଯାଇ କୁହାଯାଇଥିଲା—୭ରୁ ୧୨ ବର୍ଷ ସମୟସୀମା ମଧ୍ୟରେ ସର୍ବମୋଟ ୮୨୭୨ ବାଳଅପରାଧୀଙ୍କ ମଧ୍ୟରୁ ବାଳକଙ୍କ ସଂଖ୍ୟା ୭୨୮୮ ଓ ବାଳିକାଙ୍କ ସଂଖ୍ୟା ୯୮୪ । ୧୨ ରୁ ୧୬ ବର୍ଷ ମଧ୍ୟରେ ସର୍ବମୋଟ ୧୫,୨୧୮ ଜଣ ଅପରାଧୀଙ୍କ ମଧ୍ୟରୁ ବାଳକଙ୍କ ସଂଖ୍ୟା ୧୪,୧୩୪ ଓ ବାଳିକାଙ୍କ ସଂଖ୍ୟା ୧୦୮୪ । ୧୬ ରୁ ୧୮ ବର୍ଷ ମଧ୍ୟରେ ସର୍ବମୋଟ ୨୫,୬୧୮ ଜଣ ଅପରାଧୀଙ୍କ ମଧ୍ୟରୁ ବାଳକ ୨୩୮୮୭ ଓ ବାଳିକା, ୧୭୩୧ । ଏହି ବାଳଅପରାଧୀମାନେ ମୁଖ୍ୟତଃ ହତ୍ୟା, ଚୋରି, ଗଣ୍ଡଗୋଳ, ଅପହରଣ, ଧର୍ଷଣ, ଠକାମି, ଡକାୟତି, ନରହତ୍ୟା, ସିନ୍ଧିରୋରି, ଜାଲିଆତି, ଲୁଟତରାଜ ଆଦି ଅପରାଧମୂଳକ କାର୍ଯ୍ୟରେ ଲିପ୍ତ ଥିଲେ । ଏହି ଅପରାଧୀମାନଙ୍କୁ ଉପଯୁକ୍ତ ପଥକୁ ଫେରାଇଆଣିବା ନିମିତ୍ତ ମଧ୍ୟ ବିଭିନ୍ନ ପଦକ୍ଷେପ ଗ୍ରହଣ କରାଯାଇଛି । ୧୯୫୨ ମସିହାରେ ବାଳଅପରାଧର ନିୟନ୍ତ୍ରଣ ଓ ପ୍ରତିରୋଧ ସକାଶେ ବମ୍ବେରେ ଏକ ସ୍ୱତନ୍ତ୍ର ସେଲ ଗଠନ କରାଯାଇ ଜଣେ ଡି.ଆଇ.ଜିଙ୍କୁ ଏହାର ଦାୟିତ୍ୱ ଅର୍ପଣ କରାଯାଇଥିଲା । ବାଳଅପରାଧର କାରଣ ଜାଣିବା ନିମିତ୍ତ ଏହି ସେଲଟି ମଧ୍ୟ କେତେକ ଉପାୟ ଉଦ୍ଭାବନ କରିଥିଲେ । ବାଳଅପରାଧର ନିୟନ୍ତ୍ରଣ ନିମିତ୍ତ ଅତୀତରେ ଭାରତର ଭିନ୍ନ ଭିନ୍ନ ପ୍ରଦେଶରେ ପୃଥକ୍ ପୃଥକ୍ ନିୟମ ଓ ଆଇନ ପ୍ରଣୟନ କରାଯାଇଥିଲା । ସମାନ ନ୍ୟାୟ ପ୍ରଦାନ ଉଦ୍ଦେଶ୍ୟରେ ୧୯୬୮ ମସିହାରେ ଭାରତରେ ଏକ କେନ୍ଦ୍ରୀୟ ଆଇନ ବା Juvenile Justice Act ପ୍ରଣୟନ କରାଗଲା ଓ ୧୯୮୭ ମସିହା ଅକ୍ଟୋବର ୨ ତାରିଖଠାରୁ ଏହା କାର୍ଯ୍ୟକାରୀ ହୋଇଆସୁଅଛି । କେବଳ ଶାସ୍ତି ପ୍ରଦାନ ଉଦ୍ଦେଶ୍ୟରେ ଏହି ଆଇନ୍ ପ୍ରଣୟନ କରାନଯାଇ ବରଂ ତା'ର କାରଣ ଜାଣିବା ସହିତ ଅପରାଧୀଙ୍କ ଉପଯୁକ୍ତ ତତ୍ତ୍ୱ, ଶିକ୍ଷା, ସୁରକ୍ଷା, ତାଲିମ, ମାନସିକ ବିକାଶ ଏବଂ ସେମାନଙ୍କର ଯଥାର୍ଥ ଥଇଥାନ ଓ ରକ୍ଷଣାବେକ୍ଷଣ ଉପରେ ଏହା ଗୁରୁତ୍ୱ ଆରୋପ କରୁଛି । ବହୁ ବାଳଅପରାଧୀଙ୍କୁ ଜେଲରେ ରଖିବା ଅପେକ୍ଷା ଏକ ବାଳ ଆଶ୍ରମ ବା Children Homes ରଖାଯାଇ ସେମାନଙ୍କର ଗତିବିଧିକୁ ନିରୀକ୍ଷଣ କରାଯାଉଛି ଏବଂ ସେମାନଙ୍କ ଚରିତ୍ରର ସଂଶୋଧନ ନିମିତ୍ତ ବିଭିନ୍ନ ପଦକ୍ଷେପ ଗ୍ରହଣ କରାଯାଉଛି । ଯଦି କୌଣସି ବ୍ୟକ୍ତି ଏହି ଆଇନର ଖିଲାପ କରି ବାଳଅପରାଧୀମାନଙ୍କୁ ଶାରୀରିକ ନିର୍ଯାତନା ବା ଅନ୍ୟ କୌଣସି କୁକାର୍ଯ୍ୟରେ ଲିପ୍ତ ହେବା ନିମିତ୍ତ ପ୍ରେରଣା ଦିଅନ୍ତି, ଆଇନ ଅନୁଯାୟୀ ସେମାନଙ୍କୁ ଦଣ୍ଡ ଦେବାର ମଧ୍ୟ ବ୍ୟବସ୍ଥା ରହିଛି । ଭାରତର ଅନ୍ୟାନ୍ୟ ପ୍ରଦେଶରେ ବାଳଅପରାଧୀମାନଙ୍କୁ ସୁପଥକୁ ଫେରିବା ନିମିତ୍ତ ଯେପରି ପଦକ୍ଷେପମାନ ଗ୍ରହଣ କରାଯାଇଛି, ଓଡ଼ିଶାରେ ସେପରି ଆଖିଦୃଶିଆ ପଦକ୍ଷେପ ଗ୍ରହଣ କରାଯାଇପାରି ନାହିଁ । ଯାହା ବା ଗ୍ରହଣ କରାଯାଇଛି, ତାହା ଆଦୌ ସନ୍ତୋଷଜନକ ନୁହେଁ । ନିକଟରେ ଓଡ଼ିଶାର ରାଜଧାନୀ

ଭୁବନେଶ୍ୱରରେ ଯେପରି ଜଣେ ସ୍କୁଲ ଛାତ୍ରକୁ ତା'ର କେତେଜଣ ସାଙ୍ଗ ଓ ବାହାର ପିଲା ଅମାନୁଷିକ ଭାବରେ ହତ୍ୟାକଲେ ସେଥିରୁ ଓଡ଼ିଶାରେ ବାଳଅପରାଧୀମାନଙ୍କ କ୍ଷେତ୍ରରେ ଗ୍ରହଣ କରାଯାଉଥିବା ପଦକ୍ଷେପର ସ୍ୱଷ୍ଟ ନମୁନା ପ୍ରଦର୍ଶିତ ହୋଇଛି । ସାମାଜିକ ସ୍ତରରେ ଜନଜାଗରଣ ସୃଷ୍ଟି ନ ହେଲେ, ଅଳ୍ପ କେତୋଟି ଆଇନ୍ ଏହି ଅପରାଧୀଙ୍କୁ ପ୍ରତିରୋଧ କରିବା କ୍ଷେତ୍ରରେ ଆଦୌ ସମର୍ଥ ହୋଇପାରିବ ନାହିଁ ।

ଭାରତରେ ସଙ୍ଗଠିତ ବାଳଅପରାଧର ବହୁବିଧ କାରଣ ବିଦ୍ୟମାନ । ଏହାର କେତୋଟି ବିଶିଷ୍ଟ କାରଣ ସମ୍ପର୍କରେ ସୂଚନା ଦେଇ ଆଲୋଚକ ହେମନ୍ତକୁମାର କର କହିଛନ୍ତି – ବାଳଅପରାଧର ବହୁବିଧ କାରଣ ରହିଛି । ତନ୍ମଧ୍ୟରୁ କେତୋଟି ମୁଖ୍ୟ କାରଣ ହେଲା – (୧) ଶିଳ୍ପ ସଭ୍ୟତାର ଅଗ୍ରଗତି (୨) ଦ୍ରୁତ ସହରୀକରଣ ବ୍ୟବସ୍ଥା (୩) ଜନସଂଖ୍ୟା ବୃଦ୍ଧି (୪) ଦାରିଦ୍ର୍ୟ (୫) ଭଗ୍ନ ପରିବାର (୬) ବିବାହ-ବିଚ୍ଛେଦ (୭) ନୈତିକ ମୂଲ୍ୟବୋଧର ଅବକ୍ଷୟ (୮) ଅବଦମିତ ଦୈହିକ କ୍ଷୁଧା (୯) ଚଳଚ୍ଚିତ୍ରର କୁପ୍ରଭାବ (୧୦) କୁସଙ୍ଗ ନିଶା (୧୧) ନିଶା ସେବନ ଓ ମଦ୍ୟପାନ (ସମାଜ – ୨୪.୩.୯୬ ରବିବାର ପୃ-ଖ) ଶିଳ୍ପ ସଭ୍ୟତାର ବିକାଶ ଯୋଗୁଁ ପାରିବାରିକ ସଦ୍‌ଭାବ ଓ ସମ୍ପର୍କ ଧୀରେ ଧୀରେ ଖଣ୍ଡିତ ହେବାକୁ ଲାଗିଛି । ସହରୀ ସଭ୍ୟତାର ବିକାଶ ଯୋଗୁଁ ଯୌଥ ପରିବାରର ମହନୀୟତା କ୍ଷୁଣ୍ଣ ହୋଇଛି ଓ ମଣିଷ କ୍ରମଶଃ ବ୍ୟକ୍ତିକେନ୍ଦ୍ରିକ ହୋଇପଡ଼ିଛି । ପରିବାରର ସଦସ୍ୟମାନଙ୍କ ମଧ୍ୟରେ ବୁଝାମଣାର ଅଭାବ ଯୋଗୁଁ ଶିଶୁମାନଙ୍କର ଯେପରି ଯତ୍ନ ନିଆଯିବା କଥା, ନିଆଯାଇପାରୁ ନାହିଁ । ବହୁ ସମୟରେ ସ୍ୱାମୀ-ସ୍ତ୍ରୀଙ୍କ ମଧ୍ୟରେ ବିବାହ ବିଚ୍ଛେଦ ପିଲାମାନଙ୍କ ଉପରେ କୁ-ପ୍ରଭାବ ସୃଷ୍ଟି କରୁଛି । ଉଭୟ ପିତାମାତାଙ୍କ ଠାରୁ ଯେଉଁ ସ୍ନେହ ଓ ଶ୍ରଦ୍ଧା ଶିଶୁଟି ପାଇବାକୁ ହକ୍‌ଦାର ସେ ପାଇ ପାରୁନଥିବାରୁ ଗୋଟିଏ ଅସାମାଜିକ ଜୀବରେ ପରିଣତ ହୋଇଯାଉଛି । ଦାରିଦ୍ର୍ୟ ବାଳଅପରାଧର ଅନ୍ୟତମ ମୁଖ୍ୟ କାରଣ । ଅନେକ ସମୟରେ ଅଭାବ ମନୁଷ୍ୟର ସ୍ୱଭାବରେ ପରିବର୍ତ୍ତନ ଆଣିଥାଏ । ଦାରିଦ୍ର୍ୟ କଷାଘାତରେ କୌଣସି ବାଳକ ବା ବାଳିକା କୌଣସି ଅପରାଧ କଲେ ସେମାନଙ୍କୁ ଜେଲରେ ରଖାଯାଏ । ଜେଲରୁ ଫେରିବା ପରେ ସମାଜରେ ତା'ର ସ୍ଥିତି ବଦଳିଯାଏ । ଘୃଣା ଓ ଅସୂୟାର ବଶବର୍ତ୍ତୀ ହୋଇ ସେ ସମାଜରେ ତା'ର ସ୍ଥାନ ନିରୂପଣ କରିବାକୁ ଅସମର୍ଥ ହୁଏ । ପୁନର୍ବାର ସେ ଅପରାଧ କରିବାକୁ ବାଧ୍ୟ ହୋଇଥାଏ । ଉପଯୁକ୍ତ ଥଇଥାନର ଅଭାବରୁ ସେ ପୁଣି ଅସାମାଜିକ ଜୀବରେ ପରିଣତ ହୋଇଯାଏ । କେତେକ କ୍ଷେତ୍ରରେ ପୁଲିସର ଶାସ୍ତିବିଧାନ ବାଳଅପରାଧୀଙ୍କୁ ପ୍ରତିକ୍ରିୟାଶୀଳ କରାଇଥାଏ । ସ୍ନେହ ଓ ଶ୍ରଦ୍ଧାରୁ ବଞ୍ଚିତ ଏହି ବାଳଅପରାଧୀଗଣ ବାରମ୍ବାର ଅପରାଧ କରିବାକୁ କୁଣ୍ଠା ପ୍ରକାଶ କରନ୍ତି ନାହିଁ । ବାଳଅପରାଧର କାରଣସ୍ୱରୂପ ସମାଜର କେତେକ ତଥାକଥିତ ଅପରାଧୀଙ୍କ ପ୍ରୋତ୍ସାହନ ଓ ବାଧ୍ୟବାଧକତାକୁ ମଧ୍ୟ ଗ୍ରହଣ କରାଯାଇପାରେ । କେତେକ ଅପରାଧୀ ଜବରଦସ୍ତ ଅଳ୍ପ ବୟସର ବାଳକବାଳିକାମାନଙ୍କୁ ଅପହରଣ କରି ସେମାନଙ୍କୁ ଅସାମାଜିକ କାର୍ଯ୍ୟ କରିବାକୁ ପ୍ରଶିକ୍ଷଣ ଦେବା ସଙ୍ଗେ ସଙ୍ଗେ ବାଧ୍ୟ କରିଥାନ୍ତି । ଏପରିକି

ଶିଶୁମାନଙ୍କୁ ବିକୃତ କରି ଭିକ୍ଷାବୃତ୍ତି ମାଧ୍ୟମରେ ସେମାନଙ୍କର ଅର୍ଥଲାଳସା ପରିତୃପ୍ତି କରିଥାନ୍ତି । ପୁନରାୟ ଚଳଚ୍ଚିତ୍ର ଓ ଟେଲିଭିଜନର କେତେକ ଅପରାଧମୂଳକ ପ୍ରସାରଣ ଶିଶୁମାନଙ୍କର ମାନସିକ ସ୍ତରରେ ଘୋର ଆନ୍ଦୋଳନ ସୃଷ୍ଟି କରିଥାଏ । ବିଭିନ୍ନ ଗବେଷଣାରୁ ଜଣାଯାଇଛି ଟେଲିଭିଜନ ବା ଚଳଚ୍ଚିତ୍ରରେ ପ୍ରଦର୍ଶିତ ଅପରାଧ କାର୍ଯ୍ୟକଳାପ ଶିଶୁମାନଙ୍କ ମନରେ ଏକ ଖିଆଲ ସୃଷ୍ଟି କରେ ଏବଂ କୌତୁକରେ ତାହା ପ୍ରଦର୍ଶିତ କରିବାକୁ ଯାଇ ଅପରାଧ କରିପକାନ୍ତି । ଏ ପ୍ରକାର ପ୍ରଦର୍ଶନକୁ ସମ୍ପୂର୍ଣ୍ଣ ରୂପେ ବନ୍ଦ କରିବା ଉଚିତ । ସମୟେ ସମୟେ ନିଜର ଦୈହିକ କାମନାର ପରିତୃପ୍ତି ପାଇଁ ଏମାନେ ମଧ୍ୟ କେତେକ ଅପରାଧମୂଳକ କାର୍ଯ୍ୟ କରିଥାନ୍ତି । ଏ କ୍ଷେତ୍ରରେ ସମାଜର ଏକ ବିଶେଷ ଭୂମିକା ରହିଛି । ପିଲାଦିନରୁ ନିଶାସେବନ ଓ କୁସଙ୍ଗ ପ୍ରଭାବଯୋଗୁଁ ମଧ୍ୟ ବାଳକ ବାଳିକା ବହୁପରିମାଣରେ ଅପରାଧୀ ଜୀବନକୁ ବରଣ କରିନେଇଥାନ୍ତି । ସମାଜରେ ମୂଲ୍ୟବୋଧରେ ସଙ୍କଟ ଓ ନୈତିକ ଅଧୋପତନ ଘଟିଲେ ପିଲାମାନେ ଅପରାଧ କାର୍ଯ୍ୟରେ ପ୍ରବୃତ୍ତ ହୋଇଥାନ୍ତି ।

ବାଳଅପରାଧର ନିରାକରଣ ନିମିତ୍ତ ସମଗ୍ର ରାଷ୍ଟ୍ରର ନୈତିକ ଦାୟିତ୍ୱ ରହିଛି । ସମଗ୍ର ସମାଜ ସଚେତନ ନ ହେଲେ ବାଳଅପରାଧର ନିରାକରଣ ସମ୍ଭବ ନୁହେଁ । ମାତ୍ର ରାଜନୈତିକ ସ୍ତରରେ ଏ ପର୍ଯ୍ୟନ୍ତ କୌଣସି ଆଖିଦୃଶିଆ ପଦକ୍ଷେପ ଏହାର ନିରାକରଣ ନିମିତ୍ତ ଗ୍ରହଣ କରାଯାଇପାରି ନାହିଁ । ବାଳଅପରାଧ ନିମିତ୍ତ କାର୍ଯ୍ୟ କରୁଥିବା ବିଭିନ୍ନ ସଂସ୍ଥା ମଧ୍ୟରେ ଉପଯୁକ୍ତ ସହଯୋଗ ରକ୍ଷା କରାଯାଇପାରୁ ନାହିଁ । ଏହି ସଂସ୍ଥା ସରକାରୀ ବାଧ୍ୟବାଧକତାରୁ ମୁକ୍ତ ହୋଇ ସ୍ୱାଧୀନ ଭାବରେ କାର୍ଯ୍ୟ କଲେ ବାଳଅପରାଧକୁ କେତେକାଂଶରେ ନିୟନ୍ତ୍ରଣ କରିବାକୁ ସମର୍ଥ ହୋଇପାରିବେ । ଏହି ଅପରାଧୀମାନଙ୍କୁ କ୍ଷମା ପ୍ରଦାନ ପୂର୍ବକ ସ୍ନେହ ଓ ଶ୍ରଦ୍ଧାର ସହିତ ସରକାରୀ ସ୍ତରରେ ସେମାନଙ୍କୁ ଥଇଥାନ କରିବାର ଯୋଜନା ପ୍ରସ୍ତୁତ କରାଯାଇପାରିଲେ ଏହି ଅପରାଧ ବହୁପରିମାଣରେ ହ୍ରାସ ହୋଇପାରିବ । ବାଳଅପରାଧୀଙ୍କ କ୍ଷେତ୍ରରେ ସମାଜର ଯେଉଁ ଦୃଷ୍ଟିଭଙ୍ଗୀ ରହିଛି, ତା'ର ପରିବର୍ତ୍ତନ ହେବା ବାଞ୍ଛନୀୟ । ପ୍ରତ୍ୟେକ ବାଳକ ଓ ବାଳିକାଙ୍କ କ୍ଷେତ୍ରରେ ବିଦ୍ୟାଳୟମାନଙ୍କରେ ନୈତିକ ଶିକ୍ଷା ପ୍ରଦାନ ଓ ସାମାଜିକ ଜୀବନ ସହିତ ସେମାନଙ୍କୁ ଜଡ଼ିତ କରିବା ନିମିତ୍ତ ବିଭିନ୍ନ ପଦକ୍ଷେପ ଗ୍ରହଣ କରାଯିବା ଉଚିତ । ସେମାନଙ୍କ ଚରିତ୍ରର ସଂଶୋଧନ ଦିଗରେ ପରାମର୍ଶ ପରିଷଦ ଗଠନ କରାଯାଇ ତା ମାଧ୍ୟମରେ ସେମାନଙ୍କୁ ଉପଯୁକ୍ତ ଶିକ୍ଷା ପ୍ରଦାନ କରାଯିବା ମଧ୍ୟ ଉଚିତ । ଭାରତର ବିଭିନ୍ନ ସ୍ଥାନରେ କାର୍ଯ୍ୟକରୁଥିବା ସ୍ୱେଚ୍ଛାସେବୀ ଅନୁଷ୍ଠାନ ଏ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିପାରିବେ । ପିଲାମାନଙ୍କୁ ଉଚିତ ମାର୍ଗରେ ପରିଚାଳନା କରିବା କ୍ଷେତ୍ରରେ ପରିବାରର ମଧ୍ୟ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ପିତାମାତାଙ୍କ ମଧ୍ୟରେ କଳହ, ବୁଝାମଣାର ଅଭାବ ବହୁ ସମୟରେ ପିଲାମାନଙ୍କର ଅଧୋପତନର କାରଣ ହୋଇଥାଏ । ସେଥିପାଇଁ ପରିବାରର ସଦସ୍ୟ ଏ କ୍ଷେତ୍ରରେ ସମୁଚିତ ଧ୍ୟାନ ଦେଇ ସେମାନଙ୍କର ମାନସିକ ଓ ଶାରୀରିକ ବିକାଶରେ ପ୍ରମୁଖ ଭୂମିକା ଗ୍ରହଣ କରିବା ସର୍ବାଦୌ ଆବଶ୍ୟକ । ଏତଦ୍ ବ୍ୟତୀତ ବିଭିନ୍ନ ନିଶାଠାରୁ ସୁରକ୍ଷାମୂଳକ ଦୂରତ୍ୱରେ ପିଲାମାନଙ୍କୁ

ରଖିବା ବିଧେୟ । ଯେଉଁ ଚଳଚ୍ଚିତ୍ର କିମ୍ବା କାର୍ଯ୍ୟକ୍ରମ ଶିଶୁମାନଙ୍କ ମନରେ ଅପରାଧ ପ୍ରବଣ ଭାବ ସୃଷ୍ଟି କରେ, ସେପରି କାର୍ଯ୍ୟକ୍ରମ ଠାରୁ ପିଲାମାନଙ୍କୁ ଦୂରରେ ରଖିବା ଉଚିତ । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି ପିତାମାତା, ସମାଜ ତଥା ପରିବାର ପିଲାମାନଙ୍କୁ ଉପଯୁକ୍ତ ସ୍ନେହ ଓ ଶ୍ରଦ୍ଧା ପ୍ରଦାନ କରି ସେମାନଙ୍କୁ ଯଥାର୍ଥ ପରିପୂର୍ଣ୍ଣ ନାଗରିକ ଓ ସମାଜର ଅନ୍ୟତମ ମୂଲ୍ୟବାନ ସମ୍ପତ୍ତିରେ ପରିଣତ କରିବା କ୍ଷେତ୍ରରେ ପ୍ରମୁଖ ଭୂମିକା ଗ୍ରହଣ କରିବା ଉଚିତ ।

ଶିଶୁମାନେ ସମାଜର ମୂଲ୍ୟବାନ ସମ୍ପଦ । ସମାଜର ଅନ୍ୟ କୌଣସି ପଦାର୍ଥ ସହିତ ସେମାନଙ୍କର ତୁଳନା କରାଯିବା ଅନୁଚିତ । ସାମାଜିକ ସାମୂହିକ ସାଧୁ ଉଦ୍ୟମ ବାଳଅପରାଧ ନିରାକରଣ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ଏତଦ୍ ବ୍ୟତୀତ ପ୍ରଶାସନ ବିଭାଗ, ପରିବାର ଓ ରାଜନୈତିକ ସ୍ତରର ବିଭିନ୍ନ ଉଦ୍ୟମ ଏବଂ ବିଶେଷକରି ନୈତିକ ଶିକ୍ଷା, ସ୍ନେହ, ପ୍ରେମ ଓ ଶ୍ରଦ୍ଧାଭାବ ସର୍ବୋପରି ସେମାନଙ୍କର ଜୀବନ ଓ ମୂଲ୍ୟବୋଧ ପ୍ରତି ଯଥାର୍ଥ ସମ୍ମାନ ବୋଧ ଏହି ବାଳଅପରାଧୀଙ୍କୁ ଭାରତର ଭବିଷ୍ୟତ ସୁନାଗରିକରେ ପରିଣତ କରିପାରିବ ।



## ଭାରତରେ ଦରଦାମ ବୃଦ୍ଧି ଓ ଜାତୀୟ ସମସ୍ୟା

**(ଉପକ୍ରମ, ଦରଦାମ ବୃଦ୍ଧି ଓ ଆର୍ଥିକ ସମସ୍ୟା, ଦର ବୃଦ୍ଧିର ବିଭିନ୍ନ କାରଣ, ଜାତୀୟ ସମସ୍ୟା, ଦରବୃଦ୍ଧି ନିରାକରଣ ଉପାୟ, ଉପସଂହାର)**

ସଂପ୍ରତି ଭାରତର ଦରଦାମ୍ ବୃଦ୍ଧି ଆକାଶଛୁଆଁ ହୋଇଯାଇଛି । ପ୍ରତି ବର୍ଷ ଏହା କଳ୍ପନାତୀତ ଭାବରେ ବୃଦ୍ଧି ପାଇବାକୁ ଲାଗିଛି । ଖଟିଖିଆ ଓ ନିମ୍ନ ମଧ୍ୟବିତ୍ତ ଶ୍ରେଣୀର ବ୍ୟକ୍ତିବିଶେଷଙ୍କ ପାଇଁ ଆଜି ଏହା ଏକ ମୁଣ୍ଡବ୍ୟଥାରେ ପରିଣତ ହୋଇଛି । ଖାଦ୍ୟ, ବାସଗୃହ, ବସ୍ତ୍ର ଏହି ତିନୋଟି ଅପରିହାର୍ଯ୍ୟ ପଦାର୍ଥ ମଣିଷର ବଞ୍ଚିବା ପାଇଁ ନିତାନ୍ତ ଆବଶ୍ୟକ । ନିତ୍ୟବ୍ୟବହାର୍ଯ୍ୟ ପଦାର୍ଥଗୁଡ଼ିକ ଯେପରି ଭାବରେ ବୃଦ୍ଧି ପାଇବାରେ ଲାଗିଛି, ସମାଜର ସାଧାରଣ ବ୍ୟକ୍ତିବିଶେଷ ବିଭିନ୍ନ ସଙ୍କଟର ସମ୍ମୁଖୀନ ହେବା ସ୍ୱାଭାବିକ । ଏକ ଗଣତନ୍ତ୍ର ଦେଶରେ ପ୍ରତ୍ୟେକ ବ୍ୟକ୍ତି ଅନ୍ତତଃ ଖାଦ୍ୟ କ୍ଷେତ୍ରରେ ସ୍ୱାବଲମ୍ବନଶୀଳ ହେବା ଉଚିତ । ମାତ୍ର ବର୍ତ୍ତମାନର ପରିସ୍ଥିତିକୁ ବିଚାରାଲୋଚନା କଲେ, ନିକଟ ଭବିଷ୍ୟତରେ ଏହାର ଯେକୌଣସି ସନ୍ତୋଷଜନକ ସମାଧାନ ହୋଇପାରିବ, ତା'ର ଆଶା ନାହିଁ । ଖଟିଖିଆ ଶ୍ରେଣୀରେ ବ୍ୟକ୍ତି, କୃଷକ ଓ ନିର୍ଦ୍ଦିଷ୍ଟ ଦରମା ଉପରେ ନିର୍ଭର କରୁଥିବା ଚାକିରିଜୀବୀ ଦରଦାମ୍ ବୃଦ୍ଧି ଫଳରେ ବିଭିନ୍ନ ଆର୍ଥିକ ସମସ୍ୟାର ସମ୍ମୁଖୀନ ହେଉଛନ୍ତି । ଆବଶ୍ୟକୀୟ ଔଷଧପତ୍ରର ଦାମ୍ ମଧ୍ୟ ହୁ ହୁ ବୃଦ୍ଧି ପାଉଛି । ସାଧାରଣ ଜନଜୀବନ ଉପରେ ଏହି ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥଗୁଡ଼ିକର ଦରବୃଦ୍ଧି

ପ୍ରଭାବ ପକାଉଛି । ସମାଜରେ ବଞ୍ଚିବାର୍ ଅଧିକାର ସେମାନଙ୍କର ଅଛି କି ନାହିଁ, ସେ ସମ୍ପର୍କରେ ସେମାନେ ଆଜି ସନ୍ଦିହାନ । ଦରଦାମ୍ ବୃଦ୍ଧିକୁ ରୋକିବା ନିମିତ୍ତ ଗ୍ରହଣ କରାଯାଉଥିବା ପଦକ୍ଷେପ ଆଦୌ ଆଶାଜନକ ନୁହେଁ । ଏପରି ପରିସ୍ଥିତିରେ ଭାରତର ଚିନ୍ତାଶୀଳ ବ୍ୟକ୍ତି ଗଭୀର ଚିନ୍ତା ପ୍ରକଟ କରିସାରିଲେଣି । ଏହି କାରଣରୁ ଆଜି ଆମର ସାମାଜିକ, ଆର୍ଥନୀତିକ ଓ ସାଂସ୍କୃତିକ ଜୀବନ ପଙ୍ଗୁ ହେବାକୁ ବସିଲାଣି । ଆଜିଠାରୁ ସବୁସ୍ତରରେ ଉଦ୍ୟମ ଜାରି ନ ରହିଲେ ଓ ସମୟୋଚିତ ପଦକ୍ଷେପ ଗ୍ରହଣ କରାଯାଇ ନ ପାରିଲେ, ଭାରତର ଭବିଷ୍ୟତ ଯେ ଅନ୍ଧକାର ହୋଇଉଠିବ; ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ଦରଦାମ୍ ବୃଦ୍ଧି ଫଳରେ ଭାରତ ଯେଉଁ ଆର୍ଥିକ ସଙ୍କଟର ସମ୍ମୁଖୀନ ହେଉଛି,ତାକୁ ନିକଟ ଭବିଷ୍ୟତରେ ଭରଣା କରିବା ଅସମ୍ଭବ ହୋଇପଡ଼ିବ । ମୁଦ୍ରାସ୍ଫୀତି ଯୋଗୁଁ ଆର୍ଥିକ ସଙ୍କଟ ଦେଖାଦେବା ସଙ୍ଗେ ସଙ୍ଗେ ଦରବୃଦ୍ଧି ଘଟିଥାଏ । ଭାରତରେ ୧୯୬୭ ମସିହାରୁ ଏହି ପ୍ରକାର ଅବସ୍ଥା ସୃଷ୍ଟି ହୋଇଛି । ସମସ୍ତ ସତର୍କତା ସତ୍ତ୍ୱେ ମଧ୍ୟ ଏହାର କୌଣସି ପ୍ରଭାବ ଅନୁଭୂତ ହୋଇପାରି ନାହିଁ । ଅଧିକ ଟଙ୍କା ଛାପିଦେଲେ ଏହି ସମସ୍ୟା ସମାଧାନ ହୋଇଯାଇ ନ ଥାଏ । ଅଧିକ ଅର୍ଥ ହେଲେ ଲୋକମାନଙ୍କର କ୍ରୟ କରିବାର ଶକ୍ତି ବୃଦ୍ଧି ହୋଇଥାଏ; ମାତ୍ର ସେହି ପରିମାଣରେ ଦ୍ରବ୍ୟ ଉତ୍ପାଦନ ନ ଘଟିଲେ, ପଦାର୍ଥର ମୂଲ୍ୟ ବୃଦ୍ଧି ଘଟେ ଓ ଅର୍ଥର ମୂଲ୍ୟ ହ୍ରାସ ଘଟେ । ୧୯୭୩-୭୪ ମସିହାରେ ଏହି ମୁଦ୍ରାସ୍ଫୀତି ଅସମ୍ଭବ ଭାବେ ଆତଙ୍କଜନକ ପରିସ୍ଥିତିର ସମ୍ମୁଖୀନ ହୋଇଥିଲା । ରିଜର୍ଭବ୍ୟାଙ୍କ୍ ମତାନୁଯାୟୀ ଏହି ବର୍ଷ ଶତକଡ଼ା ୧୮ ଭାଗ ଅଧିକ ଟଙ୍କା ବୃଦ୍ଧି ପାଇଥିଲା । ୧୯୭୯ ମସିହାରେ ଯେଉଁ ପରିସ୍ଥିତି ସୃଷ୍ଟି ହୋଇଥିଲା, ସ୍ୱାଧୀନତା ପରବର୍ତ୍ତୀ ସମୟରେ ଏହି ସମୟସୀମା ମଧ୍ୟରେ ଅନ୍ୟ କୌଣସି ବର୍ଷ ଏପରି ଅବସ୍ଥା ସୃଷ୍ଟି ହୋଇ ନ ଥିଲା । ଶିଳ୍ପଜାତ ପଦାର୍ଥର ଉତ୍ପାଦନ ହ୍ରାସ ପାଇବା ସଙ୍ଗେ ସଙ୍ଗେ ଅତ୍ୟାବଶ୍ୟକ ଜିନିଷର ଦରଦାମ୍ ଦ୍ରୁତ ଗତିରେ ବୃଦ୍ଧି ପାଇଲା । ଲୋକମାନଙ୍କ ନିକଟରେ ଅର୍ଥ ଗଚ୍ଛିତ ଥିଲେହେଁ, ପଦାର୍ଥ ସୁଲଭ ହେଲା ନାହିଁ । ମୁଦ୍ରାସ୍ଫୀତି ଚରମସୀମାରେ ଉପନୀତ ହେଲା । ୧୯୯୭ ମସିହା ଅଗଷ୍ଟ ୧୬ ରେ ବାର୍ଷିକ ମୁଦ୍ରାସ୍ଫୀତି ହାର ୩.୭୫ ହେବା ଖୁସିର ବିଷୟ ନିଶ୍ଚୟ । ମାତ୍ର ଏହାର ସୁଫଳ ଜନସାଧାରଣଙ୍କ ନିକଟରେ ପହଞ୍ଚିପାରି ନାହିଁ । ଜନସାଧାରଣଙ୍କ ନିତ୍ୟବ୍ୟବହାର୍ଯ୍ୟ ପଦାର୍ଥ କ୍ରୟରେ ଏହି ନିୟନ୍ତ୍ରିତ ମୁଦ୍ରାସ୍ଫୀତି ଆଦୌ ଜଣାପଡ଼େ ନାହିଁ । ଭାରତର ଋଣ ଭାର ଯେଉଁ ପରିମାଣରେ ବୃଦ୍ଧି ପାଉଛି, କେତେବେଳେ କି ପ୍ରକାର ଅବସ୍ଥାର ସମ୍ମୁଖୀନ ହେବାକୁ ପଡ଼ିବ, କଳ୍ପନା କରିବା କଷ୍ଟସାଧ୍ୟ । ବିଶ୍ୱବ୍ୟାଙ୍କ ମଧ୍ୟ ସତର୍କବାଣୀ ଶୁଣାଇ କହିଛି, ଭାରତ ଆନ୍ତର୍ଜାତିକ ଋଣ ଜାଲରେ ପଡ଼ିବାକୁ ଯାଉଛି । ଆଗାମୀ ୩ ବର୍ଷ ମଧ୍ୟରେ ଭାରତରେ ଯଦି ୧୦ ହଜାର କୋଟି ଆମେରିକାନ୍ ଡଲାର ଗଚ୍ଛିତ ନ ରହେ, ତେବେ ଭାରତର ବୈଦେଶିକ ଋଣ ପରିଶୋଧ କରିବା କାଠିକର ପାଠ ହୋଇପଡ଼ିବ । ବିଶ୍ୱବ୍ୟାଙ୍କର ପ୍ରସ୍ତାବ ଅନୁଯାୟୀ ଭାରତର ଆମଦାନୀ ନୀତି ସଙ୍କୁଚିତ ହେବା ଉଚିତ । ଭାରତ ଯେଉଁ ପରିମାଣରେ ବାହାରୁ ଜିନିଷପତ୍ର ଆମଦାନୀ କରୁଛି, ସେହି ପରିମାଣରେ

ରପ୍ତାନୀ କରିପାରୁ ନାହିଁ । ଏ କ୍ଷେତ୍ରରେ ଆମର ଉପଭୋଗ୍ୟଦ୍ରବ୍ୟ ଆମଦାନୀକୁ ସଙ୍କୁଚିତ କରିବା ପ୍ରଥମ କର୍ତ୍ତବ୍ୟ । ନଚେତ୍ ଗଚ୍ଛିତ ଥିବା ବୈଦେଶିକ ମୁଦ୍ରା ହ୍ରାସ ପାଇବ ଓ ଆମେ ସଙ୍କଟର ସମ୍ମୁଖୀନ ହେବା । ବର୍ତ୍ତମାନ ଭାରତର ଜାତୀୟ ଆୟର ମାତ୍ର ଶତକଡ଼ା ୯ ହେଉଛି ରପ୍ତାନୀ ଜନିତ ମୂଲ୍ୟ । ଭାରତୀୟ ଅର୍ଥନୀତି ବର୍ତ୍ତମାନ ରୋଗଗ୍ରସ୍ତ । ଶିଳ୍ପ ଉତ୍ପାଦନ ଯେଉଁ ପରିମାଣରେ ବୃଦ୍ଧି ଲାଭ କରିବାର କଥା ତାହା ହୋଇପାରୁ ନାହିଁ । ବିଶିଷ୍ଟ ଆର୍ଥନୀତିଜ୍ଞ ଡଃ ମେଘନାଦ ଦେଶାଇ ସତର୍କବାଣୀ ଶୁଣାଇ କହିଛନ୍ତି 'ଭାରତ ତା'ର ଅର୍ଥନୀତିକୁ ଜୋରଦାର ନ କଲେ ସାମଗ୍ରିକ ଉନ୍ନତି ବ୍ୟାହତ ହେବ । ସେଥିପାଇଁ ଶ୍ରମ ଓ ପୁଞ୍ଜିର ସଫଳ ବିନିଯୋଗ, କାର୍ଯ୍ୟଦକ୍ଷତା ଓ ସଞ୍ଚୟ ବୃଦ୍ଧି ଉପରେ ସେ ଗୁରୁତ୍ୱ ପ୍ରଦାନ କରିବା ସଙ୍ଗେ ସଙ୍ଗେ ରୁଗ୍‌ଣ ସରକାରୀ ସଂସ୍ଥାଗୁଡ଼ିକୁ ବନ୍ଦ କରିଦେବା ପାଇଁ ପରାମର୍ଶ ଦେଇଛନ୍ତି । ଟଙ୍କାର ଦର ଯେପରି ଆନ୍ତର୍ଜାତିକ ବଜାରରେ କମିଯାଉଛି ତାହା ଅତ୍ୟନ୍ତ ଉଦ୍‌ବେଗଜନକ । ଉଦାରୀକରଣ ଅର୍ଥନୀତି ପରେ ଟଙ୍କାର ମୂଲ୍ୟ ଉଣାହେବାକୁ ଲାଗିଲା । ୧୯୯୭ ମସିହା ଡିସେମ୍ବର ୨ ତାରିଖରେ ମୁଦ୍ରାମୂଲ୍ୟ ହ୍ରାସ ପାଇ ୧ ଡଲାରର ମୂଲ୍ୟ ୪୦ ଟଙ୍କାରେ ପହଞ୍ଚିଥିଲା । ଭାରତର ମୁଦ୍ରାମୂଲ୍ୟ ହ୍ରାସ ଘଟିବା ଦ୍ୱାରା ଦରଦାମ ଅସମ୍ଭବ ଭାବରେ ବୃଦ୍ଧି ପାଉଛି ଓ ସାଧାରଣ ଲୋକଙ୍କ ଦ୍ୱାରା ନିତ୍ୟବ୍ୟବହାର୍ଯ୍ୟ ଜିନିଷ କ୍ରୟ କରିବା ଅସମ୍ଭବ ହୋଇପଡୁଛି । ମୁଦ୍ରାସ୍ଫୀତିକୁ ରୋକାଯାଇ ନ ପାରିଲେ, ଦରଦାମ୍ ବୃଦ୍ଧିକୁ କଦାପି ନିୟନ୍ତ୍ରଣ କରାଯାଇପାରିବ ନାହିଁ ।

ମୁଦ୍ରାସ୍ଫୀତି ଦରଦାମ୍ ବୃଦ୍ଧିର ଏକମାତ୍ର କାରଣ ନୁହେଁ । ଏହା ବ୍ୟତୀତ ଅନ୍ୟାନ୍ୟ ବହୁ ଆନୁଷଙ୍ଗିକ କାରଣ ମଧ୍ୟ ବିଦ୍ୟମାନ । ସମାଜରେ କଳାଟଙ୍କାର ବୃଦ୍ଧି ଘଟିଲେ ଦରଦାମ୍‌ର ବୃଦ୍ଧି ଘଟିଥାଏ । ବଡ଼ ବଡ଼ ବ୍ୟବସାୟୀ ଓ ଶିଳ୍ପପତି ଯୋଗାଣ କ୍ଷେତ୍ରରେ ଅନିୟମିତତା ସୃଷ୍ଟି କରି ବହୁପରିମାଣରେ ଲାଭବାନ ହୋଇଥାନ୍ତି । ସମୟକ୍ରମେ ଏହି ଟଙ୍କାରେ ସେମାନେ ଜିନିଷ କ୍ରୟ କରି କୃତ୍ରିମ ଅଭାବ ସୃଷ୍ଟି କରି ଦରଦାମ୍ ବୃଦ୍ଧି କରିଥାନ୍ତି ଓ ତହିଁରୁ ପ୍ରଚୁର ପରିମାଣର କଳା ଟଙ୍କା ଲାଭ କରିଥାନ୍ତି । କଳାଟଙ୍କା ଯୋଗୁଁ ଦରଦାମ୍‌ରେ ସ୍ଥିରତା ରକ୍ଷା କରିବା ସମ୍ଭବ ହୋଇ ନ ଥାଏ । ମୁଦ୍ରାସ୍ଫୀତ ନିମିତ୍ତ ଏହି କଳାଟଙ୍କା ମଧ୍ୟ ବହୁପରିମାଣରେ ଦାୟୀ । ଆଜି କଳାଟଙ୍କା ସମାଜର ସବୁ ସ୍ତରକୁ ପରିବ୍ୟାପ୍ତ ହୋଇଯାଇଛି । ରାଜନୀତିକ ବ୍ୟକ୍ତିବିଶେଷ, ଶିଳ୍ପପତି, ବ୍ୟବସାୟୀ, ଅଫିସର – ସମସ୍ତେ ଏହାର ଶିକାର । ପ୍ରଶାସନ ସ୍ଥାଣୁତା ଓ ଶାସନ ପ୍ରକ୍ରିୟାରେ ତ୍ରୁଟି ଯୋଗୁଁ ଏହି କଳାଟଙ୍କା ସମାଜରେ ତା'ର ପ୍ରାଧାନ୍ୟ ବିସ୍ତାର କରିଥାଏ । ଫଳରେ ଦରଦାମ୍ ବୃଦ୍ଧି ଘଟିଥାଏ । ସରକାରଙ୍କର ବ୍ୟବସାୟୀ ଗୋଷ୍ଠୀଙ୍କ ଉପରେ ନିୟନ୍ତ୍ରଣ ରହୁନଥିବାରୁ ଦରବୃଦ୍ଧି ଘଟିଥାଏ । ନିର୍ବାଚନ ପୂର୍ବରୁ ଏହି ରାଜନୀତିଜ୍ଞଗଣ ସେମାନଙ୍କ ଠାରୁ ଚାନ୍ଦା ଆକାରରେ ପର୍ଯ୍ୟାପ୍ତ ପରିମାଣର ଅର୍ଥ ଆଦାୟ କରିଥାନ୍ତି । ନିର୍ବାଚନ ପରେ ସେହି ଦଳ ସରକାର ଗଠନ କରିବା ପରେ ତାଙ୍କୁ ଚାନ୍ଦା ଦାନ କରିଥିବା ବ୍ୟବସାୟୀଙ୍କ ପ୍ରତି କୋହଳ ମନୋଭାବ ପୋଷଣ କରିଥାନ୍ତି । ଏହାର ସୁଯୋଗ ନେଇ ଅସାଧୁ ବ୍ୟବସାୟୀ ଗୋଷ୍ଠୀ ମନଇଚ୍ଛା ଦରବୃଦ୍ଧି କରିଥାନ୍ତି । ଜନସଂଖ୍ୟାର ଦ୍ରୁତ ବୃଦ୍ଧି ଦରଦାମ୍ ବୃଦ୍ଧିର ଅନ୍ୟତମ କାରଣ ।

ବର୍ତ୍ତମାନ ଭାରତର ଲୋକସଂଖ୍ୟା ୧୦୮ କୋଟିରେ ପହଞ୍ଚିଲାଣି । ଜନସଂଖ୍ୟା ବୃଦ୍ଧି ଅନୁଯାୟୀ ଭାରତରେ ଖାଦ୍ୟଶସ୍ୟର ପରିମାଣ ସେହି ଅନୁସାରେ ବୃଦ୍ଧି ପାଉ ନାହିଁ । ଚାଷୋପଯୋଗୀ ଜମିର ପରିମାଣ ମଧ୍ୟ ବଢୁ ନାହିଁ । ଜମିର ଉତ୍ପାଦିକା ଶକ୍ତି ଧୀରେ ଧୀରେ ହ୍ରାସ ପାଉଛି । ଅଧିକ ପରିମାଣର ଜନସଂଖ୍ୟାର ଅଭାବ ପୂରଣ ଉଦ୍ଦେଶ୍ୟରେ ଜଙ୍ଗଲ କ୍ଷୟ ହେଉଛି, ଶିଳ୍ପ ବୃଦ୍ଧି ଘଟୁଛି । ଫଳରେ ପରିବେଶ ଦୂଷିତ ହେବା ସଙ୍ଗେ ସଙ୍ଗେ ଅନିୟମିତ ଜଳବାୟୁ ଯୋଗୁଁ କୃଷି ଉତ୍ପାଦନ ହ୍ରାସ ପାଉଛି । କୃଷିଜାତ ପଦାର୍ଥର ଉତ୍ପାଦନରେ ହ୍ରାସ ଘଟିଲେ, ଦରଦାମ୍ ବୃଦ୍ଧି ଘଟିବା ସ୍ୱାଭାବିକ । ଶିଳ୍ପ ଜାତ ପଦାର୍ଥର ମୂଲ୍ୟବୃଦ୍ଧି ଓ କୃଷିଜାତ ପଦାର୍ଥର ମୂଲ୍ୟବୃଦ୍ଧି ଯୋଗୁଁ ଦରଦାମ୍‌ରେ ବୃଦ୍ଧି ଘଟିଥାଏ । କୃଷି କ୍ଷେତ୍ରରେ ବିପ୍ଳବ ନ ଘଟିଲେ, ଦରଦାମକୁ ନିୟନ୍ତ୍ରଣ କରିବା ସମ୍ଭବ ନୁହେଁ । ବୈଜ୍ଞାନିକ ପଦ୍ଧତିରେ କୃଷିର ଉନ୍ନତି ହେବା ଆବଶ୍ୟକ । ମାତ୍ର ରାସାୟନିକ ସାର, ଔଷଧ ଆଦିର ଦାମ୍ ଯେଉଁ ପରିମାଣରେ ବୃଦ୍ଧି ହେଉଛି, କୃଷିଜାତ ପଦାର୍ଥର ମୂଲ୍ୟ ସେହି ଦୃଷ୍ଟିରୁ ବୃଦ୍ଧି ହେବା ଆବଶ୍ୟକ । ସରକାରୀ ସ୍ତରରେ ସାର, କୀଟନାଶକ ଔଷଧମାନଙ୍କର ଦାମ୍‌କୁ ନିୟନ୍ତ୍ରଣ କରାଯାଇପାରିଲେ, କେତେକ କ୍ଷେତ୍ରରେ ଦରଦାମ୍ ବୃଦ୍ଧିକୁ ରୋକାଯାଇପାରନ୍ତା । ଖାଦ୍ୟର ସୁଷମ ବଣ୍ଟନର ଅଭାବରୁ ମଧ୍ୟ ଦରବୃଦ୍ଧି ଘଟିଥାଏ । କେତେକ କଳାବଜାରୀ ପଦାର୍ଥର ଉତ୍ପାଦନ ସମୟରେ ପ୍ରଚୁର ପରିମାଣରେ ଖାଦ୍ୟ କ୍ରୟ କରି ଲୁକ୍‌କାୟିତ ଅବସ୍ଥାରେ ରଖିଥାନ୍ତି । ବଜାରରେ କୃତ୍ରିମ ଅଭାବ ସୃଷ୍ଟି କରି ସେହି ଖାଦ୍ୟପଦାର୍ଥକୁ ବହୁ ଅଧିକ ଦରରେ ବିକ୍ରୟ କରିଥାନ୍ତି ଓ ମନଇଚ୍ଛା ଲାଭ କରିଥାନ୍ତି । ସରକାରୀ କଳର ଅପାରଗତା ଏହି ଦୁର୍ନୀତିକୁ ରୋକିବାରେ ଅସଫଳ ହୋଇଥାଏ ଓ ସେହି କାରଣରୁ ଦରବୃଦ୍ଧି ଘଟିଥାଏ । ରେଳ ମାହାସୁଲ ବୃଦ୍ଧି ବା ପରିବହନ ପାଇଁ ଆବଶ୍ୟକ ପେଟ୍ରୋଲ, ଡିଜେଲର ଦରବୃଦ୍ଧି ଯୋଗୁଁ ନିତ୍ୟବ୍ୟବହାର୍ଯ୍ୟ ପଦାର୍ଥମାନଙ୍କର ଦରବୃଦ୍ଧି ଘଟିଥାଏ । ବିଭିନ୍ନ ଯୋଜନା ପ୍ରଣୟନ ନିମିତ୍ତ ସରକାରଙ୍କର ଅର୍ଥର ଆବଶ୍ୟକତା ହୋଇଥାଏ । ବିଭିନ୍ନ କର ବା ଟିକସ୍ ଦ୍ୱାରା ସରକାର ଏହାର ଭରଣା କରିବାକୁ ଉଦ୍ୟମ କରିଥାନ୍ତି । ଫଳରେ ଦରଦାମ୍ ବୃଦ୍ଧି ହୋଇଥାଏ । ଅନେକ ସମୟରେ ଚତୁର ଓ କଳାବଜାରୀ ବ୍ୟବସାୟୀଗଣ ଟିକସ ଫାଙ୍କି ସରକାରଙ୍କ ଯୋଜନାକୁ ପଣ୍ଡ କରିଥାନ୍ତି । ସେମାନଙ୍କ ପ୍ରକୃତ ଆୟର ଯେତିକି ପରିମାଣ ଟିକସ ସରକାରଙ୍କୁ ଦେବା କଥା, ତାହା ଦେଇନଥାନ୍ତି । ସେଥିପାଇଁ ଟିକସରୁ ସରକାର ଯେତିକି ପରିମାଣର ଆୟ ପାଇବା କଥା ପାଇ ପାରିନଥାନ୍ତି । ଏହି ଟିକସ ଫାଙ୍କି ଅର୍ଥଦ୍ୱାରା କଳାବଜାରୀ ବ୍ୟବସାୟୀ ବଜାରରୁ ପ୍ରଚୁର ଅର୍ଥ ଲାଭ କରିଥାନ୍ତି ଓ ସେଥିପାଇଁ ମଧ୍ୟ ଦରବୃଦ୍ଧି ଘଟିଥାଏ । ସାମାଜିକ ଜୀବନରେ ନୈତିକ ସ୍ଖଳନ ମଧ୍ୟ ଦରଦାମ୍ ବୃଦ୍ଧି ପାଇଁ କେତେକାଂଶରେ ଦାୟୀ । ଅଳ୍ପ କେତେକ ବ୍ୟକ୍ତି ଏହି ମୁନାଫାଖୋର ବ୍ୟକ୍ତିବିଶେଷଙ୍କ ଠାରୁ କିଛିପରିମାଣରେ ଉପକୃତ ହେଉଥିବାରୁ ସେମାନେ ନିଜର ସାମାଜିକ ଓ ନୈତିକ ଦାୟିତ୍ୱ ଭୁଲି ଯାଇଥାନ୍ତି । ସେମାନେ ଯେଉଁ ପଦକ୍ଷେପ ଗ୍ରହଣ କରିବା ଉଚିତ, ତାହା ନ କରି ଏହି ସ୍ୱାର୍ଥାନ୍ୱେଷୀ ଗୋଷ୍ଠୀଙ୍କୁ ସୁହାଇବା ପରି କାର୍ଯ୍ୟପନ୍ଥା ଗ୍ରହଣ କରିଥାନ୍ତି । ଏହିମାନଙ୍କର ସହାୟତା ଲାଭ

କରି ବ୍ୟବସାୟୀ ଗୋଷ୍ଠୀ ନିର୍ଦ୍ୱନ୍ଦ୍ୱରେ ଦରବୃଦ୍ଧି କରିଥାନ୍ତି ଓ ସାମାଜିକ ଜୀବନକୁ ସ୍ଥାଣୁ କରି ଦେଇଥାନ୍ତି ।

ଦରବୃଦ୍ଧି ନିଶ୍ଚିତ ଭାବରେ ଏକ ଜାତୀୟ ସମସ୍ୟା । ଏହି ସମସ୍ୟାର ଆଶାନୁରୂପ ସମାଧାନ ହୋଇ ନ ପାରିଲେ, ଜାତି ଓ ଦେଶର ପ୍ରଗତି ବାଧାପ୍ରାପ୍ତ ହେବ । ଏହି ସମସ୍ୟା ଦିନେ ରକ୍ତାକ୍ତ ବିପ୍ଳବର ରୂପରେଖ ଗ୍ରହଣ କରିପାରେ । ସମାଜର ମୁଷ୍ଟିମେୟ ବ୍ୟକ୍ତି ଐଶ୍ୱର୍ଯ୍ୟ ଓ ପ୍ରାଚୁର୍ଯ୍ୟ ମଧ୍ୟରେ କାଳାତିପାତ କରୁଥିବା ସମୟରେ, ସଂଖ୍ୟାଗରିଷ୍ଠ ଲୋକେ ଖାଦ୍ୟବିନା ଆର୍ତ୍ତଚିତ୍କାର କରିବା ଗଣତନ୍ତ୍ର ନିମିତ୍ତ ନିଶ୍ଚିତ ଭାବରେ ବିପଦର ସତର୍କ ଘଣ୍ଟି । ଦରଦାମ ବୃଦ୍ଧି ସମ୍ପର୍କରେ ଗଣମାଧ୍ୟମ ଓ ଚିନ୍ତାଶୀଳ ବ୍ୟକ୍ତି ପ୍ରତିକ୍ରିୟା ପ୍ରକାଶ କରୁଥିଲେ ହେଁ, ଏହାର ସମାଧାନ ପାଇଁ ସବୁଆଡ଼େ ଆନ୍ତରିକ ଉଦ୍ୟମ ଅଭାବ ପରିଲକ୍ଷିତ ହେଉଛି । ସମାଜର ଧନୀକ ସଂପ୍ରଦାୟ ଏଥିରୁ ବେଶ୍ ଫାଇଦା ଉଠାଇବାରେ ବ୍ୟସ୍ତ । ଶାସନକାଳର ଆନ୍ତରିକହୀନତା ପରିସ୍ଥିତିକୁ ଅଧିକ ଉଦ୍‌ବେଗଜନକ କରିଦେଉଛି । ରାଜନୀତିକ ବ୍ୟକ୍ତି କେବଳ ଭାଷଣରେ ସେମାନଙ୍କର ପ୍ରତିକ୍ରିୟା ପ୍ରକାଶ କରୁଛନ୍ତି । କ୍ଷୁଧାତୁର ବ୍ୟକ୍ତି ଯେକୌଣସି ପାପକାର୍ଯ୍ୟ କରିବାକୁ କୁଣ୍ଠା ପ୍ରକାଶ କରିନଥାଏ । ଖାଦ୍ୟକୁ ଭିତ୍ତି କରି ବିପ୍ଳବର ସୂତ୍ରପାତ ହେଲେ ସାମାଜିକ ଜୀବନ ପଙ୍ଗୁ ହୋଇପଡ଼ିବ । ଏଥିରୁ କେହି ମୁକ୍ତି ପାଇପାରିବେ ନାହିଁ । ରକ୍ତାକ୍ତ ସଂଘର୍ଷ ରାଷ୍ଟ୍ରର ସାର୍ବଭୌମତ୍ୱକୁ ବିପନ୍ନ କରିଦେବ । ଅରାଜକତା ବ୍ୟାପିଯିବା ଦ୍ୱାରା ଲୁଣ୍ଠନ, ହତ୍ୟା, ରକ୍ତପାତ, ସଂଘର୍ଷ, ଚୋରି, ଡକାୟତି ସୀମା ଲଙ୍ଘନ କରିବ । ପଡ଼ୋଶୀ ରାଷ୍ଟ୍ର ଏଥିରୁ ଫାଇଦା ଉଠାଇବେ । ବର୍ତ୍ତମାନ ଠାରୁ ସତର୍କମୂଳକ ପଦକ୍ଷେପ ଗ୍ରହଣ କରାନଗଲେ ନେଡ଼ିଗୁଡ଼ କହୁଣୀକୁ ବହିଯିବ । ଦରଦାମ ବୃଦ୍ଧି ରାଜନୀତିକ ଜୀବନକୁ ମଧ୍ୟ କଳୁଷିତ କରିଦେଇଥାଏ । ଦେଶସେବା ନାମରେ ଜନଶୋଷଣ ରାଜନୀତିକ ଅସ୍ଥିରତା ସୃଷ୍ଟି କରେ । ଜାତୀୟ ଜୀବନକୁ ସୁସ୍ଥ, ନିରାମୟ ରଖିବାକୁ ହେଲେ ଦରଦାମ୍ ବୃଦ୍ଧିର ନିୟନ୍ତ୍ରଣ ସର୍ବାଦୌ ଆବଶ୍ୟକ ।

ଦରଦାମ୍ ନିୟନ୍ତ୍ରଣ ନିମିତ୍ତ ସବୁ ସ୍ତରରେ ଉଦ୍ୟମ ହେବା ବାଞ୍ଛନୀୟ । କେବଳ ସରକାରଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ କରି ଚୁପ୍‌ଚାପ୍ ବସିରହିଲେ ଏହି ସମସ୍ୟାର ସମାଧାନ ହୋଇପାରିବ ନାହିଁ । ଏ କ୍ଷେତ୍ରରେ ଜନସାଧାରଣଙ୍କର ମଧ୍ୟ ଏକ ପ୍ରମୁଖ ଭୂମିକା ରହିଛି । ଜାତୀୟ ଚରିତ୍ର ସଙ୍ଗଠନ ହୋଇପାରିଲେ ଏବଂ ଏହା ଏକ ଜାତୀୟ ସମସ୍ୟା ବୋଲି ସମସ୍ତେ ଅନୁଭବ କରିପାରିଲେ, ଦରଦାମ ବୃଦ୍ଧିର ନିରାକରଣ ହୋଇପାରିବ । ଦୃଢ଼ ଶାସନ ବ୍ୟବସ୍ଥା ଓ ଜନସମୁଦାୟର ଆନ୍ତରିକ ସହଯୋଗ ଏହାକୁ ବହୁପରିମାଣରେ ନିୟନ୍ତ୍ରଣ କରିପାରିବ । ସ୍ୱାଧୀନ ନାଗରିକ ଭାବରେ ପ୍ରତ୍ୟେକ ବ୍ୟକ୍ତି ଏହାର ଦୃଢ଼ ବିରୋଧ କରିବା ଉଚିତ । ଯେଉଁ କେତେକ ସ୍ୱାର୍ଥପର ବ୍ୟବସାୟୀ, କଳାବଜାରୀ ଅସାଧୁ ଉପାୟରେ ନିଜର ବ୍ୟକ୍ତିଗତ ଫାଇଦା ଉଠାଉଛନ୍ତି ସେମାନଙ୍କ ପ୍ରତି କଠୋର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ଆବଶ୍ୟକ । ସରକାରୀ ସ୍ତରରେ ଖାଦ୍ୟପଦାର୍ଥର ସୁଷମ ବଣ୍ଟନ ନିମିତ୍ତ ପଦକ୍ଷେପ ଗ୍ରହଣ କରାଗଲେ, କଳାବଜାରୀ ଫାଇଦା ଉଠାଇପାରନ୍ତେ ନାହିଁ । ଘରୋଇ ଶିଳ୍ପ ଉପରେ ନିୟନ୍ତ୍ରଣ ଜାରି କରାଗଲେ, କିମ୍ବା

ସେଗୁଡ଼ିକୁ ଜାତୀୟକରଣ କରାଯାଇପାରିଲେ, ସେମାନେ ମନଇଚ୍ଛା ଦରବୃଦ୍ଧି କରିପାରନ୍ତେ ନାହିଁ । ଖୁଚୁରା ବ୍ୟବସାୟ କେନ୍ଦ୍ର ମାଧ୍ୟମରେ ଜନସାଧାରଣଙ୍କୁ ଅତ୍ୟାବଶ୍ୟକ ପଦାର୍ଥମାନ ଯୋଗାଇ ଦେବା ଆବଶ୍ୟକ । ରାଜନୈତିକ ଅସ୍ଥିରତା ଦରବୃଦ୍ଧି ପାଇଁ ବହୁପରିମାଣରେ ଦାୟୀ । ଏହି ଅସ୍ଥିରତାର ସୁଯୋଗ ନେଇ କଳାବଜାରୀ ଓ ବ୍ୟବସାୟୀ ଗୋଷ୍ଠୀ ନିଜର ଫାଇଦା ହାସଲ କରିଥାନ୍ତି । ରାଜନୀତିରେ ଦଳୀୟ ସ୍ୱାର୍ଥ ସାମାଜିକ ସ୍ୱାର୍ଥ ଠାରୁ ଅଧିକ ଗୁରୁତ୍ୱ ହୋଇଥିବାରୁ ସାମାଜିକ ବିକାଶ ନିମିତ୍ତ କୌଣସି ଦଳ ଆନ୍ତରିକତା ପ୍ରକାଶ କରି ନ ଥାନ୍ତି । ବର୍ତ୍ତମାନ ରାଜନୀତିକ ଦଳମାନଙ୍କ ମଧ୍ୟରେ ସୁସମ୍ପର୍କ ନ ଥିବାରୁ ଓ କୌଣସି ଦଳ ପାଞ୍ଚ ବର୍ଷ ପର୍ଯ୍ୟନ୍ତ କ୍ଷମତାରେ ରହିବାକୁ ଅସମର୍ଥ ହେଉଥିବାରୁ, ବ୍ୟବସାୟୀ ତଥା କଳାବଜାରୀ ଏବଂ ଟିକସ ଫାଙ୍କୁଥିବା ଲୋକମାନଙ୍କ ବିରୋଧରେ କଠୋର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିପାରୁ ନାହାନ୍ତି । ପୁନରାୟ ନିର୍ବାଚନ ସମୟରେ ଏହି ଦଳ ବ୍ୟବସାୟୀ ଓ ଶିଳ୍ପପତିମାନଙ୍କ ଠାରୁ ବିପୁଳ ପରିମାଣରେ ଚାନ୍ଦା ଆଦାୟ କରୁଥିବାରୁ ସେମାନଙ୍କର ଅସାଧୁ କାର୍ଯ୍ୟକଳାପକୁ ସମର୍ଥନ କରିଥାନ୍ତି । ରାଜନୈତିକ ବ୍ୟକ୍ତିବିଶେଷ ସଚ୍ଚୋଟ ଏବଂ ସାଧୁ ହୋଇ ନ ପାରିଲେ ଦରଦାମ୍ ବିରୋଧରେ ସ୍ୱର ଉତ୍ତୋଳନ କରିବାକୁ ସମର୍ଥ ହୋଇପାରନ୍ତି ନାହିଁ । ସାମ୍ପ୍ରତିକ ପରିପ୍ରେକ୍ଷୀରେ ରାଜନୀତି କ୍ଷେତ୍ରରେ ସଚ୍ଚୋଟ ବ୍ୟକ୍ତିମାନଙ୍କୁ ଅଗ୍ରାଧିକାର ପ୍ରଦାନ କରାଯିବା ସଙ୍ଗେ ସଙ୍ଗେ ରାଜନୀତିରୁ ଅପରାଧୀକରଣକୁ ଦୂରୀଭୂତ କରାଯାଇ ପାରିଲେ ଦରଦାମ୍ ବୃଦ୍ଧିକୁ ଅକ୍ଲେଶରେ ନିୟନ୍ତ୍ରଣ କରାଯାଇପାରିବ । ଜନସଂଖ୍ୟା ବୃଦ୍ଧି ଦରଦାମ୍ ବୃଦ୍ଧିର ଅନ୍ୟତମ ପ୍ରମୁଖ କାରଣ ହୋଇଥିବାରୁ, ଜନସଂଖ୍ୟାର ନିୟନ୍ତ୍ରଣ ନିମିତ୍ତ ସବୁ ସ୍ତରରେ ଉଦ୍ୟମ ଜାରି ରହିବା ଆବଶ୍ୟକ । ସବୁଜ ବିପ୍ଳବ ସାକାର କରିବା ନିମିତ୍ତ ବିଭିନ୍ନ ସ୍ତରରେ ଉଦ୍ୟମ ହେବା ଉଚିତ । କୃଷିର ଉନ୍ନତି ଓ ପ୍ରଚୁର ଖାଦ୍ୟଶସ୍ୟ ଉତ୍ପାଦନ ଦ୍ୱାରା ଦରବୃଦ୍ଧି ନିୟନ୍ତ୍ରିତ ହୋଇପାରିବ । ବହୁ ଅମଳକ୍ଷମ ବିହନ, ସାର ଏବଂ କୀଟନାଶକ ଔଷଧ କୃଷକମାନଙ୍କୁ ଶସ୍ତାରେ ଯୋଗାଇ ଦେଇପାରିଲେ କୃଷି ଉତ୍ପାଦନ ବୃଦ୍ଧି ପାଇବ ଏବଂ ଦରଦାମ୍ ନିୟନ୍ତ୍ରଣ ହୋଇପାରିବ । ଶିଳ୍ପ କ୍ଷେତ୍ରରେ ଘନଘନ ହରତାଳ ଯୋଗୁଁ ଉତ୍ପାଦନ ହ୍ରାସ ହୋଇଥାଏ । ଏ କ୍ଷେତ୍ରରେ ମଧ୍ୟ ବିଶେଷ ଦୃଷ୍ଟି ପ୍ରଦାନ କରାଯିବା ଉଚିତ । କଳାଟଙ୍କା ରୋକିବା ଓ ଯଥାଯଥ ଟିକସ ବ୍ୟବସ୍ଥାକୁ କଡ଼ାକଡ଼ି କରିବା ଉଚିତ । ମୁଦ୍ରାସ୍ଫୀତିକୁ ରୋକିବା ନିମିତ୍ତ ଉପଯୁକ୍ତ ପଦକ୍ଷେପ ଗ୍ରହଣ କରାଗଲେ, ଦରଦାମ୍ ମଧ୍ୟ ନିୟନ୍ତ୍ରିତ ହୋଇପାରିବ । ଉପରୋକ୍ତ ପଦକ୍ଷେପଗୁଡ଼ିକ ଦରଦାମ୍ ବୃଦ୍ଧିକୁ ନିଶ୍ଚିତ ନିୟନ୍ତ୍ରଣ କରିପାରିବ ।

ଆଜି ଦରବୃଦ୍ଧି ଏକ ବ୍ୟକ୍ତିଗତ ସମସ୍ୟା ନୁହେଁ, ଜାତୀୟ ସମସ୍ୟା । ଏହା ଲାଗି ରହିଲେ ଦେଶର ସାମାଜିକ ଓ ସାଂସ୍କୃତିକ ଅବକ୍ଷୟ ସୃଷ୍ଟି ହେବ । ରାଜନୀତିକ ଏବଂ ସାମାଜିକ ସ୍ତରରେ ଉଦ୍ୟମ ଜାରି ରହିଲେ ଏହାକୁ କେତେକାଂଶରେ ଦୂରୀଭୂତ କରାଯାଇ ପାରିବ । ଜନଅସନ୍ତୋଷ ଏବଂ ଆଭ୍ୟନ୍ତରୀଣ ଶୃଙ୍ଖଳା ରକ୍ଷା ପାଇଁ ଦରବୃଦ୍ଧି ନିୟନ୍ତ୍ରଣ ଏକାନ୍ତ ଜରୁରୀ । ବର୍ତ୍ତମାନ ସବୁ କ୍ଷେତ୍ରରେ ଏହାର ପ୍ରଭାବ ଅନୁଭୂତ ହେଲାଣି । ଜନଅସନ୍ତୋଷକୁ ଆଉ ଅଧିକ ଦିନ ଚାପି ରଖି

ହେବ ନାହିଁ । ସମାଜର ଚିନ୍ତାଶୀଳ ବ୍ୟକ୍ତି, ବ୍ୟବସାୟୀ ପ୍ରଶାସନ, ରାଜନୈତିକ ବ୍ୟକ୍ତିବିଶେଷ ଓ ଜନସାଧାରଣ ଏବେଠାରୁ ସତର୍କ ରହି ଦରଦାମ୍ ବୃଦ୍ଧି ନିୟନ୍ତ୍ରଣ କରିବାକୁ ସମୟୋଚିତ ପଦକ୍ଷେପ ଗ୍ରହଣ କରିପାରିଲେ, ଏହା ଏକ ସମସ୍ୟା ହୋଇ ରହିବ ନାହିଁ ।

●

# ଭାରତର ଭାଷା ସମସ୍ୟା

**(ଉପକ୍ରମ, ଭାରତର ଅତୀତ ଭାଷା, ଭାଷା ସମସ୍ୟାର ସୃଷ୍ଟି, ଭାରତର ଅବସ୍ଥିତି ଓ ବିଭିନ୍ନ ଭାଷା ସମସ୍ୟାର କାରଣ, ରାଜନୀତିକ ଏବଂ ସାମାଜିକ ଦୃଷ୍ଟିଭଙ୍ଗୀ, ଇଂରାଜୀ ଏବଂ ହିନ୍ଦୀ ଭାଷାର ଦ୍ୱନ୍ଦ୍ୱ, ଜାତୀୟ ଭାଷା ରୂପେ ହିନ୍ଦୀ ଭାଷାକୁ ସ୍ୱୀକୃତି, ଆଞ୍ଚଳିକ ଭାଷା ସମସ୍ୟା, ତ୍ରିଭାଷା ନିୟମ, ଉପସଂହାର)**

ଭାରତ ଏକ ବିଶାଳ ଦେଶ । ଜନସଂଖ୍ୟା ଦୃଷ୍ଟିରୁ ଏହାର ସ୍ଥାନ ପୃଥିବୀରେ ଦ୍ୱିତୀୟ । ବହୁ ଭାଷା, ସଂସ୍କୃତି ଏବଂ ଆଚାରକୁ ନେଇ ଏହାର କଳେବର ପରିପୁଷ୍ଟ । ବହୁ ବୈଷମ୍ୟ ମଧ୍ୟରେ ସାମ୍ୟ, ଅନୈକ୍ୟ ମଧ୍ୟରେ ଐକ୍ୟ – ଏହାର ବିଶେଷତ୍ୱ । କେଉଁ ପ୍ରାଚୀନ କାଳରୁ ଏକ ଐତିହ୍ୟସମ୍ପନ୍ନ ଦେଶ ଭାବରେ ଏହା ପୃଥିବୀରେ ପରିଚିତ । ଭାରତୀୟ ସଭ୍ୟତା ଓ ସଂସ୍କୃତି ବିଶ୍ୱକୁ ବିଭିନ୍ନ କ୍ଷେତ୍ରରେ ଦିଗ୍‌ଦର୍ଶନ ପ୍ରଦାନ କରିଛି । ଏସବୁ ସତ୍ତ୍ୱେ ଭାରତର ଭାଷା ସମସ୍ୟା ଏପର୍ଯ୍ୟନ୍ତ ସମାଧାନ ହୋଇପାରିଲା ନାହିଁ । ଭାରତୀୟ ସମ୍ବିଧାନ ୧୫ଟି ଭାଷାକୁ ସ୍ୱୀକୃତି ପ୍ରଦାନ କରିଥିଲେ ହେଁ, ଏହା ବ୍ୟତୀତ ବହୁ ଭାଷା ଓ ଉପଭାଷା ଭାରତରେ ପ୍ରଚଳିତ । ପୁଣି କେତେକ ଭାଷାର ମୂଳଉତ୍ସ ସ୍ୱତନ୍ତ୍ର ହୋଇଥିବାରୁ ପରସ୍ପର ମଧ୍ୟରେ ଯୋଗସୂତ୍ର ସ୍ଥାପନ କରିବାରେ ଅସୁବିଧା ସୃଷ୍ଟି ହେଉଛି । ଭାଷାକୁ କେନ୍ଦ୍ରକରି ଅଞ୍ଚଳ ଅଞ୍ଚଳ ମଧ୍ୟରେ ଦ୍ୱନ୍ଦ୍ୱ ହେଉଛି । ସ୍ୱାଧୀନତାର ଷାଠିଏବର୍ଷ ପରେ ମଧ୍ୟ ଏହାର ଏକ ସନ୍ତୋଷଜନକ ସମାଧାନ ହୋଇପାରିଲା ନାହିଁ । ଭାଷାକୁ କେନ୍ଦ୍ରକରି ଉତ୍ତର ଓ ଦକ୍ଷିଣଭାରତରେ ଦ୍ୱନ୍ଦ୍ୱର ସୂତ୍ରପାତ ହେଉଛି । ଆଞ୍ଚଳିକ ବୈଷମ୍ୟ, ଭାଷାର ଉତ୍ସଗତ ବିବିଧତା, ସର୍ବୋପରି ଆଞ୍ଚଳିକ ଭାଷାର ଗୁରୁତ୍ୱ ଭାଷାକୁ ନେଇ ଦ୍ୱନ୍ଦ୍ୱାତ୍ମକ ପରିସ୍ଥିତି ସୃଷ୍ଟି କରିଛି । ହିନ୍ଦୀକୁ ଜାତୀୟ ଭାଷାର ମର୍ଯ୍ୟାଦା ପ୍ରଦାନ କରାଯାଇଥିଲେ ହେଁ ଏହା ସର୍ବସମ୍ମତିଭାବେ ସ୍ୱୀକୃତି ଲାଭ କରିପାରି ନାହିଁ । ଏହି ଦୃଷ୍ଟିରୁ ଏବେ ମଧ୍ୟ ଭାରତର ଭାଷା ସମସ୍ୟା ଏକ ଉତ୍କଟଜନକ ପରିସ୍ଥିତି ମଧ୍ୟ ଦେଇ ଗତିଶୀଳ । ଭାରତର ବହୁ ବିଦ୍ୱାନ ଓ ଚିନ୍ତାଶୀଳ ବ୍ୟକ୍ତି ଏଥି ନେଇ ଉଦ୍‌ବେଗ ପ୍ରକାଶ କରୁଛନ୍ତି । ମାତ୍ର ସମସ୍ୟାର ସହଜ ସମାଧାନ ହୋଇପାରି ନାହିଁ । ଏହି କାରଣରୁ ଭାରତରେ ଭାଷା ସମସ୍ୟା ଅନ୍ୟତମ ମୁଖ୍ୟ ସମସ୍ୟା ରୂପେ ମୁଣ୍ଡ ଟେକିଛି ।

ଯଦି ବେଦକୁ ଆର୍ଯ୍ୟମାନଙ୍କର ପ୍ରଥମ ଗ୍ରନ୍ଥ ଭାବରେ ଗ୍ରହଣ କରାଯାଏ, ତେବେ ଅତୀତ ଭାରତର ପ୍ରାଚୀନ ଭାଷା ଭାବେ ସଂସ୍କୃତକୁ ଗ୍ରହଣ କରାଯାଇପାରେ । ଅତୀତରେ ସଂସ୍କୃତ ଥିଲା ଭାରତର ରାଜଭାଷା । ପଣ୍ଡିତମାନେ ସଂସ୍କୃତକୁ ଦେବଭାଷାର ମର୍ଯ୍ୟାଦା

ପ୍ରଦାନ କରିଥିଲେ । ସେଥିପାଇଁ ଭାରତୀୟ ଭାଷାମାନଙ୍କ ମଧ୍ୟରେ ସଂସ୍କୃତକୁ ଜନନୀ ଭାଷାର ସମ୍ମାନ ଦିଆଯାଇଛି । ଭାରତୀୟ ଅଧିକାଂଶ ଭାଷାର ମୂଳଉତ୍ସ ସଂସ୍କୃତ । ଭାରତର ସାଂସ୍କୃତିକ ଆଦାନପ୍ରଦାନ ସଂସ୍କୃତ ଭାଷା ମାଧ୍ୟମରେ ସମାହିତ ହେଉଥିଲା । ସମସ୍ତ ଭାରତୀୟଙ୍କୁ ଏକତା ସୂତ୍ରରେ ଗ୍ରଥିତ କରିଥିଲା ସଂସ୍କୃତ ଭାଷା । ଦେଶ ମଧ୍ୟରେ ଏକତା, ଭ୍ରାତୃତ୍ୱ ଓ ସୌହାର୍ଦ୍ଦ୍ୟର ବାତାବରଣ ସୃଷ୍ଟି କରିବାରେ ଏହି ଭାଷାର ଅବଦାନ ଥିଲା ବେଶ୍ ଗୁରୁତ୍ୱପୂର୍ଣ୍ଣ । ଆର୍ଯ୍ୟ ଋଷି ସେମାନଙ୍କର ଭାବ ଓ ସଦିଚ୍ଛା ପ୍ରକାଶ କରୁଥିଲେ ସଂସ୍କୃତ ମାଧ୍ୟମରେ । କାଶ୍ମୀରରୁ କନ୍ୟାକୁମାରୀ ଭାରତର ଅଖଣ୍ଡତା ଓ ଏକତାକୁ ସଂସ୍କୃତ ହିଁ ସୁରକ୍ଷିତ କରିପାରିଥିଲା । ଏକ ଯୋଗସୂତ୍ରକାରୀ ଭାଷା ଭାବରେ ସଂସ୍କୃତ ଭାଷାର ମହତ୍ତ୍ୱ ଅତୀତରେ ସ୍ୱୀକୃତି ଲାଭ କରିଥିଲା । ସ୍ୱାଧୀନ ଭାରତର ଏହାହିଁ ଥିଲା ରାଜଭାଷା ଓ ଯୋଗସୂତ୍ରକାରୀ ଭାଷା । ଯଦିଓ ଏହି ସମୟରେ ଆଞ୍ଚଳିକ ଭାଷା ବା ପ୍ରାକୃତ ଭାଷାର ପ୍ରଚଳନ ଥିଲା, ତେବେ ତାହା ମୁଖ୍ୟତଃ ଲୋକଭାଷାର ମର୍ଯ୍ୟାଦା ଲାଭ କରିଥିଲା । ସଂହତି ଓ ସଂସ୍କୃତିର ବାର୍ତ୍ତା ପ୍ରଚାର କରିବା ଥିଲା ସଂସ୍କୃତ ଭାଷାର ମୁଖ୍ୟ ଉଦ୍ଦେଶ୍ୟ । ମାତ୍ର ଦ୍ୱାଦଶ ଶତାବ୍ଦୀରେ ଭାରତର ସ୍ୱାଧୀନତାର ରବି ଅସ୍ତମିତ ହେବା ସଙ୍ଗେ ସଙ୍ଗେ ସଂସ୍କୃତ ଭାଷା ତା'ର ମର୍ଯ୍ୟାଦା ହରାଇ ଏକ ସାଧାରଣ ଭାଷା ରୂପେ ପରିଗୃହୀତ ହେଲା ।

ଦ୍ୱିତୀୟ ତିରୋରୀ ଯୁଦ୍ଧରେ ଭାରତର ଶେଷ ସ୍ୱାଧୀନ ନରପତି ପୃଥ୍ୱୀରାଜ ଚୌହାନ ମହମ୍ମଦ ଘୋରୀଙ୍କ ଦ୍ୱାରା ନିହତ ହେବା ପରେ ଭାରତ ପରାଧୀନତାର ଶୃଙ୍ଖଳରେ ବନ୍ଦୀ ହେଲା । ମହମ୍ମଦ ଘୋରୀଙ୍କଠାରୁ ଭାରତରୁ ଇଂରେଜ ଶାସନର ଅବସାନ ପର୍ଯ୍ୟନ୍ତ, ଅର୍ଥାତ୍ ୧୧୯୨ ଠାରୁ ୧୯୪୭ ଅଗଷ୍ଟ ୧୫ ତାରିଖ ପର୍ଯ୍ୟନ୍ତ ଭାରତ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ଶାସକଙ୍କ ଦ୍ୱାରା ଶାସିତ ହୋଇ ଆସିଛି ଓ ଏହାର ସୁଯୋଗ ନେଇ ଶାସକଗଣ ନିଜ ନିଜର ଭାଷାକୁ ଭାରତୀୟମାନଙ୍କ ଉପରେ ଲଦି ଦେଇଛନ୍ତି । ମୁସଲମାନ ରାଜତ୍ୱ ସମୟରେ ପାର୍ଶୀକୁ ରାଜଭାଷା ବା ପ୍ରଶାସନିକ ଭାଷାର ସ୍ୱୀକୃତି ମିଳିଲା । ଶାସକର ଦୃଷ୍ଟିଭଙ୍ଗୀ ଅନୁଯାୟୀ ଭାଷାର ମହତ୍ତ୍ୱ ବା ହୀନତ୍ୱ ପ୍ରତିପାଦନ ହୋଇଥାଏ । ପାର୍ଶୀ ସରକାରୀ ଭାଷାର ମର୍ଯ୍ୟାଦା ଲାଭ କରିବା ଦ୍ୱାରା ଭାରତର ବିଭିନ୍ନ ବିଦ୍ୟାଳୟରେ ଏହାର ପଠନ କାର୍ଯ୍ୟ ଆରମ୍ଭ ହେଲା । ପାର୍ଶୀ ପରେ ଉର୍ଦ୍ଦୁକୁ ସରକାରୀ ଭାଷାର ସମ୍ମାନ ଦିଆଗଲା । ବହୁ ସ୍ଥାନରେ ଉର୍ଦ୍ଦୁ ବିଦ୍ୟାଳୟମାନ ଗଠନ କରାଗଲା । ସରକାରୀ କାର୍ଯ୍ୟରେ ନିଯୁକ୍ତ ହିନ୍ଦୁମାନେ ମଧ୍ୟ ଏହି ଭାଷା ଶିକ୍ଷା କରିବାକୁ ବାଧ୍ୟ ହେଲେ । ଭାରତରେ ଇଂରେଜ ଶାସନ ସମୟରେ ଇଂରାଜୀ ଭାଷାକୁ ଜାତୀୟ ଭାଷାର ମର୍ଯ୍ୟାଦା ପ୍ରଦାନ କରାଗଲା । ଲର୍ଡ଼ ମାକ୍‌ଲେ ଓ ହାର୍ଡ଼ିଞ୍ଜଙ୍କ ଶିକ୍ଷାନୀତିରେ ଇଂରାଜୀ ଶିକ୍ଷାକୁ ବାଧ୍ୟତାମୂଳକ ଭାବ଼ରେ ଗ୍ରହଣ କରାଗଲା । ଏହି ଇଂରେଜ ଶାସକଗଣ ବର୍ଣ୍ଣରେ ଭାରତୀୟ କିନ୍ତୁ ରୁଚି ଓ ଚିନ୍ତାଧାରାରେ ଇଂରେଜ କରିବାକୁ ଶିକ୍ଷାନୀତିମାନ ପ୍ରଣୟନ କରିଥିଲେ । ସରକାରୀ ଚାକିରି ପାଇଁ ମଧ୍ୟ ଇଂରାଜୀ ଭାଷା ଶିକ୍ଷା ଅତ୍ୟନ୍ତ ଜରୁରୀ ହୋଇପଡ଼ିଲା । ଦୀର୍ଘଦିନର ଶାସନ ପରେ ମଧ୍ୟ ମୁସଲମାନ ଶାସକଗଣ ଯାହା କରି ପାରିନଥିଲେ; ମାତ୍ର ଦୁଇଶତ ବର୍ଷର

ଶାସନ କାଳରେ ଇଂରେଜମାନେ ତାହା କରିପାରିଲେ । ପ୍ରଶାସନିକ କାର୍ଯ୍ୟ ଇଂରାଜୀ ଭାଷାରେ ଚାଲିଲା । ଇଂରାଜୀ ବିଦ୍ୟାଳୟମାନ ବହୁସଂଖ୍ୟାରେ ଗଢ଼ିଉଠିଲା । ପ୍ରାଦେଶିକ ବିଦ୍ୟାଳୟମାନଙ୍କରେ ମଧ୍ୟ ଇଂରାଜୀ ପଢ଼ାଗଲା । ସ୍ୱାଧୀନତା ପରେ ମଧ୍ୟ ୧୯୬୫ ମସିହା (ଜାନୁଆରୀ ୨୬ ତାରିଖ ପର୍ଯ୍ୟନ୍ତ) ଇଂରାଜୀ ଭାଷା ପ୍ରଶାସନିକ ଭାଷା ରୂପେ ପ୍ରଚଳିତ ଥିଲା । ମୁସଲମାନ ଓ ଇଂରେଜମାନଙ୍କ ଶାସନ କାଳରେ ଭାରତୀୟ ମୂଳ ଭାଷା ସଂସ୍କୃତ ବହୁପରିମାଣରେ ଅବହେଳିତ ହୋଇପଡ଼ିଥିଲା । ସ୍ୱାଧୀନତା ପରେ ପୁନରାୟ ସଂସ୍କୃତ ଭାଷାର ପ୍ରଚଳନ ହୋଇଥିଲେହେଁ ଏହା ତା'ର ପୂର୍ବ ମର୍ଯ୍ୟାଦା ଫେରିପାଇଲା ନାହିଁ । ୧୯୫୦ ମସିହା ଜାନୁଆରୀ ୨୬ ତାରିଖରେ ନୂତନ ସମ୍ବିଧାନରେ ହିନ୍ଦୀକୁ ରାଷ୍ଟ୍ରଭାଷା ବା ଜାତୀୟ ଭାଷାର ମର୍ଯ୍ୟାଦା ପ୍ରଦାନ କରାଗଲା । ମାତ୍ର ୧୯୬୫ ମସିହାରେ ହିନ୍ଦୀକୁ ଜାତୀୟ ଭାଷା ରୂପେ ଗ୍ରହଣ କରାଯାଇ ପ୍ରଶାସନିକ ଭାଷାର ସ୍ୱୀକୃତି ମିଳିଲା ଓ ଇଂରାଜୀକୁ ସହଯୋଗୀ ଭାଷା ରୂପେ କାର୍ଯ୍ୟ କରିବାକୁ ନିର୍ଦ୍ଦେଶ ପ୍ରଦାନ କରାଗଲା । ଏହା ସତ୍ତ୍ୱେ ଏଯାବତ୍ ହିନ୍ଦୀ ଭାରତର ସାର୍ବଜନୀନ ଭାଷାର ସ୍ୱୀକୃତି ଲାଭ କରିପାରି ନାହିଁ । ଆଞ୍ଚଳିକ ଭାଷା ଏବଂ ଇଂରାଜୀ ଭାଷାର ଗୁରୁତ୍ୱ କେତେକ କ୍ଷେତ୍ରରେ ହିନ୍ଦୀକୁ ବାଧା ପ୍ରଦାନ କରୁଛି । ହିନ୍ଦୀ ଓ ଇଂରାଜୀ ଭାଷା ମଧ୍ୟରେ ଏବେ ମଧ୍ୟ ସଂଘର୍ଷ ଚାଲିଛି । ପୁଣି ଅନେକ ପ୍ରଦେଶରେ ନିଜର ଆଞ୍ଚଳିକ ଭାଷାକୁ ଗୁରୁତ୍ୱ ଦିଆଯାଉଥିବାରୁ ଏଯାବତ୍ କୌଣସି ଏକ ନିର୍ଦ୍ଦିଷ୍ଟ ଭାଷାକୁ ସମସ୍ତ ଭାରତୀୟ ଜାତୀୟଭାଷା ରୂପେ ଗ୍ରହଣ କରିବାକୁ ସମର୍ଥ ହୋଇପାରୁ ନାହାନ୍ତି । ସେଥିପାଇଁ ଅନ୍ୟାନ୍ୟ ଆର୍ଥନୀତିକ ଓ ସାମାଜିକ ସମସ୍ୟା ପରି ଭାରତରେ ଭାଷା ଏକ ମୁଖ୍ୟ ସମସ୍ୟା ହୋଇ ମୁଣ୍ଡ ଟେକିଛି । ଏହି କାରଣରୁ ସମସ୍ତ ଭାରତୀୟ ନିଜକୁ ଜାତୀୟସ୍ରୋତରେ ସାମିଲ୍ କରିଦେବାକୁ ସମର୍ଥ ହୋଇପାରୁ ନାହାନ୍ତି ।

ଭାରତର ଭୌଗୋଳିକ ପରିସ୍ଥିତି ଭାଷା ସମସ୍ୟାର ମୁଖ୍ୟ କାରଣ । ଭାରତର ଅଧିକାଂଶ ପ୍ରଦେଶ ଭାଷାକୁ ଭିତ୍ତିକରି ଗଠିତ । ଯେପରି ଓଡ଼ିଶା ପ୍ରଦେଶର ଭାଷା ଓଡ଼ିଆ, ତାମିଲନାଡୁର ଭାଷା ତାମିଲ, ମହାରାଷ୍ଟ୍ରର ଭାଷା ମରାଠୀ, ଗୁଜୁରାଟର ଭାଷା ଗୁଜୁରାଟୀ, ପଶ୍ଚିମବଙ୍ଗର ଭାଷା ବଙ୍ଗଳା, ଆସାମର ଭାଷା ଆସାମୀ, ପଞ୍ଜାବର ଭାଷା ପଞ୍ଜାବୀ ଇତ୍ୟାଦି । ସମ୍ବିଧାନ ଦ୍ୱାରା ସ୍ୱୀକୃତ ଭାଷାକୁ ଛାଡ଼ିଦେବା ପରେ ଭାରତରେ ପ୍ରାୟ ୧୮୦ଟି ଭାଷା ଓ ୫୬୦ଟି ଉପଭାଷା ପ୍ରଚଳିତ । ପ୍ରତ୍ୟେକ ଭାଷାଭାଷୀ ଅଞ୍ଚଳ ନିଜ ଆଞ୍ଚଳିକ ଭାଷାକୁ ମର୍ଯ୍ୟାଦା ଦେବାକୁ ତତ୍ପର । ରାଷ୍ଟ୍ରର ସ୍ୱାର୍ଥ ଅପେକ୍ଷା ଆଞ୍ଚଳିକ ସ୍ୱାର୍ଥ ପ୍ରତି ଏମାନେ ଅଗ୍ରାଧିକାର ଦେଇଥାନ୍ତି । ଏହି କାରଣରୁ ଭାରତରେ ମଧ୍ୟ ବହୁ ଆଞ୍ଚଳିକ ରାଜନୈତିକ ଦଳ ମୁଣ୍ଡ ଟେକିଛି ଓ ସେମାନେ ନିଜ ଅଞ୍ଚଳର ସ୍ୱାର୍ଥ ପ୍ରତି ଅଧିକ ସଚେତନ । ନିକଟ ଅତୀତରେ ତାମିଲନାଡୁର ପୂର୍ବତନ ମୁଖ୍ୟମନ୍ତ୍ରୀ ସୁଶ୍ରୀ ଜୟଲଳିତାଙ୍କ କେତେକ ଉକ୍ତିରୁ ଆଞ୍ଚଳିକ ଭାଷା ପ୍ରତି ରାଜନୈତିକ ନେତା ଓ ନେତ୍ରୀଙ୍କର କିପରି ସମର୍ଥନ ରହିଛି, ତାହା ସ୍ପଷ୍ଟ ହୋଇ ଉଠିଥାଏ । ଭାଷାକୁ ଭିତ୍ତିକରି ଯେଉଁ ପ୍ରଦେଶମାନ ଗଠିତ ହେଲା, ତାହାହିଁ ବର୍ତ୍ତମାନ ମୁଖ୍ୟ ସମସ୍ୟା ହୋଇ ଦେଖାଦେଇଛି ।

ସ୍ୱତନ୍ତ୍ର ପ୍ରଦେଶମାନ ଗଠନ ସମୟରେ ଅନ୍ୟ କେତେକ ଭାଷାଭାଷୀ ଗୋଟିଏ ପ୍ରଦେଶରେ ରହିଯାଇଥିବା ସମୟରେ ସେମାନେ ବହୁକ୍ଷେତ୍ରରେ ଅବହେଳିତ ହେଉଥିବାର ଦେଖିବାକୁ ମିଳୁଛି । ଉଦାହରଣ ସ୍ୱରୂପ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠନ ହେବା ସମୟରେ ରାଜନୈତିକ ଦୃଷ୍ଟିକୋଣରୁ କେତେକ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ପଶ୍ଚିମବଙ୍ଗଳା, ବିହାର ଆଦି ସହିତ ମିଶି ରହିଗଲା । ଏବେ ସେଠାରେ ବସବାସ କରୁଥିବା ଓଡ଼ିଆମାନେ ବହୁ ଦୃଷ୍ଟିରୁ ଅବହେଳିତ ଜୀବନଯାପନ କରୁଛନ୍ତି । ସେଥିପାଇଁ ଗୋଟିଏ ପ୍ରଦେଶର ଆଞ୍ଚଳିକ ଭାଷାର ବ୍ୟକ୍ତିବିଶେଷଙ୍କ ସହିତ ସେଠାରେ ବାସ କରୁଥିବା ଅନ୍ୟ ଭାଷାଭାଷୀଙ୍କ ମଧ୍ୟରେ ସଂଘର୍ଷ ହେଉଛି । ଭାଷାକୁ ଭିତ୍ତି କରି ପ୍ରଦେଶ ଗଠନ ହୋଇଥିବାରୁ ଏହି ପ୍ରକାର ପରିସ୍ଥିତି ସୃଷ୍ଟି ହୋଇଛି । ଅନ୍ୟଭାବରେ କହିଲେ ଭାରତର ଭୌଗୋଳିକ ଅବସ୍ଥା ଭାଷାଭିତ୍ତିକ ପ୍ରଦେଶ ଗଠନ କରିବାକୁ ବାଧ କରିଥିବାରୁ ବର୍ତ୍ତମାନ ଭାରତରେ ଭାଷା ଏକ ଗୁରୁତର ସମସ୍ୟା ହୋଇ ଛିଡ଼ାହୋଇଛି । ତେଣୁ ନିର୍ଦ୍ଦିଷ୍ଟ ଭାଷାଭାଷୀ ବ୍ୟକ୍ତିବିଶେଷ ନିଜର ଭାଷାକୁ ଯେଉଁ ପରିମାଣରେ ଗୁରୁତ୍ୱ ଦେଉଛନ୍ତି, ରାଷ୍ଟ୍ର ବା ଜାତୀୟ ଭାଷାକୁ ସେହି ପରିମାଣରେ ଗୁରୁତ୍ୱ ଦେଉ ନାହାନ୍ତି । ଏହି କାରଣରୁ ରାଷ୍ଟ୍ରଭାଷା ଏବଂ ଆଞ୍ଚଳିକ ଭାଷା ମଧ୍ୟରେ ଦ୍ୱନ୍ଦ୍ୱ ସୃଷ୍ଟି ହେଉଛି । ଏତଦ୍‌ବ୍ୟତୀତ ଇଂରାଜୀ ଭାଷା ପ୍ରତି ରହିଯାଇଥିବା ମୋହ ଏ ପର୍ଯ୍ୟନ୍ତ ଦୂରୀଭୂତ ହୋଇପାରି ନାହିଁ । ଇଂରାଜୀ ଭାଷାରେ ପ୍ରବୀଣ ବ୍ୟକ୍ତି ସମାଜରେ ନିଜକୁ ଏବେ ମଧ ଗୌରବାନ୍ୱିତ ମନେକରନ୍ତି । ଭଲ ଇଂରାଜୀ କହିପାରୁଥିବା ବ୍ୟକ୍ତିଙ୍କ ପ୍ରତି ଏବେସୁଦ୍ଧା ଆମ ସମାଜରେ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ରହିଛି । ପ୍ରଶାସନିକ କ୍ଷେତ୍ରରେ ଏବେ ମଧ ଇଂରାଜୀ ଭାଷା ତା'ର ପ୍ରାଧାନ୍ୟ ବିସ୍ତାର କରି ରହିଛି । ତେଣୁ ଇଂରାଜୀ ଭାଷା ପ୍ରତି ଏହି ଅହେତୁକ ମୋହ ଏପର୍ଯ୍ୟନ୍ତ ଆମ ସମାଜ ଜୀବନରୁ ଦୂରୀଭୂତ ହୋଇପାରି ନାହିଁ । ଇଂରାଜୀ ମାଧ୍ୟମ ବିଦ୍ୟାଳୟ ବର୍ତ୍ତମାନ ପ୍ରତି ରାଜ୍ୟରେ ଛତୁଫୁଟିବା ପରି ଖୋଲୁଛି । ଇଂରାଜୀ ଭାଷା ପ୍ରତି ଭାରତୀୟଙ୍କ ମନ ଭିତରେ ରହିଥିବା ଦୁର୍ବଳତା ଆଜି ରାଷ୍ଟ୍ରଭାଷା ଓ ଇଂରାଜୀ ଭାଷା ମଧ୍ୟରେ ଦ୍ୱନ୍ଦ୍ୱ ସୃଷ୍ଟି କରୁଛି । ଏହା ସହିତ ପ୍ରାଦେଶିକ ଭାଷାର ସଂଘର୍ଷ ମଧ ସମସ୍ୟା ସୃଷ୍ଟି କରୁଛି ।

ରାଜନୀତିକ ଓ ସାମାଜିକ ଦୃଷ୍ଟିଭଙ୍ଗୀ ଅନେକ ସମୟରେ ଭାଷାଗତ ସମସ୍ୟା ସୃଷ୍ଟି କରିଥାଏ । ଇଂରେଜମାନଙ୍କ ଶାସନ ସମୟରୁ ଭାରତରେ ଏହି ପ୍ରକାର ସମସ୍ୟା ସୃଷ୍ଟି ଲାଭ କରିଛି । ଇଂରେଜମାନେ ଭାରତରେ ନିଜ ଭାଷାକୁ ପ୍ରଥମ ଶ୍ରେଣୀୟ ଭାଷାରୂପେ ପ୍ରତିଷ୍ଠା କରିବାକୁ ଉଦ୍ୟମ ଜାରି ରଖିଥିଲେ । ଦେଶୀୟ ଭାଷା ଅପେକ୍ଷା ନିଜର ଭାଷାକୁ ସେମାନେ ଅଧିକ ଗୁରୁତ୍ୱ ଦେଉଥିଲେ । ସରକାରୀ ଚାକିରି କ୍ଷେତ୍ରରେ ଇଂରାଜୀ ଭାଷା ଶିକ୍ଷାକୁ ବାଧ୍ୟତାମୂଳକ କରାଯିବା ଫଳରେ ଭାରତୀୟଙ୍କ ମନରେ ଇଂରାଜୀ ଭାଷା ପ୍ରତି ସ୍ୱତଃ ଏକ ଦୁର୍ବଳତା ଜାଗ୍ରତ ହୋଇଥିଲା । ରାଜନୈତିକ ଦୃଷ୍ଟିକୋଣରୁ ଇଂରେଜମାନେ ଭାରତରେ ଏହି ଯେଉଁ ପଦକ୍ଷେପ ଗ୍ରହଣ କଲେ, ଭାରତୀୟଗଣ ନିଜର ସାମାଜିକ ପ୍ରତିଷ୍ଠା ପାଇଁ ଇଂରାଜୀ ଭାଷାକୁ ଏକ ମାଧ୍ୟମ ଭାବରେ ଗ୍ରହଣ କରିନେଲେ । ଇଂରାଜୀ ଭାଷା ଶିକ୍ଷା କରିଥିବା ବ୍ୟକ୍ତିବିଶେଷର ସାମାଜିକ ସମ୍ମାନ ଓ ମର୍ଯ୍ୟାଦା

ବୃଦ୍ଧି ପାଇଲା । ଏହି ଇଂରାଜୀ ଭାଷା ଶିକ୍ଷା କରିଥିବା ବ୍ୟକ୍ତି ପଦପଦବୀର ଶକ୍ତି ବଳରେ ନିଜର ଆଞ୍ଚଳିକ ଭାଷାର ଗୁରୁତ୍ୱ ବୃଦ୍ଧି କରିବାକୁ ଚେଷ୍ଟା କରିଥିଲେ । ଭାରତରେ ବଙ୍ଗାଳୀ ଜାତି ପ୍ରଥମେ ଇଂରାଜୀ ଶିକ୍ଷାର ସୁଫଳ ଲାଭ କରିଥିବାରୁ ତା'ର ସୁଯୋଗ ନେଇ ଅନ୍ୟାନ୍ୟ ପ୍ରାଦେଶିକ ଭାଷାକୁ ବିଲୋପ କରିବାକୁ ଉଦ୍ୟମ କରିଥିଲେ । ଓଡ଼ିଶାରୁ ଓଡ଼ିଆ ଭାଷାର ବିଲୋପ ଓ ଆସାମରୁ ଆସାମୀ ଭାଷାର ବିଲୋପ ପାଇଁ ପ୍ରଥମେ ଏହି ବଙ୍ଗାଳୀଗଣ ହୀନ ଉଦ୍ୟମ କରିଥିଲେ । ଇଂରେଜ ଶାସନର ଅବସାନ ପରେ ମଧ୍ୟ ଏହି ମୋହ ଦୂରୀଭୂତ ହୋଇ ନ ଥିଲା । କେତେକ ସ୍ୱାଧୀନତାସଂଗ୍ରାମୀ ଇଂରାଜୀ ଭାଷା ପ୍ରତି ସେତେବେଳେ ଯେଉଁ ଦରଦୀ ଭାବ ପ୍ରକାଶ କଲେ, ତାହା ସମ୍ପୂର୍ଣ୍ଣ ଭାବରେ ରାଜନୈତିକ ଦୃଷ୍ଟିକୋଣରୁ କରାଯାଇଥିଲା । ରାଜନୈତିକ ଦୃଷ୍ଟିକୋଣରୁ ସେତେବେଳେ ଯେଉଁ ପଦକ୍ଷେପ ଗ୍ରହଣ କରାଯାଇଥିଲା, ସାମାଜିକ ପ୍ରତିଷ୍ଠା କ୍ଷେତ୍ରରେ ତାହା ମୁଖ୍ୟ ଆୟୁଧ ରୂପେ ବ୍ୟବହୃତ ହେଲା । ରାଜନୈତିକ ବ୍ୟକ୍ତିବିଶେଷ ବର୍ତ୍ତମାନ ଆଞ୍ଚଳିକ ଭାଷାକୁ ଭିତ୍ତିକରି ରାଜନୀତି କରିବାକୁ ଆରମ୍ଭ କରିଛନ୍ତି ଓ ସେଥିପାଇଁ ସମାଜର ବ୍ୟକ୍ତିବିଶେଷଙ୍କ ଅନୁକମ୍ପା ଲାଭ ଉଦ୍ଦେଶ୍ୟରେ ଆଞ୍ଚଳିକତାବାଦକୁ ଗୁରୁତ୍ୱ ଦେଉଛନ୍ତି । ନିଜର ସାମାଜିକ ପଦମର୍ଯ୍ୟାଦାର ବୃଦ୍ଧି ପାଇଁ ସେମାନଙ୍କର ହୀନ ରାଜନୀତି ଭାଷା ସମସ୍ୟାକୁ ଅଧିକ ଜଟିଳ କରିଦେଉଛି ।

ସମ୍ବିଧାନ ପ୍ରଣୟନ ସମୟରେ ହିନ୍ଦୀକୁ ରାଷ୍ଟ୍ରୀୟ ଭାଷାର ମର୍ଯ୍ୟାଦା ପ୍ରଦାନ କରାଯାଇଛି । ମାତ୍ର ଭାରତର ସମସ୍ତ ପ୍ରଦେଶ ହିନ୍ଦୀକୁ ଜାତୀୟ ଭାଷାର ମର୍ଯ୍ୟାଦା ପ୍ରଦାନ କରିବାକୁ ପରାଙ୍ମୁଖ । ଏହାକୁ ନେଇ ସୃଷ୍ଟି ହୋଇଛି ଉତ୍ତରଭାରତ ଓ ଦକ୍ଷିଣଭାରତରେ ଭାଷାଗତ ସଂଘର୍ଷ । ଉତ୍ତରଭାରତର ଜନସାଧାରଣ ହିନ୍ଦୀକୁ ରାଷ୍ଟ୍ରୀୟ ଭାଷାର ମର୍ଯ୍ୟାଦା ପ୍ରଦାନ କରୁଥିବା ସମୟରେ, ଦକ୍ଷିଣଭାରତରେ ଇଂରାଜୀକୁ ଜାତୀୟ ଭାଷା କରିବାକୁ ମତାମତ ପ୍ରଦାନ କରୁଛନ୍ତି । ଯେଉଁଥିପାଇଁ ହିନ୍ଦୀ ଓ ଇଂରାଜୀ ଭାଷାକୁ ଆଳ କରି ସୃଷ୍ଟି ହୋଇଛି ଦ୍ୱନ୍ଦ୍ୱ । ଉତ୍ତରଭାରତରେ ଇଂରାଜୀ ବିରୋଧୀ ମତବାଦ ପ୍ରବଳ ହୋଇଥିବା ସମୟରେ ଦକ୍ଷିଣଭାରତରେ ହିନ୍ଦୀ ବିରୋଧୀ ମତବାଦ ପ୍ରବଳ । ଏହି କାରଣରୁ ଦାକ୍ଷିଣାତ୍ୟରେ ଜାତୀୟ ପତାକାକୁ ଅବମାନନା କରାଗଲା । ୧୯୬୭ ମସିହାରେ ଭାଷାକୁ କେନ୍ଦ୍ରକରି ବିକ୍ଷୋଭ କରାଯିବା ସଙ୍ଗେ ସଙ୍ଗେ ବହୁ ଜାତୀୟ ସମ୍ପତ୍ତି ନଷ୍ଟଭ୍ରଷ୍ଟ ହେଲା । ତାମିଲନାଡୁର ପୂର୍ବତନ ମୁଖ୍ୟମନ୍ତ୍ରୀ ଆନ୍ନାଦୁରାଇ ହିନ୍ଦୀ ଭାଷାକୁ ପ୍ରବଳ ବିରୋଧ କରିବାରୁ ଲୋକପ୍ରିୟ ନେତା ହୋଇପାରିଥିଲେ । ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ ମଧ୍ୟ ହିନ୍ଦୀ ଭାଷାର ବିରୋଧ କରିଥିଲେ । ଉତ୍ତରଭାରତରେ ମଧ୍ୟ ଇଂରାଜୀ ଭାଷାକୁ ବିରୋଧ କରି ବିକ୍ଷୋଭ କରାଗଲା । ଇଂରାଜୀ ପରି ଏକ ବିଦେଶାଗତ ଭାଷାକୁ କେନ୍ଦ୍ରକରି ଭାରତରେ ଯେଉଁ ଅପ୍ରୀତିକର ପରିସ୍ଥିତି ସୃଷ୍ଟି ଲାଭକଲା, ତାହା ଅତ୍ୟନ୍ତ କ୍ଷୋଭର ବିଷୟ । କେବଳ ଦକ୍ଷିଣଭାରତରେ ନୁହେଁ, ହିନ୍ଦୀକୁ କେନ୍ଦ୍ରକରି ଅନ୍ୟ କେତେକ ସ୍ଥାନରେ ମଧ୍ୟ ବିକ୍ଷୋଭ ହେଲା । କଲିକତାରେ ମଧ୍ୟ ହିନ୍ଦୀ ଭାଷାରେ ଲେଖାଯାଇଥିବା ବିଜ୍ଞାପନ ଓ ପ୍ରଚାରପତ୍ର ଉପରେ କାଳି ଲେପି ଦିଆଗଲା । ଭାଷାକୁ କେନ୍ଦ୍ରକରି ଭାରତରେ ସମୟେ ସମୟେ ଯେଉଁ କୁତ୍ସିତ ରାଜନୀତି ଚାଲିଛି, ତାହା ଅତୀବ ନିନ୍ଦନୀୟ ଓ ଦୁର୍ଭାଗ୍ୟର ବିଷୟ ।

୧୯୫୦ ମସିହା ଜାନୁଆରୀ ୨୬ ତାରିଖରେ ଭାରତର ନୂତନ ସମ୍ବିଧାନ ପ୍ରଣୟନ କରାଗଲା । ସମ୍ବିଧାନରେ ହିନ୍ଦୀକୁ ଜାତୀୟ ଭାଷାର ମର୍ଯ୍ୟାଦା ପ୍ରଦାନ କରାଯାଇଥିଲା । ଏହାକୁ କେନ୍ଦ୍ରକରି ପରବର୍ତ୍ତୀ ସମୟରେ ଭାରତର ବିଭିନ୍ନ ରାଜ୍ୟରେ ମତଭେଦ ସୃଷ୍ଟି ହେବା ସଙ୍ଗେ ସଙ୍ଗେ ଭାଷାଗତ ସମସ୍ୟା ସୃଷ୍ଟି ହେଲା । ଲୋକସଂଖ୍ୟା ଦୃଷ୍ଟିରୁ ଭାରତର ବିଭିନ୍ନ ରାଜ୍ୟର ଅଧିବାସୀମାନେ ଯେଉଁ ଭାଷାର ବ୍ୟବହାର କରିଥାନ୍ତି, ତନ୍ମଧ୍ୟରୁ ହିନ୍ଦୀ ଭାଷାଭାଷୀଙ୍କ ସଂଖ୍ୟା ସର୍ବାଧିକ । ଭାରତର ଅନ୍ୟାନ୍ୟ ଆଞ୍ଚଳିକ ଭାଷାମାନଙ୍କ ସହିତ (ଦକ୍ଷିଣଭାରତ ବ୍ୟତୀତ) ହିନ୍ଦୀ ଭାଷାର ମଧ୍ୟ ନିଗୂଢ଼ ସମ୍ପର୍କ ବିଦ୍ୟମାନ । ବହୁଭାଷାର ଦେଶ ଭାରତବର୍ଷ ହୋଇଥିବାରୁ ଏବଂ ସର୍ବାଧିକ ଲୋକ ହିନ୍ଦୀ ଭାଷାରେ କଥୋପକଥନ କରୁଥିବାରୁ ତଥା ଭାରତରେ ପ୍ରଚଳିତ ଅଧିକ ଆଞ୍ଚଳିକ ଭାଷା ସହିତ ଏହି ଭାଷାର ସମ୍ପର୍କ ଥିବାରୁ ହିନ୍ଦୀକୁ ରାଷ୍ଟ୍ରୀୟ ଭାଷାର ମର୍ଯ୍ୟାଦା ପ୍ରଦାନ କରାଯାଇଛି । ୧୯୬୫ ମସିହାରୁ ହିନ୍ଦୀକୁ ଜାତୀୟ ଭାଷା ରୂପେ ବ୍ୟବହାର କରିବାକୁ ସମସ୍ତ ବ୍ୟବସ୍ଥା କରାଯିବା ସତ୍ତ୍ୱେ ରାଜନୈତିକ ବିରୋଧୀ ମତବାଦ ଯୋଗୁଁ ତାହା ଏପର୍ଯ୍ୟନ୍ତ କାର୍ଯ୍ୟକାରୀ କରାଯାଇ ପାରି ନାହିଁ । ରାଷ୍ଟ୍ରୀୟ ଭାଷାର ମର୍ଯ୍ୟାଦା ଲାଭ କରିବା ସତ୍ତ୍ୱେ ଏଯାବତ୍ ଏହା ପ୍ରଶାସନିକ ଭାଷାରୂପେ ବ୍ୟବହୃତ ନ ହେବା ନିଶ୍ଚିତ ଭାବରେ ଦୁଃଖଦାୟକ ।

ଭାରତରେ ଆଞ୍ଚଳିକ ଭାଷାମାନଙ୍କର ସମସ୍ୟା ଅତି ଉତ୍କଟ । ଏହି ଆଞ୍ଚଳିକ ଭାଷାର ପ୍ରଭାବ ଯୋଗୁଁ ସମସ୍ତ ଭାରତୀୟ ନିଜକୁ ଜାତୀୟ ସ୍ରୋତରେ ସାମିଲ କରିବାକୁ ଅସମର୍ଥ ହେଉଛନ୍ତି । ବହୁ ଭାଷାର ଦେଶ ଭାରତ ସମସ୍ତଙ୍କୁ ଗୋଟିଏ ରାଷ୍ଟ୍ରୀୟ ପତାକାତଳେ ସମ୍ମିଳିତ କରିବାକୁ ସମର୍ଥ ହୋଇପାରୁ ନାହିଁ । ଆଞ୍ଚଳିକ ଭାଷା ସମସ୍ୟା ରହିଥିଲେହେଁ, ବିଦ୍ୟାଳୟର ଆରମ୍ଭରୁ ଏକ ଜାତୀୟ ଭାଷାକୁ ବାଧ୍ୟତାମୂଳକ ଭାଷା ରୂପେ ପଠନ କରାଯିବା ପାଇଁ ପଦକ୍ଷେପ ଗ୍ରହଣ କରାଗଲେ, ଆଞ୍ଚଳିକତା ସତ୍ତ୍ୱେ ଏକ ସର୍ବଭାରତୀୟ ଚେତନା ଛାତ୍ର ସମାଜକୁ ଉଦ୍‌ବୁଦ୍ଧ କରିପାରନ୍ତା । ଆଞ୍ଚଳିକ ଭାଷାସଦୃଶ ପ୍ରଥମରୁ ଜାତୀୟ ଭାଷା ରୂପେ ଗୃହୀତ ହିନ୍ଦୀ ଭାଷାକୁ ମଧ୍ୟ ବାଧ୍ୟତାମୂଳକ ଶିକ୍ଷା ଖସଡ଼ାରେ ଗ୍ରହଣ କରାଯିବା ଉଚିତ ।

ଭାରତର ଭାଷାସମସ୍ୟାକୁ ଲକ୍ଷ୍ୟ କରି ଭାରତର ପୂର୍ବତନ ଶିକ୍ଷାମନ୍ତ୍ରୀ ଡଃ ତ୍ରିଗୁଣାସେନ୍ ତ୍ରିଭାଷୀ ନିୟମକୁ ଗ୍ରହଣ କରିନେବା ନିମିତ୍ତ ଅନୁରୋଧ କରିଥିଲେ । ଏହି ତ୍ରିଭାଷୀ ନିୟମ ଅନୁଯାୟୀ ପ୍ରତ୍ୟେକ ପ୍ରଦେଶର ଶିକ୍ଷାପଦ୍ଧତିରେ ଇଂରାଜୀ ସହିତ ହିନ୍ଦୀ ଭାଷାର ପ୍ରଚଳନ ହେବା ସଙ୍ଗେ ସଙ୍ଗେ ସେହି ପ୍ରଦେଶର ଆଞ୍ଚଳିକ ଭାଷାର ପ୍ରାଧାନ୍ୟ ମଧ୍ୟ ରହିବ । ଏହି ନିୟମ ଗୃହୀତ ହେଲେ ଭାଷାକୁ କେନ୍ଦ୍ରକରି ଯେଉଁ ଆଞ୍ଚଳିକ ଦ୍ୱନ୍ଦ୍ୱ ସୃଷ୍ଟି ହେଉଛି ତାହା ହୁଅନ୍ତା ନାହିଁ । ମାତ୍ର ଏହାର ପ୍ରଚଳନ ପାଇଁ ସବୁ ସ୍ତରରେ ଆନ୍ତରିକ ଉଦ୍ୟମ ଜାରି ରହିବା ଆବଶ୍ୟକ । ଏହାଦ୍ୱାରା ଭାରତରେ ମଧ୍ୟ ହିନ୍ଦୀ ପ୍ରତି ଯେଉଁ ଆଞ୍ଚଳିକ ଅସୂୟା ଭାବ ରହୁଛି, ତାହା ଦୂର ହୋଇପାରନ୍ତା । କେନ୍ଦ୍ର ଓ ରାଜ୍ୟ ସରକାର ଏଥି ନିମିତ୍ତ ଆନ୍ତରିକତାର ସହିତ ଉଦ୍ୟମ କରିବା ଉଚିତ ।

ମହାଭାରତୀୟ ଚେତନା ଭାରତକୁ ବିଶ୍ୱ ଦରବାରରେ ପ୍ରତିଷ୍ଠିତ କରିବା କ୍ଷେତ୍ରରେ ସହାୟତା କରିପାରିବ । ଭାରତ ଏକ ଐତିହ୍ୟସମ୍ପନ୍ନ ଦେଶ । ଏହାର ଅତୀତ ଗୌରବୋଜ୍ଜ୍ୱଳ । ଆଞ୍ଚଳିକ ଭାଷାକୁ କେନ୍ଦ୍ରକରି ଭାରତର ମହାନତାକୁ ଖଣ୍ଡବିଖଣ୍ଡିତ କଲେ ଦେଶର ସାର୍ବଭୌମତ୍ୱ ଓ ଗୌରବ ନଷ୍ଟ ହେବ । ସଂକୀର୍ଣ୍ଣ ଦେଶାତ୍ମବୋଧ ପ୍ରଗତିର ପରିପନ୍ଥୀ । ତେଣୁ ଭାଷାକୁ କେନ୍ଦ୍ରକରି ସଂକୀର୍ଣ୍ଣ ଆଞ୍ଚଳିକତାର ମୋହରେ ଭାରତର ସାମୂହିକ ସ୍ୱାର୍ଥକୁ ବିପନ୍ନ କଲେ ଭବିଷ୍ୟତ କଦାପି କ୍ଷମା କରିପାରିବ ନାହିଁ । ସମସ୍ତ ଭାରତୀୟ ଏକ ଭାରତୀୟତାର ସ୍ୱାଭିମାନ ନେଇ ବଞ୍ଚିବା ଉଚିତ । ଏହି ଦୃଷ୍ଟିରୁ ଗୋଟିଏ ଭାଷାକୁ ଜାତୀୟ ଭାଷାର ମର୍ଯ୍ୟାଦା ପ୍ରଦାନ କରି ତା'ର ସାମୂହିକ ବିକାଶ ପ୍ରତି ଦୃଷ୍ଟି ପ୍ରଦାନ କରିବା ବିଧେୟ । ତେଣୁ ଭାରତର ଏକ ସହଯୋଗକାରୀ ବା ଜାତୀୟ ଭାଷାରୂପେ ହିନ୍ଦୀ ଭାଷାକୁ ଆଞ୍ଚଳିକତା ଓ ଦଳମତ ନିର୍ବିଶେଷରେ ଗ୍ରହଣ କରାଯାଇପାରିଲେ ଭାରତର ଭାଷାଗତ ସମସ୍ୟା ଯେ ଦୂରୀଭୂତ ହୋଇପାରିବ, କହିବା ଅନାବଶ୍ୟକ ମାତ୍ର ।

●

## ଭାରତର ସୀମାନ୍ତ ସମସ୍ୟା

**(ଉପକ୍ରମ, ସୀମାନ୍ତ ସମସ୍ୟାର କେତେକ କାରଣ, ପାକିସ୍ଥାନର ଆଚରଣ ଓ ସୀମାନ୍ତ ସମସ୍ୟା, ଚୀନ ସହିତ ସୀମାନ୍ତ ସମସ୍ୟା, ସୀମାନ୍ତ ସମସ୍ୟା ନେଇ ରାଜନୀତିକ ଚକ୍ରାନ୍ତ, ଆର୍ଥନୀତିକ ସଙ୍କଟ, ଅନ୍ୟ କେତେକ ପଡ଼ୋଶୀ ସମସ୍ୟା, ସୀମାନ୍ତ ସମସ୍ୟା ସମ୍ପର୍କରେ କେତେକ ପଦକ୍ଷେପ, ଉପସଂହାର)**

ଭାରତ ଏକ ସ୍ୱାଧୀନ ରାଷ୍ଟ୍ର । ପ୍ରତ୍ୟେକ ସ୍ୱାଧୀନ ରାଷ୍ଟ୍ରର କର୍ତ୍ତବ୍ୟ ହେଉଛି ତା'ର ସାର୍ବଭୌମତ୍ୱ ରକ୍ଷା । ସୀମା ସୁରକ୍ଷା ନ ହେଲେ ସାର୍ବଭୌମତ୍ୱ ରକ୍ଷା କଠିନ ବ୍ୟାପାର ହୋଇପଡିବ । ପ୍ରତ୍ୟେକ ସାମ୍ରାଜ୍ୟବାଦୀ ରାଷ୍ଟ୍ର ଅନ୍ୟ ରାଷ୍ଟ୍ର ଉପରେ ପ୍ରଭୁତ୍ୱ ଜାହିର କରିବାକୁ ଆଗ୍ରହୀ । ଏହି ସାମ୍ରାଜ୍ୟବାଦୀ ନୀତି ଯୋଗୁଁ ଆଜି ପୃଥିବୀରେ ମାରଣାସ୍ତ୍ର ଉତ୍ପାଦନ କ୍ଷେତ୍ରରେ ପ୍ରତିଯୋଗିତା [illegible] ଆର୍ଥିକ ସଙ୍କଟ ମଧ୍ୟରେ ଗତି କରୁଥିବା ରାଷ୍ଟ୍ରଗୁଡ଼ିକ ମଧ୍ୟ ବାଧ୍ୟ ହୋଇ ସୀମାନ୍ତର ସୁରକ୍ଷା ପାଇଁ ପ୍ରଚୁର ପରିମାଣର ଅର୍ଥ ବ୍ୟୟ କରୁଛନ୍ତି । ସାମରିକ ଶକ୍ତିକୁ ଅଧିକ ସୁଦୃଢ଼ କରିବା ପାଇଁ ରାଷ୍ଟ୍ରର ଅତ୍ୟାବଶ୍ୟକ ଖର୍ଚ୍ଚକାଟ କରାଯାଇ ପ୍ରତିରକ୍ଷା କ୍ଷେତ୍ରରେ ଖର୍ଚ୍ଚ କରାଯାଉଛି । ଗୋଟିଏ ଜନମଙ୍ଗଳ ରାଷ୍ଟ୍ର କ୍ଷେତ୍ରରେ ଏହା ଯେ ଅତୀବ ଦୁଃଖଦାୟକ ଘଟଣା, ଅସ୍ୱୀକାର କରାଯାଇପାରିବ ନାହିଁ । ଭାରତ ପ୍ରାକୃତିକ ସମ୍ପଦରେ ପରିପୂର୍ଣ୍ଣ ଏକ ରାଷ୍ଟ୍ର । ଏହାର ସୀମାନ୍ତ ପ୍ରଦେଶକୁ ଅତୀତରେ ରକ୍ଷା କରୁଥିଲେ ନଗାଧିରାଜ ହିମାଳୟ ତଥା ଅନ୍ୟାନ୍ୟ ପର୍ବତମାଳା ଏବଂ ସୁନୀଳ ସାଗର । ବିଜ୍ଞାନ ଯୁଗରେ ପର୍ବତ କିମ୍ବା ଜଳରାଶି ଆଜି ଏକ ପ୍ରତିବନ୍ଧକ ହୋଇ ରହି ନାହିଁ । ଯେ କୌଣସି ମୁହୂର୍ତ୍ତରେ ଶତ୍ରୁ ଅକ୍ଳେଶରେ ଏହାକୁ

ଅତିକ୍ରମ କରିପାରେ । ଭାରତର ଦୁଇଟି ସୀମାନ୍ତବର୍ତ୍ତୀ ପଡ଼ୋଶୀ ରାଷ୍ଟ୍ର ପାକିସ୍ଥାନ ଏବଂ ଚୀନ ଭାରତର ମୁଣ୍ଡବ୍ୟଥାର କାରଣ ହୋଇଛି । ସେମାନଙ୍କର ଆଚରଣ, ଅତୀତର ବ୍ୟବହାର ଓ ବିଶ୍ୱାସଘାତକତା ପ୍ରତି ମୁହୂର୍ତ୍ତରେ ଭାରତ ପାଇଁ ବିପଦର କାରଣ । ସୀମାନ୍ତପ୍ରଦେଶକୁ ସୁରକ୍ଷା କରିବାକୁ ଯାଇ ଭାରତ ବାଧହୋଇ କେତେକ ଆବଶ୍ୟକତାକୁ ଆଖିବୁଜି ବହୁଳପରିମାଣରେ ଅର୍ଥ ଖର୍ଚ୍ଚ କରୁଛି । ଭାରତର ଆର୍ଥିକ ବିପର୍ଯ୍ୟୟ ନିମିତ୍ତ ସୀମାନ୍ତ ସମସ୍ୟା ବହୁପରିମାଣରେ ଦାୟୀ କହିଲେ ଅତ୍ୟୁକ୍ତି ହେବ ନାହିଁ ।

୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଦିନ ଭାରତ ସ୍ୱାଧୀନ ହେଲା । ଏହା ସମଗ୍ର ଭାରତୀୟମାନଙ୍କ ପାଇଁ ଏକ ସ୍ମରଣୀୟ ଘଟଣା ହୋଇଥିଲେହେଁ, ଭାରତର ବିଖଣ୍ଡିତ ରୂପ ଅନେକ ସଚେତନ ବ୍ୟକ୍ତିଙ୍କୁ ଦୁଃଖାଭିଭୂତ କରିଥିଲା । ଭାରତ ଦୁଇ ଭାଗରେ ବିଭକ୍ତ ହୋଇ ହିନ୍ଦୁସ୍ଥାନ ଓ ପାକିସ୍ଥାନରେ ପରିଣତ ହେଲା । ପୂର୍ବରୁ ଭାରତରେ ବସବାସ କରୁଥିବା ହିନ୍ଦୁ ମୁସଲମାନ ପରସ୍ପରକୁ ଭାଇ ଭାଇ ଭାବରେ ଗ୍ରହଣ କରିନେଇଥିଲେ । ମାତ୍ର ଏହା ଦୁଇଟି ରାଷ୍ଟ୍ରରେ ପରିଣତ ହେବା ପରେ ହିନ୍ଦୁ ଏବଂ ମୁସଲମାନ ପରସ୍ପରର ଶତ୍ରୁରେ ପରିଣତ ହୋଇଗଲେ । ସେଦିନ ଭଙ୍ଗା ନୂଆଖାଲିଠାରେ ଯେଉଁ ସାମ୍ପ୍ରଦାୟିକ ଦଙ୍ଗା ସଂଘଟିତ ହୋଇଗଲା, ସେଥିରୁ ପ୍ରମାଣ ମିଳିଲା ଭବିଷ୍ୟତରେ ଏହି ହିନ୍ଦୁ ମୁସଲମାନ ଆଉ କେବେ ଭାଇ ଭାଇ ଭାବରେ କୋଳାଗ୍ରତ ହୋଇପାରିବେ ନାହିଁ । ଅଥଚ ଭାରତରେ ବସବାସ କରୁଥିବା ହିନ୍ଦୁ ଏବଂ ମୁସଲମାନମାନଙ୍କ ମଧ୍ୟରେ କୌଣସି ଦ୍ୱେଷ ଭାବ ନାହିଁ । ମାତ୍ର ପାକିସ୍ଥାନରେ ଯେଉଁ ସଂଖ୍ୟାନ୍ୟୂନ ହିନ୍ଦୁ ବାସ କରୁଛନ୍ତି, ସେମାନେ ବହୁପରିମାଣରେ ନିର୍ଯାତିତ ହେଉଛନ୍ତି । ଜାମ୍ମୁ ଏବଂ କାଶ୍ମୀରକୁ ନେଇ ଭାରତ ଏବଂ ପାକିସ୍ଥାନ ମଧ୍ୟରେ ଦ୍ୱନ୍ଦ୍ୱର ସୂତ୍ରପାତ ହୋଇଛି । ପୂର୍ବପାକିସ୍ଥାନ (ପୂର୍ବ ବଙ୍ଗ) ବାଂଲାଦେଶ ଭାବରେ ସ୍ୱାଧୀନତା ଲାଭ କରିବା ସମୟରେ ଭାରତ ପ୍ରତି ତା'ର ସୁସମ୍ପର୍କ ସ୍ଥାପିତ ହୋଇଥିଲା । ଶେଖ୍ ମୁଜିବର ରହମନ୍‌ଙ୍କ ସମୟରେ ଭାରତ ଓ ବାଙ୍ଗଲାଦେଶ ମଧ୍ୟରେ ବେଶ୍ ସୌହାର୍ଦ୍ଦ୍ୟପୂର୍ଣ୍ଣ ସମ୍ପର୍କ ପ୍ରତିଷ୍ଠା ହୋଇଥିଲା । ମାତ୍ର ତାଙ୍କର ହତ୍ୟା ପରେ ଏହି ସମ୍ପର୍କରେ କେତେକାଂଶରେ ପ୍ରଶ୍ନବାଚୀ ମୁଣ୍ଡଟେକିଛି । ଚକ୍‌ମା ଶରଣାର୍ଥୀ ଯେପରି ବାଙ୍ଗଲାଦେଶରୁ ଆସି ଆସାମ ତଥା ଅନ୍ୟ ସ୍ଥାନରେ ବସତି ସ୍ଥାପନ କରୁଛନ୍ତି, ସେଥିଯୋଗୁଁ ଭାରତ ବହୁପରିମାଣରେ ଆର୍ଥିକ ସଙ୍କଟର ସମ୍ମୁଖୀନ ହେଉଛି । ଆସାମର ସୀମା ସମସ୍ୟା ସେହି କାରଣରୁ ଉଦ୍‌ବେଗଜନକ ହୋଇପଡୁଛି । ଚୀନ ସହିତ ଅତୀତରେ ସୁସମ୍ପର୍କ ରହିଥିଲେହେଁ ୧୯୬୨ ମସିହାର ଭାରତ ଉପରେ ଚୀନ୍‌ର ଅତର୍କିତ ଆକ୍ରମଣ ବିଶ୍ୱାସଘାତକତାର ଚରମ ନିଦର୍ଶନ । ଏବେ ମଧ୍ୟ ଭାରତର କେତେକ ଅଞ୍ଚଳ ଚୀନ୍ କର୍ତ୍ତୃତ୍ୱାଧୀନ । ଚୀନ ଏବଂ ଭାରତ ମଧ୍ୟରେ ଏହି କାରଣରୁ ବିଶ୍ୱସନୀୟ ବାତାବରଣ ସୃଷ୍ଟି ହୋଇପାରୁ ନାହିଁ । ଚୀନ ଏବଂ ଭାରତର ସୀମାନ୍ତରେ ବହୁପରିମାଣରେ ଚୀନ ଏବଂ ଭାରତୀୟ ସୈନ୍ୟ ମହଜୁଦ୍ ହୋଇ ଅଛନ୍ତି । ପୁଣି ଚୀନ୍ ପରମାଣୁ ଶକ୍ତିର ଅଧିକାରୀ ହୋଇଥିବାରୁ ଏବଂ ପାକିସ୍ଥାନକୁ ବହୁପରିମାଣରେ ଅସ୍ତ୍ରଶସ୍ତ୍ର ସହାୟତା କରୁଥିବାରୁ ଯେକୌଣସି ମୁହୂର୍ତ୍ତରେ

ବିପଦର ଘଣ୍ଟି ବାଜିପାରେ । ପାକିସ୍ଥାନ ମଧ୍ୟ ଯେପରି ଆରବ ଦେଶ, ଚୀନ ଏବଂ ଆମେରିକା ଆଦି ଦେଶଠାରୁ ପ୍ରଚୁର ପରିମାଣରେ ମାରଣାସ୍ତ୍ରମାନ ସଂଗ୍ରହ କରୁଛି, ତାହା ଭାରତ ପ୍ରତି ଉଦ୍‌ବେଗର ବିଷୟ ହୋଇପଡ଼ିଛି । ଏହି କାରଣରୁ ଭାରତର ପୂର୍ବ, ଉତ୍ତର ଓ ପଶ୍ଚିମ ସୀମାନ୍ତ ବିପଦାପନ୍ନ । ଭାରତ ପ୍ରତିମୁହୂର୍ତ୍ତରେ ତା'ର ସୀମାନ୍ତ ପ୍ରଦେଶରେ ସତର୍କତା ଅବଲମ୍ବନ ପୂର୍ବକ କାର୍ଯ୍ୟପନ୍ଥା ଗ୍ରହଣ ନ କଲେ, ଯେ କୌଣସି ମୁହୂର୍ତ୍ତରେ ଆକ୍ରମଣର ସମ୍ମୁଖୀନ ହେବାର ସମ୍ଭାବନା ରହିଛି ।

ଆଜି ପାକିସ୍ଥାନ ଭାରତର ସବୁଠାରୁ ବଡ଼ ଶତ୍ରୁ ରୂପେ କାର୍ଯ୍ୟ କରୁଛି । ଜାମ୍ମୁ ଓ କାଶ୍ମୀରକୁ କେନ୍ଦ୍ରକରି ଭାରତ ଏବଂ ପାକିସ୍ଥାନ ମଧ୍ୟରେ ତିକ୍ତ ସମ୍ପର୍କ ସୃଷ୍ଟି ହୋଇଛି । ସ୍ୱାଧୀନତା ଲାଭ ସମୟରେ ଜାମ୍ମୁ ଏବଂ କାଶ୍ମୀର ଏକ ସ୍ୱତନ୍ତ୍ର ରାଜ୍ୟର ମାନ୍ୟତା ଲାଭ କରିଥିଲା । ଜାମ୍ମୁରେ ଅଧିକ ହିନ୍ଦୁ ବାସ କରୁଥିବା ସମୟରେ କାଶ୍ମୀରରେ ଅଧିକ ମୁସଲମାନ ବାସ କରନ୍ତି । ୧୯୪୭ ମସିହାରେ ପାକିସ୍ଥାନ ଅତର୍କିତ ଆକ୍ରମଣ କରି ଏହାର ୪୨ ବର୍ଗ ମାଇଲ ପରିମିତ ସ୍ଥାନ ଅଧିକାର କରି ତା'ର ନାମ 'ଆଜାଦ କାଶ୍ମୀର' ଦେଲା । ପାକିସ୍ଥାନର ଏହି ବର୍ବରୋଚିତ ଆକ୍ରମଣରୁ ରକ୍ଷା ପାଇବା ପାଇଁ କାଶ୍ମୀରର ହିନ୍ଦୁରାଜା ହରି ସିଂ ଭାରତ ସହିତ ମିଶି ରହିବା ପାଇଁ ଆଗ୍ରହ ପ୍ରକାଶ କଲେ ଓ ସେହି ଅନୁଯାୟୀ ସନ୍ଧିପତ୍ର ସ୍ୱାକ୍ଷରିତ ହେଲା । ପୂର୍ବତନ ଜାମ୍ମୁ ଓ କାଶ୍ମୀରର ମୁଖ୍ୟମନ୍ତ୍ରୀ ସେକ୍ ଫାରୁକ୍ ଅବଦୁଲ୍ଲାଙ୍କ ପିତା ମଧ୍ୟ ଜାମ୍ମୁ ଓ କାଶ୍ମୀରକୁ କେତେକ ସ୍ୱତନ୍ତ୍ର ମର୍ଯ୍ୟାଦା ନେଇ ଭାରତରେ ରହିବାକୁ ସ୍ୱୀକୃତି ଦେଇଥିଲେ । ଜାମ୍ମୁ-କାଶ୍ମୀର ଅଧିବାସୀଙ୍କ ଉପରେ ଆକ୍ରମଣ କରି ମାନବାଧିକାରକୁ ଉଲଘଂନ କରିଥିବାରୁ ଏବଂ ସେମାନଙ୍କୁ ସହାୟତା କରିବାରୁ ଭାରତ ପାକିସ୍ଥାନ ଆକ୍ରମଣକୁ ପ୍ରତିରୋଧ କଲା ଓ ପାକିସ୍ଥାନ ବାଧ ହୋଇ ହଟିଗଲା । ମାତ୍ର ତତ୍କାଳୀନ ଭାରତୀୟ ବଡ଼ଲାଟ ମାଉଣ୍ଟବ୍ୟାଟେନ ଏଥିରେ ହସ୍ତକ୍ଷେପ କରି ଏହି ବିଷୟକୁ ଜାତିସଂଘ ମାଧ୍ୟମରେ ସମାଧାନ କରିବାକୁ ପରାମର୍ଶ ଦେଲେ । ଜାତିସଂଘର ଜଣେ କୂଟନୀତିଜ୍ଞ ମିଃ ଗ୍ରାହମ୍ ପରିସ୍ଥିତି ଅନୁଧ୍ୟାନ କରି ପାକିସ୍ଥାନ ସୈନ୍ୟମାନଙ୍କୁ କାଶ୍ମୀରରୁ ଅପସାରଣ ନିମିତ୍ତ ପରାମର୍ଶ ଦେଇଥିଲେ ହେଁ ତାହା ଗ୍ରହଣ କରାଗଲା ନାହିଁ । ଏତଦ୍‌ବ୍ୟତୀତ ବିଶ୍ୱର ବହୁ କୂଟନୀତିଜ୍ଞ କାଶ୍ମୀରକୁ ଭାରତର ଅବିଚ୍ଛେଦ୍ୟ ଅଙ୍ଗ ବୋଲି ମତାମତ ପ୍ରଦାନ କରିଥିଲେ ହେଁ ପାକିସ୍ଥାନ ତାହା ଗ୍ରହଣ କରିପାରି ନାହିଁ । ଆୟୁବ ଖାଁ ପାକିସ୍ଥାନର ଶାସକ ଥିବା ସମୟରେ ଏହାକୁ କେନ୍ଦ୍ର କରି ସେ ଭାରତ ଆକ୍ରମଣ କରିଥିଲେ । ୧୯୬୫ ମସିହାରେ ପାକିସ୍ଥାନର ପୁନର୍ବାର ଆକ୍ରମଣକୁ ଭାରତ ଦୃଢ଼ ମୁକାବିଲା କରିଥିଲା ଏବଂ ପାକିସ୍ଥାନ ପରାଜୟ ବରଣ କରିଥିଲା । ସେତେବେଳେ ଭାରତର ପ୍ରଧାନମନ୍ତ୍ରୀ ଥିଲେ ଲାଲବାହାଦୁର ଶାସ୍ତ୍ରୀ । ଭାରତ ଏବଂ ପାକିସ୍ଥାନ ମଧ୍ୟରେ ସୁସମ୍ପର୍କ ସ୍ଥାପନ ପାଇଁ ରୁଷିଆ ମଧ୍ୟସ୍ଥତା କରିଥିଲା । ଏହି କାରଣରୁ ଐତିହାସିକ 'ତାସ୍‌କେଣ୍ଟ' ଚୁକ୍ତି ସ୍ୱାକ୍ଷରିତ ହୋଇଥିଲା । ମାତ୍ର ତଦ୍ୱାରା ସୀମାନ୍ତ ସମସ୍ୟା ସମାଧାନ ହୋଇପାରିଲା ନାହିଁ ଏବଂ ୧୯୭୧ ମସିହାରେ ପାକିସ୍ଥାନ ପୁନରାୟ ଭାରତ ଆକ୍ରମଣ କଲା । ବାରମ୍ବାର ପରାଜୟ ବରଣ

କରିବା ସତ୍ତ୍ୱେ ପାକିସ୍ଥାନର ଯୁଦ୍ଧଖୋର ନୀତିରେ କୌଣସି ପରିବର୍ତ୍ତନ ହୋଇ ନାହିଁ । ଭାରତର ପଞ୍ଜାବ, କାଶ୍ମୀର, ଆସାମ, କୋଏମ୍ବାଟୁର ଆଦି ସ୍ଥାନରେ ପାକିସ୍ଥାନ ଉଗ୍ରପନ୍ଥୀଗଣ ସନ୍ତ୍ରାସବାଦୀ କାର୍ଯ୍ୟକଳାପ ଚାଲୁ ରଖିଛନ୍ତି । ପଞ୍ଜାବର ପୂର୍ବତନ ମୁଖ୍ୟମନ୍ତ୍ରୀ ବିୟନ୍ତ ସିଂହ ହତ୍ୟା ଘଟଣାରେ ପାକିସ୍ଥାନର ହାତ ରହିଥିବାର ସନ୍ଦେହ କରାଯାଉଛି । ଭାରତ ଉପରେ ପ୍ରତିଶୋଧ ନେବାପାଇଁ ପାକିସ୍ଥାନ ଭାରତରେ ଉଗ୍ରବାଦୀ କାର୍ଯ୍ୟକଳାପ ଚଳାଇଛି । ଭାରତକୁ ପୁଣି ଆକ୍ରମଣ କରିବାକୁ ଆମେରିକା, ଚୀନ ତଥା ଆରବ ଦେଶମାନଙ୍କରୁ ପ୍ରଚୁର ପରିମାଣରେ ଅସ୍ତ୍ରଶସ୍ତ୍ର ସଂଗ୍ରହ କରୁଛି । 'ଘୋରୀ' କ୍ଷେପଣାସ୍ତ୍ର ନିର୍ମାଣ କରି ଭାରତର ସୀମାନ୍ତ ସମସ୍ୟାକୁ ଅଧିକ ବିପଦାପନ୍ନ କରିଛି । ପାକିସ୍ଥାନର ବୈଜ୍ଞାନିକଗଣ ପାକିସ୍ଥାନ ପରମାଣୁ ବୋମାର ଅଧିକାରୀ ବୋଲି ସ୍ୱୀକାର କରିଛନ୍ତି । ବେନଜିର ଭୁଟ୍ଟୋଙ୍କ ପ୍ରଧାନମନ୍ତ୍ରିତ୍ୱ କାଳରେ ପାକିସ୍ଥାନରେ ଭାରତ ବିରୋଧରେ ଅପପ୍ରଚାର ଚାଲିଥିଲା । ପୂର୍ବତନ ପ୍ରଧାନମନ୍ତ୍ରୀ ନଓ୍ୱାଜ ସରିଫ୍ ମଧ୍ୟ ଭାରତ ବିରୋଧୀ କାର୍ଯ୍ୟକଳାପର ମୁଖ୍ୟ କାର୍ପଟଦାର । ପାକିସ୍ଥାନର ରାଜନୈତିକ ନେତାଗଣ ବାହାର ଦେଶରେ ଭାରତ ବିରୋଧୀ ଅଭିଯାନ ଚଳାଇଛନ୍ତି । ପାକିସ୍ଥାନର ଆଚରଣ ଓ ଗତିବିଧି ଭାରତର ସୀମାନ୍ତ ସମସ୍ୟାକୁ ଅଧିକ ଜଟିଳ କରାଇ ଦେଇଛି । ଭାରତ ନିଜର ପାକିସ୍ଥାନ ସୀମାନ୍ତକୁ ବଳଶାଳୀ ନ କଲେ ଯେକୌଣସି ମୁହୂର୍ତ୍ତରେ କ୍ଷତିଗ୍ରସ୍ତ ହେବାର ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନ ପାରେ ।

ପାକିସ୍ଥାନ ପରି ଭାରତର ଚୀନ ସୀମାନ୍ତ ସମସ୍ୟା ମଧ୍ୟ ଉଦ୍‌ବେଗଜନକ । ଅତୀତରେ ଭାରତର ଚୀନ ସହିତ ସମ୍ପର୍କ ଥିଲା ଅତ୍ୟନ୍ତ ନିବିଡ଼ । ଏହାର ସାଂସ୍କୃତିକ ଓ ସାମାଜିକ ସମ୍ବନ୍ଧ ଥିଲା ନିଗୂଢ଼ । ପ୍ରାଚୀନ ସଭ୍ୟତା ତଥା ସଂସ୍କୃତିର ଦେଶ ରୂପେ ଏହି ଦୁଇଟି ଦେଶ ସମଗ୍ର ବିଶ୍ୱରେ ଥିଲେ ଆଦର୍ଶସ୍ଥାନୀୟ । ଭାରତରୁ ଗୌତମ ବୁଦ୍ଧଙ୍କ ଦ୍ୱାରା ସୃଷ୍ଟି ଲାଭ କରିଥିବା ବୌଦ୍ଧଧର୍ମ ସମଗ୍ର ଚୀନ୍‌ରେ ଏକ ଲୋକପ୍ରିୟ ଧର୍ମ ରୂପେ ପ୍ରଚାରିତ ହୋଇଥିଲା । ଚୀନ୍‌ର ପରିବ୍ରାଜକ ହୁଏନ୍‌ସାଂ ଭାରତରେ ପ୍ରବେଶ କରି ବୌଦ୍ଧଧର୍ମ ସମ୍ପର୍କରେ ଶିକ୍ଷା ଓ ଗବେଷଣା କରିଥିଲେ । ତତ୍କାଳୀନ ଭାରତର ସମ୍ରାଟ ଅଶୋକଙ୍କ ଉଦ୍ୟମରେ ଚୀନ୍‌ରେ ବୌଦ୍ଧଧର୍ମ ପ୍ରଚାରିତ ହୋଇଥିଲା । 'ହିନ୍ଦ୍-ଚୀନ୍' ଭାଇ ଭାଇ ବୋଲି ପ୍ରଚାରିତ ହୋଇଥିଲା । ଭାରତର ପଞ୍ଚଶୀଳ ନୀତିକୁ ଚୀନ୍‌ର ତତ୍କାଳୀନ ପ୍ରଧାନମନ୍ତ୍ରୀ ଚାଉଏନ୍-ଲାଇ ସ୍ୱାଗତ କରିଥିଲେ । ଏହା ସତ୍ତ୍ୱେ ୧୯୬୨ ମସିହାରେ ଚୀନ୍‌ର ଭାରତ ଆକ୍ରମଣ ଅତୀତର ସମସ୍ତ ସମ୍ପର୍କକୁ ଭାଙ୍ଗି ଚୂରମାର କରିଦେଲା । ଏପର୍ଯ୍ୟନ୍ତ ଚୀନ୍ ଭାରତ ଭାଇ ଭାଇ ବୋଲି ଯେଉଁ ମନ୍ତ୍ର ପ୍ରଚାରିତ ହେଉଥିଲା, ତାହା ପ୍ରତାରଣାପୂର୍ଣ୍ଣ ଥିଲା ବୋଲି ପ୍ରମାଣିତ ହେଲା । ଇଂରେଜ ଶାସନରେ ତିବ୍ବତ ଥିଲା ଏକ ମଧ୍ୟବର୍ତ୍ତୀ ବଫର ରାଜ୍ୟ । ମାତ୍ର ଭାରତ ଚୀନ୍ ସହିତ ସୁସମ୍ପର୍କ ସ୍ଥାପନ ନିମିତ୍ତ ଚୀନ୍‌କୁ ଅର୍ପଣ କରିଥିଲା । ୧୯୬୨ ମସିହାରେ ଭାରତର ମହାନୁଭବତା ଉପଲବ୍ଧି କରି ନ ପାରି ପ୍ରଥମେ ତିବ୍ବତକୁ ଦଖଲ କଲା ଓ ପରେ ଭାରତର ନେଫା ଓ ଲଦାଖ ଆଦି ଅଞ୍ଚଳକୁ ଅଧିକାର କଲା । ଆନ୍ତର୍ଜାତିକ ସ୍ତରରେ ଏହାର ଆଲୋଚନା ହେଲା ଏବଂ କଲମ୍ବୋ

ସମ୍ମିଳନୀରେ ଚୀନ୍‌କୁ ଅଧିକୃତ ଅଞ୍ଚଳର ୨୦ ମାଇଲ ଦୂରକୁ ଘୁଞ୍ଚିଯିବା ନିମିତ୍ତ ପରାମର୍ଶ ଦିଆଯିବା ସତ୍ତ୍ୱେ ସେ ତାହା ଗ୍ରହଣ କଲା ନାହିଁ । ଚୀନ୍‌ର ଏହି ପ୍ରତାରଣାପୂର୍ଣ୍ଣ ଓ ବିଶ୍ୱାସଘାତକତା କାର୍ଯ୍ୟକଳାପ ଯୋଗୁଁ ଭାରତର ଉତ୍ତରପୂର୍ବ ସୀମାନ୍ତ ଏକ ଉଦ୍‌ବେଗଜନକ ସ୍ଥିତିରେ ପହଞ୍ଚିଛି । ପୁନରାୟ ପାକିସ୍ଥାନକୁ ଆଣବିକ ଜ୍ଞାନ ତଥା ବିଭିନ୍ନ ମାରଣାସ୍ତ୍ର ଯୋଗାଇଦେଇ ଚୀନ୍ ଭାରତର ସାର୍ବଭୌମତ୍ୱକୁ ବିପନ୍ନ କରିବାକୁ କୁଣ୍ଠିତ ହେଉ ନାହିଁ । ଏହି ଦୃଷ୍ଟିରୁ ଭାରତର ଚୀନ୍ ସୀମାନ୍ତ ଅତ୍ୟନ୍ତ ବିପଜ୍ଜନକ ଅବସ୍ଥାରେ ପହଞ୍ଚିଛି ।

ଭାରତର ସୀମାନ୍ତ ସମସ୍ୟା ଏକ ରାଜନୈତିକ ଚକ୍ରାନ୍ତରେ ପରିଣତ ହୋଇଛି । ପାକିସ୍ଥାନ ଚୀନ୍ ପର୍ଯ୍ୟନ୍ତ ଏହାର ସୀମାନ୍ତରେ ଗୋଟିଏ ରାସ୍ତା ନିର୍ମାଣ କରିବାକୁ ଯୋଜନା ପ୍ରସ୍ତୁତ କରିଛି । ଭାରତର ପ୍ରତିରକ୍ଷା ବାହିନୀ ପାକିସ୍ଥାନ ସୀମାନ୍ତରୁ ଅର୍ଦ୍ଧ ନିର୍ମିତ ଏକ ସୁଡ଼ଙ୍ଗକୁ ଆବିଷ୍କାର କରିଛନ୍ତି । ଚୀନ୍ ମଧ ଭାରତର ସୀମାନ୍ତରେ ରାସ୍ତା ନିର୍ମାଣ କରି ପାକିସ୍ଥାନ ସହିତ ଅବାଧ ସମ୍ପର୍କ ସ୍ଥାପନ କରିବାକୁ ଉଦ୍ୟମରତ । ଏତଦ୍‌ବ୍ୟତୀତ ପାକିସ୍ଥାନ ମିଥ୍ୟାରେ ଭାରତରେ ମାନବ ଅଧିକାରକୁ ଉଲଂଘନ କରିଛି ବୋଲି ବାହ୍ୟରେ ପ୍ରଚାର କରୁଛି । ବିଭିନ୍ନ ଆନ୍ତର୍ଜାତିକ ସମ୍ମିଳନୀରେ କାଶ୍ମୀର ସମସ୍ୟା ଉପସ୍ଥାପନ କରି ଭାରତକୁ ଅପମାନିତ କରିବାକୁ ଚେଷ୍ଟା କରୁଛି । ନିଜ ପ୍ରତି ସମ୍ବେଦନା ପ୍ରକାଶ କରିବାକୁ ଆନ୍ତର୍ଜାତିକ ସ୍ତରରେ ଭାରତକୁ ବଦନାମ କରିବାକୁ ଚେଷ୍ଟା କରୁଛି । ଭାରତର ସୀମାନ୍ତ ପ୍ରଦେଶରେ ବାରମ୍ବାର ଆକ୍ରମଣ କରି ଅଯଥା ରକ୍ତକ୍ଷୟ କରୁଛି ଓ ନିରୀହ ଜନସାଧାରଣଙ୍କ ମଧ୍ୟରେ ଆତଙ୍କ ସୃଷ୍ଟି କରୁଛି । ଜାମ୍ମୁ-କାଶ୍ମୀରରେ ନିରୀହ ବ୍ରାହ୍ମଣମାନଙ୍କ ଉପରେ ଯେଉଁ ଆକ୍ରମଣ କରାଯାଇଛି ସେଥିପ୍ରତି ପାକିସ୍ଥାନର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ରାଜନୀତି ସ୍ତରରେ ଭାରତକୁ ଏକଘରିଆ କରିବାର ଉଦ୍ୟମ କରାଯାଉଛି । ଏହା ସତ୍ତ୍ୱେ ଭାରତ ନିଜର ଧାର୍ମିକ ସମନ୍ୱୟ, ଉଦାରବାଦ ଓ ମାନବବାଦୀ ଦୃଷ୍ଟିକୋଣ ଯୋଗୁଁ ଏବେ ମଧ ବିଶ୍ୱରେ ସମ୍ମାନଜନକ ସ୍ଥିତିରେ ରହିପାରିଛି ।

ସୀମାନ୍ତ ସମସ୍ୟା ପାଇଁ ଭାରତ ବହୁପରିମାଣରେ ଅର୍ଥ ବ୍ୟୟ କରୁଥିବାରୁ ଆର୍ଥିକ ସଙ୍କଟର ସମ୍ମୁଖୀନ ହେଉଛି । ଭାରତର ଦୁଇ ସୀମାନ୍ତ ରାଷ୍ଟ୍ର ଯଥାକ୍ରମେ ଚୀନ୍ ଓ ପାକିସ୍ଥାନ ନିଜର ସୀମାନ୍ତ ପ୍ରଦେଶକୁ ଅତ୍ୟାଧୁନିକ ମାରଣାସ୍ତ୍ରରେ ସଜ୍ଜିତ କରିଥିବାରୁ ଓ ସୀମାନ୍ତରେ ବହୁପରିମାଣରେ ସୈନ୍ୟ ଠୁଳ କରିଥିବାରୁ ନିଜର ପ୍ରତିରକ୍ଷା ପାଇଁ ଭାରତ ଅନୁରୂପ ପଦକ୍ଷେପ ଗ୍ରହଣ କରିବାକୁ ବାଧ୍ୟ ହେଉଛି । ପ୍ରାକୃତିକ ବିପର୍ଯ୍ୟୟର ବାରମ୍ବାର ସମ୍ଭାବନା ଥିବାରୁ ଏଠାରେ ସୈନିକମାନଙ୍କ ନିମିତ୍ତ ସୁରକ୍ଷା ବ୍ୟବସ୍ଥା ପାଇଁ ପ୍ରଚୁର ଅର୍ଥ ଖର୍ଚ୍ଚ କରିବାକୁ ପଡୁଛି । ଏତଦ୍‌ବ୍ୟତୀତ ପାକିସ୍ଥାନ ତଥା ଚୀନ୍ ପରମାଣୁବୋମା, ମାରାତ୍ମକ କ୍ଷେପଣାସ୍ତ୍ର ତଥା ବହୁପରିମାଣରେ ରାସାୟନିକ ଅସ୍ତ୍ରଶସ୍ତ୍ର ଗଚ୍ଛିତ ରଖିଥିବାରୁ, ଭାରତ ନିଜର ସାର୍ବଭୌମତ୍ୱ ରକ୍ଷା କରିବା ନିମିତ୍ତ ଅନୁରୂପ ଅସ୍ତ୍ରଶସ୍ତ୍ର ନିର୍ମାଣରେ ପ୍ରଚୁର ବ୍ୟୟ କରୁଛି । ଜନମଙ୍ଗଳ ଉଦ୍ଦେଶ୍ୟରେ ଗଚ୍ଛିତ ଅର୍ଥ ପ୍ରତିରକ୍ଷା କ୍ଷେତ୍ରରେ ଖର୍ଚ୍ଚ ହେଉଥିବାରୁ ଏବଂ ବିଦେଶରୁ ଅସ୍ତ୍ରଶସ୍ତ୍ର ତଥା ବୈଷୟିକ ଜ୍ଞାନର ଆମଦାନୀ କରାଯାଉଥିବାରୁ ଭାରତର ବହୁଳ ବୈଦେଶିକ ମୁଦ୍ରା ଏହି କ୍ଷେତ୍ରରେ ଖର୍ଚ୍ଚ ହୋଇଯାଉଛି । ଭାରତ

ବର୍ତ୍ତମାନ ପ୍ରତିରକ୍ଷା କ୍ଷେତ୍ରରେ ବହୁପରିମାଣରେ ଆତ୍ମନିର୍ଭରଶୀଳ ହେଲେହେଁ, ପଡ଼ୋଶୀ ରାଷ୍ଟ୍ରମାନଙ୍କର ଗତିରୀତିକୁ ଲକ୍ଷ୍ୟ କରି ନିଜର ପ୍ରତିରକ୍ଷାକୁ ସୁଦୃଢ଼ କରିବାକୁ ପଡୁଥିବାରୁ ଯୋଜନା ବ୍ୟୟରେ ବହୁ ଅର୍ଥ ପ୍ରତିରକ୍ଷା କ୍ଷେତ୍ରକୁ ଯାଉଛି ଓ ସେହି କାରଣରୁ ଭାରତର ଆର୍ଥିକ ଅବସ୍ଥା ବିପର୍ଯ୍ୟୟ ହୋଇପଡୁଛି ।

କେବଳ ପାକିସ୍ଥାନ ଓ ଚୀନ ନୁହେଁ, ଭାରତର ସୀମାନ୍ତକୁ ଲାଗି ଅନ୍ୟ କେତେକ ପଡ଼ୋଶୀ ରାଷ୍ଟ୍ର ରହିଛି । ଭାରତ ସେମାନଙ୍କର ଗତିରୀତି ପ୍ରତି ଧ୍ୟାନ ଦେବାକୁ ବାଧ୍ୟ ହେଉଛି । ଅତୀତରେ ବର୍ମାରେ ମିଜୋ ତଥା ନାଗା ବିଦ୍ରୋହୀଗଣ ଆତ୍ମଗୋପନ କରି ଭାରତରେ ପ୍ରତିହିଂସାତ୍ମକ କାର୍ଯ୍ୟକଳାପ ଜାରି ରଖିଥିଲେ । ବର୍ମାର ସୀମାନ୍ତରେ ସେମାନେ ହିଂସାତ୍ମକ ଆଚରଣ ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ନିରୀହ ଜନସାଧାରଣଙ୍କ ଉପରେ ବର୍ବରୋଚିତ ଆକ୍ରମଣ କରୁଥିଲେ । ଅବଶ୍ୟ ବର୍ତ୍ତମାନ ବର୍ମା ସହିତ ଆମର ସମ୍ପର୍କ ଦୃଢ଼ୀଭୂତ ହୋଇଛି । ସେପଟରୁ ବିପଦର କୌଣସି ଆଶଙ୍କା ନ ଥିଲେ ମଧ୍ୟ ଭାରତକୁ ପ୍ରତି ମୁହୂର୍ତ୍ତରେ ସତର୍କ ରହିବାର ଆବଶ୍ୟକ ରହିଛି । ବଙ୍ଗଳାଦେଶ କାର୍ଯ୍ୟକଳାପ ସମୟେ ସମୟେ ଅବୁଝା ରହିଯାଉଛି । ଏକଦା ବଙ୍ଗଳାଦେଶର ସ୍ୱାଧୀନତାକୁ ରକ୍ଷା କରିବାରେ ଭାରତ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେହେଁ, ଶେଖ୍ ମୁଜିବୁର ରହେମାନ୍‌ଙ୍କ ନିଧନ ପରେ ସମ୍ପର୍କରେ କିଛିଟା ସଙ୍କଟ ସୃଷ୍ଟି ହୋଇଛି । ସମୟେ ସମୟେ ପାକିସ୍ଥାନ ପ୍ରତି ଏମାନେ ଯେପରି ସମ୍ବେଦନଶୀଳ ମନୋଭାବ ପ୍ରକାଶ କରୁଛନ୍ତି ଓ ଅଯଥାରେ ଅବାନ୍ତର ମତାମତ ପ୍ରକାଶ କରୁଛନ୍ତି, ଭାରତ ପ୍ରତି ତାହା ସମସ୍ୟା ସୃଷ୍ଟି କରୁଛି । ପୁନରାୟ ବହୁ ଶରଣାର୍ଥୀ ବଙ୍ଗଳାଦେଶରୁ ଆସି ଭାରତର ବିଭିନ୍ନ ସ୍ଥାନରେ ଯେପରି ବସବାସ କରୁଛନ୍ତି, ଭାରତର ଅର୍ଥନୀତି କ୍ଷେତ୍ରରେ ତାହା ପ୍ରତିକୂଳ ପରିସ୍ଥିତି ସୃଷ୍ଟି କରୁଛି । ତେଣୁ ବଙ୍ଗଳାଦେଶ ସୀମାନ୍ତ ପ୍ରତି ମଧ୍ୟ ଭାରତକୁ ସତର୍କ ରହିବାକୁ ପଡ଼ିବ । ଶ୍ରୀଲଙ୍କା ପକ୍ଷରୁ ଭାରତ ପ୍ରତି କୌଣସି ବିପଦ ନ ଥିଲେ ମଧ୍ୟ ଭାରତର ଯୋଗାଯୋଗର ମାଧ୍ୟମ ଜଳଖଣ୍ଡ ହୋଇଥିବାରୁ, ଏହାର ସୁଯୋଗ ଅନ୍ୟମାନେ ଗ୍ରହଣ କରିପାରନ୍ତି । ସାମୟିକ ଭାବେ ଶ୍ରୀଲଙ୍କା ମଧ୍ୟ କେତେକ ପ୍ରତିକୂଳ ମନ୍ତବ୍ୟ ଦେଉଛି । ଏହା ସତ୍ତ୍ୱେ ଶ୍ରୀଲଙ୍କା ଓ ଭାରତର ସମ୍ପର୍କ ନିଶ୍ଚିତ ଭାବରେ ନିବିଡ଼ । ଉଲ୍‌ଫା ସନ୍ତ୍ରାସବାଦୀମାନେ ଆସାମକୁ ସ୍ୱତନ୍ତ୍ର ରାଷ୍ଟ୍ର କରିବାରେ ଆଗ୍ରହୀ । ସେଥିପାଇଁ ସେମାନେ ବହୁ ସମୟରେ ସନ୍ତ୍ରାସବାଦୀ କାର୍ଯ୍ୟକଳାପ ଚଳାଉଛନ୍ତି । ପୁଣି ଏହା ଏକ ସୀମାନ୍ତବର୍ତ୍ତୀ ରାଜ୍ୟ ହୋଇଥିବାରୁ, ଭାରତକୁ ଆସାମ ସମସ୍ୟା ଉପରେ ସଦାବେଳେ ତୀକ୍ଷ୍ଣ ଦୃଷ୍ଟି ଦେବାକୁ ପଡ଼ିବ ।

ଭାରତର ଆର୍ଥିକ ସଙ୍କଟାବସ୍ଥା ସତ୍ତ୍ୱେ ସୀମାନ୍ତର ସୁରକ୍ଷା ନିମିତ୍ତ ପ୍ରଚୁର ପରିମାଣରେ ଅର୍ଥ ଖର୍ଚ୍ଚ କରିବାକୁ ହେବ । ସୀମାନ୍ତ ସୁରକ୍ଷା ନ ହେଲେ ଦେଶର ସାର୍ବଭୌମତ୍ୱ ବିପନ୍ନ ହୋଇପଡ଼ିବ । ତେଣୁ ସୀମାନ୍ତରେ ସାମରିକ ବାହିନୀକୁ ସୁଦୃଢ଼ କରିବାକୁ ହେବ । ଅଧିକାଂଶ ସୀମାନ୍ତ ପ୍ରଦେଶ ବରଫାବୃତ୍ତ ହୋଇଥିବାରୁ ସୈନ୍ୟମାନଙ୍କର ସୁରକ୍ଷା ପାଇଁ ଉପଯୁକ୍ତ ଦୃଷ୍ଟି ଦେବାକୁ ପଡ଼ିବ । ଯାନବାହନ ତଥା ଅସ୍ତ୍ରଶସ୍ତ୍ର ପରିବହନରେ ଅସୁବିଧା ନ ହେବା ପାଇଁ ଗମନାଗମନ ପ୍ରତି ବିଶେଷ ଧ୍ୟାନ ଦେବା ଆବଶ୍ୟକ । ଶତ୍ରୁମାନଙ୍କ ଗତିବିଧି ଲକ୍ଷ୍ୟ ପାଇଁ କମ୍ପ୍ୟୁଟର ମାଧ୍ୟମରେ ବ୍ୟବସ୍ଥା ହେବା ଉଚିତ । ଶକ୍ତିଶାଳୀ ରାଡ଼ାର ଖଞ୍ଜାଗଲେ ବହିଃଶତ୍ରୁଙ୍କ ସମ୍ପର୍କରେ ବିଭିନ୍ନ ସୂଚନା ମିଳିପାରିବ । କ୍ଷେପଣାସ୍ତ୍ରମାନ ଖଞ୍ଜାଯାଇ ଶତ୍ରୁ ଆକ୍ରମଣକୁ ପ୍ରତିହତ କରିବାର ଯୋଜନା ହେବା ବିଧେୟ ।

ଗ୍ରହଣ କରିପାରି ନ ଥିଲେ । ଯାହାଦ୍ୱାରା ମଣିଷ ଜୀବନର ସାମଗ୍ରିକ ବିକାଶ ହୋଇପାରେ, ଗାନ୍ଧିଜୀଙ୍କ ମତରେ ତାହାହିଁ ପ୍ରକୃତ ଶିକ୍ଷା । ତାଙ୍କ ମତରେ ମଣିଷର ଶରୀର, ମନ ଓ ଆତ୍ମା ମଧ୍ୟରେ ଏକ ସୁସମ୍ବନ୍ଧ ସ୍ଥାପନ କରିବା ଶିକ୍ଷାର ଲକ୍ଷ୍ୟ ହେବା ଉଚିତ । ଯେଉଁ ଶିକ୍ଷା ଶରୀର, ମନ ଏବଂ ଆତ୍ମାର ପ୍ରକୃତ ଯତ୍ନ ନେଇପାରିବ, ସେହି ପ୍ରକାର ଶିକ୍ଷାର ସେ ଥିଲେ ପକ୍ଷପାତୀ । ସମାଜର ଆବଶ୍ୟକତାକୁ ଆଖି ଆଗରେ ରଖି ଜାତୀୟ ଶିକ୍ଷାନୀତି ପ୍ରସ୍ତୁତ ହେବା ଉଚିତ ବୋଲି ସେ ମତ ଦେଉଥିଲେ । ଗୀତାର ତତ୍ତ୍ୱ ଉପରେ ତାଙ୍କର ଅଗାଧ ବିଶ୍ୱାସ ରହିଥିଲା । ପ୍ରତ୍ୟେକ ମଣିଷ ସେହି ଏକ ବିରାଟ ଆତ୍ମାର ଅଂଶବିଶେଷ ବୋଲି ସେ ମନେ କରୁଥିଲେ । ପ୍ରତ୍ୟେକ ମଣିଷ ଈଶ୍ୱର ସୃଷ୍ଟି ହୋଇଥିବାରୁ ମଣିଷ ମଧ୍ୟରେ ରହିଥିବା ଛୁଆଁ ଅଛୁଆଁ ଭେଦଭାବକୁ ସେ ତୀବ୍ର ଘୃଣା କରୁଥିଲେ । ଭାରତରେ ପରିଲକ୍ଷିତ ହେଉଥିବା ଅର୍ଥନୈତିକ ବୈଷମ୍ୟକୁ ଦୂର କରିବା ପାଇଁ ସେ ଯୋଜନା ମଧ୍ୟ ପ୍ରସ୍ତୁତ କରିଥିଲେ । ତାଙ୍କର ଧାରଣା ଥିଲା, ସମାଜର ସାମଗ୍ରିକ ବିକାଶ ସେତିକିବେଳେ ସମ୍ଭବ ହୋଇଥାଏ, ଯେତେବେଳେ ସମସ୍ତ ଅଧିକାରୀ ନିଜକୁ ଜାତୀୟ ସ୍ରୋତ ସହିତ ସାମିଲ କରିଦିଅନ୍ତି । ପୁନରାୟ ସମାଜରେ ପରିପୂରିତ ବିଭିନ୍ନ କୁସଂସ୍କାର ବିରୋଧରେ ସେ ସ୍ୱର ଉତ୍ତୋଳନ କରିଥିଲେ । ଯୌତୁକ, ପର୍ଦ୍ଦା ଓ ଜାତିପ୍ରଥାକୁ ସେ ଘୃଣା କରୁଥିଲେ । ଏହା ଦ୍ୱାରା ସାମାଜିକ ବିଭେଦ ସୃଷ୍ଟି ହେବାର ସମ୍ଭାବନା ରହିଛି ବୋଲି ତାଙ୍କର ବିଶ୍ୱାସ ଥିଲା । ପଲ୍ଲୀର ବିକାଶ ନିମିତ୍ତ ସେ କୁଟୀର ଶିଳ୍ପକୁ ପ୍ରୋତ୍ସାହନ ଦେଇଥିଲେ । ଭାରତ ଗୋଟିଏ ଗ୍ରାମବହୁଳ ଦେଶ ହୋଇଥିବାରୁ ପ୍ରଥମେ ଗ୍ରାମ୍ର ବିକାଶ ନିମିତ୍ତ ଯୋର୍ଜନା ପ୍ରସ୍ତୁତ ହେବା ଆବଶ୍ୟକ ବୋଲି ସେ ମତ ଦେଉଥିଲେ । ହସ୍ତଶିଳ୍ପ, କୁଟୀରଶିଳ୍ପକୁ ସରକାରୀ ସ୍ତରରେ ପ୍ରୋତ୍ସାହନ ମିଳିବା ଆବଶ୍ୟକ ବୋଲି ସେ ଯୁକ୍ତି କରୁଥିଲେ । ସ୍ୱାଧୀନତାର ଅର୍ଥ ସ୍ୱାବଲମ୍ବନଶୀଳତା ବୋଲି ସେ ଭାବୁ ନ ଥିଲେ । ତେଣୁ ସେ କହୁଥିଲେ, ମଣିଷ ଯେତେବେଳେ ଅନୁଭବ କରିବ, ସେ ଆର୍ଥିକ, ସାମାଜିକ, ରାଜନୀତିକ ସବୁ ସ୍ତରରେ ସ୍ୱାବଲମ୍ବନଶୀଳ ହୋଇପାରିବ, ସେତେବେଳେ ହିଁ ସ୍ୱାଧୀନତାର ପ୍ରକୃତ ମୂଲ୍ୟ ସମ୍ପର୍କରେ ସେ ଅବଗତ ହେବ ଏବଂ ଭାରତର ସାମଗ୍ରିକ ବିକାଶ ସାଧିତ ହୋଇପାରିବ । ତେଣୁ ଗାନ୍ଧିଜୀଙ୍କ ସ୍ୱପ୍ନର ଭାରତ ଥିଲା ଏକ ପରିପୂର୍ଣ୍ଣ ଭାରତ । ପରିପୂର୍ଣ୍ଣ ଭାରତ କହିଲେ ସେ ବୁଝିଥିଲେ, ସମସ୍ତ କ୍ଷେତ୍ରରେ ଆତ୍ମନିର୍ଭରଶୀଳତାକୁ ।

ଗାନ୍ଧିଜୀ କେବଳ ଭାରତର ଜଣେ ବରପୁତ୍ର ନୁହନ୍ତି; ସେ ମଧ୍ୟ ଜଣେ ମହାତ୍ମା । ତାଙ୍କର ଆଦର୍ଶର ତୁଳନା ନାହିଁ । କାୟ, ମନ ଓ ବାକ୍ୟରେ ସେ ଯେପରି ଭାରତ ଏବଂ ଭାରତୀୟଙ୍କୁ ଭଲ ପାଉଥିଲେ, ସେପରି ଅନ୍ୟ କେହି ଜଣେ ଭାରତୀୟଙ୍କୁ ଏଯାବତ୍ ଦେଖିବାକୁ ମିଳିଲା ନାହିଁ । ସ୍ୱାଧୀନତା ସଂଗ୍ରାମର ଅଗ୍ରଗାମୀ ସେନାପତି ଅଥଚ ବିନା ଅସ୍ତ୍ରରେ ଦୁର୍ଦ୍ଧର୍ଷ, କୂଟନୀତିଜ୍ଞ, ଚତୁର ଇଂରେଜମାନଙ୍କୁ ଏ ଦେଶରୁ ସେ ହଟାଇ ଦେଇପାରିଲେ । ବିଶ୍ୱ ଇତିହାସରେ ଭାରତର ସ୍ୱାଧୀନତା ସଂଗ୍ରାମର ପଟାନ୍ତର ନାହିଁ । ଏହା କେବଳ ସମ୍ଭବ ହୋଇପାରିଥିଲା ମହାତ୍ମାଗାନ୍ଧିଙ୍କ ପାଇଁ । ତେଣୁ ସେ ଏ ଜାତିର ପଥ ପ୍ରଦର୍ଶକ, ଗୁରୁ, ବନ୍ଧୁ, ଦାର୍ଶନିକ – ସବୁ କିଛି । ମାତ୍ର ଦୁଃଖର ବିଷୟ

ସ୍ୱାଧୀନତା ପରେ ଏ ଦେଶର ରାଜନୀତିଜ୍ଞ ଓ ଜନସାଧାରଣ ତାଙ୍କ ସ୍ୱପ୍ନର ସାକାର ପାଇଁ ସାମାନ୍ୟ ମାତ୍ର ଧ୍ୟାନ ଦେଉ ନାହାନ୍ତି । ତାଙ୍କର ରାମରାଜ୍ୟ ପରିକଳ୍ପନା ଆଜି ରାବଣ ରାଜ୍ୟରେ ପରିଣତ ହୋଇଯାଇଥିଲେ ମଧ୍ୟ ଆମେ ସେଥିପ୍ରତି ସାମାନ୍ୟ ମାତ୍ର ସଚେତନ ନୋହୁଁ । ତେଣୁ ଭାରତରେ ପୂଜ୍ୟପୂଜା ପରମ୍ପରା କିପରି ମହତ୍ତ୍ୱପୂର୍ଣ୍ଣ, ତାହା ଏଥିରୁ ପ୍ରମାଣିତ ।



## ନେତାଜୀ ସୁଭାଷ ଚନ୍ଦ୍ର

**(ଉପକ୍ରମ, ଜନ୍ମ, ଜୀବନୀ, ଶିକ୍ଷା ଓ ରାଜନୀତିକ ଜୀବନ, ଆଜାଦହିନ୍ଦ ଫୌଜ, ମୃତ୍ୟୁ ସମ୍ପର୍କରେ ଧାରଣା, ଉପସଂହାର)**

ଭାରତରେ ଅନେକ ନେତା ଅଛନ୍ତି; ମାତ୍ର ନେତାଜୀ କହିଲେ କେବଳ ସୁଭାଷ ଚନ୍ଦ୍ର ବୋଷଙ୍କୁ ହିଁ ବୁଝାଇଥାଏ । ତାଙ୍କର ବ୍ୟକ୍ତିତ୍ୱ, ନିଷ୍ଠା, ଦୃଢ଼ ସଂକଳ୍ପ ଓ ସାହସ ଆଜି ପର୍ଯ୍ୟନ୍ତ ଅନ୍ୟ କୌଣସି ନେତାଙ୍କ କ୍ଷେତ୍ରରେ ଦେଖାଯାଇ ନ ଥାଏ । ତାଙ୍କର ଜୀବନ ବହୁ ରୋମାଞ୍ଚକର ଅନୁଭୂତିରେ ପରିପୂର୍ଣ୍ଣ । ଭାରତରୁ ବର୍ମା, ପୁଣି ଜର୍ମାନରୁ ଜାପାନ, ଜାପାନରୁ ଦିଲ୍ଲୀ-ସୁଦୀର୍ଘ ପଥ ଅତିକ୍ରମରେ ସାମାନ୍ୟ ବି କ୍ଳାନ୍ତି ନ ଥିଲା ମନରେ । ତାଙ୍କ ଜୀବନର ରୋମାଞ୍ଚକର ଅନୁଭୂତି ସତେଯେପରି ଏକ ରହସ୍ୟ ଉପନ୍ୟାସ । ରହସ୍ୟ ଉପନ୍ୟାସର ନାୟକ ପରି କାହିଁ ଗୋଟିଏ ଦିନରେ ଶହ ଶହ ମାଇଲ ଅତିକ୍ରମ । ଏଭଳି ଏକ ବିରଳ ବ୍ୟକ୍ତିତ୍ୱ ଭାରତରେ ଆଉ କେବେ ଦେଖାଯିବ ନାହିଁ । ଭାରତୀୟଙ୍କୁ ଭଲପାଇବାକୁ ଯାଇ ସେ ହୋଇଥିଲେ ସ୍କୁଲରୁ ବିତାଡ଼ିତ, ଦେଶକୁ ଭଲପାଇବାକୁ ଯାଇ ସେ ହେଲେ ଭାରତରୁ ବିତାଡ଼ିତ ଓ ସ୍ୱାଧୀନତାକୁ ଭଲପାଇବାକୁ ଯାଇ ସେ ହେଲେ ତଥାକଥିତ ବ୍ୟକ୍ତିମାନଙ୍କ ଦୃଷ୍ଟିରେ ବିଦ୍ରୋହୀ । ବ୍ୟକ୍ତିଗତ ସ୍ୱାର୍ଥ ନ ଥାଇବି ସେ ସମୟର ସବୁଠାରୁ ଲୋଭନୀୟ ପଦବୀ ଆଇ.ସି.ଏସ ତ୍ୟାଗ କରିଥିଲେ । ତାଙ୍କ ଜୀବନ ଏକ ଖୋଲା ବହି, ରହସ୍ୟ ଓ ରୋମାଞ୍ଚରେ ଭରା । ବୋଧହୁଏ ସେ ସମୟର ପ୍ରକୃତ ଭାରତମାତାର ସେ ହେଉଛନ୍ତି ସବୁଠାରୁ ଯୋଗ୍ୟତମ ସନ୍ତାନ ।

ଏହିପରି ଏକ ବୀର ସନ୍ତାନଙ୍କର ଜନ୍ମ ହୋଇଥିଲା ୧୮୯୭ ମସିହା ଜାନୁୟାରୀ ୨୩ ତାରିଖରେ କଟକର ଓଡ଼ିଆବଜାରରେ, ପିତା ଜାନକୀନାଥ ବୋଷ ଏବଂ ମାତା ପ୍ରଭାବତୀଙ୍କ ଔରସରୁ । ତାଙ୍କ ପିତାଙ୍କର ସର୍ବମୋଟ ୧୪ଟି ସନ୍ତାନ ମଧ୍ୟରୁ ସେ ଥିଲେ ନବମ ସନ୍ତାନ । ତାଙ୍କର ବାଲ୍ୟଶିକ୍ଷା ଆରମ୍ଭ ହୋଇଥିଲା ମିଶନାରୀମାନଙ୍କ ଦ୍ୱାରା ପରିଚାଳିତ ଏକ ଇଂରାଜୀ ସ୍କୁଲରେ । ୧୯୦୯ ମସିହାରେ ସେ ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ନାମ ଲେଖାଇଲେ । ପିତାମାତାଙ୍କ ପ୍ରତି ତାଙ୍କ ହୃଦୟରେ ଭରି ରହିଥିଲା ଅଗାଧ ଭକ୍ତି । ତାଙ୍କ ଦୃଷ୍ଟିରେ ପିତାଙ୍କର ସ୍ଥାନ ଦେବତାଙ୍କ ଠାରୁ ମଧ୍ୟ ଊର୍ଦ୍ଧ୍ୱରେ । ପାଠ ସହିତ ବ୍ରହ୍ମଚର୍ଯ୍ୟ ଓ ଧ୍ୟାନଯୋଗ ସାଧନାରେ

ସେ ବହୁ ସମୟ ବ୍ୟୟ କରୁଥିଲେ । ୧୯୧୩ ମସିହା ମାର୍ଚ୍ଚ ମାସରେ ଅନୁଷ୍ଠିତ ଏଣ୍ଟ୍ରାନ୍ସ ପରୀକ୍ଷାରେ ସେ ସମଗ୍ର ବଙ୍ଗ, ବିହାର ଓ ଓଡ଼ିଶାରେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲେ । ପିଲାଟି ଦିନରୁ ସେ ଥିଲେ ସ୍ୱାଧୀନଚେତା । ଜନ୍ମ ମାଟିକୁ ସେ ଗଭୀର ଭାବରେ ଭଲ ପାଉଥିଲେ । ପ୍ରତ୍ୟେକ ଭାରତୀୟଙ୍କ ପ୍ରତି ତାଙ୍କ ହୃଦୟରେ ଭରି ରହିଥିଲା ସମ୍ମାନବୋଧ । ତେଣୁ ଇଂରେଜ ଶାସନରେ କୌଣସି ଭାରତୀୟଙ୍କୁ ଅପମାନ କରାଗଲେ ସେ ତୀବ୍ର ପ୍ରତିକ୍ରିୟାଶୀଳ ହୋଇ ଉଠୁଥିଲେ । ପ୍ରେସିଡେନ୍ସୀ କଲେଜରେ ଅଧ୍ୟୟନ ସମୟରେ ଅଧ୍ୟାପକ ଓଟେନ୍‌ଙ୍କର ଭାରତୀୟଙ୍କ ପ୍ରତି ଅପମାନସୂଚକ ମନ୍ତବ୍ୟରେ ପ୍ରତିକ୍ରିୟାଶୀଳ ହୋଇ ସେ ତାଙ୍କୁ ଶ୍ରେଣୀ ଗୃହରେ ଅପମାନିତ କରିଥିଲେ । ଫଳରେ ତାଙ୍କୁ କଲେଜରୁ ବିତାଡ଼ିତ ହେବାକୁ ପଡ଼ିଲା । ତା ପରେ ସେ ସ୍କଟିସ୍ ଚର୍ଚ୍ଚ କଲେଜରେ ଦର୍ଶନ ଶାସ୍ତ୍ରରେ ଅନର୍ସ ସହିତ ପ୍ରଥମ ଶ୍ରେଣୀରେ ଦ୍ୱିତୀୟ ସ୍ଥାନ ରଖି ଉତ୍ତୀର୍ଣ୍ଣ ହୋଇଥିଲେ । ପିତାଙ୍କ ନିର୍ଦ୍ଦେଶରେ ଆଇ.ସି.ଏସ. ପରୀକ୍ଷା ପାଇଁ ସେ ବିଲାତ ଯାତ୍ରା କରିଥିଲେ । କୃତିତ୍ୱର ସହିତ ଚତୁର୍ଥ ସ୍ଥାନ ଲାଭ କରି ଉତ୍ତୀର୍ଣ୍ଣ ହୋଇଥିଲେ । ସେ ଚାହିଁଥିଲେ ଏକ ଲୋଭନୀୟ ସରକାରୀ ଚାକିରି ପାଇ ବିଳାସ ଓ ପ୍ରାଚୁର୍ଯ୍ୟରେ ଜୀବନ ଅତିବାହିତ କରିପାରିଥାନ୍ତେ । ମାତ୍ର ତାଙ୍କର ଜୀବନ ଗଢ଼ା ଥିଲା ଅନ୍ୟ ଉପାଦାନରେ । ଦେଶର ସେବାପାଇଁ ସେ ପ୍ରଥମରୁ ହିଁ ନିଜକୁ ଉତ୍ସର୍ଗ କରି ଦେଇଥିଲେ । ଗୋଟିଏ ସରକାରୀ କ୍ଷୁଦ୍ର ଚାକିରି ମଧ୍ୟରେ ସେ ତାଙ୍କର ମୂଲ୍ୟବାନ ଜୀବନଟିକୁ ନଷ୍ଟ କରିବାକୁ ଚାହୁଁ ନ ଥିଲେ । ପରାଧୀନ ଭାରତବର୍ଷର ଦୁଃଖ ତାଙ୍କୁ ପ୍ରତିମୁହୂର୍ତ୍ତରେ ତାଙ୍କର କର୍ତ୍ତବ୍ୟ ପ୍ରତି ସଚେତନ କରାଇ ଦେଉଥିଲା । ତେଣୁ ଅଧ୍ୟୟନ ପରେ ପରେ ଦେଶ ସେବା ପାଇଁ ସେ ରାଜନୀତିକ ଜୀବନକୁ ବରଣ କରିନେଲେ ।

୧୯୨୦ ମସିହାରେ ସେ ସମୟର ସବୁଠାରୁ ଉଚ୍ଚତର ପରୀକ୍ଷା ଆଇ. ସି.ଏସ. ରେ ଚତୁର୍ଥ ସ୍ଥାନ ଲାଭ କରିବା ପରେ ସମସ୍ତେ ଅନୁମାନ କରି ନେଇଥିଲେ, ବ୍ରିଟିଶ ରାଜତ୍ୱରେ ଏକ ବଡ଼ ଚାକିରି କରି ଦିନ ଅତିବାହିତ କରିବେ । ବିଲାତରେ ଥିବା ସମୟରେ ସେ ବିଶ୍ୱର ରାଜନୀତିକ ପରିବର୍ତ୍ତନକୁ ଲକ୍ଷ୍ୟ କରୁଥିଲେ । ସେତେବେଳେ ବିଶ୍ୱଯୁଦ୍ଧ ଓ ସ୍ୱାଧୀନତା ସଂଗ୍ରାମ ବିଶ୍ୱର ରାଜନୀତିକ ଆକାଶକୁ ପ୍ରତିମୁହୂର୍ତ୍ତରେ ପରିବର୍ତ୍ତନ କରି ଦେଉଥିଲା । ସେହିଠାରେ ଥାଇ ସୁଭାଷଚନ୍ଦ୍ର ତାଙ୍କର ଭବିଷ୍ୟତ କାର୍ଯ୍ୟପନ୍ଥା ସ୍ଥିର କରିନେଇଥିଲେ । ଏହି ସମୟରେ ମହାତ୍ମାଗାନ୍ଧିଙ୍କ ନେତୃତ୍ୱରେ ଭାରତରେ ମଧ୍ୟ ସ୍ୱାଧୀନତା ଆନ୍ଦୋଳନ ତୀବ୍ରତର ହୋଇ ଉଠୁଥିଲା । ସୁଭାଷ ବିଲାତରୁ ଭାରତ ଅଭିମୁଖେ ଯାତ୍ରା କରି ୧୯୨୧ ଏପ୍ରିଲ ୧୬ ତାରିଖରେ ବମ୍ବେରେ ପହଞ୍ଚି ସ୍ୱାଧୀନତା ଆନ୍ଦୋଳନର ଶ୍ରେଷ୍ଠ ସାରଥି ମହାତ୍ମାଗାନ୍ଧିଙ୍କୁ ସାକ୍ଷାତ୍ କଲେ । ଏହି ଯୁବକଟିର ବ୍ୟକ୍ତିତ୍ୱ, ଜ୍ଞାନ ଓ ଦେଶସେବା ପାଇଁ ଉତ୍ସର୍ଗୀକୃତ ମନୋଭାବର ଯଥାର୍ଥ ପରିଚୟ ପାଇପାରିଥିଲେ ଗାନ୍ଧିଜୀ ସେହି ପ୍ରଥମ ସାକ୍ଷାତରୁ । ଗାନ୍ଧିଜୀଙ୍କ ପରାମର୍ଶ କ୍ରମେ ସେ କଲିକତାରେ ଦେଶବନ୍ଧୁ ଚିତ୍ତରଞ୍ଜନଙ୍କ ସହିତ ସାକ୍ଷାତ୍ କରି ତାଙ୍କ ନେତୃତ୍ୱରେ ଦେଶସେବା କାର୍ଯ୍ୟରେ ଲାଗି ପଡ଼ିଥିଲେ । ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ ସେ କାରାବରଣ କରିଥିଲେ । କଲିକତା କର୍ପୋରେସନ୍‌ର ଚିଫ୍ ଏକ୍ସିକ୍ୟୁଟିଭ ଅଫିସର ମଧ୍ୟ ହୋଇଥିଲେ । ସୁଭାଷ ଥିଲେ ସାଲିସହୀନ

ବ୍ୟକ୍ତିତ୍ୱ । ସ୍ୱାଧୀନତାକୁ ଏକ ଅଧିକାର ବୋଲି ସେ ଗ୍ରହଣ କରିନେଇଥିଲେ । ଏହା ସତ୍ତ୍ୱେ ପ୍ରାଥମିକ ପର୍ଯ୍ୟାୟରେ ସେ ଗାନ୍ଧିଜୀଙ୍କର ବିରୋଧ କରି ନ ଥିଲେ । ବ୍ରିଟିଶ ବିରୋଧୀଙ୍କ ସହିତ ସମ୍ପର୍କ ରହିଥିବାର ସନ୍ଦେହ କରାଯାଇ ତାଙ୍କୁ ବର୍ମାର ମାଣ୍ଡାଲେ ଜେଲରେ ରଖାଯାଇଥିଲା । ପରେ ତାଙ୍କୁ ଖଲାସ କରି ଦିଆଗଲା । ୧୯୩୦ ମସିହାରେ ଗାନ୍ଧିଜୀଙ୍କ ନେତୃତ୍ୱରେ ହୋଇଥିବା ଲବଣ ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗ ଦେଇ ସେ ଲାଠି ମାଡ଼ରେ ଆହତ ହୋଇଥିଲେ । ୧୯୩୮ ମସିହାରେ ହରିପୁର ଠାରେ ସେ ଜାତୀୟ କଂଗ୍ରେସର ସଭାପତି ରୂପେ ନିର୍ବାଚିତ ହୋଇଥିଲେ । ଗାନ୍ଧିଜୀଙ୍କର ନରମପନ୍ଥୀ ମନୋଭାବକୁ ସେ ଅନ୍ତରରେ ଗ୍ରହଣ କରିପାରୁନଥିଲେ । ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ଜାତୀୟ କଂଗ୍ରେସରେ ତାଙ୍କୁ ଏକ ସମ୍ମାନଜନକ ସ୍ଥାନ ପ୍ରଦାନ କରିଥିଲା । ସେ ଇଂରେଜମାନଙ୍କ ସହିତ କୌଣସି କ୍ଷେତ୍ରରେ ସାଲିସ କରିବାକୁ ଚାହୁଁନଥିଲେ । ସେ ଥିଲେ ଚରମପନ୍ଥୀ ଆଦର୍ଶରେ ଦୀକ୍ଷିତ । ତାଙ୍କର ଏହି ମନୋବୃତ୍ତି ଗାନ୍ଧିଜୀ ତଥା ତାଙ୍କ ଅନୁସରଣକାରୀମାନଙ୍କ ପ୍ରତି ଅସହ୍ୟ ଥିଲା । ସେମାନଙ୍କ ମନୋବୃତ୍ତି ଓ କାର୍ଯ୍ୟପଦ୍ଧତି ସହିତ ସାଲିସ କରିନପାରି ସୁଭାଷ ୧୯୩୯ ମସିହାରେ ସଭାପତି ପଦରୁ ଇସ୍ତଫା ଦେଲେ । ମାତ୍ର ଦେଶ ସେବାର ସେହି ପରମ କର୍ତ୍ତବ୍ୟବୋଧରୁ ସେ ନିଜକୁ ନିବୃତ୍ତ ରଖିପାରିଲେ ନାହିଁ । ୧୯୩୯ ମସିହାରେ ଫରୱାର୍ଡ ବ୍ଲକ ନାମରେ ଏକ ନୂତନ ଦଳ ଗଠନ କରି ତାହାର ସେ ନେତୃତ୍ୱ ନେଲେ ।

ଭାରତରେ ସୁଭାଷ ବୋଷଙ୍କୁ ଇଂରେଜମାନେ ତାଙ୍କର ଏକ ବଡ଼ ଶତ୍ରୁଭାବରେ ପରିଗଣିତ କରୁଥିଲେ । ତେଣୁ ତାଙ୍କ ଶକ୍ତିକୁ ଅଧିକ ଦୃଢ଼ୀଭୂତ ନ କରାଇ ଦେବାକୁ ସେମାନେ ବିଭିନ୍ନ ଉଦ୍ୟମ ଜାରି ରଖିଥିଲେ । ୧୯୩୯ ମସିହାରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଗଲା । ଇଂଲଣ୍ଡ ଏଥିରେ ପ୍ରତ୍ୟକ୍ଷ ଭାବରେ ସଂପୃକ୍ତ ହୋଇପଡ଼ିବାରୁ ସୁଭାଷ ଏହାର ସୁଯୋଗ ଲାଭ କରିବାକୁ ତତ୍ପର ହୋଇ ଉଠିଲେ । ତାଙ୍କର ମନୋବୃତ୍ତି ଇଂରେଜମାନଙ୍କୁ ଅଜଣା ନ ଥିଲା । ତେଣୁ ସେମାନେ ତାଙ୍କୁ ୧୯୪୦ ମସିହାରେ କାରାରୁଦ୍ଧ କଲେ । ସେ ଏହାର ପ୍ରତିବାଦ ସ୍ୱରୂପ ଅନଶନ କରିବାରୁ ତାଙ୍କୁ କାରାଗାରରୁ ମୁକ୍ତ କରାଗଲା । ମାତ୍ର ସଦାବେଳେ ନଜରବନ୍ଦୀ ଅବସ୍ଥାରେ ସମୟ ଅତିବାହିତ କରିବାକୁ ପଡ଼ିଲା । ଏହା ସତ୍ତ୍ୱେ ସୁଭାଷ ନିଜର କାର୍ଯ୍ୟକଳାପରୁ ଆଦୌ ଓହରି ଯାଇ ନ ଥିଲେ । ୧୯୪୧ ମସିହା ଜାନୁଆରୀ ମାସ ୧୬ ତାରିଖରେ ଜିଆଉଦ୍ଦିନଙ୍କ ଛଦ୍ମବେଶରେ ସେ ଭାରତ ତ୍ୟାଗ କଲେ । ଆଫଗାନ୍‌ସ୍ଥାନ, କାବୁଲ ଆଦି ଦେଇ ସେ ପହଞ୍ଚିଲେ ଜର୍ମାନରେ । ଜର୍ମାନୀରେ ଏକଛତ୍ରବାଦୀ ଶାସକ ହିଟ୍‌ଲରଙ୍କ ସହିତ ଯୋଗାଯୋଗ ରକ୍ଷାକରି ସେଠାରେ ବନ୍ଦୀ ରହିଥିବା ଭାରତୀୟ ସୈନ୍ୟଙ୍କୁ ମୁକ୍ତ କରି ଆଜାଦ ହିନ୍ଦ୍ ଫୌଜ ଗଠନ କଲେ । ସିଙ୍ଗାପୁରରେ ଭାଷଣ ଦେବା ଅବସରରେ ସେଠାକାର ଭାରତୀୟମାନଙ୍କୁ ଉଦ୍‌ବୋଧନ ଦେଇ କହିଥିଲେ – ‘‘ତୁମେ ମୋତେ ରକ୍ତ ଦିଅ – ମୁଁ ତୁମକୁ ସ୍ୱାଧୀନତା ଦେବି ।’’ ବିପ୍ଳବୀ ରାସବିହାରୀ ବସୁଙ୍କ ସହିତ ସାକ୍ଷାତ୍ ଦ୍ୱାରା ସୁଭାଷଙ୍କର ମନୋବଳ ବୃଦ୍ଧି ପାଇଥିଲା । ଜର୍ମାନରୁ ଜାପାନ ଆସିବା ପରେ ଜାପାନରୁ ସେ ସମସ୍ତ ପ୍ରକାର ସୁବିଧା ସୁଯୋଗ ଲାଭ କଲେ ।

'ଆଜାଦ୍ ହିନ୍ଦ୍ ଫୌଜ' ମାଧ୍ୟମରେ ସେ ସ୍ୱପ୍ନ ଦେଖିଲେ ସ୍ୱାଧୀନ ଭାରତର । ସିଙ୍ଗାପୁର ଠାରେ ସେ ସ୍ୱାଧୀନ ଭାରତୀୟ ସରକାର ଗଠନ କଲେ । ଭାରତୀୟ ନାଗରିକମାନଙ୍କୁ ସାମ୍ରାଜ୍ୟବାଦୀ ଇଂରେଜ ଶାସକଙ୍କ ବିରୋଧରେ ଯୁଦ୍ଧ ଘୋଷଣା କରିବାକୁ ସେ ଆହ୍ୱାନ କଲେ । 'ଆଜାଦ୍ ହିନ୍ଦ୍ ଫୌଜ୍' କୁ ସଙ୍ଗଠିତ କରି ସେ ଇଂରେଜ ଶାସକ ବିରୋଧରେ ପ୍ରତ୍ୟକ୍ଷ ସଂଗ୍ରାମ କରିବାକୁ ସ୍ଥିର କଲେ । ତା ପରେ ସେ ଡାକ ଦେଲେ –'ଦିଲ୍ଲୀ ଚଲ୍ଲୋ' । ସାହସ ଏବଂ ଧୈର୍ଯ୍ୟର ସହିତ ବର୍ମା ସୀମା ଅତିକ୍ରମ କରି ସୁଭାଷ ତାଙ୍କର 'ଆଜାଦ୍ ହିନ୍ଦ୍ ଫୌଜ'ଙ୍କୁ ନେଇ ଭାରତ ମାଟିରେ ପଦାର୍ପଣ କଲେ । କୋହିମା ଦଖଲ କରି ମଣିପୁରର ଇମ୍ଫାଲଠାରେ ଭାରତର ସ୍ୱାଧୀନତା ପତାକା ଉଡ଼ାଇଲେ । ମାତ୍ର ହଠାତ୍ ଦୁର୍ଭାଗ୍ୟର ରାତ୍ରି ମାଡ଼ିଆସିଲା । ଜର୍ମାନ୍ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ପରାଜିତ ହେଲା । ଜାପାନ 'ଆଜାଦ୍ ହିନ୍ଦ୍ ଫୌଜ'କୁ ଦେଉଥିବା ସାହାଯ୍ୟ ବନ୍ଦ କରିଦେଲା । ଇଂରେଜମାନେ ସୁଭାଷଙ୍କ ଦ୍ୱାରା ଅଧିକୃତ ହୋଇଥିବା ସ୍ଥାନଗୁଡ଼ିକୁ ପୁଣି କବଳିତ କରିନେଲେ । ବାଧ୍ୟ ହୋଇ ସେମାନେ ଫେରିଆସିଲେ । ସ୍ୱପ୍ନ ଅଧା ରହିଗଲା । ମାନସିକ ଯନ୍ତ୍ରଣାରେ ଛଟପଟ ହେଲେ ସୁଭାଷ । ସେ ତାଙ୍କର ବାମପନ୍ଥୀ ଚିନ୍ତାଧାରା ଯୋଗୁଁ ରୁଷ ଯାଇ ପୁଣି ସେଠାରେ ସୈନ୍ୟ ସଂଗ୍ରହ କରି ଇଂରେଜମାନଙ୍କ ସହିତ ଯୁଦ୍ଧ କରିବାକୁ ଯୋଜନା ପ୍ରସ୍ତୁତ କଲେ । ୧୯୪୫ ମସିହାରେ ରୁଷ ଯିବା ପାଇଁ ସୁଭାଷ ସାଇଗନ୍‌ଠାରେ ଉଡ଼ାଜାହାଜରେ ବସିଥିଲେ । ତାପର ଘଟଣା ଏବେ ବି ସଂଶୟାଚ୍ଛନ୍ନ ।

କେତେକ କୁହନ୍ତି ଉଡ଼ାଜାହାଜରେ ଯାତ୍ରା କରିବା ସମୟରେ ବାଟରେ ଦୁର୍ଘଟଣା ଘଟି ସୁଭାଷବୋଷ ମୃତ୍ୟୁବରଣ କରିଛନ୍ତି । ଅନ୍ୟ କେତେକ ତାଙ୍କର ମୃତ୍ୟୁ ଘଟଣାକୁ ଏପର୍ଯ୍ୟନ୍ତ ବିଶ୍ୱାସ କରିବାକୁ ରାଜି ନୁହନ୍ତି । ପ୍ରକୃତରେ ସୁଭାଷ ବୋଷ ମୃତ କି ଜୀବିତ ସେ ସମ୍ପର୍କୀୟ କୌଣସି ସତ୍ୟପୂର୍ଣ୍ଣ ତଥ୍ୟ ଏଯାବତ୍ ଉଦ୍ଧାର କରାଯାଇପାରି ନାହିଁ । ସେଥିପାଇଁ ଭାରତରେ ତାଙ୍କର ଜନ୍ମଜୟନ୍ତୀଟିକୁ ହିଁ ପାଳନ କରାଯାଉଛି । ତେବେ ସେ ମୃତ ହୁଅନ୍ତୁ କିମ୍ବା ଜୀବିତ ଥାଆନ୍ତୁ, ଭାରତ ମାଟିର ସେ ଏକ ଯୋଗ୍ୟ ଓ ବୀର ସନ୍ତାନ, ଏହା କଦାପି ଅସ୍ୱୀକାର କରାଯାଇ ନ ପାରେ । ଅନେକ ଚିନ୍ତାଶୀଳ ବ୍ୟକ୍ତି ମତପ୍ରଦାନ କରି କହିଥାନ୍ତି, ଯଦି ଆଜାଦ୍ ହିନ୍ଦ୍ ଫୌଜର ସଂଗ୍ରାମ ଦ୍ୱାରା ଭାରତ ସ୍ୱାଧୀନତା ଲାଭ କରିଥାନ୍ତା, ତେବେ ହୁଏତ ଭାରତର ରୂପ ଅନ୍ୟପ୍ରକାର ହୋଇଥାନ୍ତା । ଦୁର୍ନୀତି, ଅତ୍ୟାଚାର ଓ କଳାବଜାରୀ ଯେପରି ଭାରତର ରାଜନୀତିକୁ କଳୁଷିତ କରୁଛି, ତାହା ହୁଏତ କରିପାରିନଥାନ୍ତା । ରାଜନୀତିକ ଭ୍ରଷ୍ଟାଚାର ଏବଂ ରାଜନୀତିକ ନେତାମାନଙ୍କର ଚରିତ୍ର ଏତେ ନିମ୍ନଗାମୀ ହୋଇପାରିନଥାଆନ୍ତା । ବର୍ତ୍ତମାନର ଭାରତ ସୁଭାଷବୋଷଙ୍କ ପରିକଳ୍ପିତ ଭାରତ ନୁହେଁ । ସବୁଠାରୁ ଦୁଃଖର ବିଷୟ ବର୍ତ୍ତମାନର ଭାରତକୁ ପ୍ରକୃତରେ କେହି ଚାହୁଁନଥିଲେ । ସ୍ୱପ୍ନ ଥିଲା ଅନ୍ୟକିଛି, ମାତ୍ର ବାସ୍ତବତା ତାକୁ ପରିଣତ କଲା ଅନ୍ୟ କିଛିରେ ।

ସୁଭାଷ ବୋଷ ବୋଧହୁଏ ଭାରତମାତାର ପ୍ରକୃତ ସୁଯୋଗ୍ୟ ସନ୍ତାନ । ମା'ର ସମ୍ମାନ ରକ୍ଷା କରିବାକୁ ଯାଇ ସେ ନିଜର ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟ ତ୍ୟାଗ କରିଥିଲେ । ସ୍ୱାଧୀନତାକୁ ଏକ ଦାନ ଭାବରେ ଗ୍ରହଣ କରିବାର ସେ ଆଦୌ ପକ୍ଷପାତୀ ନ ଥିଲେ । ତେଣୁ ସେ ଚାହୁଁଥିଲେ

ସଂଗ୍ରାମ । ନିଜ ଅଧିକାରକୁ କେବଳ ସଂଗ୍ରାମ ଦ୍ୱାରା ହିଁ ହାସଲ କରାଯାଇପାରେ । ଦୁଃଖର ବିଷୟ, ସୁଭାଷ ବୋଷଙ୍କ ସ୍ୱପ୍ନ ଶେଷ ପର୍ଯ୍ୟନ୍ତ ସ୍ୱପ୍ନରେ ହିଁ ରହିଗଲା । ତାଙ୍କର ପ୍ରଦର୍ଶିତ ମାର୍ଗ ଅଧାରୁ ହିଁ ବନ୍ଦ ହୋଇଗଲା । ତାଙ୍କର ଆଦର୍ଶ, ବଳିଷ୍ଠ ବ୍ୟକ୍ତିତ୍ୱ, ଯାହା ଦିନେ ସମଗ୍ର ଇଂରେଜ ଜାତିଙ୍କ ମଧ୍ୟରେ ହୃତ୍‌କମ୍ପ ସୃଷ୍ଟି କରିପାରିଥିଲା, ବର୍ତ୍ତମାନର ଭାରତୀୟମାନେ ତାହାକୁ ଅନୁସରଣ ନ କରିବା ପରିତାପର ବିଷୟ । ଜନ୍ମ ଜୟନ୍ତୀର ଭାଷଣ କେବଳ ଲୋକ ଦେଖାଣିଆ । ଆମେ ତାଙ୍କୁ ପ୍ରକୃତରେ କେତେ ପରିମାଣରେ ଭଲପାଉ, ତାହା ଯଦି ଆମ କାର୍ଯ୍ୟରେ ପ୍ରତିଫଳିତ ହୋଇପାରନ୍ତା, ତେବେ ସୁଭାଷଙ୍କ ଉତ୍ତରଦାୟାଦ ଭାବରେ ଆମେ ନିଜକୁ ଗର୍ବ କରିପାରନ୍ତେ । ଦୁର୍ନୀତି, କଳାବଜାର, ଅନ୍ୟାଚାର, ପ୍ରିୟାପ୍ରୀତି ତୋଷଣ ଆଜି ଯେଉଁ ଭାରତର ଗତିକୁ ଅବରୋଧ କରିଛି ଏବଂ ଆମେ ଯେଉଁମାନେ ନିର୍ବିକାରରେ ତାହାକୁ ସହ୍ୟ କରିଯାଉଛୁ, ସେହି ଦୃଷ୍ଟିରୁ ସୁଭାଷଙ୍କ ପ୍ରକୃତ ଉତ୍ତରଦାୟାଦ ରୂପେ ନିଜକୁ ଦାବି କରିବାର କୌଣସି ନୈତିକ ଅଧିକାର ଆମର ନାହିଁ ।



## ଜବାହରଲାଲ ନେହେରୁ

**(ଉପକ୍ରମ, ଜନ୍ମ, ଜୀବନୀ, ସ୍ୱାଧୀନତା ସଂଗ୍ରାମ ଓ ନେହେରୁ, ସ୍ୱାଧୀନତା ପରବର୍ତ୍ତୀ ଭାରତରେ ନେହେରୁ, ଉପସଂହାର)**

ପୃଥିବୀରେ ଅନେକ ମଣିଷ ଏମିତି ଜନ୍ମ ହୁଅନ୍ତି ଓ ମରନ୍ତି । ପ୍ରତିଦିନ କ୍ୟାଲେଣ୍ଡରର ପୃଷ୍ଠା ବଦଳି ବଦଳି ଚାଲେ । ମାତ୍ର ଏମିତି କେତେକ ଲୋକ ଅଛନ୍ତି, ଯେଉଁମାନଙ୍କ ନିକଟରେ କ୍ୟାଲେଣ୍ଡରର ପୃଷ୍ଠା ଅଟକିଯାଏ । ସେହିମାନେ ହିଁ ପ୍ରକୃତରେ ମହାମାନବ । ସେମାନଙ୍କର କାର୍ଯ୍ୟକଳାପ, ଆଚାର ସମଗ୍ର ମାନବସମାଜର ଅନୁକରଣୀୟ ହୋଇ ରହିଯାଏ । ସେହିମାନଙ୍କର ଜନ୍ମ ଏବଂ ମୃତ୍ୟୁ ଦିବସ ସବୁଦିନ ପାଇଁ ସ୍ମରଣୀୟ ଦିବସ ରୂପେ ପରିଗଣିତ ହୋଇଥାଏ । ଦେଶ ବା ଜାତିର ସଙ୍କଟମୟ ଅବସ୍ଥାରେ ଏମାନେ ଜନ୍ମଗ୍ରହଣ କରିଥାନ୍ତି ଓ ନିଜର କାର୍ଯ୍ୟାବଳୀ ଦ୍ୱାରା ଜାତିର ସଙ୍କଟ ଦୂର କରିଥାନ୍ତି । ଭାରତର ଏହିପରି ଜଣେ ବ୍ୟକ୍ତିତ୍ୱ ପଣ୍ଡିତ ଜବାହରଲାଲ ନେହେରୁ । ମହାତ୍ମାଗାନ୍ଧିଙ୍କ ପରେ ଭାରତୀୟ ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ପ୍ରାତଃସ୍ମରଣୀୟ ନାମ । ମୋତିଲାଲ ନେହେରୁଙ୍କର ଏକମାତ୍ର ପୁତ୍ର ଜବାହରଲାଲ ନିଜର ବିଚାରଧାରା ଓ ଦୂରଦୃଷ୍ଟି ପାଇଁ ସମଗ୍ର ବିଶ୍ୱରେ ଜଣେ ଚିନ୍ତାଶୀଳ ବ୍ୟକ୍ତି ରୂପେ ପରିଚିତ । ପ୍ରାଚୁର୍ଯ୍ୟ ମଧ୍ୟରେ ରହି ବି ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ କାରାଗାରର କଙ୍କରିଳ ଶଯ୍ୟାକୁ ଆଦରି ନେଇଥିଲେ । ଏହିପରି ଯୋଗଜନ୍ମା ବ୍ୟକ୍ତିଙ୍କ ପାଇଁ ଆଜି ଭାରତ ବିଶ୍ୱରେ ପରିଚିତ ହୋଇପାରିଛି ।

ଜବାହରଲାଲଙ୍କ ପୂର୍ବପୁରୁଷମାନେ କାଶ୍ମୀରରୁ ଦିଲ୍ଲୀ, ଦିଲ୍ଲୀରୁ ଆଗ୍ରା ଓ ଆଗ୍ରାରୁ ଆସି ଏହ୍ଲାବାଦରେ ସ୍ଥାୟୀଭାବରେ ବସବାସ କରୁଥିଲେ । ତାଙ୍କର ପୂର୍ବ ସାଙ୍ଗିଆ କାଉଲ

ପରବର୍ତ୍ତୀ କାଳରେ ନେହେରୁରେ ପରିବର୍ତ୍ତିତ ହୋଇଯାଇଥିଲା । ୧୮୮୯ ମସିହା ନଭେମ୍ବର ୧୪ ତାରିଖ ଦିନ ମୋତିଲାଲ ନେହେରୁ ଓ ସ୍ୱରୂପାରାଣୀଙ୍କ ଔରସରୁ ଜବାହରଲାଲ ଜନ୍ମ ଗ୍ରହଣ କରିଥିଲେ । 'ଜବାହର'ର ଅର୍ଥ ରତ୍ନ । ଭବିଷ୍ୟତରେ ଜବାହରଲାଲ ନିଜ ନାମର ସାର୍ଥକତା ପ୍ରତିପାଦନ କରିଥିଲେ । ତାଙ୍କ ପିତା ମୋତିଲାଲ ଜଣେ ବିଶିଷ୍ଟ ବାରିଷ୍ଟର ଭାବରେ ଅଜସ୍ର ଧନ ଆୟକରି ତତ୍କାଳୀନ ଭାରତରେ ଜଣେ ବିଶିଷ୍ଟ ଧନାଢ଼୍ୟ ବ୍ୟକ୍ତି ରୂପେ ପରିଗଣିତ ହୋଇପାରିଥିଲେ । ପ୍ରାଚୁର୍ଯ୍ୟ ଓ ଐଶ୍ୱର୍ଯ୍ୟ ମଧ୍ୟରେ ନେହେରୁଙ୍କର ବାଲ୍ୟଜୀବନ ଅତିବାହିତ ହୋଇଥିଲା । ପିଲାବେଳୁ ମା' ଏବଂ ଦେଠେଇଙ୍କ ଠାରୁ ସେ ରାମାୟଣ ଏବଂ ମହାଭାରତର କାହାଣୀମାନ ଶୁଣିଥିଲେ । ମୁନ୍‌ସି ମୁବାରକ୍ ଅଲ୍ଲିଙ୍କ ନାମରେ ନିଯୁକ୍ତ ଜଣେ ବ୍ୟକ୍ତିଙ୍କ ଠାରୁ ସେ ଶୁଣିଥିଲେ ଆରବ୍ୟରଜନୀ ଓ ସିପାହୀ ବିଦ୍ରୋହର କାହାଣୀ । ପିଲାବେଳେ ନେହେରୁ କୌଣସି ପାଠଶାଳାରେ ପାଠ ପଢ଼ିନଥିଲେ । ତାଙ୍କର ପିତା ଏଫ.ଟି.ବ୍ରୁକ୍‌ସ ନାମରେ ଜଣେ ୟୁରୋପୀୟଙ୍କୁ ଗୃହଶିକ୍ଷକ ରୂପେ ନିଯୁକ୍ତି ଦେଇଥିଲେ । ମାତ୍ର ଏଗାର ବର୍ଷ ବୟସରୁ ସେ ପ୍ରସିଦ୍ଧ ଇଂରାଜୀ ଲେଖକମାନଙ୍କ ସହିତ ବ୍ରୁକ୍‌ସଙ୍କ ମାଧ୍ୟମରେ ପରିଚିତ ହୋଇଥିଲେ । ମାତ୍ର ୧୫ ବର୍ଷ ବୟସରେ ଅର୍ଥାତ୍ ୧୯୦୫ ମସିହାରେ ଉଚ୍ଚଶିକ୍ଷା ପାଇଁ ମୋତିଲାଲ ତାଙ୍କୁ ଇଂଲଣ୍ଡକୁ ପ୍ରେରଣ କରିଥିଲେ । ସେଠାରେ ବିଖ୍ୟାତ ହ୍ୟାରୋ ସ୍କୁଲରେ ଅଧ୍ୟୟନ କରିଥିଲେ । ୧୯୦୭ ମସିହାରେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ଅଧୀନସ୍ଥ ଟ୍ରିନିଟି କଲେଜରେ ଅଧ୍ୟୟନ କଲେ । ୧୯୧୨ ମସିହାରେ ସେଠାରେ ବାରିଷ୍ଟରୀ ପାସ୍ କରି ଭାରତକୁ ଫେରିଆସିଲେ ଏବଂ ଏହ୍ଲାବାଦ ହାଇକୋର୍ଟରେ ମୋତିଲାଲଙ୍କ ଜୁନିଅର ଭାବରେ କାର୍ଯ୍ୟ କଲେ । ୧୯୧୬ ମସିହାରେ କାଶ୍ମୀରୀ ତରୁଣୀ କମଳା କାଉଲ୍‌କୁ ବିବାହ କରିଥିଲେ । ୧୯୧୮ ମସିହାରେ ତାଙ୍କର ଗୋଟିଏ କନ୍ୟା ଜାତ ହୋଇଥିଲା । ତାଙ୍କର ନାମ ରଖାଯାଇଥିଲା ଇନ୍ଦିରା ନେହେରୁ । ପରବର୍ତ୍ତୀ ସମୟରେ ସେ ମଧ୍ୟ ବହୁବର୍ଷ ଧରି ଭାରତର ପ୍ରଧାନମନ୍ତ୍ରୀ ପଦ ଅଳଙ୍କୃତ କରିଥିଲେ । ଲଣ୍ଡନରେ ଅଧ୍ୟୟନ ସମୟରେ ନେହେରୁ ଦକ୍ଷିଣ ଆଫ୍ରିକା, ଭାରତ ତଥା ବିଶ୍ୱରେ ଘଟିଯାଉଥିବା ବିଭିନ୍ନ ଘଟଣା ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିଥିଲେ । ତାଙ୍କର ସାଧାରଣଜ୍ଞାନ ଅସାଧାରଣ ଥିଲା । ୧୯୧୫ ମସିହାରେ ମହାତ୍ମାଗାନ୍ଧି ଭାରତକୁ ଫେରିଆସିବା ପରେ ଭାରତର ରାଜନୀତିକ ଆକାଶରେ ପରିବର୍ତ୍ତନ ଦେଖାଯାଇଥିଲା । ସେ ଅହିଂସା ଓ ସତ୍ୟାଗ୍ରହ ମାଧ୍ୟମରେ ସ୍ୱାଧୀନତା ଆଣିବାକୁ ଚେଷ୍ଟା କରୁଥିଲେ । ତାଙ୍କର ଏହି ନୂତନ ଅହିଂସା ନୀତି ନେହେରୁଙ୍କୁ ଗଭୀର ଭାବରେ ପ୍ରଭାବିତ କରିଥିଲା । ୧୯୨୦ ମସିହା ପରେ ଜବାହରଲାଲ ଗାନ୍ଧିଜୀଙ୍କ ପ୍ରେରଣାରେ ସ୍ୱାଧୀନତା ଆନ୍ଦୋଳନରେ ପ୍ରତ୍ୟକ୍ଷ ଭାବରେ ଅଂଶ ଗ୍ରହଣ କରିଥିଲେ ।

ମହାତ୍ମାଗାନ୍ଧିଙ୍କ ନେତୃତ୍ୱରେ ଭାରତରେ ଯେଉଁ ସ୍ୱାଧୀନତା ସଂଗ୍ରାମ ଆନ୍ଦୋଳନ ଆରମ୍ଭ ହୋଇଥିଲା, ନେହେରୁ ଥିଲେ ସେଥିରେ ଜଣେ ସକ୍ରିୟ ସଦସ୍ୟ । ୧୯୨୧ ମସିହାର ଅସହଯୋଗ ଆନ୍ଦୋଳନରେ ଭାଗନେଇ ନେହେରୁ କାରାବରଣ କରିଥିଲେ । ନେହେରୁ ଚାହୁଁଥିଲେ ଭାରତର ପୂର୍ଣ୍ଣ ସ୍ୱାଧୀନତା । ଆଗରୁ କଂଗ୍ରେସ ଔପନିବେଶିକ ସ୍ୱାଧୀନତା ଦାବି କରୁଥିଲା ।

୧୯୨୯ ମସିହାରେ ନେହେରୁ ଜାତୀୟ କଂଗ୍ରେସର ସମ୍ପାଦକ ତଥା ସଭାପତି ରୂପେ ନିର୍ବାଚିତ ହୋଇଥିଲେ । ୧୯୩୦ ମସିହାରେ ଆରମ୍ଭ ହେଲା ଲବଣ ସତ୍ୟାଗ୍ରହ । ଏହି ଆନ୍ଦୋଳନରେ ଯୋଗଦେଇ ନେହେରୁ କାରାବରଣ କରିଥିଲେ । ୧୯୩୨ ମସିହାରେ ସେ କାରାଗାରରୁ ମୁକ୍ତି ଲାଭ କଲେ । ଏହି ସମୟରେ ତାଙ୍କର ପିତୃବିୟୋଗ ଘଟିଲା ଏବଂ ପତ୍ନୀ କମଳାଙ୍କ ଶାରୀରିକ ଅସୁସ୍ଥତା ପାଇଁ ତାଙ୍କୁ ଇଉରୋପ ନେବାକୁ ପଡ଼ିଥିଲା । ସମସ୍ତ ମାନସିକ ଯନ୍ତ୍ରଣା ସତ୍ତ୍ୱେ ସ୍ୱାଧୀନତା ସଂଗ୍ରାମରୁ କଦାପି ସେ ଓହରି ଯାଇନଥଲେ । ଇଉରୋପ ପରିଭ୍ରମଣ ସମୟରେ ସେ ସାମ୍ୟବାଦ ପ୍ରତି ଆକୃଷ୍ଟ ହୋଇପଡ଼ିଥିଲେ ଏବଂ ଭାରତରେ ଏକ ଗଣତାନ୍ତ୍ରିକ ସମାଜବାଦର ପ୍ରତିଷ୍ଠା ନିମିତ୍ତ ସ୍ୱପ୍ନ ଦେଖିଥିଲେ । ୧୯୩୨ ଖ୍ରୀଷ୍ଟାବ୍ଦରେ ପତ୍ନୀଙ୍କର ଦେହାନ୍ତ ପରେ ନିଜ କନ୍ୟାର ସମସ୍ତ ଦାୟିତ୍ୱ ନେଇ ସୁଦ୍ଧା ସ୍ୱାଧୀନତା ଆନ୍ଦୋଳନରେ ସେ ଥିଲେ ଆଗଧାଡ଼ିରେ । ୧୯୪୨ ମସିହାରେ ଆରମ୍ଭ ହେଲା ଭାରତଛାଡ଼ ଆନ୍ଦୋଳନ । ଗାନ୍ଧିଜୀ 'କର ବା ମର' ପାଇଁ ଭାରତୀୟମାନଙ୍କୁ ଆହ୍ୱାନ ଦେଲେ । ଏହି ଆନ୍ଦୋଳନରେ ଭାଗନେଇ ନେହେରୁ କାରାବରଣ କଲେ । କାରାଗାରରେ ତାଙ୍କ ପ୍ରତି ଅତ୍ୟାଚାର ମଧ କରାଯାଇଥିଲା । ତଥାପି ସେ ସେଥିରେ ଦବିଯାଇ ନ ଥିଲେ । ଅଦମ୍ୟ ଉଦ୍ୟମରେ ଦେଶକୁ ସ୍ୱାଧୀନ କରିବା ପାଇଁ ସେ ଭାରତୀୟମାନଙ୍କୁ ଆହ୍ୱାନ ଦେଇଥିଲେ । ଇଂରେଜମାନଙ୍କର ସ୍ୱାର୍ଥପର ନୀତିଯୋଗୁଁ ଭାରତ ବିଭାଜିତ ହୋଇ ପାକିସ୍ଥାନ ଓ ଭାରତ (ହିନ୍ଦୁସ୍ଥାନ) ଭାବରେ ୧୯୪୭ ମସିହା ଅଗଷ୍ଟ ୧୪ ତାରିଖରେ ସ୍ୱାଧୀନତା ଲାଭ କଲା । ସେ ହେଲେ ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ । ତାଙ୍କର ଶେଷନିଃଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ (୧୯୬୪ ମସିହା ମେ ୨୭ ତାରିଖ) ସେ ଏହି ପଦବୀରେ ଅଧିଷ୍ଠିତ ହୋଇ ଭାରତର ସାମଗ୍ରିକ ବିକାଶ ପାଇଁ ବହୁ କାର୍ଯ୍ୟ କରିଯାଇଛନ୍ତି । ପଣ୍ଡିତ ନେହେରୁ କେବଳ ଜଣେ ବିଶିଷ୍ଟ କୂଟନୀତିଜ୍ଞ ନ ଥିଲେ; ଥିଲେ ମଧ ଜଣେ ବିଶିଷ୍ଟ ଲେଖକ । ଅଧ୍ୟୟନ ଥିଲା ତାଙ୍କ ଜୀବନର ସାଥୀ । ସେ ବହୁ ପୁସ୍ତକ ଅଧ୍ୟୟନ କରିଥିଲେ ଏବଂ ଅନେକ ମୂଲ୍ୟବାନ୍ ପୁସ୍ତକ ମଧ ରଚନା କରିଥିଲେ । ତାଙ୍କ ରଚିତ ପୁସ୍ତକଗୁଡ଼ିକ ମଧ୍ୟରୁ Autobiography, Letters from a father to his daughter, Discovery of India, Glimpses of World History ଆଦି ପ୍ରଧାନ । ତାଙ୍କର ନିଷ୍ଠାପର ଉଦ୍ୟମ, କର୍ତ୍ତବ୍ୟନିଷ୍ଠା ଓ ସମୟାନୁବର୍ତ୍ତିତା ଦେଶକୁ ବହୁକ୍ଷେତ୍ରରେ ଆଗେଇ ନେଇଥିଲା ।

ସ୍ୱାଧୀନତା ପରବର୍ତ୍ତୀ ସମୟରେ ନେହେରୁ ମହାତ୍ମାଗାନ୍ଧିଙ୍କ ପରେ ଥିଲେ ଅପ୍ରତିଦ୍ୱନ୍ଦ୍ୱୀ ନେତା । ସ୍ୱଦେଶର ମଙ୍ଗଳ ସାଧନ ଥିଲା ତାଙ୍କର ଏକମାତ୍ର ଲକ୍ଷ୍ୟ । ସମଗ୍ର ମାନବ ଜାତିର ମଙ୍ଗଳ ପାଇଁ ସେ ବିଭିନ୍ନ ପଦକ୍ଷେପ ଗ୍ରହଣ କରିଥିଲେ । ସ୍ୱାଧୀନତା ଲାଭ ପରେ ଭାରତର ଅବସ୍ଥା ନେହେରୁଙ୍କୁ ଅତ୍ୟନ୍ତ ମ୍ରିୟମାଣ କରିଥିଲା । ଭାରତର ଆର୍ଥିକ ଅବସ୍ଥା ଥିଲା ଅତ୍ୟନ୍ତ ଶୋଚନୀୟ । ଜନସଂଖ୍ୟା ତୁଳନାରେ ଖାଦ୍ୟର ଥିଲା ଘୋର ଅଭାବ । ଖାଦ୍ୟ, ବସ୍ତ୍ର, ବାସଗୃହ — ମଣିଷର ଏହି ତିନୋଟି ମୌଳିକ ଆବଶ୍ୟକତାକୁ ପୂରଣ କରିବା ଥିଲା ନେହେରୁଙ୍କର ପ୍ରଧାନ ଲକ୍ଷ୍ୟ । ତାଙ୍କର ପ୍ରତ୍ୟକ୍ଷ ଉଦ୍ୟମରେ ୧୯୫୧ ମସିହା ଠାରୁ ପଞ୍ଚବାର୍ଷିକ ଯୋଜନା

କାର୍ଯ୍ୟକାରୀ ହେଲା । ଏହାର ପୂର୍ଣ୍ଣ ସଫଳତା ପାଇଁ ସେ ଉଦ୍ୟମ ଜାରି ରଖିଥିଲେ । ନେହେରୁଙ୍କର ବୈଦେଶିକ ନୀତି ମୁଖ୍ୟତଃ ପାରସ୍ପରିକ ଶ୍ରଦ୍ଧା, ସହାନୁଭୂତିର ଭିତ୍ତି ଉପରେ ପ୍ରତିଷ୍ଠିତ ଥିଲା । ବିଶ୍ୱରୁ ଯୁଦ୍ଧ ଭୟ ଦୂର କରିବାକୁ ପରସ୍ପର ମଧ୍ୟରେ ସହଯୋଗପୂର୍ଣ୍ଣ ବାତାବରଣ ସୃଷ୍ଟି ପାଇଁ ଏବଂ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ନିମିତ୍ତ ୧୯୫୪ ମସିହା ସେପ୍ଟେମ୍ବର ୨୩ ତାରିଖରେ ଘୋଷଣା କଲେ ପଞ୍ଚଶୀଳ ନୀତି । ତାଙ୍କର ଏହି ନୀତି ବିଶ୍ୱର ବହୁ ରାଷ୍ଟ୍ରନୀତିଜ୍ଞଙ୍କ ଦ୍ୱାରା ପ୍ରଶଂସିତ ହୋଇଥିଲା । ଆନ୍ତର୍ଜାତିକ ସଦ୍‌ଭାବ ଓ ଶାନ୍ତି ପ୍ରତିଷ୍ଠା ପାଇଁ ସେ ଜାତିସଂଘ ମାଧ୍ୟମରେ ବହୁ ପ୍ରସ୍ତାବ ଦେଇଥିଲେ । ସଂକୀର୍ଣ୍ଣ ଜାତୀୟତାବାଦର ସେ ପକ୍ଷପାତୀ ନ ଥିଲେ । ସେ ନିଜକୁ ଜଣେ ସୋସିଆଲିଷ୍ଟ ବୋଲି ଦାବି କରୁଥିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା ଭାରତରେ ବସବାସ କରୁଥିବା ସମସ୍ତ ଭାରତୀୟ ସମାନ ସୁବିଧା ଓ ସୁଯୋଗ ଲାଭ କରିବା ଉଚିତ । ଚୀନ୍‌ର ଆକ୍ରମଣରେ ସେ ଭୟ କରିନଥିଲେ । ବରଂ ଭାରତକୁ ଅଧିକ ଶକ୍ତିଶାଳୀ କରିବା ପାଇଁ ସେ ବିଜ୍ଞାନ ଉପରେ ଗୁରୁତ୍ୱ ପ୍ରଦାନ କରିଥିଲେ । ବିଭିନ୍ନ ଯୋଜନା ମାଧ୍ୟମରେ କୃଷି, ଶିକ୍ଷା, ଜଳସେଚନ, ବିଦ୍ୟୁତ, ବିଜ୍ଞାନ, ଶିଳ୍ପ, ବାଣିଜ୍ୟ ଆଦିର ବିକାଶ ନିମିତ୍ତ ଚେଷ୍ଟା କରିଥିଲେ । ତାଙ୍କର କାର୍ଯ୍ୟଦକ୍ଷତା ଥିଲା ଅସମ୍ଭବ ଧରଣର । ଏକାଦିକ୍ରମେ ଘଣ୍ଟା ଘଣ୍ଟା ଧରି କାର୍ଯ୍ୟ କରିବାରେ ସେ ଅଭ୍ୟସ୍ତ ଥିଲେ । ଦୀର୍ଘ ୧୭ ବର୍ଷ କାଳ ଭାରତର ପ୍ରଧାନମନ୍ତ୍ରୀ ରୂପେ ଦାୟିତ୍ୱ ଗ୍ରହଣ କରି ଅଭୂତପୂର୍ବ ସଫଳତା ଲାଭ କରିଛନ୍ତି । ତାଙ୍କ ଯୋଗୁଁ ବିଶ୍ୱ ଦରବାରରେ ଭାରତର ସମ୍ମାନ ବୃଦ୍ଧି ପାଇଛି । କେବଳ ଜଣେ ବିଶିଷ୍ଟ କୂଟନୀତିକ ଭାବରେ ନୁହନ୍ତି; ପିଲାମାନଙ୍କ ନିକଟରେ ସେ ଥିଲେ ଚାଚା ନେହେରୁ । ପିଲାମାନଙ୍କୁ ସେ ଖୁବ୍ ଭଲ ପାଉଥିଲେ । ତାଙ୍କର ଧାରଣା ଥିଲା  ଶିଶୁ ହସିଲେ ଜଗତ ହସିବ । ପିଲାମାନଙ୍କ ପ୍ରତି ଏହି ଅଗାଧ ସ୍ନେହ ଯୋଗୁଁ ତାଙ୍କର ଜନ୍ମଦିନଟିକୁ (ନଭେମ୍ବର ୧୪) ଶିଶୁ ଦିବସ ଭାବରେ ପାଳନ କରାଯାଉଛି । ୧୯୬୪ ମସିହାରେ ତାଙ୍କର ମହାପ୍ରୟାଣ ସମଗ୍ର ଭାରତବାସୀଙ୍କ ପାଇଁ ଥିଲା ଏକ ବିରାଟ ଆଘାତ । ସେ ଅନେକ ଦିନରୁ ଚାଲିଗଲେଣି ସତ୍ୟ; ମାତ୍ର ତାଙ୍କର କାର୍ଯ୍ୟକଳାପ, ଦେଶ ପାଇଁ ତ୍ୟାଗ ଓ ସଂଗ୍ରାମ ତାଙ୍କୁ ସବୁଦିନ ପାଇଁ ଭାରତୀୟଙ୍କ ହୃଦୟରେ ଜୀବିତ କରି ରଖିଛି ।

ଭାରତରେ ସ୍ୱାଧୀନତା ଲାଭପରେ ବହୁ ପ୍ରଧାନମନ୍ତ୍ରୀ ଗଲେଣି । ମାତ୍ର ନେହେରୁଙ୍କ ପରି ଭାରତୀୟଙ୍କ ନିକଟରେ ଆଉ କେହି ଏତେ ପ୍ରିୟ ହୋଇପାରି ନାହାନ୍ତି । ସେ ଥିଲେ ମୂଲ୍ୟବୋଧଭିତ୍ତିକ ରାଜନୀତିରେ ବିଶ୍ୱାସୀ । ଅର୍ଥ, ପ୍ରାଚୁର୍ଯ୍ୟ କେବେ ତାଙ୍କୁ ଆକୃଷ୍ଟ କରି ନ ଥିଲା । ଦେଶସେବା ପାଇଁ ସେ ଠିକ୍ ଭାବରେ ନିଜ ପରିବାରକୁ ଦୃଷ୍ଟ ଦେଇପାରି ନାହାନ୍ତି । ଭାରତର ସାମଗ୍ରିକ ବିକାଶ ନିମିତ୍ତ ସେ ନିଜକୁ ସମ୍ପୂର୍ଣ୍ଣରୂପେ ଉତ୍ସର୍ଗ କରି ଦେଇଥିଲେ । ବ୍ୟକ୍ତିଗତ ସ୍ୱାର୍ଥ ଠାରୁ ସେ ଥିଲେ ବହୁ ଊର୍ଦ୍ଧ୍ୱରେ । ଭାରତକୁ ସେ ଗଭୀର ଭାବରେ ଭଲ ପାଉଥିଲେ । ଭାରତର ପ୍ରତ୍ୟେକଟି ଜିନିଷ ତାଙ୍କ ନିକଟରେ ଥିଲା ପବିତ୍ର । ପ୍ରାଚୁର୍ଯ୍ୟ ମଧ୍ୟରେ ବାସ କରି ମଧ୍ୟ ସେ ତା'ଠାରୁ ଦୂରେଇ ଯାଇଥିଲେ । ଜଣେ ଭାରତୀୟ ଭାବରେ ନିଜକୁ ପରିଚିତ କରିବାକୁ ସେ ଗର୍ବ ଅନୁଭବ କରୁଥିଲେ । ଆଜି ରାଜନୀତିର କଳୁଷତା ଦେଖିଲେ

ଲଜ୍ଜାରେ ମୁଣ୍ଡ ନତ ହୋଇଯାଏ । ମହାତ୍ମାଗାନ୍ଧି, ନେହେରୁ ଆଦିଙ୍କ କୃଚ୍ଛ୍ର ସାଧନା ଫଳରେ ଭାରତ ଯେଉଁ ସ୍ୱାଧୀନତା ଲାଭ କରିଥିଲା, ତା'ର ଏହି ସାମ୍ପ୍ରତିକ ଦାରୁଣ ରୂପ ଖୁବ୍ କଷ୍ଟଦାୟକ । ନେହେରୁଙ୍କର ସ୍ୱପ୍ନର ଭାରତ ଆଜି ଖଣ୍ଡ-ବିଖଣ୍ଡିତ । ତାଙ୍କର ଜନ୍ମ ଦିବସରେ କେବଳ ଥରେ ସ୍ମରଣ କରିଦେଲେ ସେ ମୁକ୍ତି ପାଇଯିବେ ନାହିଁ କିମ୍ବା ଆମର ତାଙ୍କୁ ତାଙ୍କ ପ୍ରତି ଥିବା ଗଭୀର ଭକ୍ତିଭାବ ପ୍ରକାଶିତ ହେବ ନାହିଁ । ତାଙ୍କ ସ୍ୱପ୍ନକୁ ଆମେ ଯଦି ସାକାର କରିପାରିବା, ତାହାହିଁ ହେବ ତାଙ୍କ ପ୍ରତି ଯଥାର୍ଥ ସମ୍ମାନ ।

●

## ମଦର ଟେରେସା

**(ଉପକ୍ରମ, ଜନ୍ମ, ଜୀବନୀ, ଶିକ୍ଷକତାରୁ କର୍ମମୟ ଜୀବନ, ଭାରତରେ କୁମାରୀ ସନ୍ନ୍ୟାସିନୀ, ଶିକ୍ଷୟିତ୍ରୀରୁ ସେବିକା, ସମ୍ମାନ ଏବଂ ପୁରସ୍କାର, ଆଲୋକର ନିର୍ବାପନ, ଉପସଂହାର)**

ପୃଥିବୀରେ ମୁଖ୍ୟତଃ ତିନିପ୍ରକାର ମଣିଷ ଦେଖା ଦେଇଥାନ୍ତି । ପ୍ରଥମ ଶ୍ରେଣୀର ମଣିଷ ନିଜର ବ୍ୟକ୍ତିଗତ ସେବା ପାଇଁ କେବଳ ଜନ୍ମ ନେଇଥାନ୍ତି । ଦ୍ୱିତୀୟ ଶ୍ରେଣୀର ମଣିଷ ବ୍ୟକ୍ତିଗତ ସେବା ସହିତ କିଛି ସାମାଜିକ ସେବା କରିଥାନ୍ତି ଏବଂ ତୃତୀୟ ଶ୍ରେଣୀର ମଣିଷ କେବଳ ଅନ୍ୟମାନଙ୍କର ସେବାପାଇଁ ହିଁ ଜନ୍ମ ନେଇଥାନ୍ତି । ମଦର ଟେରେସା ଓରଫ୍ ଆଗନେସ୍ ଗେନିକ୍ସା ରୋଜାସିଭ ଏହି ତୃତୀୟ ଶ୍ରେଣୀର ମଣିଷ, ଯିଏକି ଜନ୍ମ ହୋଇଥିଲେ ମଣିଷର ସେବା ପାଇଁ । ସକାଳ ପରି ଶୁଭ୍ର ଓ ପବିତ୍ର ଏହି ମହିଳା ପୃଥିବୀର କୋଟି କୋଟି ହୃଦୟର ଚିରବନ୍ଦିତା ମା' ଟେରେସା । ସେ କେବେ ସ୍ୱପ୍ନ ଦେଖି ନାହାନ୍ତି । ବାସ୍ତବତାର କଙ୍କରିଳ ପଥର ଯାତ୍ରୀଟିଏ ସେ । ସେ ଦାରିଦ୍ର୍ୟ ମଧ୍ୟରେ ଅନୁଭବ କରିଥିଲେ ପ୍ରକୃତ ଜୀବନକୁ । ରୋଗ ଏବଂ ବ୍ୟାଧି ପ୍ରପୀଡ଼ିତ ମଣିଷର ଆର୍ତ୍ତଚିତ୍କାର ମଧ୍ୟରେ ଅନୁଭବ କରିଥିଲେ ଦୁଃସ୍ଥ ଆତ୍ମାକୁ । ସ୍ୱପ୍ନର ବଣିକ ନ ସାଜି ବାସ୍ତବତାର ଝୁଲି ଖଣ୍ଡିଏ ଧରି ଓହ୍ଲାଇ ପଡ଼ିଥିଲେ ପୀଡ଼ନ ଓ ବେଦନାର ରାଜରାସ୍ତା ଉପରକୁ । ତାଙ୍କର ତ୍ୟାଗପୂତ ଜୀବନ ତାଙ୍କୁ ପରିଚିତ କରାଇଥିଲା ଏକ ସାର୍ବଜନୀନ ମା' ରୂପେ । ନିଜ ପ୍ରତି ତାଙ୍କର ଥିଲା ଗଭୀର ଆତ୍ମବିଶ୍ୱାସ । ସେ ଥିଲେ ଆତ୍ମଶକ୍ତିରେ ଶକ୍ତିଶାଳିନୀ । ସେବା ଶୁଶ୍ରୂଷାର ମୂର୍ତ୍ତିମନ୍ତ ପ୍ରତୀକ ମଦର ଟେରେସା ।

୧୯୧୦ ମସିହା ଅଗଷ୍ଟ ୨୬ ତାରିଖରେ ଯୁଗୋସ୍ଲୋଭିଆର ଆଲ୍‌ବେନିଆ ରାଜ୍ୟସ୍ଥିତ ସ୍କପେଜ ସହର ପାଖ ଗାଁର ଗୋଟିଏ କୃଷକ ପରିବାରରେ ପିତା ନିକୋଲାସ ରୋଜାସିଭ ଓ ମାତା ଡ୍ରାନାଫିଲ୍‌ବର୍ଣ୍ଣ ରୋଜାସିଭଙ୍କ ଔରସରୁ ଜନ୍ମ ଗ୍ରହଣ କରିଥିଲେ ଆଗ୍‌ନେସ୍ ଗେନିକ୍ସା ରୋଜାସିଭ । ତୁଳସୀ ଦୁଇ ପତ୍ରରୁ ବାସିବା ପରି ପିଲାଟି ଦିନରୁ ମାନବର ସେବା ପାଇଁ ତାଙ୍କ ମନରେ ସୃଷ୍ଟି ହୋଇଥିଲା ଅକୁଣ୍ଠ ଆଗ୍ରହ । ମାତାଙ୍କର ବ୍ୟକ୍ତିତ୍ୱର ପ୍ରଭାବ ତାଙ୍କ ଉପରେ ପିଲାଟି

ଦିନରୁ ପଢ଼ିଥିଲା । ଦୁଃଖ ଓ ଯନ୍ତ୍ରଣା ମଧ୍ୟରେ ମଣିଷ ଜୀବନର ଚରମ ସତ୍ୟଟିକୁ ସେ ପିଲାଟି ଦିନରୁ ଉପଲବ୍ଧି କରିପାରିଥିଲେ । ସ୍କପେଜ ସହରର ବାଳିକା ବିଦ୍ୟାଳୟରେ ସେ ପାଠ ପଢ଼ିଥିଲେ । ପାଠ ପଢ଼ା ସମୟରୁ ହିଁ ତାଙ୍କ ମନରେ ଦୁଃସ୍ଥ ସେବା ପ୍ରତି ଆଗ୍ରହ ସୃଷ୍ଟି ହୋଇଥିଲା । ଅଠରବର୍ଷ ବୟସରେ ଶିକ୍ଷା ସମାପ୍ତି ପରେ ନିଜକୁ ସେବା କ୍ଷେତ୍ରରେ ଜଡ଼ାଇଦେବା ନିମିତ୍ତ ମାନସିକ ସ୍ତରରେ ପ୍ରସ୍ତୁତ ହୋଇସାରିଥିଲେ । ପାଦ୍ରୀମାନଙ୍କୁ ଅନୁସରଣ କରି ତାଙ୍କର ସେବା କ୍ଷେତ୍ରକୁ ପ୍ରସାରିତ କରିବା ପାଇଁ ସେ ସଂକଳ୍ପବଦ୍ଧା ହୋଇଥିଲେ । ତାଙ୍କ ଜୀବନର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହୋଇଥିଲା ଭାରତରେ ପହଞ୍ଚିବା ପରେ ।

ଗୃହର ଅନୁମତି ନେଇ ଏଗ୍ନେସ କେତେଜଣ ପାଦ୍ରୀଙ୍କ ସହିତ ଭାରତ ଅଭିମୁଖେ ଯାତ୍ରା ଆରମ୍ଭ କରିଥିଲେ । ୧୯୨୯ ମସିହା ଜାନୁଆରୀ ୬ ତାରିଖରେ ସେ ପହଞ୍ଚିଲେ କଲିକତାରେ ମାତ୍ର ଅଠର ବର୍ଷ ବୟସରେ । ସ୍ୱପ୍ନ ଦେଖିବାର ତରୁଣୀ ବୟସରେ କଠୋର ବାସ୍ତବତାକୁ ସେ ଅନୁଭବ କରିଥିଲେ । ପ୍ରଣୟର ନିଶା ତାଙ୍କୁ ସ୍ପର୍ଶ କରିପାରି ନ ଥିଲା । କଳ୍ପନାର ଇନ୍ଦ୍ରଜାଲ ମଧ୍ୟରେ ଘୂରିବୁଲିବାର ଅବକାଶ ମଧ ନ ଥିଲା ତାଙ୍କର । କୌଣସି ଅଳସ ମୁହୂର୍ତ୍ତରେ ଜୀବନକୁ ନେଇ ସେ କଦାପି ବିଭୋର ହୋଇ ନାହାନ୍ତି । କୁମାରୀ ଜୀବନର ଚଳଚଞ୍ଚଳତାକୁ ପରିତ୍ୟାଗ କରି ସ୍ଥିତପ୍ରଜ୍ଞା ମହିଳା ରୂପେ ଦୁଃସ୍ଥ ସେବା ପାଇଁ ଅଣ୍ଟାଭିଡ଼ି ସେ ବାହାରିପଡ଼ିଥିଲେ । କ୍ୟାଥଲିକ୍ ଧର୍ମ ମତରେ ସନ୍ନ୍ୟାସିନୀ ହେବା ପରେ ସେ ଆଉ କେବେ ପଛକୁ ଫେରି ଚାହିଁ ନାହାନ୍ତି । ୧୯୩୧ ମସିହାଠାରୁ ସେ କଲିକତାର ଏଣ୍ଟାଲିସ୍ଥିତ ସେଣ୍ଟମେରୀ ସ୍କୁଲରେ ଭୂଗୋଳ ଶିକ୍ଷୟିତ୍ରୀ ରୂପେ କାର୍ଯ୍ୟ ଆରମ୍ଭ କଲେ । ଶିକ୍ଷାଦାନ ସମୟରେ ତାଙ୍କର ସରଳ ବ୍ୟବହାର ଛାତ୍ରୀ ତଥା ସହକର୍ମୀମାନଙ୍କୁ ଆକୃଷ୍ଟ କରିପାରିଥିଲା । ତେବେ ବିଦ୍ୟାଳୟର ଚାରିକାନ୍ଥ ମଧ୍ୟରେ ଆବଦ୍ଧ ରହିବାକୁ ତାଙ୍କର ଜନ୍ମ ହୋଇ ନ ଥିଲା । ଅସଂଖ୍ୟ ଦୁଃସ୍ଥମାନଙ୍କର ଚିତ୍କାର ତାଙ୍କ ହୃଦୟକୁ ପ୍ରତି ମୁହୂର୍ତ୍ତରେ ଆନ୍ଦୋଳିତ କରୁଥିଲା । କେବଳ ଶିକ୍ଷାଦାନ ତାଙ୍କର ହୃଦୟର ସେହି ବ୍ୟାକୁଳତାକୁ ପରିପୂରଣ କରିବାକୁ ସମର୍ଥ ହୋଇ ନ ଥିଲା । ୧୯୩୧ ମସିହାରେ ସେ ପରିଚିତ ହେଲେ ଟେରେସା ନାମରେ ।

କୁମାରୀ ସନ୍ନ୍ୟାସିନୀଙ୍କର ଜୀବନ ଅତିବାହିତ କରୁଥିବା ଟେରେସା ଭାରତର ଦାରିଦ୍ର୍ୟକୁ ଅନୁଭବ କରିଥିଲେ କଲିକତାର ବସ୍ତି ଅଞ୍ଚଳମାନଙ୍କରେ । ସ୍ୱପ୍ନର ଢେଉ ଭାଙ୍ଗିବା ବୟସରେ ସେ ନିଜକୁ ଅର୍ପଣ କରିଥିଲେ ଦୁଃସ୍ଥ, ନିପୀଡ଼ିତ, ଦଳିତମାନଙ୍କ ସେବାରେ । ବିଦ୍ୟାଶିକ୍ଷା ସହିତ ସମୟ ପାଇଲେ ଦଉଡ଼ି ଯାଉଥିଲେ ବସ୍ତି ଅଞ୍ଚଳକୁ । ସାମାନ୍ୟ ସେବାରେ ସେ ଅନୁଭବ କରୁଥିଲେ ପରମ ଶାନ୍ତି । ମାର୍କିନ୍ ତାଲିମ କେନ୍ଦ୍ରରେ ସେବିକା ତାଲିମ ପାଇସାରିବା ପରେ କିଛିଦିନ ପାଇଁ 'Little sister of the poor' (ଲିଟିଲ୍ ସିଷ୍ଟର୍ ଅଫ୍ ଦି ପୁଅର୍) ରେ ଯୋଗ ଦେଇଥିଲେ । ମାତ୍ର ସେ ସେଠାରେ ମାନସିକ ଶାନ୍ତି ପାଇପାରି ନ ଥିଲେ । ତାଙ୍କ ପାଇଁ ଅପେକ୍ଷା କରିଥିଲା ଏକ ବିସ୍ତୃତ ଜଗତ । ସେହି ଜଗତର ବେଦନାର୍ଦ୍ର ସ୍ୱର ତାଙ୍କୁ ପ୍ରତ୍ୟେକ ମୁହୂର୍ତ୍ତରେ ଅଥୟ କରିଦେଉଥିଲା ।

ସର୍ବଶେଷରେ ସେଣ୍ଟମେରୀ ସ୍କୁଲର ପାଚେରି ସେପାଖେ ଥିବା ମତିଝିଲ୍ଲୀ ବସ୍ତିର ଆକର୍ଷଣକୁ ସେ ଏଡ଼ାଇପାରିଲେ ନାହିଁ । ଶିକ୍ଷୟିତ୍ରୀ ପଦ ତ୍ୟାଗ କରି ସେ ଓହ୍ଲାଇଗଲେ ବସ୍ତି ଅଞ୍ଚଳର ସେବା ପାଇଁ ।

ଶିକ୍ଷୟିତ୍ରୀରୁ ସେ ପରିଣତ ହେଲେ ସେବିକାରେ । ମାତ୍ର ପାଞ୍ଚଟଙ୍କା ଓ କିଛି ଲାଞ୍ଛନାକୁ ପାଥେୟ କରି ସେ ସେବାକ୍ଷେତ୍ରକୁ ଓହ୍ଲାଇ ଆସିଥିଲେ । ଅସହାୟ ଦୁଃସ୍ଥ ପିଲାଙ୍କ ପାଇଁ ସେ ପ୍ରତିଷ୍ଠା କଲେ ଏକ ବିଦ୍ୟାଳୟ । ଭାରତର ପାଣିପବନ ସହିତ ନିଜକୁ ମିଶାଇ ଏକାକାର କରିଦେଲେ ସେ । ୧୯୪୮ ମସିହାରେ ଗ୍ରହଣ କଲେ ଭାରତର ନାଗରିକତ୍ୱ । ଇଚ୍ଛାଶକ୍ତି ଅସମ୍ଭବକୁ ସମ୍ଭବ କରେ । ଧୀରେ ଧୀରେ ବହୁ ସାହାଯ୍ୟର ହାତ ଲମ୍ୱିଆସିଲା ଟେରେସାଙ୍କ ନିକଟକୁ । ତାଙ୍କର ସେବା ଓ ଶୁଶ୍ରୂଷା ଯୋଗୁଁ ନିପୀଡ଼ିତ, ଦଳିତ ଓ ନିର୍ଯ୍ୟାତିତ ବ୍ୟକ୍ତି ଶ୍ରଦ୍ଧାରେ ଡ଼ାକିଲେ 'ମଦର ଟେରେସା' । ମାଆର ସମସ୍ତ କୋମଳତା ନେଇ ସେ ସେବା କଲେ ଦୁଃଖୀ ଏବଂ କୁଷ୍ଠ ରୋଗୀମାନଙ୍କୁ । ଆଖିରେ ଘୃଣା ନ ଥିଲା । ବରଂ ଦୁଃସ୍ଥ ଏବଂ ପୀଡ଼ିତଙ୍କ ଅବସ୍ଥା ତାଙ୍କ ଆଖିରେ ସୃଷ୍ଟି କରୁଥିଲା ଲୁହର ଝରଣା । ପୋପ୍‌ଙ୍କ ଅନୁମତି ନେଇ ସେ ପ୍ରତିଷ୍ଠା କଲେ ୧୯୫୦ ମସିହାରେ ''ମିସ୍‌ନାରିଜ ଅଫ୍ ଚାରିଟିଜ୍ ।'' ୧୯୫୨ ମସିହାରେ ଆରମ୍ଭ ହେଲା କଲିକତାର କାଳୀଘାଟଠାରେ 'ନିର୍ମଳ ହୃଦୟ ସେବା ସଦନ', ତାପରେ 'କୁଷ୍ଠାଶ୍ରମ', 'ନିର୍ମଳ କେନେଡ଼ି ସେଣ୍ଟର' ଏମିତି କେତେ କଣ । ମଦର ଟେରେସାଙ୍କ ବିଭିନ୍ନ ସେବା କେନ୍ଦ୍ର ଭାରତର ବହୁସ୍ଥାନରେ ଏବଂ ଭାରତ ବାହାରେ ମଧ୍ୟ ପ୍ରତିଷ୍ଠିତ । ତାଙ୍କ ଦ୍ୱାରା ବିଭିନ୍ନ ସ୍ଥାନରେ ୧୨୦ଟି କୁଷ୍ଠାଶ୍ରମ ଖୋଲାଯାଇ ଲକ୍ଷ ଲକ୍ଷ ରୋଗୀଙ୍କର ସେବା କାର୍ଯ୍ୟ ଚାଲିଛି । ସମଗ୍ର ବିଶ୍ୱରେ ଜଣେ ସେବାକାରୀ ମା' ଭାବରେ ସେ ପ୍ରତିଷ୍ଠିତା ହୋଇଛନ୍ତି । ସାଧାରଣ ଭାରତୀୟଙ୍କ ପରି ଖାଦ୍ୟ ତାଙ୍କର । ଆଳସ୍ୟ ଏବଂ ବିଳାସର ଦ୍ୱାର ପର୍ଯ୍ୟନ୍ତ ସେ ମାଡ଼ି ନାହାନ୍ତି । ତାଙ୍କରି ପାଇଁ ଭାରତରେ ବହୁ ଅନାଥାଶ୍ରମ, କୁଷ୍ଠାଶ୍ରମ ଓ ସେବାସଦନ ଖୋଲିଛି । ଅନେକ ତାଙ୍କ ବିରୋଧରେ କୁତ୍ସାରଟନା କରିଛନ୍ତି । ତାଙ୍କ ସେବାକୁ ସନ୍ଦେହ ଦୃଷ୍ଟିରେ ଦେଖିଛନ୍ତି । ମାତ୍ର ସମୟ ତାହାକୁ ମିଥ୍ୟା ପ୍ରମାଣିତ କରିଛି । କେତେ ମୂକ ବଧିର ଶିଶୁକୁ ସେ ଥଇଥାନ କରିଛନ୍ତି, ତା'ର ହିସାବ ନାହିଁ । ସେ ଥିଲେ କର୍ମବାଦୀ । ଅସଂଖ୍ୟ ଦଳିତଙ୍କ ମଧ୍ୟରେ ନିଜକୁ ହଜାଇଦେଇ ତା ଭିତରୁ ସେ ଜୀବନର ପ୍ରକୃତ ସତ୍ୟକୁ ଉପଲବ୍ଧି କରିଥିଲେ । ତାଙ୍କରି ଭାଷାରେ କହିଲେ—ବାଣୀ, ଶୁଭେଚ୍ଛା, ଆଶୀର୍ବାଦ—ଏସବୁ ଆଉ ଭଲ ଲାଗୁ ନାହିଁ । ଦେଖୁଛତ ଆଖିଆଗରେ ପ୍ରତିଦିନ କେତେ କେତେ ମଣିଷ ଅନାହାରରେ, ଅର୍ଦ୍ଧାହାରରେ ଦିନ କାଟୁଛନ୍ତି । ହଜାର ହଜାର ନିଷ୍ପାପ ଶିଶୁ, କିଶୋର-କିଶୋରୀ ଖୋଲା ରାସ୍ତାରେ ଦିନ କଟାଉଛନ୍ତି । ସେମାନଙ୍କର ନା ଅଛି ଖାଦ୍ୟ, ନା ଅଛି ବସ୍ତ୍ର । ନିରାଶ୍ରୟ, ଅସହାୟ ସମ୍ୱଳହୀନ ଏହି ସମସ୍ତ ଦୁଃଖୀ ଭୋକିଲା ଦୁର୍ଦ୍ଦଶାଗ୍ରସ୍ତ ଲୋକଙ୍କ ମୁହଁରେ ହସ ଫୁଟାଇ ନ ପାରିଲେ ଆମର ଦୁଃଖ ଘୁଞ୍ଚିବ କିପରି ?' ତାଙ୍କର ସେବା ଥିଲା ସ୍ୱାଭାବିକ ଓ ସ୍ୱତଃସ୍ଫୂର୍ତ୍ତ । ଏହାର ପ୍ରତିଦାନ ସେ କେବେ ପାଇବାକୁ ଇଚ୍ଛା କରିନାହାନ୍ତି ।

ସମୟ ମଣିଷ କାର୍ଯ୍ୟର କଷଟି । ସେବା ପରିବର୍ତ୍ତେ ମଦର ଟେରେସା କିଛି ଚାହିଁ ନ ଥିଲେ ମଧ୍ୟ ଆପେ ଆପେ ତାଙ୍କ ନିକଟରେ ପହଞ୍ଚିଯାଇଛି ବହୁ ସମ୍ମାନ ଓ ପୁରସ୍କାର । ୧୯୬୨ ମସିହାରେ 'ପଦ୍ମଶ୍ରୀ' ପୁରସ୍କାର ଗ୍ରହଣ କରିବା ସମୟରେ ବିଜୟଲକ୍ଷ୍ମୀ ପଣ୍ଡିତ ବଡ଼ଭାଇ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କୁ କହିଥିଲେ–'ମଦରଟେରେସା ଏହି ପୁରସ୍କାର ଗ୍ରହଣ କରିବା ସମୟରେ ମୋର ମନେ ହେଉଛି ସତେଯେପରି ସେ ଭାରତର ଗୋଟିଏ ମୁମୂର୍ଷୁ ପୀଡ଼ିତ ବ୍ୟକ୍ତିକୁ କୋଳେଇ ଧରିଛନ୍ତି ।' ଅର୍ଥାତ୍ ପଦ୍ମଶ୍ରୀ ପୁରସ୍କାର ଧନ୍ୟ ହୋଇଯାଇଛି ମଦରଟେରେସାଙ୍କୁ ସମ୍ମାନିତ କରି । ସେହି ବର୍ଷ ସେ ପୁଣି ଲାଭ କରିଥିଲେ 'ମାଗାସେସ୍' ପୁରସ୍କାର, ୧୯୬୯ ମସିହାରେ ପାଇଥିଲେ ଜବାହରଲାଲ ନେହେରୁ ପୁରସ୍କାର, ୧୯୭୧ରେ ତ୍ରୟୋବିଂଶ ଜନ୍ ଶାନ୍ତି ପୁରସ୍କାର, ପ୍ରେସିଡେଣ୍ଟ କେନେଡ଼ି ପୁରସ୍କାର ଓ 'ଗୁଡ୍ ସାମାରିଟାନ' ପୁରସ୍କାର ଲାଭ କରିଥିଲେ । ୧୯୭୯ ମସିହାରେ ସେବା ନିମିତ୍ତ ଲାଭ କରିଥିଲେ ନୋବେଲ ଶାନ୍ତି ପୁରସ୍କାର । ୧୯୮୦ରେ ଭାରତରତ୍ନ, ୧୯୮୩ରେ ଅର୍ଡ଼ର ଅଫ୍ ଦି ମେରିନ୍ ସମ୍ମାନ ସହ ଭାଟିକାନ୍ ଜନ୍ ପୋପ୍ ଶାନ୍ତି ପୁରସ୍କାର, ୧୯୮୯ରେ ଗ୍ରେଟ୍‌ବ୍ରିଟେନର ଶ୍ରେଷ୍ଠମାନବ ଓ ୧୯୯୬ ନଭେମ୍ବର ୨୭ ତାରିଖରେ ଲାଭ କରିଥିଲେ 'ଆଲବେନିଆ ସ୍ୱର୍ଣ୍ଣ ସମ୍ମାନ' । ଏମିତି ଅନେକ ସମ୍ମାନ ଓ ପୁରସ୍କାରର ଧାଡ଼ି ଲମ୍ବି ଆସିଥିଲା ତାଙ୍କ ନିକଟକୁ । ମାତ୍ର ସେ ଦୀନ, ଅସହାୟ ସେବାରେ ଯେଉଁ ପରିମାଣରେ ଆନନ୍ଦ ଲାଭ କରୁଥିଲେ, ଏହି ପୁରସ୍କାର ଓ ସମ୍ମାନ ତାଙ୍କୁ ସେହି ପରିମାଣରେ ଆନନ୍ଦ ଦେଇପାରୁ ନ ଥିଲା । ସେ ସମସ୍ତ ପୁରସ୍କାର ଏବଂ ସମ୍ମାନର ଅର୍ଥକୁ ଦଳିତମାନଙ୍କର ସେବାପାଇଁ ଉତ୍ସର୍ଗ କରିଦେଇଥିଲେ । ସମ୍ମାନ ତାଙ୍କ ପାଇଁ ବଡ଼କଥା ନ ଥିଲା, ବରଂ ସମ୍ମାନ ସମ୍ମାନିତ ହେଉଥିଲା ତାଙ୍କ ପାଇଁ ।

ପ୍ରେମ-ଧର୍ମ-କର୍ମ-ନିବେଦିତା ସନ୍ୟାସିନୀ ମଦରଟେରେସା ଜଣେ ଆଶ୍ଚର୍ଯ୍ୟ ଅଭିଯାତ୍ରୀ । ସେ ରୂପକଥାର ଚରିତ୍ର ନୁହନ୍ତି; ମାତ୍ର ସମସ୍ତ ଆଶ୍ଚର୍ଯ୍ୟ ଗୁଣରେ ପରିପୂର୍ଣ୍ଣା । ତାଙ୍କ ଅଭିନନ୍ଦନରେ ଭଲପାଇବାର ପ୍ରଲେପ ଗୋଳି ହୋଇଥିଲା । ଦୟା ଓ କରୁଣାର ମୂର୍ତ୍ତିମନ୍ତ ଦେବୀ, ଦୁଃସ୍ଥଙ୍କର ନିଶ୍ଚିତ ନିରାପତ୍ତା, ମୃତ୍ୟୁ ଅପେକ୍ଷମାଣ ଯାତ୍ରୀର ଶେଷ ସାନ୍ତ୍ୱନା ଏହି ମହିୟସୀ ନାରୀଙ୍କର ୧୯୯୭ ମସିହା ସେପ୍ଟେମ୍ବର ୫ ତାରିଖରେ ମହାପ୍ରୟାଣ ଘଟିଲା । କିଛି ମୁହୂର୍ତ୍ତ ପାଇଁ ଲିଭିଗଲା ଜଗତର ସମସ୍ତ ଆଲୋକ । ନିସ୍ତବ୍‌ଧ, ମୂକ ପାଲଟିଗଲେ କୋଟି କୋଟି ଦୁଃସ୍ଥ ଅବହେଳିତ । ଦୀର୍ଘ ୮୬ ବର୍ଷର କର୍ମମୟ ଜୀବନର ପରିସମାପ୍ତି ଘଟିଲା । ଅନାଥ ହୋଇଗଲେ ସ୍ନେହକାଙ୍ଗାଳ ମଣିଷଗୁଡ଼ିକ । ସତ୍ ଇଚ୍ଛାର ସାକାର ରୂପ ଚିରଦିନ ପାଇଁ ନିର୍ବାକ୍ ହୋଇଗଲା ।

ଦୀର୍ଘ ଜୀବନଯାତ୍ରା–ସ୍କପେଜରୁ କଲିକତା, ପାଶ୍ଚାତ୍ୟରୁ ପ୍ରାଚ୍ୟ, ବସ୍ତିଗଳିରୁ ରାଜପଥ, କ୍ଳାନ୍ତିର ଚିହ୍ନ ବର୍ଣ୍ଣ ନାହିଁ । ସେବା ଥିଲା ତାଙ୍କର ତପସ୍ୟା; ତପସ୍ୱିନୀର ଜୀବନ ନେଇ ବିତାଇଦେଲେ ଦୀର୍ଘ ୮୬ ବର୍ଷ । ମୁଖରେ ଦୟା ଓ କରୁଣାର ପରିଭାଷା । ଉଷ୍ଣ ହାତର ମୁଲାୟମ ସ୍ପର୍ଶ ରୋଗୀର ରୋଗ ଦୂରକରି ଦେଉଥିଲା । ଆଖିରେ ଚିହ୍ନା ଚିହ୍ନା ହସ । ଗୋଟିଏ

ମୁହୂର୍ତ୍ତରେ ଆପଣେଇ ନେବାର ସଙ୍କେତ । ଏପରି ଏକ ମହୀୟସୀ ମହିଳାଙ୍କ ପାଇଁ ଭାରତ ଆଜି ଗର୍ବିତ । ସେ ଅବିବାହିତା; ମାତ୍ର କୋଟି କୋଟି ସନ୍ତାନର ମା' । ସେ ମାନବୀ—ମାତ୍ର କୋଟି କୋଟି ଦଳିତ ନିଷ୍ପେଷିତଙ୍କ ଆଖିରେ ଦେବୀ ପ୍ରତିମାଟିଏ । ପ୍ରାଚୁର୍ଯ୍ୟର ଲହଡ଼ି ଭାଙ୍ଗୁଥିଲା ତାଙ୍କ ପାଦତଳେ, ତଥାପି ସେ ନିର୍ବିକାର, ଅନାସକ୍ତ । ସନ୍ନ୍ୟାସିନୀର ଜୀବନ ନେଇ ବିତାଇଦେଲେ ୮୬ ବର୍ଷ । ଶେଷ ପର୍ଯ୍ୟନ୍ତ କ୍ଳାନ୍ତିର ସାମାନ୍ୟ କଳାଦାଗଟିଏ ନ ଥିଲା ତାଙ୍କ ଆଖିରେ । ଭାରତୀୟ ସାମାଜିକ ଓ ସାଂସ୍କୃତିକ ଜୀବନର ଚଳମାନ ଧାରାଟିଏ ସେ । ତାଙ୍କ ଅବର୍ତ୍ତମାନରେ ସେହି ଧାରାଟି ଶୁଷ୍କ ହୋଇପଡ଼ିଛି । ତଥାପି ଅପେକ୍ଷା କରିଛି ଭାରତବର୍ଷ; ଅପେକ୍ଷା କରିଛି କୋଟି କୋଟି ଅସହାୟର ହୃଦୟ । ତାଙ୍କ ବିଦେହ ଆତ୍ମା ଘୂରିବୁଲୁଛି ପୃଥିବୀର ପାଣି ପବନରେ । ଯେଉଁଠି ଅସହାୟତାର ସ୍ୱରଟିଏ; ସେଇଠି ଉପସ୍ଥିତ ମଦର ଟେରେସାଙ୍କ ଅତୃପ୍ତ ଆତ୍ମା । ତାଙ୍କର ସ୍ଥୂଳ ଶରୀରକୁ ମାଟି ଗ୍ରାସ କରିଯାଇଛି; ମାତ୍ର ସୂକ୍ଷ୍ମ ଶରୀର ଏବେବି ସମୟର ପବନରେ ତା'ର ସତ୍ତାକୁ ଜାହିର କରୁଛି । ତେଣୁ ସେ ଚିର ଅମର । ସେପରି ବ୍ୟକ୍ତିତ୍ୱଙ୍କର ମୃତ୍ୟୁ-ମଧ୍ୟ କଦାପି ହୋଇନ ପାରେ ।



# ଉତ୍କଳଗୌରବ ମଧୁସୂଦନ

**(ଉପକ୍ରମ, ଜନ୍ମ, ଶିକ୍ଷା ଓ ଜୀବିକା, ରାଜନୀତିକ ଜୀବନ, ଓଡ଼ିଶା ପାଇଁ ଅବଦାନ, ସମ୍ମାନ, ଉପସଂହାର)**

ଜାତି ନନ୍ଦିଘୋଷ ଚଳିବ କି ଭାଇ
 ସ୍ୱାର୍ଥକୁ ସାରଥି କଲେ
ଟାଣେ କିରେ ଘୋଡ଼ା ଦାନାର ତୋବଡ଼ା
 ଘୋଡ଼ା ମୁହେଁ ବନ୍ଧା ଥିଲେ ।

ଓଡ଼ିଶାର ସ୍ୱାଭିମାନ, ଆତ୍ମସମ୍ମାନ ଏବଂ ଯାହାକିଛି ଗୌରବ ରହିଛି, ତା ସହିତ ପ୍ରଥମେ ଯଦି କୌଣସି ବ୍ୟକ୍ତିର ନାମ ଜଡ଼ିତ ହୁଏ, ତେବେ ସେ ହେବେ ମିଃ ଏମ୍. ଏସ୍., ବା ମଧୁସୂଦନ ଦାସ । ଭାରତରେ ଓଡ଼ିଶା ପରି ଏକ ପ୍ରଦେଶ ରହିଛି ବୋଲି ଇଂଲଣ୍ଡରେ ବସବାସ କରୁଥିବା ଇଂରେଜମାନେ ପ୍ରଥମେ ମଧୁସୂଦନ ଦାସଙ୍କ ଠାରୁ ହିଁ ଜାଣିବାକୁ ପାଇଥିଲେ । ଓଡ଼ିଶାକୁ ଏକତ୍ରିତ କରିବାକୁ, ଓଡ଼ିଆମାନଙ୍କ ମନରେ ଜାତିପ୍ରୀତି ଭରିଦେବାକୁ ଓ ଓଡ଼ିଆ ତଥା ଓଡ଼ିଶାମାଟିର ବିଶେଷତ୍ୱକୁ ଜଗତ ସମ୍ମୁଖରେ ତୋଳି ଧରିବାକୁ ସେ ଯେଉଁ କୃଚ୍ଛ୍ର ସାଧନା କରିଛନ୍ତି, ତା'ର ପଟାନ୍ତର ନାହିଁ । ତାଙ୍କର ଆବିର୍ଭାବ ବାସ୍ତବରେ ଓଡ଼ିଆମାନଙ୍କ ପ୍ରାଣରେ ଜୀବନ ସଞ୍ଚାର କରିଛି । ଓଡ଼ିଶାର ଚରମ ଦୁର୍ଦ୍ଦିନରେ ସେ ପ୍ରଥମେ ହିଁ ମାର୍ଗ ଦର୍ଶନ କରାଇଛନ୍ତି ।

ଜାତୀୟତାର ମନ୍ତ୍ରରେ ସୁପ୍ତ ଜାତିକୁ ଉଦ୍‌ବୁଦ୍ଧ କରିଛନ୍ତି । ସାମାଜିକ ଜୀବନରେ ଭରିରହିଥିବା ଅନ୍ଧକାରକୁ ଦୂରକରି ଆଲୋକର ପ୍ରଜ୍ୱଳନ କରିଛନ୍ତି । ଜାତୀୟ ଜୀବନକୁ ସଙ୍ଗଠିତ କରି ଆତ୍ମପ୍ରତିଷ୍ଠା ପାଇଁ ଖୋଲି ଦେଇଛନ୍ତି ଯୁଗଯୁଗର କୁସଂସ୍କାର ପରିପୂର୍ଣ୍ଣ ରୁଦ୍ଧଦ୍ୱାର ସବୁ । ଓଡ଼ିଶାର ଜାତୀୟ, ସାମାଜିକ, ରାଜନୀତିକ, ଆର୍ଥନୀତିକ ଜୀବନ ସହିତ ଅର୍ଦ୍ଧଶତାବ୍ଦୀରୁ ଅଧିକ କାଳ ଓତପ୍ରୋତ ଜଡ଼ିତ ରହି ଏହାର ସମୃଦ୍ଧି ନିମିତ୍ତ ସେ ଯେପରି ନିଜକୁ ଉତ୍ସର୍ଗ କରିଦେଇଛନ୍ତି, ତା'ର ପ୍ରତିଦାନ କୌଣସି ଓଡ଼ିଆ କେବେବି ଦେଇପାରିବ ନାହିଁ ।

୧୮୪୮ ମସିହା ଏପ୍ରିଲ ୨୮ ତାରିଖ ଦିନ ମଧୁସୂଦନ ଜନ୍ମ ହୋଇଥିଲେ କଟକ ଜିଲ୍ଲାର ସତ୍ୟାଭାମାପୁର ଗ୍ରାମରେ । ତାଙ୍କ ପିତାଙ୍କ ନାମ ଥିଲା ରଘୁନାଥ ଦାସ ଓ ମାତା ପାର୍ବତୀ ଦେବୀ । ମଧୁସୂଦନଙ୍କ ପିତୃଦତ୍ତ ନାମ ଥିଲା ଗୋବିନ୍ଦବଲ୍ଲଭ । ଗ୍ରାମର କ୍ଷୁଦ୍ର ଚାଟଶାଳୀରୁ ବାଲ୍ୟଶିକ୍ଷା ସମାପ୍ତ କରି କଟକର ସରକାରୀ ହାଇସ୍କୁଲ (ପରବର୍ତ୍ତୀ କାଳର ରେଭେନ୍‌ସା କଲିଜିଏଟ୍ ସ୍କୁଲ)ରେ ନାମ ଲେଖାଇଲେ । ୧୯୬୪ ମସିହାରେ ଏଣ୍ଟ୍ରାନ୍‌ସ ପାସ୍ କରିବା ପରେ ଅଧ୍ୟୟନର ଇଚ୍ଛା ଥିଲେହେଁ ଅର୍ଥାଭାବରୁ ତାହା ସାକାର ହୋଇପାରି ନ ଥିଲା । ଉଚ୍ଚଶିକ୍ଷା ପାଇଁ ଓଡ଼ିଶାରେ କଲେଜ ନ ଥିବାରୁ ଛାତ୍ରମାନଙ୍କୁ କଲିକତା ଯିବାକୁ ପଡୁଥିଲା । କିଛି ଅର୍ଥ ଆୟ ଲକ୍ଷ୍ୟ ନେଇ ଗୋବିନ୍ଦବଲ୍ଲଭ ବାଲେଶ୍ୱର ଜିଲ୍ଲା ସ୍କୁଲରେ ଶିକ୍ଷକତା ଜୀବନ ଆରମ୍ଭ କଲେ । ୧୮୬୬ ମସିହାରେ ସାମାନ୍ୟ ଅର୍ଥ ଧରି ଉଚ୍ଚଶିକ୍ଷା ପାଇଁ ସେ କଲିକତା ଯାତ୍ରା କଲେ । ସେଠାରେ ଅର୍ଥାଭାବ ବଡ଼ ପ୍ରତିବନ୍ଧକ ଭାବରେ ତାଙ୍କ ଆଗରେ ଠିଆ ହେଲା । ଖ୍ରୀଷ୍ଟିଆନ୍ ଧର୍ମପ୍ରଚାରକମାନେ ସେତେବେଳେ ଖ୍ରୀଷ୍ଟିଆନ୍ ଛାତ୍ରମାନଙ୍କୁ ଅଧ୍ୟୟନ ନିମିତ୍ତ ଅର୍ଥ ସାହାଯ୍ୟ କରୁଥିଲେ । କୌଣସି ଉପାୟ ନ ପାଇ ଗୋବିନ୍ଦବଲ୍ଲଭ ଖ୍ରୀଷ୍ଟିଆନ ଧର୍ମରେ ଦୀକ୍ଷିତ ହେଲେ ଏବଂ ତାଙ୍କର ନାମ ଗୋବିନ୍ଦ ବଲ୍ଲଭରୁ ହେଲା ମଧୁସୂଦନ । ୧୮୭୦ ମସିହାରେ ବି.ଏ. ପାସ୍ କରିବା ପରେ ଗୋଟିଏ ହାଇସ୍କୁଲର ପ୍ରଧାନଶିକ୍ଷକ ରୂପେ କାର୍ଯ୍ୟ କରିଥିଲେ । ହାଇକୋର୍ଟରେ ମଧ କିଛିଦିନ ପାଇଁ ଅନୁବାଦକ ରୂପେ ନିଯୁକ୍ତ ହୋଇଥିଲେ । ୧୮୭୩ ମସିହାରେ ଇଂରାଜୀ ସାହିତ୍ୟରେ ଏମ୍. ଏ. ପାସ କରିବାପରେ ବି.ଏଲ୍. ପରୀକ୍ଷା ଦେଇଥିଲେ । ବି.ଏଲ୍. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ସଙ୍ଗେ ସଙ୍ଗେ କଲିକତା ହାଇକୋର୍ଟରେ ଓକିଲାତି ଜୀବନ ଆରମ୍ଭ କରିଥିଲେ । କଲିକତାରେ ଜଣେ ଖ୍ରୀଷ୍ଟିଆନ ତରୁଣୀକୁ ବିବାହ କରିଥିଲେ । ମାତ୍ର ତାଙ୍କର ଦାମ୍ପତ୍ୟ ଜୀବନ ଥିଲା କ୍ଷଣସ୍ଥାୟୀ । ପତ୍ନୀଙ୍କର ମୃତ୍ୟୁ ପରେ ସେ ଆଉ ଦ୍ୱିତୀୟ ବିବାହ କରିନଥିଲେ । ୧୮୮୦-୮୧ ମସିହା ବେଳକୁ ମଧୁସୂଦନ କଲିକତାରୁ ଫେରିଆସିଲେ କଟକକୁ । ଏହିଠାରୁ ଆରମ୍ଭ ହେଲା ତାଙ୍କର ଘଟଣାବହୁଳ ଜୀବନ । ପ୍ରଖର ବୁଦ୍ଧି ଯୋଗୁଁ ସେ ଖୁବ୍ କମ୍ ଦିନ ମଧରେ ଜଣେ ପ୍ରଖ୍ୟାତ ଓକିଲ ଭାବରେ ପରିଚିତ ହୋଇଗଲେ । ଇଂରେଜ ସରକାର ପୁରୀ ରାଜାଙ୍କ ହାତରୁ ଜଗନ୍ନାଥ ମନ୍ଦିର ପରିଚାଳନା ଭାର କାଢ଼ିନେବାକୁ ଆଇନ ପ୍ରଣୟନ କରିବାରୁ ମଧୁସୂଦନ ଏହା ବିରୋଧରେ ଲଢ଼ାଇ କରି ସେହି ଆଇନକୁ ରଦ୍ଦ କରି ଦେଇଥିଲେ । ବହୁ ଗରିବମାନଙ୍କ ପାଇଁ ମାଗଣାରେ ଅଦାଲତରେ ଲଢ଼ି ନ୍ୟାୟ

ଦାନ କରିଥିଲେ । ୧୮୮୩ ମସିହାରେ ରେଭେନ୍‌ସା କଲେଜରେ ଥିବା 'ଆଇନ୍' ଶ୍ରେଣୀରେ ଅଧ୍ୟାପକ ଭାବେ କାର୍ଯ୍ୟ କରିଥିଲେ । କଟକ ଜିଲ୍ଲା ବୋର୍ଡ଼ର ଚେୟାରମ୍ୟାନ ରୂପେ ଦକ୍ଷତାର ସହିତ ନିଜ କାର୍ଯ୍ୟ ତୁଲାଇଥିଲେ । କିଛିକାଳ ପାଇଁ କଲିକତା ବିଶ୍ୱବିଦ୍ୟାଳୟର ସଭ୍ୟ ରୂପେ ମନୋନୀତ ହୋଇଥିଲେ । ଓକିଲାତି ସହିତ ଓଡ଼ିଶାର ସାମଗ୍ରିକ ବିକାଶ ନିମିତ୍ତ ସେ ବିଭିନ୍ନ ପଦକ୍ଷେପମାନ ଗ୍ରହଣ କରିଥିଲେ । ସମଗ୍ର ଭାରତରେ ଭାଷାଭିତ୍ତିକ ପ୍ରଦେଶ ଗଠନ ପାଇଁ ପ୍ରଥମେ ମଧୁସୂଦନଙ୍କ ମସ୍ତିଷ୍କରୁ ହିଁ ଚିନ୍ତାଧାରା ପ୍ରକଟିତ ହୋଇଥିଲା । ଏକ କିମ୍ବଦନ୍ତୀର ନାୟକ ପରି ତାଙ୍କ କାର୍ଯ୍ୟାବଳୀର ତୁଳନା ନାହିଁ ।

ଜାତୀୟ କଂଗ୍ରେସର ସଭ୍ୟଭାବରେ ମଧୁସୂଦନଙ୍କର ରାଜନୀତିକ ଜୀବନର ଆରମ୍ଭ । ଏହା ପୂର୍ବରୁ ମଧ୍ୟପ୍ରଦେଶ ଓ ମାନ୍ଦ୍ରାଜ ଅଞ୍ଚଳରୁ ଓଡ଼ିଶାକୁ ଅଲଗା କରି ତାକୁ ଏକ ସ୍ୱତନ୍ତ୍ର ଡିଭିଜନ କରିବାକୁ ମଧୁବାବୁ ସାର୍ ରିଚାର୍ଡ଼ ଥମ୍‌ସନ୍‌ଙ୍କୁ ପ୍ରସ୍ତାବ ଦେଇଥିଲେ । ଜାତୀୟ କଂଗ୍ରେସର ଦ୍ୱିତୀୟ ଅଧିବେଶନକୁ ମଧୁସୂଦନ ଓଡ଼ିଶାରୁ ଯୋଗ ଦେବାକୁ ଯାଉଥିବା ବ୍ୟକ୍ତିମାନଙ୍କର ପ୍ରତିନିଧି ରୂପେ ଯାଇଥିଲେ । ତୃତୀୟ ଅଧିବେଶନରେ ଯୋଗ ଦେଇ ଫେରିବା ପରେ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦିଆଯାଇଥିଲା । ସେ ସେତେବେଳେ ମହାଭାରତୀୟ ଚିନ୍ତା ଚେତନାରେ ଉଦ୍‌ବୁଦ୍ଧ ହୋଇ ଭାରତର ସ୍ୱାଧୀନତା ନିମିତ୍ତ କାର୍ଯ୍ୟ କରିବାକୁ ଜନସାଧାରଣଙ୍କୁ ଉଦ୍‌ବୋଧନ ଦେଇଥିଲେ । ସେତେବେଳେ ସେ ଓଡ଼ିଶାକୁ ଭାରତଠାରୁ ପୃଥକ ଭାବେ ଚିନ୍ତା କରି ନ ଥିଲେ । ଭାରତର ସ୍ୱାଧୀନତା ମଧ୍ୟରେ ଓଡ଼ିଶାର ସ୍ୱାର୍ଥକୁ ସୁରକ୍ଷିତ ରଖାଯାଇପାରିବ ବୋଲି ସେତେବେଳେ ତାଙ୍କର ଦୃଢ଼ ଧାରଣା ଥିଲା । କିନ୍ତୁ ଯେତେବେଳେ ସେ ଅନୁଭବ କଲେ ଏହାଦ୍ୱାରା ଓଡ଼ିଶାର ଦାବି ଓ ସ୍ୱାର୍ଥ ରକ୍ଷା କରିବା ସମ୍ଭବ ନୁହେଁ, ସେତେବେଳେ ସେ ସ୍ୱତନ୍ତ୍ର ଉତ୍କଳ ଗଠନ ନିମିତ୍ତ ଭିନ୍ନ ଉପାୟ ଚିନ୍ତା କରି ଏଥିରୁ ଓହରି ଆସିଥିଲେ । ତା'ପରେ ଆରମ୍ଭ ହୋଇଥିଲା ନବ୍ୟ ଉତ୍କଳର ନିର୍ମାଣ ପାଇଁ ବିଭିନ୍ନ କାର୍ଯ୍ୟକ୍ରମ ।

୧୮୮୫ ମସିହାରେ ସାର୍ ଷ୍ଟୁଆର୍ଟଙ୍କୁ କଟକରେ ସମ୍ବର୍ଦ୍ଧନା ଦିଆଯିବା ସମୟରେ ଉତ୍କଳର ଏକତ୍ରୀକରଣ ପାଇଁ ସେ ଏକ ସ୍ମାରକପତ୍ର ତାଙ୍କୁ ଦେଇଥିଲେ । ୧୮୯୭ ମସିହାରେ ଇଂଲଣ୍ଡ ଯାଇଥିବା ସମୟରେ ସେଠାରେ ଓଡ଼ିଶାରେ ନିର୍ମିତ ତାରକସି କାମ, ହାତୀଦାନ୍ତ ଓ ଶିଙ୍ଗର କାରୁକାର୍ଯ୍ୟ ତଥା ବିଭିନ୍ନ ବସ୍ତ୍ରର ଏକ ଶିଳ୍ପ ପ୍ରଦର୍ଶନ କରିଥିଲେ । ୧୯୦୩ ମସିହାରେ 'ଉତ୍କଳ ସମ୍ମିଳନୀ'ର ସୂତ୍ରପାତ କରି ଓଡ଼ିଆମାନଙ୍କ ମନରେ ଜାତୀୟତାର ନବତରଙ୍ଗ ଖେଳାଇ ଦେଇଥିଲେ । ଉତ୍କଳ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠିତ ହେବା କ୍ଷେତ୍ରରେ ତାଙ୍କର ଅବଦାନ ସର୍ବାଦୌ ସ୍ମରଣୀୟ । ବିଭିନ୍ନ ସ୍ଥାନରେ ଏହି ସମ୍ମିଳନୀର ଅଧିବେଶନ କରି ଲୋକମାନଙ୍କ ମନରେ ଜାତୀୟ ଚେତନା ସୃଷ୍ଟି କରିଥିଲେ । 'ଉତ୍କଳ ସମ୍ମିଳନୀ' ମାଧ୍ୟମରେ ରାଜା-ମହାରାଜାଙ୍କ ଠାରୁ ଆରମ୍ଭ କରି ସାଧାରଣ ଲୋକଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ଏକଜୁଟ କରିପାରିଥିଲେ । ୧୯୦୭ ମସିହାରେ ବିଲାତ ଯାତ୍ରା ସମୟରେ ଓଡ଼ିଶାର ଶିଳ୍ପର ବିକାଶ ତଥା ବିଚ୍ଛିନ୍ନ ଅଞ୍ଚଳର ମିଶ୍ରଣ ପାଇଁ ସେ ବିଭିନ୍ନ ସ୍ଥାନରେ ଓଜସ୍ୱିନୀ ଭାଷଣ ପ୍ରଦାନ କରିଥିଲେ । ମଣ୍ଟେଗୁ ଓ ଚେମସ୍‌ଫୋର୍ଡ଼ଙ୍କ

ସହିତ ମଧ ସେ ଏ ସମ୍ପର୍କରେ ଆଲୋଚନା କରିଥିଲେ । ୧୯୧୨ ମସିହାରେ ବିହାର ଓଡ଼ିଶା ପ୍ରଦେଶ ଗଠିତ ହେବା ପରେ ଲେଜିସଲେଟିଭ କାଉନ୍‌ସିଲକୁ ନିର୍ବାଚିତ ହୋଇ ଓଡ଼ିଶାର ସ୍ୱାର୍ଥ ପାଇଁ ଗୁରୁତ୍ୱ ପ୍ରଦାନ କରିଥିଲେ । ୧୯୧୯ ଖ୍ରୀ.ରେ ଭାରତ ଶାସନ ଆଇନ ଅନୁଯାୟୀ ନିର୍ବାଚନରେ ଲେଜିସ୍‌ଲେଟିଭ୍ କାଉନ୍‌ସିଲର ସଭ୍ୟ ରୂପେ ନିର୍ବାଚିତ ହୋଇଥିଲେ । ୧୯୨୧ ମସିହାରେ ବିହାର-ଓଡ଼ିଶାର ପ୍ରଥମ ଓଡ଼ିଆ ମନ୍ତ୍ରୀ ହେବାର ଗୌରବ ଅର୍ଜନ କରିଥିଲେ । ଦୁଇ ବର୍ଷ କାଳ ସ୍ୱାୟତ୍ତ ଶାସନ ଓ ନିର୍ମାଣ ବିଭାଗର ଦାୟିତ୍ୱରେ ରହି ନିଜର ଦକ୍ଷତା ପ୍ରତିପାଦନ କରିଥିଲେ । ମନ୍ତ୍ରୀମାନେ ଜନସେବକ ଭାବରେ ଦରମା ନ ନେବା ପାଇଁ ସରକାରଙ୍କୁ ପ୍ରସ୍ତାବ ଦେଇଥିଲେ । ମାତ୍ର ସରକାର ସେହି ପ୍ରସ୍ତାବକୁ ଗ୍ରହଣ ନ କରିବାରୁ ଏବଂ କେତେକ କ୍ଷେତ୍ରରେ ବିବେକ ବିରୋଧରେ କାର୍ଯ୍ୟ କରିବାକୁ ପଡୁଥିବାର ଦେଖି ସେ ମନ୍ତ୍ରୀ ପଦବୀରୁ ଇସ୍ତଫା ଦେଇ ନିଜର ଦୃଢ଼ ମନୋବଳ ପ୍ରକାଶ କରିଥିଲେ । ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ସାଧନ ଥିଲା ତାଙ୍କର ସର୍ବଶ୍ରେଷ୍ଠ ଲକ୍ଷ୍ୟ । ଓଡ଼ିଶାରେ ଶିଳ୍ପର ବିକାଶ ପାଇଁ 'ଉତ୍କଳ ଟ୍ୟାନେରୀ' ଏବଂ ଓଡ଼ିଶା ତାରକସି କାମ ନାମରେ ଦୁଇଟି ଶିଳ୍ପ ପ୍ରତିଷ୍ଠା କରିଥିଲେ । ଓଡ଼ିଶାରେ ବାଳିକା ଶିକ୍ଷା ଓ କଲେଜ ଶିକ୍ଷାର ପ୍ରସାର, କୃଷିର ଉନ୍ନତି ନିମିତ୍ତ ସେ ବିଭିନ୍ନ ପଦକ୍ଷେପ ଗ୍ରହଣ କରିଥିଲେ । ଜମିଦାରୀ ପ୍ରଥା ବିଲୋପ କରି କୃଷକମାନଙ୍କ ହାତରେ ଜମି ଦେବାପାଇଁ ସେ ଉଦ୍ୟମ କରିଥିଲେ । ସେଥିପାଇଁ ୧୯୧୨ ମସିହାରେ ବଙ୍ଗଳା ଲେଜିସ୍‌ଲେଟିଭ କାଉନ୍‌ସିଲର ଅଧିବେଶନରେ ପ୍ରଜାସ୍ୱତ୍ୱ ଆଇନ ସମ୍ପର୍କରେ ହୋଇଥିବା ଆଲୋଚନାରେ ସେ ଏଥିପାଇଁ କଠୋର ଯୁକ୍ତି ବାଢ଼ିଥିଲେ । ସ୍ୱଦେଶୀ ଶିଳ୍ପର ବିକାଶ, କୃଷକର ଉନ୍ନତି ତଥା ଓଡ଼ିଆ ଭାଷା ଓ ଦେଶର ବିକାଶ ପାଇଁ ସେ ଯାହା କରିଯାଇଛନ୍ତି, ଅନ୍ୟ କୌଣସି ଓଡ଼ିଆ ପୁଅ ଦ୍ୱାରା ତାହା ସମ୍ଭବ ହୋଇପାରିବ  ନାହିଁ । ଓଡ଼ିଶା ଏବଂ ଓଡ଼ିଆଙ୍କ ପାଇଁ.ତାଙ୍କ ପ୍ରାଣରେ ଦରଦ ଭରି ରହିଥିଲା । କେବଳ ତାଙ୍କ ଯୋଗୁଁ ହିଁ ୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠିତ ହୋଇପାରିଥିଲା । ଅବଶ୍ୟ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶକୁ ଦେଖିବାର ଭାଗ୍ୟ ତାଙ୍କର ନ ଥିଲା । ମାତ୍ର ସେ ହିଁ ହେଉଛନ୍ତି ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶର ଗଠନକର୍ତ୍ତା । ତାଙ୍କରି ପାଇଁ ସେତେବେଳେ ବିଭିନ୍ନ କ୍ଷେତ୍ରରେ ଓଡ଼ିଶାର ସ୍ୱାର୍ଥ ସୁରକ୍ଷିତ ହୋଇପାରିଥିଲା ।

ମଧୁସୂଦନ ନିଜର କର୍ମ ପାଇଁ ବହୁ ସମ୍ମାନ ଲାଭ କରିଥିଲେ । ତାଙ୍କର ବ୍ୟକ୍ତିତ୍ୱ ଓ କର୍ମନିଷ୍ଠା ହିଁ ତାଙ୍କୁ ବିଭିନ୍ନ ପଦପଦବୀରେ ଭୂଷିତ କରିଥିଲା । ୧୯୦୪ ମସିହାରେ ତତ୍କାଳୀନ ସରକାର ତାଙ୍କୁ ସି. ଆଇ. ଇ. ଉପାଧି ପ୍ରଦାନ କରିଥିଲେ । କବି ଚନ୍ଦ୍ରଶେଖର ମିଶ୍ର ତାଙ୍କୁ 'ଉତ୍କଳକେଶରୀ' ବୋଲି କହିଥିଲେ । କର୍ମବୀର ଗୌରୀଶଙ୍କର ମଧୁସୂଦନଙ୍କୁ 'ଉତ୍କଳଗୌରବ' ବୋଲି ଆଖ୍ୟାୟିତ କରିଥିଲେ । ସେ ପ୍ରଚୁର ସମ୍ପତ୍ତିର ଅଧିକାରୀ ହୋଇଥିଲେହେଁ ଓଡ଼ିଶାର ବିକାଶ ଓ ସମ୍ମାନ ପାଇଁ ସମସ୍ତ ଖର୍ଚ୍ଚ କରିଦେଇ ଜୀବନର ଶେଷବେଳକୁ ଦେବାଳିଆ ହୋଇପଡ଼ିଥିଲେ । ଜିଲ୍ଲା ବୋର୍ଡ଼ର ଭାଇସ ଚେୟାରମ୍ୟାନ ଠାରୁ ମନ୍ତ୍ରୀପଦ ପର୍ଯ୍ୟନ୍ତ ସେ ଯେଉଁ ଦାୟିତ୍ୱ ଗ୍ରହଣ କରିଛନ୍ତି, ଅତ୍ୟନ୍ତ ଦକ୍ଷତାର ସହିତ ତା'ର ପରିପାଳନ କରିଛନ୍ତି ଓ

ସବୁକ୍ଷେତ୍ରରେ ଓଡ଼ିଶାର ଓ ଓଡ଼ିଆଙ୍କ ସର୍ବାଙ୍ଗୀନ ଉନ୍ନତି ପାଇଁ ଉଦ୍ୟମ କରିଛନ୍ତି । ମନ୍ତ୍ରୀପଦ ତ୍ୟାଗ କରି ସେ ଯେଉଁ ନିଷ୍ଠା, ସାଧୁତା ଓ ବିବେକତାର ପରିଚୟ ପ୍ରଦାନ କରିଥିଲେ, ତା'ର ପଟାନ୍ତର ନାହିଁ ।

ମଧୁସୂଦନ ଥିଲେ ଓଡ଼ିଆ ଜାତିର ସ୍ୱାଭିମାନର ପ୍ରତୀକ । ସେ ଜଣେ କର୍ମବୀର । କଥା ଅପେକ୍ଷା କାର୍ଯ୍ୟ ଉପରେ ସେ ଅଧିକ ଗୁରୁତ୍ୱ ପ୍ରଦାନ କରୁଥିଲେ । ଓଡ଼ିଆ ଜାତିର ସମ୍ମାନ ଏବଂ ମର୍ଯ୍ୟାଦା ରକ୍ଷା କରିବା ପାଇଁ ଯାହା ସେ କରିଯାଇଛନ୍ତି, ତାହା ତାଙ୍କୁ ଓଡ଼ିଶାର ଜନସାଧାରଣଙ୍କ ନିକଟରେ ଚିର ଜୀବିତ କରି ରଖିବ । ଓଡ଼ିଆ ଦେଶ, ଭାଷା ଏବଂ ମଣିଷ—ସମସ୍ତଙ୍କୁ ସେ ପ୍ରାଣଭରି ଭଲ ପାଉଥିଲେ । ଜଗନ୍ନାଥ ମନ୍ଦିରକୁ ପ୍ରବେଶ କରିବାର ଅଧିକାର ସେ ହରାଇ ବସିଥିଲେହେଁ, ମନ୍ଦିର ପରିଚାଳନା କ୍ଷେତ୍ରରେ ଗୋରାମାନଙ୍କର ଆଧିପତ୍ୟକୁ ସେ ଆଦୌ ସହ୍ୟ କରିପାରି ନାହାନ୍ତି । ଅଦାଲତର ଆଶ୍ରୟ ନେଇ ଜଜ୍ ସାହେବଙ୍କ ରିସିଭର ନିଯୁକ୍ତିକୁ ଚାଲେଞ୍ଜ କରିଥିଲେ ଏବଂ ଉଚ୍ଚ ନ୍ୟାୟାଳୟରେ ଜୟଲାଭ କରିଥିଲେ । ମଧୁସୂଦନ ପ୍ରକୃତରେ ଥିଲେ ନବଉତ୍କଳର ଜନ୍ମଦାତା, ନବଉତ୍କଳର ନିର୍ମାତା ଏବଂ ଜାତୀୟ ଜୀବନର ପୁରୋଧା । ୧୯୩୪ ମସିହା ଫେବୃୟାରୀ ୪ ତାରିଖରେ ତାଙ୍କର ମହାପ୍ରୟାଣ ସମ୍ବାଦ ଶୁଣି ସମଗ୍ର ଓଡ଼ିଆ ଜାତି କାନ୍ଦିଥିଲା । ମାତ୍ର ଦୁଃଖର ବିଷୟ ତାଙ୍କ ପରେ ଓଡ଼ିଶାର ସ୍ୱାଭିମାନକୁ ଜାତୀୟ ସ୍ତରରେ ପ୍ରତିଷ୍ଠା କରିବାକୁ ଆଉ କୌଣସି ଓଡ଼ିଆ ଆନ୍ତରିକତାର ସହିତ ଉଦ୍ୟମ କରି ନାହାନ୍ତି । ତାଙ୍କ ପରେ ଓଡ଼ିଶାରେ ବହୁ ନେତା ଜନ୍ମ ନେଇଛନ୍ତି ସତ, ମାତ୍ର ତାଙ୍କପରି ଓଡ଼ିଆ ଜାତିକୁ କେହି ନେତୃତ୍ୱ ଦେବାକୁ ସମର୍ଥ ହୋଇପାରି ନାହାନ୍ତି ।



## ଉତ୍କଳମଣି ଗୋପବନ୍ଧୁ ଦାଶ

**(ଉପକ୍ରମ, ଜନ୍ମ, ଜୀବନୀ ଓ ଶିକ୍ଷା, କର୍ମମୟ ଜୀବନ, ଜାତୀୟବାଦୀ ଚିନ୍ତାଧାରା, ସାହିତ୍ୟିକ ଓ ସାମ୍ବାଦିକ ଜୀବନ, ଉପସଂହାର)**

ଜୀବନ କି ଖାଲି ନିରାଶାର ବାଲି
ମରୁ ମରୀଚିକା ସେନେହ ପ୍ରୀତି
ତେବେ କି ଆଶାରେ କହ ଏ ସଂସାରେ
ପର ଲାଗି ନର ମରୁଛି ନିତି ।

ଜୀବନବାଦୀ ସାଧକ ଗୋପବନ୍ଧୁ କେବଳ ମଣିଷକୁ ହିଁ ଭଲ ପାଇ ଜାଣିଥିଲେ । ନିଜର ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟ ପରିତ୍ୟାଗ କରି ଦେଶ ଏବଂ ଜାତିର ସେବା ପାଇଁ ପ୍ରାଣ ଉତ୍ସର୍ଗ କରିଥିବା ଏହି ମହାପୁରୁଷ ଉତ୍କଳମଣି ଗୋପବନ୍ଧୁ ସବୁ ଓଡ଼ିଆଙ୍କ ନିକଟରେ ପ୍ରାତଃସ୍ମରଣୀୟ ।

ଆଣ୍ଠୁଲୁଚା ଧୋତି, ଚାଦର ଖଣ୍ଡିଏ, ଆଉ ବଗଡ଼ା ଭାତ-ଡାଲିକୁ ନେଇ ତାଙ୍କର ଜୀବନ । ଚାହିଁଥିଲେ ସବୁକିଛି କରିପାରିଥାନ୍ତେ ସେ । ଚାକିରିର ଅଭାବ ନ ଥିଲା ତାଙ୍କ ପାଇଁ । ପାରିବାରିକ ଆର୍ଥିକ ସ୍ଥିତି ମଧ୍ୟ ଖରାପ ନ ଥିଲା । ମାତ୍ର ଗରିବ ଓଡ଼ିଶାର ସନ୍ତାନ ଭାବରେ ସେ ବଞ୍ଚିବାକୁ ଗୌରବର ବିଷୟ ବୋଲି ଭାବି ନେଇଥିଲେ । ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ହିଁ ଥିଲା ତାଙ୍କର ଲକ୍ଷ୍ୟ । ସେ ଓଡ଼ିଶାକୁ ଭଲପାଉଥିଲେ ଠିକ୍ ତାଙ୍କର ମା'ପରି । ତ୍ୟାଗ ଏବଂ ଆଦର୍ଶର ମୂର୍ତ୍ତିମନ୍ତ ପ୍ରତୀକ ଉତ୍କଳମଣି ଗୋପବନ୍ଧୁ । ଓଡ଼ିଶାର ସାମାଜିକ, ରାଜନୀତିକ ଓ ଜାତୀୟ ଜୀବନରେ ସେ ଏକ ଅଭୁଲା ସ୍ମୃତି । ଓଡ଼ିଆଙ୍କର ସାମାନ୍ୟ ଟିକେ ଓଡ଼ିଆତ୍ୱ ଥିବା ପର୍ଯ୍ୟନ୍ତ ଗୋପବନ୍ଧୁ ଚିର ଜୀବିତ ରହିଥିବେ ଓଡ଼ିଆମାନଙ୍କ ନିକଟରେ ।

ଗୋପବନ୍ଧୁ ପୁରୀ ଜିଲ୍ଲାର 'ସୁଆଣ୍ଡୋ' ଗ୍ରାମରେ ୧୮୭୭ ମସିହା ଅକ୍ଟୋବର ୯ ତାରିଖ ଦିନ ଭୂମିଷ୍ଠ ହୋଇଥିଲେ । ତାଙ୍କ ପିତାଙ୍କର ନାମ ଥିଲା ଦୈତାରୀ ଦାଶ ଏବଂ ମାତାଙ୍କ ନାମ ସ୍ୱର୍ଣ୍ଣମୟୀ ଦେବୀ । ଜନ୍ମ ହେବାର ଅଳ୍ପ କେତେ ଦିନ ପରେ ମାତାଙ୍କୁ ହରାଇ ବିଧବା ପିଉସୀ କମଳାଦେବୀଙ୍କ ଦ୍ୱାରା ଲାଳିତପାଳିତ ହୋଇଥିଲେ । ଗ୍ରାମ ବିଦ୍ୟାଳୟର ପାଠପଢ଼ା ସାରି, ପାଞ୍ଚମାଇଲ ଦୂରରେ ଅବସ୍ଥିତ ରୂପଦେଇପୁର ମଧ୍ୟଭର୍ଣ୍ଣାର ସ୍କୁଲରେ ଅଧ୍ୟୟନ କରିଥିଲେ । ସମାଜରେ ବାଲ୍ୟବିବାହ ପ୍ରଥାର ପ୍ରଚଳନ ଥିବାରୁ ମାତ୍ର ୧୨ ବର୍ଷ ବୟସରେ ଗଦାଧରପୁରର ମୋତିଦେବୀଙ୍କୁ ସେ ବିବାହ କରିଥିଲେ । ଭର୍ଣ୍ଣାକୁଲାର ବିଦ୍ୟାଳୟ ଶିକ୍ଷା ସମାପ୍ତି ପରେ ବୃତ୍ତିପାଇ ସେ ପୁରୀ ଜିଲ୍ଲାସ୍କୁଲରେ ଅଧ୍ୟୟନ କଲେ । ପାଠ ପଢ଼ିବା ସମୟରେ ଭାଗବତର କୋମଳ ଏବଂ ଭାବଗର୍ଭକ ପଦଗୁଡ଼ିକ ତାଙ୍କୁ ବହୁଭାବରେ ଆକୃଷ୍ଟ କରିଥିଲା । ଏହି ସମୟରୁ ମଧ୍ୟ ତାଙ୍କ କବିପ୍ରତିଭାର ପରିଚୟ ମିଳିଥିଲା । ବିଭିନ୍ନ ରଚନା ପାଇଁ ସେ ପୁରୀ ଜିଲ୍ଲା ସ୍କୁଲରେ ପୁରସ୍କୃତ ହୋଇଥିଲେ । ପ୍ରଥମେ ଜିଲ୍ଲା ସ୍କୁଲରେ ଅଧ୍ୟୟନ ସମୟରେ ପିତା ଦୈତାରୀ ଦାଶ ଗୋପବନ୍ଧୁଙ୍କୁ ପୁରୀର ରାମଚନ୍ଦ୍ର ଦାସଙ୍କ ତତ୍ତ୍ୱାବଧାନରେ ଛାଡ଼ିଥିଲେ । ମଣି କାଞ୍ଚନର ସଂଯୋଗ ଘଟିଲା । ରାମଚନ୍ଦ୍ର ଦାସ ଅତ୍ୟନ୍ତ ସ୍ୱାଧୀନଚେତା ଓ ଦେଶସେବୀ ଥିବାରୁ ଗୋପବନ୍ଧୁ ତାଙ୍କ ସମ୍ପର୍କରେ ଆସି ଦେଶସେବା ପାଇଁ ବ୍ରତୀ ହୋଇଥିଲେ । ପାଠପଢ଼ା ସହିତ ଜନସେବାରେ ସେ ମନପ୍ରାଣ ଢାଳିଦେଲେ । ରଥଯାତ୍ରା ସମୟରେ ହଇଜା ରୋଗ ବ୍ୟାପିଯିବାରୁ ବହୁ ଲୋକ ପ୍ରାଣ ହରାଇଲେ । ସେ କେତେଜଣ ସାଙ୍ଗକୁ ନେଇ 'ପୁରୀ ସେବା ସମିତି' ଗଠନ କଲେ ଓ ମୃତବ୍ୟକ୍ତିମାନଙ୍କର ଶବଦାହ କରି ରୋଗ ସଂକ୍ରମଣରୁ ପୁରୀ ସହରକୁ ରକ୍ଷା କରିପାରିଥିଲେ । ଏଣ୍ଟ୍ରାନ୍ସ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ବୃତ୍ତି ଲାଭ କରି ରେଭେନ୍ସା କଲେଜରେ ସେ ଅଧ୍ୟୟନ କଲେ । ଅଧ୍ୟୟନ ସମୟରେ 'କର୍ତ୍ତବ୍ୟ ବୋଧିନୀ ସମିତି' ଗଠନ କରି ତା' ମାଧ୍ୟମରେ ସାହିତ୍ୟ ଚର୍ଚ୍ଚା କରୁଥିଲେ । ବି. ଏ. ପଢୁଥିବା ସମୟରେ ସେ ତାଙ୍କର ପୁତ୍ରସନ୍ତାନଟିକୁ ହରାଇଥିଲେ ।

ବି.ଏ. ପାସ୍ ପରେ କଲିକତା ଯାଇ ଆଇନ୍ ଅଧ୍ୟୟନ କଲେ । ସେଠାକାର ଓଡ଼ିଆମାନଙ୍କର ଦୁର୍ଦ୍ଦଶା ଦେଖି ସେ ଏକ ନୈଶବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ୧୯୦୬ ମସିହାରେ ଗୋପବନ୍ଧୁ 'ଲ' ପାସ୍ କଲେ । ଠିକ୍ ଏହି ସମୟରେ ପତ୍ନୀ ମୋତିଦେବୀ ଦୁଇଟି କନ୍ୟାକୁ ଛାଡ଼ି ସବୁଦିନ ପାଇଁ ଚାଲିଗଲେ । ୨୮ ବର୍ଷର ଯୁବକ ଗୋପବନ୍ଧୁ ଆଉ ଦ୍ୱିତୀୟ ବିବାହ କରି ନ ଥିଲେ । ତା'ପରଠାରୁ ଆରମ୍ଭ ହେଲା ତାଙ୍କର କର୍ମମୟ ଜୀବନ ।

ଆଇନ୍ ପରୀକ୍ଷା ଦେଇସାରିବା ପରେ ଗୋପବନ୍ଧୁ କିଛିଦିନ ପାଇଁ ନୀଳଗିରିରେ ଶିକ୍ଷକତା କରିଥିଲେ । ଆଇନ୍ ପରୀକ୍ଷାରେ ପାସ୍ କରିବା ପରେ ୧୯୦୭ ମସିହାରେ ପୁରୀରେ ଓକିଲାତି ଜୀବନ ଆରମ୍ଭ କରିଥିଲେ । ଏହି ସମୟରେ ବ୍ରାହ୍ମଣୀ ଓ ଖରସ୍ରୋତାରେ ବନ୍ୟାଯୋଗୁଁ କେନ୍ଦ୍ରାପଡ଼ା ଏବଂ ଯାଜପୁରର ବହୁ ଅଞ୍ଚଳ କ୍ଷତିଗ୍ରସ୍ତ ହୋଇଥିଲା । ସେ ଗୋଟିଏ କମିଟି ଗଠନ କରି ତା ମାଧ୍ୟମରେ ବିଭିନ୍ନ ସ୍ଥାନ ବୁଲି ସାହାଯ୍ୟ କରିବାକୁ ଲାଗିଲେ । ୧୯୦୯ ମସିହାରେ ଓକିଲାତି ପାଇଁ ସେ କଟକ ଆସିଲେ । ସେ କୌଣସି ମିଥ୍ୟା କେସ୍ ଧରୁ ନ ଥିଲେ । ଲୋକମାନଙ୍କୁ ଅଯଥାରେ ବିଚାରାଳୟରେ ପଇସା ଖର୍ଚ୍ଚ ନ କରି ନିଜ ନିଜ ମଧ୍ୟରେ ଆପୋସ ମିଳାମିଶା କରିବାକୁ ବୁଝାଉଥିଲେ । ମଧୁସୂଦନଙ୍କ ସୁପାରିସ କ୍ରମେ ସେ କିଛିଦିନ ମୟୂରଭଞ୍ଜର ରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କର ଓକିଲ ଭାବେ କାର୍ଯ୍ୟ କରିଥିଲେ । ଓଡ଼ିଶାର ଅବସ୍ଥାକୁ ଲକ୍ଷ୍ୟକରି ଗୁଣାତ୍ମକ ଶିକ୍ଷାର ବିକାଶ ପାଇଁ ୧୯୧୨ ଖ୍ରୀ.ରେ ସତ୍ୟବାଦୀଠାରେ ଏକ ବନବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ସେସମୟର ବିଶିଷ୍ଟ ଜ୍ଞାନୀ ସତ୍‌ଚରିତ୍ର ଓ ପଣ୍ଡିତ ନୀଳକଣ୍ଠ, ଗୋଦାବରୀଶ, କୃପାସିନ୍ଧୁ, ହରିହର ଆଦି ଏହି ବିଦ୍ୟାଳୟର ଶିକ୍ଷକ ଥିଲେ । ସମଗ୍ର ଭାରତରେ ଏହି ଶିକ୍ଷାନୁଷ୍ଠାନଟି ବହୁ ପ୍ରଶଂସା ଲାଭ କରିଥିଲା । ମହାତ୍ମାଗାନ୍ଧି, ଠକ୍‌କର ବାପା, ସାର୍ ଆଶୁତୋଷ ପ୍ରଭୃତି ଏହି ବିଦ୍ୟାଳୟର ପ୍ରଶଂସାରେ ଶତମୁଖ ହୋଇ ଉଠିଥିଲେ । ୧୯୧୨ ମସିହାରେ ବିହାର-ଓଡ଼ିଶା ପ୍ରଦେଶ ଗଠିତ ହେଲା । ୧୯୧୬ ମସିହାରେ ଗୋପବନ୍ଧୁ ପୌରସଂସ୍ଥାରୁ ନିର୍ବାଚିତ ହୋଇଥିଲେ । ୧୯୧୭-୨୦ ମସିହା ପର୍ଯ୍ୟନ୍ତ ସେ ବିହାର ଓଡ଼ିଶା ବ୍ୟବସ୍ଥାପକସଭାର ସଭ୍ୟ ଥିବା ସମୟରେ ଓଡ଼ିଶାର ଅବସ୍ଥା ସମ୍ପର୍କରେ ବାରମ୍ବାର ବ୍ୟବସ୍ଥାପକ ସଭାର ଦୃଷ୍ଟି ଆକର୍ଷଣ କରିଥିଲେ ଏବଂ ବିଭିନ୍ନ ଲେଖା ମାଧ୍ୟମରେ ଜନସଚେତନତା ବୃଦ୍ଧି ପାଇଁ ଚେଷ୍ଟା କରିଥିଲେ । ଓଡ଼ିଶାରେ ଶିକ୍ଷାର ପ୍ରସାର, ବିଚ୍ଛିନ୍ନ ଉତ୍କଳର ଏକତ୍ରୀକରଣ, ବନ୍ୟାବାତ୍ୟା ସମୟରେ ସାହାଯ୍ୟ ବଣ୍ଟନ, ଦୈବଦୁର୍ବିପାକ ବେଳେ ବନ୍ଧୁ ପରି ସହାୟତା ପ୍ରଦାନ ପାଇଁ ଚେଷ୍ଟା କରି ଓଡ଼ିଶାବାସୀଙ୍କ ହୃଦୟ ଜୟ କରି ପାରିଥିଲେ । ୧୯୨୦ ମସିହାରେ ଯେଉଁ ପ୍ରାଦେଶିକ କଂଗ୍ରେସ କମିଟି ଗଠିତ ହୋଇଥିଲା, ସେ ତା'ର ସଭାପତି ହୋଇଥିଲେ । ଦେଶସେବା ଥିଲା ତାଙ୍କ ଜୀବନର ବ୍ରତ । ସମସ୍ତ ପ୍ରତିକୂଳ ପରିସ୍ଥିତି ମଧ୍ୟରେ ସେ କେବେ ନିଜ କର୍ତ୍ତବ୍ୟରୁ ପଛଘୁଞ୍ଚା ଦେଇ ନାହାନ୍ତି । ଓଡ଼ିଶାମାଟି ଓ

ଓଡ଼ିଶାବାସୀଙ୍କ ପାଇଁ ତାଙ୍କ ହୃଦୟ କାନ୍ଦୁଥିଲା । ଦୀନ ଦୁଃଖୀ ଦରିଦ୍ରଙ୍କ ସେବାରେ ସେ ଲାଭ କରୁଥିଲେ ଅପାର ଆନନ୍ଦ । କର୍ମ ଥିଲା ତାଙ୍କ ଜୀବନର ମାନଦଣ୍ଡ । ପୁଣି ଏହି କର୍ମ ଥିଲା ସମ୍ପୂର୍ଣ୍ଣ ଭାବରେ ସ୍ୱାର୍ଥହୀନ । ଓଡ଼ିଶାର ଜଣେ ଯଥାର୍ଥ କର୍ମବୀର ରୂପେ ସେ ସବୁଦିନ ପାଇଁ ଅମର ହୋଇ ରହିବେ ।

ପୁରୀ ଜିଲ୍ଲାସ୍କୁଲରେ ଅଧ୍ୟୟନ କରିବା ସମୟରେ ଯେଉଁ ଜାତୀୟବାଦୀ ଚିନ୍ତାଧାରା ତାଙ୍କ ମନରେ ଉଦ୍ରେକ ହୋଇଥିଲା, ଉତ୍କଳ ଗୌରବ ମଧୁସୂଦନ ଏବଂ ମହାତ୍ମାଗାନ୍ଧିଙ୍କ ସଂସ୍ପର୍ଶରେ ଆସି ତାହା ଅଧିକ ପ୍ରଗାଢ଼ ହୋଇଥିଲା । ସାଧାରଣ ଦୃଷ୍ଟିରେ ଓଡ଼ିଶା ଓ ବ୍ୟାପକ ଦୃଷ୍ଟିରେ ସମଗ୍ର ଭାରତବର୍ଷର ଉନ୍ନତି ସାଧନ ହିଁ ଥିଲା ତାହାର ମୂଳ ଉଦ୍ଦେଶ୍ୟ । ଉତ୍କଳ ସମ୍ମିଳନୀର ଜଣେ ନିଷ୍ଠାପର କର୍ମୀ ଭାବ୍‌ରେ ଓଡ଼ିଶାର ସ୍ୱାର୍ଥ ପ୍ରତି ବେଶ୍ ସଚେତନ ଥିଲେ । କେତେକ ଅଧିବେଶନରେ ସଭାପତିତ୍ୱ କରି ଓଡ଼ିଶାର ଛିନ୍ନ ବିଚ୍ଛିନ୍ନ ଅଞ୍ଚଳ କିପରି ଏକତ୍ରିତ ହୋଇପାରିବ ସେ ସମ୍ପର୍କରେ ପରାମର୍ଶ ଦେଇଥିଲେ । କେବଳ ସେତିକି ନୁହେଁ, ସହକର୍ମୀ ଗୋଦାବରୀଶ ମିଶ୍ରଙ୍କୁ ଚକ୍ରଧରପୁର ଓ ଅନ୍ୟାନ୍ୟ ବିଚ୍ଛିନ୍ନାଞ୍ଚଳର ଓଡ଼ିଆ ଭାଷାର ସୁରକ୍ଷା ପାଇଁ ପ୍ରେରଣ କରିଥିଲେ । ବ୍ୟବସ୍ଥାପକସଭାର ସଦସ୍ୟ ଭାବରେ ଓଡ଼ିଶାର ସ୍ୱାର୍ଥରକ୍ଷା ପାଇଁ ସେ ଅନେକ ସମୟରେ ଦାବି କରିଥିଲେ ଓ କେତେକ କ୍ଷେତ୍ରରେ ସଫଳ ମଧ୍ୟ ହୋଇଥିଲେ । ଓଡ଼ିଶାରେ ଜାତୀୟ ଚେତନାର ବିକାଶ ପାଇଁ ସେ ପ୍ରତିଷ୍ଠା କରିଥିଲେ ବନବିଦ୍ୟାଳୟ । ପରବର୍ତ୍ତୀ ସମୟରେ ଏହି ବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ବହୁ ଛାତ୍ର ଦେଶସେବାରେ ନିଜକୁ ଉତ୍ସର୍ଗ କରିଥିଲେ । ଗାନ୍ଧିଜୀଙ୍କ ଡ଼ାକରାରେ ଗୋପବନ୍ଧୁ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । ଓଡ଼ିଶାର ଜାତୀୟ ଚେତନାକୁ ସର୍ବଭାରତୀୟ ଜାତୀୟ ଚେତନା ସହିତ ମିଶାଇ ସେ ଏହାକୁ ଏକ ବ୍ୟାପକ ରୂପ ଦେବାକୁ ଚାହୁଁଥିଲେ । ସେ ଅନୁଭବ କରିଥିଲେ, ଭାରତ ସ୍ୱାଧୀନତା ଲାଭ ନକଲେ ଓଡ଼ିଶାର କୌଣସି ସ୍ୱାର୍ଥ ପରିପୂରଣ ହେବା ସମ୍ଭବ ନୁହେଁ । ତେଣୁ ଭାରତର ସ୍ୱାଧୀନତା ମଧ୍ୟରେ ସେ ଓଡ଼ିଶାର ସ୍ୱାର୍ଥକୁ ସୁରକ୍ଷିତ କରିବାକୁ ଚାହୁଁଥିଲେ । ଓଡ଼ିଶାର ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ଭାବରେ ଏହି କମିଟିର ୩୫ ଜଣ ସଦସ୍ୟଙ୍କୁ ନେଇ ନାଗପୁରରେ ଅନୁଷ୍ଠିତ ଜାତୀୟ କଂଗ୍ରେସର ପ୍ରଥମ ଅଧିବେଶନରେ ଯୋଗ ଦେଇଥିଲେ । ଗାନ୍ଧିଜୀଙ୍କ ଅସହଯୋଗ ବାର୍ତ୍ତା ଓଡ଼ିଶାରେ ପ୍ରଚାର କରି ତାହାକୁ ଏକ ଗଣଆନ୍ଦୋଳନର ରୂପ ଦେଇଥିଲେ ଗୋପବନ୍ଧୁ ଦାଶ । ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ ସେ ୧୯୨୨ ମସିହାରେ ବନ୍ଦୀହୋଇ ହଜାରିବାଗ ଜେଲରେ ଦୁଇବର୍ଷ ରହିବା ପରେ ୧୯୨୪ ମସିହା ଜୁନ୍ ମାସ ୨୬ ତାରିଖରେ ମୁକ୍ତିଲାଭ କରିଥିଲେ । ଠିକ୍ ସେହି ସମୟରେ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟଙ୍କ ସଭାପତିତ୍ୱରେ ଅନୁଷ୍ଠିତ ରାଜନୀତିକ କର୍ମୀ ସମ୍ମିଳନୀରେ ଗୋପବନ୍ଧୁ ଯୋଗଦେଇ ଲୋକମାନଙ୍କ ମନରେ ଆନନ୍ଦ ଓ ଜାତୀୟ ଭାବର ଜାଗ୍ରତ କରିଥିଲେ । ସେହି ସମ୍ମିଳନୀରେ ସଭାପତି ପ୍ରଫୁଲ୍ଲ ଚନ୍ଦ୍ର ରାୟ ତାଙ୍କୁ 'ଉତ୍କଳମଣି' ସମ୍ମାନରେ ସମ୍ମାନିତ କରିଥିଲେ । ସେ ଲାଲାଜୀଙ୍କ ପରାମର୍ଶ

କ୍ରମେ ଲୋକସେବକ ମଣ୍ଡଳର ସଭ୍ୟ ହୋଇଥିଲେ ଓ ପରବର୍ତ୍ତୀ ସମୟରେ ଏହାର ଉପସଭାପତି ରୂପେ ନିର୍ବାଚିତ ହୋଇଥିଲେ । ଓଡ଼ିଶାରେ ସମ୍ବାଦପତ୍ର ମାଧ୍ୟମରେ ଜନଜାଗରଣ ସୃଷ୍ଟି କରିବା ପାଇଁ ମଧ୍ୟ ସେ ଚେଷ୍ଟା କରିଥିଲେ ।

ଜାତୀୟ ଜୀବନକୁ ସଙ୍ଗଠିତ କରିବା କ୍ଷେତ୍ରରେ ସମ୍ବାଦପତ୍ରର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ଏହି ଉଦ୍ଦେଶ୍ୟ ପୂରଣ ଉପଲକ୍ଷେ ସେ ବ୍ରହ୍ମପୁରରୁ ପ୍ରକାଶ ପାଉଥିବା 'ଆଶା'ର ସମ୍ପାଦନା ଦାୟିତ୍ୱ କିଛିଦିନ ପାଇଁ ଗ୍ରହଣ କରିଥିଲେ । ମାତ୍ର ପରେ ନିଜେ ଏକ ସମ୍ବାଦପତ୍ର ପ୍ରକାଶ କରିବାର ଉଦ୍ୟମ କରି ସାପ୍ତାହିକ ସମ୍ବାଦପତ୍ର ରୂପେ 'ସମାଜ' ୧୯୧୯ ମସିହା ଅକ୍ଟୋବର ୪ ତାରିଖରେ ପ୍ରକାଶ କଲେ । ପରେ ଏହା ଦୈନିକ ସମ୍ବାଦପତ୍ରରେ ପରିଣତ ହୋଇ ଓଡ଼ିଶାର ସର୍ବଜନପ୍ରିୟ ଓ ବହୁ ପ୍ରଚାରିତ ସମ୍ବାଦପତ୍ର ରୂପେ ଖ୍ୟାତି ଲାଭ କରିପାରିଲା । ସାହିତ୍ୟର ବିକାଶ ଉଦ୍ଦେଶ୍ୟରେ ୧୯୧୫ ମସିହାରେ ସାକ୍ଷୀଗୋପାଳରୁ 'ସତ୍ୟବାଦୀ' ପତ୍ରିକା ପ୍ରକାଶ କରିଥିଲେ । ରାଜନୀତିକ ଜୀବନ ସହିତ ଓତପ୍ରୋତ ଜଡ଼ିତ ହୋଇପଡ଼ିବା ଦ୍ୱାରା ସାହିତ୍ୟ ସାଧନାରେ ଯେତିକି ସମୟ ଦେବାକଥା, ତାହା ଦେଇପାରିଲେ ନାହିଁ । ତଥାପି ଓଡ଼ିଆ ସାହିତ୍ୟକୁ ତାଙ୍କର ଅବଦାନ କମ୍ ନୁହେଁ । ମାର୍ଜିତ, ସରଳ ଓ ଗମ୍ଭୀର ପ୍ରବନ୍ଧ ରଚନା କ୍ଷେତ୍ରରେ ସେ ବିଶେଷତ୍ୱ ଅର୍ଜନ କରିଛନ୍ତି । ପ୍ରବନ୍ଧଗୁଡ଼ିକରୁ ଗୋପବନ୍ଧୁଙ୍କ ମୌଳିକ ଚିନ୍ତାଧାରାର ଯଥାର୍ଥ ପ୍ରମାଣ ମିଳିଥାଏ । ତାଙ୍କର ଗଦ୍ୟଶୈଳୀ ମଧ୍ୟ ଉନ୍ନତଧରଣର । 'ଧର୍ମପଦ' 'ବନ୍ଦୀର ଆତ୍ମକଥା', 'ଅବକାଶ ଚିନ୍ତା', 'କାରାକବିତା', 'ଗୋମାହାତ୍ମ୍ୟ', 'ନଚିକେତା ଉପାଖ୍ୟାନ' ଆଦିରୁ ତାଙ୍କ କବିପ୍ରତିଭାର ପ୍ରକୃତ ପରିଚୟ ମିଳିଥାଏ । ଓଡ଼ିଶାର ଜାତୀୟ ଜୀବନ, କିମ୍ବଦନ୍ତୀ ଓ ନିଜ ଜୀବନର ବହୁ ଅନୁଭୂତି ତାଙ୍କ କାବ୍ୟକବିତାରେ ପ୍ରକାଶଲାଭ କରିପାରିଛି ।

ଜନ୍ମ ହେଲେ ମୃତ୍ୟୁ ଧ୍ରୁବସତ୍ୟ । ମାତ୍ର ମଣିଷର କାର୍ଯ୍ୟକଳାପ ତା'ର ମୃତ୍ୟୁପରେ ମଧ୍ୟ ତାକୁ ସବୁଦିନ ପାଇଁ ଅମର କରି ରଖିଥାଏ । ଉତ୍କଳର ଏହି ମହାପୁରୁଷଙ୍କ ଦେହାନ୍ତ ହୋଇଥିଲା ୧୯୨୮ ମସିହା ଜୁନ୍ ମାସ ୧୭ ତାରିଖରେ । ସେଦିନ ତାଙ୍କ ତିରୋଧାନ ଖବର ଶୁଣିବାମାତ୍ରେ ପ୍ରତ୍ୟେକ ଓଡ଼ିଶାବାସୀଙ୍କ ଆଖିରୁ ଲୁହ ଝରିଯାଇଥିଲା । ସମଗ୍ର ଭାରତ ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀଙ୍କୁ ହରାଇ ବ୍ୟଥିତ ହୋଇପଡ଼ିଲା । ତାଙ୍କ ସ୍ୱାଧୀନତାର ସ୍ୱପ୍ନ ଅପୂର୍ଣ୍ଣ ରହିଗଲା । ମାତ୍ର ସେ ଯେଉଁ ତ୍ୟାଗର ଦୃଷ୍ଟାନ୍ତ ଛାଡ଼ି ଦେଇଗଲେ, ଇତିହାସ ପୃଷ୍ଠାରେ ତାହା ସବୁଦିନ ପାଇଁ ତାଙ୍କୁ ଅମର କରି ରଖିଦେଲା । ଆଜି ବି ବନ୍ୟା, ବାତ୍ୟା କିମ୍ବା କୌଣସି ପ୍ରାକୃତିକ ବିପର୍ଯ୍ୟୟ ହେଲେ ଓଡ଼ିଆମାନଙ୍କ କଣ୍ଠରୁ ସ୍ୱତଃ ଝରିପଡ଼େ—''ଆହା; ଆଜି ଉତ୍କଳମଣି ଥା'ନ୍ତେ କି ।'' ସମଗ୍ର ଭାରତ ଯେପରି ତାଙ୍କର ଜାତୀୟ ଆନ୍ଦୋଳନର ଭୂମିକାକୁ ଭୁଲିପାରିବ ନାହିଁ, ଠିକ୍ ସେହିପରି ଓଡ଼ିଶା ତାଙ୍କର ତ୍ୟାଗ ଓ କର୍ମମୟ ଜୀବନକୁ ବିସ୍ମୃତ ହୋଇପାରିବ ନାହିଁ ।



# ପରିବାର କଲ୍ୟାଣ ବା ପରିବାର ନିୟନ୍ତ୍ରଣ ଯୋଜନା

**(ଉପକ୍ରମ, ଜନସଂଖ୍ୟା ବୃଦ୍ଧିର କାରଣ, ପରିବାର ନିୟନ୍ତ୍ରଣ ଯୋଜନା କ୍ଷେତ୍ରରେ ସରକାରଙ୍କ ପଦକ୍ଷେପ, ସାମ୍ପ୍ରତିକ ପରିପ୍ରେକ୍ଷୀରେ ଏହାର ଆବଶ୍ୟକତା, ସମସ୍ୟା ଓ ସମାଧାନର ପନ୍ଥା, ଉପସଂହାର)**

ବର୍ତ୍ତମାନ ବିଶ୍ୱରେ ଭାରତ ଦ୍ୱିତୀୟ ଜନବହୁଳ ରାଷ୍ଟ୍ର । ଭାରତରେ ପ୍ରତି ବର୍ଷ ଯେପରି ଲୋକସଂଖ୍ୟା ବୃଦ୍ଧି ପାଉଛି; ତାହା ସରକାର ଓ ଦେଶବାସୀଙ୍କ ପକ୍ଷେ ଏକ ଉଦ୍‌ବେଗର ବିଷୟ ହୋଇପଡ଼ିଛି । ଏହାଦ୍ୱାରା ଆମର ଆର୍ଥିକ ପ୍ରଗତ ବହୁଭାବରେ ବାଧାପ୍ରାପ୍ତ ହେଉଛି । ପ୍ରତିବର୍ଷ ଭାରତରେ ଯେଉଁ ପରିମାଣରେ ଲୋକସଂଖ୍ୟା ବୃଦ୍ଧି ପାଉଛି, ଅଷ୍ଟ୍ରେଲିଆର ସମୁଦାୟ ନୋକସଂଖ୍ୟା ସେତିକି । ରୁଷିଆ ବା ଅନ୍ୟ କେତେକ ବିକଶିତ ଦେଶର ପ୍ରଗତିକୁ ତ୍ୱରାନ୍ୱିତ କରିବାକୁ ଲୋକସଂଖ୍ୟା ବୃଦ୍ଧିର ଆବଶ୍ୟକତା ପଡୁଥିବା ସମୟରେ ଆମ ଦେଶରେ ବର୍ତ୍ତମାନ ଲୋକସଂଖ୍ୟା କମାଇବାର ଆବଶ୍ୟକତା ରହିଛି । ବର୍ତ୍ତମାନ ୧୦୮ କୋଟି ଲୋକଙ୍କୁ ହୁଏତ ଠିକ୍ ଭାବରେ ଖାଦ୍ୟ, ବାସଗୃହ ଓ ବସ୍ତ୍ର ଯୋଗାଇବା ଅସମ୍ଭବ ହୋଇପଡ଼ିବ । ଭାରତ ମୁଖ୍ୟତଃ ଏକ କୃଷିପ୍ରଧାନ ଦେଶ । ଜମିର ପରିମାଣ ବୃଦ୍ଧି ଘଟୁନଥିବା ସମୟରେ, ଲୋକସଂଖ୍ୟା ବୃଦ୍ଧି ପାଇବା ନିଶ୍ଚିତ ଭାବରେ ଉଦ୍‌ବେଗର ବିଷୟ । ସ୍ୱାଧୀନତା ଲାଭ କଲାବେଳକୁ ଭାରତର ଲୋକସଂଖ୍ୟା ଥିଲା ୪୬ କୋଟି । ସ୍ୱାଧୀନତାର ୫୦ ବର୍ଷ ମଧ୍ୟରେ ଏ ଦେଶର ଲୋକସଂଖ୍ୟା ୫୦ କୋଟିରୁ ଅଧିକ ବଢ଼ିଛି । ପ୍ରତିବର୍ଷ ହାରାହାରି ୧.୦୩ କୋଟି ଲୋକସଂଖ୍ୟା ବୃଦ୍ଧି ପାଉଛି । ୧୯୭୧ ଜନଗଣନାରେ ଭାରତର ଲୋକସଂଖ୍ୟା ବୃଦ୍ଧିର ହାର ଥିଲା ୯.୯୭ । ପୃଥିବୀର ମାତ୍ର ୨ ଭାଗ ଭାରତର ଭୂମି ଅଞ୍ଚଳ ହୋଇଥିବା ସମୟରେ, ଲୋକସଂଖ୍ୟା ପୃଥିବୀର ୧୪୭% ଭାଗରୁ ଅଧିକ । ଯଦି ଭାରତର ଜନସଂଖ୍ୟା ବୃଦ୍ଧିକୁ ରୋକାଯାଇ ନ ପାରିବ, ତେବେ ଏକବିଂଶ ଶତାବ୍ଦୀରେ ଭାରତୀୟମାନଙ୍କ ଜୀବନର ମାନ ଯେ ବହୁପରିମାଣରେ ହ୍ରାସ ପାଇବ, ଏଥିରେ ସନ୍ଦେହ ନାହିଁ । ଏହି କାରଣରୁ ଭାରତର ଜନ୍ମନିୟନ୍ତ୍ରଣ ବର୍ତ୍ତମାନ ଅତ୍ୟନ୍ତ ଜରୁରୀ ହୋଇପଡ଼ିଛି ।

ଭାରତରେ ଜନସଂଖ୍ୟା ବୃଦ୍ଧିର ବହୁବିଧ କାରଣ ରହିଛି । ପ୍ରଥମ କାରଣ ହେଉଛି ଗ୍ରୀଷ୍ମ ପ୍ରଧାନ ଦେଶ ହୋଇଥିବାରୁ ପ୍ରଜନନ କ୍ଷମତା ଅଧିକ ହେବା ସ୍ୱାଭାବିକ । ଦ୍ୱିତୀୟରେ ମୃତ୍ୟ ସଂଖ୍ୟା ହାର ବହୁପରିମାଣରେ ହ୍ରାସ ପାଇଛି । ପୂର୍ବରୁ ବିଭିନ୍ନ ପ୍ରାକୃତିକ ବିପର୍ଯ୍ୟୟ ଏବଂ ରୋଗବ୍ୟାଧିରେ ଯେତିକି ପରିମାଣରେ ଲୋକ ମୃତ୍ୟୁବରଣ କରୁଥିଲେ, ଚିକିତ୍ସା ଶାସ୍ତ୍ରର ବିକାଶ ଓ ବିଜ୍ଞାନର ଦ୍ରୁତ ଉନ୍ନତି ଯୋଗୁଁ ଏହା ବହୁପରିମାଣରେ ହ୍ରସପାଇଛି । ୧୯୨୧ ମସିହାରେ ଭାରତରେ ପ୍ରତି ହଜାରରେ ୪୮ ଜଣ ଜନ୍ମ ନେଉଥିବା ସମୟରେ ୪୭ ଜଣ ମୃତ୍ୟୁମୁଖରେ ପଡୁଥିଲେ । ୧୯୫୧-୬୧ ଜନଗଣନା ଅନୁଯାୟୀ ୧୦୦୦ରେ ୨୨.୮

ଜଣ ଓ ୧୯୭୨ ମସିହା ବେଳକୁ ୧୦୦୦ରେ ୧୬.୯ ଜଣ ମୃତ୍ୟୁବରଣ କରୁଥିବା ସମୟରେ ଜନ୍ମର ହାର ହୋଇଥିଲା ଯଥାକ୍ରମେ ୧୯୬୧ରେ ପ୍ରତି ଏକ ହଜାରରେ ୪୦.୯ ଓ ୧୯୭୪ରେ ୩୪.୫ ଜଣ । ଆମର ସାମାଜିକ ଏବଂ ଆର୍ଥିକ ବିକାଶ କ୍ଷେତ୍ରରେ ଆଜି ଏହି ଜନସଂଖ୍ୟା ବୃଦ୍ଧି ପ୍ରଥମ ଅନ୍ତରାୟ ହୋଇ ଠିଆ ହୋଇଛି । ଭାରତରେ ଲୋକମାନଙ୍କର ଅନ୍ଧବିଶ୍ୱାସ ଜନସଂଖ୍ୟା ବୃଦ୍ଧିର ଅନ୍ୟତମ କାରଣ । ଲୋକମାନଙ୍କର ବିଶ୍ୱାସ, ସନ୍ତାନଟିଏ ଜନ୍ମ ହେବା ଈଶ୍ୱରଙ୍କର ଆଶୀର୍ବାଦ । ତେଣୁ ସେମାନେ ଜନ୍ମ ନିୟନ୍ତ୍ରଣକୁ ରୋକିବା ସପକ୍ଷରେ ମତପ୍ରକାଶ କରନ୍ତି ନାହିଁ । ଗ୍ରାମାଞ୍ଚଳର ଅଧିକାଂଶ ଲୋକ ମୁଖ୍ୟତଃ କୃଷି ଉପରେ ନିର୍ଭରଶୀଳ । ସେମାନଙ୍କର ଧାରଣା ଅଧିକ ସନ୍ତାନ ପରିବାରର ଆର୍ଥିକ ସ୍ଥିତିକୁ ସୁଦୃଢ଼ କରିବ । ଆୟ ବୃଦ୍ଧି ପାଇବ । ଏବେ ମଧ ବହୁ ଲୋକଙ୍କ ମନରୁ ଏ ପ୍ରକାର ଧାରଣା ଦୂରୀଭୂତ ହୋଇ ନାହିଁ । ଅଶିକ୍ଷା ହିଁ ଜନସଂଖ୍ୟା ବୃଦ୍ଧିର ଅନ୍ୟତମ କାରଣ । ଏବେ ମଧ ପଲ୍ଲୀଅଞ୍ଚଳରେ ବସବାସ କରୁଥିବା ବହୁ ବ୍ୟକ୍ତି ଶିକ୍ଷାର ଆଲୋକ ପାଇନାହାନ୍ତି । ସେଥିପାଇଁ ସେମାନେ ଦେଶର ସମସ୍ୟା ଓ ନିଜର ସମସ୍ୟା ସମ୍ପର୍କରେ ଆଦୌ ଅବଗତ ହୋଇପାରୁ ନାହାନ୍ତି । ଯୌନ ସମ୍ଭୋଗ ଓ କମ୍ ବୟସରୁ ପିଲାମାନଙ୍କୁ ବିବାହ ବନ୍ଧନରେ ଛନ୍ଦିଦେବା ଦ୍ୱାରା ଜନସଂଖ୍ୟା ବୃଦ୍ଧି ପାଉଛି । ଗ୍ରାମାଞ୍ଚଳମାନଙ୍କରେ ଲୋକମାନଙ୍କର ଅବସର ସମୟ କଟାଇବା ପାଇଁ କୌଣସି ଉପାୟ ନ ଥିବାରୁ ନାରୀ ସମ୍ଭୋଗ ହିଁ ସେମାନଙ୍କର ଏକମାତ୍ର ଆନନ୍ଦଦାୟକ ମାର୍ଗ ରୂପେ ବିବେଚିତ ହୋଇଥାଏ । ସଂଯମହୀନତା ଯୋଗୁଁ ଜନସଂଖ୍ୟା ବୃଦ୍ଧି ଘଟିଥାଏ । ଏହା ବ୍ୟତୀତ ଜନ ଅସଚେତନତା ଜନସଂଖ୍ୟା ବୃଦ୍ଧିର ଅନ୍ୟତମ କାରଣ ରୂପେ ନିର୍ଦ୍ଦେଶିତ ହୋଇଥାଏ ।

ସ୍ୱାଧୀନତା ପୂର୍ବରୁ ଏ ଦେଶର ଚିନ୍ତାନାୟକଗଣ ମଧ ଜନସଂଖ୍ୟା ବୃଦ୍ଧି ଯୋଗୁଁ ସେମାନଙ୍କର ଉଦ୍‌ବେଗ ପ୍ରକାଶ କରିଥିଲେ । ଭାରତୀୟ ଜାତୀୟ କଂଗ୍ରେସ ଯୋଜନା କମିଟିର ତତ୍କାଳୀନ ଚେୟାରମ୍ୟାନ ପଣ୍ଡିତ ଜବାହରଲାଲ ନେହେରୁ ୧୯୩୫ ମସିହାରେ ମତପ୍ରକାଶ କରି କହିଥିଲେ "In the interest of family happiness and national economy, family planning and limitation of children are essential, and the state should adopt a policy to encourage these," ୧୯୫୨ ମସିହାରେ ଭାରତର ସ୍ୱାଧୀନ ସରକାର ସାମାଜିକ ଓ ଆର୍ଥନୀତିକ ବିକାଶ ପାଇଁ ଜନ୍ମ ନିୟନ୍ତ୍ରଣ ଯୋଜନାକୁ କାର୍ଯ୍ୟକାରୀ କଲେ । ପଞ୍ଚବାର୍ଷିକ ଯୋଜନାମାନଙ୍କରେ ଏହା ଉପରେ ମଧ ଗୁରୁତ୍ୱ ପ୍ରଦାନ କରାଗଲା । ପ୍ରଥମ ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନାରେ ସ୍ପଷ୍ଟ ଭାବେ କୁହାଯାଇଥିଲା ଆଶାତୀତ ଭାବରେ ଜନସଂଖ୍ୟା ବୃଦ୍ଧି ଆମର ସାମାଜିକ ଓ ଆର୍ଥିକ ପ୍ରଗତି କ୍ଷେତ୍ରରେ ପ୍ରତିବନ୍ଧକ ହୋଇ ଠିଆ ହୋଇଛି । ସେଥିପାଇଁ ଆମର ଜୀବନଧାରଣର ମାନ କମିଯାଉଛି । ଏଥିପାଇଁ କେତେକ ନୂଆ ଡାକ୍ତରଖାନା ଓ କ୍ଲିନିକ୍ ସ୍ୱତନ୍ତ୍ର ଭାବରେ ସୃଷ୍ଟି ହୋଇଥିଲା । ଦ୍ୱିତୀୟ ଯୋଜନା କାଳରେ ୫୦୦ ଗ୍ରାମୀଣ କ୍ଲିନିକ୍ ଜନସଂଖ୍ୟା ନିୟନ୍ତ୍ରଣ ନିମିତ୍ତ ଖୋଲାଯାଇଥିଲା । ବିଭିନ୍ନ ଯୋଜନାରେ ଜନ୍ମନିୟନ୍ତ୍ରଣ କରିବାକୁ ଆସୁଥିବା ନାରୀମାନଙ୍କ ସ୍ୱାସ୍ଥ୍ୟ ପ୍ରତି ବିଶେଷ ଦୃଷ୍ଟି ପ୍ରଦାନ କରିବାକୁ

ଏଥିରେ ନିର୍ଦ୍ଦେଶ ପ୍ରଦାନ କରାଯାଇଥିଲା । ୫ମ ପଞ୍ଚବାର୍ଷିକ ଯୋଜନାରେ ଏଥିପାଇଁ ବହୁପରିମାଣରେ ଅର୍ଥ ଅଟକଳ କରାଯାଇଥିଲା । ପ୍ରଥମ ପଞ୍ଚବାର୍ଷିକ ଯୋଜନାରେ ଏ ବାବଦରେ ୧୪ ଲକ୍ଷ ଟଙ୍କା, ୨ୟ ପଞ୍ଚବାର୍ଷିକ ଯୋଜନାରେ ୨.୧୫ କୋଟି ଟଙ୍କା, ୩ୟ ଯୋଜନାରେ ୨୪.୪୮ କୋଟି, ୪ର୍ଥ ଯୋଜନାରେ ୨୮୦.୩୬ କୋଟି ଓ ୫ମ ପଞ୍ଚବାର୍ଷିକ ଯୋଜନାରେ ୫୧୬ କୋଟି ଟଙ୍କା ଅଟକଳ କରାଯାଇଥିଲା । ୧୯୬୬ ମସିହାରୁ ଉଭୟ କେନ୍ଦ୍ର ଓ ରାଜ୍ୟ ସରକାର ଏହି ବ୍ୟବସ୍ଥାକୁ ଅଧିକ ଫଳପ୍ରଦ କରିବା ପାଇଁ ଚେଷ୍ଟା କରିଛନ୍ତି । ସପ୍ତମ ପଞ୍ଚବାର୍ଷିକ ଯୋଜନାରେ ଏଥିପାଇଁ ୩୨୫୬ କୋଟି ଟଙ୍କା ଅଟକଳ କରାଯାଇଥିଲା । ଅଷ୍ଟମ ଓ ନବମ ପଞ୍ଚବାର୍ଷିକ ଯୋଜନାରେ ଏଥିପାଇଁ ଅଧିକ ଅର୍ଥର ବରାଦ କରାଯାଇଛି । ପଞ୍ଚମ ପଞ୍ଚବାର୍ଷିକ ଯୋଜନାରେ ଏହା ଯଥେଷ୍ଟ ସଫଳତା ଅର୍ଜନ କରିଥିଲା । ୧୯୬୯ ମସିହାରେ ପ୍ରତି ହଜାରରେ ୩୯ ଜଣ ସନ୍ତାନ ଜନ୍ମ ନେଉଥିବା ସମୟରେ ୧୯୭୮ ମସିହା ବେଳକୁ ଏହାର ସଂଖ୍ୟା ୩୦କୁ କମି ଆସିଥିଲା । ୧୯୭୬-୭୭ ମସିହାରେ ୪.୩ ନିୟୁତ ଅସ୍ତ୍ରୋପଚାରର ଲକ୍ଷ୍ୟ ରଖାଯାଇଥିବା ସମୟରେ ଏହା ଅସମ୍ଭବ ଭାବରେ ୭ ନିୟୁତରେ ପହଞ୍ଚି ପାରିଥିଲା । ଆମେରିକାର 'The New York times'ରେ ଭାରତର ଏହି କାର୍ଯ୍ୟକ୍ରମକୁ ପ୍ରଶଂସା କରାଯାଇଥିଲା । ସରକାର ଜନ୍ମର ହାର ହ୍ରାସ ପାଇଁ ବିବାହ ନିମିତ୍ତ ଏକ ସମୟ ଧାର୍ଯ୍ୟ କରିଛନ୍ତି । କୌଣସି ଝିଅ ୧୮ ବର୍ଷ ପୂର୍ବରୁ ବା କୌଣସି ପୁଅ ୨୧ ବର୍ଷ ପୂର୍ବରୁ ବିବାହ କରିପାରିବେ ନାହିଁ ବୋଲି ଆଇନ୍ ପ୍ରଣୟନ କରାଯାଇଛି । ଜନ୍ମ ନିରୋଧ ପାଇଁ ସରକାରୀ ଚିକିତ୍ସାଳୟରେ ସମସ୍ତ ପ୍ରକାର ବନ୍ଦୋବସ୍ତ କରାଯାଇଛି । ବିଭିନ୍ନ ବିଜ୍ଞାପନ ମାଧ୍ୟମରେ ସରକାର ଜନସାଧାରଣଙ୍କୁ ସଚେତନ କରାଇବାର ମଧ୍ୟ ବ୍ୟବସ୍ଥା କରୁଛନ୍ତି । ଏଥିପାଇଁ କିଛି ଆର୍ଥିକ ବ୍ୟବସ୍ଥା କରାଯାଇଛି । ଏହା ସତ୍ତ୍ୱେ ଏହାର ପ୍ରଗତି ବର୍ତ୍ତମାନ ସମୟ ପାଇଁ ବିଶେଷ ସନ୍ତୋଷଜନକ ନୁହେଁ ।

ସାମ୍ପ୍ରତିକ ପରିପ୍ରେକ୍ଷୀରେ ଭାରତ ପାଇଁ ପରିବାର ନିୟନ୍ତ୍ରଣର ଜରୁରୀ ଆବଶ୍ୟକତା ରହିଛି । ବର୍ତ୍ତମାନର ୧୦୮ କୋଟିରୁ ଅଧିକ ଲୋକ ଭାରତରେ ବସବାସ କରୁଛନ୍ତି । ଏମାନଙ୍କୁ ଉଚିତ ଓ ପୁଷ୍ଟିକର ଖାଦ୍ୟ ଯୋଗାଇବା ବର୍ତ୍ତମାନ ଅସମ୍ଭବ ହୋଇଉଠିଲାଣି । ଖାଦ୍ୟାଭାବରେ କେତେକ ସ୍ଥାନରେ ମୃତ୍ୟୁ ଘଟୁଥିବାର ସମ୍ବାଦ ଶୁଣିବାକୁ ମିଳୁଛି । ଜନସଂଖ୍ୟା ବୃଦ୍ଧି ଯୋଗୁଁ ବେକାର ସଂଖ୍ୟା ମଧ୍ୟ ବୃଦ୍ଧି ପାଇବାରେ ଲାଗିଛି । ସରକାର ସମସ୍ତ ଶିକ୍ଷିତ ବେକାରଙ୍କୁ ଚାକିରି ଯୋଗାଇ ପାରୁନାହାନ୍ତି । ସେଥିପାଇଁ ଜନଅସନ୍ତୋଷ ସୃଷ୍ଟି ହେଉଛି । ଖାଦ୍ୟାଭାବ ଦୂରୀକରଣ ପାଇଁ ଆମକୁ ବାହାର ଦେଶରୁ ଋଣ ଆକାରରେ ଖାଦ୍ୟ ଆଣିବାକୁ ପଡୁଥିବାରୁ ବହୁ ବୈଦେଶିକ ପୁଞ୍ଜି ଖଟାଇବାକୁ ପଡୁଛି । ଏହାଦ୍ୱାରା ଆର୍ଥିକ ଓ ସାମାଜିକ ବିକାଶ ଯେପରି ତ୍ୱରାନ୍ୱିତ ହେବା କଥା, ତାହା ହୋଇପାରୁ ନାହିଁ । ବିଭିନ୍ନ ଲୋକହିତକର ଯୋଜନା ପ୍ରଣୟନ କରାଯାଉଥିଲେ ମଧ୍ୟ ଜନସଂଖ୍ୟା ବୃଦ୍ଧି ଯୋଗୁଁ ତାହା ସମ୍ପୂର୍ଣ୍ଣ ସଫଳ ହୋଇପାରୁ ନାହିଁ । ଶିକ୍ଷାର ଗୁଣାତ୍ମକ ଅଭିବୃଦ୍ଧି ଘଟୁ ନାହିଁ । କେଉଁଠାରେ ସ୍କୁଲ୍ ନାହିଁ ତ, ଆଉ କେଉଁଠାରେ ଶିକ୍ଷକ ନାହାନ୍ତି ବା ଅନ୍ୟ କେଉଁଠାରେ ଶିକ୍ଷକଙ୍କୁ ଦରମା ଦେବାକୁ ସରକାରଙ୍କ ହାତରେ

ପଇସା ନାହିଁ । ଜନସଂଖ୍ୟା ବୃଦ୍ଧି ଯୋଗୁଁ ଖାଦ୍ୟପଦାର୍ଥର ଦାମ୍ ଅସମ୍ଭବ ଭାବରେ ବୃଦ୍ଧି ପାଉଛି । ଏଥିପାଇଁ ସାଧାରଣ ଜନଜୀବନ ବହୁ ଅସୁବିଧାର ସମ୍ମୁଖୀନ ହେଉଛନ୍ତି । ଏହି ପରିପ୍ରେକ୍ଷୀରେ ଭାରତର ଜନ୍ମନିୟନ୍ତ୍ରଣ ନିତାନ୍ତ ଜରୁରୀ ମନେ ହୋଇଥାଏ ।

ଜନ୍ମ ନିୟନ୍ତ୍ରଣର ପ୍ରଥମ ପ୍ରତିବନ୍ଧକ ସାମାଜିକ କୁସଂସ୍କାର ଓ ଅନ୍ଧବିଶ୍ୱାସ । ସରକାରୀ ଲୋକଙ୍କ ମନରେ ଯୁଗ ଯୁଗ ଧରି ରହି ଆସିଥିବା ଏହି କୁସଂସ୍କାରର ମୂଳୋତ୍ପାଟନ କରିବା ଆବଶ୍ୟକ । ଦ୍ୱିତୀୟରେ ଶିକ୍ଷାର ବିସ୍ତାର ନ ହେଲେ ଜନସଚେତନତା ସୃଷ୍ଟି ହୋଇପାରିବ ନାହିଁ କିମ୍ବା ସରକାରଙ୍କ ଯୋଜନା ଫଳପ୍ରଦ ହୋଇପାରିବ ନାହିଁ । ବିଶେଷକରି ମଫସଲ ଅଞ୍ଚଳରେ ଶିକ୍ଷାର ବିସ୍ତାର ପାଇଁ ବିଶେଷ ଦୃଷ୍ଟି ପ୍ରଦାନ କରିବା ଉଚିତ । ତୃତୀୟତଃ ଜନ୍ମନିୟନ୍ତ୍ରଣ ଅସ୍ତ୍ରୋପଚାରରେ କେତେକ ତ୍ରୁଟି ରହୁଛି, ଯେଉଁଥିପାଇଁ ଜନ୍ମନିୟନ୍ତ୍ରଣ ପରେ ମଧ୍ୟ କେତେକ କ୍ଷେତ୍ରରେ ସନ୍ତାନ ଜନ୍ମ ହେଉଛନ୍ତି । ପୁଣି ଏହାର କୁପ୍ରଭାବ ମଧ୍ୟ ଶରୀରରେ ଦେଖାଯାଉଛି । ଏଥିପାଇଁ ଜନ୍ମନିୟନ୍ତ୍ରଣ ଅସ୍ତ୍ରୋପଚାର୍ ଅଧିକ ବୈଜ୍ଞାନିକ ପଦ୍ଧତିରେ କରାଯିବା ସଙ୍ଗେ ସଙ୍ଗେ ମା’ କିମ୍ବା ପିତାର ସ୍ୱାସ୍ଥ୍ୟ ପ୍ରତି ଚିକିତ୍ସକ ଅଧିକ ଯତ୍ନଶୀଳ ହେବା ଉଚିତ । ନୈତିକତାର ପ୍ରଚାର, ବିଜ୍ଞାପନ ଦ୍ୱାରା ଏହାକୁ ଅଧିକ ଆକର୍ଷଣ କରାଯାଇପାରିଲେ ସୁଫଳ ଜନଗଣଙ୍କ ଉପରେ ପଡ଼ିବ । ପୁନରାୟ ଜନସଚେତନତା ଜାଗ୍ରତ ନ ହେଲେ ଓ ସରକାର ଆନ୍ତରିକ ଉଦ୍ୟମ ନ କଲେ ଜନ୍ମନିୟନ୍ତ୍ରଣ ଯୋଜନା ଫଳପ୍ରଦ ହୋଇପାରିବ ନାହିଁ । ଏଥିପାଇଁ ସରକାର ଜନସାଧାରଣ ଓ ଦାୟିତ୍ୱରେ ଥିବା ଅଧିକାରୀ ସମସ୍ତଙ୍କର ସମାନ ଦାୟିତ୍ୱ ରହିଛି ।

ଭାରତର ଭବିଷ୍ୟତକୁ ସୁନ୍ଦର ଓ ଉଜ୍ଜ୍ୱଳ କରିବାକୁ ହେଲେ ଜନ୍ମ ନିୟନ୍ତ୍ରଣ ଯୋଜନାର ଜରୁରୀ ଆବଶ୍ୟକତା ରହିଛି । ବର୍ତ୍ତମାନ ଆମ ସମାଜର ଗୋଟିଏ ନିର୍ଦ୍ଦିଷ୍ଟ ଧାର୍ମିକ ଗୋଷ୍ଠୀ ଏ ସମ୍ପର୍କରେ ଏଯାବତ୍ ସଚେତନ ହୋଇପାରି ନାହାନ୍ତି । ସେମାନଙ୍କୁ ଜାତୀୟ ସ୍ରୋତରେ ପ୍ରଥମେ ସାମିଲ୍ କରିନେବା ଆବଶ୍ୟକ । ସେମାନଙ୍କ ମନରୁ ରହି ଆସିଥିବା ରକ୍ଷଣଶୀଳ ମନୋଭାବକୁ ଦୂର କରିବାକୁ ପଡ଼ିବ । ଲୋକମାନଙ୍କ ମନରେ ରହିଥିବା ଭୁଲ୍ ବୁଝାମଣାକୁ ଦୂରକରି ଭାରତର ବର୍ତ୍ତମାନ ପରିସ୍ଥିତିକୁ ଜନସାଧାରଣଙ୍କୁ ଅବଗତ କରାଇବାକୁ ପଡ଼ିବ । ଦେଶକୁ ସାମ୍ପ୍ରତିକ ପରିସ୍ଥିତିରେ ସ୍ୱାବଲମ୍ବନଶୀଳ କରାଇବାକୁ ହେଲେ, ବେକାର ସମସ୍ୟା ଦୂର କରିବାକୁ ହେଲେ ଓ ଏହାର ସାମାଜିକ ଏବଂ ଆର୍ଥିକ ପ୍ରଗତିକୁ ଅଧିକ ତ୍ୱରାନ୍ୱିତ କରିବାକୁ ଚାହିଁଲେ ପରିବାର ନିୟନ୍ତ୍ରଣ ଯୋଜନା ନିଶ୍ଚିତ ଭାବରେ ଜରୁରୀ । ଦେଶର ସମସ୍ତ ଜନସାଧାରଣ ଭାରତର ଏହି ଆବଶ୍ୟକତାକୁ ଆଖିରେ ରଖି କାର୍ଯ୍ୟପନ୍ଥା ସ୍ଥିର କରିବା ଉଚିତ ମନେ ହୁଏ ।



# ସ୍ୱଳ୍ପସଞ୍ଚୟ ଯୋଜନା

**(ଉପକ୍ରମ, ସଞ୍ଚୟର ଉପଯୋଗିତା, ସରକାରଙ୍କ ବିଭିନ୍ନ ସଞ୍ଚୟ ଯୋଜନା, ସଞ୍ଚୟ କ୍ଷେତ୍ରରେ ସରକାରଙ୍କ କେତେକ ପଦକ୍ଷେପ, ଉପସଂହାର)**

ମଣିଷ ବର୍ତ୍ତମାନକୁ ନେଇ ବଞ୍ଚିଥାଏ । ତଥାପି ତା' ଆଗରେ ଥାଏ ଅନାଗତ ଭବିଷ୍ୟତ । ଭବିଷ୍ୟତକୁ ସମ୍ମୁଖୀନ ହେବା ପାଇଁ ତା'ର କିଛି ସଞ୍ଚୟ ଆବଶ୍ୟକ ହୋଇଥାଏ । ମଣିଷ ଏକ ସାମାଜିକ ପ୍ରାଣୀ ହୋଇଥିବାରୁ ସମାଜର ନୀତି ଓ ପରମ୍ପରାକୁ ମାନି ଚଳିବାକୁ ବାଧ ହୋଇଥାଏ । ଏତଦ୍ ବ୍ୟତୀତ ରୋଗ, ବ୍ୟାଧି, ବିଭିନ୍ନ ପର୍ବପର୍ବାଣି, ସାମାଜିକ ଉତ୍ସବାଦି ପାଇଁ ମଧ ତା'ର ଆବଶ୍ୟକ ହୋଇଥାଏ ଅର୍ଥ । ଯଦି ସେ ଅତୀତରେ କିଛି ସଞ୍ଚୟ କରି ନ ଥାଏ, ତେବେ ବର୍ତ୍ତମାନର ଆବଶ୍ୟକତା ଓ ଭବିଷ୍ୟତର ଅଭାବକୁ ମୁକାବିଲା କରିବା କଠିନ ବ୍ୟାପାର ହୋଇଥାଏ । ପ୍ରତ୍ୟେକ ମଣିଷର ସଞ୍ଚୟ ଗୁଣ ରହିବା ଏଥିପାଇଁ ନିତାନ୍ତ ଆବଶ୍ୟକ । ଭବିଷ୍ୟତର ଅଭାବ ଓ ବିଭିନ୍ନ ଅସୁବିଧାକୁ ଦୂର କରିବା ପାଇଁ ମଣିଷର କିଛି ସଞ୍ଚୟ ରହିବା ଆବଶ୍ୟକ । ଯେଉଁମାନେ ଏହାର ବିରୋଧୀ ସେମାନେ ଭବିଷ୍ୟତରେ ବହୁ ଅସୁବିଧାର ସମ୍ମୁଖୀନ ହୋଇଥାନ୍ତି । ତେଣୁ ମଣିଷ ଯାହା ରୋଜଗାର କରେ, ସେଥିରୁ କିଛି ଅଂଶ ବ୍ୟାଙ୍କ ହେଉ କିମ୍ବା ଡାକଘର ହେଉ, ସେଥିରେ ସଞ୍ଚୟ କରିବା ଉଚିତ । ଋଣ କରୁଥିବା ବ୍ୟକ୍ତି ଦାଣ୍ଡର ଭିକାରି ହୋଇଥିବାର ବହୁ ପ୍ରମାଣ ଆମ ପାଖରେ ରହିଛି । ଦେଶ, ପରିବାର ଏବଂ ବ୍ୟକ୍ତିର ବିକାଶ ନିମିତ୍ତ ସେଥିପାଇଁ ସଞ୍ଚୟର ଆବଶ୍ୟକତା ରହିଛି ଜୀବନରେ । ମଣିଷ ପାଇଁ ଏହା ମଧ ଏକ ଲାଭଜନକ ଯୋଜନା । କିଛି କିଛି ସଞ୍ଚୟ କରିଥିଲେ ଏକକାଳୀନ ତାହା ଗୋଟିଏ ଜରୁରୀ ଆବଶ୍ୟକତା ପୂରଣରେ ସାହାଯ୍ୟ କରିଥାଏ ।

ସଞ୍ଚୟର ବହୁ ଉପଯୋଗିତା ରହିଛି । ମଣିଷର ଆବଶ୍ୟକତା ଓ ଅଭାବ ଦିନକୁ ଦିନ ବୃଦ୍ଧି ପାଉଛି । ମଣିଷର ଅସୀମ ଅଭାବ ସସୀମ ଅର୍ଥ ମଧରେ ପରିପୂରଣ ହେବା ସମ୍ଭବ ନୁହେଁ । ଏକକାଳୀନ ମଣିଷ ମଧ କିଛି ଅର୍ଥ ଯୋଗାଡ଼ କରିବାକୁ ସମର୍ଥ ହୋଇ ନ ଥାଏ । ଏହା ସହିତ ପରିବାର, ସମାଜର ରୀତିନୀତି, ବନ୍ଧୁବାନ୍ଧବମାନଙ୍କ ଖର୍ଚ୍ଚ ରହିଛି । ପିଲାମାନଙ୍କର ଶିକ୍ଷା, ବିବାହ, ବ୍ରତ, ପ୍ରାକୃତିକ ଦୁର୍ବିପାକ, ରୋଗବ୍ୟାଧି ଆଦି ବିଭିନ୍ନ କାର୍ଯ୍ୟ ପାଇଁ ଆବଶ୍ୟକ ହୋଇଥାଏ ଅର୍ଥର । ମଣିଷର ସଞ୍ଚୟ ଯୋଜନାରୁ ହିଁ ଏହି ଅର୍ଥ ଆସିଥାଏ । ତେଣୁ ପ୍ରତ୍ୟେକ ମଣିଷ ତା'ର ମାସିକ ରୋଜଗାରରୁ କିଛି ଅଂଶ ବିଭିନ୍ନ ସଞ୍ଚୟ ଯୋଜନାରେ ସଞ୍ଚୟ କରିବା ଉଚିତ । ଯେଉଁମାନେ କୃଷି କ୍ଷେତ୍ରରେ କାର୍ଯ୍ୟ କରୁଛନ୍ତି ବା ଶ୍ରମଜୀବୀ ସେମାନେ ମଧ କିଛି କିଛି ସଞ୍ଚୟ ଯୋଜନାରେ ଅର୍ଥ ଜମା କରିଥିଲେ, ଭବିଷ୍ୟତ ପାଇଁ ତାହା କାର୍ଯ୍ୟରେ ଲାଗିଥାଏ । ବ୍ୟକ୍ତିର ସଞ୍ଚୟ କେବଳ ପରିବାର ବା ନିଜର ବ୍ୟକ୍ତିଗତ ବିକାଶରେ ସାହାଯ୍ୟ କରିଥାଏ, ତାହା ନୁହେଁ, ଦେଶର ବିକାଶ ଓ ଅଭିବୃଦ୍ଧିରେ ଏହା ସହାୟତା

କରିଥାଏ । ଦେଶର ଉନ୍ନତି ଓ ବିକାଶ ତଥା ଜନମଙ୍ଗଳ କାର୍ଯ୍ୟ ପାଇଁ ଆବଶ୍ୟକ ହୋଇଥାଏ ପ୍ରଚୁର ପରିମାଣର ଅର୍ଥ । ବୈଦେଶିକ ଋଣ ଉପରେ ନିର୍ଭର କଲେ ଦେଶ ଦେବାଳିଆ ହୋଇଯିବାର ସମ୍ଭାବନା ରହିଛି । ଦେଶର ନାଗରିକମାନେ ବିଭିନ୍ନ ଯୋଜନାରେ ଯେଉଁ ଅର୍ଥ ସଞ୍ଚୟ କରିଥାନ୍ତି, ସରକାର ସେହି ଅର୍ଥକୁ ବହୁ ଜନମଙ୍ଗଳ କାର୍ଯ୍ୟ ପାଇଁ ବ୍ୟୟ କରି ଦେଶର ପ୍ରଗତିକୁ ତ୍ୱରାନ୍ୱିତ କରିଥାଏ । ବ୍ୟକ୍ତି ନିଜ ସଞ୍ଚୟ ପାଇଁ ସୁଧ ପାଇବା ସଙ୍ଗେ ସଙ୍ଗେ ଦେଶର ବିକାଶ ମଧ୍ୟ ସମ୍ଭବ ହୋଇଥାଏ । ଦେଶର ସାମଗ୍ରିକ ବିକାଶ ଓ ବ୍ୟକ୍ତିର ଭବିଷ୍ୟତ ପ୍ରତି ଦୃଷ୍ଟିରଖି ସରକାର ବିଭିନ୍ନ ସଞ୍ଚୟ ଯୋଜନାର ବ୍ୟବସ୍ଥା କରିଛନ୍ତି । ଏହି ଯୋଜନାମାନଙ୍କ ମଧ୍ୟରେ ସ୍ୱଳ୍ପ ସଞ୍ଚୟ ଯୋଜନା ଅନ୍ୟତମ । ସମସ୍ତ ଜାତୀୟକରଣ ବା ସରକାରୀ ବ୍ୟାଙ୍କ ଏବଂ ଡାକଘରେ ଏହି ସ୍ୱଳ୍ପ ସଞ୍ଚୟ ଯୋଜନାର ବ୍ୟବସ୍ଥା ରହିଛି । ବ୍ୟକ୍ତି ନିଜ ରୋଜଗାରକୁ ଆଖି ଆଗରେ ରଖି ଯେକୌଣସି ଯୋଜନାର ସଦ୍‌ବ୍ୟବହାର କରିପାରନ୍ତି । ସଞ୍ଚୟ ଯୋଜନା ଦ୍ୱାରା ବ୍ୟକ୍ତିର ଦୁଇ ପ୍ରକାର ଲାଭ ହୋଇଥାଏ । ପ୍ରଥମ ଲାଭ ହେଉଛି ବ୍ୟକ୍ତିର ଆର୍ଥିକ ସୁବିଧା ଓ ଦ୍ୱିତୀୟଟି ହେଉଛି ଭବିଷ୍ୟତର ସୁରକ୍ଷା । ନିଜ ପାଖରେ ସଞ୍ଚୟ କଲେ ଚୋରି ଡକାୟତି କିମ୍ବା ପ୍ରାକୃତିକ ଦୁର୍ବିପାକ ଯୋଗୁଁ ତାହା ନଷ୍ଟ ହେବାର ସମ୍ଭାବନା ରହିଛି । ଏହାଦ୍ୱାରା ମଧ୍ୟ ଅର୍ଥର ପରିମାଣ ବୃଦ୍ଧି ଘଟି ନ ଥାଏ । ମାତ୍ର ସଞ୍ଚୟ ଦ୍ୱାରା ଅର୍ଥ ନିରାପଦ ରହିବା ସଙ୍ଗେ ସଙ୍ଗେ ସୁଧ ଯୋଗୁଁ ଟଙ୍କାର ପରିମାଣ କିଛି ଅଂଶରେ ବୃଦ୍ଧି ପାଇଥାଏ । ଏହି ଦୃଷ୍ଟିରୁ ମଣିଷ ଜୀବନରେ ସଞ୍ଚୟର ବିଭିନ୍ନ ଉପଯୋଗିତା ରହିଛି ।

ସରକାର ବ୍ୟାଙ୍କ ଏବଂ ଡାକଘରେ ବିଭିନ୍ନ ସଞ୍ଚୟ ଯୋଜନା ପ୍ରଣୟନ କରିଛନ୍ତି । ଏହି ଯୋଜନା ମଧ୍ୟରୁ ସ୍ୱଳ୍ପ ସଞ୍ଚୟ ଯୋଜନା ଅନ୍ୟତମ । ସାଧାରଣତଃ ବ୍ୟବସାୟୀ, ପୁଞ୍ଜିପତି ବା ଶିଳ୍ପପତିମାନେ ବିପୁଳ ଅର୍ଥର ଅଧିକାରୀ ହୋଇଥିବାରୁ ଲକ୍ଷାଧିକ ଟଙ୍କା ରଖିପାରିବାର କ୍ଷମତା ରହିଛି । ମାତ୍ର ସରକାରୀ ସ୍ୱଳ୍ପବେତନଭୋଗୀ କର୍ମଚାରୀ, କୃଷକ, ଶ୍ରମିକ ଆଦିଙ୍କର ଅଧିକ ପରିମାଣରେ ଅର୍ଥ ଜମା କରିପାରିବାର କ୍ଷମତା ନ ଥିବାରୁ ସେମାନେ ସ୍ୱଳ୍ପ ସଞ୍ଚୟ ଯୋଜନାରେ ସେମାନଙ୍କର ସୀମିତ ଆୟର କିଛି ଅଂଶ ଜମା କରିଥାନ୍ତି । ଡାକଘର ସଞ୍ଚୟ ପାଇଁ ଯେ କୌଣସି ବ୍ୟକ୍ତି ଗୋଟିଏ ପାସ୍‌ବୁକ୍ ଖୋଲି ସେଥିରେ ସେ ତା'ର ସୀମିତ ଅର୍ଥକୁ ସଞ୍ଚୟ କରିପାରିବ । ଏହା ବ୍ୟତୀତ ପନ୍ଦରବର୍ଷିଆ, ବାରବର୍ଷିଆ, ଦଶବର୍ଷିଆ ସାର୍ଟିଫିକେଟ କ୍ରୟ କରି ଜଣେ ବ୍ୟକ୍ତି ଇଚ୍ଛା କରୁଥିବା ସ୍ୱଳ୍ପ ପରିମାଣ ଟଙ୍କା ଜମା କରିପାରେ । ପୁଣି ଡାକଘରେ ପାଞ୍ଚବର୍ଷିଆ ପୌନଃପୁନିକ ଜମା କିମ୍ବା ଟାଇମ୍ ଡିପୋଜିଟ୍ ବା ଛ'ବର୍ଷିଆ ସଞ୍ଚୟ ସାର୍ଟିଫିକେଟ କିମ୍ବା ଦଶବର୍ଷିଆ ଟ୍ରେଜେରୀ ସଞ୍ଚୟ ସାର୍ଟିପିକେଟ୍‌ରେ ଜଣେ ବ୍ୟକ୍ତି ଯଥାକ୍ରମେ ୨୫ ବା ୨୪ ହଜାର ପର୍ଯ୍ୟନ୍ତ ଟଙ୍କା ସଞ୍ଚୟ କରିପାରିବେ । ଡାକଘର ସେଭିଙ୍ଗ୍‌ସ ବ୍ୟାଙ୍କ୍‌ରେ ଯେ କୌଣସି ବ୍ୟକ୍ତି ଚାହିଁଲେ ସର୍ବନିମ୍ନ ୫ ଟଙ୍କା ପ୍ରତିମାସରେ ସଞ୍ଚୟ କରିପାରିବ । ଏତଦ୍ ବ୍ୟତୀତ ସରକାରଙ୍କ ଦ୍ୱାରା ଡାକଘରେ ପ୍ରଚଳିତ ଇନ୍ଦିରା ବିକାଶପତ୍ର ଓ କିଷାନ ବିକାଶ ପତ୍ର ଦୁଇଟି ଲୋକମାନଙ୍କ ପାଇଁ ସଞ୍ଚୟ କ୍ଷେତ୍ରରେ ସୁନ୍ଦର ଯୋଜନା । ଇନ୍ଦିରାବିକାଶ ପତ୍ରରେ

ସଞ୍ଚୟ କରାଯାଉଥିବା ଅର୍ଥ ପ୍ରତି ୬ ବର୍ଷରେ ଦୁଇଗୁଣ ହେଉଥିବା ସମୟରେ କିଷାନ୍ ବିକାଶ ପତ୍ରରେ ସଞ୍ଚୟ ଅର୍ଥ ୫ ବର୍ଷ ୬ ମାସରେ ଦୁଇଗୁଣ ହୋଇଥାଏ । ଏହାକୁ ମଧ୍ୟ ଆବଶ୍ୟକ ପଡ଼ିଲେ ୨ ବର୍ଷ ୬ ମାସ ପରେ ଆଣିହେବ । ଡାକଘର ମାସିକ ଆୟ ଯୋଜନା ମଧ୍ୟ ଏକ ଆକର୍ଷଣୀୟ ଯୋଜନା । ଏଥିରେ ନିର୍ଦ୍ଦିଷ୍ଟ ପରିମାଣର ଅର୍ଥ ସଞ୍ଚୟ କଲେ, ୬ ବର୍ଷ ପରେ ସଞ୍ଚୟକାରୀଙ୍କୁ ଆକର୍ଷଣୀୟ ସୁଧ ସହିତ ବୋନସ ମିଳିଥାଏ । ଜାତୀୟ ସଞ୍ଚୟ ସାର୍ଟିଫିକେଟ ଛାତ୍ରଛାତ୍ରୀମାନଙ୍କ ପାଇଁ ଅନ୍ୟତମ ଆକର୍ଷଣୀୟ ଯୋଜନା । ବ୍ୟାଙ୍କ୍‌ମାନଙ୍କରେ ମଧ୍ୟ ବିଭିନ୍ନ ସ୍ୱଳ୍ପ ସଞ୍ଚୟ ଯୋଜନା କାର୍ଯ୍ୟକାରୀ ହେଉଛି । ଟାଇମ୍ ଡିପୋଜିଟ୍, ଆର୍.ଡ଼ି. ଆଦି ଯେକୌଣସି ଯୋଜନାରେ ବ୍ୟକ୍ତିବିଶେଷ ତାଙ୍କର ଅର୍ଥ ଜମା କରିପାରନ୍ତି । ଏହଛଡ଼ା ସେଭିଙ୍ଗ୍‌ସ ଡିପୋଜିଟ୍ ଯୋଜନାରେ ମାସିକ ବା ଦୈନିକ ଅଥବା ନିଜର ସୁବିଧା ଅନୁଯାୟୀ ଜଣେ କିଛି କିଛି ଅର୍ଥ ଜମା କରିପାରିବ । ଅବଶ୍ୟ ସେଭିଙ୍ଗ୍‌ସ୍ ଡିପୋଜିଟରେ ସୁଧର ହାର କମ୍ । ତା' ସତ୍ତ୍ୱେ ମଣିଷ ମନରେ ସଞ୍ଚୟ କରିବାର ଏକ ପ୍ରବୃତ୍ତି ସୃଷ୍ଟି କରିପାରିବ, ତାହାହିଁ ସବୁଠାରୁ ବଡ଼ କଥା । ସଞ୍ଚୟ ଯୋଜନା ସମ୍ପର୍କରେ ଜାଣିବାକୁ ମଧ୍ୟ ଗୋଟିଏ ସ୍ୱତନ୍ତ୍ର ବିଭାଗ ରହିଛି । ଯେକୌଣସି ବ୍ୟକ୍ତି ଏହାର ସୁଯୋଗ ନେବାରେ କୌଣସି ଅସୁବିଧା ନାହିଁ । ବିଭିନ୍ନ ବିଜ୍ଞାପନରେ ମଧ୍ୟ ଏ ସମ୍ପର୍କରେ ଜନସାଧାରଣଙ୍କୁ ଜଣାଇ ଦିଆଯାଉଛି ।

ସରକାର ସଞ୍ଚୟକାରୀଙ୍କୁ ଉତ୍ସାହିତ କରିବା ନିମିତ୍ତ କେତେକ ପଦକ୍ଷେପ ଗ୍ରହଣ କରିଛନ୍ତି । ବିଶେଷକରି କିଷାନ୍ ବିକାଶପତ୍ର କିମ୍ବା ଜାତୀୟ ସଞ୍ଚୟ ସାର୍ଟିଫିକେଟ୍ କ୍ରୟ କରି ଏଥିପାଇଁ ଅନୁଷ୍ଠିତ ଲଟେରୀରେ ଭାଗ ନେଇପାରିବେ । କିଷାନ୍ ବିକାଶପତ୍ରରେ ୧୦୦୦ ଟଙ୍କା କିମ୍ବା ତଦୁର୍ଦ୍ଧ୍ୱ ଓ ଜାତୀୟ ସଞ୍ଚୟ ସାର୍ଟିଫିକେଟରେ ୬୦୦୦ ଟଙ୍କା ଜମାକରି ବ୍ଲକ୍, ଜିଲ୍ଲାପାଳ ବା ଉପଜିଲ୍ଲାପାଳ ଅଫିସରୁ ମାଗଣା କୁପନ୍‌ଟିଏ ସଂଗ୍ରହ କରି ଯେକୌଣସି ଉପଯୁକ୍ତ ଜମାକାରୀ ଏହି ଲଟେରୀରେ ଭାଗ ନେଇପାରିବେ । ସର୍ବାଧିକ ଦୁଇଲକ୍ଷ ପର୍ଯ୍ୟନ୍ତ ପୁରସ୍କାରର ବ୍ୟବସ୍ଥା ଏଥିରେ ରହିଛି । ସ୍ୱଳ୍ପ ସଞ୍ଚୟ ଯୋଜନାରେ ଉଭୟ ଦେଶ ଓ ବ୍ୟକ୍ତିର ଉପକାର ସାଧିତ ହୋଇଥାଏ । ପାଶ୍ଚାତ୍ୟ ଦେଶମାନଙ୍କରେ ଜନସାଧାରଣଙ୍କ ସଞ୍ଚୟ ଯୋଜନାରୁ ସରକାର ବହୁ ଉନ୍ନୟନମୂଳକ କାର୍ଯ୍ୟ କରିପାରୁଛନ୍ତି । ସଞ୍ଚୟ ନିମିତ୍ତ ସେଠାରେ ଲୋକମାନଙ୍କୁ ପ୍ରବର୍ତ୍ତାନଗଲେ ମଧ୍ୟ ଦେଶ ଓ ନିଜର ଭବିଷ୍ୟତକୁ ଆଖିରେ ରଖି ସେମାନେ ସ୍ୱତଃସ୍ଫୂର୍ତ୍ତ ଭାବରେ ଏହା କରିଥାନ୍ତି । ମାତ୍ର ଭାରତରେ ଠିକ୍ ତା'ର ବିପରୀତ ଆଚରଣ ଦେଖାଯାଇଥାଏ । ଶତକଡ଼ା ହିସାବରେ ଗଣନା କଲେ ଭାରତର ଜମାକାରୀଙ୍କ ସଂଖ୍ୟା ନାହିଁ । ମାତ୍ର ବ୍ରିଟେନ୍‌ରେ ଶତକଡ଼ା ୭୦ ଭାଗ ଲୋକ ବିଭିନ୍ନ ଯୋଜନାରେ ଅର୍ଥ ସଞ୍ଚୟ କରିଥାନ୍ତି । ଅବଶ୍ୟ ସମୟର ପରିବର୍ତ୍ତନ ସହିତ ସଂପ୍ରତି ଲୋକମାନଙ୍କ ମନରେ କିଛି ପରିମାଣରେ ସଞ୍ଚୟ ପିପାସା ସୃଷ୍ଟି ହୋଇଛି । ବିଭିନ୍ନ ସଞ୍ଚୟ ଯୋଜନାରେ ଏବେ ସରକାର କୋଟି କୋଟି ଟଙ୍କା ସଂଗ୍ରହ କରିପାରୁଛନ୍ତି । ଏହି ଅର୍ଥ ଦେଶର ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟରେ ବିନିଯୋଗ କରାଯାଇ ସାମଗ୍ରିକ ବିକାଶରେ ସହାୟତା କରୁଛି । ଆଶା କରାଯାଉଛି ଭାରତରେ ଜନସାଧାରଣ କିଛିପରିମାଣରେ ଏହି ସଞ୍ଚୟ ଯୋଜନା ସମ୍ପର୍କରେ ଅବଗତ ହେଲେଣି । ପ୍ରତିବର୍ଷ

ସଞ୍ଚୟ ଯୋଜନାରେ ଅର୍ଥର ପରିମାଣ ଅଭିବୃଦ୍ଧି ଘଟୁଥିବାରୁ ଲୋକମାନେ ଯେ ଭବିଷ୍ୟତ ପ୍ରତି ସତର୍କ ହେଲେଣି, ସ୍ପଷ୍ଟ ପ୍ରତୀତ ହୋଇଥାଏ ।

ବ୍ୟକ୍ତିର ଉଭୟ ନିଜ ପରିବାର ଓ ଦେଶ ପାଇଁ କର୍ତ୍ତବ୍ୟବୋଧ ରହିଛି । ଏହି ସଞ୍ଚୟ ବ୍ୟକ୍ତିର ଭବିଷ୍ୟତକୁ ସୁଖମୟ କରିବା ସଙ୍ଗେ ସଙ୍ଗେ ଦେଶର ଅଭିବୃଦ୍ଧିରେ ସହାୟତା କରିଥାଏ । ଅର୍ଥ ସଞ୍ଚୟ କୃପଣତାର ପରିଚୟ ନୁହେଁ, ଏହାଦ୍ୱାରା ବ୍ୟକ୍ତିର ଦାୟିତ୍ୱବୋଧ ଓ ସାମାଜିକ କର୍ତ୍ତବ୍ୟବୋଧର ପରିଚୟ ମିଳିଥାଏ । ଆର୍ଥିକ ସଙ୍କଟରୁ ରକ୍ଷା ପାଇବା ପାଇଁ ଯେପରି ସଞ୍ଚୟର ଆବଶ୍ୟକତା ରହିଛି, ସେହିପରି ଦେଶର ଜାତୀୟ ସ୍ରୋତ ତଥା ଉନ୍ନୟନମୂଳକ କାର୍ଯ୍ୟରେ ନିଜକୁ ସାମିଲ କରିଦେବାକୁ ହେଲେ ଏହାର ଉପଯୋଗିତା ମଧ୍ୟ ରହିଛି । ସ୍ୱଳ୍ପ ସଞ୍ଚୟ ଯୋଜନା ମୁଖ୍ୟତଃ ସ୍ୱଳ୍ପ ଆୟକାରୀ ବ୍ୟକ୍ତିଙ୍କ ଉଦ୍ଦେଶ୍ୟରେ ପ୍ରଣୟନ ହୋଇଛି । ଯଦି ସେମାନେ ଏହାର ସୁଯୋଗ ଯଥାଯଥ ରୂପେ ଗ୍ରହଣ କରିନପାରନ୍ତି, ତା'ହେଲେ ଦେଶର ବା ବ୍ୟକ୍ତିର କାହାରି ମଙ୍ଗଳ ହେବ ନାହିଁ ।



## ଗ୍ରାମ୍ୟଗୋଷ୍ଠୀ ଉନ୍ନୟନ ଯୋଜନା

**(ଉପକ୍ରମ, ଗ୍ରାମ୍ୟଗୋଷ୍ଠୀ ଉନ୍ନୟନ ଯୋଜନାର ଲକ୍ଷ୍ୟ, ଯୋଜନାର କାର୍ଯ୍ୟକାରିତା ପାଇଁ ବିଭିନ୍ନ ପଦକ୍ଷେପ, ଆତ୍ମିକ ବିକାଶ ପାଇଁ ବିଭିନ୍ନ ସଂସ୍ଥା ମାଧ୍ୟମରେ ଉଦ୍ୟମ, ସଫଳତାର ସ୍ୱରୂପ, ଉପସଂହାର)**

ଭାରତରେ ସହରମାନଙ୍କ ସଂଖ୍ୟା ତୁଳନାରେ ଗ୍ରାମମାନଙ୍କର ସଂଖ୍ୟା ବହୁ ଅଧିକ । ସେଥିପାଇଁ ମହାତ୍ମାଗାନ୍ଧି କହିଥିଲେ ଭାରତର ପ୍ରକୃତ ଆତ୍ମା ଗ୍ରାମମାନଙ୍କରେ ହିଁ ରହିଛି । ଭାରତର ସମୁଦାୟ ଲୋକସଂଖ୍ୟାର ଶତକଡ଼ା ୭୦ ଭାଗ ଗ୍ରାମମାନଙ୍କରେ ବାସ କରିଥାନ୍ତି । ସ୍ୱାଧୀନତା ପରେ ବିଭିନ୍ନ ଯୋଜନା ଏପରିକି ବହୁ ଶିଳ୍ପ ସଂସ୍ଥା ଗଠନ ସତ୍ତ୍ୱେ ମଧ୍ୟ ଭାରତର ଗ୍ରାମମାନଙ୍କର ଅବସ୍ଥାରେ କୌଣସି ପରିବର୍ତ୍ତନ ସାଧିତ ହୋଇ ନ ଥିଲା । ସେଠାରେ କରାଯାଇଥିବା ପ୍ରଗତିମୂଳକ କାର୍ଯ୍ୟର ସମସ୍ତ ସୁଫଳ ମୁଖ୍ୟତଃ ଗ୍ରାମ୍ୟଧନୀକଶ୍ରେଣୀ ନିକଟକୁ ଚାଲି ଯାଉଥିଲା । ସ୍ୱାଧୀନତା ପରେ ଏହାର ବିକାଶ ନିମିତ୍ତ ବିଭିନ୍ନ ଯୋଜନା ପ୍ରଣୟନ କରାଗଲା । ଗ୍ରାମ୍ୟ ଅର୍ଥନୀତିର ସଂସ୍କାର ଓ ଦାରିଦ୍ର୍ୟ ମଧ୍ୟରେ ସମୟ ଅତିବାହିତ କରୁଥିବା ବ୍ୟକ୍ତିବିଶେଷଙ୍କର ଆର୍ଥିକ ଉନ୍ନତିକଳ୍ପେ ଏକ ଯୋଜନା ପ୍ରଣୟନ କରାଯାଇଥିଲା । ଏହି ଯୋଜନାଟି ମୁଖ୍ୟତଃ ଗ୍ରାମଗୋଷ୍ଠୀ ଉନ୍ନୟନ ଯୋଜନା ନାମରେ ପରିଚିତ ।

ପ୍ରଥମ ପଞ୍ଚବାର୍ଷିକ ଯୋଜନା କାର୍ଯ୍ୟକାରୀ ହେବାର ଏକବର୍ଷ ପରେ ଅର୍ଥାତ୍ ୧୯୫୨ ମସିହାରେ ଗ୍ରାମ୍ୟଗୋଷ୍ଠୀ ଉନ୍ନୟନ ଯୋଜନା କାର୍ଯ୍ୟକାରୀ ହେଲା । ଏହି ଯୋଜନାକୁ ଅଧିକ ସକ୍ରିୟ ଓ ଫଳପ୍ରସୂ କରିବା କ୍ଷେତ୍ରରେ ଯୁକ୍ତରାଷ୍ଟ୍ର ଆମେରିକା ସହାୟତା କରୁଛି । ବୈଜ୍ଞାନିକ

ପ୍ରଣାଳୀରେ କୃଷିକରି ଅଧିକ ଫସଲ ଉତ୍ପାଦନ କରିବା, ଗ୍ରାମ୍ୟ ରାସ୍ତା ନିର୍ମାଣ, ବେକାରୀ ଦୂରୀକରଣ, ଗ୍ରାମବାସୀଙ୍କୁ ଆତ୍ମନିର୍ଭରଶୀଳ କରାଇବା, ସମବାୟ ମାଧ୍ୟମରେ ସହଯୋଗମୂଳକ ଭାବରେ କାର୍ଯ୍ୟ କରିବା, ସ୍ୱାସ୍ଥ୍ୟର ଉନ୍ନତି ଘଟାଇବା, ଶିକ୍ଷାର ବିସ୍ତାର ଓ ନିରକ୍ଷରତା ଦୂରୀକରଣ, ଗ୍ରାମବାସୀମାନଙ୍କର ସାମାଜିକ କର୍ତ୍ତବ୍ୟ ସମ୍ପର୍କରେ ସଚେତନ କରାଇ ଗ୍ରାମର ଉନ୍ନତି ନିମିତ୍ତ କିଛି ସମୟ ସାମୂହିକ କାର୍ଯ୍ୟ ନିମିତ୍ତ ବ୍ୟୟ କରିବା, କୁଟୀର ଶିଳ୍ପର ବିକାଶ କରିବା ଇତ୍ୟାଦି ଏହି ଉନ୍ନୟନ ଯୋଜନାର ମୂଳ ଲକ୍ଷ୍ୟ । ଗ୍ରାମର ଗରିବମାନଙ୍କୁ ଏଥିରୁ ଅଧିକ ସୁବିଧା ଗ୍ରହଣ ପାଇଁ ବିଭିନ୍ନ ବ୍ୟବସ୍ଥା କରାଯାଇଛି । ବିଶେଷକରି ଗରିବ କୃଷକ, କୃଷି ଶ୍ରମିକମାନଙ୍କର ବିକାଶ ନିମିତ୍ତ ଉକ୍ତ ଯୋଜନାରେ କେତେକ ବ୍ୟବସ୍ଥା ରହିଛି । ଗ୍ରାମ୍ୟ ଅର୍ଥନୀତି ଏବଂ ଗ୍ରାମମାନଙ୍କରେ ବସବାସ କରୁଥିବା ବ୍ୟକ୍ତିବିଶେଷଙ୍କର ସାମଗ୍ରିକ ବିକାଶ ସାଧନ ଥିଲା ଏହି ଯୋଜନାର ମୂଳ ଲକ୍ଷ୍ୟ ।

ଏହି ଯୋଜନା ଅନୁଯାୟୀ ବ୍ଲକ ହିଁ ଯୋଜନାର ପ୍ରାଥମିକ ଅଙ୍ଗ ଭାବରେ କାର୍ଯ୍ୟ କରିବ । କାରଣ ଗ୍ରାମର ସମସ୍ତ ମୁଖ୍ୟ ବିକାଶମୂଳକ ଯୋଜନା ଯଥା – କୃଷି, ମତ୍ସ୍ୟଚାଷ, ଗ୍ରାମ୍ୟ କୁଟୀର ଶିଳ୍ପ, ବନୀକରଣ ଆଦିର ରୂପରେଖ ଏହିଠାରେ ହିଁ ପ୍ରସ୍ତୁତ କରାଯାଇଥାଏ । ଏତଦ୍ ବ୍ୟତୀତ ପ୍ରାଥମିକ ଶିକ୍ଷା, ପାନୀୟ ଜଳ, ଗ୍ରାମ୍ୟରାସ୍ତା ଓ ସ୍ୱାସ୍ଥ୍ୟ ଆଦି ବିକାଶମୂଳକ କାର୍ଯ୍ୟକ୍ରମ ବ୍ଲକ୍‌ର ଅନ୍ତର୍ଭୁକ୍ତ । ୧୯୬୦ ମସିହାରେ ଦୁଇହଜାର ଗ୍ରାମ୍ୟଗୋଷ୍ଠୀ ବିଭାଗରେ ଶହେଟି ଗ୍ରାମ ରହିଥିଲା । ୧୯୬୨ ମସିହାରେ ୪.୧୪ ଲକ୍ଷ ଗ୍ରାମ ଏହି ଯୋଜନାର ଅନ୍ତର୍ଭୁକ୍ତ ହୋଇଥିବା ସମୟରେ ୧୯୬୪ ମସିହା ବେଳକୁ ୫୬୦,୦୦୦ ଗ୍ରାମ ଏହାର ଅନ୍ତର୍ଭୁକ୍ତ ହୋଇଥିଲା ଏବଂ ଗ୍ରାମସେବକମାନଙ୍କୁ ନିଯୁକ୍ତି ପ୍ରଦାନ କରାଯାଇ ଗ୍ରାମର ସାମୂହିକ ବିକାଶ ଯୋଜନା ଲକ୍ଷ୍ୟ କରିବାକୁ ନିର୍ଦ୍ଦେଶ ପ୍ରଦାନ କରାଯାଇଥିଲା । ୧୯୭୭-୭୮ ମସିହା ବେଳକୁ ଏହା ଅଧିକ ଜନପ୍ରିୟ ହୋଇପାରିଥିଲା । କେନ୍ଦ୍ର ଓ ରାଜ୍ୟର କେତେକ ସ୍ୱତନ୍ତ୍ର ବିଭାଗ ଏହାର ସଫଳ ରୂପାୟନ ନିମିତ୍ତ କାର୍ଯ୍ୟ କରିବାକୁ ଲାଗିଲେ । ୧୯୭୮ ମସିହାରେ ପ୍ରାୟ ୨୦୦୦ ବ୍ଲକ୍‌କୁ ଯୋଜନା ପ୍ରସ୍ତୁତ ନିମିତ୍ତ ୫ ଲକ୍ଷ ଟଙ୍କା ପ୍ରଦାନ କରାଯାଇଥିଲା । ଧୀରେ ଧୀରେ ଏହି ଯୋଜନା ଗ୍ରାମମାନଙ୍କରେ ଲୋକପ୍ରିୟତା ଅର୍ଜନ କଲା ।

ଏହି ଯୋଜନାରେ ଗରିବ ଲୋକମାନଙ୍କର ଆର୍ଥିକ ବିକାଶ ପ୍ରତି ଅଧିକ ଗୁରୁତ୍ୱ ପ୍ରଦାନ କରାଯାଉଥିବାରୁ ପ୍ରଥମେ କେଉଁମାନେ ଏହାର ସୁଯୋଗ ଲାଭ କରିବେ, ସେମାନଙ୍କୁ ନିର୍ଦ୍ଦିଷ୍ଟ କରାଯାଉଥିଲା । ଯୋଜନାର ପ୍ରାଥମିକ ସ୍ତରରେ କୃଷି, ପଶୁପାଳନ, ମତ୍ସ୍ୟଚାଷ ଏବଂ ସାମାଜିକ ବନୀକରଣ ଉପରେ ଗୁରୁତ୍ୱ ପ୍ରଦାନ କରାଯାଇଥିଲା । ଏହାର ଦ୍ୱିତୀୟ ସ୍ତରରେ ଗ୍ରାମ୍ୟ କୁଟୀରଶିଳ୍ପ, କ୍ଷୁଦ୍ରଶିଳ୍ପ ଆଦି ଉପରେ ଗୁରୁତ୍ୱ ଦିଆଯାଇଥିଲା । ଜିଲ୍ଲା ଶିଳ୍ପକେନ୍ଦ୍ରଗୁଡ଼ିକ ଗ୍ରାମଗୁଡ଼ିକରେ କାର୍ଯ୍ୟରତ ଥିବା କୁଟୀର ଶିଳ୍ପ ଓ କ୍ଷୁଦ୍ରଶିଳ୍ପମାନଙ୍କର କାର୍ଯ୍ୟଗୁଡ଼ିକୁ ତତ୍ତ୍ୱାବଧାନ କରିବ ବୋଲି ଯୋଜନା ପ୍ରସ୍ତୁତ ହୋଇଥିଲା । ତୃତୀୟ ସ୍ତରଟି ଗ୍ରାମମାନଙ୍କରେ ଉତ୍ପାଦିତ ହେଉଥିବା ବସ୍ତୁମାନଙ୍କ ପାଇଁ ବଜାର ସୃଷ୍ଟି, ଗ୍ରାମର ଶିକ୍ଷିତ ବା ଅର୍ଦ୍ଧଶିକ୍ଷିତମାନଙ୍କ

ପାଇଁ ଆତ୍ମନିଯୁକ୍ତି ବ୍ୟବସ୍ଥା ଆଦି କରିବାର ଦାୟିତ୍ୱ ଗ୍ରହଣ କରିଥିଲେ । ଗ୍ରାମ୍ୟ ଉନ୍ନୟନ ଯୋଜନାର ମୁଖ୍ୟ ଉପାଦାନ ସମ୍ପର୍କରେ ସୂଚନା ପ୍ରଦାନ କରି ଜାତୀୟ କୃଷି କମିଶନ କହିଥିଲେ – Consolidation of holding, overall land development through maximum water control, maximum irrigation supply, adoption of suitable cropping pattern. ଗ୍ରାମର ଗରିବଙ୍କୁ ବା ନାମମାତ୍ର ଚାଷୀମାନଙ୍କୁ କୃଷି ଯୋଜନାରେ ସୁଧବିହୀନ ଋଣ ଯୋଗାଇଦେବାର ବ୍ୟବସ୍ଥା କରାଯାଇଥିଲା । ଏତଦ୍ ବ୍ୟତୀତ କୃଷକମାନଙ୍କୁ ଉନ୍ନତ ବିହନ, ସାର, ଔଷଧ ଆଦି ଯୋଗାଇଦେବା, ଉନ୍ନତ କୃଷି ପଦ୍ଧତି ନିମିତ୍ତ ପ୍ରବୀଣ କୃଷିବିତ୍‌ଙ୍କ ଦ୍ୱାରା ସେମାନଙ୍କୁ ଦିଗ୍‌ଦର୍ଶନ ଦେବାର ବ୍ୟବସ୍ଥା ହୋଇଛି । ନିରକ୍ଷରତା ପ୍ରଗତିର ପରିପନ୍ଥୀ ହୋଇଥିବାରୁ ଏବଂ ଏହି ନିରକ୍ଷର ବ୍ୟକ୍ତି ସରକାରଙ୍କ ବିଭିନ୍ନ ଯୋଜନା ସମ୍ପର୍କରେ ଜାଣି ପାରୁ ନ ଥିବାରୁ ସେମାନଙ୍କ ପାଇଁ ଶିକ୍ଷାର ବ୍ୟବସ୍ଥା କରାଯାଇଛି । ପ୍ରୌଢ଼ ଶିକ୍ଷାକେନ୍ଦ୍ରମାନ ଖୋଲାଯାଇ ଶିକ୍ଷାର ପ୍ରସାର ନିମିତ୍ତ ବ୍ୟବସ୍ଥା ଗୃହୀତ ହୋଇଛି । ପଲ୍ଲୀସ୍ୱାସ୍ଥ୍ୟକେନ୍ଦ୍ରମାନ ଖୋଲାଯାଇ ଗ୍ରାମବାସୀମାନଙ୍କର ସ୍ୱାସ୍ଥ୍ୟ ପ୍ରତି ଯତ୍ନ ନେବାର ବ୍ୟବସ୍ଥା କରାଯାଇଛି । ସମବାୟ ସଂସ୍ଥା ମାଧ୍ୟମରେ ଗ୍ରାମ୍ୟ ଉନ୍ନୟନ ଯୋଜନାକୁ ଅଧିକ ସକ୍ରିୟ ଓ ଚଳଚଞ୍ଚଳ କରିବା ନିମିତ୍ତ କେତେକ ରାଜ୍ୟରେ ପରୀକ୍ଷାମୂଳକ ଭାବେ ଏହି ଯୋଜନାକୁ କାର୍ଯ୍ୟକାରୀ କରାଯାଉଛି । ପୁନରାୟ ପଞ୍ଚାୟତିରାଜ ବ୍ୟବସ୍ଥା ଦ୍ୱାରା ଗ୍ରାମର ଲୋକମାନଙ୍କର ବିକାଶ ନିମିତ୍ତ ବ୍ୟବସ୍ଥା ହୋଇଛି । ଜନପ୍ରତିନିଧି ଭାବରେ ସେମାନେ ଲୋକମାନଙ୍କର ସୁବିଧା-ଅସୁବିଧା ସରକାରଙ୍କୁ ଜଣାଇପାରିବେ ଏବଂ ଆବଶ୍ୟକ ପଦକ୍ଷେପ ଗ୍ରହଣ ପାଇଁ ମଧ୍ୟ ଦାବି କରିପାରିବେ । ଏହି ଯୋଜନାରେ ଗ୍ରାମମାନଙ୍କ ମଧ୍ୟରେ ଯୋଗାଯୋଗର ସୁବିଧା ନିମିତ୍ତ ରାସ୍ତାଘାଟ ନିର୍ମାଣ କରାଯାଇଛି । ସମବାୟ ସଂସ୍ଥା ମାଧ୍ୟମରେ ଅଳ୍ପ ସୁଧରେ କୃଷକମାନଙ୍କୁ ଋଣ ପ୍ରଦାନ କରାଯାଉଥିବାରୁ ସୁଧଖୋର ମହାଜନମାନଙ୍କ କବଳରୁ ନିରୀହ ଗ୍ରାମବାସୀମାନଙ୍କୁ ରକ୍ଷା କରାଯାଇପାରିଛି । ଏବେବି ଗ୍ରାମମାନଙ୍କରେ ବହୁ ଅନ୍ଧବିଶ୍ୱାସ ଓ କୁସଂସ୍କାର ପୂରି ରହିଛି । ତା'ର ନିରାକରଣ ପାଇଁ ଗ୍ରାମଗୋଷ୍ଠୀ ଯୋଜନା ମଧ୍ୟ କେତେକ ପଦକ୍ଷେପ ଗ୍ରହଣ କରିଛି ।

ଗ୍ରାମ୍ୟଗୋଷ୍ଠୀ ଉନ୍ନୟନ ଯୋଜନା ଦ୍ୱାରା ପଲ୍ଲୀ ଅଞ୍ଚଳରେ ବସବାସ କରୁଥିବା ବହୁ ସାଧାରଣ ଅଧିବାସୀ ଉପକୃତ ହେଉଛନ୍ତି । ସେମାନଙ୍କର ଆର୍ଥିକ ମାନରେ ଉନ୍ନତି ଘଟିଛି । ସ୍ୱାସ୍ଥ୍ୟକେନ୍ଦ୍ର ପ୍ରତିଷ୍ଠା ଦ୍ୱାରା ସେମାନେ ନିଜ ସ୍ୱାସ୍ଥ୍ୟର ଯତ୍ନନେବା ଶିଖିଛନ୍ତି । ପ୍ରୌଢ଼ ଶିକ୍ଷାର ବିସ୍ତାର ଦ୍ୱାରା ସରକାରଙ୍କ ବିଭିନ୍ନ ଯୋଜନା ସମ୍ବନ୍ଧରେ ଅବଗତ ହୋଇପାରୁଛନ୍ତି । ରାସ୍ତା ନିର୍ମାଣ ଓ ବିଦ୍ୟୁତିକରଣ ଦ୍ୱାରା ଗ୍ରାମମାନଙ୍କର ଉନ୍ନତି ହୋଇଛି । ଜଳସେଚନ ବ୍ୟବସ୍ଥା ଯୋଗୁଁ କୃଷକମାନେ ଅଧିକ ଫସଲ ଉତ୍ପାଦନ କରିବାକୁ ସମର୍ଥ ହୋଇଛନ୍ତି । କୃଷି ସମ୍ପର୍କୀୟ ସୂଚନା ଦ୍ୱାରା ଧାନଚାଷ ବ୍ୟତୀତ ଅନ୍ୟାନ୍ୟ ପରିବା ଓ ଡାଲିଜାତୀୟ ପଦାର୍ଥ, ନଡ଼ିଆ ଚାଷ, ମାଛ ଚାଷ, ଦୁଗ୍ଧ ଉତ୍ପାଦନ ଆଦି କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ସଫଳତା ହାସଲ କରିଛନ୍ତି ।

ସରକାରଙ୍କ ଏହି ଯୋଜନା ସମ୍ପୂର୍ଣ୍ଣ ସଫଳ ହୋଇପାରିଛି ବୋଲି କହିହେବ ନାହିଁ । ଏହି ଯୋଜନା ପାଇଁ ଅଟକଳ କରାଯାଉଥିବା ଅର୍ଥ ଅନେକ ସମୟରେ ବାଟମାରଣା ହୋଇଯାଉଛି । ଗ୍ରାମର ଟାଉଟର ଓ ରାଜନୀତିକ ନେତା ଅନେକ ସମୟରେ ମିଥ୍ୟା ଯୋଜନା ଆଳରେ ସରକାରୀ ଅର୍ଥ ଆତ୍ମସାତ୍ କରୁଛନ୍ତି । ପୁନରାୟ ଏହି ଯୋଜନାରେ କାର୍ଯ୍ୟକରୁଥିବା ସରକାରୀ କର୍ମଚାରୀ ମଧ୍ୟ ନିର୍ମଳ ହୃଦୟସମ୍ପନ୍ନ ନୁହନ୍ତି, ସେମାନେ ଦୁର୍ନୀତିଗ୍ରସ୍ତ ହୋଇଥିବାରୁ ଜନସାଧାରଣଙ୍କ ଅର୍ଥ ନିଜ ସେବାରେ ଖର୍ଚ୍ଚ କରୁଛନ୍ତି । ବହୁ ଯୋଜନାର ଅର୍ଥ ବାଟମାରଣା ହେଉଥିବାରୁ ଏହା ସ୍ୱୟଂସମ୍ପୂର୍ଣ୍ଣ ହୋଇପାରୁ ନାହିଁ କିମ୍ବା ତା'ର ପ୍ରକୃତ ସୁଫଳ ଜନସାଧାରଣ ଲାଭ କରିପାରୁ ନାହାନ୍ତି । ଏହା ସତ୍ତ୍ୱେ ଗ୍ରାମ୍ୟଗୋଷ୍ଠୀ ଉନ୍ନୟନ ଯୋଜନାର ମହାନ୍ ଲକ୍ଷ୍ୟ ଗ୍ରାମାଞ୍ଚଳ ଅଧିବାସୀଙ୍କ ଆର୍ଥିକମାନ ସମୃଦ୍ଧିରେ ସହାୟତା କରିପାରିଛି । ଜନସାଧାରଣ ନିଜର ସମସ୍ୟା ପ୍ରତି ସତର୍କ ହୋଇପାରିଛନ୍ତି । କୃଷିକ୍ଷେତ୍ରରେ ଉଲ୍ଲେଖନୀୟ ପ୍ରଗତି କରିପାରିଛନ୍ତି । ସମସ୍ତଙ୍କର ନିଃସ୍ୱାର୍ଥ ସହଯୋଗ ମିଳିଲେ ଏହି ଯୋଜନାଟି ଯେ ଅଧିକ ଫଳପ୍ରଦ ଓ ସଫଳ ହୋଇପାରନ୍ତା, ଏଥିରେ ସନ୍ଦେହ ନାହିଁ ।

●

## ପଞ୍ଚବାର୍ଷିକ ଯୋଜନା

**(ଉପକ୍ରମ, ଯୋଜନାର ଲକ୍ଷ୍ୟ , ବିଭିନ୍ନ ପଞ୍ଚବାର୍ଷିକ ଯୋଜନାର ରୂପରେଖ, ସଫଳତା ଓ ବିଫଳତା, ଉପସଂହାର)**

ଭାରତ ବିଶ୍ୱର ଦ୍ୱିତୀୟ ଜନବହୁଳ ରାଷ୍ଟ୍ର । ବହୁଦିନ ଧରି ପରାଧୀନ ଜୀବନଯାପନ ସମୟରେ ଏହାର ଆର୍ଥିକ ମେରୁଦଣ୍ଡ ଭୁଷୁଡ଼ି ପଡ଼ିଥିଲା । ଶୋଷଣ ଓ ନିଷ୍ପେଷଣ ମଧ୍ୟରେ ଏ ଦେଶର ଜନସାଧାରଣ ଅତିଷ୍ଠ ହୋଇପଡ଼ିଥିଲେ । ନିଜର ଆର୍ଥିକ ଅସ୍ୱଚ୍ଛଳତା ସତ୍ତ୍ୱେ ଶାସକର ସମସ୍ତ ଇଚ୍ଛା ପୂରଣ କରିବାକୁ ବାଧ୍ୟ ହେଉଥିଲେ । ସ୍ୱାଧୀନତା ଲାଭ ପରେ ଲକ୍ଷ୍ୟ କରାଗଲା ଏ ଦେଶର ଅଧିକାଂଶ ଜନସାଧାରଣ ଦାରିଦ୍ର୍ୟ ସୀମାରେଖା ତଳେ ବସବାସ କରୁଛନ୍ତି । ଦେଶର ପ୍ରଗତି ମୁଖ୍ୟତଃ ଜନସାଧାରଣଙ୍କ ଆର୍ଥିକ ସ୍ଥିତି ଉପରେ ହିଁ ନିର୍ଭର କରେ । ଯେଉଁମାନେ ଆର୍ଥିକ ସଙ୍କଟ ମଧ୍ୟରେ ଗତିଶୀଳ ସେମାନେ କିପରି ନିଜକୁ ଜାତୀୟ ସ୍ରୋତ ସହିତ ସାମିଲ କରିପାରିବେ ? ଜନସାଧାରଣ ଓ ଦେଶର ଅବସ୍ଥାରେ ପରିବର୍ତ୍ତନ ପାଇଁ ଆବଶ୍ୟକ ପଡ଼ିଲା ବିଭିନ୍ନ ଯୋଜନାର । ଭାରତର ପଞ୍ଚବାର୍ଷିକ ଯୋଜନା ଏହି ଉଦ୍ଦେଶ୍ୟ ସାଧନ ପାଇଁ ପ୍ରଣୟନ କରାଯାଇଥିଲା ।

ସ୍ୱାଧୀନତା ପ୍ରାପ୍ତି ସମୟରେ ଭାରତର ଆର୍ଥିକ ଅବସ୍ଥା ଅତ୍ୟନ୍ତ ଶୋଚନୀୟ ଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଇଂରେଜମାନେ ଭାରତର ଅର୍ଥନୀତିକୁ ବିପର୍ଯ୍ୟସ୍ତ କରି ଦେଇଥିଲେ । ଇଂରେଜମାନଙ୍କ ଶୋଷଣ ଯୋଗୁଁ ବହୁଲୋକ ଦାରିଦ୍ର୍ୟ ମଧ୍ୟରେ ଜୀବନଯାପନ କରୁଥିଲେ । ଲୋକସଂଖ୍ୟା ବୃଦ୍ଧି ପାଉଥିଲା ଏବଂ ବେକାର ସଂଖ୍ୟା ଦିନକୁ ଦିନ ବଢୁଥିଲେ । ଜାତୀୟ ଏବଂ ବ୍ୟକ୍ତିଗତ ଆୟ ଅତି ନିମ୍ନରେ ଥିଲା । ଅତ୍ୟାବଶ୍ୟକ ପଦାର୍ଥର ଅଭାବ ଯୋଗୁଁ ସାଧାରଣ

ଜନତା ଅତିଷ୍ଠ ହୋଇପଡ଼ିଥିଲା । ସ୍ୱାଧୀନତା ଲାଭ ପରେ ଦେଶକୁ ସ୍ୱାବଲମ୍ବନଶୀଳ, ଦାରିଦ୍ର୍ୟ ଦୂରୀକରଣ ଏବଂ ନିଯୁକ୍ତି ସୁଯୋଗକୁ ଆଖି ଆଗରେ ରଖି ପଞ୍ଚବାର୍ଷିକ ଯୋଜନା ପ୍ରଣୟନ ହେଲା । ୧୯୫୦ ମସିହାରେ ଯୋଜନା କମିଶନ ଗଠିତ ହୋଇଥିଲା । ଦେଶରେ ଉପଲବ୍ଧ ବିଭିନ୍ନ ଉତ୍ସକୁ ପୁଞ୍ଜିକରି ଏହି ଯୋଜନାର ରୂପରେଖ ପ୍ରସ୍ତୁତ କରାଗଲା । ୧୯୫୧ ମସିହାରେ ପ୍ରଥମ ପଞ୍ଚବାର୍ଷିକ ଯୋଜନା ପ୍ରଣୟନ ସମୟରେ ମୁଖ୍ୟତଃ କୃଷି, ଜଳସେଚନ ଓ ଶକ୍ତି ଉପରେ ଗୁରୁତ୍ୱ ପ୍ରଦାନ କରାଯାଇଥିଲା । ଯୋଜନାର ୧୦ ବର୍ଷ ମଧ୍ୟରେ ନିଜକୁ ଅଧିକ ପରିମାଣରେ ସ୍ୱାବଲମ୍ବନଶୀଳ କରିବା ସହିତ ବାହାର ସାହାଯ୍ୟ ଗ୍ରହଣ ନ କରାଯିବାକୁ ସ୍ଥିର କରାଯାଇଥିଲା । ସେଥିପାଇଁ ଯୋଜନା କମିଶନ୍ କହିଥିଲେ – "Integral part of a wider process aiming not merely at the development of resources in a narrow technical sense, but at the development of human faculties and the building up of an institutional framework adequate to the needs and aspirations of the people." ତେଣୁ ଆର୍ଥିକ ସମୃଦ୍ଧି ବେକାର ସଂଖ୍ୟା ହ୍ରାସ, ଆୟ ଏବଂ ସମ୍ପତ୍ତି କ୍ଷେତ୍ରରେ ଅସମତା ଦୂର ଏବଂ ମୁଦ୍ରାସ୍ଫୀତିକୁ ରୋକିବା ଥିଲା ଏହି ପଞ୍ଚବାର୍ଷିକ ଯୋଜନାର ମୁଖ୍ୟ ଲକ୍ଷ୍ୟ ।

ପ୍ରଥମ ପଞ୍ଚବାର୍ଷିକ ଯୋଜନାର ସମୟ ଥିଲା ଏପ୍ରିଲ ୧୯୫୧ ମସିହାରୁ ମାର୍ଚ୍ଚ ୧୯୫୬ ମସିହା ପର୍ଯ୍ୟନ୍ତ । ଏହି ଯୋଜନାର ଲକ୍ଷ୍ୟ ଥିଲା ଜନସାଧାରଣଙ୍କ ବଞ୍ଚିବାର ମାନଦଣ୍ଡକୁ ବୃଦ୍ଧି କରିବା, ସ୍ୱଚ୍ଛଳ ଜୀବନଯାପନ ପାଇଁ ସୁଯୋଗ ସୃଷ୍ଟି କରିବା ଏବଂ ନିଯୁକ୍ତି ସୃଷ୍ଟି କରିବା ସହିତ ସମସ୍ତଙ୍କୁ ସାମାଜିକ ନ୍ୟାୟ ଓ ଆର୍ଥିକ ସମତା ପ୍ରଦାନ କରିବା । ଏହି ଯୋଜନାରେ କୃଷି ଉପରେ ସର୍ବାଧିକ ଗୁରୁତ୍ୱ ଦିଆଯାଇଥିଲା । ଏହାପରେ ଯୋଗାଯୋଗ, ସାମାଜିକ ସେବା ଓ ଶିଳ୍ପ ଉପରେ ଗୁରୁତ୍ୱ ରହିଥିଲା । ଦେଶ ବିଭାଜନ ଯୋଗୁଁ ଖାଦ୍ୟଦ୍ରବ୍ୟ ପ୍ରଚୁର ପରିମାଣରେ ହ୍ରାସ ପାଇଥିଲା । ତାହାକୁ ସୁଧାରିବା ନିମିତ୍ତ ଖାଦ୍ୟ ପଦାର୍ଥ ଅଧିକ ଉତ୍ପାଦନ ପାଇଁ ଏହି ଯୋଜନାରେ ଗୁରୁତ୍ୱ ଦିଆଯାଇଥିଲା । ଏହି ଯୋଜନାରେ ପ୍ରଥମେ ୨୦୬୯ କୋଟି ଟଙ୍କା ଖର୍ଚ୍ଚ ହେବା ପାଇଁ ଅଟକଳ କରାଯାଇଥିଲେ ହେଁ ପରେ ୨୩୫ କୋଟିକୁ ଏହା ବୃଦ୍ଧି ପାଇଥିଲା । ଏହାବ୍ୟତୀତ ଘରୋଇ ନିଯୋଗରେ ୧୪୦୦ ରୁ ୧୫୦୦ କୋଟି ଟଙ୍କା ଖର୍ଚ୍ଚ ହେବାର ଅଟକଳ କରାଯାଇ ଥିଲା । ଏହି ଯୋଜନାରେ କୃଷିପାଇଁ ୩୭୨ କୋଟି ଜଳସେଚନ ଓ ଶକ୍ତି ପାଇଁ ୬୬୧ କୋଟି, ଶିଳ୍ପ ଓ ଖଣିଜ ପଦାର୍ଥ ପାଇଁ ୧୭୯ କୋଟି, ଯୋଗାଯୋଗ ପାଇଁ ୫୫୬ କୋଟି, ସାମାଜିକ ସେବାପାଇଁ ୫୪୭ କୋଟି ଓ ଅନ୍ୟାନ୍ୟ ଖର୍ଚ୍ଚ ପାଇଁ ୪୧ କୋଟି ଟଙ୍କା ବ୍ୟୟ ବରାଦ ହୋଇଥିଲା । ଏହାଦ୍ୱାରା ଖାଦ୍ୟ ଶସ୍ୟ ପରିମାଣ ୧୦.୯ ନିୟୁତ ଟନ୍, ବିଦ୍ୟୁତ ଶକ୍ତି ୨.୫ ନିୟୁତ କିଲୋୱାଟରୁ ୩.୪ ନିୟୁତ କିଲୋୱାଟ, ଇସ୍ପାତ ଉତ୍ପାଦନ ୯,୮୦,୦୦୦ ଟନରୁ ୧.୨ ନିୟୁତ ଟନ୍, ସିମେଣ୍ଟ ୨.୬ ନିୟୁତ ଟନ୍‌ରୁ ୪.୫ ନିୟୁତ ଟନ୍ ଏବଂ ଜାତୀୟ ଆୟ ୪୭.୫% ବୃଦ୍ଧି ପାଇଥିଲା । ମୁଣ୍ଡ ପିଛା ଆୟ ୧୦.୨% ବୃଦ୍ଧି ପାଇ ଟ ୨୪୬.୦୦ ରୁ ୨୭୬.୦୦ ରେ ପହଞ୍ଚିଥିଲା । ଏହି ସମୟରେ ଦାମୋଦର ମୟୂରାକ୍ଷୀ; ହୀରାକୁଦ ନଦୀବନ୍ଧ ଯୋଜନା, ଟାଟା ଲୌହ ଶିଳ୍ପର ପ୍ରସାରଣ, ହିନ୍ଦୁସ୍ଥାନ ବିମାନ ନିର୍ମାଣ, ବିଶାଖାପାଟଣା ଜାହାଜ ନିର୍ମାଣ କାରଖାନାମାନ ନିର୍ମିତ ହୋଇଥିଲା ।

ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନାର ସମୟ ଏପ୍ରିଲ ୧, ୧୯୫୬ରୁ ୩୧ ମାର୍ଚ୍ଚ ୧୯୬୧ । ଏହି ଯୋଜନାରେ ଏକ ସମାଜବାଦୀ ସମାଜ ପ୍ରତିଷ୍ଠା ପାଇଁ ଲକ୍ଷ୍ୟ ରହିଥିଲା । ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନାରେ ମୁଖ୍ୟତଃ ଶିଳ୍ପ, ଖଣି, ଯୋଗାଯୋଗ ଏବଂ ଶକ୍ତି ଉପରେ ଅଧିକ ଗୁରୁତ୍ୱ ଦିଆଯାଇଥିଲା । ଏଥିରେ ୪୮୦୦ କୋଟି ଟଙ୍କା ବ୍ୟୟବରାଦ ହୋଇଥିଲା ଏବଂ କୃଷିପାଇଁ ୫୬୮ କୋଟି, ଜଳସେଚନ ଓ ଶକ୍ତି ପାଇଁ ୯୧୩ କୋଟି, ଶିଳ୍ପ ଓ ଖଣି ପାଇଁ ୮୯୦ କୋଟି, ଯୋଗାଯୋଗ ପାଇଁ ୧୩୮୫ କୋଟି, ସାମାଜିକ ସେବା ପାଇଁ ୯୪୮ କୋଟି ଏବଂ ଅନ୍ୟାନ୍ୟ ପାଇଁ ୯୯ କୋଟି ଟଙ୍କା ଖର୍ଚ୍ଚ ହେବ ବୋଲି ସ୍ଥିର ହୋଇଥିଲା । ପରବର୍ତ୍ତୀ ସମୟରେ ଭାରୀ ଶିଳ୍ପ ପ୍ରତିଷ୍ଠା ନିମିତ୍ତ ଏହା ପଥ ପରିଷ୍କାର କରିଥିଲା । ଏହି ସମୟରେ ସରକାରୀ ଉଦ୍ୟୋଗରେ ତିନୋଟି ଇସ୍ପାତ କାରଖାନା ଆରମ୍ଭ ସଙ୍ଗେ ସଙ୍ଗେ ଘରୋଇ ଉଦ୍ୟୋଗର ଦୁଇଟି ଅଂଶକୁ ସମ୍ପ୍ରସାରଣ କରାଯାଇଥିଲା । ଉକ୍ତ ଯୋଜନା କାଳରେ ଗ୍ରାମ୍ୟଗୋଷ୍ଠୀ ଉନ୍ନୟନ, ଷ୍ଟେଟବ୍ୟାଙ୍କ୍ ଓ ଜୀବନବୀମା କମ୍ପାନୀର ଜାତୀୟକରଣ, ବୟନ ଓ କ୍ଷୁଦ୍ରଶିଳ୍ପର ବିକାଶ, ବିଦ୍ୟୁତ୍‌ଶକ୍ତି ଉତ୍ପାଦନ ବୃଦ୍ଧି ଆଦି ଘଟିଥିଲା । ଜାତୀୟ ଆୟ ପ୍ରଥମ ପଞ୍ଚବାର୍ଷିକ ଯୋଜନା ଅନୁପାତରେ ୧.୨ ବୃଦ୍ଧି ପାଇଥିଲା ଏବଂ ହାରାହାରି ଆ୦ ନିୟୁତ ନିଯୁକ୍ତି ସୁଯୋଗ ସୃଷ୍ଟି କରାଯାଇଥିଲା ।

ତୃତୀୟ ପଞ୍ଚବାର୍ଷିକ ଯୋଜନାର ସମୟ ୧ ଏପ୍ରିଲ ୧୯୬୧ରୁ ୩୧ ମାର୍ଚ୍ଚ ୧୯୬୬ ପର୍ଯ୍ୟନ୍ତ । ଏହି ଯୋଜନା କାଳରେ ସରକାରୀ ନିୟୋଗରେ ୭୫,୦୦୦ ନିୟୁତ ଏବଂ ଘରୋଇ ନିୟୋଗରେ ୪୧,୦୦୦ ନିୟୁତ ଟଙ୍କା ଖର୍ଚ୍ଚ ହେବାର ଅଟକଳ କରାଯାଇଥିଲା । ବିଭିନ୍ନ କର ବୃଦ୍ଧି, ବୈଦେଶିକ ସାହାଯ୍ୟ, ଋଣ ସଂଗ୍ରହ ଆଦିରୁ ଏହି ସମୟରେ ଅର୍ଥ ସଂଗ୍ରହ ହୋଇଥିଲା । ୩ୟ ପଞ୍ଚବାର୍ଷିକ ଯୋଜନା ସମୟରେ ଭାରତ କେତେକ ପ୍ରତିକୂଳ ଅବସ୍ଥାର ସମ୍ମୁଖୀନ ହୋଇଥିଲା । ଚୀନ ଓ ପାକିସ୍ଥାନ ସହିତ ଯୁଦ୍ଧ, ଦେଶରେ କେତେକ ସ୍ଥାନରେ ଦୁର୍ଭିକ୍ଷ ଏବଂ ବୈଦେଶିକ ସାହାଯ୍ୟ ପରିମାଣ ହ୍ରାସ ଆଦି ଯୋଗୁଁ ମୁଦ୍ରାସ୍ଫୀତି ଘଟିଲା ଓ ଯୋଜନାର ସଫଳ ରୂପାୟନ ହୋଇପାରିଲା ନାହିଁ ।

୪ର୍ଥ ପଞ୍ଚବାର୍ଷିକ ଯୋଜନାର ସମୟ ୧ ଏପ୍ରିଲ ୧୯୬୬ ଠାରୁ ଆରମ୍ଭ ହେବା କଥା । ମାତ୍ର ଏହି ଯୋଜନାକୁ ଅଟକ ରଖାଯାଇ ବାର୍ଷିକ ଯୋଜନା ତିନିବର୍ଷ ପାଇଁ ଅର୍ଥାତ୍ ୧୯୬୬ରୁ ୧୯୬୭, ୧୯୬୭-୬୮, ୧୯୬୮-୬୯ ପର୍ଯ୍ୟନ୍ତ ପ୍ରସ୍ତୁତ କରାଗଲା । ୧୯୬୬-୬୭ରେ ଦୁର୍ଭିକ୍ଷ ଯୋଗୁଁ ଜାତୀୟ ଆୟ ୧.୧% ବୃଦ୍ଧି ପାଇଥିଲା । ୧୯୬୭-୬୮ରେ ଭଲ ଫସଲ ଉତ୍ପାଦନ ଯୋଗୁଁ ବାର୍ଷିକ ଆଂୟ ୯% ବୃଦ୍ଧି ପାଇଥିଲା । ୧୯୬୮-୬୯ରେ ୧୯୬୭-୬୮ ତୁଳନାରେ ଜାତୀୟ ଆୟ ୩% ବୃଦ୍ଧି ପାଇଥିଲା । ୪ର୍ଥ ପଞ୍ଚବାର୍ଷିକ ଯୋଜନା (୧୯୬୯-୭୪)ରେ ୨୪.୮୮୨ କୋଟି ଟଙ୍କା ଖର୍ଚ୍ଚ ହେବାର ଅଟକଳ ହୋଇଥିଲା । ସେଥିରୁ ସରକାରୀ ଆୟୋଗରେ ୧୫.୯୦୨ କୋଟି ଟଙ୍କା ଓ ଘରୋଇ ଆୟୋଗରେ ୮୯୮୦ କୋଟି ଟଙ୍କା ଖର୍ଚ୍ଚ ହେବାର ଧାର୍ଯ୍ୟ ହୋଇଥିଲା । ଏହି ଯୋଜନାରେ ପରିବାର ନିୟନ୍ତ୍ରଣ ଓ କୃଷି ଉପରେ ଅଧିକ ଗୁରୁତ୍ୱ ଦିଆଯାଇଥିଲା ।

୫ମ ପଞ୍ଚବାର୍ଷିକ ଯୋଜନା (୧ ଏପ୍ରିଲ ୧୯୭୪ରୁ ୩୧ ମାର୍ଚ୍ଚ ୧୯୭୯)ରେ ସରକାର ଆୟୋଗ ପାଇଁ ୩୭,୨୫୦ କୋଟି ଟଙ୍କା ଓ ଘରୋଇ ଆୟୋଗ ପାଇଁ ୧୬,୧୬୧ କୋଟି ଟଙ୍କା ବ୍ୟୟ ବରାଦ ଧାର୍ଯ୍ୟ ହୋଇଥିଲା । ଏହି ଯୋଜନାରେ କୃଷି ଓ ଜଳସେଚନ ପାଇଁ ୭୦୦୦ କୋଟି ଟଙ୍କାରୁ ଊର୍ଦ୍ଧ୍ୱ ବ୍ୟୟବରାଦ ହୋଇଥିବା ସମୟରେ ଶକ୍ତି ପାଇଁ ୬୧୯୦ କୋଟି ଟଙ୍କା ବ୍ୟୟବରାଦ ହୋଇଥିଲା । ସାମାଜିକ ମଙ୍ଗଳ, କୃଷି, ନିଯୁକ୍ତି ସୁଯୋଗ ଆଦି ଉପରେ ଗୁରୁତ୍ୱ ଦିଆଯାଇଥିଲା । ଆଞ୍ଚଳିକ ଅସମତା ଦୂର ପାଇଁ ମଧ୍ୟ ଏଥିରେ ଗୁରୁତ୍ୱ ପ୍ରଦାନ କରାଯାଇଥିଲା । ଜାତୀୟ ବିକାଶ ପରିଷଦ (National Development Council) ୫ମ ପଞ୍ଚବାର୍ଷିକ ଯୋଜନାକୁ ୧୯୭୬ ମସିହା ସେପ୍ଟେମ୍ବର ୨୫ ତାରିଖରେ ଅନୁମୋଦନ କରିଥିଲେ । ଏହା ୧୯୭୬, ଅକ୍ଟୋବର ୧୨ ତାରିଖରେ ପ୍ରକାଶ ପାଇଥିଲା । ଏହି ସମୟରେ ବିଂଶସୂତ୍ରୀ କାର୍ଯ୍ୟକ୍ରମର ରୂପାୟନ ହୋଇଥିଲା । ଦାରିଦ୍ର୍ୟ ଦୂରୀକରଣ ଓ ସ୍ୱାବଲମ୍ବନଶୀଳ ହେବାପାଇଁ ଏଥିରେ ଗୁରୁତ୍ୱ ଦିଆଯାଇଥିଲା । ଏହି ପଞ୍ଚବାର୍ଷିକ ଯୋଜନା ୧୯୭୯ ମସିହାରେ ପୂର୍ଣ୍ଣ ହୋଇଥାନ୍ତା । ମାତ୍ର କେନ୍ଦ୍ରରେ ସରକାରଙ୍କ ପରିବର୍ତ୍ତନ ଯୋଗୁଁ ଏହା ଗୋଟିଏ ବର୍ଷ ପୂର୍ବରୁ ସମାପ୍ତ ହୋଇଯାଇଥିଲା । ତେଣୁ ଯଥାର୍ଥରେ ଏହା ଏକ ଚାରିବର୍ଷିଆ ଯୋଜନା । ଏହି ସମୟରେ ଖାଦ୍ୟପଦାର୍ଥ ଆଶାତୀତ ଭାବରେ ବୃଦ୍ଧି ପାଇଥିଲା ଏବଂ ଭଣ୍ଡାରରେ ୧୮-୨୦ ନିୟୁତ ଟନ୍ ଖାଦ୍ୟପଦାର୍ଥ ସଞ୍ଚୟ କରାଯାଇପାରିଥିଲା । ଶିଳ୍ପକ୍ଷେତ୍ରରେ ମଧ୍ୟ ଉତ୍ପାଦନ ପରିମାଣ ଏହି ସମୟରେ ୨.୬%ରୁ ୧୦.୪% ବୃଦ୍ଧି ପାଇଥିଲା ।

୬ଷ୍ଠ ପଞ୍ଚବାର୍ଷିକ ଯୋଜନା ୧ ଏପ୍ରିଲ ୧୯୭୮ରୁ ଆରମ୍ଭ ହୋଇଥିଲା । ଜନତା ସରକାର ଏହି ଯୋଜନାକୁ ଆବର୍ତ୍ତନ ଯୋଜନା ନାମରେ ନାମିତ କଲେ । ଏହାଦ୍ୱାରା ପ୍ରତିବର୍ଷ ଯୋଜନା ନିର୍ଦ୍ଧାରିତ ହେବା ସଙ୍ଗେ ସଙ୍ଗେ ବର୍ଷ ଶେଷରେ ତା'ର ଫଳାଫଳ ବିଶ୍ଳେଷିତ ହେବ । ପରିସ୍ଥିତି ଅନୁଯାୟୀ ଏଥିରେ ମଧ୍ୟ ପରିବର୍ତ୍ତନ କରାଯାଇପାରିବ । ଏହି ଯୋଜନାରେ ୧,୧୬,୨୪୦ କୋଟି ଟଙ୍କା ଖର୍ଚ୍ଚ ହେବାର ଅଟକଳ କରାଯାଇଥିଲା । ଦାରିଦ୍ର୍ୟ ସୀମାରେଖା ତଳେ ଥିବା ବ୍ୟକ୍ତିବିଶେଷଙ୍କ ଜୀବନଧାରଣ ମାନ ବୃଦ୍ଧି, ପ୍ରୌଢ଼ ଶିକ୍ଷା, ବେକାରୀ ସମସ୍ୟା ଦୂରୀକରଣ, ପାନୀୟଜଳ ଯୋଗାଣ, ପଲ୍ଲୀ ଅଞ୍ଚଳରେ ରାସ୍ତାର ବିକାଶ, ମୌଳିକ ଶିକ୍ଷା ସମ୍ପ୍ରସାରଣ, କୃଷିର ବିକାଶରେ ଶକ୍ତିର ଅଧିକ ଉତ୍ପାଦନ, ଗୃହ ନିର୍ମାଣ, ସ୍ୱାସ୍ଥ୍ୟର ବିକାଶ ଆଦି ଉପରେ ଗୁରୁତ୍ୱ ଦିଆଯାଇଥିଲା । ୭ମ ପଞ୍ଚବାର୍ଷିକ ଯୋଜନାରେ ୧୮୦,୦୦୦ କୋଟି ଟଙ୍କାର ବ୍ୟୟ ଅଟକଳ କରାଯାଇ ଜାତୀୟ ଆୟ ବୃଦ୍ଧି, କୃଷିର ବିକାଶ, ନିଯୁକ୍ତି ସୁଯୋଗ ସୃଷ୍ଟି, ଦାରିଦ୍ର୍ୟ ଦୂରୀକରଣ, ପାନୀୟଜଳ ଯୋଗାଣ ଆଦି ଉପରେ ଗୁରୁତ୍ୱ ଦିଆଯାଇଥିଲା । ୮ମ ପଞ୍ଚବାର୍ଷିକ ଯୋଜନା ୧୯୯୨ ମସିହାରେ ଆରମ୍ଭ ହେଲା । ଏହି ଯୋଜନାରେ ୭,୯୮୦୦୦ କୋଟି ଟଙ୍କାର ବ୍ୟୟ ଅଟକଳ କରାଯାଇଥିଲା । ଏଥିରେ ମୁଖ୍ୟତଃ ଜନସଂଖ୍ୟା ବୃଦ୍ଧି ନିୟନ୍ତ୍ରଣ, ଜଳଯୋଗାଣ, ସ୍ୱାସ୍ଥ୍ୟର ବିକାଶ, ନିରକ୍ଷରତା ଦୂର, ଜଳସେଚନର ଉନ୍ନତି, ସାର୍ବଜନୀନ ପ୍ରାଥମିକ ଶିକ୍ଷା ଆଦି ଉପରେ ଗୁରୁତ୍ୱ ପ୍ରଦାନ କରାଯାଇଥିଲା । ନବମ ପଞ୍ଚବାର୍ଷିକ ଯୋଜନାରେ (୧୯୯୭-୨୦୦୦)

୮,୭୫,୦୦୦ କୋଟି ଟଙ୍କା ବ୍ୟୟ ବରାଦ ହୋଇଥିଲା । ଯୋଜନା କମିଶନ ମୁଖ୍ୟତଃ କୃଷି, ଶିକ୍ଷା, ସ୍ୱାସ୍ଥ୍ୟ, ଚିକିତ୍ସା, ରାସ୍ତାଘାଟ, ବିଦ୍ୟୁତ୍‌ଶକ୍ତି ଆଦିର ଉନ୍ନତି ଉପରେ ଗୁରୁତ୍ୱ ଦେଇଥିଲା । ୮ମ ଯୋଜନା ଖର୍ଚ୍ଚଠାରୁ ୫୧% ଅଧିକ ଖର୍ଚ୍ଚ ହେବାପାଇଁ ଏଥିରେ ପ୍ରସ୍ତାବ ରହିଥିଲା । ବାର୍ଷିକ ଶିଳ୍ପବୃଦ୍ଧି ହାର ୯ ଦଶମିକ ୩କୁ ବଢ଼ାଇବାକୁ ଯୋଜନା କମିଶନଙ୍କ ପ୍ରସ୍ତାବ ଅଛି । ସାମଗ୍ରିକ ଭାବରେ ୭% ପ୍ରଗତି ହାସଲ ଲକ୍ଷ୍ୟକୁ ଆଖିଆଗରେ ରଖି କୃଷି ତଥା ସମାଜ କଲ୍ୟାଣ କ୍ଷେତ୍ରରେ ବ୍ୟୟବରାଦ ବୃଦ୍ଧି କରିବାର ଯୋଜନା ରହିଥିଲା । ଏତଦ୍‌ବ୍ୟତୀତ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ଲୋକଙ୍କ ହାର ୨୯.୧୮%ରୁ ୧୭.୯୮% କରିବାର ପ୍ରସ୍ତାବ ମଧ୍ୟ ରହିଥିଲା । ଏହାଛଡ଼ା ଶିକ୍ଷା, ମହିଳା ବିକାଶ ଆଦି ପାଇଁ ଯୋଜନାରେ ବ୍ୟବସ୍ଥା କରାଯାଇଥିଲା ।

ଦଶମ ପଞ୍ଚବାର୍ଷିକ ଯୋଜନାର ସମୟସୀମା ୨୦୦୨ ମସିହାରୁ ୨୦୦୭ ମସିହା ପର୍ଯ୍ୟନ୍ତ । ଏହି ଯୋଜନାପାଇଁ ସମୁଦାୟ ଖର୍ଚ୍ଚ ଅଟକଳ ହୋଇଥିଲା ୧୫,୨୫,୬୩୯ କୋଟି ଟଙ୍କା । ତନ୍ମଧ୍ୟରୁ କୃଷି ଓ ଅନୁରୂପ ସହାୟକ କାର୍ଯ୍ୟପାଇଁ ୫୮,୯୩୩ କୋଟି, ଗ୍ରାମୀଣ ବିକାଶ ପାଇଁ ୧,୨୧,୯୨୮ କୋଟି, ସ୍ୱତନ୍ତ୍ର ଆଞ୍ଚଳିକ ପ୍ରକଳ୍ପ ନିମିତ୍ତ ୨୦,୮୭୯ କୋଟି, ଜଳସେଚନ ଓ ଖାଦ୍ୟ ନିୟନ୍ତ୍ରଣ ପାଇଁ ୧,୦୩,୩୧୫ କୋଟି, ଶକ୍ତି କ୍ଷେତ୍ର ପାଇଁ ୪,୦୩,୯୨୭ କୋଟି, ଶିଳ୍ପ ଏବଂ ଖଣି ପାଇଁ ୫୮,୯୩୯ କୋଟି, ଗମନାଗମନ ପାଇଁ ୨,୨୫,୯୭୭ କୋଟି, ଯୋଗାଯୋଗ ପାଇଁ ୯୮,୯୬୮ କୋଟି; ବିଜ୍ଞାନ, ପ୍ରଯୁକ୍ତି ବିଦ୍ୟା ଓ ପରିବେଶ ପାଇଁ ୩୦,୪୨୪ କୋଟି, ସାଧାରଣ ଆର୍ଥନୀତିକ ସେବା ପାଇଁ ୩୮,୬୩୦ କୋଟି; ସାମାଜିକ ସେବାପାଇଁ ୩,୪୭,୩୯୧ କୋଟି, ସାର୍ବଜନୀନ ସେବାପାଇଁ ୧୬,୩୨୮ କୋଟି ଟଙ୍କା ଖର୍ଚ୍ଚ ନିମିତ୍ତ ଅଟକଳ କରାଯାଇଥିଲା । ଏହି ସମୟରେ ଦାରିଦ୍ର୍ୟ ସୀମାରେଖା ତଳେ ରହିଥିବା ପରିମାଣ ସାମାନ୍ୟ ହ୍ରାସ ପାଇଛି ଓ ଖାଦ୍ୟ ଉତ୍ପାଦନ ଆଶାନୁରୂପେ ଅଭିବୃଦ୍ଧି ଘଟିଛି । ଏକାଦଶ ପଞ୍ଚବାର୍ଷିକ ଯୋଜନାର ସମୟସୀମା ୨୦୦୭ ରୁ ୨୦୧୨ ମସିହା ପର୍ଯ୍ୟନ୍ତ । ଏଥିପାଇଁ ସର୍ବମୋଟ ୩୬,୪୪,୭୧୮ କୋଟି ଟଙ୍କା ଖର୍ଚ୍ଚ ହେବା ନିମିତ୍ତ ଅଟକଳ କରାଯାଇଛି । ତନ୍ମଧ୍ୟରୁ କୃଷି ଓ ତଦନୁରୂପ କାର୍ଯ୍ୟ ନିମିତ୍ତ ୧,୩୬,୩୮୧ କୋଟି, ଗ୍ରାମୀଣ ବିକାଶ ଯୋଜନା ପାଇଁ ୩,୦୧,୦୬୯ କୋଟି, ସ୍ୱତନ୍ତ୍ର ଆଞ୍ଚଳିକ ପ୍ରକଳ୍ପ ପାଇଁ ୨୬,୩୨୯ କୋଟି, ଜଳସେଚନ ଓ ଖାଦ୍ୟ ନିୟନ୍ତ୍ରଣ ନିମିତ୍ତ ୨,୧୦,୩୨୬ କୋଟି, ଶକ୍ତି ପାଇଁ ୮,୫୪,୧୨୩ କୋଟି, ଶିଳ୍ପ ଓ ଖଣି ପାଇଁ ୧,୫୩,୬୦୦ କୋଟି, ଗମନାଗମନ ପାଇଁ ୫,୭୨,୪୪୩ କୋଟି, ଯୋଗାଯୋଗ ଉଦ୍ଦେଶ୍ୟରେ ୯୬,୩୮୦ କୋଟି; ବିଜ୍ଞାନ, ପ୍ରଯୁକ୍ତି ବିଦ୍ୟା ଓ ପରିବେଶ ପାଇଁ ୮୭,୯୩୩ କୋଟି, ସାଧାରଣ ଆର୍ଥନୀତିକ ସେବା ପାଇଁ ୬୨,୫୨୩ କୋଟି, ସାମାଜିକ ସେବା ପାଇଁ ୧୧,୦୨,୩୨୭ କୋଟି ଏବଂ ସାର୍ବଜନୀନ ସେବା ଉଦ୍ଦେଶ୍ୟରେ ୪୨,୨୮୩ କୋଟି ଟଙ୍କା ଖର୍ଚ୍ଚ ହେବ ବୋଲି ଅଟକଳ ପ୍ରସ୍ତୁତ ହୋଇଛି । ଯୋଜନା ପରିସମାପ୍ତି ନ ହେବା ପର୍ଯ୍ୟନ୍ତ ଏହାର ସୁଫଳ ସମ୍ପର୍କରେ ପୂର୍ବରୁ ଅନୁମାନ କରିବା ସମ୍ଭବ ନୁହେଁ ।

ଦେଶର ଉନ୍ନତି ପାଇଁ ଯୋଜନାର ଆବଶ୍ୟକତା ରହିଛି । ମାତ୍ର ଏହି ଯୋଜନାର ସଫଳ କାର୍ଯ୍ୟକାରିତା ହୋଇ ନ ପାରିଲେ ଏହାର କୌଣସି ମୂଲ୍ୟ ନାହିଁ । ଏଥିପାଇଁ ଜନସାଧାରଣଙ୍କ ସହଯୋଗ ଏକାନ୍ତ କାମ୍ୟ । ବର୍ତ୍ତମାନ ଭାରତକୁ ସ୍ୱାବଲମ୍ବନଶୀଳ ହେବାର ସମୟ ଆସିଛି । କାରଣ ପରମାଣୁ ଓ ଉଦ୍‌ଜାନ ବୋମା ବିସ୍ଫୋରଣ ପରେ ଆମେରିକା, ଜାପାନ, ଅଷ୍ଟ୍ରେଲିଆ ପ୍ରଭୃତି ଦେଶ ସେମାନଙ୍କର ଋଣ ଓ ସାହାଯ୍ୟ ପରିମାଣ କମାଇ ଦେଇଛନ୍ତି । ବୈଦେଶିକ ସାହାଯ୍ୟ ଉପରେ ନିର୍ଭର ନ କରି ଯୋଜନାକୁ ସଫଳ କରିବାକୁ ହେଲେ ସରକାର, ଜନସାଧାରଣ ଓ ପ୍ରଶାସନିକ ଅଧିକାରୀ ସମସ୍ତେ ସହଯୋଗପୂର୍ଣ୍ଣ ହାତ ବଢ଼ାଇଦେବା ଆବଶ୍ୟକ । ନଚେତ୍ ଯୋଜନା ଫାଇଲ୍‌ରେ ଚାଲିଥିବ; ତା'ର ସୁଫଳ ଜନସାଧାରଣ ପାଇପାରୁ ନ ଥିବେ ।



# ଜୀବନବୀମା ଯୋଜନା

**(ଉପକ୍ରମ, ଜୀବନବୀମା ଯୋଜନାର ଇତିହାସ, ଭାରତରେ ଜୀବନବୀମା, ଉପକାର, କେତେକ ସମସ୍ୟା, ଉପସଂହାର)**

ମଣିଷର ଜୀବନ ପାଣିଫୋଟକା ପରି । କେଉଁ ମୁହୂର୍ତ୍ତରେ କି ପ୍ରକାର ଅସୁବିଧାର ସମ୍ମୁଖୀନ କିଏ ହେବ, ତାହା କେହି କହିପାରିବେ ନାହିଁ । ମଣିଷ ସେଥିପାଇଁ ଭବିଷ୍ୟତ ପାଇଁ କିଛି ନା କିଛି ଯୋଜନା ପ୍ରସ୍ତୁତ କରିଥାଏ । ଏମିତି ଅନେକ ସମୟରେ ଦେଖାଯାଏ, ସମ୍ପୂର୍ଣ୍ଣ ପରିବାର ଜଣେ ବ୍ୟକ୍ତିର ଉପାର୍ଜନ ଉପରେ ନିର୍ଭର କରେ । କୌଣସି କାରଣ– ବଶତଃ ସେହି ବ୍ୟକ୍ତିଟିର ମୃତ୍ୟୁ କିମ୍ବା ରୋଜଗାର କ୍ଷମତା କମିଗଲେ, ସମଗ୍ର ପରିବାରଟି ଭରସାଶୂନ୍ୟ ହୋଇପଡ଼ିଥାନ୍ତି । ଏପରି ପରିସ୍ଥିତିରେ ଅନିର୍ଦ୍ଦିଷ୍ଟ ଭବିଷ୍ୟତକୁ ଆଖିଆଗରେ ରଖି ମଣିଷ କିଛି ଯୋଜନା ପ୍ରସ୍ତୁତ କରିବା ଆବଶ୍ୟକ । ମଣିଷ ଜୀବନର ଅସାରତା ଓ ଅସହାୟତାକୁ ଲକ୍ଷ୍ୟ କରି ଜୀବନବୀମା ଯୋଜନା ପ୍ରସ୍ତୁତ କରାଯାଇଛି । ଯଦି କୌଣସି ଦୁର୍ଘଟଣା କାରଣରୁ କିମ୍ବା ଅନ୍ୟାନ୍ୟ କାରଣରୁ ବୀମାକାରୀ ମୃତ୍ୟୁବରଣ କରନ୍ତି, ତେବେ ତା'ର ଯୋଜନାର ସମସ୍ତ ଅର୍ଥ ବିମାକାରୀଙ୍କ ମନୋନୀତ ବ୍ୟକ୍ତିଙ୍କୁ ସୁଧ ସହିତ ଦ୍ୱିଗୁଣ ଆକାରରେ ମିଳିଥାଏ । ଦୁର୍ଘଟଣା ବା ଅଚାନକ ମୃତ୍ୟୁକ୍ଷେତ୍ରରେ ବୀମାକାରୀଙ୍କ ପାଇଁ ଜୀବନବୀମା ଏକ ଆଶୀର୍ବାଦ ସ୍ୱରୂପ । ଜୀବନର ସୁରକ୍ଷା ଦାୟିତ୍ୱ ଜୀବନବୀମାର । ଏହି କାରଣରୁ ଆଜି ଜୀବନବୀମା ମଫସଲରୁ ସହର ପର୍ଯ୍ୟନ୍ତ ଲୋକପ୍ରିୟ ହୋଇପାରିଛି ଏବଂ କୋଟି କୋଟି ଟଙ୍କା ଏହି ବାବଦରେ ସରକାର ବା ଜୀବନବୀମା କର୍ପୋରେସନ୍ ସଂଗ୍ରହ କରିପାରୁଛନ୍ତି ।

ଜୀବନବୀମା ଯୋଜନା ଭାରତର ନିଜସ୍ୱ ଚିନ୍ତାଧାରା ନୁହେଁ । ପରାଧୀନ ଭାରତରେ ଇଂରେଜମାନେ ଏପରି ଏକ ଯୋଜନା ପ୍ରଣୟନ କରିଥିଲେ । ଆଧୁନିକ ବିଶ୍ୱରେ ଏହାର ପ୍ରଚଳନ ସପ୍ତଦଶ ଶତାବ୍ଦୀର ଦ୍ୱିତୀୟ ଶତକରେ ପ୍ରଥମେ ଇଂଲଣ୍ଡରେ ଆରମ୍ଭ ହୋଇଥିଲା । ପ୍ରାକୃତିକ

ବିପର୍ଯ୍ୟୟରୁ ନିଜକୁ ରକ୍ଷା କରିବା ପାଇଁ ବ୍ରିଟେନବାସୀ ଏହିପରି ଗୋଟିଏ ଯୋଜନାର ରୂପ ପ୍ରସ୍ତୁତ କରିଥିଲେ । ୧୬୧୬ ମସିହାରେ ଇଂଲଣ୍ଡରେ ଏକ ପ୍ରଳୟଙ୍କରୀ ଅଗ୍ନିକାଣ୍ଡ ହୋଇଥିଲା । ଏଥିରେ ବହୁ ଧନଜୀବନ ଓ ସମ୍ପତ୍ତି ନଷ୍ଟ ହୋଇପଡ଼ିଥିଲା । ଏହି ପ୍ରାକୃତିକ ବିପର୍ଯ୍ୟୟରୁ ନିଜ ଗୃହ ଏବଂ ଧନକୁ ରକ୍ଷା ଉଦ୍ଦେଶ୍ୟରେ ସେଠାରେ ବୀମା ଯୋଜନା ଆରମ୍ଭ ହୋଇଥିଲା । ଧୀରେ ଧୀରେ ଏହି ଚିନ୍ତାଧାରା ସମଗ୍ର ଇଉରୋପରେ ବ୍ୟାପିଯିବାରୁ ପରିବାର କଲ୍ୟାଣ ପାଇଁ ମଧ ଏହା କାର୍ଯ୍ୟକାରୀ ହେବାକୁ ଲାଗିଲା । ସେତେବେଳେ ଇଂରେଜମାନେ ବିଶ୍ୱରେ ଯେଉଁ ଦେଶରେ ଶାସନ କରୁଥିଲେ ସେଠାରେ ଏହି ଯୋଜନାକୁ କାର୍ଯ୍ୟକାରୀ କରିବାକୁ ଲାଗିଲେ । ୧୮୭୦ ମସିହାରେ ଭାରତୀୟଙ୍କ ପାଇଁ ମଧ ଏହି ଯୋଜନା କାର୍ଯ୍ୟକାରୀ ହୋଇଥିଲା । ଏହାଦ୍ୱାରା ବୀମା ଅନ୍ତର୍ଭୁକ୍ତ ମଣିଷ ନିଜର ପରିବାର ପାଇଁ ତା'ର ଅବର୍ତ୍ତମାନରେ ମଧ ଗୋଟିଏ ଆଶାବାଡ଼ି ହୋଇ ରହିପାରିଲା ।

ସ୍ୱାଧୀନତା ପୂର୍ବରୁ ଭାରତରେ ଏହି ବୀମା ଯୋଜନା ଗାଁଗହଳିରେ ବିଶେଷ ପରିବ୍ୟାପ୍ତ ହୋଇପାରି ନ ଥିଲା; ଯଦିଓ ୨୩୬ଟି ବୀମାକମ୍ପାନୀ ଏ କ୍ଷେତ୍ରରେ କାର୍ଯ୍ୟରତ ଥିଲା । ଆଜିପରି ସେତେବେଳେ ବୀମାକମ୍ପାନୀ ଜନସ୍ୱାର୍ଥ ପ୍ରତି ଅଧିକ ମନୋନିବେଶ ନ କରି ନିଜର ବ୍ୟକ୍ତିଗତ ସ୍ୱାର୍ଥ ପ୍ରତି ଅଧିକ ମନନଶୀଳ ଥିଲେ । ସ୍ୱାଧୀନତା ଲାଭ ପରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ଏହାକୁ ଅଧିକ ସକ୍ରିୟ ଓ ଜନମୁଖୀ କରିବା ପାଇଁ ପଦକ୍ଷେପ ଗ୍ରହଣ କରିଥିଲେ । ତାଙ୍କର ନିଷ୍ଠାପର ଉଦ୍ୟମଯୋଗୁଁ ୧୯୫୬ ମସିହାରେ ବୀମା ଜାତୀୟକରଣ ହୋଇ କାର୍ଯ୍ୟକାରୀ ହେଲା । ଆରମ୍ଭ ସମୟରେ ୨୫୦ କୋଟି ମୂଳଧନ ଥିବା ଜୀବନବୀମା ଆଜି ବହୁକୋଟି ଟଙ୍କାର ମୂଳଧନରେ ପରିଣତ ହୋଇଛି । ସବୁ ସ୍ତରର ମଣିଷ ଆଜି ଜୀବନବୀମା ଅନ୍ତର୍ଭୁକ୍ତ ହୋଇପାରିଛନ୍ତି । ଗ୍ରାମରେ କୃଷିକାର୍ଯ୍ୟ କରୁଥିବା କୃଷକ ମଧ ନିଜ ପାଇଁ ଜୀବନବୀମା କରୁଛି । ଜୀବନବୀମା ପ୍ରତି ଲୋକମାନଙ୍କର ଆକର୍ଷଣ ଏହାର ଲୋକପ୍ରିୟତାର କାରଣ । ଜୀବନବୀମାର ମୁଖ୍ୟ କାର୍ଯ୍ୟାଳୟ ମୁମ୍ବାଇଠାରେ ଅବସ୍ଥିତ । ଏତଦ୍‌ବ୍ୟତୀତ ଦିଲ୍ଲୀ, ମୁମ୍ବାଇ, କଲିକତା, ଚେନ୍ନାଇ ଓ କାନପୁରଠାରେ ଏହାର ପାଞ୍ଚୋଟି ମଣ୍ଡଳ କାର୍ଯ୍ୟ କରୁଛି । ସମ୍ପ୍ରତି ଭାରତର ବିଭିନ୍ନ ସ୍ଥାନରେ ପ୍ରାୟ ପାଖାପାଖି ୧୨୦୦ ଶାଖା କାର୍ଯ୍ୟାଳୟ ରହିଛି । ଭାରତ ବାହାରେ ମଧ କେତେକ ଶାଖା କାର୍ଯ୍ୟକରି ଆଶାତୀତ ସଫଳତା ଅର୍ଜନ୍ କରିଛି । ଜୀବନବୀମାର ବହୁ ପ୍ରକାର ପଲିସି ରହିଛି । ବ୍ୟକ୍ତିବିଶେଷ ତା'ର ଇଚ୍ଛାନୁଯାୟୀ ଯେକୌଣସି ପଲିସିରେ ନିଜକୁ ଅନ୍ତର୍ଭୁକ୍ତ କରିପାରନ୍ତି । ଏଥିପାଇଁ ତାଙ୍କୁ କିଛି ବୀମାଦେୟ ଧନ ଦେବାକୁ ପଡ଼ିଥାଏ । ଏହା ଏକକାଳୀନ ହୋଇପାରେ କିମ୍ବା ମାସିକ, ତ୍ରୟମାସିକ, ଷଡ଼ମାସିକ ବା ବାର୍ଷିକ ମଧ ହୋଇପାରେ ।

ଜୀବନବୀମାର ଉପକାର ବହୁବିଧ । ବୀମାଦେୟ ଦେବା ସମୟରେ କାର୍ଯ୍ୟାଳୟ ସେହି ଦେୟର ଗୋଟିଏ ଗୋଟିଏ ରସିଦ୍ ବୀମାଧାରୀଙ୍କୁ ପ୍ରଦାନ କରିଥାନ୍ତି । ଯେଉଁ ସମୟ ପାଇଁ ବୀମାଧାରୀ ପଲିସି କରିଥାନ୍ତି, ଯଦି ସେହି ସମୟ ମଧ୍ୟରେ ତାଙ୍କର କୌଣସି ଅସୁବିଧା

ହୋଇ ନଥାଏ, ମୂଳଧନର ଦୁଇଗୁଣ ଓ କିଛି ବୋନସ ତାଙ୍କୁ ମିଳିଥାଏ । ମାତ୍ର ସମୟର ପରିପୂରଣ ପୂର୍ବରୁ ବୀମାଧାରୀ ଯଦି ଦୁର୍ଘଟଣା ବା ରୋଗରେ ପ୍ରାଣ ହରାନ୍ତି, ତେବେ ତାଙ୍କର ମନୋନୀତ ବ୍ୟକ୍ତିଙ୍କୁ ବୀମାର ନିୟମ ଅନୁଯାୟୀ ସୁଧମୂଳ ସହିତ ଆହୁରି ଅଧିକ ଅର୍ଥ ମିଳିଥାଏ । ବର୍ତ୍ତମାନ ଜୀବନବୀମାର ବିଭିନ୍ନ ପଲିସି କାର୍ଯ୍ୟକାରୀ ହେଲାଣି । ଛୋଟ ଛୋଟ ପିଲାଙ୍କର ଶିକ୍ଷା ଓ ଜୀବନ ନିମିତ୍ତ, ରୋଗ ବ୍ୟାଧି ନିମିତ୍ତ ମଧ୍ୟ ପଲିସି ବାହାରି ସାରିଲାଣି । କେତୋଟି ନିର୍ଦ୍ଦିଷ୍ଟ ରୋଗକୁ ଆଖିଆଗରେ ରଖି ଜୀବନବୀମା ନୂତନ ପଲିସିମାନ ପ୍ରଚଳନ କରିଛନ୍ତି । ଯଦି ବୀମାଧାରୀ ସେହି ରୋଗଦ୍ୱାରା ଆକ୍ରାନ୍ତ ହୁଅନ୍ତି, ତା'ର ଚିକିତ୍ସା ନିମିତ୍ତ ସମସ୍ତ ବ୍ୟୟଭାର ଜୀବନବୀମା ଗ୍ରହଣ କରିଥାଏ । ଶିଶୁକନ୍ୟାଙ୍କ ପାଇଁ ବାହାରିଥିବା ନୂତନ ପଲିସି ଅନୁଯାୟୀ ଏକ ନିର୍ଦ୍ଦିଷ୍ଟ ସୀମା ପର୍ଯ୍ୟନ୍ତ ଅର୍ଥ ଦେବାକୁ ପଡ଼ିଥାଏ । ତା'ପରେ ପିଲାଟି ତା'ର ସାରା ଜୀବନ ପାଇଁ ଜୀବନବୀମାରୁ ଚୁକ୍ତି ଅନୁଯାୟୀ ଅର୍ଥ ଗ୍ରହଣ କରିଥାଏ । ଜୀବନବୀମା କରିଥିବା ବ୍ୟକ୍ତିବିଶେଷ ବିଭିନ୍ନ କାର୍ଯ୍ୟ ପାଇଁ ଋଣ ଆଣିପାରନ୍ତି । ଗୃହ ନିର୍ମାଣ, ଜମିକ୍ରୟ ଆଦି କ୍ଷେତ୍ରରେ ଏପ୍ରକାର ଋଣ ପ୍ରଦାନ କରାଯାଇଥାଏ । ବୀମାକାରୀ ତା'ର ସମ୍ପୂର୍ଣ୍ଣ ଦେୟ ଦାଖଲ କରିନଥିଲେ ମଧ୍ୟ, ତା'ର ଅଚାନକ ମୃତ୍ୟୁରେ ବୀମାକାରୀଙ୍କ ମନୋନୀତ ବ୍ୟକ୍ତି ସମସ୍ତ ଧାର୍ଯ୍ୟଟଙ୍କା ପାଇବାକୁ ହକ୍‌ଦାର ହୋଇଥାନ୍ତି । ଏହାବ୍ୟତୀତ ଜୀବନବୀମା ମଣିଷର ସଞ୍ଚୟ ମନୋବୃତ୍ତିକୁ ଉତ୍ସାହିତ କରିଥାଏ । ସଞ୍ଚୟବିମୁଖ ମଣିଷ ଜୀବନବୀମା କଲେ ତା'ର ଦେୟ ଯଥାସମୟରେ ଦେବାକୁ ବାଧ୍ୟ ହୋଇଥାଏ । ଅଧିକ ଆୟ କରୁଥିବା ବ୍ୟକ୍ତି ଜୀବନବୀମା କରିଥିଲେ ଦେୟଅର୍ଥର ୨୦% ଆୟକରରୁ ମୁକ୍ତି ପାଇଥାଏ । ପିଲାମାନଙ୍କର ଉଚ୍ଚ ଶିକ୍ଷା ପାଇଁ ମଧ୍ୟ ଜୀବନବୀମା କେତେକ କ୍ଷେତ୍ରରେ ସାହାଯ୍ୟ କରିଥାଏ । ଏହିସବୁ ଦୃଷ୍ଟିରୁ ପ୍ରତ୍ୟେକ ମଣିଷ ପାଇଁ ଜୀବନବୀମା ଏକ ବେଶ୍ ଉପଯୋଗୀ ଯୋଜନା ।

ଏହା ସତ୍ତ୍ୱେ ଜୀବନବୀମାରେ କେତେକ ସମସ୍ୟା ରହିଛି । ଏଥିରେ ଯେଉଁ ଅର୍ଥ ସଞ୍ଚୟ କରାଯାଏ, ତାହା ଅନ୍ୟାନ୍ୟ ଆର୍ଥିକ ସଂସ୍ଥା ତୁଳନାରେ ବହୁ କମ୍ ସୁଧ ପାଇଥାନ୍ତି । ତେଣୁ ବ୍ୟବସାୟ ଉଦ୍ଦେଶ୍ୟରେ ଜୀବନବୀମାରେ ଟଙ୍କା ଉପଯୋଗ କରିବା ବୋକାମୀ ବ୍ୟତୀତ ଅନ୍ୟ କିଛି ନୁହେଁ । ଦ୍ୱିତୀୟ ସମସ୍ୟା କିସ୍ତିଦେବା କ୍ଷେତ୍ରରେ ଅସୁବିଧା ହେଲେ ବୀମାକାରୀ କିସ୍ତି ବାବଦରେ ଦେଇଥିବା ସମସ୍ତ ଅର୍ଥ ଜୀବନବୀମାରୁ ଫେରିପାଇ ନ ଥାଏ । କେତେକ ଦୁର୍ଘଟଣା କ୍ଷେତ୍ରରେ ବୀମାକାରୀଙ୍କ ମନୋନୀତ ବ୍ୟକ୍ତିଙ୍କ ଅର୍ଥ ଫେରାଇବା ପାଇଁ ବୀମା କର୍ମଚାରୀମାନେ ବହୁ ଅସୁବିଧାର ସମ୍ମୁଖୀନ କରାଇଥାନ୍ତି । ଯେଉଁଥିପାଇଁ ବେଳେବେଳେ ଜୀବନବୀମା ପ୍ରତି ଲୋକମାନଙ୍କ ମନରେ ଅସନ୍ତୋଷ ସୃଷ୍ଟି ହୋଇଥାଏ । ଅନେକ ସମୟରେ ବୀମା କାର୍ଯ୍ୟାଳୟରେ ମଧ୍ୟ ପଲିସିଧାରୀ କେତେକ ଅସୁବିଧାର ସମ୍ମୁଖୀନ ହୋଇଥାନ୍ତି । ସମୟେ ସମୟେ ବୀମାର କାର୍ଯ୍ୟକାଳ ପୂରିଗଲା ପରେ ମଧ୍ୟ ସଞ୍ଚିତ ଅର୍ଥ ପାଇବାରେ ବୀମାକାରୀଙ୍କୁ ହଇରାଣ ହେବାକୁ ପଡ଼ିଥାଏ । ଏହାଦ୍ୱାରା ପଲିସିଧାରୀର ଆତ୍ମବିଶ୍ୱାସ ଜୀବନବୀମା ଉପରୁ କମି କମି ଆସିଥାଏ ।

ଜୀବନବୀମା କେତେକ ଅସୁବିଧା ସତ୍ତ୍ୱେ ନିଶ୍ଚିତଭାବରେ ଏକ ଉନ୍ନତ ଯୋଜନା । ସତର୍କତାର ସହିତ ପଦକ୍ଷେପ ଗ୍ରହଣ କଲେ, ବୀମାକାରୀ କୌଣସି ଅସୁବିଧାର ସମ୍ମୁଖୀନ ହୋଇ ନ ଥାନ୍ତି । ଜୀବନର ସୁରକ୍ଷା ଦାୟିତ୍ୱ ଏହା ସମ୍ପୂର୍ଣ୍ଣ ରୂପେ ଗ୍ରହଣ କରୁଥିବାରୁ, ଏହା ଏକ ରୋଜଗାରୀ ମଣିଷ ପରି ସାହାଯ୍ୟ କରିଥାଏ । ଆଜି ଜୀବନବୀମା ନିରାଶ୍ରୟର ଆଶ୍ରୟ ଓ ଅସହାୟର ଏକ ସହାୟ ପରି କାର୍ଯ୍ୟ କରୁଛି । ତେଣୁ ସରକାରଙ୍କର ଏହି ବୀମା ଯୋଜନା ନିଶ୍ଚିତ ଭାବରେ ଯେ ଏକ ଉତ୍କୃଷ୍ଟ ଯୋଜନା ଅସ୍ୱୀକାର କରାଯାଇ ନ ପାରେ ।

●

## ଭାରତରେ ବିଂଶସୂତ୍ରୀ କାର୍ଯ୍ୟକ୍ରମ ଯୋଜନା

**(ଉପକ୍ରମ, କାର୍ଯ୍ୟକ୍ରମର ପୃଷ୍ଠଭୂମି, ବିଂଶସୂତ୍ରୀ କାର୍ଯ୍ୟକ୍ରମର ରୂପରେଖ, ଉଦ୍ଦେଶ୍ୟ, ଉପସଂହାର)**

ପ୍ରତ୍ୟେକ ବ୍ୟକ୍ତି ନିଜ ରୁଚି ଅନୁଯାୟୀ କାର୍ଯ୍ୟ କରିବାକୁ ପସନ୍ଦ କରିଥାଏ । ତା'ର ରୁଚି ସମାଜ ଉପଯୋଗୀ ନ ହେଲେ ସମାଜର କ୍ଷତି ସାଧନ କରେ; ମାତ୍ର ସମାଜ ଅନୁକୂଳ ହେଲେ ଦେଶର ମଙ୍ଗଳ ସାଧିତ ହୋଇଥାଏ । ସ୍ୱାଧୀନତା ପୂର୍ବରୁ ଏ ଦେଶକୁ ଯେଉଁ ବିଦେଶୀ ଶାସକ ଶାସନ କରୁଥିଲେ, ଭାରତବାସୀଙ୍କ ସାମଗ୍ରିକ ମଙ୍ଗଳ ସାଧନ କରିବା ସେମାନଙ୍କର ଉଦ୍ଦେଶ୍ୟ ନ ଥିଲା । ନିଜର ଏବଂ ନିଜ ଦେଶର ଆର୍ଥନୀତିକ ସ୍ଥିତିକୁ ସୁଦୃଢ଼ କରିବା ଥିଲା ତାଙ୍କର ଲକ୍ଷ୍ୟ । ସେଥିପାଇଁ ବିଶ୍ୱଯୁଦ୍ଧରେ ଭାରତର କୌଣସି ଭୂମିକା ନ ଥିଲେ ମଧ୍ୟ ଶାସକମାନଙ୍କ ସନ୍ତୁଷ୍ଟି ନିମିତ୍ତ ଭାରତର ଧନ ଓ ଜନ ସେଥିରେ ଅଂଶ ଗ୍ରହଣ କରି ଅଶେଷ କ୍ଷତିର ସମ୍ମୁଖୀନ ହେଲେ । ସ୍ୱାଧୀନତା ସମୟରେ ଭାରତକୁ ଖଣ୍ଡବିଖଣ୍ଡିତ କରି ଇଂରେଜମାନେ ନିଜର ହୀନ ସ୍ୱାର୍ଥ ପରିପୂରଣ କଲେ । ସ୍ୱାଧୀନତା ଲାଭ ସମୟରେ ଭାରତର ଆର୍ଥନୀତିକ ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇପଡ଼ିଥିଲା । ଗୋଟିଏ ଦେଶର ଅର୍ଥନୀତି ସେ ଦେଶର ମେରୁଦଣ୍ଡ ସଦୃଶ । ଆର୍ଥିକ ବିପର୍ଯ୍ୟୟ ଦେଶର ପ୍ରଗତିର ପରିପନ୍ଥୀ । ତେଣୁ ସ୍ୱାଧୀନତା ପରେ ଏ ଦେଶର ଜନନାୟକଗଣ ଦେଶର ଅର୍ଥନୀତିକୁ ସୁଧାରିବା ପାଇଁ ବିଭିନ୍ନ ଯୋଜନା ପ୍ରଣୟନ କଲେ । ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କ ସମୟରେ ଆରମ୍ଭ ହେଲା ଦେଶର ପଞ୍ଚବାର୍ଷିକ ଯୋଜନା । ଏହାର ଲକ୍ଷ୍ୟ ଥିଲା ଭାରତ ତଥା ଏହାର ଜନସାଧାରଣଙ୍କ ଆର୍ଥିକମାନ ଦଣ୍ଡକୁ ସୁଦୃଢ଼ କରିବା । ଏହି ଯୋଜନା ବର୍ତ୍ତମାନ ସୁଦ୍ଧା ଚାଲୁରହିଛି ଏବଂ ସମ୍ପ୍ରତି ଦ୍ୱାଦଶ ପଞ୍ଚବାର୍ଷିକ ଯୋଜନାଦ୍ୱାରା ଦେଶର ଆର୍ଥନୀତିକ ତ୍ୱରାନ୍ୱିତ କରିବାଲାଗି ଚେଷ୍ଟା ଚାଲିଛି । ଲାଲବାହାଦୁର ଶାସ୍ତ୍ରୀଙ୍କ ପ୍ରଧାନମନ୍ତ୍ରିତ୍ୱ ସମୟରେ ଦେଶକୁ ପ୍ରଗତି ପଥରେ ଗତିକରିବା

ପାଇଁ କେତେକ ପଦକ୍ଷେପ ଗ୍ରହଣ କରାଯାଇଥିଲା । ବିଶେଷଭାବେ କୃଷି ଓ କୃଷକର ଉନ୍ନତି ପାଇଁ ସେ ଅଧିକ ଦୃଷ୍ଟି ପ୍ରଦାନ କରିଥିଲେ । ଇନ୍ଦିରାଗାନ୍ଧି ପ୍ରଧାନମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରିବା ପରେ ଦେଶର ବିକାଶ ପାଇଁ କେତେକ ପଦକ୍ଷେପ ଗ୍ରହଣ କରିଥିଲେ । ବିଂଶସୂତ୍ରୀ କାର୍ଯ୍ୟକ୍ରମ ଯୋଜନା ତାଙ୍କର ଏହି ବିକାଶମୂଳକ କାର୍ଯ୍ୟକ୍ରମର ଏକ ଅଂଶବିଶେଷ ।

ଦେଶର ଆଭ୍ୟନ୍ତରୀଣ ସଙ୍କଟ ପାଇଁ ଶ୍ରୀମତୀ ଇନ୍ଦିରାଗାନ୍ଧି ୧୯୭୫ ମସିହା ଜୁନ୍ ୨୫ ତାରିଖରେ ଜରୁରୀକାଳୀନ ପରିସ୍ଥିତି ଜାରି କରିଥିଲେ । ଲୋକମାନଙ୍କର ମୌଳିକ ଅଧିକାରକୁ ସଙ୍କୁଚିତ କରି ଦିଆଗଲା । ଜରୁରୀକାଳୀନ ପରିସ୍ଥିତି ସମୟରେ ଦେଶରେ ପ୍ରଗତିକୁ ଅଧିକ ପ୍ରଗତିଶୀଳ କରିବା ଉଦ୍ଦେଶ୍ୟରେ ଜୁନ୍ ୨୯ ତାରିଖ ଦିନ ଇନ୍ଦିରାଗାନ୍ଧି କୋଡ଼ିଏ ଦଫା ପ୍ରଗତିମୂଳକ କାର୍ଯ୍ୟକ୍ରମ ଘୋଷଣା କଲେ । ମୁଖ୍ୟତଃ ଦେଶର ଅସଂଖ୍ୟ ଖଟିଖିଆ, ଦଳିତ ଓ ଦାରିଦ୍ର୍ୟ ସୀମାରେଖା ତଳେ ବସବାସ କରୁଥିବା ବ୍ୟକ୍ତିମାନଙ୍କର ଉତ୍‌ଥାନ ଥିଲା ଏହି କାର୍ଯ୍ୟକ୍ରମ ବା ଯୋଜନାର ଲକ୍ଷ୍ୟ । ଶ୍ରୀମତୀ ଗାନ୍ଧିଙ୍କ ଏହି କାର୍ଯ୍ୟକ୍ରମ ଅନ୍ତରାଳରେ ଯେ କୌଣସି ରାଜନୀତିକ ଉଦ୍ଦେଶ୍ୟ ପ୍ରଚ୍ଛନ୍ନ ଥାଉନା କାହିଁକି, ଜନସାଧାରଣଙ୍କ ବିକାଶ ଉଦ୍ଦେଶ୍ୟରେ ଏହା ଯେ ପ୍ରଣୟନ କରାଯାଇଥିଲା, ତାହା ଅସ୍ୱୀକାର କରାଯାଇନ ପାରେ । ପୁଣି ଜରୁରୀକାଳୀନ ପରିସ୍ଥିତି ସମୟରେ ଯେକୌଣସି କାର୍ଯ୍ୟର ସଫଳ ରୂପାୟନ କରିବା ସହଜସାଧ୍ୟ ହୋଇଥାଏ । ଅବଶ୍ୟ ସେତେବେଳେ ବିରୋଧୀ ଦଳ ଓ ଅନ୍ୟାନ୍ୟ ରାଜନୀତିକ ନେତାଗଣ ଏହାକୁ ଇନ୍ଦିରାଗାନ୍ଧିଙ୍କ ରାଜନୀତିକ ଚାଲ୍ ବୋଲି ସମାଲୋଚନା କରିଥିଲେ । ଏହାସତ୍ତ୍ୱେ ଏହି ଯୋଜନାର ସୁଦିଗଗୁଡ଼ିକୁ ଅସ୍ୱୀକାର କରାଯାଇ ନ ପାରେ । ୧୯୭୭ ମସିହା ମାର୍ଚ୍ଚ ୨୧ ତାରିଖରେ ଜରୁରୀକାଳୀନ ପରିସ୍ଥିତିକୁ ଉଠାଇ ନିଆଯାଇଥିଲା ଓ ସେହି ବର୍ଷ ଦେଶରେ ନିର୍ବାଚନ ହୋଇଥିଲା । ଏହି ନିର୍ବାଚନରେ ଶ୍ରୀମତୀ ଗାନ୍ଧି ଓ ତାଙ୍କ କଂଗ୍ରେସ ଦଳର ଶୋଚନୀୟ ପରାଜୟ ଘଟିଲା । ଜନତା ଦଳ ଦ୍ୱାରା କେନ୍ଦ୍ରରେ ନୂଆ ସରକାର ଗଠନ କରାଯିବାପରେ ଇନ୍ଦିରାଗାନ୍ଧିଙ୍କ ଦ୍ୱାରା ପ୍ରଣୟନ କରାଯାଇଥିବା ବିଂଶସୂତ୍ରୀ କାର୍ଯ୍ୟକ୍ରମର କୌଣସି ମୂଲ୍ୟ ରହିଲା ନାହିଁ । ଆଭ୍ୟନ୍ତରୀଣ କ୍ଷମତା କନ୍ଦଳ ଯୋଗୁଁ ଜନତା ସରକାର ଭାଙ୍ଗିଯିବାରୁ ଶ୍ରୀମତୀ ଗାନ୍ଧି ପୁନର୍ବାର ନିର୍ବାଚନରେ ଜୟଲାଭ କରି ପ୍ରଧାନମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲେ । ଅସମାପ୍ତ ରହିଥିବା ବିଂଶସୂତ୍ରୀ କାର୍ଯ୍ୟକ୍ରମକୁ ପୂରଣ କରିବା ଉଦ୍ଦେଶ୍ୟରେ ୧୯୮୨ ମସିହା ଜାନୁଆରୀ ୧୪ ତାରିଖରେ ଏଥିରେ କେତେକ ସଂଶୋଧନ ଆଣିଥିଲେ ।

ନୂତନ ବିଂଶସୂତ୍ରୀ କାର୍ଯ୍ୟକ୍ରମରେ ଶିକ୍ଷା, ଶିଳ୍ପ, କୃଷି, ବାଣିଜ୍ୟ ଆଦି କେତେକ ବିଶେଷ ବିଷୟ ଉପରେ ଗୁରୁତ୍ୱ ଦିଆଯାଇଥିଲା । ୧୯୮୨ ମସିହା ପରଠାରୁ ଏହି କାର୍ଯ୍ୟକ୍ରମ ଉପରେ ଏଯାବତ୍ ଗୁରୁତ୍ୱ ପ୍ରଦାନ କରାହୋଇ ଆସୁଛି । ଅବଶ୍ୟ ୧୯୭୫ ମସିହା ବିଂଶସୂତ୍ରୀ କାର୍ଯ୍ୟକ୍ରମ ଏବଂ ୧୯୮୨ ମସିହା ବିଂଶସୂତ୍ରୀ କାର୍ଯ୍ୟକ୍ରମ ମଧ୍ୟରେ କେତେକ ପାର୍ଥକ୍ୟ ରହିଛି । ଇନ୍ଦିରାଗାନ୍ଧି ଦ୍ୱିତୀୟଥର ଏହି କାର୍ଯ୍ୟକ୍ରମ ସମ୍ପର୍କରେ ଘୋଷଣା କରିବା ପୂର୍ବକ ଏଥିରେ କେତେକ ସଂଶୋଧନ ଆଣିଥିଲେ । ସେ ଦ୍ୱିତୀୟ ୧୦ ଦଫାରେ ସମୟ ଏବଂ ଜନସାଧାରଣଙ୍କ ଅବସ୍ଥାକୁ ଆଖିରେ ରଖି

ପରିବର୍ତ୍ତନ କରିଥିଲେ, ଯାହା ସେ ସମୟ ପାଇଁ ଅଧିକ ଜରୁରୀ ବୋଲି ମନେ ହୋଇଥିଲା । ସେହି ବିଂଶସୂତ୍ରୀ କାର୍ଯ୍ୟକ୍ରମଗୁଡ଼ିକ ହେଉଛି—

(୧) ଜଳସେଚନର ସୀମା ବୃଦ୍ଧି ଦ୍ୱାରା ଅଧିକ ଫସଲ ଉତ୍ପାଦନ ନିମିତ୍ତ ଯୋଜନା । ଯେଉଁଠାରେ ଜଳସେଚନ ସୁବିଧା ନାହିଁ, ସେଠାରେ ଅନ୍ୟାନ୍ୟ କାରିଗରୀ ଉପକରଣ ଦ୍ୱାରା ଜଳସେଚନର ସୁବିଧା ଲାଗି କାର୍ଯ୍ୟକ୍ରମ ପ୍ରସ୍ତୁତି । (୨) ଜମିଜମାର ପ୍ରକୃତ ମାଲିକାନା ପାଇଁ ରେକର୍ଡ଼ ବ୍ୟବସ୍ଥା, କୃଷି ଜମିର ସର୍ବୋଚ୍ଚ ସୀମାନିର୍ଦ୍ଧାରଣ, ବଳକା ଜମି ଜମିହୀନଙ୍କ ମଧ୍ୟରେ ବଣ୍ଟନ ବ୍ୟବସ୍ଥା । (୩) ଡାଲି ଓ ତୈଳବୀଜ ଜାତୀୟ ଫସଲ ଉପରେ ଅଧିକ ଗୁରୁତ୍ୱ ଆରୋପ । (୪) ଗୋତି ଶ୍ରମିକ ପ୍ରଥା ଉଚ୍ଛେଦ ଓ ସେମାନଙ୍କ ପାଇଁ ଥଇଥାନର ବ୍ୟବସ୍ଥା । (୫) ସମନ୍ୱିତ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟକ୍ରମ ଦ୍ୱାରା ନିଯୁକ୍ତି କାର୍ଯ୍ୟକ୍ରମର ପରିସର ବୃଦ୍ଧି । (୬) ଶ୍ରମିକମାନଙ୍କର ମଜୁରି ନିର୍ଦ୍ଧାରଣ । (୭) ଗ୍ରାମାଞ୍ଚଳମାନଙ୍କରେ ପାନୀୟ ଜଳ ଯୋଗାଣ ବ୍ୟବସ୍ଥା ଦ୍ୱାରା ପାନୀୟ ଜଳର ଅଭାବ ଦୂରୀକରଣ । (୮) ଭୂମିହୀନଙ୍କ ପାଇଁ ଘର ତିଆରି ନିମିତ୍ତ ଭୂମି ଏବଂ ଆର୍ଥିକ ସାହାଯ୍ୟ ପ୍ରଦାନ । (୯) ଆଦିବାସୀ ହରିଜନ ତଥା ଆର୍ଥିକ ଅନଗ୍ରସର ବ୍ୟକ୍ତିମାନଙ୍କର ଉନ୍ନତି ନିମିତ୍ତ ପଦକ୍ଷେପ ଗ୍ରହଣ । (୧୦) ଜମିର ମୂଲ୍ୟ ନିର୍ଦ୍ଧାରଣ ଏବଂ ଆର୍ଥିକ ଦୁର୍ବଳ ଶ୍ରେଣୀର ପାରିବେଶିକ ଉନ୍ନତି । (୧୧) ଜଙ୍ଗଲ ସୃଷ୍ଟି ପାଇଁ ବୃକ୍ଷରୋପଣ ଓ ଜୈବିକ ବାଷ୍ପ ଉପରେ ଗୁରୁତ୍ୱ । (୧୨) ସାର୍ବଜନୀନ ପ୍ରାଥମିକ ଶିକ୍ଷା ପ୍ରତି ଗୁରୁତ୍ୱ ଏବଂ ସ୍ୱାସ୍ଥ୍ୟର ଉନ୍ନତି ସହିତ ଯକ୍ଷ୍ମା, କୁଷ୍ଠ, ଦୃଷ୍ଟିହୀନତା ଲୋପ ନିମିତ୍ତ କାର୍ଯ୍ୟକ୍ରମ ପ୍ରସ୍ତୁତି । (୧୩) ଗ୍ରାମାଞ୍ଚଳରେ ବିଦ୍ୟୁତ୍‌କରଣ ଯୋଜନା । (୧୪) ପରିବାର ନିୟନ୍ତ୍ରଣ ଉପରେ ଗୁରୁତ୍ୱ ଆରୋପ କରି ଏହାକୁ ଜନଆନ୍ଦୋଳନରେ ପରିଣତ ପାଇଁ ରୂପରେଖ ପ୍ରସ୍ତୁତି । (୧୫) ସାର୍ବଜନୀନ ମୌଳିକ ଶିକ୍ଷାର ପ୍ରସାର ପାଇଁ ୬-୧୪ ବର୍ଷ ମଧ୍ୟରେ ସମସ୍ତ ପିଲାଙ୍କୁ ଶିକ୍ଷାଦାନ ବ୍ୟବସ୍ଥା ଏବଂ ପ୍ରୌଢ଼ ଶିକ୍ଷା ପାଇଁ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କୁ ପ୍ରୋତ୍ସାହନ । (୧୬) ଉଦାର ଶିଳ୍ପନୀତି, କୁଟୀର ଶିଳ୍ପର ବିକାଶ ଓ ଯୋଜନାଗୁଡ଼ିକର ପରିପୂରଣ ନିମିତ୍ତ ପୁଞ୍ଜି ଯୋଗାଣ । (୧୭) ଚୋରାବେପାରୀ, ଟିକସଫାଙ୍କି ଏବଂ କଳାବଜାରୀଙ୍କ ପ୍ରତି କଠୋର କାର୍ଯ୍ୟାନୁଷ୍ଠାନ । (୧୮) ମହିଳା ଓ ଶିଶୁ କଲ୍ୟାଣ ପାଇଁ କାର୍ଯ୍ୟକ୍ରମ । ଗର୍ଭବତୀ ଓ ଶିଶୁଙ୍କ ନିମିତ୍ତ ପୁଷ୍ଟିକର ଖାଦ୍ୟଯୋଗାଣ । (୧୯) କଣ୍ଟ୍ରୋଲ ବା ସୁଲଭ ଦୋକାନ ମାଧ୍ୟମରେ ବଣ୍ଟନ ବ୍ୟବସ୍ଥା, ପାଠ୍ୟପୁସ୍ତକ ଓ ଖାଉଟି ଜିନିଷ ଯୋଗାଣ । (୨୦) ରାଷ୍ଟ୍ରାୟତ୍ତ ଉଦ୍ୟୋଗଗୁଡ଼ିକର ଦକ୍ଷତା ଓ ଉନ୍ନତି ତଥା ଉତ୍ପାଦନ ବୃଦ୍ଧି ନିମିତ୍ତ କାର୍ଯ୍ୟକ୍ରମ ପ୍ରସ୍ତୁତି ।

ଏହି ବିଂଶସୂତ୍ରୀ କାର୍ଯ୍ୟକ୍ରମର ଉଦ୍ଦେଶ୍ୟ ଅତୀବ ମହତ୍ତ୍ୱପୂର୍ଣ୍ଣ । ଆମର ବିଭିନ୍ନ ପଞ୍ଚବାର୍ଷିକ ଯୋଜନାରେ ମଧ୍ୟ ଏଥିରୁ କେତେକ ବିଶେଷ କାର୍ଯ୍ୟ ଉପରେ ଗୁରୁତ୍ୱ ପ୍ରଦାନ କରାଯାଇଥିବା ଲକ୍ଷ୍ୟ କରାଯାଇପାରେ । ସାମଗ୍ରିକ ଭାବରେ ସମାଜର ବିକାଶ ଓ ସମାଜର ନିମ୍ନସ୍ତରରେ ବା ଦାରିଦ୍ର୍ୟ ସୀମାରେଖା ତଳେ ବସବାସ କରୁଥିବା ବ୍ୟକ୍ତିମାନଙ୍କର ଆର୍ଥିକ ବିକାଶ ଏହାର ମୁଖ୍ୟ ଉଦ୍ଦେଶ୍ୟ । ଏତଦ୍‌ବ୍ୟତୀତ ବିଭିନ୍ନ କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିବା ଓ ତା'ର ସଫଳ ରୂପାୟନ ନିମିତ୍ତ କାର୍ଯ୍ୟକ୍ରମ ପ୍ରସ୍ତୁତ କରିବା ଏହାର ଅନ୍ୟତମ ଲକ୍ଷ୍ୟ ।

ଇନ୍ଦିରାଗାନ୍ଧିଙ୍କ ବିଂଶସୂତ୍ରୀ କାର୍ଯ୍ୟକ୍ରମ ବହୁ ସମାଲୋଚନାର ଶରବ୍ୟ ହୋଇଛି । ବିଭିନ୍ନ ରାଜନୈତିକ ଦଳମାନଙ୍କ ଦ୍ୱାରା ଜନସାଧାରଣଙ୍କ ହିତ ପାଇଁ ଏହି କାର୍ଯ୍ୟକ୍ରମରେ ଯେ ବହୁ ଗୁରୁତ୍ୱପୂର୍ଣ୍ଣ ବ୍ୟବସ୍ଥା ରହିଛି, ଅସ୍ୱୀକାର କରାଯାଇ ନ ପାରେ । ଉଦ୍ଦେଶ୍ୟ ଯାହା ଥାଉନା କାହିଁକି, କାର୍ଯ୍ୟକ୍ରମର ଗୁରୁତ୍ୱପୂର୍ଣ୍ଣ ଦିଗଗୁଡ଼ିକ ସଦାବେଳେ ଆଲୋଚନା ପରିସରଭୁକ୍ତ ହେବା ଆବଶ୍ୟକ । ବିଶେଷକରି ସମାଜର ନିମ୍ନସ୍ତରରେ ବସବାସ କରୁଥିବା ବ୍ୟକ୍ତି ତଥା ଗ୍ରାମାଞ୍ଚଳରେ ରହୁଥିବା ଜନସାଧାରଣଙ୍କ ପାଇଁ ଏହି କାର୍ଯ୍ୟକ୍ରମରେ ବହୁ ଉଲ୍ଲେଖଯୋଗ୍ୟ ପଦକ୍ଷେପ ରହିଛି । ଏହାର ସୁପରିଚାଳନା ଏବଂ କାର୍ଯ୍ୟକ୍ରମର ରୂପାୟନ ନିମିତ୍ତ ସବୁ ସ୍ତରରେ ଆନ୍ତରିକ ଉଦ୍ୟମ ଜାରି ରହିଲେ ଆମର ସାମାଜିକ ବିକାଶ ନିଶ୍ଚିତ ଭାବରେ ତ୍ୱରାନ୍ୱିତ ହୋଇପାରିବ ।

●

# ଓଡ଼ିଶାର ଅରଣ୍ୟସମ୍ପଦ

**(ଉପକ୍ରମ, ବିଭିନ୍ନ ଅରଣ୍ୟ ସମ୍ପଦର ପରିଚୟ, ଏହାର ଆବଶ୍ୟକତା, ଅରଣ୍ୟ ସମ୍ପଦ ରକ୍ଷା ଦିଗରେ ସରକାରୀ ଉଦ୍ୟମ, ଆର୍ଥିକ ସମୃଦ୍ଧି ବିକାଶରେ ଏହାର ଭୂମିକା, ଉପସଂହାର)**

ଓଡ଼ିଶାର ପ୍ରାକୃତିକ ସୌନ୍ଦର୍ଯ୍ୟର ପଟାନ୍ତର ନାହିଁ । ଅରଣ୍ୟ ପ୍ରକୃତିର ଏକ ବିଶେଷ ଅବଦାନ । ଅତୀତରେ ଓଡ଼ିଶାର ସମୁଦାୟ ୪୫ ଭାଗ ଅରଣ୍ୟ ଆଚ୍ଛାଦିତ ରହିଥିଲା । ଜଙ୍ଗଲ ଧ୍ୱଂସ ଯୋଗୁଁ ଆଜି ଏହା ମାତ୍ର ୨୨ ଭାଗରେ ପହଞ୍ଚିଛି । ଦେଶର ପ୍ରଗତି ଓ ପ୍ରାକୃତିକ ସୌନ୍ଦର୍ଯ୍ୟ ଏହାଦ୍ୱାରା ବହୁପରିମାଣରେ ବାଧାପ୍ରାପ୍ତ ହେଉଛି । ବିଭିନ୍ନ ପ୍ରାକୃତିକ ବିପର୍ଯ୍ୟୟ ପାଇଁ ଏହା ମଧ୍ୟ ଅନ୍ୟତମ କାରଣ ରୂପେ ପରିଗଣିତ । ପରିବେଶ ପ୍ରଦୂଷଣ ରୋକିବା ଦିଗରେ ଅରଣ୍ୟର ଭୂମିକା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଏହା ବିଷାକ୍ତ ଅଙ୍ଗାରକାମ୍ଳ ଗ୍ରହଣ କରି ଲୋକମାନଙ୍କ ପାଇଁ ଅମ୍ଳଜାନ ଛାଡ଼ିଥାଏ । ମୃତ୍ତିକାକ୍ଷୟ ରୋକିବାରେ ଏବଂ ଯଥାସମୟରେ ବର୍ଷା କରାଇବାରେ ଅରଣ୍ୟର ପ୍ରାକୃତିକ ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ପରିବେଶବିତ୍‌ଗଣ ଜଙ୍ଗଲର ଏହି ଅବକ୍ଷୟ ଯୋଗୁଁ ଉଦ୍‌ବେଗ ପ୍ରକାଶ କଲେଣି । ଅରଣ୍ୟ ମଣିଷ ସମାଜକୁ ବହୁ ଅତ୍ୟାବଶ୍ୟକ ପଦାର୍ଥ ଯୋଗାଇ ଦେଇଥାଏ । ତା'ର ବିଭିନ୍ନ ଅଭାବ ପରିପୂଣରେ ସହାୟତା କରିଥାଏ । ଓଡ଼ିଶାରେ ଅର୍ଥନୀତି କ୍ଷେତ୍ରରେ ଏହାର ଅରଣ୍ୟ ସମ୍ପଦ ଏକ ଆଶୀର୍ବାଦ ସ୍ୱରୂପ । ଏହାର ଉଚିତ ରକ୍ଷଣାବେକ୍ଷଣ କରାଯାଇପାରିଲେ, ଆମର ଆର୍ଥିକ ପ୍ରଗତିକୁ ଯେ ଏହା ତ୍ୱରାନ୍ୱିତ କରିପାରିବ, ଏଥିରେ ସନ୍ଦେହ ନାହିଁ ।

ଓଡ଼ିଶାର ମୁଖ୍ୟ ପ୍ରାକୃତିକ ସମ୍ପଦ ହେଉଛି ଅରଣ୍ୟ । ଏହି ଅରଣ୍ୟ ମଧ୍ୟରେ ପରିପୂର୍ଣ୍ଣ ବହୁ ଅରଣ୍ୟ ସମ୍ପଦ । ମଣିଷର ଦୈନନ୍ଦିନ ଜୀବନରେ ଏହାର ଉପଯୋଗିତାର ତୁଳନା ନାହିଁ । ଓଡ଼ିଶାର ପ୍ରାୟ ୪୬ ହଜାର ବର୍ଗ କିଲୋମିଟର ବ୍ୟାପୀ ଅରଣ୍ୟ ପରିପୂର୍ଣ୍ଣ । ଏହା

ମୁଖ୍ୟତଃ ତିନିଭାଗରେ ବିଭକ୍ତ । ଯଥା–ସଂରକ୍ଷିତ, ସୁରକ୍ଷିତ ଓ ଶ୍ରେଣୀବିଭାଗ ବହିର୍ଭୂତ । ସଂରକ୍ଷିତ ଅରଣ୍ୟ ସରକାରୀ କର୍ତ୍ତୃତ୍ୱାଧୀନ ଥିବା ସମୟରେ ସୁରକ୍ଷିତ ଅରଣ୍ୟ ବିଭାଗୀୟ କର୍ମଚାରୀଙ୍କ ଦ୍ୱାରା ପରିଚାଳିତ ହୋଇଥାଏ ଏବଂ ଏକ ନିର୍ଦ୍ଦିଷ୍ଟ ସମୟ ପାଇଁ ପଟ୍ଟାଧାରୀ ବ୍ୟକ୍ତି ଏହାକୁ ବ୍ୟବହାର କରିପାରନ୍ତି । ମଫସଲ ଅଞ୍ଚଳରେ ପରିଦୃଷ୍ଟ ଛୋଟଛୋଟ ବଣ ଓ ତୋଟାମାନ ଶ୍ରେଣୀ ବିଭାଗ ବହିର୍ଭୂତ ଅରଣ୍ୟ । ଏହି ଅରଣ୍ୟରୁ ବହୁପ୍ରକାର ମୂଲ୍ୟବାନ ଅରଣ୍ୟ ସମ୍ପଦ ମିଳିଥାଏ । ଶାଳ, ପିଆଶାଳ, କୁରୁମ, କଷି, ଅଶନ, ଶିଶୁ, ସୁନ୍ଦରୀ, ଗମ୍ଭାରୀ ପ୍ରଭୃତି ବହୁପ୍ରକାର ମୂଲ୍ୟବାନ କାଠ ଦ୍ୱାରା ଗୃହନିର୍ମାଣ, ଆସବାବପତ୍ର ଆଦି ତିଆରି ହୋଇଥାଏ । ଜଙ୍ଗଲରୁ ମିଳୁଥିବା କାଠ ଜାଳେଣିରୂପେ ବ୍ୟବହୃତ ହୋଇଥାଏ । ରେଳଧାରଣା ପଡ଼ିବା ପାଇଁ ମଧ ବହୁପରିମାଣ କାଠର ଆବଶ୍ୟକତା ପଡ଼ିଥାଏ । ଏହା ଜଙ୍ଗଲରୁ ଆସିଥାଏ । ଜଙ୍ଗଲରୁ ବେତ ଓ ବାଉଁଶ ପ୍ରଚୁର ପରିମାଣରେ ମିଳିଥାଏ । ଏହାଛଡ଼ା ବିଭିନ୍ନ ଫଳମୂଳ, ଅଁଳା, ଲାଖ, ଶିଙ୍ଗ, ଚମଡ଼ା, ଝୁଣା, ମହୁଲ, ସବାଇଘାସ, ଔଷଧ ନିମିତ୍ତ ବିବିଧ ଚେର, ହାଡ଼, କେତେକ ଖଣିଜ ପଦାର୍ଥ ମିଳିଥାଏ । ବହୁ ପଶୁପକ୍ଷୀ ଅରଣ୍ୟ ମଧରେ ବସବାସ କରିଥାନ୍ତି । ସେମାନେ ମଧ ମଣିଷ ସମାଜର ବହୁ ଉପକାରରେ ଆସିଥାନ୍ତି । ତେନ୍ତୁଳି, କରଞ୍ଜ, ଅଁଳା, କେନ୍ଦୁ, କେନ୍ଦୁପତ୍ର ଆଦି ଏହି ଅରଣ୍ୟ ସମ୍ପଦ ଅନ୍ତର୍ଭୁକ୍ତ ।

ଓଡ଼ିଶାର ଅରଣ୍ୟ ସମ୍ପଦ କେବଳ ଆମର ଆବଶ୍ୟକ କାର୍ଯ୍ୟରେ ବିନିଯୋଗ ହୋଇନଥାଏ, ପରନ୍ତୁ ଏହାଦ୍ୱାରା ସରକାର ବହୁପରିମାଣର ପୁଞ୍ଜି ଯୋଗାଡ଼ କରିପାରିଥାନ୍ତି । ଅଟକଳରୁ ଜଣାଯାଏ, ପ୍ରାୟ ପ୍ରତିବର୍ଷ ୧୦୮ କୋଟି ଟଙ୍କାର ବିଭିନ୍ନ ଦ୍ରବ୍ୟ ଅରଣ୍ୟରୁ ସଂଗୃହୀତ ହୋଇଥାଏ । ଅରଣ୍ୟରୁ ମିଳୁଥିବା କାଠ ଗୃହ ଉପକରଣ ନିର୍ମାଣରେ ବ୍ୟବହୃତ ହେଉଥିବା ବେଳେ ବାଉଁଶ ମଧ ଗୃହ ନିର୍ମାଣ ଓ କାଗଜାଦି ପଦାର୍ଥ ପ୍ରସ୍ତୁତିରେ ଆବଶ୍ୟକ ହୋଇଥାଏ । ଅରଣ୍ୟରୁ ମିଳୁଥିବା ବେତରେ ବର୍ତ୍ତମାନ ସୁନ୍ଦର ସୁନ୍ଦର ଚେୟାର, ସୋଫା ଓ ଅନ୍ୟାନ୍ୟ ଆନୁଷଙ୍ଗିକ ଉପକରଣମାନ ପ୍ରସ୍ତୁତ ହେଉଛି । ଅଁଳା, ବାହାଡ଼ା, ହରିଡ଼ା ଓ ଅନ୍ୟାନ୍ୟ କେତେକ ଅରଣ୍ୟରେ ମିଳୁଥିବା ଦୁର୍ମୂଲ୍ୟ ପତ୍ରଦ୍ୱାରା ବିଭିନ୍ନ ପ୍ରକାର ଆୟୁର୍ବେଦୀୟ ଔଷଧ ପ୍ରସ୍ତୁତ ହୋଇଥାଏ । ଶାଳପତ୍ର ବର୍ତ୍ତମାନ ଭୋଜିଭାତରେ ପ୍ରଚୁର ପରିମାଣରେ ଆବଶ୍ୟକ ହେଉଥିବା ସମୟରେ, ତା'ର ମଞ୍ଜିରୁ ତେଲ ଉତ୍ପାଦନ କରାଯାଇ ବିକ୍ରି ହେଉଛି । ଓଡ଼ିଶାରେ ପ୍ରଚୁର ପରିମାଣରେ କେନ୍ଦୁଗଛ ରହିଥିବାରୁ ଏହାର ପତ୍ର ବିଡ଼ି ତିଆରି ପାଇଁ ବିକ୍ରି କରାଯାଇ ବହୁ ଅର୍ଥ ମିଳୁଛି । ଅରଣ୍ୟରୁ ଉପଲବ୍ଧ ବିଭିନ୍ନ ପଶୁପକ୍ଷୀଙ୍କର ଚମଡ଼ା ଆମର ଯାବତୀୟ କାର୍ଯ୍ୟରେ ବ୍ୟବହାର ହୋଇଥାଏ । ଚମଡ଼ା କଷିବା ନିମିତ୍ତ ସୁନାରୀ ଛେଲିର ଆବଶ୍ୟକ ହୋଇଥାଏ । ଏହା ମଧ ଅରଣ୍ୟରୁ ମିଳିଥାଏ । ଶାଳ ଫଳରୁ ଚକୋଲେଟ୍ ତିଆରି ତେଲ ଏବଂ ଶାଗୁଆନ କାଠରୁ ପ୍ରସ୍ତୁତ ତେଲ ଔଷଧ ତିଆରିରେ ସାହାଯ୍ୟ କରିଥାଏ । ଟସର ପୋକମାନଙ୍କର ଶାଗୁଆନ ପତ୍ର ଏକ ପ୍ରିୟ ଖାଦ୍ୟ । ଜଙ୍ଗଲରୁ ମିଳୁଥିବା ବିଭିନ୍ନ ହାଡ଼ରୁ ସାର ତିଆରି ହୋଇଥାଏ । ଏହାକୁ ବ୍ୟବହାର କରି କୃଷକ ଭଲ ଫସଲ ଅମଳ କରିପାରିଥାନ୍ତି । ବିଭିନ୍ନ ପଶୁଙ୍କ ଶିଙ୍ଗରୁ ସୁନ୍ଦର ସୁନ୍ଦର ପାନିଆ ତିଆରି ହୋଇଥାଏ । ଏତଦ୍‌ବ୍ୟତୀତ

ହାତୀଦାନ୍ତ ଓ ଶିଙ୍ଗରୁ ମଧ୍ୟ ଫରୁଆ, ଖେଳଣା, ବିଭିନ୍ନ ବେଣ୍ଟ ଆଦି ତିଆରି କରାଯାଇ ପ୍ରଚୁର ଅର୍ଥ ଆମଦାନୀ କରାଯାଇଥାଏ । ଅରଣ୍ୟରୁ ମିଳୁଥିବା କୋଚିଳାଖାଇ ଚଢ଼େଇ ବହୁ ମୂଲ୍ୟବାନ ଔଷଧ ତିଆରିରେ ବ୍ୟବହୃତ ହୋଇଥାଏ । ତା'ର ତେଲ ମଧ୍ୟ ଶରୀର ପାଇଁ ବିଶେଷ ଉପକାରୀ । ଓଡ଼ିଶାର ଜଙ୍ଗଲରୁ ମଧ୍ୟ କିଛି ପରିମାଣରେ ଚନ୍ଦନ କାଠ ମିଳିଥାଏ । ଏହାର ଦାମ୍ ବହୁ ଅଧିକ । ଜଙ୍ଗଲରୁ ଶୁଆଶାରୀ, ନେଉଳ, ମାଙ୍କଡ଼ଛୁଆ ଆଦି ଧରାଯାଇ ବିଦେଶକୁ ପଠାଯାଉଛି ଓ ଏଥିପାଇଁ ଆମେ ଅନେକ ବୈଦେଶିକ ମୁଦ୍ରା ପାଇବାକୁ ସମର୍ଥ ହେଉଛୁ । ହରିଣମାଂସ ଏବଂ ମୟୂରଚନ୍ଦ୍ରିକା ବିକ୍ରୟ କରାଯାଇ ଆର୍ଥିକ ଲାଭ ହୋଇଥାଏ । ଏତଦ୍‌ବ୍ୟତୀତ ଜଙ୍ଗଲ ନିକଟରେ ବସବାସ କରୁଥିବା ଆଦିବାସୀ ସମ୍ପ୍ରଦାୟ ଏହି ଅରଣ୍ୟ ଉପରେ ନିର୍ଭର କରି ଜୀବନ ଅତିବାହିତ କରିଥାନ୍ତି । ତେଣୁ ମାନବ ଜୀବନର ବହୁ କ୍ଷେତ୍ରରେ ଅରଣ୍ୟର ଆବଶ୍ୟକତା ରହିଛି । ଏହାଦ୍ୱାରା କେବଳ ଆର୍ଥିକ ପ୍ରଗତି ହୋଇନଥାଏ, ପାରିବେଶିକ ଉନ୍ନତି ମଧ୍ୟ ହୋଇଥାଏ ।

ଅରଣ୍ୟ ଧ୍ୱଂସ ପାଇଯାଉଥିବାରୁ ଆଜି ସମଗ୍ର ବିଶ୍ୱବାସୀ ବିଭିନ୍ନ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହେଉଛନ୍ତି । ଓଡ଼ିଶାର ଅର୍ଦ୍ଧାଧିକ ଅରଣ୍ୟ ଇତିମଧ୍ୟରେ ଧ୍ୱଂସ ପାଇଯାଇଛି । ଏହାର ସୁରକ୍ଷା ନିମିତ୍ତ ବର୍ତ୍ତମାନ ସରକାର ବିଭିନ୍ନ ଯୋଜନା ପ୍ରଣୟନ କରିଛନ୍ତି । ୧୯୫୦ ମସିହାଠାରୁ ପ୍ରତ୍ୟେକ ବର୍ଷ ବନମହୋତ୍ସବ ପାଳନ କରାଯାଇ ବୃକ୍ଷରୋପଣ କରାଯାଉଛି । ୧୯୫୨ ମସିହାଠାରୁ ଭାରତର ବନ୍ୟଜନ୍ତୁ ସଂରକ୍ଷଣ ଆଇନ୍ ପ୍ରଣୟନ କରାଯାଇ ପଶୁପକ୍ଷୀ ହତ୍ୟା ନିଷେଧ କରାଯାଇଛି । ସେଥିପାଇଁ କେତେକ ସ୍ଥାନରେ ମଧ୍ୟ ଅଭୟାରଣ୍ୟ ସୃଷ୍ଟି ହୋଇଛି । ୧୯୮୩/୮୪ ମସିହାଠାରୁ ସାମାଜିକ ବନୀକରଣ କରାଯାଇ ନୂତନ ଜଙ୍ଗଲ ସୃଷ୍ଟି ପାଇଁ ଉଦ୍ୟମ ହୋଇଛି । ୧୯୮୮ ମସିହାଠାରୁ ଜଙ୍ଗଲ ସୁରକ୍ଷା ନୀତି କଡ଼ାକଡ଼ି ପାଳନ କରାଯାଉଥିବାରୁ ଅନେକ ଅଂଶରେ ଅରଣ୍ୟ ଓ ତା'ର ସମ୍ପଦ ପ୍ରତି ସୁରକ୍ଷା ପ୍ରଦାନ କରାଯାଇପାରିଛି । ଚୋରାକାଠ ବେପାରୀମାନେ ବହୁପରିମାଣରେ କାଠ କାଟିନେଇ ଜଙ୍ଗଲ ସମ୍ପଦକୁ କ୍ଷୟ କରିବାରେ ମୁଖ୍ୟ ଭୂମିକା ଗ୍ରହଣ କରୁଛନ୍ତି । ବିଭିନ୍ନ କର୍ମଚାରୀଙ୍କ ସହିତ ସମ୍ପର୍କ ସ୍ଥାପନ କରି ସେମାନେ ନିର୍ବିଚାରରେ ଏହାକୁ ଧ୍ୱଂସ କରିବାରେ ଲାଗିଛନ୍ତି । ଏବେଠାରୁ ସତର୍କ ନ ହେଲେ, ଏହାର ଭବିଷ୍ୟତ ପରିଣାମ ଯେ ସମ୍ପୂର୍ଣ୍ଣ ଭୟାବହ ହୋଇପଡ଼ିବ ଏଥିରେ ସନ୍ଦେହ ନାହିଁ ।

ଓଡ଼ିଶାର ଆର୍ଥିକ ସମୃଦ୍ଧିରେ ଅରଣ୍ୟର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଓଡ଼ିଶା ସରକାରଙ୍କ ଏକ ବଡ଼ ପରିମାଣ ଅର୍ଥ ଅରଣ୍ୟ ସମ୍ପଦରୁ ଲାଭ ହୋଇଥାଏ । ବହୁ ଔଷଧଜାତ ଦ୍ରବ୍ୟ, ତେଲ, କେନ୍ଦୁପତ୍ର, ପଶୁପକ୍ଷୀ, କାଠ, ବେତ, ବାଉଁଶ, ସବାଇଘାସ, ଶିଙ୍ଗ, ହାତୀଦାନ୍ତ, ଝୁଣା, ଅଁଳା, ହରିଡ଼ା, ବାହାଡ଼ା ଆଦିର ବିକ୍ରୟ କରାଯାଇ ପ୍ରଚୁର ପରିମାଣର ଅର୍ଥ ଲାଭ ହେଉଛି ଏବଂ ତାହା ଆମ ସରକାରଙ୍କ ଆର୍ଥିକ ସ୍ଥିତିକୁ ସମୃଦ୍ଧ କରୁଛି । ତେଣୁ ଏହି ଅରଣ୍ୟ ସମ୍ପଦର ସୁରକ୍ଷା ଓ ସୁବିନିଯୋଗ କରାଯାଇ ନ ପାରିଲେ ଆମର ଆର୍ଥିକ ସ୍ଥିତି ଦୁର୍ବଳ ହୋଇପଡ଼ିବାର ବହୁ ସମ୍ଭାବନା ରହିଛି । ଏତଦ୍‌ବ୍ୟତୀତ ପ୍ରାକୃତିକ ବିପର୍ଯ୍ୟୟରୁ ମଧ୍ୟ ଅରଣ୍ୟ ମାନବ ସମାଜକୁ ରକ୍ଷା କରୁଥିବାରୁ ଏହାର ସୁରକ୍ଷା ସମ୍ପୂର୍ଣ୍ଣ ଭାବରେ ଏକ ଜାତୀୟ କର୍ତ୍ତବ୍ୟ କହିବା ଅନାବଶ୍ୟକ ମାତ୍ର ।

ଅରଣ୍ୟର ସୁରକ୍ଷା ବର୍ତ୍ତମାନ ସମସ୍ତଙ୍କ ନିକଟରେ ଗୋଟିଏ ବଡ଼ ପ୍ରଶ୍ନ ହୋଇ ଠିଆ ହୋଇଛି । ଏହା କେବଳ ଦେଶର ଆର୍ଥିକ ସ୍ଥିତି ପାଇଁ ନୁହେଁ, ମଣିଷର ବଞ୍ଚିବା ପାଇଁ ହିଁ ଏକ ପ୍ରଶ୍ନ । ଶିଳ୍ପ ପ୍ରତିଷ୍ଠା ଏବଂ ରେଳଲାଇନ ପ୍ରସ୍ତୁତି ପାଇଁ ଆମର ବହୁ ଅରଣ୍ୟ ନଷ୍ଟ ହୋଇଛି । ଚୋରାକାଠ ବେପାରୀଙ୍କ ସହିତ କେତେକ ଜଙ୍ଗଲ କର୍ମଚାରୀଙ୍କ ଅସାଧୁ ସମ୍ପର୍କ ସ୍ଥାପନ ଯୋଗୁଁ ଆଜି ଓଡ଼ିଶାର ଅରଣ୍ୟ ସମ୍ପଦ ଅର୍ଦ୍ଧାଧିକ କମିଯାଇଛି । ବର୍ତ୍ତମାନ ଯେତିକି ଅରଣ୍ୟ ସମ୍ପଦ ଅବଶିଷ୍ଟ ରହିଛି, ତାହାର ସୁରକ୍ଷା ଏବଂ ନୂତନ ଜଙ୍ଗଲର ସୃଷ୍ଟି ଆମର ମୁଖ୍ୟ କର୍ତ୍ତବ୍ୟ ହେବା ଉଚିତ । ଏ କ୍ଷେତ୍ରରେ ସରକାର ଓ ଜନସାଧାରଣ ପରସ୍ପରକୁ ସାହାଯ୍ୟ କରିପାରିଲେ ଜଙ୍ଗଲକ୍ଷୟ ଜନିତ ବିପଦରୁ ଆମେ ନିଜକୁ ଯେ ରକ୍ଷା କରିପାରିବା ଏଥିରେ ସଂଶୟ ନାହିଁ ।



## ଓଡ଼ିଶାର ଖଣିଜ ସମ୍ପଦ

**(ଉପକ୍ରମ, ଓଡ଼ିଶାର ଖଣିଜ ସମ୍ପଦର ପରିଚୟ, ଶିଳ୍ପବିକାଶ କ୍ଷେତ୍ରରେ ଏହାର ଆବଶ୍ୟକତା, ସମସ୍ୟା ଓ ସମାଧାନ, ଉପସଂହାର)**

ଓଡ଼ିଶାର ପ୍ରାକୃତିକ ସମ୍ପଦ ଅତୁଳନୀୟ । ପ୍ରକୃତି ଏହାର ଗନ୍ତାଘରେ କେତେ ଯେ ପଦାର୍ଥ ସାଇତି ରଖିଛି, ତା'ର ଇୟତ୍ତା ନାହିଁ । ବଣଜଙ୍ଗଲ ଓ ପାହାଡ଼ଘେରା ଓଡ଼ିଶାର ଖଣିଜସମ୍ପଦରେ ପରିପୂର୍ଣ୍ଣ । ଏହାର ଉପଯୁକ୍ତ ବିନିଯୋଗ ହୋଇପାରିଲେ, ଓଡ଼ିଶାରୁ ଦାରିଦ୍ର୍ୟ ସହଜରେ ଦୂରୀଭୂତ ହୋଇପାରନ୍ତା । ଅତୀତରେ ଏହାର ଐଶ୍ୱର୍ଯ୍ୟ ଏବଂ ପ୍ରାଚୁର୍ଯ୍ୟ ବହୁ ବୈଦେଶିକଙ୍କୁ ଆକୃଷ୍ଟ କରିଥିଲା । ମୋଗଲ, ମରହଟ୍ଟା ଓ ଇଂରେଜଜାତି ଏହାର ଅନେକ ପ୍ରାକୃତିକ ବିଭବକୁ ଅପହରଣ କରିନେଇଛନ୍ତି । ତଥାପି ଏହି ଓଡ଼ିଶା କଦାପି ନିଃସ୍ୱ ହୋଇପଡ଼ି ନାହିଁ । ସମ୍ପ୍ରତି ବିଶ୍ୱରେ ଯେଉଁ ଦେଶ ବିଭିନ୍ନ ପ୍ରାକୃତିକ ଏବଂ ଖଣିଜ ବସ୍ତୁରେ ସମୃଦ୍ଧିଶାଳୀ ସେ ଦେଶର ଆର୍ଥିକ ପ୍ରଗତି ସେହିପରି ଉନ୍ନତ । ଶିଳ୍ପର ବିକାଶ ନିମିତ୍ତ ଆବଶ୍ୟକ ହୋଇଥାଏ ପ୍ରଚୁର ପରିମାଣର ଖଣିଜ ସମ୍ପଦ । ଓଡ଼ିଶାରେ ଏହି ସମ୍ପଦ ଭରପୂର ରହିଥିବା ସମୟରେ ଏହାର ଆର୍ଥିକ ବିକାଶ ଅତ୍ୟନ୍ତ ମନ୍ଥର । କାରଣ ଏହାର ଉଚିତ ବିନିଯୋଗ ହୋଇପାରୁ ନାହିଁ । ଖଣିଜସମ୍ପଦ ତୁଳନାରେ ଶିଳ୍ପର ବିକାଶ ମଧ୍ୟ ସେପରି ସନ୍ତୋଷଜନକ ନୁହେଁ । ଓଡ଼ିଶାର ବିସ୍ତୃତ ଖଣିଜ ସମ୍ପଦକୁ ଦେଖିଲେ ବିସ୍ମିତ ନ ହୋଇ ରହିହୁଏ ନାହିଁ । ମାଙ୍ଗାନିଜ୍, ବକ୍ସାଇଟ୍, ଗ୍ରାଫାଇଟ୍, ଲୁହା, କୋଇଲା, ଚୀନାମାଟି, ଚୂନପଥର, କ୍ରୋମାଇଟ୍ ଆଦି ବହୁବିଧ ଖଣିଜପଦାର୍ଥ ଏଠାରେ ବିଦ୍ୟମାନ । ଏହି ପଦାର୍ଥଗୁଡ଼ିକର ସୁବିନିଯୋଗ ହୋଇପାରିଲେ ଓଡ଼ିଶା ସମଗ୍ର ଭାରତବର୍ଷରେ ଏକ ବିକାଶଶୀଳ ରାଜ୍ୟ ରୂପେ ମୁଣ୍ଡ ଟେକିପାରିବ ।

ଓଡ଼ିଶାରେ ଲୌହପଥର ପ୍ରଚୁର ପରିମାଣରେ ମିଳିଥାଏ । ଏହି ଲୌହପଥରଗୁଡ଼ିକ ଅତ୍ୟନ୍ତ ମୂଲ୍ୟବାନ । ଲୁହାର ଆବିଷ୍କାର ପରେ ହିଁ ମଣିଷ ସଭ୍ୟଜଗତରେ ପଦାର୍ପଣ କଲା ।

ସମ୍ପ୍ରତି ଶିଳ୍ପଠାରୁ ଆରମ୍ଭ କରି କୃଷି ପର୍ଯ୍ୟନ୍ତ ସର୍ବତ୍ର ଲୁହାର ଆବଶ୍ୟକତା ରହିଛି । ପୃଥିବୀର ପ୍ରାୟ ଏକ ଚତୁର୍ଥାଂଶ ଲୁହାପଥର ଭାରତରେ ଗଚ୍ଛିତ ରହିଛି । ଭାରତରେ ଯେତିକି ଲୁହାପଥର ମିଳେ ତା'ର ଅର୍ଦ୍ଧାଧିକ କେବଳ ଓଡ଼ିଶାରେ ରହିଛି । ଏହି ଲୁହାପଥରଗୁଡ଼ିକରୁ ଶତକଡ଼ା ୬୦ ଭାଗରୁ ଅଧିକ ଲୁହା ମିଳୁଥିବାରୁ ଏହାକୁ ହେମାଟାଇଟ୍ କୁହାଯାଏ । କେନ୍ଦୁଝରର ଦଇତାରୀ, ଟମକା କିରିବୁରୁ, ବୋଲାନି ଓ ଗନ୍ଧମାର୍ଦ୍ଦନ ଅଞ୍ଚଳ, ସୁନ୍ଦରଗଡ଼ ଜିଲ୍ଲାର ବଣାଇ, କୋରାପୁଟର ହୀରାପୁର, କଟକର ସୁକିନ୍ଦା, ମୟୂରଭଞ୍ଜ ଜିଲ୍ଲାର ବାଦାମପାହାଡ଼, ଗୋରୁମହିଷାଣୀଠାରେ ଲୁହାପଥର ମିଳିଥାଏ । ପ୍ରଚୁର ଲୁହାପଥର ମିଳୁଥିବାରୁ ରାଉରକେଲାଠାରେ ଗୋଟିଏ ଇସ୍ପାତ କାରଖାନା ସ୍ଥାପନ କରାଯାଇଛି ଏବଂ ଓଡ଼ିଶାର ବିଭିନ୍ନ ସ୍ଥାନରେ ଆଉ କେତୋଟି କାରଖାନା ସ୍ଥାପନର ଉଦ୍ୟମ ଜାରି ରହିଛି । ଓଡ଼ିଶାର ବିଭିନ୍ନ ସ୍ଥାନରେ କ୍ରୋମାଇଟ୍ ଗଚ୍ଛିତ ହୋଇ ରହିଛି । ଅଗ୍ନିନିରୋଧକ ଇଟା ବା ରିଫ୍ରାକ୍ଟରୀ ପାଇଁ ଏହାର ଆବଶ୍ୟକ ହୋଇଥାଏ । ଇସ୍ପାତକୁ ଟାଣ କରିବା, ଚମଡ଼ା ଶିଳ୍ପ, ରଙ୍ଗ ଶିଳ୍ପ ଆଦିରେ ଏହାର ବ୍ୟବହାର ହୋଇଥାଏ । କ୍ରୋମାଇଟ ଉତ୍ପାଦନ କ୍ଷେତ୍ରରେ ଓଡ଼ିଶା ଭାରତରେ ପ୍ରଥମ ସ୍ଥାନ ଲାଭ କରିଛି । କଟକର ସୁକିନ୍ଦା, ଢେଙ୍କାନାଳ, କେନ୍ଦୁଝରର ବଉଳାପାହାଡ଼ ଅଞ୍ଚଳରେ ଏହା ପ୍ରଚୁର ପରିମାଣରେ ମିଳିଥାଏ । ମାଙ୍ଗାନିଜ୍ ଅନ୍ୟତମ ମୂଲ୍ୟବାନ ଖଣିଜ ପଦାର୍ଥ । ଏହା ମୁଖ୍ୟତଃ ଇସ୍ପାତ ନିର୍ମାଣ, ରଙ୍ଗ, ବ୍ୟାଟେରୀ ଆଦି ନିର୍ମାଣରେ ବ୍ୟବହୃତ ହୋଇଥାଏ । ପୃଥିବୀରେ ମାଙ୍ଗାନିଜ୍ ଉତ୍ପାଦନ କ୍ଷେତ୍ରରେ ଭାରତର ସ୍ଥାନ ଦ୍ୱିତୀୟ । ଭାରତରେ ଗଚ୍ଛିତ ମାଙ୍ଗାନିଜର ଦୁଇତୃତୀୟାଂଶ ଓଡ଼ିଶାରେ ରହିଛି । କେନ୍ଦୁଝରର ଜୋଡ଼ା, ବଡ଼ବିଲ, ବଲାଙ୍ଗୀର, କୋରାପୁଟ, ସୁନ୍ଦରଗଡ଼, କଳାହାଣ୍ଡିଠାରେ ମାଙ୍ଗାନିଜ ଖଣି ରହିଛି । ଜୋଡ଼ାଠାରେ ଗୋଟିଏ ଫେରୋମାଙ୍ଗାନିଜ କାରଖାନା ସ୍ଥାପିତ ହୋଇଛି । ଆଜି ପୃଥିବୀରେ କୋଇଲାର ବ୍ୟବହାର ବହୁସ୍ଥାନରେ ଦେଖାଯାଇଥାଏ । ଏହାର ବ୍ୟବହାର ପରିସରକୁ ଲକ୍ଷ୍ୟ କରାଯାଇ ଏହାକୁ ବ୍ଲାକ୍ ଡାଇମଣ୍ଡ ବା କୃଷ୍ଣହୀରା କୁହାଯାଇଥାଏ । ଏଥିରୁ ତାପଜ ବିଦ୍ୟୁତ୍ ସୃଷ୍ଟି କରାଯାଇ ବିଦ୍ୟୁତ୍ ଚାଳିତ କାରଖାନା ଚାଲିଥାଏ । ଜାଳେଣି ଭାବରେ ମଧ୍ୟ ଏହା ବ୍ୟବହୃତ ହୋଇଥାଏ । କୋଇଲାରୁ କେତେକ କ୍ଷେତ୍ରରେ ସିନ୍ଥେଟିକ୍ ପେଟ୍ରୋଲ ପ୍ରସ୍ତୁତ କରାଯାଉଛି । ପିଚୁ, ଆଲକାତରା, ଗନ୍ଧକର୍ପୂର, ବିଭିନ୍ନ ଔଷଧ, ଆମୋନିଆ ସଲ୍‌ଫେଟ୍ ସାର, କୃତ୍ରିମ କସ୍ତୁରୀ, ଫିନାଇଲ୍, କାର୍ବୋଲିକ ଏସିଡ୍ ଆଦି ବହୁ ପଦାର୍ଥ ଏଥିରୁ ନିର୍ମାଣ କରାଯାଇଥାଏ । ତାଳଚେର, ସମ୍ବଲପୁରର ରାମପୁରଠାରେ ବହୁପରିମାଣରେ କୋଇଲା ଖଣି ରହିଛି । ଓଡ଼ିଶାର ଢେଙ୍କାନାଳ, ସମ୍ବଲପୁର, କଳାହାଣ୍ଡି, ବଲାଙ୍ଗୀର ଆଦି ସ୍ଥାନରେ ପ୍ରଚୁର ପରିମାଣରେ ଗ୍ରାଫାଇଟ୍ ଖଣି ରହିଛି । ପରମାଣୁ ଶକ୍ତି ଉତ୍ପାଦନ, ବିଭିନ୍ନ ଛାଞ୍ଚ ଓ ପେନସିଲ ଧାତୁ ଏଥିରୁ ତିଆରି ହୋଇଥାଏ । ଓଡ଼ିଶାର କଳାହାଣ୍ଡିର କାଶୀପୁର ମହୁଲପାଟଣା, କରଲପାଟ, ବଲାଙ୍ଗୀର ଓ ସମ୍ବଲପୁର ଆଦି ଜିଲ୍ଲାରେ ବହୁପରିମାଣରେ ବକ୍‌ସାଇଟ୍ ମିଳିଥାଏ । ଏଥିରୁ ଆଲୁମିନିୟମ ପ୍ରସ୍ତୁତ କରାଯାଇଥାଏ । ଆଧୁନିକ ଯୁଗରେ ଆଲୁମିନିୟମର ବହୁଳ ପ୍ରଚଳନ ରହିଛି । ରୋଷେଇ ସରଞ୍ଜାମଠାରୁ ଆରମ୍ଭ କରି ଉଡ଼ାଜାହଜ ପର୍ଯ୍ୟନ୍ତ ସବୁକ୍ଷେତ୍ରରେ ଏହାର ଆବଶ୍ୟକତା ରହିଛି । ସିମେଣ୍ଟ ଫ୍ୟାକ୍ଟେରୀ ଓ ପେଟ୍ରୋଲିୟମର ପରିଷ୍କାର ପାଇଁ

ବକ୍ସାଇଟ ଦରକାର ହୋଇଥାଏ । ସୁନ୍ଦରଗଡ଼ ଜିଲ୍ଲାର ବୀରମିତ୍ରପୁର, ହାତୀବାଡ଼ି, କୋରାପୁଟର କୋଟପାଡ଼, ସମ୍ବଲପୁରର ଡୁଙ୍ଗ୍ରୀ ଆଦି ଅଞ୍ଚଳରେ ବହୁପରିମାଣରେ ଉତ୍କୃଷ୍ଟ ଚୂନପଥର ରହିଛି । ଲୌହ ଇସ୍ପାତ କାରଖାନା ଏବଂ ସିମେଣ୍ଟ ତିଆରି ପାଇଁ ଏହାର ଆବଶ୍ୟକତା ରହିଛି । ସମଗ୍ର ଭାରତବର୍ଷରେ ଓଡ଼ିଶା ଚୂନପଥର ଉତ୍ପାଦନ କ୍ଷେତ୍ରରେ ପ୍ରଥମ ସ୍ଥାନ ଅଧିକାର କରିଛି । ଏତଦ୍‌ବ୍ୟତୀତ ସୁନ୍ଦରଗଡ଼ରେ ଡୋଲାମାଇଟ୍, କଟକର ସୁକିନ୍ଦାଠାରେ ନିକେଲ, ମୟୂରଭଞ୍ଜର ଯଶୀପୁର ଓ କରଞ୍ଜିଆରେ ତଥା କଟକର ନରାଜ ଓ ପୁରୀର ଚନ୍ଦକାଠାରେ ଚୀନାମାଟି; ସୁକିନ୍ଦା, ବଲାଙ୍ଗୀର ଓ ମୟୂରଭଞ୍ଜଠାରେ ସୀସା; କୋରାପୁଟ ଏବଂ ଢେଙ୍କାନାଳର କେତେକ ସ୍ଥାନରେ ଅଭ୍ର ଆଦିର ସନ୍ଧାନ ମିଳିଥାଏ । ଏତଦ୍‌ବ୍ୟତୀତ କୋରାପୁଟର କେତେକ ଝରଣା ପାଣିରେ ସୁନା ମିଶ୍ରିତ ପଥର, ଓଡ଼ିଶାର ନଦୀବାଲିରେ ସ୍ୱର୍ଣ୍ଣକଣା ମିଳୁଥିବାର କେତେକ ପ୍ରମାଣ ରହିଛି । ତେଣୁ ଓଡ଼ିଶା ବହୁ ଖଣିଜ ସମ୍ପର୍କରେ ପରିପୂର୍ଣ୍ଣ ହୋଇ ରହିଛି । ଆବଶ୍ୟକତା ପଡୁଛି ଏହାର ଉପଯୁକ୍ତ ବିନିଯୋଗର ।

ପ୍ରାକୃତିକ ସମ୍ପଦରେ ଭରପୂର ଓଡ଼ିଶା ଏବେ ମଧ୍ୟ ଶିଳ୍ପକ୍ଷେତ୍ରରେ ବହୁପଛରେ ପଡ଼ିରହିଛି । ଏହାର ଆର୍ଥନୀତିକ ବିକାଶ ଅତ୍ୟନ୍ତ ନୈରାଶ୍ୟଜନକ । ଓଡ଼ିଶାରେ ଏବେ ମଧ୍ୟ ଯେଉଁ ପରିମାଣରେ ଉତ୍ତମ ଲୌହପଥର ପରିପୂର୍ଣ୍ଣ ହୋଇରହିଛି, ସେଥିପାଇଁ ଆଉ ଦୁଇଟି ଇସ୍ପାତ କାରଖାନା ନିର୍ମାଣ କରାଯାଇପାରନ୍ତା । ସମସ୍ତ ଆଲୋଚନା ଓ ନିଷ୍ପତ୍ତି ସତ୍ତ୍ୱେ ଏହା ଏପର୍ଯ୍ୟନ୍ତ କାର୍ଯ୍ୟକାରୀ ହୋଇପାରି ନାହିଁ । ସେହିପରି ତାପଜ ବିଦ୍ୟୁତ୍ କେନ୍ଦ୍ର ଓ ଅନ୍ୟାନ୍ୟ ଶିଳ୍ପ ଓଡ଼ିଶାରେ ଅଧିକ ପରିମାଣରେ ଗଢ଼ିଉଠିବା ଆବଶ୍ୟକ । ବର୍ତ୍ତମାନ ପୃଥିବୀର ଶିଳ୍ପସମୃଦ୍ଧ ଦେଶ ହିଁ ଅର୍ଥନୀତି କ୍ଷେତ୍ରରେ ସ୍ୱାବଲମ୍ବନଶୀଳ । ଓଡ଼ିଶାରେ ପ୍ରଚୁର ଖଣିଜ ସମ୍ପଦ ପରିପୂର୍ଣ୍ଣ ହୋଇଥିଲେହେଁ, ଶିଳ୍ପର ବିକାଶ ଅତ୍ୟନ୍ତ ନୈରାଶ୍ୟପୂର୍ଣ୍ଣ । ଓଡ଼ିଶାରୁ ବହୁପରିମାଣରେ ଖଣିଜ ପଦାର୍ଥ ବିଦେଶକୁ ପଠାଯାଉଛି, ଅଥଚ ନିଜ ଦେଶରେ ତା'ର ବିନିଯୋଗ ହୋଇପାରୁ ନାହିଁ । ଖୁସିର ବିଷୟ ବଂଶୀଧର ପଣ୍ଡାଙ୍କ ପରି କେତେଜଣ ଦୂରଦୃଷ୍ଟିସମ୍ପନ୍ନ ବ୍ୟକ୍ତି ବେସରକାରୀ ଉଦ୍ୟୋଗ ଆରମ୍ଭ କରି ଓଡ଼ିଶାର ଖଣିଜସମ୍ପଦର ଯଥାର୍ଥ ବିନିଯୋଗ କରିପାରୁଛନ୍ତି । ତେଣୁ ଦେଶର ସମ୍ପଦକୁ ଅନ୍ୟ ଦେଶକୁ ଦେଇ ତା' ପରିବର୍ତ୍ତେ ସେଥିରେ ନିର୍ମିତ ବିଭିନ୍ନ ପଦାର୍ଥ ବାହାର ଦେଶରୁ କିଣିବାରେ କୌଣସି ଅର୍ଥ ନାହିଁ ।

ଓଡ଼ିଶାରେ ପ୍ରଚୁର ପରିମାଣରେ ଖଣିଜ ସମ୍ପଦ ପରିପୂର୍ଣ୍ଣ ରହିଥିଲେହେଁ, କଳକାରଖାନା ଗଢ଼ିବା ନିମିତ୍ତ ଯେଉଁ ଅର୍ଥର ଆବଶ୍ୟକତା ରହିଛି, ତାହା ଓଡ଼ିଶାରେ ନାହିଁ । ଆର୍ଥିକ ଅନଗ୍ରସରତା ଶିଳ୍ପ ସୃଷ୍ଟି ପାଇଁ ପ୍ରଥମ ପ୍ରତିବନ୍ଧକ ହୋଇ ଠିଆ ହୋଇଛି । ଏତଦ୍‌ବ୍ୟତୀତ ବର୍ତ୍ତମାନ ସୁଦ୍ଧା ଓଡ଼ିଶାର ବିଭିନ୍ନ ସ୍ଥାନକୁ ଯିବା ପାଇଁ ଯୋଗାଯୋଗର ସୁବିଧା ରହିଛି । ଏହା ପରିବହନ କ୍ଷେତ୍ରରେ ପ୍ରତିବନ୍ଧକ ସୃଷ୍ଟି କରୁଛି । ବନ୍ୟା ଓ ବାତ୍ୟାର ଦେଶ ଓଡ଼ିଶା ବାରମ୍ବାର ପ୍ରାକୃତିକ ବିପର୍ଯ୍ୟୟର ସମ୍ମୁଖୀନ ହେଉଥିବାରୁ ରାସ୍ତାଘାଟ ଠିକ୍ ଭାବରେ ନିର୍ମିତ ହୋଇପାରୁ ନାହିଁ । ପୁନରାୟ ଉପଯୁକ୍ତ ତାଲିମପ୍ରାପ୍ତ ବ୍ୟକ୍ତିଙ୍କର ବହୁପରିମାଣରେ ଅଭାବ ଓଡ଼ିଶାରେ ଦେଖାଯାଇଥାଏ । ଶିଳ୍ପର ବିକାଶ କ୍ଷେତ୍ରରେ ଏହା ଅନ୍ୟତମ ଅନ୍ତରାୟ । ଆର୍ଥନୀତିକ

ଅନଗ୍ରସରତା ଯୋଗୁଁ ଶିଳ୍ପକ୍ଷେତ୍ରରେ ଓଡ଼ିଶା ପଛରେ ରହିଥିବା କାରଣରୁ କେନ୍ଦ୍ର ସରକାର ଅଧିକ ଆର୍ଥିକ ସହାୟତା ଓଡ଼ିଶାକୁ ଯୋଗାଇ ଦେଇପାରିଲେ ଏହି ସମସ୍ୟାର ସମାଧାନ ହୋଇପାରନ୍ତା । ଏତଦ୍‌ବ୍ୟତୀତ ରାଜ୍ୟ ସରକାର ମଧ ଏ କ୍ଷେତ୍ରରେ ସ୍ୱତନ୍ତ୍ର ଦୃଷ୍ଟି ପ୍ରଦାନ କରିବା ଆବଶ୍ୟକ । ଘରୋଇ ଉଦ୍ୟମରେ ଯେଉଁମାନେ ଶିଳ୍ପପ୍ରତିଷ୍ଠା କରିବାକୁ ଚାହାନ୍ତି, ସରକାର ସେମାନଙ୍କୁ ଆର୍ଥିକ ଓ ବୈପ୍ଳବିକ ପ୍ରୋତ୍ସାହନ ଯୋଗାଇ ଦେବା ଉଚିତ । ଆବଶ୍ୟକ ପଡ଼ିଲେ ବାହାର ଦେଶ ସହିତ ଯୋଗାଯୋଗ ସ୍ଥାପନ କରି ଓଡ଼ିଶାର ଖଣିଜସମ୍ପଦର ଯଥାର୍ଥ ବିନିଯୋଗ କରିବାକୁ ଆବଶ୍ୟକ ପଦକ୍ଷେପ ଗ୍ରହଣ କରିବା ସାମ୍ପ୍ରତିକ ପରିସ୍ଥିତି ଦୃଷ୍ଟିରୁ ଅପରିହାର୍ଯ୍ୟ । ଯୋଗାଯୋଗର ଉନ୍ନତିଦ୍ୱାରା ମଧ ଏହି ସମସ୍ୟା କେତେକ ପରିମାଣରେ ସମାଧାନ କରାଯାଇପାରିବ । ପ୍ରଶିକ୍ଷଣ କେନ୍ଦ୍ର ଖୋଲାଯାଇ ଶିଳ୍ପ ସମ୍ପର୍କରେ ଏ ଦେଶର ଲୋକମାନଙ୍କୁ ତାଲିମ ଦିଆଯାଇପାରିଲେ ମାନବ ଶକ୍ତିର ଉପଯୁକ୍ତ ବିନିଯୋଗ ହୋଇପାରିବ ।

ନିର୍ବାଚନ ସମୟରେ ବହୁ ପ୍ରତିଶ୍ରୁତି ଦେଇ ସରକାରକୁ ଆସୁଥିବା ରାଜନୀତିକ ନେତାଗଣ କ୍ଷମତାସୀନ ହେବାପରେ ସେମାନଙ୍କର ଦାୟିତ୍ୱ ବିସ୍ମୃତ ହେଉଛନ୍ତି । ଦାରିଦ୍ର୍ୟ ସୀମାରେଖା ତଳେ ଏବେ ମଧ ଓଡ଼ିଶାର ବହୁ ବ୍ୟକ୍ତି ରହିଛନ୍ତି, ଅଥଚ ଓଡ଼ିଶାରେ ଖଣିଜ ସମ୍ପଦ ପରିପୂର୍ଣ୍ଣ ହୋଇରହିଛି । ପୁଣି ଉପଯୁକ୍ତ ତତ୍ତ୍ୱ ଏବଂ ପ୍ରଶାସନିକ ଦୁର୍ବଳତା ଯୋଗୁଁ ବହୁ କାରଖାନା ବନ୍ଦ ହୋଇଯାଇଛି । ଅନ୍ୟମାନେ ଆମର ଖଣିଜସମ୍ପଦକୁ ନେଇ ନିଜ ଶିଳ୍ପରେ ବିନିଯୋଗପୂର୍ବକ ବହୁ ଫାଇଦା ଉଠାଉଥିବା ସମୟରେ ଆମେ ନିରବରେ ବସିରହିଛୁ । ବର୍ତ୍ତମାନ ସମୟରେ ଉଭୟ ସରକାର ଓ ଜନସାଧାରଣ ସଚେତନ ଭାବରେ କାର୍ଯ୍ୟ କଲେ ଓଡ଼ିଶା ଏକ ଶିଳ୍ପସମୃଦ୍ଧ ରାଜ୍ୟରେ ପରିଣତ ହୋଇପାରିବ ଏବଂ ଏହାର ଦାରିଦ୍ର୍ୟ ଦୂରୀକରଣ ହୋଇପାରିବ ।

●

# ଓଡ଼ିଶାର କୁଟୀର ଶିଳ୍ପ

**(ଉପକ୍ରମ, ପ୍ରାଚୀନ ଓଡ଼ିଶାରେ କୁଟୀର ଶିଳ୍ପ, ଓଡ଼ିଶା କୁଟୀର ଶିଳ୍ପର ପରିଚୟ, କୁଟୀର ଶିଳ୍ପର ଭବିଷ୍ୟତ, ସର୍ବଭାରତୀୟ ସ୍ତରରେ ଓଡ଼ିଶାର କୁଟୀର ଶିଳ୍ପ, କୁଟୀର ଶିଳ୍ପ ଓ ସରକାରୀ ପ୍ରୋତ୍ସାହନ, ଉପସଂହାର)**

ଅତୀତରେ ଓଡ଼ିଶା ଏକ ଶିଳ୍ପସମୃଦ୍ଧ ଦେଶ ଭାବରେ ପରିଚିତ ଥିଲା । ଏହି ଦେଶର ସନ୍ତାନ ସେମାନଙ୍କର ଶିଳ୍ପଜାତ ପଦାର୍ଥକୁ ଦେଶ ବାହାରେ ବିକ୍ରୟ କରି ପ୍ରଚୁର ଅର୍ଥ ଆଣୁଥିଲେ । ସେଥିପାଇଁ ଓଡ଼ିଶାର ଆର୍ଥିକ ଅବସ୍ଥା ବେଶ୍ ସ୍ୱଚ୍ଛଳ ଥିଲା । ପରାଧୀନ ଜୀବନକୁ ବରଣ କରିନେବା ପରେ ଓଡ଼ିଶାର ସମସ୍ତ ଶ୍ରୀ ଅନ୍ତର୍ଦ୍ଧାନ ହୋଇଗଲା । ଭାରୀଶିଳ୍ପ ବା ବୃହତ୍ ଶିଳ୍ପର ପ୍ରସାରଣରେ ଓଡ଼ିଶା କାହିଁକି ଭାରତର ସମସ୍ତ କୁଟୀର ଶିଳ୍ପ (ଯାହା ଦୁର୍ବିପାକରୁ ବଞ୍ଚିଯାଇଥିଲା) ଘୋର କ୍ଷତିର ସମ୍ମୁଖୀନ ହେଲା । ଭାରତ ବା ଓଡ଼ିଶାର ଅଧିକାଂଶ ଜନତା ଗ୍ରାମରେ ବାସ କରନ୍ତି । କୁଟୀର ଶିଳ୍ପଗୁଡ଼ିକ ଗ୍ରାମରେ ଗଢ଼ି ଉଠିଥିବାରୁ ଅବସର ସମୟରେ ଗ୍ରାମବାସୀ ନିଜକୁ ଏଥିରେ ନିଯୁକ୍ତ

କରି କିଛି ଅର୍ଥ ରୋଜଗାର କରୁଥିଲେ । କୌଳିକ ବ୍ୟବସାୟୀଙ୍କର ଏହା ଥିଲା ଜୀବିକା । ଭାରତ ଗୋଟିଏ କୃଷିପ୍ରଧାନ ଦେଶ ହୋଇଥିବାରୁ ଏବଂ ଏହାର ୮୦ଭାଗ ଜନସାଧାରଣ ଏଥିରେ ନିଯୁକ୍ତ ଥିବାରୁ କୃଷିକୁ ଏକ ବଡ଼ ଶିଳ୍ପର ଆଖ୍ୟା ମଧ୍ୟ ପ୍ରଦାନ କରାଯାଇପାରେ । କୃଷି କାର୍ଯ୍ୟ ବର୍ଷକ ବାରମାସ ଚାଲି ନ ଥାଏ । ତେଣୁ ଏଥିରେ କର୍ତ୍ତବ୍ୟରତ ମଣିଷ ପ୍ରାୟ ୫-୬ ମାସ ବେକାର ହୋଇ ବସିଥାନ୍ତି । ଯଦି ଗ୍ରାମରେ କିଛି କୁଟୀର ଶିଳ୍ପ ସ୍ଥାପନ ହୋଇପାରନ୍ତା, ତେବେ ବେକାର ସମୟ ଅତିବାହିତ କରୁଥିବା ମଣିଷ ଏଥିରେ ନିଜକୁ ସଂଶ୍ଳିଷ୍ଟ କରାଇ କିଛି ଅର୍ଥ ରୋଜଗାର କରିପାରନ୍ତା । କୁଟୀରଶିଳ୍ପର ପ୍ରତିଷ୍ଠା ଦ୍ୱାରା ଅଧିକ ବେକାର ଯୁବକଙ୍କୁ ମଧ୍ୟ ନିଯୁକ୍ତ କରାଯାଇପାରନ୍ତା । ବୃହତ୍ ଶିଳ୍ପର ଯନ୍ତ୍ର ଅଧିକାଂଶ କାର୍ଯ୍ୟ କରୁଥିବାରୁ, ମଣିଷ ଶକ୍ତିର କମ୍ ଉପଯୋଗ ହେଉଛି । ଗାନ୍ଧିଜୀ ଏହି ଯନ୍ତ୍ରଶିଳ୍ପର ଥିଲେ ଘୋର ବିରୋଧୀ । ତାଙ୍କ ମତରେ–"I can have no consideration for machinery which is meant to enrich the few at the expense of many." ଗ୍ରାମ୍ୟ ଅର୍ଥନୀତିକୁ ସମୃଦ୍ଧ କରିବା କ୍ଷେତ୍ରରେ କୁଟୀର ଶିଳ୍ପର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ ।

ପ୍ରାଚୀନ ଓଡ଼ିଶାର କୁଟୀର ଶିଳ୍ପ ଦିନେ ଭାରତରେ ଶ୍ରେଷ୍ଠସ୍ଥାନ ଅଧିକାର କରିଥିଲା । ଲିଙ୍ଗରାଜ, ପୁରୀ, ରାଜାରାଣୀ, କୋଣାର୍କ ଆଦି ମନ୍ଦିରର ପ୍ରସ୍ତରମାନଙ୍କରେ ଶିଳ୍ପର କାରୁକାର୍ଯ୍ୟ ଦର୍ଶକମାନଙ୍କୁ ଏବେବି ଅଭିଭୂତ କରେ । ପଥର, କଳାମୁଗୁନିପଥର ଦେହରେ ଖୋଦିତ ସୂଚୀ କାମ ପାଇଁ ଓଡ଼ିଆ ଶିଳ୍ପୀ ବିଖ୍ୟାତ ଥିଲା । ଅତୀତରେ ଏହି ପଥର ଖୋଦେଇ କାମ ବିଶେଷ ମାନ୍ୟତା ଲାଭ କରିଥିଲା । ଓଡ଼ିଶାରୁ ବହୁ ସୁନ୍ଦର ପଥରମୂର୍ତ୍ତି ବିଦେଶକୁ ପଠାଯାଉଥିଲା । ବୟନ ଶିଳ୍ପ ମଧ୍ୟ ଓଡ଼ିଶାରେ ପ୍ରସିଦ୍ଧି ଲାଭ କରିଥିଲା । ସୂକ୍ଷ୍ମ ବସ୍ତ୍ର ନିର୍ମାଣ କ୍ଷେତ୍ରରେ ଓଡ଼ିଶା ଥିଲା ପ୍ରସିଦ୍ଧ । ଏହି ବସ୍ତ୍ରକୁ ଗୋଟିଏ ଛୋଟ ବାଉଁଶନଳୀ ମଧ୍ୟରେ ରଖାଯାଇପାରୁଥିଲା । ଶୁଣାଯାଏ ଜଣେ ବୌଦ୍ଧ ସନ୍ନ୍ୟାସିନୀ କଳିଙ୍ଗର ଏକ ସୂକ୍ଷ୍ମ ବସ୍ତ୍ର ପିନ୍ଧି ଚୀନ୍ ରାଜସଭାରେ ଉପସ୍ଥିତ ହୁଅନ୍ତେ, ସମସ୍ତେ ତାଙ୍କୁ ଦେଖି ଉଲଗ୍ନ ନାରୀ ବୋଲି ଭ୍ରମ କରିଥିଲେ । ଦାକ୍ଷିଣାତ୍ୟ ଅଧିବାସୀ ଓଡ଼ିଶାର ସୂକ୍ଷ୍ମ ବସ୍ତ୍ରକୁ ବେଶି ପସନ୍ଦ କରୁଥିଲେ । ଏହି ଦେଶର ସାଧବପୁଅ ଓଡ଼ିଶାର କୁଟୀରଶିଳ୍ପ ଜାତ ପଦାର୍ଥକୁ ନେଇ ବାଲି, ସୁମାତ୍ରା, ବୋର୍ଣ୍ଣିଓ, ଜାଭା ଆଦି ଦ୍ୱୀପକୁ ଯାଉଥିଲେ ଓ ସେଠାରେ ତାହା ପ୍ରଚୁର ପରିମାଣରେ ବିକ୍ରୟ ହେଉଥିଲା । ଏତଦ୍‌ବ୍ୟତୀତ ଅନ୍ୟାନ୍ୟ ହସ୍ତ କର୍ମ ବିଦ୍ୟାରେ ଓଡ଼ିଶାର ପୁରୁଷ ଓ ରମଣୀ ଧୁରନ୍ଧର ଥିଲେ । ପେଡ଼ି, ପେଟରା, ସପ, ମସିଣା, ନାଳିଆ ଆଦି ବୟନ କ୍ଷେତ୍ରରେ ପ୍ରାଚୀନ ଓଡ଼ିଆ ନାରୀ ବିଶେଷ ପ୍ରବୀଣା ଥିଲେ । ସେମାନଙ୍କର ଏହି ହାତବୁଣା ଜିନିଷ ଅନ୍ୟମାନଙ୍କ ଦ୍ୱାରା ବହୁଭାବରେ ଆଦୃତ ହେଉଥିଲା । କଂସାବାସନ, ଶିଙ୍ଗ ଓ ତାରକସୀ କାମ, ପଥର ଶିଳ, ପେଶୀ ଚକି ଆଦି ତିଆରି କରି ଦେଶ ଭିତରେ ଓ ବାହାରେ ବିକ୍ରୟ କରାଯାଉଥିଲା । ଏଥିରେ ସେମାନେ ଯେଉଁ ଅର୍ଥ ଲାଭ କରୁଥିଲେ, ସେଥିରେ ନିଜର ଆର୍ଥିକ ସ୍ଥିତିକୁ ମଜଭୁତ କରିପାରୁଥିଲେ । ଏହା ବ୍ୟତୀତ ଅନ୍ୟାନ୍ୟ ବହୁକ୍ଷେତ୍ରରେ ମଧ୍ୟ ଓଡ଼ିଶାର କୁଟୀରଶିଳ୍ପ ବେଶ୍ ପ୍ରସିଦ୍ଧି ଲାଭ କରିଥିଲା ।

ଓଡ଼ିଶାର କୁଟୀରଶିଳ୍ପ ବହୁବିଧ । ଓଡ଼ିଶାର ପ୍ରାକୃତିକ ସମ୍ପଦରୁ ଏ ଦେଶର କଳାକାର, ଶିଳ୍ପୀ ପ୍ରଚୁର ଉପାଦାନ ସଂଗ୍ରହ କରୁଥିଲେ । ନୀଳଗିରିରେ ଉପଲବ୍ଧ ହେଉଥିବା କଳା ମୁଗୁନିପଥରରେ ବିଭିନ୍ନ ବାସନ ଓ ମୂର୍ତ୍ତି ନିର୍ମିତ ହେଉଥିଲା । ଏଥିରୁ ମଧ ସୁନ୍ଦର ସୁନ୍ଦର କଣ୍ଢେଇ ତିଆରି ହୋଇଥାଏ । ଏହାବ୍ୟତୀତ ମାଣିଆବନ୍ଧ ଧୋତି, ତିଗିରିଆ, ନୂଆପାଟଣା, ସମ୍ବଲପୁରୀ, ବରହମପୁରୀ ଶାଢ଼ି, ଖୋର୍ଦ୍ଧା, କେନ୍ଦ୍ରାପଡ଼ା ଗାମୁଛା, ଲୁଙ୍ଗି, ବାରିପଦାର ଟସର ଶିଳ୍ପ; କଣ୍ଟିଲୋ, ରେମୁଣା, ଭୁବନର କଂସାବାସନ, ବାଲକାଟିର ସପ, ମସିଣା; କଟକର ତାରକସିକାମ, ସୁନାରୁପା ଅଳଙ୍କାର, ପାରଳାଖେମୁଣ୍ଡିର ବେତ ଚେୟାର, ଓଲଟପୁର ଆଦି ପ୍ରସିଦ୍ଧ କୁଟୀରଶିଳ୍ପ ସମଗ୍ର ଭାରତରେ ପ୍ରସିଦ୍ଧି ଲାଭ କରିଛି । ଏତଦ୍‌ବ୍ୟତୀତ ଓଡ଼ିଶାରେ ନଡ଼ିଆକତାରୁ ପାପୋଛ, ଆସନ, ଦଉଡ଼ି, ତା'ର ସଢ଼େଇରେ ରଙ୍ଗଦେଇ ବିଭିନ୍ନ କାରୁକାର୍ଯ୍ୟପୂର୍ଣ୍ଣ ଘର ସଜାଇବା ଉପକରଣ; ବେଣା ଚେର, ବାଉଁଶରେ ନିର୍ମିତ ତାଟି, ସିରା, ଟୋକେଇ, ଝଙ୍କା, କିଆପତ୍ର, କାଇଁଚ ଆଦିରୁ ପ୍ରସ୍ତୁତ ବିଭିନ୍ନ ଗୃହ ଉପକରଣ, ଶିଙ୍ଗ, କାଠ ଏବଂ ଚମଡ଼ାରେ ନିର୍ମିତ ବିବିଧ ଆକର୍ଷଣୀୟ ସାମଗ୍ରୀ ନିର୍ମିତ ହୋଇ ବହୁପରିମାଣରେ ବିକ୍ରି ହୋଇଥାଏ । ଏବେବି ଗ୍ରାମରେ କୁମ୍ଭାରମାନେ ମାଟିରେ ଅନେକ ସୌଖୀନ ଓ ବ୍ୟବହାର ଉପଯୋଗୀ ପଦାର୍ଥ ତିଆରି କରୁଛନ୍ତି । ଯେଉଁଠାରେ ତନ୍ତୁ ରହିଛି, ସେଠାରେ ଲୁଗା ବୁଣାଯାଇ ବିକ୍ରି ହେଉଛି । କମାର ମଧ ଲୁହାରେ ଦାଆ, ଶାବଳ, କୋଡ଼ି, କୋଦାଳ ଆଦି ତିଆରି କରି ନିଜର ଭରଣପୋଷଣ କରିପାରୁଛି । ଓଡ଼ିଶାରେ କୁଟୀରଶିଳ୍ପ ପାଇଁ ବହୁପରିମାଣରେ ଅରଣ୍ୟଜାତ ପଦାର୍ଥ ଗଚ୍ଛିତ ହୋଇ ରହିଛି । ପୁରୀ ସମୁଦ୍ର କୂଳରୁ ଶାମୁକା ସଂଗ୍ରହ କରି ଏବେବି ବହୁ ସୌଖୀନ ଓ ଘର ସଜ୍ଜା ପାଇଁ ମୂଲ୍ୟବାନ ଆକର୍ଷଣୀୟ ସାମଗ୍ରୀ ତିଆରି ହୋଇପାରୁଛି । ଏବେବି କୁଟୀରଶିଳ୍ପକୁ ଉପଯୁକ୍ତ ପ୍ରୋତ୍ସାହନ ମିଳିଲେ ଓଡ଼ିଶାବାସୀ ବହୁପରିମାଣରେ ସ୍ୱାବଲମ୍ବନଶୀଳ ହୋଇପାରନ୍ତେ ।

ଆଧୁନିକ ଯୁଗ ଯନ୍ତ୍ର ଶିଳ୍ପର ଯୁଗ । ବୃହତ୍ ଶିଳ୍ପପ୍ରତିଷ୍ଠା ଦ୍ୱାରା କୁଟୀର ଶିଳ୍ପଗୁଡ଼ିକ ବହୁପରିମାଣରେ କ୍ଷତିଗ୍ରସ୍ତ ହୋଇଛି, ଏଥିରେ ସନ୍ଦେହ ନାହିଁ । ଓଡ଼ିଶାର ରାଉରକେଲାଠାରେ ବୃହତ୍ ଇସ୍ପାତ କାରଖାନା, ପାରାଦ୍ୱୀପ ଓ ତାଳଚେରର ସାରକାରଖାନା, ସୁନାବେଡ଼ାରେ ମିଗ୍‌ବିମାନ କାରଖାନା, ଅନୁଗୁଳ ଓ ଦାମନଯୋଡ଼ିର ଆଲୁମିନିୟମ କାରଖାନା, ରାଜଗାଙ୍ଗପୁରର ସିମେଣ୍ଟ କାରଖାନା, ଯାଜପୁରରୋଡ଼ର ଫେରୋକ୍ରମ କାରଖାନା, ବାଲେଶ୍ୱରର ବିରଳା ଟାୟାର କାରଖାନା, ବ୍ରଜରାଜନଗର ଓ ଚୌଦ୍ୱାରର ଲୁଗାକଳ, କାଗଜକଳ, ଆସ୍କାର ଚିନି କାରଖାନା; ଗୋପାଳପୁରଠାରେ ନିର୍ମାଣାଧୀନ ଟାଟା ଇସ୍ପାତ କାରଖାନା ଆଦି ବୃହତ୍ ଓ ମଧମ ଯନ୍ତ୍ର ଶିଳ୍ପଗୁଡ଼ିକ କୁଟୀର ଶିଳ୍ପ ବିକାଶରେ ପ୍ରତିବନ୍ଧକ ସୃଷ୍ଟି କରିଛି । ଏହି ସମସ୍ତ କାରଖାନା ଓଡ଼ିଶାର ସମୂହ ଉନ୍ନତି କରିପାରିଛି ବୋଲି ମନେହୁଏ ନାହିଁ । ଯେଉଁଠାରେ ଲୋକସଂଖ୍ୟା ସୀମିତ, ମାନବ ଶକ୍ତିର ଅଭାବ ରହିଛି, ସେଠାରେ ଯନ୍ତ୍ରଶିଳ୍ପର ବିଶେଷ ଉପଯୋଗିତା ରହିଛି । ମାତ୍ର ଯେଉଁଠାରେ ବହୁପରିମାଣରେ ଜନତା ବେକାର ବସି କାର୍ଯ୍ୟ

ପାଉ ନାହାନ୍ତି ସେଠାରେ ଯନ୍ତ୍ରଶିଳ୍ପ ଆର୍ଥିକ ଅବସ୍ଥାକୁ ଅଧିକ ଶୋଚନୀୟ କରିବ ସିନା, ଉନ୍ନତି କରିପାରିବ ନାହିଁ । ତେଣୁ ଗାନ୍ଧିଜୀ କହିଥିଲେ–"Mechanisation is good when the hands are too few for the work intended to be accomplished. It is an evil when there are more hands than required for work as is the case in India. The problem is how to utilise the idle hours of teeming million inhabitants of our villages which are equal to the working days of six months in a year." ଏହି ଦୃଷ୍ଟିରୁ ଭାରତ ପରି ଏକ ଜନବହୁଳ ଓ ଗ୍ରାମବହୁଳ ଦେଶରେ, ଯେଉଁଠାରେ ଅଣିଭାଗ ଲୋକ କୃଷି ଉପରେ ନିର୍ଭରଶୀଳ, ସେଠାରେ ଯନ୍ତ୍ରଶିଳ୍ପ ବିକାଶ ଦେଶର ପ୍ରଗତି ପଥରେ ନିଶ୍ଚିତଭାବରେ ଅନ୍ତରାୟ । ଏବେ ମଧ୍ୟ କୁଟୀର ଶିଳ୍ପ ପଦାର୍ଥ ପ୍ରତି ଲୋକମାନଙ୍କ ମନରେ ଆଗ୍ରହ ରହିଛି । ଯଦି ଯନ୍ତ୍ରଶିଳ୍ପ କୁଟୀର ଶିଳ୍ପ ସହିତ ପ୍ରତିଦ୍ୱନ୍ଦ୍ୱିତା ନ କରନ୍ତା, ତେବେ ଏହାର ବିକାଶ ମଧ୍ୟ ହୋଇପାରନ୍ତା । ବର୍ତ୍ତମାନ କୁଟୀର ଶିଳ୍ପର ଭବିଷ୍ୟତ ବହୁପରିମାଣରେ ନିର୍ଭର କରୁଛି ସରକାରଙ୍କ ପ୍ରୋତ୍ସାହନ ଏବଂ ଜନସାଧାରଣଙ୍କ ଆଗ୍ରହ ଉପରେ ।

ସର୍ବଭାରତୀୟ ସ୍ତରରେ ଓଡ଼ିଶା କୁଟୀରଶିଳ୍ପର ଖ୍ୟାତି ରହିଛି । ଓଡ଼ିଶାର ସମ୍ବଲପୁରୀ, ବରହମପୁରୀ ଓ ନୂଆପାଟଣା ବସ୍ତ୍ର ଏବଂ ପାଟ ଏବେ ମଧ୍ୟ ସମଗ୍ର ଭାରତରେ ବିଖ୍ୟାତ । ଓଡ଼ିଶାର ତାରକସି କାମର ପଟାନ୍ତର ନାହିଁ । ସମୟ ଥିଲା, ଯେତେବେଳେ ଉତ୍କଳଗୌରବ ମଧୁସୂଦନ ଓଡ଼ିଶାର କାରୁକାର୍ଯ୍ୟ ଏବଂ ବିଭିନ୍ନ କୁଟୀର ଶିଳ୍ପଜାତ ପଦାର୍ଥକୁ ନେଇ ଲଣ୍ଡନରେ ପ୍ରଦର୍ଶନୀ କରାଇଥିଲେ ଓ ସେତେବେଳେ ତାହା ଭାରତ ବାହାରେ ମଧ୍ୟ ବିଶେଷ ମର୍ଯ୍ୟାଦା ଲାଭ କରିଥିଲା । ମଧୁବାବୁଙ୍କ ଉତ୍କଳ ଟ୍ୟାନେରୀ ଓ ଓଡ଼ିଶା ତାରକସି କାମ ସମଗ୍ର ଭାରତରେ ବିଖ୍ୟାତ ହୋଇଥିଲା । ବର୍ତ୍ତମାନ ସୁଦ୍ଧା ଓଡ଼ିଶାର ବସ୍ତ୍ରବୟନ ଶିଳ୍ପ ତା'ର ପୂର୍ବ ମର୍ଯ୍ୟାଦା ହରାଇ ନାହିଁ । ଓଡ଼ିଶାରେ ନିର୍ମିତ ଶିଙ୍ଗ ଓ ଚମଡ଼ା ଭାରତରେ ଲୋକପ୍ରିୟତା ଅର୍ଜନ କରିଛି । ଏତଦ୍‌ବ୍ୟତୀତ ଓଡ଼ିଶାର ପଥର ଶିଳ୍ପୀଙ୍କ ଆକର୍ଷଣୀୟ ପଥର ଖୋଦେଇ ସୂଚୀକାମ ଓଡ଼ିଶା ବାହାରେ ପ୍ରଶଂସାଲାଭ କରିଛି । ତେଣୁ ସର୍ବଭାରତୀୟ ସ୍ତରରେ ଓଡ଼ିଶାର କୁଟୀରଶିଳ୍ପ କୌଣସି ଗୁଣରେ ନ୍ୟୂନ ନୁହେଁ ବୋଲି ସ୍ୱୀକାର କରିବାକୁ ପଡ଼ିବ ।

ସରକାରଙ୍କ ପ୍ରୋତ୍ସାହନ ଓ ଉଦ୍ୟମ ଉପରେ ହିଁ କୁଟୀରଶିଳ୍ପର ଭବିଷ୍ୟତ ନିର୍ଭର କରେ । ସୁଖର କଥା ଡ଼ିସେମ୍ବର ୧୯୭୭ ଶିଳ୍ପନୀତିରେ କୁଟୀରଶିଳ୍ପକୁ ଅଗ୍ରାଧିକାର ଦିଆଯିବ ବୋଲି କୁହାଯାଇଛି । ପ୍ରତି ଜିଲ୍ଲାରେ ଏଥିପାଇଁ ଏକ ସରକାରୀ ଉଦ୍ୟୋଗ ମାଧ୍ୟମରେ କୁଟୀର ଶିଳ୍ପରେ କାର୍ଯ୍ୟ କରୁଥିବା ବ୍ୟକ୍ତିମାନଙ୍କୁ ଆବଶ୍ୟକୀୟ ପଦାର୍ଥ, ଅର୍ଥ ଯୋଗାଇ ଦିଆଯିବା ସଙ୍ଗେ ସଙ୍ଗେ ତା'ର ବିକ୍ରୟ ପାଇଁ ବଜାର ସୃଷ୍ଟି କରୁଛନ୍ତି । ପଞ୍ଚବାର୍ଷିକ ଯୋଜନାରେ କୁଟୀରଶିଳ୍ପର ବିକାଶ ପାଇଁ ଅର୍ଥ ମଞ୍ଜୁର ମଧ୍ୟ ହେଉଛି । ଖଦୀ ଗ୍ରାମୋଦ୍ୟୋଗ ବୋର୍ଡ, ହସ୍ତଶିଳ୍ପ କର୍ପୋରେସନମାନ ଗଠନ କରାଯାଇ କୁଟୀରଶିଳ୍ପକୁ ପ୍ରୋତ୍ସାହନ ଦିଆଯାଉଛି । ଓଡ଼ିଶାରେ ମଧ୍ୟ ଅନୁରୂପ ବ୍ୟବସ୍ଥା ହୋଇଛି । ଉତ୍କଳିକା, କଳିଙ୍ଗ କନ୍ୟା, ଖାଉଟି ସମବାୟ କେନ୍ଦ୍ରମାନ

ଖୋଲାଯାଇ କୁଟୀର ଶିଳ୍ପଜାତ ପଦାର୍ଥର ବିକ୍ରୟ ପାଇଁ ବ୍ୟବସ୍ଥା କରାଯାଇଛି । ବର୍ତ୍ତମାନ ସମୟକୁ ଲକ୍ଷ୍ୟକରି ସରକାର କୁଟୀରଶିଳ୍ପର ପ୍ରସାର ପାଇଁ ପ୍ରଶିକ୍ଷଣ କେନ୍ଦ୍ର ଖୋଲି ଲୋକମାନଙ୍କୁ ତାଲିମ ପ୍ରଦାନ କଲେ ଏହା ଅଧିକ ଜନପ୍ରିୟ ହୋଇପାରିବ । ଏହାଦ୍ୱାରା ମଧ୍ୟ ବହୁପରିମାଣରେ ବେକାର ଯୁବକଯୁବତୀମାନେ ନିଯୁକ୍ତି ପାଇପାରିବେ । ଋଣପ୍ରଦାନ, କାରିଗରୀ ପ୍ରଶିକ୍ଷଣ, ଆଧୁନିକ ଯନ୍ତ୍ରପାତି ଯୋଗାଣ ଓ ବଜାର ସୃଷ୍ଟି ମାଧ୍ୟମରେ କୁଟୀର ଶିଳ୍ପକୁ ଅଧିକ ଲୋକପ୍ରିୟ କରାଯାଇପାରିବ ।

ଭାରତ ପରି ଏକ ବିଶାଳ ଜନବହୁଳ ଦେଶରେ କୁଟୀର ଶିଳ୍ପର ବିକାଶ ଅତ୍ୟନ୍ତ ଜରୁରୀ । ଏହାଦ୍ୱାରା ଘରେ ଅବସର ସମୟରେ ସ୍ତ୍ରୀ, ପୁରୁଷ, ବେକାର ଯୁବକଯୁବତୀ କିଛି ଅର୍ଥ ଆୟ କରିବାକୁ ସମର୍ଥ ହୋଇପାରିବେ । ଓଡ଼ିଶା ପରି ଏକ ଦରିଦ୍ର ଦେଶରେ ଏହି ଶିଳ୍ପ ବହୁପରିମାଣରେ କାର୍ଯ୍ୟ ଯୋଗାଇଦେଇ ଜନସାଧାରଣଙ୍କୁ ସ୍ୱାବଲମ୍ବନଶୀଳ କରିବାରେ ସାହାଯ୍ୟ କରିପାରିବ । ଗ୍ରାମାଞ୍ଚଳର ବିକାଶ ପାଇଁ କୁଟୀରଶିଳ୍ପର ପ୍ରସାର ଅତୀବ ଜରୁରୀ । ବର୍ତ୍ତମାନ ମଧ୍ୟ ଓଡ଼ିଶାରେ ଯେଉଁମାନେ କୁଟୀରଶିଳ୍ପ ଉପରେ କାର୍ଯ୍ୟରତ, ସେମାନଙ୍କ ନିର୍ମିତ ପଦାର୍ଥକୁ ବିଭିନ୍ନ ପ୍ରଦର୍ଶନୀରେ ଦେଖାଇ ଓ ସେମାନଙ୍କୁ ଆର୍ଥିକ ସାହାଯ୍ୟ ଯୋଗାଇଦେଇ ତାହାକୁ ଲୋକପ୍ରିୟ କରିବା ଉଚିତ । ଜନସଚେତନତା ବୃଦ୍ଧି ପାଇଲେ ଏବଂ ସରକାର ଅନୁକୂଳ ବାତାବରଣ ସୃଷ୍ଟି କଲେ କୁଟୀରଶିଳ୍ପ ଯୋଜନାଟି ଗାନ୍ଧିଜୀଙ୍କ ସ୍ୱପ୍ନକୁ ଯେ ସାକାର କରିପାରିବ, ଏଥିରେ ତିଳେମାତ୍ର ଦ୍ୱିଧା ନାହିଁ ।

●

## ଓଡ଼ିଶାର ଯନ୍ତ୍ରଶିଳ୍ପ ଓ ହସ୍ତଶିଳ୍ପ

**(ଉପକ୍ରମ, ଯନ୍ତ୍ରଶିଳ୍ପ ଓ ଏହାର ଉପଯୋଗିତା, ହସ୍ତଶିଳ୍ପର ଆବଶ୍ୟକତା, ପଞ୍ଚାୟତ ଶିଳ୍ପର ଲକ୍ଷ୍ୟ, ଆର୍ଥିକ ବିକାଶରେ ଏମାନଙ୍କର ଭୂମିକା, ଉପସଂହାର)**

ଶିଳ୍ପର ବିକାଶ ଦେଶର ସମୃଦ୍ଧିର ସହାୟକ । ଯେକୌଣସି ଦେଶର ଆର୍ଥିକ ପ୍ରଗତି ପାଇଁ ଶିଳ୍ପମାନଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଓଡ଼ିଶାରେ ସଂପ୍ରତି କେତେକ ଯନ୍ତ୍ରଶିଳ୍ପ ଓ ହସ୍ତଶିଳ୍ପ କାର୍ଯ୍ୟକାରୀ ହେଉଛି । ଯନ୍ତ୍ରଶିଳ୍ପ ପାଇଁ ପ୍ରଚୁର ଅର୍ଥ, ପ୍ରଭୂତ କଞ୍ଚାମାଲ ଏବଂ ଅଧିକ ସ୍ଥାନର ଆବଶ୍ୟକତା ଥିବା ସମୟରେ କୁଟୀର ଶିଳ୍ପ ସ୍ୱଳ୍ପ ଅର୍ଥରେ ସ୍ଥାପିତ ହୋଇପାରେ । ମାତ୍ର ଆର୍ଥିକ ସମୃଦ୍ଧି ପାଇଁ ଉଭୟର ଅବଦାନ ଅତୁଳନୀୟ । ସ୍ୱାଧୀନତା ପୂର୍ବରୁ ଓଡ଼ିଶାରେ କିଛି ପରିମାଣରେ ହସ୍ତଶିଳ୍ପର ପ୍ରାଧାନ୍ୟ ରହିଥିଲା । ଇଂରେଜମାନଙ୍କ ରାଜତ୍ୱ କାଳରେ ଓଡ଼ିଶାରେ ଭାରୀଶିଳ୍ପର ବିକାଶ ନିମିତ୍ତ କେତେକ ପଦକ୍ଷେପ ଗ୍ରହଣ କରାଯାଇଥିଲା । ଅତୀତରେ ଉତ୍କୃଷ୍ଟ କଳାର ଦେଶ ରୂପେ ଓଡ଼ିଶା ଖ୍ୟାତି ଲାଭ କରିଥିଲା । ଏହି କଳାର ପରାକାଷ୍ଠା ପ୍ରଦର୍ଶିତ ହୋଇଥିଲା ହସ୍ତଶିଳ୍ପ ମାଧ୍ୟମରେ । ଶିଳ୍ପୀ ତା'ର ନିହାଣ ମୁନରେ ପ୍ରସ୍ତର ଉପରେ ଖୋଦିତ କରୁଥିଲା ଅପୂର୍ବ କଳାକୃତି । କୁମ୍ଭାର, କମାର ଆଦି ମାଟି ଏବଂ ଲୁହାରେ ଗୃହୋପଯୋଗୀ

ଉପକରଣମାନ ପ୍ରସ୍ତୁତ କରୁଥିଲେ । ତନ୍ତୀ ସୁନ୍ଦର କାରୁକାର୍ଯ୍ୟପୂର୍ଣ୍ଣ ବିଭିନ୍ନ ପ୍ରକାର ଲୁଗା, ଗାମୁଛା, ଧୋତି ଆଦି ବୟନ କରୁଥିଲେ । ଯନ୍ତ୍ରଶିଳ୍ପର ବିକାଶ ପରେ ହସ୍ତଶିଳ୍ପଗୁଡ଼ିକର ଗୁରୁତ୍ୱ ହ୍ରାସ ପାଇଲା । ମାତ୍ର ଗାନ୍ଧିଜୀ ପ୍ରଥମରୁ ହିଁ ହସ୍ତଶିଳ୍ପ ପ୍ରତି ନିଜର ସହାନୁଭୂତି ପ୍ରଦର୍ଶନ କରିଥିଲେ । ତାଙ୍କ ଯୋଜନାକୁ ସାକାର କରିବା ପାଇଁ ସ୍ୱାଧୀନତା ପରେ ବିଭିନ୍ନ ପଞ୍ଚବାର୍ଷିକ ଯୋଜନାରେ ଏହାର ବିକାଶ ନିମିତ୍ତ ଗୁରୁତ୍ୱ ପ୍ରଦାନ କରାଯାଇଛି । ଗ୍ରାମୀଣ ବେକାର ଯୁବକମାନଙ୍କର ଆତ୍ମନିଯୁକ୍ତି ପାଇଁ ହସ୍ତଶିଳ୍ପ ନିଶ୍ଚିତ ଭାବରେ ଏକ ସୁନ୍ଦର ଯୋଜନା । ତେବେ ଦେଶର ସାମୂହିକ ବିକାଶରେ ଉଭୟର ଭୂମିକା ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ ଓଡ଼ିଶାରେ ବର୍ତ୍ତମାନ ଉଭୟ ଶିଳ୍ପ ବିକାଶ ପଥରେ ଆଗେଇ ଚାଲିଛି ।

ଯନ୍ତ୍ରଶିଳ୍ପର ଉପଯୋଗିତା ବର୍ତ୍ତମାନ ବିଶ୍ୱର ସମସ୍ତ ରାଷ୍ଟ୍ର ଅନୁଭବ କରିସାରିଲେଣି । ସେଥିପାଇଁ ଏହା ଉପରେ ଅଧିକ ଗୁରୁତ୍ୱ ଆରୋପ କରାଯାଉଛି । ସ୍ୱାଧୀନତା ପୂର୍ବରୁ ଓଡ଼ିଶାରେ ବ୍ରଜରାଜନଗରର କାଗଜକଳ, ରାଜଗାଙ୍ଗପୁରର ସିମେଣ୍ଟ କାରଖାନା, ବାରଙ୍ଗର କାଚକାରଖାନା ପ୍ରଭୃତି ଅଳ୍ପ କେତେକ ଯନ୍ତ୍ରଶିଳ୍ପ ପ୍ରତିଷ୍ଠା ହୋଇଥିଲା । ସ୍ୱାଧୀନତା ପରେ ଦେଶୀୟ ସରକାର ନିଜକୁ ବିଶ୍ୱର ଅନ୍ୟାନ୍ୟ ଦେଶ ସହିତ ସମକକ୍ଷ କରିବା ପାଇଁ ଏହାର ବିକାଶ ନିମିତ୍ତ ଧ୍ୟାନ ପ୍ରଦାନ କଲେ । ଡୁଡୁମା ଏବଂ ହୀରାକୁଦ ଯୋଜନାରୁ ବିଦ୍ୟୁତ ଶକ୍ତି ଉତ୍ପାଦନ କରାଯାଇ ବିଭିନ୍ନ ଶିଳ୍ପାଞ୍ଚଳକୁ ଯୋଗାଇ ଦିଆଗଲା । ତାଳଚେରଠାରେ ମଧ୍ୟ ବିଦ୍ୟୁତ୍ ଉତ୍ପାଦନ ନିମିତ୍ତ ଏକ କେନ୍ଦ୍ର ସ୍ଥାପିତ ହେଲା । ରାଉରକେଲାଠାରେ ଏକ ବୃହତ୍ ଇସ୍ପାତ୍ କାରଖାନା ପ୍ରତିଷ୍ଠିତ ହୋଇ ଓଡ଼ିଶାର ବହୁଲୋକ ନିଯୁକ୍ତି ପାଇଲେ । ଏତଦ୍‌ବ୍ୟତୀତ ତାଳଚେରର ସାରକାରଖାନା, ଚୌଦ୍ୱାର ଓ ରାୟଗଡ଼ାର କାଗଜକଳ, ହୀରାକୁଦର ଆଲୁମିନିୟମ ଦ୍ରବ୍ୟ କାରଖାନା, କୋରାପୁଟର ଦାମନଯୋଡ଼ି ଓ ଅନୁଗୁଳର ଆଲୁମିନିୟମ କାରଖାନା, ପାରାଦ୍ୱୀପର ସାରକାରଖାନା, ମଞ୍ଚେଶ୍ୱରର ରେଳଡବା କାରଖାନା, ବଡ଼ବିଲର ଲୁହା କାରଖାନା, ତାଳଚେରର ଥର୍ମାଲ ଷ୍ଟେସନ, ଯାଜପୁରରୋଡ଼ର ଫେରୋକ୍ରମ ଶିଳ୍ପ, ସୁକିନ୍ଦାର ନିକେଲ ଶିଳ୍ପ ଆଦି ନିର୍ମିତ ହୋଇ ଶିଳ୍ପ କ୍ଷେତ୍ରରେ ଓଡ଼ିଶାକୁ କେତେକାଂଶ ଆଗେଇ ନେଇଛି । ଏହି ଶିଳ୍ପଗୁଡ଼ିକର ପ୍ରତିଷ୍ଠା ହେବା ଦ୍ୱାରା ଓଡ଼ିଶାର ବହୁଲୋକ କାର୍ଯ୍ୟ ପାଇଛନ୍ତି । ଦେଶର ଆର୍ଥିକ ସମୃଦ୍ଧି ଘଟିଛି । ବେକାର ଯୁବକ ଉପଯୁକ୍ତ ତାଲିମ୍ ଗ୍ରହଣ କରି ଏଥିରେ ନିଯୁକ୍ତି ପାଇଛନ୍ତି । ଶିଳ୍ପାଞ୍ଚଳମାନଙ୍କରେ ଅନେକ ଲୋକ ଛୋଟବଡ଼ ବ୍ୟବସାୟ କରି ଜୀବିକା ନିର୍ବାହ କରୁଛନ୍ତି । ଶିକ୍ଷା ଏବଂ ସ୍ୱାସ୍ଥ୍ୟ ପାଇଁ ଦୃଷ୍ଟି ପ୍ରଦାନ କରାଯାଇଛି । ଅବଶ୍ୟ ଶିଳ୍ପାଞ୍ଚଳମାନଙ୍କରେ ପରିବେଶ ପ୍ରଦୂଷଣ ଯୋଗୁଁ ସ୍ୱାସ୍ଥ୍ୟର ଅବନତି ଘଟୁଛି । ଏଥିପାଇଁ ଯେଉଁପ୍ରକାର ପଦକ୍ଷେପ ଗ୍ରହଣ କରାଯିବା ଆବଶ୍ୟକ, ତାହା କରାଯାଇ ପାରୁ ନାହିଁ । ଏହା ସତ୍ତ୍ୱେ ଦେଶର ବିକାଶରେ ଯନ୍ତ୍ରଶିଳ୍ପର ଅବଦାନକୁ ଅସ୍ୱୀକାର କରାଯାଇ ନ ପାରେ ।

ଯନ୍ତ୍ରଶିଳ୍ପର ବିକାଶ ପୂର୍ବରୁ କୁଟୀର ଶିଳ୍ପ ବା ହସ୍ତଶିଳ୍ପ ଥିଲା ଏ ଦେଶର ଆର୍ଥିକ ପ୍ରଗତିର ମାନଦଣ୍ଡ । ଓଡ଼ିଶାର କାରିଗରକୁଳ ଏହି ହସ୍ତଶିଳ୍ପ ମାଧ୍ୟମରେ ସେମାନଙ୍କର ପରାକାଷ୍ଠା ପ୍ରଦର୍ଶନ କରିଥିଲେ । ଓଡ଼ିଶାର ସାଧବଗଣ ହସ୍ତଶିଳ୍ପଜାତ ପଦାର୍ଥକୁ ନେଇ ଜାଭା, ବାଲି,

ବୋର୍ଣ୍ଣିଓ, ସୁମାତ୍ରା ପ୍ରଭୃତି ଦେଶରେ ଏହାର ପ୍ରଚାର କରାଇଥିଲେ । ଓଡ଼ିଶାର ହସ୍ତଶିଳ୍ପ ପଦାର୍ଥମାନଙ୍କ ମଧ୍ୟରେ ମୁଖ୍ୟ ହେଉଛି କଟକର ସୁନାରୁପା ତାରକସି ଓ ଶିଙ୍ଗକାମ, ଭୁବନ, କଣ୍ଟିଲୋ, ବାଲକାଟି, ରେମୁଣା ଆଦି ସ୍ଥାନର କଂସାବାସନ, ସମ୍ବଲପୁରର ତନ୍ତଶାଢ଼ି, ମାଣିଆବନ୍ଧ ଧୋତି, ନୂଆପାଟଣା, ବ୍ରହ୍ମପୁରର ପାଟ, ପିପିଲିର ଚାନ୍ଦୁଆ, ଖୋର୍ଦ୍ଧାର ଗାମୁଛା, ନୀଳଗିରିର ପଥର ବାସନ, ପୁରୀର ଶଙ୍ଖକାମ, ପାରଳାଖେମୁଣ୍ଡିର ବେତ କାମ ଆଦି ପ୍ରଧାନ । ଓଡ଼ିଶା ବାହାରେ ଏବଂ ଭିତରେ ଉପରୋକ୍ତ ଜିନିଷଗୁଡ଼ିକ ବହୁପରିମାଣରେ ଲୋକପ୍ରିୟ ହୋଇପାରିଥିଲା । ଏବେ ମଧ୍ୟ ଲୋକମାନେ ଏହି ଜିନିଷଗୁଡ଼ିକୁ ବହୁପରିମାଣରେ ଆଦର କରୁଛନ୍ତି । କିଛି ପରିମାଣରେ ସରକାରୀ ପ୍ରୋତ୍ସାହନ ମିଳୁଛି । ଖଦିବୋର୍ଡ ମାଧ୍ୟମରେ ଖଦି ଉତ୍ପାଦନ କରାଯାଇ ବିକ୍ରିର ବ୍ୟବସ୍ଥା ହେଉଛି । ଏହି ହସ୍ତଶିଳ୍ପ ପାଇଁ ଅଧିକ ପରିମାଣର ଅର୍ଥ କିମ୍ବା ସ୍ଥାନର ଆବଶ୍ୟକତା ନାହିଁ । ଗୃହ ମଧ୍ୟରେ ରହି ଯେକୌଣସି ବ୍ୟକ୍ତି ହସ୍ତଶିଳ୍ପର ପରିଚାଳନା କରିପାରିବ । ଗ୍ରାମାଞ୍ଚଳରେ ବେକାର ଜୀବନ ବିତାଉଥିବା ଯୁବସଂପ୍ରଦାୟ ଏହାଦ୍ୱାରା ଅନେକ ପରିମାଣରେ ଆତ୍ମନିଯୁକ୍ତି ଲାଭ କରି ନିଜକୁ ସ୍ୱାବଲମ୍ବନଶୀଳ କରିପାରିବେ । ଏବେ ସରକାର ଏହାର ପରିଚାଳନା ନିମିତ୍ତ ଗ୍ରାମମାନଙ୍କୁ ବିଦ୍ୟୁତ ଶକ୍ତି ଯୋଗାଇ ଦେଲେଣି । ଏହାଦ୍ୱାରା ପରିଶ୍ରମ ମଧ୍ୟ କିଛି ପରିମାଣରେ ଊଣା ହୋଇଛି । ଓଡ଼ିଶାର କେତେକ ସ୍ଥାନରେ ଛୋଟ ଛୋଟ ଶିଳ୍ପପାଟଣା ସୃଷ୍ଟି ଲାଭ କରିଛି । କେନ୍ଦ୍ରାପଡ଼ା, ଝାରସୁଗୁଡ଼ା, କଟକ, ଜଗତପୁର, ବ୍ରହ୍ମପୁର, ରାଉରକେଲା, ପାରାଦ୍ୱୀପ ଆଦି ସ୍ଥାନରେ କ୍ଷୁଦ୍ରଶିଳ୍ପମାନ ଗଢ଼ି ଉଠିଛି । ବର୍ତ୍ତମାନ ଏହାର ସଂଖ୍ୟା ପ୍ରାୟ ୩୫ ରେ ପହଞ୍ଚି ସାରିଲାଣି । ଭବିଷ୍ୟତରେ ସଂଖ୍ୟା ବୃଦ୍ଧି ପାଇବ ବୋଲି ଆଶା କରାଯାଉଛି । କଟକର ଶିଳ୍ପପାଟଣାଟି ମଧୁସୂଦନଙ୍କ ନାମାନୁଯାୟୀ 'ମଧୁପାଟଣା' ନାମରେ ନାମିତ । ଏଠାରେ ବାର୍ଣ୍ଣିସ୍, ବ୍ୟାଟେରୀ, ବିଭିନ୍ନ ରଙ୍ଗ, ସର୍ଭେ ଯନ୍ତ୍ର, କାଳି ଆଦି ନିର୍ମିତ ହେଉଛି । ଏହିସବୁ ଶିଳ୍ପର ପ୍ରତିଷ୍ଠା ଦ୍ୱାରା ସାମାନ୍ୟ ପରିମାଣରେ ବେକାର ସମସ୍ୟା ଦୂର ହୋଇପାରିଛି । କିଛି ପରିମାଣରେ ମଧ୍ୟ ଆର୍ଥିକ ପ୍ରଗତି ହୋଇଛି । ସରକାରଙ୍କ ଉପଯୁକ୍ତ ପ୍ରୋତ୍ସାହନ ଓ ଆର୍ଥିକ ସାହାଯ୍ୟ ଲାଭ କଲେ ଏହା ନିଶ୍ଚିତ ଭାବରେ ଅଗ୍ରଗତି କରିପାରିବ । ବର୍ତ୍ତମାନ ହସ୍ତଶିଳ୍ପ ବା କୁଟୀରଶିଳ୍ପର ପୁନର୍ବିନ୍ୟାସ କରିବା ଆବଶ୍ୟକ ପଡୁଛି । ଲୋକମାନଙ୍କ ରୁଚି ଏବଂ ଚାହିଦା ପୂରଣ କରିପାରିଲେ ଏହା ନିଶ୍ଚିତ ଭାବରେ ଲୋକପ୍ରିୟ ହୋଇପାରିବ ଏବଂ ଗାନ୍ଧିଜୀଙ୍କ ସ୍ୱପ୍ନ ସାକାର ହେବ ।

ସରକାରଙ୍କ ଯୋଜନାନୁଯାୟୀ ପ୍ରତି ଗ୍ରାମପଞ୍ଚାୟତରେ ଗୋଟିଏ ଗୋଟିଏ କ୍ଷୁଦ୍ରଶିଳ୍ପ ପ୍ରତିଷ୍ଠା କରିବା ପଞ୍ଚାୟତଶିଳ୍ପର ମୁଖ୍ୟ ଲକ୍ଷ୍ୟ । ଏହି ଶିଳ୍ପ ଆୟରେ ସ୍ଥାନୀୟ ଲୋକମାନଙ୍କର ବିଭିନ୍ନ ସମସ୍ୟା ପୂରଣ କରାଯିବା ପାଇଁ ସ୍ଥିର କରାଯାଇଛି । ଏହାଦ୍ୱାରା ପଞ୍ଚାୟତ କିଛି ଲୋକ ନିଯୁକ୍ତି ଲାଭ କରିପାରିବେ ଏବଂ ପଞ୍ଚାୟତର ବିଭିନ୍ନ ଖର୍ଚ୍ଚକୁ ଏଥିରେ ଭରଣା କରାଯିବ । ଜନସାଧାରଣ ବିଭିନ୍ନ ସମୟରେ ଏଥର ଆୟକୁ ନିଜ ଅଞ୍ଚଳର ଉନ୍ନତି ପାଇଁ ବ୍ୟୟ କରିପାରିବେ । ସରକାରଙ୍କ ଉକ୍ତ ଯୋଜନାଟି ସମୟୋପଯୋଗୀ ହୋଇଥିଲେ ହେଁ, ଆର୍ଥିକ ଦୁରବସ୍ଥା ପାଇଁ ତାହା କାର୍ଯ୍ୟକାରୀ ହୋଇପାରି ନାହିଁ । ତଥାପି ଯୋଜନା ମଧ୍ୟରେ ଏହା ସ୍ଥାନ ଲାଭ କରିଥିବାରୁ, ଯେକୌଣସି ମୁହୂର୍ତ୍ତରେ ଏହାର ସ୍ଥାପନା ହେବାର ସମ୍ଭାବନା ରହିଛି ।

କ୍ଷୁଦ୍ରଶିଳ୍ପ, ଯନ୍ତ୍ରଶିଳ୍ପ ଓ ହସ୍ତଶିଳ୍ପ ଦେଶର ସମୃଦ୍ଧି ପାଇଁ ଅତ୍ୟନ୍ତ ଆବଶ୍ୟକ । ଯନ୍ତ୍ରଶିଳ୍ପର ବିକାଶ ଦ୍ୱାରା ଓଡ଼ିଶା ଅନ୍ୟାନ୍ୟ ପ୍ରଦେଶ ସହିତ ପ୍ରତିଯୋଗିତା କରିବାକୁ ସମର୍ଥ ହେବା ବେଳେ, ହସ୍ତଶିଳ୍ପ ଏବଂ କ୍ଷୁଦ୍ରଶିଳ୍ପ ପ୍ରତିଷ୍ଠା କରି ଆଞ୍ଚଳିକ ଅଭାବ ପୂରଣ କରିପାରିବ ଏବଂ ସ୍ୱଳ୍ପ ପରିମାଣରେ ହେଲେ ମଧ୍ୟ ଆତ୍ମନିଯୁକ୍ତିରେ ସହାୟତା କରିପାରିବ । ଯନ୍ତ୍ରଶିଳ୍ପର ପ୍ରସାର ଦ୍ୱାରା ଯେଉଁ ଉତ୍କଳୀୟ କାରିଗରମାନଙ୍କର କଳାକୁଶଳତା ମ୍ଳାନ ହୋଇପଡୁଛି, ଏହାଦ୍ୱାରା ତା'ର ପୁଣି ପୁନର୍ଜୀବନ ଲାଭ ହୋଇପାରିବ । ବିଂଶ ଶତାବ୍ଦୀ ବିଜ୍ଞାନର ଯୁଗ । ଏ ଯୁଗରେ ଯନ୍ତ୍ରଶିଳ୍ପର ବିକାଶ ଅପରିହାର୍ଯ୍ୟ । କାରଣ ଆର୍ଥିକ ବିକାଶ ନିମିତ୍ତ ଏହାର ଜରୁରୀ ଆବଶ୍ୟକତା ରହିଛି । ମାତ୍ର ଏହା ସତ୍ତ୍ୱେ ଦେଶର ଜନସାଧାରଣଙ୍କ ବିକାଶ ଓ ଆର୍ଥିକ ସ୍ୱଚ୍ଛଳତା ପାଇଁ ହସ୍ତଶିଳ୍ପ ପ୍ରତିଷ୍ଠାର ଆବଶ୍ୟକତା ମଧ୍ୟ ରହିଛି । ସ୍ୱଳ୍ପ ପୁଞ୍ଜି ବିନିମୟରେ ଏହି ଲକ୍ଷ୍ୟ ସାଧିତ ହେବାର ଆଶା ଥିବାରୁ ସରକାର ଏ କ୍ଷେତ୍ରରେ ଅଧିକ ଯତ୍ନଶୀଳ ହେବା ଆବଶ୍ୟକ ।

ପ୍ରାକୃତିକ ସମ୍ପଦରେ ଭରପୂର ଓଡ଼ିଶାର ଦାରିଦ୍ର୍ୟ ନିଶ୍ଚିତ ଭାବରେ ଦୁର୍ଭାଗ୍ୟର ବିଷୟ । ଓଡ଼ିଶାର ଜଙ୍ଗଲମାନଙ୍କରେ ପରିପୂର୍ଣ୍ଣ ରହିଛି ବହୁ ମୂଲ୍ୟବାନ ପଦାର୍ଥ । ଖଣିଜ ସମ୍ପଦର ମଧ୍ୟ ଅଭାବ ନାହିଁ । ଜଙ୍ଗଲରୁ ବହୁପରିମାଣରେ ଶିଙ୍ଗ, ହାତୀଦାନ୍ତ, କାଠ, ଲାଖ, ମହୁ, ଝୁଣା, ବେତ, ଚମଡ଼ା, ବାଉଁଶ, ହରିଡ଼ା, ବାହାଡ଼ା ଆଦି ଭରି ରହିଛି । ଏହା ସାହାଯ୍ୟରେ ଓଡ଼ିଶାରେ ବହୁପରିମାଣରେ ହସ୍ତଶିଳ୍ପଜାତ ପଦାର୍ଥ ଉତ୍ପନ୍ନ କରାଯାଇ ବିକ୍ରି ହୋଇପାରିବ । ହସ୍ତଶିଳ୍ପର ଚାହିଦା ଏବେ ମଧ୍ୟ ଊଣା ହୋଇ ନାହିଁ । ତେଣୁ ଗ୍ରାମାଞ୍ଚଳରେ ବସବାସ କରୁଥିବା ବ୍ୟକ୍ତି ଏହାର ସୁଯୋଗ ନେବା ଆବଶ୍ୟକ । ଏତଦ୍ ବ୍ୟତୀତ ଖଣିଜ ସମ୍ପଦକୁ ଆଖି ଆଗରେ ରଖି ଓଡ଼ିଶାରେ ଆଉ କେତୋଟି ଯନ୍ତ୍ରଶିଳ୍ପ ପ୍ରତିଷ୍ଠା କରାଯିବାର ଆବଶ୍ୟକତା ରହିଛି । ଏହାଦ୍ୱାରା ଓଡ଼ିଶାର ଆର୍ଥିକ ପ୍ରଗତି ତ୍ୱରାନ୍ୱିତ ହୋଇପାରିବ ଏବଂ ଜନସାଧାରଣଙ୍କ ନିଯୁକ୍ତି ଲାଭ କରି ସେମାନଙ୍କର ଆର୍ଥିକ ଅବସ୍ଥାରେ ଉନ୍ନତି ସାଧନ କରିପାରିବେ ।

●

## ଓଡ଼ିଶାର ଚଳଚ୍ଚିତ୍ର ଶିଳ୍ପ

**(ଉପକ୍ରମ, ଚଳଚ୍ଚିତ୍ର ବିକାଶରେ ଓଡ଼ିଆ ଚଳଚ୍ଚିତ୍ର, ଚଳଚ୍ଚିତ୍ରର ସାମାଜିକ ଦାୟିତ୍ୱ, ବିକାଶ ପାଇଁ ସରକାରୀ ପ୍ରୋତ୍ସାହନ, ଓଡ଼ିଆ ଚଳଚ୍ଚିତ୍ରର ଭବିଷ୍ୟତ, ଉପସଂହାର)**

ଥରେ ସିସେରୋ କହିଥିଲେ 'Drama is a copy of life, a mirror of custom, a reflection of truth' ଡ୍ରାମା ଚଳଚ୍ଚିତ୍ରର ରୂପ ଗ୍ରହଣ କରିବା ପାଇଁ ଅନେକ ଦିନ ସମୟ ନେଇଛି । ଚଳଚ୍ଚିତ୍ରର ବିକାଶ ପରେ ଡ୍ରାମା ତା'ର ପୂର୍ବ ମର୍ଯ୍ୟାଦା ଓ ଲୋକପ୍ରିୟତା ହରାଇଛି । ଚଳଚ୍ଚିତ୍ର ଆଧୁନିକ ଜଗତକୁ ବିଜ୍ଞାନର ଏକ ଅନୁପମ ଅବଦାନ । ମଣିଷ ମନରୁ କ୍ଳାନ୍ତି ଅପହରଣ କରି ଏହା ଭରିଦେଇଥାଏ ଆନନ୍ଦ । ଗୋଟିଏ ଭଲ ଚଳଚ୍ଚିତ୍ର ସମାଜକୁ ବହୁ କିଛି

ଶିକ୍ଷା ଦେଇପାରେ । ତେଣୁ ଜନଶିକ୍ଷା ପାଇଁ ଏହା ଏକ ଉତ୍ତମ ମାଧ୍ୟମ । ମାତ୍ର ବ୍ୟବସାୟିକ ଦୃଷ୍ଟିକୋଣରୁ ନିର୍ମିତ ହେଉଥିବା ଚଳଚ୍ଚିତ୍ରଗୁଡ଼ିକ ସମାଜର ଏହି ଦାୟିତ୍ୱ ଗ୍ରହଣରେ ଅସମର୍ଥ ହେଉଛି । ସମାଜ ଓ ସଂସ୍କୃତି ସହିତ ସମ୍ପର୍କ ସ୍ଥାପନ କରିଥିବା ଚଳଚ୍ଚିତ୍ରଗୁଡ଼ିକ କୌଣସି ସମୟରେ ନିଜର ମର୍ଯ୍ୟାଦା ହରାଇ ନ ଥାଏ । ବର୍ତ୍ତମାନ ବିଶ୍ୱରେ ଚଳଚ୍ଚିତ୍ର ଏକ ଶିଳ୍ପର ମାନ୍ୟତା ଲାଭ କରିଛି । ଭାରତରେ ଏହାର ପ୍ରସାର ଓ ପ୍ରଚାରକୁ ଲକ୍ଷ୍ୟ କଲେ, ଏହାର ଲୋକପ୍ରିୟତା ସହଜରେ ଅନୁମାନ କରାଯାଇ ପାରିଥାଏ । ବିଭିନ୍ନ ଶିଳ୍ପ ମଧ୍ୟରେ ଭାରତର ଚଳଚ୍ଚିତ୍ର ଶିଳ୍ପର ସ୍ଥାନ ଅଷ୍ଟମରେ । ଚଳଚ୍ଚିତ୍ର ନିର୍ମାଣ କ୍ଷେତ୍ରରେ ଭାରତ ବର୍ତ୍ତମାନ ବିଶ୍ୱରେ ପ୍ରଥମ ସ୍ଥାନ ଅଧିକାର କରିଛି । ପ୍ରାୟ ୩୩ ଟି ଭାଷାରେ ଭାରତରେ ଚଳଚ୍ଚିତ୍ର ନିର୍ମିତ ହେଉଛି । ବର୍ତ୍ତମାନ ପ୍ରାୟ ୩ ହଜାର କୋଟି ଟଙ୍କାରୁ ଉର୍ଦ୍ଧ୍ୱ ଭାରତର ଚଳଚ୍ଚିତ୍ର ଶିଳ୍ପ । ୧୯ ପ୍ରକାର ବିଷୟକୁ ନେଇ ଭାରତରେ ଚଳଚ୍ଚିତ୍ର ନିର୍ମିତ ହେଉଛି । ସର୍ବଭାରତୀୟ ସ୍ତରରେ ଚଳଚ୍ଚିତ୍ର ଯେଉଁ ପରିମାଣରେ ବୃଦ୍ଧି ଲାଭ କରୁଛି, ଓଡ଼ିଶାରେ ଅନୁରୂପ ବୃଦ୍ଧି ହୋଇପାରୁ ନାହିଁ । ତେଣୁ ଚଳଚ୍ଚିତ୍ର ଶିଳ୍ପ କ୍ଷେତ୍ରରେ ଓଡ଼ିଶା ବହୁ ପଛରେ ପଡ଼ିଯାଇଛି ।

ଭାରତରେ ସର୍ବପ୍ରଥମେ ୧୮୧୬ ମସିହା ଜୁଲାଇ ମାସରେ ବମ୍ବେ ସହରରେ ୱାଟ୍‌ସନ୍ ହୋଟେଲରେ ଲୁମିଜୟର ଭ୍ରାତାଦ୍ୱୟଙ୍କର ଛ’ଟି ଲଘୁ ସିନେମା ଏକଘଣ୍ଟା ଧରି ପ୍ରଦର୍ଶିତ ହୋଇଥିଲା । ଭାରତୀୟ ଚଳଚ୍ଚିତ୍ର ପ୍ରଥମେ ୧୯୧୩ ମସିହା ମଇ ୩ ତାରିଖରେ ବମ୍ବେର କରୋନେସନ ପ୍ରେକ୍ଷାଳୟରେ ପ୍ରଦର୍ଶିତ ହୋଇଥିଲା । ଧୂଳିରାଜ ଗୋବିନ୍ଦ ଫାଲ୍‌କେ ଥିଲେ ଏହାର ନିର୍ମାଣକର୍ତ୍ତା । ଚଳଚ୍ଚିତ୍ରର ନାମ ଥିଲା ‘ରାଜା ହରିଶ୍ଚନ୍ଦ୍ର’ । ଏକ ଘଣ୍ଟା ସମୟର ଏହି ନିର୍ବାକ୍ ଚଳଚ୍ଚିତ୍ର ପାଇଁ ଖର୍ଚ୍ଚ ହୋଇଥିଲା ୧୦ ହଜାର ଟଙ୍କା । ୧୯୩୦ ମସିହା ମଧ୍ୟରେ ଭାରତରେ ପ୍ରାୟ ୧୨୦୦ ନିର୍ବାକ୍ ଚଳଚ୍ଚିତ୍ର ନିର୍ମିତ ହୋଇପାରିଥିଲା । ୧୯୩୧ ମସିହା ମାର୍ଚ୍ଚ ୧୪ ତାରିଖରେ ୪୦ ହଜାର ଟଙ୍କା ବ୍ୟୟରେ ପ୍ରଥମ ସବାକ୍ ଚଳଚ୍ଚିତ୍ର ‘ଆଲାମ୍ ଆରା’ ବମ୍ବେର ମାଜେଷ୍ଟିକ୍ ପ୍ରେକ୍ଷାଳୟରେ ପ୍ରଦର୍ଶିତ ହୋଇଥିଲା । ଏହା ପରେ ପରେ ଆଞ୍ଚଳିକ ଭାଷାରେ ଚଳଚ୍ଚିତ୍ର ନିର୍ମାଣ ପାଇଁ ଲୋକମାନଙ୍କ ମନରେ ଆଗ୍ରହ ସୃଷ୍ଟି ହେଲା । ୧୯୩୬ ମସିହା ଏପ୍ରିଲ ମାସ ୨୮ ତାରିଖ ଦିନ ପୁରୀର ‘ଲକ୍ଷ୍ମୀ ଟକିଜ୍ ହାଉସ୍’ ରେ ପ୍ରଥମ ଓଡ଼ିଆ ଚଳଚ୍ଚିତ୍ର ‘ସୀତା ବିବାହ’ ମୁକ୍ତି ଲାଭ କଲା । ପୁରୀର ମୋହନ ସୁନ୍ଦରଦେବ ଗୋସ୍ୱାମୀ କଲିକତାର କାଳୀ ଫିଲ୍ମସର ସହାୟତାରେ ଏହାକୁ ନିର୍ମାଣ କରିଥିଲେ । ଏହା ଥିଲା ସବାକ୍ ଚଳଚ୍ଚିତ୍ର । ୧୯୩୬ ରୁ ୧୯୪୮ ମସିହା ମଧ୍ୟରେ ଆଉ କୌଣସି ଓଡ଼ିଆ ଚଳଚ୍ଚିତ୍ର ନିର୍ମିତ ହୋଇ ନ ଥିଲା । ୧୯୪୮ ମସିହାରେ ଦ୍ୱିତୀୟ ଚଳଚ୍ଚିତ୍ର ‘ଲଳିତା’ ପ୍ରସ୍ତୁତ ହୋଇଥିଲା । ବର୍ତ୍ତମାନ ସୁଦ୍ଧା ଆମେ ୪୦୦ ଚଳଚ୍ଚିତ୍ର ସମ୍ପୂର୍ଣ୍ଣ କରିପାରି ନାହୁଁ । ଚଳଚ୍ଚିତ୍ରକୁ ଅଧିକ ଉତ୍ସାହିତ କରିବା ପାଇଁ ୧୯୫୩ ମସିହାରେ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ‘ସରକାରୀ ରାଷ୍ଟ୍ରୀୟ ସମ୍ମାନ’ ସ୍ଥାପନ କରିଥିଲେ । ୧୯୬୦ ମସିହା ପର୍ଯ୍ୟନ୍ତ କୌଣସି ଓଡ଼ିଆ ଚଳଚ୍ଚିତ୍ର ଏହି ପୁରସ୍କାର ପାଇ ନ ଥିଲା । ୧୯୬୦ ମସିହାରେ ‘ଶ୍ରୀଲୋକନାଥ’

ପ୍ରଥମଥର ପାଇଁ ରାଷ୍ଟ୍ରପତି ରୌପ୍ୟ ପଦକ ଲାଭ କରିଥିଲା । ୧୯୮୩ ମସିହାରେ ଦ୍ୱିତୀୟ ସର୍ବୋତ୍ତମ ଚଳଚ୍ଚିତ୍ର ଭାବରେ 'ମାୟାମିରିଗ' ରୌପ୍ୟପଦକ ଏବଂ ୧୯୯୫ ମସିହାରେ 'ମୋକ୍ଷ' ସମ୍ମାନିତ ହୋଇଥିଲା । ଦୁଃଖର ବିଷୟ ଆଞ୍ଚଳିକ ଭାଷା ପାଇଁ ରଖାଯାଇଥିବା ସମ୍ମାନ ଓଡ଼ିଆ ଚଳଚ୍ଚିତ୍ରର ମାନ ନ ଥିବାରୁ ପାଇପାରୁ ନାହିଁ । ଇତି ମଧ୍ୟରେ ଅନେକ ଚଳଚ୍ଚିତ୍ର ନିର୍ମିତ ହୋଇପାରିଛି । ନିର୍ମିତ ହୋଇଥିବା ଚଳଚ୍ଚିତ୍ରମାନଙ୍କ ମଧ୍ୟରେ ଶ୍ରୀଜଗନ୍ନାଥ, କେଦାରଗୌରୀ, ଅମଡ଼ାବାଟ, କା, ଲକ୍ଷ୍ମୀ, ମଲାଜହ୍ନ, ଅଦିନ ମେଘ, ମାଟିର ମଣିଷ, କିଏ କାହାର, ଧରିତ୍ରୀ, କନକଲତା, ବନ୍ଧୁ ମହାନ୍ତି, ମମତା, ମା ଓ ମମତା, ଅଭିମାନ, ଗୌରୀ, ମନଆକାଶ, ମୃଗୟା, ଯାଯାବର, ଶେଷଶ୍ରାବଣ, ଚିହ୍ନାଅଚିହ୍ନା, ଛମାଣ ଆଠଗୁଣ୍ଠ, ଶାସ୍ତି, ଅପରିଚିତ, ସୁନାସଂସାର, ଜୟଦେବ, ଭକ୍ତ ସାଲବେଗ, ଘରସଂସାର, ଜଗାବଳିଆ, ଗୋଜବାୟାଣୀ ଆଦି ଲୋକପ୍ରିୟତା ଅର୍ଜନ କରିପାରିଛି । ମାତ୍ର ଅନ୍ୟାନ୍ୟ ଆଞ୍ଚଳିକ ଭାଷାର ଚଳଚ୍ଚିତ୍ର ସହିତ ଓଡ଼ିଆ ଚଳଚ୍ଚିତ୍ର ପାଦ ମିଳାଇ ଗତିକରିବାକୁ ସମର୍ଥ ହୋଇପାରି ନାହିଁ । ହିନ୍ଦୀ ଚଳଚ୍ଚିତ୍ରର ଅନୁସରଣରେ ନିର୍ମିତ ଓଡ଼ିଆ ଚଳଚ୍ଚିତ୍ରଗୁଡ଼ିକ ଆମ ସମାଜ ଓ ସଂସ୍କୃତି ଠାରୁ ଦୂରେଇ ଯାଉଥିବାରୁ ଏହା ତା'ର କଳାଗତ ଓ ସାମାଜିକ ମୂଲ୍ୟ ହରାଇ ବସୁଛି ।

ଚଳଚ୍ଚିତ୍ରର ସାମାଜିକ ଦାୟିତ୍ୱ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ବ୍ୟବସାୟିକ ଦୃଷ୍ଟିକୋଣରୁ ଚଳଚ୍ଚିତ୍ର ନିର୍ମିତ ହେଲେ, ଅଳ୍ପ ସମୟ ପାଇଁ ହୁଏତ ତାହା ଲୋକସମାଜରେ କିଛିଟା ଚଞ୍ଚଳତା ସୃଷ୍ଟି କରିପାରେ; ମାତ୍ର ତା'ର କଳାଗତ ମୂଲ୍ୟ ରହିପାରିବ ନାହିଁ । ଆମର ଦୈନନ୍ଦିନ ଜୀବନରେ ବହୁ ଅନୁଭୂତି ଲାଭ ହେଉଛି । ଆମ ସମାଜରେ ଏମିତି ଅନେକ ଆଦର୍ଶ ବ୍ୟକ୍ତି ଅଛନ୍ତି, ଯେଉଁମାନଙ୍କଠାରୁ ସମାଜର ବହୁତ କିଛି ଶିକ୍ଷା କରିବାର ରହିଛି । ସେହିମାନଙ୍କ ଜୀବନ, ଚଳନ୍ତି ଜୀବନ ପ୍ରବାହ, ସାମାଜିକ ପରିବେଶ, ଆମର ପ୍ରାକୃତିକ ସୌନ୍ଦର୍ଯ୍ୟ, ବିଭିନ୍ନ ତୀର୍ଥସ୍ଥାନ, ସ୍ମରଣୀୟ ସ୍ଥାନ ଆଦି ଗୁଡ଼ିକୁ ଚଳଚ୍ଚିତ୍ରରେ ସ୍ଥାନ ଦିଆଯାଇ ପାରିଲେ, ସମାଜର ବହୁବିଧ ଉନ୍ନତି ସାଧିତ ହୋଇପାରନ୍ତା । ଚଳଚ୍ଚିତ୍ର ସମ୍ପର୍କରେ ମତଦେଇ Paul Rotha ୧୯୩୦ ମସିହାରେ କହିଥିଲେ – Let the cinema attempt the dramatisation of the living scene and the living there. Springing from the living present instead of from the synthetic fabrication of the studio. Let the cinema attempt film interpretation of modern problems and events of things as they really are today and by so doing perform a definite function. ସମାଜର ଘଟଣାପ୍ରବାହ, ଚଳନ୍ତି ସମୟର ଘଟଣା ଚଳଚ୍ଚିତ୍ରରେ ରୂପଲାଭ କଲେ, ଏହା ସମାଜରେ ଆଦୃତ ହୋଇପାରିବ । ସମାଜରେ ପ୍ରତିଦିନ ଏତେ ଘଟଣା ଘଟୁଛି ଯେ, ତାକୁ ଭିତ୍ତି କରି ବହୁ ଚଳଚ୍ଚିତ୍ର ନିର୍ମିତ ହୋଇପାରିବ । ଆମ ସମାଜ, ସଂସ୍କୃତି ଓ ଜୀବନାଦର୍ଶ ଚଳଚ୍ଚିତ୍ରରେ ରୂପ ଲାଭ କରିବା ଆବଶ୍ୟକ । କେବଳ ବ୍ୟବସାୟ ଦୃଷ୍ଟିକୋଣରୁ ଚଳଚ୍ଚିତ୍ର ନିର୍ମିତ ହେଲେ, ତା ସାମାଜିକ ଦାୟିତ୍ୱବୋଧ ସୃଷ୍ଟି କରିପାରେ ନାହିଁ । ସମାଜର ଏକ ଶିକ୍ଷକ, ଉପଦେଶକ ଭାବରେ କାର୍ଯ୍ୟ କରିବା ମଧ୍ୟ ଚଳଚ୍ଚିତ୍ରର ଦାୟିତ୍ୱ ।

ଓଡ଼ିଆ ଚଳଚ୍ଚିତ୍ର ବିକାଶ ପଥରେ ଅଗ୍ରଗତି କରି ନ ପାରିବାର ମୁଖ୍ୟ ଦୁଇଟି କାରଣ ହେଉଛି, ଆର୍ଥିକ ଅଭାବ ଏବଂ ଷ୍ଟୁଡ଼ିଓ ଅଭାବ । ଓଡ଼ିଶାରେ ଏଯାବତ୍ ଚଳଚ୍ଚିତ୍ର ନିର୍ମାଣ ପାଇଁ ଗୋଟିଏ ଭଲ ଷ୍ଟୁଡ଼ିଓ ନିର୍ମାଣ ହୋଇପାରି ନାହିଁ । ଅବଶ୍ୟ କଳିଙ୍ଗ ଷ୍ଟୁଡ଼ିଓ ନିର୍ମାଣ ଯୋଗୁଁ ଆମ ଚଳଚ୍ଚିତ୍ର ପ୍ରେମୀଙ୍କ ମନରେ କିଛି ଆଶା ଓ ଆଶ୍ୱାସନା ସୃଷ୍ଟି ହୋଇଛି । ଭାରତର ଅଧିକାଂଶ ଭଲ ଷ୍ଟୁଡ଼ିଓ ମୁମ୍ବାଇ, ଚେନ୍ନାଇ, କଲିକତା ଆଦି ସହରରେ ଅବସ୍ଥିତ । ସେଠାରେ ଦୀର୍ଘଦିନ ରହି ଚଳଚ୍ଚିତ୍ର ନିର୍ମାଣ କରିବା ପ୍ରଯୋଜକ ଓ ନିର୍ଦ୍ଦେଶକମାନଙ୍କ ପାଖରେ ସମ୍ଭବ ହୋଇପାରୁ ନାହିଁ । ଏଥିପାଇଁ ବହୁ ପରିମାଣରେ ଅର୍ଥର ଆବଶ୍ୟକ ରହିଛି । ମାତ୍ର ଆମ ପ୍ରଯୋଜକଙ୍କ ନିକଟରେ ଏହି ପରିମାଣରେ ପ୍ରଚୁର ଅର୍ଥ ନାହିଁ । ପୁଣି ସେହି ଷ୍ଟୁଡ଼ିଓଗୁଡ଼ିକ ଉପରେ ନିର୍ଭର କଲେ ଠିକ୍ ସମୟରେ ଚଳଚ୍ଚିତ୍ର ନିର୍ମାଣ ହୋଇପାରିବ ନାହିଁ । ସେମାନେ ତାଙ୍କର ଇଚ୍ଛାନୁଯାୟୀ ତାରିଖ ନିର୍ଦ୍ଦିଷ୍ଟ କରୁଥିବାରୁ ଏତେ ସମୟ ଧରି ଅପେକ୍ଷା କରିବା ମଧ ସମ୍ଭବ ନୁହେଁ । ପୁନରାୟ ଆର୍ଥିକ ସମସ୍ୟା ବର୍ତ୍ତମାନ ଏକ ବିରାଟ ସମସ୍ୟା ହୋଇ ଦେଖାଦେଇଛି । ଆଜି ଆଉ ଅଳ୍ପ କେତେ ହଜାର ଟଙ୍କାରେ ଚଳଚ୍ଚିତ୍ରଟିଏ ନିର୍ମାଣ କରାଯାଇପାରିବ ନାହିଁ । ଯେଉଁମାନେ ଚଳଚ୍ଚିତ୍ର ନିର୍ମାଣ ପ୍ରତି ଆଗ୍ରହୀ, ସେମାନଙ୍କ ନିକଟରେ ସେହି ପରିମାଣରେ ଅର୍ଥ ନାହିଁ । ଏ କ୍ଷେତ୍ରରେ ସରକାରଙ୍କ ପ୍ରୋତ୍ସାହନ ନ ମିଳିଲେ ଭଲ ଓଡ଼ିଆ ଚଳଚ୍ଚିତ୍ରଟିଏ ନିର୍ମାଣ କରିବା ସମ୍ଭବ ନୁହେଁ । ଅବଶ୍ୟ ଏବେ ସରକାର ଚଳଚ୍ଚିତ୍ର ନିର୍ମାଣ ପାଇଁ କିଛି ପରିମାଣରେ ଋଣମଞ୍ଜୁର କଲେଣି । ଭଲ ଚଳଚ୍ଚିତ୍ରମାନଙ୍କୁ ପୁରସ୍କୃତ କରାଯାଇ ପ୍ରୋତ୍ସାହିତ କରାଯାଉଛି । ଚଳଚ୍ଚିତ୍ରର ବିକାଶ ପାଇଁ ସରକାରୀ ସ୍ତରରେ କେତେକ ଯୋଜନା ମଧ ପ୍ରସ୍ତୁତ ହେଉଛି । ଆଶା କରାଯାଏ ନିକଟ ଭବିଷ୍ୟତରେ ଓଡ଼ିଆ ଚଳଚ୍ଚିତ୍ର ନିଶ୍ଚିତ ଭାବରେ ବିକାଶ ପଥରେ ଅଗ୍ରଗତି କରିବ । ମାତ୍ର ପ୍ରଯୋଜକ ଓ ନିର୍ଦ୍ଦେଶକ ଚଳଚ୍ଚିତ୍ରର କଥାବସ୍ତୁ ଓଡ଼ିଆ ମାଟିରୁ ସଂଗ୍ରହ କରିବା ଆବଶ୍ୟକ । ଯଦି କଥାବସ୍ତୁ ଆମ ସମାଜ ଓ ସଂସ୍କୃତିର ପରିପନ୍ଥୀ ହୁଏ, ତେବେ ସେ ତା'ର ମର୍ଯ୍ୟାଦା ହରାଇ ବସିବ । ଓଡ଼ିଆରେ ବହୁ ଉନ୍ନତମାନର ଉପନ୍ୟାସ ଓ ଗଳ୍ପ ରହିଛି । ତାରି ବିଷୟବସ୍ତୁକୁ ଆଧାର କରି ଚଳଚ୍ଚିତ୍ର ନିର୍ମିତ ହୋଇପାରିଲେ, ନିଶ୍ଚିତଭାବରେ ଲୋକପ୍ରିୟତା ଅର୍ଜନ କରିବାକୁ ସମର୍ଥ ହେବ ।

ଓଡ଼ିଆ ଚଳଚ୍ଚିତ୍ରର ଭବିଷ୍ୟତ ନିଶ୍ଚିତ ଭାବରେ ଉଜ୍ଜଳମୟ । ମାତ୍ର ଅଧିକାଂଶ ଚଳଚ୍ଚିତ୍ର ହିନ୍ଦୀ ଓ ପଡ଼ୋଶୀ ଚଳଚ୍ଚିତ୍ରର କଥାବସ୍ତୁକୁ ଅନୁସରଣ କରି ରଚିତ ହେଉଥିବାରୁ ଏହା ତା'ର ସାମାଜିକ ମର୍ଯ୍ୟାଦା ହରାଇ ବସୁଛି । ଏପରିକି କେତେକ ଚଳଚ୍ଚିତ୍ର ହିନ୍ଦୀ, ବଙ୍ଗଳା କିମ୍ବା ତେଲୁଗୁ ଚଳଚ୍ଚିତ୍ରର ଏକପ୍ରକାର ଓଡ଼ିଆ ସଂସ୍କରଣ କହିଲେ ଭୁଲ ହେବ ନାହିଁ । ଏହି କାରଣ ଯୋଗୁଁ ଓଡ଼ିଆ ଚଳଚ୍ଚିତ୍ରର ଦର୍ଶକ ସଂଖ୍ୟା ହ୍ରାସ ପାଇବାରେ ଲାଗିଛି । ହିନ୍ଦୀ ଚଳଚ୍ଚିତ୍ରର ଯେଉଁ ବିଷୟବସ୍ତୁ ଜଣେ ଦେଖିଥିବ, ଠିକ୍ ସେଇୟା ଯଦି ଓଡ଼ିଆ ଚଳଚ୍ଚିତ୍ରରେ ଦେଖେ, ତା'ର ସେଥିପ୍ରତି ଆଗ୍ରହ ବଢ଼ିବ କାହିଁକି ? ଶସ୍ତା କଥାବସ୍ତୁ ଏବଂ ଯୌନଚେତନାକୁ ଭିତ୍ତି କରି ସୃଷ୍ଟି ହେଉଥିବା ଚଳଚ୍ଚିତ୍ର କଦାପି ଲୋକପ୍ରିୟ ହୋଇପାରି ନାହିଁ । ଏଥିପ୍ରତି ଦୃଷ୍ଟିପ୍ରଦାନ

କରିବା ଆବଶ୍ୟକ । ପୁନରାୟ ଓଡ଼ିଆ ଚଳଚ୍ଚିତ୍ରରେ ଚିତ୍ରତାରକାମାନଙ୍କର ଅଭାବ ରହୁଛି । ଭଲ କଳାକାର ନିଖୁଣ ଅଭିନୟ ଦ୍ୱାରା ଦର୍ଶକମାନଙ୍କୁ ଆକୃଷ୍ଟ କରିଥାନ୍ତି । ମାତ୍ର ଓଡ଼ିଶାରେ ଅନେକ ଭଲ କଳାକାର ଥିଲେ ହେଁ, ଶସ୍ତାରେ ଚଳଚ୍ଚିତ୍ର କରିବା ପାଇଁ ଓ ଶସ୍ତା ନାମ ନେବା ପାଇଁ ପ୍ରଯୋଜକଗଣ ଅଳ୍ପ ଅର୍ଥ କିମ୍ବା ମାଗଣାରେ କଳା ସମ୍ପର୍କରେ ଅନଭିଜ୍ଞ ବ୍ୟକ୍ତିଙ୍କୁ ଏଥିରେ ଗ୍ରହଣ କରୁଛନ୍ତି । ଏହାଦ୍ୱାରା ଚଳଚ୍ଚିତ୍ର ଲୋକପ୍ରିୟତା ହରାଇ ବସୁଛି । ଏହା ସତ୍ତ୍ୱେ ଓଡ଼ିଆ ଚଳଚ୍ଚିତ୍ର ଯେପରି ଅଗ୍ରଗତି କରୁଛି, ନିଶ୍ଚିତ ଭାବରେ ନିକଟ ଭବିଷ୍ୟତରେ ସେ ତା'ପାଇଁ ଏକ ସୁରକ୍ଷିତ ସ୍ଥାନ ରଖିପାରିବ ।

ଚଳଚ୍ଚିତ୍ର ଦେଶର ସାମାଜିକ ଜୀବନର ବାର୍ତ୍ତାବହ ଓ ସଂସ୍କୃତିର ରକ୍ଷକ ହେବା ଆବଶ୍ୟକ । ଦୁଃଖର ବିଷୟ ସର୍ବଭାରତୀୟ ସ୍ତରରେ ଏଯାବତ୍ ଓଡ଼ିଆ ଚଳଚ୍ଚିତ୍ର ନିଜକୁ ପ୍ରତିଷ୍ଠା କରିପାରି ନାହିଁ । ସେଥିପାଇଁ ଓଡ଼ିଆ ଚଳଚ୍ଚିତ୍ର ପାଇଁ ଥିବା ପୁରସ୍କାର ବହୁ ସମୟରେ ବାତିଲ୍ ହୋଇଯାଉଛି । ଓଡ଼ିଶାର କଳା, ସଂସ୍କୃତି, ଭାସ୍କର୍ଯ୍ୟ ଓଡ଼ିଆ ଚଳଚ୍ଚିତ୍ରରେ ଦ୍ୟୋତିତ ହେବା ଆବଶ୍ୟକ । ଆମର ଅରଣ୍ୟ ସମ୍ପଦ, ପ୍ରାକୃତିକ ସୌନ୍ଦର୍ଯ୍ୟ ପ୍ରକାଶ ଅଭାବରୁ ଅଜଣା ରହିଯାଉଛି । ଚଳଚ୍ଚିତ୍ରରେ ସେଗୁଡ଼ିକୁ ପ୍ରଦର୍ଶିତ କରାଯାଇପାରିଲେ, ଓଡ଼ିଶାର ମହତ୍ତ୍ୱ ବୃଦ୍ଧି ପାଆନ୍ତା । ଏହା ବ୍ୟତୀତ ସରକାରଙ୍କ ସହଯୋଗ ଓ ଓଡ଼ିଆମାନଙ୍କର ଓଡ଼ିଆ ଚଳଚ୍ଚିତ୍ର ପ୍ରତି ପ୍ରୀତିଭାବ ପ୍ରଦର୍ଶିତ ହେଲେ ସର୍ବୋପରି ପ୍ରଯୋଜକ ଏବଂ ନିର୍ଦ୍ଦେଶକ ଭଲ ଚଳଚ୍ଚିତ୍ର ନିର୍ମାଣ ପାଇଁ ଦୃଢ଼ପ୍ରତିଜ୍ଞ ରହିଲେ ଓଡ଼ିଆ ଚଳଚ୍ଚିତ୍ର ନିଶ୍ଚିତ ଭାବରେ ସର୍ବଭାରତୀୟ ସ୍ତରରେ ସମ୍ମାନ ଲାଭ କରିପାରିବ ।

●

## ଓଡ଼ିଶାର କୃଷି ଓ କୃଷକ

**(ଉପକ୍ରମ, ଅତୀତରେ ଓଡ଼ିଶାର କୃଷି ବ୍ୟବସ୍ଥା, ସାଂପ୍ରତିକ କୃଷି ପଦ୍ଧତିର କେତେକ ତ୍ରୁଟିପୂର୍ଣ୍ଣ ଦିଗ, ବୈଜ୍ଞାନିକ ପଦ୍ଧତିରେ କୃଷି, କୃଷିର ଉନ୍ନତି ନିମିତ୍ତ ସରକାରୀ ପ୍ରୋତ୍ସାହନ, ଉପସଂହାର)**

ଓଡ଼ିଶା ମୁଖ୍ୟତଃ ଏକ କୃଷିପ୍ରଧାନ ରାଜ୍ୟ । ଏହାର ଶତକଡ଼ା ୯୦ ଭାଗ ଲୋକ ଗ୍ରାମରେ ହିଁ ବସବାସ କରନ୍ତି ଓ ଯେଉଁମାନଙ୍କର ଜୀବିକା ହେଉଛି କୃଷି । ବିଶ୍ୱର ପ୍ରଥମ ସମସ୍ୟା ହେଉଛି ଖାଦ୍ୟସମସ୍ୟା । ଯାନ୍ତ୍ରିକ ସଭ୍ୟତା ଯେତେ ବିକାଶ କଲେ ମଧ୍ୟ କୃଷିର ଉନ୍ନତି ନ ହେଲେ, ତାହା ମୂଲ୍ୟହୀନ । ମଣିଷର ପ୍ରଥମ ଆବଶ୍ୟକ ଖାଦ୍ୟ । କୃଷି ହିଁ ଦେଶକୁ ଖାଦ୍ୟ ଯୋଗାଇ ଦେଇଥାଏ । ଓଡ଼ିଶାର ଅଧିକାଂଶ ବ୍ୟକ୍ତି କୃଷି ଉପରେ ନିର୍ଭର କରୁଥିବାରୁ ଏହାର ବିକାଶ ପ୍ରତି ବିଶେଷ ଦୃଷ୍ଟିପ୍ରଦାନ କରାଯିବା ଆବଶ୍ୟକ । ଆର୍ଥିକ ଦୁରବସ୍ଥା ଓ ଶିକ୍ଷାର ଅଭାବରୁ ଓଡ଼ିଶାର କୃଷକ ବୈଜ୍ଞାନିକ ପ୍ରଣାଳୀରେ କୃଷି କରିପାରୁ ନ ଥିବାରୁ ସଦାବେଳେ ଆର୍ଥିକ ଅନଟନ ମଧ୍ୟରେ ଜୀବନ

ଅତିବାହିତ କରିଥାଏ । ସେମାନଙ୍କର ଜୀବନ ମଧ୍ୟ ଅତ୍ୟନ୍ତ ଦୁର୍ବିଷହ । ଉପଯୁକ୍ତ ପୁଷ୍ଟିକର ଖାଦ୍ୟାଭାବ, ଚାଷଜମିର ଅଭାବ ସେମାନଙ୍କୁ କୃଷି ପ୍ରତି ଉପଯୁକ୍ତ ଦୃଷ୍ଟି ପ୍ରଦାନରେ ସହାୟତା କରିନଥାଏ । ପୁଣି ବିଭିନ୍ନ ପ୍ରାକୃତିକ ବିପର୍ଯ୍ୟୟ ତା'ର ମେରୁଦଣ୍ଡ ଭାଙ୍ଗି ଦେଇଥାଏ । ଆଜି ବିଶ୍ୱରେ ଆମେରିକା, ଜାପାନ, ରୁଷ ପ୍ରଭୃତି ଦେଶ କୃଷିକ୍ଷେତ୍ରରେ ଅଭୁତ ସଫଳତା ଅର୍ଜନ କରିଥିବାରୁ, ସେମାନଙ୍କର ଆର୍ଥିକ ପ୍ରଗତି ସମ୍ଭବ ହୋଇପାରିଛି । ମାତ୍ର ଭାରତ କିମ୍ବା ଓଡ଼ିଶା ଏବେ ମଧ୍ୟ ଶସ୍ୟ ଉତ୍ପାଦନ କ୍ଷେତ୍ରରେ ସମ୍ପୂର୍ଣ୍ଣ ସ୍ୱାବଲମ୍ବନଶୀଳ ହୋଇପାରି ନାହିଁ । ତେଣୁ କୃଷି ଏବଂ କୃଷକର ଉନ୍ନତି ନ ଘଟିଲେ, ଦେଶ କଦାପି ସମୃଦ୍ଧଶାଳୀ ହୋଇପାରିବ ନାହିଁ କିମ୍ବା ଏହାର ଆର୍ଥିକ ପ୍ରଗତି ମଧ୍ୟ ତ୍ୱରାନ୍ୱିତ ହେବ ନାହିଁ ।

ଅତୀତରେ ଓଡ଼ିଶାର କୃଷି ବ୍ୟବସ୍ଥା ଅତ୍ୟନ୍ତ ଅନୁନ୍ନତ ଥିଲା । ପାରମ୍ପରିକ ରୀତିରେ କୃଷିକାର୍ଯ୍ୟ ଚାଲୁଥିଲା । ଖରାଦିନେ ଭୂମିକର୍ଷଣ କରି ବର୍ଷାଦିନ ଆସିବା ମାତ୍ରେ କୃଷକ ଜମିରେ ବିହନ ପକାଇ ଦେଉଥିଲା । ତା' ପରେ ଭାଗ୍ୟକୁ ଆଦରି ଅପେକ୍ଷା କରି ରହୁଥିଲା ଫସଲ ଅମଳ ପର୍ଯ୍ୟନ୍ତ । ଜମିରେ ସାମାନ୍ୟ ଖତ କିମ୍ବା ଗୋବର ଦେଇ ସେ ଚାଷକାର୍ଯ୍ୟ କରୁଥିଲା । ବର୍ଷା ଜଳ ହିଁ ତା' କୃଷିର ଭାଗ୍ୟ ନିୟନ୍ତ୍ରଣ କରୁଥିଲା । ଠିକ୍ ସମୟରେ ବର୍ଷା ନ ହେଲେ ଫସଲ ଉଜୁଡ଼ି ଯାଉଥିଲା । ଅଧିକାଂଶ କୃଷକ ବର୍ଷରେ ଗୋଟିଏ ମାତ୍ର ଫସଲ ଧାନ ହିଁ ଚାଷ କରୁଥିଲେ । ପ୍ରାକୃତିକ ଦୁର୍ବିପାକ ଯୋଗୁଁ ଫସଲ ହାନି ଘଟିଲେ ଆର୍ଥିକ ଦୁରବସ୍ଥା ଓ ଖାଦ୍ୟାଭାବରେ ସେ ଦିନ କାଟିବାକୁ ବାଧ୍ୟ ହେଉଥିଲା । ବର୍ଷା ନ ହେଲେ ମରୁଡ଼ି ପଡୁଥିଲା ଏବଂ ଫସଲ ହାନି ଘଟୁଥିଲା । ଜମିର ମାଲିକ କୃଷକକୁ ବିଭିନ୍ନ ଭାବରେ ଶୋଷଣ କରୁଥିଲେ । ଯେଉଁମାନେ ପ୍ରକୃତ କୃଷକ ସେମାନଙ୍କ ପାଖରେ ଜମି ନ ଥିଲା; ଅଥଚ କୃଷି ନ କରୁଥିବା ବ୍ୟକ୍ତି ନିକଟରେ ପ୍ରଚୁର ଭୂସମ୍ପତ୍ତି ପଡ଼ି ରହିଥିଲା । ତେଣୁ ସେମାନେ ମନଇଚ୍ଛା କୃଷକମାନଙ୍କଠାରୁ ଫସଲ ଆଦାୟ କରୁଥିଲେ । ପୁଣି ଯେ କୌଣସି ମୁହୂର୍ତ୍ତରେ ସେମାନେ କୃଷକମାନଙ୍କଠାରୁ ଜମି ଛଡ଼ାଇ ନେଉଥିବାରୁ, କୃଷକ ଜମିର ଉପଯୁକ୍ତ ତତ୍ତ୍ୱ ନେବାକୁ ଇଚ୍ଛା ପ୍ରକାଶ କରୁ ନ ଥିଲା । ଫଳରେ ଜମିରେ ଯେଉଁ ପରିମାଣରେ ଫସଲ୍ ଉତ୍ପାଦନ ହେବା କଥା ହୋଇ ପାରୁ ନ ଥିଲା । ମାତ୍ର ଅତୀତରେ ଜନସଂଖ୍ୟା କମ୍ ଥିବାରୁ କୌଣସି ପ୍ରକାର ସେମାନେ ଚଳିଯିବାକୁ ସମର୍ଥ ହେଉଥିଲେ । ପ୍ରତିକୂଳ ପରିସ୍ଥିତି ମଧ୍ୟ ଦେଇ କୃଷି ଓ କୃଷକ ଗତି କରୁଥିବାରୁ ଉତ୍ପାଦନ କ୍ରମଶଃ ହ୍ରାସ ପାଉଥିଲା ।

ବର୍ତ୍ତମାନ କୃଷି ପଦ୍ଧତିରେ ବହୁ ଉନ୍ନତି ସାଧିତ ହୋଇଛି । ବୈଜ୍ଞାନିକ ପଦ୍ଧତିରେ କୃଷି କାର୍ଯ୍ୟ କରି ଆମେରିକା, ଜାପାନ ପ୍ରଭୃତି ଦେଶ ପ୍ରଚୁର ପରିମାଣରେ ଖାଦ୍ୟଶସ୍ୟ ଉତ୍ପନ୍ନ କରୁଛନ୍ତି । ମାତ୍ର ଅନ୍ୟାନ୍ୟ ଦେଶ ତୁଳନାରେ ଓଡ଼ିଶା ଏବେ ମଧ୍ୟ କୃଷିକ୍ଷେତ୍ରରେ ବହୁ ପଛରେ ପଡ଼ି ରହିଛି । ବିଭିନ୍ନ ପଞ୍ଚବାର୍ଷିକ ଯୋଜନାରେ କୃଷି ଉପରେ ପ୍ରାଧାନ୍ୟ ଦିଆଯାଉଛି । ଗୁଣାତ୍ମକ ଦିଗରୁ ନିଶ୍ଚିତ ଭାବରେ କୃଷିର ଉନ୍ନତି ହୋଇଛି ଭାରତରେ । କିନ୍ତୁ ଓଡ଼ିଶାର ଯେଉଁ ପରିମାଣରେ କୃଷିର ବିକାଶ ହେବା କଥା, ତାହା ହୋଇପାରି ନାହିଁ । ଆଧୁନିକ କୃଷି ପଦ୍ଧତି ସମ୍ପର୍କରେ ଏବେ ମଧ୍ୟ ଓଡ଼ିଶାର କୃଷକ ଅନଭିଜ୍ଞ । ଓଡ଼ିଶାର ବହୁ ଜମି ଏବେ ବି ଜଳସେଚିତ ହୋଇପାରି ନାହିଁ ।

ଯୌଥ ପରିବାରର ସମ୍ପତ୍ତି ପୃଥକ୍ ହେବା ପରେ ବିଭିନ୍ନ ଛୋଟ ଛୋଟ ଖଣ୍ଡରେ ପରିଣତ ହୋଇଛି । ଉପକୂଳବର୍ତ୍ତୀ ଅଞ୍ଚଳକୁ ଛାଡ଼ିଦେଲେ ପାହାଡ଼ିଆ ଅଞ୍ଚଳରେ ଚାଷ କରିବାର କୌଣସି ସୁଯୋଗ ସୃଷ୍ଟି ହୋଇପାରି ନାହିଁ । ପାରମ୍ପରିକ ପଦ୍ଧତିରେ କୃଷକ କୃଷି କରୁଛି । କ୍ଷୁଦ୍ର କ୍ଷୁଦ୍ର ଜମିଖଣ୍ଡ ଯୋଗୁଁ ଟ୍ରାକ୍ଟର ଦ୍ୱାରା ଚାଷ ହୋଇପାରୁ ନାହିଁ । ଉପଯୁକ୍ତ ସାର ଓ ଔଷଧର ପ୍ରୟୋଗ ନ ହେବାରୁ ଜମିର ଉତ୍ପାଦିକା ଶକ୍ତି ଦିନକୁ ଦିନ ହ୍ରାସ ପାଉଛି । ଏବେବି କୃଷକ ବର୍ଷାଜଳ ଉପରେ ନିର୍ଭରଶୀଳ । ପୁଣି ବନ୍ୟା ହେଲେ ଜମିରୁ ଫସଲ ଧୋଇ ଯାଉଛି । ଜମିର ଉପଯୁକ୍ତ ରକ୍ଷଣାବେକ୍ଷଣ ପାଇଁ କୌଣସି ବ୍ୟବସ୍ଥା ହୋଇପାରି ନାହିଁ । ଏହିପରି ପ୍ରତିକୂଳ ପରିସ୍ଥିତି ମଧ୍ୟରେ ଗତି କରୁଥିବାରୁ ଓଡ଼ିଶାର କୃଷକ ଜୀବନ ଅତ୍ୟନ୍ତ ଦୟନୀୟ ।

ଆଜି ବୈଜ୍ଞାନିକ କୃଷି ପଦ୍ଧତି କୃଷିକ୍ଷେତ୍ରରେ ବୈପ୍ଲବିକ ପରିବର୍ତ୍ତନ ଆଣିଛି । ଆଜି କୃଷି ପାଇଁ ବହୁ ନୂତନ ତଥ୍ୟ ଉଦ୍ଭାବନ ହେଲାଣି । ଓଡ଼ିଶାର କେତେକ କୃଷକ ଏହାର ବିନିଯୋଗ କରି ଆଶାଜନକ ଫଳଲାଭ କରିଛନ୍ତି । ସଘନ ବା ସମବାୟ ଚାଷ ଦ୍ୱାରା ବଳଦ ଅପେକ୍ଷା ଟ୍ରାକ୍ଟରରେ ବହୁ ଶୀଘ୍ର ଓ ଅଧିକ ଚାଷଜମି ଚାଷ କରାଯାଇପାରୁଛି । ଅଧିକ ଉତ୍ପାଦନକ୍ଷମ ବିହନ ଦ୍ୱାରା ପ୍ରଚୁର ଫସଲ ଉତ୍ପାଦନ ହୋଇପାରୁଛି । କଟକରେ ବିଦ୍ୟାଧରପୁର କୃଷି ଗବେଷଣା କେନ୍ଦ୍ରରେ ବହୁ ନୂତନ, ବହୁ ଅମଳକ୍ଷମ ବିହନ ଉଦ୍ଭାବିତ ହୋଇଛି । ଉପଯୁକ୍ତ ସାର ଏବଂ ଔଷଧ ପ୍ରୟୋଗ ଦ୍ୱାରା ଅଧିକ ଫସଲ ଅମଳ କରାଯାଇପାରୁଛି । ଗୋଟିଏ ଗୋଟିଏ ଜମିରୁ ବର୍ଷକୁ ୨/୩ ପ୍ରକାର ଫସଲ ଉତ୍ପାଦିତ ହେଉଛି । ଏପରିକି ଫସଲ ଉତ୍ପାଦନ କରିବାକୁ ମଧ୍ୟ ନୂତନ ଯନ୍ତ୍ର ସବୁ ସୃଷ୍ଟି ହେଉଛି । କୋଠଚାଷ, ଜାପାନୀ ପ୍ରଣାଳୀରେ ଚାଷ ସମ୍ପର୍କରେ କୃଷି ଉତ୍ପାଦନ ସମିତି କୃଷକମାନଙ୍କୁ ଅବଗତ କରାଇ ଦିଆଯାଉଛି । କୃଷି ଉତ୍ପାଦନ ସମିତି ଜରିଆରେ କୃଷକମାନଙ୍କୁ ସାର, କୀଟନାଶକ ଔଷଧ ଓ ଉତ୍ତମ ବିହନ ଯୋଗାଇ ଦେବାର ବ୍ୟବସ୍ଥା ହେଉଛି । ଜମିକୁ ଜଳସେଚିତ କରିବା ପାଇଁ ବ୍ୟବସ୍ଥା ହୋଇଛି । ଯେଉଁ ଜମିରେ ଜଳସେଚନର ସୁବିଧା ନାହିଁ କିମ୍ବା ପାଖରେ କେନାଲ ନାହିଁ ସେଠାରେ ଉଠାଜଳସେଚନ ସାହାଯ୍ୟରେ ଜଳ ଯୋଗାଇ ଦେବାର ବ୍ୟବସ୍ଥା ଦ୍ୱାରା କୃଷିର ଉନ୍ନତି କରାଯାଇପାରୁଛି । ଏବେ ମଧ୍ୟ ଅଳ୍ପ ଜଳରେ ଫସଲ ଉତ୍ପାଦିତ ହେବା ପରି ବିହନ ଆବିଷ୍କାର ହୋଇଛି । ଜଳସେଚନର ବିଶେଷ ସୁବିଧା ନ ଥିବା ସ୍ଥାନରେ କୃଷକ ସେହି ବିହନର ସହାୟତା ନେଇ ଫସଲ ଉତ୍ପାଦନ କରିପାରିବ । ସରକାର କୃଷି ଗବେଷଣା କେନ୍ଦ୍ରମାନ ପ୍ରତିଷ୍ଠା କରି କୃଷକମାନଙ୍କୁ କୃଷିର ଉନ୍ନତି ସମ୍ପର୍କରେ ଅବଗତ କରାଇବାର ବ୍ୟବସ୍ଥା କରୁଛନ୍ତି । କେବଳ କୃଷି ଉପରେ ନିର୍ଭର କରି କୃଷକ ଉନ୍ନତି କରିବା ସମ୍ଭବ ନୁହେଁ । ତେଣୁ କୃଷି ସହିତ ଚାଷୀମାନଙ୍କୁ ମାଛ ଚାଷ, କୁକୁଡ଼ା ଚାଷ, ବିଭିନ୍ନ ହସ୍ତକର୍ମ ପାଇଁ ଆନୁଷଙ୍ଗିକ ଉପକରଣମାନ ଯୋଗାଇ ଦେଇପାରିଲେ ଅବସର ସମୟରେ କୃଷକ ତା'ର ବିନିଯୋଗ କରି କିଛି ପରିମାଣରେ ଅର୍ଥ ଲାଭ କରିପାରିବ ଓ ତା'ର ଆର୍ଥିକ ଅବସ୍ଥାରେ ଉନ୍ନତି ଘଟିବ ।

ବିଭିନ୍ନ ଯୋଜନାରେ କୃଷି ଉପରେ ଗୁରୁତ୍ୱ ପ୍ରଦାନ କରାଯିବା ଦ୍ୱାରା ଆଜି ସରକାର କୃଷକମାନଙ୍କୁ ବିଭିନ୍ନ କ୍ଷେତ୍ରରେ ପ୍ରୋତ୍ସାହନ ଦେଉଛନ୍ତି । କୃଷି ଋଣ ଯୋଗାଇ ଦେଇ ଫସଲ

ଆକାରରେ କେତେକ କ୍ଷେତ୍ରରେ ତାହା ଆଦାୟ ହେଉଛି । ଉନ୍ନତ ବିହନ, ସାର ଏବଂ ଔଷଧ ଆଦି ଯୋଗାଇଦେବାର ବ୍ୟବସ୍ଥା ସରକାର କରିଛନ୍ତି । କୃଷି ବିଦ୍ୟାଳୟ ସ୍ଥାପନ କରି କୃଷି ସମ୍ପର୍କରେ ଗବେଷଣା କରାଯାଉଛି । ଜଳସେଚନ ଉପରେ ମଧ୍ୟ ସରକାର ଗୁରୁତ୍ୱ ଆରୋପ କରୁଛନ୍ତି । ଏତଦ୍ ବ୍ୟତୀତ ଯେଉଁ ସ୍ଥାନରେ ଜଳସେଚନର ସୁବିଧା ନାହିଁ, ସେଠାରେ ଉଠାଜଳସେଚନ ଦ୍ୱାରା ଜଳ ଯୋଗାଇ ଦେବାର ବ୍ୟବସ୍ଥା ହେଉଛି । ଗ୍ରାମପଞ୍ଚାୟତମାନଙ୍କରେ ଗ୍ରାମସେବକମାନଙ୍କୁ ନିଯୁକ୍ତି କରାଯାଇ କୃଷକମାନଙ୍କୁ ବିଭିନ୍ନ ସମୟରେ ପରାମର୍ଶ ପ୍ରଦାନ କରାଯାଉଛି । ଏହାଛଡ଼ା ଜମିମାଟିକୁ ପରୀକ୍ଷା କରାଯାଇ କେଉଁ ସ୍ଥାନ କେଉଁ ଫସଲ ପାଇଁ ଉପଯୋଗୀ ଚିହ୍ନଟ କରାଯାଇପାରୁଛି । ସରକାର କେତେକ କ୍ଷେତ୍ରରେ କୃଷିଜାତ ପଦାର୍ଥର ବିକ୍ରି ପାଇଁ ବଜାର ସୃଷ୍ଟି ନିମିତ୍ତ ମଧ୍ୟ ଉଦ୍ୟମ କରୁଛନ୍ତି । ଚକବନ୍ଦୀ ଯୋଜନାକୁ କାର୍ଯ୍ୟକାରୀ କରାଯାଇ କ୍ଷୁଦ୍ର କ୍ଷୁଦ୍ର ଜମିଖଣ୍ଡ ବଦଳରେ ଗୋଟିଏ ଗୋଟିଏ ଚକ ଦେବାର ବ୍ୟବସ୍ଥା ହେବାରୁ ଟ୍ରାକ୍ଟର ଦ୍ୱାରା ଚାଷ କରିବା ପାଇଁ ସୁବିଧା ହେଉଛି । ଓଡ଼ିଶାର କୃଷକ ସଂପ୍ରଦାୟ ସରକାରଙ୍କର ଏହି ସୁଯୋଗକୁ ହାତଛଡ଼ା ନ କରି ତା'ର ସଦୁପଯୋଗ କରିପାରିଲେ ନିଶ୍ଚିତ ଭାବରେ ଅଧିକ ଫସଲ ଅମଳ କରିବାକୁ ସମର୍ଥ ହୋଇପାରିବେ ।

କୃଷିର ଉନ୍ନତି ନିମିତ୍ତ ବିଭିନ୍ନ ପଦକ୍ଷେପ ଗ୍ରହଣ କରାଯାଇଥିଲେ ମଧ୍ୟ କୃଷି ପ୍ରତି ଜନସାଧାରଣଙ୍କ ମନରେ ଯେଉଁପରି ଉତ୍ସାହ ସୃଷ୍ଟି ହେବା କଥା, ତାହା ହୋଇପାରି ନାହିଁ । ଯୁବସଂପ୍ରଦାୟ କୃଷିକାର୍ଯ୍ୟ ପ୍ରତି ଏବେ ସମ୍ପୂର୍ଣ୍ଣ ବିମୁଖ । କୃଷକମାନଙ୍କର ଆର୍ଥିକ ଅସ୍ୱଚ୍ଛଳତା ଏହାର ପ୍ରଥମ କାରଣ । ପୁଣି ଦୈନନ୍ଦିନ ଜୀବନର ଆବଶ୍ୟକୀୟ ପଦାର୍ଥର ଦାମ୍ ଯେପରି ବଢୁଛି, କୃଷକ କୃଷି ଦ୍ୱାରା ତା'ର ସେହି ଆବଶ୍ୟକତାକୁ ପୂରଣ କରି ପାରୁ ନାହିଁ । କୃଷକମାନଙ୍କ ପାଇଁ ସରକାରୀ ଯୋଜନାରେ ଯେଉଁ ଅର୍ଥ ବା ଆନୁଷଙ୍ଗିକ ସାମଗ୍ରୀ ଆସୁଛି, ତାହା କୃଷକ ନିକଟରେ ନ ପହଞ୍ଚି ବାଟମାରଣା ହୋଇଯାଉଛି । କୃଷି ଋଣ ମଧ୍ୟ ଯଥାସମୟରେ କୃଷକ ପାଖରେ ପହଞ୍ଚି ପାରୁ ନାହିଁ । କୃଷିଜାତ ପଦାର୍ଥର ଆଖିଦୃଶିଆ ବଜାର ଏବେ ମଧ୍ୟ ସୃଷ୍ଟି ହୋଇ ପାରୁ ନାହିଁ । କୃଷିକୁ ଏବେ ମଧ୍ୟ ଓଡ଼ିଶାରେ ଶିଳ୍ପର ମାନ୍ୟ ପ୍ରଦାନ କରାଯାଇପାରି ନାହିଁ । ଓଡ଼ିଶାରେ ନଦୀବନ୍ଧ ଯୋଜନା ସେପରି ଉତ୍ସାହଜନକ ନୁହେଁ, ସେଥିପାଇଁ ବନ୍ୟା ସମୟରେ କୃଷକ ତା'ର ଫସଲ ହରାଇ ବସୁଛି । କୃଷକର ଆର୍ଥିକମାନ ବୃଦ୍ଧି ଘଟୁନଥିବାରୁ, କୃଷି ପ୍ରତି କେହି ଆଗ୍ରହ କରୁନାହାନ୍ତି । ତେଣୁ ସରକାର କୃଷକମାନଙ୍କୁ ସବୁଦିଗରୁ ପ୍ରୋତ୍ସାହନ ଯୋଗାଇ ଦେଲେ ଓ ତା'ର ଆର୍ଥିକ ମାନରେ ପରିବର୍ତ୍ତନ ଆଣିବା ପାଇଁ ଚେଷ୍ଟା କଲେ ଓଡ଼ିଶାର କୃଷକ ନିଶ୍ଚିତ ଭାବରେ ଏ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ସଫଳତା ହାସଲ କରିପାରିବେ ଏବଂ ଖାଦ୍ୟଶସ୍ୟ ଉତ୍ପାଦନ କ୍ଷେତ୍ରରେ ଓଡ଼ିଶା ସ୍ୱାବଲମ୍ବନଶୀଳ ହୋଇପାରିବ ।



# ଓଡ଼ିଶାର ପର୍ବପର୍ବାଣି

(ଉପକ୍ରମ, ବିଭିନ୍ନ ଋତୁର ପର୍ବପର୍ବାଣି, ସାମାଜିକ ଜୀବନରେ ପର୍ବପର୍ବାଣିର ଆବଶ୍ୟକତା, ପର୍ବପର୍ବାଣିଗୁଡ଼ିକର ମୂଳଭିତ୍ତି, ଉପସଂହାର)

କଥାରେ କୁହାଯାଏ, ଓଡ଼ିଶାରେ ବାରମାସରେ ତେର ପର୍ବ ପାଳିତ ହୁଏ । ବହୁ ପ୍ରାଚୀନ କାଳରୁ ଗୋଟିଏ ଧାର୍ମିକ ଦେଶ ରୂପେ ଓଡ଼ିଶା ପରିଚିତ । ପୁଣି ଓଡ଼ିଶାର ଆରାଧ ଦେବତା ଶ୍ରୀ ଜଗନ୍ନାଥଙ୍କୁ କେନ୍ଦ୍ରକରି ପ୍ରତିମାସରେ କିଛି ନା କିଛି ପର୍ବ ଅନୁଷ୍ଠିତ ହୋଇଥାଏ । ଏହି ପର୍ବ ପାଳନ ଅବକାଶରେ ମଣିଷ ଭୁଲିଯାଏ ତା' ଜୀବନର ତିକ୍ତତା । ଜୀବନକୁ ସୁନ୍ଦର ମଧୁର କରିବା ପାଇଁ ସେ ଏହି ପର୍ବଗୁଡ଼ିକୁ ପାଳନ କରିଥାଏ । ଅଧିକାଂଶ ପର୍ବ ଧର୍ମକୁ ଭିତ୍ତିକରି ସୃଷ୍ଟି ହୋଇଥିଲେ ହେଁ ଏହାର ସାମାଜିକ ଓ ସାଂସ୍କୃତିକ ଆବେଦନକୁ ଅସ୍ୱୀକାର କରାଯାଇ ନ ପାରେ । ଏହା ମଣିଷ ପ୍ରାଣରେ ସୃଷ୍ଟି କରେ ସ୍ନେହ, ପ୍ରେମ ଓ ଶ୍ରଦ୍ଧାର ଭାବ । ଗୋଟିଏ ଭ୍ରାତୃତ୍ୱର ବନ୍ଧନରେ ବନ୍ଦୀ କରି ରଖେ ସମଗ୍ର ମାନବସମାଜକୁ । କିଛି ସମୟ ପାଇଁ ଉତ୍ସବ ଆନନ୍ଦ ମଧ୍ୟରେ ଭୁଲାଇଦିଏ ମଣିଷ ଜୀବନର କଠୋର ବାସ୍ତବତାକୁ । ସମୟ ବହୁଭାବରେ ପରିବର୍ତ୍ତନ ହୋଇଯାଇଛି । ବିଜ୍ଞାନ ଯୁଗରେ ଏହାକୁ ଅନ୍ଧବିଶ୍ୱାସ ବୋଲି କୁହାଯାଉଛି । ଏହା ସତ୍ତ୍ୱେ ଉତ୍କଳୀୟମାନେ ତା'ର ପର୍ବପର୍ବାଣି ପାଳନରୁ କୌଣସି ସମୟରେ ବିଚ୍ୟୁତ ହୋଇ ନାହିଁ । ସାମାଜିକ ଓ ଧାର୍ମିକ ବିଶ୍ୱାସବୋଧରୁ ଏହା ସୃଷ୍ଟି ହୋଇଥିବାରୁ କୌଣସିକାଳେ ଏହି ପର୍ବପର୍ବାଣିଗୁଡ଼ିକର ବିଲୟ ହେବାର ସମ୍ଭାବନା ମଧ୍ୟ ନାହିଁ ।

ବର୍ଷରେ ଧରାପୃଷ୍ଠକୁ ଆଗମନ କରିଥାଏ ଛଅଟି ଋତୁ । ପ୍ରତ୍ୟେକ ଋତୁର କିଛି ନା କିଛି ସ୍ୱାତନ୍ତ୍ର୍ୟ ରହିଛି । ଓଡ଼ିଶାରେ ଋତୁ ଅନୁଯାୟୀ ଅଧିକାଂଶ ପର୍ବପର୍ବାଣି ପାଳିତ ହୋଇଥାଏ । ପ୍ରଥମ ଋତୁ ଭାବେ ପଦାର୍ପଣ କରେ ଗ୍ରୀଷ୍ମ । ପ୍ରଖର ରୌଦ୍ରତାପ ସହିତ ପଣାସଂକ୍ରାନ୍ତି ଦିନ ଏହାର ଆଗମନ ଘଟୁଥିବାରୁ ନିଜ ଦେବଦେବୀଙ୍କୁ ଥଣ୍ଡା ପଣା ମାଧ୍ୟମରେ ସନ୍ତୋଷ ପ୍ରଦାନ କରିବାକୁ ଚେଷ୍ଟା କରନ୍ତି ଧର୍ମପ୍ରାଣ ଉତ୍କଳୀୟ । ଏହିଦିନ କେତେକ ସ୍ଥାନରେ ଝାମୁଯାତ୍ରା ପାଳିତ ହୋଇଥାଏ । ଗ୍ରୀଷ୍ମ ଋତୁରେ ପାଳନ କରାଯାଉଥିବା ଅନ୍ୟାନ୍ୟ ପର୍ବ ମଧ୍ୟରେ ଚନ୍ଦନଯାତ୍ରା, ସାବିତ୍ରୀବ୍ରତ, ଶୀତଳଷଷ୍ଠୀ ଆଦି ପ୍ରଧାନ । ଉତ୍କଳୀୟ ନାରୀ ସାବିତ୍ରୀଙ୍କ ଆଦର୍ଶକୁ ମନେରଖିବା ପାଇଁ ନିଜ ନିଜ ସ୍ୱାମୀଦେବତାଙ୍କ ମଙ୍ଗଳ ଉଦ୍ଦେଶ୍ୟରେ ପାଳନ କରିଥାଏ ସାବିତ୍ରୀବ୍ରତ । ଚନ୍ଦନଯାତ୍ରା ଦିନ ଧର୍ମପ୍ରାଣ ଉତ୍କଳୀୟ ମହାପ୍ରଭୁଙ୍କୁ ଚନ୍ଦନ ଜଳରେ ସ୍ନାନ କରାଇ ନୌକା ବିହାର କରିଥାଏ । ବର୍ଷାଋତୁର ଆଗମନ ସଙ୍ଗେ ସଙ୍ଗେ ଆଉ କେତେକ ନୂତନ ପର୍ବ ଓଡ଼ିଶାରେ ପାଳିତ ହୋଇଥାଏ । ଏହାର ପ୍ରଥମ ପର୍ବ ରଜପର୍ବ । ଏହିଦିନ ପୃଥିବୀ ରଜସ୍ୱଳା ହୁଏ ବୋଲି ଲୋକବିଶ୍ୱାସ ରହିଛି । କୃଷକମାନଙ୍କ ମନରେ ଆନନ୍ଦ ଭରିଦେବା ପାଇଁ ବର୍ଷାର ଆଗମନ ହୁଏ ଓ ପୃଥିବୀ ରଜସ୍ୱଳା ହୋଇ ଉତ୍ପାଦନକ୍ଷମ ହୋଇଥାଏ । ଦୋଳିଖେଳ, କବାଡ଼ିଖେଳ

ଏବଂ ବିଭିନ୍ନ ସୁସ୍ୱାଦୁ ଖାଦ୍ୟରେ ରଜପର୍ବଟି ବେଶ୍ ଆନନ୍ଦରେ କଟିଯାଇଥାଏ । ଏହାପରେ ପାଳିତ ହୁଏ ରଥଯାତ୍ରା । ଶ୍ରୀଜଗନ୍ନାଥ, ବଳଭଦ୍ର ଏବଂ ସୁଭଦ୍ରା ତିନି ରଥରେ ବିଜେ ହୋଇ ଭକ୍ତମାନଙ୍କୁ ଦର୍ଶନ ଦେବା ଉଦ୍ଦେଶ୍ୟରେ ରତ୍ନସିଂହାସନ ତ୍ୟାଗ କରି ରାସ୍ତା ଉପରକୁ ବାହାରି ଆସିଥାନ୍ତି । ପୁରୀର ରଥଯାତ୍ରା ବିଶ୍ୱପ୍ରସିଦ୍ଧ । ପୃଥିବୀର ବିଭିନ୍ନ ସ୍ଥାନରୁ ଜଗନ୍ନାଥଙ୍କ ରଥଯାତ୍ରା ଦେଖିବା ଉଦ୍ଦେଶ୍ୟରେ ପୁରୀକୁ ଆଗମନ କରିଥାନ୍ତି ଭକ୍ତମାନେ । ପୁରୀ ବ୍ୟତୀତ ବାରିପଦା, କେନ୍ଦ୍ରାପଡ଼ା, ଢେଙ୍କାନାଳ, କେନ୍ଦୁଝର ଆଦି ସ୍ଥାନରେ ରଥଯାତ୍ରା ଖୁବ୍ ଜାକଜମକରେ ପାଳିତ ହୋଇଥାଏ । ନଅଦିନ ପରେ ପୁଣି ଆରମ୍ଭ ହୁଏ ବାହୁଡ଼ା ଯାତ୍ରା । ଜଗନ୍ନାଥ ଫେରିଯାଆନ୍ତି ବଡ଼ଦେଉଳକୁ । ଏହାପରେ ପରେ ଆରମ୍ଭ ହୋଇଯାଏ ଚିତାଲାଗି ଅମାବାସ୍ୟା । ଚିତୋଉପିଠା ତିଆରି କରାଯାଇ ପୋଖରୀରେ ଗେଣ୍ଡାମାନଙ୍କ ଉଦ୍ଦେଶ୍ୟରେ ଫୋପଡ଼ା ଯାଇଥାଏ । ଚାଷକାର୍ଯ୍ୟ ସମୟରେ ବାପଭାଇଙ୍କ ଗୋଡ଼ ନ କାଟିବାକୁ ପିଠା ଲାଞ୍ଚ ଦିଆଯାଇଥାଏ ଜଳଚର ପ୍ରାଣୀମାନଙ୍କୁ । ଏହାପରେ ଆସେ ଝୁଲଣଯାତ୍ରା, ଗହ୍ମାପୂର୍ଣ୍ଣିମା ଓ ରାକ୍ଷୀବନ୍ଧନ । ଏହି ତିନୋଟି ପର୍ବ ଗୋଟିଏ ଦିନରେ ପାଳନ କରାଯାଇଥାଏ । ଝୁଲଣଯାତ୍ରାରେ ରାଧାକୃଷ୍ଣଙ୍କୁ ଦୋଳିରେ ଝୁଲାଇ ନାନାଗୀତ ଗାନ କରାଯାଇଥାଏ । ଗହ୍ମାପୂର୍ଣ୍ଣିମାରେ ବଳଦେବଙ୍କର ପୂଜା ହୋଇଥାଏ । ଗୋରୁମାନଙ୍କ ବେକରେ ଫୁଲମାନ ପକାଇ ପିଠାଖାଇବାକୁ ଦିଆଯାଇଥାଏ । କୃଷିର ସହାୟକ ଯୋଗୁଁ ଗୋରୁପୂଜା ହୋଇଥାଏ । ରାଖୀପୂର୍ଣ୍ଣମୀରେ ଭଉଣୀ ଭାଇ ହାତରେ ରାଖୀ ବାନ୍ଧିଥାଏ । ଭବିଷ୍ୟତ ବିପଦ ପାଇଁ ଏହା ଏକ ଅମୋଘ ଅସ୍ତ୍ର ବୋଲି ଲୋକବିଶ୍ୱାସ ରହିଛି । ଶାନ୍ତି, ପ୍ରୀତି, ସ୍ନେହ ବନ୍ଧନର ପ୍ରତୀକ ରାଖୀପୂର୍ଣ୍ଣିମା । ଶରତଋତୁରେ ଓଡ଼ିଶାରେ ବହୁପର୍ବ ପାଳିତ ହୋଇଥାଏ । ଜନ୍ମାଷ୍ଟମୀରେ ଶ୍ରୀକୃଷ୍ଣଙ୍କ ଜନ୍ମଉତ୍ସବ ପାଳିତ ହୋଇଥାଏ । ଗଣେଶପୂଜା ମୁଖ୍ୟତଃ ବିଦ୍ୟାଳୟରେ ଅଧ୍ୟୟନରତ ଛାତ୍ରଛାତ୍ରୀ ପାଳନ କରିଥାନ୍ତି । 'ସୁନିଆଁ'କୁ ଓଡ଼ିଆ ବର୍ଷର ପ୍ରଥମ ଦିନ ରୂପେ ଗଣନା କରାଯାଇଥାଏ । ଏହିଦିନ ଠାରୁ ଉତ୍କଳର ଗଜପତି ବା ପୁରୀରାଜାଙ୍କର ଅଙ୍କ ଗଣନା କରାଯାଇଥାଏ । ଖୁଦୁରୁକୁଣୀ ଓଷା ଓଡ଼ିଶାର ଝିଅମାନଙ୍କର ଏକ ପର୍ବ । ଦୀର୍ଘ ୫ ସପ୍ତାହର ପ୍ରତି ରବିବାର ଦିନ ଏହା ପାଳିତ ହୋଇଥାଏ । ଏହି ଓଷାରୁ ପ୍ରାଚୀନ ଓଡ଼ିଶାର ନୌବାଣିଜ୍ୟ ଓ ଦେବୀ ମଙ୍ଗଳାଙ୍କ ମାହାତ୍ମ୍ୟ ବିଷୟରେ ଜଣାଯାଇଥାଏ । ଏହି ଋତୁରେ ଦୁର୍ଗତିନାଶିନୀ ଦୁର୍ଗାଙ୍କର ଧରାକୁ ଆଗମନ ଘଟେ । ମହାଆଡ଼ମ୍ବରରେ ଦୁର୍ଗାପୂଜା ପାଳନ କରାଯାଇଥାଏ ଓଡ଼ିଶାରେ । ମହିଷାସୁର ପରି ଅସୁରମାନଙ୍କୁ ବଧ କରିବା ପାଇଁ ଦେବୀଙ୍କର ଆବିର୍ଭାବ । ସତ୍ୟ ଏବଂ ନ୍ୟାୟର ପ୍ରତିଷ୍ଠା ଏହାର ଲକ୍ଷ୍ୟ । ଦଶହରାଦିନ ଦେବୀଙ୍କୁ ପାଣିରେ ବିସର୍ଜନ କରାଯାଇଥାଏ । ଶରତଋତୁର କୁମାରପୂର୍ଣ୍ଣିମା ଅନ୍ୟତମ ଶ୍ରେଷ୍ଠପର୍ବ । କୁମାରୀ କନ୍ୟାମାନେ କାର୍ତ୍ତିକେୟଙ୍କ ପରି ସୁନ୍ଦର ଓ ଗୁଣବାନ୍ ପତି ଲାଭ କରିବାକୁ କାର୍ତ୍ତିକେୟଙ୍କୁ ପୂଜା କରିଥାନ୍ତି । ଶରତଋତୁ ପରେ ଧରାପୃଷ୍ଠକୁ ଆଗମନ କରେ ହିମଋତୁର ହେମନ୍ତ ଋତୁ । ଏହି ଋତୁରେ ଓଡ଼ିଶାରେ ଯେଉଁ ପର୍ବ ସବୁ ପାଳିତ ହୁଏ, ତନ୍ମଧ୍ୟରୁ ମୁଖ୍ୟ ହେଉଛି କାର୍ତ୍ତିକପୂର୍ଣ୍ଣିମା, ବାଲିଯାତ୍ରା, ବଡ଼ ଓଷା, ଦୀପାବଳୀ ଅମାବାସ୍ୟା, ଲକ୍ଷ୍ମୀପୂଜା ଓ ପ୍ରଥମାଷ୍ଟମୀ ଇତ୍ୟାଦି ।

ହିନ୍ଦୁମାନଙ୍କ ନିକଟରେ କାର୍ତ୍ତିକମାସ ଏକ ଧର୍ମ ମାସ ଭାବରେ ପରିଚିତ । ମାସର ଶେଷ ପାଞ୍ଚଦିନ 'ପଞ୍ଚକ' ଭାବେ ପରିଚିତ । ଅନେକ ଓଡ଼ିଆ ଏହି ମାସଟିଯାକ ନିରାମିଷ ଖାଦ୍ୟ ଗ୍ରହଣ କରିଥାନ୍ତି । ବିଧବା ସ୍ତ୍ରୀ ହବିଷ୍ୟ ପାଳନ କରିଥାନ୍ତି । କାର୍ତ୍ତିକପୂର୍ଣ୍ଣିମା ଦିନ ସୋଲ କିମ୍ବା କଦଳୀ ଖୋଳପାରେ ଡଙ୍ଗା କରି ନଦୀ ଓ ପୋଖରୀରେ ଭସାଇଥାନ୍ତି । କାର୍ତ୍ତିକେୟଙ୍କର ପୂଜାଉପାସନା କରାଯାଇଥାଏ । ଏହି ପର୍ବରୁ ପ୍ରାଚୀନ ଉତ୍କଳର ନୌବାଣିଜ୍ୟ ସମ୍ପର୍କରେ ସୂଚନା ମିଳିଥାଏ । କଟକର ପ୍ରସିଦ୍ଧ ବାଲିଯାତ୍ରା ଏହିଦିନ ଆରମ୍ଭ ହୋଇଥାଏ । ଆଦ୍ୟ ମାର୍ଗଶିର ମାସରେ ଲକ୍ଷ୍ମୀଙ୍କର ମାଣବସା ହୋଇଥାଏ । ପ୍ରାଚୁର୍ଯ୍ୟ ଓ ଐଶ୍ୱର୍ଯ୍ୟର ଦେବୀ ଲକ୍ଷ୍ମୀଙ୍କ ଉଦ୍ଦେଶ୍ୟରେ ପିଠାପଣା କରାଯିବା ସଙ୍ଗେ ସଙ୍ଗେ ଭକ୍ତି ଅର୍ଘ୍ୟ ପ୍ରଦାନ କରାଯାଇଥାଏ । ପ୍ରଥମାଷ୍ଟମୀ ଦିନ ଘରର ବଡ଼ ପୁଅ ଓ ଝିଅମାନଙ୍କ ପାଇଁ ନୂଆ ପୋଷାକ କରାଯାଇଥାଏ । ଏଣ୍ଡୁରିପିଠା, ଖିରୀ ତରକାରିରେ ଘରେ ଘରେ ଆନନ୍ଦର ଫଲ୍‌ଗୁ ଖେଳିଯାଏ । ଏହାପରେ ଆସେ ଶୀତଋତୁ । ଦେହଥରା ଶୀତ ମଧ୍ୟରେ ଓଡ଼ିଆମାନେ କେତେକ ପର୍ବ ପାଳନ କରିଥାନ୍ତି । ଏହି ଋତୁରେ ନୂଆଖାଇ, ଶାମ୍ବଦଶମୀ, ମକରସଂକ୍ରାନ୍ତି, ଅଗ୍ନ୍ୟୋତ୍ସବ ଆଦି ପାଳିତ ହୋଇଥାଏ । ନୂଆଖାଇ ପଶ୍ଚିମ ଓଡ଼ିଶାର ଏକ ମୁଖ୍ୟପର୍ବ । ନୂଆଧାନର ଭାତ ଏହିଦିନ ଖିଆଯାଇଥାଏ । ଶାମ୍ବଦଶମୀରେ ଘରର ବିଭିନ୍ନ ବ୍ୟକ୍ତିଙ୍କ ପାଇଁ ବିଭିନ୍ନ ପିଠାପଣା ବଢ଼ାଯାଇଥାଏ । ଧନୁସଂକ୍ରାନ୍ତିରେ ଧନୁମୁଆଁ ପ୍ରଧାନ ଖାଦ୍ୟ ରୂପେ ଗୃହୀତ ହୋଇଥାଏ । ଅଗ୍ନିଦେବତାଙ୍କ କୋପରୁ ରକ୍ଷା ପାଇବା ପାଇଁ ଅଗ୍ନ୍ୟୋତ୍ସବ ପାଳିତ ହୋଇଥାଏ । ଅଗିଜାଳି ଗାଁର ଲୋକମାନେ ବାଇଗଣ, ଆଳୁ, ନଡ଼ିଆ ଆଦି ପକାଇଥାନ୍ତି ଓ ତାକୁ ଭୋଗରୂପେ ସମସ୍ତେ ଖାଇଥାନ୍ତି । ଋତୁରାଜ ବସନ୍ତର ଆଗମନରେ ଧରଣୀରାଣୀ ନୂଆ ବସ୍ତ୍ର ପରିଧାନ କରେ । ଚାରିଆଡ଼େ ଖେଳିଯାଏ ଆନନ୍ଦର ପ୍ଲାବନ । ଏହି ଋତୁର ମୁଖ୍ୟ ପର୍ବ ରୂପେ ଶିବ ଚତୁର୍ଦ୍ଦଶୀ ଓ ଦୋଳଯାତ୍ରା ପାଳିତ ହୋଇଥାଏ । ଶିବ ଚତୁର୍ଦ୍ଦଶୀରେ ଶିବମନ୍ଦିରମାନଙ୍କରେ ମହାଦୀପ ଉଠିଥାଏ । ନିଷ୍ଠାର ସହିତ ଉଭୟ ପୁରୁଷ ଓ ସ୍ତ୍ରୀ ଏହାକୁ ପାଳନ କରିଥାନ୍ତି । ତା' ପରେ ଗଜମଣ୍ଡା ଖାଇ ଉପବାସ ଭାଙ୍ଗିଥାନ୍ତି । ଦୋଳପୂର୍ଣ୍ଣିମା ମୁଖ୍ୟତଃ ଗୋପାଳମାନଙ୍କର ପର୍ବ ହେଲେହେଁ, ସମସ୍ତ ଓଡ଼ିଆ ଏହାକୁ ପାଳନ କରିଥାନ୍ତି । ରାଧାକୃଷ୍ଣ ପ୍ରତିମାକୁ ବିମାନରେ ବସାଇ ଗ୍ରାମ ପରିକ୍ରମା କରାଯାଇଥାଏ । ବିଭିନ୍ନ ରଙ୍ଗରେ ହୋଲି ଖେଳ ହୁଏ । ଆନନ୍ଦଉତ୍ସବ ମଧ୍ୟରେ ଦିନଟି ବିତିଯାଏ । ଏତଦ୍‌ବ୍ୟତୀତ ସରସ୍ୱତୀପୂଜା, ଅକ୍ଷୟତୃତୀୟା, ବିଶ୍ୱକର୍ମାପୂଜା ଆଦି ମଧ୍ୟ ପାଳିତ ହୋଇଥାଏ । ଓଡ଼ିଶାରେ ବସବାସ କରୁଥିବା ମୁସଲମାନ ଓ ଖ୍ରୀଷ୍ଟିଆନ ଭାଇମାନେ 'ଇଦ୍' ଏବଂ ଖ୍ରୀଷ୍ଟପର୍ବ ଆନନ୍ଦ ଉଲ୍ଲାସରେ ପାଳନ କରିଥାନ୍ତି । ଜଗନ୍ନାଥ ଦେଶ ଓଡ଼ିଶାରେ କୌଣସି ପର୍ବ ପାଇଁ କାହା ମନରେ ଅସୂୟା ନାହିଁ । ସବୁ ସଂପ୍ରଦାୟର ବ୍ୟକ୍ତି ନିଜ ରୁଚି ଅନୁଯାୟୀ ସ୍ୱାଧୀନ ଭାବରେ ବିଭିନ୍ନ ପର୍ବ ପାଳନ କରିଥାନ୍ତି ।

ସାମାଜିକ ଜୀବନରେ କର୍ମକ୍ଳାନ୍ତ ମଣିଷ ମନରେ କିଛି ସରସତା ଭରିଦେବା କ୍ଷେତ୍ରରେ ପର୍ବପର୍ବାଣିର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ଏହି ପର୍ବପର୍ବାଣିରେ ବନ୍ଧୁମାନଙ୍କୁ ନିମନ୍ତ୍ରଣ କରି ପିଠାପଣା ଖାଇବାକୁ ଦେବା ମଧ୍ୟରେ ପରସ୍ପର ପ୍ରତି ଭ୍ରାତୃଭାବ ଓ ସ୍ନେହ, ପ୍ରୀତି ସୃଷ୍ଟି ହୋଇଥାଏ ।

ଦେବଆରାଧନା ମଧ୍ୟରେ ମଣିଷ ମନରୁ ଦୂର ହୋଇଥାଏ ହିଂସାଭାବ । ଅନ୍ୟାୟ ଓ ଅନୀତି ପ୍ରତି ମଣିଷ ହୃଦୟରେ ସୃଷ୍ଟି ହୁଏ ଘୃଣାଭାବ । ମଣିଷ ପ୍ରତି ମଣିଷର ଭଲପାଇବା ସୃଷ୍ଟି କରେ ପର୍ବପର୍ବାଣି । ସଂପ୍ରଦାୟ ସଂପ୍ରଦାୟ ମଧ୍ୟରେ ସୃଷ୍ଟି କରେ ସଦ୍‌ଭାବ । ସମାଜକୁ ସୁସ୍ଥ କରି ଗଢ଼ି ତୋଳିବାକୁ ଏହା ମଣିଷ ମନରେ ଭରିଦିଏ ପ୍ରେରଣା । ନୀତିନିଷ୍ଠଭାବେ ଜୀବନଯାପନ କରିବାକୁ ଏହା ଉତ୍ସାହିତ କରେ । ବସୁଧୈବ କୁଟୁମ୍ବକମ୍ ନୀତି ପ୍ରତି ପ୍ରେରିତ କରେ ମାନବ ସମାଜକୁ ।

ଓଡ଼ିଶାରେ ପାଳିତ ହେଉଥିବା ପର୍ବପର୍ବାଣିଗୁଡ଼ିକର ମୂଳଭିତ୍ତି ମୁଖ୍ୟତଃ ତିନୋଟି । ପ୍ରଥମଟିର ଭିତ୍ତି ହେଉଛି କୃଷି, ଦ୍ୱିତୀୟଟି ଆଧ୍ୟାତ୍ମିକ ଓ ତୃତୀୟଟି ଶିକ୍ଷା । ଓଡ଼ିଶା ଏକ କୃଷିପ୍ରଧାନ ଦେଶ ହୋଇଥିବାରୁ ଏହାକୁ ଭିତ୍ତି କରି ମୁଖ୍ୟତଃ ରଜପର୍ବ, ଅକ୍ଷୟତୃତୀୟା, ନୂଆଖାଇ, ମାଣବସା, ଗହ୍ମାପୂର୍ଣ୍ଣିମା, ମକରସଂକ୍ରାନ୍ତି ଆଦି ପାଳନ କରାଯାଇଥାଏ । ଆଧ୍ୟାତ୍ମିକ ଭାବନାକୁ କେନ୍ଦ୍ର କରି ଦଶହରା, ଦୀପାବଳୀ, ରାମନବମୀ, ଶିବଚତୁର୍ଦ୍ଦଶୀ, ଶାମ୍ବଦଶମୀ, ଦୋଳପୂର୍ଣ୍ଣିମା, ବଡ଼ଓଷା ଆଦି ପାଳିତ ହୋଇଥାଏ । ଗଣେଶପୂଜା, ସରସ୍ୱତୀ ପୂଜା ଆଦି ମୁଖ୍ୟତଃ ଶିକ୍ଷାଲାଭ କରୁଥିବା ପିଲାମାନେ ପାଳନ କରିଥାନ୍ତି । ଏତଦ୍‌ବ୍ୟତୀତ କାର୍ତ୍ତିକପୂର୍ଣ୍ଣିମା, ବାଲିଯାତ୍ରା, ଖୁଦୁରୁକୁଣୀ ଓଷା ମାଧ୍ୟମରେ ଓଡ଼ିଶାର ଅତୀତ ନୌବାଣିଜ୍ୟ ଚିତ୍ର ସୂଚିତ ହୋଇଥାଏ । ଜଗନ୍ନାଥଙ୍କୁ କେନ୍ଦ୍ରକରି ମଧ୍ୟ ବହୁ ପର୍ବପର୍ବାଣି ପାଳିତ ହୋଇଥାଏ । ତେଣୁ ପ୍ରତ୍ୟେକ ପର୍ବପର୍ବାଣିର ଯେ ସାମାଜିକ ଉପଯୋଗିତା ରହିଛି ଅସ୍ୱୀକାର କରାଯାଇନପାରେ ।

ପର୍ବପର୍ବାଣି ମଧ୍ୟରେ ଗୋଟିଏ ଦେଶର ସାଂସ୍କୃତିକ, ସାମାଜିକ ଓ ଆଧ୍ୟାତ୍ମିକ ଚେତନା ଜଡ଼ିତ । ବିଜ୍ଞାନ ଯୁଗରେ ଏହାକୁ ସମ୍ପୂର୍ଣ୍ଣ ମୂଲ୍ୟହୀନ ବୋଲି କୁହାଯାଇପାରିବ ନାହିଁ । ଗୋଟିଏ ଜାତିର ଭାବାତ୍ମକ ସମ୍ପର୍କ ଏଥି ସହିତ ଏପରି ନିବିଡ଼ ଭାବରେ ଜଡ଼ିତ ଯେ, ଏହାକୁ ଜନଜୀବନରୁ ଦୂରେଇ ଦେଲେ ହଠାତ୍ ଏକ ସାମାଜିକ ଫାଙ୍କ ସୃଷ୍ଟି ହୋଇ ଜାତିର ପ୍ରାଣସ୍ପନ୍ଦନଟିକୁ ବନ୍ଦ କରିଦେବ । ତେଣୁ ପ୍ରତ୍ୟେକ ପର୍ବପର୍ବାଣି ଅନ୍ତରାଳରେ ଏକ ତାତ୍ତ୍ୱିକ ଉଦ୍ଦେଶ୍ୟ ରହିଛି । ଏହା ସହିତ ମଣିଷର ଆଧ୍ୟାତ୍ମିକ ସମ୍ପର୍କ ଯେପରି ଜଡ଼ିତ, ସେହିପରି ଜଡ଼ିତ ମଧ୍ୟ ସାମାଜିକ ଚେତନା । ଏହି ଦୃଷ୍ଟିରୁ ଏହାର ସାର୍ବକାଳିକ ମୂଲ୍ୟବୋଧକୁ କଦାପି ଅସ୍ୱୀକାର କରା ଯାଇ ନ ପାରେ ।



## ଓଡ଼ିଶାର ପଲ୍ଲୀ ପ୍ରକୃତି

**(ଉପକ୍ରମ, ପଲ୍ଲୀପ୍ରକୃତିର ଭାବ ବିଭାବ, ବିଭିନ୍ନ ଋତୁର ବିଳାସ ଚିତ୍ର, ସନ୍ଧ୍ୟା ଏବଂ ପ୍ରଭାତ, ଆଧୁନିକ ଯୁଗରେ ଓଡ଼ିଶାର ପଲ୍ଲୀର ଶୋଭା, ଉପସଂହାର)**

ପଲ୍ଲୀବହୁଳ ଓଡ଼ିଶାର ପଲ୍ଲୀପ୍ରକୃତି ପ୍ରାଣେ ପ୍ରାଣେ ସ୍ପର୍ଶ କରେ ନବ ଉନ୍ମାଦନା । ଦିଗନ୍ତ ବିସ୍ତାରିତ ସବୁଜ ଶସ୍ୟକ୍ଷେତ୍ର ମଧ୍ୟରେ ଭାସି ଆସୁଥିବା ସବୁ କୃଷକର ଆନନ୍ଦ ସଙ୍ଗୀତ ପଲ୍ଲୀଲଳନାକୁ

ଆନମନା କରେ । ଊର୍ମିଶୋଭିତ ତଟିନୀ, ନଭଶ୍ଚୁମ୍ବୀ ସାନୁମାଳା, ଗ୍ରାମ ପ୍ରାନ୍ତର ଆମ୍ବତୋଟା, ପ୍ରଭାତର ବାଳସୂର୍ଯ୍ୟ, ସନ୍ଧ୍ୟାର ଜ୍ୟୋତ୍ସ୍ନା ପୁଲକିତ ରଜନୀ, ଗୋଧୂଳିର ଗାଈଆଳ ଟୋକାର ବଂଶୀସ୍ୱର, ପଲ୍ଲୀଲଳନାର ନୂପୁର ଧ୍ୱନି, ଶିଶୁର ଦରୋଟି କଥା, ବାଲୁକାଚ୍ଛାଦିତ ନଦୀତୀର, ପକ୍ୱଧାନ କ୍ଷେତ, ବିହଙ୍ଗର କାକଳୀ, ସନ୍ଧ୍ୟାକାଳୀନ ଶିବମନ୍ଦିରର ଶଙ୍ଖଧ୍ୱନି, ତରୁଣତରୁଣୀଙ୍କର ସ୍ୱପ୍ନଭିଜା ରାତ୍ରି, ତଟିନୀର କଳନାଦ – ପଲ୍ଲୀର ସବୁ ସୁନ୍ଦର । ପ୍ରାକୃତିକ ସୌନ୍ଦର୍ଯ୍ୟରେ ଭରପୂର ଓଡ଼ିଶାର ପଲ୍ଲୀପ୍ରକୃତି ଏ ଦେଶର ବିଦଗ୍ଧ କବିଙ୍କୁ ମତୁଆଲା କରିଛି । ତେଣୁ ପୃଷ୍ଠା ପୃଷ୍ଠା ବିତିଯାଇଛି କେବଳ ପ୍ରକୃତି ବର୍ଣ୍ଣନାରେ । ଜୀବନର ଗାନ ଅପେକ୍ଷା ପ୍ରକୃତିର ଗାନ ହୋଇଛି କବିର ମୁଖ୍ୟ ବିଭାବ । ତାରି ସୁନ୍ଦରତାରେ ହଜାଇଛି କବି ତା'ର ମନ ଓ ବଚନ । ଅବଶ୍ୟ ଅତୀତର ସେହି ପ୍ରାକୃତିକ ଶୋଭା ଆଜି ପଲ୍ଲୀରେ ବିରଳ । ଆଧୁନିକତାର ସ୍ପର୍ଶ ପଲ୍ଲୀକୋଳରୁ ଛଡ଼ାଇ ନେଇଛି ତା'ର ସୁଷମା । ସହରୀ ମଣିଷର ସର୍ବଗ୍ରାସୀ ରୂପ ଆଜି ପଲ୍ଲୀକୁ କବଳିତ କରିଛି । ଏହାସତ୍ତ୍ୱେ ଏବେବି ପଲ୍ଲୀ ବିଧବା ନୁହେଁ । ତା'ର ସୀମାନ୍ତ ଏବେବି ଉଜ୍ଜ୍ୱଳିତ ପ୍ରାକୃତିକ ମାଧୁରିମାରେ । ସୌନ୍ଦର୍ଯ୍ୟ ଲକ୍ଷ୍ମୀଙ୍କର ବିଳାସ ଭୂମିରୂପେ ଏବେ ମଧ୍ୟ ବେଳେବେଳେ ସହରୀ ସଭ୍ୟତାକୁ ଆକୃଷ୍ଟ କରୁଛି ପଲ୍ଲୀ ।

ପଲ୍ଲୀପ୍ରକୃତିର ସମସ୍ତ ବିଭବ ସୁନ୍ଦର, କମନୀୟ ଓ ମନୋରମ । ପଲ୍ଲୀ ଲଳନାର ଅକୃତ୍ରିମ ସୌନ୍ଦର୍ଯ୍ୟ, କିଶୋର କିଶୋରୀଙ୍କ ମନଫୁଲାଣିଆ ହସ, ଗ୍ରାମ୍ୟ ରାସ୍ତା ଉପରେ ଘର ଫେରନ୍ତି ଗାଈଗୋରୁଙ୍କର କ୍ରୀଡ଼ାରତ ଭଙ୍ଗୀ, ଆମ୍ବତୋଟାର କୁହୁଧ୍ୱନି, ସରସୀରେ କ୍ରୀଡ଼ାରତ ମରାଳର ଶୋଭା, ଜ୍ୟୋତ୍ସ୍ନାପ୍ଲାବିତ ରଜନୀ, ଅରୁଣର କଷାୟ ବାସ, ଦେବମନ୍ଦିରର ଆଳତି, ଶିଶୁଙ୍କର ଧୂଳିଖେଳ, ଗାଈଆଳ ଟୋକାର ମନଫୁଲାଣିଆ ଗୀତ, ଯୋଜନଯୋଜନା ବ୍ୟାପୀ ସବୁଜ ଶସ୍ୟକ୍ଷେତ, ନଦୀକୂଳର ବିସ୍ତୀର୍ଣ୍ଣ ବାଲୁକାପ୍ରାନ୍ତର; ଆମ୍ବ, ଖଜୁର, ପଣସ, ନାରୀକେଳ ବୃକ୍ଷର ଧାଡ଼ି ଧାଡ଼ି ଶୋଭା; ବିବିଧ ପୁଷ୍ପର ଅପୂର୍ବ ସମାରୋହ, ସନ୍ଧ୍ୟା ପ୍ରଭାତର ଶୀତଳ ସମୀର, ପଲ୍ଲୀବାସୀଙ୍କର ଅକୃତ୍ରିମ ସ୍ନେହ ସବୁ ଯେପରି ଆକର୍ଷଣୀୟ ଓ ମନୋମୁଗ୍ଧକର । ଛଳନା ଓ ପ୍ରତାରଣାଠାରୁ ବହୁ ଦୂରରେ ସ୍ନେହ ଏବଂ ମୈତ୍ରୀର ବନ୍ଧନରେ ବନ୍ଦୀ ପଲ୍ଲୀବାସୀଙ୍କ ଜୀବନ ଯେକୌଣସି ସହରୀବାସୀଙ୍କର ଅନୁକରଣୀୟ ହେବା ଉଚିତ । କୃତ୍ରିମ ଜୀବନଯାପନ ମଧ୍ୟରେ ଅଣନିଃଶ୍ୱାସୀ ସହରୀ କ୍ଷଣିକ ଆନନ୍ଦ ପାଇଁ ଫେରିଯାଏ ପଲ୍ଲୀ କୋଳକୁ । ପଲ୍ଲୀ ତାକୁ ଅନାଦର କରେନି । ତା'ର ମମତାର ସ୍ପର୍ଶରେ ପୁଲକିତ ହୋଇଉଠେ ମନ ଆଉ ପ୍ରାଣ । ଉତ୍କଳୀୟ ପଲ୍ଲୀଶୋଭାର ପ୍ରାକୃତିକ ଚିତ୍ର ନନ୍ଦକିଶୋରଙ୍କ କବିତାରେ ଜୀବିତ ଏବଂ ରାଧାନାଥଙ୍କ ସୃଷ୍ଟି ଉତ୍କଳୀୟ ପ୍ରାକୃତିକ ସୌନ୍ଦର୍ଯ୍ୟରେ ମନୋରମ ଆଲେଖ୍ୟ । ପଲ୍ଲୀର ଜୀବନପରି ପଲ୍ଲୀର ପ୍ରକୃତି ଶାନ୍ତ, କମନୀୟ ।

ପଲ୍ଲୀରେ ଷଡ଼ଋତୁର ଭୂମିକା ଅତୀବ ମହତ୍ତ୍ୱପୂର୍ଣ୍ଣ । ସତେଯେପରି ଜୀବନର ଛଅଟି ସ୍ମୃତି ସବୁ ପରିଚିତ, ସବୁ ଆପଣାର । ପ୍ରଥମେ ଆସେ ଗ୍ରୀଷ୍ମ କ୍ରୋଧୀ ମଣିଷଟିଏ ପରି । ତା'ର ପ୍ରଖର ରଶ୍ମିରେ ପଲ୍ଲୀବାସୀ ଅଥୟ ହୋଇପଡ଼ନ୍ତି; ଜଳାଭାବର କଷ୍ଟ ସେମାନଙ୍କୁ

ପୀଡ଼ା ପ୍ରଦାନ କରେ । ରାସ୍ତାଘାଟ, ନଦୀନାଳ ସବୁ ଶୁଷ୍କ ହୋଇଉଠେ । ଏହାସତ୍ତ୍ୱେ ପଲ୍ଲୀ ତୋଟାର ମନୋରମ ପରିବେଶ ମଣିଷ ମନରୁ ଭୁଲିହୁଏନି । ଆମ୍ବ, ପଣସ, ତାଳ, ସପୁରୀର ମହ ମହ ବାସ୍ନା ଖେଳିବୁଲେ ଦକ୍ଷିଣା ପବନରେ । ମଲ୍ଲୀ ଓ ହେନାର ସୁରଭି ଖେଳିବୁଲେ ସନ୍ଧ୍ୟା ସମୀରରେ ପଲ୍ଲୀ କୋଳରେ । ଗ୍ରୀଷ୍ମର ସନ୍ଧ୍ୟା, ରଜନୀ ଓ ପ୍ରଭାତ ଅତୀବ ମନୋରମ । ରାତ୍ରିର ସୁଶୀତଳ ପବନ ପଲ୍ଲୀବାସୀଙ୍କ ଶରୀରରେ ଚନ୍ଦନ ପ୍ରଲେପ ଦିଏ । ଡାଳୁଅ ଧାନରେ ସୁନେଲି ରୂପ ଚାଷୀକୁ କରେ ଆତ୍ମହରା । ମଧୁର ପଲ୍ଲୀ ସୁମଧୁର ହୋଇଉଠେ କୃଷି ସଙ୍ଗୀତରେ । ଗ୍ରୀଷ୍ମର ରୌଦ୍ର ଦଗ୍‌ଧ ପଲ୍ଲୀକୁ ଶାନ୍ତିର ପ୍ରଲେପ ଦେବାପାଇଁ ଆଗମନ କରେ ବର୍ଷା । ଭରା ମୌସୁମୀ ସ୍ପର୍ଶରେ ପୁଲକିତ ହୋଇଉଠେ ଧରା । ଆଦ୍ୟ ଆଷାଢ଼ର ପ୍ରଥମ ବାରିପାତରେ ରୋମାଞ୍ଚିତ ହୋଇଉଠେ ପୃଥିବୀମାତା । ଅଙ୍ଗେ ଅଙ୍ଗେ ଫୁଟିଉଠେ ଅସରନ୍ତି ବୃକ୍ଷଲତା । ଜୀବନର ଅଫୁରନ୍ତ ପ୍ରବାହ ଖେଳିଯାଏ ପଲ୍ଲୀର ଶାନ୍ତ ବୁକୁରେ । ମେଘାବରଣ ମଧ୍ୟରେ ସୂର୍ଯ୍ୟଙ୍କର ଲାଜମିଶା ଚାହାଣି ଆକାଶରେ ଖେଳାଇଦିଏ ସପ୍ତରଙ୍ଗର ଇନ୍ଦ୍ରଧନୁ । ରଙ୍ଗଣୀପୁଷ୍ପରେ ହସିଉଠେ ପଲ୍ଲୀ । ବିଲରୁ ଭାସିଆସେ କୃଷକର କଣ୍ଠ ସଙ୍ଗୀତ । ବର୍ଷାର ରୁମ୍ ଝୁମ୍ ଶବ୍ଦ ଅପୂର୍ବ ରାଗିଣୀ ତୋଳି ଉଠେ ପଲ୍ଲୀର ପତ୍ର ସନ୍ଧିରେ । ପନିପରିବାରେ ଭରପୂର ହୋଇଉଠେ ବାଡ଼ି । ତା' ସହିତ ଯୋଗଦେଇ ହସିଉଠେ ଚରାଟ, ଚମ୍ପା, ନିଆଳୀ, ସେବତୀ, ମାଳତୀ, ଟଗର ଓ ଗୋଲାପ । ଜହ୍ନି ଫୁଲ ଉପରେ ସାମୟିକ ଚନ୍ଦ୍ରକିରଣ ମାୟାଜାଲ ସୃଷ୍ଟି କରେ । ସବୁଜତା ମଧ୍ୟରେ ପଲ୍ଲୀ ପ୍ରକୃତିକୁ ହସାଇ ହସାଇ ବିଦାୟ ନିଏ ବର୍ଷା । ଶୁଭ୍ର ଶରତର ଆଗମନ ହୁଏ କାଶତଣ୍ଡିର ମୁଖରେ ହସ ଫୁଟାଇ । ପଲ୍ଲୀ କୁମାରୀ କଣ୍ଠରୁ ଝରିଆସେ 'କୁଆଁର ପୂନେଇ ଜହ୍ନଲୋ...।, ମତୁଆଲା ହୋଇଉଠେ ପଲ୍ଲୀ ଶୁଭ୍ର ଜହ୍ନର ପୁଲକ ଭରା ସ୍ପର୍ଶରେ । ଶାରଦୀୟ ସନ୍ଧ୍ୟାରେ ଜ୍ୟୋତ୍ସ୍ନାଭିଳାଷୀ କୁମୁଦ ନିମନ୍ତ୍ରଣ କରେ ପ୍ରାଣପ୍ରିୟକୁ । ପଲ୍ଲୀର ଶ୍ୟାମଳିମା ଶାରଦୀୟ ଚନ୍ଦ୍ରାଲୋକରେ ସ୍ୱପ୍ନପୁରୀର ଭ୍ରମ ସୃଷ୍ଟି କରେ । ଦୁର୍ଗାଙ୍କର ଆରାଧନାରେ ପଲ୍ଲୀବାସୀ ଭୁଲିଯାଏ ତା'ର ଶୋକ ଦୁଃଖ । ଓଠରେ ଓଠରେ ଚହଟିଯାଏ ହସର ଲହରୀ । ଶରତ ପରେ ହେମନ୍ତ ଆସେ କେଦାରେ କେଦାରେ ସୁନେଲି ରଙ୍ଗକୁ ଖେଳେଇ ଖେଳେଇ । ପଦ୍ମଫୁଲକୁ ବିନାଶକରି କଇଁର ମୁଖରେ ହସ ଫୁଟାଏ । ଘରେ ଘରେ ପ୍ରାଚୁର୍ଯ୍ୟର ହସ । ଲକ୍ଷ୍ମୀ ପୂଜାରେ ଗ୍ରାମ୍ୟଲଳନା ଭୁଲିଯାଏ ତା'ର ଅତୀତର ଦୁଃଖ । କାକରଭିଜା ରାତି ବେଶ୍ ମନୋରମ ହୋଇଉଠେ ହେମନ୍ତ ଋତୁରେ । ଶୀତ ଆସେ ହେମନ୍ତକୁ ବିଦାୟ ଦେଇ । ଫୁଲ, ଫଳ, ପନିପରିବାରେ ହସିଉଠେ ବାଡ଼ିବଗିଚା । ସୋରିଷ ଫୁଲ ଉପରେ ଶୀତଳ ପବନର ଧୀର ସ୍ପର୍ଶ ମାଦକତା ସୃଷ୍ଟି କରେ । ଜାତି ଜାତି ଗେଣ୍ଡୁ ଓ ଚରାଟ ଫୁଲର ଶୋଭା ଆକର୍ଷିତ କରେ ଜନମନକୁ । ହାଡ଼ଥରା ଶୀତକୁ ଭ୍ରୂକ୍ଷେପ ନ କରି କୃଷକ ଅନ୍ଧାରରୁ ଉଠିଯାଏ କୃଷିକ୍ଷେତ୍ରକୁ ଧାନକାଟି । ପ୍ରାଚୁର୍ଯ୍ୟ ଓ ଆନନ୍ଦର ଋତୁ ଶୀତ । କାହାରି ମନରେ ଦୁଃଖ ନାହିଁ । ଶୀତଋତୁକୁ ହଠାତ୍ ବିଦାୟ ଜଣାଇ ପ୍ରବେଶ କରେ ଋତୁରାଜ ବସନ୍ତ । ପଲ୍ଲବିତ ହୋଇଉଠନ୍ତି ବୃକ୍ଷରାଜି । ଆମ୍ବତୋଟାରୁ ଝରିଆସେ କୋକିଳର କୁହୁତାନ । ମଳୟର ସ୍ପର୍ଶ, ପୁଷ୍ପର ସୁରଭି ଦେହରେ ସୃଷ୍ଟିକରେ ବେପଥୁ । ଚମ୍ପା,

ମଲ୍ଲୀ, ମୁଚୁକୁନ୍ଦ, ମାଧବୀ, ଅଶୋକ ପଲ୍ଲୀର ଶୋଭାକୁ ଦ୍ୱିଗୁଣିତ କରେ । ପଲ୍ଲୀ ସରସୀରେ ଫୁଟିଉଠେ ଶତଦଳ । ଭ୍ରମରର ଗୁଞ୍ଜନ ଓ ଆମ୍ରବଉଳର ବାସ୍ନା କୁହୁକର ଇନ୍ଦ୍ରଜାଲ ସୃଷ୍ଟି କରେ ମନରେ । ବାସନ୍ତୀ ସନ୍ଧ୍ୟା ମଧୁମୟ ହୋଇଉଠେ । ରସରାଜ ଶ୍ରୀକୃଷ୍ଣ ଫଗୁ ଖେଳିବା ପାଇଁ ବାହାରିଆସନ୍ତି ପଲ୍ଲୀର ଦାଣ୍ଡକୁ । ପ୍ରାଣରେ ପ୍ରାଣରେ ଜାଗିଉଠେ ପୁଲକ । ଚାରୁବସନ୍ତରେ ପଲ୍ଲୀର ଚତୁର୍ଦ୍ଦିଗ ମଧୁମୟ ହୋଇଉଠେ ।

ପଲ୍ଲୀପ୍ରକୃତି ପରି ପଲ୍ଲୀର ସନ୍ଧ୍ୟା ଏବଂ ପ୍ରଭାତ ଅତ୍ୟନ୍ତ ମଧୁର । ପଲ୍ଲୀର ଉଷା ପ୍ରତିଦିନ ନୂଆ ନୂଆ ରୂପନେଇ ଆବିର୍ଭାବ ହୁଏ । ଷଡ଼ଋତୁର ଛଅଟି ନୂଆ ପ୍ରଭାତର ଅନୁଭବ ଆସେ ପଲ୍ଲୀକୋଳରେ । ପଲ୍ଲୀର ପ୍ରଭାତ ଶାନ୍ତ ଓ କମନୀୟ । ଦିବସର ଚଳଚଞ୍ଚଳତା ନ ଥାଏ । ଦେବଆରାଧନାରେ କେତେ ଘଣ୍ଟା ବିତିଯାଏ ପଲ୍ଲୀର ପ୍ରଭାତ । ପକ୍ଷୀ କୂଜନରେ ଅଳସ କାଟନ୍ତି ପଲ୍ଲୀବାସୀ । ଆଗାମୀ ଦିନ ପାଇଁ ଯୋଜନା ପ୍ରସ୍ତୁତ ହୁଏ ଉଷାକାଳରେ । ନବୋଦିତ ସୂର୍ଯ୍ୟଙ୍କର ସୁନେଲି କିରଣ ଖେଳିଯାଏ ଚାରିଆଡ଼େ । ସବୁଆଡ଼େ ସୁନାର ପ୍ଲାବନ । ଦିନ ପୁଣି ବଢ଼ି ବଢ଼ି ଯାଏ । ପଶ୍ଚିମ ଦିଗରେ ଅସ୍ତଯାଏ ରବି । ସନ୍ଧ୍ୟାର ଆଗମନୀ ବାର୍ତ୍ତା ପ୍ରଚାରିତ ହୁଏ ପକ୍ଷୀ କଣ୍ଠରେ । ଫେରିଆସେ କୃଷକ କ୍ଲାନ୍ତ ଦେହ ନେଇ କୃଷି କ୍ଷେତ୍ରରୁ । ପବନର ମୃଦୁସ୍ପର୍ଶ ତା' ମନରୁ କ୍ଳାନ୍ତି ଦୂର କରେ । ଦେବାଳୟମାନଙ୍କରୁ ଘଣ୍ଟା ଓ ଶଙ୍ଖଧ୍ୱନି ଭାସିଆସେ । ପଲ୍ଲୀର ଚାନ୍ଦିନୀ ରାତି ବେଶ୍ ମନୋରମ । ତାରି ଭିତରେ ସ୍ୱପ୍ନ ଦେଖାଯାଏ, ପୁଣି ବାସ୍ତବ ଜୀବନକୁ ସାମ୍ନା କରିବାକୁ ପଡ଼େ । ତେଣୁ ପଲ୍ଲୀର ପ୍ରାକୃତିକ ସୌନ୍ଦର୍ଯ୍ୟର ତୁଳନା ନାହିଁ । ଏହା ଚିର ନୂତନ ।

ଆଧୁନିକ ସଭ୍ୟତାର ବିକାଶ ଆଜି ପଲ୍ଲୀ ପ୍ରକୃତିକୁ ଶ୍ରୀହୀନ କରିଦେଇଛି । ସନ୍ଧ୍ୟା ସମୟରେ ଦେବମନ୍ଦିରରୁ ଶଙ୍ଖ ଘଣ୍ଟା ଧ୍ୱନି ଶୁଣାଯିବା ପରିବର୍ତ୍ତେ ଶୁଣାଯାଉଛି ରେଡ଼ିଓର ଆଧୁନିକ ଗୀତ ଓ ଦୂରଦର୍ଶନର ତଣ୍ଟିଫଟା ଚିତ୍କାର । ମାଇକ୍‌ର କର୍କଶ ସଙ୍ଗୀତ ପଲ୍ଲୀର ବାତାବରଣକୁ ପ୍ରଦୂଷିତ କରୁଛି । ଆଧୁନିକ ଯୁବକ ପଲ୍ଲୀର ପ୍ରାକୃତିକ ସୌନ୍ଦର୍ଯ୍ୟକୁ ନଷ୍ଟଭ୍ରଷ୍ଟ କରି ଆଧୁନିକ ସଭ୍ୟତାର ସ୍ପର୍ଶ ଦେବାପାଇଁ ସେଠାରେ ଖେଳପଡ଼ିଆ ବା ଟେନିସ୍ କୋଠି କାଟୁଛନ୍ତି । ପଲ୍ଲୀର ସରସୀରେ ଶତଦଳ କିମ୍ବା କଇଁ ଦେଖାଯାଉ ନାହିଁ । ତା ବଦଳରେ କୁତ୍ସିତ ଦଳ ସରସୀର ଶୋଭା ମଣ୍ଡନ କରୁଛି । ବାଡ଼ିବଗିଚାରେ ପନିପରିବା ନାହିଁ କିମ୍ବା ଗାଁ ଶେଷ ମୁଣ୍ଡରେ ଆଉ ଆମ୍ବତୋଟା ନାହିଁ । କୋଇଲିମାନେ ଆଜି ନିର୍ବାସିତ । ସହରର ଯନ୍ତ୍ରସଭ୍ୟତା ପଲ୍ଲୀକୁ ଗ୍ରାସ କରିଛି । ପଲ୍ଲୀବାସୀ ସହରର ଚାକଚକ୍ୟରେ ପ୍ରଲୁବ୍ଧ ହୋଇ ଗାଁ ମାଟି ତ୍ୟାଗ କରୁଛନ୍ତି । ଅତୀତରେ ସ୍ନେହ, ପ୍ରେମ ଓ ଶ୍ରଦ୍ଧାଭାବ ପଲ୍ଲୀରୁ ସମ୍ପୂର୍ଣ୍ଣ ବିତାଡ଼ିତ । ଆଧୁନିକତାର ରାକ୍ଷସ ଆଜି ପଲ୍ଲୀପ୍ରକୃତିର ଶ୍ରୀକୁ ନଷ୍ଟ ବିନଷ୍ଟ କରିଛି ।

ଆଧୁନିକ ସଭ୍ୟତାର କାଳଗ୍ରାସୀ ରୂପ ସତ୍ତ୍ୱେ ତଥାପି ପଲ୍ଲୀର ଶୋଭା ଆଜି ସମ୍ପୂର୍ଣ୍ଣ ଭାବେ ବିଦୂରିତ ନୁହେଁ । ସାମୟିକ ହେଲେ ମଧ୍ୟ ସନ୍ଧ୍ୟାରେ ଦେବାଳୟରୁ ଘଣ୍ଟାଧ୍ୱନି ଆସୁଛି ।

ଗାଈଆଳ ପିଲାଙ୍କ କଣ୍ଠରୁ ଏବେବି ଘରବାହୁଡ଼ା ସଙ୍ଗୀତ ଶୁଣାଯାଉଛି । ସମୟର ପରିବର୍ତ୍ତନ ମଧରେ ପଲ୍ଲୀର ପ୍ରାକୃତିକ ସୁଷମା ପରିବର୍ତ୍ତିତ ହୋଇଛି । ଅଯତ୍ନବର୍ଦ୍ଧିତ ପ୍ରାକୃତିକ ଶୋଭା ପରିବର୍ତ୍ତେ କିଛିଟା କୃତ୍ରିମ ଶୋଭା ଏବେବି ପଲ୍ଲୀରେ ରହିଛି । ଏହା ସତ୍ତ୍ୱେ ପଲ୍ଲୀର ଅତୀତ ଆକର୍ଷଣ ଆଉ ବର୍ତ୍ତମାନ ପଲ୍ଲୀରେ ଦେଖାଯାଉ ନାହିଁ । ସହରର କୃତ୍ରିମତା ମଧ ପଲ୍ଲୀରେ ପ୍ରବେଶ କରିସାରିଲାଣି । ଠିକ୍ ଅର୍ଥରେ ଗୋଟିଏ ପଲ୍ଲୀ ଓଡ଼ିଶାରେ ମିଳିବା ବର୍ତ୍ତମାନ ଆଦୌ ସହଜସାଧ ନୁହେଁ ।

●

# ଧୀରପାଣି ପଥର କାଟେ

**(ଉପକ୍ରମ, ଆପ୍ତବାକ୍ୟର ଉଦ୍ଦେଶ୍ୟ, ଜୀବନ କ୍ଷେତ୍ରରେ ଉପଯୋଗିତା, ଉପସଂହାର)**

ମାନବ ତା' ଜୀବନ ପଥରେ ଗତିକରିବା ସମୟରେ ବହୁ ବାଧାବିଘ୍ନର ସମ୍ମୁଖୀନ ହୋଇଥାଏ । ଯଦି ବାଧାବିଘ୍ନକୁ ଧୀରସ୍ଥିର ଭାବରେ ସାମ୍ନା କରି ନ ପାରି ସେ ପଛକୁ ଫେରିଆସେ, ତେବେ ସେହି କାର୍ଯ୍ୟଟି ସବୁଦିନ ପାଇଁ ଅପୂରଣୀୟ ହୋଇ ରହିଯାଏ । ତେଣୁ ପ୍ରତ୍ୟେକଟି କାର୍ଯ୍ୟ ଧୀରସ୍ଥିର ଭାବରେ ସାବଧାନତାର ସହିତ ସଂସାଧିତ ହେବା ଆବଶ୍ୟକ । ଇଂରାଜୀରେ ଏହି ଉଦ୍ଦେଶ୍ୟ ପାଇଁ ପ୍ରୟୋଗ କରାଯାଉଥିବା Proverbଟି ହେଉଛି—"Slow and steady wins the race." ଓଡ଼ିଆରେ ଏହି ରଢ଼ିବାକ୍ୟ ହେଉଛି—'ଧୀରପାଣି ପଥର କାଟେ ।'

ପ୍ରବଚନ ବା ରଢ଼ିବାକ୍ୟର ଆକ୍ଷରିକ ଅର୍ଥ ଯଥାର୍ଥରେ ଗୁରୁତ୍ୱପୂର୍ଣ୍ଣ ନୁହେଁ । ଏହା ମଧରେ ନିହିତ ଗୂଢ଼ାର୍ଥହିଁ ପ୍ରକୃତରେ ଗୁରୁତ୍ୱପୂର୍ଣ୍ଣ । ଦୃଶ୍ୟମାନ ଜଗତ ସହିତ ଏହି ଆପ୍ତବାକ୍ୟଗୁଡ଼ିକର ବିଶେଷ ସମ୍ପର୍କ ନାହିଁ । ମଣିଷର ଭାବଜଗତ ସହିତ ଏହାର ସମ୍ପର୍କ । ଧୀରେ ଧୀରେ ଗତିଶୀଳ ପାଣି ପଥର ପରି କଠିନ ବସ୍ତୁକୁ ମଧ କ୍ଷୟ କରିଦେଇପାରେ । ଏହାର ଉଦ୍ଦେଶ୍ୟ ହେଉଛି ଧୀରସ୍ଥିର ଭାବରେ କାର୍ଯ୍ୟ କଲେ, ଯେତେ ଦୁଃସାଧ କାର୍ଯ୍ୟ ହେଲେ ମଧ ତା'ର ସଂସାଧନ ହୋଇପାରେ । ଜୀବନର ପ୍ରତିଟି କ୍ଷେତ୍ରରେ ଧୀରସ୍ଥିର ଭାବରେ କାର୍ଯ୍ୟ କରିବା ଉଚିତ । ଏହାଦ୍ୱାରା ଅସମ୍ଭବ କାର୍ଯ୍ୟ ସମ୍ଭବ ହୋଇପାରିଥାଏ । ଧୀର ଚିନ୍ତା ଓ ସ୍ଥିର ଭାବ ମଣିଷକୁ ଶୃଙ୍ଖଳିତ ଓ ନିୟମବଦ୍ଧ କରିଥାଏ । ଶୃଙ୍ଖଳିତ କାର୍ଯ୍ୟ ସର୍ବଦା ସଫଳତାକୁ ଅପେକ୍ଷା ରଖେ । ସମଗ୍ର ବିଶ୍ୱ ଗୋଟିଏ ଶୃଙ୍ଖଳା ମଧ ଦେଇ ଗତିଶୀଳ । ସୂର୍ଯ୍ୟ, ଚନ୍ଦ୍ର, ପୃଥିବୀ ଆଦି ଗ୍ରହଗୁଡ଼ିକ ଧୀରସ୍ଥିର ଭାବରେ ଓ ଶୃଙ୍ଖଳିତ ଅବସ୍ଥାରେ କାର୍ଯ୍ୟ କରୁଥିବାରୁ ସମସ୍ତ ଜିନିଷ ଠିକ୍ ରୂପେ ଚାଲିଛି । ମାତ୍ର ସାମାନ୍ୟ ଟିକେ ବିଶୃଙ୍ଖଳା ହେଲେ ମହାପ୍ରଳୟ ହେବାର ସମ୍ଭାବନା ରହିଛି । ପାଣିର ଧୀର ଗତି ପଥର ପରି କଠିନ ପଦାର୍ଥକୁ କାଟିବା

ପରି ଧୀରସ୍ଥିର କାର୍ଯ୍ୟ ଅସମ୍ଭବକୁ ମଧ୍ୟ ସମ୍ଭବ କରିଦେଇଥାଏ । ଧୀର ସ୍ଥିର ଭାବରେ କାର୍ଯ୍ୟ କଲେ, ଭୁଲ ହେବାର ସମ୍ଭାବନା ନ ଥାଏ । ଅଧୀର ଭାବରେ କାର୍ଯ୍ୟକରିବା ଦ୍ୱାରା ସେଥିରେ ଅନେକ ଭୁଲ୍ ରହିଯାଇଥାଏ ଓ ତାହା ବ୍ୟକ୍ତିବିଶେଷଙ୍କୁ ଅସୁବିଧାର ସମ୍ମୁଖୀନ କରାଇଥାଏ । ସାମୂହିକ କାର୍ଯ୍ୟରେ ଭୁଲ୍ ରହିଲେ ତାହା ଅଧିକ କ୍ଷତି ସାଧନ କରେ । ତେଣୁ କୌଣସି କାର୍ଯ୍ୟରେ ହାତଦେବା ପୂର୍ବରୁ ପ୍ରଥମେ ଧୀରସ୍ଥିର ଭାବରେ ଚିନ୍ତା କରିବା ଆବଶ୍ୟକ । ତପ୍ରେ ସେହି କାର୍ଯ୍ୟକୁ ସୁସ୍ଥ ମସ୍ତିଷ୍କରେ ସାଧନ କଲେ ସେଥିରେ ଆଦୌ ଭୁଲ ରହିନଥାଏ ।

ମାନବ ଜୀବନକୁ ଉଚିତ ମାର୍ଗରେ ପରିଚାଳିତ କରିବା ପାଇଁ ଏହି ଆପ୍ତବାକ୍ୟଟିର ପ୍ରୟୋଗ କରାଯାଇଛି । ସମଗ୍ର ବିଶ୍ୱ ଏକ ଶୃଙ୍ଖଳାର ବଶବର୍ତ୍ତୀ ହୋଇଥିବାରୁ ଏବଂ ସମସ୍ତ କାର୍ଯ୍ୟ ଧୀର ଭାବରେ ଚାଲିଥିବାରୁ, ସେଗୁଡ଼ିକ ନିର୍ବିଘ୍ନରେ ସମାପନ ହେଉଛି । ବିଶ୍ୱ କ୍ଷେତ୍ରରେ ଯାହା ସତ୍ୟ, ମଣିଷ କ୍ଷେତ୍ରରେ ମଧ୍ୟ ଠିକ୍ ତାହାହିଁ ସତ୍ୟ । ପୃଥିବୀ ସୂର୍ଯ୍ୟ ଚାରିପାଖରେ ଘୂରୁଥିବା ସମୟରେ ଧୀରେ ଧୀରେ ତା'ର କାର୍ଯ୍ୟ କରୁଥିବାରୁ ଋତୁଚକ୍ରର ଆବର୍ତ୍ତନ ହେଉଛି । ପ୍ରତ୍ୟେକ କାର୍ଯ୍ୟ ପାଇଁ ଧୈର୍ଯ୍ୟର ଆବଶ୍ୟକତା ରହିଛି । ବିନା ଧୈର୍ଯ୍ୟରେ କୌଣସି କାର୍ଯ୍ୟ ସମ୍ଭବ ହେବା ସହଜ ନୁହେଁ । ଅଧ୍ୟୟନ ସମୟରେ, ଗୀତ ଗାନ ସମୟରେ, ପରୀକ୍ଷା ସମୟରେ ବା କୌଣସି କାର୍ଯ୍ୟ କରିବା ସମୟରେ ଅଧୈର୍ଯ୍ୟ ହେଲେ କିମ୍ବା ତରବର ହେଲେ ଠିକ୍ କାର୍ଯ୍ୟଟି ମଧ୍ୟ ଭୁଲ୍ କାର୍ଯ୍ୟରେ ପରିଣତ ହୋଇଯାଇଥାଏ । ଜାଣିଥିବା କାର୍ଯ୍ୟଟି ମଧ୍ୟ ତ୍ରୁଟିପୂର୍ଣ୍ଣ ବୋଲି ପରିଗଣିତ ହୋଇଥାଏ । ସମୁଦ୍ରରେ ଢେଉ ଭାଙ୍ଗିବା ସମୟରେ ଉପଦେଶ ଦିଆଯାଇ କୁହାଯାଇଥାଏ, ଧୀର ଭାବରେ ବସିପଡ଼; ଢେଉ ମୁଣ୍ଡଉପର ଦେଇ ଗ୍ଳଲିଯିବ । ଅର୍ଥାତ୍ ସମୁଦ୍ରର ବିରାଟ ଢେଉ ମଧ୍ୟ ଧୀର କାର୍ଯ୍ୟ ଓ ଧୈର୍ଯ୍ୟ ନିକଟରେ ମଥାନତ କରିଥାଏ । ବିପଦ ସମୟରେ ଅଧୈର୍ଯ୍ୟ ଓ ଅସ୍ଥିର ହେଲେ ମଣିଷ ଅଧିକ କ୍ଷତିଗ୍ରସ୍ତ ହୋଇଥାଏ । ମାତ୍ର ଯଦି ସେ ଧୈର୍ଯ୍ୟର ସହିତ୍ ସେହି ବିପଦକୁ ମୁକାବିଲା କରେ, ତାହା ଅକ୍ଳେଶରେ ଦୂର ହୋଇଯାଇଥାଏ । ଧୀର ପାଣି ପଥର କାଟେ, ଧୀର କଥା ଶରୀରକୁ ପୀଡ଼ାଦିଏ । ଧୀର ବର୍ଷା ମାଟି ତାଡ଼େ । ତେଣୁ ସବୁକ୍ଷେତ୍ରରେ 'ଧୀର' ଭାବର ବିଶେଷ ଉପଯୋଗିତା ରହିଛି ।

'ଧୀର ପାଣି ପଥର କାଟେ' ବାକ୍ୟଟି ବିଶେଷଭାବରେ ମଣିଷର ମନରେ ଧୈର୍ଯ୍ୟ ସୃଷ୍ଟି ପାଇଁ ଉଦ୍ଦିଷ୍ଟ । ଜୀବନକୁ ମାର୍ଜିତ ଓ ସୁସଂସ୍କୃତ କରିବା ପାଇଁ ଯେପରି ଶୃଙ୍ଖଳା ଜ୍ଞାନର ଆବଶ୍ୟକ ରହିଛି, ସେହିପରି କୌଣସି କାର୍ଯ୍ୟର ନିର୍ବିଘ୍ନ ସମାପନ ପାଇଁ ଧୈର୍ଯ୍ୟର ଆବଶ୍ୟକ ଅଛି । ସ୍ଥିର ଚିନ୍ତା ଓ ଧୀର କାର୍ଯ୍ୟ ଦ୍ୱାରା ମଣିଷ ଅକ୍ଳେଶରେ ନିଜର ଲକ୍ଷ୍ୟସ୍ଥଳରେ ପହଞ୍ଚି ପାରିଥାଏ । ମଣିଷ ଜୀବନକୁ ସୁସ୍ଥ, ସୁନ୍ଦର ଏବଂ ଶୃଙ୍ଖଳିତ କରିବା କ୍ଷେତ୍ରରେ ଏହି ଆପ୍ତ ବାକ୍ୟଟିର ଗୁରୁତ୍ୱପୂର୍ଣ୍ଣ ଭୂମିକା ଯେ ନିଶ୍ଚୟ ରହିଛି, ଅସ୍ୱୀକାର କରାଯାଇ ନ ପାରେ ।

●

# ଏକତାହିଁ ବଳ

(ଉପକ୍ରମ, ଏକତାର ଆବଶ୍ୟକତା ଓ ଅର୍ଥ, ଏକତା ଅଭାବର ଅପକାରିତା, ଉପସଂହାର)

ପଶୁପକ୍ଷୀଙ୍କ ଠାରୁ ଆରମ୍ଭକରି ମାନବ ଜଗତ ପର୍ଯ୍ୟନ୍ତ ପ୍ରତି କ୍ଷେତ୍ରରେ ଏକତାର ଆବଶ୍ୟକତା ରହିଛି । ଇଂରାଜୀରେ ଏହାକୁ କୁହାଯାଇଥାଏ–'Union is Strength' ଯେ କୌଣସି ପରିସ୍ଥିତିର ମୁକାବିଲା ପାଇଁ ଏକତାର ଅପରିହାର୍ଯ୍ୟତା ରହିଛି । ସାଧାରଣ ଭାବେ ଯାହା ଗୋଟିଏ ମନୁଷ୍ୟ ଦ୍ୱାରା ସମ୍ଭବ ହୋଇ ନ ଥାଏ, ପାଞ୍ଚଜଣଙ୍କ ଦ୍ୱାରା ତାହା ଅକ୍ଳେଶରେ ସାଧିତ ହୋଇଥାଏ । ଏକତାର ସହଯୋଗରୁ ସମାଜର ସୃଷ୍ଟି । ଏକତାର ଅଭାବ ଘଟିଲେ ଜାତି ପରାଧୀନତାର ଶୃଙ୍ଖଳରେ ବନ୍ଦୀ ହୋଇଥାଏ । ସେଥିପାଇଁ ଗାଁ ଗହଳିର ଏକ ପରିଚିତ ପ୍ରବାଦ ହେଉଛି 'ଯୋଡ଼ାକୁ ଘୋଡ଼ା ସରି ହୁଏନା' । ପାଞ୍ଚଜଣକର କାର୍ଯ୍ୟ ଜଣେ ବ୍ୟକ୍ତି କରିପାରେ ନାହିଁ । ସମାଜର ଆଦ୍ୟ ବିକାଶରୁ ଏକତାର ଆବଶ୍ୟକତା ଅନୁଭୂତ ହୋଇଛି । ବଳଶାଳୀ ବ୍ୟକ୍ତି କିମ୍ୱା ହିଂସ୍ରଜନ୍ତୁ ଆକ୍ରମଣରୁ ରକ୍ଷା ପାଇବା ପାଇଁ ମଣିଷ ଗଠନ କରିଛି ସମାଜ । ସମାଜ କହିଲେ ଏକାଧିକ ବ୍ୟକ୍ତିଙ୍କର ଏକତ୍ର ସମ୍ମିଳନକୁ ବୁଝାଇଥାଏ । ଏପରିକି ମାନବେତର ଜୀବ ଏକତ୍ରିତଭାବେ ଅସମ୍ଭବ କାର୍ଯ୍ୟକୁ ସମ୍ଭବ କରିଥିବାର ଉଦାହରଣ ରହିଛି । ଏକତାର ବଳରେ ବଳୀୟାନ୍ ଜାତି କୌଣସି କ୍ଷେତ୍ରରେ ପରାଜୟର ସ୍ୱାଦ ଚାଖି ନ ଥାଏ । ଏହି ଦୃଷ୍ଟିରୁ ଏକତା ହିଁ ବଳ ପ୍ରବାଦଟିର ପ୍ରାସଙ୍ଗିକତା ରହିଛି ।

ଜାତି, ବ୍ୟକ୍ତି ଏବଂ ସମାଜର ବିକାଶ ପାଇଁ ଏକତାର ଆବଶ୍ୟକତା ରହିଛି । ବିନ୍ଦୁ ବିନ୍ଦୁ ଜଳର ସମଷ୍ଟିରେ ସିନ୍ଧୁ ମଧ୍ୟ ସୃଷ୍ଟି ହୋଇପାରେ । କେତେଗୁଡ଼ିଏ ସୂତାଖିଅ ମିଶିଗଲେ ହାତୀପରି ବିରାଟ ଜନ୍ତୁଟିକୁ ମଧ୍ୟ ବନ୍ଧନ କରାଯାଇପାରେ । ଗୋଟିଏ କାଠି ସହଜରେ ଭଙ୍ଗାଯାଇପାରେ । ମାତ୍ର ଏକକାଳୀନ ୮-୧୦ଟି କାଠି ଭାଙ୍ଗିବା ସହଜସାଧ୍ୟ ନୁହେଁ । ଏ ସମ୍ପର୍କରେ ଗୋଟିଏ ସୁନ୍ଦର ଉଦାହରଣ ରହିଛି । ଜଣେ ବୃଦ୍ଧ ବ୍ୟକ୍ତି ତାଙ୍କର ପୁଅମାନଙ୍କ ମଧ୍ୟରେ ଏକତାର ଅଭାବ ଲକ୍ଷ୍ୟ କରି ବିଚଳିତ ହୋଇପଡ଼ିଲେ । ଏକତାର ତାତ୍ପର୍ଯ୍ୟ ବୁଝାଇବାକୁ ଯାଇ ସେ ତାଙ୍କର ପ୍ରତ୍ୟେକ ସନ୍ତାନକୁ ପାଞ୍ଚଟି କାଠି ମିଶା ଗୋଟିଏ ବିଡ଼ା ଭାଙ୍ଗିବାକୁ ଦେଲେ । ମାତ୍ର କୌଣସି ସନ୍ତାନ କାଠି ବିଡ଼ାଟିକୁ ଭାଙ୍ଗି ପାରିଲେ ନାହିଁ । ବିଡ଼ା ଖୋଲି ଗୋଟିଏ ଗୋଟିଏ କାଠି ଦେବାରୁ ସେମାନେ ଅକ୍ଳେଶରେ ତାହା ଭାଙ୍ଗି ଦେଇପାରିଲେ । ବୃଦ୍ଧ କାଠିବିଡ଼ାଟି ମାଧ୍ୟମରେ ତାଙ୍କର ପୁତ୍ରମାନଙ୍କୁ ଏକତାର ମହତ୍ତ୍ୱ ସମ୍ପର୍କରେ ଶିକ୍ଷା ଦେବାରୁ ସେମାନଙ୍କର ଜ୍ଞାନୋଦୟ ହେଲା । ବ୍ୟାଧ ଓ କପୋତ ପ୍ରସଙ୍ଗରୁ ଏହି ଏକତାର ବଳ ସମ୍ପର୍କରେ ଏକ ଶିକ୍ଷା ଲାଭ ହୋଇଥାଏ । ସମସ୍ତ କପୋତ ଏକସଙ୍ଗେ ନିଜର ଶକ୍ତି ପ୍ରଦର୍ଶନ କରିବାରୁ ଓଜନିଆ ଜାଲଟିକୁ ଆକାଶମାର୍ଗରେ ନେଇଯାଇ ପାରିଲେ । ତେଣୁ ଏକତାର ଏହି ମହତ୍ତ୍ୱ ଓ ପରାକାଷ୍ଠା

ସମ୍ବନ୍ଧରେ ସମସ୍ତେ ସଚେତନ ହେବା ଆବଶ୍ୟକ । ଛୋଟ ଛୋଟ ପିମ୍ପୁଡ଼ି ଏକତାବଦ୍ଧ ଭାବରେ ଖାଦ୍ୟ ବହନ କରି ଆଣୁଥିବାରୁ ବହୁପରିମାଣରେ ଖାଦ୍ୟ ଜମାକରି ରଖି ପାରିଥାନ୍ତି । ଉଇମାନେ ଏକତ୍ରିତ ଭାବେ କାର୍ଯ୍ୟ କରି ବିରାଟ ହୁଙ୍କା ନିର୍ମାଣ କରିପାରିଥାନ୍ତି । ପ୍ରାଣିଜଗତରେ ଏହି ଏକତାର ଦୃଷ୍ଟାନ୍ତ ବିରଳ ନୁହେଁ । ଅଣୁ ବା ପରମାଣୁ ଖୁବ୍ କ୍ଷୁଦ୍ର ହେଲେହେଁ, ସେମାନଙ୍କ ସମଷ୍ଟି ପୃଥିବୀକୁ ମୁହୂର୍ତ୍ତମାତ୍ର ସମୟ ମଧ୍ୟରେ ସମ୍ପୂର୍ଣ୍ଣ ଧ୍ୱଂସ କରିଦେଇପାରେ । କ୍ଷୁଦ୍ର ଧୂଳିକଣା ଏକତ୍ରିତ ହୋଇ ଗୋଟିଏ ବ୍ରହ୍ମାଣ୍ଡ ସୃଷ୍ଟି କରିପାରନ୍ତି । ଏକତାଦ୍ୱାରା ଯେ କୌଣସି ଅସମ୍ଭବ କାର୍ଯ୍ୟ ସମ୍ଭବ କରାଯାଇପାରେ । ସାମାଜିକ ଜୀବନରେ ଏହାର ଅନେକ ଉପଯୋଗିତା ରହିଛି । ପାଞ୍ଚଭାଇ ଏକତ୍ର ରହିଥିଲେ, ଅନ୍ୟ କେହି ତାଙ୍କ ଉପରେ ଆକ୍ରମଣ କରିବାକୁ ସାହସ କରିପାରିନଥାନ୍ତି । ଏହି ଏକତା ଯୋଗୁଁ ପ୍ରବଳ ପରାକ୍ରମୀ ବ୍ରିଟିଶ୍ ସାମ୍ରାଜ୍ୟରୁ ଭାରତକୁ ସ୍ୱାଧୀନ କରଯାଇପାରିଲା । ଶ୍ରମିକଗୋଷ୍ଠୀର ଏକତା (Union) ଯୋଗୁଁ ଶିଳ୍ପପତିଙ୍କ ନିକଟରେ ସେମାନଙ୍କର ସ୍ୱାର୍ଥ ସୁରକ୍ଷିତ ରହିପାରୁଛି । ବାର୍ଦ୍ଧକ୍ୟାବସ୍ଥାରେ ଏକତ୍ର ସହାବସ୍ଥାନ ଯୋଗୁଁ ବୃଦ୍ଧଟିର ରକ୍ଷଣାବେକ୍ଷଣ ଦାୟିତ୍ୱ ପରିବାର ଗ୍ରହଣ କରିଥାନ୍ତି । ରୁଷିଆର ବଲ୍‌ସେଭିକ୍ ଆନ୍ଦୋଳନ କିମ୍ବା ଫରାସୀ ରାଷ୍ଟ୍ରବିପ୍ଳବରେ ଏକତାର ମହତ୍ତ୍ୱ ପ୍ରତିପାଦିତ ହୋଇଛି । ଆଜି ଯଦି ବିଶ୍ୱରେ ଜାପାନ ଜାତି ଆର୍ଥନୀତିକ କ୍ଷେତ୍ରରେ ସମୃଦ୍ଧିଶାଳୀ ହୋଇପାରିଥାନ୍ତି, ତେବେ ତାହା ତାଙ୍କର ଏକତାର ନିଷ୍ଠାଯୋଗୁଁ ସମ୍ଭବ ହୋଇପାରିଛି । ଅତୀତରେ ଇଂରେଜ ଜାତି ନିଜର ଏକତା ଯୋଗୁଁ ବିଶ୍ୱରେ ସର୍ବଶକ୍ତିମାନ ରାଷ୍ଟ୍ରରୂପେ ପରିଗଣିତ ହୋଇଥିଲେ । ପ୍ରାଚୀନ ଭାରତ ତା'ର ଏହି ଏକତାଯୋଗୁଁ ବିଶ୍ୱରେ ଏକ ଶ୍ରେଷ୍ଠ ଜାତି ରୂପେ ପ୍ରତିଷ୍ଠା ଲାଭ କରିଥିଲା । ବହୁ ଧର୍ମ, ବହୁ ଜାତି ଓ ଚିନ୍ତାଧାରାର ଲୋକ ଭାରତରେ ବସବାସ କରୁଥିଲେହେଁ ସେମାନଙ୍କ ମଧ୍ୟରେ ରହିଥିବା ଐକ୍ୟ ହିଁ ସେମାନଙ୍କୁ ଗୋଟିଏ ବନ୍ଧନରେ ବାନ୍ଧି ରଖିପାରିଛି । ବ୍ୟକ୍ତିଗତ, ସାମାଜିକ ଓ ଜାତୀୟ ଜୀବନରେ ଏକତାର ଗୁରୁତ୍ୱ ସର୍ବଦା ସ୍ୱୀକୃତ ହୋଇଆସିଛି ।

ଏକତାର ଅଭାବ ବିପର୍ଯ୍ୟୟକୁ ଡାକି ଆଣିଥାଏ । ଭାରତର ଇତିହାସ ପର୍ଯ୍ୟାଲୋଚନା କଲେ ଏହାର ବହୁ ଉଦାହରଣ ମିଳିପାରିବ । ୧୧୯୨ ଖ୍ରୀ.ର ଦ୍ୱିତୀୟ ତିରୋରୀ ଯୁଦ୍ଧରେ ପୃଥ୍ୱୀରାଜ ଚୌହାନ୍‌ଙ୍କ ପରାଜୟ ଓ ନିଧନ କେବଳ ଗୃହଶତ୍ରୁ ଜୟଚନ୍ଦ୍ରଙ୍କ ଯୋଗୁଁ ସମ୍ଭବ ହୋଇପାରିଥିଲା । ହିନ୍ଦୁରାଜାମାନଙ୍କ ଦୁର୍ବଳତାର ସୁଯୋଗ ନେଇ ମହମ୍ମଦ ଘୋରୀ ଭାରତ ଅଧିକାର କରିବାକୁ ସମର୍ଥ ହୋଇପାରିଲେ । ଶିଖିମନାଇଙ୍କର ବିଶ୍ୱାସଘାତକତା ଯୋଗୁଁ ଓଡ଼ିଶା ପରାଧୀନ ହୋଇଥିଲା । ଦେଶର ଜନସାଧାରଣଙ୍କ ମଧ୍ୟରେ ଏକତା ନ ରହିଲେ ବିଦେଶୀ ଶତ୍ରୁ ଦେଶକୁ ଆକ୍ରମଣ କରି ଖଣ୍ଡବିଖଣ୍ଡିତ କରିଥାନ୍ତି । ସେହିପରି ପରିବାରର ସଦସ୍ୟମାନଙ୍କ ମଧ୍ୟରେ ଏକତା ନ ରହିଲେ ପଡ଼ୋଶୀ ବା ଶତ୍ରୁ ସେହି ପରିବାରର ସର୍ବନାଶ କରିଥାନ୍ତି । ଚୀନ୍ ଏବଂ ପାକିସ୍ଥାନ ସହିତ ଭାରତର ଯୁଦ୍ଧ ସମୟରେ ଭାରତୀୟଙ୍କ ମଧ୍ୟରେ ଏକତା ଦେଖାଦେଇଥିଲା । ମାତ୍ର ଭାରତର ସାମ୍ପ୍ରତିକ ପରିସ୍ଥିତି ଅତ୍ୟନ୍ତ ଉଦ୍‌ବେଗଜନକ । ଆଜି ଖଲିସ୍ଥାନ ଆନ୍ଦୋଳନ ଚାଲିଛି । ସ୍ୱତନ୍ତ୍ର ଗୁର୍ଖା ରାଜ୍ୟ ପାଇଁ ଦାବି ହେଉଛି । ପଞ୍ଜାବ,

ଜାମ୍ମୁକାଶ୍ମୀର, ଆସାମ, ଦାର୍ଜିଲିଙ୍ଗ୍, କୋଏମ୍ବାଟୁର ଆଦିର ସନ୍ତ୍ରାସବାଦ କାର୍ଯ୍ୟକଳାପ ଗୁରୁତର ଅବସ୍ଥା ଧାରଣ କରିଛି । ଏହାଦ୍ୱାରା ଜାତୀୟ ସ୍ୱାର୍ଥ ବହୁପରିମାଣରେ ବିପନ୍ନ ହୋଇପଡୁଛି । ଯେଉଁ କାରଣରୁ ପାକିସ୍ଥାନରୁ ଆଉ ଏକ ସ୍ୱତନ୍ତ୍ର ବଙ୍ଗଳାଦେଶ ସୃଷ୍ଟି ହେଲା, ଆଜି ସେହିପରି କେତେକ କାରଣ ଭାରତରେ ଦେଖାଦେଇଛି । ସଂକୀର୍ଣ୍ଣ ସ୍ୱାର୍ଥପରତା, ସ୍ୱାଭିମାନର ଅଭାବ, ରାଷ୍ଟ୍ରୀୟ ଏକତାର ପରିପନ୍ଥୀ ବୋଲି ଅନେକ ବୁଝିପାରୁ ନାହାନ୍ତି । ସାମ୍ପ୍ରଦାୟିକ ମନୋଭାବ ଓ ସଂକୀର୍ଣ୍ଣ ଆଞ୍ଚଳିକତା ବୋଧ ଆଜି ଭାରତର ରାଜନୀତିକୁ ବହୁପରିମାଣରେ ପ୍ରଭାବିତ କରୁଥିବାରୁ ଦେଶର ଏକତା ବିପଦର ଦ୍ୱାରଦେଶରେ ଉପସ୍ଥିତ । ଅତୀତରେ ପ୍ରାଚୀନ ଋଷି ଭାରତକୁ ଗୋଟିଏ ପରିବାର ରୂପେ ପରିକଳ୍ପନା କରିଥିଲେ । ସମସ୍ତଙ୍କୁ ସୁଖରେ ରଖିବା ଓ ଆଦର୍ଶ ଜୀବନଯାପନ ନିମିତ୍ତ ସେମାନେ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଥିଲେ । ଆକୁମାରୀ ହିମାଚଳ ଗୋଟିଏ ଐକ୍ୟରେ ବନ୍ଧୀ ଥିଲା । ଏକତାର ଅଭାବ ଯୋଗୁଁ ଭାରତ ଅତୀତରେ ପରପଦାନତ ହୋଇଥିଲା । ପୁନରାୟ ଏକତା ଯୋଗୁଁ ଭାରତ ଇଂରେଜ ଶାସନାଧୀନରୁ ମୁକ୍ତ ହେଲା । ତେଣୁ ଅତୀତର ଅନୁଭୂତିକୁ ପାଥେୟ କରି ଆମେ ବର୍ତ୍ତମାନରେ ଥାଇ ଭବିଷ୍ୟତ ପାଇଁ ସରଣୀ ପ୍ରସ୍ତୁତ କରିବା ଆବଶ୍ୟକ ।

ଏକତା ଯେ ବଳ–ଆଜି ଏକଥା କେହି ଅସ୍ୱୀକାର କରିପାରିବେ ନାହିଁ । ଏକତା ଦ୍ୱାରା ସମସ୍ତ ପ୍ରକାର ବାଧାବନ୍ଧନକୁ ସହଜରେ ଅତିକ୍ରମ କରାଯାଇପାରେ । ଏହା ଦେଶ, ଜାତି ଓ ବ୍ୟକ୍ତିକୁ ସଙ୍ଗଠିତ କରେ । ତା'ମନରେ ଭରିଦିଏ ସାହସ ଓ ପ୍ରେରଣା । ଦେଶର ବିକାଶ ଓ ପ୍ରଗତି ନିମିତ୍ତ ଏହାର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ଯଦି ବିଶ୍ୱର ପ୍ରତ୍ୟେକ ମଣିଷ ମାନବିକ ଭାବଧାରା ଦ୍ୱାରା ଉଦ୍‌ବୁଦ୍ଧ ହୋଇ ଏକତାର ସୂତ୍ରରେ ଗ୍ରଥିତ ହୋଇପାରନ୍ତେ, ତେବେ ବିଶ୍ୱର ସମସ୍ତ ସମସ୍ୟା ଗୋଟିଏ ମୁହୂର୍ତ୍ତରେ ଦୂରୀଭୂତ ହୋଇପାରନ୍ତା । ମଣିଷ ମନରୁ ଅବିଶ୍ୱାସର ଭାବ ଦୂରୀଭୂତ ହୋଇ ତାକୁ ମୈତ୍ରୀ ଓ ପ୍ରୀତିର ବନ୍ଧନରେ ଆବଦ୍ଧ କରି ହୁଅନ୍ତା । ତେଣୁ ପ୍ରତ୍ୟେକ ମଣିଷ ଏହି ଏକତା ଭାବଦ୍ୱାରା ଅନୁପ୍ରେରିତ ହୋଇ ଦେଶ, ଜାତି ତଥା ବ୍ୟକ୍ତିର ମଙ୍ଗଳ ପାଇଁ କାର୍ଯ୍ୟ କରିବା ଉଚିତ ।



## ଅଭାବ ଉଦ୍ଭାବନର ଜନନୀ

**(ଉପକ୍ରମ, ଏହାର ଅର୍ଥ ଏବଂ ଲକ୍ଷ୍ୟ; ଉଦାହରଣ, ଉପସଂହାର)**

ଆଦିମ ମଣିଷ ବଣଜଙ୍ଗଲରେ ବାସ କରୁଥିବା ସମୟରେ ତା'ର ଅଭାବ ଥିଲା ଅତ୍ୟନ୍ତ ସୀମିତ । ଗଛର ଫଳମୂଳ ଓ ବଣ୍ୟଜନ୍ତୁଙ୍କର କଞ୍ଚାମାଂସ ଥିଲା ତା'ର ଆହାର । ମାତ୍ର ଯେଉଁଦିନ ପ୍ରାକୃତିକ ଦୁର୍ବିପାକ ଯୋଗୁଁ ପୋଡ଼ାମାଂସର ସ୍ୱାଦ ସେ ଅନୁଭବ କଲା, ଧୀରେ ଧୀରେ ଖାଦ୍ୟ କ୍ଷେତ୍ରରେ ତା' ରୁଚିରେ ପରିବର୍ତ୍ତନ ଆସିଲା । କଞ୍ଚାମାଂସ ପରିବର୍ତ୍ତେ ପୋଡ଼ାମାଂସ ଖାଇବାକୁ ତା'ର ଆଗ୍ରହ ସୃଷ୍ଟି ହେଲା । ତେଣୁ ସେ ଅଗ୍ନିର ବ୍ୟବହାର କୌଶଳ ଜାଣିବା ପରେ, ତାହାକୁ

ସର୍ବଦା ପାଖରେ ରଖିବାକୁ ଚେଷ୍ଟା କଲା । ଅଗ୍ନିର ଅଭାବ ଆଦିମ ମଣିଷକୁ ନିଆଁର ଉଦ୍ଭାବନ ପାଇଁ ଉପାୟ ଖୋଜିବାରେ ସାହାଯ୍ୟ କଲା । ଏହିଠାରୁ ଆରମ୍ଭ ହେଲା ଉଦ୍ଭାବନର ଏକ ନୂତନ ଦିଗନ୍ତ.ଯେକମକି ପଥର । ସଭ୍ୟତା ଓ ବିଜ୍ଞାନର ବିକାଶ ସଙ୍ଗେ ସଙ୍ଗେ ଦିଆସିଲି ମଣିଷ ମନର ଏହି ଅଭାବକୁ ପରିପୂରଣ କଲା । ଆବଶ୍ୟକତା ଯୁଗେ ଯୁଗେ ମଣିଷକୁ ନୂତନ ଉଦ୍ଭାବନ ନିମିତ୍ତ ପ୍ରେରଣା ଦେଇଆସିଛି । ଉଦ୍ଭାବନ ନିମିତ୍ତ ଚିନ୍ତାଶକ୍ତିର ପ୍ରୟୋଗ ଦ୍ୱାରା ମଣିଷର ମନ ଧୀରେ ଧୀରେ ବୌଦ୍ଧିକ ସ୍ତରକୁ ଗତିକରିଛି । ତେଣୁ ମଣିଷ ହୋଇଛି ବୁଦ୍ଧିଜୀବୀ । ଏହି ଆବଶ୍ୟକତା ଓ ଅଭାବର ପରିପୂରଣ କରିବାକୁ ଯାଇ ଅତୀତରେ ବନବାସୀ ମଣିଷ ଆଜି ବିଜ୍ଞାନର ସର୍ବୋଚ୍ଚ ସ୍ତରରେ ପାଦ ଦେଇପାରିଛି ।

ଇଂରାଜୀରେ Proverb ଅଛି 'Necessity is the mother of invention' ଏହାର ଓଡ଼ିଆ ରୂପାନ୍ତର 'ଅଭାବ ଉଦ୍ଭାବନର ଜନନୀ' । ଆବଶ୍ୟକତା ନ ଥିଲେ ଉଦ୍ଭାବନର ଅଭାବ ମଣିଷ ଅନୁଭବ କରନ୍ତା ନାହିଁ । କଞ୍ଚାମାଂସ ଭକ୍ଷଣ କରୁଥିବା ମଣିଷ ନିଜ ଅଭାବର ପରିପୂର୍ତ୍ତି ପାଇଁ ବିଦ୍ୟୁତ ଶକ୍ତିର ଉଦ୍ଭାବନ କରିସାରିଲାଣି । ଇଚ୍ଛା ଥିଲେ ଉପାୟ ଆସେ ନାହିଁ । ଏଥିପାଇଁ ଆବଶ୍ୟକ ରହିଛି ଚିନ୍ତାଶକ୍ତିର ଯଥାର୍ଥ ବିନିଯୋଗ । ରୁଚିରେ ପରିବର୍ତ୍ତନ ଘଟିଲେ ନୂତନତାର ଆବଶ୍ୟକତା ପଡ଼େ । ଆଜି ମଣିଷ ନିଜର ଆବଶ୍ୟକତାକୁ ପରିପୂରଣ କରିବାକୁ ଯାଇ ବହୁ ଜିନିଷ ଉଦ୍ଭାବନ କରିଛି । ଏହି କାରଣରୁ ସେ ଆଜି ସଭ୍ୟ, ଶିକ୍ଷିତ ରୂପେ ପରିଗଣିତ ହୋଇଛି । ତା'ର ଜ୍ଞାନର ବିକାଶଯୋଗୁଁ ଅନେକ ପଦାର୍ଥ ଉଦ୍ଭାବିତ ହୋଇଛି । ଡାରଉଇନ୍ ତାଙ୍କ ବିବର୍ତ୍ତନବାଦ ତତ୍ତ୍ୱରେ ପୃଥିବୀରେ ମାନବ ସମାଜର ଉଦ୍ଭବ ଓ ତା'ର କ୍ରମବିକଶିତ ସ୍ୱରୂପ ସମ୍ପର୍କରେ ସୂଚନା ଦେଇଛନ୍ତି । ଜେଲି, ଏମିବା ସ୍ତରରୁ ମଣିଷ ସ୍ତରକୁ ଆସିବା ପାଇଁ ହଜାର ହଜାର ବର୍ଷ ଅପେକ୍ଷା କରିବାକୁ ପଡ଼ିଛି । ମଣିଷ ହେବାପାଇଁ ଇଚ୍ଛାଶକ୍ତି ହିଁ ତାଙ୍କୁ ନୂତନ ସ୍ତର ଅତିକ୍ରମ କରିବାକୁ ପ୍ରୋତ୍ସାହିତ କରିଛି । ମଣିଷ ତା'ର ଦୈନନ୍ଦିନ ଜୀବନରେ କୌଣସି ଅଭାବ ବା ଆବଶ୍ୟକତା ଅନୁଭବ କରିନଥିଲେ ହୁଏତ ଆଜି ସେ ଏହି ସ୍ତରରେ କଦାପି ପହଞ୍ଚିପାରି ନ ଥାନ୍ତା । ଚନ୍ଦ୍ର ଏବଂ ମଙ୍ଗଳ ଗ୍ରହକୁ ଦେବତା ରୂପେ ଉପାସନା କରୁଥିବା ମଣିଷ କେବେ ଚନ୍ଦ୍ର ବା ମଙ୍ଗଳ ଗ୍ରହରେ ପଦାର୍ପଣ କରିପାରି ନ ଥାନ୍ତା । ଗୋଟିଏ ଘଣ୍ଟାରେ ହଜାର ହଜାର ମାଇଲ୍ ଅତିକ୍ରମ କରିବାର ଯାନ ଉଦ୍ଭାବନ କରିପାରି ନ ଥାନ୍ତା । ସେ ଏବେବି ତା'ର ଲକ୍ଷ୍ୟସ୍ଥଳର ବହୁ ପଛରେ ପଡ଼ିଥାନ୍ତା । ମଣିଷର ଚିନ୍ତାରାଜ୍ୟରେ ମଧ୍ୟ କୌଣସି ପରିବର୍ତ୍ତନ ଆସି ନଥାନ୍ତା । ତେଣୁ ଏହି ନୂତନ ଓ କ୍ରାନ୍ତିକାରୀ ଉଦ୍ଭାବନ ପଶ୍ଚାତ୍‌ରେ ରହିଛି ମଣିଷ ମନର ଅଭାବ ବା ଆବଶ୍ୟକତା । ତାହାହିଁ ଆଜି ତାକୁ ସୋପନ ପରେ ସୋପାନ ଅତିକ୍ରମ କରାଇବାକୁ ସମର୍ଥ କରିପାରିଛି ।

ମଣିଷ ପ୍ରତିଦିନ ଗବେଷଣା ଦ୍ୱାରା କିଛି ନା କିଛି ନୂତନ ଉଦ୍ଭାବନ କରୁଛି । ତା'ର ଅଭାବବୋଧ ହିଁ ତାକୁ ଏଥିପାଇଁ ପ୍ରେରିତ କରିଛି । ଦୀର୍ଘପଥ ପାଦରେ ଅତିକ୍ରମ କରିବାର କଷ୍ଟରୁ ରକ୍ଷା ପାଇବା ପାଇଁ ସେ ଉଦ୍ଭାବନ କରିଛି ବିଭିନ୍ନ ଯାନବାହନ । ବିଳାସବ୍ୟସନରେ ଜୀବନ କଟାଇବାକୁ ଯାଇ ସେ ଉଦ୍ଭାବନ କରିଛି ଫ୍ରିଜ୍, ଟି.ଭି., ପଙ୍ଖା, ବିଭିନ୍ନ ଶିଳ୍ପ, ନୂଆ ନୂଆ

ଖାଦ୍ୟପଦାର୍ଥ ଓ ଆହୁରି ଅନେକ କିଛି । ବ୍ୟବସାୟ ଏବଂ ବାଣିଜ୍ୟର ପ୍ରସାର ନିମିତ୍ତ ଅନେକ କିଛି ଆବିଷ୍କୃତ ହୋଇଛି । ମଣିଷର ସୌନ୍ଦର୍ଯ୍ୟ ପିପାସାର ପରିପୂରଣ ପାଇଁ ମଧ ବହୁ ସୌଖୀନ ପଦାର୍ଥ ଉଦ୍ଭାବିତ ହୋଇଛି । ପୁଣି ମଣିଷ ସମାଜକୁ ଧ୍ୱଂସ କରିବାକୁ ସେ ଅନେକ ମାରଣାସ୍ତ୍ର, ପରମାଣୁ ବୋମା ଆଦିକୁ ଉଦ୍ଭାବନ କରିଛି । ଏହାଦ୍ୱାରା ହୁଏତ ସେ ତା'ର ବୌଦ୍ଧିକ ଚିନ୍ତାଧାରାକୁ ପ୍ରମାଣିତ କରିପାରିଛି । ମାତ୍ର ତା'ର ପ୍ରଳୟଙ୍କରୀ ରୂପ ମାନବ ସମାଜର ଏହି ମୂର୍ଖତାକୁ ପ୍ରତି କ୍ଷେତ୍ରରେ ନିନ୍ଦା କରିଛି । ଏହା ସତ୍ତ୍ୱେ ମଣିଷର ଚିନ୍ତାଧାରା ଯେ ବିକଶିତ ହୋଇଛି, ଅସ୍ୱୀକାର କରାଯାଇ ନ ପାରେ । ବଣଜଙ୍ଗଲର ମଣିଷ ବିଭିନ୍ନ ସମୟରେ ପ୍ରାକୃତିକ ଦୁର୍ବିପାକର ସମ୍ମୁଖୀନ ହେଉଥିବାରୁ ସେ ପ୍ରକୃତିକୁ ଦେବତା ଜ୍ଞାନରେ ପୂଜା କରୁଥିଲା । ତେଣୁ ବାୟୁ, ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର, ଜଳ ଆଦିକୁ ଏକ ଏକ ଦେବତା ରୂପେ ପରିଗଣିତ କରିଥିଲା । ମାତ୍ର ବିଜ୍ଞାନର ଉଦ୍ଭାବନ ଫଳରେ ମଣିଷ ନିଜ ଇଚ୍ଛାରେ ଉପରୋକ୍ତ ପଦାର୍ଥଗୁଡ଼ିକର ବିନିଯୋଗ କରିପାରୁଛି ଗୋଟିଏ ଗୃହ ମଧ୍ୟରେ ରହି । ଆଜି ତା' ନିକଟରେ ଅସମ୍ଭବ କିଛି ନାହିଁ । ସେ ନିଜର ପ୍ରତ୍ୟେକ ଇଚ୍ଛାକୁ ଗୋଟିଏ ମୁହୂର୍ତ୍ତରେ ପରିପୂରଣ କରିବାକୁ ସମର୍ଥ । ତାକୁ ପାଣି ପାଇଁ ଖୋଜି ଖୋଜି ନଦୀ ପାଖକୁ ଯିବାକୁ ପଡୁ ନାହିଁ କିମ୍ବା ପବନ ପାଇଁ ପ୍ରାକୃତିକ ପରିବେଶର ଆବଶ୍ୟକତା ପଡୁ ନାହିଁ । ତା'ର ଉଦ୍ଭାବନ ତାକୁ ଆଜି ସବୁକିଛିକୁ ଘର ଭିତରେ ସଜାଡ଼ି ରଖି ଦେଇଛି । ସମଗ୍ର ବିଶ୍ୱ ଆଜି ତା' ନିକଟରେ ଅତ୍ୟନ୍ତ କ୍ଷୁଦ୍ର ହୋଇ ପଡ଼ିଛି । ବୁଦ୍ଧିବାଦର ପ୍ରୟୋଗ ଦ୍ୱାରା ସବୁକିଛି ଆଜି ତା'ର ହାତପାହାନ୍ତାରେ । ଅଭାବର ପୀଡ଼ନ ହିଁ ତାକୁ ଆଜି ଶ୍ରେଷ୍ଠ ମାନବରେ ପରିଣତ କରିଛି । କେବଳ ଅଭାବ ଦ୍ୱାରା ମଣିଷ ନୂତନ କିଛି ଉଦ୍ଭାବନ କରି ନାହିଁ । ଏଥିପାଇଁ ସେ ତା'ର ଚିନ୍ତାଶକ୍ତିକୁ ବହୁପରିମାଣରେ ବିନିଯୋଗ କରିଛି । ଅଭାବର ପୀଡ଼ନ ଓ ଚିନ୍ତାଶକ୍ତିର ଉପଯୁକ୍ତ ବିନିଯୋଗ ଉଦ୍ଭାବନର ଯଥାର୍ଥ ଜନନୀ କହିଲେ ଠିକ୍ ହେବ ।

ସମ୍ପ୍ରତି ମଣିଷ ପ୍ରଗତିର ଶେଷସୀମାରେ ଉପନୀତ ହୋଇପାରିଛି ତା'ର ଉଦ୍ଭାବନ ଶକ୍ତି ଯୋଗୁଁ । ଏହା ସତ୍ତ୍ୱେ ସେ ଯେ ବିକାଶର ସର୍ବୋଚ୍ଚ ସ୍ତରରେ ପହଞ୍ଚିପାରିଛି, କହିବା ସମ୍ପୂର୍ଣ୍ଣ ଠିକ୍ ହେବ ନାହିଁ । ବେଳେ ବେଳେ ତା'ର କ୍ଷମତା ଲାଳସା ତା'ର ନୂତନ ଉଦ୍ଭାବନକୁ ଧ୍ୱଂସ କ୍ଷେତ୍ରରେ ପ୍ରୟୋଗ କରିବାକୁ ପଶ୍ଚାତ୍‌ପଦ ହେଉ ନାହିଁ । ଏହା କଦାପି ପ୍ରଗତିର ଲକ୍ଷଣ ହୋଇ ନ ପାରେ । ମଣିଷ ଅନେକ କିଛି ନୂତନ ଉଦ୍ଭାବନ କରିଛି । ସେ ତା'ର ପରିଚିତ ପୃଥିବୀକୁ ବହୁପରିମାଣରେ ବଦଳାଇ ଦେଇପାରିଛି । ଯଦି ତା'ର ଏହି ଉଦ୍ଭାବନ ମଣିଷର କେବଳ ମଙ୍ଗଳ ପାଇଁ ବିନିଯୋଗ ହୋଇପାରନ୍ତା, ତେବେ ବିଶ୍ୱର ବହୁ ଉପକାର ସାଧିତ ହୋଇପାରନ୍ତା । ସମୟେ ସମୟେ ତା'ର ଖିଆଲି ମନ ଦିଗଭ୍ରଷ୍ଟ ହୋଇପଡୁଛି । ଏହା ସତ୍ତ୍ୱେ ମଣିଷର ଅଭାବ ତାକୁ ଯେପରି ବହୁ ନୂତନ ପଦାର୍ଥର ଉଦ୍ଭାବନ ନିମିତ୍ତ ପ୍ରେରଣା ଦେଇଛି, ତାହା ନିଶ୍ଚିତ ଭାବରେ ପ୍ରଶଂସନୀୟ ଓ ମାନବ ସଭ୍ୟତାର ବିକାଶ ପାଇଁ ସମ୍ପୂର୍ଣ୍ଣ ଅନୁକୂଳ ।



# ସମୟ ଏବଂ ଜୁଆର କାହାକୁ ଅପେକ୍ଷା କରେ ନାହିଁ

(ଉପକ୍ରମ, ଏହାର ଅର୍ଥ ଓ ଉଦ୍ଦେଶ୍ୟ, ମାନବ ଜୀବନରେ ଏହାର ଆବଶ୍ୟକତା, ଉପସଂହାର)

ପ୍ରତ୍ୟେକ ପ୍ରବଚନର ଅନ୍ତରାଳରେ ଏକ ଗୂଢ଼ ରହସ୍ୟ ବିଦ୍ୟମାନ । ମାନବ ସମାଜର ସାମଗ୍ରିକ ମଙ୍ଗଳ ସାଧନ ହିଁ ଏହି ପ୍ରବଚନଗୁଡ଼ିକର ମୂଳଲକ୍ଷ୍ୟ । ଉପରୋକ୍ତ ଓଡ଼ିଆ ପ୍ରବଚନର ଇଂରାଜୀ ରୂପ ହେଉଛି "Time and tide waits for none" । ମଣିଷର ଅନେକ ସମୟରେ ତା' ଜୀବନର ବହୁ ମୂଲ୍ୟବାନ ସମୟ ଅଯଥାରେ ନଷ୍ଟ ହୋଇଥାଏ । ସେ ଯେଉଁ ସମୟ ନଷ୍ଟ କରେ, ତାହା ଆଉ କେବେ ଫେରିନଥାଏ । ଗାଁଗହଳିରେ ସେଥିପାଇଁ କୁହାଯାଇଥାଏ—ବୋହିଗଲା ପାଣି ଓ ବିତିଗଲା ସମୟ ଆଉ କେବେ ଫେରେ ନାହିଁ । ମଣିଷ ପକ୍ଷରେ ପ୍ରତିଟି ସମୟ ମୂଲ୍ୟବାନ୍ । ସମୟ କିଛି ନିଏ ନାହିଁ । ମାତ୍ର ସମୟର ଯଥାର୍ଥ ଉପଯୋଗ କରିପାରିଲେ ସେ ବହୁ କିଛି ଦେଇପାରେ । ସମୟ ପରି ଜୁଆର ମଧ୍ୟ ପ୍ରକୃତିର ନିର୍ଦ୍ଦେଶରେ ଆସେ ଏବଂ ଚାଲିଯାଏ । ସେ କାହାପାଇଁ ଅପେକ୍ଷା କରେ ନାହିଁ । ତେଣୁ ପ୍ରକୃତ ମଣିଷ ତା'ର ଉପଯୁକ୍ତ ବ୍ୟବହାର କରିପାରିଲେ ଭବିଷ୍ୟତରେ କେବେ ସେଥିପାଇଁ ଦୁଃଖ ପ୍ରକାଶ କରିନଥାଏ । ଅର୍ଥାତ୍ ସମୟର ସଦୁପଯୋଗ କରିବା ପ୍ରତ୍ୟେକ ମଣିଷର ଉଚିତ କର୍ତ୍ତବ୍ୟ ।

ସମୟ ଏବଂ ଜୁଆର ମାଧମରେ ମୂଲ୍ୟବାନ ସୁଯୋଗକୁ ପ୍ରତୀକିତ କରାଯାଇଛି । ବିନା କୌଣସି ପୂର୍ବ ସୂଚନାରେ ଏମାନେ ଆସିଥାନ୍ତି । ଏହି ପ୍ରବଚନର ପ୍ରକୃତ ଅର୍ଥ ହେଉଛି ସୁଯୋଗ କାହାପାଇଁ ଅପେକ୍ଷା କରେ ନାହିଁ । ତେଣୁ ମାନବ ପ୍ରତିମୁହୂର୍ତ୍ତରେ ସଜାଗ ରହି ତା'ର ଉପଯୁକ୍ତ ବିନିଯୋଗ କରିବା ଆବଶ୍ୟକ । ସମୟ ଏବଂ ଜୁଆର କ୍ଷଣସ୍ଥାୟୀ ଏବଂ ଦ୍ରୁତବେଗରେ ପ୍ରସ୍ଥାନ କରିଥାନ୍ତି । ତାହା କେତେବେଳେ ଆସିବ, ସେ ସମ୍ପର୍କରେ କେହି ମଧ କହିପାରିବେ ନାହିଁ । ସେଥିପାଇଁ ପ୍ରତିଟି ମଣିଷ ଏହି ସୁଯୋଗର ସତ୍ ବ୍ୟବହାର କରି ନିଜର ଫାଇଦା ହାସଲ କରିବା ସର୍ବାଦୌ ଆବଶ୍ୟକ । ପ୍ରକୃତିର ଅନ୍ୟାନ୍ୟ ଉପାଦାନ ପରି ଏହାକୁ କୌଣସି ମଣିଷ ନିଜ ଇଚ୍ଛାରେ ପରିବର୍ତ୍ତନ କରିପାରିବ ନାହିଁ । ମଣିଷର ନିୟନ୍ତ୍ରଣ ଓ ଶକ୍ତିର ସୀମା ବାହାରେ ଏହାର ଅବସ୍ଥିତି । ବରଂ ମଣିଷ ସମ୍ପୂର୍ଣ୍ଣ ରୂପେ ସମୟ ସମ୍ମୁଖରେ ଅସହାୟ । ପ୍ରାଚୀନ କାଳରେ ଇଞ୍ଜିନ୍ ଚାଳିତ ଡଙ୍ଗା ନ ଥିବାରୁ ବ୍ୟବସାୟୀ ବା ଅନ୍ୟାନ୍ୟ ମଣିଷ ଜୁଆର ସମୟକୁ ହିଁ ଅପେକ୍ଷା କରୁଥିଲେ । ଜୁଆର ଆସିବା ମାତ୍ରେ ସେମାନେ ସେମାନଙ୍କର ପୋତ ମେଲିଦେଉଥିଲେ । ଯଦି କୌଣସି ବ୍ୟକ୍ତି ସେହି ଜୁଆର ସମୟକୁ ଠିକ୍ ସମୟରେ ଉପଯୋଗ କରିପାରୁ ନ ଥିଲା, ତେବେ ପୁଣି ଥରେ ଜୁଆର ଆସିବା ପର୍ଯ୍ୟନ୍ତ ତାକୁ ଅପେକ୍ଷା କରିବାକୁ ପଡୁଥିଲା । ଏହାର ସମୟ ନିର୍ଦ୍ଦିଷ୍ଟ ନ ଥିବାରୁ ଅନିଶ୍ଚିତ ପଥରେ ଧାଇଁବା ସଦୃଶ ପ୍ରତୀତ ହେଉଥିଲା । ତେଣୁ ନାବିକର କର୍ତ୍ତବ୍ୟ ଥିଲା

ଜୁଆର ସମୟକୁ ଅପେକ୍ଷା କରିବା ଓ ତା'ର ସତ୍ ଉପଯୋଗ କରିବା । ଏହି ପ୍ରବଚନଟି ପ୍ରତିଟି ମଣିଷ ନିମିତ୍ତ ଅତ୍ୟନ୍ତ ଉପାଦେୟ । ଗୋଟିଏ ସୁଯୋଗର କିପରି ଉପଯୁକ୍ତ ବିନିଯୋଗ କରାଯାଇପାରେ, ଏହା ଆମକୁ ତାହା ଶିକ୍ଷା ଦେଇଥାଏ । ମଣିଷର ସାମାନ୍ୟ ଦାୟିତ୍ୱହୀନତା ତା' ଜୀବନରେ ବହୁ ଦୁର୍ଘଟଣା ଘଟାଇ ଦେଇପାରେ । ସୁଯୋଗ ଜୀବନରେ କ୍ୱଚିତ୍ ଆସେ । ତାହା ପୁଣି ମନୁଷ୍ୟ ସୃଷ୍ଟ ନୁହେଁ । ତେଣୁ ଯେଉଁମାନେ ନିଜକୁ ସର୍ବଦା ପ୍ରସ୍ତୁତ କରି ରଖିଥାନ୍ତି, ସେହିମାନେ ହିଁ କେବଳ ତା'ର ଫାଇଦା ଉଠାଇବାକୁ ସମର୍ଥ ହୋଇଥାନ୍ତି । ବିତିଯାଇଥିବା 'ଗତକାଲି' କଦାପି ଆଉ ଫେରି ନ ପାରେ । ଏପରିକି ବର୍ତ୍ତମାନ ମୁହୂର୍ତ୍ତଟି ମଧ୍ୟ ଭବିଷ୍ୟତରେ କଦାପି ଆସିବ ନାହିଁ । ସମୟର ଅତିକ୍ରାନ୍ତ ସହିତ ସୁଯୋଗର ମଧ୍ୟ ଅବସାନ ଘଟେ । ଥରେ ସୁଯୋଗକୁ ଯଥାର୍ଥ ବିନିଯୋଗ କରିନପାରିଲେ, ସମଗ୍ର ଜୀବନ ପାଇଁ ତାହା ଅପୂରଣୀୟ ହୋଇ ରହିଯାଇଥାଏ । ଅନ୍ୟ କୌଣସି ବିନିମୟରେ ତାହାକୁ ଫେରାଇ ଅଣାଯାଇପାରିବ ନାହିଁ । ସେଥିପାଇଁ ଜ୍ଞାନୀବ୍ୟକ୍ତି ପ୍ରତିଟି ସମୟକୁ ଓ ସୁଯୋଗକୁ ଯଥାର୍ଥ ବିନିଯୋଗ ପାଇଁ ନିଜକୁ ପ୍ରସ୍ତୁତ କରି ରଖିଥାନ୍ତି ।

ମଣିଷ ଜୀବନରେ ସମୟ ଠାରୁ ଆଉ କିଛି ମୂଲ୍ୟବାନ୍ ନାହିଁ । ସମୟ ଅନୁଯାୟୀ ଉପଯୁକ୍ତ କର୍ତ୍ତବ୍ୟ କରିବା ପ୍ରତ୍ୟେକ ମଣିଷର ଯଥାର୍ଥ କର୍ତ୍ତବ୍ୟ । ଉଦାହରଣସ୍ୱରୂପ ୨୦୦୮ ମସିହା ଏପ୍ରିଲ୍ ମାସରେ ଅନୁଷ୍ଠିତ ପରୀକ୍ଷାକୁ ଯଦି ଛାତ୍ରଟି ହରାଇଲା, ତେବେ ସେ କଦାପି ତା' ଜୀବନରେ ସେହି ପରୀକ୍ଷାଟି ସେହି ସମୟରେ ଆଉ ଦେଇପାରିବ ନାହିଁ । ହୁଏତ ପରବର୍ତ୍ତୀ କାଳରେ ସେ ପରୀକ୍ଷା ଦେଇ ଉତ୍ତୀର୍ଣ୍ଣ ହୋଇପାରେ, ମାତ୍ର ୨୦୦୮ ମସିହାରେ ଏପ୍ରିଲ୍ ମାସର ପରୀକ୍ଷା ଆଉ କଦାପି ତା' ଜୀବନରେ ଆସିବ ନାହିଁ । ସୁଯୋଗ କ୍ୱଚିତ୍ ଆସେ । ତା'ର ପୁଣି ପୁନରାବୃତ୍ତି ହେବାର ଅବକାଶ କ୍ଷୀଣ । ବୁଦ୍ଧିମାନ ବ୍ୟକ୍ତି ସେହି ମୂଲ୍ୟବାନ୍ ସମୟକୁ 'ସୁବର୍ଣ୍ଣ ସୁଯୋଗ' ବୋଲି କହିଥାନ୍ତି । ସୁଯୋଗର ଉଚିତ ବ୍ୟବହାର ମଣିଷ ଜୀବନ ପାଇଁ ଏକ ଆଶୀର୍ବାଦ ସ୍ୱରୂପ ଏବଂ ସୁଯୋଗର ଅପବ୍ୟବହାର ଗୋଟିଏ ଅଭିଶାପ ବ୍ୟତୀତ ଅନ୍ୟକିଛି ହୋଇ ନ ପାରେ । ବ୍ୟକ୍ତି ସେଥିପାଇଁ ଅପେକ୍ଷା କରିଥିବା ସମୟର ଉପସ୍ଥିତିମାତ୍ରେ, ତା'ର ଯଥାର୍ଥ ବିନିଯୋଗ କରିଥାନ୍ତି । ଯେଉଁମାନେ ଅବହେଳାବଶତଃ ସମୟର ବା ସୁଯୋଗର ବିନିଯୋଗ କରିପାରି ନ ଥାନ୍ତି, ସେମାନେ ଭବିଷ୍ୟତରେ ଅନୁତାପ କରନ୍ତି । ମାତ୍ର ତାହା ଆଉ କଦାପି ଫେରି ଆସି ନ ଥାଏ । ଏହା ବିରୋଧରେ ମଧ୍ୟ କୌଣସି ଅଭିଯୋଗ ଅଣାଯାଇ ନ ପାରେ । ଏହି ପ୍ରବଚନ ମଣିଷକୁ ସମୟାନୁବର୍ତ୍ତିତା ଓ କର୍ତ୍ତବ୍ୟପରାୟଣତା ସମ୍ପର୍କରେ ଶିକ୍ଷା ପ୍ରଦାନ କରିଥାଏ । ଉଚିତ ସମୟରେ ଉଚିତ କାର୍ଯ୍ୟକରିବା ପ୍ରତ୍ୟେକ ମଣିଷର କର୍ତ୍ତବ୍ୟ । ଏଥିରେ ଅବହେଳା ପ୍ରଦର୍ଶନ କଲେ ସେ ବହୁକ୍ଷତିର ସମ୍ମୁଖୀନ ହୋଇଥାଏ ଓ ଜୀବନରେ ଯାହା ସେହି ସମୟରେ ହରାଇଥାଏ, ତାହା କଦାପି ଫେରି ପାଇନଥାଏ । ମଣିଷ ତେଣୁ କ'ଣ କରିବା ଉଚିତ ବା ଅନୁଚିତ ତାହା ତାକୁ ଠିକ୍ ସମୟରେ ନିଷ୍ପତ୍ତି କରିବା ଆବଶ୍ୟକ । ଯେଉଁମାନେ ଯଥାସମୟରେ ନିଷ୍ପତ୍ତି ନେବାରେ ଅସମର୍ଥ ହୋଇଥାନ୍ତି, ସେମାନେ ଜୀବନରେ ବହୁ କିଛି ହରାଇଥାନ୍ତି ।

ଏହି ପ୍ରବଚନ ମଣିଷକୁ ସମୟର ସଦ୍‌ବ୍ୟବହାର କରି ସେଥିରୁ ଉପଯୁକ୍ତ ଫାଇଦା ଉଠାଇବା ନିମିତ୍ତ ପ୍ରେରଣା ଦେଇଥାଏ । ପ୍ରତ୍ୟେକ ମଣିଷ ସତର୍କତା ଅବଲମ୍ବନପୂର୍ବକ ସମୟର ଉଚିତ ବ୍ୟବହାର କରିବା ଆବଶ୍ୟକ । ସୁଯୋଗ ହୁଏତ ମଣିଷ ଜୀବନରେ ଥରେ ମାତ୍ର ଆସିପାରେ; କିନ୍ତୁ ସେହି ଗୋଟିଏ ଥରକୁ ଯଥାର୍ଥ ବିନିଯୋଗ କରି ନ ପାରିଲେ, ତାହା ହୁଏତ ସମଗ୍ର ଜୀବନ ପାଇଁ ଏକ ଅବଶୋଷ ଛାଡ଼ି ଦେଇଯାଇପାରେ । ତେଣୁ ମଣିଷ ପ୍ରତ୍ୟେକ କ୍ଷେତ୍ରରେ ସତର୍କ ରହି ତା'ଆଗରେ ଚାଲିଯାଉଥିବା କ୍ଷଣସ୍ଥାୟୀ ସମୟକୁ ଉଚିତ ବ୍ୟବହାର କରିବା ସଙ୍ଗେ ସଙ୍ଗେ ନିଜର ଭବିଷ୍ୟତକୁ ସୁସ୍ଥ ସୁନ୍ଦର କରି ଗଢ଼ି ତୋଳିବା ଆବଶ୍ୟକ ।



## ଇଚ୍ଛା ଥିଲେ ଉପାୟ ଆପେ ଆପେ ଆସେ

**(ଉପକ୍ରମ, ଏହାର ଅର୍ଥ ଓ ଉଦ୍ଦେଶ୍ୟ, କେତେକ ଉଦାହରଣ, ଉପସଂହାର)**

ଥରେ ନେପୋଲିୟନ୍ ବୋନାପାର୍ଟ କହିଥିଲେ, ତାଙ୍କ ଅଭିଧାନରେ ଅସମ୍ଭବ ବୋଲି କିଛି ନାହିଁ । 'ଯଦି ବାସ୍ତବରେ କିଛି ଅସମ୍ଭବ ଥାନ୍ତା, ତେବେ ମଣିଷ ଆଜି ଚନ୍ଦ୍ର ଗ୍ରହରେ ପଦାର୍ପଣ କରିପାରିନଥାନ୍ତା । ବିଶ୍ୱରେ ଅସମ୍ଭବ କିଛି ନାହିଁ । ଏଥିପାଇଁ ଆବଶ୍ୟକ ଦୃଢ଼ ମନୋବଳ ଓ ଗଭୀର ଇଚ୍ଛାଶକ୍ତି । ଇଂରାଜୀରେ ଏହି ପ୍ରବଚନଟି ହେଉଛି 'Where there is a will there is a way." ବିଜ୍ଞାନ ଯୁଗରେ ମଣିଷ ଅସମ୍ଭବ କାର୍ଯ୍ୟ ସମ୍ଭବ କରିପାରୁଛି । ଯାହା ଦିନେ ଥିଲା କଳ୍ପନାତୀତ, ତାହା ଆଜି ବାସ୍ତବରେ ପରିଣତ ହୋଇଛି । ଏହା ପଛରେ ରହିଛି ମଣିଷର ଅସୀମ ଇଚ୍ଛାଶକ୍ତି । ଏହି ଇଚ୍ଛା ଶକ୍ତି ଯୋଗୁଁ ବଣରେ ବାସ କରୁଥିବା ମଣିଷ ଆଜି ସମ୍ପୂର୍ଣ୍ଣ ସଭ୍ୟ ଓ ଶିକ୍ଷିତ ହୋଇ ଚନ୍ଦ୍ରଗ୍ରହରେ ଉପନିବେଶ ସ୍ଥାପନ ପାଇଁ ଉଦ୍ୟମ ଚଳାଇଛି । ଅସୀମ ଇଚ୍ଛା ଶକ୍ତି ଓ ଦୃଢ଼ ମନୋବଳ ସମସ୍ତ ଅସମ୍ଭବ କାର୍ଯ୍ୟକୁ ସମ୍ଭବ କରିପାରେ ।

ମଣିଷର ଆଶା ଅସୀମ । ପ୍ରତି ମୁହୂର୍ତ୍ତରେ ଗୋଟିଏ ଗୋଟିଏ କାମନା ତା'ମନ ଉପବନରେ ଉଙ୍କି ମାରିଥାଏ । ଏହି କାମନାଗୁଡ଼ିକର ପରିପୂରଣ ନିମିତ୍ତ ସେ କେତେକ ପଦକ୍ଷେପ ଗ୍ରହଣ କରିଥାଏ । ବାସ୍ତବ ଜୀବନରେ ଦେଖାଯାଏ, ଆମର ସମସ୍ତ କାମନା ପୂରଣ ହୋଇ ପାରି ନ ଥାଏ । ସୂକ୍ଷ୍ମ ଦୃଷ୍ଟିକୋଣରୁ ଯଦି ବିଚାର କରାଯାଏ, ତେବେ ଦେଖିବାକୁ ପଡ଼ିବ ଯେ ଆମେ ଆମର କାମନାର ପୂର୍ତ୍ତି ନିମିତ୍ତ ଯେଉଁପରି କର୍ତ୍ତବ୍ୟ ବା ପଦକ୍ଷେପ ନେବା କଥା, ତାହା ନେଇପାରି ନ ଥାଉ । ସାମାନ୍ୟ ପ୍ରତିବନ୍ଧକ ଦେଖାଦେଲେ ଆମେ ଆମ ଗତିପଥ ପରିବର୍ତ୍ତନ କରିଦେଇଥାଉ । ଏ କ୍ଷେତ୍ରରେ ଅନ୍ୟ ଏକ ପ୍ରବଚନ ଉଦ୍ଧାର କରାଯାଇପାରେ । ଈଶ୍ୱର ସେହିମାନଙ୍କୁ ସାହାଯ୍ୟ କରନ୍ତି, ଯିଏ ନିଜକୁ ସାହାଯ୍ୟ କରିଥାଏ । ଏହାର ଅର୍ଥ ହେଉଛି ଯିଏ ଦୃଢ଼ ମନୋବଳ ଓ ଅଦମ୍ୟ ଉତ୍ସାହର ସହିତ କାର୍ଯ୍ୟକରେ, ତା'ର ସମସ୍ତ କାର୍ଯ୍ୟ ସଫଳ ହୋଇଥାଏ । ଇଚ୍ଛା ଏବଂ କାମନା ଦୁଇଟିଯାକ ଏକ କଥା ନୁହେଁ । ମଣିଷ

ଅନେକ ଜିନିଷ କାମନା କରେ । ମାତ୍ର ତାହା ଯେତେବେଳେ ବାସ୍ତବ 'ଇଚ୍ଛା' ରୂପରେ ପ୍ରକାଶିତ ହେବାକୁ ଉଦ୍ୟମ କରେ, ସେତେବେଳେ ମଣିଷ ଇଚ୍ଛାଶକ୍ତି ଓ ନିଜର ଦୃଢ଼ ମନୋବଳ ହରାଉଥିବାରୁ ତାହା ସାକାର ହୋଇପାରେ ନାହିଁ । ସେଥିପାଇଁ କୁହାଯାଇଥାଏ–Will is a strong desire. It is backed by firmness of purpose and resolution. ଇଚ୍ଛାର ପୂରଣ ନିମିତ୍ତ ଉପାୟ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ ନୁହେଁ । ବରଂ ଲକ୍ଷ୍ୟ ହାସଲ କରିବା ପାଇଁ ଦୃଢ଼ସଂକଳ୍ପର ଆବଶ୍ୟକତା ରହିଛି । ଇଚ୍ଛାର ପୂରଣ କ୍ଷେତ୍ରରେ ବହୁ ପ୍ରତିବନ୍ଧକ ଦେଖାଦେଇଥାଏ । ମାତ୍ର ଯେଉଁମାନେ ସେହି ପ୍ରତିବନ୍ଧକ ପ୍ରତି ଗୁରୁତ୍ୱ ନ ଦେଇ ଦୃଢ଼ ମନୋବଳ ନେଇ କାର୍ଯ୍ୟ କରନ୍ତି, ସେମାନେ ନିଜର ନିର୍ଦ୍ଦିଷ୍ଟ ଲକ୍ଷ୍ୟସ୍ଥଳରେ ଉପନୀତ ହୋଇପାରିଥାନ୍ତି । ଅନେକ ସମୟରେ ଦେଖାଯାଏ ମଣିଷ ବହୁ ଉତ୍ସାହର ସହିତ କାର୍ଯ୍ୟଟି ଆରମ୍ଭ କରିଥାଏ । ଅଥଚ ଯେଉଁଠାରେ ସାମାନ୍ୟ ପ୍ରତିରୋଧ ବା ପ୍ରତିବନ୍ଧକର ସମ୍ମୁଖୀନ ହୁଏ, ସେଠାରୁ ସେ ପୁଣି ପଛକୁ ଫେରିଆସିଥାଏ । ଏହାଦ୍ୱାରା ସେ ସଂକଳ୍ପଚ୍ୟୁତ ହୁଏ ଏବଂ ତା'ର ଇଚ୍ଛା ଅପୂରଣୀୟ ହୋଇ ରହିଯାଏ । ତେଣୁ ଏହି ପ୍ରବଚନଟିର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ଯଦି ଜଣେ ମଣିଷର ଦୃଢ଼ ମନୋବଳ ରହିଥାଏ ଏବଂ କାର୍ଯ୍ୟ କରିବାର ଦୃଢ଼ ଇଚ୍ଛାଶକ୍ତି ଥାଏ, ତେବେ କୌଣସି କ୍ଷେତ୍ରରେ ତା'ର ଇଚ୍ଛା ଅପୂରଣୀୟ ରହେ ନାହିଁ । ଉପାୟ ଆପେ ଆପେ ଆସି ଦେଖା ଦେଇଥାଏ ।

ବିଶ୍ୱର ମହାମାନବମାନଙ୍କ ଜୀବନୀ ଅଧ୍ୟୟନ କଲେ, ଜାଣିବାକୁ ପାଇବା ପୃଥିବୀରେ ଅସମ୍ଭବ ବୋଲି କିଛି ନାହିଁ । ସାମାନ୍ୟ ବୁଢ଼ିଆଣୀଟି ବାରମ୍ବାର ପ୍ରତିବନ୍ଧକର ସମ୍ମୁଖୀନ ହୋଇ ମଧ୍ୟ ତା'ର ଘର ବସାଇବା କାର୍ଯ୍ୟରୁ କେବେ ବିରତ ହୋଇନଥାଏ । ବିସ୍‌ମାର୍କଙ୍କର ଦୃଢ଼ ଇଚ୍ଛା ଓ ମନୋବଳ ପାଇଁ ଜର୍ମାନ୍‌ର ଏକତ୍ରୀକରଣ ସମ୍ଭବ ହୋଇପାରିଥିଲା । ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର ତାଙ୍କର ଗଭୀର ଇଚ୍ଛାଶକ୍ତି ଯୋଗୁଁ ସମସ୍ତ ପ୍ରତିକୂଳ ଅବସ୍ଥା ସତ୍ତ୍ୱେ ଉଚ୍ଚଶିକ୍ଷା ଲାଭ କରିବାକୁ ସମର୍ଥ ହୋଇପାରିଥିଲେ । ମଦନମୋହନ ମାଲବ୍ୟ ସମସ୍ତ ପ୍ରତିବନ୍ଧକକୁ ଅତିକ୍ରମ କରି ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ସ୍ଥାପନ କରିବାକୁ ସମର୍ଥ ହୋଇପାରିଥିଲେ । ଆବ୍ରାହମ ଲିଙ୍କନ କଠିନ ପରିଶ୍ରମ ଓ ଦୃଢ଼ ମନୋବଳ ଯୋଗୁଁ ଯୁକ୍ତରାଷ୍ଟ୍ର ଆମେରିକାର ରାଷ୍ଟ୍ରପତି ଆସନ ଅଳଂକୃତ କରିପାରିଥିଲେ । ତେନ୍‌ଜିଂ କଠିନ ପରିଶ୍ରମ ଓ ଦୃଢ଼ ସଂକଳ୍ପ ଗ୍ରହଣ କରି ଏଭରେଷ୍ଟ ଶୃଙ୍ଗ ଆରୋହଣ କରିପାରିଥିଲେ । ଦୃଢ଼ସଂକଳ୍ପ ନ ଥିଲେ କଲମ୍ବସ୍ କଦାପି ଆମେରିକା ଆବିଷ୍କାର କରିପାରି ନ ଥାନ୍ତେ । ଇସ୍ରାଏଲ ପରି କ୍ଷୁଦ୍ର ରାଜ୍ୟଟି ନିଜର ଦୃଢ଼ ମନୋବଳ ଯୋଗୁଁ ଇଜିପ୍‌ଟ ନିକଟରେ ମଥାନତ କରି ନ ଥିଲା । ଗାନ୍ଧିଜୀଙ୍କ ଦୃଢ଼ ଇଚ୍ଛାଶକ୍ତି ଏବଂ କଠୋର ପରିଶ୍ରମ ଯୋଗୁଁ ଭାରତ ସ୍ୱାଧୀନତା ଲାଭ କରିବାକୁ ସମର୍ଥ ହୋଇଥିଲା । ତେଣୁ ବ୍ୟକ୍ତି କ୍ଷେତ୍ରରେ ଯାହା ସତ୍ୟ, ଜାତି କ୍ଷେତ୍ରରେ ମଧ୍ୟ ତାହା ସତ୍ୟ । ପରୀକ୍ଷାରେ କେତେକ ଛାତ୍ରଙ୍କ ଅକୃତକାର୍ଯ୍ୟ ହେବାର ମୂଳରେ ରହିଛି ଅଧ୍ୟୟନ ଓ ମନୋବଳର ଅଭାବ । ପ୍ରକୃତରେ ପରୀକ୍ଷାରେ ଉତ୍ତୀର୍ଣ୍ଣ ନ ହେବାର କାରଣ ନୁହେଁ, ପରୀକ୍ଷା ଏକ କଷ୍ଟକର ବ୍ୟାପାର

ବୋଲି ବରଂ କେତେକ ଛାତ୍ରଙ୍କର ନିଜ ଲକ୍ଷ୍ୟସ୍ଥଳରେ ପହଞ୍ଚିବା ପାଇଁ ଯେଉଁ ସଂକଳ୍ପ ଏବଂ ମନୋବଳ ରହିବା ଆବଶ୍ୟକ, ତାହା ତାଙ୍କ ପାଖରେ ନାହିଁ । ପ୍ରତିବନ୍ଧକ ସେହି ସମୟରେ ମଣିଷଙ୍କୁ ନିରୁତ୍ସାହିତ କରେ, ଯେତେବେଳେ ସେ ତା'ର ସଂକଳ୍ପ ବା ମନୋବଳକୁ ଠିକ୍ ରୂପେ କାର୍ଯ୍ୟକାରୀ କରି ନ ଥାଏ । ଯଦି ଜଣେ ବ୍ୟକ୍ତି ଦୃଢ଼ ମନୋବଳର ସହିତ କାର୍ଯ୍ୟକରେ ତେବେ ସମସ୍ତ ପ୍ରତିବନ୍ଧକ ବରଫ ପରି ତରଳିଯିବ ଓ ତା'ର ପଥ ପରିଷ୍କାର ଦେଖାଦେବ । ଲକ୍ଷ୍ୟସ୍ଥଳ ନିର୍ଦ୍ଦିଷ୍ଟ ହୋଇଥିଲେ ଏବଂ ସେଠାରେ ପହଞ୍ଚିବା ନିମିତ୍ତ ମାନସିକ ସ୍ତରରେ ଜଣେ ସମ୍ପୂର୍ଣ୍ଣ ପ୍ରସ୍ତୁତ ହୋଇଥିଲେ, କୌଣସି ପ୍ରତିବନ୍ଧକ ବା ପ୍ରତିରୋଧ ତା' ଲକ୍ଷ୍ୟ କ୍ଷେତ୍ରରୁ ତାକୁ ବିଚ୍ୟୁତ କରିପାରିବ ନାହିଁ । ଆମର ଲକ୍ଷ୍ୟସ୍ଥଳ ନିର୍ଦ୍ଦିଷ୍ଟ ଥିଲେହେଁ, ଦୃଢ଼ସଂକଳ୍ପର ଅଭାବରୁ ସାମାନ୍ୟ ପ୍ରତିବନ୍ଧକ ଆମ ନିକଟରେ ବିରାଟ ପାହାଡ଼ ହୋଇ ଠିଆ ହୁଏ ଏବଂ ଆମେ ସେଠାରୁ ଫେରିଆସିଥାଉ । ଏହାଦ୍ୱାରା ମଣିଷ ଲକ୍ଷ୍ୟଚ୍ୟୁତ ହୋଇପଡ଼େ । ଗଭୀର ଇଚ୍ଛାଶକ୍ତି ରହିଥିଲେ ଉପାୟ ଆପେ·ଆପେ ଆସି ପହଞ୍ଚିଥାଏ । ତେଣୁ ଉପାୟ ଆବିଷ୍କାର କରିବାର ଆବଶ୍ୟକତା ନାହିଁ, ତାହା ବ୍ୟକ୍ତିର ମନୋବଳକୁ ଅନୁସରଣ କରିଥାଏ ।

ଯେକୌଣସି କାର୍ଯ୍ୟ କରିବାକୁ ଗଲେ ପ୍ରତିବନ୍ଧକ ନିଶ୍ଚିତ ଭାବରେ ଦେଖାଦେବ । ମାତ୍ର ସେହି ପ୍ରତିବନ୍ଧକକୁ ଭୟ କରି ଫେରିଆସିଲେ, କାର୍ଯ୍ୟଟି ସବୁଦିନ ପାଇଁ ଅସମାପ୍ତ ହୋଇ ରହିଯିବ । ସେଥିପାଇଁ ପୃଥିବୀର ସମସ୍ତ ବଡ଼ଲୋକ ବା ମହତ୍ ପୁରୁଷ ସମସ୍ତ ବାଧାବିଘ୍ନ ସତ୍ତ୍ୱେ, ସେମାନେ କଦାପି ନିଜ ଲକ୍ଷ୍ୟପଥରୁ ଚ୍ୟୁତ ହୋଇନଥାନ୍ତି । ସେମାନଙ୍କର ଦୃଢ଼ ମନୋବଳ, ଗଭୀର ଅଧ୍ୟବସାୟ, କାର୍ଯ୍ୟ କରିବାର ଗଭୀର ଇଚ୍ଛାଶକ୍ତି ସେମାନଙ୍କୁ ଗୋଟିଏ ପରେ ଗୋଟିଏ ସଫଳତାର ପାହାଚ ଅତିକ୍ରମ କରାଇବାରେ ସାହାଯ୍ୟ କରିଥାଏ । ସାଧାରଣ ମଣିଷ ପକ୍ଷରେ ଯାହା ଅସମ୍ଭବ ବୋଲି ପ୍ରତୀତ ହୋଇଥାଏ, ତାଙ୍କ ନିକଟରେ ତାହା ଅତ୍ୟନ୍ତ ସହଜସାଧ୍ୟ ବୋଲି ପ୍ରମାଣିତ ହୋଇଥାଏ । ତେଣୁ ମଣିଷର ଇଚ୍ଛାଶକ୍ତିର ଦୃଢ଼ତା ଉପରେ ହିଁ କାର୍ଯ୍ୟର ସଫଳତା ଏବଂ ବିଫଳତା ନିର୍ଭର କରିଥାଏ । ସେହି କାରଣରୁ କୁହାଯାଇଥାଏ ''ଇଚ୍ଛା ଥିଲେ ଉପାୟ ଆପେ ଆପେ ଆସେ ।''



## ଏକାଦିନକେ କେହି ବଡ଼ ହୋଇଯାଏ ନାହିଁ

**(ଉପକ୍ରମ, ଏହାର ଅର୍ଥ ଓ ଉଦ୍ଦେଶ୍ୟ, କେତେକ ଉଦାହରଣ, ଉପସଂହାର)**

ମଣିଷର ଇଚ୍ଛା ଅସୀମ । ମାତ୍ର ଶକ୍ତି ସୀମିତ । ତେଣୁ ସୀମିତ ଶକ୍ତିନେଇ ମଣିଷ କଦାପି ସ୍ୱଳ୍ପସମୟ ମଧ୍ୟରେ ତା'ର ସମସ୍ତ ଇଚ୍ଛାକୁ ପରିପୂରଣ କରିପାରିବ ନାହିଁ । ଏଥିପାଇଁ ଆବଶ୍ୟକ ରହିଛି ନିରବଚ୍ଛିନ୍ନ ଉଦ୍ୟମର । ଦୃଢ଼ ମନୋବଳ, ନିରବଚ୍ଛିନ୍ନ ଉଦ୍ୟମ ଏବଂ ଗଭୀର

ଇଚ୍ଛାଶକ୍ତି ହିଁ ମଣିଷକୁ ସଫଳତାର ଶୀର୍ଷଦେଶରେ ପହଞ୍ଚାଇଥାଏ । ଉପରୋକ୍ତ ପ୍ରବଚନଟି ମଣିଷର ସେହି କର୍ତ୍ତବ୍ୟନିଷ୍ଠା ଓ ନିରବଚ୍ଛିନ୍ନ ଉଦ୍ୟମକୁ ସୂଚାଇ ଦେଇଥାଏ । ଇଂରାଜୀରେ ଏହି ପ୍ରବଚନଟି ହେଉଛି 'Rome was not built in a day' ଏପରି ଅନେକ କାର୍ଯ୍ୟ ରହିଛି; ଯାହାର ପରିସମାପ୍ତି ଦୀର୍ଘଦିନର ଉଦ୍ୟମକୁ ଅପେକ୍ଷା ରଖେ । ଯେଉଁମାନେ ଧୈର୍ଯ୍ୟଶୀଳ ଓ କର୍ତ୍ତବ୍ୟନିଷ୍ଠ, ସେହିମାନେ ହିଁ କେବଳ ସଫଳତା ଲାଭ କରିଥାନ୍ତି । କେତେକ ବ୍ୟକ୍ତି କାର୍ଯ୍ୟର କଠିନତା ଓ ସମୟସାପେକ୍ଷତାକୁ ଅପେକ୍ଷା କରିବାର ଧୈର୍ଯ୍ୟ ହରାଇଥିବାରୁ ପ୍ରତିକ୍ଷେତ୍ରରେ ବିଫଳ ହୋଇଥାନ୍ତି । ତେଣୁ ଯେଉଁମାନେ ଧୈର୍ଯ୍ୟହୀନ, ଉଦ୍ୟମହୀନ ସେହିମାନଙ୍କ ଉଦ୍ଦେଶ୍ୟରେ ହିଁ ପ୍ରବଚନଟିର ବ୍ୟବହାର କରାଯାଇଥାଏ ।

ସାଧାରଣ ଭାବରେ ରୋମ କହିଲେ ଇଟାଲୀର ଏକ ସୁନ୍ଦର ସହରକୁ ବୁଝାଇଥାଏ । ଏହି ସହରର ସୌନ୍ଦର୍ଯ୍ୟ, ସ୍ୱଚ୍ଛତା ଓ ପରିଚ୍ଛନ୍ନତା ପାଇଁ ଏହା ବିଶ୍ୱପ୍ରସିଦ୍ଧ । ମାତ୍ର ଏପରି ଏକ ସହର କଦାପି ଗୋଟିଏ ଦିନରେ ତିଆରି ହୋଇପାରି ନାହିଁ । ଏଥିପାଇଁ ଆବଶ୍ୟକ ହୋଇଛି ପ୍ରଚୁର ଅର୍ଥ ଓ ବହୁଦିନର ନିରବଚ୍ଛିନ୍ନ ଉଦ୍ୟମ । ରୋମ୍ ସମ୍ରାଟ ଅଗଷ୍ଟସ୍‌ଙ୍କ ୪୦ବର୍ଷର ଉଦ୍ୟମ ହିଁ ଏହି ସହରଟିର ଭୂଗୋଳକୁ ବଦଳାଇ ପାରିଥିଲା । ସୁନ୍ଦର ପୁଷ୍କରିଣୀ, ପ୍ରେକ୍ଷାଳୟ, କାରୁକାର୍ଯ୍ୟପୂର୍ଣ୍ଣ ମନ୍ଦିର, ସୁବିଶାଳ ସୌଧ ଆଦି ଯୋଗୁଁ ଏହି ସହରଟି ବିଶ୍ୱରେ ସୌନ୍ଦର୍ଯ୍ୟର ଗନ୍ତାଘର ହୋଇପାରିଛି । ବିଶ୍ୱର ସୁନ୍ଦର ସହରର ସୌଭାଗ୍ୟ ଲାଭ କରିବାକୁ ଏହା ଦୀର୍ଘଦିନ ସମୟ ନେଇଛି । ସେହିପରି ପ୍ରତ୍ୟେକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ପରିପୂରଣ ହେବାକୁ ଦୀର୍ଘ ସମୟ ନେଇଥାଏ । ଏଥିପାଇଁ ଆବଶ୍ୟକ ରହିଛି ଧୈର୍ଯ୍ୟ ଓ କର୍ତ୍ତବ୍ୟନିଷ୍ଠାର । ଏଠାରେ 'ରୋମ୍' ଏକ ଉଦାର ଏବଂ କୀର୍ତ୍ତିମୟର ପ୍ରତୀକ । ଗୋଟିଏ ଦିନ ବା 'ଏକାଦିନ' ସମୟର ଦୂରତ୍ୱକୁ ସୂଚିତ କରେ । ତେଣୁ କୌଣସି ଉତ୍ତମ ବା ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ ଗୋଟିଏ ଦିନରେ ସାଧିତ ହୋଇ ନ ଥାଏ । ଏହା ଦୀର୍ଘଦିନର ନିରବଚ୍ଛିନ୍ନ ଉଦ୍ୟମକୁ ଅପେକ୍ଷା ରଖିଥାଏ । ତେଣୁ ଯେଉଁମାନେ ଅଳ୍ପ ପରିଶ୍ରମରେ ବହୁତ କିଛି ଆଶା କରନ୍ତି, ଉକ୍ତ ପ୍ରବଚନଟି ତାଙ୍କ ପାଇଁ ଏକ ଚେତାବନୀ । ସେହିପରି ଯେଉଁମାନେ କୌଣସି ଉତ୍ତମ କାର୍ଯ୍ୟ କରିବାକୁ ଚାହାନ୍ତି, ସେମାନେ ଦୀର୍ଘକାଳ ଧରି ସେମାନଙ୍କର ନିରବଚ୍ଛିନ୍ନ ଉଦ୍ୟମ ଜାରି ରଖିବା ସଙ୍ଗେ ସଙ୍ଗେ ଧୈର୍ଯ୍ୟର ସହିତ ଫଳାଫଳକୁ ଅପେକ୍ଷା କରିବା ଉଚିତ । ଅଧୈର୍ଯ୍ୟ ମଣିଷର ଶ୍ରମକୁ ପଣ୍ଡ କରିଥାଏ । ଜଣେ ବ୍ୟକ୍ତି କୌଣସି କାର୍ଯ୍ୟ କରିବାକୁ ଯିବା ସମୟରେ ସେ ସେଥିପ୍ରତି ଦୃଢ଼ ସଂକଳ୍ପବଦ୍ଧ ହେବା ସହିତ କର୍ତ୍ତବ୍ୟନିଷ୍ଠ ରହିବା ଆବଶ୍ୟକ । ତେଣୁ ପ୍ରତ୍ୟେକ ଉତ୍ତମ କାର୍ଯ୍ୟ ପରିଶ୍ରମ, ଧୈର୍ଯ୍ୟ ଓ ଅଧ୍ୟବସାୟର ଅପେକ୍ଷା ରଖେ । ଗୀତାରେ ମଧ୍ୟ ଠିକ୍ ସେହି କଥା କୁହାଯାଇଛି । କର୍ମଫଳକୁ ଅପେକ୍ଷା ନ ରଖି କର୍ମ କରିଯିବା ମଣିଷର କର୍ତ୍ତବ୍ୟ । ଏହାଦ୍ୱାରା ମଣିଷର କର୍ତ୍ତବ୍ୟନିଷ୍ଠା ବୃଦ୍ଧି ପାଏ ଏବଂ ପ୍ରତ୍ୟେକ କାର୍ଯ୍ୟ ସୁଚାରୁ ରୂପେ ସମ୍ପାଦିତ ହୋଇଥାଏ ।

ଆମର ସାଧାରଣ ଜୀବନରୁ ଏ ସମ୍ପର୍କରେ ବହୁ ଉଦାହରଣ ଗ୍ରହଣ କରାଯାଇପାରେ । ସ୍ୱାସ୍ଥ୍ୟ ପାଇଁ ଔଷଧ ସେବନ କରୁଥିବା ବ୍ୟକ୍ତିଟିଏ ଗୋଟିଏ ଦିନରେ କଦାପି ସ୍ୱାସ୍ଥ୍ୟବାନ୍ ହୋଇ

ନ ପାରେ । ଏଥିପାଇଁ ସେ ନିରବଚ୍ଛିନ୍ନ ଔଷଧ ସେବନ କରିବା ଆବଶ୍ୟକ । ମାତ୍ର ଯଦି ସେ ଧୈର୍ଯ୍ୟହରା ହୋଇ ମଝିରୁ ଔଷଧ ସେବନ ବନ୍ଦ କରିଦିଏ, ତେବେ ସେବନ କରିଥିବା ଔଷଧର କୌଣସି ମୂଲ୍ୟ ରହେ ନାହିଁ କିମ୍ବା ତା'ର ପ୍ରକୃତ ଲକ୍ଷ୍ୟ ପରିପୂରଣ ହୁଏ ନାହିଁ । କୋଣାର୍କର କାରୁକାର୍ଯ୍ୟ ସମସ୍ତଙ୍କୁ ଆକୃଷ୍ଟ କରିଥାଏ । ମାତ୍ର ଏହି ମନ୍ଦିରଟି ନିର୍ମାଣ କରିବାକୁ ଦୀର୍ଘ ବାରବର୍ଷ ସମୟ ଲାଗିଛି । ଯଦି ରାଜା ବିରକ୍ତ ଭାବନେଇ ମଝିରୁ ମନ୍ଦିର କାର୍ଯ୍ୟ ବନ୍ଦକରି ଦେଇଥାନ୍ତେ, ତେବେ ହୁଏତ ଏପରି ଏକ କାରୁକଳା ମନ୍ଦିର ଜଗତ ସମ୍ମୁଖକୁ ଆସିପାରିନଥାନ୍ତା । ସେହିପରି ତାଜମହଲ ନିର୍ମିତ ହେବାକୁ ବହୁବର୍ଷ ଲାଗିଛି । ଶାହାଜାହାନ ଯଦି ତାଜମହଲ ନିର୍ମାଣର ସମୟସାପେକ୍ଷତାରେ ଧୈର୍ଯ୍ୟହରା ହୋଇଥାନ୍ତେ, ତେବେ ବିଶ୍ୱକୁ ସେ କଦାପି ଏପରି ଏକ ସୁନ୍ଦର ସ୍ମୃତିସ୍ତମ୍ଭ ଦେଇପାରିନଥାନ୍ତେ । ସାରଳା ଦାସ ଦୀର୍ଘଦିନର ପରିଶ୍ରମ ପରେ ମହାଭାରତ ପରି ଏକ ବିରାଟ ଗ୍ରନ୍ଥ ଲେଖିବାକୁ ସମର୍ଥ ହୋଇପାରିଥିଲେ । ମିଲଟନ୍ ଏବଂ ତୁଳସୀଦାସଙ୍କ କ୍ଷେତ୍ରରେ ମଧ୍ୟ ଠିକ୍ ତାହାହିଁ ହୋଇଛି । ତେଜିଙ୍ଗ୍ ଦୀର୍ଘ ପରିଶ୍ରମ ପରେ ଏଭରେଷ୍ଟ ଶୃଙ୍ଗ ଆରୋହଣ କରିବାକୁ ସମର୍ଥ ହୋଇଥିଲେ । ତେଣୁ ପ୍ରତ୍ୟେକ ଉତ୍ତମ କାର୍ଯ୍ୟ ପରିପୂର୍ଣ୍ଣ ହେବାକୁ ଦୀର୍ଘ ସମୟ ନେଇଥାଏ । ଧୈର୍ଯ୍ୟର ସହିତ ଅପେକ୍ଷା କଲେ ଓ କର୍ତ୍ତବ୍ୟନିଷ୍ଠ ହୋଇପାରିଲେ ତା'ର ପରିଣତି ଦେଖିବାର ସୌଭାଗ୍ୟ ମଣିଷ ଲାଭ କରିଥାଏ । ଜଣେ କୃଷକ ବିହନବୁଣି ତା'ପରଦିନ ଶସ୍ୟ ଉତ୍ପାଦନ କରିବାର ଆଶା ରଖିବା ତା'ର ବୋକାମୀ ବ୍ୟତୀତ ଅନ୍ୟକିଛି ହୋଇ ନ ପାରେ । ଠିକ୍ ସେହିପରି କାର୍ଯ୍ୟଟି ଆରମ୍ଭ କରି ହଠାତ୍ ତା'ର ସୁଫଳ ଆଶା କରିବା ସେହିପରି ଏକ ପାଗଳାମି । ତେଣୁ ପୃଥିବୀରେ ଯେଉଁ ସୃଷ୍ଟି ବିଖ୍ୟାତ ଲାଭ କରିଛି, ତା ପଶ୍ଚାତରେ କେତେ ପରିଶ୍ରମ ଓ କିପରି ଧୈର୍ଯ୍ୟ ତଥା ଦୀର୍ଘ ସମୟର ଇତିହାସ ରହିଛି, ତା'ର ବିଶ୍ଳେଷଣ ନ କଲେ ସହଜରେ ଜାଣିହେବ ନାହିଁ । ସେହି ଦୃଷ୍ଟିରୁ ଜଣେ ଚାହିଁଲେ ହଠାତ୍ ବଡ଼ ହୋଇପାରିବ ନାହିଁ, ଧୈର୍ଯ୍ୟର ସହିତ ସଂକଳ୍ପବଦ୍ଧ ଭାବରେ କାର୍ଯ୍ୟ କଲେ ଓ ସମୟକୁ ନିଷ୍ଠାର ସହିତ ଅପେକ୍ଷା କଲେ ତା'ର ସୁଫଳ ନିଶ୍ଚିତ ଭାବରେ ମିଳିଥାଏ ।

ପ୍ରତ୍ୟେକ ପରିଶ୍ରମର ମୂଲ୍ୟ ରହିଛି । ନିଷ୍ଠାପର କାର୍ଯ୍ୟର ପୁରସ୍କାର ରହିଛି । ତେଣୁ ହଠାତ୍ ଧୈର୍ଯ୍ୟହରା ହେବା ମଣିଷ ପକ୍ଷରେ ଶୋଭନୀୟ ନୁହେଁ । ଜୀବନ ବିଭିନ୍ନ ଘଟଣା ଓ ଦୁର୍ଘଟଣାର ସମାହାର । ସେଥିପାଇଁ ଯେଉଁମାନେ ଜ୍ଞାନୀ, ନିଷ୍ଠାପର ସେମାନେ ସହଜରେ ଧୈର୍ଯ୍ୟହରା ହୋଇନଥାନ୍ତି । ଗାନ୍ଧିଜୀ ଦୀର୍ଘଦିନ ଧରି ଇଂରେଜ ଶାସନ ବିରୋଧରେ ସଂଗ୍ରାମ ଜାରି ରଖିଥିଲେ । ସେ ଯଦି ମଝିରୁ ନିଜର ଧୈର୍ଯ୍ୟ ହରାଇଥାନ୍ତେ, ତେବେ ଭାରତ କଦାପି ସ୍ୱାଧୀନ ହୋଇ ପାରି ନ ଥାନ୍ତା । ଅନୁରୂପଭାବେ ନିଷ୍ଠାର ସହିତ କାର୍ଯ୍ୟକରି ଧୈର୍ଯ୍ୟର ସହିତ ସଂକଳ୍ପବଦ୍ଧ ଭାବରେ ଅପେକ୍ଷା କଲେ ପ୍ରତ୍ୟେକ କାର୍ଯ୍ୟ ସଫଳ ହୋଇଥାଏ । ସମୟ ତା'ର ଯଥାର୍ଥ ମୂଲ୍ୟ ପ୍ରଦାନ କରିଥାଏ । ତେଣୁ ସମୟଠାରୁ ଅଧିକ ମୂଲ୍ୟବାନ ଜଗତରେ ଆଉ କିଛି ନାହିଁ ।



# ଚାଲି ନ ଜାଣି ବାଟର ଦୋଷ

(ଉପକ୍ରମ, ଏହାର ଅର୍ଥ, କେତେକ ଉଦାହରଣ, ଉପସଂହାର)

ସାଧାରଣତଃ କୌଣସି ମଣିଷ ନିଜର ଦୋଷକୁ ଦୋଷ ବୋଲି ସ୍ୱୀକାର କରି ନ ଥାଏ । ନିଜ ଦୋଷକୁ ଅନ୍ୟ ଉପରକୁ ଠେଲିଦେଇ ଖସିଯିବା ପ୍ରତ୍ୟେକ ମଣିଷର ପ୍ରକୃତିଗତ ବୈଶିଷ୍ଟ୍ୟ । ଏହିପରି ବ୍ୟକ୍ତିମାନଙ୍କର କାର୍ଯ୍ୟକଳାପକୁ ଲକ୍ଷ୍ୟକରି କୁହାଯାଇଥାଏ 'ଚାଲି ନ ଜାଣି ବାଟର ଦୋଷ ।' ଇଂରାଜୀରେ ଏହାକୁ କୁହାଯାଇଛି 'A bad workman quarrels with his tools.' ଅକୁଶଳୀ କାରିଗର ନିଜର କାର୍ଯ୍ୟକୁ ସମାଲୋଚନା ନକରି ନିଜର ଯନ୍ତ୍ରପାତି ଉପରେ ଦୋଷ ଲଦି ଦେଇଥାଏ । ଏହାଦ୍ୱାରା ତା'ର ପ୍ରକୃତ ଦୁର୍ବଳତା ଯେ ପଦାରେ ପଡ଼ିଯାଏ, ତାହା ସେ ଭୁଲିଯାଇଥାଏ । ସାମାଜିକ ଜୀବନରେ ଏହି ପ୍ରକାର ବ୍ୟକ୍ତି ଚରିତ୍ରଙ୍କର ଅଭାବ ନାହିଁ । ସେହିମାନଙ୍କ କାର୍ଯ୍ୟପଦ୍ଧତିକୁ ଲକ୍ଷ୍ୟ କରାଯାଇଁ କୁହାଯାଇଥାଏ 'ଚାଲି ନ ଜାଣି ବାଟର ଦୋଷ ।'

ମଣିଷ ସର୍ବଦା ଭାଗ୍ୟ, ଭଗବାନ୍ ତଥା ତା'ର ପାରିପାର୍ଶ୍ୱିକ ପରିସ୍ଥିତି ଉପରେ ଦୋଷ ଦେଇ ନିଜର ଦୋଷକୁ ଘୋଡ଼ାଇବାକୁ ଚେଷ୍ଟା କରିଥାଏ । ଜୀବନର ବାସ୍ତବତାକୁ ସମ୍ମୁଖୀନ ହୋଇ ନ ପାରି ସେ ସର୍ବଦା ଅନ୍ୟକୁ ନିନ୍ଦା କରେ । ଅସହାୟ ବ୍ୟକ୍ତି କୌଣସି ସମୟରେ ନିଜ କାର୍ଯ୍ୟର ଅନୁଶୀଳନ କରିନଥାଏ । ବାଟରେ ଚାଲୁ ଚାଲୁ ଅସାବଧାନରେ ଝୁଣ୍ଟି ପଡ଼ିଲେ ସେ ନିଜର ଅସାବଧାନତା ପ୍ରତି ଦୃଷ୍ଟି ନ ଦେଇ ବରଂ ବାଟର ଦୋଷ ଦେଇଥାଏ । ଏହାଦ୍ୱାରା ସେ ଯେ ସହଜରେ ବାରମ୍ବାର ଉପହସିତ ହୋଇଥାଏ, ତାହା ସେ ଭୁଲିଯାଏ । ଔଷଧ ସେବନରେ ରୋଗ ସିନା ମୁକ୍ତ ହୋଇଥାଏ; ମାତ୍ର ଔଷଧ ନାମରେ ତାଟିଆ କାମୁଡ଼ିଲେ କୌଣସି ଲାଭ ହୋଇନଥାଏ । ଆତ୍ମବିଶ୍ଳେଷଣ ମାଧ୍ୟମରେ ମଣିଷ ନିଜ ଦୋଷତ୍ରୁଟି ସମ୍ବନ୍ଧରେ ସଚେତନ ହୋଇଥାଏ । ଯା'ର ଆତ୍ମବିଶ୍ଳେଷଣ କରିବାର ଯୋଗ୍ୟତା ନ ଥାଏ, ସେ କେବଳ ଅନ୍ୟ ଉପରେ ଦୋଷ ଲଦି ଚାଲିଥାଏ । ଏହାଦ୍ୱାରା ନା ସମାଜର ନା ବ୍ୟକ୍ତିର ନା ତାହାର ମଙ୍ଗଳ ହୋଇଥାଏ ? ଜୀବନ ଏକ ଲମ୍ବା ରାସ୍ତା । ଏହି ରାସ୍ତାକୁ ଅତିକ୍ରମ କରିବା ସମୟରେ ବହୁ ବାଧାବିଘ୍ନ ସୃଷ୍ଟି ହେବା ସ୍ୱାଭାବିକ । ମାତ୍ର ମାନବ ପ୍ରକୃତିର ସେହି ନିଷ୍ଠୁର ବାସ୍ତବତାକୁ ଭୁଲିଯାଇ ଏବଂ ନିଜର ଶକ୍ତି ପ୍ରତି ସଚେତନ ନ ହୋଇ କେବଳ ଅନ୍ୟ ଉପରେ ଦୋଷ ଦେଇ ଚାଲେ । ଏହି ପ୍ରକାର ବ୍ୟକ୍ତିଙ୍କ କାର୍ଯ୍ୟକଳାପକୁ ସମାଲୋଚନା କରାଯାଇ ମଧ୍ୟ କୁହାଯାଇଥାଏ 'ବିଛାମନ୍ତ୍ର ନ ଜାଣି ସାପ ଗାତରେ ହାତ ଦେଉଛି ।' ତେଣୁ ପ୍ରତ୍ୟେକ ବ୍ୟକ୍ତି ପ୍ରଥମେ ନିଜର ଶକ୍ତି ଓ ସାମର୍ଥ୍ୟ ପ୍ରତି ସଚେତନ ହେବା ଆବଶ୍ୟକ । ତାହା ନ କରି ଅନ୍ୟକୁ ସମାଲୋଚନା କଲେ ଲୋକେ କହିବେ 'ଚାଲି ନ ଜାଣି ବାଟର ଦୋଷ ।'

ସାମାଜିକ ଜୀବନରୁ ଏହି ପ୍ରବଚନର ସାରତତ୍ତ୍ୱ ସମ୍ପର୍କୀୟ ବହୁ ଉଦାହରଣ ସଂଗ୍ରହ କରାଯାଇପାରେ । ପରୀକ୍ଷାରେ ଅକୃତକାର୍ଯ୍ୟ ହୋଇଥିବା ଛାତ୍ରଟି କଦାପି ନିଜର ସୀମିତ ଅଧ୍ୟୟନ

ପ୍ରତି ଦୋଷାରୋପ ନ କରି ସବୁ ଦୋଷ ପାଠ ଉପରେ କିମ୍ବା ଶିକ୍ଷକ ଉପରେ ଲଦି ଦେଇଥାଏ । ଅନେକ ସମୟରେ ମଣିଷ କୌଣସି କାର୍ଯ୍ୟରେ ଅସଫଳ ହେଲେ ନିଜର ଭାଗ୍ୟକୁ ନିନ୍ଦା କରିଥାଏ । ମଣିଷ ଅନ୍ୟର ଦୋଷତ୍ରୁଟିକୁ ଯେତେ ସହଜରେ ଦେଖିପାରେ, ନିଜର ଦୋଷକୁ ସେହିପରି ଭାବରେ ଦେଖିପାରେ ନାହିଁ ।

ସେଥିପାଇଁ ଗାଁ ଗହଳିରେ କୁହାଯାଏ 'କହିଦେଉଥାଏ ପରକୁ, ବୁଦ୍ଧି ନ ଦିଶଇ ଘରକୁ ।' ଅର୍ଥାତ୍ ଅନ୍ୟର କାର୍ଯ୍ୟକୁ ସମାଲୋଚନା କରିବା ସମୟରେ ସେହି ଏକପ୍ରକାର କାର୍ଯ୍ୟ ପାଇଁ ସେ ନିଜକୁ ସମାଲୋଚନା କରେ ନାହିଁ । ଅଥଚ ନିଜର ତ୍ରୁଟିପୂର୍ଣ୍ଣ କାର୍ଯ୍ୟ ପାଇଁ ସେ ଅନ୍ୟର ଦୋଷ ଦେଇଥାଏ । ଯେଉଁମାନେ ଦୁର୍ବଳ ଓ ଅସହାୟ ସେହିମାନେ କେବଳ ଭାଗ୍ୟକୁ ନିନ୍ଦା କରିଥାନ୍ତି । ଅକୁଶଳୀ କାରିଗରଟିଏ କୌଣସି କାଠର ମୂର୍ତ୍ତିଟିଏ ତିଆରି କରିବା ସମୟରେ ତାହା ଯଦି ଅସୁନ୍ଦର ହୋଇଯାଏ, ତେବେ ସେ ଦୋଷ ନିଜକୁ ନ ଦେଇ ନିଜର ଯନ୍ତ୍ରପାତିକୁ ଦେଇଥାଏ । ଛୋଟ ପିଲାଟିଏ ବାଟରେ ଯାଉଯାଉ ଝୁଣ୍ଟି ପଡ଼ିଲେ ରାଗରେ ବାଟକୁ ଦୋଷ ଦେଇ ତା' ଉପରେ ଆଘାତ କରିଥାଏ । ଏପରିକି ଉଚ୍ଚସ୍ତରରେ ମଧ୍ୟ ଏପରି ଉଦାହରଣ ବିରଳ ନୁହେଁ । ଉପରିସ୍ଥ ଅଫିସର ନିଜ ଦୋଷକୁ ଲୁଚାଇବାକୁ ଯାଇ ଅଧସ୍ତନ କର୍ମଚାରୀ ଉପରେ ସମସ୍ତ ଦୋଷ ଲଦି ଦେଇଥାଏ । ଏପରି କ୍ଷେତ୍ରରେ ବ୍ୟକ୍ତି ଚରିତ୍ର ସଂଶୋଧନ ହୋଇପାରେ ନାହିଁ । ତେଣୁ ପ୍ରତ୍ୟେକ ବ୍ୟକ୍ତି କାର୍ଯ୍ୟ କରିବା ସମୟରେ ସଚେତନ ଭାବରେ ପ୍ରଥମେ ନିଜର କାର୍ଯ୍ୟକୁ ଅନୁଶୀଳନ କରିବା ଆବଶ୍ୟକ । ଯେଉଁ ବ୍ୟକ୍ତି ନିଜ ଦୋଷକୁ ନିର୍ବିକାରରେ ସ୍ୱୀକାର କରେ, ସେ ହିଁ କେବଳ ନିଜର ଚରିତ୍ରକୁ ସଂଶୋଧନ କରିପାରେ । ନିଜର ଅପାରଗତା ପ୍ରତି ସଚେତନ ବ୍ୟକ୍ତି କେବେବି ଅନ୍ୟ ଉପରେ ଦୋଷ ଲଦି ଦେଇନଥାଏ । ତେଣୁ କାର୍ଯ୍ୟ ସମ୍ପର୍କରେ ଧାରଣା ନ ଦେଇ କାର୍ଯ୍ୟର ଉପକରଣକୁ ନିନ୍ଦା କଲେ, ସମାଜରେ ଉପହସିତ ହେବା ହିଁ ସାର ହୋଇଥାଏ । ସମାଜର ଏହି ପ୍ରକାର ବ୍ୟକ୍ତିବିଶେଷଙ୍କୁ ନିଜର କାର୍ଯ୍ୟ ପ୍ରତି ସଚେତନ କରାଇ ଦେବାକୁ ଯାଇ 'ଚାଲି ନ ଜାଣି ବାଟର ଦୋଷ' ପ୍ରବଚନଟି ସୃଷ୍ଟି ହୋଇଛି ।

ପ୍ରତ୍ୟେକ ପ୍ରବଚନର ଲକ୍ଷ୍ୟ ବ୍ୟକ୍ତି ଚରିତ୍ର ସଂଶୋଧନ । ଗୋଟିଏ ସମାଜରେ ବହୁ ପ୍ରକାର ବ୍ୟକ୍ତି ବାସ କରିଥାନ୍ତି । ସେମାନଙ୍କର ଚରିତ୍ର ମଧ୍ୟ ଭିନ୍ନ ଭିନ୍ନ ଉପାଦାନରେ ଗଢ଼ା । ନିଜ ଦୋଷକୁ ସାଧାରଣ ଭାବରେ ଗ୍ରହଣ କରିନେବା ବ୍ୟକ୍ତି କ୍ୱଚିତ୍ ଦେଖାଦେଇଥାନ୍ତି । ସେହିପରି ବ୍ୟକ୍ତିମାନଙ୍କୁ ଉଚିତ ମାର୍ଗରେ ଚଳାଇବାକୁ ପ୍ରବଚନଗୁଡ଼ିକର ସୃଷ୍ଟି । 'ଚାଲି ନ ଜାଣି ବାଟର ଦୋଷ' ପ୍ରବଚନଟିରେ ମଣିଷକୁ ଆତ୍ମସମୀକ୍ଷା ନିମିତ୍ତ ଶିକ୍ଷା ପ୍ରଦାନ କରାଯାଇଛି । ଅନ୍ୟ ପ୍ରତି ଦୋଷାରୋପ କରିବା ପୂର୍ବରୁ ପ୍ରଥମେ ମଣିଷ ନିଜ କାର୍ଯ୍ୟର ବିଶ୍ଳେଷଣ କରିବା ଆବଶ୍ୟକ । ତାହେଲେ ମଣିଷ ଉଭୟ ସମାଜ ଓ ନିଜକୁ ସଂଶୋଧନ କରିବାକୁ ସମର୍ଥ ହୋଇପାରିବ । ଏହାଦ୍ୱାରା ବ୍ୟକ୍ତି ଜୀବନର ବିକାଶ ମଧ୍ୟ ସାଧିତ ହୋଇପାରିବ ।

# ବିଫଳତା ହିଁ ସଫଳତାର ସୋପାନ ବା ଠିକିଲେ ଶିଖେ

(ଉପକ୍ରମ, ଏହାର ତାତ୍ପର୍ଯ୍ୟ, ଉଦାହରଣ, ଉପସଂହାର)

ସମଗ୍ର ବିଶ୍ୱ ଏକ ବିରାଟ ପୁସ୍ତକ । ପ୍ରତି ମୁହୂର୍ତ୍ତରେ ଏଥିରୁ କିଛିନା କିଛି ଶିଖିବାକୁ ହୋଇଥାଏ । ଜଣେ ମଣିଷର ଜୀବନରେ ଅନେକ କିଛି ଶିକ୍ଷା କରିବାର ଅଛି । ପରିବାର, ସମାଜ ଓ ପରିବେଶ – ପ୍ରତିଟି କ୍ଷେତ୍ର ଶିକ୍ଷାର ଏକ ଏକ ସୋପାନ । ପ୍ରତ୍ୟେକ ମଣିଷର କିଛି ନା କିଛି ତ୍ରୁଟି ବା ଦୋଷ ରହିଛି । ଠିକିବା ଦ୍ୱାରା ସେ ତା'ର ଦୋଷତ୍ରୁଟିକୁ ସଂଶୋଧନ କରିଥାଏ । ସେଥିପାଇଁ ଇଂରାଜୀରେ କୁହାଯାଇଛି–"Failure is the pillar of success" ପରାଜୟର ଗ୍ଲାନି ମଣିଷକୁ ବିଜୟ ନିମିତ୍ତ ପ୍ରେରଣା ପ୍ରଦାନ କରିଥାଏ । ଅନୁଭୂତି ମଣିଷକୁ ଗୋଟିଏ ପରେ ଗୋଟିଏ ପାବଚ୍ଛ ଅତିକ୍ରମ କରିବାକୁ ଶିକ୍ଷା ଦେଇଥାଏ । ମଣିଷ ତା' ଜୀବନ କାଳ ମଧ୍ୟରେ ବହୁ ଅଭିଜ୍ଞତା ଲାଭ କରିଥାଏ । ଏହି ଅଭିଜ୍ଞତାରେ ଥାଏ ଜୟ ଏବଂ ପରାଜୟର ସ୍ୱାଦ । ପରାଜୟ ପରବର୍ତ୍ତୀ ସମୟରେ ବିଜୟର ଦ୍ୱାର ଉନ୍ମୁକ୍ତ କରିଥାଏ । ଅକୃତକାର୍ଯ୍ୟତା ଅନେକ ସମୟରେ କୃତକାର୍ଯ୍ୟ ହେବା ପାଇଁ ପ୍ରେରଣା ଦେଇଥାଏ । ସେଇଥିପାଇଁ କୁହାଯାଇଥାଏ ମଣିଷ ଠିକିଲେ ଶିଖେ । ଏଠାରେ ଠିକିବା ଏକ ଅଭିଜ୍ଞତା ବା ଅନୁଭୂତି; ଯାହା ମଣିଷକୁ ପରବର୍ତ୍ତୀ ପର୍ଯ୍ୟାୟରେ ବିଜୟ ହାସଲ ଦିଗରେ ବା ସଫଳତା ପ୍ରାପ୍ତ କ୍ଷେତ୍ରରେ ସହାୟତା କରିଥାଏ ।

ନିରବଚ୍ଛିନ୍ନ ସାଧନା ହିଁ ମଣିଷକୁ ବିଜୟ ମଣ୍ଡିତ କରିଥାଏ । ଏହି ସାଧନାରୁ ଯେଉଁ ଅଭିଜ୍ଞତା ମିଳେ, ତାହାକୁ ଭିତ୍ତିକରି ମଣିଷ ଜୀବନ କ୍ଷେତ୍ରରେ ଅଗ୍ରସର ହୋଇଥାଏ । ଜୀବନ କ୍ଷେତ୍ରରେ ବାରମ୍ବାର ପରାହତ ହୋଇଥିବା ସୈନିକଟି ପରବର୍ତ୍ତୀ ସମୟରେ ହୋଇଥାଏ ଶ୍ରେଷ୍ଠ ସେନାପତି । ତେଣୁ ପରାଜୟରୁ ଗ୍ଲାନିବୋଧ ସୃଷ୍ଟିହେବା ଅନାବଶ୍ୟକ । ବରଂ ସେହି ପରାଜୟର କାରଣ ଅନୁସନ୍ଧାନ କରି ତନ୍ମଧ୍ୟରେ ରହିଥିବା ତ୍ରୁଟିଟିକୁ ସଂଶୋଧନ କରିଦେଲେ ଜୀବନ ସଂଗ୍ରାମରେ ସେ ବିଜୟର ମୁକୁଟ ପିନ୍ଧିଥାଏ । ମଣିଷ ଜଣେ ସାମାଜିକ ପ୍ରାଣୀ । ତେଣୁ ତା'ର ଅନେକ କ୍ଷେତ୍ରରେ ଭୁଲ୍ ହେବା ସ୍ୱାଭାବିକ । ସେ ତା'ର ଏହି ଭୁଲ କାର୍ଯ୍ୟ ବା ତ୍ରୁଟି ପାଇଁ ଠିକିଥାଏ ଏବଂ ସେହିଥିରୁ ହିଁ ଉଚିତ ଶିକ୍ଷା ଲାଭ କରିଥାଏ । ସେ ସମାଲୋଚନା ଏବଂ ନିନ୍ଦା ସହ୍ୟ କରିଥାଏ ତା'ର ଭୁଲ ପାଇଁ । ଯେଉଁ ମଣିଷ ଭର୍ତ୍ସନା ଓ ସମାଲୋଚନା ପରେ ନିଜକୁ ସଂଶୋଧନ କରିପାରେ ସେ ହିଁ ହୋଇଥାଏ ସମାଜରେ ପ୍ରତିଷ୍ଠିତ ବ୍ୟକ୍ତି । ବିଫଳତା ମଧ୍ୟ ଜୀବନର ଏକ ଶିକ୍ଷା । ଏଥିପାଇଁ ନିରାଶ ବା ବ୍ୟାକୁଳ ହେବାର କୌଣସି କାରଣ ନାହିଁ । ବିଫଳତାର ଅଭିଜ୍ଞତା ସଫଳତା ନିମିତ୍ତ ପଥ ପରିଷ୍କାର କରିଥାଏ; ନୂତନ ଉପାୟ, ନୂତନ ଦିଗ୍‌ଦର୍ଶନ ପ୍ରଦାନ କରି ଚାଲିଥାଏ । ଯା'ର ପ୍ରକୃତ ଜ୍ଞାନ ରହିଛି, ସେ ଏଥିରୁ ଜୀବନର ପରମ ଶିକ୍ଷା ଲାଭ କରି ନିଜକୁ ସେହିପରି ଗଢି ତୋଳେ । ଅନ୍ତର ମଧ୍ୟରେ ବିଶ୍ୱାସବୋଧକୁ ଜାଗ୍ରତ କରି ନୂତନ ଉଦ୍ଦୀପନାରେ ପୁଣି ଆଗେଇଯାଏ ଜୀବନ

ସଂଗ୍ରାମର ରଣଭୂମିକୁ । ମାନସିକ ଦୃଢ଼ତା, ଆତ୍ମବିଶ୍ୱାସ, ଶୃଙ୍ଖଳିତ କାର୍ଯ୍ୟକଳାପ ଓ ଧୈର୍ଯ୍ୟ ତାକୁ ବିଜୟ ମଣ୍ଡିତ କରେ । ତେଣୁ ପରାଜୟ ବା ବିଫଳତା ସର୍ବଦା ନିନ୍ଦନୀୟ ନୁହେଁ । ବରଂ ମଣିଷକୁ ତା' କାର୍ଯ୍ୟକଳାପ ସମ୍ପର୍କରେ ଉଚିତ ଦିଗ୍‌ଦର୍ଶନ ଦେଉଥିବାରୁ ତାହା ବହୁଗୁଣରେ ଅଭିନନ୍ଦନୀୟ ।

ଜୀବନ ଯୁଦ୍ଧରେ ବିଜୟର ମୁକୁଟ ପିନ୍ଧିବାକୁ ହେଲେ ପରାଜୟର ସ୍ୱାଦ ଚାଖିବାକୁ ପଡ଼ିବ । ମାତ୍ର ପରାଜୟରେ ହତାଶ ହୋଇପଡ଼ିବା ଭୀରୁତାର ପରିଚୟ । ଛାତ୍ରଟିଏ ପରୀକ୍ଷାରେ ଅକୃତକାର୍ଯ୍ୟ ହେଲେ ସେଥିରେ ବରଂ ଭାଙ୍ଗି ନପଡ଼ି, କେଉଁ କାରଣରୁ ଅକୃତକାର୍ଯ୍ୟ ହେଲା, ତା'ର କାରଣ ଅନୁସନ୍ଧାନ କରି ନିଜକୁ ଠିକ୍ ରୂପେ ପ୍ରସ୍ତୁତ କରିପାରିଲେ ସେ ନିଶ୍ଚିତ ଭାବରେ କୃତକାର୍ଯ୍ୟ ହୋଇଥାଏ । ଗାନ୍ଧିଜୀ ଜଣେ ମେଧାବୀ ଛାତ୍ର ନ ଥିଲେହେଁ, ବାରମ୍ବାର ଚେଷ୍ଟାଦ୍ୱାରା ଭାରତର ଜଣେ ମହାନ୍ ବ୍ୟକ୍ତି ଭାବରେ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ । ରାମାୟଣରେ ମେଘନାଦଠାରୁ ଲକ୍ଷ୍ମଣ ପରାଜିତ ହୋଇଥିଲେହେଁ, ପରବର୍ତ୍ତୀ କାଳରେ ତା'ର କାରଣ ଜାଣି ମେଘନାଦକୁ ବଧ କରିପାରିଥିଲେ । ଜର୍ମାନ୍‌ଠାରୁ ପରାଜିତ ହୋଇଥିବା ରୁଷ, ନିଜର ଯୁଦ୍ଧ ନୀତି ପରିବର୍ତ୍ତନ କରି ପରେ ଯୁଦ୍ଧରେ ଜୟଲାଭ କରିଥିଲା । ମରହଟ୍ଟା ସର୍ଦ୍ଦାର ଶିବାଜୀଙ୍କ କ୍ଷେତ୍ରରେ ତାହାହିଁ ଘଟିଥିଲା । ପ୍ରଥମ ଯୁଦ୍ଧରେ ଭୀମ ପରାଜୟ ବରଣ କରିଥିଲେହେଁ ହତୋତ୍ସାହ ନହୋଇ ଯୁଦ୍ଧ କୌଶଳର ପରିବର୍ତ୍ତନ କରି ଦୁଃଶାସନକୁ ନିଧନ କରିଥିଲେ । ରାଜନୀତି କ୍ଷେତ୍ରରେ ବାରମ୍ବାର ପରାଜିତ ହେଉଥିବା ନେତା ପରବର୍ତ୍ତୀ କାଳରେ ବିଜୟଲାଭ କରିଥାନ୍ତି । ନିଜର ତ୍ରୁଟିପୂର୍ଣ୍ଣ କୌଶଳକୁ ସଂଶୋଧନ କରି ରାଣାପ୍ରତାପ ପ୍ରବଳ ପ୍ରତାପୀ ମୋଗଲ ସମ୍ରାଟଙ୍କ ଦ୍ୱାରା ପରାଜିତ ହୋଇ ମଧ୍ୟ ହତୋତ୍ସାହ ହୋଇ ନଥିଲେ । ସେ ପୁଣି ଚିତୋରଗଡ଼କୁ ପୁନରୁଦ୍ଧାର କରିବାକୁ ସମର୍ଥ ହୋଇପାରିଥିଲେ । ମାତ୍ର ଯେଉଁମାନେ ପରାଜୟରୁ କିମ୍ବା ନିଜର ତ୍ରୁଟିରୁ କିଛି ଶିକ୍ଷା କରି ନ ପାରନ୍ତି, ତାଙ୍କ ଭାଗ୍ୟରେ ପରାଜୟ ସଦାସର୍ବଦା ଲେଖାହୋଇ ରହିଥାଏ । କଂସର ବହୁ ଅନୁଚର ମୃତ୍ୟୁବରଣ କରିବା ସତ୍ତ୍ୱେ ସେ ନିଜର ଭୁଲ୍‌କୁ ସଂଶୋଧନ କରି ନପାରିବାରୁ ମୃତ୍ୟୁର ଶିକାର ହୋଇଥିଲା । ରାବଣ ରାମଚନ୍ଦ୍ରଙ୍କ ବୀରତ୍ୱର ବହୁପରିଚୟ ଲାଭ କରିବା ସତ୍ତ୍ୱେ ନିଜକୁ ସଂଶୋଧନ କରି ନ ପାରିବାରୁ ଶେଷରେ ମୃତ୍ୟୁବରଣ କରିଥିଲା । ସ୍ୱର୍ଗକୁ ଶିଡ଼ି ବାନ୍ଧିବାର ଯୋଜନା ରଖିଥିଲେହେଁ, ଉଚିତ ସମୟରେ ଉଚିତ ପଦକ୍ଷେପ ଗ୍ରହଣ କରି ନ ପାରିବାରୁ, ତା'ର ଆଶା ଶେଷ ପର୍ଯ୍ୟନ୍ତ ଆଶାରେ ହିଁ ରହିଗଲା । ସାମାନ୍ୟ ବୁଢ଼ୀଆଣୀଟିର ବସା ଯେତେଥର ଭାଙ୍ଗିଲେ ମଧ୍ୟ ସେ ନିରୁତ୍ସାହିତ ନହୋଇ ତା' କାର୍ଯ୍ୟରେ ଲାଗି ରହିଥାଏ । ତେଣୁ ଯେଉଁମାନେ କଷ୍ଟସହିଷ୍ଣୁ ଓ କର୍ମଠ ସେମାନେ ପ୍ରଥମେ ପରାଜୟର ସ୍ୱାଦ ଚାଖିଥିଲେହେଁ, ପରବର୍ତ୍ତୀ କାଳରେ ବିଜୟର ମୁକୁଟ ପିନ୍ଧିଥାନ୍ତି ।

ଠିକିବା ବା ବିଫଳତା ମଣିଷର ଏକ ଶିକ୍ଷା । ତେଣୁ ପରାଜୟରେ ମ୍ରିୟମାଣ ହୋଇନପଡ଼ି ବରଂ ନିଜକୁ ଅଧିକ ସଜାଗ ଓ ସତର୍କ ରଖିପାରିଲେ ବିଜୟ ଅବଶ୍ୟମ୍ଭାବୀ । ବିଫଳତା ନିନ୍ଦନୀୟ

ହୋଇନ ପାରେ । ପରନ୍ତୁ ଏହା ମଣିଷକୁ ଅଧିକ ତ୍ରୁଟିଶୂନ୍ୟ ଭାବରେ କାର୍ଯ୍ୟ କରିବାକୁ ଶିକ୍ଷାପ୍ରଦାନ କରିଥାଏ । ସୁନାକୁ ବାରମ୍ବାର ଅଗ୍ନିରେ ଦହନ କଲେ ତା'ର ଜ୍ୟୋତି ଅଧିକରୁ ଅଧିକ ପ୍ରକାଶିତ ହୋଇଥାଏ । ଠିକ୍ ସେହିପରି ବାରମ୍ବାର ବିଫଳତା ମଣିଷକୁ ସଫଳତାର ଶୀର୍ଷରେ ପହଞ୍ଚାଇବାର ସହାୟତା କରିଥାଏ । ତେଣୁ ଠିକିଲେ ଶିଖେ ପ୍ରବଚନଟି ମଣିଷକୁ ଅଧିକମାତ୍ରାରେ ସଚେତନ ଓ ଆତ୍ମନିର୍ଭରଶୀଳ ହେବାକୁ ଶିକ୍ଷା ପ୍ରଦାନ କରିଥାଏ ।



## ବହୁ ଆଡ଼ମ୍ବରେ ଲଘୁକ୍ରିୟା

(ଉପକ୍ରମ, ଅର୍ଥ ଓ ଉଦ୍ଦେଶ୍ୟ, ଉଦାହରଣ, ଉପସଂହାର)

ମଣିଷର କାର୍ଯ୍ୟ କରିବାର ଶକ୍ତି ସୀମିତ; ମାତ୍ର ଯୋଜନା ଅସୀମ । ତେଣୁ ସମୟର ଉପଯୁକ୍ତ ବିନିଯୋଗ କରିନପାରିଲେ ବହୁ କାର୍ଯ୍ୟ ଅପୂର୍ଣ୍ଣ ରହିଯିବା ସ୍ୱାଭାବିକ । ଏହାଛଡ଼ା ଆଡ଼ମ୍ବର ସହିତ କାର୍ଯ୍ୟ କରିବାକୁ ଯିବାବେଳେ ସମୟ ଅତିକ୍ରାନ୍ତ ହୋଇଯାଏ, ଅଥଚ ଯେଉଁ କାର୍ଯ୍ୟ ପାଇଁ ଏପରି ଆୟୋଜନ ତାହା ରହିଯାଏ ଅପୂର୍ଣ୍ଣ । ମଣିଷର ଏହିପରି କାର୍ଯ୍ୟକଳାପକୁ ଲକ୍ଷ୍ୟ କରି କୁହାଯାଇଛି 'ବହୁ ଆଡ଼ମ୍ବରେ ଲଘୁକ୍ରିୟା' କିମ୍ବା ପାଗ ବାନ୍ଧୁ ବାନ୍ଧୁ କଚେରି ବରଖାସ୍ତ । ଇଂରାଜୀରେ ଏହାକୁ କୁହାଯାଏ–Much a do about nothing.

ଆଡ଼ମ୍ବର ପରିପୂର୍ଣ୍ଣ ବହୁ କାର୍ଯ୍ୟର ପରିଣତି ବିଫଳତାରେ ପର୍ଯ୍ୟବସିତ ହୋଇଥାଏ । ମଣିଷର ମିଥ୍ୟା ଆତ୍ମବଡ଼ିମା ଓ ଅନ୍ୟ ନିକଟରେ ନିଜର ସତ୍ତାକୁ ଜାହିର କରିବାର ମୋହ ସମ୍ପନ୍ନ ହେବାକୁ ଯାଉଥିବା କାର୍ଯ୍ୟର ଗୁଣାତ୍ମକ ମାନ ହ୍ରାସ କରିଥାଏ । ବହୁ-ଆଡ଼ମ୍ବର ଯୋଗୁଁ କାର୍ଯ୍ୟଟି ଲଘୁ ହୋଇଯାଏ ଏବଂ ସାଧାରଣ ଭାବରେ ଏହାର ପରିସମାପ୍ତି ଘଟେ । ବାସ୍ତବ ଜ୍ଞାନର ଅଭାବ ଏବଂ ସମାଜ ଆଗରେ ନିଜର ଅହଂ ଭାବର ପ୍ରକାଶ କରିବାକୁ ଯାଇ ମଣିଷ ଆଡ଼ମ୍ବରପୂର୍ଣ୍ଣ ଯୋଜନାର ପ୍ରସ୍ତୁତ କରିଥାଏ । ଏହି ଯୋଜନା ପ୍ରସ୍ତୁତ କରିବାରେ ବହୁ ସମୟ ଏବଂ ଧନର ଅପବ୍ୟୟ ଘଟିଥାଏ । ଅଥଚ ଯେଉଁ କାର୍ଯ୍ୟ ପାଇଁ ଏପରି ଆୟୋଜନ, ତାହା ଠିକ୍ ସମୟରେ ସାଧିତ ହୋଇ ନ ପାରି ତା'ର ଗୁରୁତ୍ୱ ହରାଇଥାଏ । ସାଧାରଣତଃ ସାମାଜିକ ଅନୁଷ୍ଠାନମାନଙ୍କରେ ଏହିପରି ବହୁ ଘଟଣା ଦେଖିବାକୁ ମିଳିଥାଏ । ମଣିଷ ଭାବେ ତା'ର ପ୍ରତ୍ୟେକ କାର୍ଯ୍ୟ ପାଇଁ ସମୟ ଅପେକ୍ଷା କରିବ ଓ ସେ ତାକୁ ଆଡ଼ମ୍ବର ସହିତ ପରିପାଳନ କରିବ । ମାତ୍ର ସମୟ କାହାରି ପାଇଁ ଅପେକ୍ଷା କରେ ନାହିଁ । ସେ ଆସେ ନିଜ ଇଚ୍ଛାରେ ଏବଂ ଯାଏ ମଧ୍ୟ ନିଜ ଇଚ୍ଛାରେ । ଆଡ଼ମ୍ବର ପରିପୂର୍ଣ୍ଣ କାର୍ଯ୍ୟକୁ ଦେଖିବାର ସାମାନ୍ୟତମ ଅଭିଳାଷ 'ସମୟ'ର ନ ଥାଏ । ତେଣୁ ଯେଉଁମାନେ ସମୟର ମୂଲ୍ୟକୁ ଅବବୋଧ କରିନପାରନ୍ତି ସେମାନେ ବାରମ୍ବାର ଠକନ୍ତି ଓ ଯଥାସମୟରେ କାର୍ଯ୍ୟଟିର ପରିସମାପ୍ତି କରିନପାରି ଅତି ନ୍ୟୂନ ଭାବରେ କାର୍ଯ୍ୟଟି ଶେଷ

କରିଥାନ୍ତି । ଏହିମାନଙ୍କ ଉଦ୍ଦେଶ୍ୟରେ 'ବହୁ ଆଡ଼ମ୍ବରରେ ଲଘୁକ୍ରିୟା' ପ୍ରବଚନଟି ବ୍ୟବହାର କରାଯାଇଥାଏ ।

ଯୋଜନା ପ୍ରଣୟନ କରୁଥିବା ବ୍ୟକ୍ତି କୌଣସି କାର୍ଯ୍ୟଟି ସଫଳ ରୂପାୟନ କରିପାରେ ନାହିଁ । ଆମର ପୁରାଣ, ଇତିହାସ ଏପରିକି ଦୈନନ୍ଦିନ ଜୀବନରୁ ଏ ସମ୍ପର୍କରେ ବହୁ ଉଦାହରଣ ସଂଗ୍ରହ କରାଯାଇପାରେ । ରାବଣ ସ୍ୱର୍ଗକୁ ଶିଡ଼ି ବାନ୍ଧିବ ବୋଲି ବହୁଦିନରୁ ଯୋଜନା ପ୍ରଣୟନ କରିଥିଲା । ମାତ୍ର ଯୋଜନାରେ ସମୟ ଅତିବାହିତ ହୋଇଗଲା, କିନ୍ତୁ ସ୍ୱର୍ଗକୁ ଶିଡ଼ି ବାନ୍ଧିପାରିଲା ନାହିଁ । ମହାଭାରତର ଭୁରିଶ୍ରବା ଚରିତ୍ରଟି ପଗଡ଼ି ବାନ୍ଧୁ ବାନ୍ଧୁ ଅଠର ଦିନ ଯୁଦ୍ଧ ଶେଷ ହୋଇଗଲା, କିନ୍ତୁ ସେ ଯୁଦ୍ଧରେ ଯୋଗଦେଇ ନିଜର ପରାକ୍ରମ ପ୍ରଦର୍ଶନ କରିପାରିଲା ନାହିଁ । ତେଣୁ ତା'ର ଆଡ଼ମ୍ବର ପରିପୂର୍ଣ୍ଣ ଯୁଦ୍ଧଯାତ୍ରାର କୌଣସି ମୂଲ୍ୟ ରହିଲା ନାହିଁ । ସେହିପରି ସମୟଜ୍ଞାନ ନ ଥିବା ଓକିଲ ନିଜକୁ ପ୍ରସ୍ତୁତ କରୁ କରୁ କଚେରିର ସମୟ ଗଡ଼ିଯାଇଥାଏ । ତା'ର ପ୍ରସ୍ତୁତିର କୌଣସି ମୂଲ୍ୟ ରହେ ନାହିଁ । ଛାତ୍ରଟି ପରୀକ୍ଷା ପାଇଁ ପାଠପଢ଼ାର ଆଡ଼ମ୍ବରପୂର୍ଣ୍ଣ ଯୋଜନା ପ୍ରସ୍ତୁତ କରୁ କରୁ ପରୀକ୍ଷା ପାଖେଇ ଆସିଥାଏ, ଅଥଚ ସିଏ ନିଜକୁ ପରୀକ୍ଷା ନିମିତ୍ତ ପ୍ରସ୍ତୁତ କରିପାରେ ନାହିଁ । ସାଧାରଣତଃ କେତେକ ସ୍ତ୍ରୀଲୋକ ନିଜକୁ ସଜାଇବାରେ ଏତେ ସମୟ ନେଇଥାନ୍ତି ଯେ ନିଜକୁ ପ୍ରସ୍ତୁତ କରି କାର୍ଯ୍ୟକ୍ଷେତ୍ରକୁ ଯିବା ସମୟକୁ ସେ କାର୍ଯ୍ୟର କୌଣସି ମୂଲ୍ୟ ରହିନଥାଏ ଅଥବା ଗାଡ଼ି ପାଖରେ ପହଞ୍ଚିବା ସମୟକୁ ଗାଡ଼ି ଛାଡ଼ି ଦେଇଥାଏ । ନିଜର ସୀମା ସମ୍ପର୍କରେ ଅସଚେତନ ବ୍ୟକ୍ତି ହିଁ ପ୍ରତି କ୍ଷେତ୍ରରେ ବିଫଳତାକୁ ବରଣ କରିଥାନ୍ତି । ଉଚିତ ସମୟରେ ଉଚିତ କାର୍ଯ୍ୟ ସମ୍ପାଦନ କରିବା ମଣିଷର କର୍ତ୍ତବ୍ୟ । ସେଥିପାଇଁ କୌଣସି ଆଡ଼ମ୍ବରର ପ୍ରୟୋଜନ ନାହିଁ । ବହୁ ଆଡ଼ମ୍ବରରେ ଲଘୁକ୍ରିୟା ହେବା ଅପେକ୍ଷା ଲଘୁ ଆଡ଼ମ୍ବରରେ ବହୁ କ୍ରିୟା ବା ଉପଯୁକ୍ତ କ୍ରିୟା ସମ୍ପନ୍ନ ହେବା ଶତଗୁଣରେ ଶ୍ରେୟସ୍କର ।

ସମୟାନୁବର୍ତ୍ତିତା ଦ୍ୱାରା ମଣିଷ ଉପଯୁକ୍ତ ସମୟରେ ଉପଯୁକ୍ତ କର୍ତ୍ତବ୍ୟ ସମ୍ପାଦନ କରିପାରିଥାଏ । କୌଣସି କାର୍ଯ୍ୟ ପାଇଁ ଜାକଜମକ ବା ଆଡ଼ମ୍ବରର କୌଣସି ପ୍ରୟୋଜନ ନାହିଁ । କାର୍ଯ୍ୟର ଆରମ୍ଭ ପୂର୍ବରୁ ସମୟ ଅତିକ୍ରାନ୍ତ ହୋଇଗଲେ ତା'ର କୌଣସି ମୂଲ୍ୟ ରହେ ନାହିଁ । ଅଯଥା ଆଟୋପ ବା ଆଡ଼ମ୍ବର ବହୁ ସମୟରେ ବିଫଳତାର କାରଣ ହୋଇଥାଏ । ତେଣୁ ସମୟ ଅସଚେତନ ଏବଂ କର୍ତ୍ତବ୍ୟବିମୁଖ ମଣିଷ ପାଇଁ ଏହି ପ୍ରବଚନଟି ବ୍ୟବହାର କରାଯାଇଥାଏ । ଏହାର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ଆଡ଼ମ୍ବର ନୁହେଁ, କର୍ତ୍ତବ୍ୟ ଉପରେ ଅଧିକ ଗୁରୁତ୍ୱ ପ୍ରଦାନ କରାଯିବା ଉଚିତ ।



# ସ୍ୱର୍ଗକୁ ନିଶୁଣି ନାହିଁ କି ବଡ଼ଲୋକକୁ ଉତ୍ତର ନାହିଁ

(ଉପକ୍ରମ, ଅର୍ଥ ଏବଂ ଉଦ୍ଦେଶ୍ୟ, ଉଦାହରଣ, ଉପସଂହାର)

ମଣିଷର ସାମାଜିକ ଜୀବନରେ ଏହି ପ୍ରବଚନଟିର ଗଭୀର ତାତ୍ପର୍ଯ୍ୟ ରହିଛି । ସ୍ୱର୍ଗକୁ ନିଶୁଣି ନାହିଁ ମାଧ୍ୟମରେ ଏକ ଅସମ୍ଭବ କାର୍ଯ୍ୟ ସମ୍ବନ୍ଧରେ ସୂଚନା ପ୍ରଦାନ କରାଯାଇଛି । ସେହିପରି ସମାଜର ବଡ଼ଲୋକମାନଙ୍କର ସ୍ୱତନ୍ତ୍ର ମର୍ଯ୍ୟାଦା ରହିଛି । ସେମାନେ ଯାହାକଲେ ମଧ ତାଙ୍କ ସମ୍ମୁଖରେ କେହି କିଛି କହିପାରିନଥାନ୍ତି । ବହୁ ପୁରାତନ ସମୟରୁ ସମାଜରେ ଏହା ଶ୍ରେଣୀ ବୈଷମ୍ୟ ସୃଷ୍ଟି କରି ଆସୁଥିଲେହେଁ, ତା'ର ବିଲୋପ ଏଯାବତ୍ ଘଟିପାରି ନାହିଁ । ଇଂରେଜୀରେ ଏହି ପ୍ରବଚନଟିକୁ ଅନ୍ୟଭାବରେ କୁହାଯାଇଛି–There is no royal road to learning. ଶିକ୍ଷାର ନିର୍ଦ୍ଦିଷ୍ଟ ପରିସୀମା ନାହିଁ । ଏହା ଅସୀମ । ତେଣୁ କେଉଁ ରାସ୍ତାରେ ଗତି କଲେ ଶିକ୍ଷାର ସମସ୍ତ ସୋପାନକୁ ସ୍ପର୍ଶ କରିହେବ, ତାହା କହିବା କଠିନ ଏବଂ ଅସମ୍ଭବ ମଧ । ସାଧାରଣ ଜୀବନରେ ଏକ ଅସମ୍ଭବ କାର୍ଯ୍ୟ ସମ୍ପର୍କରେ ସୂଚନା ଦେବା ସମୟରେ ମୁଖ୍ୟତଃ ଏହି ପ୍ରବଚନଟିର ଉଦ୍ଧାର କରାଯାଇଥାଏ ।

ସ୍ୱର୍ଗକୁ ନିଶୁଣି ବାନ୍ଧିବା ଯେପରି ଅସମ୍ଭବ, ବଡ଼ଲୋକମାନଙ୍କ ମୁହଁ ଉପରେ କଥା କହିବା ସେହିପରି ଅସମ୍ଭବ । ଶିକ୍ଷାପରି ସ୍ୱର୍ଗ ଅନନ୍ତ ଓ ଅସୀମ । କୌଣସି ବସ୍ତୁ ମାଧ୍ୟମରେ ତା' ନିକଟରେ ପହଞ୍ଚିବା ଅସମ୍ଭବ ବ୍ୟାପାର । ଆମର ପୁରାଣମାନଙ୍କରେ ସ୍ୱର୍ଗ ସମ୍ବନ୍ଧରେ ବହୁ ବଡ଼ ବଡ଼ କଥା କୁହାଯାଇଛି । ସେହି ବର୍ଣ୍ଣନାରୁ ଆମର ବିଶ୍ୱାସ ହୋଇଥାଏ, ସ୍ୱର୍ଗରେ ଶିଡ଼ି ଦ୍ୱାରା ପହଞ୍ଚିବା କଦାପି ସମ୍ଭବ ନୁହେଁ । ସାଧାରଣତଃ ଅଳ୍ପ ଉଚ୍ଚ ସ୍ଥାନକୁ ଯିବା ପାଇଁ ନିଶୁଣିର ସାହାଯ୍ୟ ନିଆଯାଇପାରେ ବା ଅଳ୍ପ ଉଚ୍ଚସ୍ଥାନ ପାଇଁ ଗୋଟିଏ ନିଶୁଣି ତିଆରି କରାଯାଇପାରେ । କିନ୍ତୁ ସ୍ୱର୍ଗପରି ଅନନ୍ତ ଓ ଅସୀମ ନିକଟକୁ ନିଶୁଣି ବାନ୍ଧିବା ଅଜ୍ଞାନତାର ପରିଚୟ ବ୍ୟତୀତ ଅନ୍ୟ କିଛି ହୋଇ ନ ପାରେ । ସେହିପରି ଜ୍ଞାନର ବିସ୍ତୃତ ଜଗତରେ ପହଞ୍ଚି ତାକୁ ସମ୍ପୂର୍ଣ୍ଣ ଆୟତ୍ତ କରିବାପରି ଏକ ନିର୍ଦ୍ଦିଷ୍ଟ ସରଣୀ ପ୍ରସ୍ତୁତ କରିବା ଆଦୌ ସମ୍ଭବପର ନୁହେଁ । ସ୍ୱର୍ଗପରି ଜ୍ଞାନ ମଧ ଅସୀମ, ଅନନ୍ତ । ଏହା ସହିତ ବଡ଼ଲୋକମାନଙ୍କୁ ସମ୍ପର୍କାନ୍ୱିତ କରିବା ପଛରେ ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ରହିଛି । ଯେଉଁମାନେ ପ୍ରତିପତ୍ତିଶାଳୀ ବ୍ୟକ୍ତି, ସେମାନଙ୍କୁ ସାଧାରଣ ଜନତା କୌଣସି ଉତ୍ତର ଦେଇପାରି ନାହିଁ । ସ୍ୱର୍ଗକୁ ଶିଡ଼ି ବାନ୍ଧିବା ସଦୃଶ ଅସମ୍ଭବ କାର୍ଯ୍ୟ ବଡ଼ଲୋକଙ୍କ ସାମନାରେ କଥାବାର୍ତ୍ତା କରିବା । ବିଶେଷକରି ଅତୀତର ରାଜା ମହାରାଜାମାନେ ସ୍ୱର୍ଗପରି ଥିଲେ ଅନନ୍ତ ଓ ଅସୀମ ଶକ୍ତିର ଅଧିକାରୀ । ସେମାନେ ଏପରି ଅତ୍ୟାଚାରୀ ଥିଲେ ଯେ, ତାଙ୍କ ନାମ ଶୁଣିବା ମାତ୍ରେ ସାଧାରଣ ଅଧିବାସୀ ଭୟରେ ପ୍ରକମ୍ପିତ ହେଉଥିଲେ । ବଡ଼ଲୋକମାନେ ଯେତେ ଦୋଷ କଲେ ମଧ ତାଙ୍କ ଦୋଷ ଦୋଷରେ ଗଣାଯାଏ

ନାହିଁ । ମାତ୍ର ଗରିବ ସମସ୍ତଙ୍କର ଟାପରା । ସମାଜର ସମସ୍ତ ନିର୍ଯାତନା ଓ ବଡ଼ ଲୋକମାନଙ୍କର ଅତ୍ୟାଚାର ସହ୍ୟ କରିବା ପାଇଁ ସତେଯେପରି ସେମାନଙ୍କର ଜନ୍ମ । ବଡ଼ଲୋକଙ୍କର ଦୋଷ ଗୁଣରେ ଗଣାଯାଇଥାଏ । ଏବେ ମଧ୍ୟ ଆମ ସମାଜରୁ ସେହି ଧାରଣା ଦୂର ହୋଇ ନାହିଁ । ରାଜନୀତିକ ନେତା କିମ୍ବା ମନ୍ତ୍ରିମାନଙ୍କର ସମସ୍ତ ଦୋଷ ଏବେବି ସମାଜ ନିର୍ବିକାରରେ କ୍ଷମା କରିଦେଉଛି । କାରଣ ସେମାନେ ବଡ଼ଲୋକ । ଶାସନକଳ ସେମାନଙ୍କ ହାତରେ । ସମସ୍ତ କ୍ଷମତାର ଅଧିକାରୀ ସେମାନେ । ମଦ୍ୟପାନ କିମ୍ବା କୌଣସି ଅନୀତି କାର୍ଯ୍ୟ ସେମାନଙ୍କ ନିକଟରେ ଅଭିଜାତର ପ୍ରତୀକ । ଦରିଦ୍ର ବ୍ୟକ୍ତି ଚାଉଳ ଚୋବାଇଲେ ତାକୁ କୁହାଯାଏ ପେଟବିକଳିଆ । ମାତ୍ର ବଡ଼ଲୋକଙ୍କ ନିକଟରେ ତା'ର ସଂଜ୍ଞା ଅନ୍ୟପ୍ରକାର । ସରକାରୀ ତହବିଲରୁ କୋଟି କୋଟି ଟଙ୍କା ଲୁଟିନେଲେ ବି ସେମାନେ ସମାଜରେ ଆଦର୍ଶ ହୋଇପାରନ୍ତି ଅଥଚ କ୍ଷୁଧାତୁର ବ୍ୟକ୍ତି ବାଡ଼ିରୁ କଖାରୁଟିଏ ଚୋରି କଲେ, ଚୋର ଭାବରେ ସେ ଲାଭକରେ କଠିନ ଶାସ୍ତି । ବହୁପ୍ରାଚୀନ କାଳରୁ ଆମ ସମାଜରେ ପ୍ରଚଳିତ ଏହି ପ୍ରବଚନଟି ଏବେବି ତା'ର ପ୍ରାସଙ୍ଗିକତା ହରାଇ ନାହିଁ ।

ପୁରାଣଠାରୁ ଆରମ୍ଭ କରି ଇତିହାସ ପର୍ଯ୍ୟନ୍ତ–ସବୁ କ୍ଷେତ୍ରରେ ଏହି ପ୍ରବଚନଟିର ଗୁରୁତ୍ୱ ଉପଲବ୍ଧି କରାଯାଇଛି । ରାବଣର ଶତ ଅନାଚାର ସତ୍ତ୍ୱେ, ତା' ବିରୋଧରେ କେହି ସ୍ୱର ଉତ୍ତୋଳନ କରିବାକୁ ସାହସ କରିନଥିଲେ । କଂସର ଅତ୍ୟାଚାର ସୀମା ଅତିକ୍ରମ କରାଯାଇଥିଲେହେଁ, ସାଧାରଣ ନାଗରିକ ନିରବରେ ତାହା ସହ୍ୟ କରୁଥିଲେ । ପ୍ରତିବାଦ କରିବାର ସାମାନ୍ୟତମ ସାହସ କାହା ନିକଟରେ ନ ଥିଲା । ଦୁର୍ଯ୍ୟୋଧନ କ୍ଷେତ୍ରରେ ମଧ୍ୟ ଠିକ୍ ତାହାହିଁ ଘଟିଥିଲା । ଆଉରଙ୍ଗଜେବଙ୍କ ଶାସନ କାଳରେ ପ୍ରଜାମାନେ ବହୁପରିମାଣରେ ଅତ୍ୟାଚାରିତ ହେଉଥିଲେ । ତୋଗଲକ ଜଣେ ଆଡ଼ବାୟା ଶାସକ ଥିଲେହେଁ ତା'ର ଅସମ୍ଭବ ନିଷ୍ପତ୍ତି ବହୁକ୍ଷେତ୍ରରେ ଜନସାଧାରଣଙ୍କୁ ଅସୁବିଧାର ସମ୍ମୁଖୀନ କରୁଥିଲା । ଆଜିବି ଉଚ୍ଚ ପଦବୀରେ ଅଧିଷ୍ଠିତ କର୍ମଚାରୀ ତାଙ୍କ ନିମ୍ନ ଅଧସ୍ତନ କର୍ମଚାରୀଙ୍କ ଉପରେ ଅତ୍ୟାଚାର କରିବାର ଦୃଷ୍ଟାନ୍ତ ବିରଳ ନୁହେଁ । ତଥାପି ସେମାନଙ୍କ ବିରୋଧରେ କେହି ତୁଣ୍ଡ ଖୋଲିବାକୁ ସାହସ କରୁନାହାନ୍ତି । ଶାସକ ନିଜର ଖିଆଲକୁ ଜନସାଧାରଣଙ୍କ ଉପରେ ଲଦିଦେଲେହେଁ, ନିରୀହ ଜନସାଧାରଣ ଭାଗ୍ୟର ଦୋଷ ଦେଇ ତାହାକୁ ନିର୍ବିକାରରେ ଗ୍ରହଣ କରିନେଇଥାନ୍ତି । ନିଜର ଦୁଃଖକୁ କାହା ନିକଟରେ ପ୍ରକାଶ କରିବାର ସାହସ ତା'ର ନାହିଁ । ଏଥିପାଇଁ ଆମର ସାମାଜିକ ଜୀବନ ଧୀରେ ଧୀରେ ପଙ୍ଗୁ ହୋଇଯିବାକୁ ବସିଛି । ଦେଶର ସଂଖ୍ୟାଗରିଷ୍ଠ ଜନସାଧାରଣ ସଂଖ୍ୟାଲଘୁ ଶକ୍ତିଶାଳୀ ଗୋଷ୍ଠୀଙ୍କ ଦ୍ୱାରା ବାରମ୍ବାର ନିପୀଡ଼ିତ ହେଉଛନ୍ତି । କାରଣ ସେମାନେ ବଡ଼ଲୋକ । ତାଙ୍କ ଆଗରେ ଉତ୍ତର ଦେବ କିଏ ?

ବଡ଼ଲୋକଙ୍କୁ ଉତ୍ତର ନାହିଁ–ପ୍ରବଚନଟିର ଏବେବି ସାମାଜିକ ମୂଲ୍ୟ ଅକଳନୀୟ । ଭାରତପରି ଗଣତନ୍ତ୍ର ଦେଶରେ ସାଧାରଣ ଲୋକଙ୍କର ଅବସ୍ଥା ଦୟନୀୟ ହୋଇ ଉଠୁଥିବା

ସମୟରେ ପ୍ରାଚୀନ କାଳରେ ସାମନ୍ତବାଦର ରଥ ଚକତଳେ ସେହି ନିରୀହ ଅଧିବାସୀ କିପରି ପେଷି ହୋଇପଡୁଥିଲେ, ତାହା ଅନୁମାନ କରିବା ଆଦୌ କଷ୍ଟକର ନୁହେଁ । ଶାସକର ମନୋଭାବରେ ଏ ପର୍ଯ୍ୟନ୍ତ କୌଣସି ପରିବର୍ତ୍ତନ ଆସିଛି ବୋଲି ମନେହୁଏ ନାହିଁ । ଯୁଗେ ଯୁଗେ ସମାଜର ଅବହେଳିତ ବ୍ୟକ୍ତିବିଶେଷ ଶକ୍ତିଶାଳୀ ଗୋଷ୍ଠୀଙ୍କ ଦ୍ୱାରା ଅତ୍ୟାଚାରିତ ହେବା ସତେଯେପରି ବିଧିନିର୍ଦ୍ଦିଷ୍ଟ । ସାମନ୍ତବାଦୀ ଖିଆଲୀ ଯେ ପର୍ଯ୍ୟନ୍ତ ସମାଜରୁ ଦୂରୀଭୂତ ହୋଇ ନାହିଁ, ସେପର୍ଯ୍ୟନ୍ତ ଅସଂଖ୍ୟ ଜନସାଧାରଣ ଏହିପରି ନିଷ୍ପେଷିତ ହେଉଥିବେ ଏବଂ 'ସ୍ୱର୍ଗକୁ ନିଶୁଣି ନାହିଁ କି ବଡ଼ଲୋକକୁ ଉତ୍ତର ନାହିଁ' ପ୍ରବଚନଟି ନିତ୍ୟ ନୂତନ ରୂପରେ ବାରମ୍ବାର ବ୍ୟବହୃତ ହେଉଥିବ ।



# ମତେ ଯେତେ ମାଠିବୁ ମାଠ

**(ଉପକ୍ରମ, ଅର୍ଥ ଓ ଉଦ୍ଦେଶ୍ୟ, ଉଦାହରଣ, ଉପସଂହାର)**

ଓଡ଼ିଆରେ ଏକ ପ୍ରବଚନ ରହିଛି 'ମତେ ଯେତେ ମାଠିବୁ ମାଠ, ମୁଁ ସେଇ ଦରପୋଡ଼ା କାଠ' । ଏହାର ଇଂରାଜୀ ହେଉଛି–Black will take no other hue. ସମାଜରେ ଏପରି କେତେକ ବ୍ୟକ୍ତି ରହିଛନ୍ତି, ସତ୍ ଉପଦେଶ ସତ୍ତ୍ୱେ ସେମାନଙ୍କର ଚରିତ୍ରରେ କୌଣସି ପରିବର୍ତ୍ତନ ଆସିନଥାଏ । ସେହିମାନଙ୍କ ଉଦ୍ଦେଶ୍ୟରେ ଉକ୍ତ ପ୍ରବଚନଟି ବ୍ୟବହୃତ ହୋଇଥାଏ । ମଣିଷ ଏକ ସାମାଜିକ ପ୍ରାଣୀ । ସମାଜରେ ବସବାସ କରିବାକୁ ହେଲେ କେତେକ ନିୟମ ମାନି ଚଳିବାକୁ ପଡ଼ିଥାଏ । ମାତ୍ର ଏମିତି କେତେକ ଅଛନ୍ତି ଯେଉଁମାନେ ନିଜ ଇଚ୍ଛା ଉପରେ ହିଁ ଗୁରୁତ୍ୱ ଦେଇ ସମାଜରେ ଚଳପ୍ରଚଳ ହେବାକୁ ଭଲପାଇଥାନ୍ତି । ଏହାଦ୍ୱାରା ଅନ୍ୟମାନଙ୍କର ଯେ କିଛି ଅସୁବିଧା ହେଉଛି, ତାହା ସେମାନେ ବୁଝିପାରି ନ ଥାନ୍ତି କିମ୍ବା ବୁଝିଥିଲେ ମଧ୍ୟ ତା'ଉପରେ ଗୁରୁତ୍ୱ ପ୍ରଦାନ କରି ନ ଥାନ୍ତି । ସମାଜରେ ପ୍ରଗତି କ୍ଷେତ୍ରରେ ଏମାନେ ଗୋଟିଏ ଗୋଟିଏ ପ୍ରତିବନ୍ଧକ ସ୍ୱରୂପ । ସଂସ୍କୃତରେ ସେଥିପାଇଁ କୁହାଯାଇଥାଏ, ''ଅଙ୍ଗାର ଶତ ଧୌତେନ ମଳିନତ୍ୱ ନ ଜାୟତେ ।''

ଶତଚେଷ୍ଟା ସତ୍ତ୍ୱେ ଅଙ୍ଗାର କଦାପି ତା'ର ଚାରିତ୍ରିକ ଗୁଣକୁ ପରିତ୍ୟାଗ କରିନଥାଏ । ଏପରିକି କ୍ଷୀରରେ ଧୋଇଲେ ମଧ୍ୟ ତା'ର କଳାରଙ୍ଗ କଦାପି ଦୂରୀଭୂତ ହୋଇନଥାଏ । ସେହିପରି ଚରିତ୍ରହୀନ ବ୍ୟକ୍ତିଙ୍କୁ ଯେତେ ଉପଦେଶ ଦେଲେ ବି ସେମାନଙ୍କ ଚରିତ୍ରରେ କୌଣସି ପରିବର୍ତ୍ତନ ହୋଇନଥାଏ । ସମାଜରେ ଏହିପରି ବ୍ୟକ୍ତି ଜଣେ ଜଣେ ଅସାମାଜିକ ଜୀବ । ଏମାନେ କେବଳ ନିଜର ସ୍ୱାର୍ଥ ଉପରେ ହିଁ ଗୁରୁତ୍ୱ ଦେଇଥାନ୍ତି । ଅନ୍ୟ ସମସ୍ତଙ୍କ ସ୍ୱାର୍ଥ ପ୍ରତି ଆଖି ବୁଜି ଦେଇଥାନ୍ତି । କୌଣସି ଉପଦେଶ ବା ସତକଥା ଦ୍ୱାରା ଏମାନେ କଦାପି ପ୍ରଭାବିତ ହୋଇନଥାନ୍ତି । ସତେଯେପରି ଅନ୍ୟମାନଙ୍କର ଅମଙ୍ଗଳ ଉଦ୍ଦେଶ୍ୟରେ ଏମାନେ ଜନ୍ମଲାଭ କରିଛନ୍ତି । ଆମ ସମାଜରେ ପ୍ରଚଳିତ 'ଥିଲେ ଥାଉପଛେ ଗୁଣହଜାର, ଚରିତ୍ର ନ ଥିଲେ ସବୁ ଅସାର'–ଉକ୍ତିଟି ଏଇମାନଙ୍କ ପାଇଁ ହିଁ

ପ୍ରଯୁଜ୍ୟ । ସଂସାରରେ ମଣିଷ କେବଳ ନିଜ ପାଇଁ ଜନ୍ମ ହୋଇ ନ ଥାଏ, ତା'ର ମଧ୍ୟ ସମାଜ ବା ରାଷ୍ଟ୍ର ପାଇଁ କିଛି କର୍ତ୍ତବ୍ୟବୋଧ ରହିଛି । ମାତ୍ର ଦରପୋଡ଼ା କାଠରେ ଶତ ଚେଷ୍ଟା ସତ୍ତ୍ୱେ ଯେପରି ରଙ୍ଗରେ କୌଣସି ପରିବର୍ତ୍ତନ ଆସିନଥାଏ, ସେହିପରି ଯେତେ ସଦୁପଦେଶ ଦେଲେ ମଧ୍ୟ ଏମାନେ ନିଜକୁ କେବେ ପରିବର୍ତ୍ତନ କରିନଥାନ୍ତି । ନିଜର ସୁଖଦୁଃଖ ବ୍ୟତୀତ ଅନ୍ୟର ସୁଖଦୁଃଖରେ ଏମାନେ ସମ୍ପୂର୍ଣ୍ଣ ନିର୍ବିକାର । ବାସ୍ତବରେ ଏମାନେ ଗୋଟିଏ ଗୋଟିଏ ପୋଡ଼ି ଯାଉଥିବା ଅଙ୍ଗାର କାଠ । ଅଧିକାଂଶ କ୍ଷେତ୍ରରେ ପୋଡ଼ାକାଠ ଯେପରି କୌଣସି କାର୍ଯ୍ୟରେ ଲାଗିନଥାଏ, ଏହି ଚରିତ୍ରହୀନ ବ୍ୟକ୍ତି ସମାଜର କୌଣସି ଭଲ କାର୍ଯ୍ୟରେ ନିଜକୁ ଜଡ଼ିତ କରିପାରିନଥାନ୍ତି । ବାରମ୍ବାର ଅପମାନିତ ଓ ଠକିବା ସତ୍ତ୍ୱେ ଏମାନେ ଯାହା, ତାହାହିଁ ହୋଇ ରହିଥାନ୍ତି । ସମାଜର ଏହିପ୍ରକାର ବ୍ୟକ୍ତିଙ୍କ ଉଦ୍ଦେଶ୍ୟରେ 'ମତେ ଯେତେ ମାଠିବୁ ମାଠ, ମୁଁ ସେଇ ଦରପୋଡ଼ା କାଠ' ପ୍ରବଚନଟିର ପ୍ରୟୋଗ ହୋଇଥାଏ ।

ଅତୀତର ପୁରାଣ, ଇତିହାସ ଏବଂ ସାମ୍ପ୍ରତିକ ସମାଜରୁ ଏହି ସମ୍ବନ୍ଧୀୟ ବହୁ ଉଦାହରଣ ଉଦ୍ଧାର କରାଯାଇପାରେ । ରାବଣ ସୀତାଙ୍କୁ ହରଣ କରିନେବା ପରେ ଭାଇ ବିଭୀଷଣ, ପତ୍ନୀ ମନ୍ଦୋଦରୀ ତଥା ତା'ର ଅନେକ ସୁହୃଦ ରାମଚନ୍ଦ୍ରଙ୍କ ନିକଟରେ ସୀତାଙ୍କୁ ଫେରାଇଦେବା ନିମିତ୍ତ ଅନୁରୋଧ, ଉପଦେଶ ପ୍ରଦାନ କରିଥିଲେ । ମାତ୍ର ଚରିତ୍ରହୀନ ରାବଣ କାହା କଥା ପ୍ରତି କର୍ଣ୍ଣପାତ କରି ନ ଥିଲା । ପରିଣାମରେ ନିଜେ ମୃତ୍ୟୁବରଣ କରିବା ସଙ୍ଗେ ସଙ୍ଗେ ସମଗ୍ର ଲଙ୍କା ରାଜ୍ୟ ଧ୍ୱଂସପ୍ରାପ୍ତ ହୋଇଥିଲା । ଜଣକର ଅବିବେକୀ କାର୍ଯ୍ୟ କିପରି ଗୋଟିଏ ସୁନାର ରାଜ୍ୟକୁ ଧ୍ୱଂସ କରିଦେଇପାରେ, ତା'ର ଜ୍ୱଳନ୍ତ ଦୃଷ୍ଟାନ୍ତ ରାବଣ । ରାବଣ ପରି ବହୁ ଦରପୋଡ଼ା କାଠ ଆମ ସମାଜରେ ଦେଖା ଦେଇଥାନ୍ତି ଓ ତାଙ୍କ ପାଇଁ ଦେଶ ଧ୍ୱଂସ ପଥରେ ଆଗେଇ ଯାଇଥାଏ । ମହାଭାରତରେ ଦୁର୍ଯ୍ୟୋଧନଙ୍କର ଅଯଥା ଆତ୍ମବଡ଼ିମା ଲକ୍ଷ ଲକ୍ଷ ଲୋକଙ୍କର ପ୍ରାଣହାନିର କାରଣ ହୋଇଥିଲା । ଗୁରୁଜନମାନଙ୍କର ସତ୍ ଉପଦେଶ ପ୍ରତି ସେ ସାମାନ୍ୟ ମାତ୍ର କର୍ଣ୍ଣପାତ କରି ନ ଥିଲା । ତା'ର ଅଯଥା ଜିଦ୍ ମହାଭାରତ ଯୁଦ୍ଧ ନିମିତ୍ତ ବାଟ ଫିଟାଇ ଦେଇଥିଲା । ଜୟଚନ୍ଦ୍ରଙ୍କ ପରି କୁଳାଙ୍ଗାର ପାଇଁ ଅତୀତରେ ଦିନେ ଭାରତର ହିନ୍ଦୁଶାସନର ବିଲୋପ ହୋଇଥିଲା ଓ ଭାରତ ପରାଧୀନତାର ଶୃଙ୍ଖଳରେ ବନ୍ଧା ହୋଇଥିଲା । ଆଉରଙ୍ଗଜେବଙ୍କର ଜିଦ୍‌ଖୋର ମନୋବୃତ୍ତି ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ବିଭେଦର ପ୍ରାଚୀର ସୃଷ୍ଟି କରିଥିଲା । ଜର୍ମାନର ଶାସକ ହିଟ୍‌ଲରଙ୍କର ଏକଛତ୍ରବାଦ ମନୋବୃତ୍ତି ବିଶ୍ୱଯୁଦ୍ଧ ପାଇଁ ପଥ ପରିଷ୍କାର କରିଥିଲା । ସମ୍ପ୍ରତି ବିଶ୍ୱର କେତେକ ରାଷ୍ଟ୍ରର ବଡ଼ଭାଇପଣିଆ ନୀତି ବିଶ୍ୱ ଶାନ୍ତି ପଥରେ ପ୍ରତିବନ୍ଧକ ହୋଇ ଠିଆ ରହିଛି । ଏମାନେ କେବେ ଅନ୍ୟର ଉପଦେଶ ଗ୍ରହଣ କରିବାକୁ ଇଚ୍ଛୁକ ନୁହନ୍ତି । ନିଜର ବ୍ୟକ୍ତିଗତ ସ୍ୱାର୍ଥ ହାସଲ ପାଇଁ ସମଗ୍ର ବିଶ୍ୱସ୍ୱାର୍ଥକୁ ବଳିଦେବା ପାଇଁ ଏମାନେ ଆଦୌ ପରାଙ୍‌ମୁଖ ନୁହନ୍ତି । ଏବେ ମଧ୍ୟ କେତେକ ରାଜନୀତିକ ନେତା ନିଜର ସ୍ୱାର୍ଥ ପ୍ରତି ଅତିମାତ୍ରାରେ ସଚେତନ ରହି ଜନସ୍ୱାର୍ଥ ପ୍ରତି ଉଦାସୀନ ହୋଇପଡୁଛନ୍ତି ।

ଉଚ୍ଚାରଣ ଏବଂ ଆଚରଣ ମଧ୍ୟରେ ଦେଖାଯାଉଛି ବହୁ ପାର୍ଥକ୍ୟ । ଏହିପ୍ରକାର ବ୍ୟକ୍ତିଙ୍କ କାର୍ଯ୍ୟକଳାପକୁ ଲକ୍ଷ୍ୟ କରି କୁହାଯାଇଥାଏ 'ମତେ ଯେତେ ମାଠିବୁ ମାଠ, ମୁଁ ସେଇ ଦରପୋଡ଼ା କାଠ ।'

ଦେଶ ଓ ସମାଜର ଉନ୍ନତି ସାଧିତ ହୁଏ ବ୍ୟକ୍ତିର ଶୃଙ୍ଖଳିତ କାର୍ଯ୍ୟକଳାପ ଦ୍ୱାରା । ବ୍ୟକ୍ତି ଯଦି ଅତିମାତ୍ରାରେ ସ୍ୱାର୍ଥପରାୟଣ ହୋଇଉଠେ, ଚରିତ୍ରହୀନ ହୁଏ, ତେବେ ସମାଜର ପ୍ରଗତିର ଦ୍ୱାର ରୁଦ୍ଧ ହୋଇ ଉଠିଥାଏ । ଚରିତ୍ରହୀନ ବ୍ୟକ୍ତିଙ୍କ ଦ୍ୱାରା ସମାଜର କୌଣସି ମଙ୍ଗଳ ସାଧିତ ହୋଇପାରିନଥାଏ । ଏମାନେ ସମ୍ପୂର୍ଣ୍ଣ ଭାବରେ ସ୍ୱାର୍ଥସର୍ବସ୍ୱ ହୋଇଥିବାରୁ ଅନ୍ୟ ସ୍ୱାର୍ଥ ପ୍ରତି ଉଦାସୀନ ରହିବାକୁ ଶ୍ରେୟସ୍କର ମଣିଥାନ୍ତି । ତାଙ୍କର କାର୍ଯ୍ୟକଳାପ ସମାଜର ବହୁବିଧ ଅପକାର ସାଧନ କଲେହେଁ, ସେଥିପ୍ରତି ଆଦୌ ସେମାନେ ସଚେତନ ନ ଥାନ୍ତି । ଏପରିକି ଗୁରୁଜନମାନଙ୍କର ଉପଦେଶ ପ୍ରତି ସେମାନଙ୍କର ତିଳେମାତ୍ର ସମ୍ମାନବୋଧ ନ ଥାଏ । ଏହି ପ୍ରକାର ବ୍ୟକ୍ତି ସମାଜର ଗୋଟିଏ ଗୋଟିଏ କଳଙ୍କ ବା ଅଙ୍ଗାରକାଠ । ସେମାନଙ୍କୁ ଯେତେ ମାଜିଲେ କିମ୍ବା ସଫା କଲେ ମଧ୍ୟ ନିଜର ସେହି କୁଗୁଣକୁ କଦାପି ସେମାନେ ପରିତ୍ୟାଗ କରିନଥାନ୍ତି । ତେଣୁ ସେମାନଙ୍କ ଉଦ୍ଦେଶ୍ୟରେ କେଉଁ ଆବହମାନ ଯୁଗରୁ ଲୋକୋକ୍ତି ପ୍ରକାଶ ପାଇଛି–"ମତେ ଯେତେ ମାଠିବୁ ମାଠ, ମୁଁ ସେହି ଦରପୋଡ଼ା କାଠ ।"



# ବନ ମହୋତ୍ସବ

**(ଉପକ୍ରମ, ଭାରତୀୟ ସଭ୍ୟତାରେ ଅରଣ୍ୟ, ଅରଣ୍ୟର ଉପଯୋଗିତା, ଅରଣ୍ୟ କ୍ଷୟର ଅପକାରିତା, ବନମହୋତ୍ସବର ଆବଶ୍ୟକତା, ଉପସଂହାର)**

ଆଦିମାନବର ପ୍ରଥମ ବାସସ୍ଥାନ ଥିଲା ଘନ ଅରଣ୍ୟ । ମାନବ ସଭ୍ୟତା ତଥା ସଂସ୍କୃତିର ବିକାଶରେ ଏହାର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ସଭ୍ୟତାର ବିକାଶ ପୂର୍ବରୁ ମଣିଷର ସମସ୍ତ ଆବଶ୍ୟକତା ଅରଣ୍ୟ ହିଁ ପରିପୂରଣ କରୁଥିଲା । ତା'ପାଇଁ ଖାଦ୍ୟ ଏବଂ ଜଳ ଯୋଗାଇ ଦେଉଥିଲା । ଅରଣ୍ୟ ଶୋଭାର ପଟାନ୍ତର ନାହିଁ । ଏହା ପ୍ରାଣକୁ ପୁଲକିତ କରେ । ତା'ର ସବୁଜ ଶ୍ୟାମଳିମା ରୂପ ମୁଗ୍ଧ କରେ ଅନ୍ତରକୁ । ଜୀବନଧାରଣ ପାଇଁ ଏହା ଯୋଗାଇ ଦେଇଥାଏ ବିଭିନ୍ନ ଉପାଦାନ । ଧୀରେ ଧୀରେ ସଭ୍ୟତାର ବିକାଶ ସଙ୍ଗେ ସଙ୍ଗେ ଅରଣ୍ୟ ଧ୍ୱଂସପ୍ରାପ୍ତ ହେବାକୁ ଲାଗିଲା । ଜଙ୍ଗଲ କଟାଯାଇ ଗ୍ରାମ ଏବଂ ସହର ଗଢ଼ିଉଠିଲା । ଶିଳ୍ପ ସଭ୍ୟତାର ବିକାଶ ଯୋଗୁଁ ବହୁପରିମାଣରେ ଜଙ୍ଗଲ ନଷ୍ଟ ହେଲା । ଜଙ୍ଗଲ କ୍ଷୟଜନିତ କାରଣରୁ ଏହାର କୁପ୍ରଭାବ ମାନବସମାଜ ଉପରେ ପଡ଼ିଲା । ପ୍ରାକୃତିକ ବିପର୍ଯ୍ୟୟ ବୃଦ୍ଧି ପାଇବାକୁ ଲାଗିଲା । ଏକ ସଙ୍କଟଜନକ ପରିସ୍ଥିତି ମଧ୍ୟଦେଇ ଗତି କରିବା ସମୟରେ ମାନବର ପୁନଃ ଚୈତନ୍ୟୋଦୟ ହେଲା । ବଣର ସଂରକ୍ଷଣ ପାଇଁ ଆରମ୍ଭ ହେଲା ବନମହୋତ୍ସବ ।

ଭାରତୀୟ ସଭ୍ୟତା ଓ ସଂସ୍କୃତିକୁ ଅରଣ୍ୟର ଅବଦାନର ଅତୁଳନୀୟ । ଏହାର ଶାନ୍ତିମୟ ପରିବେଶ ଏ ଦେଶର ମୁନିଋଷିଙ୍କୁ ଆକୃଷ୍ଟ କରିଥିଲା । ତପସ୍ୟା ଓ ଧ୍ୟାନର ଏକମାତ୍ର ଶାନ୍ତିସ୍ଥଳ ଥିଲା ଅରଣ୍ୟ । ପ୍ରାଚୀନ ଋଷି ଏହାରି ମଧ୍ୟରେ ସାଧନା କରୁଥିଲେ ବିଶ୍ୱର ହିତ ପାଇଁ । ଏହି ଅରଣ୍ୟ ମଣିଷକୁ ଯୋଗାଇ ଦେଇଥିଲା ଗୃହ ନିମିତ୍ତ ଆବଶ୍ୟକୀୟ ଉପକରଣ, ଖାଦ୍ୟଦ୍ରବ୍ୟାଦି । ମଣିଷ ଜୀବନକୁ ସବୁଦିଗରୁ କରୁଥିଲା ସୁସ୍ଥ ସୁନ୍ଦର । ଅରଣ୍ୟଜାତ ପଦାର୍ଥ ମଣିଷ ଜୀବନର ଦୈନନ୍ଦିନ ବ୍ୟବହାରରେ ଲାଗୁଥିଲା । ଯଥାସମୟରେ ବୃଷ୍ଟିପାତ ଯୋଗୁଁ ପ୍ରଚୁର ଫସଲ ଉତ୍ପାଦିତ ହେଉଥିଲା । ଆଦିମ ସନ୍ତାନର ବାସସ୍ଥଳୀ ଥିଲା ଅରଣ୍ୟ । ଏବେ ମଧ୍ୟ ବହୁ ଆଦିବାସୀ ଅରଣ୍ୟ ଉପରେ ନିର୍ଭର କରି ନିଜର ଜୀବିକା ନିର୍ବାହ କରୁଛନ୍ତି । ଭାରତୀୟ ସଭ୍ୟତାରେ ଏହାକୁ ଦେବୀର ଆସନ ପ୍ରଦାନ କରାଯାଇଥିଲା । ମଣିଷ ଜୀବନ ସହିତ ଅରଣ୍ୟର ନିଗୂଢ଼ ସମ୍ପର୍କ ଯୋଗୁଁ ଭାରତୀୟ ସଭ୍ୟତାରେ ପ୍ରକୃତି ଉପାସନା ପଦ୍ଧତି ପ୍ରଚଳିତ ହୋଇଥିଲା ।

ଅରଣ୍ୟର ଉପଯୋଗିତା ଅତୁଳନୀୟ । ଗୃହ ଉପକରଣ ନିମିତ୍ତ ଏହା ମଣିଷକୁ ଆବଶ୍ୟକୀୟ ଉପକରଣ ଯୋଗାଇ ଦେଇଥାଏ । କାଠ, ବାଉଁଶ ମଣିଷର ଗୃହନିର୍ମାଣ ତଥା ଆସବାବପତ୍ର ନିର୍ମାଣରେ ଆବଶ୍ୟକ ହୋଇଥାଏ । ସବାଇଘାସ, ବାଉଁଶରୁ କାଗଜ ପ୍ରସ୍ତୁତ ହୋଇଥାଏ । ହାତୀଦାନ୍ତ, ଶିଙ୍ଗ ପ୍ରଭୃତିରୁ ବହୁ ମୂଲ୍ୟବାନ ପଦାର୍ଥ ତିଆରି ହୋଇ ବିକ୍ରୟ କରାଯାଏ । କେନ୍ଦୁପତ୍ର, ଶାଳପତ୍ର, ଝୁଣା, ଲାଖ, ମହୁ ଆଦି ବହୁ ପଦାର୍ଥ ଅରଣ୍ୟରୁ ସଂଗ୍ରହ କରାଯାଇଥାଏ । ଅତୀତରେ ଏହି ଅରଣ୍ୟରୁ ବହୁ ଚେରମୂଳିକା ଓ ଔଷଧ ସଂଗ୍ରହ କରାଯାଇ ରୋଗ ପାଇଁ ଚିକିତ୍ସା କରାଯାଉଥିଲା । ଆୟୁର୍ବେଦୀୟ ଚିକିତ୍ସାରେ ଚେରମୂଳିର ବ୍ୟବହାର କରାଯାଇଥାଏ ଓ ଏହା ମୁଖ୍ୟତଃ ଅରଣ୍ୟମାନଙ୍କରୁ ସଂଗ୍ରହ କରାହୋଇଥାଏ । ବହୁ ପ୍ରାଣୀଙ୍କର ନଖ, ମାଂସ, ଚର୍ବି, ଚମଡ଼ାଦି ଔଷଧ ନିର୍ମାଣ ପାଇଁ ବ୍ୟବହୃତ ହୋଇଥାଏ । ଅରଣ୍ୟରେ ଥିବା ବହୁ ବୃକ୍ଷଲତାର ଔଷଧୀୟ ଗୁଣର ତୁଳନା ନାହିଁ । ମୃତ୍ତିକା ସଂରକ୍ଷଣ କ୍ଷେତ୍ରରେ ଏହାର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ । ବର୍ଷା, ବନ୍ୟା ସମୟରେ ମୃତ୍ତିକା କ୍ଷୟକୁ ଏହା ରୋକିଥାଏ । ପୁଣି ଠିକ୍ ସମୟରେ ବର୍ଷା କରାଇ ଫସଲ ଉତ୍ପାଦନରେ ସାହାଯ୍ୟ କରିଥାଏ । ବୃକ୍ଷ ବିଷାକ୍ତ ଅଙ୍ଗାରକାମ୍ଳ ଗ୍ରହଣ କରି ଅମ୍ଳଜାନ ତ୍ୟାଗ କରିଥାଏ । ମଣିଷର ଜୀବନ ଧାରଣ ନିମିତ୍ତ ଅମ୍ଳଜାନର ଜରୁରୀ ଆବଶ୍ୟକତା ରହିଛି । ପରିବେଶକୁ ପ୍ରଦୂଷଣ ଦାଉରୁ ଅରଣ୍ୟ ରକ୍ଷା କରିଥାଏ । ବାତ୍ୟା ଏବଂ ବନ୍ୟାପରି ପ୍ରାକୃତିକ ବିପର୍ଯ୍ୟୟରୁ ମଣିଷକୁ ଏହା ରକ୍ଷା କରିଥାଏ । ଅରଣ୍ୟଜାତ ବହୁ ପଦାର୍ଥ ବିକ୍ରୟରୁ ବୈଦେଶିକ ମୁଦ୍ରା ସଂଗୃହୀତ ହୋଇଥାଏ । ଏହାଦ୍ୱାରା ଦେଶର ଆର୍ଥିକ ବିକାଶ ସାଧିତ ହୋଇଥାଏ । କଳକାରଖାନା ପାଇଁ ଏହା କଞ୍ଚାମାଲ୍ ଯୋଗାଇ ଦେଇଥାଏ । ବିଭିନ୍ନ ଦୃଷ୍ଟିକୋଣରୁ ବିଚାର କଲେ ମାନବସମାଜ ପାଇଁ ଅରଣ୍ୟର ଉପଯୋଗିତା ଅତୁଳନୀୟ ।

ଅରଣ୍ୟ କ୍ଷୟଯୋଗୁଁ ମଣିଷ ସମାଜରେ ଯେଉଁସବୁ କ୍ଷତି ହେଉଛି, ତାହାକୁ ଭରଣା କରିବା କଷ୍ଟସାଧ ବ୍ୟାପାର । ଉତ୍ତରଆଫ୍ରିକା, ପାରସ୍ୟ, ମିଶର ଆଦି ବହୁ ଦେଶ ଅରଣ୍ୟ କ୍ଷୟଯୋଗୁଁ ଆଜି ଶୁଷ୍କ ମରୁଭୂମିରେ ପରିଣତ ହୋଇଛି । ଭାରତରେ ଜଙ୍ଗଲ କ୍ଷୟ ସେହିପରି ଏକ ବିପଦକୁ ଡାକି ଆଣିବାର ସମ୍ଭାବନା ରହିଛି । ୧୯୫୨ ମସିହାରେ ଭାରତରେ ଯେଉଁ ଜଙ୍ଗଲ ନୀତି ପ୍ରଣୟନ କରାଯାଇଥିଲା ସେଥିରେ କୁହାଯାଇଥିଲା ଦେଶର ଏକ ତୃତୀୟାଂଶ ଅରଣ୍ୟାଚ୍ଛାଦିତ ରହିବ ବୋଲି । ମାତ୍ର ତା'ର କାର୍ଯ୍ୟକାରିତା କ୍ଷେତ୍ରରେ ସେପରି କୌଣସି ସୁଫଳ ମିଳି ନାହିଁ । ପୁରୁଣା ଜଙ୍ଗଲ କ୍ଷୟ ହେଉଛି । ଅଥଚ ନୂଆ ଜଙ୍ଗଲ ସୃଷ୍ଟି ହୋଇପାରୁ ନାହିଁ । ଜଙ୍ଗଲ କ୍ଷୟ ଯୋଗୁଁ ପ୍ରାକୃତିକ ବିପର୍ଯ୍ୟୟ ସୃଷ୍ଟି ହେଉଛି । ଅନିୟମିତ ବର୍ଷାଯୋଗୁଁ ଫସଲର ପ୍ରଭୂତ କ୍ଷତି ହେଉଛି । ବାୟୁମଣ୍ଡଳରେ ଅଧିକରୁ ଅଧିକ ଅଙ୍ଗାରକାମ୍ଳ ବାଷ୍ପ ବୃଦ୍ଧି ପାଇ ମଣିଷ ସମାଜ ପ୍ରତି ବିପଦ ସୃଷ୍ଟି କରୁଛି । ସାଧାରଣତଃ ବୃକ୍ଷଲତା ଏହି ବିଷାକ୍ତ ବାଷ୍ପକୁ ଶୋଷି ନେଇଥାନ୍ତି । ମାତ୍ର ଜଙ୍ଗଲ କ୍ଷୟ ଯୋଗୁଁ ତାହା ସମ୍ଭବ ହୋଇପାରୁ ନାହିଁ । ଶିଳ୍ପ ତଥା ଗାଡ଼ି ମଟରରୁ ନିର୍ଗତ ହେଉଥିବା ଦୂଷିତ ବାଷ୍ପ ପରିବେଶ ଉପରେ ପ୍ରତିକୂଳ ପ୍ରଭାବ ପକାଉଛି । ଏହାଦ୍ୱାରା ପରିବେଶ ଦୂଷିତ ହୋଇପଡୁଥିବାରୁ, ପରିବେଶବିତ୍‌ମାନେ ଗଭୀର ଚିନ୍ତା ପ୍ରକଟ କରିସାରିଲେଣି । ଯଦି ଏହିପରି ଅବସ୍ଥା ଲାଗିରହେ, ତେବେ ପୃଥିବୀରେ ଜୀବନଧାରଣ ସମ୍ଭବପର ହେବ ନାହିଁ । ବୈଜ୍ଞାନିକମାନେ ହିମାଳୟରେ ବରଫ ମଧ୍ୟରେ ଗର୍ତ୍ତ ସୃଷ୍ଟି ହେବାର ଲକ୍ଷ୍ୟ କରିସାରିଲେଣି । ତେଣୁ ପୃଥିବୀ ଉପରକୁ ଯେ ଏକ ଭୟଙ୍କର ବିପଦ ଓହ୍ଲାଇ ଆସୁଛି, ତା'ର ସ୍ପଷ୍ଟ ସୂଚନା ମିଳିସାରିଲାଣି । ଏହି ସମସ୍ତ କୁପ୍ରଭାବର ଏକମାତ୍ର କାରଣ ଜଙ୍ଗଲ କ୍ଷୟ । ପ୍ରାଚୀନ କାଳରେ ବୃକ୍ଷ ପୂଜା ମାଧ୍ୟମରେ ଜଙ୍ଗଲ ସୃଷ୍ଟିର ଉଦ୍ୟମ କରାଯାଉଥିଲା । ମାତ୍ର ସମ୍ପ୍ରତି ଯେଉଁମାନଙ୍କ ଉପରେ ଜଙ୍ଗଲ ରକ୍ଷାର ଦାୟିତ୍ୱ ସେହିମାନେ ହିଁ ଜଙ୍ଗଲ କ୍ଷୟ ପାଇଁ ବହୁପରିମାଣରେ ଦାୟୀ । ସହରର ବିକାଶ ତଥା ଶିଳ୍ପର ବିକାଶ ଯୋଗୁଁ ଅଧିକ ପରିମାଣରେ ସ୍ଥାନର ଆବ୍‌ଶ୍ୟକତା ପଡୁଛି । ଜଙ୍ଗଲ କଟାଯାଇ ସ୍ଥାନାଭାବ ପୂରଣ କରାଯାଉଥିବାରୁ ଜଙ୍ଗଲ କ୍ଷୟ ଘଟୁଛି । ପୁନରାୟ ଜନସଂଖ୍ୟା ବୃଦ୍ଧି ଅରଣ୍ୟ ଧ୍ୱଂସର ଅନ୍ୟ ଏକ କାରଣ । ବାସଗୃହ ନିମିତ୍ତ ମଣିଷ ଜଙ୍ଗଲ କାଟୁଛି । ଏହାଦ୍ୱାରା କେଉଁପ୍ରକାର ବିପଦକୁ ସେ ବରଣ କରି ଆଣୁଛି, ତାହା ଅନୁଭବ କରିପାରୁ ନାହିଁ । ଶ୍ୟାମଳ ଅରଣ୍ୟ ଆଜି ବିସ୍ତୃତ ମରୁଭୂମିରେ ପରିଣତ ହେବାକୁ ଯାଉଛି । ଏହାକୁ ଲକ୍ଷ୍ୟକରି ମାନବ ସମାଜ ଏବେଠାରୁ ସତର୍କ ହେବା ଆବଶ୍ୟକ ।

ବୈଜ୍ଞାନିକମାନଙ୍କର ଚେତାବନୀ ଓ ପରିବେଶବିତ୍‌ମାନଙ୍କର ସତର୍କ ବାଣୀ ପରେ ମଣିଷ ସମାଜ ନିଜର ପରିବେଶ ପ୍ରତି ସାମାନ୍ୟ ପରିମାଣରେ ସଚେତନ ହୋଇଛି । ଆଜି ଯେଉଁ ସରକାରଙ୍କ ତରଫରୁ 'ବନମହୋତ୍ସବ' ପାଳିତ ହେଉଛି, ଏହା ତା'ର ଏକ ଉଦାହରଣ । ବନମହୋତ୍ସବ କାର୍ଯ୍ୟକ୍ରମ ପ୍ରଥମେ ୧୯୫୦ ମସିହାରେ ଆରମ୍ଭ ହୋଇଥିଲେହେଁ, ୧୯୮୩

ମସିହା ଜୁଲାଇ ମାସରୁ ଏହା ବିଧିବଦ୍ଧ ଭାବରେ ପାଳିତ ହୋଇଆସୁଛି । ଏହି ଉତ୍ସବ ଉପଲକ୍ଷେ ବିଭିନ୍ନ ସ୍ଥାନରେ ବୃକ୍ଷରୋପଣ କାର୍ଯ୍ୟକ୍ରମ ହେଉଛି । ଲୋକମାନଙ୍କ ମଧ୍ୟରେ ସଚେତନତା ବୃଦ୍ଧି ନିମିତ୍ତ କେତେକ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ନୂତନ ଜଙ୍ଗଲ ସୃଷ୍ଟି ପାଇଁ ଉଦ୍ୟମ ଜାରି ଚାଲିଛି । ସରକାରଙ୍କ ନୂତନ ସାମାଜିକ ଅରଣ୍ୟ ସୃଷ୍ଟି ପରିକଳ୍ପନା ସ୍ୱାଗତଯୋଗ୍ୟ ହେଉଥିଲେହେଁ, ଏହାର କାର୍ଯ୍ୟକାରିତା ସେପରି ଆଶାଜନକ ଜଣାଯାଉ ନାହିଁ । ତେବେ ମଣିଷକୁ ଆସନ୍ନ ବିପଦରୁ ରକ୍ଷା କରିବା ପାଇଁ 'ବନମହୋତ୍ସବ' ଯେ ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ ଏଥିରେ ସନ୍ଦେହ ନାହିଁ ।

ଆଜି ମଣିଷ ବିପଦର ଦ୍ୱାରଦେଶରେ ଦଣ୍ଡାୟମାନ । ଏହାର ପ୍ରଥମ କାରଣ ଯେ ଜଙ୍ଗଲ କ୍ଷୟ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ବସ୍ତୁବାଦୀ ମଣିଷ ନିଜର ସ୍ୱାର୍ଥ ପାଇଁ ଯେପରି ଜଙ୍ଗଲ କ୍ଷୟ କରି ଚାଲିଛି, ତା'ର ପରିଣାମ ସେ ଭୋଗ କରିବ । ସେଥିପାଇଁ ଏହି ଆସନ୍ନ ବିପଦରୁ ମାନବ ସମାଜକୁ ରକ୍ଷା କରିବାକୁ ହେଲେ, ନୂତନ ଜଙ୍ଗଲ ସୃଷ୍ଟି କରିବାକୁ ପଡ଼ିବ । ଏଥିପ୍ରତି ସବୁ ସ୍ତରରେ ଉଦ୍ୟମ ଜାରି ରହିବା ଆବଶ୍ୟକ । ଜଙ୍ଗଲ ବିଭାଗ ଏ କ୍ଷେତ୍ରରେ ଅଧିକ ସତର୍କତାମୂଳକ ପଦକ୍ଷେପ ଗ୍ରହଣ କଲେ ବହୁପରିମାଣରେ ଜଙ୍ଗଲ କ୍ଷୟକୁ ରୋକାଯାଇପାରିବ । ଏତଦ୍‌ବ୍ୟତୀତ ସରକାର ଓ ଜନସାଧାରଣ ଏ ଦିଗରେ ଅଧିକ ସକ୍ରିୟ ହେବା ଉଚିତ । ସମସ୍ତ ସହଯୋଗମୂଳକ କାର୍ଯ୍ୟକ୍ରମ ଦ୍ୱାରା ଅରଣ୍ୟ ସମ୍ପଦକୁ ରକ୍ଷା କରାଯାଇପାରିବ ଓ ମାନବ ସମାଜକୁ ମଧ୍ୟ ଧ୍ୱଂସ ମୁଖରୁ ଉଦ୍ଧାର କରାଯାଇପାରିବ ।

●

## ବନ୍ୟଜନ୍ତୁ ସଂରକ୍ଷଣ

**(ଉପକ୍ରମ, ବନ୍ୟଜନ୍ତୁ ସଂରକ୍ଷଣ କ'ଣ ?, ସଂରକ୍ଷଣର ଆବଶ୍ୟକତା–ସାଂସ୍କୃତିକ ଦିଗ, ବୈଜ୍ଞାନିକ ଦିଗ, ଆର୍ଥନୀତିକ ଦିଗ, ଉପସଂହାର)**

ବନ୍ୟଜନ୍ତୁ ସଂରକ୍ଷଣ ଲାଗି ଆଜି ବିଶ୍ୱର ବିଭିନ୍ନ ସ୍ତରରେ ଉଦ୍ୟମ ଜାରି ହୋଇଛି । ମାନବସମାଜର ସୁଷ୍ଠୁ ବିକାଶ ଲାଗି ଏହାର ଯେ ଅପରିହାର୍ଯ୍ୟ ଆବଶ୍ୟକତା ରହିଛି, ତାହା ଊଣାଅଧିକେ ସମସ୍ତେ ଅନୁଭବ କଲେଣି । ପ୍ରଶ୍ନ ଉଠେ—ଏହି ବନ୍ୟଜନ୍ତୁ ମଣିଷ ସମାଜର ଅନେକ ଅପକାର ସାଧନ କରିଥାନ୍ତି । ସେମାନଙ୍କୁ ନିରାପତ୍ତା ଦେବାର ଆବଶ୍ୟକତା କ'ଣ ରହିଛି ? ଧନ ଏବଂ ଜନ ନଷ୍ଟ କରିବାରେ ଏମାନଙ୍କର ପ୍ରମୁଖ ଭୂମିକା ରହିଛି । ତେଣୁ ଏମାନଙ୍କୁ ନିରାପତ୍ତା ଯୋଗାଇଦେଇ ମଣିଷର ଧନ ଏବଂ ଜନକୁ ବିପନ୍ନ କରିବାର ଉଦ୍ଦେଶ୍ୟ କ'ଣ ? ପ୍ରକୃତରେ ବନ୍ୟଜନ୍ତୁଙ୍କ ଦ୍ୱାରା ଆମର ଉପକାର ତୁଳନାରେ ଅପକାର ଖୁବ୍ କମ୍ । ଏମାନେ ଆମ ସମାଜର ବିବିଧ ଉପକାରରେ ଆସିଥାନ୍ତି । ଏହିମାନଙ୍କ ଦ୍ୱାରା ପୃଥିବୀରେ ଭାରସାମ୍ୟ ବା ସନ୍ତୁଳନ ରଖିବା ସମ୍ଭବ ହୋଇଥାଏ । ଜୀବଜଗତର ଉପକାର ସାଧନ ହୋଇଥାଏ ।

ବନ୍ୟଜନ୍ତୁ ସଂରକ୍ଷଣର ଅର୍ଥ ହେଉଛି—ଅରଣ୍ୟ ବା ଜଙ୍ଗଲରେ ବସବାସ କରୁଥିବା ପ୍ରାଣୀମାନଙ୍କୁ ନିରାପଦରେ ରଖିବା । ଶିକାର ଯୋଗୁଁ ପୃଥିବୀରେ ବହୁ ଅମୂଲ୍ୟ ପ୍ରାଣୀ ଲୋପ ପାଇଯାଇଛନ୍ତି । ବନ୍ୟପ୍ରାଣୀ ଏବଂ ପକ୍ଷୀ ଜାତୀୟ ସମ୍ପଦ ରୂପେ ଗଣ୍ୟ ହୋଇଥାନ୍ତି । ବନ୍ୟପ୍ରାଣୀ ସଂରକ୍ଷଣର ଉଦ୍ଦେଶ୍ୟ ହେଉଛି, ହିଂସ୍ର ପ୍ରାଣୀମାନଙ୍କୁ ଉପଯୁକ୍ତ ତତ୍ତ୍ୱାବଧାନରେ ରଖିବା । ସେମାନେ ଯେପରି ମାନବ ସମାଜର କୌଣସି ଅମଙ୍ଗଳ କରିନପାରନ୍ତି, ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ପ୍ରଦାନ କରିବା । ଆବଶ୍ୟକ ପଡ଼ିଲେ ସେମାନଙ୍କର ସଂଖ୍ୟାକୁ ମଧ୍ୟ ବୈଜ୍ଞାନିକ ଉପାୟରେ ହ୍ରାସ କରାଯାଇପାରିବ । ସେଥିପାଇଁ ବିଭିନ୍ନ ଅରଣ୍ୟକୁ ଅଭୟାରଣ୍ୟ ଭାବରେ ଘୋଷଣା କରାଯାଇଛି । ତା'ର ଚତୁର୍ଦ୍ଦିଗରେ ତାରବାଡ଼ ଘେରାଯାଇ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଯାତାୟତ କରିବାକୁ ସେମାନଙ୍କୁ ଛାଡ଼ି ଦିଆଯାଇଛି । ପ୍ରାଣୀମାନଙ୍କର ଅତ୍ୟଧିକ ହ୍ରାସ ବା ବୃଦ୍ଧି ହେଲେ ସମାଜର କ୍ଷତି ହୋଇଥାଏ । ଅଧିକ ପରିମାଣରେ ବାଘ କିମ୍ବା ଚିତାବାଘଙ୍କ ସଂଖ୍ୟା କମିଗଲେ ହରିଣମାନଙ୍କର ସଂଖ୍ୟା ବୃଦ୍ଧି ପାଇବାର ସମ୍ଭାବନା ରହିଛି ଓ ସେହି କାରଣରୁ ବହୁପରିମାଣରେ ଫସଲ ମଧ୍ୟ ନଷ୍ଟ ହୋଇପାରେ । ଠିକ୍ ସେହିପରି ହରିଣମାନଙ୍କର ସଂଖ୍ୟା ହ୍ରାସ ପାଇଲେ ସିଂହ, ବ୍ୟାଘ୍ରାଦି ଖାଦ୍ୟାଭାବରୁ ଆମର ଗୃହପାଳିତ ପଶୁ କିମ୍ବା ମଣିଷ ଉପରେ ଆକ୍ରମଣ କରିପାରନ୍ତି । ସେହି ଦୃଷ୍ଟିରୁ ବର୍ତ୍ତମାନ ବିଶ୍ୱରେ ବନ୍ୟଜନ୍ତୁ ସଂରକ୍ଷଣ ଉପରେ ଗୁରୁତ୍ୱ ପ୍ରଦାନ କରାଯାଉଛି ।

ବନ୍ୟଜନ୍ତୁ ସଂରକ୍ଷଣ ଯୋଗୁଁ ଆମର ବହୁବିଧ ଉପକାର ସାଧନ ହୋଇଥାଏ । ପ୍ରଥମତଃ ସାଂସ୍କୃତିକ ଦିଗରୁ ଆମେ ବିଶେଷ ଲାଭବାନ୍ ହୋଇଥାଉ । ଆମର କଳା, ସଂସ୍କୃତି ଏବଂ ପୁରାଣମାନଙ୍କରେ ପ୍ରାଣୀମାନଙ୍କର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ସେମାନଙ୍କର ରୂପ, ଆଚରଣ ଭାରତୀୟ କଳାକୁ ବହୁପରିମାଣରେ ପ୍ରଭାବିତ କରୁଛି । ସେଥିପାଇଁ ଚିତ୍ରଶିଳ୍ପ ବା ଭାସ୍କର୍ଯ୍ୟରେ ବହୁ ପଶୁପକ୍ଷୀ ରୂପ ଲାଭକରି ଆମର ଚିତ୍ତବିନୋଦନ କରିଥାନ୍ତି । ଅଧିକାଂଶ ଚିତ୍ରକଳାରେ ପଶୁପକ୍ଷୀମାନେ ଉନ୍ନତମାନର ଚିତ୍ରକଳା ପ୍ରଦର୍ଶନରେ ସହାୟତା କରିଛନ୍ତି । ପୁରାଣମାନଙ୍କରେ ପଶୁପକ୍ଷୀମାନଙ୍କର ଭୂମିକା ଅଧିକ ମହତ୍ତ୍ୱପୂର୍ଣ୍ଣ । ପାଳନକର୍ତ୍ତା ବିଷ୍ଣୁଙ୍କର ବାହନ ଗରୁଡ଼ ପକ୍ଷୀ, ଶିବଙ୍କର ବାହନ ଷଣ୍ଢ, ସରସ୍ୱତୀଙ୍କର ବାହନ ହଂସ, ଲକ୍ଷ୍ମୀଙ୍କର ବାହନ ପେଚା, ଦୁର୍ଗାଙ୍କର ବାହନ ସିଂହ, ଇନ୍ଦ୍ରଙ୍କର ବାହନ ହସ୍ତୀ । ତେଣୁ ପୁରାଣରେ ଏହି ପଶୁପକ୍ଷୀ ଶ୍ରଦ୍ଧା ଓ ସମ୍ମାନର ପ୍ରତୀକ ରୂପେ ଗୃହୀତ । ହିତୋପଦେଶ ଏବଂ ପଞ୍ଚତନ୍ତ୍ର ମୁଖ୍ୟତଃ ପଶୁପକ୍ଷୀଙ୍କୁ ନେଇ ରଚିତ । ଯଦି ପଶୁପକ୍ଷୀ ନ ଥାନ୍ତେ ଆମର ପୁରାଣସାହିତ୍ୟଗୁଡ଼ିକ କିପରି ନିରସ ହୋଇପଡ଼ିଥାନ୍ତେ, ତାହା ଏଥିରୁ ସହଜରେ ପ୍ରମାଣିତ ହୋଇଥାଏ । ଉପବନ, ଜଙ୍ଗଲ ଆଦି ପକ୍ଷୀମାନଙ୍କର କାକଳୀ ଯୋଗୁଁ କିପରି ମଧୁର ପରିବେଶ ସୃଷ୍ଟି କରିଥାଏ, ତାହା ସମସ୍ତେ ହୃଦୟଙ୍ଗମ କରିଥାନ୍ତି । ଅରଣ୍ୟର ସୌନ୍ଦର୍ଯ୍ୟ, ପ୍ରଭାତ ଏବଂ ସନ୍ଧ୍ୟାକୁ ରମଣୀୟ କରିବା କ୍ଷେତ୍ରରେ ପକ୍ଷୀମାନଙ୍କର ଭୂମିକା ବେଶ୍ ମହତ୍ତ୍ୱପୂର୍ଣ୍ଣ । କୃଷ୍ଣସାର ଏବଂ ମୟୂର ଦ୍ୱାରା ଅରଣ୍ୟର ଶୋଭା କିପରି ବୃଦ୍ଧି ପାଇଥାଏ, ତାହା କେବଳ ଅନୁଭବୀର ହୃଦୟ ହିଁ

କହିପାରିବ । ସର୍ପ, ହସ୍ତୀ, ଗାଈ, ଷଣ୍ଢ, ସିଂହ, ମୂଷା ଆଦିଙ୍କୁ ଆମେ ପୂଜା କରିଥାଉ । ଶୁଆ, ପାରା, ବଣି ଆଦି ଆମମାନଙ୍କର ଗୃହ ଓ ବଗିଚାର ସୌନ୍ଦର୍ଯ୍ୟ ବୃଦ୍ଧି କରିଥାନ୍ତି । ମଣିଷର ଜୀବନ ସହିତ କେଉଁ ଆଦିମଯୁଗରୁ ସେମାନଙ୍କର ଅବିଚ୍ଛେଦ୍ୟ ସମ୍ପର୍କ ପ୍ରତିଷ୍ଠା ହୋଇଛି । ତେଣୁ ପଶୁ ଏବଂ ପକ୍ଷୀ ବ୍ୟତିରେକେ ଆମେ କଦାପି ଆମର ଜୀବନକୁ ସରସ ଓ ସୁନ୍ଦର କରିପାରିବା ନାହିଁ ।

ବୈଜ୍ଞାନିକ ଦୃଷ୍ଟିକୋଣରୁ ମଧ୍ୟ ପଶୁପକ୍ଷୀମାନଙ୍କର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ । ପ୍ରକୃତି ମଧ୍ୟରେ ଏହା ସନ୍ତୁଳନ ରକ୍ଷା କରିଥାଏ । ସନ୍ତୁଳନ ରକ୍ଷାହୋଇ ନ ପାରିଲେ ସମଗ୍ର ପ୍ରାଣିଜଗତରେ ବିଶୃଙ୍ଖଳା ଦେଖାଦେବ ଓ ମଣିଷ ଜୀବନ ମଧ୍ୟ ବିପର୍ଯ୍ୟସ୍ତ ହୋଇପଡ଼ିବ । ପକ୍ଷୀମାନେ ଧ୍ୱଂସପ୍ରାପ୍ତ ହେଲେ ବହୁପରିମାଣରେ କୀଟପତଙ୍ଗ ଫସଲ ନଷ୍ଟ କରିବାକୁ ସମର୍ଥ ହେବେ । ଶାଗୁଣା, କାଉ, ଶିଆଳ, କୁକୁର ଆଦି ପଚାସଢ଼ା ଖାଦ୍ୟ ତଥା ଶବକୁ ଖାଦ୍ୟ ଭାବରେ ଗ୍ରହଣ କରୁଥିବାରୁ ପରିବେଶ ଅନେକ ପରିମାଣରେ ସୁରକ୍ଷିତ ରହିପାରୁଛି । କେତେକ ପକ୍ଷୀ ପୁଷ୍ପ ପରାଗରେଣୁର ଅଭିକର୍ତ୍ତା ଭାବରେ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ମଞ୍ଜି ବିକ୍ଷିପ୍ତିକରଣରେ ସାହାଯ୍ୟ କରିଥାନ୍ତି । ଅନେକ ପଶୁ ଏବଂ ପକ୍ଷିଙ୍କର ଚର୍ବି, ମାଂସ, ଚର୍ମ, ହାଡ଼ ଆଦି ବିଭିନ୍ନ ଔଷଧ ତିଆରିରେ ବ୍ୟବହୃତ ହୋଇଥାଏ । ପରିବେଶ ସୁରକ୍ଷା କ୍ଷେତ୍ରରେ ମଧ୍ୟ ପଶୁପକ୍ଷୀମାନଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ।

ଆର୍ଥନୀତିକ ଦୃଷ୍ଟିକୋଣରୁ ଏମାନଙ୍କର ଅବଦାନର ତୁଳନା ନାହିଁ । ବହୁ ପର୍ଯ୍ୟଟକ ଭାରତର ପଶୁପକ୍ଷୀମାନଙ୍କୁ ଦେଖିବା ପାଇଁ ଆସିଥାନ୍ତି । ପର୍ଯ୍ୟଟନ ବାଣିଜ୍ୟ କ୍ଷେତ୍ରରେ ଆମର ସିଂହ, ବାଘ, ହାତୀ, ସମ୍ବର, ସିଂହାଳ, ଚିତାବାଘ, ଜଳହସ୍ତୀ, ମହିଷ ଆଦି ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରିଥାନ୍ତି । ଏହାଙ୍କୁ ଦେଖିବା ନିମିତ୍ତ ପ୍ରତିବର୍ଷ ହଜାର ହଜାର ପର୍ଯ୍ୟଟକଙ୍କ ଆଗମନ ହେଉଥିବାରୁ ଆର୍ଥନୀତିକ ଦୃଷ୍ଟିକୋଣରୁ ଆମେ ବହୁପରିମାଣରେ ଲାଭବାନ ହେଉଛୁ । ସେମାନେ ବହୁ ଜିନିଷ କ୍ରୟ କରୁଥିବାରୁ ବିଦେଶୀ ମୁଦ୍ରାଲାଭ କରିବାକୁ ସମର୍ଥ ହେଉଛୁ । ସିଂହ ଚମଡ଼ା ରପ୍ତାନି ଦ୍ୱାରା ମଧ୍ୟ ଆମର ପ୍ରଭୂତ ଲାଭ ହେଉଛି । ଅନେକ ପଶୁ ଓ ପକ୍ଷୀଙ୍କ ମାଂସ ଖାଦ୍ୟ ରୂପେ ବ୍ୟବହୃତ ହେଉଥିବାରୁ ମାଂସ ଅଭାବ ପୂରଣରେ ମଧ୍ୟ ସେମାନେ ସାହାଯ୍ୟ କରିଥାନ୍ତି ।

ବର୍ତ୍ତମାନ ଦେଖାଯାଉଛି ଆମର ବନ୍ୟପ୍ରାଣୀଙ୍କ ସଂଖ୍ୟା ବହୁପରିମାଣରେ ହ୍ରାସ ପାଇଯାଉଛି । ଏପରିକି କେତେକ ପ୍ରାଣୀ ଏବେ ଭାରତରେ ଆଉ ଦେଖିବାକୁ ମିଳୁ ନାହାନ୍ତି । ସିଂହ, ଚିତାବାଘମାନଙ୍କର ସଂଖ୍ୟା ଆଶାତୀତ ଭାବରେ ହ୍ରାସ ପାଇଛି । ଭାରତୀୟ ଗଣ୍ଡା, କସ୍ତୁରିମୃଗ କିମ୍ବା କାଶ୍ମୀର ମୃଗ ଏବଂ ଲୋହିତ ବତକ ସମ୍ପୂର୍ଣ୍ଣ ଭାବରେ ଦୁଷ୍ପ୍ରାପ୍ୟ । ପରିବେଶବିତ୍ ଏବଂ ବନ୍ୟଜନ୍ତୁ ଗବେଷକଙ୍କ ମତରେ ଅତୀତରେ ଦୃଶ୍ୟମାନ ହେଉଥିବା ୧୦% ପକ୍ଷୀ ଓ ପଶୁ ବର୍ତ୍ତମାନ ଆଉ ଦେଖିବାକୁ ମିଳୁ ନାହାନ୍ତି । ପାଶ୍ଚାତ୍ୟ ଜଗତରୁ ପଶୁପକ୍ଷୀ ବିକ୍ରୟ ଜନିତ

ବୈଦେଶିକ ମୁଦ୍ରା ପରିମାଣ ହ୍ରାସ ପାଉଛି । ଏ କ୍ଷେତ୍ରରେ ବନ୍ୟଜନ୍ତୁ ସଂରକ୍ଷଣର ଜରୁରୀ ଆବଶ୍ୟକତା ରହିଛି । ତେଣୁ ବନ୍ୟଜନ୍ତୁମାନଙ୍କର ଆବଶ୍ୟକତାକୁ ଉପଲବ୍ଧି କରି ସବୁ ସ୍ତରରେ ଉଦ୍ୟମ ଜାରି ରହିଲେ, ଆମର ଏହି ଅରଣ୍ୟ ସମ୍ପଦ ଯେ ପୁନଃ ବୃଦ୍ଧିଲାଭ କରିପାରିବ, ଏଥିରେ ସନ୍ଦେହ ନାହିଁ ।

●

## ପର୍ଯ୍ୟଟନ

**(ଉପକ୍ରମ, ପର୍ଯ୍ୟଟନର ଆବଶ୍ୟକତା, ଭାରତରେ ପର୍ଯ୍ୟଟନର ବିକାଶ ନିମିତ୍ତ ବିଭିନ୍ନ ପଦକ୍ଷେପ, ଓଡ଼ିଶାରେ ପର୍ଯ୍ୟଟନ ସ୍ଥାନ, ଉପସଂହାର)**

ପର୍ଯ୍ୟଟନର ବହୁବିଧ କଲ୍ୟାଣକାରୀ ଦିଗ ରହିଛି । ଏହା ଯେପରି ଚିତ୍ତବିନୋଦରେ ସହାୟତା କରିଥାଏ ଠିକ୍ ସେହିପରି ଜ୍ଞାନର ଆୟତନକୁ ବିସ୍ତୃତ କରିଥାଏ । କାର୍ଯ୍ୟବ୍ୟସ୍ତ ମଣିଷ ସାମୟିକ ପ୍ରଶାନ୍ତି ପାଇଁ ଆବଶ୍ୟକ କରେ କିଛିଟା ପରିବର୍ତ୍ତନ । ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନ ତା'ମନରେ ଭରିଦେଇଥାଏ ବିରକ୍ତି ଓ କ୍ଲାନ୍ତି । ଏଥିରୁ ସାମୟିକ ମୁକ୍ତି ପାଇଁ ସେ ପର୍ଯ୍ୟଟନର ସହାୟତା ଗ୍ରହଣ କରିଥାଏ । ଏତଦ୍‌ବ୍ୟତୀତ ପର୍ଯ୍ୟଟନ ଦ୍ୱାରା ବିଭିନ୍ନ ସଂସ୍କୃତି ଓ ରୁଚିର ବ୍ୟକ୍ତିମାନଙ୍କ ସମ୍ପର୍କରେ ଆସିବାକୁ ହୋଇଥାଏ । ତେଣୁ ଭିନ୍ନ ଭିନ୍ନ ବ୍ୟକ୍ତିଙ୍କ ଚରିତ୍ର ଅନୁଶୀଳନରେ ଏହା ମଧ୍ୟ ସହାୟତା କରିଥାଏ । ପର୍ଯ୍ୟଟନ ଦ୍ୱାରା ବ୍ୟକ୍ତି ଯେପରି ଲାଭବାନ୍ ହୋଇଥାଏ, ସେହିପରି ଦେଶ ମଧ୍ୟ ଲାଭବାନ୍ ହୋଇଥାଏ । ସେଥିପାଇଁ ବର୍ତ୍ତମାନ ବିଶ୍ୱରେ ପର୍ଯ୍ୟଟନକୁ ଏକ ଶ୍ରେଷ୍ଠ ଶିଳ୍ପର ମାନ୍ୟତା ପ୍ରଦାନ କରାଯାଇଛି ।

ମଣିଷ ଜୀବନରେ ପର୍ଯ୍ୟଟନର ଯେପରି ଆବଶ୍ୟକତା ରହିଛି, ଦେଶ କ୍ଷେତ୍ରରେ ମଧ୍ୟ ତା'ର ସେହିପରି ଉପଯୋଗିତା ରହିଛି । ବର୍ତ୍ତମାନ ବିଶ୍ୱରେ ପର୍ଯ୍ୟଟନ ସବୁଠାରୁ ବୃହତ ଏବଂ ଦ୍ରୁତ ବର୍ଦ୍ଧିତ ଶିଳ୍ପ ରୂପେ ଗୃହୀତ ହୋଇଛି । ଦେଶର ଆଭ୍ୟନ୍ତରୀଣ ଉତ୍ସର ବିନା କ୍ଷୟରେ ଏଥିରୁ ପ୍ରଚୁର ପରିମାଣର ଅର୍ଥ ଲାଭ କରାଯାଇପାରେ । ପୃଥିବୀର ଏପରି କେତେକ ଦେଶ ଅଛି, ଯେଉଁମାନଙ୍କର ରାଜସ୍ୱ ମୁଖ୍ୟତଃ ପର୍ଯ୍ୟଟନ ଶିଳ୍ପ ଉପରେ ନିର୍ଭର କରିଥାଏ । ଭାରତର ଏଥିପାଇଁ ବିସ୍ତୃତ କ୍ଷେତ୍ର ରହିଛି । ଐତିହାସିକ ତଥା ପ୍ରାକୃତିକ ସ୍ଥାନ ବ୍ୟତିରେକେ ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରିବା ପାଇଁ ରହିଛି ବିସ୍ତୀର୍ଣ୍ଣ ସାଗରର ବେଳାଭୂମି, ଅଭୟାରଣ୍ୟ, ପ୍ରାକୃତିକ ହ୍ରଦ ଓ ସୁନ୍ଦର ଭାସ୍କର୍ଯ୍ୟ ପରିପୂର୍ଣ୍ଣ ମନ୍ଦିରମାନ । ଏହି ଉତ୍ସର ବ୍ୟବହାର କରି ପର୍ଯ୍ୟଟନ ଶିଳ୍ପରୁ ଭାରତ ବହୁପରିମାଣରେ ଅର୍ଥ ସଂଗ୍ରହ କରିବାକୁ ସମର୍ଥ ହୋଇପାରିବ । ଦେଶର ଆର୍ଥିକ ଅବସ୍ଥା ଉନ୍ନତି ଲାଭ କରିପାରିବ ।

ସମ୍ପ୍ରତି ଭାରତରେ ପର୍ଯ୍ୟଟନର ବିକାଶ ନିମିତ୍ତ ବିଭିନ୍ନ ପଦକ୍ଷେପ ଗ୍ରହଣ କରାଯାଇଛି । ଏଥିପାଇଁ ୧୯୬୬ ମସିହାରେ ସ୍ୱତନ୍ତ୍ର ଭାବରେ 'ଭାରତୀୟ ପର୍ଯ୍ୟଟନ ବିକାଶ ନିଗମ'

(ITDC) ଗଠନ କରାଯାଇଛି । ବିଗତ ୨୨ ବର୍ଷ ମଧ୍ୟରେ ଏହାର କାର୍ଯ୍ୟକାରିତା ଢଙ୍ଗରେ ମଧ୍ୟ ବହୁ ପରିବର୍ତ୍ତନ ଆସିଛି । ୧୯୬୭ ମସିହାରେ ଭାରତକୁ ୧୬୯୫୬୫ ପର୍ଯ୍ୟଟକ ଆସିଥିବା ସମୟରେ ୧୯୭୪ ମସିହା ବେଳକୁ ପ୍ରାୟ ୪୨,୩୬୧୦ ଏବଂ ୧୯୯୮ ମସିହା ବେଳକୁ ଏହା ବହୁ ଅଧିକ ବୃଦ୍ଧି ପାଇଥିଲା । ୧୯୭୭ ମସିହାରେ ପର୍ଯ୍ୟଟନରୁ ଭାରତ ସରକାର ୨୮୩ କୋଟି ଟଙ୍କା ଲାଭ କରିଥିଲା । ୧୯୯୭ ମସିହା ବେଳକୁ ପ୍ରାୟ ୪୦୦ କୋଟି ଟଙ୍କା ପର୍ଯ୍ୟନ୍ତ ମିଳିଥିବାର ଅନୁମାନ କରାଯାଇଥାଏ । ଅତୀତରେ କେବଳ ଆନ୍ତର୍ଜାତିକ ପର୍ଯ୍ୟଟକମାନଙ୍କ ଉପରେ ଗୁରୁତ୍ୱ ପ୍ରଦାନ କରାଯାଇଥିଲା । ସମ୍ପ୍ରତି ଭାରତର ବହୁପରିବାର ମଧ୍ୟ ପର୍ଯ୍ୟଟନ ପ୍ରତି ଆଗ୍ରହ ପ୍ରକାଶ କରୁଥିବାରୁ ଏମାନଙ୍କର ସଂଖ୍ୟା ବୃଦ୍ଧି ପାଇ ଚାଲିଛି । ଏହି ପର୍ଯ୍ୟଟକମାନଙ୍କର ରହିବା ନିମିତ୍ତ ଭାରତ ସରକାର ବିଭିନ୍ନ ବ୍ୟବସ୍ଥା କରୁଛନ୍ତି । ସ୍ୱଳ୍ପ ଆୟକାରୀ ପର୍ଯ୍ୟଟକମାନଙ୍କ ନିମିତ୍ତ ଧର୍ମଶାଳାର ବ୍ୟବସ୍ଥା କରାଯାଇଛି । ବର୍ତ୍ତମାନ ଭାରତୀୟ ପର୍ଯ୍ୟଟନ ବିକାଶ ନିଗମର ପ୍ରଥମ ଲକ୍ଷ୍ୟ ହେଉଛି ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରିବା ପାଇଁ ଆରାମଦାୟକ ବାସସ୍ଥାନ, ଉତ୍ତମ ଖାଦ୍ୟ, ଆରାମଦାୟକ କାର୍ ଏବଂ ବସ୍‌ମାନ ଯୋଗାଇଦେବା । ଏତଦ୍‌ବ୍ୟତୀତ ସେମାନଙ୍କର ମନୋରଞ୍ଜନ ପ୍ରତି ଲକ୍ଷ୍ୟ ରଖିବା ମଧ୍ୟ ଏହାର ଅନ୍ୟତମ କର୍ତ୍ତବ୍ୟ । ବର୍ତ୍ତମାନ ଏହି ନିଗମ ନିଜ ତରଫରୁ ହଷ୍ଟେଲ, ରେଷ୍ଟୁରାଣ୍ଟ, ବେଳାଭୂମି ହୋଟେଲ, କେତେକ ଟ୍ରାଭଲ ଲଜ୍ ଏବଂ ଯାତାୟତ ନିମିତ୍ତ ଅନେକ କାର୍ ବସ୍‌ମାନଙ୍କର ବ୍ୟବସ୍ଥା କରାଯାଇଛି । ବହୁବର୍ଷ ଧରି ଭାରତର ଉତ୍ତର ଭୂଖଣ୍ଡ ହିଁ ପର୍ଯ୍ୟଟନସ୍ଥଳ ଭାବରେ ଖ୍ୟାତିଲାଭ କରିଥିଲା । ଆଗ୍ରାର ତାଜମହଲ ଓ ଫତେପୁର ସିକ୍ରୀ, ବାରାଣସୀର ସାରନାଥ, ବୋଧଗୟା, ଜୟପୁର ଏବଂ ଖଜୁରାହୋହିଁ ଥିଲା ମୁଖ୍ୟ ଆକର୍ଷଣର କେନ୍ଦ୍ରବିନ୍ଦୁ । ବର୍ତ୍ତମାନ ଦକ୍ଷିଣଭାରତ ତଥା ଅନ୍ୟାନ୍ୟ ସ୍ଥାନରେ ମଧ୍ୟ ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରିବା ପାଇଁ ପଦକ୍ଷେପମାନ ଗ୍ରହଣ କରାଯାଇଛି । ବେଲୁରର ହାସନ ହୋଟେଲ, ଉଦୟପୁରର ଲକ୍ଷ୍ମୀବିଳାସ ପ୍ୟାଲେସ ହୋଟେଲ, ନୂଆଦିଲ୍ଲୀର ଆକବର ଏବଂ କୁତବ ହୋଟେଲ, ଆଗ୍ରାର କୋସି ଏବଂ ତାଜ ରେଷ୍ଟୁରାଣ୍ଟ, କଲିକତାର ଏୟାର ପୋର୍ଟ ହୋଟେଲ, ଔରଙ୍ଗାବାଦ ହୋଟେଲ ଆଦି ପର୍ଯ୍ୟଟକମାନଙ୍କୁ ବିଶେଷ ସୁଖସୁବିଧା ଯୋଗାଇ ଦେଇପାରୁଛି । ଦଣ୍ଡେଲା, କାହ୍ନା, ଗିର, ଜଲଦାପଡ଼ା ଏବଂ କାଜିରଙ୍ଗା ଆଦି ସ୍ଥାନରେ ଜଙ୍ଗଲ ମଧ୍ୟରେ ନିଭୃତ ବାସସ୍ଥାନ ତିଆରି କରାଯାଇ ପର୍ଯ୍ୟଟକମାନଙ୍କୁ ରଖିବାର ବ୍ୟବସ୍ଥା ହୋଇଛି । ବଣର ପଶୁମାନଙ୍କୁ ଦେଖିବା ପାଇଁ କେତେକ ସ୍ଥାନରେ ନିରାପତ୍ତା ଗାଡ଼ିର ବ୍ୟବସ୍ଥା କରାଯାଇଛି । ଯୁବ ପର୍ଯ୍ୟଟକମାନଙ୍କ ନିମିତ୍ତ ସ୍ୱତନ୍ତ୍ର ଭାବରେ ହଷ୍ଟେଲ ନିର୍ମିତ ହୋଇଛି । ଭାରତବର୍ଷର ପର୍ଯ୍ୟଟନ ସ୍ଥଳୀ ଓ ତା'ର ଆକର୍ଷଣୀୟ ବିଭାବର ପ୍ରଦର୍ଶନ ପାଇଁ କେତୋଟି ଚଳଚ୍ଚିତ୍ର ମଧ୍ୟ ନିର୍ମିତ ହୋଇଛି । ଭାରତୀୟ ପର୍ଯ୍ୟଟନ ବିକାଶ ନିଗମର ପ୍ରଥମ ଚଳଚ୍ଚିତ୍ର Destination of India ୧୯୭୩ ମସିହାରେ ଜାତୀୟପୁରସ୍କାର ଲାଭ କରିଥିଲା । ଏତଦ୍‌ବ୍ୟତୀତ Destination Delhi, Woven Dream, Destination Bombay, High above the Dust ଆଦି ଚଳଚ୍ଚିତ୍ରମାନ ପ୍ରକାଶଲାଭ କରି ଭାରତୀୟ

ପର୍ଯ୍ୟଟନ ବିକାଶ ନିଗମର କାର୍ଯ୍ୟକୁ ପ୍ରଶଂସନୀୟ କରିପାରିଛି । ସମ୍ପ୍ରତି ବିଶ୍ୱରେ ପର୍ଯ୍ୟଟନ ଏକ ବିଶେଷ ଶିଳ୍ପର ମାନ୍ୟତା ଲାଭ କରିଥିବାରୁ, ଏହାପ୍ରତି ଭାରତ ସରକାର ବିଶେଷ ଦୃଷ୍ଟି ପ୍ରଦାନ କରୁଛନ୍ତି ଓ ଏହାର ବିକାଶ ନିମିତ୍ତ ପ୍ରଶଂସାଯୋଗ୍ୟ କାର୍ଯ୍ୟକ୍ରମ ମଧ୍ୟ ଗ୍ରହଣ କରାଯାଉଛି ।

ଭାରତର ମାନଚିତ୍ରରେ ଓଡ଼ିଶାର ପର୍ଯ୍ୟଟନ ସ୍ଥାନମାନଙ୍କର ବିଶେଷ ମହତ୍ତ୍ୱ ରହିଛି । ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର, ରାଜାରାଣୀ ମନ୍ଦିର, ଖଣ୍ଡଗିରିର ହାତୀଗୁମ୍ଫା, କୋଣାର୍କର ସୂର୍ଯ୍ୟମନ୍ଦିର, ପୁରୀ ମନ୍ଦିର ଓ ତା'ର ସୁନ୍ଦର ସମୁଦ୍ର ବେଳାଭୂମି, ଲଳିତଗିରିର ବୌଦ୍ଧବିହାର, ଗୋପାଳପୁର ସମୁଦ୍ର ବେଳାଭୂମି, ବଡିଘର, ତାରାତାରିଣୀ, ତପ୍ତକୁଣ୍ଡ, ଦେବକୁଣ୍ଡ, ଖଣ୍ଡାଧାର, ଚିଲିକା, ଧଉଳିଗିରି, ଚାନ୍ଦିପୁର ଆଦି ବହୁ ପର୍ଯ୍ୟଟନସ୍ଥଳୀ ରହିଛି । ଏତଦ୍‌ବ୍ୟତୀତ ଓଡ଼ିଶାର ଅନେକ ସ୍ଥାନରେ ମନ୍ଦିର ତଥା ପ୍ରାକୃତିକ ସ୍ଥାନ ପରିପୂର୍ଣ୍ଣ ଅଛି । ନନ୍ଦନକାନନର ଚିଡ଼ିଆଖାନା, ଶିମିଳିପାଳ ଅଭୟାରଣ୍ୟ ପର୍ଯ୍ୟଟକମାନଙ୍କୁ ବେଶ୍ ଆନନ୍ଦ ଯୋଗାଇ ଦେବାକୁ ସମର୍ଥ । ମାତ୍ର ଓଡ଼ିଶାର ପ୍ରାକୃତିକ ସୌନ୍ଦର୍ଯ୍ୟ, ଐତିହାସିକ ସ୍ଥାନ ତଥା ସମୁଦ୍ର ବେଳାଭୂମି ପରିପୂର୍ଣ୍ଣ ହୋଇ ରହିଥିଲେହେଁ, ପର୍ଯ୍ୟଟନ ମାନଚିତ୍ରରେ ଏହାର ଯେପରି ମହତ୍ତ୍ୱ ରହିବା ଉଚିତ, ସେପରି ରହିପାରି ନାହିଁ । ଏଥିପ୍ରତି ଉଭୟ ଭାରତ ଏବଂ ଓଡ଼ିଶା ସରକାର ଦୃଷ୍ଟି ଦେବା ବାଞ୍ଛନୀୟ ।

ଆଜି ବିଶ୍ୱରେ ପର୍ଯ୍ୟଟନ ଏକ ବିଶେଷ ଶିଳ୍ପର ମାନ୍ୟତା ଲାଭ କରିଥିବାରୁ ଏହାର ବିକାଶ ନିମିତ୍ତ ଭାରତ ଯଥୋଚିତ ଦୃଷ୍ଟିପ୍ରଦାନ କରିବା ଉଚିତ ଆସିଛି । ବୈଦେଶିକ ମୁଦ୍ରା ଅର୍ଜନ କରିବା କ୍ଷେତ୍ରରେ ପର୍ଯ୍ୟଟନ ସମ୍ପ୍ରତି ବିଶେଷ ସହାୟକ ହୋଇପାରିଛି । ତେଣୁ ବିଶ୍ୱର ଧନାଢ୍ୟ ଦେଶମାନେ ସେମାନଙ୍କର ପର୍ଯ୍ୟଟନସ୍ଥଳୀମାନଙ୍କର ବିଶେଷ ଯତ୍ନନେଇ ପର୍ଯ୍ୟଟକମାନଙ୍କର ଦୃଷ୍ଟି ଆକର୍ଷଣ କରୁଛନ୍ତି । ଏହାଦ୍ୱାରା ଏଥିରୁ ସେହି ଦେଶମାନେ ପ୍ରଚୁର ଅର୍ଥ ଲାଭ କରୁଛନ୍ତି । ଦେଶର କୌଣସି ଆଭ୍ୟନ୍ତରୀଣ କ୍ଷତି ନ ହୋଇ ବରଂ ଅର୍ଥାଗମର ଏକ ମାଧ୍ୟମ ହୋଇଥିବାରୁ ସରକାର୍ ଏ ଦିଗରେ ଉପଯୁକ୍ତ ଧ୍ୟାନ ପ୍ରଦାନ କରିବା ଆବଶ୍ୟକ ।



## ଅବସର ବିନୋଦନ

**(ଉପକ୍ରମ, ଅବସର ବିନୋଦନର ଆବଶ୍ୟକତା, ଅବସରର ଉପଯୁକ୍ତ ବିନିଯୋଗ, ଅବସରର ଅସଦ୍ ବିନିଯୋଗ, ଉପସଂହାର)**

ମଣିଷର ଜୀବନ ସର୍ବଦା କର୍ମମୁଖର । ଏହି କର୍ମମୁଖର ଜୀବନରୁ ସାମୟିକ ପ୍ରଶାନ୍ତି ପାଇଁ ସେ ଚାହେଁ ଅବସର । ବୟସ ବଢ଼ିବା ସଙ୍ଗେ ସଙ୍ଗେ ବିଭିନ୍ନ କାର୍ଯ୍ୟ ମଧ୍ୟରେ ସେ ନିଜକୁ ବୁଡ଼ାଇ ରଖିଥାଏ । କିଛି ସମୟ କର୍ମରୁ ବିରତ ରହି ବିଶ୍ରାମ ନେବା ଦ୍ୱାରା ସେ ପୁନଃ ସ୍ଫୂର୍ତ୍ତିଶୀଳ

ହୋଇଉଠେ । ଜୀବନର ତିକ୍ତ ଯନ୍ତ୍ରଣାକୁ ଭୁଲିଯିବାକୁ ଚେଷ୍ଟା କରେ । ଜଞ୍ଜାଳପୂର୍ଣ୍ଣ ଜୀବନ ତା' ମନରେ ସୃଷ୍ଟି କରିଥାଏ ବିତୃଷ୍ଣା ଭାବ । ପ୍ରତ୍ୟେକ ମଣିଷ ଏହି ବିତୃଷ୍ଣା ଭାବରୁ ରକ୍ଷା ପାଇବା ପାଇଁ ସାମୟିକ ଅବସର ଚାହିଁଥାଏ । ରୁଟିନ୍ ବନ୍ଧା ଜୀବନ ପ୍ରତ୍ୟେକ ମଣିଷ ପାଇଁ ଏକ ଏକ ନିର୍ଯାତନା ବ୍ୟତୀତ ଅନ୍ୟ କିଛି ନୁହେଁ । ଏହି କାରଣରୁ କିଛି ସମୟ ଅବସର ନେଇ ମଣିଷ ନିଜକୁ ବିଭିନ୍ନ ଆମୋଦ ପ୍ରମୋଦ ବା ଆନନ୍ଦଦାୟକ କାର୍ଯ୍ୟରେ ବ୍ୟସ୍ତ ରଖିବାକୁ ଚାହିଁଥାଏ । ଜୀବନର ଅନେକ ଶୂନ୍ୟତା, ଅସହାୟତା, ବ୍ୟଥା, ଯନ୍ତ୍ରଣାକୁ ସେ ଏହି ଅବସର ସମୟରେ ଭୁଲିଯିବାକୁ ଚେଷ୍ଟା କରେ । ଗଡ୍ଡାଳିକା ଜୀବନ ପ୍ରବାହକୁ ଅନ୍ୟ ଦିଗରେ ଗତି କରାଇବା ପାଇଁ ଏହା ଅନ୍ୟ ଏକ ମାଧ୍ୟମ । ତେଣୁ ମନକୁ ସତେଜ ଓ କର୍ମମୁଖର କରିବାକୁ ହେଲେ ଅବସର ବିନୋଦନର ଯଥାର୍ଥ ଆବଶ୍ୟକତା ରହିଛି । ଉତ୍କଳମଣି ଗୋପବନ୍ଧୁ ଗାଇଥିଲେ—

ମାନବ ଜୀବନ ନୁହଁଇ କେବଳ ବର୍ଷ ମାସ ଦିନ ଦଣ୍ଡ
କର୍ମେ ଜୀଏଁ ନର କର୍ମ ଏକା ତା'ର ଜୀବନର ମାନଦଣ୍ଡ ।

କର୍ମ ହେଉଛି ମଣିଷଜୀବନର ମାନଦଣ୍ଡ । ଏହାହିଁ ତା'ଜୀବନର ଯଥାର୍ଥ ପରିଚୟ । ଏହା ସତ୍ତ୍ୱେ ମଣିଷ ତ ଏକ ଯନ୍ତ୍ର ନୁହେଁ । ତା'ର ଦେହ ଅଛି, ମନ ଅଛି । ଆଧୁନିକ ମଣିଷ ସର୍ବଦା ଜୀବନଯନ୍ତ୍ରଣାରେ କ୍ଷତବିକ୍ଷତ । ବାସ୍ତବତା ସହିତ ସଂଘର୍ଷ କରି କରି ସେ କ୍ଲାନ୍ତ । ମାନବିକ ଆବେଗ, ସୌନ୍ଦର୍ଯ୍ୟ ତା ଜୀବନରୁ ହୋଇଛି ଦୂରୀଭୂତ । ଏଥିରୁ ମୁକ୍ତି ପାଇଁ ଶରୀର ଓ ମନର କ୍ଲେଶକୁ ଭୁଲିବା ପାଇଁ ସେ ଆବଶ୍ୟକ କରିଥାଏ ଅବସର । ଅବସର ସମୟ ହିଁ ତାକୁ ଭୁଲାଇ ଦେଇଥାଏ ତା'ର କ୍ଲାନ୍ତପୂର୍ଣ୍ଣ ଜୀବନଯାତ୍ରାକୁ । ନଚେତ୍ ବିଭିନ୍ନ କୁଚିନ୍ତା ତା' ଜୀବନକୁ ହୁଏତ ଅଧିକ ଅବସାଦଗ୍ରସ୍ତ ଓ ମ୍ରିୟମାଣ କରିଦେଇପାରେ । ସାମାଜିକ ତଥା ପାରିବାରିକ ଜୀବନରେ ସେ ଯେଉଁ ସଂଘର୍ଷର ସମ୍ମୁଖୀନ ହୋଇଥାଏ, ତାହାକୁ ଉଚିତ ମୁକାବିଲା କରିବା ପାଇଁ ସେ ମାନସିକ ପ୍ରସ୍ତୁତି ଲାଭ କରିଥାଏ ଏହି ଅବସର ସମୟରେ । ଏହା ମନକୁ କରେ ଅଧିକ କାର୍ଯ୍ୟକ୍ଷମ ଓ ଦୃଢ଼ । ସ୍ଫୂର୍ତ୍ତି ଭରିଦେଇଥାଏ ମନରେ । ସେହି କାରଣରୁ ପ୍ରତ୍ୟେକ ମଣିଷ ପାଇଁ କିଛି ସମୟ ବିଶ୍ରାମର ଆବଶ୍ୟକତା ରହିଛି । ଏହି ବିଶ୍ରାମ ସମୟରେ ହିଁ ସେ ଶାରୀରିକ ତଥା ମାନସିକ ସ୍ତରରେ ଭବିଷ୍ୟତ କର୍ମମୟ ଜୀବନକୁ କିପରି ସମ୍ମୁଖୀନ ହୋଇପାରିବ, ସେଥିପାଇଁ ନିଜକୁ ପ୍ରସ୍ତୁତ କରି ରଖିଥାଏ ।

ଅବସର ସମୟର ସଦ୍ ବିନିଯୋଗ କରାଯାଇପାରିଲେ ଜୀବନ ହୁଏ ଅଧିକ ସରସ ଓ ସୁନ୍ଦର । ଏହି ଅବସର ଦୁଇ ପ୍ରକାର ହୋଇପାରେ । ଦୀର୍ଘଦିନ ଏକ ପ୍ରକାର କାର୍ଯ୍ୟ କରିସାରିବା ପରେ ମଣିଷ ସମ୍ପୂର୍ଣ୍ଣ ଭାବରେ ଅବସର ଗ୍ରହଣ କରି ଆଉ ଅନ୍ୟ କୌଣସି କାର୍ଯ୍ୟରେ ନିଜକୁ ଜଡ଼ିତ ନ କରି ସମ୍ପୂର୍ଣ୍ଣ ବିଶ୍ରାମ ନେଇ ଜୀବନ ଅତିବାହିତ କରିଥାଏ । ଦ୍ୱିତୀୟ ପ୍ରକାର ଅବସର ହେଉଛି ଏକପ୍ରକାର କର୍ମର ଅବସାଦଜନିତ ବିରକ୍ତିରୁ ରକ୍ଷା ପାଇଁ ଅନ୍ୟ ଆମୋଦଦାୟକ କାର୍ଯ୍ୟରେ ନିଜକୁ ନିୟୋଜିତ କରିବା । ନିଜ ଇଚ୍ଛାରେ ଏହି ଅବସରକାଳୀନ

କାର୍ଯ୍ୟକୁ ଗ୍ରହଣ କରାଯାଉଥିବାରୁ ଏଥିରେ ବିରକ୍ତି ବା କ୍ଲାନ୍ତିର ସାମାନ୍ୟ ମାତ୍ର ଚିହ୍ନବର୍ଣ୍ଣ ନ ଥାଏ । ଅବସର ଜୀବନକୁ ଅଧିକ ଆନନ୍ଦମୟ କରିବା ପାଇଁ କେତେକ ବ୍ୟକ୍ତି ବିଭିନ୍ନ ସ୍ଥାନ ପରିଭ୍ରମଣ କରି ନୂତନ ଅନୁଭୂତି ଲାଭ କରିଥାନ୍ତି । ବିଭିନ୍ନ ବ୍ୟକ୍ତିଙ୍କ ସଂସ୍ପର୍ଶରେ ଆସି କାର୍ଯ୍ୟ କରିବାର ନୂଆ ରୀତିକୁ ମଧ୍ୟ ଆବିଷ୍କାର କରିଥାନ୍ତି । ଆଉ କେତେକ ନିର୍ଜନ ସ୍ଥାନରେ କିଛି ସମୟ ଅତିବାହିତ କରିବାକୁ ଯାଇ ବଣଭୋଜିର ଆୟୋଜନ କରିଥାନ୍ତି । ଅନ୍ୟ କେତେକ ଏହି ଅବସର-ସମୟକୁ ନିଜ ରୁଚିର କାର୍ଯ୍ୟ ମଧ୍ୟରେ ବୁଡ଼ାଇ ରଖି ମାନସିକ ଶାନ୍ତି ଲାଭ କରିଥାନ୍ତି । ତେଣୁ ପ୍ରତ୍ୟେକ ବ୍ୟକ୍ତି ନିଜର ଅବସର ସମୟକୁ ଉପଯୁକ୍ତ ବିନିଯୋଗ କରିବାକୁ ହେଲେ ସେ ନିଜକୁ ନିଜର ରୁଚି ଅନୁକୂଳ କାର୍ଯ୍ୟରେ ବ୍ୟସ୍ତ ରଖିବା ଉଚିତ । ଏହାଦ୍ୱାରା ଉଭୟ ତା'ର ଶରୀର ଓ ମନକୁ ଶାନ୍ତି ମିଳିଥାଏ । ଚିତ୍ରକଳା, ସଙ୍ଗୀତକଳା, ଅନ୍ୟାନ୍ୟ କାରୁକଳା, ପୁସ୍ତକ ପଠନ, ବଗିଚା କାର୍ଯ୍ୟ ଆଦି ବହୁ ପ୍ରକାର ଅବସରକାଳୀନ କାର୍ଯ୍ୟ ରହିଛି । ଯେଉଁ ବ୍ୟକ୍ତିର ଚିତ୍ରକଳା ପ୍ରତି ରୁଚି ରହିଛି, ସେ ତା'ର ଅବସର ସମୟକୁ ସେଥିରେ ବିନିଯୋଗ କରି ନୂତନ ଆନନ୍ଦ ଲାଭ କରିବା ସଙ୍ଗେ ସଙ୍ଗେ ଏଥିରୁ କିଛି ଆର୍ଥିକ ଲାଭ ମଧ୍ୟ ପାଇଥାଏ । ସେହିପରି ବଗିଚା କାର୍ଯ୍ୟ ପ୍ରତି ରୁଚି ଥିବା ବ୍ୟକ୍ତି ଅବସର ସମୟରେ ବାଡ଼ିବଗିଚା କାର୍ଯ୍ୟରେ ନିଜକୁ ବ୍ୟାପୃତ ରଖିପାରିଲେ ତା'ର ମନ ପ୍ରଫୁଲ୍ଲିତ ହେବା ସଙ୍ଗେ ସଙ୍ଗେ ସେ କିଛି ପନିପରିବା ବା ଫଳପୁଷ୍ପ ଉତ୍ପନ୍ନ କରିବାକୁ ସମର୍ଥ ହୋଇଥାଏ । ଏହାଦ୍ୱାରା ସେ ତଟକା ସବୁଜ ପନିପରିବା ପାଇଥାଏ ଏବଂ ଏଥିସହିତ କିଛି ଆର୍ଥିକ କ୍ଷେତ୍ରରେ ଲାଭବାନ୍ ହୋଇଥାଏ । ମହାତ୍ମାଗାନ୍ଧିଙ୍କର ଅବସର ସମୟ କଟୁଥିଲା ପୁସ୍ତକପାଠ କିମ୍ବା ସୂତାକଟାରେ । ପଣ୍ଡିତ ଜବାହରଲାଲ ନେହେରୁ, ଡଃ ରାଧାକ୍ରିଷ୍ଣନ୍ ତାଙ୍କର ସାମାନ୍ୟତମ ଅବସର ସମୟକୁ ପାଠପଢ଼ାରେ ବିନିଯୁକ୍ତ କରୁଥିଲେ । ଗ୍ରାମର ଯୁବକ ତଥା ବୃଦ୍ଧମାନେ ଅବସର ସମୟକୁ ଆଖଡ଼ାଶାଳ ବା ଭାଗବତ ଟୁଙ୍ଗୀରେ ବିତାଇ ଶରୀର ଓ ମନକୁ ପୁଷ୍ଟ କରିଥାନ୍ତି । ଅନେକ ବ୍ୟକ୍ତି ଚଳଚ୍ଚିତ୍ର ଦର୍ଶନ କରି ବା ରେଡ଼ିଓ ଶ୍ରବଣରେ ଅଥବା ସ୍ଥାନ ଭ୍ରମଣରେ ଅବସର ସମୟକୁ ବିନିଯୋଗ କରନ୍ତି । ଏହି ଅବସର କାଳୀନ ସମୟକୁ ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ କରିବା ପାଇଁ ସରକାର ପର୍ଯ୍ୟଟନସ୍ଥଳୀମାନଙ୍କରେ ବିଶେଷ ବ୍ୟବସ୍ଥାମାନ ଗ୍ରହଣ କରିଛନ୍ତି । ଏହାଦ୍ୱାରା ବ୍ୟକ୍ତିବିଶେଷଙ୍କ ମନ ପ୍ରଫୁଲ୍ଲ ହେବା ସଙ୍ଗେ ସଙ୍ଗେ ସରକାର ମଧ୍ୟ କିଛି ପରିମାଣରେ ଅର୍ଥଲାଭ କରିଥାନ୍ତି । ଏମିତି କିଛି ବ୍ୟକ୍ତି ଅଛନ୍ତି, ଯେଉଁମାନେ ଅର୍ଥ ଶ୍ରାଦ୍ଧ କରି ଆନନ୍ଦ ଲାଭ କରିବାକୁ ଇଚ୍ଛା ପ୍ରକାଶ କରିଥାନ୍ତି । ସେହି କାରଣରୁ ଆଜି ବିଶ୍ୱରେ ପର୍ଯ୍ୟଟନକୁ ଏକ ବିଶେଷ ଶିଳ୍ପର ମାନ୍ୟତା ପ୍ରଦାନ କରାଯିବା ସଙ୍ଗେ ସଙ୍ଗେ ପର୍ଯ୍ୟଟକମାନେ କିପରି କୌଣସି ଅସୁବିଧାର ସମ୍ମୁଖୀନ ନ ହୁଅନ୍ତି ସେଥିପ୍ରତି ସରକାର ସ୍ୱତନ୍ତ୍ର ପର୍ଯ୍ୟଟନ ବିଭାଗ ସୃଷ୍ଟି କରିଥାନ୍ତି । ଏହାଦ୍ୱାରା ସଂସ୍କୃତି ସଂସ୍କୃତି ମଧ୍ୟରେ ଏବଂ ବ୍ୟକ୍ତି ବ୍ୟକ୍ତି ମଧ୍ୟରେ, ଜାତି ଜାତି ମଧ୍ୟରେ ଭାବର ଆଦାନ ପ୍ରଦାନ ସମ୍ଭବ ହୋଇଥାଏ ଓ ବ୍ୟକ୍ତିଟିଏ କିଛି ନୂତନ ଅଭିଜ୍ଞତା ଲାଭ କରିବାକୁ ସମର୍ଥ ହୋଇଥାଏ ।-ଶାହାଜାହାନଙ୍କ ପରି ସମ୍ରାଟ ତାଙ୍କର ଅବସର ସମୟକୁ ବିଭିନ୍ନ ସୌନ୍ଦର୍ଯ୍ୟ ଉପଭୋଗରେ ଅତିବାହିତ କରିଥିଲେ ।

ତାଙ୍କର ସେହିପରି ସୌନ୍ଦର୍ଯ୍ୟାନୁଭୂତିର ପରିଣାମସ୍ୱରୂପ ଆମେ ଲାଭ କରିପାରିବା ତାଜମହଲ ପରି ପୃଥିବୀ ପ୍ରସିଦ୍ଧ କାରୁକଳା ପରିପୂର୍ଣ୍ଣ ସ୍ମୃତିସ୍ତମ୍ଭ । ସାଧାରଣତଃ ଯେଉଁ ଅବସର କିଛି ଅର୍ଥାଗମର ମାଧ୍ୟମ, ସେହିପରି ଅବସରକୁ ମଣିଷ ଗ୍ରହଣ କରିନେବା ଉଚିତ । ମାନସିକ ପୁଷ୍ଟି ପାଇଁ ବିଭିନ୍ନ ପୁସ୍ତକ ଅଧ୍ୟୟନର ଆବଶ୍ୟକତା ରହିଛି । ତେଣୁ ଅବସର ସମୟରେ ପୁସ୍ତକପାଠର ମଧ୍ୟ ବହୁ ଉପଯୋଗିତା ଉପଲବ୍ଧି କରିବା ସହିତ ତା'ର ସଦୁପଯୋଗ କରିବା ଆବଶ୍ୟକ । ସେହି କାରଣରୁ ମଣିଷ ତା'ର ଅବସର ସମୟକୁ କିପରି ଅତିବାହିତ କରିବ, ସେଥିପାଇଁ ପ୍ରଥମେ ଏକ ଯୋଜନା ପ୍ରସ୍ତୁତ କରି ଅନୁରୂପ ଭାବରେ ସେହି କାର୍ଯ୍ୟରେ ନିଜକୁ ଜଡ଼ିତ କରିପାରିଲେ ତା'ର ଅବସରକାଳୀନ ଜୀବନ ଅଧିକ ସରସ ଓ ସୁନ୍ଦର ହୋଇପାରିବ । ଅବସର ସମୟରେ ମଣିଷ ନିଜକୁ ନିଜେ ଗଢ଼ିବା ପାଇଁ ତଥା ଭବିଷ୍ୟତ ପାଇଁ ନିଜକୁ ପ୍ରସ୍ତୁତ କରିବା ପାଇଁ ସମୟ ଲାଭ କରିଥାଏ ।

ଅନେକ ବ୍ୟକ୍ତି ଅଛନ୍ତି ଯେଉଁମାନେ ଅବସର ସମୟର ଅସଦ୍ ବିନିଯୋଗ କରି ନିଜ ପାଇଁ ତଥା ସମାଜ ପାଇଁ ଅନେକ କ୍ଷତି କରିଥାନ୍ତି । ଏହିପରି ବ୍ୟକ୍ତି ଅବସର ସମୟର କିପରି ନିୟୋଜନ କରାଯାଇପାରେ, ସେ ସମ୍ପର୍କରେ ଜାଣିନଥାନ୍ତି । କେତେକ ଛାତ୍ର ଅଛନ୍ତି ଅବସର ସମୟରେ ବିଡ଼ି, ସିଗାରେଟ ବା ଅନ୍ୟାନ୍ୟ ମାଦକଦ୍ରବ୍ୟ ସେବନ କରି କିମ୍ବା ଛକରେ ଆଡ୍ଡାମାରି ଅଥବା ଅସାମାଜିକ କାର୍ଯ୍ୟରେ ନିଜକୁ ବ୍ୟାପୃତ ରଖି ମୂଲ୍ୟବାନ ସମୟକୁ ହତ୍ୟା କରିଥାନ୍ତି । ଅନେକ ବ୍ୟକ୍ତି ଏହି ସମୟକୁ କେବଳ ଶୋଇବସି କଟାଇ ଦେବାକୁ ଚାହାନ୍ତି । ଅଳସୁଆ ମଣିଷର ମସ୍ତିଷ୍କ ସର୍ବଦା ଶଇତାନୀ ଚିନ୍ତାରେ କଟିଥାଏ । ଅର୍ଥାତ୍ ଯେଉଁମାନେ କିଛି କାର୍ଯ୍ୟ କରି ନ ଥାନ୍ତି, ପରର ଅନିଷ୍ଟ ରୂପକ କୁଚିନ୍ତା ସେମାନଙ୍କ ମୁଣ୍ଡରେ ବସାବାନ୍ଧିଥାଏ । ଏହି କାରଣରୁ କେତେକ ବ୍ୟକ୍ତି ସର୍ବଦା ଅନ୍ୟର ଅମଙ୍ଗଳ ଚିନ୍ତା କରନ୍ତି, ବିପଦରେ ପଡ଼ିଥିବା ବ୍ୟକ୍ତିକୁ ଦେଖି ପୈଶାଚିକ ଆନନ୍ଦ ଲାଭ କରନ୍ତି ଅଥବା କୁତ୍ସିତ ରାଜନୀତି କରି ସମାଜ ଜୀବନକୁ କଳୁଷିତ କରିଥାନ୍ତି । ଏହିପରି ବ୍ୟକ୍ତି ସମ୍ପୂର୍ଣ୍ଣ ସ୍ୱାର୍ଥପର । ତେଣୁ ଏମାନେ ଅବସର ସମୟକୁ ସଦାସର୍ବଦା ପରର ଅନିଷ୍ଟ ଚିନ୍ତାରେ ହିଁ କଟାଇଥାନ୍ତି । ଏଥିପାଇଁ ପ୍ରତ୍ୟେକ ମଣିଷ ତା'ର ଅବସର ସମୟକୁ କିଛି ନା କିଛି ଉତ୍ତମ କାର୍ଯ୍ୟରେ ବ୍ୟବହାର କରିବାକୁ ଚେଷ୍ଟା କରିବା ଉଚିତ । ଆମ ସମାଜରେ ଅନେକ ଅନ୍ଧବିଶ୍ୱାସ ଓ କୁସଂସ୍କାର ପରିପୂର୍ଣ୍ଣ ହୋଇ ରହିଛି । ଏହା ସମାଜ ଜୀବନକୁ କଳୁଷିତ କରିଦେଉଛି । ତେଣୁ ଅବସର ସମୟରେ ମଣିଷ ଏହାର ଦୂରୀକରଣ ପାଇଁ ଚେଷ୍ଟା କଲେ ଉଭୟ ବ୍ୟକ୍ତି ଓ ସମାଜର ମଙ୍ଗଳ ହୋଇପାରିବ । ଏଣୁ ଅବସର ସମୟ ସର୍ବଦା ସମାଜ, ପରିବାର ତଥା ବ୍ୟକ୍ତିର ମଙ୍ଗଳଜନକ କାର୍ଯ୍ୟରେ ବ୍ୟାପୃତ ରହିବା ଉଚିତ ।

ସମୟ ସବୁଠାରୁ ଅଧିକ ମୂଲ୍ୟବାନ । ଏହା କାହାରିକୁ ଅପେକ୍ଷା କରେ ନାହିଁ । ତେଣୁ ସମୟର ଯଥାର୍ଥ ବିନିଯୋଗ ହେବା ଆବଶ୍ୟକ । ମଣିଷ ଜୀବନ ପ୍ରତି ଯାହା କାର୍ଯ୍ୟ, ସେହି କାର୍ଯ୍ୟକ୍ଷେତ୍ରରେ ଅବସର ମଣିଷ ନିଜକୁ ଜଡ଼ିତ କରିଦେବା ଉଚିତ । ଅବଶ୍ୟ ଅବସର ବିନୋଦନର

ବିଭିନ୍ନ ଉପାୟ ରହିଛି । ମଣିଷ ତା'ର ଏହି ଅବସର ସମୟକୁ କିପରି କାର୍ଯ୍ୟ କରିବ, ତାହା ତା'ର ରୁଚି ଉପରେ ନିର୍ଭର କରେ । ମାତ୍ର ଏକଥା ସତ୍ୟ, ଯାହା ସମାଜ ଏବଂ ବ୍ୟକ୍ତି ପାଇଁ ଅମଙ୍ଗଳକର, ସେପରି କାର୍ଯ୍ୟରେ ମଣିଷ ନିଜର ଅବସର ସମୟକୁ କଦାପି ବିନିଯୋଗ କରିବା ଅନୁଚିତ୍ । ମଣିଷ ତା'ର ଏହି ସମୟକୁ ଏପରି ବିନିଯୋଗ କରିବା ଆବଶ୍ୟକ, ଯାହା ତା'ର ଶରୀର, ମନ ଓ ସମାଜକୁ ଆନନ୍ଦ ଦେଇପାରୁଥିବ । ଅବସର ବିନୋଦନ ଚିତ୍ତବିନୋଦନ ପାଇଁ ମଙ୍ଗଳକର କାର୍ଯ୍ୟରେ ବ୍ୟବହୃତ ହେଲେ ମଣିଷ ଜୀବନ ସରସ ଓ ସୁନ୍ଦର ହୋଇପାରିବ ।

●

## ସମ୍ବାଦପତ୍ର

**(ଉପକ୍ରମ, ସମ୍ବାଦପତ୍ରର ଇତିବୃତ୍ତ, ସମ୍ବାଦପତ୍ର ପାଠର ଉପଯୋଗିତା, ବିଭିନ୍ନ କ୍ଷେତ୍ରରେ ସମ୍ବାଦପତ୍ରର ଭୂମିକା, ସମ୍ବାଦପତ୍ରର ଧର୍ମ, ଉପସଂହାର)**

ମଣିଷ ଗୋଟିଏ ପରିବାରରେ ଜନ୍ମଗ୍ରହଣ କରିଥିଲେହେଁ, ବିଶ୍ୱର ବିରାଟ ପରିସର ମଧ୍ୟରେ ସେ ନିଜକୁ ଅଙ୍ଗୀଭୂତ କରିପାରିଛି । ତେଣୁ ବ୍ୟକ୍ତି ଆଜି ପରିବାରର ନ ହୋଇ ସମଗ୍ର ବିଶ୍ୱର ଏକ ଅଂଶବିଶେଷରେ ପରିଣତ ହୋଇଛି । ବିଶ୍ୱର ବିଭିନ୍ନ ଘଟଣା, ନିଜର ପରିଚିତ ପୃଥିବୀ, ସାମାଜିକ ପରିବେଷ୍ଟନୀ ତଥା ବିଭିନ୍ନ ଘଟଣାବଳୀ ସହିତ ସେ ସର୍ବଦା ପରିଚିତ ହେବା ଆବଶ୍ୟକ । ଏହାଦ୍ୱାରା ମଣିଷର ବୌଦ୍ଧିକ ବିକାଶ ହେବା ସଙ୍ଗେ ସଙ୍ଗେ ନିଜର ତଥା ବିଶ୍ୱ ସମ୍ପର୍କରେ ସଚେତନତା ଆସିଥାଏ । ଏ କ୍ଷେତ୍ରରେ ମଣିଷକୁ ସମ୍ବାଦପତ୍ର ହିଁ ବିଭିନ୍ନ ଭାବରେ ସହାୟତା କରିଥାଏ । ଆଧୁନିକ ଯୁଗରେ ଟେଲିଭିଜନ, ରେଡ଼ିଓ ଆଦି ଗଣମାଧ୍ୟମଗୁଡ଼ିକ ସାହାଯ୍ୟ କଲେହେଁ, ତା'ର ସମ୍ବାଦ ସୂଚନାଧର୍ମୀ ଓ ମାତ୍ର କେତୋଟି ମୁଖ୍ୟ ଘଟଣାଧର୍ମୀ । ମାତ୍ର ସମ୍ବାଦପତ୍ର ଦ୍ୱାରା ସମସ୍ତ ଘଟଣା ସ୍ପଷ୍ଟ ଓ ବିଶଦ ଭାବରେ ଜଣା ପଡ଼ିଥାଏ । ଗଣମାଧ୍ୟମଗୁଡ଼ିକରେ ଆଞ୍ଚଳିକ ସମ୍ବାଦର ଗୁରୁତ୍ୱ ଆଦୌ ନ ଥାଏ । କିନ୍ତୁ ସମ୍ବାଦପତ୍ରଗୁଡ଼ିକ ଆଞ୍ଚଳିକ ଘଟଣାଗୁଡ଼ିକୁ ମଧ୍ୟ ତନ୍ନ ତନ୍ନ କରି ବର୍ଣ୍ଣନା କରିଥାଏ । ମଣିଷର ସୀମାବଦ୍ଧତାରୁ ତାକୁ ମୁକ୍ତ କରି ବିଶ୍ୱଅଙ୍ଗନରେ ପରିଭ୍ରମଣ କରାଇଦେବାର ଏକମାତ୍ର ଯୋଗ୍ୟତା ସମ୍ବାଦପତ୍ରରେ ହିଁ ରହିଛି । ଏହି ଦୃଷ୍ଟିରୁ ସମ୍ବାଦପତ୍ରଗୁଡ଼ିକର ଭୂମିକା ବିଶେଷ ଗୁରୁତ୍ୱପୂର୍ଣ୍ଣ ।

ସମ୍ବାଦପତ୍ର ଆଧୁନିକ ଚିନ୍ତାଚେତନାର ଅପୂର୍ବ ଫଳଶ୍ରୁତି । ମଣିଷର ସଚେତନ ଚିନ୍ତାଧାରାରୁ ହିଁ ଏହାର ସୃଷ୍ଟି । ସମଗ୍ର ବିଶ୍ୱରେ ପ୍ରଥମେ ଚୀନ ଦେଶରେ ହିଁ ସମ୍ବାଦପତ୍ର ଜନ୍ମ ଗ୍ରହଣ କରିଥିଲା । ତା'ର ପ୍ରାୟ ଚାରିଶହ ବର୍ଷ ପରେ ଇଉରୋପରେ ଇଟାଲୀର ଭେନିସ୍ ସହରରେ ଏହା ଆତ୍ମପ୍ରକାଶ କରିଥିଲା । ଭାରତରେ ମୁଦ୍ରଣଯନ୍ତ୍ର ପ୍ରତିଷ୍ଠା ପୂର୍ବରୁ କେତୋଟି ହାତଲେଖା ସମ୍ବାଦପତ୍ର ପ୍ରକାଶ ପାଇଥିଲେହେଁ ଯଥାର୍ଥରେ ଇଂରେଜମାନଙ୍କ ଆଗମନ ପରେ ଓ ମୁଦ୍ରଣଯନ୍ତ୍ର ପ୍ରତିଷ୍ଠା ପରେ ହିଁ ଏହା ପ୍ରସାରଲାଭ କରିଥିଲା । ୧୭୮୯ ମସିହାରେ ବମ୍ବେରୁ

ପ୍ରଥମେ ଇଂରାଜୀ ସମ୍ବାଦପତ୍ର ''ବମ୍ବେ ହେରାଲ୍ଡ୍'' ଓ ୧୭୯୦ରେ ''ବମ୍ବେ କ୍ୟୁରିଅର'' ପ୍ରକାଶିତ ହୋଇଥିଲା । ୧୭୯୩ ମସିହାରୁ ଗୁଜୁରାଟୀ ଭାଷାରେ ବିଜ୍ଞାପନମାନ ପ୍ରକାଶ ପାଇଥିଲା । ଆଞ୍ଚଳିକ ଭାଷାମାନଙ୍କ ମଧ୍ୟରେ ବଙ୍ଗଳାଭାଷାରେ ଫେବୃଆରୀ ୧୮୧୮ରେ 'ଦିଗ୍‌ଦର୍ଶନ' ମେ ମାସ ୧୮୧୮ରେ ''ସମାଚାର ଦର୍ପଣ'' ପ୍ରକାଶଲାଭ କରିଥିଲା । ଖ୍ରୀଷ୍ଟିଆନ୍ ପାଦ୍ରୀମାନଙ୍କ ଦ୍ୱାରା ଉପରୋକ୍ତ ପତ୍ରିକା ଦୁଇଟି ପ୍ରକାଶିତ ହୋଇଥିଲା । କିନ୍ତୁ ଦେଶୀୟ ଭାଷାରେ ପ୍ରଥମ ପତ୍ରିକା ''ସମ୍ବାଦ କୌମୁଦୀ'' ୧୮୨୧ ମସିହାରେ କଲିକତାରୁ ରାଜା ରାମମୋହନ ରାୟଙ୍କ ପ୍ରଯୋଜନାରେ ପ୍ରକାଶ ଲାଭ କରିଥିଲା । ଓଡ଼ିଶାରେ ପ୍ରଥମେ ୧୮୪୯ ମସିହାରେ ରେଭେରେଣ୍ଡ ମି. ଲେସିଙ୍କ ସମ୍ପାଦନାରେ 'ଜ୍ଞାନାରୁଣ' ପତ୍ରିକା ପ୍ରକାଶ ହୋଇଥିଲା । ଅବଶ୍ୟ ଏହା ପୂର୍ବରୁ ୧୮୪୦ ମସିହାରେ 'କୁଜିବର' ହାତଲେଖା ସମ୍ବାଦପତ୍ର ବାବାଜି ସାଧୁସୁନ୍ଦର ଦାସ ପ୍ରକାଶ କରିଥିଲେ । ଓଡ଼ିଆ ଭାଷାର ପ୍ରଥମ ସମ୍ବାଦପତ୍ର ରୂପେ ''ଉତ୍କଳ ଦୀପିକା'' ୪।୮।୧୮୬୬ରେ ଗୌରୀଶଙ୍କର ରାୟଙ୍କ ସମ୍ପାଦନାରେ ପ୍ରକାଶିତ ହୋଇଥିଲା । ପ୍ରଥମେ ସାପ୍ତାହିକ ଓ ପରେ ଦୈନିକ ସମ୍ବାଦପତ୍ର ରୂପେ ଦୀର୍ଘ ୬୬ ବର୍ଷକାଳ ଓଡ଼ିଆ ଭାଷା, ସାହିତ୍ୟ ଓ ସାମ୍ବାଦିକତାକୁ ପ୍ରଭାବିତ କରିଥିଲା । ଏହାପରେ ଓଡ଼ିଶାରେ ବହୁ ସମ୍ବାଦପତ୍ର ପ୍ରକାଶିତ ହୋଇଥିଲା । ସମ୍ପ୍ରତି ଓଡ଼ିଶାରେ ଯେଉଁ କେତୋଟି ସମ୍ବାଦପତ୍ର ଜନପ୍ରିୟତା ଲାଭ କରିଛନ୍ତି ତନ୍ମଧ୍ୟରୁ ଦୈନିକ ସମାଜ, ପ୍ରଜାତନ୍ତ୍ର, ଧରିତ୍ରୀ, ମାତୃଭାଷା, ସମ୍ବାଦ, ସମୟ, ଅନୁପମ ଭାରତ, ମାତୃଭାଷା ଆଦି ପ୍ରଧାନ ।

ଜନଜୀବନର ମୁଖପତ୍ର ସମ୍ବାଦପତ୍ର । ଜାତିର ନିଜସ୍ୱ ଅହମିକା, ସ୍ୱାଭିମାନ ଓ ସୁଖଦୁଃଖ ସମ୍ବାଦପତ୍ର ମାଧ୍ୟମରେ ପ୍ରକାଶଲାଭ କରିଥାଏ । ଆନ୍ତର୍ଜାତୀୟ, ଜାତୀୟ ଓ ଆଞ୍ଚଳିକ ଘଟଣାବଳୀ ସମ୍ପର୍କରେ ସମ୍ବାଦପତ୍ରଗୁଡ଼ିକ ବିସ୍ତୃତ ବିବରଣୀ ପ୍ରଦାନ କରିଥାନ୍ତି । ସମ୍ବାଦପତ୍ର ପାଠ ଦ୍ୱାରା ମଣିଷର ବୌଦ୍ଧିକ ବିକାଶ ହେବା ସଙ୍ଗେ ସଙ୍ଗେ ଜନସାଧାରଣଙ୍କୁ ବିଭିନ୍ନ ଘଟଣାବଳୀ ସମ୍ପର୍କରେ ଜାଗ୍ରତ କରିଥାଏ । ରାଜନୈତିକ ଚିନ୍ତାଧାରାକୁ ଜାଗ୍ରତ କରେ । ଏଥିରେ ଶାସନ କଳର ତ୍ରୁଟିପୂର୍ଣ୍ଣ ନୀତିକୁ ସମାଲୋଚନା କରାଯାଉଥିବାରୁ ଶାସନ ଦାୟିତ୍ୱରେ ରହୁଥିବା ବ୍ୟକ୍ତିବିଶେଷ ସତର୍କତାର ସହିତ କାର୍ଯ୍ୟପନ୍ଥା ଗ୍ରହଣ କରିବା ସଙ୍ଗେ ସଙ୍ଗେ ନିଜର ତ୍ରୁଟିପୂର୍ଣ୍ଣ ନୀତିକୁ ସଂଶୋଧନ କରିବାର ସୁଯୋଗ ଲାଭ କରିଥାନ୍ତି । ବ୍ୟବସାୟୀଗୋଷ୍ଠୀ ମଧ୍ୟ ବ୍ୟବସାୟ-ବାଣିଜ୍ୟ ସମ୍ପର୍କରେ ଏଥିରୁ ବହୁ ଘଟଣା ଅବଗତ ହୋଇଥାନ୍ତି । ପଣ୍ୟଦ୍ରବ୍ୟର ମୂଲ୍ୟ ବୃଦ୍ଧି ହ୍ରାସ ଆଦି ବିଷୟରେ ଅବଗତ ହୋଇ ନିଜର ବ୍ୟବସାୟ ପରିଚାଳନା କରିଥାନ୍ତି । କୃଷକମାନେ ଏଥିରୁ ବଜାରଦର, କୃଷି ଉତ୍ପାଦନ ପଦାର୍ଥ ତଥା ପାଣିପାଗ ସମ୍ପର୍କୀୟ ସମ୍ବାଦ ଲାଭ କରିବାକୁ ସମର୍ଥ ହୋଇଥାନ୍ତି । ପୁଣି କୃଷି ସମ୍ବନ୍ଧୀୟ ବହୁ ସୂଚନା ଏଥିରେ ପ୍ରଦତ୍ତ ହେଉଥିବାରୁ ନୂତନ କୃଷି ପ୍ରଣାଳୀ ତଥା ସାର, ଔଷଧ ଏବଂ ନୂତନ ବହୁ ଅମଳକ୍ଷମ ବିହନ ଆଦି ବିଷୟରେ ସୂଚନା ରହୁଥିବାରୁ କୃଷକମାନେ ଏଥିରୁ ବିଭିନ୍ନ ଭାବରେ ଉପକୃତ ହୋଇଥାନ୍ତି । ବେକାର ଯୁବକଯୁବତୀଗଣ କେଉଁଠାରେ ଚାକିରି ଖାଲି ରହିଛି, ସେ ସମ୍ପର୍କରେ ସମ୍ବାଦପତ୍ରରୁ ବିବରଣୀ

ଲାଭ କରିଥାନ୍ତି । ସାହିତ୍ୟିକ ବାତାବରଣ ସୃଷ୍ଟି କରିବାରେ ସମ୍ବାଦପତ୍ରର ଭୂମିକା ମଧ ଗୁରୁତ୍ୱପୂର୍ଣ୍ଣ । ଏଥିରେ ସାହିତ୍ୟ ସମ୍ବନ୍ଧରେ ବହୁ ଆଲୋଚନା ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ସର୍ଜନଶୀଳ ସାହିତ୍ୟ ଯଥା–ଗଳ୍ପ, କବିତା, ପ୍ରବନ୍ଧ ଆଦି ମଧ ଏହାର କଳେବର ମଣ୍ଡନ କରିଥାଏ । ବିଶ୍ୱସାହିତ୍ୟର ଧାରାରେ ଯେଉଁ ପରିବର୍ତ୍ତନ ଆସେ ତାହା ମଧ ସମୟେ ସମୟେ ଏଥିରେ ପ୍ରକାଶ ଲାଭ କରିଥାଏ । ବିଶିଷ୍ଟ ବ୍ୟକ୍ତିଙ୍କ ଜନ୍ମ ଦିବସରେ ତାଙ୍କ ସମ୍ପର୍କରେ ଲେଖାମାନ ପ୍ରକାଶ ହୋଇଥାଏ । ବିଭିନ୍ନ ପର୍ବପର୍ବାଣି, ଯାନିଯାତ୍ରା ଆଦି ସମ୍ବନ୍ଧରେ ଲେଖାମାନ ପ୍ରକାଶିତ ହୋଇ ଏକ ସାଂସ୍କୃତିକ ବାତାବରଣ ସୃଷ୍ଟିରେ ଏହା ସହାୟକ ହୋଇଥାଏ । ଜାତୀୟ ପର୍ବପର୍ବାଣି, ସ୍ୱାଧୀନତା ଦିବସ, ପରିବାର କଲ୍ୟାଣ ସପ୍ତାହ, ବିଭିନ୍ନ ଯୋଜନା ସମ୍ବନ୍ଧରେ ଏଥିରେ ଲେଖାମାନ ପ୍ରକାଶ ହେଉଥିବାରୁ ମଣିଷର ସ୍ୱାଧୀନ ଚିନ୍ତାଧାରା ଓ ଜାତୀୟଭାବକୁ ଜାଗ୍ରତ କରିଥାଏ । ବିଭିନ୍ନ ସମୟରେ ବିଶିଷ୍ଟ ବ୍ୟକ୍ତି, ଉତ୍ସବ ଆଦି ସମ୍ପର୍କରେ ବିଶେଷାଙ୍କମାନ ପ୍ରକାଶିତ ହେଉଥିବାରୁ ଏହା ସାଂସ୍କୃତିକ ସଚେତନତା ବୃଦ୍ଧି କରିଥାଏ । ବିଭିନ୍ନ ବିଜ୍ଞାପନ ପ୍ରକାଶ ମାଧ୍ୟମରେ ଜନସାଧାରଣ ବହୁ ନୂତନ ଆବିଷ୍କୃତ ପଦାର୍ଥ ଓ ତା'ର ବଜାରଦର ସମ୍ବନ୍ଧରେ ଜ୍ଞାନଲାଭ କରିଥାନ୍ତି । ନିର୍ବାଚନ ସମୟରେ ବିଭିନ୍ନ ରାଜନୈତିକ ଦଳ ସମ୍ବାଦପତ୍ର ଦ୍ୱାରା ନିଜର ଭବିଷ୍ୟତ କାର୍ଯ୍ୟପନ୍ଥା ତଥା ଦଳୀୟ ଆଦର୍ଶ ସମ୍ବନ୍ଧରେ ସୂଚନା ଦେଉଥିବାରୁ ଜନସାଧାରଣଙ୍କ ରାଜନୈତିକ ସଚେତନତା ବୃଦ୍ଧି ପାଇଥାଏ । ସମ୍ବାଦପତ୍ରର ସମ୍ପାଦକୀୟ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଅଂଶ । ଏଥିରୁ ସମ୍ପାଦକଙ୍କ ଦୃଷ୍ଟିକୋଣର ପରିଚୟ ମିଳିଥାଏ । ସମ୍ପାଦକ ବିଭିନ୍ନ ଜାତୀୟ ତଥା ଅନ୍ତର୍ଜାତୀୟ ଘଟଣାବଳୀ ସମ୍ପର୍କରେ ସୁଚିନ୍ତିତ ମତାମତ ପ୍ରଦାନ କରୁଥିବାରୁ ଏହା ପାଠକର ବୌଦ୍ଧିକ ଚିନ୍ତାକୁ ପ୍ରଭାବିତ କରିଥାଏ । ଏତଦ୍‌ବ୍ୟତୀତ କ୍ରୀଡ଼ା, ଚଳଚ୍ଚିତ୍ର, ଦେଶର ଅର୍ଥନୀତି, ପ୍ରାକୃତିକ ବିପର୍ଯ୍ୟୟ, ପାଣିପାଗ, ଜାତୀୟ ତଥ୍ୟ, ଆନ୍ତର୍ଜାତୀୟ ଘଟଣାବଳୀ, ବୈଜ୍ଞାନିକ ତଥ୍ୟ, ନୂତନ ଉଦ୍ଭାବନ ଓ ଆବିଷ୍କାର, ସ୍ୱାସ୍ଥ୍ୟ, ରୂପଚର୍ଚ୍ଚା, ବଜାରଦର, ବ୍ୟବସାୟ ବାଣିଜ୍ୟ, ବିଜ୍ଞାପନ ଆଦି ବହୁ ବିଷୟରେ ସମ୍ବାଦ ପରିବେଷଣ କରୁଥିବାରୁ ଏହାର ଉପଯୋଗିତାର ତୁଳନା ନାହିଁ ।

ବିଭିନ୍ନ କ୍ଷେତ୍ରରେ ସମ୍ବାଦପତ୍ର ନିଜର ଗୁରୁତ୍ୱପୂର୍ଣ୍ଣ ଭୂମିକା ପ୍ରତିପାଦନ କରିଥାଏ । କୌଣସି ରାଜନୀତିକ ନେତା ବା ସରକାର ଜନସ୍ୱାର୍ଥ ପ୍ରତି ଉଦାସୀନ ଭାବ ପ୍ରକାଶ କଲେ ସମ୍ବାଦପତ୍ରରେ ତା'ର ତୀବ୍ର ସମାଲୋଚନା ପ୍ରକାଶ ପାଇଥାଏ । ଦୁର୍ନୀତି, କଳାବଜାରୀ, ପ୍ରିୟାପ୍ରୀତି ତୋଷଣ ସମ୍ବନ୍ଧରେ କଟୁ ସମାଲୋଚନା ପ୍ରକାଶ କରି ଜନସ୍ୱାର୍ଥର ସୁରକ୍ଷା ଦିଗରେ ଏହା କାର୍ଯ୍ୟପନ୍ଥା ଗ୍ରହଣ କରିଥାଏ । ଜନସାଧାରଣଙ୍କୁ ବିଭିନ୍ନ କ୍ଷେତ୍ରରେ ସଚେତନ କରାଇ ଦେବାର ଦାୟିତ୍ୱ ସମ୍ବାଦପତ୍ରର । ସରକାରଙ୍କ ବିଭିନ୍ନ ନୀତିକୁ ପ୍ରକାଶ କରି ଏଥିରେ ଜନସ୍ୱାର୍ଥ ବିରୋଧୀ ନୀତିକୁ ସମାଲୋଚନା କରାଯାଇଥାଏ । ତେଣୁ ଜନସଚେତନତା ଓ ରାଜନୀତିକ ଚେତନା ଜାଗରଣ କ୍ଷେତ୍ରରେ ସମ୍ବାଦପତ୍ରର ଭୂମିକା ଗୁରୁତ୍ୱପୂର୍ଣ୍ଣ । ସାମାଜିକ ଜାଗରଣ ନିମିତ୍ତ ଏହା ଭିତ୍ତିଭୂମି ପ୍ରସ୍ତୁତ କରିଥାଏ । ସମ୍ବାଦପତ୍ର ଗଣତନ୍ତ୍ରର ଜାଗ୍ରତ ପ୍ରହରୀ । କୌଣସି କ୍ଷେତ୍ରରେ ଗଣତନ୍ତ୍ର ପ୍ରତି ବିପଦ ଆସିବାର ଅନୁଭବ କଲେ ଏହା ତା'ର ତୀବ୍ର ପ୍ରତିକ୍ରିୟା

ପ୍ରକାଶ କରିଥାଏ । ତେଣୁ ଶାସନକଳ ସ୍ୱେଚ୍ଛାଚାରୀ ହେବାକୁ ଭୟ କରିଥାଏ । ଜନସାଧାରଣଙ୍କ ଚିନ୍ତାଧାରାକୁ ମାର୍ଜିତ ଓ ରୁଚିପୂର୍ଣ୍ଣ କରିବା କ୍ଷେତ୍ରରେ ସମ୍ବାଦପତ୍ରର ଗୁରୁଦାୟିତ୍ୱ ରହିଛି । ଗଣସ୍ୱାର୍ଥ ପ୍ରତି ବିପଦ ଦେଖାଦେଲେ, ସମ୍ବାଦପତ୍ରରେ ତା'ର ବିରୋଧ କରାଯାଇଥାଏ । ଏହିସବୁ ଦୃଷ୍ଟିକୋଣରୁ ସମ୍ବାଦପତ୍ରର ଭୂମିକା ଗୋଟିଏ ଗଣତାନ୍ତ୍ରିକ ଦେଶରେ ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ମନେ ହୋଇଥାଏ ।

ସତ୍ୟପ୍ରକାଶ ଓ ଜନସଚେତନତାର ଜାଗରଣ ସମ୍ବାଦପତ୍ରର ମୁଖ୍ୟଧର୍ମ । କାମଳ ସାମ୍ବାଦିକତା ଉଭୟ ଦେଶ ଏବଂ ବ୍ୟକ୍ତିର କ୍ଷତି ସାଧନ କରିଥାଏ । କୌଣସି ସମ୍ବାଦପତ୍ର ଯେକୌଣସି ରାଜନୀତିକ ଦଳର ମୁଖପତ୍ର ରୂପେ କାର୍ଯ୍ୟ କରିବା ଅନୁଚିତ । ନିରପେକ୍ଷ ଓ ବିଚାରବନ୍ତ ଭାବରେ ସମ୍ବାଦପତ୍ରରେ ସମ୍ବାଦ ପ୍ରକାଶ ଲାଭ କଲେ ତାହା ତା'ର ସମ୍ମାନ ବୃଦ୍ଧି କରିଥାଏ । କୌଣସି ଦଳ ବା ବ୍ୟକ୍ତି ପ୍ରତି ଅସୂୟା ପ୍ରକାଶ କରି ସମ୍ବାଦ ପ୍ରକାଶିତ ହେଲେ ସମ୍ବାଦପତ୍ରର ମହତ୍ତ୍ୱ ହାନି ଘଟିଥାଏ । ସମସ୍ତ ପ୍ରକାର ପ୍ରଲୋଭନ ତଥା ଦଳର ଊର୍ଦ୍ଧ୍ୱରେ ରହି ସମ୍ବାଦ ପରିବେଷଣ କରିବା ଏହାର ମୁଖ୍ୟଧର୍ମ । ଠିକ ସମ୍ବାଦର ବିକୃତ ପରିବେଷଣ ଦ୍ୱାରା ଜନମତ ବିଭ୍ରାନ୍ତ ହୋଇଥାଏ । ସ୍ୱାଧୀନ ତଥା ବିଚାରବନ୍ତ ଭାବରେ ସମ୍ବାଦ ପରିବେଷଣ କଲେ ସମ୍ବାଦପତ୍ରର ଗୌରବ ବୃଦ୍ଧି ପାଇଥାଏ । ୧୯୬୬ ମସିହାରେ ଗଠିତ ହୋଇଥିବା ପ୍ରେସ୍ କାଉନ୍‌ସିଲ୍ ସମ୍ବାଦପତ୍ରର ଦୋଷ ତ୍ରୁଟି, ସ୍ୱାଧୀନତା ତଥା ଦିଗ୍‌ଦର୍ଶନ ଦେବାପାଇଁ ସୃଷ୍ଟି ହୋଇଛି । ମିଥ୍ୟା ସମ୍ବାଦ, ଉଦ୍ଦେଶ୍ୟମୂଳକ ଚରିତ୍ର ସଂହାର ବିରୋଧରେ ଏହି ପ୍ରେସ୍ କାଉନ୍‌ସିଲ୍‌ରେ ଅଭିଯୋଗ କରାଗଲେ, ସେ ତା'ର ଉପଯୁକ୍ତ ବିଚାର କରି ସମ୍ବାଦପତ୍ର ବିରୋଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଥାଏ । ନିରପେକ୍ଷତା, ସ୍ୱଚ୍ଛତା ଓ ସତ୍ୟ ସମ୍ବାଦ ପରିବେଷଣ ସମ୍ବାଦପତ୍ରର ପ୍ରଥମ ଧର୍ମ ହେବା ଉଚିତ ।

ସମ୍ପ୍ରତି ସମ୍ବାଦପତ୍ରର ଲୋକପ୍ରିୟତା ବହୁପରିମାଣରେ ବୃଦ୍ଧି ପାଉଛି । ଇଂଲଣ୍ଡ ଓ ଆମେରିକାରେ ଏହି କାରଣରୁ ଗୋଟିଏ ଗୋଟିଏ ସମ୍ବାଦପତ୍ର ଦିନକୁ ଦୁଇଥର ପ୍ରକାଶ ପାଇ ଜନସାଧାରଣଙ୍କୁ ତାଜା ସମ୍ବାଦ ପରିବେଷଣ କରିପାରୁଛି । ଆଜି ଭାରତରେ ପ୍ରାୟ ୧୨, ୨୧୨ଟି ସମ୍ବାଦପତ୍ର ପ୍ରକାଶିତ ହେଉଛି । ଏଥିରୁ ସମ୍ବାଦପତ୍ର ପ୍ରତି ଜନମାନସର ଉଦ୍ଦେଶ୍ୟ ବେଶ୍ ସ୍ପଷ୍ଟ । ଏହି କାରଣରୁ ସମ୍ବାଦପତ୍ରଗୁଡ଼ିକ ଦାୟିତ୍ୱପୂର୍ଣ୍ଣ ଓ ନିରପେକ୍ଷ ଭାବରେ ସମ୍ବାଦ ପରିବେଷଣ କରି ଜନସାଧାରଣଙ୍କୁ ସଙ୍ଗଠିତ କରିବା ଆବଶ୍ୟକ । ଗୋଟିଏ ସ୍ୱାଧୀନ ଦେଶ ପାଇଁ ସମ୍ବାଦପତ୍ରର ଭୂମିକା ବିଶେଷ ଗୁରୁତ୍ୱପୂର୍ଣ୍ଣ । ଜାତିର ସେବା ମନୋବୃତ୍ତି ନେଇ ସ୍ୱାଧୀନ ଚିନ୍ତାଧାରା ଏଥିରେ ପ୍ରକାଶ ପାଇପାରିଲେ ଏହା ଜନସାଧାରଣଙ୍କ ଅଶେଷ ମଙ୍ଗଳ ସାଧନ କରିପାରିବ । ତେଣୁ ଗୋଟିଏ ନିରପେକ୍ଷ ସମ୍ବାଦପତ୍ର ଦେଶର ପ୍ରକୃତ ଗୌରବ ।

●

# କ୍ରୀଡ଼ାର ଆବଶ୍ୟକତା

(ଉପକ୍ରମ, କ୍ରୀଡ଼ାର ଶାରୀରିକ ଓ ମାନସିକ ଉପଯୋଗିତା, ନୈତିକ ଓ ଶୃଙ୍ଖଳିତ ଜୀବନଯାପନ କ୍ଷେତ୍ରରେ ଏହାର ଆବଶ୍ୟକତା, ଜାତୀୟ ଓ ଆନ୍ତର୍ଜାତୀୟ ଐକ୍ୟ ପ୍ରତିଷ୍ଠା, ଆଧୁନିକ ଯୁଗରେ ବିଭିନ୍ନ କ୍ରୀଡ଼ା, ଉପସଂହାର)

କ୍ରୀଡ଼ା ମଣିଷ ଜୀବନର ବହୁ ଉପକାର ସାଧନ କରିଥାଏ । ବଞ୍ଚିବା ପାଇଁ ସଂଗ୍ରାମ ନିମିତ୍ତ ମଣିଷ ମନରେ ଏହା ପ୍ରେରଣା ଭରି ଦେଇଥାଏ । ଶରୀରକୁ କରେ ସୁସ୍ଥ ସବଳ ଓ ମନକୁ କରେ ପ୍ରଫୁଲ୍ଲିତ । ଖେଳୁଆଡ଼ ମନୋବୃତ୍ତି ନେଇ ଜୀବନଯୁଦ୍ଧରେ ଅଗ୍ରସର ହେଲେ ଜୀବନ ହୋଇଉଠେ ସୁଖମୟ । ଏହାଦ୍ୱାରା ଅଳସ ପ୍ରବୃତ୍ତି ଦୂରୀଭୂତ ହୋଇ କର୍ମ ପ୍ରବୃତ୍ତିର ଜାଗରଣ ଘଟେ । ସ୍ୱାଧୀନ ତଥା ଶୃଙ୍ଖଳିତ ଭାବରେ ଜୀବନଯାପନ ନିମିତ୍ତ କ୍ରୀଡ଼ା ହିଁ ମଣିଷକୁ ପ୍ରେରିତ କରିଥାଏ । ସେଥିପାଇଁ ଭାରତ ତଥା ବିଶ୍ୱରେ କ୍ରୀଡ଼ାର ପରମ୍ପରା ବହୁ ପ୍ରାଚୀନ । ମହାଭାରତରେ କୌରବ ଏବଂ ପାଣ୍ଡବମାନଙ୍କ ମଧ୍ୟରେ ବିଭିନ୍ନ କ୍ରୀଡ଼ା ଅନୁଷ୍ଠିତ ହୋଇଥିବାର ପ୍ରମାଣ ରହିଛି । କ୍ରୀଡ଼ା ମୁଖ୍ୟତଃ ଦୁଇଭାଗରେ ବିଭକ୍ତ । ଯଥା—ଅନ୍ତର୍ଦ୍ୱାର କ୍ରୀଡ଼ା (Indoor games) ଓ ବହିର୍ଦ୍ୱାର କ୍ରୀଡ଼ା (Outdoor games) । ଉଭୟ କ୍ରୀଡ଼ା ମଣିଷର ହିତ ସାଧନ କରିଥାଏ । ଅନ୍ତର୍ଦ୍ୱାର କ୍ରୀଡ଼ାରେ ଯେପରି ମାନସିକ ବିକାଶ ହୋଇଥାଏ, ସେହିପରି ବହିର୍ଦ୍ୱାର କ୍ରୀଡ଼ାରେ ଶାରୀରିକ ବିକାଶ ସାଧିତ ହୋଇଥାଏ । ପ୍ରତିଯୋଗିତା ମନୋଭାବର ଉଦ୍ରେକ କରୁଥିବାରୁ ଏହା ମଣିଷର ଉତ୍ତରୋତ୍ତର ଉନ୍ନତି ସାଧନ କରିଥାଏ ।

ସାଧାରଣତଃ ବହିର୍ଦ୍ୱାର କ୍ରୀଡ଼ା ମଣିଷର ଶାରୀରିକ ବିକାଶରେ ସହାୟତା କରିଥାଏ । ଏହି କ୍ରୀଡ଼ା ମଧ୍ୟରେ ହକି, ଫୁଟ୍‌ବଲ୍, କ୍ରିକେଟ୍, ବ୍ୟାଡ଼ମିଟନ୍, କବାଡ଼ି, ଭଲିବଲ୍, ଲନ୍‌ଟେନିସ୍ ଆଦି ଅନ୍ତର୍ଭୁକ୍ତ । ଅନ୍ତର୍ଦ୍ୱାର କ୍ରୀଡ଼ା ମଧ୍ୟରେ ତାସ୍, ପାଲି, ଚେସ୍, କ୍ୟାରମ, ଲୁଡୁ ଆଦିକୁ ଗଣାଯାଇଥାଏ । ଶରୀର ସୁସ୍ଥ ରହିଲେ, ମନ ପ୍ରଫୁଲ୍ଲ ରହିଥାଏ । ଶାରୀରିକ ଶ୍ରମ ହିଁ ମଣିଷକୁ ନିରୋଗ ଓ ସୁସ୍ଥସବଳ କରିଥାଏ । ଅତୀତରେ ରଜପର୍ବ ସମୟରେ ଅଧିକାଂଶ ଲୋକ କବାଡ଼ି ଖେଳ ଖେଳୁଥିଲେ । ବର୍ତ୍ତମାନ ସେହି କ୍ରୀଡ଼ାର ଲୋକପ୍ରିୟତା କମିଯାଇଛି । ତା'ର ସ୍ଥାନ ଗ୍ରହଣ କରିଛି କ୍ରିକେଟ୍ । ଏହା ଏକ ବିଦେଶୀ ଖେଳ ହେଲେହେଁ ଶରୀରର ବିକାଶରେ ବିଶେଷ ସହାୟକ । ସୁସ୍ଥସବଳ ଶରୀର ମଣିଷ ପାଇଁ ଏକ ଆଶୀର୍ବାଦ ସ୍ୱରୂପ । ଶରୀରର ପ୍ରଭାବ ବହୁକ୍ଷେତ୍ରରେ ମନ ଉପରେ ପଡୁଥିବାରୁ ମାନବ ଜୀବନରେ ଶାରୀରିକ କ୍ରୀଡ଼ାର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ବ୍ୟାୟାମ ଦ୍ୱାରା ମଧ୍ୟ ଶରୀରର ବିକାଶ ହୋଇଥାଏ । ମାତ୍ର ଏହାକୁ କୌଣସି କ୍ରୀଡ଼ା ଅନ୍ତର୍ଭୁକ୍ତ କରାଯାଇ ନ ଥାଏ । ନିୟମିତ କ୍ରୀଡ଼ା କସରତ କରୁଥିବା ବ୍ୟକ୍ତିର ଶରୀର ପୁଷ୍ଟ ହେବା ସହିତ ସୁସ୍ଥସବଳ ଜୀବନ ଅତିବାହିତ କରିଥାଏ । ଏହା ରକ୍ତ ସଞ୍ଚାଳନକୁ ତ୍ୱରାନ୍ୱିତ କରିଥାଏ । ଝାଳ ମାଧ୍ୟମରେ ଶରୀରର ଦୂଷିତ ପଦାର୍ଥ ବାହାରକୁ

ବାହାରି ଯାଇଥାଏ । ଅମ୍ଳଜାନ ଶରୀର ମଧ୍ୟକୁ ପ୍ରବେଶ କରିଥାଏ । ମୁକ୍ତବାୟୁ ଚଳପ୍ରଚଳ ହେଉଥିବା ସ୍ଥାନରେ ଖେଳାଯାଉଥିବାରୁ ବ୍ୟାୟାମର ସମସ୍ତ ଉପକାର ଏଥିରୁ ମିଳିଥାଏ । ଝାଳ ବାହାରିବା ଯୋଗୁଁ ଚର୍ମର ନିମ୍ନଭାଗ ପରିଷ୍କାର ହୁଏ ଏବଂ ଅବାଧ ରକ୍ତ ସଞ୍ଚାଳନ ଘଟିବା ଦ୍ୱାରା ରକ୍ତ ମଧ୍ୟ ପରିଷ୍କାର ହୋଇଥାଏ । ହୃଦ୍‌ଯନ୍ତ୍ର ଏବଂ ମାଂସପେଶୀ ଦୃଢ଼ ହୁଏ । ପାକକ୍ରିୟା ଠିକ୍ ରହେ । ଶରୀର ଉଜ୍ଜ୍ୱଳ ଏବଂ ସୁସ୍ଥ ହେବାରୁ କର୍ମପ୍ରବଣତା ବୃଦ୍ଧି ପାଇଥାଏ । ଇଂଲଣ୍ଡରେ ପ୍ରବାଦ ରହିଛି, ବଡ଼ ବଡ଼ ଶାସକ ଓ ରାଜନୀତିଜ୍ଞମାନେ ହ୍ୟାରୋ ଓ ଇଟନ୍‌ର ଖେଳପଡ଼ିଆରୁହିଁ ଆବିର୍ଭୂତ ହୋଇଥାନ୍ତି । ଜଣେ ଶାସକ ହେବାପାଇଁ ଯେଉଁ ଦକ୍ଷତା ଆବଶ୍ୟକ, ତାହା କ୍ରୀଡ଼ା ହିଁ ଯୋଗାଇ ଦେଇଥାଏ । ଅନ୍ତର୍ଦ୍ୱାର କ୍ରୀଡ଼ା ମୁଖ୍ୟତଃ ମଣିଷର ମାନସିକ ଓ ବୌଦ୍ଧିକ ଶକ୍ତିର ବିକାଶରେ ସହାୟକ ହୋଇଥାଏ । ଏହା ବୁଦ୍ଧିକୁ ତୀକ୍ଷ୍ଣ ଏବଂ ମାର୍ଜ୍ଜିତ କରିଥାଏ । ମନକୁ କରିଥାଏ ପ୍ରଫୁଲ୍ଲିତ । ଜୀବନର ବିଭିନ୍ନ କ୍ଷେତ୍ରରେ କିପରି ନିଜକୁ ପ୍ରତିଷ୍ଠିତ କରିହେବ, ସେଥିପାଇଁ ଏହା ନୂତନ କୌଶଳ ବତାଇ ଦେଇଥାଏ । ଶାରୀରିକ ପରିଶ୍ରମ ପରି ମଣିଷର ମାନସିକ ପରିଶ୍ରମର ଉପଯୋଗିତା ରହିଛି । ଅନ୍ତର୍ଦ୍ୱାର କ୍ରୀଡ଼ା ହିଁ ମଣିଷକୁ ତୀକ୍ଷ୍ଣ ବୁଦ୍ଧିମତ୍ତାର ପରିଚୟ ଦେବାକୁ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ବାସ୍ତବ ପରିସ୍ଥିତିକୁ କିପରି ସାମ୍ନା କରାଯାଇପାରିବ, ସେଥିପାଇଁ ସାହସ ଯୋଗାଇ ଦେଇଥାଏ । ଏହି କାରଣରୁ ମାନବ ଜୀବନରେ ଉଭୟ କ୍ରୀଡ଼ାର ଉପଯୋଗିତା ରହିଛି ।

ପ୍ରତ୍ୟେକ ମଣିଷ ଜୀବନରେ ନୈତିକତା ଓ ଶୃଙ୍ଖଳାଜ୍ଞାନର ଗୁରୁତ୍ୱ ଅପରିହାର୍ଯ୍ୟ । ନୀତିହୀନ ଜୀବନକୁ କ୍ରୀଡ଼ା ଗ୍ରହଣ କରିପାରି ନ ଥାଏ । ନିୟମ ଓ ଶୃଙ୍ଖଳା ମଧ୍ୟରେ କ୍ରୀଡ଼ା ପ୍ରତିଯୋଗିତା ଅନୁଷ୍ଠିତ ହୋଇଥାଏ । ନୀତିନିୟମକୁ ପାଳନ କରୁନଥିବା ବ୍ୟକ୍ତିଙ୍କର କ୍ରୀଡ଼ାଜଗତରେ ପ୍ରବେଶ ନିଷେଧ । ଏହି କାରଣରୁ ବହୁ ଉତ୍ତମ ଖେଳାଳିଙ୍କୁ ମଧ୍ୟ କ୍ରୀଡ଼ା ଜଗତରୁ ବହିଷ୍କାର କରାଯାଇଥିବାର ଉଦାହରଣ ବିରଳ ନୁହେଁ । କ୍ରୀଡ଼ାର ନିୟମ କାନୁନକୁ ଅକ୍ଷରେ ଅକ୍ଷରେ ପାଳନ କରାଯାଉଥିବାରୁ ତାହା ମଣିଷକୁ ନୈତିକ ଜ୍ଞାନ ଶିକ୍ଷା ଦେଇଥାଏ । ଖେଳପଡ଼ିଆରୁ ସେ ଯାହା ଶିକ୍ଷାଲାଭ କରେ, ସାମାଜିକ ଜୀବନରେ ତା'ର ପ୍ରୟୋଗ କରି ଉତ୍ତମ ଜୀବନଯାପନ କରିବାକୁ ସମର୍ଥ ହୋଇଥାଏ । ପୁଣି କ୍ରୀଡ଼ାରେ ଶୃଙ୍ଖଳା ଜ୍ଞାନର ମଧ୍ୟ ଜରୁରୀ ଆବଶ୍ୟକତା ରହିଛି । ପ୍ରତ୍ୟେକ କ୍ରୀଡ଼ାବିତ୍ ଶୃଙ୍ଖଳିତ ଭାବରେ ନିଜର କ୍ରୀଡ଼ାନୈପୁଣ୍ୟ ପ୍ରଦର୍ଶନ କରିଥାନ୍ତି । ଦୁଇଦଳ ଅତି ଶୃଙ୍ଖଳିତ ଭାବରେ ପ୍ରତିଯୋଗିତାରେ ଭାଗ ନିଅନ୍ତି । ଏହି ଶୃଙ୍ଖଳାଜ୍ଞାନ ଉପରେ ବହୁପରିମାଣରେ ଜୟ ଏବଂ ପରାଜୟ ନିର୍ଭର କରିଥାଏ । ମନର ଶୃଙ୍ଖଳାରକ୍ଷା କରି ଖେଳାଳି ମନୋଯୋଗ ସହକାରେ ଖେଳ ପ୍ରଦର୍ଶନ କରିଥାଏ । କୌଣସି କ୍ଷେତ୍ରରେ ସେ ନିଜର ସ୍ଥାନ ପରିବର୍ତ୍ତନ କରିନଥାଏ । ଶୃଙ୍ଖଳିତ ସୈନିକ ପରି କ୍ୟାପ୍ଟେନ ଓ ରେଫରୀ ବା ଅମ୍ପେୟାରଙ୍କ ନିର୍ଦ୍ଦେଶ ପାଳନ କରିବାକୁ ଖେଳାଳି ବାଧ୍ୟ ହୋଇଥାଏ ।

କୌଣସି କ୍ଷେତ୍ରରେ ଉତ୍ତେଜିତ ହୋଇ ଶୃଙ୍ଖଳା ଭଙ୍ଗ କଲେ ତାଙ୍କୁ ଖେଳପଡ଼ିଆରୁ ବାହାରିଯିବାକୁ ପଡ଼ିଥାଏ । ଖେଳରେ ପରାଜୟ ବରଣ କଲେ ମଧ ସେ ବିଶୃଙ୍ଖଳିତ ଆଚରଣ ପ୍ରଦର୍ଶନ କରେ ନାହିଁ । ଏହି ଶୃଙ୍ଖଳାଜ୍ଞାନ ତା'ର ସାମାଜିକ ଜୀବନକୁ ମଧ ପ୍ରଭାବିତ କରିଥାଏ । ଜଣେ ଉତ୍ତମ ନାଗରିକ ଭାବରେ ସେ ଜୀବନଯାପନ କରିବାକୁ ଏଥିରୁ ଶିକ୍ଷାଲାଭ କରେ । ମଣିଷର ନୈତିକ ଓ ଶୃଙ୍ଖଳାଜ୍ଞାନର ବିକାଶରେ କ୍ରୀଡ଼ା ବିଶେଷ ସହାୟକ ହୋଇଥିବାରୁ ଏହାର ସାମାଜିକ ଉପଯୋଗିତା ଅତୁଳନୀୟ ।

ଜାତି ଜାତି ମଧରେ, ଦେଶ ଦେଶ ମଧରେ ଓ ରାଷ୍ଟ୍ର ରାଷ୍ଟ୍ର ମଧରେ ଐକ୍ୟ ପ୍ରତିଷ୍ଠା କ୍ଷେତ୍ରରେ କ୍ରୀଡ଼ାର ଉପଯୋଗିତା ରହିଛି । ଖେଳପଡ଼ିଆରେ ଗୋଟିଏ ଦଳ ମଧରେ ଐକ୍ୟ ଏବଂ ସଂହତି ନ ରହିଲେ, ପରାଜୟ ନିଶ୍ଚିତ ହୋଇଥାଏ । ଏହି ଶିକ୍ଷାଯୋଗୁଁ କ୍ରୀଡ଼ା ବିଭିନ୍ନ ଦେଶ ମଧରେ ଐକ୍ୟ ପ୍ରତିଷ୍ଠା କରିଥାଏ । ପୁନରାୟ ବିଭିନ୍ନ ଦେଶର ଖେଳାଳି ଗୋଟିଏ ପଡ଼ିଆରେ ବା ସ୍ଥାନରେ ଏକତ୍ରିତ ହୋଇ ନିଜର କ୍ରୀଡ଼ା ପ୍ରଦର୍ଶନ କରୁଥିବାରୁ ସେମାନଙ୍କ ମଧରେ ଭାବର ଆଦାନ ପ୍ରଦାନ ଘଟେ, ବନ୍ଧୁତାର ସୂତ୍ରରେ ପରସ୍ପରକୁ ଆବଦ୍ଧ କରନ୍ତି । ଏହି ମନୋବୃତ୍ତି ଯୋଗୁଁ ଦେଶ ଦେଶ ମଧରେ ଭ୍ରାତୃତ୍ୱର ବନ୍ଧନ ଦୃଢ଼ୀଭୂତ ହୋଇଥାଏ । ସେହିପରି ଗୋଟିଏ ଦେଶର ବିଭିନ୍ନ ଖେଳାଳିଙ୍କ ମଧରେ ପ୍ରତିଯୋଗିତା ହେଉଥିବାରୁ ସେମାନଙ୍କ ମଧରେ ଜାତୀୟ ଐକ୍ୟ ପ୍ରତିଷ୍ଠା ହୋଇଥାଏ । ଅଲିମ୍ପିକ୍ କ୍ରୀଡ଼ାରେ ବିଶ୍ୱର ସମସ୍ତ ରାଷ୍ଟ୍ର ଭାଗ ନେଉଥିବାରୁ ଦେଶ ଦେଶ ମଧରେ ରହିଥିବା ମତାନ୍ତର ଓ ମନାନ୍ତର ଦୂରୀଭୂତ ହୋଇ ପ୍ରତ୍ୟେକ ଖେଳାଳି ନିଜକୁ ଗୋଟିଏ ପରିବାରର ଅନ୍ତର୍ଭୁକ୍ତ ବୋଲି ମନେ କରିଥାନ୍ତି । ତେଣୁ ଏହା ଜାତୀୟ ଜୀବନକୁ ସଙ୍ଗଠିତ କରିବା ସଙ୍ଗେ ସଙ୍ଗେ ଆନ୍ତର୍ଜାତୀୟ ବୁଝାମଣାରେ ସାହାଯ୍ୟ କରିଥାଏ । ବିଶ୍ୱ ଐକ୍ୟ ପ୍ରତିଷ୍ଠାରେ ଏହି ଦୃଷ୍ଟିରୁ କ୍ରୀଡ଼ାର ମହତ୍ତ୍ୱପୂର୍ଣ୍ଣ ଅବଦାନ ରହିଛି । ମଣିଷ ମନ ମଧରେ ରହିଥିବା ଶତ୍ରୁତାକୁ ଦୂରୀଭୂତ କରି ଏହା ସହୃଦୟତାର ହାତ ଲମ୍ୱାଇ ଦେଇଥାଏ ।

ବିଶ୍ୱରେ ଅଲିମ୍ପିକ୍ କ୍ରୀଡ଼ା ସବୁଠାରୁ ପ୍ରାଚୀନ । ଖ୍ରୀ:ପୂ: ୭୭୬ରେ ଏହାର ଆରମ୍ଭ ହୋଇଥିଲା ଗ୍ରୀସଦେଶର ଅଲିମ୍ପିଆ ନାମକ ସ୍ଥାନରେ । ସେତେବେଳେ ଗ୍ରୀସ୍‌ର ବିଭିନ୍ନ ନଗରରାଜ୍ୟମାନଙ୍କ ମଧରେ ଏହା ଗୋଟିଏ ସହୃଦୟତାର ବାତାବରଣ ସୃଷ୍ଟି କରିବାକୁ ସମର୍ଥ ହୋଇଥିଲା । କିଛି ସମୟ ଧରି ଏହି କ୍ରୀଡ଼ା ବନ୍ଦ ରହିବାପରେ ୧୮୯୬ ମସିହାରୁ ଏହା ପୁନଃ ପ୍ରଚଳିତ ହୋଇଛି ଏବଂ ପ୍ରତି ଚାରିବର୍ଷରେ ଥରେ ଅଲିମ୍ପିକ୍ କ୍ରୀଡ଼ା ଅନୁଷ୍ଠିତ ହେଉଛି । ସମ୍ପ୍ରତି ବିଶ୍ୱ ତଥା ଭାରତରେ ବହୁପ୍ରକାର କ୍ରୀଡ଼ା ପ୍ରତିଯୋଗିତା ହେଉଛି । ଏଥିମଧ୍ୟରୁ ଏସିଆଡ଼, ଡେଭିସ୍‌କପ୍, ଡର୍ବିରେସ୍, ଗ୍ରାଣ୍ଡପ୍ରିକ୍ସ, ଆଗା ଖାଁ କପ୍, ରଣଜୀ ଟ୍ରଫି, ଏମ୍ପାୟର ଗେମ୍‌ସ, ମାରାଥନ ରେସ୍, ସେଫିଲଡ୍, ଏଫ. ଏ. କପ୍, ରୋଭସ୍ କପ୍, ବିଟନ୍ କପ୍

ଆଦି ପ୍ରଧାନ । ଏତଦ୍‌ବ୍ୟତୀତ ବହୁ ଆଞ୍ଚଳିକ କ୍ରୀଡ଼ା ବିଭିନ୍ନ ସମୟରେ ଅନୁଷ୍ଠିତ ହୋଇ ଏକ ମୈତ୍ରୀପୂର୍ଣ୍ଣ ବାତାବରଣ ସୃଷ୍ଟିରେ ସହାୟତା କରିପାରୁଛି । ତେଣୁ କ୍ରୀଡ଼ା ଆଞ୍ଚଳିକ, ଜାତୀୟ ଏବଂ ଅନ୍ତର୍ଜାତୀୟ ଐକ୍ୟର ଏକ ପ୍ରଧାନ ମାଧ୍ୟମ । ଦେଶ ଦେଶ ମଧ୍ୟରେ ରହିଥିବା ଅବିଶ୍ୱାସର ବାତାବରଣକୁ ଏହା ଦୂର କରି ଶାନ୍ତି ପ୍ରତିଷ୍ଠା ଦିଗରେ ସହାୟତା କରୁଥିବାରୁ ଏହାର ସାମାଜିକ ତଥା ଆନ୍ତର୍ଜାତୀୟ ଉପଯୋଗିତା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

କ୍ରୀଡ଼ା କେବଳ ଐକ୍ୟ ବା ସଂହତି ପ୍ରତିଷ୍ଠା ଦିଗରେ ସହାୟତା କରିନଥାଏ । ପରନ୍ତୁ ଚରିତ୍ର ଗଠନ, ସଂଯମ ବ୍ୟବହାର, ଶୃଙ୍ଖଳିତ ଜୀବନଯାପନ କରିବାକୁ ସାହାଯ୍ୟ କରିଥାଏ । ମଣିଷ ମନରୁ ଈର୍ଷା, ହିଂସା ଓ ଦ୍ୱେଷ ଭାବର ଅପସାରଣ କରି ତାକୁ ଗୋଟିଏ ଭ୍ରାତୃତ୍ୱର ରଜ୍ଜୁରେ ବାନ୍ଧିରଖିଥାଏ । ଏହି ଦୃଷ୍ଟିରୁ ସବୁସ୍ତରରେ କ୍ରୀଡ଼ାକୁ ଉତ୍ସାହିତ କରାଯିବା ଉଚିତ । ବିଦ୍ୟାଳୟ ଏବଂ ମହାବିଦ୍ୟାଳୟ ସ୍ତରରେ କ୍ରୀଡ଼ାକୁ ବାଧ୍ୟତାମୂଳକ ପାଠ୍ୟକ୍ରମ ଭାବରେ ଗ୍ରହଣ କରାଯାଇପାରିଲେ, ଏହାର ଯଥାର୍ଥ ଉପଯୋଗିତା ସମସ୍ତେ ଅନୁଭବ କରିପାରିବେ । ଛାତ୍ରମାନଙ୍କର ଶାରୀରିକ ଏବଂ ମାନସିକ ବିକାଶରେ ଏହା ଅତ୍ୟନ୍ତ ସହାୟକ ହୋଇପାରିବ । ଏହି ଦୃଷ୍ଟିରୁ ମାନବ ଜୀବନରେ କ୍ରୀଡ଼ାର ଉପଯୋଗିତାକୁ ଅନୁଭବ କରି ସବୁସ୍ତରରେ ଏହାକୁ ପ୍ରୋତ୍ସାହନ ଦିଆଯିବା ଆବଶ୍ୟକ ।

●

## କର୍ମ ମୋହର ନିଜ ଗୁରୁ ବା ଶ୍ରମର ମୂଲ୍ୟ

(ଉପକ୍ରମ, କର୍ମ ବା ଶ୍ରମର ସ୍ୱରୂପ, ଶ୍ରମର ମହତ୍ତ୍ୱ ଓ ଉପାଦେୟତା, ଶ୍ରମର ମୂଲ୍ୟବୋଧ, ଉପସଂହାର)

କର୍ମ ମାନବ ଜୀବନର ମାନଦଣ୍ଡ । କର୍ମ ବ୍ୟତିରେକେ ଜୀବନ ମୂଲ୍ୟହୀନ । ସେଥିପାଇଁ ଭାଗବତରେ କୁହାଯାଇଛି—"କର୍ମ ମୋହର ନିଜ ଗୁରୁ । ଉଦ୍ଧବ କେତେ ତୁ ପଚାରୁ ।" କର୍ମ ଉପରେ ହିଁ ଭାରତର ସଂସ୍କୃତି ପ୍ରତିଷ୍ଠିତ । ଭଗବାନ୍ ଶ୍ରୀକୃଷ୍ଣ ମହାଭାରତ ଯୁଦ୍ଧ ସମୟରେ ବିଷାଦଗ୍ରସ୍ତ ଅର୍ଜ୍ଜୁନଙ୍କୁ ଉପଦେଶ ଦେଇ କହିଥିଲେ 'କର୍ମଣ୍ୟେ ବାଧିକାରେସ୍ତୁ ମା ଫଳେଷୁ କଦାଚନ ।' ଶ୍ରମ ବା କର୍ମ ପାଇଁ କୁଣ୍ଠିତ ବ୍ୟକ୍ତିର ଜୀବନର କୌଣସି ମୂଲ୍ୟ ନାହିଁ । କର୍ମ କରୁଥିବା ବ୍ୟକ୍ତି ଉପରେ ଈଶ୍ୱର ସନ୍ତୋଷ ପ୍ରକାଶ କରିଥାନ୍ତି । ସେଇଥିପାଇଁ ଇଂରାଜୀରେ କୁହାଯାଇଥାଏ "Duty is God and God is duty." ଶ୍ରମ ବା କର୍ମର ଅନ୍ୟନାମ ଈଶ୍ୱର । ଶ୍ରମ ଯୋଗୁଁ ହିଁ ଆଜି ମଣିଷ ଆଧୁନିକ ହୋଇପାରିଛି । ବଣଜଙ୍ଗଲରୁ ଆସି ସହରରେ

ବାସ କରିପାରିଛି । ପରିଶ୍ରମ ଯୋଗୁଁ ମଣିଷ ନିକଟରେ ଆଜି ଅପରାଜେୟ ବୋଲି କିଛି ନାହିଁ । ଆକାଶଠାରୁ ସାଗର ପର୍ଯ୍ୟନ୍ତ ସବୁ କ୍ଷେତ୍ରରେ ସେ ନିଜର ପ୍ରାଧାନ୍ୟ ବିସ୍ତାର କରିପାରିଛି । ମଣିଷ ଆଜି ଯାହାକିଛି ହୋଇପାରିଛି, ତାହା କେବଳ ତା'ର ଶ୍ରମ ଯୋଗୁ ହିଁ ସମ୍ଭବ ହୋଇଛି । ତେଣୁ ଏହି ଶ୍ରମ ବା କର୍ମ ସର୍ବଦା ମଣିଷର ଜୀବନକୁ ନିୟନ୍ତ୍ରିତ କରିଥାଏ ।

ଏହି କର୍ମ ବା ଶ୍ରମ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ ହୋଇପାରେ । ପ୍ରଥମଟି ଶାରୀରିକ ଶ୍ରମ ଓ ଦ୍ୱିତୀୟଟି ମାନସିକ ଶ୍ରମ । ପ୍ରତ୍ୟେକ ବ୍ୟକ୍ତିର ଜୀବନରେ ଏହି ଦୁଇ କର୍ମର ମହତ୍ତ୍ୱ ସ୍ୱୀକାର୍ଯ୍ୟ । ଭାରତୀୟ ସଭ୍ୟତା ଏବଂ ସଂସ୍କୃତିରେ ଏହି ଦୁଇ ଶ୍ରମର ମହତ୍ତ୍ୱପୂର୍ଣ୍ଣ ଅବଦାନ ରହିଛି । ବଳରାମ ଜଣେ ଦେବତା ହେଲେହେଁ ଲଙ୍ଗଳ ତାଙ୍କର ଅସ୍ତ୍ର । ଏହାଦ୍ୱାରା ସେ ଭୂମି କର୍ଷଣ କରୁଥିଲେ । ସ୍ୱୟଂ ଶ୍ରୀକୃଷ୍ଣ ଗୋଚାରଣ କରୁଥିଲେ । ଜନକ ରାଜା ହେଲେହେଁ ଲଙ୍ଗଳ ଦ୍ୱାରା ଚାଷକାର୍ଯ୍ୟ କରୁଥିବାର ଉଦାହରଣ ରହିଛି । ସମ୍ପଦର ଦେବୀ ଲକ୍ଷ୍ମୀ ନିଜ ହସ୍ତରେ ପାକକ୍ରିୟା ସମ୍ପାଦନ କରୁଥିଲେ । ମହାତ୍ମାଗାନ୍ଧି ଅବସର ସମୟରେ ଚରକାରେ ସୂତା କାଟୁଥିଲେ । ଲିଓ ଟଲଷ୍ଟୟ ପ୍ରଚୁର ସମ୍ପଦର ଅଧିକାରୀ ହୋଇଥିଲେହେଁ କୌଣସି ସମୟରେ ଶାରୀରିକ ଶ୍ରମ ପ୍ରତି ବିମୁଖ ନ ଥିଲେ । ବାଇବେଲରେ ବର୍ଣ୍ଣିତ ପ୍ରଥମ ପୁରୁଷ ଓ ପ୍ରଥମ ନାରୀ ଆଦାମ ଏବଂ ଇଭ୍ କର୍ମପ୍ରବଣତାର ପ୍ରତୀକ । ତେଣୁ କୁହାଯାଇଥାଏ–When Adam delved and Eve span who was then the Gentleman ?

ପାଶ୍ଚାତ୍ୟ ଦେଶମାନଙ୍କରେ ଶ୍ରମ ବିମୁଖତା ଏକ ଅପରାଧ ରୂପେ ପରିଗଣିତ । କର୍ମ ବା ଶ୍ରମ ମଣିଷର ଶାରୀରିକ ଓ ମାନସିକ ଅଭିବୃଦ୍ଧିରେ ସହାୟତା କରିଥାଏ । ଶାରୀରିକ ଶ୍ରମ ମନକୁ ପ୍ରଫୁଲ୍ଲ ରଖେ । କୃଷି, ଶିଳ୍ପ, ଗୃହନିର୍ମାଣ ରାସ୍ତାଘାଟ ନିର୍ମାଣ ଆଦି କ୍ଷେତ୍ରରେ ଶାରୀରିକ ଶ୍ରମର ପ୍ରୟୋଜନ ହୋଇଥାଏ । ଏହା ଶରୀର ପୁଷ୍ଟିରେ ସାହାଯ୍ୟ କରେ । ମାଂସପେଶୀକୁ ଦୃଢ଼ କରେ । ରକ୍ତ ଉତ୍ତମ ରୂପେ ସଞ୍ଚାଳନ ହୋଇଥାଏ । ଅଙ୍ଗପ୍ରତ୍ୟଙ୍ଗର ଉପଯୁକ୍ତ ବିକାଶ ସାଧିତ ହୁଏ । ଅଙ୍ଗାରକାମ୍ଳ ବହିଷ୍କୃତ ହୋଇ ଶରୀର ମଧ୍ୟରେ ଅମ୍ଳଜାନ ପ୍ରବେଶ କରେ । କାର୍ଯ୍ୟ କରିବା ପରେ ମାନସିକ ଶାନ୍ତି ମିଳେ ! ମାନସିକ ଶ୍ରମର ପରିଣାମ ସ୍ୱରୂପ ବିଜ୍ଞାନ କ୍ଷେତ୍ରରେ ନୂତନ ତଥ୍ୟ ଉଦ୍ଭାବିତ ହୋଇପାରିଛି । ସାହିତ୍ୟର ବିକାଶ ସାଧନ ହୋଇଛି । ସାଧାରଣତଃ ଡ଼ାକ୍ତର, ଶିକ୍ଷକ, ବୈଜ୍ଞାନିକ, ଓକିଲ ଆଦି ବ୍ୟକ୍ତିମାନେ ମାନସିକ ପରିଶ୍ରମ କରିଥାନ୍ତି । ଶାରୀରିକ ପରିଶ୍ରମ ସହିତ ମାନସିକ ଶ୍ରମର ସମନ୍ୱୟ ସଂଘଟିତ ହେଲେ ଜୀବନ ହୋଇଥାଏ ମଧୁମୟ । କୃଷିକାର୍ଯ୍ୟ ପରି ଶାରୀରିକ ଶ୍ରମ ଉପରେ ନିର୍ଭରଶୀଳ କାର୍ଯ୍ୟ ଏବଂ ସାହିତ୍ୟ ସୃଷ୍ଟି ପରି ମାନସିକ କାର୍ଯ୍ୟ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ଉଭୟ କରଣୀୟ । ଏହା ମଧ୍ୟରୁ କେହି ହେୟ ନୁହେଁ କିମ୍ବା କେହି ଗୋଟିଏ ମଧ୍ୟ ଶ୍ରେୟ ନୁହେଁ– ଉଭୟର ସମାନ ମର୍ଯ୍ୟାଦା ରହିଛି । ସେଇଥିପାଇଁ B. T. Washington କହିଥିଲେ–

"No race can prosper till it learns that there is as much dignity in tilling a field as in writing a poem.".ଶ୍ରମର ମର୍ଯ୍ୟାଦା ଯେଉଁ ମଣିଷ ଯଥାର୍ଥରେ ହୃଦୟଙ୍ଗମ କରିଥାଏ, ସେ ହିଁ ପ୍ରକୃତରେ ମଣିଷ ପଦବାଚ୍ୟ ।

ଶ୍ରମର ମହତ୍ତ୍ୱ ଓ ଉପାଦେୟତାର ତୁଳନା ନାହିଁ । ଦେଶର ସାମୂହିକ ଉନ୍ନତି ପାଇଁ ଶ୍ରମର ଆବଶ୍ୟକତା ରହିଛି । ବିଶ୍ୱଯୁଦ୍ଧ ପରେ ଧ୍ୱସ୍ତବିଧ୍ୱସ୍ତ ହୋଇଯାଇଥିବା ଜାପାନ, ଶ୍ରମଦ୍ୱାରା ପୁଣି ବିଶ୍ୱର ଶ୍ରେଷ୍ଠ ଦେଶ ରୂପେ ପରିଗଣିତ ହୋଇପାରିଛି । ସେମାନଙ୍କର ପରିଶ୍ରମ ବିଶ୍ୱରେ ଜାପାନକୁ ଅନ୍ୟତମ ସମୃଦ୍ଧି ଦେଶ ରୂପେ ଗଢ଼ି ତୋଳିବାକୁ ସମର୍ଥ ହୋଇପାରିଛି । ପାଶ୍ଚାତ୍ୟ ଦେଶମାନଙ୍କରେ ଯେତେ ଶିକ୍ଷିତ ବ୍ୟକ୍ତି ହେଲେ ମଧ ଯେଉଁ ପଦରେ ଅଧିଷ୍ଠିତ ହୋଇଥିଲେ ବି ଶାରୀରିକ ଶ୍ରମ କରିବାକୁ କୁଣ୍ଠା ପ୍ରକାଶ କରିନଥାନ୍ତି । ଯେଉଁ ଜାତି ଶ୍ରମର ଉପଯୁକ୍ତ ମର୍ଯ୍ୟାଦା ଜାଣିନଥାଏ, ସେ ଦେଶର ଅଗ୍ରଗତି ବା ଉନ୍ନତି କଦାପି ସମ୍ଭବପର ନୁହେଁ । ପରିଶ୍ରମୀ ବ୍ୟକ୍ତି ମରୁଭୂମିରେ ମଧ ସୁନା ଫଳାଇପାରେ । ମାତ୍ର ଅଳସୁଆ ବ୍ୟକ୍ତି ଉର୍ବର ଜମିରୁ କିଛି ଉତ୍ପାଦନ କରିପାରି ନଥାଏ । ପ୍ରତ୍ୟେକ ମଣିଷ ପରିଶ୍ରମ କରିବା ଉଚିତ । ସେଇଥିପାଇଁ ଈଶ୍ୱର ମଣିଷକୁ ହାତ ଏବଂ ଗୋଡ଼ ଦେଇଛନ୍ତି; ମୁଣ୍ଡରେ ବୁଦ୍ଧି ଦେଇଛନ୍ତି । ଡ଼ାରଉଇନ୍‌ଙ୍କ ବିବର୍ତ୍ତନବାଦ ସୂଚାଇ ଦେଇଛି ଯେ ଜେଲି ଏବଂ ଏମିବା ପରି କ୍ଷୁଦ୍ର କୀଟରୁ ମଣିଷସ୍ତର ପର୍ଯ୍ୟନ୍ତ ଉନ୍ନୀତ ହେବା ମୂଳରେ କେବଳ ଶ୍ରମ ହିଁ ରହିଛି । ପ୍ରତିକୂଳ ପରିସ୍ଥିତି ସହିତ ସଂଘର୍ଷ କରି କରି ଆଜି ଆମେ ମଣିଷ ସ୍ତରରେ ଉପନୀତ ହୋଇଛୁ । ବଞ୍ଚିବା ପାଇଁ ଖାଦ୍ୟ ଦରକାର, ମୁଣ୍ଡ ଗୁଞ୍ଜିବା ପାଇଁ ବାସସ୍ଥାନ ଆବଶ୍ୟକ, ଲଜ୍ଜା ନିବାରଣ ନିମିତ୍ତ ବସ୍ତ୍ର ଆବଶ୍ୟକ । ପରିଶ୍ରମ ବ୍ୟତିରେକେ ମଣିଷ ଏହାକୁ ଯୋଗାଡ଼ କରିବ କିପରି ? ସେଇଥିପାଇଁ ଗୋପବନ୍ଧୁ କହିଥିଲେ, 'କର୍ମ ହେଉଛି ମଣିଷ ଜୀବନର ମାନଦଣ୍ଡ ।' ମଣିଷର ସମସ୍ତ ଆବଶ୍ୟକତା ଏହି କର୍ମ ଦ୍ୱାରା ହିଁ ପରିପୂରଣ ହୋଇଥାଏ । ଆଳସ୍ୟପରାୟଣ ଜୀବନ ମଣିଷକୁ ପଙ୍ଗୁ କରିଦେଇଥାଏ । କର୍ମବିମୁଖ ଜୀବନ ନିକଟରେ କିଛି ସ୍ୱପ୍ନ ନ ଥାଏ । ସେ ଅନ୍ୟ ଉପରେ ଗୋଟିଏ ବୋଝ ସଦୃଶ ରହିଥାଏ । ଆଜି ପୃଥିବୀରେ ଯେଉଁମାନେ ବଡ଼ ହୋଇଛନ୍ତି, ତା'ମୂଳରେ ରହିଛି ସେମାନଙ୍କର କର୍ମପ୍ରବଣତା । ଅତୀତର ଇତିହାସର ପୃଷ୍ଠା ଉନ୍ମୋଚନ କଲେ ଜଣାଯାଏ, ଉତ୍କଳୀୟମାନେ ଦିନେ ପରିଶ୍ରମକୁ ନିଜ ଜୀବନର ପ୍ରଧାନ ଲକ୍ଷ୍ୟ ଭାବରେ ଗ୍ରହଣ କରିଥିଲେ । ସେଇଥିପାଇଁ ସେମାନେ ଉନ୍ନତିର ଚରମସୀମାରେ ଉପନୀତ ହୋଇଥିଲେ । ମାତ୍ର ଯେଉଁଦିନ ଆଳସ୍ୟକୁ ସେମାନେ ବରଣ କରିନେଲେ, କର୍ମବିମୁଖ ହେଲେ, ସେହିଦିନଠାରୁ ସେମାନେ ପରାଜିତ ଜୀବନ ଅତିବାହିତ କଲେ । ତାଙ୍କ ଜୀବନରେ ଘଟିଲା ଅଧୋପତନ । ଆଜି ବିଶ୍ୱର ସମସ୍ତ ସମୃଦ୍ଧିଶାଳୀ ରାଷ୍ଟ୍ରର ଅତୀତକୁ ଯଦି ପର୍ଯ୍ୟବେକ୍ଷଣ କରାଯାଏ, ତେବେ ଜଣାଯିବ ଯେ ସେମାନଙ୍କର ସମସ୍ତ ଉନ୍ନତି ମୂଳରେ ରହିଛି ପରିଶ୍ରମ । ଗୋଟିଏ ଜାତିକୁ ଉନ୍ନତିର ଚରମ ସୀମାରେ ଉପନୀତ କରାଇବା କ୍ଷେତ୍ରରେ, ପରିଶ୍ରମର ଅବଦାନ ଅତୁଳନୀୟ । ଜାତି

ଜୀବନରେ ଯାହା ସତ୍ୟ, ବ୍ୟକ୍ତି ଜୀବନରେ ମଧ୍ୟ ତାହା ସତ୍ୟ । ଇତର ପଶୁମାନେ ମଧ୍ୟ ବଞ୍ଚିବା ପାଇଁ ପରିଶ୍ରମ କରିଥାନ୍ତି । କର୍ମ ବା ଶ୍ରମ ମଣିଷର ଚେତନାକୁ ଜାଗ୍ରତ କରିଥାଏ । ପରିଶ୍ରମର ସଫଳତା ପ୍ରାପ୍ତି ପରେ ସେ ଯେଉଁ ଆନନ୍ଦ ଲାଭ କରିଥାଏ, ତାହାକୁ ଅନ୍ୟ କାହା ସହିତ ତୁଳନା କରାଯାଇ ନ ପାରେ । ସେଇଥିପାଇଁ କୁହାଯାଇଛି—God helps those, who help themselves. ଏଠାରେ ଯେଉଁମାନେ ନିଜକୁ ସାହାଯ୍ୟ କରନ୍ତିର ଅର୍ଥ, ଯେଉଁମାନେ ପରିଶ୍ରମୀ । ତେଣୁ କର୍ମୀ ବା ପରିଶ୍ରମୀ ବ୍ୟକ୍ତି ସବୁକ୍ଷେତ୍ରରେ ଆଦର ଲାଭ କରିଥାଏ । ଜୀବନକୁ ସୁସ୍ଥ ସୁନ୍ଦର କରି ଗଢ଼ିବାରେ ସମର୍ଥ ହୋଇଥାଏ ।

ଶ୍ରମର ମୂଲ୍ୟ ନାହିଁ । ମଣିଷର ଆନନ୍ଦ ହିଁ ଏହାର ପ୍ରକୃତ ମୂଲ୍ୟ । ଯାହାଦ୍ୱାରା ମଣିଷର ବ୍ୟକ୍ତିଗତ ଓ ସାମୂହିକ ଜୀବନର ଉନ୍ନତି ହୋଇଥାଏ, ତାହାହିଁ ପ୍ରକୃତ ଶ୍ରମ । ଏହି ଶ୍ରମ ମଣିଷର ନିରବଚ୍ଛିନ୍ନ ସାଧନା ଉପରେ ନିର୍ଭରଶୀଳ । କର୍ମ କରିବା ପାଇଁ ମଣିଷ ମନ ଓ ଦେହରେ ପ୍ରବଳ ଶକ୍ତି ପରିପୂର୍ଣ୍ଣ ହୋଇ ରହିଛି । ତାହାକୁ କେବଳ କାର୍ଯ୍ୟରେ ଲଗାଇବା ଉଚିତ । ଯନ୍ତ୍ର ସଭ୍ୟତାର ବିକାଶ ଦ୍ୱାରା ମଣିଷର ବହୁ କର୍ମ ହାଲୁକା ହୋଇପଡ଼ିଛି । ଏହା ସତ୍ତ୍ୱେ ଅନେକ କର୍ମ ଅଛି, ଯେଉଁଥିରେ ଉଭୟ ଶାରୀରିକ ଏବଂ ମାନସିକ ଶକ୍ତିର ବ୍ୟବହାର ଆବଶ୍ୟକ ପଡ଼ିଥାଏ । ଶରୀରର ବିକାଶ ଓ ପୁଷ୍ଟି ପାଇଁ ଯେପରି ଶାରୀରିକ ଶ୍ରମର ଆବଶ୍ୟକ ରହିଛି, ଅନୁରୂପ ଭାବେ ବୌଦ୍ଧିକ ବିକାଶ ପାଇଁ ମାନସିକ ଶ୍ରମର ଆବଶ୍ୟକ ଅଛି । ଦୁଇଟିର ସମବାୟରେ ହିଁ ମଣିଷର ଯଥାର୍ଥ ବିକାଶ ସାଧିତ ହୋଇଥାଏ । ଆଜି ସବୁସ୍ତରରେ ଶ୍ରମଦାନର ଆବଶ୍ୟକତା ଅନୁଭୂତ ହେଉଛି । ବିଦ୍ୟାଳୟ ଏବଂ ମହାବିଦ୍ୟାଳୟ ସ୍ତରରେ କର୍ମସ୍ପୃହା ଜାଗ୍ରତ ପାଇଁ ଜାତୀୟ ସେବାସଂସ୍ଥା ମାଧ୍ୟମରେ ବ୍ୟବସ୍ଥା କରାଯାଇଛି । ବିଶ୍ୱ ଯେଉଁ ପରିଭାବରେ ଆଗେଇ ଚାଲିଛି, ପରିଶ୍ରମର ଯଥାର୍ଥ ମୂଲ୍ୟ ଅବବୋଧ କରିନପାରିଲେ, ମଣିଷ ସବୁଦିନ ପାଇଁ ପଛରେ ପଡ଼ିଯିବ ।

ବ୍ୟକ୍ତି ହେଉ ବା ଜାତି ହେଉ, ଯିଏ ପରିଶ୍ରମର ମୂଲ୍ୟ ଯେତିକି ବୁଝିଛି; ତା'ର ଉନ୍ନତି ଠିକ୍ ସେତିକି ହୋଇଛି । ମଣିଷର ସଫଳତାର ଆଧାର ହେଉଛି ତା'ର କର୍ମ ବା ସାଧନା । ଶ୍ରମଦ୍ୱାରା ମଣିଷର ମର୍ଯ୍ୟାଦା ବୃଦ୍ଧି ପାଇଥାଏ । ଏହାଦ୍ୱାରା ସେ ନିଜର ଆବଶ୍ୟକତା ପୂରଣ କରିବା ସଙ୍ଗେ ସଙ୍ଗେ ଅନ୍ୟର ଆବଶ୍ୟକତା ପରିପୂରଣରେ ସହାୟତା କରିଥାଏ । ଏହା ବାସ୍ତବତାର ମାପକାଠି; ବିଭିନ୍ନ ସୋପାନ ଆରୋହଣର ଏକ ଏକ ପାବଚ୍ଛ । ପ୍ରତ୍ୟେକ ଶ୍ରମ ଗଠନମୂଳକ ଓ କଲ୍ୟାଣକର ହେବା ଆବଶ୍ୟକ । ଏହାଦ୍ୱାରା ଉଭୟ ବ୍ୟକ୍ତି ଏବଂ ଦେଶର ଉନ୍ନତି ହୋଇଥାଏ । ଶ୍ରମ ଓ କର୍ମଦ୍ୱାରା ମଣିଷ ଅନ୍ୟ ନିକଟରେ ପରିଚିତ ହୋଇଥାଏ । ତେଣୁ ଶ୍ରମ ହିଁ ଯଥାର୍ଥରେ ମଣିଷର ଆଃ ପରିଚୟ ।

●

# ପାଠାଗାର ଆନ୍ଦୋଳନ ବା ଶିକ୍ଷାକ୍ଷେତ୍ରରେ ପାଠାଗାରର ଭୂମିକା

(ଉପକ୍ରମ, ପାଠାଗାର ଆନ୍ଦୋଳନ କ'ଣ ?, ପାଠାଗାର ଆନ୍ଦୋଳନର ଉଦ୍ଦେଶ୍ୟ, ମାନବ ଜୀବନ ଓ ପାଠାଗାର, ଉପସଂହାର)

ଜ୍ଞାନର ଭଣ୍ଡାର ଅସୀମ । ମାତ୍ର ମଣିଷର ଜ୍ଞାନ ସସୀମ । ଅସୀମ ଜ୍ଞାନଭଣ୍ଡାରକୁ ସମ୍ପୂର୍ଣ୍ଣ ଆୟତ୍ତ କରିବା ମଣିଷର ସୀମିତ ଜୀବନକାଳ ମଧ୍ୟରେ କଦାପି ସମ୍ଭବ ନୁହେଁ । ତଥାପି ମଣିଷ କିଛି ଜ୍ଞାନ ଅର୍ଜନ କରିବାକୁ ଚାହେଁ । ତା'ର ଜ୍ଞାନର ଦିଗନ୍ତକୁ ବିସ୍ତୃତ କରିବାକୁ ଚାହେଁ । ମଣିଷର ଆର୍ଥିକ ଅବସ୍ଥା ଏପରି ସ୍ୱଚ୍ଛଳ ନୁହେଁ ଯେ ସେ ଅର୍ଥ ବ୍ୟୟ କରି ବିଶ୍ୱର ସମସ୍ତ ମୂଲ୍ୟବାନ ପୁସ୍ତକ କ୍ରୟକରି ପାଠ କରିପାରିବ । ଏ କ୍ଷେତ୍ରରେ ଜ୍ଞାନପିପାସୁ ପାଠକର ବହୁପରିମାଣର ଅଭାବ କେବଳ ଗୋଟିଏ ପାଠାଗାର ବା Library ପୂରଣ କରିବାକୁ ସମର୍ଥ ହୋଇପାରିବ । ପାଠ ବା ଜ୍ଞାନର ଆକାର ହେଉଛି ପାଠାଗାର । କୁହାଯାଏ, ମଣିଷର ସମସ୍ତ ପଦାର୍ଥକୁ ଭାଗ କରାଯାଇପାରେ । ମାତ୍ର ତା'ର ଜ୍ଞାନକୁ କେହି ତା'ଠାରୁ ଭାଗ ନେଇପାରେ ନାହିଁ । ଜ୍ଞାନର ବିକାଶ କ୍ଷେତ୍ରରେ ପାଠାଗାରର ଭୂମିକା ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ, ଏହାର ସଫଳତା ନିମିତ୍ତ ବିଭିନ୍ନ ସ୍ତରରେ ଉଦ୍ୟମ ଜାରି ରହିଛି ।

ପାଠାଗାରର ଇଂରାଜୀ ପ୍ରତିଶବ୍ଦ Library । ଆଜି ବିଶ୍ୱରେ ଜ୍ଞାନର ଦିଗ୍‌ବଳୟ ଏପରି ବୃଦ୍ଧି ପାଇଛି, ଯାହା ମଣିଷ ବ୍ୟକ୍ତିଗତ ପ୍ରଚେଷ୍ଟାରେ ତାକୁ ଆୟତ୍ତ କରିବା ସମ୍ଭବପର ନୁହେଁ । ପୃଥିବୀରେ ପ୍ରତିମୁହୂର୍ତ୍ତରେ ନୂଆ ନୂଆ ଜ୍ଞାନବିଜ୍ଞାନର ଆବିଷ୍କାର ଚାଲିଛି । ସେହି ଜ୍ଞାନବିଜ୍ଞାନ ରୂପଲାଭ କରୁଛି ପ୍ରକାଶିତ ପୁସ୍ତକାବଳୀରେ । ସୀମିତ ଆୟ ମଧ୍ୟରେ ମଣିଷ ପୃଥିବୀର ନୂତନ ଜ୍ଞାନରାଶି ସମ୍ବଳିତ ପୁସ୍ତକଗୁଡ଼ିକ କ୍ରୟ କରିବା ସମ୍ଭବ ନୁହେଁ । ଏଥିପାଇଁ ଆବଶ୍ୟକ ରହିଛି ଗୋଟିଏ ସମୃଦ୍ଧ ପାଠାଗାରର । ପୃଥିବୀର ପରିବର୍ତ୍ତିତ ରୂପକୁ ଅନୁଭବ କରିବା ପାଇଁ ମଣିଷ ମନରେ ଜାଗିଛି ଅତୃପ୍ତ ତୃଷା । ଏହି ତୃଷାର ପ୍ରଶମନ କେବଳ ପାଠାଗାର ଦ୍ୱାରା ହିଁ ସମ୍ଭବ । ଦେଶର ପ୍ରଗତି ଓ ବିକାଶ ବହୁପରିମାଣରେ ନିର୍ଭର କରେ ଜନସଚେତନତା ଉପରେ । ବିଭିନ୍ନ ପୁସ୍ତକ ଅଧ୍ୟୟନ ମାଧ୍ୟମରେ ଜନସଚେତନତା ଜାଗ୍ରତ ହୋଇଥାଏ । ସେଥିପାଇଁ ସରକାରୀ ଓ ବେସରକାରୀ ସ୍ତରରେ ବିଭିନ୍ନ ସ୍ଥାନରେ ପାଠାଗାର ସ୍ଥାପନ ପାଇଁ ଉଦ୍ୟମ ହୋଇଛି । ସରକାର ପ୍ରତି ବ୍ଲକ୍‌ରେ ଗୋଟିଏ ଲେଖାଏଁ ସାଧାରଣ ପାଠାଗାର ଖୋଲିବାର ଆୟୋଜନ କରିଛନ୍ତି । କେତେକ ସ୍ଥାନରେ ବେସରକାରୀ ଉଦ୍ୟମରେ ମଧ୍ୟ ପାଠାଗାର ଖୋଲାଯାଇଛି । ତେଣୁ ଦେଶସାରା ପାଠାଗାର ଖୋଲିବା ନିମିତ୍ତ ଜନସାଧାରଣଙ୍କ ମନରେ ଯେଉଁ ଉତ୍ସାହ ସୃଷ୍ଟି ହୋଇଛି ଏବଂ ଫଳସ୍ୱରୂପ ବିଭିନ୍ନ ସ୍ଥାନରେ ପାଠାଗାର ଖୋଲିବା ପାଇଁ

ଯେଉଁ ଉଦ୍ୟମ ଜାରି ରହିଛି ସେହି ଉଦ୍ୟମ ପାଠାଗାର ଆନ୍ଦୋଳନ ନାମରେ ପରିଚିତ । ନୂତନ ସୃଷ୍ଟି ନିମିତ୍ତ ମଣିଷ ମନର ଅକୁଣ୍ଠ ଆଗ୍ରହ ହିଁ ଆନ୍ଦୋଳନ । ଏହି ଆନ୍ଦୋଳନ ପଶ୍ଚାତ୍‌ରେ ଜନସଚେତନତାର ତୀବ୍ର ଆଗ୍ରହ ହିଁ ବିଦ୍ୟମାନ । ଜ୍ଞାନର ଦିଗନ୍ତ ବିସ୍ତୃତି ପାଇଁ ପାଠାଗାରର ଆବଶ୍ୟକତା ରହିଛି । ମଣିଷ ମନର ଏହି ଆବଶ୍ୟକତା ପରିପୂରଣ ନିମିତ୍ତ ପାଠାଗାର ଖୋଲିବାର ଉଦ୍ୟମ ପାଠାଗାର ଆନ୍ଦୋଳନ । ସାମାଜିକ ବିକାଶ ପ୍ରକ୍ରିୟାରେ ପ୍ରତ୍ୟେକ ମଣିଷର ଅବଦାନ ରହିଛି । ଚିନ୍ତାଚେତନାରେ ଯେଉଁ ପରିବର୍ତ୍ତନ ଆସୁଛି, ତାହା କେବଳ ବିସ୍ତୃତ ଅଧ୍ୟୟନ ଦ୍ୱାରା ଅବଗତ ହେବା ସମ୍ଭବ । ମଣିଷର ଅଧ୍ୟୟନ ପିପାସାର ଚରିତାର୍ଥ ପୁସ୍ତକ ଦ୍ୱାରା ପରିପୂରଣ ହୋଇଥାଏ ଓ ଏହି ମୂଲ୍ୟବାନ ପୁସ୍ତକାବଳୀ ପାଠାଗାରରେ ସଂରକ୍ଷିତ ରହିଥାଏ । ପାଠାଗାରର ଯଥୋଚିତ ବିନିଯୋଗ ଜ୍ଞାନର ପରିସରକୁ ବିସ୍ତୃତ କରେ । ସେଥିପାଇଁ ପ୍ରତ୍ୟେକ ଦେଶରେ ଏକ ଉନ୍ନତ ମାନର ପାଠାଗାର ସେ ଦେଶର ଅମୂଲ୍ୟ ସମ୍ପଦ ରୂପେ ପରିଗଣିତ ହୋଇଥାଏ ।

ପାଠାଗାର ଆନ୍ଦୋଳନର ମୁଖ୍ୟ ଉଦ୍ଦେଶ୍ୟ ଜନସାଧାରଣଙ୍କ ମଧ୍ୟରେ ସଚେତନତା ସୃଷ୍ଟି କରିବା । ଜନସାଧାରଣଙ୍କୁ ଦେଶର ବିକାଶ ଯୋଜନା ସହିତ ପରିଚିତ କରାଇବା ଏବଂ ସେମାନଙ୍କ ଜ୍ଞାନର ଉତ୍କର୍ଷ ସାଧନ ନିମିତ୍ତ ପାଠାଗାର ଆନ୍ଦୋଳନର ଆବଶ୍ୟକତା ରହିଛି । ସାଧାରଣ ଜନତା ଦେଶ ଓ ବିଶ୍ୱର ବହୁ ବିଷୟ ସମ୍ପର୍କରେ ଅନଭିଜ୍ଞ । ଏପରିକି ସେମାନେ ସେମାନଙ୍କର ପରିବେଶ ସମ୍ପର୍କରେ ମଧ୍ୟ ସଚେତନ ନୁହନ୍ତି । ଅନେକ ସମୟରେ ସେମାନଙ୍କର ଅନ୍ଧବିଶ୍ୱାସ, କୁସଂସ୍କାର ଓ ଅନ୍ଧବୁଝାମଣା ସାମାଜିକ ସଙ୍କଟ ସୃଷ୍ଟି କରିଥାଏ । ଏହାଦ୍ୱାରା ଦେଶର ପ୍ରଗତି ବହୁପରିମାଣରେ ବାଧାପ୍ରାପ୍ତ ହୁଏ । ଜ୍ଞାନର ସୀମିତତା ଯୋଗୁଁ ସାଧାରଣ ଲୋକେ ସେମାନଙ୍କ ପିଲାମାନଙ୍କର ଉପଯୁକ୍ତ ତତ୍ତ୍ୱ ନେବାରେ ଅସମର୍ଥ ହୋଇଥାନ୍ତି । ଏପରିକି ପିଲାମାନଙ୍କର ଅଧ୍ୟୟନ ନିମିତ୍ତ ସେମାନେ ଆଦୌ ଦୃଷ୍ଟି ଦେଇ ନଥାନ୍ତି । ଏହି କାରଣରୁ ପୃଥିବୀରେ ଭାରତର ସାକ୍ଷରତା ସଂଖ୍ୟା ସବୁଠାରୁ କମ୍ । ଜ୍ଞାନାଭାବରୁ ପରିବେଶର ଉପଯୁକ୍ତ ସୁରକ୍ଷା କରିପାରୁ ନ ଥିବାରୁ ବହୁ ବିପର୍ଯ୍ୟୟର ସମ୍ମୁଖୀନ ହୋଇଥାନ୍ତି । ଭାଗ୍ୟ ଏବଂ ଭଗବାନ୍‌ଙ୍କ ଦ୍ୱାହି ଦେଇ ଏହାକୁ ସାଧାରଣ ଭାବରେ ଗ୍ରହଣ କରିନେଇଥାନ୍ତି । ଲୋକମାନଙ୍କର ଏହି ଅନ୍ଧବିଶ୍ୱାସ, କୁସଂସ୍କାର ତଥା ସାମାଜିକ ଅସଚେତନତା କେବଳ ଜ୍ଞାନର ବିକାଶ ଦ୍ୱାରା ହିଁ ଦୂରୀକରଣ ହୋଇପାରିବ । ବିଜ୍ଞାନ, ବାଣିଜ୍ୟ, ପରିବେଶ, କଳା, ସାହିତ୍ୟ ଆଦି ବିଭିନ୍ନ ବିଷୟରେ ବହୁ ପୁସ୍ତକ ରଚିତ ହୋଇଛି । ଏହାର ସଦ୍‌ବ୍ୟବହାର ମଣିଷ ମନର ଅଜ୍ଞାନ ଅନ୍ଧକାରକୁ ଦୂର କରିଥାଏ । ମଣିଷର ମନକୁ ମାର୍ଜିତ ଓ ସୁସଂସ୍କୃତ କରେ । ତା'ର ଜ୍ଞାନର ଅୟନକୁ ସମୃଦ୍ଧ କରେ । ଏହା କେବଳ ଗୋଟିଏ ଉନ୍ନତମାନର ପାଠାଗାର ଦ୍ୱାରା ସମ୍ଭବ ହୋଇଥାଏ । ଜୀବନ ସହିତ ଜ୍ଞାନର ସମ୍ପର୍କ କିପରି ଅଚ୍ଛେଦ୍ୟ, ତାହା ପାଠାଗାର ବ୍ୟବହାର ଦ୍ୱାରା ସ୍ପଷ୍ଟ ହୋଇଥାଏ । ସ୍ୱାମୀ ବିବେକାନନ୍ଦଙ୍କଠାରୁ ଆରମ୍ଭ କରି ମହାତ୍ମାଗାନ୍ଧିଙ୍କ ପର୍ଯ୍ୟନ୍ତ

ସମସ୍ତେ ଉନ୍ନତ ପାଠାଗାର ପ୍ରତିଷ୍ଠା ଉପରେ ଗୁରୁତ୍ୱ ପ୍ରଦାନ କରିଛନ୍ତି । ଡଃ. ଏସ୍. ଏସ. ରଙ୍ଗନାଥନ୍ ପାଠାଗାରର ଗୁରୁତ୍ୱ ସମ୍ପର୍କରେ ମତଦେଇ କୁହନ୍ତି–Libraries are not mere store houses. They are rich springs from which knowledge flows out to irrigate the wide field of education and culture, ପାଠାଗାର ଆନ୍ଦୋଳନ ମାଧ୍ୟମରେ ଦେଶରୁ ଅଶିକ୍ଷା ଓ କୁଶିକ୍ଷା ଦୂରୀକରଣ କରାଯାଇପାରେ । ପ୍ରତ୍ୟେକ ସଭ୍ୟ ରାଷ୍ଟ୍ରର ପାଠାଗାର ଗୋଟିଏ ଗୋଟିଏ ଅମୂଲ୍ୟ ସମ୍ପଦ । ଏହାଦ୍ୱାରା ଦେଶର ଯେଉଁ ପରିମାଣରେ ଲାଭ ହୋଇଥାଏ, କାଗଜ କଲମର ହିସାବରେ ତା'ର କଳନା କରିବା ସମ୍ଭବପର ନୁହେଁ । ମଣିଷକୁ ନିଜ ଗୋଡ଼ରେ ଠିଆ ହେବାପାଇଁ ଯେଉଁ ଜ୍ଞାନ ସହାୟତା କରିଥାଏ, ତାହା କେବଳ ପାଠାଗାର ଆନ୍ଦୋଳନ ମାଧ୍ୟମରେ ସମ୍ଭବ ହୋଇଥାଏ ।

ମାନବ ଜୀବନ ସହିତ ପାଠାଗାରର ସମ୍ବନ୍ଧ ଅତ୍ୟନ୍ତ ନିବିଡ଼ । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କୁ ଜ୍ଞାନରାଶି ବିତରଣ କରିବା ପାଠାଗାରର ଧର୍ମ । Pierce Butterଙ୍କ ମତାନୁଯାୟୀ ଏହା ଏକ social organisation and necessary unit for transmitting the accumulated knowledge of society to individual members through books and other graphic and accountic materials. ମାନବିକ ଅପୂର୍ବ ଅନୁଭୂତି ଓ ଚିନ୍ତାଧାରାର ଗନ୍ତାଘର ହେଉଛି ପାଠାଗାର । ଏହା କେବଳ ବର୍ତ୍ତମାନର ମଣିଷ ସମାଜ ପାଇଁ ନୁହେଁ; ଭବିଷ୍ୟତ ବଂଶଧରମାନଙ୍କ ନିମିତ୍ତ ମଧ୍ୟ ଜ୍ଞାନ, ଅନୁଭବ ଓ ଅନୁଭୂତିର ବିତରଣ କରିଥାଏ । ବ୍ୟକ୍ତିର ବ୍ୟକ୍ତିତ୍ୱ ବିକାଶରେ ଏହା ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ପାଠାଗାରର ଉଦ୍ଦେଶ୍ୟ ମାନବର ଅଜ୍ଞାନତାର ଆବିଷ୍କାର ପୂର୍ବକ, ତା' ମଧ୍ୟରେ ଜ୍ଞାନର ଉଦୟ କରାଇବା; ସାମାଜିକ ଜୀବନକୁ ସ୍ଥାଣୁତ୍ୱରୁ ମୁକ୍ତି ପ୍ରଦାନ କରିବା । ପଠନ ଦ୍ୱାରା ଜଣେ ନିଜର ଅଜ୍ଞାନତା ଆବିଷ୍କାରପୂର୍ବକ ତା'ର ଦୂରୀକରଣ ନିମିତ୍ତ ଚେଷ୍ଟା କରିଥାଏ । ଅଭିଜ୍ଞତାର ବିସ୍ତାର ଓ ମାନସିକ ଅଭ୍ୟାସ ତଥା ଅନୁଶୀଳନ ଏବଂ ସର୍ବୋପରି ବୌଦ୍ଧିକ ବିକାଶ ନିମିତ୍ତ ଏହାର ଅବଦାନ ଅତୁଳନୀୟ । ମାନବିକ ଜ୍ଞାନ, ସଂସ୍କୃତିର ସଂରକ୍ଷଣ ଓ ସଂଗ୍ରହ କ୍ଷେତ୍ରରେ ପାଠାଗାରର ଭୂମିକା ମହତ୍ତ୍ୱପୂର୍ଣ୍ଣ । ଜ୍ଞାନର ବିକାଶ, ଜାତି ଜାତି ମଧ୍ୟରେ ସାଂସ୍କୃତିକ ଓ ବୌଦ୍ଧିକ ବିନିମୟ, ପରସ୍ପର ମଧ୍ୟରେ ବୁଝାମଣା ନିମିତ୍ତ ଏହା ସରଣୀ ପ୍ରସ୍ତୁତ କରିଥାଏ । ଗଣସଚେତନତା ସୃଷ୍ଟି କ୍ଷେତ୍ରରେ ପାଠାଗାରର ଅମୂଲ୍ୟ ଅବଦାନ ଚିରସ୍ମରଣୀୟ । ମାନବ ଜୀବନକୁ ବହୁଦିଗରୁ ପାଠାଗାର ସମୃଦ୍ଧ କରିଥାଏ । ବସ୍ତୁବାଦୀ ଅନ୍ଧମଣିଷକୁ ଜୀବନର ପ୍ରକୃତ ରାହା ଦେଖାଇଥାଏ ପାଠାଗାର । ଜୀବନ ସହିତ ପାଠାଗାରର ଏହି ପ୍ରତ୍ୟକ୍ଷ ସମ୍ପର୍କ, ତାକୁ ମାନବ ଜୀବନର ଗଠନକାରୀର ମର୍ଯ୍ୟାଦା ପ୍ରଦାନ କରିଥାଏ ।

ସମ୍ପ୍ରତି ପାଠାଗାର ଆନ୍ଦୋଳନ ଏକ ଜାତୀୟ କର୍ତ୍ତବ୍ୟର ଆଭିମୁଖ୍ୟ ଗ୍ରହଣ କରିବାକୁ ଯାଉଛି । ଏ କ୍ଷେତ୍ରରେ ଜନସାଧାରଣ, ସରକାର ଏବଂ ବିଭିନ୍ନ ସ୍ୱେଚ୍ଛାସେବୀ ଅନୁଷ୍ଠାନ–

ସମସ୍ତଙ୍କର ସହଯୋଗ ରହିବାର ଆବଶ୍ୟକତା ଅଛି । ସରକାର ବିଭିନ୍ନ ସ୍ଥାନରେ ପାଠାଗାର ଖୋଲିବା ନିମିତ୍ତ ଯେଉଁ କାର୍ଯ୍ୟକ୍ରମ ଗ୍ରହଣ କରିଛନ୍ତି, ତାକୁ ଅକୁଣ୍ଠ ସହଯୋଗ ମିଳିଲେ ତାହା ନିଶ୍ଚିତ ଭାବରେ ସାକାର ହୋଇପାରିବ । କୁସଂସ୍କାର ଓ ଅନ୍ଧବିଶ୍ୱାସର କଳା ଅନ୍ଧକାରରୁ ମୁକ୍ତି ପାଇଁ ପାଠାଗାର ଆନ୍ଦୋଳନ ଆଲୋକର ଦିଶା ପ୍ରଦାନ କରିବ । ନିରକ୍ଷରତା ଦୂରକରି ସାମାଜିକ ବିକାଶ ସାଧନ କ୍ଷେତ୍ରରେ ଏହା କ୍ରାନ୍ତିକାରୀ ଭୂମିକା ଗ୍ରହଣ କରିପାରିବ । ଆଜି ବିଶ୍ୱସ୍ତରରେ ପାଠାଗାର ଆନ୍ଦୋଳନ ନିମିତ୍ତ ଜନମତ ସୃଷ୍ଟି ହୋଇଛି । ସରକାରୀ ସ୍ତରରେ ମଧ୍ୟ ଏହି ଆନ୍ଦୋଳନ ପାଇଁ ସକ୍ରିୟ ସହଯୋଗ ମିଳୁଛି । ଏପରିସ୍ଥଳେ ଏହା ଏକ ଜନଆନ୍ଦୋଳନର ରୂପରେଖ ଗ୍ରହଣ କରି ନ ପାରିଲେ ତା'ର ଉଦ୍ଦେଶ୍ୟ ସଫଳ ହୋଇପାରିବ ନାହିଁ । ଯେଉଁମାନେ ଶିକ୍ଷିତ ସେମାନେ ଗ୍ରାମ ଗ୍ରାମ ବୁଲି ଏଥିପାଇଁ ଜନସମର୍ଥନ ଆଦାୟ କରିବା ଉଚିତ । ପ୍ରତ୍ୟେକ ବ୍ୟକ୍ତିଙ୍କ ମନରେ ପଠନ ପିପାସା ସୃଷ୍ଟି କରାଇ ସେମାନଙ୍କୁ ଜାତୀୟ ସ୍ରୋତରେ ସାମିଲ କରିବା ବର୍ତ୍ତମାନ ସମୟର ବଡ଼ ଆହ୍ୱାନ ହୋଇଛି । ଏହା ଦ୍ୱାରା କେବଳ ବ୍ୟକ୍ତିର ବ୍ୟକ୍ତିତ୍ୱର ବିକାଶ ହେବ ନାହିଁ, ତା'ସହିତ ସାମାଜିକ ଜୀବନରେ ମଧ୍ୟ କ୍ରାନ୍ତିକାରୀ ପରିବର୍ତ୍ତନ ସଂଘଟିତ ହୋଇପାରିବ । ସେହି ଦୃଷ୍ଟିରୁ ବର୍ତ୍ତମାନ ପାଠାଗାର ଆନ୍ଦୋଳନ ଆମ ସମସ୍ତଙ୍କ ପାଇଁ ଏକ ଜାତୀୟ ଓ ନୈତିକ କର୍ତ୍ତବ୍ୟରେ ପରିଣତ ହୋଇଛି କହିଲେ ଭୁଲ୍ ହେବ ନାହିଁ ।



## ସମୟାନୁବର୍ତ୍ତୀତା

**(ଉପକ୍ରମ, ସମୟାନୁବର୍ତ୍ତିତାର ତାତ୍ପର୍ଯ୍ୟ, ସମୟର ସତ୍ ଉପଯୋଗ, ସମୟାନୁବର୍ତ୍ତିତା ଓ ଜାତୀୟ ବିକାଶ, ସମୟାନୁବର୍ତ୍ତୀତା ନ ହେବାର କୁପରିଣତି, ଉପସଂହାର)**

ସମୟ ଚିର ଗତିଶୀଳ । ଗଡ଼ିଯିବା ଏହାର ଧର୍ମ । ସମୟ କାହାକୁ ଅପେକ୍ଷା କରେ ନାହିଁ । ବରଂ ସମୟକୁ ଆଖି ଆଗରେ ରଖି ତା'ର ଉଚିତ୍ ବିନିଯୋଗ କରିବା ମଣିଷର କର୍ତ୍ତବ୍ୟ । ବହିଯିବା ପାଣି ପରି ଗଡ଼ିଯିବା ସମୟ କେବେ ପଛକୁ ଫେରିପାରେ ନାହିଁ । ସେଇଥିପାଇଁ କୁହାଯାଇଥାଏ ସମୟ ଏବଂ ଜୁଆର କାହାରିକୁ ଅପେକ୍ଷା କରେ ନାହିଁ । "Time and tide waits for none" ଚିର ଚଳମାନ ସମୟ ନିକଟରେ ସମସ୍ତେ ସମାନ । ତା'ନିକଟରେ ଭେଦଭାବ ନାହିଁ କି ଜାତି ଅଜାତିର ସ୍ଥାନ ନାହିଁ । ତା'ର ଆବିର୍ଭାବ ହଠାତ୍ ହୁଏ । ସେହି ସମୟକୁ ଯିଏ ଉପଯୋଗ କରିପାରିଲା, ତାହାକୁ କେବଳ କୁହାଯାଇ ପାରିବ ସମୟାନୁବର୍ତ୍ତୀ । ମଣିଷର ସ୍ୱଳ୍ପ ଜୀବନ ପରିଧି ମଧ୍ୟରେ ସମୟକୁ ଧରିରଖି ପାରିବା ସମ୍ଭବ ନୁହେଁ । ମଣିଷ ପାଇଁ ପ୍ରତିଟି ମୁହୂର୍ତ୍ତ ମୂଲ୍ୟବାନ୍ ଏବଂ ଉପାଦେୟ । ନିଷ୍ଫଳ କର୍ମର

କୌଣସି ମୂଲ୍ୟ ନାହିଁ । ସମୟର ଅବହେଳା ମାନବ ସଭ୍ୟତାର ବିକାଶର ଅନ୍ତରାୟ । ଜୀବନର ଆଶା ଅନେକ । ସେହି ଅସୀମ ଆଶାକୁ ସୀମିତ ସମୟ ପରିଧି ମଧ୍ୟରେ ବାନ୍ଧି ରଖିବା ଆଦୌ ସମ୍ଭବପର ନୁହେଁ । ତେଣୁ ସମୟ ସହିତ ତାଳଦେଇ ତା'ର ସଦୁପଯୋଗ କରିବାରେ ହିଁ ମାନବ ଜୀବନର ସାର୍ଥକତା ନିହିତ ।

ସମୟାନୁବର୍ତ୍ତିତାର ଅର୍ଥ ହେଉଛି ସମୟର ଅଯଥା ବିନିଯୋଗ ନ କରି ଉଚିତ ସମୟରେ ଉଚିତ କର୍ତ୍ତବ୍ୟ କରିବା ଆବଶ୍ୟକ । କାରଣ ସମୟ ଅତୀବ ମୂଲ୍ୟବାନ୍ । ଯାହା ବର୍ତ୍ତମାନ କିଛି ସମୟ ପରେ ତାହା ଅତୀତରେ ପରିଣତ ହୋଇଥାଏ । ଠିକଣା ସମୟକୁ ଜଗି ରଖି କାର୍ଯ୍ୟ କରିବା ମଣିଷ ପକ୍ଷରେ ସର୍ବାଦୌ ଆବଶ୍ୟକ । ଶିଶୁ କାଳରେ ଯାହା କରାଯାଇପାରେ, ଯୌବନ ସମୟରେ ତାହା କରାଯାଇ ନ ପାରେ । ସମୟର ଦୁରୂପଯୋଗ କରୁଥିବା ବ୍ୟକ୍ତିକୁ ସେଥିପାଇଁ କୁହାଯାଇଥାଏ—'ଯାହା ନ ହୋଇଛି ବାଳକାଳେ ତାହା ହେବକି କାଳେ କାଳେ ।' ତେଣୁ ବାଳ କାଳର କାର୍ଯ୍ୟ ଅନ୍ୟ କୌଣସି ସମୟରେ ସମାହିତ ହେବା ଅସମ୍ଭବ । ଯିଏ କର୍ତ୍ତବ୍ୟପରାୟଣ, ସମୟ ସଚେତନ, ସେ ହିଁ କେବଳ ସଫଳତାର ପାହାଚ ଅତିକ୍ରମ କରିବାକୁ ସମର୍ଥ । ଜୀବନର ବିକାଶ ସମୟର ଉଚିତ ଉପଯୋଗରେ ହିଁ ସମ୍ଭବ । ମଣିଷ ନିକଟରେ ପ୍ରତିଟି ମୁହୂର୍ତ୍ତ ମୂଲ୍ୟବାନ । ଅଧ୍ୟୟନର ଏକ ନିର୍ଦ୍ଦିଷ୍ଟ ସମୟ ରହିଛି । ସେହି ସମୟ ବ୍ୟତିରେକେ ଅନ୍ୟ ସମୟରେ ତା'ର କୌଣସି ମୂଲ୍ୟ ରହେ ନାହିଁ । ଏଣୁ ଲୋକପ୍ରବାଦ ରହିଛି—ଛତୁଉଠା କାଠ ଓ ନିଶଉଠା ପାଠର କୌଣସି ମୂଲ୍ୟ ନାହିଁ ! ସମୟାନୁବର୍ତ୍ତିତା ମଣିଷକୁ କରେ ଶୃଙ୍ଖଳିତ ଓ ସଂଯତ । ଯୌବନ ସମୟ କର୍ମ କରିବାର ଉପଯୁକ୍ତ ସମୟ । ଅଥଚ ଅନେକ ଯୁବକ ଏହି ସମୟରେ ଅଯଥା କଥାବାର୍ତ୍ତା, ମୂଲ୍ୟହୀନ କ୍ରିୟାକଳାପରେ ସମୟ ବିତାଇ ଦେଇଥାନ୍ତି । ପରବର୍ତ୍ତୀ ସମୟରେ ସେମାନେ ଯେତେବେଳେ ଅନୁତାପ କରନ୍ତି, ସେତେବେଳେ ସମୟ ଚାଲିଯାଇଥାଏ କେଉଁ ଅପହଞ୍ଚ ରାଇଜକୁ । ତେଣୁ ସମୟର ଯଥାର୍ଥ ଉପଯୋଗଦ୍ୱାରା ମଣିଷ ଜୀବନର ସାମଗ୍ରିକ ବିକାଶ ସାଧିତ ହୋଇଥାଏ । ଯେପରି ନାବିକଟିକୁ ଜୁଆର ସମୟର ଯଥାର୍ଥ ଉପଯୋଗ କରିବାକୁ ପଡ଼ିଥାଏ, ଠିକ୍ ସେହିପରି କର୍ମପ୍ରବଣ ମଣିଷକୁ ସମୟର ଉପଯୁକ୍ତ ବିନିଯୋଗ କରିବାକୁ ହୋଇଥାଏ । ତେଣୁ କୌଣସି ଅବାନ୍ତର କଥା ବା ଉଦ୍ଭଟ ଚିନ୍ତାରେ ସମୟକୁ ନଷ୍ଟ ନ କରି ତା'ର ଉଚିତ ଉପଯୋଗ କରିବାଦ୍ୱାରା ସମୟାନୁବର୍ତ୍ତିତାର ଯଥାର୍ଥ ପରିଚୟ ମିଳିଥାଏ ।

ଆଗରୁ କୁହାଯାଇଛି ସମୟର ସତ୍ ଉପଯୋଗ କରିବା ମଣିଷର ପ୍ରଥମ କର୍ତ୍ତବ୍ୟ । ସମୟର ସତ୍ ଉପଯୋଗର ଅର୍ଥ ଜୀବନର ସତ୍ ଉପଯୋଗ । କାଳ ଗଡ଼ାଇ ଚାଲିଲେ ସମୟ ହାତଛଡ଼ା ହୋଇଯାଇଥାଏ । ନେଡ଼ିଗୁଡ଼ କହୁଣୀକୁ ବହିଗଲା ପରେ ତାକୁ ପୁଣି ହାତ ପାପୁଲିକୁ ଫେରାଇଆଣିବା କଷ୍ଟକର । ସେଥିପାଇଁ ଆମର ମହତ୍ ପୁରୁଷମାନେ କହିଛନ୍ତି ବେଳ ଥାଉଁ

ଥାଉଁ ସାବଧାନ ହୁଅ । ଅର୍ଥାତ୍ ସମୟକୁ ଆଖିଆଗରେ ରଖି ସତର୍କତାର ସହିତ କାର୍ଯ୍ୟପନ୍ଥା ଗ୍ରହଣ କରାଯିବା ଆବଶ୍ୟକ । ଆମ ପ୍ରାଚୀନ ପୁରାଣମାନଙ୍କରେ ଏପ୍ରକାର ଉଦାହରଣ ବିରଳ ନୁହେଁ । ଲଙ୍କାର ରାଜା ରାବଣର ଇଚ୍ଛା ଥିଲା ସ୍ୱର୍ଗକୁ ଶିଡ଼ି ବାନ୍ଧିବ । ନର୍କପୁରୀର ଅନ୍ଧକାରକୁ ଦୂରେଇ ଦେଇ ଚାହିଁଥିଲା ତାକୁ ଆଲୋକିତ କରିବାକୁ । ଲବଣ ସମୁଦ୍ରକୁ ଶୁଖାଇ ପରିଣତ କରିବାକୁ ଚାହୁଁଥିଲା କ୍ଷୀରସମୁଦ୍ରରେ । ଅଥଚ ନିଜର ଅବହେଳା ଯୋଗୁଁ ମୃତ୍ୟୁ ପର୍ଯ୍ୟନ୍ତ ସେ କିଛି କରିପାରି ନ ଥିଲା । ତା'ର ମୃତ୍ୟୁ ସମୟ ଆଗତ ହୁଅନ୍ତେ ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ର ରାବଣ ନିକଟରୁ କିଛି ରାଜନୀତି ଶିକ୍ଷା କରିବାକୁ ଯିବାରୁ ସେ କହିଥିଲା 'ଯାହା କରିବାକୁ ଚିନ୍ତା କରୁଛନ୍ତି, ତାହା ବର୍ତ୍ତମାନ କରନ୍ତୁ ।' ଏହାର ତାତ୍ପର୍ଯ୍ୟ ହେଉଛି କୌଣସି ବିଷୟରେ ଯୋଜନା କରି ତାକୁ ଆଜି କରିବି, କାଲି କରିବି—ଏପରି ସମୟ ଗଡ଼ାଇ ଚାଲିଲେ କାର୍ଯ୍ୟଟି ତ ସମାପନ ହୋଇପାରେ ନାହିଁ, ପରନ୍ତୁ ସମୟର ଦୁରୂପଯୋଗ ହୋଇଥାଏ । ମହାତ୍ମାଗାନ୍ଧି ସେଇଥିପାଇଁ ସମୟକୁ ଗୋଡ଼େ ଗୋଡ଼େ ଜଗିଥିଲେ । କୌଣସି ସମୟକୁ ସେ ଅଯଥାରେ ବ୍ୟୟ କରିବାକୁ ଦେଉନଥିଲେ । ସମୟାନୁବର୍ତ୍ତୀ ପାଶ୍ଚାତ୍ୟ ବ୍ୟକ୍ତିଗଣ ମଧ୍ୟ ତାଙ୍କର ସମୟାନୁବର୍ତ୍ତିତା ଲକ୍ଷ୍ୟକରି ତଟସ୍ଥ ହୋଇଯାଉଥିଲେ । Indian Punctualityର ସମାଲୋଚନାକୁ ଗାନ୍ଧିଜୀ ସମ୍ପୂର୍ଣ୍ଣ ଭାବରେ ଦୂର କରିପାରିଥିଲେ । ବିନୋବା ମଧ୍ୟ ସମୟକୁ ଆଦୌ ନଷ୍ଟ ହେବାକୁ ଦେଉନଥିଲେ । ମଣିଷ ଜୀବନରେ ଏତେ କାର୍ଯ୍ୟ କରିବାକୁ ଅଛି ଯେ, ତା'ନିକଟରେ ପ୍ରତିଟି ସମୟ ମୂଲ୍ୟବାନ୍ । ଯେଉଁମାନେ ସମୟକୁ ଅବହେଳା କରନ୍ତି, ସେମାନେ ଜୀବନରେ ବହୁତ କିଛି ହରାଇଥାନ୍ତି । ଛାତ୍ରଟିଏ ଉଚିତ ସମୟର ବିନିଯୋଗ ଅଭାବରୁ ପରୀକ୍ଷାରେ ଅକୃତକାର୍ଯ୍ୟ ହୋଇଥାଏ । ସମୟର ସମୁଦ୍ରତଟରେ କେତେ ପଦଚିହ୍ନ ଲିଭିଯାଏ, ତା'ର ଠିକଣା ନାହିଁ । ମାତ୍ର ପଦଚିହ୍ନକୁ କିଛି ସମୟ ପାଇଁ ବଞ୍ଚାଇ ରଖିବାକୁ ହେଲେ ଏହାର ଉପଯୁକ୍ତ ବିନିଯୋଗ କରିବାକୁ ହିଁ ପଡ଼ିବ । ସେହିଥିରେ ହିଁ ମଣିଷ ଜୀବନର ସାର୍ଥକତା ନିହିତ ।

ଜାତୀୟ ବିକାଶରେ ସମୟାନୁବର୍ତ୍ତିତାର ମୁଖ୍ୟ ଭୂମିକା ରହିଛି । ଯେଉଁ ଜାତି ଯେତିକି ପରିମାଣରେ ସମୟ ସଚେତନ; ସେହି ଜାତି ସେତିକି ପରିମାଣରେ ସମୃଦ୍ଧିଶାଳୀ । ଉଦାହରଣସ୍ୱରୂପ ଜାପାନ ଜାତିକୁ ଗ୍ରହଣ କରାଯାଇପାରେ । ବିଶ୍ୱଯୁଦ୍ଧ ପରେ ଏହି ଜାତିଟିର ଆର୍ଥିକ ମାନଦଣ୍ଡ ସମ୍ପୂର୍ଣ୍ଣ ଭୁଷୁଡ଼ି ପଡ଼ିଥିଲା । ଦେଶ ହୋଇଥିଲା ଧ୍ୱସ୍ତବିଧ୍ୱସ୍ତ । ମାତ୍ର ଜାପାନବାସୀଙ୍କର କଠିନ ପରିଶ୍ରମ ଓ ସମୟର ଯଥାର୍ଥ ବିନିଯୋଗ ଯୋଗୁଁ ଆଜି ସେ ବିଶ୍ୱରେ ଅନ୍ୟତମ ଶ୍ରେଷ୍ଠ ସମୃଦ୍ଧିଶାଳୀ ରାଷ୍ଟ୍ରରୂପେ ପରିଗଣିତ । ଜର୍ମାନ୍ ଜାତି ପକ୍ଷରେ ମଧ୍ୟ ଏହି କଥାଟି ସତ୍ୟ । ପାଶ୍ଚାତ୍ୟ ଦେଶର ଅଧିକାଂଶ ବ୍ୟକ୍ତି ସମୟ ସଚେତନ । ସେହି କାରଣରୁ ସେମାନେ ସମୃଦ୍ଧିକୁ ସର୍ବୋଚ୍ଚ ଶିଖରରେ ଉପନୀତ କରାଇପାରିଛନ୍ତି । ସମୟର ଉଚିତ ଉପଯୋଗ

କରୁଥିବା ବ୍ୟକ୍ତି ଶୃଙ୍ଖଳିତ ଓ ସଂଯତ । ଚରିତ୍ର ଗଠନରେ ମଧ୍ୟ ଏହାର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ । ଆଳସ୍ୟକୁ ଏହା ଘୃଣା କରେ । ଶରୀରକୁ ନିରୋଗ କରେ । ପ୍ରତ୍ୟେକ ମଣିଷ ନିକଟରେ ସମୟର ସର୍ବୋଚ୍ଚ ମୂଲ୍ୟ ରହିଛି । ଯଦି କୃଷକ ଠିକ୍ ସମୟରେ କୃଷି କାର୍ଯ୍ୟ ନକରେ, ଛାତ୍ର ଅଧ୍ୟୟନ ନକରେ, ବ୍ୟବସାୟୀ ବ୍ୟବସାୟ ନ କରେ, ତା'ର ଉନ୍ନତି ଅସମ୍ଭବ ହୋଇଥାଏ । ସମୟର ପ୍ରତିକୂଳରେ ଗତିକରିବା ମଣିଷ ପକ୍ଷେ ସମ୍ଭବ ନୁହେଁ । ସେଥିପାଇଁ ସମୟ ଅନୁକୂଳରେ ଗତି କରିବା ଆବଶ୍ୟକ । ଆଜି ଚୀନ୍, ଜାପାନ, ଇଂଲଣ୍ଡ, ଜର୍ମାନ୍, ଆମେରିକା ଆଦି ଦେଶଗୁଡ଼ିକ ଏପରି ଭାବରେ ଗତିକରିବାର ଏକମାତ୍ର କାରଣ ହେଉଛି, ସେମାନଙ୍କର ସମୟଜ୍ଞାନ । ସମୟର କିପରି ବିନିଯୋଗ କରାଯାଇପାରେ, ତାହା ତାଙ୍କୁ ଜଣା । ତେଣୁ ଉଭୟ ବ୍ୟକ୍ତି ଏବଂ ଜାତିର ବିକାଶ ପାଇଁ ସମୟର ଉଚିତ ବ୍ୟବହାର ଅତ୍ୟନ୍ତ ଜରୁରୀ ।

ସମୟାନୁବର୍ତ୍ତୀତା ନ ହେବାର ବହୁ କୁପରିଣତି ରହିଛି । ଅତୀତରେ ଭାରତୀୟମାନେ ସମୟର ଉଚିତ ବିନିଯୋଗ କରୁଥିବାରୁ ସେମାନେ ସଭ୍ୟତା ଏବଂ ସମୃଦ୍ଧିର ଉଚ୍ଚ ଶିଖରରେ ଉପନୀତ ହୋଇଥିଲେ । ଗୁରୁକୁଳ ଆଶ୍ରମରେ ଆଚାର୍ଯ୍ୟଗଣ ତାଙ୍କର ଶିଷ୍ୟମାନଙ୍କୁ ଠିକ୍ ସମୟରେ ଠିକ୍ କାର୍ଯ୍ୟ କରିବାକୁ ଶିକ୍ଷା ପ୍ରଦାନ କରୁଥିଲେ । ବ୍ରାହ୍ମ ମୁହୂର୍ତ୍ତରୁ ଶଯ୍ୟାତ୍ୟାଗ କରିବାଠାରୁ ସନ୍ଧ୍ୟାରେ ପ୍ରାର୍ଥନା ପର୍ଯ୍ୟନ୍ତ ସମୟକୁ ସେମାନେ ଉଚିତ ବ୍ୟବହାର କରୁଥିଲେ । ମାତ୍ର ଯେବେଠାରୁ ଭାରତୀୟମାନେ ସମୟର ଅପଚୟ କଲେ, ସେବେଠାରୁ ଆରମ୍ଭ ହେଲା ତା'ର ଅଧୋପତନ । ଜାତି ହେଲା ପରାଧୀନ । ଆଳସ୍ୟ ତାକୁ ଗ୍ରାସ କରିଗଲା । ଭୁଲିଗଲା ସେ ତା'ର ଶୌର୍ଯ୍ୟ । ସ୍ୱାଧୀନତା ପରେ ମଧ୍ୟ ଏହି ତ୍ରୁଟିର ସଂଶୋଧନ ହୋଇପାରି ନାହିଁ । ରାଜନୀତିକ ନେତା ଠିକ୍ ସମୟରେ ସଭାକୁ ଆସନ୍ତି ନାହିଁ । ଛାତ୍ରମାନେ ଠିକ୍ ସମୟରେ ପାଠ ପଢ଼ନ୍ତି ନାହିଁ । ରାସ୍ତାର ଠିକ୍ ସ୍ଥାନରେ ଆମେ ଚାଲିବା ଶିଖି ନାହୁଁ । ସେଇଥିପାଇଁ ଭାରତବର୍ଷରେ ଅଧିକ ଦୁର୍ଘଟଣା ଘଟିଥାଏ । କାର୍ଯ୍ୟାଳୟରେ କର୍ମଚାରୀ ଯଥାସମୟରେ ପହଞ୍ଚନ୍ତି ନାହିଁ । ତେଣୁ ଆଜିର କାର୍ଯ୍ୟ ଆଜି ସରେ ନାହିଁ । ଆବଶ୍ୟକହୀନ କଥାବାର୍ତ୍ତା, ଖେଳରେ ଆମର ବହୁ ସମୟ ନଷ୍ଟ ହୋଇଥାଏ । ସବୁକ୍ଷେତ୍ରରେ ଏହି ଅନିୟମିତତା ଆଜି ଆମର ଅଧୋପତନର କାରଣ ହୋଇଛି । ତେଣୁ ସମୟର ସଦ୍‌ବ୍ୟବହାର ନ ହେବା ପର୍ଯ୍ୟନ୍ତ ଆମେ କିମ୍ବା ଆମର ଜାତି ଅନ୍ୟମାନଙ୍କ ସହିତ ପ୍ରଗତିପଥରେ ତାଳଦେଇ ଗତି କରିପାରିବ ନାହିଁ ।

ଜୀବନରେ ଅନେକ କାର୍ଯ୍ୟ ସାଧନ କରିବାର ଆବଶ୍ୟକତା ରହିଛି । କାରଣ ଜୀବନ ଏକ କର୍ମକ୍ଷେତ୍ର । ଯେଉଁମାନେ ଉଦ୍ୟମୀ, ସେମାନେ ସବୁକାର୍ଯ୍ୟ ଠିକ୍ ସମୟରେ କରୁଥିବାରୁ ବିଭିନ୍ନ କ୍ଷେତ୍ରରେ ଆଶାତୀତ ଫଳ ଲାଭ କରିଥାନ୍ତି । ଅଳସୁଆ ବ୍ୟକ୍ତି ଜୀବନକୁ ପ୍ରତିକ୍ଷେତ୍ରରେ ପଥଭ୍ରଷ୍ଟ କରିଥାଏ । ସମୟାନୁବର୍ତ୍ତୀ ବ୍ୟକ୍ତି ସବୁକ୍ଷେତ୍ରରେ ସଫଳତା ଲାଭ

କରିଥାଏ । ସମୟର ଯଥାର୍ଥ ମୂଲ୍ୟ ହୃଦୟଙ୍ଗମ କରି ମଣିଷ କର୍ମକ୍ଷେତ୍ରରେ ଅଗ୍ରସର ହେବା ଆବଶ୍ୟକ । ସମୟାନୁବର୍ତ୍ତୀତା ମଣିଷର ସର୍ବଶ୍ରେଷ୍ଠ ମହତ୍ ଗୁଣ । ଏହାର ଯଥାର୍ଥ ଉପଯୋଗରେ ବ୍ୟକ୍ତି ଏବଂ ଦେଶର ଉନ୍ନତି ହୋଇଥାଏ । ତେଣୁ ସମୟ ସହିତ ପାଦମିଳାଇ ତା'ର ସେହି ଅମୂଲ୍ୟ ମୁହୂର୍ତ୍ତଗୁଡ଼ିକୁ ବିନିଯୋଗ କରିପାରିଲେ ବ୍ୟକ୍ତି ତଥା ଜାତୀୟ ଜୀବନ ଉନ୍ନତି କରିପାରିଥାଏ ।



## ଆମର ଜାତୀୟ ସଙ୍ଗୀତ

**(ଉପକ୍ରମ, ଜାତୀୟ ସଙ୍ଗୀତର ଆବଶ୍ୟକତା, ଆମର ଜାତୀୟ ଗୀତ ଓ ଜାତୀୟ ସଙ୍ଗୀତ, ଜାତୀୟ ସଙ୍ଗୀତ ସମ୍ପର୍କରେ ସମାଲୋଚନା, ଜାତୀୟ ସଙ୍ଗୀତର ଭାବ, ଉପସଂହାର)**

ଜାତୀୟ ସଙ୍ଗୀତ ଜାତି ଜୀବନର ଆଶାଆକାଂକ୍ଷାର ପ୍ରତୀକ; ଜାତିର ଗର୍ବ, ସ୍ୱାଭିମାନ ଓ ଗୌରବର ପ୍ରକାଶକ । ପ୍ରତ୍ୟେକ ଜାତିର ଏକ ଏକ ଜାତୀୟ ସଙ୍ଗୀତ ରହିଛି । ଏହାରି ମଧ୍ୟରେ ପ୍ରତୀକିତ ହୋଇଥାଏ ଜାତୀୟ ଜୀବନ ଓ ସ୍ୱଦେଶପ୍ରୀତି; ସଂସ୍କୃତି ଓ ପରମ୍ପରା । ଜାତିକୁ ସଙ୍ଗଠିତ କରିବା କ୍ଷେତ୍ରରେ ଏହାର ଭୂମିକା ଅତି ମହତ୍ତ୍ୱପୂର୍ଣ୍ଣ । ଗୋଟିଏ ଜାତିର ସ୍ୱପ୍ନ ଏବଂ ସଂକଳ୍ପ ହେଉଛି ତା'ର ଜାତୀୟ ସଙ୍ଗୀତ । ଜାତିର ମାନସିକତା ମଧ୍ୟ ବହୁପରିମାଣରେ ଏଥିରେ ହୋଇଥାଏ ରୂପାୟିତ । ଉଦାରତା ଓ ମହାନତାର ବାଣୀ ପ୍ରଚାରକରି ଜାତିକୁ କରିଥାଏ ସଙ୍ଗଠିତ୍ । ତେଣୁ ଯେକୌଣସି ଜାତି ପକ୍ଷରେ ତା'ର ଜାତୀୟ ପତାକା ସଦୃଶ ଜାତୀୟ ସଙ୍ଗୀତ ହେଉଛି ଅମୂଲ୍ୟ ସମ୍ପଦ ।

ଜାତୀୟ ସଙ୍ଗୀତ ସର୍ବଦା ସଂସ୍କାରଗତ । ଜାତିର ଆଦର୍ଶ ଓ ମହାନତା ଏଥିରେ ପ୍ରତିଫଳିତ ହୋଇଥିବାରୁ ଜାତୀୟ ଜୀବନକୁ ସଙ୍ଗଠିତ କରିବା କ୍ଷେତ୍ରରେ ଏହାର ଅବଦାନ ଅତୁଳନୀୟ । ମୁଖ୍ୟତଃ ଜାତି ପରାଧୀନ ଥିବା ସମୟରେ, ଅସନ୍ତୋଷ ଓ ସଂଘର୍ଷ ମଧ୍ୟ ଦେଇ ଗତି କରୁଥିବାବେଳେ ଏବଂ ଜାତିର ଆତ୍ମବିଶ୍ୱାସରେ ସଙ୍କଟ ଦେଖାଦେବା ସମୟରେ ଏହାର ମହତ୍ତ୍ୱ ବୃଦ୍ଧି ପାଇଥାଏ । ଦେଶର ଐତିହ୍ୟ, ପରମ୍ପରା ଓ ସାମାଜିକ ସ୍ଥିତି ସମ୍ପର୍କରେ ସୂଚନାଦେଇ ସେ ଜାତି ପ୍ରାଣରେ ସୃଷ୍ଟି କରେ ନବ ଉନ୍ମାଦନା । ଆତ୍ମବିଶ୍ୱାସହୀନ ଜାତି ପ୍ରାଣରେ ଜାତୀୟତାର ନବତରଙ୍ଗ ଖେଳାଇ ଦେଇଥାଏ । ଏକ ନିର୍ଦ୍ଦିଷ୍ଟ ସମୟରେ ଏହା ରଚିତ ହୋଇଥିଲେହେଁ, ଆବେଦନ ଦୃଷ୍ଟିରୁ ଏହା ହୋଇଉଠିଥାଏ ସାର୍ବକାଳିକ । ଯୁଗଯୁଗ ଧରି ଜାତିକୁ ଦିଗ୍‌ଦର୍ଶନ ଦେଇ, ଜାତିପ୍ରାଣରେ ଜାତୀୟ ଚେତନାକୁ ଜାଗ୍ରତ କରି ରଖେ । ମହାନ୍ ପରମ୍ପରାର ଦାୟାଦ ଭାବରେ ସେ ଜାତିର ଆତ୍ମବିଶ୍ୱାସକୁ ବଳବତ୍ତର ରଖି ଯେକୌଣସି ପରିସ୍ଥିତିର ମୁକାବିଲା

ନିମିତ୍ତ ସାହସ ପ୍ରଦାନ କରିଥାଏ । ଏହି ଦୃଷ୍ଟିରୁ ଯେକୌଣସି ଜାତି ପକ୍ଷରେ ଜାତୀୟ ସଙ୍ଗୀତର ଆବଶ୍ୟକତା ରହିଛି ।

ଭାରତର 'ବନ୍ଦେ ମାତରମ୍' ଜାତୀୟ ଗୀତ ଓ 'ଜନଗଣମନ' ଜାତୀୟ ସଙ୍ଗୀତର ମର୍ଯ୍ୟାଦା ଲାଭ କରିଛି । 'ଜନଗଣମନ'ର କାବ୍ୟ ଓ ସଙ୍ଗୀତ ଗୁଣ ଅତୁଳନୀୟ । 'ବନ୍ଦେ ମାତରମ୍' ଏବଂ 'ଜନଗଣମନ' ମଧ୍ୟରୁ କାହାକୁ ଜାତୀୟ ସଙ୍ଗୀତର ମର୍ଯ୍ୟାଦା ପ୍ରଦାନ କରାଯିବ, ସେଥିପାଇଁ ସମ୍ବିଧାନ ପ୍ରଣୟନ ସଭାରେ ବିଚାର ହୋଇଥିଲା । 'ଜନଗଣମନ' ରଚିତ ହୋଇଥିଲା ୧୯୧୧ ମସିହାରେ । ଏହି ସଙ୍ଗୀତଟି ପ୍ରଥମେ ୧୯୧୧ ମସିହା ୨୭ ତାରିଖରେ କଂଗ୍ରେସ ଅଧିବେଶନର ୨ୟ ଦିନ ଉଦ୍‌ବୋଧନ ସଙ୍ଗୀତ ରୂପେ ଗାନ କରାଯାଇଥିଲା । ଡିସେମ୍ବର ୨୭ ତାରିଖରେ 'ଅମୃତବଜାର' ସମ୍ବାଦପତ୍ରରେ ଏହାକୁ ଏକ ଦେଶାତ୍ମବୋଧକ ସଙ୍ଗୀତ ଭାବରେ ଗ୍ରହଣ କରାଯାଇଥିଲା । ୧୯୧୭ ମସିହା ଡିସେମ୍ବର ୨୮ ତାରିଖରେ କଲିକତାରେ ଅନୁଷ୍ଠିତ କଂଗ୍ରେସର ୩୨ତମ ଅଧିବେଶନରେ ଏହାକୁ ଜାତୀୟ ସଙ୍ଗୀତର ମର୍ଯ୍ୟାଦା ପ୍ରଦାନ କରାଯାଇଥିଲା । ୧୯୧୨ ମସିହା ଜାନୁଆରୀ ୧୨ ତାରିଖରେ 'ତତ୍ତ୍ୱବୋଧିନୀ' ପତ୍ରିକାରେ ଏହା 'ଭାରତ ବିଧାତା' ନାମରେ ପ୍ରକାଶିତ ହୋଇଥିଲା । ବଙ୍କିମଚନ୍ଦ୍ରଙ୍କ 'ବନ୍ଦେ ମାତରମ୍'କୁ କେତେକ ସ୍ୱାଧୀନତା ସଂଗ୍ରାମୀ ଜାତୀୟ ସଙ୍ଗୀତର ମର୍ଯ୍ୟାଦା ଦେବାକୁ ଦାବି କରିଥିଲେ । ମାତ୍ର କେତେକ ମୁସଲମାନ ଏହାକୁ ହିନ୍ଦୁମାନଙ୍କର ମୂର୍ତ୍ତିର ବନ୍ଦନା ବୋଲି କହି ଜାତୀୟ ସଙ୍ଗୀତ ଭାବରେ ଗ୍ରହଣ ନ କରିବାକୁ ଦାବି କରିଥିଲେ । ୧୯୩୭ ମସିହାରେ ଜାତୀୟ ସଙ୍ଗୀତ ନିର୍ବାଚନ ପ୍ରସଙ୍ଗରେ ରବୀନ୍ଦ୍ରନାଥ ନିଜେ 'ବନ୍ଦେ ମାତରମ୍'ର ପ୍ରଥମାଂଶଟିକୁ ଜାତୀୟ ସଙ୍ଗୀତର ମାନ୍ୟ ଦେବାକୁ ଚାହିଁଥିଲେହେଁ ଜବାହରଲାଲ ନେହେରୁ 'ଜନଗଣମନ'କୁ ପସନ୍ଦ କରିଥିଲେ । ଦେଶବନ୍ଧୁ ଚିତ୍ତରଞ୍ଜନ ମଧ୍ୟ ଏହାକୁ ଭାରତର ବିଜୟ ଏବଂ ଗୌରବର ପ୍ରଶଂସାଗାନ ବୋଲି ମତପ୍ରଦାନ କରିଥିଲେ । 'ଆଜାଦହିନ୍ଦ୍ ଫୌଜ'ର ଜାତୀୟ ସଙ୍ଗୀତ ଭାବେ ସୁଭାଷବୋଷ 'ଜନଗଣମନ'କୁ ଗ୍ରହଣ କରିଥିଲେ । ସ୍ୱାଧୀନତା ଲାଭ ପରେ ଭାରତର ଏକ ପ୍ରତିନିଧିଦଳ ମିଳିତ ଜାତିସଂଘକୁ ଯାଇଥିବା ସମୟରେ ଏହାକୁ ସେଠାରେ ଭାରତର ଜାତୀୟ ସଙ୍ଗୀତ ରୂପେ ଗ୍ରହଣ କରାଯାଇଥିଲା ଓ ଅନ୍ୟାନ୍ୟ ଦେଶ ତାହାକୁ ସମ୍ମାନ ପ୍ରଦର୍ଶନ କରିଥିଲେ । 'ଜନଗଣମନ'ର ଇଂରାଜୀ ଅନୁବାଦ ପ୍ରକାଶ ପାଇବା ପରେ ବିଶ୍ୱର ବହୁରାଷ୍ଟ୍ର ଏହି ସଙ୍ଗୀତଟି ପ୍ରତି ତା'ର ଶ୍ରଦ୍ଧା ପ୍ରକାଶ କରିଥିଲେ । ୧୯୪୮ ମସିହା ଅଗଷ୍ଟ ୨୫ ତାରିଖର ସମ୍ବିଧାନ ପ୍ରଣୟନ ସଭାରେ 'ଜନଗଣମନ' ଧ୍ୱନିରେ ଜାତୀୟ ସଙ୍ଗୀତ ଗାନ କରାଯିବ ବୋଲି ମତ ପ୍ରକାଶ ପାଇଥିଲା । କାରଣ ଏହାର ଧ୍ୱନି ପ୍ରତି ସବୁସ୍ତରରେ ପ୍ରଶଂସା ପ୍ରାପ୍ତ ହେବା ସହିତ ଏହା ଅନ୍ୟ ସମସ୍ତ ଜାତୀୟ ସଙ୍ଗୀତଠାରୁ ଶ୍ରେଷ୍ଠ ବୋଲି ବିଭିନ୍ନ ସ୍ତରରେ ମତପ୍ରକାଶ ପାଇଥିଲା । Hindustan standardରେ ଏ ସମ୍ପର୍କରେ କୁହାଯାଇଥିଲା—From various countries

we received messages of appreciation and congratulation of this tune, which has considered by experts and others as superior to most of the National Anthems which they have heard. ମହାତ୍ମାଗାନ୍ଧି ଏହାକୁ ଉଭୟ ଜାତୀୟ ସଙ୍ଗୀତ ଓ ଭକ୍ତି ସଙ୍ଗୀତ ଭାବରେ ୧୯୪୬ ମସିହା ମେ ୧୯ ତାରିଖର 'ହରିଜନ' ପତ୍ରିକାରେ ଗ୍ରହଣ କରିଥିଲେ । ଶ୍ରୀମତୀ ବିଜୟଲକ୍ଷ୍ମୀ ପଣ୍ଡିତ ଭାରତରୁ ଆମେରିକାର ରାଷ୍ଟ୍ରଦୂତ ଭାବରେ ୧୯୪୯ ମସିହାରେ ଯାଇଥିବା ସମୟରେ 'ଜନଗଣମନ'କୁ ଜାତୀୟ ସଙ୍ଗୀତ ଭାବରେ ଗାନ କରିଥିଲେ । ୧୯୪୮ ମସିହା ଜୁନ୍ ମାସରେ ଭାରତୀୟ ଗଣପରିଷଦ 'ବନ୍ଦେ ମାତରମ୍' ଏବଂ 'ଜନଗଣମନ' ଦୁଇଟି ସଙ୍ଗୀତକୁ ଜାତୀୟ ସଙ୍ଗୀତ ରୂପେ ସ୍ୱୀକାର କରିଥିଲେ । ୧୯୪୮ ମସିହା ଅଗଷ୍ଟ ୧୫ ତାରିଖରେ ଶିଖ୍ ରେଜିମେଣ୍ଟ 'ଜନଗଣମନ' ସ୍ୱରରେ ତାଳଦେଇ ଜାତୀୟ ପତାକାକୁ ସମ୍ମାନ ପ୍ରଦର୍ଶନ କରିଥିଲେ । ୧୯୫୦ ମସିହା ଜାନୁଆରୀ ୨୪ ତାରିଖ ଦିନ ସମ୍ବିଧାନ ପ୍ରଣୟନ କମିଟିର ସଭାପତି ଶ୍ରୀ ରାଜେନ୍ଦ୍ରପ୍ରସାଦ କମିଟିର ସୁପାରିସ ଅନୁଯାୟୀ 'ଜନଗଣମନ'କୁ ଜାତୀୟ ସଙ୍ଗୀତ ଏବଂ 'ବନ୍ଦେ ମାତରମ୍'କୁ ଜାତୀୟ ଗୀତ ଭାବରେ ଗୃହୀତ ହେଲାବୋଲି ଘୋଷଣା କଲେ । ୧୯୫୦ ମସିହା ଜାନୁଆରୀ ୨୬ ତାରିଖଠାରୁ 'ଜନଗଣମନ' ଜାତୀୟ ସଙ୍ଗୀତର ମର୍ଯ୍ୟାଦାଲାଭ କରି ଗାନ କରାହୋଇ ଆସୁଛି । 'ବନ୍ଦେ ମାତରମ୍' ସ୍ୱାଧୀନ ଭାରତର ପ୍ରଥମ ଅଧିବେଶନରେ ଗାନ କରାଯାଇଥିବାରୁ ଏହା ଜାତୀୟ ଗୀତର ସମ୍ମାନ ପାଇଛି ।

ରବୀନ୍ଦ୍ରନାଥ ଟାଗୋରଙ୍କର 'ଜନଗଣମନ' ସଙ୍ଗୀତଟିକୁ ଜାତୀୟ ସଙ୍ଗୀତର ମାନ୍ୟ ଦେବାକୁ କେତେକ ବିରୋଧ କରୁଥିଲେ । ସେ ସମୟରେ କେତେକ ଚରମପନ୍ଥୀଙ୍କର ମତ ଥିଲା ଏହା ପଞ୍ଚମ ଜର୍ଜଙ୍କ ସମ୍ପର୍କୀୟ ଏକ ପ୍ରଶଂସାମୂଳକ ସଙ୍ଗୀତ । ୧୯୧୧ ଖ୍ରୀ. ଡିସେମ୍ବର ୧୨ ତାରିଖରେ ଦିଲ୍ଲୀରେ ଇଂଲଣ୍ଡ ସମ୍ରାଟ ପଞ୍ଚମ ଜର୍ଜ ବଙ୍ଗଭଙ୍ଗର ଅବସାନ ଘୋଷଣା କରିବାରୁ କଲିକତା ଅଧିବେଶନରେ ତାଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇବାକୁ ଏକ ପ୍ରଶସ୍ତିମୂଳକ ସଙ୍ଗୀତ ରଚନା କରିବାକୁ କେତେକ କଂଗ୍ରେସ ନେତା ରବୀନ୍ଦ୍ରନାଥଙ୍କୁ ଅନୁରୋଧ ଜଣାଇଥିଲେ । ମାତ୍ର ରବୀନ୍ଦ୍ରନାଥ ତାହା ବିନମ୍ରତାର ସହିତ ଅଗ୍ରାହ୍ୟ କରିଥିଲେ । ମାତ୍ର ରାଜଦମ୍ପତିଙ୍କୁ ପ୍ରଶଂସାକରି ଗୋଟିଏ ହିନ୍ଦୀ ସଙ୍ଗୀତ ଗାନ କରାଯାଇଥିଲା । ଅଥଚ ବିଦେଶୀ ସମ୍ବାଦ ସରବରାହ ସଂସ୍ଥା ରଏଟର ତାଙ୍କ ରିପୋର୍ଟରେ ରାଜଦମ୍ପତିଙ୍କ ସମ୍ମାନାର୍ଥେ ଗୋଟିଏ ବଙ୍ଗଳା ସଙ୍ଗୀତ ଗାନ କରାଯାଇଥିଲା ବୋଲି ଉଲ୍ଲେଖ କରିଥିଲେ । ଏହାର ସମର୍ଥନ କରିଥିଲେ 'ଷ୍ଟେଟ୍‌ସମ୍ୟାନ' ଏବଂ 'ଇଂଲିସମ୍ୟାନ' ପରି ସମ୍ବାଦପତ୍ରଗୁଡ଼ିକ । ଏହିଠାରୁ ବିବାଦର ସୂତ୍ରପାତ ହୋଇଥିଲା । ସେହି କାରଣରୁ 'ଜନଗଣମନ'କୁ ଜାତୀୟ ସଙ୍ଗୀତର ମର୍ଯ୍ୟାଦା ଦେବାକୁ କେତେକ କୁଣ୍ଠାପ୍ରକାଶ କରିଥିଲେ । ୧୯୩୭ ମସିହା ନଭେମ୍ବର ୨୦ ତାରିଖରେ ରବୀନ୍ଦ୍ରନାଥ ତାଙ୍କର ପ୍ରତିକ୍ରିୟା ପ୍ରକାଶ କରି ପୁଲିନ୍ ବିହାରୀ ସେନ୍‌ଙ୍କ ନିକଟକୁ ଲେଖିଥିଲେ "ମଣିଷ ଭାଗ୍ୟଚକ୍ରର ବିଧାତା

କୌଣସି ଜର୍ଜ ହୋଇ ନ ପାରନ୍ତି ।'' ସର୍ବସାଧାରଣରେ ସେ ତାଙ୍କର ପ୍ରତିକ୍ରିୟା ପ୍ରକାଶକୁ ଆତ୍ମଅବମାନନା ବୋଲି ଭାବୁଥିଲେ । ତେଣୁ ସେ ସୁଧାରାଣୀ ଦେବୀଙ୍କୁ ଲେଖିଥିବା ପତ୍ରରେ ଉଲ୍ଲେଖ କରିଥିଲେ ''ଶାଶ୍ୱତ ମାନବ ଇତିହାସରେ ଯୁଗ ଯୁଗଧରି ଧାବିତ ପଥିକ ଦେର ଚିର ସାରଥି ବଲେ ଆମି ଚତୁର୍ଥ ବା ପଞ୍ଚମ ଜର୍ଜେର ସ୍ତବ କରତେ ପାରି, ଏ ରକମ ଅପରିମିତ ମୂଢ଼ତା ଆମାର ସମ୍ବନ୍ଧେ ଯାଁରା ସନ୍ଦେହ କରତେ ପାରେନା, ତାଁଦେର ଉତ୍ତର ଦେଓୟା ଆତ୍ମାବମାନନା ।'' ବାସ୍ତବରେ 'ଜନଗଣମନ' ସଙ୍ଗୀତଟି ଥିଲା ସମ୍ପୂର୍ଣ୍ଣଭାବରେ ଆଧାତ୍ମିକ ଭାବନା ସମ୍ବଳିତ ଦେଶାତ୍ମବୋଧ ସଙ୍ଗୀତ ।

'ଜନଗଣମନ' ସଙ୍ଗୀତର ଭାବ ଅତ୍ୟନ୍ତ ଗଭୀର । କବିତାକଳା, ସଙ୍ଗୀତର ଛନ୍ଦ ଓ ଭାବର ଗଭୀରତା ଦୃଷ୍ଟିରୁ ବିଚାର କଲେ ସମସ୍ତ ଦୃଷ୍ଟିରୁ ଏହା ଏକ ସାର୍ଥକ ସଙ୍ଗୀତ । ଏଥିରେ ମାନବତାବାଦ ଏବଂ ଆଧାତ୍ମିକବାଦର ସମ୍ମିଳନ ଘଟିଛି । ଭାରତୀୟଙ୍କ ମଧ୍ୟରେ ଐକ୍ୟସ୍ଥାପନ ନିମିତ୍ତ ଏଥିରେ ଭରି ରହିଛି 'ପ୍ରେରଣା' । ଜାତି ଜାତି ମଧ୍ୟରେ, ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ସହୃଦୟତା ସୃଷ୍ଟି ପାଇଁ ଏଥିରେ ଯେଉଁ ଆବେଦନ ରହିଛି, ତା'ର ସାର୍ବଜନୀନ ଚିନ୍ତାଧାରାକୁ କେବେ ଅସ୍ୱୀକାର କରାଯାଇ ନ ପାରେ । ଏହି ସଙ୍ଗୀତରେ ଭରିରହିଛି ଦେଶର ପ୍ରାକୃତିକ ସୁଷମା । ସୁପ୍ତ ଚେତନାର ଜାଗରଣ ପାଇଁ ଏହାର ଆହ୍ୱାନ ଯୁଗ ଯୁଗ ଧରି ଭାରତୀୟଙ୍କୁ ଉଦ୍‌ବୋଧିତ କରୁଥିବ । ଧର୍ମକୁ ଏକ ବୃହତ୍ତର ପଟ୍ଟଭୂମିକୁ ଉନ୍ନୀତ କରାଇ ବିଶ୍ୱଦେବତାଙ୍କୁ ସେ ଭାରତର ଭାଗ୍ୟବିଧାତା ରୂପେ ପରିକଳ୍ପନା କରିଛନ୍ତି । ସବୁ ସମ୍ପ୍ରଦାୟ ମଧ୍ୟରେ ସେ ଏକତା ସ୍ଥାପନ କରିବାକୁ ଏଥିରେ ଉଦ୍ୟମ କରି ଗାଇଛନ୍ତି–

ଅହରହ ତବ ଆହ୍ୱାନ ପ୍ରଚାରିତ ଶୁନି ତବ ଉଦାରବାଣୀ
ହିନ୍ଦୁ, ବୌଦ୍ଧ, ଶିଖ, ଜୈନ୍ୟ, ପାରସିକ, ମୁସଲମାନ, ଖ୍ରୀଷ୍ଟାନୀ
ପୂରୁବ ପଶ୍ଚିମ ଆସେ ତବ ସିଂହାସନ ପାଶେ
ପ୍ରେମ ହାର ହାୟ ଗାଁଥା
ଜନଗଣ ଐକ୍ୟ ବିଧାୟକ ଜୟହେ ଭାରତ ଭାଗ୍ୟବିଧାତା ।

ଭାରତର ଦେବତା ହେଉଛି ଭାରତର ଭାଗ୍ୟବିଧାତା । ସେ କୌଣସି ନିର୍ଦ୍ଦିଷ୍ଟ ସମ୍ପ୍ରଦାୟର ଦେବତା ନୁହନ୍ତି । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଯାହା ଏକ ବିଶେଷ ଚେତନା ରୂପେ ଉଦ୍‌ବୋଧିତ, ସେହି ଚେତନାର ରୂପକାର ଭାରତର ଭାଗ୍ୟବିଧାତା ।

ଜାତୀୟ ସଙ୍ଗୀତ ଓ ଜାତୀୟ ପତାକାକୁ ସମ୍ମାନ ପ୍ରଦର୍ଶନ କରିବା ପ୍ରତ୍ୟେକ ଜାତିର ଏକ ନୈତିକ କର୍ତ୍ତବ୍ୟ । ତେଣୁ 'ଜନଗଣମନ' ଜାତୀୟ ସଙ୍ଗୀତକୁ ଉପଯୁକ୍ତ ସମ୍ମାନ ପ୍ରଦାନ କରିବା ଆମର ପ୍ରଥମ କର୍ତ୍ତବ୍ୟ । ଅଯଥାରେ କୌଣସି ବିଦ୍ୱେଷ ନୀତିର ଶିକାର ହୋଇ ଏହାର ସାର୍ବଜନୀନ ମୂଲ୍ୟକୁ ଅବହେଳା କଲେ ଆମେ ଯେ ଘୋର ପାପାଚରଣ କରୁଛୁ,

ଏଥିରେ ସନ୍ଦେହ ନାହିଁ । ବିଶ୍ୱର ଯେ କୌଣସି ଜାତୀୟ ସଙ୍ଗୀତଠାରୁ ଆମର ଜାତୀୟ ସଙ୍ଗୀତ ଯେ ଉତ୍କୃଷ୍ଟ, ଏଥିରେ ମତଦ୍ୱୈଧ ନାହିଁ । ଏହାର ସାଙ୍ଗୀତିକତା, କଳାତ୍ମକତା, ଦେଶାତ୍ମବୋଧ ତଥା ଆଧ୍ୟାତ୍ମିକତାର ତୁଳନା ନାହିଁ । ସେହି କାରଣରୁ ବିଶ୍ୱର ପ୍ରତ୍ୟେକ ରାଷ୍ଟ୍ର ଆମ ଜାତୀୟ ସଙ୍ଗୀତର ଭାବଧାରାକୁ ବହୁଭାବରେ ପ୍ରଶଂସା କରିଛନ୍ତି । ଆମେ ତା'ର ଯଥାର୍ଥ ସମ୍ମାନ ନ ଦେଇପାରିଲେ, ଜାତୀୟ କର୍ତ୍ତବ୍ୟରେ ଅବହେଳା ପ୍ରଦର୍ଶନ କରୁଛୁ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

●

## ସତ୍ୟ ଶିବ ସୁନ୍ଦର

**(ଉପକ୍ରମ, ସତ୍ୟଶିବ ସୁନ୍ଦରର ମହତ୍ତ୍ୱ, ଜୀବନରେ ଏହାର ଉପଯୋଗିତା, ତିନୋଟିର ସମନ୍ୱୟ, ସାହିତ୍ୟରେ ସତ୍ୟଶିବ ସୁନ୍ଦରର ଭୂମିକା, ଉପସଂହାର)**

ମଣିଷର ଚତୁର୍ଦ୍ଦିଗରେ ପରିବ୍ୟାପ୍ତ ତା'ର ପରିବେଶ ବଡ଼ ବିଚିତ୍ର । ସମଗ୍ର ସୃଷ୍ଟିକୁ ବିଶ୍ଳେଷଣ କଲେ ଏହା ମଧ୍ୟରେ ବହୁ ରହସ୍ୟମୟ ପଦାର୍ଥ ଲୁକ୍କାୟିତ ରହିଛି । ତା'ର ଉଦ୍‌ଘାଟନ ନିମିତ୍ତ ଯୁଗ ଯୁଗ ଧରି ମଣିଷ ଚେଷ୍ଟା କରି ଆସିଛି । ଏହି ଚେଷ୍ଟା ମୂଳରେ ପ୍ରଥମତଃ ରହିଛି ସତ୍ୟ ଶିବ ସୁନ୍ଦରର ପ୍ରକୃତ ପରିଚୟ ଲାଭ କରିବା । ବିଶ୍ୱାତ୍ମା ପ୍ରତ୍ୟେକ ଜିନିଷକୁ ଏପରି ସୁନ୍ଦର ଭାବରେ ସନ୍ନିବେଶିତ କରିଛନ୍ତି ଯେ, ସେଥିରୁ କୌଣସି ଗୋଟିଏ ମଧ୍ୟ ତ୍ରୁଟିପୂର୍ଣ୍ଣ ନୁହେଁ । ସତ୍ୟର ଆବିଷ୍କାର ମାନବ ଜୀବନର ମୌଳିକ ଲକ୍ଷ୍ୟ ହେଲେହେଁ, ଶିବ ଏବଂ ସୁନ୍ଦର ପ୍ରତି ତା'ର କାମନା ଚିର ସଚେତନ । ସମଗ୍ର ବିଶ୍ୱରେ ସତ୍ୟର ପ୍ରତିଫଳନ ଘଟେ ଏବଂ ଶିବ ତଥା ସୁନ୍ଦରତା ମଧ୍ୟରେ ଆତ୍ମପ୍ରକାଶ କରିଥାଏ । ଏଥିପାଇଁ ଆବଶ୍ୟକ ହୋଇଥାଏ ଏକ ବିଶେଷ ଅନୁଭବର । ସାମାନ୍ୟତମ ପଦାର୍ଥ ମଧ୍ୟରେ ମଧ୍ୟ ବିରାଟର ମହିମା ଦୀପ୍ତିମାନ ଥାଏ । ସତ୍ୟ ଶିବ ସୁନ୍ଦରର ମୂର୍ତ୍ତିମନ୍ତ ବିଗ୍ରହ ଏହିପରି ଦୃଶ୍ୟମାନ ବିଶ୍ୱ । ସେଥିରୁ ଯେଉଁମାନେ ସୃଷ୍ଟିଲାଭ କରନ୍ତି, ସେମାନେ କେବଳ ସେହି ସତ୍ୟ, ଶିବ ସୁନ୍ଦରର ବାହ୍ୟପ୍ରକାଶ ବ୍ୟତୀତ ଅନ୍ୟ କିଛି ନୁହନ୍ତି । ଗୋଟିଏ ବୀଣାର ତିନୋଟି ଧ୍ୱନି । ଯାହା ସତ୍ୟ, ତାହା ଶିବ ଏବଂ ସୁନ୍ଦର । ଗୋଟିଏ ଭାବର ତିନୋଟି ପ୍ରକାଶ । ତେଣୁ କେହି ହେୟ ନୁହନ୍ତି; ସମସ୍ତେ ସୁନ୍ଦର । କୁତ୍ସିତ ମଧ୍ୟରେ ମଧ୍ୟ ସୌନ୍ଦର୍ଯ୍ୟ ଲୁକ୍କାୟିତ । ଭାରତୀୟ ଦର୍ଶନ ଓ ସାହିତ୍ୟରେ ଏହି ତ୍ରୟୀ ଗୁଣର ସମାବେଶ ଘଟିଥିବାରୁ ତାହା ଅପୂର୍ବ ଓ ଚିଦାନନ୍ଦ ।

ସ୍ଥୂଳ ଦୃଷ୍ଟିକୋଣରୁ ସତ୍ୟ ଶିବ ସୁନ୍ଦରର ଭିନ୍ନତା ଜଣାପଡୁଥିଲେହେଁ ସୂକ୍ଷ୍ମ ଦୃଷ୍ଟିକୋଣରୁ ବିଚାର କଲେ ସେମାନଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ଥିବାପରି ମନେ ହୋଇନଥାଏ । ପରମାତ୍ମା ସତ୍ୟ, ଶିବ ଏବଂ ସୁନ୍ଦରର ପ୍ରତୀକ ହୋଇଥିବାରୁ ତାଙ୍କ ବିଶ୍ୱ ମଧ୍ୟ ଅନୁରୂପ ସତ୍ୟ ଶିବ ସୁନ୍ଦରର

ମୂର୍ତ୍ତିମନ୍ତ ବିଗ୍ରହ । ସମଗ୍ର ସୃଷ୍ଟି ମୂଳରେ ଏହି ତିନୋଟି ବିଦ୍ୟମାନ । ଦାର୍ଶନିକଗଣ ଏହାର ବିଭିନ୍ନ ବ୍ୟାଖ୍ୟା ପ୍ରଦାନ କରିଛନ୍ତି । କେହି ଏହାକୁ ସତ୍ତ୍ୱ ରଜ ଏବଂ ତମ ତ୍ରିଗୁଣର ସମାବେଶ ବୋଲି କୁହନ୍ତି । ସତ୍ୟର ଉଦ୍ଭାବନ ମଣିଷର ଅନ୍ତିମ ଲକ୍ଷ୍ୟ । ଯାହା ସତ୍ୟ ତାହା ସୁନ୍ଦର ଓ ମଙ୍ଗଳମୟ । ଯାହା ମଙ୍ଗଳମୟ, ସୁନ୍ଦର ତାହାହିଁ ହେଉଛି ସତ୍ୟ । ଆମର ପ୍ରାଚୀନ ମୁନିଋଷିଗଣ ସେହି ସଚ୍ଚିଦାନନ୍ଦ ସ୍ୱରୂପକୁ ଯଥାର୍ଥରେ ଉପଲବ୍ଧି କରିଥିଲେ । ତେଣୁ ଜଗତବାସୀଙ୍କୁ ସେମାନେ ଉପଦେଶ ଦେଇ କହିଥିଲେ—

"ସୁଗଃ ପନ୍ଥା ଅନୃକ୍ଷର
ଆଦିତ୍ୟାସ ଋତଂ ଯତେ
ନାତ୍ରାବଖାଦୋ ଅସ୍ତି ବଃ"

ଭାରତୀୟ ସଭ୍ୟତା ଏବଂ ସଂସ୍କୃତିରେ ଏହି ତ୍ରୟୀର ସମାବେଶ ଘଟିଛି । ଇଂରାଜୀ କବି କୀଟ୍ସ ମଧ କହିଥିଲେ—Truth is beauty, Beauty is truth । ବ୍ରହ୍ମ ହେଉଛି ପରମ ସତ୍ୟ । ଜଗତ ହେଉଛି ସେହି ସତ୍ୟର ବାହ୍ୟପ୍ରକାଶ ମାତ୍ର । ସେହି ଦୃଷ୍ଟିରୁ ଜୀବନ ସତ୍ୟ । ସତ୍ୟର ଗତି ସର୍ବଦା ଶିବ ଏବଂ ସୁନ୍ଦର ଦିଗକୁ । ଶିବଙ୍କୁ ଆମେ ମଙ୍ଗଳମୟ କହିଥାଉ । ତାଙ୍କର ଶକ୍ତି ସତ୍ୟ ଓ ସୌନ୍ଦର୍ଯ୍ୟର ପ୍ରତୀକ । ଶିବଙ୍କୁ ଅର୍ଦ୍ଧନାରୀଶ୍ୱର କହିବା ମୂଳରେ ସତ୍ୟ, ଶିବ ଏବଂ ସୁନ୍ଦର ମଧରେ ଅଭେଦତ୍ୱ ପରିକଳ୍ପନା କରାଯାଉଛି । ସତ୍ୟ ବ୍ୟତିରେକେ ଜଗତରେ ଅନ୍ୟ କାହାରି ସତ୍ତା ନାହିଁ । ଯାହା ସତ୍ୟ ତାହା ମାନିଯିବାକୁ, ଶିବ ଏବଂ ସୁନ୍ଦରକୁ ଗ୍ରହଣ କରିନେବାକୁ ଆମ ସଂସ୍କୃତିରେ ବାରମ୍ବାର କୁହାଯାଇଛି । ସେଥିପାଇଁ ଶିଶୁମାନଙ୍କୁ ଉପଦେଶ ଦେବା ସମୟରେ ଆମେ କହିଥାଉ ସତ୍ୟ କୁହ । ସତ୍ୟରକ୍ଷା ପାଇଁ ଏହି ଦେଶର ବିଶିଷ୍ଟ ବ୍ୟକ୍ତିମାନେ କ'ଣ ବା ନ କରିଛନ୍ତି ? ରାମଚନ୍ଦ୍ର ହୋଇଛନ୍ତି ବନଗାମୀ । ହରିଶ୍ଚନ୍ଦ୍ର ନିଜର ପ୍ରିୟତମା ପତ୍ନୀ ଏବଂ ପୁତ୍ରକୁ ବିକ୍ରୟ କରିଛନ୍ତି, କର୍ଣ୍ଣ ନିଜ ପୁତ୍ରକୁ ବଳି ଦେଇଛନ୍ତି, ନିଜର କବଚ କୁଣ୍ଡଳ ଦାନ କରି ମୃତ୍ୟୁବରଣ କରିଛନ୍ତି । ସେହିମାନଙ୍କ କାର୍ଯ୍ୟକଳାପ ଯେପରି ସୁନ୍ଦର, ଜଗତର ହିତାର୍ଥେ ସେହିପରି ମଙ୍ଗଳମୟ । ତେଣୁ ଯେଉଁଠାରେ ସତ୍ୟର ଅସ୍ତିତ୍ୱ, ସେହିଠାରେ ଶିବ ଏବଂ ସୁନ୍ଦରର ଉପସ୍ଥିତି । ସ୍ୱୟଂ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଥିଲେ—

ଅନୁଦ୍‌ବେଗ ବରଂ ବାକ୍ୟଂ ସତ୍ୟମ୍ ପ୍ରିୟଂ ହିତଂ ଚୁ ଯତ୍
ସ୍ୱାଧାୟଭ୍ୟସନଂ ଚୈବ ବାଙ୍‌ମୟଂ ତପ ଉଚ୍ୟତେ ।

ଏଥିରେ ମଧ ସେହି ସତ୍ୟ ଶିବ ସୁନ୍ଦର ଉତ୍‌କୀର୍ଣ୍ଣ । ଜ୍ୟୋତିର୍ମୟ ବ୍ରହ୍ମ ତେଜୋଦୀପ୍ତ ଭାବେ ଜଗତର କଲ୍ୟାଣ ନିମିତ୍ତ ଆବିର୍ଭାବ ହୁଅନ୍ତି । ସେ ପ୍ରକୃତି ମଧରେ ଆତ୍ମପ୍ରକାଶ କରିଥାନ୍ତି । ପ୍ରକୃତିର କ୍ରିୟାଶୀଳତା ମଧରେ ଏହି ତିନୋଟିର ଅଭିବ୍ୟକ୍ତି ଘଟେ ।

ମଣିଷ ଅମୃତର ସନ୍ତାନ । ଅମୃତ ପ୍ରାପ୍ତି ତା' ଜୀବନର ସର୍ବଶ୍ରେଷ୍ଠ ଲକ୍ଷ୍ୟ । ସତ୍ୟର ପ୍ରତିଷ୍ଠା, ସୌନ୍ଦର୍ଯ୍ୟର ଉପାସନା ଓ ମଙ୍ଗଳର କାମନା ତା'ର ଉଦ୍ଦେଶ୍ୟ । ଏଥିପାଇଁ ଏହି ବିଶ୍ୱରେ

ତା'ର ବାରମ୍ବାର ଧରାବତରଣ । ବ୍ରହ୍ମୋପାସନା ତାକୁ ଦିଏ ଦିବ୍ୟ ଦୃଷ୍ଟି । ବ୍ରହ୍ମ ସ୍ୱୟଂ ସତ୍ୟ ଶିବ ମଙ୍ଗଳର ଶ୍ରେଷ୍ଠ ଆଧାର । ଏହି ଦୃଷ୍ଟିରୁ ସତ୍ୟ ଶିବ ସୁନ୍ଦର କଦାପି ଭିନ୍ନ ହୋଇନପାରନ୍ତି । ଅସତ୍ୟ ମଣିଷ ଜୀବନକୁ କରେ କୁତ୍ସିତ ଓ କଦାକାର । ଜୀବନର ସୁନ୍ଦର ଓ ମଙ୍ଗଳମୟ ଦିଗ ପ୍ରତି ତାକୁ କରାଯାଇଥାଏ ଉଦାସୀନ । ସେହି କାରଣରୁ ଜୀବନର ପ୍ରକୃତ ମୂଲ୍ୟ ଉପଲବ୍ଧିରେ ସେ ହୋଇଥାଏ ଅସମର୍ଥ । ଏହି କାରଣରୁ ସମୟେ ସମୟେ ଜୀବନ ହୋଇଉଠେ ଜୀବନ୍ତମରଣ ସଦୃଶ । ମାତ୍ର ଅମୃତର ସନ୍ତାନ କଦାପି ଅସତ୍ୟ, ଅଶିବ ଏବଂ କୁତ୍ସିତତାର ଉପାସନା କରି ନ ପାରେ । ତା' ନିକଟରେ ଜୀବନ ଓ ଜଗତ ସତ୍ୟ ଶିବ ସୁନ୍ଦରର ମୂର୍ତ୍ତିଧାରୀ ରୂପ । ଏହି ତ୍ରୟୀଙ୍କ ସମାଗମରେ ତା'ର ଜୀବନ ହୋଇଥାଏ ଶୁଭ୍ର ଏବଂ ସତେଜ । ଚତୁର୍ଦ୍ଦିଗରେ ଅନୁଭବ କରେ ଆନନ୍ଦର ବାରିଧାରା । ତେଣୁ ପ୍ରତ୍ୟେକ ମଣିଷ ଜୀବନରେ ସତ୍ୟ, ଶିବ ଏବଂ ସୁନ୍ଦରର ଉପଯୋଗିତାର ତୁଳନା ନାହିଁ ।

ସତ୍ୟ, ଶିବ, ସୁନ୍ଦର ଏକ ଓ ଅଭିନ୍ନ । ଏହିମାନଙ୍କ ସମନ୍ୱୟରେ ଜୀବନ ହୋଇଥାଏ କ୍ରିୟାଶୀଳ । ବସ୍ତୁର ଯଥାର୍ଥ ଅଭିବ୍ୟକ୍ତି ତ୍ରୟୀର ସମନ୍ୱୟ । ଯାହା ସତ୍ୟ ତାହା ଚିର ସତ୍ୟ । ତାହା ପୁଣି ଚିର ସୁନ୍ଦର ଓ ଚିର ମଙ୍ଗଳମୟ । ପ୍ରକୃତ ସତ୍ୟର ରୂପରେ କଦାପି ପରିବର୍ତ୍ତନ ହୁଏ ନାହିଁ । କାରଣ ପରିପୂର୍ଣ୍ଣ ଆନନ୍ଦ ଦେବାକୁ ପୂର୍ଣ୍ଣ ସତ୍ୟ ହିଁ କେବଳ ସମର୍ଥ । ସୌନ୍ଦର୍ଯ୍ୟ ମଧ୍ୟରେ ସତ୍ୟ ହୋଇଥାଏ ଦ୍ୟୋତିତ । ସତ୍ୟର ଉଦ୍ଦେଶ୍ୟ ମଙ୍ଗଳମୟ । ସେଇଥିପାଇଁ ଚିରସତ୍ୟ ଶିବ ସର୍ବଦା ମଙ୍ଗଳମୟ । ତାଙ୍କର ଧ୍ୱଂସକାରୀ ରୂପ ମଧ୍ୟରେ ଜଗତର ମଙ୍ଗଳ କାମନା ବର୍ତ୍ତମାନ । ତାଙ୍କ ସହିତ ଯୁକ୍ତା ପ୍ରକୃତି ବା ଶକ୍ତି ସୌନ୍ଦର୍ଯ୍ୟର ଆଧାର । ଲକ୍ଷ୍ୟ ଏକ, ଜଗତରେ ସତ୍ୟର ପ୍ରତିଷ୍ଠା । ସତ୍ୟ ବ୍ୟତିରେକେ ଶିବ କିମ୍ବା ଶିବ ବ୍ୟତିରେକେ ସତ୍ୟ—କେଉଁଟି ବି ମୂଲ୍ୟବାନ ନୁହେଁ । ଏହି ଦୁଇଟିର ଅପୂର୍ବ ମିଳନରେ ସୌନ୍ଦର୍ଯ୍ୟର ପରିସ୍ଫୁଟନ ଘଟେ । ଏହି ଦୃଷ୍ଟିରୁ ତିନୋଟିର ସମ୍ବନ୍ଧ ଅତୀବ ନିବିଡ଼ । ଗୋଟିକୁ ବାଦ୍‌ଦେଲେ ଅନ୍ୟ ଦୁଇଟି ହୋଇପଡ଼ିବେ ଦ୍ୟୁତିହୀନ ଓ ମୂଲ୍ୟହୀନ । ଜୀବନ ଏବଂ ଜଗତର ମଙ୍ଗଳ ସାଧନ ନିମିତ୍ତ ତିନୋଟିର ଐକ୍ୟ ସାଧନ ନିତାନ୍ତ ଜରୁରୀ । ସତ୍ୟକୁ ପ୍ରକାଶ କରିବା ପାଇଁ ସୌନ୍ଦର୍ଯ୍ୟର ଆବଶ୍ୟକତା ରହିଛି ଏବଂ ଏହାର ପରିଣତି ସର୍ବଦା ମଙ୍ଗଳମୟ । ଏଥିପାଇଁ ଏମାନଙ୍କ ମଧ୍ୟରେ କୌଣସି ସ୍ୱାଭାବିକ ପାର୍ଥକ୍ୟ ପରିଦୃଷ୍ଟ ହୋଇନଥାଏ ।

ଜୀବନ ଏବଂ ଜଗତର ହିତ ସାଧନ ସାହିତ୍ୟର ଲକ୍ଷ୍ୟ । ତେଣୁ ସାହିତ୍ୟରେ ସତ୍ୟ ଶିବ ସୁନ୍ଦରର ପ୍ରକାଶ ଘଟିବା ସ୍ୱାଭାବିକ । ଆନନ୍ଦ ପ୍ରଦାନ ସାହିତ୍ୟର ଗୋଟିଏ ଲକ୍ଷ୍ୟ ହୋଇପାରେ କିନ୍ତୁ ଏହା ସର୍ବଶେଷ ଲକ୍ଷ୍ୟ ନୁହେଁ । ସେଥିପାଇଁ ଆମର ପୂର୍ବାଚାର୍ଯ୍ୟଗଣ ସାହିତ୍ୟ ପାଠଦ୍ୱାରା ଚତୁର୍ବର୍ଗ ଫଳପ୍ରାପ୍ତି ହୋଇଥାଏ ବୋଲି କହିଛନ୍ତି । ସତ୍ୟର ଆବିଷ୍କାର, ସୌନ୍ଦର୍ଯ୍ୟ ସୃଷ୍ଟି ଏବଂ ଜଗତ ତଥା ଜୀବନର ମଙ୍ଗଳ କାମନା ସାହିତ୍ୟର ଯଥାର୍ଥ ଲକ୍ଷ୍ୟ । ସୁନ୍ଦରର ପରିପ୍ରକାଶ ସର୍ବଦା ମଙ୍ଗଳମୟ । ସୌନ୍ଦର୍ଯ୍ୟ ମଧ୍ୟରେ ସତ୍ୟର ସ୍ଥିତି । ସେହି କାରଣରୁ

ସାହିତ୍ୟରେ ସତ୍ୟ ଶିବ ସୁନ୍ଦରର ତ୍ରିବେଣୀ ସଙ୍ଗମ ଘଟିଥାଏ । ଯାହା ସତ୍ୟ, ତାହା ନିଶ୍ଚିତଭାବରେ ମଙ୍ଗଳମୟ ଓ ସୁନ୍ଦର । ଅବଶ୍ୟ ସାହିତ୍ୟ ସତ୍ୟ ଭିନ୍ନ ପ୍ରକାର । ଯେଉଁଠାରୁ ଦର୍ଶନ ଏବଂ ବିଜ୍ଞାନର ସତ୍ୟାବିଷ୍କାରର ପରିସମାପ୍ତି ଘଟେ, ସେହିଠାରୁ ଆରମ୍ଭ ହୁଏ ସାହିତ୍ୟର ସତ୍ୟ । କାବ୍ୟିକ କଳ୍ପନା ମଧ୍ୟରେ ନିହିତ ଥାଏ ଜୀବନକୁ ସୁନ୍ଦସୁନ୍ଦର କରି ଗଢ଼ି ତୋଳିବାର ଲକ୍ଷ୍ୟ । ମଣିଷକୁ କିପରି ସର୍ବଶ୍ରେଷ୍ଠ ଆନନ୍ଦ ପ୍ରଦାନ କରାଯାଇପାରିବ, ତା'ର ଜୀବନକୁ କିପରି ମଙ୍ଗଳମୟ କରାଯାଇପାରିବ ଏବଂ ସର୍ବୋପରି ଜୀବନର ଯଥାର୍ଥ ସତ୍ୟକୁ ଦ୍ୟୋତିତ କରାଯିବ, ସେଥିପ୍ରତି ସାହିତ୍ୟ ଲକ୍ଷ୍ୟପ୍ରଦାନ କରିଥାଏ । ଏହି ଦୃଷ୍ଟିରୁ ଆମର ରାମାୟଣ, ମହାଭାରତ, ଭାଗବତ ଆଦି ଗୋଟିଏ ଗୋଟିଏ ଅପୂର୍ବ ସୃଷ୍ଟି । ଫକୀରମୋହନଙ୍କ ସାହିତ୍ୟ କୃତିରେ ସତ୍ୟ ଶିବ ସୁନ୍ଦରର କମନୀୟ ଅଭିବ୍ୟକ୍ତି ଘଟିଛି । ଭାବଜଗତକୁ ପ୍ରଭାବିତ କରିବାର ଶକ୍ତି କେବଳ ସାହିତ୍ୟର ରହିଛି । ସେଥିପାଇଁ ପ୍ରତ୍ୟେକ ସାହିତ୍ୟରେ ସତ୍ୟ ଶିବ ସୁନ୍ଦରର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ ।

ଆଲୋକର ଉପଲବ୍ଧି ମଧ୍ୟରେ ମଣିଷ ତା ଜୀବନର ସାକାର ରୂପ ଦେଖେ । ଯେଉଁ ଆଲୋକ ମଣିଷ ଜୀବନକୁ ପ୍ରକୃତ ଦିଗର ସନ୍ଧାନ ଦେଇପାରିବ, ତାହାହିଁ ପ୍ରକୃତ ଆଲୋକ ପଦବାଚ୍ୟ । ମଣିଷ ଜୀବନକୁ ସମ୍ଭାବନାରେ ଭରିଦେବାପାଇଁ ସତ୍ୟଶିବ ସୁନ୍ଦର ସମନ୍ୱୟର ଆବଶ୍ୟକତା ରହିଛି । ଏହି ତିନୋଟିର ସମ୍ମିଶ୍ରଣ ହିଁ ଯଥାର୍ଥ ଆଲୋକ । ଭୂମିରୁ ଭୂମା ଦିଗକୁ ଗତି କରାଇବାରେ ସେହି ସମ୍ମିଶ୍ରିତ ରୂପ ହିଁ କେବଳ କ୍ଷମ । ତେଣୁ ପ୍ରତ୍ୟେକ ମଣିଷ ଏହି ସତ୍ୟ ଶିବ ସୁନ୍ଦରର ଉପାସନା କରିପାରିଲେ ତା'ର ଜୀବନ ହେବ ଧନ୍ୟ । ତପ୍ତ ଜୀବନ ମରୁଭୂମିରେ ମଧ୍ୟ ସେ ଜଳଧାରାର ଶାନ୍ତିଲାଭ କରିପାରିବ । ମଣିଷ ଆତ୍ମାର ଚରମ ସାର୍ଥକତା ସେହିଥିରେ ହିଁ ନିହିତ ।

●

## ମଧୁମୟ ସୃଷ୍ଟି ବା ଏ ସୃଷ୍ଟି ଅମୃତମୟ ହେ

(ଉପକ୍ରମ, ମାନବ ଚକ୍ଷୁରେ ବିଶ୍ୱରୂପ, ମଧୁମୟ ବିଶ୍ୱର ସ୍ୱରୂପ, ବିଶ୍ୱ ମଧୁମୟ ଓ ଆନନ୍ଦମୟ, ଉପସଂହାର)

ମଧୁମୟ ସୃଷ୍ଟି ସୁଧାମୟ ସୃଷ୍ଟି
ଏ ସୃଷ୍ଟି ଅମୃତମୟ ହେ
ଜାଗ ନରନାରୀ ଅମୃତ ସନ୍ତତି
ପିଅ ସେ ଅମୃତ ପୟ ହେ । (ମଧୁସୂଦନ)

ଈଶ୍ୱରଙ୍କ ସୃଷ୍ଟି ବଡ଼ ବିଚିତ୍ର । ଏହାର ରହସ୍ୟ ଭେଦ କରିବା ସାଧାରଣ ମଣିଷ ପକ୍ଷରେ ସମ୍ପୂର୍ଣ୍ଣ ଅସମ୍ଭବ । କୁଶଳୀ ଚିତ୍ରକରଟି ପରି ବିଶ୍ୱକୁ ସେ କେଡ଼େ ସୁନ୍ଦର ଭାବରେ ଚିତ୍ରିତ କରି ନ ପାରିଛନ୍ତି । ଏହାର ନୀଳ ସମୁଦ୍ର ଯେପରି ସୁନ୍ଦର ଦିଗନ୍ତ ବିସ୍ତାରିତ ସବୁଜ ଶସ୍ୟକ୍ଷେତ୍ର ମଧ୍ୟ ସେହିପରି ସୁନ୍ଦର । ସୁନ୍ଦର ତା'ର ବନଭୂମି, ସୁନ୍ଦର ତା'ର ଉତ୍ତୁଙ୍ଗ ପର୍ବତମାଳା । ଜ୍ୟୋତ୍ସ୍ନା ବିଧୌତ ରଜନୀ, ସୂର୍ଯ୍ୟଙ୍କର ଉଦୟଅସ୍ତ, ଝରଣାର କଳକଳ ନାଦ, ବିହଙ୍ଗର କୂଜନ, ଅରଣ୍ୟର ଶ୍ୟାମଳିମା–ସବୁ ଯେପରି ସୁନ୍ଦର । ଏଠି ପବନର ହିଲ୍ଲୋଳ ମଣିଷ ଦେହରେ ଅମୃତର ସ୍ପର୍ଶ ଦେଇ ଚାଲିଯାଏ । ଜୀବ-ଜଗତ ସବୁଆଡ଼େ ମଧୁରତାର ସ୍ପର୍ଶ । ଏହି ବିଶ୍ୱର ସୃଷ୍ଟିକର୍ତ୍ତା ମଧ ମଧୁର । ଏପରି ଏକ ବିଶ୍ୱରେ ଜନ୍ମଗ୍ରହଣ କରି ମଣିଷ ଧନ୍ୟ, ଯୁଗ ଯୁଗଧରି ତପସ୍ୟାର ସାର୍ଥକ । ସେହି ଅମୃତମୟଙ୍କ ସ୍ପର୍ଶରେ ଜୀବନର ଦୁଃଖଶୋକର ବିସ୍ମୃତି ଘଟେ । ସୃଷ୍ଟି ଅମୃତମୟ ହୋଇଥିବାରୁ ମଣିଷ ମଧ ଅମୃତର ସନ୍ତାନ ।

ମାନବର ଜୀବନ ବହୁ ଉପାଦାନରେ ଗଢ଼ା । ଜଗତର ରହସ୍ୟ ଉଦ୍‌ଘାଟନ କରିବା ତା' ସମର୍ଥର ବାହାରେ । ତେଣୁ ବିଶ୍ୱର ମଧୁମୟ ରୂପ ଅପେକ୍ଷା ତା'ର ବିଷାଦିତ ରୂପ ତାକୁ ଅଧିକ ପ୍ରଭାବିତ କରିଥାଏ । ବିଷୟ ଜଞ୍ଜାଳରେ ପରିପୂର୍ଣ୍ଣ ମଣିଷ ଚର୍ମଚକ୍ଷୁରେ ଦେଖେ ବିଶ୍ୱର ଦୁଃଖ, ଯନ୍ତ୍ରଣା ଓ ତା'ର ବିଷାଦିତ ରୂପକୁ । କ୍ଷୁଧା, ତୃଷା ଏବଂ ଅଭାବ ବିଶ୍ୱର ମଧୁମୟ ରୂପ ଦର୍ଶନ କ୍ଷେତ୍ରରେ ପ୍ରତିବନ୍ଧକ ସୃଷ୍ଟି କରିଥାଏ । ନୈରାଶ୍ୟ ମଧରେ ସେ ହରାଇବସେ ଜୀବନର ସୁଧାମୟ ଦିଗଟିକୁ । ତା' ଚକ୍ଷୁରେ ଜୀବନ ଦୁଃଖ ଓ ଶୋକର ଗୋଟିଏ ସମ୍ମିଶ୍ରିତ ରୂପ । ବାସ୍ତବ ଜୀବନର କଠୋରତାକୁ ସମ୍ମୁଖୀନ ହେବାର ଧୈର୍ଯ୍ୟ ତା'ର ନ ଥାଏ । ସୌନ୍ଦର୍ଯ୍ୟ ଉପଭୋଗର ମାନସିକତା ତା'ର ନାହିଁ । ତେଣୁ ତା' ନିକଟରେ ଜଗତ ଯନ୍ତ୍ରଣାର ଅନ୍ୟ ନାମ । ଅଜ୍ଞାନ ଅନ୍ଧକାରରେ ପଥଭ୍ରଷ୍ଟ ହୋଇଥିବା ମଣିଷ ସୃଷ୍ଟିର ସେହି ଅମୃତମୟ ସ୍ୱରୂପକୁ କିପରି ବା ଉପଲବ୍‌ଧି କରିପାରିବ ? ଅସହାୟତା ତା' ଜୀବନର ଭବିତବ୍ୟ । ଏହି କାରଣରୁ ରକ୍ତମାଂସର ମଣିଷ ଜଗତ ମଧରେ ନିହିତ ବାସ୍ତବ ସତ୍ୟ ଓ ମଧୁରତାକୁ ଉପଲବ୍‌ଧି କରିବାକୁ ସମ୍ପୂର୍ଣ୍ଣ ଅକ୍ଷମ ହୋଇଥାଏ ।

ସାଧାରଣ ଦୃଷ୍ଟି ଅପେକ୍ଷା ଦିବ୍ୟ ଅନୁଭବୀର ଦୃଷ୍ଟିରେ ଥାଏ ଏକ ସ୍ୱତନ୍ତ୍ରତା । ତେଣୁ ସେହି ଦୃଷ୍ଟିକୁ ଅମୃତର ଦୃଷ୍ଟିବୋଲି କୁହାଯାଇଥାଏ । ସମସ୍ତ ପ୍ରକାର ଶୋକ-ଦୁଃଖ, ଜରା-ବ୍ୟାଧି ଓ ମୃତ୍ୟୁ ମଧରେ ମଧ ତା' ଆଖିରେ ଜଗତ ରମଣୀୟ, ସୁନ୍ଦର, ମନୋମୁଗ୍ଧକର । ସେ ଚତୁର୍ଦ୍ଦିଗରେ ଅନୁଭବ କରେ ଅମୃତର ସ୍ୱାଦ । ତା' ଦୃଷ୍ଟିରେ ପବନରେ ମଧୁ, ସାଗରରେ ମଧୁ–ସବୁଆଡ଼େ ମଧୁ ପରିପୂର୍ଣ୍ଣ–

ମଧୁବାତା ଋତାୟତେ
ମଧୁକ୍ଷରନ୍ତି ସିନ୍ଧବଃ
ମାଧ୍ୱୀନଃ ସନ୍ତୋଷଧୀଃ (ଋକ୍‌ବେଦ)

ସୃଷ୍ଟି ରହସ୍ୟ ଭେଦ କରି ସେ ଜଗତ ଓ ଜୀବନର ସତ୍ୟ ଉଦ୍‌ଘାଟନ କରିଥାଏ । ବିଶ୍ୱର ଚାରିଆଡ଼େ ମଧୁର କ୍ଷରଣ । ପ୍ରକୃତିର ସୁଷମା, ପବନର ହିଲ୍ଲୋଳ, ସାଗରର ନୀଳିମା—ସବୁଠି ମଧୁର ବର୍ଷା । ସୃଷ୍ଟିର ଏହି ମଧୁରତାରେ ମୁଗ୍ଧ ହୋଇ ବିଶ୍ୱକବି ରବୀନ୍ଦ୍ରନାଥ ପୃଥିବୀରେ ସବୁଦିନ ପାଇଁ ବଞ୍ଚିରହିବାକୁ ଚାହୁଁଥିଲେ । ସେ ମଧୁର କଣ୍ଠରେ ଗାଇ ଉଠିଥିଲେ—

"ମରିତେ ଚାଇନା ଆମି ସୁନ୍ଦର ଭୁବନେ
ମାନୁଷେର ମାଝେ ଆମି ବଞ୍ଚିବାର ଚାୟ"

ମଧୁମୟ ବିଶ୍ୱ, ସୁଧାମୟ ବିଶ୍ୱ ଯୁଗେ ଯୁଗେ ଦେବତାଙ୍କୁ ଆକର୍ଷଣ କରିଛି ତା' ପୃଷ୍ଠରେ ଜନ୍ମଗ୍ରହଣ ପାଇଁ । ସବୁଆଡ଼େ ମଧୁରତାର ପ୍ଳାବନ । ଜନନୀର ସ୍ନେହ, ପତ୍ନୀର ପ୍ରେମ, ସନ୍ତାନର ବାତ୍ସଲ୍ୟ, ଭଗ୍ନୀର ଶ୍ରଦ୍ଧା, ବନ୍ଧୁର ସହୃଦୟତା—ସବୁଥିରେ ମଧୁରତାର ପ୍ରଭାବ । ଜଣକର ଦୁଃଖରେ ଅନ୍ୟ ଜଣେ ମ୍ରିୟମାଣ ହୋଇପଡ଼େ । ବିପଦରେ ଛାତି ପତାଇଦିଏ । ଏହି ପ୍ରେମର ଅନ୍ୟ ନାମ ହିଁ ମଧୁରତା । ଯାହା ଅନ୍ୟ କୌଣସି ଜୀବ ପାଇବାକୁ ଅସମର୍ଥ, ମଣିଷ ନିକଟରେ ତାହା ବେଶ୍ ସହଜଲବ୍‌ଧ । ପ୍ରୀତି ଓ ସ୍ନେହର ମନ୍ଦାକିନୀ ଧାରା ଜଗତକୁ କରିଛି ଆପ୍ଲୁତ । ବିଶ୍ୱର ଏହି ମହନୀୟତାକୁ ଲକ୍ଷ୍ୟକରି ସେଦିନ ଗଙ୍ଗାଧର ଆବେଗରେ ଗାଇ ଉଠିଥିଲେ—

ବିଶ୍ୱ ଦେଖ ମଧୁମୟରେ ଜୀବନ
ବିଶ୍ୱ ଦେଖ ମଧୁମୟ
ମଧୁର ଝରଣ କରିବ ହରଣ
ତୋ ପାପ ମରଣ ଭୟରେ ଜୀବନ ।

ଯେଉଁଠାରେ ଜଣେ କାନ୍ଦିଲେ ଅନ୍ୟ ଚକ୍ଷୁରୁ ଅଶ୍ରୁ ନିର୍ଗତ ହୁଏ; ଜଣକର ବ୍ୟଥା ଅନ୍ୟ ହୃଦୟକୁ ସଞ୍ଚରିଯାଏ, ସେପରି ବିଶ୍ୱକୁ ମଧୁମୟ ବ୍ୟତୀତ ଅନ୍ୟ କ'ଣ କୁହାଯାଇପାରେ ? ସେଇଥିପାଇଁ ତ ଗୋପବନ୍ଧୁ ଗାଇଥିଲେ—

ଜୀବନଟା ଖାଲି ନିରାଶାର ବାଲି
ମରୁ ମରୀଚିକା ସ୍ନେହ ପ୍ରୀତି
ତେବେ କି ଆଶାରେ କହ ଏ ସଂସାରେ
ପରଲାଗି ନର ମରୁଛି ନିତି !

ସ୍ନେହ ଏବଂ ପ୍ରେମର ଝରଣା ସତତ ପ୍ରବାହିତ ଏହି ଧରାଧାମରେ । ସେଇଥିପାଇଁ ସ୍ୱର୍ଗର ମାୟା ଭୁଲି ଦେବତାମାନେ ପୃଥିବୀରେ ଜନ୍ମଗ୍ରହଣ କରିବାକୁ ଆଶା ପ୍ରକାଶ କରିଥାନ୍ତି । ତା'ର ମଧୁରତାରେ ସ୍ୱର୍ଗର ଅମୃତକୁ ମଧ୍ୟ ତୁଚ୍ଛ ମଣିଥାନ୍ତି । ଋତୁଚକ୍ରର ଆବର୍ତ୍ତନରେ ପୃଥିବୀରେ ଯେଉଁ ପରିବର୍ତ୍ତନ ସଂଘଟିତ ହୋଇଥାଏ, ତାହା ସେହି ମଧୁରତାର ପ୍ରତିଫଳନ ବ୍ୟତୀତ ଅନ୍ୟ କିଛି ହୋଇ ନ ପାରେ । ବର୍ଷାର ରୁମ୍‌ଝୁମ୍ ଶବ୍ଦ, ଗ୍ରୀଷ୍ମଋତୁର ମନୋରମ ସଂଧ୍ୟା ଓ ସକାଳ, ବସନ୍ତର ରଙ୍ଗିନ ରୂପ—ବୃକ୍ଷର ସ୍ନିଗ୍‌ଧ ଶୀତଳ ଛାୟା ସବୁଯେପରି ମନୋରମ ଓ ଅମୃତମୟ । ଜଗତର

କଲ୍ୟାଣ ଉଦ୍ଦେଶ୍ୟରେ ଏହି ଦେଶର ପ୍ରାଚୀନ ଋଷିଗଣ ଗାଇ ଉଠିଥିଲେ–"ଅସଦୋଽମାଂ ସଦଗମୟଃ । ତମସୋଽମାଂ ଜ୍ୟୋତିର୍ଗମୟଃ । ମୃତ୍ୟୁର୍ମାଂ ଅମୃତଂ ଗମୟଃ ।" ଏହି ମଧୁରତା ମଧ୍ୟରେ ଅମୃତର ସ୍ୱାଦ ମଧ୍ୟରେ ହିଁ ବିଶ୍ୱ ପ୍ରତିଷ୍ଠିତ ।

ମଣିଷର ଦୃଷ୍ଟିଭଙ୍ଗୀ ବିଶ୍ୱକୁ ମଧୁମୟ କିମ୍ବା କୁତ୍ସିତ କରିପାରେ । ଭୋଗବାଦୀ ଦୃଷ୍ଟି ସବୁଠାରେ ଅନ୍ୱେଷଣ କରିଥାଏ ବ୍ୟକ୍ତିସ୍ୱାର୍ଥକୁ । କ୍ଷୁଦ୍ରତା ଏବଂ ସଂକୀର୍ଣ୍ଣତା ମଧ୍ୟରେ ଜୀବନଯାପନ କରୁଥିବା ମଣିଷ କଦାପି ବିଶ୍ୱର ସେହି ମହନୀୟ ରୂପକୁ ଉପଲବ୍ଧି କରିବାକୁ ସମର୍ଥ ହୋଇନଥାଏ । ମଣିଷ ଯେତେବେଳେ ନିଜର ମୋହ ଓ ସ୍ୱାର୍ଥକୁ ତ୍ୟାଗକରି ଜଗତ ମଧ୍ୟରେ ନିଜକୁ ନିମଜ୍ଜିତ କରିବାକୁ ଚେଷ୍ଟାକରେ, ସେତେବେଳେ ଜଗତ ହୋଇଉଠେ ବେଶ୍ ମଧୁମୟ । ସେତେବେଳେ ସେ ଗାଇଉଠେ–"ମୁଁ ତ ଅମୃତ ସାଗର ବିନ୍ଦୁ, ନଭେ ଉଠିଥିଲି ତେଜି ସିନ୍ଧୁ ।" ଜ୍ଞାନଚକ୍ଷୁଦେଇ ବିଶ୍ୱକୁ ଦେଖିଲେ, ତା'ର ପ୍ରକୃତ ରହସ୍ୟ ଉଦ୍‌ଘାଟିତ ହୋଇଥାଏ । ନିୟତ ବିଶ୍ୱରେ ଆନନ୍ଦର ଝରଣା ପ୍ରବାହିତ । ମଧୁବର୍ଷାରେ ଜଗତ ପ୍ଳାବିତ । କେବଳ ଅଭାବ ରହିଛି ଦିବ୍ୟଦୃଷ୍ଟିର । ଯେଉଁମାନେ ଏହି ଦୃଷ୍ଟିର ଅଧିକାରୀ ସେମାନଙ୍କ ଆଖିରେ ବିଶ୍ୱ ମଧୁମୟ ଓ ଆନନ୍ଦମୟ ।

ବିଶ୍ୱରେ ଦୁଃଖ ରହିଛି, ରହିଛି ମଧ୍ୟ ଜରା, ବ୍ୟାଧି ଓ ମୃତ୍ୟୁ । ମାତ୍ର ଦିବ୍ୟଦୃଷ୍ଟିର ଅଧିକାରୀ ସର୍ବଦା ଅମୃତର ସନ୍ଧାନୀ । କୁତ୍ସିତତା ମଧ୍ୟରେ ସେ ଉପଲବ୍ଧି କରିପାରେ ସୌନ୍ଦର୍ଯ୍ୟର ଅମୀୟ ଧାରା । ଈଶ୍ୱରଙ୍କ ସୃଷ୍ଟିରେ ଅବିରତ ଅମୃତର ଧାରା ପ୍ରବାହିତ । ମାତ୍ର ତାକୁ ପାନ କରିବାକୁ ହେଲେ, ମଣିଷକୁ ସଂକୀର୍ଣ୍ଣତାର ଗଣ୍ଡି ମଧ୍ୟରୁ ମୁକ୍ତ ହୋଇ ବିଶ୍ୱର ବିରାଟ ଅଙ୍ଗନରେ ପରିଭ୍ରମଣ କରିବାକୁ ପଡ଼ିବ । ଈଶ୍ୱରଙ୍କ ସତ୍ତାର ମହନୀୟତାକୁ ଉପଲବ୍ଧି କରିବାକୁ ହେବ । ସାଗରର ନୀଳିମା, ଉତ୍ତୁଙ୍ଗଗିରିର ତୁଙ୍ଗ ଶିଖର ମଧ୍ୟଦେଇ ନିଜକୁ ହଜାଇ ଦେବାକୁ ପଡ଼ିବ । ଫୁଲ ପରି କୋମଳ ସ୍ୱଭାବ ହୋଇ ତା'ର ସୁବାସ ଆଘ୍ରାଣ କରିବାକୁ ହେବ । ତେବେ ଯାଇ ମଣିଷ ବିଶ୍ୱରେ ପ୍ରବାହିତ ଅମୃତଧାରାରେ ସ୍ନାନ କରିବାକୁ ସମର୍ଥ ହୋଇପାରିବ ।



## ଇତିହାସ ଅଧ୍ୟୟନର ଆବଶ୍ୟକତା

**(ଉପକ୍ରମ, ଇତିହାସର ଉପାଦାନ, ମାନବ ଜୀବନରେ ଇତିହାସର ଉପଯୋଗିତା, ଏହାର ବୈଶିଷ୍ଟ୍ୟ, ଉପସଂହାର)**

ଇତିହାସ ଶବ୍ଦକୁ ବିଶ୍ଳେଷଣ କଲେ ଏହା ହେବ ଇତି (ଯାହା ଘଟିଯାଇଛି) ହ (ହିଁ), ଆସ-(ଥିଲା), ଅର୍ଥାତ୍ ଅତୀତରେ ଯାହା ଥିଲା । ଏଣୁ ଅତୀତ ସମ୍ପର୍କୀୟ ବା ଅତୀତର ଘଟଣା ସମ୍ପର୍କୀୟ ବିଦ୍ୟା ହେଉଛି ଇତିହାସ । ଏଥିରୁ ମୁଖ୍ୟତଃ ଦୁଇଟି ବିଷୟ ସ୍ପଷ୍ଟ ହୋଇଥାଏ ।

ପ୍ରଥମତଃ ଏହାର ସମ୍ବନ୍ଧ ଅତୀତ ସହିତ ଓ ଦ୍ୱିତୀୟତଃ ଏଥିରେ ବାସ୍ତବ ଏବଂ ଯଥାର୍ଥ ଘଟଣାଗୁଡ଼ିକର ଲିପିବଦ୍ଧ ହୋଇଥାଏ । ଗୋଟିଏ ଜାତିର ଅତୀତ ଜୀବନଧାରା, ମାନବିକ କାର୍ଯ୍ୟକଳାପ, ତା'ର ଅତୀତ ଐତିହ୍ୟ ଏବଂ ସଂସ୍କୃତି ଇତିହାସରୁ ହିଁ ଜଣାଯାଇଥାଏ । କେବଳ ଅତୀତର ତ୍ରୁଟି ବିଚ୍ୟୁତିକୁ ପ୍ରକାଶ କରିଦେଲେ ତାହା ଇତିହାସ ହୋଇପାରିବ ନାହିଁ । ଭବିଷ୍ୟତ ନିମିତ୍ତ ସେଥିରେ କି ପ୍ରକାର ବାର୍ତ୍ତା ରହିଛି, ତାହାହିଁ ହେଉଛି ଇତିହାସର ସବୁଠାରୁ ବଡ଼ କଥା । ଏହା ଜ୍ଞାନର ଅୟନକୁ ବିସ୍ତୃତ କରେ । ଚିନ୍ତାଧାରାକୁ ମାର୍ଜିତ ଓ ପରିପୁଷ୍ଟ କରିଥାଏ । ଯଥାର୍ଥ ଇତିହାସ ଗୋଟିଏ ଜାତିକୁ ଭବିଷ୍ୟତ ପାଇଁ ପ୍ରେରଣା ଦେଇଥାଏ, ଜାତିକୁ ସଙ୍ଗଠିତ କରିବାପାଇଁ ନିର୍ଦ୍ଦେଶ ପ୍ରଦାନ କରିଥାଏ ।

ବହୁ ଉପାଦାନର ସମଷ୍ଟିରେ ଇତିହାସର କଳେବର ଗଠିତ । କିମ୍ବଦନ୍ତୀ, ଶିଳାଲେଖ, ବିଭିନ୍ନ ପୋଥି, ଅଭିଲେଖ, ପ୍ରାଚୀନ ମୁଦ୍ରା, ମନ୍ଦିର, ଦୁର୍ଗ, ତମ୍ବାପଟା, ଗ୍ରନ୍ଥ ତଥା ପ୍ରାଚୀନ କୀର୍ତ୍ତିକୁ ଉପାଦାନ ରୂପେ ଗ୍ରହଣ କରାଯାଇ ଇତିହାସ ରଚିତ ହୋଇଥାଏ । ଅନୁମାନ ଉପରେ ନିର୍ଭର କଲେ ଇତିହାସ କଳଙ୍କିତ ହୋଇଯିବାର ବହୁ ସମ୍ଭାବନା ରହିଛି । ଅତୀତର ସମସ୍ତ ଉପାଦାନକୁ ବିଶ୍ଳେଷଣ କରି ସେଥିରୁ ପ୍ରକୃତ ସତ୍ୟ ଉଦ୍‌ଘାଟନ କରିବା ଐତିହାସିକର ପରମ ଧର୍ମ । ଅତିରଞ୍ଜନତା ବା କଳ୍ପନାର ଆଧିକ୍ୟ ଇତିହାସର ମହତ୍ତ୍ୱ ହାନି କରିଥାଏ । ବହୁ କିମ୍ବଦନ୍ତୀ ମାନବ ସମାଜ ଉପରେ ତା'ର ଅପ୍ରତିହତ ପ୍ରଭାବ ଜାରିକଲେହେଁ, ତାହା ପ୍ରକୃତ ଇତିହାସ ନୁହେଁ । ବରଂ ଗୋଟିଏ ଜାତି ପ୍ରାଣରେ କିଛିଟା ଉନ୍ମାଦନା ଓ ପ୍ରେରଣା ସୃଷ୍ଟି କରିବା ନିମିତ୍ତ ଏହାର ସୃଷ୍ଟି । ଏହି ଦୃଷ୍ଟିରୁ ପୁରୁଷୋତ୍ତମ ଦେବଙ୍କ କାଞ୍ଚି ଅଭିଯାନ କିମ୍ବଦନ୍ତୀଟିକୁ ଗ୍ରହଣ କରାଯାଇପାରେ । ଜଗନ୍ନାଥଙ୍କ ମହତ୍ତ୍ୱ ପ୍ରତିପାଦିତ କରିବା ଏହି କିମ୍ବଦନ୍ତୀଟିର ମୂଳ ଲକ୍ଷ୍ୟ । ଅନେକ ବଂଶାବଳୀ, ଜୀବନଚରିତ ଇତିହାସର ଉପାଦାନ ରୂପେ ଗୃହୀତ ହୋଇଥାଏ । ମାତ୍ର ଅନେକ ସମୟରେ ଅତିରଞ୍ଜକତା ଏଥିରେ ବହୁମାତ୍ରାରେ ପ୍ରକାଶିତ ହୋଇଥିବାରୁ, ଐତିହାସିକ ତନ୍ନ ତନ୍ନ କରି ଏହାକୁ ବିଶ୍ଳେଷଣ କରି ଏଥିରୁ ପ୍ରକୃତ ସତ୍ୟ ଉଦ୍‌ଘାଟନ କରିବା ଆବଶ୍ୟକ । ଆଜି ଇତିହାସ କହିଲେ କେବଳ ରାଜା ବା ସେମାନଙ୍କର ବଂଶଧରର ବିଭିନ୍ନ କୀର୍ତ୍ତି ଅଥବା କାର୍ଯ୍ୟକଳାପକୁ ବୁଝାଇନଥାଏ । ଗୋଟିଏ ଜାତିର ସାମାଜିକ, ରାଜନୀତିକ, ଆର୍ଥନୀତିକ, ଧାର୍ମିକ, ଜୀବନ, କଳା ତଥା ସାହିତ୍ୟ ମଧ୍ୟ ଏହାର ଅଙ୍ଗୀଭୂତ । ତେଣୁ ଗୋଟିଏ ଜାତିର ଧାରାବାହିକ ବିବରଣୀ ସହିତ ତା'ର ପ୍ରତ୍ୟେକଟି ଘଟଣା ବାସ୍ତବ ଓ ସତ୍ୟ ଦୃଷ୍ଟିରୁ ଏଥିରେ ରୂପାୟିତ ହେବା ଆବଶ୍ୟକ । ଏହି ଦୃଷ୍ଟିରୁ ଇତିହାସ ରଚନା ଅତୀବ ଆୟାସସାଧ ବ୍ୟାପାର । ଇତିହାସ ରଚନାର ପ୍ରଥମ ଭିତ୍ତି ସ୍ଥାପନ ହୋଇଥିଲା ଗ୍ରୀସ୍‌ରେ । ରୋମର ଫ୍ଲେମିଂ ଏବଂ ହେରୋଡଟସ ଇତିହାସ ପ୍ରଣୟନ କ୍ଷେତ୍ରରେ ପ୍ରଥମ ଦିଗ୍‌ଦର୍ଶକ ରୂପରେ ସ୍ୱୀକୃତି ଲାଭ କରିଛନ୍ତି । ଆଜି ଇତିହାସର କ୍ଷେତ୍ର ବିସ୍ତୃତି ଲାଭ କରିଛି । ଜ୍ଞାନ-ବିଜ୍ଞାନର ସମସ୍ତ

ଚିନ୍ତାଧାରା ଏଥିରେ ପ୍ରକାଶ ଲାଭ କରିପାରିଛି । ଏହା ସତ୍ତ୍ୱେ ଏବେବି ବିଶ୍ୱର ବହୁ ଘଟଣା ଅନାବିଷ୍କୃତ । ସଭ୍ୟତାର କେତୋଟି ଦିଗ ଅନାଲୋଚିତ । ତେଣୁ ବର୍ତ୍ତମାନ ଐତିହାସିକଗଣ ସେଥିପ୍ରତି ଦୃଷ୍ଟିପ୍ରଦାନ କରି ସେହି ଘଟଣାଗୁଡ଼ିକୁ ଆବିଷ୍କାର କରିବା ଉଚିତ । ଏଠାରେ ସ୍ମରଣୀୟ ଯେ, ବାସ୍ତବ ସତ୍ୟ ଉଦ୍‌ଘାଟନ ଇତିହାସର ସର୍ବଶ୍ରେଷ୍ଠ ଲକ୍ଷ୍ୟ । ଉଦ୍ଦେଶ୍ୟମୂଳକ ଭାବରେ ଈର୍ଷାପ୍ରଣୋଦିତ ହୋଇ ଇତିହାସ ରଚନା କଲେ, ଇତିହାସ କେବଳ କଳଙ୍କିତ ହୋଇନଥାଏ, ଗୋଟିଏ ଜାତିର ସଭ୍ୟତା, ସଂସ୍କୃତି, ଆଚାର-ବ୍ୟବହାର, ଚାଲିଚଳଣି– ସବୁ ନଷ୍ଟଭ୍ରଷ୍ଟ ହୋଇଥାଏ । ଏଣୁ ଐତିହାସିକ ସମ୍ପୂର୍ଣ୍ଣ ଭାବରେ ନିରପେକ୍ଷ ହେବା ସଙ୍ଗେ ସଙ୍ଗେ ଜାତିର ବାସ୍ତବ ସତ୍ୟ ଉଦ୍‌ଘାଟନ ତା'ର ଲକ୍ଷ୍ୟ ହେବା ଆବଶ୍ୟକ ।

ମାନବ ଜୀବନରେ ଇତିହାସର ବହୁ ଉପଯୋଗିତା ରହିଛି । ଏହା କେବଳ ଗୋଟିଏ ଜାତିର ଅତୀତ କଥା କୁହେ ନାହିଁ; ପରନ୍ତୁ ଅତୀତ ସହିତ ବର୍ତ୍ତମାନକୁ ସଂଯୋଜିତ କରି ଭବିଷ୍ୟତ ନିମିତ୍ତ ପଥ ପ୍ରଦର୍ଶକ ହୋଇଥାଏ । ଗୋଟିଏ ଜାତିର ଅଧୋପତନ ମୂଳରେ ଯେଉଁସବୁ କାରଣ ବିଦ୍ୟମାନ, ଇତିହାସରେ ତା'ର ସ୍ପଷ୍ଟ ପରିଚୟ ରହିଥିବାରୁ ଭବିଷ୍ୟତ ବଂଶଧର ଏଥିପ୍ରତି ସତର୍କ ଦୃଷ୍ଟି ରଖିଥାନ୍ତି । ଭାରତୀୟମାନଙ୍କର ଏକତାର ଅଭାବରୁ ଦ୍ୱିତୀୟ ତିରୋରୀ ଯୁଦ୍ଧରେ ଭାରତ ପରାଜୟ ବରଣ କଲା । ସ୍ୱାଧୀନତା ଆନ୍ଦୋଳନ ସମୟରେ ଆମର ସ୍ୱାଧୀନତା ସଂଗ୍ରାମୀଗଣ ପ୍ରଥମେ ଜାତୀୟ ଏକତାକୁ ସୁଦୃଢ଼ କରି ସଂଗ୍ରାମ ପଥରେ ପାଦ ଦେଇଥିଲେ । ଅତୀତ ଇତିହାସର ଶିକ୍ଷା ସେମାନଙ୍କୁ ଭବିଷ୍ୟତ ନିମିତ୍ତ ପଥ ପ୍ରଦର୍ଶନ କରିଥିଲା । ପୂର୍ବପୁରୁଷଙ୍କ ଗୌରବମୟ କାହାଣୀ ଆମକୁ ଯେଉଁ ପ୍ରେରଣା ପ୍ରଦାନ କରିଥାଏ, ତାହା ଭବିଷ୍ୟତ ଗଠନରେ ସହାୟତା କରିଥାଏ । ଇତିହାସର ବିବରଣୀ ଉପରେ ନିର୍ଭର କରି ଜାତି ତା'ର ତ୍ରୁଟିକୁ ସଂଶୋଧନ କରିଥାଏ । ଏହା କେବଳ ଜ୍ଞାନ ପ୍ରଦାନ କରେ ନାହିଁ, ଜ୍ଞାନର ସମସ୍ତ ଦିଗ୍‌ବଳୟକୁ ଉନ୍ମୋଚନ କରିଥାଏ । ତେଣୁ କୁହାଯାଇଥାଏ–Historical judgement is not a variety of knowledge, but it is knowledge itself, it is the form which completely files and exhausts the field of knowing leaving no room for anything else. ଚଳନ୍ତି ସମୟରେ ଅତୀତର ସମୟକୁ ବାନ୍ଧିଦେବା ପାଇଁ ଇତିହାସ ଏକ ମାଧ୍ୟମ ରୂପେ କାର୍ଯ୍ୟ କରିଥାଏ । ସେଇଥିପାଇଁ P. B. Shelly କହିଥିଲେ, History is the cyclic poem written by time upon the memories of men. ଇତିହାସରେ ଅତୀତ ଗୋଟିଏ ପ୍ରେରଣା ରୂପେ କାର୍ଯ୍ୟ କରିଥାଏ । ତେଣୁ ବ୍ୟକ୍ତି ଜୀବନର ନୈରାଶ୍ୟ ଓ ଗ୍ଲାନିବୋଧକୁ ଦୂରେଇ ଦେଇ ଭବିଷ୍ୟତକୁ କର୍ମମୁଖର କରିବା ନିମିତ୍ତ ଉତ୍ସାହ ପ୍ରଦାନ କରିଥାଏ । ଅତୀତ ରାଜନୀତିର ତ୍ରୁଟିବିଚ୍ୟୁତିକୁ ଦର୍ଶାଇ ବର୍ତ୍ତମାନର ପ୍ରଶାସନକୁ ଉଚିତ କର୍ତ୍ତବ୍ୟ ସମ୍ପାଦନ ନିମିତ୍ତ ଉପାଦାନ ଯୋଗାଇ ଦେଇଥାଏ । ବିଶ୍ୱ ଇତିହାସ ମାଧ୍ୟମରେ ବିଶ୍ୱର ବିଭିନ୍ନ ଘଟଣାବଳୀକୁ ତା'ଆଗରେ ଟେକି ଧରିଥାଏ । ମାନବ ସଭ୍ୟତାର ପ୍ରକୃତ

ବିବରଣୀ ପ୍ରକାଶ କରି ସଭ୍ୟମାନବ ରୂପେ ଜୀବନ ଅତିବାହିତ କରିବାକୁ ଏହା ଉଦ୍‌ବୋଧିତ କରିଥାଏ । ଗୋଟିଏ ଯୁଗର ବିଗତ ବାର୍ତ୍ତା, ଅମର କାହାଣୀ ଇତିହାସ ଦ୍ୱାରା ଜନମାନସରେ ପ୍ରଚାରିତ ହୋଇଥାଏ । ସେଇଥିପାଇଁ ଉତ୍କଳଗୌରବ ମଧୁସୂଦନ 'ଜାତି ଇତିହାସକୁ ଜାତିର ନିର୍ଝର' ବୋଲି କହିଥିଲେ । ଜାତୀୟ ସଂହତି ଓ ଐକ୍ୟ ନିମିତ୍ତ ଇତିହାସ ହିଁ ଯୁଗେ ଯୁଗେ ମାନବସମାଜକୁ ପ୍ରେରଣା ଦେଇଆସିଛି । ମଣିଷର ଇତିହାସ ବିସ୍ମୃତିର ଅତଳ ଗର୍ଭରେ ନିମଜ୍ଜମାନ । ତାକୁ ଉଦ୍ଧାର କରି ମାନବ ସମାଜ ଆଗରେ ଟେକି ଧରିବାର କ୍ଷମତା କେବଳ ଇତିହାସର ହିଁ ରହିଛି । ଜାତିର ଉତ୍‌ଥାନ ପତନର ଚିତ୍ର ପ୍ରଦାନ କରିବା ସମୟରେ ଇତିହାସ ହିଁ ତା'ର କାରଣ ସମ୍ବନ୍ଧରେ ସୂଚନା ପ୍ରଦାନ କରିଥାଏ । ତେଣୁ ବର୍ତ୍ତମାନ ଏବଂ ଭବିଷ୍ୟତ ସମାଜ ସେହି କାରଣ ସମ୍ପର୍କରେ ସଚେତନ ହୋଇ ଅତୀତ ତ୍ରୁଟିର ସଂଶୋଧନ ନିମିତ୍ତ ପଦକ୍ଷେପ ଗ୍ରହଣ କରେ । ଜାତି ପ୍ରାଣରେ ଉଦ୍ଦାମତା ଏବଂ ଚଞ୍ଚଳତା ପ୍ରବାହ କରିବା କ୍ଷେତ୍ରରେ ଇତିହାସର ଭୂମିକା ନିଶ୍ଚିତ ଭାବରେ ଗୁରୁତ୍ୱପୂର୍ଣ୍ଣ । ଏହା ଆତ୍ମପ୍ରତ୍ୟୟକୁ ଜାଗ୍ରତ କରେ । ଏକ ସୁନ୍ଦର ଭବିଷ୍ୟତ ଗଠନ ନିମିତ୍ତ ପରାମର୍ଶ ଦେଇଥାଏ । ଏହିସବୁ ଦୃଷ୍ଟିକୋଣରୁ ଗୋଟିଏ ଜାତି ଓ ସମସ୍ତ ବ୍ୟକ୍ତି ପାଇଁ ଇତିହାସ ପାଠର ଯଥେଷ୍ଟ ଉପଯୋଗିତା ରହିଛି ।

ଇତିହାସର ବୈଶିଷ୍ଟ୍ୟ ମୁଖ୍ୟତଃ ନିର୍ଭର କରିଥାଏ ତା'ର ରଚୟିତାଙ୍କ ଉପରେ । ସତ୍ୟର ଅନୁସନ୍ଧିତ୍ସା ଐତିହାସିକର ପରମ ଧ୍ୟେୟ ହେବା ଉଚିତ । କୌଣସି କ୍ଷେତ୍ରରେ ଏହାର ତ୍ରୁଟି ପରିଲକ୍ଷିତ ହେଲେ, ସମ୍ପୂର୍ଣ୍ଣ ଜାତିର ଇତିହାସ ତ୍ରୁଟିପୂର୍ଣ୍ଣ ହୋଇପଡ଼େ । ତେଣୁ ଇତିହାସରେ ଭାବାବେଗର ସ୍ଥାନ ଆଦୌ ନାହିଁ । ବିଶ୍ୱରେ ବିଭିନ୍ନ ସମୟରେ ସଂଘଟିତ କ୍ରାନ୍ତିକାରୀ ବିପ୍ଲବ ସମ୍ପର୍କରେ ସୂଚନା ପ୍ରଦାନ କରିବା ସମୟରେ ଯଦି ଇତିହାସକୁ ସାମାନ୍ୟ ବିକୃତ କରି ଐତିହାସିକ ଲେଖେ, ତେବେ ବିଶ୍ୱରେ ଯେକୌଣସି ମୁହୂର୍ତ୍ତରେ ଅପ୍ରୀତିକର ଅବସ୍ଥା ସୃଷ୍ଟି ହୋଇପାରେ । ଏଥିପ୍ରତି ପ୍ରତ୍ୟେକ ଐତିହାସିକ ସର୍ବାଦୌ ସଚେତନ ରହିବା ବାଞ୍ଛନୀୟ । ସତ୍ୟ ଏବଂ ବାସ୍ତବତାକୁ ପରିବର୍ତ୍ତନ କରିବାର କୌଣସି ଅଧିକାର ଐତିହାସିକର ନାହିଁ । ସଂଜୟଙ୍କ ପରି ନିର୍ବିକାର ଭାବରେ ସେ କେବଳ ବିବରଣୀ ପ୍ରଦାନ କରିପାରିବେ । ଆବଶ୍ୟକବେଳେ ବିବରଣୀ ପ୍ରଦାନ ସମୟରେ କେତେକ ତ୍ରୁଟିକୁ ସେ ନିର୍ଦ୍ଦେଶିତ କରିପାରିବେ; ମାତ୍ର ଐତିହାସିକ ସତ୍ୟକୁ କୌଣସି କ୍ଷେତ୍ରରେ ଅସୂୟା ପ୍ରଣୋଦିତ ହୋଇ ବିକୃତ କରିପାରିବେ ନାହିଁ ।

ଇତିହାସ ଜାତିର ଦିଗ ନିର୍ଦ୍ଦେଶକ । ଉଚିତ ପଥର ନିର୍ଦ୍ଦେଶନା ଦେବା ତା'ର ଦାୟିତ୍ୱ । ସତ୍ୟର ଆଲୋକରେ ଜଗତକୁ ଉଦ୍ଭାସିତ କରିବା ତା'ର ଧର୍ମ । ଅତୀତ ମଣିଷ ଚରିତ୍ରର ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ ବର୍ତ୍ତମାନ ତଥା ଭବିଷ୍ୟତ ମଣିଷର ଚରିତ୍ରକୁ ସଂଶୋଧିତ କରିବା ତା'ର କର୍ତ୍ତବ୍ୟ । ତେଣୁ ଇତିହାସ କେବଳ ଇତି କଥା ନୁହେଁ । ତାହା ମଧ୍ୟ ମଣିଷ ସମାଜର ଅତି କଥା । ଇତିହାସର ବିବରଣୀ ଉପରେ ହିଁ ଜାତିର ଐକ୍ୟ ଓ ସମୃଦ୍ଧି ବିଶେଷ

ପରିମାଣରେ ନିର୍ଭର କରେ । ଜାତି ଇତିହାସର ବାର୍ତ୍ତାବହ ଇତିହାସ । ତେଣୁ ଅତୀତ, ବର୍ତ୍ତମାନ ତଥା ଭବିଷ୍ୟତ ମଣିଷକୁ ଗୋଟିଏ କେନ୍ଦ୍ରବିନ୍ଦୁରେ ମିଳିତ କରାଇ ତାକୁ ଉପଯୁକ୍ତ ପଥର ନିର୍ଦ୍ଦେଶ ପ୍ରଦାନ କରିବା ଇତିହାସର ପ୍ରଥମ ଓ ମୌଳିକ କର୍ତ୍ତବ୍ୟ ।

●

## ତୁମ ଜୀବନର ଭବିଷ୍ୟତ ଲକ୍ଷ୍ୟ

**(ଉପକ୍ରମ, ଭବିଷ୍ୟତ ଜୀବନର ଅଭିଳଷିତ ଲକ୍ଷ୍ୟର କାରଣ, ସମାଜ କ୍ଷେତ୍ରରେ ଏହି ଲକ୍ଷ୍ୟର ଆବଶ୍ୟକତା, ବ୍ୟକ୍ତିଗତ ଜୀବନର ପ୍ରେରଣା, ଉପସଂହାର)**

ଆଜିର ଶିଶୁ ଭବିଷ୍ୟତର ନାଗରିକ । ଦେଶ ଗଠନର ଦାୟିତ୍ୱ ତା'ଉପରେ ନ୍ୟସ୍ତ । ମାତ୍ର ଭବିଷ୍ୟତ ଅନିଶ୍ଚିତ । ଏହା ସତ୍ତ୍ୱେ ପ୍ରତ୍ୟେକ ମଣିଷର ଭବିଷ୍ୟତ ପାଇଁ ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ରହିବା ଆବଶ୍ୟକ । ସେହି ଲକ୍ଷ୍ୟକୁ ଆଖି ଆଗରେ ରଖି ଜୀବନ ସରଣୀରେ ସେ ଗତି କରିଥାଏ । କଳ୍ପନାକୁ ବାସ୍ତବତାର ପୁଟ ଦେବାକୁ ଆକାଂକ୍ଷା ପରିପୋଷଣ କରେ । ଅନାଗତକୁ ଏକ ନିର୍ଦ୍ଦିଷ୍ଟ ବିନ୍ଦୁରେ ରଖିବାକୁ ଚେଷ୍ଟା କରିଥାଏ । ଲକ୍ଷ୍ୟ ନିର୍ଦ୍ଦିଷ୍ଟ ନ ଥିଲେ ଜୀବନ ମଙ୍ଗୁଆଳହୀନ ନାବ ପରି ଅନିର୍ଦ୍ଦିଷ୍ଟ ପଥରେ ଭାସି ଚାଲିଥାଏ । ତେଣୁ ପ୍ରତ୍ୟେକ ମଣିଷ ନିଜର ଭବିଷ୍ୟତକୁ ଗୋଟିଏ ନିର୍ଦ୍ଦିଷ୍ଟ ବିନ୍ଦୁରେ ମିଳିତ କରାଇବା ନିମିତ୍ତ ଆକାଂକ୍ଷା ପୋଷଣ କରିବା ଉଚିତ । ତଦନୁସାରେ ସେ ତା'ର କାର୍ଯ୍ୟପନ୍ଥା ମଧ୍ୟ ନିର୍ଦ୍ଦିଷ୍ଟ କରିଥାଏ । ମାତ୍ର ଲକ୍ଷ୍ୟହୀନ ଭାବରେ ଗତିକଲେ ଜୀବନ ବହୁ ବାଧା-ବିଘ୍ନର ସମ୍ମୁଖୀନ ହୋଇଥାଏ । ଏହି ଲକ୍ଷ୍ୟ କୈଶୋର ଜୀବନରୁହିଁ ନିର୍ଦ୍ଦିଷ୍ଟ ହେବା ଆବଶ୍ୟକ । ସେଥିପାଇଁ ମୁଁ ମୋର ଜୀବନକୁ କୂଳରେ ଲଗାଇବା ନିମିତ୍ତ ଅଧ୍ୟାପନାକୁ ଭବିଷ୍ୟତ କର୍ମପନ୍ଥା ଭାବରେ ଗ୍ରହଣ କରିନେଇଛି ଏବଂ ସେହି କାରଣରୁ ଲକ୍ଷ୍ୟସ୍ଥଳରେ ପହଞ୍ଚିବା ନିମିତ୍ତ ଏ ଯାବତ୍ ନିରବଚ୍ଛିନ୍ନ ସାଧନା କରିଆସୁଛି ।

ପ୍ରତ୍ୟେକ ମଣିଷ କ୍ଷେତ୍ରରେ ତା'ର ଛାତ୍ର ଜୀବନ ହେଉଛି ସର୍ବଶ୍ରେଷ୍ଠ । ଏହି ସମୟରେ ହିଁ ସେ ତା'ର ଭବିଷ୍ୟତ ପାଇଁ ସ୍ୱପ୍ନ ଦେଖିଥାଏ । ଜୀବନକୁ ସାକାର କରିବା ନିମିତ୍ତ ପ୍ରତିଜ୍ଞାବଦ୍ଧ ହୁଏ । ମୋର ଅନେକ ବନ୍ଧୁ ତାଙ୍କ ଜୀବନରେ ବହୁ ବଡ଼ ବଡ଼ ଲକ୍ଷ୍ୟ ରଖିଥିଲେହେଁ, ଭବିଷ୍ୟତରେ ଅଧ୍ୟାପକ ହେବା ନିମିତ୍ତ ମୋର କିନ୍ତୁ ଅଭିଳାଷ ରହିଛି । ଏହି ଅଭିଳାଷ ମୂଳରେ ନିର୍ଦ୍ଦିଷ୍ଟ କାରଣ ବିଦ୍ୟମାନ ରହିଛି । ଶ୍ରେଣୀ ଗୃହରେ ଅଧ୍ୟୟନରତ ଥିବା ସମୟରେ ଅଚାନକ ଗୋଟିଏ ଘଟଣା ଘଟିଲା । ମୋର ଜଣେ ବନ୍ଧୁଙ୍କୁ ଦୁଇଜଣ ପୋଲିସ୍ ଧରି ଶ୍ରେଣୀ ଗୃହ ନିକଟରେ ପ୍ରବେଶ କଲେ । ସେହି ବନ୍ଧୁଟି ଅଧିକାଂଶ ସମୟରେ ଶ୍ରେଣୀ ଗୃହରେ ଅନୁପସ୍ଥିତ ରହି ଅସାମାଜିକ ବ୍ୟକ୍ତିମାନଙ୍କ ସହିତ ବନ୍ଧୁତା ସ୍ଥାପନ କରି ବିଭିନ୍ନ ଅସାମାଜିକ କାର୍ଯ୍ୟରେ ଲିପ୍ତ ରହୁଥାଏ । ସେଦିନର ଘଟଣା ଥିଲା ଅନ୍ୟପ୍ରକାର । ସେ ତା'ର କୁସଙ୍ଗୀଙ୍କ ପରାମର୍ଶରେ ସେଦିନ ମଦ୍ୟପାନ

କରି ସେମାନଙ୍କର ପ୍ରରୋଚନାରେ ଗୋଟିଏ ଦୋକାନରୁ କିଛି ଚୋରି କରିବା ସମୟରେ ଦୋକାନୀଟି ଦ୍ୱାରା ଧରାପଡ଼ି ପୋଲିସ ହାତରେ ସମର୍ପିତ ହୋଇଥିଲା । ଜଣେ ଛାତ୍ର ଭାବରେ ସେ ଏପରି କୁକୀର୍ତ୍ତି କାହିଁକି କରିବାକୁ ଗଲା ବୋଲି ପୋଲିସ ପ୍ରଶ୍ନ କରିବାରୁ ମିଥ୍ୟାରେ ସେ ଜଣେ ଅଧ୍ୟାପକଙ୍କ ନାମୋଚ୍ଚାରଣ କରି ତାଙ୍କ ନିର୍ଦ୍ଦେଶରେ ଦୋକାନରୁ କିଛି ପଦାର୍ଥ କ୍ରୟ କରିବାକୁ ଯାଇଥିଲା ବୋଲି ପ୍ରକାଶ କଲା । ତା'ର ସ୍ପଷ୍ଟୀକରଣ ଅନୁଯାୟୀ ସେ ଜିନିଷ ଚୋରି କରୁ ନ ଥିଲା; କେବଳ ଜିନିଷର ମାନ ପରୀକ୍ଷା କରୁଥିଲା ମାତ୍ର । ସେ ଯେଉଁ ଅଧ୍ୟାପକଙ୍କ ନାମ ପ୍ରକାଶ କରିଥିଲା, ସେହି ଅଧ୍ୟାପକଜଣକ ଆମକୁ ଶ୍ରେଣୀ ଗୃହରେ ପାଠ ପଢ଼ାଉଥିଲେ । ଘଟଣାର ସତ୍ୟାସତ୍ୟ ଜାଣିବା ନିମିତ୍ତ ପୋଲିସ ତାକୁ ଧରି ଅଧ୍ୟାପକଙ୍କ ନିକଟରେ ପହଞ୍ଚି ଘଟଣା ସମ୍ପର୍କରେ ଜାଣିବାକୁ ଇଚ୍ଛା ପ୍ରକାଶ କରିଥିଲେ । ମୋର ସେହି ପ୍ରିୟ ଅଧ୍ୟାପକ କିଛି ସମୟ ଚିନ୍ତା କରିବା ପରେ କହିଥିଲେ, ପିଲାଟି ଯାହା କହୁଛି ବାସ୍ତବରେ ସତ୍ୟ କହୁଛି । ମୁଁହିଁ ତାକୁ ଦୋକାନରୁ କିଛି ପଦାର୍ଥ କ୍ରୟ କରିବାକୁ ପଠାଇଥିଲି । ପୋଲିସ ସନ୍ଦେହ କରୁଥିଲେହେଁ ଅଧ୍ୟାପକଙ୍କ କଥାରେ ବିଶ୍ୱାସ କରି ପିଲାଟିକୁ ଛାଡ଼ି ଚାଲିଗଲେ । ସେଦିନ ଅଧ୍ୟାପକ ଆଉ କିଛି ପଢ଼ାଇ ନ ଥିଲେ । ସମ୍ପୂର୍ଣ୍ଣ ନିର୍ଘଣ୍ଟଟିକୁ କେବଳ ସେହି ବନ୍ଧୁଜଣଙ୍କୁ ସତ୍ ଉପଦେଶ ଦେବାରେ ବିତାଇ ଦେଇଥିଲେ । ଆମେ ସେଦିନ ଚମତ୍କୃତ ହୋଇଯାଇଥିଲୁ ଅଧ୍ୟାପକଙ୍କ ଉପଦେଶରେ । ଅସମ୍ଭବ ଭାବରେ ବନ୍ଧୁଜଣଙ୍କର ପରିବର୍ତ୍ତନ ହୋଇଥିଲା । ସେ ତାଙ୍କର ଜୀବନର ଗତି ସମ୍ପୂର୍ଣ୍ଣ ବଦଳାଇ ଦେଇଥିଲେ । ଅଧ୍ୟାପକଙ୍କ ବ୍ୟକ୍ତିତ୍ୱ, ଉପଦେଶ ଜଣେ ରତ୍ନାକରଙ୍କୁ କିପରି ବାଲ୍ମୀକିରେ ପରିଣତ କରି ଦେଇଥିଲା, ତାହା ମୁଁ ବନ୍ଧୁଙ୍କର ଜୀବନ ପରିବର୍ତ୍ତନରୁ ଅନୁଭବ କରିଥିଲି । ଯେଉଁମାନେ ଦେଶର ଭବିଷ୍ୟତ ନାଗରିକ, ସେମାନଙ୍କୁ ଉଚିତ ମାର୍ଗରେ ଯଥାର୍ଥ ନାଗରିକ ଭାବରେ ଗଢ଼ି ତୋଳିବା ପାଇଁ ମୁଁ ଶପଥ ଗ୍ରହଣ କରିଥିଲି ଏବଂ ଏଥିପାଇଁ ଅଧ୍ୟାପନା ଯେ ଉତ୍କୃଷ୍ଟ ମାର୍ଗ ତାହା ଅନୁଭବ କରିଥିଲି । ଦେଶର ପ୍ରଗତି ସମ୍ପୂର୍ଣ୍ଣ ଭାବରେ ନିର୍ଭର କରେ ଯୁବସମ୍ପ୍ରଦାୟଙ୍କ ଉପରେ । ସେମାନେ ଉଦ୍‌ଭ୍ରାନ୍ତ ହେଲେ ଦେଶର ପ୍ରଗତି ବାଧାପ୍ରାପ୍ତ ହୋଇଥାଏ । ସେଦିନର ସେହି ଶିକ୍ଷଣୀୟ ଘଟଣାଟି ମୋତେ ବହୁଭାବରେ ପ୍ରଭାବିତ କରିଥିଲା । ଦେଶର ପ୍ରଗତିକାମୀ ଯୁବକମାନଙ୍କୁ ଉପଯୁକ୍ତ ଦିଗ୍‌ଦର୍ଶନ ଏବଂ ଉଦ୍‌ଭ୍ରାନ୍ତ ଯୁବସମ୍ପ୍ରଦାୟଙ୍କୁ ଉଚିତ ମାର୍ଗ ପ୍ରଦର୍ଶନ କରାଇବାପାଇଁ ମୁଁ ଅଧ୍ୟାପନାକୁ ଜୀବନର ଲକ୍ଷ୍ୟଭାବରେ ଗ୍ରହଣ କରିନେଇଛି । ଅଧ୍ୟାପକ କେବଳ ଅଧ୍ୟୟନ କ୍ଷେତ୍ରରେ ନିଜକୁ ନିୟୋଜିତ କରି ନ ଥାନ୍ତି । ପରନ୍ତୁ ସତ୍‌ଚରିତ୍ର ଗଠନ କ୍ଷେତ୍ରରେ ମଧ୍ୟ ସେମାନଙ୍କର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ସେମାନଙ୍କର ଉପଦେଶ ଶ୍ରେଣୀଗୃହ ମଧ୍ୟରେ ଆବଦ୍ଧ ଥିଲେହେଁ, ଭବିଷ୍ୟତ ଗଠନ କ୍ଷେତ୍ରରେ ତା'ର ଭୂମିକା ମହତ୍ତ୍ୱପୂର୍ଣ୍ଣ । ଏହି ଦୃଷ୍ଟିରୁ ଅଧ୍ୟାପନା ବୃତ୍ତି ହିଁ ମୋ ଭବିଷ୍ୟତ ଜୀବନର ଲକ୍ଷ୍ୟ ।

ମୋର ଏହି ବୃତ୍ତି ବା ଲକ୍ଷ୍ୟ ସମାଜର ବିଭିନ୍ନ ଗଠନାତ୍ମକ କାର୍ଯ୍ୟରେ ସାହାଯ୍ୟ କରିପାରିବ ବୋଲି ଦୃଢ଼ବିଶ୍ୱାସ । ଆମେ ସମସ୍ତେ ଗୋଟିଏ ଗୋଟିଏ ସାମାଜିକ ପ୍ରାଣୀ । ସାମାଜିକ ଜୀବନରେ ବହୁ ନୀତିନିୟମ ପାଳନ କରି ଚାଲିବାକୁ ପଡ଼ିଥାଏ । ସେଥିରୁ ବିଚ୍ୟୁତ ହେଲେ ସୃଷ୍ଟି ହୁଏ ସାମାଜିକ ବିଶୃଙ୍ଖଳା । ବର୍ତ୍ତମାନ ସମାଜରେ ଠକାମୀ, ଦୁର୍ନୀତି, ପ୍ରିୟାପ୍ରୀତି ତୋଷଣ ତଥା ଅନ୍ୟାୟ ଅନୀତି ଆମର ସାମାଜିକ ଜୀବନକୁ ପଙ୍ଗୁ କରିଦେବାକୁ ବସିଛି । ଦୁର୍ନୀତିପୂର୍ଣ୍ଣ ରାଜନୀତିକ ନେତା, ଅସାଧୁ ବ୍ୟବସାୟୀ ତଥା କେତେକ ଅସାମାଜିକ ବ୍ୟକ୍ତିଙ୍କ ମଧରେ ମେଣ୍ଟ ହୋଇ ସମାଜକୁ ବିଭିନ୍ନ ଦୃଷ୍ଟିରୁ ଶୋଷଣ କରାଯାଉଛି । ଏହାଦ୍ୱାରା ଗରିବ ଅଧିକ ଗରିବ ହୋଇପଡୁଥିବା ସମୟରେ ଧନୀ ଅଧିକ ଧନୀ ହେବାରେ ଲାଗୁଛି । ଖଟିଖିଆ ସାଧାରଣ ବ୍ୟକ୍ତିଙ୍କ ଜୀବନ ବିପର୍ଯ୍ୟସ୍ତ ହୋଇପଡୁଛି । ଅବିଶ୍ୱାସ, କ୍ରୂରତା, ଶୋଷଣ ସାମାଜିକ ଜୀବନକୁ ପଙ୍ଗୁ କରୁଛି । ଏ କ୍ଷେତ୍ରରେ ଗୋଟିଏ ସାମାଜିକ ବିପ୍ଳବର ଆବଶ୍ୟକତା ରହିଛି । ଯେଉଁମାନେ ଶୋଷକ, ସେମାନେ କଦାପି ଏହି ପରିବର୍ତ୍ତିତ ପରିସ୍ଥିତିକୁ ସାଧାରଣ ଭାବରେ ଗ୍ରହଣ କରିପାରିବେ ନାହିଁ । ସମ୍ପ୍ରତି ଦେଶ ଗଠନ ଓ ସାମାଜିକ ବିପ୍ଳବ ପାଇଁ ଏ ଦେଶର ଯୁବସମ୍ପ୍ରଦାୟ ଅଣ୍ଟାଭିଡ଼ି ପଦାକୁ ବାହାରିଆସିବା ଉଚିତ । ସେହିମାନଙ୍କ ପ୍ରତ୍ୟକ୍ଷ ଅଂଶ ଗ୍ରହଣରେ ଦେଶରୁ ଦୁର୍ନୀତିର ମୂଳୋତ୍ପାଟନ ହୋଇପାରିବ । ମାତ୍ର ଯୁବସମ୍ପ୍ରଦାୟଙ୍କୁ ଉଚିତ ମାର୍ଗରେ ଗତି କରାଇବା ପାଇଁ ଆବଶ୍ୟକ ରହିଛି ଏକ ପ୍ରେରଣାର । ମୋ ମତରେ ଅଧ୍ୟାପନା କ୍ଷେତ୍ରରେ ନିଯୁକ୍ତ ବ୍ୟକ୍ତି ହିଁ ଏ କ୍ଷେତ୍ରରେ ବୈପ୍ଳବିକ ଭୂମିକା ଗ୍ରହଣ କରିପାରିବେ । ସେମାନେ ଯୁବସମ୍ପ୍ରଦାୟଙ୍କୁ ସଙ୍ଗଠିତ କରି ଦେଶର ଦୁର୍ନୀତି, କଳାବଜାରୀ ଓ ଅନୀତି ବିରୋଧରେ ସଂଗ୍ରାମ କରିବାକୁ ନୈତିକ ପ୍ରେରଣା ପ୍ରଦାନ କରିପାରିବେ । ଏହି ଦୃଷ୍ଟିରୁ ମୁଁ ନିଜକୁ ଅଧ୍ୟାପନା କ୍ଷେତ୍ରରେ ଜଡ଼ିତ କରିବାକୁ ଚାହେଁ । ମୁଁ ଚାହେଁ ଭାରତରୁ ସମସ୍ତ ପ୍ରକାର ଭେଦଭାବର ପ୍ରାଚୀର ଦୂର କରି ମଣିଷକୁ ପ୍ରକୃତ ମଣିଷ ରୂପରେ ଦେଖିବାକୁ । ଶୋଷଣ ବିରୋଧରେ ସଂଗ୍ରାମ କରିବାକୁ । ଶିକ୍ଷାର ସ୍ଥାନ କେବଳ ଶ୍ରେଣୀ ଗୃହର ଚାରିକାନ୍ଥ ମଧରେ ଆବଦ୍ଧ ନୁହେଁ । ସାମାଜିକ ବିପ୍ଳବ ଆଣିବା କ୍ଷେତ୍ରରେ ମଧ ତା'ର ଭୂମିକାର ତୁଳନା ନାହିଁ । ଏହି ଦୃଷ୍ଟିରୁ ଅଧ୍ୟାପନା ହିଁ ମୋ ଜୀବନର ସର୍ବଶ୍ରେଷ୍ଠ ଲକ୍ଷ୍ୟ ।

ମୋର ବ୍ୟକ୍ତିଗତ ଜୀବନର ପ୍ରେରଣା ମଧ ମତେ ଏହି ବୃତ୍ତି ପାଇଁ ଆକୃଷ୍ଟ କରିଛି । ସମାଜରେ ଅଧ୍ୟାପକମାନଙ୍କର ସ୍ୱତନ୍ତ୍ର ସ୍ୱୀକୃତି ରହିଛି । ସେମାନେ ଗୁରୁ । ଉଚିତ ପରାମର୍ଶ ଦେଇ ଜୀବନ ଗଠନରେ ସାହାଯ୍ୟ କରିଥାନ୍ତି । ଚରିତ୍ର ଗଠନ ତଥା ଭଲ ମଣିଷଟିଏ ହେବାପାଇଁ ସେମାନଙ୍କର ପ୍ରେରଣା ସମାଜର ବହୁ ଉପକାର ସାଧନ କରିଥାଏ । ମୋର ଅଭିଳାଷ ମୋର ପିତାମାତାଙ୍କୁ ମଧ ଅଶେଷ ଆନନ୍ଦ ପ୍ରଦାନ କରିଛି । ସମାଜର ଚଳନ୍ତି ସ୍ରୋତରେ ଓ ଜାତୀୟ ସ୍ରୋତରେ ଠିକ୍ ଭାବରେ ନିଜକୁ ମୁଁ ସାମିଲ କରିଦିଏ, ଏହା ସେମାନେ ମଧ ଚାହାନ୍ତି ।

କେତେଗୁଡ଼ିଏ ମଣିଷ ଗଢ଼ିବା ପାଇଁ ମୁଁ ଯେଉଁ ପରିକଳ୍ପନା କରିଛି, ତାହା ତାଙ୍କୁ ବେଶ୍ ଆହ୍ଲାଦ ପ୍ରଦାନ କରିଛି । କେବଳ ମୋର ପିତାମାତା ନୁହନ୍ତି, ପଡ଼ୋଶୀ, ବନ୍ଧୁ ତଥା ଅନେକ ସହୃଦ ମୋର ଅଧ୍ୟାପନା ଅଭିଳାଷଟିକୁ ସ୍ୱୀକୃତି ଜଣାଇବା ସଙ୍ଗେ ସଙ୍ଗେ ଉଚ୍ଚ ପ୍ରଶଂସା ମଧ୍ୟ କରିଛନ୍ତି । ଏହା ବ୍ୟତୀତ ମୋ ଅନ୍ତରର ଆହ୍ୱାନ ମତେ ଅଧ୍ୟାପନା କ୍ଷେତ୍ରକୁ ଟାଣିଦେବା ପାଇଁ ବାରମ୍ବାର ପ୍ରଚୋଦିତ କରିଛି । ଏହି ଦୃଷ୍ଟିରୁ ସାମାଜିକ ତଥା ବ୍ୟକ୍ତିଗତ ପ୍ରେରଣା ଭବିଷ୍ୟତରେ ଅଧ୍ୟାପକ ହେବାର ସମସ୍ତ ଦ୍ୱାର ଉନ୍ମୁକ୍ତ କରି ମୋ ପାଇଁ ଗୋଟିଏ ନିର୍ଦ୍ଦିଷ୍ଟ ସରଣୀ ପ୍ରସ୍ତୁତ କରିପାରିଛି ।

ଜୀବନର ନିର୍ଦ୍ଦିଷ୍ଟ ଲକ୍ଷ୍ୟ ହିଁ ବ୍ୟକ୍ତିକୁ ତା'ର ଭବିଷ୍ୟତ ଗଠନ ଦିଗରେ ସହାୟତା କରିଥାଏ । ଲକ୍ଷ୍ୟହୀନ ଜୀବନ ଜୀବନ ନୁହେଁ । ଯା'ର କୌଣସି ଲକ୍ଷ୍ୟ ନାହିଁ, ସେ ସମାଜର କୌଣସି ମଙ୍ଗଳ କେବେ କରିପାରେନା । ଯେଉଁ ସମାଜ ଆମକୁ ମଣିଷ କରିଛି, ଯେଉଁ ମାଟିର ଫଳ ଜଳ ଗ୍ରହଣ କରି ଆମର ଶରୀର ପରିପୁଷ୍ଟ ହୋଇଛି, ତାହା ପାଇଁ କିଛି କାର୍ଯ୍ୟ କରିବା କେବଳ ଆମର ସାମାଜିକ କର୍ତ୍ତବ୍ୟ ନୁହେଁ, ନୈତିକ କର୍ତ୍ତବ୍ୟ ମଧ୍ୟ । ଏଥିପାଇଁ ବହୁ ପୂର୍ବରୁ ନିଜକୁ ପ୍ରସ୍ତୁତ ରଖିବା ଆବଶ୍ୟକ । ମୁଁ ମୋର ଭବିଷ୍ୟତ ଲକ୍ଷ୍ୟ ଆଦ୍ୟ ଯୌବନରେ ହିଁ ନିର୍ଦ୍ଦିଷ୍ଟ କରିଛି । ସେହି ଲକ୍ଷ୍ୟପୂରଣ ପାଇଁ ମୁଁ ମୋର ନିରବଚ୍ଛିନ୍ନ ସାଧନାକୁ ବଳବତ୍ତର ରଖି ଚାଲିଛି ।



## ତୁମ ଜୀବନର ସ୍ମରଣୀୟ ଘଟଣା

(ଉପକ୍ରମ, ଘଟଣା ପ୍ରବାହ ଓ ଜୀବନ, ବେକାର ଜୀବନର ତିକ୍ତ ଅନୁଭୂତି, ପ୍ରସ୍ତୁତି ଓ ସଫଳତା, ଉପସଂହାର)

ମଣିଷର ଜୀବନ ବହୁ ଘଟଣାର ବିଚିତ୍ର ଅନୁଭୂତି । ପରିବର୍ତ୍ତିତ ପରିସ୍ଥିତି ମଣିଷ ମନରେ ବିବିଧ କ୍ରିୟା-ପ୍ରତିକ୍ରିୟା ସୃଷ୍ଟି କରିଥାଏ । ହୁଏତ ଜୀବନର କେତେକ ମାଇଲ ସ୍ତମ୍ଭ ଅତିକ୍ରମ କରିବା ପାଇଁ ଏହା ଏକ ଏକ ସୋପାନ ହୋଇପାରେ । ମଣିଷ ନିଜକୁ ପ୍ରସ୍ତୁତ କରିବା ସମୟରେ କେତେବେଳେ ଝୁଣ୍ଟିପଡ଼େ ତ ପୁଣି କେତେବେଳେ ନବତେଜରେ ଉଠି ଗତି କରିଥାଏ । ନିଜକୁ ପ୍ରସ୍ତୁତ କରେ । ଭବିଷ୍ୟତ ପାଇଁ ଆଶା ପୋଷଣ କରେ । ଜୟ ଏବଂ ପରାଜୟ ଜୀବନର ଦୁଇଟି ଦିଗ । ଏମାନେ ସଦାସର୍ବଦା ଆଗପଛ ହୋଇ ଚାଲିଥାନ୍ତି । ଯାହାର ଯେତେବେଳେ ପାଳି ପଡ଼େ ସେ ଆଗକୁ ଆସେ । ଘୂର୍ଣ୍ଣନ ପ୍ରକ୍ରିୟାରେ ହିଁ ଜୀବନର ଗତି । ସୁଖ ଓ ଦୁଃଖ ପରି ଏହା ଅତି ଅନ୍ତରଙ୍ଗ, ଅତି ଆପଣାର । ତେଣୁ ଜୀବନ କହିଲେ କେତେକ ଘଟଣାର ବିଚିତ୍ର ସମାହାରକୁ ହିଁ ବୁଝାଇଥାଏ । ଏହା ହୋଇପାରେ ସୁଖର ବା ଦୁଃଖର ।

ଜୀବନ ଏକ ଜଳସ୍ରୋତ । ସ୍ରୋତଟି ଗତିକରିବା ସମୟରେ ତା' ଆଗରେ କାଠି, କୁଟା, ବୃକ୍ଷ ଯାହା ପଡ଼େ ତାକୁ ସେ ଭସାଇ ନେଇଥାଏ । ଠିକ୍ ସେହିପରି ଜୀବନରେ ବହୁ ଘଟଣା ଓ ଦୁର୍ଘଟଣା ଆସେ । ସମୟ ସୁଅରେ ଏମିତି ବହୁ ଘଟଣା ଭାସିଯାଏ । ଅନେକ ଅଭିଜ୍ଞତା ଓ ଅନୁଭୂତି ହାସଲ ହୁଏ । ମାତ୍ର କେତେକ ସ୍ମରଣୀୟ ଘଟଣା ଚିରଦିନ ପାଇଁ ଜୀବନ ମାନଚିତ୍ରରେ ଅଙ୍କିତ ହୋଇ ରହିଯାଇଥାଏ । ତାହାକୁ ଅବଲମ୍ବନ କରି ଜୀବନକୁ ଗଠନ କରାଯାଏ । ସେହି ଘଟଣା ହିଁ ଜୀବନକୁ ଗୋଟିଏ ନିର୍ଦ୍ଦିଷ୍ଟ ବିନ୍ଦୁରେ ପହଞ୍ଚାଇବାରେ ସାହାଯ୍ୟ କରେ । ସମୟର ପାଦଚିହ୍ନ ସମୁଦ୍ର ବେଳାଭୂମିର ପାଦଚିହ୍ନ ପରି ନିମିଷକେ କୁଆଡ଼େ ଉଭେଇଯାଏ । ସମୁଦ୍ରକୁ ଦେଖିଲେ ପାଦଚିହ୍ନ ମନେପଡ଼େ । ମଣିଷ ତାହାକୁ ଖୋଜିବାକୁ ଚେଷ୍ଟା କରେ, କିନ୍ତୁ ବହୁତ ସମୟରେ ବ୍ୟର୍ଥ ହୋଇଥାଏ । ବ୍ୟର୍ଥତା ହିଁ ସଫଳତାର ପ୍ରଥମ ପାହାଚ । ଅନୁଭବୀମାନେ ଏହା ଅନୁଭବ କରିଥିବେ ନିଶ୍ଚୟ । ଏମିତି ଗୋଟିଏ ଗୋଟିଏ ମୁହୂର୍ତ୍ତ ଜୀବନରେ ଆସେ, ଯାହାକୁ ମଣିଷ ଚେଷ୍ଟା କରି ମଧ ଭୁଲିପାରେ ନାହିଁ । ସମୟ ସୁଅରେ ତାହା ଲିଭିଯାଏ ନାହିଁ । ହୃଦୟରେ ପଥରର ଗାରଟିଏ ଭଳି ଚିରଦିନ ପାଇଁ ଜୀବନ୍ତ ବା ସ୍ମୃତିଟିଏ ହୋଇ ରହିଯାଏ । ମୋ ଜୀବନରେ ଏମିତି ଅନେକ ଘଟଣା ଆସିଛି । ମାତ୍ର କେତୋଟି ଘଟଣା ସବୁଦିନ ପାଇଁ ସ୍ମରଣୀୟ ହୋଇ ରହିଯାଇଛି । ସେହିପରି ଗୋଟିଏ ସ୍ମରଣୀୟ ଘଟଣା ମୁଁ ଏଠାରେ ବର୍ଣ୍ଣନା କରୁଛି ।

ଛାତ୍ର ଜୀବନର ମଧୁର ଦିବସଗୁଡ଼ିକୁ ଅତିକ୍ରମ କରି ମୁଁ ଗ୍ରାମକୁ ଫେରି ଆସିଥାଏ । ସେ ପର୍ଯ୍ୟନ୍ତ ଜୀବନ ସଂଗ୍ରାମ ସମ୍ପର୍କରେ ଥିଲି ସମ୍ପୂର୍ଣ୍ଣ ଅନଭିଜ୍ଞ । ନିଜ ଗୋଡ଼ରେ ଠିଆ ହେବାର ସ୍ୱପ୍ନଟିଏ ବି ଦେଖୁନଥିଲି । ଜୀବନ ଥିଲା ନିସ୍ତରଙ୍ଗ ଜଳଧାରା ପରି ବୈଚିତ୍ର୍ୟହୀନ । ଅବଶ୍ୟ ସ୍ୱପ୍ନ ଦେଖିବାରେ ଅଭାବ ନ ଥିଲା । ସେ ସ୍ୱପ୍ନ ଥିଲା ତାରୁଣ୍ୟର ସ୍ୱପ୍ନ, ଯାହା ଯୌବନ ସମୟରେ ପ୍ରତ୍ୟେକ ଯୁବକଙ୍କୁ ଉଦ୍‌ବେଳିତ କରିଥାଏ । ପରୀକ୍ଷା ଫଳ ଘୋଷିତ ହେଲା । ସଫଳତାର ସହିତ ଉତ୍ତୀର୍ଣ୍ଣ ହେଲି ପରୀକ୍ଷାରେ । ଆଉ ଅଧ୍ୟୟନର ଆବଶ୍ୟକତା ନ ଥିଲା । ଜୀବନ ସଂଗ୍ରାମ କ୍ଷେତ୍ରରେ ପ୍ରଥମ କରି ପାଦ ଦେଲି । ଅନେକ ଲିଖିତ ଓ ମୌଖିକ ପରୀକ୍ଷା ଦେଲି । ସବୁ କ୍ଷେତ୍ରରେ ଅନୁଭବ କଲି ବିଫଳତାର ସ୍ୱାଦ । ନିଜର ଜ୍ଞାନଗରିମା ପ୍ରତି ମୋର ଯେଉଁ ବିଶ୍ୱାସବୋଧ ରହିଥିଲା, ତାହା କାଚଘର ପରି ଖଣ୍ଡବିଖଣ୍ଡିତ ହୋଇ ଭାଙ୍ଗିପଡ଼ିଲା । ଅବଶ୍ୟ ଯେଉଁମାନେ କର୍ମକ୍ଷେତ୍ରରେ ସଫଳତା ଲାଭ କରୁଥିଲେ, ସମସ୍ତେ ଯେ ମୋଠାରୁ ଅଧିକ ଯୋଗ୍ୟ ଥିଲେ, ତାହା ନୁହେଁ । ମାତ୍ର ଏଥିରେ ବିଭିନ୍ନ ମାଧ୍ୟମ କାର୍ଯ୍ୟ କରୁଥିଲା । ଯାହା କରିବା ମୋଦ୍ୱାରା ଆଦୌ ସମ୍ଭବପର ନ ଥିଲା । କେତୋଟି ଘରୋଇ ମହାବିଦ୍ୟାଳୟକୁ ସାକ୍ଷାତ୍‌କାର ପାଇଁ ମତେ ଡକାଯାଇଥିଲା । ପରୀକ୍ଷା ମଧ ଭଲ ହୋଇଥିଲା । ଅନ୍ତତଃ ପ୍ରତିଯୋଗୀମାନଙ୍କର ଆଗରେ ଥିଲି ବୋଲି ମୋର ବିଶ୍ୱାସ । ସାକ୍ଷାତ୍‌କାର ସମୟରେ

ଅନୁଭବ କଲି ଜ୍ଞାନ ନୁହେଁ, ଯୋଗ୍ୟତା ଅର୍ଜନ କରିବାକୁ ହେଲେ ଅର୍ଥର ଆବଶ୍ୟକ । ରାଜନୀତିକ ନେତାମାନଙ୍କର ସୁପାରିସ ଦରକାର । ମୋର ନ ଥିଲା ଅର୍ଥ କିମ୍ବା ବଡ଼ବଡ଼ିଆ ଲୋକମାନଙ୍କ ସହିତ ପରିଚୟ । ମୋ ଠାରୁ ଯଥେଷ୍ଟ ନିମ୍ନରେ ଥିବା ବ୍ୟକ୍ତି ଯୋଗ୍ୟ ବୋଲି ବିବେଚିତ ହେଉଥିଲେ ଅର୍ଥ ବଳରେ । ଏହି ତିକ୍ତ ଅନୁଭୂତି ଦିନକୁ ଦିନ ମତେ ବିଷାଦଗ୍ରସ୍ତ କରିଦେଉଥିଲା । ଗ୍ରାମରେ ସାଧାରଣ ବ୍ୟକ୍ତିଟିଏ ମଧ ମତେ ଅଯୋଗ୍ୟ ପିଲାଟିଏ ବୋଲି ଭାବି ନେଉଥିଲେ । ଘରେ ମଧ ଧାରଣା କରିନେଇଥିଲେ ଏହାଦ୍ୱାରା ଆଉ କିଛି ହୋଇପାରିବ ନାହିଁ । ନିଜ ଉପରୁ ମୋର ଧୀରେ ଧୀରେ ଆତ୍ମବିଶ୍ୱାସ କମିଯାଉଥିଲା । ବେଳେ ବେଳେ ଘର ଛାଡ଼ି କେଉଁ ଅନିର୍ଦ୍ଦିଷ୍ଟ ପଥରେ ଚାଲିଯିବାକୁ ମନ ବ୍ୟାକୁଳ ହୋଇ ଉଠୁଥିଲା । ଏମିତି ଏକ ଅନିଶ୍ଚିତ ଭବିଷ୍ୟତକୁ ନେଇ ନିକଟ ବସ୍‌ଷ୍ଟାଣ୍ଡରେ ବୁଲୁଥିବା ସମୟରେ ମୋର ଅନ୍ୟମନସ୍କତା ଯୋଗୁଁ ଏକ ବିଶେଷ ଦୁର୍ଘଟଣାର ସମ୍ମୁଖୀନ ହୋଇଥାନ୍ତି । ହଠାତ୍ ଜଣେ ବ୍ୟକ୍ତି ମୋ ହାତ ଧରି ରାସ୍ତା ପାର୍ଶ୍ୱକୁ ଟାଣି ନେଇଥିଲେ । ଦୁର୍ଘଟଣାରୁ ବଞ୍ଚିଯାଇଥିଲି । ସେହି ଅପରିଚିତ ବ୍ୟକ୍ତି ମୋ ଉପରେ ସାମାନ୍ୟ ବିରକ୍ତ ହେବା ପରେ ଅନ୍ୟମନସ୍କତାର କାରଣ ସମ୍ବନ୍ଧରେ ପଚାରିଥିଲେ । ଜଣେ ଆତ୍ମୀୟ ମନେକରି ଜୀବନର ବହୁ ଘଟଣା ସହିତ ଦାନାପାଣି ବିଷୟରେ ତାଙ୍କୁ ଖୋଲି କହି ଦେଇଥିଲି । ବୋଧହୁଏ ସେ ମୋ ନିକଟକୁ ଏକ ଦୈବପୁରୁଷର ରୂପ ନେଇ ଓହ୍ଲାଇ ଆସିଥିଲେ । ସେ ମତେ ଧୈର୍ଯ୍ୟର ସହିତ ଭବିଷ୍ୟତକୁ ମୁକାବିଲା ନିମିତ୍ତ ପ୍ରସ୍ତାବ ଦେଇଥିଲେ । ତାଙ୍କ ଜୀବନ କାହାଣୀ ମୋ ନିକଟରେ ବର୍ଣ୍ଣନା କରିଥିଲେ । କିପରି ଅଭାବ-ଅନଟନ ମଧ ଦେଇ ନିଜକୁ ସେ ବର୍ତ୍ତମାନ ପ୍ରତିଷ୍ଠିତ କରିଛନ୍ତି, ତା'ର ଚମତ୍କାର ବିବରଣୀ ପ୍ରଦାନ କରିଥିଲେ । ଜୀବନ ଏକ ସଂଗ୍ରାମ ଭୂମି । ପଳାୟନ କାପୁରୁଷତାର ପରିଚୟ ବୋଲି ମତେ କହିଥିଲେ । ଅଧିକ ପ୍ରସ୍ତୁତ ହୋଇ ଜୀବନକୁ ମୁକାବିଲା କରିବା ନିମିତ୍ତ ମତେ ପରାମର୍ଶ ଦେଇଥିଲେ । ପୁଣି ଆଶ୍ୱାସନା ଦେଇଥିଲେ ଜୀବନର ସବୁକ୍ଷେତ୍ରରେ ଅର୍ଥର ଆବଶ୍ୟକତା ପଡ଼େ ନାହିଁ । ବହୁକ୍ଷେତ୍ରରେ ଜ୍ଞାନର ମଧ ସମ୍ମାନ କରାଯାଇଥାଏ । ମୋର ନିରାଶ ମନରେ ସେ ଜଗାଇଥିଲେ ଆଶାର ଆଲୋକ । ସେହିଦିନଟି ଥିଲା ମୋ ଜୀବନର ସବୁଠାରୁ ଅଧିକ ସ୍ମରଣୀୟ ଦିନ । ମୋର ଜିଦ୍ ବଢ଼ିଯାଇଥିଲା । ପୁଣି ଭବିଷ୍ୟତ ପାଇଁ ନିଜକୁ ପ୍ରସ୍ତୁତ କରିବାକୁ ଶପଥ ନେଲି ।

ଗୀତାର ବାଣୀ 'କର୍ମଣ୍ୟେ ବାଧିକାରସ୍ତେ ମା ଫଳେଷୁ କଦାଚନ' ମୋର କର୍ଣ୍ଣଗହ୍ୱରରେ ବାରମ୍ବାର ପ୍ରତିଧ୍ୱନିତ ହେଉଥିଲା । ପୁନରାୟ ଅଧ୍ୟୟନର ସମୟକୁ ବଢ଼ାଇଲି । ଫଳ ପ୍ରତି ଆଶା ରଖିଲି ନାହିଁ । ଗ୍ରାମ ଲୋକଙ୍କର ମୋ ପ୍ରତି ସୃଷ୍ଟି ହେଉଥିବା ଅବହେଳା ମନୋଭାବ ପ୍ରତି ଗୁରୁତ୍ୱ ଦେଲି ନାହିଁ । ଗୋଟିଏ ଜିଦ୍ ମୋ ଅନ୍ତର ଭିତରେ ପ୍ରେରଣା ରୂପେ କାର୍ଯ୍ୟ କରୁଥିଲା । ପରବର୍ତ୍ତୀ ସମୟରେ ମୁଁ ଅସମ୍ଭବ ଭାବରେ ସଫଳତା ଅର୍ଜନ କଲି । ଏକକାଳୀନ ଗୋଟିଏ ନୁହେଁ, ଏକାଧିକ ନିଯୁକ୍ତିପତ୍ର ଲାଭ କଲି । ପରେ ପରେ ଆହୁରି ଉଚ୍ଚତର ନିଯୁକ୍ତି

ପାଇଲି । ଅଧ୍ୟୟନ, ଧୈର୍ଯ୍ୟ ଓ ପରିଶ୍ରମ ଦ୍ୱାରା ଅସମ୍ଭବ ସମ୍ଭବ ହୋଇଥାଏ ବୋଲି ମୋର ବିଶ୍ୱାସ ହେଲା । ଜୀବନକୁ ଏକ ଖେଳୁଆଡ଼ର ମନୋବୃତ୍ତି ନେଇ ମୁକାବିଲା କରିବାର ମାନସିକ ସାହସ ଅର୍ଜନ କଲି । ଏଥିପାଇଁ ମୁଁ ମୋର ତାରୁଣ୍ୟର ସ୍ୱପ୍ନକୁ ବଳିଦେଇଛି । ଗୋଟିଏ ଜିଦ୍ ମତେ ଆଜି ଏକ ନିରାପଦ କୂଳରେ ଅବତରଣ କରିବାକୁ ସାହାଯ୍ୟ କରିଛି । ଯେଉଁ ଦେବୋପମ ବ୍ୟକ୍ତିଟି ମୋର ନିରାଶାର ଜୀବନରେ ଆଶା ଭରି ଦେଇଥିଲେ ତାଙ୍କୁ ବହୁତଥର ମନେ ମନେ ଖୋଜିଛି । କିନ୍ତୁ ସାକ୍ଷାତ୍ ପାଇ ନାହିଁ । ମାତ୍ର ତାଙ୍କଠାରୁ ପ୍ରଥମଥର ହିଁ ଶିକ୍ଷା କରିଥିଲି ପରିଶ୍ରମ ଜୀବନର ଜାଗ୍ରତ ପ୍ରହରୀ । ଧୈର୍ଯ୍ୟ ଓ ଏକାଗ୍ରତା ମଣିଷର ଭବିଷ୍ୟତ ଗଠନରେ ସହାୟକ । ହୁଏତ ତାଙ୍କ ସହିତ ମୋର ଆଉ ସାକ୍ଷାତ ନ ହୋଇପାରେ । ମାତ୍ର ମୋର ପଦୋନ୍ନତି ଏବଂ ସଫଳତା ମୂଳରେ ତାଙ୍କର ପ୍ରେରଣା ହିଁ କାର୍ଯ୍ୟ କରିଛି । ସେହି ଉପଦେଶଟି ଏବେ ମଧ୍ୟ ଭୁଲି ନାହିଁ । ତାହା ମୋ ଜୀବନରେ ସବୁଦିନ ପାଇଁ ସ୍ମରଣୀୟ ହୋଇ ରହିଯାଇଛି ।

ମୋ ଜୀବନରେ ବହୁ ଘଟଣା ଆସିଛି । ସମୟ ଜୀବନକୁ ଚହଲେଇ ଦେଇଛି । ପୁଣି ଚାଲିଯାଇଛି । କିନ୍ତୁ ଯାହା ଚିରଦିନ ପାଇଁ ସ୍ମରଣୀୟ ହୋଇ ରହିଗଲା, ତାହା ହେଲା 'କର୍ମ ହିଁ ମାନବ ଜୀବନର ମାନଦଣ୍ଡ ।' ଗୋପବନ୍ଧୁଙ୍କ କବିତାର ଏହି ଅଂଶଟି ମୋର ସବୁଠାରୁ ପ୍ରିୟ । ସାଧନା, ଦିଗ୍‌ଦର୍ଶନ, କର୍ମ, ଧୈର୍ଯ୍ୟ, ପରିଶ୍ରମ ଓ ସହିଷ୍ଣୁତା ସିଦ୍ଧିର ଯଥାର୍ଥ ସୋପାନ । ଏହି ଗୁଣଗୁଡ଼ିକର ଅଧିକାରୀ ମଣିଷ କଦାପି ଜୀବନରେ ଅସଫଳ ହୋଇନଥାଏ । ମୁଁ ଯାହା ଅନୁଭବ କରିଛି, ତାହା ଯେ ପ୍ରତ୍ୟେକ ମଣିଷ ବିଶେଷକରି ଯୁବସମ୍ପ୍ରଦାୟଙ୍କ ପ୍ରତି ଅଧିକ ଭାବରେ ପ୍ରଯୁଜ୍ୟ, ଅସ୍ୱୀକାର କରାଯାଇ ନ ପାରେ । ତେଣୁ 'ସାଧନା ସିଦ୍ଧିର ଅପେକ୍ଷା ରଖେ' ପ୍ରବାଦଟି ବହୁପରିମାଣରେ ସତ୍ୟ ଓ ବାସ୍ତବ ।



## ମନ ତୋହର ନିଜ ଗୁରୁ ବା ଏଇ ମନ ବୃନ୍ଦାବନ

**(ଉପକ୍ରମ, ମନର ସ୍ୱରୂପ, ମନ ସମ୍ପର୍କରେ ବିଭିନ୍ନ ପଣ୍ଡିତଙ୍କ ମତ, ମନର ଉଚିତ ଦିଗ, ଉପସଂହାର)**

ମନ ଚଳଚଞ୍ଚଳ, ନିରାକାର । ମାତ୍ର ମଣିଷର କାର୍ଯ୍ୟଧାରାକୁ ଏହା ସମ୍ପୂର୍ଣ୍ଣ ରୂପେ ନିୟନ୍ତ୍ରଣ କରିଥାଏ । ଯୁଗେ ଯୁଗେ ମନ ସମ୍ପର୍କରେ ବହୁ ଗବେଷଣା କରାଯାଇଛି । ଅଥଚ କୌଣସି ବ୍ୟକ୍ତି ମନ ସମ୍ବନ୍ଧରେ ଏକ ନିର୍ଦ୍ଦିଷ୍ଟ ମୀମାଂସାରେ ଉପନୀତ ହୋଇପାରି ନାହିଁ ।

ସୃଷ୍ଟିର ସବୁଠାରୁ ଅଧିକ ରହସ୍ୟମୟ ଏହି ମନ । କୁପ୍ରବୃତ୍ତି ପରିଚାଳିତ ମନ ମଣିଷର ଅଧୋଗତି କରିଥାଏ । ସୁପ୍ରବୃତ୍ତି ପରିଚାଳିତ ମନ ମର୍ତ୍ତ୍ୟରେ ବୈକୁଣ୍ଠର ପରିକଳ୍ପନା କରିଥାଏ । ଏହି ରହସ୍ୟମୟ ମନର ପ୍ରକୃତ ରୂପ ସମ୍ପର୍କରେ ଏବେବି ସମସ୍ତେ ସଂଶୟାଚ୍ଛନ୍ନ, ଯଦିଓ ଏଯାବତ୍ ଗବେଷଣାର ଅନ୍ତ ନାହିଁ । ତେଣୁ କୁହାଯାଇଥାଏ ଗୋଟିଏ ହିଂସ୍ର ପଶୁକୁ ଜାଣିବା କଷ୍ଟକର ନୁହେଁ, ମାତ୍ର ମନକୁ ଜାଣିବା ବ୍ୟକ୍ତି ପକ୍ଷରେ ସମ୍ଭବ ନୁହେଁ । ଏହିଠାରେ ଯେପରି ବୃନ୍ଦାବନ ପରିକଳ୍ପନା ଠିକ୍ ସେହିପରି ନର୍କର ମଧ୍ୟ ପରିକଳ୍ପନା । ସବୁକିଛି ମନର ଅବସ୍ଥା ଉପରେ ନିର୍ଭର କରୁଥିବାରୁ ମନ ସମ୍ପର୍କରେ ଜ୍ଞାନ ଲାଭ କରିବା ଜରୁରୀ ମନେହୋଇଥାଏ ।

ବିଭିନ୍ନ ଇନ୍ଦ୍ରିୟକୁ ନେଇ ମଣିଷର ଶରୀର ଗଠିତ । ମନର କୌଣସି ନିର୍ଦ୍ଦିଷ୍ଟ ସ୍ୱରୂପ ନ ଥିଲେ ହେଁ, ବିଭିନ୍ନ ଇନ୍ଦ୍ରିୟମାନଙ୍କ ମଧ୍ୟରେ ସେ ହେଉଛି ରାଜା । ପ୍ରତ୍ୟେକ ଇନ୍ଦ୍ରିୟକୁ ବଶୀଭୂତ କରିବାର ଶକ୍ତି ତାହାର ରହିଛି । ମନ ପବିତ୍ର ରହିଲେ, ପ୍ରତ୍ୟେକ କାର୍ଯ୍ୟର ସଫଳ ରୂପାୟନ ହୋଇଥାଏ । ଅପବିତ୍ର ମନ ସମସ୍ତ ଦ୍ୱନ୍ଦ୍ୱ ଓ ବାଧାବିଘ୍ନର ମୂଳ କାରଣ । ଏହା ଧୀର ନୁହେଁ । ଗୋଟିଏ ମୁହୂର୍ତ୍ତରେ ସମସ୍ତ ଜଗତକୁ ପରିକ୍ରମା କରି ଫେରିଆସିବାର ଶକ୍ତି ତାହାର ରହିଛି । ପବନର ଗତି ଠାରୁ ତା'ର ଗତି ମଧ୍ୟ ଅଧିକ । ମର୍ତ୍ତ୍ୟରେ ନନ୍ଦନକାନନ ପ୍ରତିଷ୍ଠା କରିପାରେ ମନ । ତେଣୁ ମିଲଟନ୍ ତାଙ୍କର 'ପାରାଡ଼ାଇଜ୍ ଲଷ୍ଟ' ପୁସ୍ତକରେ କହିଛନ୍ତି— "The mind....can make the heaven of hell and hell of heaven." ତା'ର ଶକ୍ତିକୁ କଳନା କରିବା କଷ୍ଟକର, କାରଣ ତାହା ଅଚିନ୍ତନୀୟ । କ୍ଷଣକାଳ ମଧ୍ୟରେ ବିଶ୍ୱକୁ ପ୍ରଦକ୍ଷିଣ କରି ପୁଣି ସ୍ୱସ୍ଥାନକୁ ଫେରି ଆସିପାରେ । ଏହାକୁ ଯିଏ ନିୟନ୍ତ୍ରଣ କରିପାରେ, ସେ ହିଁ ପ୍ରକୃତରେ ମଣିଷ ପଦବାଚ୍ୟ । ଚଞ୍ଚଳମନକୁ ସଂଯତ କରି ତାକୁ ଉପଯୁକ୍ତ ମାର୍ଗରେ ବିନିଯୋଗ କରିବାରେ ମଣିଷର ସଫଳତା । ଲଗାମହୀନ ଅଶ୍ୱପରି ବାଟ ଅବାଟ ନ ମାନି ଏହା ଗତି କରିଥାଏ । ଖାଲରେ ପଡ଼ିବ କିମ୍ବା କେଉଁଠି ଦୁର୍ଘଟଣାର ସମ୍ମୁଖୀନ ହେବ, ସେଥିପାଇଁ ତା'ର ବିଚାର ନ ଥାଏ । ମଣିଷ ହୃଦୟରେ ଏହା ପଶୁପ୍ରବୃତ୍ତି କିମ୍ବା ଦୈବୀଗୁଣର ବିକାଶ କରାଇପାରେ । ତେଣୁ ମନ ମଣିଷକୁ ଯେପରି ଦେବତାର ଆସନକୁ ଉନ୍ନୀତ କରିପାରେ, ସେହିପରି ରାକ୍ଷସରେ ପରିଣତ କରିପାରେ । ଏହି ଦୃଷ୍ଟିରୁ ଏହାକୁ ସଂଯତ କରି ଉଚିତ ମାର୍ଗରେ ଗତି କରାଇବା ପ୍ରତ୍ୟେକ ମଣିଷର ଧ୍ୟେୟ ହେବା ଆବଶ୍ୟକ ।

ମନର ବହୁ ବିଶ୍ଳେଷଣ କରାଯାଇଛି । ଭାଗବତକାର ମନକୁ ଏକ ଗୁରୁ ରୂପରେ ପରିକଳ୍ପନା କରିଛନ୍ତି । ଗୁରୁ ଯେପରି ଉଚିତ ଶିକ୍ଷା ଦ୍ୱାରା ଛାତ୍ରର ଉନ୍ନତି ବିଧାନ କରିଥାଏ ଠିକ୍ ସେହିପରି ସୁମନ ମଣିଷର ପ୍ରଗତିକୁ ତ୍ୱରାନ୍ୱିତ କରେ । ଗୁରୁର ଅନୁଚିତ ଶିକ୍ଷା ଛାତ୍ରର ଅକଲ୍ୟାଣ ସାଧନ କରେ । କୁମନ ବ୍ୟକ୍ତିକୁ କଳୁଷିତ କରେ । ତେଣୁ ଭାଗବତରେ ଲେଖାଯାଇଛି—

ମନ ତୋହର ନିଜ ଗୁରୁ
ଉଦ୍ଧବ କେତେ ତୁ ପଚାରୁ

ବୁଦ୍ଧଦେବ ମନ ସମ୍ପର୍କରେ ବିଭିନ୍ନ ଭାବରେ ବିଶ୍ଳେଷଣ କରିଛନ୍ତି । ମନଯୋଗୁଁ ବିଭିନ୍ନ କାମନା ଜନ୍ମଲାଭ କରିଥାଏ । କାମନା ଯୋଗୁଁ ମଣିଷ ଦୁଃଖଲାଭ କରେ ଏବଂ ଏହି ଦୁଃଖ ବିନାଶର କାରଣ ରୂପେ ଦେଖାଦେଇଥାଏ । ତେଣୁ ବୁଦ୍ଧଦେବ କହିଥିଲେ, ମନକୁ ସଂଯତ କରି କାମନାର ବିନାଶ କରିପାରିଲେ ଦୁଃଖର ବିନାଶ ହୋଇଥାଏ । ଦୁଃଖର ବିନାଶ ହେଲେ ନିର୍ବାଣ ଲାଭର ପଥ ପରିଷ୍କାର ହୁଏ । ସୁଖ ଓ ଦୁଃଖର ପ୍ରଥମ କାରଣ ହେଉଛି ମନ । ପ୍ରଫୁଲ୍ଲଚିତ୍ତ ବ୍ୟକ୍ତିକୁ ସୁଖ କଦାପି ତ୍ୟାଗ କରିଯାଇପାରେ ନାହିଁ । ଯେପରି କାୟାକୁ ଛାଡ଼ି ଛାୟା ଯାଇପାରି ନ ଥାଏ—

ମନସା ଚେ ପ୍ରହ୍ୱଷ୍ଟେନ ଭାସୋତି ବା କରୋତି ବା
ସୁଖଂ ବା ତଂ ଅନ୍ୱେତି ଛାୟା ବ ଅନପାୟିନଃ ।

ପବିତ୍ର ମନ ବିଶ୍ୱର ମଙ୍ଗଳ ସାଧନରେ ବ୍ରତୀ ହୋଇଥାଏ । କେବଳ ଏହି ମନ ହିଁ ପରିକଳ୍ପନା କରିପାରେ 'ବସୁଧୈବ କୁଟୁମ୍ବକମ୍' ନୀତିର । ତେଣୁ ପ୍ରାଚୀନ ମୁନିଋଷିମାନେ ତପସ୍ୟା ଓ ସଂଯମ ଆଚରଣ ମାଧ୍ୟମରେ ମନକୁ ନିୟନ୍ତ୍ରଣ କରୁଥିଲେ । ବିଶ୍ୱକୁ ମଧୁମୟ ଓ ଅମୃତମୟ କରିବା କ୍ଷେତ୍ରରେ ମନର ଭୂମିକା ହିଁ ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ । ତାହା ହୃଦୟକୁ ଅଖଣ୍ଡ ନିତ୍ୟ ଆନନ୍ଦ ପ୍ରଦାନ କରିପାରେ । ସେଥିପାଇଁ ମନକୁ ନିତ୍ୟ ବୃନ୍ଦାବନ ସହିତ ପରିକଳ୍ପନା କରାଯାଇଛି । ଏହିଠାରେ ରାଧାକୃଷ୍ଣଙ୍କର ମାଧୁର୍ଯ୍ୟ ଲୀଳା ସମ୍ପାଦନ ହୋଇଥିଲା । ସେହି ଲୀଳା ନିତ୍ୟ ଆନନ୍ଦର ଲୀଳା । ଯମୁନା ନଦୀର କଳ କଳ ନାଦ ହୃଦୟରୁ ସମସ୍ତ ବିଷାଦ ଦୂରକରି ତାକୁ ଚିରନ୍ତନ ଆନନ୍ଦ ପ୍ରଦାନ କରିଥିଲା । କୁଞ୍ଜବନର ଅବର୍ଣ୍ଣନୀୟ ଶୋଭା ହୃଦୟକୁ କରିଥିଲା ଆହ୍ଲାଦିତ । ମନ ଶୁଦ୍ଧ ପବିତ୍ର ଥିଲେ ଜଗତ ହୋଇଉଠେ ସୁନ୍ଦର । କାନନ ବୀଥିକା, ଜଳର ତରଙ୍ଗ, ଉତ୍ତୁଙ୍ଗ ଗିରି, ଶ୍ୟାମଳ ଶସ୍ୟକ୍ଷେତ୍ର ସବୁ ଯେପରି ସୁନ୍ଦର ଓ ମଧୁମୟ । ଜୀବନ ସୁନ୍ଦର, ସୁନ୍ଦର ପୁଣି ସମଗ୍ର ବିଶ୍ୱ । ମାତ୍ର ବିଷାଦିତ ମନ ସୁନ୍ଦର ଜଗତକୁ କୁତ୍ସିତ ରୂପରେ ଦେଖେ । ସୃଷ୍ଟି ମଧ୍ୟରେ ପରିକଳ୍ପନା କରେ ଧ୍ୱଂସର । କୌଣସି ବସ୍ତୁ ତାକୁ ଶାନ୍ତି ପ୍ରଦାନ କରିପାରେ ନାହିଁ । ତା' ନିକଟରେ ସମଗ୍ର ଜଗତ ଅମଙ୍ଗଳମୟ ଜଣାପଡ଼େ । ପରିବାରର ସୌହାର୍ଦ୍ଦ୍ୟ, ପିତାମାତାର ସ୍ନେହ, ପତ୍ନୀର ପ୍ରଣୟ ସବୁ ଯେପରି ତୁଚ୍ଛ ହୋଇଉଠେ । ଜୀବନ ହୋଇଉଠେ ବିଷାଦିତ । ଚତୁର୍ଦ୍ଦିଗରେ ସେ ଅନୁଭବ କରେ ଅଶୁଭ ଶକୁନମାନଙ୍କୁ । ତେଣୁ ହୃଦୟକୁ ନିର୍ମଳ ରଖିପାରିଲେ ଜଗତ ହୋଇଥାଏ ସୁସ୍ଥ ଏବଂ ସୁନ୍ଦର । ସତ୍ୟ, ଦୟା, କ୍ଷମା, ପ୍ରସନ୍ନତା, ଶୁଦ୍ଧତା ମଣିଷର ମନକୁ ସଂଯମ ଏବଂ ନିର୍ମଳ କରେ । ବିଭିନ୍ନ ଆସକ୍ତିଠାରୁ ମନକୁ ଦୂରେଇ ଆଣି ଦୁଃଖର ଅପନୋଦନ କରେ । ମଣିଷର ସମସ୍ତ କୁପ୍ରବୃତ୍ତିକୁ ବିନାଶ କରିଥାଏ । ସୁପ୍ରବୃତ୍ତିର ଉଦୟ କରାଇ ତାକୁ ଶୁଦ୍ଧ ଓ ପବିତ୍ର କରେ । ବିଷୟ ବାସନାଠାରୁ ମଣିଷକୁ ନିରାପଦ ଦୂରତାରେ ରଖିଥାଏ । ଗୀତାରେ ସ୍ୱୟଂ ଶ୍ରୀକୃଷ୍ଣ ବିଭ୍ରମ ଅର୍ଜୁନଙ୍କ ମନକୁ ସଂଯତ କରିବା ପାଇଁ ବହୁ ଉପଦେଶ ପ୍ରଦାନ କରିଛନ୍ତି । ଫ୍ରଏଡ୍‌ଙ୍କ ପରି ମନସ୍ତତ୍ତ୍ୱବିଦ୍ ମନର

ବିଭିନ୍ନ ସ୍ତର, ପ୍ରବୃତ୍ତି ସମ୍ପର୍କରେ ସୂଚନା ପ୍ରଦାନ କରିଛନ୍ତି । ଅବଚେତନ ମନର ବିଶ୍ଳେଷଣ କରି କିପରି କୁପ୍ରବୃତ୍ତି ମଣିଷକୁ ପଶୁସ୍ତରକୁ ଉନ୍ନୀତ କରାଇଥାଏ, ସେ ସମ୍ପର୍କରେ ଆଲୋକପାତ କରିଛନ୍ତି । ଏହା ସତ୍ତ୍ୱେ ମନ ସମ୍ପର୍କରେ ସେ ଯେ ସର୍ବଶେଷ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି, ତାହା କୁହାଯାଇପାରିବ ନାହିଁ । ଏବେବି ମନର ବହୁ ରହସ୍ୟ ଅନୁଦ୍‌ଘାଟିତ ହୋଇ ରହିଯାଇଛି । ତେବେ ଆସକ୍ତିବିହୀନ ଜୀବନ, ଶୁଦ୍ଧଭାବ ଓ ପବିତ୍ର ଚିନ୍ତାଧାରା ଯେ ମନକୁ ବହୁପରିମାଣରେ ନିୟନ୍ତ୍ରଣ କରିବାକୁ ସମର୍ଥ ଅସ୍ୱୀକାର କରାଯାଇ ନ ପାରେ ।

ଆଜି ମଣିଷର ମନ ବିଭ୍ରାନ୍ତ । ସେ ପ୍ରତିମୁହୂର୍ତ୍ତରେ ବିଶ୍ୱରେ ଧ୍ୱଂସଲୀଳା ସାଧନ କରିବାକୁ ଉଦ୍ୟତ । ଦୁଇ ଦୁଇଟି ବିଶ୍ୱଯୁଦ୍ଧ ମଣିଷ ମନର ସେହି କଳାଦିଗଟିକୁ ବେଶ୍ ସୂଚିତ କରିପାରିଛି । ବ୍ୟକ୍ତିଗତ ସ୍ୱାର୍ଥ, ବିଦ୍ୱେଷଭାବ, କ୍ରୋଧ ଓ ପରଶ୍ରୀକାତରତା ଆଜି ମନକୁ ବହୁଭାବରେ କଳଙ୍କିତ କରିଛି । ତେଣୁ ମଣିଷ ମନ ଗୋଟିଏ ଅଗମ୍ୟ ଅରଣ୍ୟରେ ପରିଣତ ହୋଇଛି । ଏ କ୍ଷେତ୍ରରେ ମଣିଷର ମନକୁ ପବିତ୍ର ଏବଂ ଚିତ୍ତକୁ ଶୁଦ୍ଧ କରିବାକୁ ହେଲେ ଭାରତୀୟ ଦର୍ଶନ ଓ ସଂସ୍କୃତିକୁ ଅନୁଶୀଳନ କରିବାକୁ ପଡ଼ିବ । ଭୋଗ ଓ ତ୍ୟାଗ ମଧ୍ୟରେ ପାର୍ଥକ୍ୟ ଦର୍ଶାଇ ତ୍ୟାଗର ପଥକୁ ଅନୁସରଣ କରିବାକୁ ହେବ । ଲଗାମହୀନ ମନକୁ ଲଗାମ ଦେଇ ସଂଯତ କରିବାକୁ ପଡ଼ିବ । ବିଶ୍ୱରେ ପୁନଃ ସ୍ନେହ, ପ୍ରେମ ଓ ମମତାର ବାରିଧାରା ସୃଷ୍ଟି କରିବାକୁ ହେଲେ ମନକୁ ପ୍ରଥମେ ନିୟନ୍ତ୍ରଣ କରିବାକୁ ପଡ଼ିବ । ମନକୁ ଉଚିତ ମାର୍ଗରେ ଗତି କରାଇପାରିଲେ ପୁଣି ବିଶ୍ୱ ହୋଇଉଠିବ ଶୁଦ୍ଧ ଏବଂ ସୁନ୍ଦର ।

ସାଧନା ସର୍ବଦା ସିଦ୍ଧିକୁ ହିଁ ଅପେକ୍ଷା ରଖେ । ସାଧନା ଦ୍ୱାରା ଅସମ୍ଭବକୁ ସମ୍ଭବ କରାଯାଇପାରେ । ଶାଶ୍ୱତ ପ୍ରେମଭାବ ମଣିଷକୁ ଦେବତାରେ ପରିଣତ କରେ । ଏହା କେବଳ ସମ୍ଭବ ହୋଇପାରିବ ମନର ନିୟନ୍ତ୍ରଣ ଦ୍ୱାରା । ପ୍ରାଚୀନ ମୁନିଋଷି ସାଧନା ମାଧ୍ୟମରେ ହିଁ ମନକୁ ନିଜ ଆୟତ୍ତରେ ରଖିବାକୁ ସମର୍ଥ ହୋଇଥିଲେ । ମନର ମୂଳରେ ଜଗତର ସ୍ଥିତି । ମନକୁ ଯଥାର୍ଥ ଗୁରୁ କରିପାରିଲେ, ବିଶ୍ୱରୁ ହିଂସା, ଦ୍ୱେଷ ଦୂରୀଭୂତ ହୋଇପାରିବ । ବିବେକକୁ ଜାଗ୍ରତ କରି ସତ୍ୟ ଶିବ ସୁନ୍ଦର ଉପାସନା କରିପାରିଲେ ମନ ପ୍ରଶାନ୍ତ ହୋଇପାରିବ । ତେଣୁ ମନକୁ ସ୍ଥିର କରି କାର୍ଯ୍ୟରେ ଅଗ୍ରସର ହେଲେ ଉଭୟ ବ୍ୟକ୍ତି ଓ ବିଶ୍ୱର ମଙ୍ଗଳ ସାଧିତ ହୋଇପାରିବ ।



## ସାଧୁତା ଓ କର୍ତ୍ତବ୍ୟପରାୟଣତା

**(ଉପକ୍ରମ, ସାଧୁତାର ଅର୍ଥ, କର୍ତ୍ତବ୍ୟପରାୟଣତାର ସ୍ୱରୂପ ଓ ପରିଚୟ, ଜୀବନରେ ଉଭୟର ଆବଶ୍ୟକତା, ଉପସଂହାର)**

ଦେଶର ଓ ବ୍ୟକ୍ତିର ସାମୂହିକ ଉନ୍ନତି ନିମିତ୍ତ ସାଧୁତା ଓ କର୍ତ୍ତବ୍ୟପରାୟଣତାର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ସମାଜ ଏବଂ ପରିବାର ମଧ୍ୟରେ ଚଳପ୍ରଚଳ ହେବାକୁ ହେଲେ ପ୍ରତ୍ୟେକ

ବ୍ୟକ୍ତି ଏହି ଉଭୟର ମହତ୍ତ୍ୱ ଉପଲବ୍‌ଧି କରିବା ଆବଶ୍ୟକ । ବ୍ୟକ୍ତିର ଚରିତ୍ର ଗଠନରେ ତଥା ସାମାଜିକ ମୂଲ୍ୟବୋଧର ବିକାଶରେ ସାଧୁତା ଓ କର୍ତ୍ତବ୍ୟପରାୟଣତାର ଉପାଦେୟତା ହୃଦୟଙ୍ଗମ କରି ହୋଇଥାଏ । ବ୍ୟକ୍ତିଗତ ଜୀବନପରି ଜାତୀୟ ଜୀବନରେ ମଧ୍ୟ ଏହାର ମହତ୍ତ୍ୱ ସ୍ୱୀକୃତ । ସାଧୁତାରୁ ଯେପରି ମଣିଷର ଅନ୍ତରାତ୍ମାକୁ ଉପଲବ୍‌ଧି କରି ହୋଇଥାଏ, କର୍ତ୍ତବ୍ୟପରାୟଣତାରୁ ସେହିପରି ତାର କର୍ତ୍ତବ୍ୟଜ୍ଞାନ ସମ୍ପର୍କରେ ପରିଚୟ ମିଳିଥାଏ । ସମୂହ କଲ୍ୟାଣ ନିମିତ୍ତ ଉକ୍ତ ଦୁଇଟି ଗୁଣର ଆବଶ୍ୟକତା ରହିଛି ।

ସାଧୁତା ମୁଖ୍ୟତଃ ସତ୍ୟ ଉପରେ ପ୍ରତିଷ୍ଠିତ । ଏହା ବ୍ୟକ୍ତିର ଏକ ମହନୀୟ ଗୁଣ । ସେଥିପାଇଁ ଇଂରାଜୀରେ କୁହାଯାଇଥାଏ, Honesty is the best policy. ଏପରି ବ୍ୟକ୍ତି ସମାଜରେ ସମ୍ମାନ ଓ ଆଦର ଲାଭ କରିଥାଏ । ଆମର ପ୍ରାଚୀନ ମୁନିଋଷିମାନେ କହୁଥିଲେ, ସାଧୁ ହୁଅ, ସଚ୍ଚରିତ୍ର ହୁଅ । ବ୍ୟକ୍ତିର କଥା ଏବଂ କାର୍ଯ୍ୟରେ ସାଧୁତା ପରିସ୍ଫୁଟିତ ହୋଇଥାଏ । ଛଳନା ଏବଂ ପ୍ରବଞ୍ଚନା ମଣିଷକୁ କଳୁଷିତ କରେ, ଜାତୀୟ ଜୀବନକୁ କଳଙ୍କିତ କରେ । ଏହି ଗୁଣ ପ୍ରଗତିର ପଥକୁ ଅବରୋଧ କରିଥାଏ । ସାଧୁଗୁଣ ସ୍ୱଭାବର ବ୍ୟକ୍ତି ଇହକାଳ ଏବଂ ପରକାଳରେ ଶାନ୍ତି ଲାଭ କରିଥାଏ । ଏମାନେ ଶଠତା ଏବଂ ପ୍ରବଞ୍ଚନା ଠାରୁ ବହୁ ଦୂରରେ ରହୁଥିବାରୁ ସର୍ବସାଧାରଣ ବ୍ୟକ୍ତି ଏମାନଙ୍କୁ ଆଦର୍ଶଭାବରେ ଗ୍ରହଣ କରିଥାନ୍ତି । ସାଧୁତା ଠିକ୍ ଅର୍ଥରେ ଶଠତାର ବିପରୀତ । ଏପରି ବ୍ୟକ୍ତିର କୌଣସି ସମୟରେ ମନ୍ଦ ଅଭିପ୍ରାୟ ନ ଥାଏ । ନିଜେ ଅସୁବିଧାର ସମ୍ମୁଖୀନ ହେଉଥିଲେ ମଧ୍ୟ ଅନ୍ୟର ଅନିଷ୍ଟ ଚିନ୍ତା କେବେ କରି ନ ଥାନ୍ତି । ମଣିଷର ବାକ୍ୟ ତଥା ବ୍ୟବହାର ଜ୍ଞାନରୁ ସାଧୁତାର ପରିଚୟ ମିଳିଥାଏ । ଯେଉଁମାନେ ଅସାଧୁ, ସେମାନେ ହୁଏତ କିଛି ସମୟ ପାଇଁ ସାଧାରଣ ମଣିଷକୁ ବୋକା କରିଦେଇପାରନ୍ତି; ପରବର୍ତ୍ତୀ ସମୟରେ ସମାଜ ସେମାନଙ୍କୁ ଘୃଣା କରିଥାଏ । ଅବିଶ୍ୱାସର ପାତ୍ର ଭାବରେ ସମାଜରେ ଅବହେଳିତ ଜୀବନଯାପନ କରିବାକୁ ସେମାନେ ବାଧ୍ୟ ହୋଇଥାନ୍ତି । ସାଧୁ ପ୍ରକୃତିର ବ୍ୟକ୍ତି ସବୁକ୍ଷେତ୍ରରେ ସେମାନଙ୍କର ଉଚ୍ଚାଦର୍ଶ ଯୋଗୁଁ ସମ୍ମାନିତ ହୋଇଥାନ୍ତି । ସମାଜର ନୈତିକ ମାନଦଣ୍ଡକୁ ଉନ୍ନତ କରିଥାନ୍ତି । ଅବଶ୍ୟ ପ୍ରତ୍ୟେକ କ୍ଷେତ୍ରରେ ସାଧୁତା ଅବଲମ୍ବନ କରିବା ଅନୁଚିତ । ଅସାଧୁ ବ୍ୟକ୍ତିଙ୍କ ନିକଟରେ ସର୍ବଦା ଅସାଧୁ ବା ଶଠ ଆଚରଣ କରିବା ବିଧେୟ । ନଚେତ୍ ସାଧୁପ୍ରକୃତିର ବ୍ୟକ୍ତି ଅସୁବିଧାର ସମ୍ମୁଖୀନ ହୋଇଥାନ୍ତି । ଏହାର ଅର୍ଥ ନୁହେଁ ଯେ, ସାଧୁତା ଏକ ଖରାପ ଗୁଣ । ଆମର ଶାସ୍ତ୍ର କୁହେ ''ଶଠେ ଶାଠ୍ୟଂ ସମାଚରେତ୍'' । ଯିଏ ଯେପରି ବ୍ୟକ୍ତି, ତା ପାଖରେ ସେହିପରି ଆଚରଣ ପ୍ରଦର୍ଶନ କରିବା ବିଧେୟ । ଏହା ସତ୍ତ୍ୱେ ମାନବ ସାଧୁତା ଗୁଣକୁ ବଳିଦେବା ଅନୁଚିତ ।

ଇଂରାଜୀରେ କୁହାଯାଏ Duty is God. କର୍ତ୍ତବ୍ୟ ହିଁ ଈଶ୍ୱର । ମଣିଷ କର୍ତ୍ତବ୍ୟ କରିବା ନିମିତ୍ତ ସଂସାରରେ ଜନ୍ମଲାଭ କରିଛି । ଏ ସମାଜ ପ୍ରତ୍ୟେକ ବ୍ୟକ୍ତିଙ୍କଠାରୁ ଉଚିତ

କର୍ତ୍ତବ୍ୟ ଆଶା କରେ । ଯେପରି ଛାତ୍ରର କର୍ତ୍ତବ୍ୟ ଅଧ୍ୟୟନ, କୃଷକର କର୍ତ୍ତବ୍ୟ କୃଷି କର୍ମ, ଶିକ୍ଷକଙ୍କର କର୍ତ୍ତବ୍ୟ ଶିକ୍ଷାଦାନ, ଡାକ୍ତରର କର୍ତ୍ତବ୍ୟ ସେବାଦାନ ଇତ୍ୟାଦି । କର୍ତ୍ତବ୍ୟରେ ଅବହେଳା ପ୍ରଦର୍ଶନ କଲେ ଈଶ୍ୱର ଅସନ୍ତୁଷ୍ଟ ହୋଇଥାନ୍ତି । କର୍ତ୍ତବ୍ୟ ସାଧନା ଉପରେ ହିଁ ମଣିଷର ଗୌରବ ନିର୍ଭର କରେ । ସେଇଥିପାଇଁ ଟେନିସନ୍ କହିଥିଲେ–The path of duty is the way to glory. ପ୍ରାଚୀନ ଭାରତବର୍ଷରେ ମଣିଷ ସର୍ବଦା ତା'ର କର୍ତ୍ତବ୍ୟ ଉପରେ ଗୁରୁତ୍ୱ ପ୍ରଦାନ କରୁଥିଲା । ପିତାଙ୍କର ଆଦେଶ ପାଳନ ପୁତ୍ରର କର୍ତ୍ତବ୍ୟ ହୋଇଥିବାରୁ ରାମଚନ୍ଦ୍ର ଚଉଦବର୍ଷ ବନବାସ ଜୀବନକୁ ଆଦରି ନେଇଥିଲେ । ସ୍ୱାମୀଙ୍କର ପଦାନୁସରଣ ନାରୀର କର୍ତ୍ତବ୍ୟ ହୋଇଥିବାରୁ ସୀତା ରାମଙ୍କର ସହଗାମିନୀ ହୋଇଥିଲେ । ଶିଷ୍ୟର କର୍ତ୍ତବ୍ୟ ପାଳନ କରିବାକୁ ଯାଇ ଏକଲବ୍ୟ ନିଜର ବୃଦ୍ଧାଙ୍ଗୁଳି କର୍ତ୍ତନ କରିଥିଲେ । ରାଜ୍ୟର କର୍ତ୍ତବ୍ୟ ପାଳନ କରିବାକୁ ଯାଇ ରାମଚନ୍ଦ୍ର ପ୍ରାଣସମା ପତ୍ନୀ ସୀତାଙ୍କୁ ନିର୍ବାସନ ଦଣ୍ଡ ଦେଇଥିଲେ । ଏହି ଗୁଣ ମଣିଷକୁ ଆତ୍ମସନ୍ତୋଷ ପ୍ରଦାନ କରିଥାଏ । ସେଇଥିପାଇଁ ଗାନ୍ଧିଜୀଙ୍କର ମୂଲ୍ୟବାନ ସମୟର ଗୋଟିଏ ମୁହୂର୍ତ୍ତ ମଧ୍ୟ ଅଯଥାରେ ବ୍ୟୟ କରୁନଥିଲେ । ଜାତିର ସାମାଜିକ ତଥା ଆର୍ଥନୀତିକ ବିକାଶରେ ଏହାର ଭୂମିକା ଅତୀବ ମହତ୍ତ୍ୱପୂର୍ଣ୍ଣ । ଠିକ୍ ସମୟରେ ଠିକ୍ କାର୍ଯ୍ୟ କଲେ ଦେଶର ବିକାଶ ହୋଇଥାଏ । ନାଗରିକ ଭାବରେ ଦେଶର ସାର୍ବଭୌମତ୍ୱ ଓ ସମ୍ମାନ ରକ୍ଷା କରିବା ଆମର କର୍ତ୍ତବ୍ୟ । ସେଇଥିପାଇଁ ଇଂଲଣ୍ଡର ନେଲ୍‌ସନ୍ ଟ୍ରାଫାଲଗାର କହିଥିଲେ–England expects every man to do his duty. ମଣିଷ ଯେଉଁ ସମାଜରେ ଜନ୍ମ ହୋଇଥାଏ, ସେହି ସମାଜ ପ୍ରତି ତା'ର କେତେକ କର୍ତ୍ତବ୍ୟବୋଧ ରହିଛି । ବ୍ୟକ୍ତିଗତ ସ୍ୱାର୍ଥ, ଆଳସ୍ୟ ଏହାର ସମ୍ପୂର୍ଣ୍ଣ ପରିପନ୍ଥୀ ।.କର୍ତ୍ତବ୍ୟପରାୟଣତାର ଅଭାବରେ ଜାତି ହୋଇପଡ଼େ ନିର୍ବେଦ । ତା'ର ସାମାଜିକ ଓ ଆର୍ଥିକ ବିକାଶ ହୋଇପାରେ ନାହିଁ । ଯେଉଁମାନେ ଆଦର୍ଶ ପୁରୁଷ ସେମାନେ ସର୍ବଦା ଏହି ଗୁଣଟି ପ୍ରତି ଅଧିକ ଗୁରୁତ୍ୱ ପ୍ରଦାନ କରିଥାନ୍ତି । ସେଇଥିପାଇଁ କୁଳବୃଦ୍ଧ ଉତ୍କଳ ଗୌରବ କହିଥିଲେ–

ଜାତି ନନ୍ଦିଘୋଷ ଚଳିବକି ଭାଇ
　　　　ସ୍ୱାର୍ଥକୁ ସାରଥି କଲେ
ଚାଲେ କିରେ ଘୋଡ଼ା ଦାନାର ତୋବଡ଼ା
　　　　ଘୋଡ଼ା ମୁହେଁ ବନ୍ଧା ଥିଲେ ।

କର୍ତ୍ତବ୍ୟପରାୟଣ ବ୍ୟକ୍ତି କୌଣସି କ୍ଷେତ୍ରରେ ବ୍ୟକ୍ତିଗତ ସ୍ୱାର୍ଥ ଉପରେ ଗୁରୁତ୍ୱ ଦିଏ ନାହିଁ । ଗୋପବନ୍ଧୁ କହିଥିଲେ 'କର୍ମ ମଣିଷ ଜୀବନର ମାନଦଣ୍ଡ ।' କର୍ମ କହିଲେ କେବଳ ଉଚିତ କର୍ମକୁ ହିଁ ବୁଝାଇଥାଏ । ତାହାହିଁ ଉଚିତ କର୍ମ, ଯାହା ବ୍ୟକ୍ତି ଏବଂ ଜାତିର ଆତ୍ମିକ ଉନ୍ନତିରେ ତଥା ସାମାଜିକ ବିକାଶରେ ସହାୟତା କରିଥାଏ । ଦେଶ ତଥା ବ୍ୟକ୍ତିର ଗୌରବ ବୃଦ୍ଧି କରିଥାଏ ।

ସମାଜ ଓ ବ୍ୟକ୍ତି ଜୀବନକୁ କଳଙ୍କମୁକ୍ତ କରିଥାଏ । ନୈତିକତାର ଭିତ୍ତିଭୂମି ଉପରେ କର୍ତ୍ତବ୍ୟପରାୟଣତା ପ୍ରତିଷ୍ଠିତ । ତେଣୁ କର୍ତ୍ତବ୍ୟପରାୟଣ ବ୍ୟକ୍ତି ସର୍ବଦା ନୀତିବୋଧ ଉପରେ ଗୁରୁତ୍ୱ ଦେଇଥାଏ । ଜୀବନର ମୂଲ୍ୟବୋଧ ପ୍ରତି ସଚେତନ କରାଇଥାଏ । ଇଂରାଜୀରେ ଗୋଟିଏ ପ୍ରବଚନ ରହିଛି—God helps those who help themselves. ଏଠାରେ ଯେଉଁମାନେ ନିଜର ସାହାଯ୍ୟ କରନ୍ତି ର ଅର୍ଥ ହେଉଛି, ଯେଉଁ ବ୍ୟକ୍ତି ପ୍ରକୃତରେ କର୍ତ୍ତବ୍ୟନିଷ୍ଠ, ଈଶ୍ୱର ସେମାନଙ୍କର ସହାୟତା କରିଥାନ୍ତି । ଏହି ଦୃଷ୍ଟିରୁ କର୍ତ୍ତବ୍ୟନିଷ୍ଠା ମଧ୍ୟ ଏକ ବିଶେଷ ଗୁଣ ଭାବରେ ପରିଚିତ ।

ମଣିଷ ଜୀବନ ପାଇଁ ଉଭୟ ସାଧୁତା ଓ କର୍ତ୍ତବ୍ୟପରାୟଣତାର ଆବଶ୍ୟକ ରହିଛି । ସାଧୁ ବ୍ୟକ୍ତି ଯେପରି କୌଣସି ଅନ୍ୟାୟ ବା ଅନୀତି କାର୍ଯ୍ୟକୁ ପ୍ରଶ୍ରୟ ଦିଅନ୍ତି ନାହିଁ, ଠିକ୍ ସେହିପରି କର୍ତ୍ତବ୍ୟପରାୟଣ ବ୍ୟକ୍ତି ଅନୁଚିତ କାର୍ଯ୍ୟ ବା ଆଳସ୍ୟକୁ ଘୃଣା କରିଥାନ୍ତି । ଦେଶ, ଜାତି ଏବଂ ବ୍ୟକ୍ତିର ସାମଗ୍ରିକ ବିକାଶରେ ଉଭୟ ଗୁଣ ଅପରିହାର୍ଯ୍ୟ । ଜାତି ଏହି ଗୁଣ ଯୋଗୁଁ କର୍ମନିଷ୍ଠ, ସତ୍ୟନିଷ୍ଠ ଓ ନୀତିନିଷ୍ଠ ହୋଇଥାଏ । ବ୍ୟକ୍ତିର ଚରିତ୍ର ସଂଶୋଧିତ ହୁଏ । ଦେଶର ବିକାଶ ତ୍ୱରାନ୍ୱିତ ହୁଏ । ଜୀବନ ହୋଇଉଠେ ଶୁଭ୍ର ସୁନ୍ଦର ଓ ଚଳଚଞ୍ଚଳ । ଏହି ଗୁଣଦ୍ୱୟର ଅଧିକାରୀ ମଣିଷ କଦାପି ଜୀବନ ସଂଗ୍ରାମରେ ପଶ୍ଚାତ୍‌ପଦ ହୋଇନଥାଏ । ଜାତିର ଅଭିଧାନରୁ 'ଅସମ୍ଭବ' ଶବ୍ଦ ସମ୍ପୂର୍ଣ୍ଣ ରୂପେ ଦୂରୀଭୂତ ହୋଇଥାଏ । ତେଣୁ ଜାତି ଏବଂ ବ୍ୟକ୍ତିର ବିକାଶ ନିମିତ୍ତ ମଣିଷ ଜୀବନରେ ଏହି ଦୁଇଟି ଗୁଣ ସର୍ବାଦୌ ରହିବା ଆବଶ୍ୟକ ।

ମଣିଷର ଉନ୍ନତ ଜୀବନ ଧାରଣ ପାଇଁ ସାଧୁତା ଓ କର୍ତ୍ତବ୍ୟନିଷ୍ଠାର ଆବଶ୍ୟକତା ରହିଛି । ଏହି ଗୁଣଦ୍ୱୟର ଅଧିକାରୀ ହୋଇଥିବାରୁ ଆଜି ଜାପାନ ଜାତି ପ୍ରଗତିର ଚରମ ସୀମାରେ ଉପନୀତ ହୋଇପାରିଛନ୍ତି । ଦୁଃଖର କଥା, ଭାରତରେ ଉକ୍ତ ଗୁଣଦ୍ୱୟର ଘୋର ଅଭାବ ପରିଲକ୍ଷିତ ହେଉଥିବାରୁ ଜାତୀୟ ଜୀବନରେ ସଙ୍କଟ ଦେଖା ଦେଇଛି, ମୂଲ୍ୟବୋଧରେ ଅବକ୍ଷୟ ଆସିଛି । ଆମର ଆର୍ଥିକ ଓ ସାମାଜିକ ବିକାଶ ତ୍ୱରାନ୍ୱିତ ହୋଇପାରୁ ନାହିଁ । ଦୁର୍ନୀତି ତଥା ଅନୀତିର ଚେର ଗଭୀରତର ହେଉଛି । ପ୍ରଗତିର ପଥ ରୁଦ୍ଧ ହୋଇଉଠୁଛି । ତେଣୁ ଭାରତରେ ସାମଗ୍ରିକ ବିକାଶ ସାଧନ କରିବାକୁ ହେଲେ ଆମର ଜନସାଧାରଣ ସାଧୁତା ତଥା କର୍ତ୍ତବ୍ୟନିଷ୍ଠା ଦ୍ୱାରା ଅନୁପ୍ରାଣିତ ହେବା ଉଚିତ । ଏହାଦ୍ୱାରା ଉଭୟ ବ୍ୟକ୍ତି ଓ ଜାତିର ମଙ୍ଗଳ ସାଧିତ ହୋଇପାରିବ ।

●

## ପ୍ରଦର୍ଶନୀ

**(ଉପକ୍ରମ, ପ୍ରଦର୍ଶନୀର ଉଦ୍ଦେଶ୍ୟ, ଉପଯୋଗିତା, ଉପସଂହାର)**

ମଣିଷର ଜୀବନ ଅତ୍ୟନ୍ତ ସଂକ୍ଷିପ୍ତ । ସୀମିତ ଜୀବନ କାଳ ମଧ୍ୟରେ ବହୁ ଅଦେଖା ଜିନିଷ ରହିଯାଇଥାଏ, ପୁଣି ପ୍ରତ୍ୟେକ ବ୍ୟକ୍ତି ଆର୍ଥନୀତିକ ଦୃଷ୍ଟିକୋଣରୁ ଏପରି ସମୃଦ୍ଧ ନୁହନ୍ତି

ଯେ, ବିଭିନ୍ନ ସ୍ଥାନ ପରିଭ୍ରମଣ କରି ଭିନ୍ନ ଭିନ୍ନ ଜିନିଷ କ୍ରୟ କରିପାରିବ କିମ୍ୱା ଉପଭୋଗ କରିପାରିବ । ଅଥଚ ସୌନ୍ଦର୍ଯ୍ୟ ତଥା ଆଶ୍ଚର୍ଯ୍ୟଜନକ ପଦାର୍ଥ ଦେଖିବାର ଲାଳସା ତା'ର କମ୍ ନୁହେଁ । ପ୍ରତିମୁହୂର୍ତ୍ତରେ ବିଶ୍ୱର ବିଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ଜିନିଷ ସୃଷ୍ଟିଲାଭ କରୁଛି । ଅନେକ ମଣିଷ ଅଛନ୍ତି ଯେଉଁମାନେ ସେହି ପଦାର୍ଥମାନଙ୍କ ସମ୍ପର୍କରେ ପରିଚୟ ମଧ୍ୟ ପାଇପାରୁ ନାହାନ୍ତି । ଦର୍ଶନୀୟ ସ୍ଥାନ ପରିଭ୍ରମଣ କରିବା ଏବଂ ଦର୍ଶନୀୟ ବସ୍ତୁ ଉପଭୋଗ କରିବା ପାଇଁ ସେ ସତତ ବ୍ୟାକୁଳ । ତା'ର ଏହି ଲାଳସାକୁ ବା ଅଭିଳାଷକୁ ପ୍ରଦର୍ଶନୀ କିଛିପରିମାଣରେ ପୂରଣ କରିବାରେ ସମର୍ଥ ହୋଇଥାଏ ।

ପ୍ରଦର୍ଶନୀର ଉଦ୍ଦେଶ୍ୟ ବ୍ୟକ୍ତିବିଶେଷଙ୍କ ଅଭିଳାଷ ପରିପୂର୍ତ୍ତି ଏବଂ ଏକ ସହଯୋଗମୂଳକ ବାତାବରଣ ସୃଷ୍ଟି । ଏତଦ୍‌ବ୍ୟତୀତ ଜାତି ଜାତି ତଥା ଅଞ୍ଚଳ ଅଞ୍ଚଳ ମଧ୍ୟରେ ଐକ୍ୟ ସ୍ଥାପନ ଓ ଦେଶର ପ୍ରଗତି ଆକଳନ ଏହାର ଅନ୍ୟତମ ଉଦ୍ଦେଶ୍ୟ । ଗୋଟିଏ ପ୍ରଦର୍ଶନୀରେ ବିଭିନ୍ନ ପଦାର୍ଥର ଏକତ୍ର ସମାବେଶ ହୋଇଥିବାରୁ ଜଣେ ବ୍ୟକ୍ତି ଗୋଟିଏ ସ୍ଥାନରୁ ଅଧିକାଂଶ ପଦାର୍ଥ ପାଇବାକୁ ସମର୍ଥ ହୋଇଥାଏ । ଏହାଦ୍ୱାରା ବ୍ୟବସାୟିକ ଉଦ୍ଦେଶ୍ୟ ପରିପୂର୍ତ୍ତି ହେବା ସଙ୍ଗେ ସଙ୍ଗେ ବ୍ୟକ୍ତି ମନରେ କ୍ରୟ କରିବାର ଇଚ୍ଛା ଜାତ ହୋଇଥାଏ । ଗୋଟିଏ ଅଞ୍ଚଳରେ କେଉଁ କେଉଁ ପଦାର୍ଥମାନ ତିଆରି ହୋଇଥାଏ, ତା'ର ପରିଚୟ ମଧ୍ୟ ଏହି ପ୍ରଦର୍ଶନୀରୁ ଉପଲବ୍ଧ ହୋଇଥାଏ । ବ୍ୟକ୍ତି ବ୍ୟକ୍ତି, ଜାତି-ଜାତି, ଅଞ୍ଚଳ-ଅଞ୍ଚଳ ମଧ୍ୟରେ ଉତ୍ତମ ବାତାବରଣ ସୃଷ୍ଟି କ୍ଷେତ୍ରରେ ଏହା ସହାୟତା କରିଥାଏ । ଜନସାଧାରଣଙ୍କ ଜୀବନର ମାନ କେତେ ପରିମାଣରେ ଅଭିବୃଦ୍ଧି ଘଟିଛି, ତାହା ଏହି ପ୍ରଦର୍ଶନୀରୁ ହିଁ ପ୍ରମାଣିତ ହୋଇଥାଏ । ଏତଦ୍‌ବ୍ୟତୀତ ଅଞ୍ଚଳ ବାହାରୁ ବିଭିନ୍ନ ପ୍ରଦେଶରୁ ବହୁ ପଦାର୍ଥ ପ୍ରଦର୍ଶନୀରେ ପ୍ରଦର୍ଶିତ ହେଉଥିବାରୁ ଭାରତରେ କେତେପ୍ରକାର ପଦାର୍ଥ ସୁଲଭ, ତାହା ଏଥିରୁ ଜଣାଯାଇଥାଏ । ରିହାତି ଦରରେ ଜିନିଷପତ୍ର ମିଳୁଥିବାରୁ ବିକ୍ରି ପରିମାଣ ବୃଦ୍ଧି ହୋଇଥାଏ ଓ ଏଥିରୁ ମଧ୍ୟ ସରକାର କିଛି ଆର୍ଥିକ ସୁବିଧା ଲାଭ କରିଥାନ୍ତି । ଜାତୀୟ ସଂହତି ସୃଷ୍ଟିରେ ମଧ୍ୟ ପ୍ରଦର୍ଶନୀର ଭୂମିକା ଅତୀବ ମହତ୍ତ୍ୱପୂର୍ଣ୍ଣ । ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ସଦ୍‌ଭାବନା ସୃଷ୍ଟିରେ ଏହା ସାହାଯ୍ୟ କରିଥାଏ । ଭାବର ଆଦାନ ପ୍ରଦାନ, ବ୍ୟକ୍ତିଚରିତ୍ର ସମ୍ପର୍କୀୟ ଜ୍ଞାନ ତଥା ଦେଶର ପ୍ରଗତି ଏଥିରୁ ଆକଳନ କରାଯାଇପାରେ । ପ୍ରଦର୍ଶନୀର ଉଦ୍ଦେଶ୍ୟ ସର୍ବଦା ମହତ୍ । ସେଥିପାଇଁ ସରକାର ଦେଶର ବିଭିନ୍ନ ସ୍ଥାନରେ ଏହି ପ୍ରଦର୍ଶନୀର ଆୟୋଜନ କରିଥାନ୍ତି ।

ପ୍ରଦର୍ଶନୀର ଉପଯୋଗିତାର ମଧ୍ୟ ତୁଳନା ନାହିଁ । ଗୋଟିଏ ପ୍ରଦର୍ଶନୀରେ ବିଭିନ୍ନ କମ୍ପାନୀ ତଥା ଜିନିଷର ସମାବେଶ ଘଟିଥାଏ । ଶିଳ୍ପଜାତ ପଦାର୍ଥ, ହସ୍ତତନ୍ତ, ହସ୍ତଶିଳ୍ପ, କୃଷିଜାତ ପଦାର୍ଥ, ପୁସ୍ତକ, ଫଳମୂଳ, ପଶୁପକ୍ଷୀ ତଥା ଆହୁରି ଅନେକ ପଦାର୍ଥ ଏକସଙ୍ଗରେ ଗୋଟିଏ ସ୍ଥାନରେ ମିଳୁଥିବାରୁ ବ୍ୟକ୍ତିବିଶେଷ ଏକକାଳୀନ ସମସ୍ତ ପଦାର୍ଥ ଲାଭ କରିବାକୁ ସମର୍ଥ ହୋଇଥାନ୍ତି । ସାଧାରଣ ବ୍ୟକ୍ତି, କଳାକାର, ଶିଳ୍ପୀ, ବ୍ୟବସାୟୀ ସମସ୍ତଙ୍କ ନିମିତ୍ତ ଏହା ଏକ

ଉପଯୋଗୀ କ୍ଷେତ୍ର । ଏତଦ୍‌ବ୍ୟତୀତ ଜନସାଧାରଣଙ୍କୁ ଆକୃଷ୍ଟ କରିବା ନିମିତ୍ତ ସାଂସ୍କୃତିକ କାର୍ଯ୍ୟକ୍ରମ ଓ ମନୋରଞ୍ଜନର ବ୍ୟବସ୍ଥା ହୋଇଥାଏ । ବିଭିନ୍ନ ଦେଶର ପଦାର୍ଥ ଏବଂ ବ୍ୟକ୍ତିବିଶେଷଙ୍କର ମିଳନ ହେଉଥିବାରୁ ପ୍ରଦର୍ଶନୀ, ସାଂସ୍କୃତିକ ଐକ୍ୟ ପ୍ରତିଷ୍ଠା ଦିଗରେ ସହାୟତା କରିଥାଏ । ଏତଦ୍‌ବ୍ୟତୀତ ଆଞ୍ଚଳିକ ବୈଶିଷ୍ଟ୍ୟ ପ୍ରଦାନ କ୍ଷେତ୍ରରେ ତା'ର ମଧ୍ୟ ଗୁରୁତ୍ୱପୂର୍ଣ୍ଣ ଭୂମିକା ବିଦ୍ୟମାନ । ଏହା ମଣିଷ ମନରୁ ସଂକୀର୍ଣ୍ଣ ଚିନ୍ତାଧାରାକୁ ଦୂରେଇ ଦେଇ ତା'ର ଦୃଷ୍ଟିଭଙ୍ଗୀକୁ ବିସ୍ତାରିତ କରିଥାଏ । ସମ୍ପ୍ରତି ପ୍ରଦର୍ଶନୀ କେବଳ ସହରର ସୀମିତ ବାତାବରଣ ମଧ୍ୟରେ ଆବଦ୍ଧ ନ ରହି ମଫସଲ ଅଞ୍ଚଳକୁ ମଧ୍ୟ ପରିବ୍ୟାପ୍ତ ହୋଇଗଲାଣି । ଗ୍ରାମାଞ୍ଚଳରେ ବସବାସ କରୁଥିବା ବ୍ୟକ୍ତି ଏହାର ମହତ୍ତ୍ୱ ଉପଲବ୍‌ଧି କରିବାକୁ ସମର୍ଥ ହେଲେଣି । ଗ୍ରାମାଞ୍ଚଳ ବ୍ୟକ୍ତି ନିଜର ଆବଶ୍ୟକୀୟ ଉପକରଣମାନ କ୍ରୟ କରିବାକୁ ସହରକୁ ନ ଆସି ପ୍ରଦର୍ଶନୀକୁ ଅପେକ୍ଷା କରୁଛନ୍ତି । ଆଜି ସହର ତଥା ମଫସଲ ମଧ୍ୟରେ ରହିଥିବା ଦୂରତ୍ୱର ଅବସାନ ଘଟିଛି । ମନୋରଞ୍ଜନ କାର୍ଯ୍ୟକ୍ରମ ସହିତ ବିଭିନ୍ନ ପ୍ରକାର ବିପଣୀର ସମାରୋହ ସମ୍ପ୍ରତି ପ୍ରଦର୍ଶନୀକୁ ବେଶ୍ ଉପଭୋଗ୍ୟ କରିପାରିଛି । ପ୍ରବୀଣ କଳାକାର ଶିଳ୍ପୀ ଯେଉଁମାନେ ପଲ୍ଲୀ ଅଞ୍ଚଳରେ ରହି ନିଜ ପ୍ରତିଭାର ପରିଚୟ ଦେଇପାରୁ ନ ଥିଲେ, ପ୍ରଦର୍ଶନୀର ଆୟୋଜନ ଦ୍ୱାରା ସେହି ଅସୁବିଧା ଦୂରୀଭୂତ ହୋଇପାରିଛି । ଏହାର ସୁପରିଚାଳନା ନିମିତ୍ତ ଗୋଟିଏ କାର୍ଯ୍ୟକାରୀ କମିଟି ଗଠନ କରାଯାଇ କମିଟି ମାଧ୍ୟମରେ ବିଭିନ୍ନ ଅସୁବିଧାକୁ ଦୂରୀକରଣ କରାଯାଇପାରୁଛି । ତେଣୁ ସାମ୍ପ୍ରତିକ କାଳରେ ପ୍ରଦର୍ଶନୀର ଉପଯୋଗିତା ଯେ କୌଣସି ବ୍ୟକ୍ତି ଅକ୍ଳେଶରେ ହୃଦୟଙ୍ଗମ କରିବାକୁ ସମର୍ଥ ହୋଇପାରୁଛି ।

ଆଜି ମଣିଷ ନିଜକୁ ଆଉ ସୀମିତ ବାତାବରଣ ମଧ୍ୟରେ ଆବଦ୍ଧ କରି ରଖିବାକୁ ଚାହେଁ ନାହିଁ । ବଣମଲ୍ଲୀ ବଣରେ ଫୁଟି ଝଡ଼ିଯିବା ନ୍ୟାୟକୁ ସାମ୍ପ୍ରତିକ କାଳ ଅସ୍ୱୀକାର କରିପାରିଛି । ନିଜର କଳାପାଟବତା ବା ପ୍ରତିଭାର ଉପଯୋଗ ନିମିତ୍ତ ପ୍ରଦର୍ଶନୀ ଆଜି ଏକ ମାଧ୍ୟମରେ ପରିଣତ ହୋଇଛି । ରୁଚିର ପରିବର୍ତ୍ତନ ସଙ୍ଗେ ସଙ୍ଗେ ବ୍ୟକ୍ତିବିଶେଷଙ୍କ ପ୍ରତିଭାକୁ ଏହା ସମ୍ମାନ ପ୍ରଦର୍ଶନ କରୁଛି । ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ବିଭିନ୍ନ ବସ୍ତୁର ଉପଲବ୍‌ଧି ଯୋଗୁଁ ସାଧାରଣ ମଣିଷକୁ ବାରମ୍ବାର ଏକସ୍ଥାନରୁ ଅନ୍ୟ ସ୍ଥାନକୁ ଯିବାକୁ ପଡୁ ନାହିଁ । ଏହି ପ୍ରଦର୍ଶନୀରେ ବହୁ ପ୍ରତିଭାବାନ୍ ତଥା ପ୍ରବୀଣ ବ୍ୟକ୍ତିମାନଙ୍କର ସମାବେଶ ଘଟୁଥିବାରୁ ଅନ୍ତର୍ନିହିତ ପ୍ରତିଭା ପ୍ରକାଶ ଲାଭ କରିବାର ସୁଯୋଗ ମିଳୁଛି । ବିଭିନ୍ନ ବ୍ୟକ୍ତିଙ୍କର ସହଯୋଗରେ ଆସିବା ଦ୍ୱାରା ଏକ ସହଯୋଗମୂଳକ ବାତାବରଣ ସୃଷ୍ଟି ହେବାର ଅବକାଶ ମିଳିପାରୁଛି । ସରକାରଙ୍କ ବିଭିନ୍ନ କାର୍ଯ୍ୟକ୍ରମ ସମ୍ପର୍କରେ ମଧ୍ୟ ସରକାରୀ ସୂଚନାମାନ ମିଳିପାରୁଛି । ଏହାଦ୍ୱାରା ସରକାରୀ ଯୋଜନା ସମ୍ବନ୍ଧରେ ସାଧାରଣ ମଣିଷ ଅବଗତ ହୋଇପାରୁଛି । ଏହିସବୁ କାରଣରୁ ପ୍ରଦର୍ଶନୀର ଉପଯୋଗିତା ଅତୁଳନୀୟ ବୋଲି ହୃଦ୍‌ବୋଧ ହେଉଛି ।



# ଓଡ଼ିଶାର ଶିଳ୍ପକଳା

(ଉପକ୍ରମ, ଓଡ଼ିଶାର କଳା ବିଭବ, ମନ୍ଦିର ଓ ପର୍ବତ ଗାତ୍ରରେ କଳା, ହସ୍ତଶିଳ୍ପରେ କଳାଚେତନା, ଅନ୍ୟାନ୍ୟ କ୍ଷେତ୍ରରେ ଓଡ଼ିଶାର କଳା ଚେତନା, ଉପସଂହାର)

ଉତ୍କୃଷ୍ଟ କଳାର ଦେଶ ବୋଲି ଓଡ଼ିଶାର ଅନ୍ୟ ନାମ ଥିଲା ଉତ୍କଳ । ଅତୀତରେ କଳାକ୍ଷେତ୍ରରେ ସମଗ୍ର ଭାରତବର୍ଷରେ ଏହାର ସ୍ଥାନ ରହିଥିଲା ବହୁ ଊର୍ଦ୍ଧ୍ୱରେ । ସୌନ୍ଦର୍ଯ୍ୟ ଚେତନାର ସର୍ବଶ୍ରେଷ୍ଠ ଅଭିବ୍ୟକ୍ତି ଏହିଠାରେ ହିଁ ଘଟିଥିଲା । ଖ୍ରୀ.ପୂ. ଶତକରୁ ଏ ଦେଶର ସନ୍ତାନ କଳାକ୍ଷେତ୍ରରେ ନିଜର ଶ୍ରେଷ୍ଠତ୍ୱ ପ୍ରଦର୍ଶନ କରି ଆସିଛନ୍ତି । ପଥର ଠାରୁ ଆରମ୍ଭ କରି କାଠ ପର୍ଯ୍ୟନ୍ତ ପ୍ରତ୍ୟେକ କ୍ଷେତ୍ରରେ ଉତ୍କଳୀୟମାନଙ୍କର ହସ୍ତ ସ୍ପର୍ଶ ତାକୁ ଜୀବନ୍ତ ରୂପ ପ୍ରଦାନ କରିଛି । ଏବେ ମଧ୍ୟ ଏ ଦେଶର ବହୁ ଶିଳ୍ପୀ ନିଜକୁ କଳାଲକ୍ଷ୍ମୀର ଆରାଧନାରେ ନିମଜ୍ଜନ ରଖିଛନ୍ତି । ପର୍ବପର୍ବାଣି ମାନଙ୍କରେ ଉତ୍କଳୀୟ ରମଣୀ ବିଭିନ୍ନ ଚିତା ମାଧ୍ୟମରେ ନିଜର କଳା ଚେତନାକୁ ପ୍ରକାଶ କରିଛନ୍ତି । ପାହାଡ଼ ପର୍ବତର ଗୁମ୍ଫାରେ, ତାଳପତ୍ରରେ, କାଗଜରେ, ବିଭିନ୍ନ ହସ୍ତକର୍ମରେ ଓଡ଼ିଆମାନଙ୍କର କଳାଚେତନା ଆତ୍ମପ୍ରକାଶ କରିଛି । ଦେବଦେବୀଙ୍କ ମନ୍ଦିର ନିର୍ମାଣରେ ଉତ୍କଳୀୟଙ୍କ ଚାରୁକଳା ବହୁ ବିଦେଶୀଙ୍କୁ ମୁଗ୍ଧ ଚକିତ କରିଛି । ବ୍ୟକ୍ତିଗତ ଜୀବନରୁ ଦେବମନ୍ଦିର ପର୍ଯ୍ୟନ୍ତ ସବୁକ୍ଷେତ୍ରରେ ଉତ୍କଳୀୟ ନିଜର କଳାପାଟବତାର ବହୁ ନିଦର୍ଶନ ଛାଡ଼ିଯାଇଛନ୍ତି । ସେଥିରୁ ଓଡ଼ିଶାର କଳାବିଭବ ସମ୍ପର୍କରେ ଯଥାର୍ଥ ଜ୍ଞାନ ଲାଭ ହୋଇଥାଏ ।

ଓଡ଼ିଶାର କଳାବିଭବ କୌଣସି ଏକ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ସୀମାବଦ୍ଧ ନୁହେଁ । ପର୍ବତର ଗୁମ୍ଫା, ଦେବଦେବୀ ମନ୍ଦିର, ବିଭିନ୍ନ ହସ୍ତକର୍ମ, ତାଳପତ୍ର, ପର୍ବପର୍ବାଣିର ଝୋଟି ଓ ମୁରୁଜ, ଶିଙ୍ଗ ଏବଂ ତାରକସି କର୍ମ, କାଷ୍ଠ ଆଦି ସବୁକ୍ଷେତ୍ରରେ ତା'ର ଜ୍ୱଳନ୍ତ ନିଦର୍ଶନ ରହିଛି । ଓଡ଼ିଶାର ପ୍ରାକୃତିକ ସୁଷମା, ଘଞ୍ଚ ଅରଣ୍ୟ, ଦିଗନ୍ତ ବିସ୍ତାରିତ ସବୁଜ ଶସ୍ୟକ୍ଷେତ୍ର, ଗିରି ତଟିନୀର କଳକଳ ନାଦ, ପକ୍ଷୀର କୂଜନ ତା'ର ରୂପପାୟୀ ମନରେ ଭରିଦେଇଛି କଳାର ଅପୂର୍ବ ପ୍ରେରଣା । ସେ ଆତ୍ମବିସ୍ମୃତ ହୋଇଛି ପ୍ରାକୃତିକ ସୁଷମା ସନ୍ଦର୍ଶନରେ । ଆର୍ଯ୍ୟ ଓ ଦ୍ରାବିଡ଼ର ମିଳନ ଘଟିଛି ଏହି ଭୂମିରେ । ସର୍ବଧର୍ମର ସମନ୍ୱୟ ପୀଠ ରୂପେ ଶ୍ରୀକ୍ଷେତ୍ର ପ୍ରସିଦ୍ଧି ଲାଭ କରିଛି । ଭାରତର ବିଭିନ୍ନ ସ୍ଥାନରୁ ଜ୍ଞାନୀଗୁଣୀଙ୍କର ସମାବେଶ ହୋଇଛି ଏଠାରେ । ବିଭିନ୍ନ ସଂସ୍କୃତିର ମିଳନପୀଠ ରୂପେ ଏହାର ପ୍ରସିଦ୍ଧି ଲାଭ କରିବା ସଙ୍ଗେ ସଙ୍ଗେ ତା'ର କଳାଚେତନାରେ ଅନ୍ୟାନ୍ୟ କଳାଚେତନାର ସମ୍ମିଶ୍ରଣ ଘଟିଛି । ଶିଳ୍ପୀ ଚିତ୍ତରେ ନୂତନ ଭାବପ୍ରେରଣା ଜନ୍ମ ନେଇଛି । ବିଭିନ୍ନ ଧର୍ମର ପ୍ରଚାରସ୍ଥଳୀ ରୂପେ ଏହା ଖ୍ୟାତିଲାଭ କରିଥିବାରୁ ବିଭିନ୍ନ ଧର୍ମର ପୃଷ୍ଠପୋଷକ କଳାକୁ ଧର୍ମପ୍ରଚାରର ଏକ ମାଧ୍ୟମ ରୂପେ ଗ୍ରହଣ କରିଛନ୍ତି । ତେଣୁ ମନ୍ଦିର ଗାତ୍ର, ପର୍ବତଗୁମ୍ଫା ଆଦିରେ ଏହି ଧର୍ମର କଳା ବୈଚିତ୍ର୍ୟ ଫୁଟିଉଠିଲା । ଏତଦ୍‌ବ୍ୟତୀତ

ଶାସକ ନିଜ ରୁଚିବୋଧର ପରିପ୍ରକାଶ କରିବାକୁ ଯାଇ ବିଭିନ୍ନ କାରୁକଳା ପରିପୂର୍ଣ୍ଣ ମନ୍ଦିର ନିର୍ମାଣ ନିମିତ୍ତ ଆଗ୍ରହ ପ୍ରକାଶ କରିଛନ୍ତି । ଇସ୍‌ଲାମ ଓ ଭାରତୀୟ ସଂସ୍କୃତିର ମିଳନର ସାକ୍ଷ୍ୟ ସ୍ୱରୂପ କେତେକ କ୍ଷେତ୍ରରେ ଇଣ୍ଡୋ-ଇସଲାମିକ୍ ମିଶ୍ରିତ କାରୁକଳା ପରିଲକ୍ଷିତ ହୋଇଛି । ବିଶେଷକରି ରାଜପ୍ରାସାଦ ତଥା ବିଭିନ୍ନ ହର୍ମ୍ୟ ନିର୍ମାଣରେ ଏହାର ସମନ୍ୱିତ ରୂପ ଦେଖିବାକୁ ମିଳିଥାଏ । ତେଣୁ ଓଡ଼ିଶାର କଳା ଏବଂ ସ୍ଥାପତ୍ୟରେ ଉଭୟ ଉତ୍କଳୀୟ ଓ ଅନ୍ୟାନ୍ୟ କଳାଚେତନାର ଅପୂର୍ବ ସମନ୍ୱୟ ସାଧିତ ହୋଇଥିବାର ପରିଲକ୍ଷିତ ହୋଇଥାଏ ।

ପର୍ବତ ଗୁମ୍ଫା, ମନ୍ଦିର, ଗିର୍ଜା, ଅଟ୍ଟାଳିକା, ସୁନ୍ଦର ହର୍ମ୍ୟ, ମସ୍‌ଜିଦ୍ ଆଦିର ନିର୍ମାଣରେ ଯେଉଁ କଳାର ବିକଶିତ ରୂପ ଦେଖିବାକୁ ମିଳେ, ତାହା ସ୍ଥାପତ୍ୟର ଅନ୍ତର୍ଭୁକ୍ତ । ଖାରବେଳଙ୍କ ସମୟରୁ ଓଡ଼ିଶାରେ ପାହାଡ଼ ଗୁମ୍ଫାମାନଙ୍କରେ କଳାର ବିକାଶ ଘଟିଛି । ଶକ୍ତିଶାଳୀ ଉତ୍କଳ ବିଭିନ୍ନ ଯୁଦ୍ଧକ୍ଷେତ୍ରରେ ଜୟଲାଭ କରି ବିଜୟକେତନ ଉଡ଼ାଇ ସ୍ୱଦେଶକୁ ଫେରିବା ପରେ ବିଜୟର ସ୍ମାରକୀ ରୂପେ ମନ୍ଦିର ଓ ପର୍ବତ ଗୁମ୍ଫାମାନଙ୍କରେ ତା'ର ବିଜୟ ଚିତ୍ର ଖୋଦନ କରିଛି । ଖଣ୍ଡଗିରି, ଉଦୟଗିରି ଆଦିରେ ଖାରବେଳ ନିଜର ଧର୍ମମତକୁ ଖୋଦିତ କରିବା ସଙ୍ଗେ ସଙ୍ଗେ ଜୈନକଳାର ଅଭ୍ରାନ୍ତ ନିଦର୍ଶନ ପ୍ରତିପାଦନ କରିଛନ୍ତି । ଅଶୋକଙ୍କ ସମୟରେ ଓଡ଼ିଶାର ଧଉଳିସ୍ତୂପ ତଥା ଅନ୍ୟ କେତେକ କ୍ଷେତ୍ରରେ ବୌଦ୍ଧକଳା ସଙ୍କେତ ଫୁଟିଉଠିଛି । ବିଭିନ୍ନ ମନ୍ଦିର ନିର୍ମାଣରେ ହିଁ ଉତ୍କଳୀୟ କଳାର ଯଥାର୍ଥ ନିଦର୍ଶନ ପ୍ରତିପାଦିତ ହୋଇଛି । ବିମାନ, ଦେଉଳ, ମୁଖଶାଳା, ନାଟ୍ୟମଣ୍ଡପ ଆଦି ସୁନ୍ଦର ସୁନ୍ଦର କାରୁକାର୍ଯ୍ୟରେ ପରିପୂର୍ଣ୍ଣ ହୋଇ ଦର୍ଶକ ତଥା ଭକ୍ତଙ୍କର ଚିତ୍ତମୁଗ୍ଧ କରିଛି । କୋଣାର୍କ ମନ୍ଦିର, ଲିଙ୍ଗରାଜ ମନ୍ଦିର, ରାଜାରାଣୀ ମନ୍ଦିର, ସୁବର୍ଣ୍ଣେଶ୍ୱର ମନ୍ଦିର, ଭରତେଶ୍ୱର ମନ୍ଦିର, ପୁରୀ ମନ୍ଦିର, ଅନନ୍ତ ବାସୁଦେବ ମନ୍ଦିର, ବିରଜା ମନ୍ଦିର, ଧବଳେଶ୍ୱର, ବଳଦେବଜୀଉ ମନ୍ଦିର, ଖିଚିଙ୍ଗ୍‌ର ଚନ୍ଦ୍ରଶେଖର ଓ ନୀଳକଣ୍ଠେଶ୍ୱର ମନ୍ଦିର; ରତ୍ନଗିରି, ଧଉଳିଗିରି, ଉଦୟଗିରି, ଖଣ୍ଡଗିରି, ଲଳିତଗିରି ଆଦିର କାରୁକାର୍ଯ୍ୟ ଦେଖିଲେ ଉତ୍କଳୀୟ କଳାକାରଙ୍କର କଳା ପ୍ରତିଭାର ପ୍ରକୃତ ପରିଚୟ ଉପଲବ୍‌ଧି ହୋଇଥାଏ । ଏଥିରେ ଉତ୍ତର ଭାରତୀୟ ଓ ଓଡ଼ିଶୀକଳାର ସମନ୍ୱୟ ସାଧିତ ହୋଇଥିବାର ଜଣାଯାଏ । ମନ୍ଦିରମାନଙ୍କରେ ନଟନଟୀ, ଅଶ୍ୱ, ଦେବବିଗ୍ରହ, ପାର୍ଶ୍ୱଦେବତା, ପୁରାଣର ବିଭିନ୍ନ ବିଷୟବସ୍ତୁ, ଯୁଦ୍ଧଯାତ୍ରା, କାମଶାସ୍ତ୍ର ସମର୍ଥିତ କେତେକ ରତିବନ୍ଧ, ହସ୍ତୀ ଓ ଅଶ୍ୱର ଶୋଭାଯାତ୍ରା, ପଶୁପକ୍ଷୀ; ବୃକ୍ଷଲତା ଆଦିର ଚିତ୍ର ଜୀବନ୍ତ ପ୍ରାଣୀ ସଦୃଶ ପ୍ରତୀୟମାନ ହୋଇଥାଏ । ଓଡ଼ିଶାର ତତ୍କାଳୀନ ସାମାଜିକ, ରାଜନୀତିକ ଓ ଆର୍ଥନୀତିକ ଜୀବନର ବହୁ ଚିତ୍ର ଏଥିରେ ଖୋଦିତ ହେବା ସହିତ ବିଭିନ୍ନ ଧର୍ମନୀତିକୁ ଚିତ୍ର ମାଧ୍ୟମରେ ପ୍ରକାଶ କରାଯିବାର ଉଦ୍ୟମ ହୋଇଛି । ଓଡ଼ିଶାର ପ୍ରସ୍ତର ମୂର୍ତ୍ତି ସମ୍ପର୍କରେ ଡଃ ଅର୍ଜୁନ ଯୋଷୀ ଲେଖିଛନ୍ତି–''ଏହା ପ୍ରାଚୀନ ଓଡ଼ିଶାର ଭାସ୍କର୍ଯ୍ୟ ଶିଳ୍ପମାନଙ୍କର ଗୌରବ ରକ୍ଷାକରି ଆସିଛି । ପ୍ରତ୍ୟେକ ମନ୍ଦିରରେ ଥିବା ଦେବଦେବୀର ବିଗ୍ରହଠାରୁ ଆରମ୍ଭ କରି ନବଗ୍ରହ, ଦ୍ୱାରପାଳ, ଗରୁଡ଼ଖମ୍ବ, ବୃଷଭ, ପାର୍ଶ୍ୱଦେବତା ଓ ଦିଗପାଳ ପ୍ରଭୃତିଙ୍କର ଉଚ୍ଚକୋଟୀର ମୂର୍ତ୍ତିକୁ ଦେଶବିଦେଶର ରସିକ ଗୁଣୀଜନମାନେ

ଦେଖି ମୁଗ୍ଧ ହୋଇଯାଉଛନ୍ତି । ଏହା ବ୍ୟତୀତ ବହୁ ସାମାଜିକ ଓ ପାରିବାରିକ ଦୃଶ୍ୟ, କାମକଳା ଓ କୀର୍ତ୍ତିମୁଖ, ନାଗଦମ୍ପତି, ଅପ୍‌ସରା ଓ ମତ୍ସ୍ୟକନ୍ୟା ପ୍ରଭୃତି କାଳ୍ପନିକ ମୂର୍ତ୍ତିଗୁଡ଼ିକ ମଧ୍ୟ ଯଥେଷ୍ଟ ଆକର୍ଷଣୀୟ ହୋଇ ରହିଛି । କୋଣାର୍କର ସୂର୍ଯ୍ୟମନ୍ଦିର, ଭୁବନେଶ୍ୱରର ରାଜାରାଣୀ ମନ୍ଦିର, ଯାଜପୁରର ସପ୍ତମାତୃକା ପ୍ରଭୃତି ଶତ ଶତ ବର୍ଷ ଧରି ରସପିପାସୁର ତୃପ୍ତିବିଧାନ କରି ଆସୁଛି—ଅଶ୍ମାପି ଯାତି ଦେବତ୍ୱଂ ମହଦ୍‌ଭିଃ ସୁପ୍ରତିଷ୍ଠିତଃ । ପ୍ରାଚୀନ ଉତ୍କଳୀୟର ରାଜଦରବାରର ଅସ୍ତ୍ର କୌଶଳ, ବିବାହ, ଯାତ୍ରା, ଗୁରୁଶିଷ୍ୟ, ବାଦ୍ୟଯନ୍ତ୍ର, ନୃତ୍ୟ, କେଶବିନ୍ୟାସ, ଅଳଙ୍କାର, ପୋଷାକ ପରିଚ୍ଛଦ ପ୍ରଭୃତି ବିଷୟରେ ଯଥେଷ୍ଟ ସୂଚନା ଉପରୋକ୍ତ ଭାସ୍କର୍ଯ୍ୟାବଳୀରୁ ମିଳିଥାଏ ।'' କଳାଲକ୍ଷ୍ମୀର ଜୀବନ୍ତ ରୂପାୟନ ଘଟିଛି ମନ୍ଦିର ଓ ପର୍ବତର ଗୁମ୍ଫାମାନଙ୍କରେ । ଚତୁର୍ଦ୍ଦଶ ଶତାବ୍ଦୀର ଆଦ୍ୟଭାଗ ମଧ୍ୟରେ ଓଡ଼ିଶାରେ ବହୁ ମନ୍ଦିର ନିର୍ମିତ ହୋଇଥିଲା । ଓଡ଼ିଆ କଳାକାରର ଅଧିକାଂଶ କଳାନିପୁଣତା ମନ୍ଦିର ଗାତ୍ର ଓ ପର୍ବତ ଗୁମ୍ଫାମାନଙ୍କରେ ଦେଖିବାକୁ ମିଳିଥାଏ ।

କେବଳ ମନ୍ଦିରଗାତ୍ର ବା ପର୍ବତ ଗୁମ୍ଫାରେ ଉତ୍କଳୀୟ କଳାକାର ତା'ର କଳାନିପୁଣତାର ପରିଚୟ ପ୍ରତିପାଦନ କରି ନାହିଁ । ବିଭିନ୍ନ ହସ୍ତଶିଳ୍ପରେ ମଧ୍ୟ ଏହାର ପ୍ରଚୁର ନିଦର୍ଶନ ରହିଛି । କାଠ, ପିତ୍ତଳ ତଥା ଅନ୍ୟାନ୍ୟ ଧାତୁରେ ମଧ୍ୟ ଉତ୍କଳୀୟ ଶିଳ୍ପୀ ନିଜର ବିଶେଷତ୍ୱ ପ୍ରତିପାଦନ କରିଛି । ବାଲକାଟି, କଣ୍ଟିଲୋ ଆଦି ସ୍ଥାନରେ ପିତ୍ତଳର ସୁନ୍ଦର ସୁନ୍ଦର ବାସନ ତଥା କାରୁକାର୍ଯ୍ୟପୂର୍ଣ୍ଣ ବ୍ୟବହାର ଉପଯୋଗୀ ପଦାର୍ଥ ନିର୍ମିତ ହେଉଛି । ପିତ୍ତଳର ସୁନ୍ଦର ସୁନ୍ଦର ମୂର୍ତ୍ତି ନିର୍ମାଣ କରି ବିକ୍ରୟ କରୁଛନ୍ତି । ଏହି ମୂର୍ତ୍ତିଗୁଡ଼ିକ ବିଦେଶୀମାନଙ୍କ ଦ୍ୱାରା ବହୁପରିମାଣରେ ପ୍ରଶଂସିତ ହେଉଛି । କାଠର ମୂର୍ତ୍ତି, ବିଭିନ୍ନ ଖେଳନା ତିଆରି କରିବାରେ କଟକ, ପୁରୀ ଆଦିର କଳାକାରମାନେ ବେଶ୍ ସିଦ୍ଧହସ୍ତ । ଖଡ଼ିପଥରରେ ମଧ୍ୟ ସୁନ୍ଦର ସୁନ୍ଦର ମୂର୍ତ୍ତି ତିଆରି କରାଯାଇପାରୁଛି । ମାଟିରେ ବିଭିନ୍ନ ଦେବଦେବୀଙ୍କ ମୂର୍ତ୍ତି, ପଶୁପକ୍ଷୀ ତଥା ଫୁଲଫଳ ତିଆରି କରାଯାଇ ବିକ୍ରୟ ହେଉଛି । ଏଥିରୁ ଓଡ଼ିଆ କଳାକାରମାନଙ୍କର କଳାଜ୍ଞାନର ଯଥାର୍ଥ ପରିଚୟ ମିଳିପାରୁଛି । ବୟନଶିଳ୍ପ କ୍ଷେତ୍ରରେ ଓଡ଼ିଆମାନଙ୍କର ସ୍ୱତନ୍ତ୍ର ବିଶେଷତ୍ୱ ରହିଛି । ଏବେବି ସମ୍ବଲପୁରୀ, ନୂଆପାଟଣା, ତିଗିରିଆ, ବ୍ରହ୍ମପୁରର ପାଟଲୁଗା ବେଶ୍ ପ୍ରସିଦ୍ଧ । ପାରଳାଖେମୁଣ୍ଡିର ବେତକାର୍ଯ୍ୟ, କଟକର ତାରକସୀ କାର୍ଯ୍ୟ, ପୁରୀର ସୋଲ ଓ ଶଙ୍ଖର କାମ ମଧ୍ୟରେ ଓଡ଼ିଶାର ଶିଳ୍ପୀମାନଙ୍କର ଶିଳ୍ପନୈପୁଣ୍ୟ ପ୍ରଦର୍ଶିତ ହୋଇଛି । ବର୍ତ୍ତମାନ ପିପିଲିର ଚାନ୍ଦୁଆ, ବ୍ୟାଗ୍ ଆଦି ଦେଶ ବିଦେଶରେ ବିଶେଷ ଖ୍ୟାତିଲାଭ କରିପାରିଛି । ନୀଳଗିରିର ପଥରବାସନ ପ୍ରସିଦ୍ଧି ଅର୍ଜନ କରିଛି । ନଡ଼ିଆକତାରେ ସୁନ୍ଦର ସୁନ୍ଦର ପାପୋଛ, ଗାଲିଚା ଆଦି ତିଆରି ହୋଇ ଓଡ଼ିଶାରୁ ବିଭିନ୍ନ ସ୍ଥାନକୁ ପ୍ରେରଣ କରାଯାଉଛି । ଶାମୁକା, ନଡ଼ିଆ ସଢ଼େଇ, ଦିଆସିଲି ଖୋଳ ଆଦିରେ ସୁନ୍ଦର ସୁନ୍ଦର ସାଜସରଞ୍ଜାମ ପ୍ରସ୍ତୁତ କରାଯାଇ ବିକ୍ରୟ ହେଉଛି । ବାଉଁଶରୁ ତାଟି, ଟୋକେଇ ଆଦି ପ୍ରସ୍ତୁତ କରାଯାଇପାରୁଛି ।

କାଇଁଚ, ବେରୁହା, ଜୁଣ ଆଦିରୁ ମଧ୍ୟ ଓଡ଼ିଆ କଳାକାର ରମଣୀୟ ସରଞ୍ଜାମ ପ୍ରସ୍ତୁତ କରି ଦର୍ଶକମାନଙ୍କୁ ମୁଗ୍ଧ କରିପାରୁଛି । ଶିଙ୍ଗର ବହୁ ସୂକ୍ଷ୍ମ କାରୁକାର୍ଯ୍ୟ ବିକ୍ରୟ ହେଉଛି । ତେଣୁ ଓଡ଼ିଶାର ଶିଳ୍ପକଳା ଏବେ ମଧ୍ୟ ହୀନପ୍ରଭ ହୋଇ ନାହିଁ । ମନ୍ଦିର ବା ପାହାଡ଼ଗୁମ୍ଫାରେ ମୂର୍ତ୍ତି ତିଆରି ହୋଇପାରୁ ନ ଥିଲେହେଁ ଶିଳ୍ପୀ ଅନ୍ୟ ମାଧ୍ୟମରେ ନିଜର କଳାପ୍ରବୃତ୍ତିକୁ ଚରିତାର୍ଥ କରିପାରୁଛି ।

ଅତୀତ ଓଡ଼ିଶାରେ ତାଳପତ୍ରମାନଙ୍କରେ ସୁନ୍ଦର ସୁନ୍ଦର ଚିତ୍ର କରାଯାଇପାରୁଥିଲା । ଭାଗବତ କିମ୍ବା ଗୀତଗୋବିନ୍ଦ ଆଦି ପୋଥିରେ ଏହି ଚିତ୍ରମାନ ଅଙ୍କିତ ହେଉଥିଲା । କୁମ୍ଭକାରମାନେ ମାଟିରେ ସୁନ୍ଦର ସୁନ୍ଦର ଦେବଦେବୀ ମୂର୍ତ୍ତି, ହାଣ୍ଡି, ଘୋଡ଼ା, ହାତୀ ଆଦିର ନିର୍ମାଣ କରୁଥିଲେ । ଏବେ କାଗଜରେ କଳାଲକ୍ଷ୍ମୀଙ୍କର ନିରାଜନା କରାଯାଉଛି । ବହୁ ଓଡ଼ିଆ ଶିଳ୍ପୀ ଚିତ୍ରାଙ୍କନ କ୍ଷେତ୍ରରେ ବିଶ୍ୱରେ ପ୍ରସିଦ୍ଧି ଅର୍ଜନ କରିସାରିଲେଣି । ବିଭିନ୍ନ ପ୍ରକାର ରଙ୍ଗରେ ଚିତ୍ରମାନ ସୃଷ୍ଟିଲାଭ କଲାଣି । ଗୋପାଳ କାନୁନ୍‌ଗୋ, ବିମ୍ବାଧର ବର୍ମା, ଉପେନ୍ଦ୍ର କିଶୋର ଦାସ, ଦୀନାନାଥ ପାଠୀ, ଅସିତ ମୁଖାର୍ଜୀ, ଶିବ ପାଣିଗ୍ରାହୀ, ଅନନ୍ତ ପଣ୍ଡା, ବସନ୍ତ କୁମାର ପଣ୍ଡା, ବିଭୂତି କାନୁନ୍‌ଗୋ ଆଦି ଏ କ୍ଷେତ୍ରରେ ବିଶେଷ ବିଶେଷତ୍ୱ ଅର୍ଜନ କରିଛନ୍ତି । ବର୍ତ୍ତମାନ ମଧ୍ୟ ଗ୍ରାମାଞ୍ଚଳର ବଢ଼େଇ ଗୃହନିର୍ମାଣ, ଖଟ ବା ଆସବାବ ପ୍ରସ୍ତୁତି, ସବାରୀ, ପାଲିଙ୍କି, ବିମାନ ଆଦି ନିର୍ମାଣରେ ନିଜର କଳାପାଟବତା ପ୍ରଦର୍ଶନ କରିପାରୁଛନ୍ତି । ତେଣୁ ଉତ୍କଳୀୟ କଳା ଏଯାବତ୍ ସମ୍ପୂର୍ଣ୍ଣ ଭାବରେ ଦୀନହୀନ ହୋଇପଡ଼ି ନାହିଁ ।

ଅତୀତ ଉତ୍କଳର କଳାନୈପୁଣ୍ୟ ଏବଂ ସାମ୍ପ୍ରତିକ କଳା ମଧ୍ୟରେ ବହୁ ପାର୍ଥକ୍ୟ ରହିଛି । ଏବେ କଳାକାରମାନେ ସମାଜରେ ଯେପରି ସମ୍ମାନିତ ହେବାକଥା ତାହା ହୋଇପାରୁ ନାହାନ୍ତି । ଅତୀତରେ ରାଜପୃଷ୍ଠପୋଷକତା ଲାଭକରି କଳାକାର ନିଜର କଳାନୈପୁଣ୍ୟ ପ୍ରଦର୍ଶନ କରିବାକୁ ଆଗଭର ହେଉଥିଲା । ଆଧୁନିକ ମଣିଷର ରୁଚିବୋଧ ଥିଲେହେଁ, କଳାକୁ ଯେପରି ଆଦର କରିବାର କଥା, ସେପରି କରିପାରୁ ନାହିଁ । ତେଣୁ ଧୀରେ ଧୀରେ କଳା ଅନ୍ୟ ମାଧ୍ୟମ ଦେଇ ପ୍ରକାଶଲାଭ କଲାଣି । ଏହା ସତ୍ତ୍ୱେ କାର୍ତ୍ତିକପୂର୍ଣ୍ଣିମା ବା ପଞ୍ଚୁକ ପାଞ୍ଚଦିନ, ବିଭିନ୍ନ ପର୍ବପର୍ବାଣି ଆଦିରେ ଓଡ଼ିଆ ଘରର ତରୁଣୀ ଓ ରମଣୀ ଯେପରି ଭାବରେ ମୁରୁଜ ତଥା ଚିତାମାନ ଅଙ୍କନ କରୁଛନ୍ତି, ସେଥିରୁ ସେମାନଙ୍କର କଳା ସୌନ୍ଦର୍ଯ୍ୟବୋଧର ପରିଚୟ ମିଳୁଛି । ବିଭିନ୍ନ ପିଠା ପ୍ରସ୍ତୁତିରେ ମଧ୍ୟ ଏହାର କେତେକାଂଶରେ ପ୍ରମାଣ ମିଳେ । ଏହା ସତ୍ତ୍ୱେ ଉତ୍କୃଷ୍ଟ କଳାର ଦେଶ ଓଡ଼ିଶାରେ କଳାର ଯେପରି ବିକାଶ ହେବା କଥା; ତାହା ହୋଇପାରୁ ନାହିଁ । ତଥାପି କଳାପ୍ରାଣ ଓଡ଼ିଆମାନଙ୍କ ମନରୁ ସେହି କଳାପ୍ରିୟତା ସମ୍ପୂର୍ଣ୍ଣ ଭାବରେ ଯେ ଦୂରୀଭୂତ ହୋଇ ପାରି ନାହିଁ, ତାହାହିଁ ସାନ୍ତ୍ୱନାର ବିଷୟ ।

●

# ବିଶ୍ୱର ଆତଙ୍କ—ଏଡ୍‌ସ

**(ଉପକ୍ରମ, ଜନ୍ମ ଇତିହାସ, ଏଡ୍‌ସର କାରଣ, ବିଭିନ୍ନ ଲକ୍ଷଣ, ଚିକିତ୍ସା ଓ ନିରାକରଣ ଉପାୟ, ଉପସଂହାର)**

ଆଜି ସମଗ୍ର ବିଶ୍ୱରେ ଏଡ୍‌ସ ଏକ ମାରାତ୍ମକ ବ୍ୟାଧି ରୂପେ ଆତଙ୍କ ସୃଷ୍ଟି କରିଛି । ଏଯାବତ୍ ଏହାର ସମ୍ପୂର୍ଣ୍ଣ ନିରାକରଣ ନିମିତ୍ତ ବିଶ୍ୱରେ କୌଣସି ନିର୍ଦ୍ଦିଷ୍ଟ ଔଷଧ ତିଆରି ହୋଇପାରି ନାହିଁ । ଏହା ଏକ ସଂକ୍ରାମକ ବ୍ୟାଧି ହୋଇଥିବାରୁ ବିଭିନ୍ନ କାରଣ ପାଇଁ ସହଜରେ ଏହା ଜଣେ ବ୍ୟକ୍ତିଠାରୁ ଅନ୍ୟ ଜଣେ ବ୍ୟକ୍ତିଙ୍କ ନିକଟକୁ ବା ଗୋଟିଏ ସ୍ଥାନରୁ ଅନ୍ୟ ଏକ ସ୍ଥାନକୁ ସଂକ୍ରମିତ ହୋଇପାରେ । ସେଥିପାଇଁ ଏଡ୍‌ସ ରୋଗ ସମ୍ପର୍କରେ ଆଜି ସମଗ୍ର ବିଶ୍ୱରେ ସଚେତନତା ସୃଷ୍ଟି ହୋଇଛି । ବିଭିନ୍ନ ଗଣମାଧ୍ୟମ ଦ୍ୱାରା ଏହି ରୋଗ ଏବଂ ରୋଗୀମାନଙ୍କ ସମ୍ପର୍କରେ ବହୁ ଜ୍ଞାତବ୍ୟ ତଥ୍ୟ ପ୍ରଦାନ କରାଯାଇଛି । ମଣିଷକୁ ପଙ୍ଗୁ, ଅଚଳ ଓ କୁତ୍ସିତ କରି ତା'ଜୀବନର ସମସ୍ତ ସୁଖକୁ ଅପହରଣ କରିନେଉଛି ଏଡ୍‌ସ । ମାନବସମାଜକୁ ସୁସ୍ଥ ଏବଂ ନିରାମୟ କରିବାକୁ ହେଲେ ଏହି ରୋଗର ସମ୍ପୂର୍ଣ୍ଣ ଦୂରୀକରଣ ହେବାର ଆବଶ୍ୟକତା ରହିଛି ।

ବିଂଶ ଶତକର ଶେଷ ତ୍ରିଦଶକରୁ ଏହି ରୋଗର ଭୟଙ୍କାରିତା ସମ୍ପର୍କରେ ଜଣାପଡ଼ିଲା । ମାତ୍ର ଏହାର ମୂଳଉତ୍ସ ହେଉଛି ଆଫ୍ରିକା ମହାଦେଶ । ଏହି ମହାଦେଶର 'ନେରେ' ନାମକ ସ୍ଥାନର ଅଧିବାସୀଙ୍କଠାରୁ ଏହାର ଜନ୍ମବୋଲି ବିଶେଷଜ୍ଞମାନେ ମତପ୍ରକାଶ କରିଥାନ୍ତି । ଶିକ୍ଷା ଓ ଆଧୁନିକ ସଭ୍ୟତାର ବିଶେଷ ସମ୍ପର୍କରେ ଆସିନଥିବା ଏହି ସ୍ଥାନର ଅଧିବାସୀଗଣ ନିଜର ଶାରୀରିକ କ୍ଷମତା ତଥା ଯୌନଶକ୍ତିର ଅଭିବୃଦ୍ଧି ନିମିତ୍ତ ସବୁଜମାଙ୍କଡ଼ମାନଙ୍କର କଞ୍ଚା ମାଂସ ଭକ୍ଷଣ କରୁଥିଲେ । ମାଙ୍କଡ଼ମାଂସର ପ୍ରତିକ୍ରିୟା ଶରୀର ଉପରେ ପରିଲକ୍ଷିତ ହେଲା ଓ ଏହିଥିରୁ ଜନ୍ମଲାଭ କଲା ଏକ ମାରାତ୍ମକ ଭୂତାଣୁ ଯାହା ଏଡ୍‌ସ ରୋଗ ସୃଷ୍ଟିର ମୂଳ କାରଣ । ମଣିଷ ଶରୀରରୁ ପ୍ରତିରୋଧ ଶକ୍ତି ହ୍ରାସ ପାଇଲେ ଏହାର ବିଭିନ୍ନ ଲକ୍ଷଣ ପ୍ରକାଶିତ ହୋଇଥାଏ । ଇଂରାଜୀରେ ଏହାକୁ କୁହାଯାଇଥାଏ Acquired Immune Deficiency Syndrome, ଏହାକୁ ସଂକ୍ଷେପରେ କୁହାଯାଇଥାଏ ଏଡ୍‌ସ (AIDS) । ଏଚ. ଆଇ. ଭି. (HIV) ନାମକ ଏକ ପ୍ରକାର ଭୂତାଣୁ ମାଧ୍ୟମରେ ଏହା ମାନବ ଶରୀରରେ ସଂକ୍ରମିତ ହୋଇଥାଏ । ଏହି ଭୂତାଣୁ ମାନବ ଶରୀରର ରୋଗ ପ୍ରତିରୋଧକ ଶକ୍ତିକୁ ହ୍ରାସ କରିଥାଏ । ଆଫ୍ରିକୀୟମାନଙ୍କଠାରୁ ଏହି ରୋଗ ସମଗ୍ର ବିଶ୍ୱରେ ପରିବ୍ୟାପ୍ତ ହୋଇଛି । ୧୯୭୦ ମସିହା ପୂର୍ବରୁ ଏହି ରୋଗ ସମ୍ପର୍କରେ କେହି କିଛି ଜାଣି ନ ଥିଲେ । ଯୁକ୍ତରାଷ୍ଟ୍ରର ଜର୍ଜିଆ ପ୍ରଦେଶର ଏକ ରୋଗ ନିୟନ୍ତ୍ରଣ କେନ୍ଦ୍ରରୁ ପ୍ରଥମେ ଏହାର

ସନ୍ଧାନ ମିଳିଥିଲା । ୧୯୮୧ ମସିହା ଜୁନ୍ ମାସ ପହିଲାରେ କାଲିଫର୍ଣ୍ଣିଆର ଏକ ଡାକ୍ତରଖାନାରେ ପାଞ୍ଚଜଣ ରୋଗୀଙ୍କୁ ନିମୁନିଆରେ ପୀଡ଼ିତ ହୋଇଥିବା ଅନୁମାନ କରାଯାଇ ଭର୍ତ୍ତି କରାଯାଇଥିଲା । ଗବେଷଣା ଦ୍ୱାରା ଜଣାପଡ଼ିଲା ଯେ, ଏମାନେ ନିମୁନିଆ ନୁହେଁ, ଏଡ୍ସ ଦ୍ୱାରା ଶିକାର । ୧୯୯୩ ମସିହାର ସର୍ବେକ୍ଷଣରୁ ଜଣାଯାଇଥିଲା ଯେ, ସମଗ୍ର ବିଶ୍ୱରେ ପ୍ରାୟ ୧୩୦ ନିୟୁତ ଲୋକ ଏଚ. ଆଇ. ଭି. ଦ୍ୱାରା ଆକ୍ରାନ୍ତ ହୋଇଥିଲେ । ଏହି ଶତାବ୍ଦୀର ଶେଷ ସୁଦ୍ଧା ଏଡ୍ସରୋଗୀଙ୍କ ସଂଖ୍ୟା ପ୍ରାୟ ଏହାର ଦୁଇଗୁଣ ହୋଇଯିବ ବୋଲି ଅନୁମାନ କରାଯାଉଛି । ଫ୍ରାନ୍ସ, ଆମେରିକା, ଦକ୍ଷିଣ ଜର୍ମାନ୍, ଇଂଲଣ୍ଡ ପ୍ରଭୃତି ଦେଶରେ ଏହି ରୋଗୀମାନଙ୍କର ସଂଖ୍ୟା ଅଧିକ । ଭାରତରେ ୧୯୯୪ ମସିହା ସର୍ବେକ୍ଷଣରୁ ଜଣାଯାଇଥିଲା ପ୍ରାୟ ୧୫୦୧୭ ଜଣ ବ୍ୟକ୍ତି ଏହାଦ୍ୱାରା ଆକ୍ରାନ୍ତ ହୋଇଥିଲେ । ଶତାବ୍ଦୀ ଶେଷ ସୁଦ୍ଧା ଭାରତରେ ଏହା ଆହୁରି ବହୁ ଅଧିକ ହେବ ବୋଲି ଅନୁମାନ କରାଯାଏ । ଦିଲ୍ଲୀ, ମଣିପୁର, ମହାରାଷ୍ଟ୍ର, ପଶ୍ଚିମବଙ୍ଗ, ଓଡ଼ିଶା, ତାମିଲନାଡୁ ଆଦି ବିଭିନ୍ନ ରାଜ୍ୟରେ ଏଡ୍ସ ରୋଗୀଙ୍କ ସଂଖ୍ୟା ଦେଖିବାକୁ ମିଳେ ।

ଅସଂଯତ ଯୌନସମ୍ପର୍କ ଏହି ରୋଗର ପ୍ରଥମ କାରଣ ରୂପେ ନିର୍ଦ୍ଦେଶ କରାଯାଇଥାଏ । ବିଭିନ୍ନ କାରଣରୁ ଏଚ. ଆଇ. ଭି. ଭୂତାଣୁ ମଣିଷ ଶରୀରରେ ପ୍ରବେଶ ଲାଭ କରି ଏଡ୍ସ ରୋଗ ସୃଷ୍ଟି ପାଇଁ ପଥ ପରିଷ୍କାର କରିଥାଏ । ମଣିଷ ଶରୀର ମଧ୍ୟରେ ଥିବା ଶ୍ୱେତରକ୍ତ କଣିକା ଦୁର୍ବଳ ହୋଇପଡ଼ିବାଦ୍ୱାରା ଏହି ରୋଗ ବ୍ୟାପିଥାଏ । ପରିଲକ୍ଷିତ ହେଉଥିବା ଏଡ୍ସ ରୋଗୀମାନଙ୍କ ମଧ୍ୟରୁ ଶତକଡ଼ା ୮୦ ଭାଗରୁ ଅଧିକ ବ୍ୟକ୍ତି ଅସଂଯତ ଓ ଅସୁରକ୍ଷିତ ଯୌନସମ୍ପର୍କରୁ ଆକ୍ରାନ୍ତ ହୋଇଥାନ୍ତି । ପାଶ୍ଚାତ୍ୟ ଦେଶମାନଙ୍କରେ ଏହି ଅସୁରକ୍ଷିତ ଯୌନସମ୍ପର୍କ ହିଁ ଏଡ୍ସ ରୋଗର ମୂଳ କାରଣ । ଏତଦ୍‌ବ୍ୟତୀତ ଏଚ. ଆଇ. ଭି. ଭୂତାଣୁଯୁକ୍ତ ରୋଗୀର ରକ୍ତ, ଅନ୍ୟ ଲୋକ ଦେହରେ ମିଶିଲେ ଏହି ରୋଗ ହୋଇଥାଏ । ଅଶୋଧିତ ଛୁଞ୍ଚି, ରକ୍ତଗ୍ରହଣ, ଧୂମପାନ, ଅଶୋଧିତ ଅପରେସନ୍ ଯନ୍ତ୍ରପାତି, ମୁଖଚୁମ୍ବନ, ବିଶୃଙ୍ଖଳ ଆଲିଙ୍ଗନ, ସେଲୁନ୍‌ଗୁଡ଼ିକର ଏକାଧିକ ବ୍ୟକ୍ତିଙ୍କ ଦ୍ୱାରା ବ୍ୟବହୃତ ବ୍ଲେଡ୍, ରୋଗିଣୀ ମା'ର କ୍ଷୀର ଗ୍ରହଣ ଆଦି ବହୁକାରଣରୁ ଏଡ୍ସ ବ୍ୟାପିପାରେ । ଏହାଦ୍ୱାରା ଭବିଷ୍ୟତ ବଂଶଧରମାନେ ମଧ୍ୟ ଆକ୍ରାନ୍ତ ହୋଇଥାନ୍ତି । ମଣିଷ ଜୀବନର ସମସ୍ତ ସୁଖ ଅଚିରେ ଧୂଳିସାତ୍ ହୋଇଯାଇଥାଏ ।

ଏଡ୍ସରୋଗକୁ ପ୍ରାଥମିକ ଅବସ୍ଥାରେ ନିରୂପଣ କରିବା କଷ୍ଟସାଧ୍ୟ । ତଥାପି ଏହାର କେତେକ ଲକ୍ଷଣରୁ ଏହି ରୋଗ ସମ୍ପର୍କରେ ଅନୁମାନ କରାଯାଇପାରେ । ଦେହ ଅତିମାତ୍ରାରେ ଦୁର୍ବଳ ଲାଗିବା, ବାରମ୍ବାର ଝାଡ଼ା ଏବଂ ଜ୍ୱର ଲାଗି ରହିବା, ଶରୀରର ଓଜନ ହ୍ରାସ ହେବା, ଗୁପ୍ତାଙ୍ଗ ଓ ମୁଖମଣ୍ଡଳରେ ଧଳାଦାଗ ଦେଖାଦେବା, କାଖ ଏବଂ ବେକ ଗ୍ରନ୍ଥି ଫୁଲିବା, ପାଟି

ଭିତରେ ଛତୁ ଫୁଟିବା ପରି ଧଳା ଧଳା ଦାଗ ସୃଷ୍ଟି ହେବା, ଶୁଖିଲା କାଶ ବହୁଦିନ ଧରି ଲାଗିରହିବା, ଶରୀରରୁ ରକ୍ତ ହ୍ରାସ ପାଇବା, ଶ୍ୱାସକ୍ରିୟା ଲଘୁହେବା, ନିଦ୍ରାବସ୍ଥାରେ ସ୍ୱପ୍ନ ଓ ପ୍ରଳାପ, ନିମୁନିଆ ଓ ଯକ୍ଷ୍ମା ଆଦି ଏହାର ବିଭିନ୍ନ ଉପସର୍ଗ । ମାନସିକ ଚିନ୍ତା, ଚାପ ବା ଅଧିକ ପରିଶ୍ରମ ମଧ୍ୟ ଏହି ରୋଗକୁ ଅଧିକ ମାରାତ୍ମକ କରିଥାଏ । ଅବଶ୍ୟ ଉପରୋକ୍ତ ସମସ୍ତ ଉପସର୍ଗଗୁଡ଼ିକ ଯେ ଏଡ୍‌ସର ସର୍ବଶେଷ ଓ ସର୍ବଶ୍ରେଷ୍ଠ ଲକ୍ଷଣ, ତାହା କୁହାଯାଇ ନ ପାରେ । ମାତ୍ର ଏହି ଲକ୍ଷଣଗୁଡ଼ିକ ଏଡ୍‌ସରୋଗୀଙ୍କୁ ଚିହ୍ନଟ କରିବା ପାଇଁ କେତେକ କ୍ଷେତ୍ରରେ ସହାୟତା କରିଥାଏ ।

ସାଧାରଣତଃ ଏଡ୍‌ସ ରୋଗୀଙ୍କ ସଂସ୍ପର୍ଶରେ ଆସିବାଦ୍ୱାରା କିମ୍ବା ତା' ଦେହର ରକ୍ତ ଅଥବା ଅନ୍ୟ କୌଣସି କାରଣରୁ ଏଚ. ଆଇ. ଭି. ଭୂତାଣୁ ସୁସ୍ଥ ଶରୀରରେ ପ୍ରବେଶ କଲେ, ଏହି ରୋଗ ସଂକ୍ରମିତ ହୋଇଥାଏ । ତେଣୁ ସାଧାରଣତଃ ଏହିପରି ରୋଗୀମାନଙ୍କ ନିକଟରୁ ନିରାପଦ ଦୂରତାରେ ରହିବା ସର୍ବାଦୌ ଆବଶ୍ୟକ । ଏଚ. ଆଇ. ଭି. ଭୂତାଣୁ ଆକ୍ରମଣରୁ ରକ୍ଷା ପାଇଁ ଏ. ଜେଡ୍. ଟି (AZT) ଔଷଧ ଆବିଷ୍କାର ହୋଇଥିଲେହେଁ, ଏହା ଏପରି ବ୍ୟୟବହୁଳ ଯେ, ସାଧାରଣ ବ୍ୟକ୍ତିଙ୍କ ଦ୍ୱାରା ଏହି ଔଷଧ ବ୍ୟବହାର କରିବା ସମ୍ଭବ ନୁହେଁ । ପୁନରାୟ ଏହି ରୋଗରୁ ସମ୍ପୂର୍ଣ୍ଣ ନିରାକରଣ ନିମିତ୍ତ ଏଯାବତ୍ କୌଣସି ନିର୍ଦ୍ଦିଷ୍ଟ ଔଷଧ ବାହାରି ନାହିଁ । ନିଶାସେବନ, ଉତ୍ତେଜନା ଓ ଉଦ୍‌ବେଗପୂର୍ଣ୍ଣ କାର୍ଯ୍ୟକଳାପରୁ ସର୍ବଦା ନିଜକୁ ଦୂରେଇ ରଖିବା ଆବଶ୍ୟକ । କୌଣସି ଜ୍ୱର ବା ଝାଡ଼ା ଲାଗି ରହିଲେ ସଙ୍ଗେ ସଙ୍ଗେ ଡାକ୍ତରଙ୍କର ପରାମର୍ଶ କରି ଉପଯୁକ୍ତ ପଦକ୍ଷେପ ଗ୍ରହଣ କରିବା ବାଞ୍ଛନୀୟ । ରୁଚିପୂର୍ଣ୍ଣ ନୈତିକ ଜୀବନଯାପନ, ଆଧାତ୍ମିକ ଚିନ୍ତା, ସାତ୍ତ୍ୱିକ ଆହାର, ସୁଷମ ଖାଦ୍ୟ, ଅଧିକ ବିଶ୍ରାମ ଉପରେ ଗୁରୁତ୍ୱ ଆରୋପ କରିବା ଉଚିତ । ଶୃଙ୍ଖଳିତ ଜୀବନଯାପନ ଓ ନିରାପଦ ଯୌନସମ୍ପର୍କ ପ୍ରତି ସଚେତନ ରହିବା ସଙ୍ଗେ ସଙ୍ଗେ ଅବସର ସମୟରେ ଚିତ୍ତ ବିନୋଦନ କରିବା ଆବଶ୍ୟକ । ସ୍ୱାସ୍ଥ୍ୟରକ୍ଷା ପାଇଁ ଆବଶ୍ୟକୀୟ ନିୟମ ପାଳନ କରିବା ସହିତ ଆଧାତ୍ମିକ ଜୀବନଯାପନ ପ୍ରତି ଗୁରୁତ୍ୱ ପ୍ରଦାନ କଲେ ଏହି ରୋଗଠାରୁ ରକ୍ଷା ମିଳିପାରିବ । ପାଟିରେ ଘା ହେଲେ କିମ୍ବା ସାମାନ୍ୟ ଛଉ ଛଉକାଦାଗ ଦେଖାଦେଲେ ସଙ୍ଗେ ସଙ୍ଗେ ଡାକ୍ତରଙ୍କର ପରାମର୍ଶ କରି ବିହିତ ପ୍ରତିକାର ଗ୍ରହଣ କରିବା ବିଧେୟ । ସାମାନ୍ୟ ପରିଶ୍ରମରେ କ୍ଳାନ୍ତ ଅନୁଭବ କଲେ ସଙ୍ଗେ ସଙ୍ଗେ ପରାମର୍ଶ ଗ୍ରହଣ କରିବା ଉଚିତ । ଶରୀରକୁ ଯେତିକି ପରିମାଣରେ ବିଶ୍ରାମ ଦେବା ଆବଶ୍ୟକ, ସେଥିରୁ ତିଳେ ଊଣା ହେବା ଅନୁଚିତ । ଦୁଶ୍ଚିନ୍ତା ଓ ମାନସିକ ଉତ୍ତେଜନା ଠାରୁ ଦୂରରେ ରହି ଯଥାସମ୍ଭବ ଆନନ୍ଦମୟ ଜୀବନଯାପନ କଲେ ଏଥିରୁ କେତେକାଂଶରେ ରକ୍ଷା ମିଳିପାରିବ । ଏତଦ୍‌ବ୍ୟତୀତ ରକ୍ତ ଗ୍ରହଣ ସମୟରେ ଏହାର ଉପଯୁକ୍ତ ପରୀକ୍ଷା କରିନେବା ଆବଶ୍ୟକ । ସେଲୁନ୍‌ରେ କ୍ଷୌର କାର୍ଯ୍ୟ କିମ୍ବା ଇଞ୍ଜେକ୍‌ସନ ନେବା ସମୟରେ

ନୂଆ ପାତ ତଥା ଛୁଞ୍ଚିର ବିଶୋଧନ କରିବା ଆବଶ୍ୟକ । ଏହାଛଡ଼ା ଏଡ୍‌ସ ରୋଗୀଙ୍କ ପ୍ରତି ଘୃଣା ବା ଅଶୋଭନୀୟ ବ୍ୟବହାର ପ୍ରଦର୍ଶନ ନ କରି, ସେମାନଙ୍କ ପ୍ରତି ସମ୍ବେଦନଶୀଳ ଓ ସ୍ନେହପୂର୍ଣ୍ଣ ବ୍ୟବହାର ପ୍ରଦର୍ଶନ କଲେ, ସେମାନେ ମାନସିକ ସ୍ତରରେ ଶାନ୍ତି ଲାଭ କରିପାରିବେ ।

ଆଜି ସମଗ୍ର ବିଶ୍ୱରେ ଏଡ୍‌ସ ଏକ ଆତଙ୍କ ରୂପେ ଦେଖାଦେଇଛି । ଏହାର ଉପଯୁକ୍ତ ଔଷଧ ଆବିଷ୍କାର ନିମିତ୍ତ ସବୁ ସ୍ତରରେ ଉଦ୍ୟମ ଜାରି ରହିଛି । ତଥାପି ବୈଜ୍ଞାନିକମାନେ ଏଯାବତ୍ ସମ୍ପୂର୍ଣ୍ଣ ସଫଳ ହୋଇପାରି ନାହାନ୍ତି । ବର୍ତ୍ତମାନ ଯେଉଁ କାରଣରୁ ଏହି ରୋଗ ବିଶେଷ ପରିମାଣରେ ସଂକ୍ରମିତ ହେଉଛି ସେଥିପ୍ରତି ସମଗ୍ର ଜନସାଧାରଣ ସଚେତନ ରହିବା ଆବଶ୍ୟକ । ବିଶେଷକରି ଅବାଧ ଯୌନ ସଙ୍ଗମ ଓ ଚୁମ୍ବନଠାରୁ ଯଥାସମ୍ଭବ ଦୂରତ୍ୱ ରକ୍ଷା କରିବା ଆବଶ୍ୟକ । ଭାରତରେ ଏହି ରୋଗ ପାଇଁ ବିଶେଷ ତତ୍ପରତା ପ୍ରକାଶ ପାଇଛି । ଭାରତୀୟ ଭେଷଜ ଗବେଷଣା ପରିଷଦ ୧୯୮୬ ମସିହାରେ ଏଡ୍‌ସ ବିରୋଧରେ ଏକ ଉପଦେଷ୍ଟା ମଣ୍ଡଳୀ ଗଠନ କରିଛି । ୮ମ ଏବଂ ୯ମ ପଞ୍ଚବାର୍ଷିକ ଯୋଜନାରେ ଏଥିପାଇଁ କେତେକ ପଦକ୍ଷେପ ଗୃହୀତ ହୋଇଛି । ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ସ୍ଥାନରେ ଶିବିରମାନ ଆୟୋଜନ କରାଯାଇ ଜନସାଧାରଣଙ୍କୁ ସଚେତନ କରାଯାଉଛି । ଏହା ସତ୍ତ୍ୱେ ଯେପର୍ଯ୍ୟନ୍ତ ଜନସାଧାରଣ ଏହି ରୋଗର ମାରାତ୍ମକତା ସମ୍ପର୍କରେ ଅବଗତ ନ ହୋଇ ଆପେ ଆପେ ସଚେତନ ନ ହୋଇଛନ୍ତି ଓ ଏହି ରୋଗର କାରଣ ସମ୍ବନ୍ଧରେ ଅବଗତ ହୋଇ ନିଜକୁ ସଚେତନ ନ କରାଇଛନ୍ତି, ସେ ପର୍ଯ୍ୟନ୍ତ ଏହା ସମଗ୍ର ବିଶ୍ୱ ପାଇଁ ଏକ ଆତଙ୍କ ହୋଇ ରହିଥିବ ।

●

# ଆଧୁନିକ ବିଶ୍ୱ ଓ କମ୍ପ୍ୟୁଟର

**(ଉପକ୍ରମ, କମ୍ପ୍ୟୁଟରର ଜନ୍ମ ଇତିହାସ, କମ୍ପ୍ୟୁଟରର ପ୍ରକାରଭେଦ ଓ ପରିଭାଷା, ବିଭିନ୍ନ କ୍ଷେତ୍ରରେ କମ୍ପ୍ୟୁଟର, ଆଧୁନିକ ଜଗତରେ କମ୍ପ୍ୟୁଟରର ଭୂମିକା, ଉପସଂହାର)**

ସମଗ୍ର ମାନବ ସମାଜକୁ ବିଜ୍ଞାନର ଅବଦାନ ଅତୁଳନୀୟ । ବିଜ୍ଞାନର ବିଭିନ୍ନ ଆବିଷ୍କାର ମଧ୍ୟରେ କମ୍ପ୍ୟୁଟରର ଆବିଷ୍କାର ଯେପରି କୌତୂହଳପୂର୍ଣ୍ଣ, ସେହିପରି ବିସ୍ମୟକର । ଆଧୁନିକ ଜଗତର ଅଧିକାଂଶ କାର୍ଯ୍ୟ ଆଜି କମ୍ପ୍ୟୁଟର ଦ୍ୱାରା ସମାହିତ । ତେଣୁ କମ୍ପ୍ୟୁଟର ବ୍ୟତିରେକେ ସାମ୍ପ୍ରତିକ ବିଶ୍ୱର ଅଗ୍ରଗତି ଆଶା କରିବା ସମ୍ପୂର୍ଣ୍ଣ ନିରର୍ଥକ । କୃଷିଠାରୁ ଆରମ୍ଭ କରି ଶିକ୍ଷା, ଶିଳ୍ପ ବାଣିଜ୍ୟ, ସ୍ୱାସ୍ଥ୍ୟ ଏପରିକି ଅନେକ ବୌଦ୍ଧିକ କାର୍ଯ୍ୟ ସମ୍ପନ୍ନ କରିବା କ୍ଷେତ୍ରରେ କମ୍ପ୍ୟୁଟରର ଅବଦାନ ଅତୀବ ମହତ୍ତ୍ୱପୂର୍ଣ୍ଣ । ଟ୍ରେନ୍ ଟିକେଟଠାରୁ ଉଡ଼ାଜାହାଜର ଅବତରଣ ପର୍ଯ୍ୟନ୍ତ ପ୍ରତିକ୍ଷେତ୍ରରେ ଏହାର ନିର୍ଭୁଲ ଗଣନା ମାନବ ସମାଜର ବହୁ ଉପକାର ସାଧନ କରୁଛି ।

ସୁପର କମ୍ପ୍ୟୁଟରର ଉଦ୍ଭାବନ ପରେ ଆଧୁନିକ ବିଶ୍ୱ ଅନ୍ୟ ଏକ ନୂତନ ଜଗତକୁ ପ୍ରବେଶ କରିଛି କହିଲେ ଭୁଲହେବ ନାହିଁ । ଏହି କମ୍ପ୍ୟୁଟର ଇଚ୍ଛାକଲେ, ଗୋଟିଏ ମୁହୂର୍ତ୍ତରେ ସମଗ୍ର ବିଶ୍ୱକୁ ଧ୍ୱଂସ କରିଦେଇପାରେ । ପୁଣି ମାନବସମାଜର ଅଶେଷ ମଙ୍ଗଳ ମଧ ସାଧନ କରିପାରେ । ଆଜି ବିଶ୍ୱରେ ଯେଉଁ ରାଷ୍ଟ୍ର କମ୍ପ୍ୟୁଟର ଉତ୍ପାଦନ କ୍ଷେତ୍ରରେ ଯେତିକି ପରିମାଣରେ ସ୍ୱାବଲମ୍ବନଶୀଳ, ସେହି ରାଷ୍ଟ୍ର ବିଭିନ୍ନ କ୍ଷେତ୍ରରେ ସେହିପରି ପ୍ରଗତିଶୀଳ । ବାସ୍ତବରେ କହିଲେ କମ୍ପ୍ୟୁଟରର ଜଗତ ହିଁ ପ୍ରକୃତ ଆଧୁନିକ ଜଗତ ।

ମଣିଷର ଆବିଷ୍କାର ପ୍ରବଣତା ସହଜାତ । ପ୍ରତି କ୍ଷେତ୍ରରେ ମଣିଷ ଅଧିକରୁ ଅଧିକ ଜାଣିବାକୁ ଇଚ୍ଛା ପ୍ରକାଶ କରେ । ଅଳ୍ପ ପରିଶ୍ରମ ଓ ସହଜରେ ସେ ଅଧିକ କାର୍ଯ୍ୟ ସମ୍ପାଦନ କରିବାକୁ ଚାହେଁ । ଏହି ପ୍ରଚେଷ୍ଟାରୁ ହିଁ କମ୍ପ୍ୟୁଟରର ଜନ୍ମ । ଗଣନା କାର୍ଯ୍ୟରୁ ହିଁ ପ୍ରକୃତରେ କମ୍ପ୍ୟୁଟରର ଉଦ୍ଭାବନ । ଦୁଇହଜାର ବର୍ଷ ପୂର୍ବେ ଗାଣିତିକ ହିସାବ ପାଇଁ ସୃଷ୍ଟି ହୋଇଥିଲା ଆବାକସ୍ (Abacus)ର । ଏହାହିଁ ପୃଥିବୀର ପ୍ରଥମ ଟଣନା ଯନ୍ତ୍ର । ଷୋଡ଼ଶ ଶତାବ୍ଦୀରେ ସ୍କଟଲ୍ୟାଣ୍ଡର ଜନ୍ ନେପିୟରଙ୍କ 'ନେପିଅର ବୋନ୍' ଏହି ଆଧୁନିକ କମ୍ପ୍ୟୁଟର ନିମିତ୍ତ ଭିତ୍ତି ସ୍ଥାପନ କରିଥିଲା । ୧୭୨୦ ମସିହାରେ ଇଂରେଜ ଗାଣିତିକ ଉଇଲିୟମ୍ ଅଉଗ୍ରେଡ୍‌ଙ୍କ 'ସ୍ଲାଇଡ୍‌ରୁଲ' ଆବିଷ୍କାର ଏହାକୁ ଆଉ ଦୁଇପାଦ ଅଗ୍ରସର କରାଇଥିଲା । ଫ୍ରାନ୍ସର ବ୍ଲେଇସ୍ ପାସ୍‌କାଲ ୧୮ ବର୍ଷ ବୟସରେ ପ୍ରଥମ ଯାନ୍ତ୍ରିକ ଗଣନାଯନ୍ତ୍ର ୧୬୪୨ ମସିହାରେ ତିଆରି କରିଥିଲେ । ତାଙ୍କ ବାପାଙ୍କୁ ହିସାବ କାର୍ଯ୍ୟରେ ସହାୟତା କରିବା ପାଇଁ ଏହି ଯନ୍ତ୍ରଟି ବାହାର କରିଥିଲେ । ୧୬୭୧ ଖ୍ରୀ.ରେ ଜର୍ମାନୀର ବିଖ୍ୟାତ ଗାଣିତିକ ଭନ୍‌ଲିବ୍‌ନିଜ ଅନ୍ୟ ଏକ ଗଣନାଯନ୍ତ୍ର ଉଦ୍ଭାବନ କରିଥିଲେ । ୧୮୨୦ ମସିହାରେ ଫ୍ରାନ୍ସର ବୈଜ୍ଞାନିକ ଚାର୍ଲସ୍ ଜେଭିୟର ଟମାସ୍ ଅନ୍ୟ ଏକ ଗଣନାକାରୀ ଯନ୍ତ୍ର ଉଦ୍ଭାବନ କରିଥିଲେ । ପ୍ରକୃତ କମ୍ପ୍ୟୁଟରର ଜନ୍ମହୁଏ ୧୮୨୩ ମସିହାରେ । ଏହି ବର୍ଷ ବିଖ୍ୟାତ ଇଂରେଜ ବୈଜ୍ଞାନିକ ଚାର୍ଲସ୍ ବାବାଜେ ପ୍ରଥମେ ଯାନ୍ତ୍ରିକ କମ୍ପ୍ୟୁଟର ଉଦ୍ଭାବନ କଲେ । ଏହାକୁ କୁହାଯାଉଥିଲା ବିୟୋଗକାରୀ ଯନ୍ତ୍ର (Difference Engine) । ଏହା ସାହାଯ୍ୟରେ ବୀଜଗଣିତ ଓ ଦଶମିକ କୋଡ଼ିଏ ସ୍ଥାନ ପର୍ଯ୍ୟନ୍ତ ନିର୍ଭୁଲ ଗଣନା କରାଯାଇପାରିଲା । ୧୮୮୦ ମସିହାରେ ଆମେରିକାର ବୈଜ୍ଞାନିକ ଡଃ ହରମ୍ୟାନ୍ ହୋଲେରିଥ ଉଦ୍ଭାବନ କଲେ ଛିଦ୍ରିତ କାର୍ଡ଼ ଯନ୍ତ୍ର (Punched card machine) । ୧୯୦୬ ମସିହାରେ ଲିଡ଼ି ଫରେଷ୍ଟ ଉଦ୍ଭାବନ କଲେ ଥର୍ମୋ ଆୟୋନିକ୍ ଭଲ୍‌ବ ଯାହା ଇଲେକ୍‌ଟ୍ରୋନିକ୍ କମ୍ପ୍ୟୁଟର ନିମିତ୍ତ ଆଶାତୀତ ସହାୟତା କଲା । ୧୯୪୬ ମସିହାରେ ପେନ୍‌ସିଲ୍‌ଭେନିଆ ବିଶ୍ୱବିଦ୍ୟାଳୟର ବୈଜ୍ଞାନିକ ଜେ. ପି. ଏର୍କେଟ ଏବଂ ଜେ. ଡବ୍ଲୁ ମାଉଚିଲି ଆଧୁନିକ କମ୍ପ୍ୟୁଟର ତିଆରି କରିଥିଲେ । ସେମାନଙ୍କ ଉଦ୍ଭାବିତ ଯନ୍ତ୍ରର ନାମ ଥିଲା ଏନିୟାକ । ହଙ୍ଗେରୀର ପ୍ରସିଦ୍ଧ ଗାଣିତିକ ଜନ୍ ଓନ୍ ନିଉମ୍ୟାନ୍ ଏହାକୁ ଅଧିକ

ଉନ୍ନତ କଲେ । ତାଙ୍କ କୌଶଳକୁ ଅନୁସରଣ କରି ୧୯୪୯ ମସିହାରେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ କମ୍ପ୍ୟୁଟର ତିଆରି ହେଲା । ଉଇଲିୟମ ସକ୍‌ଲେ ୧୯୪୮ରେ ଟ୍ରାଞ୍ଜିଷ୍ଟର ଉଦ୍ଭାବନ କରିବା ପରେ କମ୍ପ୍ୟୁଟରର ରୂପରେ ଆସିଲା ପରିବର୍ତ୍ତନ । ୧୯୬୦ରେ ନିର୍ମିତ କମ୍ପ୍ୟୁଟରରେ ଭଲ୍‌ଭ ବଦଳରେ ଟ୍ରାଞ୍ଜିଷ୍ଟର ବ୍ୟବହୃତ ହେଲା । ୧୯୬୫ ମସିହା ବେଳକୁ ଏଥିରେ ଅନେକ ଜଟିଳ ଯନ୍ତ୍ରପାତିର ବ୍ୟବହାର ହେଲା । ୧୯୭୫-୮୦ ବେଳକୁ ଅଧିକ ଉନ୍ନତମାନର କମ୍ପ୍ୟୁଟର ପ୍ରସ୍ତୁତ ହେବାକୁ ଲାଗିଲା ।

ପ୍ରକାର ଓ କାର୍ଯ୍ୟପ୍ରଣାଳୀ ଦୃଷ୍ଟିରୁ ମୁଖ୍ୟତଃ କମ୍ପ୍ୟୁଟର ତିନିପ୍ରକାର । ଯଥା—ଡିଜିଟାଲ କମ୍ପ୍ୟୁଟର, ଆନାଲୋଗ କମ୍ପ୍ୟୁଟର ଓ ସଙ୍କର କମ୍ପ୍ୟୁଟର । ଡିଜିଟାଲ କମ୍ପ୍ୟୁଟର ଦ୍ୱାରା ସାଧାରଣତଃ ଗାଣିତିକ ହିସାବ କରାଯାଇଥାଏ । ବିଶ୍ୱର ସବୁଠାରୁ ଶକ୍ତିଶାଳୀ ଓ ବିଭିନ୍ନ କାର୍ଯ୍ୟ କରିପାରୁଥିବା କମ୍ପ୍ୟୁଟର ହେଉଛି ଏହି ଶ୍ରେଣୀର । ଆନାଲୋଗ କମ୍ପ୍ୟୁଟର ଦ୍ୱାରା ତୁଳନା କରାଯାଇ ଗଣନା ଫଳ ଜାଣି ହୋଇଥାଏ । ମଟରଗାଡ଼ିର ସ୍ପିଡୋମିଟର ଆନାଲୋଗ କମ୍ପ୍ୟୁଟର ପଦ୍ଧତିରେ ଗଣନା କରିଥାଏ । ସଙ୍କର କମ୍ପ୍ୟୁଟରରେ ଉପରୋକ୍ତ ଦୁଇଟି କମ୍ପ୍ୟୁଟରର ସମସ୍ତ ସୁବିଧା ରହିଥିବାରୁ ଏହା ଅଧିକ ମୂଲ୍ୟବାନ ଓ କାର୍ଯ୍ୟକ୍ଷମ । କମ୍ପ୍ୟୁଟରର କାର୍ଯ୍ୟକାରିତା ପାଇଁ ଏକ ସ୍ୱତନ୍ତ୍ର ଭାଷାର ବ୍ୟବହାର ହୋଇଥାଏ । ଏହି ଭାଷା ବ୍ୟତିରେକେ ଅନ୍ୟ ଭାଷା ପ୍ରୟୋଗ କଲେ କମ୍ପ୍ୟୁଟରର ସମସ୍ତ କାର୍ଯ୍ୟ ତ୍ରୁଟିପୂର୍ଣ୍ଣ ହୋଇଥାଏ । କମ୍ପ୍ୟୁଟରର ଭାଷାକୁ ମୁଖ୍ୟତଃ ପାଞ୍ଚ ଭାଗରେ ବିଭକ୍ତ କରାଯାଇଥାଏ । ସେଗୁଡ଼ିକ ହେଲା—ବେସିକ୍, କୋବଲ, ପାସକଲ, ଫରଟ୍ରାନ୍ ଓ ଆଲଗୋଲ । କମ୍ପ୍ୟୁଟରର କାର୍ଯ୍ୟ ପାଇଁ ସେହି ସ୍ୱତନ୍ତ୍ର ଭାଷାକୁ ପ୍ରୟୋଗ କରାଯାଇଥାଏ । କମ୍ପ୍ୟୁଟର ପ୍ରୋଗ୍ରାମର ଏହି ଭାଷା ଜାଣିଥାନ୍ତି ଓ ସେମାନେ କମ୍ପ୍ୟୁଟର ଚାଳନ ସମୟରେ ସେହି ଭାଷାକୁ ଯୋଗାଇ ଦେଇଥାନ୍ତି ।

ଆଜି କମ୍ପ୍ୟୁଟରର କାର୍ଯ୍ୟକ୍ଷେତ୍ରରେ ବିସ୍ତୃତି ଘଟିଛି । ଜୀବନର ଯେ କୌଣସି କ୍ଷେତ୍ରରେ ଆଜି ତା'ର ଅଭାବ ଅନୁଭବ କରି ହୋଇଥାଏ । ମୁଖ୍ୟତଃ ଗଣନା ଉଦ୍ଦେଶ୍ୟରେ ଏହାର ଉଦ୍ଭାବନ ହୋଇଥିଲେହେଁ, ପରବର୍ତ୍ତୀ ସମୟରେ ବିଭିନ୍ନ କ୍ଷେତ୍ରରେ ଏହା ପ୍ରବେଶ କରି ଆମର ଜୀବନଯାପନ ପ୍ରଣାଳୀକୁ ସହଜ ଓ ସ୍ୱଚ୍ଛନ୍ଦ କରିପାରିଛି । ଉଡ଼ାଜାହାଜ ଏବଂ ଟ୍ରେନ୍ ଆଦିରେ ସ୍ଥାନ ସଂରକ୍ଷଣ ପାଇଁ କମ୍ପ୍ୟୁଟରର ବ୍ୟବହାର କରାଯାଇ ବିଭିନ୍ନ ତ୍ରୁଟିକୁ ସୁଧାର କରାଯାଇପାରିଛି । ଗୋଟିଏ ସ୍ଥାନରେ ଥାଇ ଯେକୌଣସି ଦୂରଦୂରାନ୍ତର ସ୍ଥାନକୁ ଏହାଦ୍ୱାରା ସ୍ଥାନ ସଂରକ୍ଷଣ କରାଯାଇପାରେ । ଟେଲିଯୋଗାଯୋଗ କ୍ଷେତ୍ରରେ କମ୍ପ୍ୟୁଟରର ପ୍ରଚଳନ ଯୋଗୁଁ ଏହା ଆଶାତୀତ ଭାବରେ ଅଗ୍ରଗତି ଲାଭ କରୁଛି । କୃତ୍ରିମ ଉପଗ୍ରହର ସାହାଯ୍ୟ ନେବାପାଇଁ କମ୍ପ୍ୟୁଟରର ହିଁ ସାହାଯ୍ୟ ନେବାକୁ ପଡୁଛି ଓ ତାହାଦ୍ୱାରା ଯେକୌଣସି ଦୂରସ୍ଥାନ ସହିତ ଯୋଗାଯୋଗ କରିବା ସମ୍ଭବ ହୋଇପାରିଛି । ଏହି କମ୍ପ୍ୟୁଟର ଯୋଗୁ ହିଁ ଆଜି ବିରାଟ

ପୃଥିବୀର ଆୟତନ ସମ୍ପୂର୍ଣ୍ଣ ସଙ୍କୁଚିତ ହୋଇପଡ଼ିଛି । ଯେ କୌଣସି ମୁହୂର୍ତ୍ତରେ ପୃଥିବୀର ଯେକୌଣସି ସ୍ଥାନର ଖବର ସହଜରେ ଜାଣି ହେଉଥାଏ । ଆଜି ଉଡ଼ାଜାହାଜର ଜଟିଳ କାର୍ଯ୍ୟକୁ କମ୍ପ୍ୟୁଟର ସହଜ ଓ ସରଳ କରିପାରିଛି । ଦିଗଗଣନା, ପ୍ରତିବନ୍ଧକ ଓ ପାଗ ସମ୍ପର୍କରେ ପାଇଲଟଙ୍କୁ ଏହା ଆଗରୁ ସତର୍କ କରାଇ ଦେଇଥାଏ । ବିଭିନ୍ନ ଛାପା କ୍ଷେତ୍ରରେ କମ୍ପ୍ୟୁଟରର ପ୍ରୟୋଗ ଯୋଗୁଁ ଏହା ସୁମାର୍ଜିତ, ପରିଚ୍ଛନ୍ନ, ସୁନ୍ଦର ଓ ନିର୍ଭୁଲ ହୋଇପାରିଛି । ପାଗ ପର୍ଯ୍ୟବେକ୍ଷଣ କ୍ଷେତ୍ରରେ ଏହାର ଭୂମିକା ଅତୀବ ମହତ୍ତ୍ୱପୂର୍ଣ୍ଣ । ସୁପର କମ୍ପ୍ୟୁଟର ସାହାଯ୍ୟରେ ପାଗର ଠିକ ହିସାବ କରଯାଇପାରୁଛି । ଯୁଦ୍ଧକ୍ଷେତ୍ରରେ କମ୍ପ୍ୟୁଟରର ବ୍ୟବହାର କରାଯାଇ ଯୁଦ୍ଧ ସମ୍ପର୍କୀୟ ବିବରଣୀ ସଂଗ୍ରହ କରାଯାଇପାରୁଛି । ଯୁଦ୍ଧକୁ ଠିକ୍ ମାର୍ଗରେ ପରିଚାଳିତ କରିବା କ୍ଷେତ୍ରରେ ମଧ୍ୟ ଏହାର ଭୂମିକା ଅତୀବ ମହତ୍ତ୍ୱପୂର୍ଣ୍ଣ । ବ୍ୟବସାୟ ଓ ଗବେଷଣା କ୍ଷେତ୍ରରେ କମ୍ପ୍ୟୁଟରର ସାହାଯ୍ୟ ଅତୁଳନୀୟ । ବ୍ୟବସାୟ ତଥା ବଡ଼ ବଡ଼ ଅନୁଷ୍ଠାନର ଠିକ୍ ହିସାବ ରଖିବା, ଆୟବ୍ୟୟ ତଥା ବିଭିନ୍ନ ବିଷୟରେ ତଦାରଖ କରିବା କ୍ଷେତ୍ରରେ ଏହାର ସହାୟତା ଗ୍ରହଣ କରିବାକୁ ପଡୁଛି । ଜୀବନବୀମାର ପଲିସି, ଅଫିସକାଗଜପତ୍ରର ସୁରକ୍ଷା, ମଟରଗାଡ଼ି ତଥା ଅନ୍ୟାନ୍ୟ ଯାନ୍ତ୍ରିକ ଯାନର ରୂପରେଖ, ଶିଳ୍ପ ଓ କଳକାରଖାନାର ବିଭିନ୍ନ କାର୍ଯ୍ୟ, ଜନଗଣନା, ଭୋଟ ଗଣନା, ଭାଷାର ଅନୁବାଦ, ଟାଇପ୍, ବ୍ୟାଙ୍କ୍ ଆଦିର କାର୍ଯ୍ୟ, ମହାକାଶର ଗବେଷଣାକାର୍ଯ୍ୟ, ବିବାହ କ୍ଷେତ୍ରରେ ବରକନ୍ୟାଙ୍କର ଜାତକ ମେଳନ, ଏପରିକି କନ୍ୟା ନିର୍ବାଚନ କ୍ଷେତ୍ରରେ ମଧ୍ୟ କମ୍ପ୍ୟୁଟର ବହୁଭାବରେ ସାହାଯ୍ୟ କରିପାରୁଛି । ସବୁଠାରୁ ଆଶ୍ଚର୍ଯ୍ୟର କଥା ହେଉଛି, ଆଜି କମ୍ପ୍ୟୁଟର ମଧ୍ୟ କବିତା ରଚନା କରିବାକୁ ସମର୍ଥ ହୋଇପାରିଛି । ଆମେରିକାର ଜନୈକ କମ୍ପ୍ୟୁଟର ଚାଳିକା ଶ୍ରୀମତୀ କ୍ଲେଆର ଫିଲିପ୍ ୧୦୦ ଗୋଟି ଅକ୍ଷରକୁ ନେଇ ଆର. ସି. ଏ. ୩୦୧ କମ୍ପ୍ୟୁଟର ଦ୍ୱାରା ୫୦୦ ଗୋଟି କବିତା ରଚନା କରାଇ ପାରିଛନ୍ତି । ଏତଦ୍‌ବ୍ୟତୀତ କମ୍ପ୍ୟୁଟର ମାଧ୍ୟମରେ ବିଭିନ୍ନ ଖେଳ, ରୋଗ ନିର୍ଣ୍ଣୟ ଓ ଚିକିତ୍ସା, ଶିକ୍ଷାଦାନ, ମହାକାଶ ଅଭିଯାନ, ଯାନବାହନ ଚଳାଚଳ, ଟ୍ରାଫିକ୍ ଭିଡ଼ର ଦୂରୀକରଣ, ଚୋର ଡକାୟତ ଧରିବା କାର୍ଯ୍ୟ, ପରୀକ୍ଷାଖାତା ପର୍ଯ୍ୟବେକ୍ଷଣ ଆଦି ବିଭିନ୍ନ କାର୍ଯ୍ୟ ସାଧିତ ହୋଇପାରୁଛି । କମ୍ପ୍ୟୁଟର ମଣିଷ ରୋବାଟ ଏକ ଅଦ୍ଭୁତ ଆବିଷ୍କାର । ମଣିଷ ପରି ଓ ତା'ଠାରୁ ଅଧିକ ସାଂଘାତିକ ତଥା କଠିନ କାର୍ଯ୍ୟ ଏହା ସହଜରେ ସାଧିତ କରିପାରେ । ଯାହା ମଣିଷ ପକ୍ଷରେ ଥିଲା ଅକଳ୍ପନୀୟ, କମ୍ପ୍ୟୁଟର ଦ୍ୱାରା ତାହା ସହଜସାଧ୍ୟ ହୋଇପାରିଛି । ଆଜି ଏପରି କୌଣସି କାର୍ଯ୍ୟ ନାହିଁ, ଯାହା କମ୍ପ୍ୟୁଟର ଦ୍ୱାରା ସାଧିତ ନ ହୋଇପାରିବ ।

ଆଧୁନିକ ଯୁଗର କମ୍ପ୍ୟୁଟରର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ଯୁଦ୍ଧକ୍ଷେତ୍ରଠାରୁ ଆରମ୍ଭ କରି ଶିକ୍ଷା ଓ ମହାକାଶ ପର୍ଯ୍ୟନ୍ତ ଏହା ବିସ୍ତୃତ । ମଣିଷର କାର୍ଯ୍ୟକୁ ଏହା ଯେପରି ସହଜ ଏବଂ ସରଳ କରିଛି, ସେହିପରି ଭାବରେ କରିଛି ଦ୍ରୁତତର । ମଣିଷର ବୁଦ୍ଧିରୁ ଏହା ସୃଷ୍ଟିଲାଭ

କରିଥିଲେ ମଧ ମଣିଷଠାରୁ ଏହା ଅଧିକ ବୁଦ୍ଧିମାନ ଓ କର୍ମଠ । ଏହା କେବେ ମଣିଷ ପରି ରୋଗଣା କିମ୍ବା ଦୁର୍ବଳ ହୋଇପଡ଼େ ନାହିଁ । ଯେତେ କଷ୍ଟସାଧ କାର୍ଯ୍ୟ ହେଲେ ମଧ ଅଚିରେ କମ୍ପ୍ୟୁଟର ଦ୍ୱାରା ତାହା ସାଧିତ ହୋଇଥାଏ । ମଣିଷର ବିକାଶର ଚରମ ସଫଳତା ହିଁ କମ୍ପ୍ୟୁଟର । ଆଧୁନିକ ଯୁଗରେ କମ୍ପ୍ୟୁଟର ବ୍ୟତିରେକେ ମଣିଷ ଗୋଟିଏ ମୁହୂର୍ତ୍ତ ଚଳିବାକୁ ଅକ୍ଷମ । ଅନ୍ୟ ଭାବରେ କହିଲେ ଆଧୁନିକ ପୃଥିବୀ ହିଁ ପ୍ରକୃତରେ କମ୍ପ୍ୟୁଟରର ପୃଥିବୀ ।

ଆଜି ସମଗ୍ର ପୃଥିବୀରେ ଯେତିକି କମ୍ପ୍ୟୁଟର ନିର୍ମାଣ ହେଉଛି, ତାହାର ଶତକଡ଼ା ୮୫ ଭାଗ ଆମେରିକାରେ ତିଆରି ହୋଇଥାଏ । ପୃଥିବୀରେ ଜାପାନ, ଇଂଲଣ୍ଡ, ରୁଷିଆ, ଜର୍ମାନ୍ ଆଦି ଦେଶଗୁଡ଼ିକ ମଧ କମ୍ପ୍ୟୁଟର ନିର୍ମାଣ କ୍ଷେତ୍ରରେ ବେଶ୍ ଅଗ୍ରଗତି ଲାଭ କରିସାରିଛି । ସମଗ୍ର ଏସିଆରେ ଜାପାନ୍ ପରେ ଭାରତ କମ୍ପ୍ୟୁଟର ନିର୍ମାଣ କ୍ଷେତ୍ରରେ ଦ୍ୱିତୀୟ ସ୍ଥାନ ଲାଭ କରିଛି । ଭାରତରେ ପ୍ରାୟ ଏକହଜାରରୁ ଅଧିକ ଉନ୍ନତମାନର କମ୍ପ୍ୟୁଟର ରହିଛି । ବାଙ୍ଗାଲୋରର Indian Institute of Scienceରେ ଉନ୍ନତମାନର କମ୍ପ୍ୟୁଟର ତିଆରି ହୋଇଛି । ଭାରତରେ ସେଥିପାଇଁ Electronics Corporation of India ବୋଲି ସଂସ୍ଥା ସ୍ଥାପିତ ହୋଇଛି ଓ ଏହା କମ୍ପ୍ୟୁଟର ତିଆରି କରିଥାଏ । ଦେଶକୁ ବିଜ୍ଞାନର ଅଗ୍ରଗତି ସହିତ ପାଦ ମିଳାଇ ଚାଲିବାକୁ ହେଲେ କମ୍ପ୍ୟୁଟରର ବିକାଶ ଅତ୍ୟନ୍ତ ଜରୁରୀ । ତେଣୁ ଉନ୍ନତଧରଣର କମ୍ପ୍ୟୁଟର ନିର୍ମାଣ ପାଇଁ ଭାରତ ବିଶେଷ ଗୁରୁତ୍ୱ ପ୍ରଦାନ କରିବା ଉଚିତ ।

●

## ମ୍ୟାଚ ଫିକ୍ସିଂ

**(ଉପକ୍ରମ, ମ୍ୟାଚ ଫିକ୍ସିଂର ଇତିହାସ, ରହସ୍ୟ ଉଦ୍‌ଘାଟନ, ଭାରତରେ ମ୍ୟାଚ ଫିକ୍ସିଂ, ଉପସଂହାର)**

ସଂପ୍ରତି ବିଶ୍ୱରେ କ୍ରିକେଟ୍ ଏକ ଲୋକପ୍ରିୟ ଖେଳ ଭାବରେ ସ୍ୱୀକୃତି ଲାଭ କରିଛି । ବର୍ତ୍ତମାନ ବିଶ୍ୱର ଅଧିକାଂଶ ରାଷ୍ଟ୍ର ଏହି ଖେଳ ପ୍ରତି ତାଙ୍କର ଆଦର ଭାବ ପ୍ରକାଶ କରିଛନ୍ତି । ମାତ୍ର ଏହି ନୂତନ ଶତାବ୍ଦୀରେ କ୍ରିକେଟ ଖେଳ ଓ ଖେଳାଳିଙ୍କୁ ନେଇ ଯେଉଁ ମ୍ୟାଚ ଫିକ୍ସିଂ ଅଭିଯୋଗ ହେଲା, ଖେଳ ଜଗତରେ ତାହା ସୃଷ୍ଟି କଲା ଏକ କଳଙ୍କିତ ଅଧ୍ୟାୟ । ଏହି ଖେଳ ଓ ଖେଳାଳିଙ୍କ ପ୍ରତି ସାଧାରଣ ମଣିଷର ହୃଦୟରେ ଯେଉଁ ଶ୍ରଦ୍ଧା ଓ ସମ୍ମାନ ଭରି ରହିଥିଲା, ତାହା ଦୂର ହୋଇଗଲା । ବର୍ତ୍ତମାନ ଜନସାଧାରଣଙ୍କ ବିଶ୍ୱାସ ଏମାନେ ପ୍ରକୃତରେ ଖେଳାଳି ନୁହନ୍ତି, ଜଣେ ଜଣେ ପୋଖତ ବ୍ୟବସାୟୀ । ଅନ୍ୟାନ୍ୟ କ୍ଷେତ୍ର ପରି ବର୍ତ୍ତମାନ କ୍ରିକେଟ ଯେ ଏକ ଦୁର୍ନୀତିର ଗନ୍ତାଘର ହୋଇଯାଇଛି, ତାହା ନିକଟରେ ହୋଇଥିବା ମ୍ୟାଚ ଫିକ୍ସିଂ ପ୍ରମାଣିତ କରିଛି ।

ମାର୍ଚ୍ଚ ୨୦୦୦ ରେ ଭାରତ ଓ ଦକ୍ଷିଣ ଆଫ୍ରିକା ମଧ୍ୟରେ ଅନୁଷ୍ଠିତ ଏକ ଦିବସୀୟ କ୍ରିକେଟ ସିରିଜ୍‌ରେ ଦକ୍ଷିଣ ଆଫ୍ରିକା ଦଳର ଅଧିନାୟକ ବିଶିଷ୍ଟ କ୍ରିକେଟିୟର ହାନ୍‌ସି କ୍ରୋନିଏ ମ୍ୟାଚ୍ ଫିକ୍‌ସିଂ ଓ ବେଟିଂରେ ଜଡ଼ିତ ଥିବାର ପ୍ରମାଣ ମିଳିଲା । ଅଧିନାୟକଙ୍କ ସହିତ ସେହି ଦଳର ହରସ୍କିଲ୍ ଗିବ୍‌ସ, ନିକିବୋଏ, ପିଟର ଷ୍ଟ୍ରେଡମ ଓ ହେନେରୀ ୱିଲିୟମସ୍ ମଧ୍ୟ ସମ୍ପୃକ୍ତ ବୋଲି ଜଣାପଡ଼ିଛି । ଏ ସମ୍ପର୍କରେ ଦିଲ୍ଲୀ ପୋଲିସ ଏକ ମାମଲା ରୁଜୁ କରିଛନ୍ତି । ଏହି ମାମଲାରେ ସହଯୋଗ କରିଥିବା ରାଜେଶ କାଲରା ନାମକ ଜଣେ ଭାରତୀୟ ବ୍ୟବସାୟୀ ମଧ୍ୟ ଗିରଫ ହୋଇଛନ୍ତି । ପ୍ରବାସୀ ଭାରତୀୟ ବ୍ୟବସାୟୀ ସଞ୍ଜୀବ ଓରଫ ସଞ୍ଜୟଙ୍କ ବିରୋଧରେ ଜାଲିଆତି ଓ ଅପରାଧମୂଳକ ଷଡ଼ଯନ୍ତ୍ର ଅଭିଯୋଗ ହୋଇଛି । ସଞ୍ଜୟଙ୍କ ପକ୍ଷରୁ ଦିଲ୍ଲୀର ବ୍ୟବସାୟୀ ରାଜେଶ କାଲରା ଏହି ମ୍ୟାଚ ଫିକ୍‌ସିଂରେ ସହାୟତା କରିଥିଲେ । ମାର୍ଚ୍ଚ ୧୪ ତାରିଖରେ ସଞ୍ଜୟ ଓ କ୍ରୋନିଏଙ୍କ ମଧ୍ୟରେ ହୋଇଥିବା ଟେଲିଫୋନ୍ କଥାବାର୍ତ୍ତାର କିଛି ଅଂଶ ଟେପିଂ କରାଯାଇଛି । ଏଥିଲାଗି ହାୱଲା ର୍ୟାକେଟ ମାଧ୍ୟମରେ ବୈଦେଶିକ ବିନିମୟ ମୁଦ୍ରା ଦକ୍ଷିଣ ଆଫ୍ରିକାର ଖେଳାଳିମାନଙ୍କୁ ଯୋଗାଇ ଦିଆଯାଇଥିଲା । ଗିରଫ ହେବା ପରେ ରାଜେଶ କାଲରା ଏହି ସିରିଜରେ ୫୦୦,୦୦୦ ଆମେରିକୀୟ ଡଲାରରେ ଫିକ୍‌ସିଂ ହୋଇଥିବା ସ୍ୱୀକାର କରିଛନ୍ତି । ଏହା ସହିତ ଟି ସିରିଜ କମ୍ପାନୀର ନିହତ ମାଲିକ ଗୁଲସନ କୁମାରଙ୍କ ଭାଇ କିଶନ କୁମାର ଜଡ଼ିତ ଥିବାର ସନ୍ଦେହ କରାଯାଇଛି । ରାଜେଶ କାଲରାଙ୍କ ବୟାନ ଅନୁଯାୟୀ ଚିତ୍ରତାରକା କୃଷ୍ଣକୁମାରଙ୍କୁ ମଧ୍ୟ ଏହି ଘଟଣା ପାଇଁ ଗିରଫ କରାଯାଇଛି । ଶୁଣାଯାଏ କୃଷ୍ଣକୁମାର ଏଥିରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ମୁମ୍ବାଇ ବିସ୍ଫୋରଣରେ ସଂପୃକ୍ତ ଦୁଇଜଣ ଅପରାଧୀ ସଲିମ୍ ହାଥେଲା ଓ ସଲିମ୍ ଚିପଲୁ, ଯିଏ ବର୍ତ୍ତମାନ ଦୁବାଇରେ ଅବସ୍ଥାନ କରୁଛନ୍ତି, ସେମାନେ ଏହି ମ୍ୟାଚ ଫିକ୍ସିଂ ପରିଚାଳନା କରୁଥିବା ଜଣାଯାଇଛି । ଏହି ମହାଭିଯୋଗକୁ ପ୍ରଥମେ କ୍ରୋନିଏ ଅସ୍ୱୀକାର କରିଥିଲେ । ଏଥିପାଇଁ ଦକ୍ଷିଣ ଆଫ୍ରିକା ଓ ଭାରତ ମଧ୍ୟରେ କୂଟନୈତିକ ସ୍ତରରେ ଶୀତଳ ଯୁଦ୍ଧ ମଧ୍ୟ ଆରମ୍ଭ ହୋଇଯାଇଥିଲା । ପୁଣି କ୍ରୋନିଏଙ୍କ ସେଲଫୋନ୍ କଥାବାର୍ତ୍ତାର ରେକର୍ଡିଂ କରିବାର ଅଧିକାରକୁ ନେଇ ବିଭିନ୍ନ ସ୍ତରରେ ପ୍ରଶ୍ନ ଉଠିଛି । ଘଟଣାର ଅନୁସନ୍ଧାନକାରୀ ଅଫିସର ସୁରିନ୍ଦର ଶର୍ମା ବେଟିଂ ସଂକ୍ରାନ୍ତ କଥାବାର୍ତ୍ତାର ପାଞ୍ଚୋଟି କ୍ୟାସେଟ୍ ପ୍ରସ୍ତୁତ କରିଛନ୍ତି । ସେଗୁଡ଼ିକୁ ମଧ୍ୟ କୋର୍ଟରେ ଉପସ୍ଥାପନ କରାଯାଇଛି । ଏଥିପାଇଁ ସିବିଆଇ ଓ ଇଣ୍ଟରପୋଲ୍‌ର ସାହାଯ୍ୟ ମଧ୍ୟ ନିଆଯାଇଥିଲା । ଅନୁସନ୍ଧାନ କାର୍ଯ୍ୟ ଜାରି ରହିଥିବା ସମୟରେ ଅଧିନାୟକ ହାନ୍ସି କ୍ରୋନିଏ ଜାନୁଆରୀ ଓ ଫେବୃଆରୀ ମାସରେ ଅନୁଷ୍ଠିତ ତ୍ରିରାଷ୍ଟ୍ରୀୟ କ୍ରିକେଟ ସିରିଜ୍‌ରେ ୧୦ ରୁ ୧୫ ହଜାର ଡଲାର ନେଇଥିବା ସ୍ୱୀକାର କରିବାରେ ଘଟଣା ଅନ୍ୟମୋଡ଼ ଗ୍ରହଣ କରିଛି । ଏହି ଘଟଣା ପରେ ସେ ଦକ୍ଷିଣ ଆଫ୍ରିକା ଓ ଅଷ୍ଟ୍ରେଲିଆ ଏକ ଦିବସୀୟ କ୍ରିକେଟ ସିରିଜରୁ ବାଦ୍ ପଡ଼ିଛନ୍ତି । ନିକଟରେ ଦିଲ୍ଲୀ ପୋଲିସ୍ ଟେପ୍ କରିଥିବା

ଟେଲିଫୋନ୍ ବାର୍ତ୍ତାଳାପରେ ତାଙ୍କର ସ୍ୱର ରହିଛି ବୋଲି କ୍ରୋନିଏ ସ୍ୱୀକାର କରିଛନ୍ତି । ପୁନରାୟ ପୂର୍ବତନ ଅନ୍ତର୍ଜାତୀୟ ଖେଳାଳି ପିଟ୍ ସିମ୍‌କକ୍ସ ବର୍ତ୍ତମାନ ଅଭିଯୋଗ କରି କହିଛନ୍ତି ୧୯୯୪-୯୫ ପାକିସ୍ଥାନ ସିରିଜରେ ମ୍ୟାଚ ହାରିବାକୁ କ୍ରୋନିଏ ଅର୍ଥ ଯାଚିଥିଲେ । କେବଳ କ୍ରୋନିଏ ନୁହନ୍ତି ବିଶ୍ୱର ଅନେକ ପ୍ରସିଦ୍ଧ ଖେଳାଳି ମ୍ୟାଚ ଫିକ୍‌ସିଂରେ ଜଡ଼ିତ ବୋଲି ଅଭିଯୋଗ ହୋଇଛି । ୧୯୯୪ କଲମ୍ବୋ ଠାରେ ଅନୁଷ୍ଠିତ ସିଙ୍ଗର୍ କପ୍ କ୍ରିକେଟ୍‌ରେ ପାକିସ୍ଥାନର ସଲିମ ମଲ୍ଲିକ ଓ ମୁସ୍ତାକ ଅହମ୍ମଦ ୧ ଲକ୍ଷ ଲେଖାଏଁ ଡଲାର ନେଇଥିଲେ ବୋଲି ସଟ୍ଟା ବେପାରୀ ସଲିମ୍ ପରଭେଜ୍ ଅଭିଯୋଗ କରିଥିଲେ । ପରବର୍ତ୍ତୀ କାଳରେ ସଲିମ୍ ମଲ୍ଲିକ ମଧ୍ୟ ଏହା ସ୍ୱୀକାର କରିଥିବାର ଜଣାଯାଇଛି । ସେହିପରି ୧୯୯୪ ସାର୍‌ଜାହା ଠାରେ ଅନୁଷ୍ଠିତ ଏସିଆ କପ୍ ଫାଇନାଲରେ ୧୦ ରନ୍‌ରୁ କମ୍ ରନ୍ ସଂଗ୍ରହ କରିବା ସହିତ ସୟଦ୍ ଅନୱାରଙ୍କୁ ରନ୍‌ଆଉଟ୍ କରିବାକୁ ୧ ଲକ୍ଷ ୨୦ ହଜାର ଡଲାର ଯଚା ଯାଇଥିଲା ବୋଲି ପାକିସ୍ଥାନର ଅମୀର ସୋହେଲ ଅଭିଯୋଗ କରିଥିଲେ । ୧୯୯୫ ରେ ଅଷ୍ଟ୍ରେଲିଆର ସେନ୍‌ୱାର୍ଣ୍ଣ ଓ ଟିମ୍‌ମେଙ୍କୁ ମ୍ୟାଚ ହାରିବା ପାଇଁ ପାକିସ୍ଥାନର ସଲିମ ମଲ୍ଲିକ ଲାଞ୍ଚ ଯାଚିଥିଲେ ବୋଲି ଅଭିଯୋଗ କରିଥିଲେ । ୧୯୯୯ ରେ ଇଂଲଣ୍ଡ ଠାରେ ଅନୁଷ୍ଠିତ ବିଶ୍ୱକପ ପରେ ଦୁଇଟି ମ୍ୟାଚ ଫିକ୍‌ସିଂ କରାଯାଇଥିବା ଦକ୍ଷିଣ ଆଫ୍ରିକାର କ୍ରିକେଟିୟର ମୁଖ୍ୟ ଅଲ୍ଲିବାକେର କହିଛନ୍ତି । ଇଂଲଣ୍ଡ ଖେଳାଳିଙ୍କ ସମ୍ପର୍କରେ ମଧ୍ୟ ଏହି ଅଭିଯୋଗ ହୋଇଛି ।

ମାର୍ଚ୍ଚ ମାସରେ ଅନୁଷ୍ଠିତ ଏକଦିବସୀୟ କ୍ରିକେଟ୍ ସିରିଜ୍‌ରେ ହୋଇଥିବା ମ୍ୟାଚ ଫିକ୍‌ସିଂ ଘଟଣା ଜଣାପଡ଼ିବା ଅନ୍ତରାଳରେ ଏକ ବିଶେଷ ଘଟଣା ବିଦ୍ୟମାନ । ଦକ୍ଷିଣ ଦିଲ୍ଲୀର ଜଣେ ବ୍ୟବସାୟୀଙ୍କୁ ଫୋନ୍‌ରେ ଏକ ଅଜ୍ଞାତ ବ୍ୟକ୍ତି ବାରମ୍ବାର ଧମକ ଦେଉଥିଲେ । ସେ ଏ ବିଷୟରେ ପୋଲିସ୍‌କୁ ଜଣାଇବା ପରେ ତାଙ୍କ ଟେଲିଫୋନ୍ ଟ୍ୟାପ କରାଯାଇଥିଲା । ପରେ କ୍ରାଇମ୍ ବ୍ରାଞ୍ଚ ଏଥିପାଇଁ କେତେକ୍ ପଦକ୍ଷେପ ଗ୍ରହଣ କରିଥିଲେ । ସେ ଦିଲ୍ଲୀର କେତେକ ଟେଲିଫୋନ୍ ଟ୍ୟାପ କରିବା ସମୟରେ ପ୍ରଥମେ ସଞ୍ଜୀବ ଚାୱାଲା ଧରା ପଡ଼ିଥିଲେ । ପୋଲିସ ଏହି ତଦନ୍ତକୁ ନିରୀକ୍ଷଣ କରି କ୍ରୋନିଏ ଏବଂ ସଞ୍ଜୀବ କଥାବାର୍ତ୍ତା କରୁଥିବା ବିଷୟ ଜାଣିପାରିଥିଲେ । ଏହି ଘଟଣା ପରେ ବାରଥର ଉଭୟଙ୍କ ମଧ୍ୟରେ ଫୋନ୍‌ରେ କଥାବାର୍ତ୍ତା ଟ୍ୟାପ କରାଯାଇଥିଲା । ପୋଲିସ୍‌ର ତଦନ୍ତ ସମୟରେ ଚାୱାଲା ଭାରତ ଛାଡ଼ି ଚାଲିଯାଇଥିଲେ । କଥାବାର୍ତ୍ତା ଅନୁଧାନ କରିବା ସମୟରେ କ୍ରୋନିଏ ମ୍ୟାଚ୍ ଫିକ୍‌ସିଂ ରେ ଜଡ଼ିତ ଥିବା ଜଣାଯାଇଥିଲା ଓ ଏହାପରେ ଦିଲ୍ଲୀ ପୋଲିସ ତାଙ୍କ ବିରୋଧରେ ଅଭିଯୋଗ ଫର୍ଦ୍ଦ ଦାଖଲ କରିଥିଲେ ଏବଂ କ୍ରୋନିଏଙ୍କ ସ୍ୱୀକାରୋକ୍ତି ପରେ ଏହି ଘଟଣାର ସତ୍ୟତା ପ୍ରମାଣିତ ହୋଇଥିଲା ।

ଭାରତରେ ମ୍ୟାଚ ଫିକ୍‌ସିଂ ଅଭିଯୋଗ ଆଣି ଅଲରାଉଣ୍ଡର ମନୋଜ ପ୍ରଭାକର ଏକ ବିତର୍କିତ ବ୍ୟକ୍ତିତ୍ୱରେ ପରିଣତ ହୋଇଥିଲେ । ୧୯୯୬ ମସିହାରେ ସେ ଭାରତୀୟ

କ୍ରିକେଟ ଦଳର ଖେଳାଳିଙ୍କ ବିରୋଧରେ ଅଭିଯୋଗ କରି କହିଥିଲେ ଯେ, ୧୯୯୪ ସିଙ୍ଗଲ କପ୍‌ରେ ନିମ୍ନଧରଣର ଖେଳ ପ୍ରଦର୍ଶନ କରିବାକୁ ତାଙ୍କୁ ୨୫ ଲକ୍ଷ ଟଙ୍କା ଯଚା ଯାଇଥିଲା । ଏହି ଘଟଣା ପରେ କ୍ରିକେଟ କଣ୍ଟ୍ରୋଲ ବୋର୍ଡ ପକ୍ଷରୁ ସୁପ୍ରିମକୋର୍ଟର ପୂର୍ବତନ ବିଚାରପତି ୱାଇ.ଭି. ଚନ୍ଦ୍ରଚୂଡ଼ଙ୍କ ଅଧ୍ୟକ୍ଷତାରେ ଏକ ତଦନ୍ତ କମିଟି ବସାଯାଇଥିଲା ଏବଂ କମିଟି ତଦନ୍ତ ପରେ ପ୍ରଭାକରଙ୍କ ଅଭିଯୋଗର କୌଣସି ସତ୍ୟତା ନ ଥିବା ବିଷୟ ପ୍ରକାଶ କରିଥିଲେ । ବି.ସି.ସି.ଆଇ. ର ପୂର୍ବତନ ଅଧ୍ୟକ୍ଷ ଇନ୍ଦ୍ରଜିତ ସିଂ ବିନ୍ଦ୍ରା ସି.ଏନ.ଏନ.କୁ ଏକ ସାକ୍ଷାତକାର ଦେଇ ନିମ୍ନମାନର ଖେଳ ପ୍ରଦର୍ଶନ କରିବାକୁ କପିଳଦେବ ପ୍ରଭାକରକୁ ୨୫ ଲକ୍ଷ ଟଙ୍କା ଯାଚିଥିଲେ ବୋଲି କହିଥିଲେ । ପରବର୍ତ୍ତୀ ସମୟରେ ପ୍ରଭାକର ଏହା ସ୍ୱୀକାର କରିଥିଲେ । ଏଥିରେ ପ୍ରତିକ୍ରିୟା ପ୍ରକାଶ କରି କପିଳଦେବ ସେମାନଙ୍କ ବିରୋଧରେ ମାନହାନି କେସ ଦାୟର କରିଛନ୍ତି । ଏପ୍ରିଲ ୮, ୨୦୦୦ ରେ ପୁଣି ପ୍ରଭାକର ଇଣ୍ଟରନେଟ୍‌ର ଏକ ୱେବସାଇଟ୍ ସହିତ ସାକ୍ଷାତକାର ବେଳେ ୧୯୯୭ ରେ ଅଧିନାୟକ ମହମ୍ମଦ ଆଝାରୁଦ୍ଦିନ ଓ ମ୍ୟାନେଜର ଅଜିତ୍ ୱାଦେକର ମ୍ୟାଚ ଫିକ୍‌ସିଂରେ ଜଡ଼ିତ ଥିବାର ସୂଚନା ଦେଇଛନ୍ତି ଓ ଆଝାରୁଦ୍ଦିନ ଏ ସମ୍ପର୍କରେ ତା'ର ପ୍ରତିକ୍ରିୟା ପ୍ରକାଶ କରିଛନ୍ତି । ବର୍ତ୍ତମାନ ଅନୁସନ୍ଧାନ ଚାଲିଛି । ପ୍ରକୃତ ସତ୍ୟ ଦିନେ ଆଲୋକକୁ ଆସିବ ବୋଲି ବିଶ୍ୱାସ । ଜି.ଟିଭିରେ ପ୍ରସାରିତ ଏକ ରିପୋର୍ଟରେ କୁହାଯାଇଛି ମୁମ୍ବଇରେ ବର୍ଷକୁ ୧୦୦୦ କୋଟି ଟଙ୍କାର ସଟ୍ଟା ବାଜି ଖେଳହୁଏ । ଗତ କ୍ରିକେଟ ମ୍ୟାଚରେ ୩୨୦ କୋଟି ଟଙ୍କାର କାରବାର ହୋଇଥିଲା ବୋଲି ଏହି ରିପୋର୍ଟରେ ପ୍ରକାଶ କରାଯାଇଛି । ତେଣୁ ମ୍ୟାଚ ଫିକ୍‌ସିଂ ଏକ ପରମ୍ପରାରେ ପଡ଼ିଗଲାଣି ବୋଲି ଏଥିରୁ ପ୍ରମାଣିତ ।

କ୍ରିକେଟ ଜଗତରେ ମ୍ୟାଚ ଫିକ୍‌ସିଂ ଆଜି କ୍ରୀଡ଼ାବିତ୍ ଓ କ୍ରୀଡ଼ା ପ୍ରେମୀଙ୍କୁ ହତାଶ କରିଛି । ଖେଳାଳିମାନଙ୍କ ପ୍ରତି ସାଧାରଣ ମଣିଷର ବିଶ୍ୱାସବୋଧ ଧୀରେ ଧୀରେ ହ୍ରାସ ପାଉଛି । ବର୍ତ୍ତମାନ ଖେଳାଳିମାନଙ୍କ ଉପରେ କେତେକ ଆଚରଣ ବିଧି ଲାଗୁ କରାଯିବାକୁ ଚିନ୍ତା କରାଯାଉଛି । ଦେଶର ସମ୍ମାନକୁ ଆଜି ଯେପରି କ୍ରିକେଟ ଖେଳାଳି ବିଚ୍ ବଜାରରେ ବିକ୍ରି କରିବାକୁ ଆରମ୍ଭ କରିଛନ୍ତି, ତାହା ନିଶ୍ଚିତ ଭାବରେ ଦୁଃଖଦାୟକ ବିଷୟ । ସାଧାରଣ ସ୍ତରର ଦୁର୍ନୀତି କ୍ରିକେଟ ଖେଳରେ ପ୍ରବେଶ କଲେ ଏହା କେବଳ ଖେଳର ମର୍ଯ୍ୟାଦା ହାନି କରେ ନାହିଁ, ଗୋଟିଏ ଦେଶର ମାନ ମର୍ଯାଦାର ପ୍ରଶ୍ନ ମଧ ଏହା ସହିତ ଜଡ଼ିତ । ତେଣୁ ବର୍ତ୍ତମାନ ଠାରୁ କ୍ରୀଡ଼ାପ୍ରେମୀ ଓ ସାଧାରଣ ଜନତା ଏଥିପ୍ରତି ସତର୍କ ରହିବା ସଙ୍ଗେ ସଙ୍ଗେ ଭବିଷ୍ୟତରେ ଯେପରି ଏହାର ପୁନରାବୃତ୍ତି ନ ହୁଏ ତା ପ୍ରତି ସି.ବି.ଆଇ. ଏବଂ ପୋଲିସ କଡ଼ା ନଜର ରଖିବା ନିତାନ୍ତ ଜରୁରୀ ।

●

# ଭାରତ ଓ ପରମାଣୁ ପରୀକ୍ଷା

(ଉପକ୍ରମ, ପରମାଣୁ ପରୀକ୍ଷାର ସପକ୍ଷ ଓ ବିପକ୍ଷ ଦିଗ, ବିଶ୍ୱରେ ପରମାଣୁ ଶକ୍ତିଶାଳୀ ରାଷ୍ଟ୍ର, ଭାରତରେ ପରମାଣୁ ପରୀକ୍ଷାର ଇତିହାସ, ପ୍ରତିକ୍ରିୟା, ଉପସଂହାର)

ବିଜ୍ଞାନର ଅଭୂତପୂର୍ବ ବିକାଶ ବିଶ୍ୱକୁ ଯେପରି ସଙ୍କୁଚିତ କରିଛି, ସେମିତି ଜନ୍ମ ଦେଇଛି ଏକ ଆତଙ୍କକୁ । ପାଗଳ ମଣିଷର ଖିଆଲୀ ମନୋବୃତ୍ତି ବେଳେ ବେଳେ ପୃଥିବୀକୁ ଧ୍ୱଂସ ଦିଗରେ ଆଗେଇ ନେଉଛି । ବିଜ୍ଞାନର ଆବିଷ୍କାର ହୋଇଥିଲା ମଣିଷ ଜୀବନକୁ ସୁସ୍ଥ ସୁନ୍ଦର କରି ଗଢ଼ି ତୋଳିବାକୁ । ମାତ୍ର ମଣିଷ ତା'ର ସତ୍ ଉପଯୋଗ କରିବା ପରିବର୍ତ୍ତେ ନିଜର ଅହଂ, ଆତ୍ମପ୍ରୌଢ଼ି ଓ ଶକ୍ତିର ପରାକାଷ୍ଠା ପ୍ରଦାନ କରିବା ନିମିତ୍ତ ବିଜ୍ଞାନର ଅସତ୍ ଉପଯୋଗ କରିବାକୁ କୁଣ୍ଠିତ ହେଉ ନାହିଁ । ତେଣୁ ମଣିଷର ଧ୍ୱଂସ ପାଇଁ ମଣିଷ ଆଜି ସମ୍ପୂର୍ଣ୍ଣ ଭାବରେ ଦାୟୀ । ବିଜ୍ଞାନର ଏହି ଧ୍ୱଂସକରୀ ରୂପର ଏକ ବଳିଷ୍ଠ ଉଦାହରଣ ହେଉଛି ପରମାଣୁ ବୋମା । ବିଶ୍ୱର କେତେକ ଶକ୍ତିଶାଳୀ ରାଷ୍ଟ୍ର ଏତେ ପରିମାଣରେ ପରମାଣୁ ଓ ଉଦଜାନ ବୋମା ସଞ୍ଚିତ କରି ରଖିଛନ୍ତି ଯେ, ଯଦି ତା'ର ବିସ୍ଫୋରଣ ଘଟେ ଗୋଟିଏ ମୁହୂର୍ତ୍ତରେ ସମଗ୍ର ବିଶ୍ୱ ଧ୍ୱଂସ ସ୍ତୂପରେ ପରିଣତ ହୋଇଯିବ । ମଣିଷର ଧ୍ୱଂସାତ୍ମକ ଦୃଷ୍ଟିଭଙ୍ଗୀରୁ ପରମାଣୁ ବୋମାର ସୃଷ୍ଟି କହିଲେ ଭୁଲ ହେବ ନାହିଁ ।

ସଂପ୍ରତି ଭାରତ ବିଶ୍ୱରେ ଅନ୍ୟତମ ପରମାଣୁ ଶକ୍ତି ଭାବରେ ନିଜକୁ ପ୍ରତିଷ୍ଠିତ କରିପାରିଛି । ତେବେ ଭାରତ ପରମାଣୁ ବୋମା ତିଆରି କରିବା ଉଚିତ କି ? ଏହି ପ୍ରଶ୍ନଟିକୁ ନେଇ ଏହାର ସପକ୍ଷ ଓ ବିପକ୍ଷରେ ବହୁ ଯୁକ୍ତି ଆରମ୍ଭ ହୋଇଯାଇଛି । ବିପକ୍ଷବାଦୀମାନଙ୍କର ଯୁକ୍ତି ହେଉଛି ଭାରତ ଏକ ବିକାଶଶୀଳ ରାଷ୍ଟ୍ର । ତେଣୁ ସେ ତା'ର ସମସ୍ତ ଉତ୍ସକୁ ଦେଶର ବିକାଶ କ୍ଷେତ୍ରରେ ବିନିଯୋଗ କରିବା ଆବଶ୍ୟକ । ସଂପ୍ରତି ଭାରତର ଜନସଂଖ୍ୟା ଏକଶହ କୋଟିରୁ ଅଧିକରେ ପହଞ୍ଚିଗଲାଣି । ଆଣବିକ ଅସ୍ତ୍ର ଉତ୍ପାଦନ କଲେ ଭାରତକୁ ପ୍ରଚୁର ପରିମାଣରେ ଅର୍ଥ ଖର୍ଚ୍ଚ କରିବାକୁ ପଡ଼ିବ । ଏହା ଦ୍ୱାରା ତା'ର ବିକାଶ ପ୍ରକ୍ରିୟା ବହୁପରିମାଣରେ ବାଧାପ୍ରାପ୍ତ ହେବ । ଭାରତ ପରି ଏକ ଗରିବ ରାଷ୍ଟ୍ର ଅଣୁଅସ୍ତ୍ର ବା ପରମାଣୁ ବୋମା ନିର୍ମାଣ କରିବା ଦ୍ୱାରା ତା'ର ଅର୍ଥନୀତି ବିପର୍ଯ୍ୟସ୍ତ ହୋଇପଡ଼ିବ । ପୁଣି ଭାରତ ଯେତେବେଳେ ବିଶ୍ୱରେ ଶାନ୍ତି ପାଇଁ ଯୁଦ୍ଧ ଯୁକ୍ତି ବାଢୁଛି, ସେତେବେଳେ ସେ ନିଜେ ପରମାଣୁ ଅସ୍ତ୍ର ଉତ୍ପାଦନ କଲେ, ତା'ର ଭାବମୂର୍ତ୍ତି ଖଣ୍ଡିତ ଓ ସଙ୍କୁଚିତ ହୋଇପଡ଼ିବ । ମାତ୍ର ଏହାର ସପକ୍ଷବାଦୀଗଣ ଭିନ୍ନ ଯୁକ୍ତି କରିଥାନ୍ତି । ତାଙ୍କ ମତରେ ଭାରତ ଦୁଇପଡ଼ୋଶୀ ରାଷ୍ଟ୍ର ଚୀନ ଓ ପାକିସ୍ଥାନ ବହୁ ମାରଣାସ୍ତ୍ରରେ ନିଜକୁ ସମୃଦ୍ଧ କରିଛନ୍ତି ଏବଂ ସେମାନଙ୍କର ସମ୍ପର୍କ ଭାରତ ପ୍ରତି ବିଦ୍ୱେଷମୂଳକ । ଚୀନ ବହୁ ପୂର୍ବରୁ ପରମାଣୁ ବୋମା ପରୀକ୍ଷା କରିସାରିଛି । ୧୯୬୨ ଯୁଦ୍ଧରେ ଭାରତକୁ ଚୀନ୍

ଠାରୁ ଲାଞ୍ଛନା ଭୋଗ କରିବାକୁ ପଡ଼ିଛି ଓ ଭାରତର ଏକ ବିରାଟ ଅଞ୍ଚଳ ଏବେ ବି ଚୀନ୍‌ର ନିୟନ୍ତ୍ରଣରେ ରହିଛି । ସେହିପରି ପାକିସ୍ଥାନ ଭାରତ ସହିତ ଚାରିଥର ଯୁଦ୍ଧ କରିସାରିଲାଣି । ଚୀନ୍ ସହିତ ସୁସମ୍ପର୍କ ରଖି ବହୁ ମାରଣାସ୍ତ୍ର ସଂଗ୍ରହ କରିଛି । ଆମେରିକା ଏବଂ ଆରବ ଦେଶଗୁଡ଼ିକରୁ ମଧ୍ୟ ପ୍ରଚୁର ପରିମାଣରେ ଯୁଦ୍ଧାସ୍ତ୍ର କ୍ରୟ କରିଛି । ଏବେବି ଭାରତ ଭୂଖଣ୍ଡରେ ପାକିସ୍ଥାନ ତା'ର ସନ୍ତ୍ରାସବାଦୀ କାର୍ଯ୍ୟକଳାପ ଚାଲୁ ରଖିଛି । ଅତୀତରେ ପାକିସ୍ଥାନ ପରମାଣୁ ବୋମା ପରୀକ୍ଷା କରି ନିଜ ଶକ୍ତିର ପରିଚୟ ପ୍ରଦାନ କରିପାରିଛି । ଭାରତର ସମୁଦ୍ର ସମ୍ପଦ ମଧ୍ୟ ସୁରକ୍ଷିତ ନୁହେଁ । ବିଶ୍ୱର ଶକ୍ତିଶାଳୀ ରାଷ୍ଟ୍ର ଭାରତକୁ ବେଢ଼ିଥିବା ସମୁଦ୍ରରେ ବିଭିନ୍ନ ସମୟରେ ମାରଣାସ୍ତ୍ରମାନ ପରୀକ୍ଷା କରୁଛନ୍ତି । ଯୁଦ୍ଧପୋତ ପଠାଇ ଭାରତକୁ ଭୟଭୀତ କରାଇବାକୁ ଚେଷ୍ଟା କରୁଛନ୍ତି । ୧୯୭୧ ମସିହା ପାକିସ୍ଥାନ ସହିତ ଯୁଦ୍ଧ ସମୟରେ ଆମେରିକା ଏହିପରି ଏକ ରଣତରୀ ପ୍ରେରଣ କରିଥିଲା । ଭାରତ ଏକ ଶାନ୍ତିପ୍ରିୟ ଦେଶ ହେଲେ ମଧ୍ୟ ପଡ଼ୋଶୀମାନଙ୍କ ମତିଗତି ପ୍ରତି ଦୃଷ୍ଟି ରଖି ନିଜର ସୁରକ୍ଷା ପାଇଁ ପରମାଣୁ ଅସ୍ତ୍ର ଉତ୍ପାଦନ କରିବା ଉଚିତ । ଏ କ୍ଷେତ୍ରରେ ଭାରତ ତା'ର ସ୍ପଷ୍ଟ ମତ ବ୍ୟକ୍ତ କରିସାରିଛି । ସେ ଅଣୁଅସ୍ତ୍ର ଉତ୍ପାଦନ କରିବ ନିଜର ସୁରକ୍ଷା ପାଇଁ, ଅନ୍ୟକୁ ଆକ୍ରମଣ କରିବା ପାଇଁ ନୁହେଁ । ଯଦି କୌଣସି ରାଷ୍ଟ୍ର ଭାରତର ସାର୍ବଭୌମତ୍ୱକୁ ନଷ୍ଟ କରିବାକୁ ଚେଷ୍ଟା କରିବ, ସେତେବେଳେ ସେ କେବଳ ଏହାର ପ୍ରୟୋଗ କରିବାକୁ ବାଧ୍ୟ ହେବ । କେତେକ ଯୁଦ୍ଧପାଗଳ ଦେଶ ଯେପରି ଭାବରେ ଅନ୍ୟରାଷ୍ଟ୍ର ଉପରେ ବଡ଼ଭାଇପଣିଆ ଜାହିର କରିବାକୁ ଚେଷ୍ଟା କରୁଛନ୍ତି, ସେ କ୍ଷେତ୍ରରେ ଭାରତ ନିଜର ନିରାପତ୍ତାକୁ ଦୃଷ୍ଟିରେ ରଖି ଅଣୁଅସ୍ତ୍ର ଉତ୍ପାଦନ କ୍ଷେତ୍ରରେ ବାଞ୍ଛିତ ପଦକ୍ଷେପ ଗ୍ରହଣ କରିବା ଆବଶ୍ୟକ ବୋଲି ମନେହୁଏ ।

ପୂର୍ବରୁ ପୃଥିବୀର ପାଞ୍ଚଟି ପାରମାଣବିକ ଶକ୍ତିସମ୍ପନ୍ନ ରାଷ୍ଟ୍ର ଭାବେ ଆମେରିକା, ବ୍ରିଟେନ, ଫ୍ରାନ୍ସ, ଚୀନ ଓ ସୋଭିଏତ ୟୁନିୟନ୍ ସ୍ୱୀକୃତି ଲାଭ କରିଥିଲେ । ପ୍ରତି କ୍ଷେତ୍ରରେ ଏହି ରାଷ୍ଟ୍ରଗୁଡ଼ିକ ଅନ୍ୟ ରାଷ୍ଟ୍ରମାନଙ୍କ ଉପରେ ବଡ଼ଭାଇପଣିଆ ସାବ୍ୟସ୍ତ କରିବାକୁ ପରାଙ୍ମୁଖ ହେଉନଥିଲେ । ସମଗ୍ର ବିଶ୍ୱରେ ପ୍ରଥମ ପରମାଣୁବୋମା ୧୯୪୫ ମସିହା ଜୁଲାଇ ମାସ ୧୬ ତାରିଖରେ ମେକ୍ସିକୋର ଆଲାମୋଗୋରଡ଼ୋ ଠାରେ ପରୀକ୍ଷିତ ହୋଇଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ସେହି ୧୯୪୫ ମସିହା ଅଗଷ୍ଟ ୬ ତାରିଖରେ ଆମେରିକା ଜାପାନର ହିରୋସୀମା ଉପରେ ପରମାଣୁ ବୋମା ନିକ୍ଷେପ କରିଥିଲା ଏବଂ ୭୫ ହଜାର ଲୋକ ପ୍ରାଣ ହରାଇବା ସଙ୍ଗେ ହିରୋସୀମା କେନ୍ଦ୍ରାଞ୍ଚଳର ଆନୁମାନିକ ୪ ବର୍ଗ କିଲୋମିଟର ଅଞ୍ଚଳ ସମ୍ପୂର୍ଣ୍ଣ ଧ୍ୱଂସ ସ୍ତୂପରେ ପରିଣତ ହୋଇଥିଲା । ଅଗଷ୍ଟ ୯ ତାରିଖରେ ଆମେରିକା ନାଗାସାକି ଉପରେ ନିକ୍ଷେପ କରି ୩୯ ହଜାର ଲୋକଙ୍କ ଜୀବନ ହାନି କରିଥିଲା । କିନ୍ତୁ ବର୍ତ୍ତମାନ ଏହି ବୋମା ଅପେକ୍ଷା ଶତଗୁଣରେ ଶକ୍ତିଶାଳୀ ହାଇଡ୍ରୋଜେନ ବୋମା ଆମେରିକା, ରୁଷ ଓ

ଇଂଲଣ୍ଡ ନିକଟରେ ଗଚ୍ଛିତ ଅଛି । ଗୋଟିଏ ବୋମାରେ ଗୋଟିଏ ଗୋଟିଏ ମସ୍କୋ ବା ନିୟୁୟର୍କ ପରି ବିରାଟ ସହର ଗୋଟିଏ ମୁହୂର୍ତ୍ତରେ ଧ୍ୱଂସ ସ୍ତୁପରେ ପରିଣତ ହୋଇପାରିବ । ଏହା ମଧ୍ୟରେ ଉପରୋକ୍ତ ରାଷ୍ଟ୍ରଗୁଡ଼ିକ ବହୁଥର ପରମାଣୁ ବୋମା ପରୀକ୍ଷା କରିସାରିଛନ୍ତି । ଆମେରିକା ୧୨ ଶହ ଥର ପରମାଣୁ ଓ ଉଦଜାନ ବୋମା ପରୀକ୍ଷା କରିଥିବା ସମୟରେ ରୁଷ ୭୦୦ ଥର, ଚୀନ ୪୫ ଥର, ଇଂଲଣ୍ଡ ଓ ଫ୍ରାନ୍‌ସ ମଧ୍ୟ ବହୁଥର ପରୀକ୍ଷା କରିସାରିଛନ୍ତି । ୧୯୫୬ ମସିହାରେ ଆମେରିକା ପ୍ରଥମକରି ହାଇଡ୍ରୋଜେନ୍ ବୋମା ପରୀକ୍ଷା କରିଥିଲା । ଏବେ ପାକିସ୍ଥାନ ପରମାଣୁ ବୋମା ପରୀକ୍ଷା କରିଛି । ଭାରତର ଦୁଇ ପଡ଼ୋଶୀ ରାଷ୍ଟ୍ର ଓ ବିଶ୍ୱର ଅନ୍ୟ କେତେକ ରାଷ୍ଟ୍ର ଏପରି ମାରାତ୍ମକ ଅସ୍ତ୍ରର ଅଧିକାରୀ ହୋଇଥିବା ସମୟରେ ଭାରତ ଏ କ୍ଷେତ୍ରରେ ପଶ୍ଚାତ୍‌ପଦ ହେବା ଅନୁଚିତ ।

୧୯୭୪ ମସିହା ମେ ମାସ ୧୮ ତାରିଖ ଭାରତୀୟ ଇତିହାସରେ ଏକ ସ୍ମରଣୀୟ ଦିନ । ଏହି ଦିନ ରାଜସ୍ଥାନର ପୋଖରାନ ଠାରେ ପ୍ରଥମ ଭାରତ ପରମାଣୁ ବୋମା ପରୀକ୍ଷା କରିଥିଲା । ମାତ୍ର ପରମାଣୁ ବୋମା ତିଆରି ପାଇଁ ଏହାର ଦଶବର୍ଷ ପୂର୍ବରୁ ଭାରତ ମାନସିକ ସ୍ତରରେ ପ୍ରସ୍ତୁତ ହୋଇଥିଲା । ଚୀନ ୧୯୬୪ ମସିହା ଅକ୍ଟୋବର ମାସ ୧୬ ତାରିଖରେ ଲପନ୍‌ର ଠାରେ ତା'ର ପ୍ରଥମ ପରମାଣୁ ପରୀକ୍ଷା କରିବା ପରେ ଡକ୍ଟର ହୋମିଭାବା କହିଥିଲେ ଭାରତକୁ ଏହି ଅସ୍ତ୍ର ନିର୍ମାଣ ପାଇଁ ୧୮ ମାସ ସମୟ ଲାଗିବ । ୧୯୭୬ ମସିହାରେ ଚୀନ 'ଥର୍ମୋନିୟୁକ୍ଲିୟସର ଟେଷ୍ଟ କରିବା ପରେ ଭାରତୀୟ ବୈଜ୍ଞାନିକଗଣ ଏଥିପ୍ରତି ବିଶେଷ ସଚେତନ ହୋଇଥିଲେ । ୧୯୭୧ ମସିହାରେ ପାକିସ୍ଥାନ ସହିତ ଯୁଦ୍ଧ ସମୟରେ ଆମେରିକା ଭାରତକୁ ଭୟଭୀତ କରିବା ପାଇଁ ପାରମାଣବିକ ଅସ୍ତ୍ର ରେ ସଜ୍ଜିତ ଏୟାର କ୍ରାଫ୍‌ଟ ବାହକ ୟୁ.ଏସ.ଏସ. ଏଣ୍ଟରପ୍ରାଇଜକୁ ବଙ୍ଗୋପସାଗରକୁ ପଠାଇଥିଲା । ଚୀନର ମତିଗତି ଓ ଆମେରିକାର ଭାରତବିଦ୍ୱେଷୀ ମନୋଭାବ ଲକ୍ଷ୍ୟ କରି ୧୯୭୨ ମସିହାରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧି ୧୯୭୨ ମସିହା ଅକ୍ଟୋବର ମାସରେ ଡକ୍ଟର ରାଜାରମନ୍ନାଙ୍କୁ ଭାରତକୁ ପରମାଣୁ ଅସ୍ତ୍ରରେ ସଜ୍ଜିତ କରିବାକୁ ସବୁଜ ସଙ୍କେତ ପ୍ରଦାନ କରିଥିଲେ । ଦେଶର ପ୍ରଥମ ପରମାଣୁ ବୋମା ପ୍ରକଳ୍ପ ବମ୍ବେରେ ଭାବା ପରମାଣୁ ଗବେଷଣା କେନ୍ଦ୍ରରେ ଆରମ୍ଭ ହୋଇଥିଲା । ୧୯୭୪ ମସିହା ମଇମାସ ୧୮ ତାରିଖ ଦିନ ପ୍ରାୟ ୧୫୦୦ କିଲୋଗ୍ରାମ ବିଶିଷ୍ଟ ଗୋଟିଏ ପ୍ଲୁଟୋନିୟମ ପରମାଣୁ ବିସ୍ଫୋରଣ ପୋଖରାନଠାରେ ଭାରତର ବୈଜ୍ଞାନିକମାନେ ପରୀକ୍ଷା କରିଥିଲେ । ଏହାପରେ ଏ କ୍ଷେତ୍ରରେ ଆଉ ବିଶେଷ କିଛି ପରମାଣୁ ପରୀକ୍ଷା ନିରୀକ୍ଷା ହୋଇ ପାରିନଥିଲା । ଚୀନ ଏବଂ ପାକିସ୍ଥାନର ମତିଗତି ଲକ୍ଷ୍ୟ କରି ଦୀର୍ଘ ପଚିଶ ବର୍ଷ ପରେ ମେ ୧୧ ତାରିଖ ସୋମବାର ବୁଦ୍ଧ ପୂର୍ଣ୍ଣିମା (୧୯୯୮ ମସିହା) ଦିନ ଦିବା ୩ଟା ୪୫ ମିନିଟରେ ପୋଖରାନ ଠାରେ ଦ୍ୱିତୀୟ 'ପରମାଣୁ ବୋମାର ପରୀକ୍ଷା କରାଯାଇଥିଲା । ୪୮ ଘଣ୍ଟା ମଧ୍ୟରେ ପ୍ରଚଣ୍ଡ

ଶକ୍ତିଶାଳୀ ଉଦଜାନ ବୋମା ସହିତ ମୋଟ ୫ ଟି ପରମାଣୁ ବୋମା ଭାରତ ପରୀକ୍ଷା କରିବାକୁ ସମର୍ଥ ହୋଇଥିଲା । ଏହି ବିସ୍ଫୋରଣ ଏତେ ପ୍ରଚଣ୍ଡ ଥିଲା ଯେ, ପ୍ରାୟ ୪୦୦ କିଲୋମିଟର ପର୍ଯ୍ୟନ୍ତ ଏହାର ତୀବ୍ରତା ଅନୁଭୂତ ହୋଇଥିଲା । ଏହି ଦ୍ୱିତୀୟ ଥର ପରୀକ୍ଷାର ବିଶେଷତ୍ୱ ହେଲା, ଭାରତ ଉଦଜାନ ବୋମା ନିର୍ମାଣ କରିବାକୁ ଯେ ସମର୍ଥ, ତାହା ପ୍ରମାଣିତ ହେଲା । ଏଥରକୁ ମିଶାଇ ଭାରତ ଛଅଟି ବୋମା ପରୀକ୍ଷା କଲା । ଏ କ୍ଷେତ୍ରରେ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ଅଟଳବିହାରୀ ବାଜପେୟୀଙ୍କ ଦୃଢ଼ ପଦକ୍ଷେପ ଓ ମନୋବୃତ୍ତି ନିଶ୍ଚିତ ଭାବରେ ସ୍ୱାଗତଯୋଗ୍ୟ ।

୧୯୯୮ ମସିହାର ପରମାଣୁ ପରୀକ୍ଷା ପରେ ସମଗ୍ର ବିଶ୍ୱରେ ଗଭୀର ପ୍ରତିକ୍ରିୟା ସୃଷ୍ଟି ହୋଇଛି । କେତେକ ରାଷ୍ଟ୍ର ଏହା ଏସିଆ ଭୂଖଣ୍ଡରେ ଛାୟା ଯୁଦ୍ଧକୁ ପ୍ରେରଣା ଯୋଗାଇବ ବୋଲି କହିବା ସମୟରେ ଅନ୍ୟ କେତେକ ଏହାକୁ ଭାରତର ଅପରିଣାମଦର୍ଶିତାର ପରିଚାୟକ ବୋଲି କହିଛନ୍ତି । ରୁଷ ବ୍ୟତିରେକେ ପ୍ରାୟ ଅନ୍ୟାନ୍ୟ ପରମାଣୁ ଶକ୍ତିସମ୍ପନ୍ନ ରାଷ୍ଟ୍ରଗୁଡ଼ିକ ଏଥିପାଇଁ ତୀବ୍ର ପ୍ରତିକ୍ରିୟା ପ୍ରକାଶ କରିଛନ୍ତି । ଆମେରିକା, ଇଂଲଣ୍ଡ, ଅଷ୍ଟ୍ରେଲିଆ, ଜାପାନ ଆଦି ଦେଶ ଆର୍ଥନୀତିକ କଟକଣା ଜାରି କରିଛନ୍ତି । ବିକାଶ କ୍ଷେତ୍ର ପାଇଁ ମିଳିବାକୁ ଥିବା ଋଣ ମଞ୍ଜୁରରେ ବାଧା ସୃଷ୍ଟି କରିଛନ୍ତି । ପାକିସ୍ଥାନ ମଧ୍ୟ ଚୀନ ସହଯୋଗରେ ଅନ୍ୟ ଏକ ଆଣବିକ ପରୀକ୍ଷା କରିଛି । ସମସ୍ତ ପ୍ରତିକ୍ରିୟା ଓ ଆର୍ଥିକ କଟକଣା ସତ୍ତ୍ୱେ ଭାରତ ନିଜ ସ୍ଥିତିରେ ଅଟଳ ରହିଛି । ଅନ୍ୟାନ୍ୟ ପାରମାଣବିକ ଶକ୍ତିସମ୍ପନ୍ନ ରାଷ୍ଟ୍ର ମଧ୍ୟରେ ନିଜକୁ ସାମିଲ କରିପାରିଛି । ଏହାଦ୍ୱାରା ବିଶ୍ୱରେ ଭାରତ ଯେ ଏକ ଶକ୍ତିଶାଳୀ ରାଷ୍ଟ୍ର ରୂପେ ନିଜକୁ ପ୍ରତିଷ୍ଠିତ କରିପାରିଛି, ଅସ୍ୱୀକାର କରାଯାଇନପାରେ ।

ପ୍ରତ୍ୟେକ ସ୍ୱାଧୀନ ରାଷ୍ଟ୍ରର ନିଜର ସାର୍ବଭୌମତ୍ୱ ଓ ଅଖଣ୍ଡତା ବଜାୟ ରଖିବାର ନୈତିକ କର୍ତ୍ତବ୍ୟ ରହିଛି । ଯେତେବେଳେ ଭାରତର ପଡ଼ୋଶୀ ରାଷ୍ଟ୍ର ଆଣବିକ ପରୀକ୍ଷା କରିବା ସଙ୍ଗେ ସଙ୍ଗେ ବିଭିନ୍ନ କ୍ଷେତ୍ରରେ ମାରାତ୍ମକ ଅସ୍ତ୍ରଶସ୍ତ୍ର ସଂଗ୍ରହ କରୁଛନ୍ତି, ସେତେବେଳେ ଭାରତ ଏ କ୍ଷେତ୍ରରେ ପଶ୍ଚାଦ୍‌ପଦ ହେବା ଅନୁଚିତ । ପାକିସ୍ଥାନ ଭାରତରେ ସନ୍ତ୍ରାସବାଦୀ କାର୍ଯ୍ୟକଳାପ ଜାରି ରଖିବା ସଙ୍ଗେ ସଙ୍ଗେ ସୀମାରେ ଛାୟାଯୁଦ୍ଧ ଚାଲୁ ରଖିଛି । ଚୀନ ଏଯାବତ୍ ଭାରତର କେତେକ ଅଞ୍ଚଳ ଜବରଦସ୍ତ ମାଡ଼ି ବସିଛି । ଆରବ ଦେଶଗୁଡ଼ିକର ଭାରତ ପ୍ରତି ମନୋଭାବ ଆଦୌ ଅନୁକୂଳ ନୁହେଁ । ଚୀନ ମଧ୍ୟ ବିଭିନ୍ନ କ୍ଷେତ୍ରରେ ପାକିସ୍ଥାନ ପ୍ରତି ସହଯୋଗର ହାତ ବଢ଼ାଇ ଚାଲିଛି । ଏ ପରିପ୍ରେକ୍ଷୀରେ ଭାରତ ନିଜକୁ ପରମାଣୁ ଅସ୍ତ୍ରରେ ଶକ୍ତିଶାଳୀ କରିବା ବର୍ତ୍ତମାନ ସମୟର ଯେ ଏକ ବଡ଼ ଆହ୍ୱାନ, ସ୍ୱୀକାର କରିବାକୁ ପଡ଼ିବ ।



# ବିମାନ ଅପହରଣ

(ଉପକ୍ରମ, ବିଶ୍ୱରେ ବିମାନ ଅପହରଣର ଇତିହାସ, ଭାରତରେ ବିମାନ ଅପହରଣ, ୧୯୯୯ ବିମାନ ଅପହରଣ ଘଟଣା, ବିମାନ ଅପହରଣର ଉଦ୍ଦେଶ୍ୟ, ବିଶ୍ୱ ସ୍ତରରେ ପ୍ରତିକ୍ରିୟା, ବିମାନ ଅପହରଣ ରୋକିବା ନିମିତ୍ତ ବିଭିନ୍ନ କମିଟି ଗଠନ, ଉପସଂହାର)

ସାଂପ୍ରତିକ ପୃଥିବୀରେ ଉଗ୍ରବାଦୀ କାର୍ଯ୍ୟକଳାପ ମଣିଷର ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଉପରେ ପ୍ରଶ୍ନବାଚୀ ସୃଷ୍ଟି କରିଛି । ସନ୍ତ୍ରାସବାଦୀଗଣ ବିଭିନ୍ନ ସମୟରେ ସାଂଘାତିକ ମାରଣାସ୍ତ୍ରରେ ସଜ୍ଜିତ ହୋଇ ନିଜର ବ୍ୟକ୍ତିଗତ ବା ଦଳଗତ ସ୍ୱାର୍ଥ ପାଇଁ ବିମାନ ଅପହରଣ କାର୍ଯ୍ୟରେ ବ୍ୟାପୃତ ରହୁଛନ୍ତି । ଏମାନେ ସମୟେ ସମୟେ ଯାତ୍ରୀମାନଙ୍କର ଧନ କେବଳ ଅପହରଣ କରନ୍ତି ନାହିଁ, ରକ୍ତମୁହାଁ ହୋଇ ନିରୀହ ମଣିଷଙ୍କର ରକ୍ତରେ ହୋରୀ ଖେଳିଥାନ୍ତି । ପୁଣି ବେଳେ ବେଳେ ଏପରି ଅପ୍ରୀତିକର ଦାବିମାନ ବାଢ଼ି ବସୁଛନ୍ତି ଯାହା ପୂରଣ କରିବାରେ ବ୍ୟକ୍ତିବିଶେଷ କିମ୍ବା ସରକାର ଅସମର୍ଥ ହେଉଛନ୍ତି । ଏହାଦ୍ୱାରା ବହୁ ସମୟରେ ଧନଜନ ନଷ୍ଟ ହେବା ସଙ୍ଗେ ସଙ୍ଗେ, ବହୁ ମୂଲ୍ୟବାନ ବିମାନ ଧ୍ୱଂସ ପାଇଯାଉଛି । ସଂପ୍ରତି ବିମାନଯାତ୍ରା ଆଉ ଆରାମଦାୟକ ଯାତ୍ରା ନ ହୋଇ ବିପଦପୂର୍ଣ୍ଣ ହୋଇ ଉଠିଛି । ସନ୍ତ୍ରାସବାଦୀମାନଙ୍କର ଏ ପ୍ରକାର କାର୍ଯ୍ୟକଳାପ କୌଣସି ସଭ୍ୟ ଜାତି ବା ମଣିଷ ପକ୍ଷେ ଗ୍ରହଣୀୟ ନୁହେଁ । ଏହାର ବିଲୋପ ସର୍ବାଦୌ ଆବଶ୍ୟକ ବୋଲି ବିଭିନ୍ନ ସ୍ତରରେ ମତପ୍ରକାଶ ପାଉଛି ।

ବିଶ୍ୱରେ ବିମାନ ଅପହରଣ ନାଟକ ପ୍ରଥମେ ବ୍ରାଜିଲ ଓ ଗୁଏତମାଲାର ଅପହରଣକାରୀମାନେ ଆରମ୍ଭ କରିଛନ୍ତି । ବିଦେଶୀ କୂଟନୀତିଜ୍ଞମାନଙ୍କ ଅପହରଣ ମାଧ୍ୟମରେ ନିଜର ଦାବି ହାସଲ କରିବାକୁ ଏମାନେ ପ୍ରଥମେ ଚେଷ୍ଟା କରିଥିଲେ । ପରବର୍ତ୍ତୀ କାଳରେ ଆର୍ଜେଣ୍ଟିନା ଗରିଲାମାନେ ବିତ୍ତଶାଳୀ ହେବା ଉଦ୍ଦେଶ୍ୟରେ ବିଦେଶୀ ବ୍ୟବସାୟୀମାନଙ୍କୁ ଅପହରଣ କରନ୍ତି । ୧୯୨୩ ମସିହାରୁ ଏହି ଅପହରଣ ନାଟକ ଆରମ୍ଭ ହୋଇଥିଲେ ହେଁ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଏହାର ସଂଖ୍ୟା ବହୁପରିମାଣରେ ବୃଦ୍ଧି ପାଇଛି । ପୂର୍ବ ଇଉରୋପ ବାମପନ୍ଥୀ ଶାସନରୁ ମୁକ୍ତ ହେବା ସମୟରେ ୧୯୬୦ ପୂର୍ବରୁ କେତେକ ଆମେରିକୀୟ ବିମାନକୁ ଅପହରଣ କରାଯାଇଥିଲା । ୧୯୪୮ ରୁ ୬୮ ମଧ୍ୟରେ ୭୮ଟି ବିମାନ ଅପହୃତ ହୋଇଥିଲା । ୧୯୬୮ ମସିହାରେ ପାଲେଷ୍ଟାଇନ ଓ ଜର୍ମାନ୍ ଉଗ୍ରପନ୍ଥୀମାନେ ଫ୍ରାନ୍ସର ଏକ ବିମାନ ଅପହରଣ କରି ଚାଳିଶ ଦିନ ପରେ ଯାତ୍ରୀଙ୍କୁ ମୁକ୍ତ କରିଥିଲେ । କେତେକ ଉଗ୍ରପନ୍ଥୀଙ୍କୁ ନିଃସର୍ତ୍ତରେ ମୁକ୍ତ କରିବା ପାଇଁ ସେମାନେ ଏହି ବିମାନ ଅପହରଣ କରିଥିଲେ । ପାଲେଷ୍ଟାଇନ ମୁକ୍ତି ସଙ୍ଗଠନ (PLO) ରାଜନୀତିକ ସ୍ୱାର୍ଥ ସାଧନ ପାଇଁ ବିମାନ ଅପହରଣକୁ

ଏକ ଫଳପ୍ରଦ ମାଧ୍ୟମ ଭାବରେ ଗ୍ରହଣ କରିଥିଲେ । ୧୯୬୯ ରୁ ୭୧ ମଧ୍ୟରେ ପ୍ରାୟ ୧୫ଟି ବିମାନ ଅପହରଣ ହୋଇଥିଲା । ସେଥିମଧ୍ୟରୁ ୫ ଟି ଦୁର୍ଘଟଣାଗ୍ରସ୍ତ ଓ ଦୁଇଟି ଧ୍ୱଂସ ପାଇଥିଲା । ୫୬ ଜଣ ବ୍ୟକ୍ତି ନିହତ ଏବଂ ୭୩ ଜଣ ଆହତ ହୋଇଥିଲେ । ୧୯୬୭ ମସିହାରେ ସବୁଠାରୁ ଅଧିକ ଅପହରଣ ଘଟଣା ଘଟିଥିଲା । ଏହି ସମୟରେ ୯୨ ଟି ଅପହରଣ ହୋଇଥିବା ବେଳେ ତା'ର ତିନିବର୍ଷ ମଧ୍ୟରେ ୧୬ଟି ଅନୁରୂପ ଘଟଣା ଘଟିଥିଲା । ୧୯୬୮ ମସିହାରେ ଯେଉଁ ୧୮ଟି ବିମାନ ଅପହୃତ ହେଇ କ୍ୟୁବାକୁ ନିଆଯାଇଥିଲା ସେଥିରୁ ୧୩ ଟି ଅପହୃତ ହୋଇଗଲା ଆମେରିକାରୁ । ସେହିବର୍ଷ ୭୦୭ ଇସ୍ରାଏଲ ବୋଇଂ ବିମାନ ପାଲେଷ୍ଟାଇନ୍ ମୁକ୍ତି ସଙ୍ଗଠନର ୩ ଜଣ ସଦସ୍ୟଙ୍କ ଦ୍ୱାରା ଅପହରଣ କରାଯାଇ ଆଲଜେରିଆକୁ ନିଆଯାଇଥିଲା । ୧୯୭୦ ମସିହାରେ ଏହିମାନଙ୍କ ଦ୍ୱାରା ୩ ଟି ଜେଟ ବିମାନ ନିୟୁୟର୍କରୁ ମଧ୍ୟଏସିଆକୁ ନିଆଯାଇଥିଲା । ୧୯୭୨ ମସିହାରେ ଏହି ଅପହରଣ ପାଇଁ ବିଶ୍ୱ ବିମାନ ସଂସ୍ଥାକୁ ୧୫ ମିଲିୟନରୁ ଅଧିକ ଡଲାର ଅପହରଣକାରୀଙ୍କୁ ଦେବାକୁ ପଡ଼ିଥିଲା । ୧୯୭୩ ମସିହାରେ ୨୨ଟି ଓ ୧୯୭୪ ମସିହାରେ ୨୯ ଟି ବିମାନ ଅପହୃତ ହୋଇଥିଲା । ୧୯୭୬ ରେ ଜର୍ମାନ ଏୟାରଲାଇନ୍‌ସର ଏକ ବିମାନ ସନ୍ତ୍ରାସବାଦୀମାନଙ୍କ ଦ୍ୱାରା ଅପହୃତ ହୋଇଥିଲା ଏବଂ ୮ ଦିନ ପରେ ତା'ର ଯାତ୍ରୀମାନେ ମୁକ୍ତ ହୋଇଥିଲେ । ୧୯୮୧ରେ ପାକିସ୍ଥାନ ଏୟାରଲାଇନ୍‌ସର ଯାତ୍ରୀବାହୀ ବିମାନ ଗିରଫ ଉଗ୍ରବାଦୀଙ୍କ ମୁକ୍ତି ଦାବିରେ ଅପହୃତ ହୋଇଥିଲା ଏବଂ ୧୩ ଦିନ ପରେ ତା'ର ଯାତ୍ରୀମାନେ ମୁକ୍ତ ହୋଇଥିଲେ । ୧୯୮୪ରେ ୧୭ ଜଣ ଗିରଫ ସନ୍ତ୍ରାସବାଦୀଙ୍କ ମୁକ୍ତି ଦାବିକୁ ନେଇ ଏକ ଏୟାରଲାଇନ୍‌ସ ବିମାନକୁ ଅପହରଣ କରାଯାଇ ୬ଦିନ ପରେ ମୁକ୍ତ କରାଯାଇଥିଲା । ୧୯୮୫ ମସିହାରେ ମଧ୍ୟ ୪୮ ଜଣ ଉଗ୍ରପନ୍ଥୀଙ୍କୁ ମୁକ୍ତି କରିବାକୁ ଗୋଟିଏ ବିମାନ ଅପହରଣ କରାଯାଇ ୧୫ ଦିନ ପରେ ଛଡ଼ା ଯାଇଥିଲା । ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଶହ ଶହ ବିମାନ ଅପହରଣ କରାଯାଇଛି । ଅନେକ ଧନଜୀବନ ନଷ୍ଟ ହୋଇଛି । ମାତ୍ର ଆନ୍ତର୍ଜାତୀୟ ସ୍ତରରେ କୌଣସି ସଫଳ ପଦକ୍ଷେପ ଏପରି ଘଟଣାକୁ ବନ୍ଦ କରିବାକୁ ଗ୍ରହଣ କରାଯାଇପାରି ନାହିଁ ।

ଭାରତରେ ଏହି ବିମାନ ଅପହରଣ ନାଟକର ପ୍ରଥମ ସୂତ୍ରପାତ ହୋଇଥିଲା ୧୯୭୧ ମସିହାରେ । ଜାମ୍ମୁକାଶ୍ମୀର ମୁକ୍ତି ସାମ୍ମୁଖ୍ୟ (JKLF) ର ମୁଖ୍ୟ ଅମାନୁଲ୍ଲାଖାଁ ଶ୍ରୀନଗର ଯାଉଥିବା ଭାରତୀୟ ବିମାନବାହିନୀର ଏକ ବିମାନକୁ ଇସ୍‌ଲାମାବାଦ ଅପହରଣ କରି ନେଇଥିଲେ । ୧୯୮୧ ମସିହା ସେପ୍ଟେମ୍ବର ମାସରେ ଦିଲ୍ଲୀ-ଶ୍ରୀନଗର ବିମାନଟିକୁ ଶିଖ ଉଗ୍ରପନ୍ଥୀମାନେ ଲାହୋର ଅପହରଣ କରିନେଇଥିଲେ । ୧୯୮୪ ସେପ୍ଟେମ୍ବର ୧୩ ତାରିଖରେ ଶ୍ରୀନଗର-ଦିଲ୍ଲୀ ବିମାନକୁ ଶିଖଛାତ୍ର ସଂଘ ଦ୍ୱାରା ଲାହୋର ଅଭିମୁଖେ ନେଇଯାଇଥିଲେ । ୧୯୯୦ ସେପ୍ଟେମ୍ବର ୧୩ ତାରିଖରେ କୋଇମ୍ବାଟୁର-ବାଙ୍ଗାଲୋର-ଚେନ୍ନାଇ ବିମାନ ଶ୍ରୀଲଙ୍କା ଦିଗରେ

ଅପହରଣ କରି ନିଆଯାଇଥିବା ସମୟରେ ସେହି ବର୍ଷ ନଭେମ୍ବର ୧୦ ତାରିଖରେ ୨୨୧ ଜଣ ଯାତ୍ରୀଙ୍କୁ ନେଇ କଲିକତା ଅଭିମୁଖେ ଆସୁଥିବା ଏୟାରଲାଇନ୍‌ସର ବିମାନଟିକୁ ବର୍ମା ଉଗ୍ରପନ୍ଥୀ ଅପହରଣ କରିନେଇଥିଲେ । ୧୯୯୩ ଜାନୁଆରୀ ୨୨ ରେ ପାଟନା-ଲକ୍ଷ୍ନୌ-ଦିଲ୍ଲୀ ବିମାନକୁ ରାଜନୈତିକ ସନ୍ତ୍ରାସବାଦୀ ଅପହରଣ କରିଥିବା ବେଳେ ସେହି ବର୍ଷ ମାର୍ଚ୍ଚ ୨୭ ରେ ଭାରତୀୟ ବିମାନ ବାହିନୀର ହାଇଦ୍ରାବାଦ-ଦିଲ୍ଲୀ ବିମାନକୁ ଜଣେ ଶିଖ ଉଗ୍ରପନ୍ଥୀ ହରଣ କରିଥିଲେ । ୧୯୯୩ ଅପ୍ରେଲ ୧୦ ଓ ଅପ୍ରେଲ ୨୪ ରେ ଯଥାକ୍ରମେ ବିଶ୍ୱବିଦ୍ୟାଳୟ ସମସ୍ୟା ସମାଧାନ ଦାବିରେ ୪ଜଣ କଲେଜ ଛାତ୍ର ଲକ୍ଷ୍ନୌରୁ ଦିଲ୍ଲୀ ଯାଉଥିବା ବିମାନ ଏବଂ ଦିଲ୍ଲୀରୁ ଶ୍ରୀନଗର ଯାଉଥବା ବୋଇଂ ୭୩୭ ବିମାନଟି ଅପହରଣ କରିଥିଲେ । ୧୯୯୪ ଜାନୁଆରୀ ୧୩ ତାରିଖରେ ୫୬ ଜଣ ଯାତ୍ରୀ ଓ ୭ ଜଣ ବିମାନ କର୍ମଚାରୀଙ୍କୁ ନେଇ ବାଙ୍ଗାଲୋରରୁ ଚେନ୍ନାଇ ଯାଉଥିବା ବିମାନଟି ଅପହରଣ ହୋଇଥିଲା । ଶତାବ୍ଦୀର ଶେଷ ବିମାନ ଅପହରଣ ହୋଇଥିଲା ୧୯୯୯ରେ ।

୧୯୯୯ ମସିହା ଡିସେମ୍ବର ୨୪ ତାରିଖରେ ଅପରାହ୍ନ ୪/୨୫ ମିନିଟରେ ଇଣ୍ଡିଆନ ଏୟାରଲାଇନ୍‌ସର ଯାତ୍ରୀବାହୀ ଆଇ.ସି.-୮୧୪ କାଠମାଣ୍ଡୁ ଓ ଦିଲ୍ଲୀ ମଧ୍ୟରେ ଚଳାଚଳ କରୁଥିବା ବିମାନଟିକୁ ଦୁର୍ବୃତ୍ତମାନେ ଅପହରଣ କରିନେଲେ । ଏହି ବିମାନଟିରେ ୧୦୬ ଜଣ ପୁରୁଷ, ୫୭ ଜଣ ମହିଳା, ୧୧ ଜଣ ବାଳକ, ୪ ଜଣ ଶିଶୁ ଓ ୧୧ ଜଣ ବିମାନ କର୍ମଚାରୀଙ୍କୁ ମିଶାଇ ୧୮୯ ଜଣ ଥିଲେ । ଠିକ୍ ୪/୫୫ ମିନିଟ୍‌ରେ ଭାରତୀୟ ଆକାଶମାର୍ଗରେ ପ୍ରବେଶ କରିବା ମାତ୍ରେ ଲକ୍ଷ୍ନୌ ନିକଟରୁ ବିମାନଟିକୁ ସମସ୍ତ ଆତଙ୍କବାଦୀମାନେ ଲାହୋର ଅଭିମୁଖେ ଉଡ଼ାଇ ନେଇଥିଲେ । ୬/୨୦ ମିନିଟରେ ଲାହୋରରେ ବିମାନଟିକୁ ଅବତରଣ ପାଇଁ କର୍ତ୍ତୃପକ୍ଷଙ୍କୁ ଅନୁମତି ମାଗିବାରୁ ସେମାନେ ଅଗ୍ରାହ୍ୟ କରିବାରୁ ବିମାନଟି ଅମୃତସରର ରାଜାସାନ୍‌ସୀ ବିମାନଘାଟି ଉପରେ ଉଡ଼ିଥିଲା । ଜାଳେଣି ନେବାପାଇଁ ପ୍ରତିଶ୍ରୁତି ପାଇବା ପରେ ଅପହର୍ତ୍ତାମାନେ ୭/୨୦ ମିନିଟ୍‌ରେ ବିମାନଟିକୁ ସେଠାରେ ଅବତରଣ କଲେ । ଖବର ପାଇ ଜାତୀୟ ନିରାପତ୍ତା ରକ୍ଷୀର ବିଶେଷ ପ୍ରଶିକ୍ଷଣ ପ୍ରାପ୍ତ ବ୍ଲାକ କ୍ୟାଟ କମାଣ୍ଡୋ ଦିଲ୍ଲୀରୁ ଆସି ଅମୃତସରରେ ପହଞ୍ଚିବା ବେଳକୁ ସେମାନେ ସେହି ସ୍ଥାନ ଛାଡ଼ି ଚାଲିଯାଇଥିଲେ । ଏହିଠାରେ ମଧୁଚନ୍ଦ୍ରିକା ଉପଲକ୍ଷେ ନେପାଳ ଯାଇଥିବା ୨୫ ବର୍ଷ ବୟସ୍କ ରୁପିନ୍ କଟିୟାଲାଙ୍କୁ ମୁହଁ ଓ ଆଖିରେ ପଟି ବାନ୍ଧିବାରେ ବିଳମ୍ବ କରିବାରୁ ଛୁରୀ ଭୁଷି ହତ୍ୟା କରିଥିଲେ । ମଧ୍ୟରାତ୍ରରେ ବିମାନଟି ଦୁବାଇରେ ଅବତରଣ କରି ୩୦ ହଜାର ଲିଟର ଜାଳେଣି ଓ ଖାଦ୍ୟ ପ୍ରତିବଦଳରେ ୨୭ ଜଣ ଯାତ୍ରୀ ଏବଂ ରୁପିନ୍‌ଙ୍କ ମୃତଦେହ ହସ୍ତାନ୍ତର କରିଥିଲେ । ଡିସେମ୍ବର ୨୫ ତାରିଖ ସକାଳ ୮/୩୦ ମିନିଟ୍‌ରେ ଭାରତର ଅନୁମତି ନେଇ କାନ୍ଦାହାର ବିମାନଘାଟିର କର୍ତ୍ତୃପକ୍ଷ ବିମାନଟିକୁ ଅବତରଣ କରିବାକୁ ଅନୁମତି ଦେଇଥିଲେ । ଏହିଠାରେ ବିମାନ ଅପହରଣକାରୀଙ୍କ

ସହିତ ଭାରତ ସରକାରଙ୍କର ଆଲୋଚନା ହେଲା । ଯେଉଁମାନେ ବିମାନ ଅପହରଣରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ସେମାନେ ହେଲେ ଇବ୍ରାହିମ ଆଥର, ସହିଦ୍ ଅଖ୍ତାର ସୟେଦ, ସନି ଅହମ୍ମଦ କାଜୀ, ମିସ୍ତ୍ରୀ ଜହୁର ଇବ୍ରାହିମ୍ ଏବଂ ରାଜେଶ ଗୋପାଳବର୍ମା ଓରଫ ସକୀର । ଏମାନେ ପ୍ରଥମେ ୩୬ ଜଣ ସନ୍ତ୍ରାସବାଦୀଙ୍କୁ ମୁକ୍ତ କରିବାକୁ ଏବଂ ୮୬୦ କୋଟି ଟଙ୍କା ନେବାକୁ ତଥା ନିହିତ ଆଫଗାନ୍ ଆତଙ୍କବାଦୀ ସାଜିଜ୍ ଆଫଗାନୀର କଫିନ୍ ପାଇବାକୁ ଦାବି କରୁଥିଲେ । କଥାବାର୍ତ୍ତାରେ ଅଚଳାବସ୍ଥା ସୃଷ୍ଟି ହେବାରୁ ଅପହରଣକାରୀ ତିନିଜଣ ସନ୍ତ୍ରାସବାଦୀ ମହମ୍ମଦ ମାସୁର ଆଝାର, ମୁସ୍ତାକ ଅହମ୍ମଦ ଜାରଗାର ଏବଂ ଅହମ୍ମଦ ଓମର ସୟେଦକୁ ମୁକ୍ତି ଦାବିରେ ଅଟଳ ରହିବାରୁ ସେହି ମାସ ୩୧ ତାରିଖରେ ବୈଦେଶିକ ମନ୍ତ୍ରୀ ଯଶୋବନ୍ତ ସିଂହ ଉପରୋକ୍ତ ତିନିଜଣ ସନ୍ତ୍ରାସବାଦୀଙ୍କୁ ନେଇ କାନ୍ଦାହାର ବିମାନଘାଟିରେ ପହଞ୍ଚିଲେ ଓ ତତ୍ପରେ ଅବଶିଷ୍ଟ ବନ୍ଦୀ ଯାତ୍ରୀମାନେ ମୁକ୍ତ ହେଲେ । ଏହି ଅପହରଣ ଘଟଣାରେ ପାକିସ୍ଥାନ ଏବଂ ବିନ୍ ଲାଡେନଙ୍କ ହାତ ଥିବାର ଜଣାଯାଏ । ଏମାନଙ୍କ ବ୍ୟତୀତ ବିମାନ ଅପହରଣ ଘଟଣାରେ ଆହୁରି ଅନେକ ବ୍ୟକ୍ତି ସଂଶ୍ଲିଷ୍ଟ ଥିବାର ଜଣାଯାଏ । ୩ ଜଣ ଟ୍ରାଭେଲ ଏଜେଣ୍ଟ ସୁରେଶ ଭଢିନାଥେ, ପ୍ରକାଶ ଯାଦବ ଓ ବିଷ୍ଣୁ ୟେରାମ ବିମାନ ଅପହର୍ତ୍ତାଙ୍କୁ ସାହାଯ୍ୟ କରୁଥିବା ଏଜେଣ୍ଟମାନଙ୍କୁ ଜାଲ ପାସପୋର୍ଟ ଯୋଗାଇଥିବାରୁ ସେମାନଙ୍କୁ ଗିରଫ କରାଯାଇଛି । ଆଇ.ସି. ୮୧୪ ବିମାନ ଅପହରଣରେ ସହଯୋଗ କରିଥିବା ଚାରିଜଣ ସନ୍ତ୍ରାସବାଦୀ ହରକତ-ଉଲ-ଆନସର ସନ୍ତ୍ରାସବାଦୀ ଗୋଷ୍ଠୀର । ଏମାନେ ହେଲେ ପାକିସ୍ଥାନର ମହମ୍ମଦ ରେହନ୍, ମହମ୍ମଦ ଇକ୍‌ବଲ, ନେପାଳର ୟୁସୁଫ ନେପାଳୀ ଏବଂ ଭାରତର ଅବଦୁଲ ଲତିଫ । ଏମାନଙ୍କୁ ବମ୍ବେଠାରେ ଗିରଫ କରାଯାଇଛି । ଏହି ସନ୍ତ୍ରାସବାଦୀଙ୍କ ମୁଖ୍ୟ କେନ୍ଦ୍ର ରାଓଲପିଣ୍ଡି ବୋଲି ଜଣାଯାଇଛି ଏବଂ ଏମାନେ ପାକିସ୍ଥାନ ଗୁଇନ୍ଦାବିଭାଗ ଆଇ.ଏସ.ଆଇ.ର ଏଜେଣ୍ଟ । ଅପହରଣକାରୀମାନେ ମୁକ୍ତ ହେବା ପରେ ପାକିସ୍ଥାନରେ ଅବସ୍ଥାନ କରୁଥିବାର ଜଣାଯାଏ । ପୁଣି ଯେଉଁ ସନ୍ତ୍ରାସବାଦୀଙ୍କୁ ବିମାନ ଯାତ୍ରୀଙ୍କ ବଦଳରେ ମୁକ୍ତ କରାଗଲା, ସେମାନେ ସମସ୍ତେ ପାକିସ୍ଥାନର ହୋଇଥିବାରୁ ବିମାନ ଅପହରଣ ଘଟଣାରେ ପାକିସ୍ଥାନର ହାତ ଥିବାର ସ୍ପଷ୍ଟ ପ୍ରମାଣ ମିଳୁଛି ।

ମୁଖ୍ୟତଃ ବିଶ୍ୱରେ ବିମାନ ଅପହରଣର ଯେଉଁ ନାଟକ ଚାଲିଛି ତା'ର ମୁଖ୍ୟ ଉଦ୍ଦେଶ୍ୟ ତିନୋଟି । ସାମରିକ, ରାଜନୀତିକ ଓ ଆର୍ଥନୀତିକ କାରଣରୁ ଏହା ଘଟୁଥିବାର ଜଣାଯାଏ । ଭାରତୀୟ ବିମାନ ଅପହରଣରେ ପାକିସ୍ଥାନ ସନ୍ତ୍ରାସବାଦୀଗଣ ମୁଖ୍ୟ ଭୂମିକା ଗ୍ରହଣ କରୁଛନ୍ତି । ଜାମ୍ମୁ ଓ କାଶ୍ମୀର ପ୍ରଶ୍ନଟି ଏବେ ମଧ୍ୟ ତାଙ୍କ ଅସଫଳ ଏଜେଣ୍ଡାରୁ ବାଦ୍ ପଡ଼ି ନାହିଁ । ବିଭିନ୍ନ ଭାବରେ ଅପହରଣ, ଆକ୍ରମଣ ଓ ସନ୍ତ୍ରାସବାଦୀ କାର୍ଯ୍ୟକଳାପ ମାଧ୍ୟମରେ ସେମାନେ ଏହି ଇସୁଟିକୁ ଆନ୍ତର୍ଜାତିକୀକରଣ କରିବାକୁ ଚେଷ୍ଟା କରୁଛନ୍ତି । କିନ୍ତୁ ଏପରି କାର୍ଯ୍ୟକଳାପ ଦ୍ୱାରା ସେମାନେ ଯେ ନିନ୍ଦିତ ଓ ବାସନ୍ଦ ହୋଇପଡୁଛନ୍ତି, ତାହା ସେମାନେ ଜାଣିପାରୁ ନାହାନ୍ତି ।

ଭାରତର ଏହି ବିମାନ ଅପହରଣ ଘଟଣାଟି ବିଶ୍ୱ ସ୍ତରରେ ଗଭୀର ପ୍ରତିକ୍ରିୟା ସୃଷ୍ଟି କରିଛି । କାନ୍ଦାହାରରେ ବିମାନଟି ଅଟକି ରହିଥିବା ସମୟରେ ଆମେରିକା, ଅଷ୍ଟ୍ରେଲିଆ, ସ୍ପେନ୍, ଫ୍ରାନ୍ସ, ନେପାଳ, କାନାଡ଼ା, ଜାପାନ ଓ ବାଙ୍ଗଲାଦେଶର ସ୍ୱତନ୍ତ୍ର ପ୍ରତିନିଧିଗଣ ପହଞ୍ଚି ଅପହର୍ତ୍ତାମାନଙ୍କ ସହିତ କଥାବାର୍ତ୍ତା କରିଥିଲେ । ଫ୍ରାନ୍ସ, ଆମେରିକା, ଚୀନ୍, ଅଷ୍ଟ୍ରେଲିଆ, ରୁଷ ଆଦି ଦେଶ ସନ୍ତ୍ରାସବାଦୀମାନଙ୍କୁ ନିନ୍ଦା କରିବା ସଙ୍ଗେ ସଙ୍ଗେ ଭାରତ ପ୍ରତି ସହାନୁଭୂତି ପ୍ରକାଶ କରିଥିଲେ । ଆମେରିକାର ରାଷ୍ଟ୍ରପତି ଭାରତ ଆସିଥିବା ସମୟରେ ପାକିସ୍ଥାନକୁ ସନ୍ତ୍ରାସବାଦୀ କାର୍ଯ୍ୟକଳାପ ବନ୍ଦ କରିବାକୁ ସତର୍କ କରାଇ ଦେଇଥିବା ଉଲ୍ଲେଖଯୋଗ୍ୟ ଘଟଣା ।

ବିଶ୍ୱରେ ଷଷ୍ଠ ଦଶକର ବିମାନ ଅପହରଣ ଘଟଣାଟି ବିଶେଷ ଆଲୋଡ଼ନ ସୃଷ୍ଟି କରିଛି । ଏହାର ଅବସାନ ନିମିତ୍ତ ବିଭିନ୍ନ ସମୟରେ କମିଟି ଗଠନ କରାଯାଇ ଆଇନ ପ୍ରଣୟନ କରାଯାଇଛି । ୧୯୬୩ ମସିହାରେ ଟୋକିଓଠାରେ ବିମାନ ଅପହରଣ ସଂକ୍ରାନ୍ତରେ ପ୍ରଥମ ଆଲୋଚନା ଚକ୍ର ଅନୁଷ୍ଠିତ ହୋଇଥିଲା । ଏଥିରେ କେତେଗୁଡ଼ିଏ ନିୟମ ପ୍ରଣୟନ କରାଯାଇ ତା'ର ପାଳନ ନିମିତ୍ତ ବିଭିନ୍ନ ଦେଶକୁ ଅନୁରୋଧ କରାଯାଇଥିଲା । ଏହି ସମ୍ମିଳନୀର ବିଭିନ୍ନ ଧାରାରେ ଯାତ୍ରୀ, ବିମାନ, ଯାତ୍ରୀଙ୍କ ସମ୍ପତ୍ତି, ପାଇଲଟ ତଥା ବିମାନର ଶୃଙ୍ଖଳା ପାଇଁ ବହୁ ନିୟମ ପ୍ରଣୟନ କରାଯାଇଛି । ୧୯୭୦ ମସିହା ୧୬ ଡିସେମ୍ବରରେ ଆନ୍ତର୍ଜାତିକ ବେସାମରିକ ବିମାନ ଚଳାଚଳ ସଂସ୍ଥା ଟୋକିଓ ସମ୍ମିଳନୀରେ କେତେକ ପ୍ରସ୍ତାବ ଗ୍ରହଣ କରାଯାଇ ବିମାନ ଅପହରଣକୁ ଏକ ପ୍ରତ୍ୟର୍ପଣ ଯୋଗ୍ୟ ଅପରାଧ ବୋଲି କୁହାଯାଇଛି । ମଣ୍ଟ୍ରିଲ ଠାରେ ବିମାନ ସୁରକ୍ଷା ଚୁକ୍ତି ୧୯୭୧, ହେଗ୍ ଠାରେ ବିମାନର ବେଆଇନ ଅପହରଣ – ୧୯୭୦ ଚୁକ୍ତି ତଥା ଜାତିସଙ୍ଘ ନିରାପତ୍ତା ପରିଷଦର କେତେକ ପ୍ରସ୍ତାବ ବିମାନ ଅପହରଣ ରୋକିବା ପାଇଁ ଉଲ୍ଲେଖଯୋଗ୍ୟ ହୋଇଥିଲେ ହେଁ ଏହାର ବିଶେଷ କିଛି ପ୍ରଭାବ ଅପହରଣକାରୀମାନଙ୍କ ଉପରେ ପଡ଼ି ନାହିଁ ବୋଲି ମନେହୁଏ ।

ବିମାନ ଅପହରଣ ଏକ ଧର୍ତ୍ତବ୍ୟ ଅପରାଧ । ବିଶ୍ୱ ସ୍ତରରେ ଏଥିପାଇଁ ବହୁ ଆଲୋଚନା ହେଉଛି । ନିରାପତ୍ତାରକ୍ଷୀ ବିମାନ ବନ୍ଦରଗୁଡ଼ିକର ସୁରକ୍ଷା ପାଇଁ ମୁତୟନ ହୋଇଛନ୍ତି । ତଥାପି ଏହି କଳଙ୍କିତ କାର୍ଯ୍ୟର ଅବସାନ ଘଟି ନାହିଁ । ଏଥିପାଇଁ ସବୁସ୍ତରରେ ସଚେତନତାର ଆବଶ୍ୟକତା ରହିଛି । ବିଶ୍ୱ ସ୍ତରରେ ଏହି ସନ୍ତ୍ରାସବାଦୀ କାର୍ଯ୍ୟକଳାପ ରୋକିବା ନିମିତ୍ତ ଏକ ମିଳିତ କମିଟି ଗଠନ କରାଯାଇ ପ୍ରତ୍ୟେକ ଘଟଣାରେ ପରସ୍ପରକୁ ଆନ୍ତରିକତାର ସହିତ ସହଯୋଗ କଲେ ଏହି ବିମାନ ଅପହରଣ ଘଟଣାଟି କେତେ ପରିମାଣରେ ଯେ ହ୍ରାସ ପାଇବ, ଏଥିରେ ସନ୍ଦେହ ନାହିଁ ।

●

# ମହାବାତ୍ୟା

(ଉପକ୍ରମ, ମହାବାତ୍ୟା କିପରି ହେଲା, ମହାବାତ୍ୟାର କାରଣ, ମହାବାତ୍ୟା ପରବର୍ତ୍ତୀ କ୍ଷୟକ୍ଷତି, ବିଭିନ୍ନ ଦେଶ ଓ ଅନୁଷ୍ଠାନର ସାହାଯ୍ୟ ସହାନୁଭୂତି, ବାତ୍ୟା ପରବର୍ତ୍ତୀ ସରକାରୀ ଯୋଜନା, ଉପସଂହାର)

୧୯୯୯ ମସିହା ଅକ୍ଟୋବର ୧୭ ଓ ୧୮ ତାରିଖରେ ଗଞ୍ଜାମ ଏବଂ ଗଜପତି ଜିଲ୍ଲାରେ ପ୍ରବଳ ବାତ୍ୟା ଏବଂ ୨୯ ଓ ୩୦ ତାରିଖରେ ସମଗ୍ର ଉପକୂଳ ଅଞ୍ଚଳରେ ମହାବାତ୍ୟା ଧ୍ୱସ୍ତବିଧ୍ୱସ୍ତ କରିଥିଲା ଓଡ଼ିଶାର ଅଧିକାଂଶ ଅଞ୍ଚଳ । ଏହି ମହାବାତ୍ୟା ଯୋଗୁଁ ବହୁଧନ ଓ ଜନକ୍ଷତି ଘଟିବା ସଙ୍ଗେ ସଙ୍ଗେ ଓଡ଼ିଶାର ଆର୍ଥିକ ମାନଦଣ୍ଡକୁ ସମ୍ପୂର୍ଣ୍ଣ ବିପର୍ଯ୍ୟସ୍ତ କରିଦେଇଛି । ୧୭ ତାରିଖରେ ସଙ୍ଘଟିତ ବାତ୍ୟା ଗଞ୍ଜାମ ଓ ଗଜପତି ଜିଲ୍ଲାର ଉତ୍ସବ ପାର୍ବଣ ମୁହୂର୍ତ୍ତଗୁଡ଼ିକୁ ଶ୍ମଶାନର ନୀରବତାରେ ପରିଣତ କରିଥିବା ସମୟରେ ୨୯ ତାରିଖ ବାତ୍ୟା ଆଗାମୀ ଦୀପାବଳୀର ଆଲୋକ ମୁହୂର୍ତ୍ତ ସବୁକୁ ଅନ୍ଧକାର ପୂର୍ଣ୍ଣ କରିଦେଇଥିଲା । ଆନନ୍ଦ ଉତ୍ସବର ତିଥି ଦୁଃଖ ଓ କ୍ରନ୍ଦନର ମହାତିଥିରେ ପରିବର୍ତ୍ତିତ ହୋଇଥିଲା । ହଜାର ହଜାର ନିରୀହ ଜୀବନ ଅକାଳରେ ନିର୍ବାପିତ ହୋଇଯାଇଥିବା ସମୟରେ ଲକ୍ଷ ଲକ୍ଷ ମଣିଷ ବିପନ୍ନ ଓ ଗୃହଶୂନ୍ୟ ହୋଇଯାଇଛନ୍ତି । ବୋଧହୁଏ ଭାରତ ଇତିହାସରେ ଏହାହିଁ ଥିଲା ସବୁଠାରୁ ପ୍ରଳୟଙ୍କରୀ ମହାବାତ୍ୟା, ଯାହାର ଠିକ୍ ବିବରଣୀ ପ୍ରଦାନ କରିବା ସରକାରୀ ବା ବେସରକାରୀ ସଂସ୍ଥା ଦ୍ୱାରା ଏଯାବତ୍ ସମ୍ଭବ ହୋଇ ନାହିଁ ।

ଅକ୍ଟୋବର ୧୭ ତାରିଖରେ ଗୋପାଳପୁରଠାରେ ସଂଘଟିତ ଘୂର୍ଣ୍ଣିଝଡ଼ ଥାଇଲାଣ୍ଡ ସମୁଦ୍ରରେ ନିମ୍ନଚାପ ସୃଷ୍ଟି କରିଥିଲା । ତାହା ପୁଣି ଆଣ୍ଡାମାନ ଦେଇ ଫେରିବା ସମୟରେ ପାରାଦ୍ୱୀପ ଠାରେ କେନ୍ଦ୍ରୀଭୂତ ହୋଇ ମହାବାତ୍ୟାର ରୂପ ଗ୍ରହଣ କରି ଉପକୂଳବର୍ତ୍ତୀ ଜିଲ୍ଲାଗୁଡ଼ିକର ଧ୍ୱଂସ ସାଧନ କରିଥିଲା । ଏହି ମହାବାତ୍ୟା ପୂର୍ବ, ଉତ୍ତର ଓ ଦକ୍ଷିଣ ଓଡ଼ିଶାକୁ ସମ୍ପୂର୍ଣ୍ଣ ଶ୍ରୀହୀନ କରି ଦେଇଥିଲା । ଏହି ସାମୁଦ୍ରିକ ଝଡ଼ ୨୬ ତାରିଖ ସକାଳେ ପୋର୍ଟ ବ୍ଲେୟାର ନିକଟରୁ ୩୦୦ କି.ମି. ଦୂରରେ ସୃଷ୍ଟି ହୋଇ ପରେ ଉତ୍ତର-ପଶ୍ଚିମ ଦିଗରେ ଗତିକରି ପାରାଦ୍ୱୀପ ଠାରେ ପହଞ୍ଚିବା ସଙ୍ଗେ ସଙ୍ଗେ ସୁପର ସାଇକ୍ଲୋନ ବା ମହାବାତ୍ୟାରେ ପରିଣତ ହୋଇଥିଲା । ସାଧାରଣତଃ ଯେଉଁ ପବନର ବେଗ ଘଣ୍ଟାକୁ ୩୪ ନୋଟିକାଲ ମାଇଲ୍‌ସରୁ ୭୪ ନୋଟିକାଲମାଇଲ୍ ତାହା ବାତ୍ୟା, ଯାର ବେଗ ଘଣ୍ଟାପ୍ରତି ୪୮ ରୁ ୬୩ ନୋଟିକାଲ ମାଇଲ୍‌ସ ତାହା ପ୍ରବଳ ବାତ୍ୟା, ଯାର ବେଗ ଘଣ୍ଟାପ୍ରତି ୬୪ ରୁ ୧୧୯ ନୋଟିକାଲ ମାଇଲ୍‌ସ ତାହା ଅତି ପ୍ରବଳ ବାତ୍ୟା ଓ ଘଣ୍ଟା ପ୍ରତି ଯାହାର ବେଗ ୧୫୦ ନୋଟିକାଲ ମାଇଲ୍‌ସ ଠାରୁ ଅଧିକ ତାହା ମହାବାତ୍ୟା ନାମରେ ପରିଚିତ । ଅକ୍ଟୋବର ୨୯ ତାରିଖରେ ଓଡ଼ିଶାରେ ସଂଘଟିତ ବାତ୍ୟା ଏହି ମହାବାତ୍ୟା ପର୍ଯ୍ୟାୟଭୁକ୍ତ ।

ପରିବେଶବିତ୍ ଙ୍କ ମତରେ ଲୁଣା ଜଙ୍ଗଲକ୍ଷୟ ଏବଂ ଜଙ୍ଗଲକ୍ଷୟ ଯୋଗୁଁ ସାଧାରଣତଃ ବାତ୍ୟାର ପ୍ରକୋପ ଅଧିକ ହୋଇଥାଏ । ପୂର୍ବରୁ ସମୁଦ୍ରକୂଳରେ ଯେତିକି ଝାଉଁ ଜଙ୍ଗଲ ଏବଂ ହେନ୍ତାଳବଣ ଥିଲା ତାହା ବର୍ତ୍ତମାନ ଶେଷ ହେବା ଉପରେ । ଏକଦା ଓଡ଼ିଶାରେ ୨୭୦ ବର୍ଗ କିଲୋମିଟର ଲୁଣା ଜଙ୍ଗଲ ଥିଲା । ୧୯୮୯ ମସିହାରେ ଓରସାକ ସଂସ୍ଥା ଦ୍ୱାରା କରାଯାଇଥିବା ଗଣନା ଅନୁଯାୟୀ ଏହାର ପରିମାଣ ଥିଲା ୨୧୬ ବର୍ଗ କିଲୋମିଟର । ଭାରତୀୟ ସର୍ବେକ୍ଷଣ ସଂସ୍ଥା ଏହାର ଆୟତନ ୨୧୧ ବର୍ଗ କି.ମି.କୁ ହ୍ରାସ ପାଇଛି । ବିଗତ ବାତ୍ୟାରେ ୧୭୦୦୦ ହେକ୍ଟର ଲୁଣା ଜଙ୍ଗଲ ନଷ୍ଟ ହୋଇଛି । ଯଦି ପୁଣି ଥରେ ଏହି ବାତ୍ୟା ସଂଘଟିତ ହୁଏ ତା' ହେଲେ ଓଡ଼ିଶାର ପ୍ରଭୂତ କ୍ଷତି ଘଟିବ । ଚିଙ୍ଗୁଡ଼ି ଚାଷ, ଚାଷଜମି ପାଇଁ ଓଡ଼ିଶାର ବହୁ ଜଙ୍ଗଲ ସମ୍ପଦ ନଷ୍ଟ ହେଉଛି । ଜଙ୍ଗଲ ମାଫିଆ ନିଜର ବ୍ୟକ୍ତିଗତ ସ୍ୱାର୍ଥପାଇଁ ବହୁପରିମାଣ ମୂଲ୍ୟବାନ କାଠ କାଟି ନେଉଛନ୍ତି । ଅଥଚ ସେହି ପରିମାଣରେ ବୃକ୍ଷ ରୋପଣ ହୋଇପାରୁ ନାହିଁ । ବୃକ୍ଷ କଟା ହୋଇଯାଉଥିବାରୁ ମୃତ୍ତିକା ମଧ ସଂରକ୍ଷଣ ହୋଇ ପାରୁ ନାହିଁ । ୧୦ ବର୍ଷ ପୂର୍ବେ ଯେତିକି ହେନ୍ତାଳ ବଣ ଥିଲା, ବର୍ତ୍ତମାନ ମାତ୍ର ତା'ର ଏକ ତୃତୀୟାଂଶ ରହିଛି । ହେନ୍ତାଳ ବଣ ବାତ୍ୟାର ପ୍ରକୋପକୁ ବହୁପରିମାଣରେ ପ୍ରତିହତ କରିଥାଏ । ବର୍ତ୍ତମାନ ସମୟ ଆସିଛି ପ୍ରତ୍ୟେକ ବ୍ୟକ୍ତି ଏବଂ ସରକାର ସେ ସମ୍ପର୍କରେ ତୀକ୍ଷ୍ଣ ଦୃଷ୍ଟି ଦେଇ ତା'ର ସୁରକ୍ଷା ନିମିତ୍ତ ଆଗେଇ ଆସିବା ଉଚିତ ।

ମହାବାତ୍ୟା ପରେ ଓଡ଼ିଶାର ଯେତିକି କ୍ଷୟକ୍ଷତି ଘଟିଛି, କେତେକ ବିଶେଷଜ୍ଞ କୁହନ୍ତି, ଏହାଦ୍ୱାରା ଓଡ଼ିଶା ୧୦ ବର୍ଷ ପଛକୁ ଫେରିଗଲା । ଏହି ପ୍ରଳୟଙ୍କରୀ ବାତ୍ୟାରେ ୨୫ ହଜାର ଲୋକ ମରିଥିବା ରିପୋର୍ଟ କେନ୍ଦ୍ର ସରକାରଙ୍କ ହସ୍ତଗତ ହୋଇଥିବା ବେଳେ ଓଡ଼ିଶା ସରକାର ଏହାର ସଂଖ୍ୟା ୧୧ ହଜାର ମଧ୍ୟରେ ସୀମିତ ରଖିଛନ୍ତି । ମାତ୍ର ବେସରକାରୀ ରିପୋର୍ଟରେ ଏହାର ସଂଖ୍ୟା ୫୦ ହଜାରରୁ ଅଧିକ ବୋଲି ସ୍ୱୀକାର କରାଯାଇଛି । ଜଗତ୍ସିଂହପୁର ଜିଲ୍ଲାରେ ସର୍ବାଧିକ ମୃତ୍ୟୁ ଓ କ୍ଷୟକ୍ଷତି ଘଟିଛି । ସେହିପରି ସରକାରୀ ହିସାବରେ ୩ ଲକ୍ଷ ୫୦ ହଜାରରୁ ଅଧିକ ଜୀବଜନ୍ତୁଙ୍କର ପ୍ରାଣହାନି ଘଟିଛି ବୋଲି କୁହାଯାଉଛି । ୧୭ ଲକ୍ଷ ୧୩ ହଜାର ୬୦୦ ବାସଗୃହ ଧ୍ୱଂସ ହୋଇଥିବା ସମୟରେ ୧କୋଟି ୨୦ ଲକ୍ଷ ଲୋକ ବିପନ୍ନ ହୋଇଛନ୍ତି । ୧୭ ଲକ୍ଷ ହେକ୍ଟରରୁ ଅଧିକ ଚାଷଜମି ନଷ୍ଟ ହୋଇଛି । ଉପକୂଳ ଅଞ୍ଚଳ ବାତ୍ୟାରେ ଜଳମଗ୍ନ ହୋଇଥିବା ସ୍ଥାନର ବିବରଣୀ ପ୍ରଦାନ କରି ସରକାରୀ ରିପୋର୍ଟରେ କୁହାଯାଇଛି କେନ୍ଦ୍ରାପଡ଼ା ଜିଲ୍ଲାର ୧୦୮୫୪୩, ଭଦ୍ରକର ୯୨୫୦୨, ଯାଜପୁରର ୬୩୨୩୯, ଜଗତ୍ସିଂପୁରର ୪୪୪୩୭, କଟକର ୨୪୯୩୪, ବାଲେଶ୍ୱରର ୨୨୧୨୩, ପୁରୀର ୨୧୬୨୧, କେଉଁଝରର ୧୮୪୬୬, ଢେଙ୍କାନାଳର ୬୧୫୬, ଖୋର୍ଦ୍ଧାର ୪୮୭୬, ମୟୂରଭଞ୍ଜର ୨୬୮୩ ହେକ୍ଟର ଅଞ୍ଚଳ ଜଳମଗ୍ନ ହୋଇଥିଲା । ୧୭ ଓ ୧୮ ତାରିଖ ଗଜପତି ଓ ଗଞ୍ଜାମ ଜିଲ୍ଲା ବାତ୍ୟାରେ ୨୦୦ ରୁ ଅଧିକ ଲୋକ ମୃତ୍ୟୁ ବରଣ କରିଥିବା ସମୟରେ ୩ ଲକ୍ଷ ୨୩ ହଜାର ଘର

ଭାଙ୍ଗିଥିଲା ଓ ୧ ଲକ୍ଷ ୨୦ ହଜାର ହେକ୍ଟର ଚାଷଜମି ନଷ୍ଟ ହୋଇଥିଲା । ୩୬ ଘଣ୍ଟା ଧରି ୨୦୦ ରୁ ୩୦୦ କି.ମି. ବେଗରେ ପବନ ଏବଂ ୧୦୦ ଘଣ୍ଟା ଧରି ପ୍ରବଳ ବର୍ଷାରେ ପୁରୀ, ନୟାଗଡ଼, ଖୋର୍ଦ୍ଧା, କଟକ, ଜଗତସିଂହପୁର, କେନ୍ଦ୍ରାପଡ଼ା, ଯାଜପୁର, ଢେଙ୍କାନାଳ, ଭଦ୍ରକ, ବାଲେଶ୍ୱର, ମୟୂରଭଞ୍ଜ,କେଉଁଝର ଆଦି ଜିଲ୍ଲାର ଅକଳନୀୟ କ୍ଷୟକ୍ଷତି ହୋଇଛି । ଏକ ଆକଳନ କରି କୁହାଯାଇଛି ଏହି ସମୟରେ ୬୦୦ ମିଲିମିଟର ବର୍ଷା ହୋଇଛି । ବାତ୍ୟାରେ ୧୪ଟି ଜିଲ୍ଲାର ପ୍ରାଥମିକ, ଉଚ୍ଚପ୍ରାଥମିକ ଓ ହାଇସ୍କୁଲ ସଂଖ୍ୟା ମିଶି ୨୨, ୫୯୧ ଟି ବିଦ୍ୟାଳୟ କ୍ଷତିଗ୍ରସ୍ତ ହୋଇଛି । ୯୭ ଟି ବ୍ଲକ୍‌ର ପ୍ରାୟ ୧୨ ହଜାର ୧୩୫ଟିରୁ ଅଧିକ୍ ଗ୍ରାମ ନଷ୍ଟ ହୋଇଯାଇଛି । ରାଜ୍ୟର ୭୦ ଭାଗ ଲୋକଙ୍କ ମୁଖ୍ୟ ଜୀବିକା କୃଷି । ବିଗତ ବାତ୍ୟାରେ ସମସ୍ତ ଫସଲ ନଷ୍ଟ ହୋଇଯାଇଛି । ୧୫ ରୁ ୨୦ ଫୁଟ ଉଚ୍ଚରେ ସମୁଦ୍ର ପାଣି ମାଡ଼ିଆସି ବହୁ ଘରଦ୍ୱାର ଓ କୃଷି ଜମି ନଷ୍ଟ କରିଛି । ବାତ୍ୟା ପରବର୍ତ୍ତୀ କାଳରେ ୩୦ ଲକ୍ଷ ଲୋକ ବିଭିନ୍ନ ରୋଗରେ ପୀଡ଼ିତ ହୋଇଛନ୍ତି । ବାତ୍ୟା ପରେ ରାଜ୍ୟର ପର୍ଯ୍ୟଟନ ଶିଳ୍ପ ଗୁରୁତର ସଙ୍କଟର ସମ୍ମୁଖୀନ ହୋଇଛି । ଏଯାବତ୍ ସେସବୁର ପୁନରୁଦ୍ଧାର ହୋଇପାରୁ ନ ଥିବାରୁ ଓଡ଼ିଶା ଏଥିରୁ ପାଉଥିବା ଅର୍ଥ ହରାଉଛି । ସେହିପରି ୪୦,୦୦୦ କ୍ଷୁଦ୍ର, ମଧ୍ୟମ ଓ ବୃହତ୍ ଶିଳ୍ପ ସଂସ୍ଥାର ୩୦୦୦ କୋଟି ଟଙ୍କାର କ୍ଷତି ଘଟିଛି ବୋଲି ପ୍ରାଥମିକ ଆକଳନରୁ ଜଣାପଡ଼ିଛି । ଜାତିସଂଘର ତତ୍କାଳୀନ ମହାସଚିବ କୋଫିଆନନ ଓଡ଼ିଶାର ପ୍ରଳୟଙ୍କରୀ ବାତ୍ୟାକୁ ଆନ୍ତର୍ଜାତିକ ବିପତ୍ତି ବୋଲି ସ୍ୱୀକାର କରିଥିଲେ । ସାଂସଦ ଗୀତା ମୁଖାର୍ଜୀ ଏରସମା ବାତ୍ୟାବିପନ୍ନ ଅଞ୍ଚଳ ଦେଖି ଯେଉଁ ଅନୁଭୂତି ଲାଭ କରିଥିଲେ, ସଂସଦରେ ତାହା ବର୍ଣ୍ଣନା କରୁ କରୁ କୋହ ସମ୍ବରଣ କରିନପାରି କାନ୍ଦି ପକାଇଥିଲେ । ଶତାବ୍ଦୀର ଏହି ପ୍ରଳୟଙ୍କରୀ ବାତ୍ୟା କେତେ ଲୋକଙ୍କର ଯେ କି ପ୍ରକାର କ୍ଷତି କରିଛି, ତାହା ଆକଳନ କରିବା ସମ୍ଭବ ନୁହେଁ । ମା' ହରାଇଛି ପୁଅ, ବାପ ହରାଇଛି ପୁତ୍ରକନ୍ୟା, ସ୍ୱାମୀ ହରାଇଛି ପତ୍ନୀ, ପତ୍ନୀ ହରାଇଛି ସ୍ୱାମୀ ବା କେଉଁ ପରିବାରର ସମସ୍ତେ ଏହି ମହାଧ୍ୱଂସର ଶିକାର ହୋଇଛନ୍ତି । ସତରେ ଏହି ବାତ୍ୟାର ଧ୍ୱଂସମୁଖୀ କାଣ୍ଡ ସମ୍ପୂର୍ଣ୍ଣ ବର୍ଣ୍ଣନାତୀତ ।

ବାତ୍ୟା ପରବର୍ତ୍ତୀ ସମୟରେ ବହୁ ସାହାଯ୍ୟର ହାତ ଆଗେଇ ଆସିଛି । ସେନାବାହିନୀ ଦିନରାତି କାର୍ଯ୍ୟକରି ବାତ୍ୟାଞ୍ଚଳରେ ଭାଙ୍ଗି ପଡ଼ିଥିବା ଅସଂଖ୍ୟ ବୃକ୍ଷ, ଟେଲିଫୋନ, ବିଦ୍ୟୁତ ଖୁଣ୍ଟ ସଫାକରିବା ସଙ୍ଗେ ସଙ୍ଗେ ପଡ଼ିଥିବା ଶବ ତଥା ରିଲିଫ ବଣ୍ଟନ କାର୍ଯ୍ୟରେ ସହାୟତା କରିଛନ୍ତି । ପଡ଼ୋଶୀ ଆନ୍ଧ୍ରପ୍ରଦେଶର ମୁଖ୍ୟମନ୍ତ୍ରୀ ଚନ୍ଦ୍ରବାବୁ ନାଇଡୁଙ୍କ ସାହାଯ୍ୟ ଓ ସହାନୁଭୂତି ଉଲ୍ଲେଖଯୋଗ୍ୟ । ସେ ପ୍ରଚୁର ପରିମାଣରେ ରିଲିଫ୍ ସାମଗ୍ରୀ ପଠାଇବା ସଙ୍ଗେ ସଙ୍ଗେ ଲୋକ ପଠାଇ ରାସ୍ତାଘାଟ ସଫେଇରେ ସାହାଯ୍ୟ କରିଛନ୍ତି । ଓଡ଼ିଶାର ପୁନର୍ଗଠନରେ ପଶ୍ଚିମବଙ୍ଗ, ଆନ୍ଧ୍ର, ତାମିଲନାଡୁ, ମଧ୍ୟପ୍ରଦେଶ , ଦିଲ୍ଲୀ ଆଦି ରାଜ୍ୟ ସାହାଯ୍ୟ କରିବାର ପ୍ରତିଶ୍ରୁତି ଦେଇଛନ୍ତି । ବିଶେଷ ଭାବରେ କ୍ଷତିଗ୍ରସ୍ତ ହୋଇଥିବା ଜଗତସିଂହପୁର, ଭଦ୍ରକ, କେନ୍ଦ୍ରାପଡ଼ା, ବାଲେଶ୍ୱର,

ଯାଜପୁର, ପୁରୀ, ମୟୂରଭଞ୍ଜ, କେନ୍ଦୁଝର ଓ ଗଞ୍ଜାମ ଜିଲ୍ଲାକୁ ଯଥାକ୍ରମେ ମହାରାଷ୍ଟ୍ର, ରାଜସ୍ଥାନ, କର୍ଣ୍ଣାଟକ, ଅରୁଣାଚଳପ୍ରଦେଶ, ମଧ୍ୟପ୍ରଦେଶ, ଦିଲ୍ଲୀ, ନାଗାଲାଣ୍ଡ, ଗୋଆ ଓ ଆନ୍ଧ୍ରପ୍ରଦେଶ ପୋଷ୍ୟ ଜିଲ୍ଲା ଭାବରେ ଗ୍ରହଣ କରିଛନ୍ତି । ଏହି ଜିଲ୍ଲାମାନଙ୍କର ପୁନରୁଦ୍ଧାର ଓ ସାମଗ୍ରିକ ବିକାଶ ଦିଗରେ ସେମାନେ ଦୃଷ୍ଟି ଦେବେ ବୋଲି ପ୍ରତିଶ୍ରୁତି ଦେଇଛନ୍ତି । ଓଡ଼ିଶା ସରକାର ବାତ୍ୟାଞ୍ଚଳ ପାଇଁ ୨୧ ସୂତ୍ରୀ କାର୍ଯ୍ୟକ୍ରମ ପ୍ରସ୍ତୁତ କରିଛନ୍ତି । କେନ୍ଦ୍ର ସରକାରଙ୍କ ତରଫରୁ ୬୫୦ କୋଟି ଟଙ୍କା ଯୋଗାଇ ଦିଆଯାଇଛି । ବାତ୍ୟା ବିପନ୍ନଙ୍କୁ ୬ ମାସ ପାଇଁ ବି.ପି.ଏଲ. ଦରରେ ଖାଦ୍ୟଶସ୍ୟ ଯୋଗାଇ ଦେବାକୁ ତତ୍‌କାଳୀନ ପ୍ରତିରକ୍ଷା ମନ୍ତ୍ରୀ ଜର୍ଜ ଫର୍ଣ୍ଣାଡିଜଙ୍କ ଅଧ୍ୟକ୍ଷତାରେ ଗଠିତ ଉଚ୍ଚସ୍ତରୀୟ ଟାସ୍କଫୋର୍ସ ପରାମର୍ଶ ଦେଇଥିଲେ । ରବର୍ଟ ମୁରଙ୍କ ନେତୃତ୍ୱରେ ବିଶ୍ୱବ୍ୟାଙ୍କର ଏକ ଉଚ୍ଚସ୍ତରୀୟ ପ୍ରତିନିଧି ଦଳ ସପ୍ତାହ ବ୍ୟାପୀ ଓଡ଼ିଶା ଆସିଥିଲେ । ଏହି ପ୍ରତିନିଧି ଦଳରେ ଶକ୍ତି, ଜଳସମ୍ପଦ, ଶିକ୍ଷା, ସ୍ୱାସ୍ଥ୍ୟ, ଗୃହନିର୍ମାଣ, ପରିବେଶ, ପାନୀୟ ଜଳ ଯୋଗାଣ, ପରିମଳ ବ୍ୟବସ୍ଥା ଏବଂ ସଡ଼କ ନିର୍ମାଣ କ୍ଷେତ୍ରରେ ସହାୟତା କରିବା ପାଇଁ ବରିଷ୍ଠ ବିଶେଷଜ୍ଞମାନେ ଆସିଥିଲେ । ବିଶ୍ୱବ୍ୟାଙ୍କ୍‌ର ୧୬ ଜଣିଆ ପ୍ରତିନିଧି ଦଳଙ୍କୁ ଡି.ଏଫ୍.ଆଇ.ଡି.ର ୬ ଜଣ ବିଶେଷଜ୍ଞଙ୍କ ସହାୟତା ସହିତ ୟୁ.ଏସ.ଡି. ର ବିଶେଷଜ୍ଞ ସହାୟତା କରିଛନ୍ତି । ଓଡ଼ିଶାର କ୍ଷତିଗ୍ରସ୍ତ ଅଞ୍ଚଳକୁ ବିଭିନ୍ନ ସହାୟତା ଯୋଗାଇ ଦେବାକୁ ଏମାନେ ମଧ୍ୟ ପ୍ରତିଶ୍ରୁତି ଦେଇଛନ୍ତି । ହୁଡ୍‌କୋ ୧ ଲକ୍ଷ ୩୫ ହଜାର ଘର ନିର୍ମାଣ ପାଇଁ ୪୮୭ କୋଟି ୫୦ ଲକ୍ଷ ଟଙ୍କା କୋହଳ ସୁଧରେ ଋଣ ମଞ୍ଜୁର କରିଛି । ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ, ନେହେରୁ ଯୁବକେନ୍ଦ୍ର, ହାଇଦ୍ରାବାଦର ଜୈନଶ୍ରୀ ସଙ୍ଘ, ସମାଜରିଲିଫ କମିଟି, ରାମକୃଷ୍ଣ ମିଶନ, ଆନନ୍ଦ ମାର୍ଗ ୟୁନିଭରସାଲ ରିଲିଫଟିମ୍, ଭାରତ ସେବାଶ୍ରମ, ହିନ୍ଦ-ସେବକ ସଙ୍ଘ, ଶୋଭନୀୟ ଆନ୍ଦୋଳନ, ରେଡକ୍ରସ, ଫିଉଚର କ୍ରିଏଟର ଆଦି ବହୁ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଅକୁଣ୍ଠ ସାହାଯ୍ୟ କରିଛନ୍ତି । ଏତଦ୍ ବ୍ୟତୀତ ଅନ୍ୟାନ୍ୟ ବହୁ ଅନୁଷ୍ଠାନ ଓ ସରକାରୀ ସାହାଯ୍ୟ ମଧ୍ୟ ଏଥିପାଇଁ ମିଳିଛି ।

ବାତ୍ୟା ପରବର୍ତ୍ତୀ ସରକାରୀ ଯୋଜନା ଅନେକ । ମାତ୍ର ତାହା କେତେଦୂର କାର୍ଯ୍ୟକାରୀ ହେବ, ତାହା ସେମାନଙ୍କ କାର୍ଯ୍ୟଦକ୍ଷତା ଉପରେ ନିର୍ଭର କରେ । ଘୋଷଣା କରାଯାଇଥିବା ୨୧ ସୂତ୍ରୀ କାର୍ଯ୍ୟକ୍ରମରୁ ଏଯାବତ୍ କେତୋଟି ପୂରଣ ହୋଇଛି, ସରକାରୀ କଳ ତାହା ଜାଣନ୍ତି । ବାତ୍ୟାରେ ବାସଗୃହ ହରାଇଥିବା ପ୍ରକୃତ ବ୍ୟକ୍ତି ଏ ପର୍ଯ୍ୟନ୍ତ ଘରଭଙ୍ଗା ଟଙ୍କା ପାଇ ନାହାନ୍ତି । ଓଡ଼ିଶା ଉପକୂଳବର୍ତ୍ତୀ ସୀମାରେଖା ପ୍ରାୟ ୪୮୦ କି.ମି. । ଯେତିକି ଲୁଣା ଜଙ୍ଗଲ ନଷ୍ଟ ହୋଇଛି ତା'ର ପୁନରୁଦ୍ଧାର ପାଇଁ ସରକାର ପ୍ରତିଶ୍ରୁତି ଦେଇଛନ୍ତି । ୧୦୦୦ ହେକ୍ଟର ନୂଆକରି ଲୁଣାଜଙ୍ଗଲ ସୃଷ୍ଟି ହେବାର ଯୋଜନା ହୋଇଛି । ଅତୀତରେ ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ ବାତ୍ୟା, ବନ୍ୟା ଓ ମରୁଡ଼ିର ପ୍ରତିକାର ପାଇଁ ଏକ ମାଷ୍ଟରପ୍ଲାନ କରିଥିଲେ । ତାଙ୍କ ମତରେ ବାତ୍ୟାରୋଧ ପାଇଁ ଓଡ଼ିଶା ଉପକୂଳରେ ଅନ୍ୟୂନ ପାଞ୍ଚ କିଲୋମିଟର ବ୍ୟାପୀ

ଲୁଣା ଜଙ୍ଗଲ ରହିବା ଉଚିତ । ପ୍ରଥମ ପର୍ଯ୍ୟାୟରେ ଗୁଳ୍ମବନ, ଦ୍ୱିତୀୟ ପର୍ଯ୍ୟାୟରେ ଲୁଣାଜଙ୍ଗଲ ଏବଂ ତୃତୀୟ ପର୍ଯ୍ୟାୟରେ ଝାଉଁବଣ ରହିଲେ ସାମୁଦ୍ରିକ ଝଡ଼କୁ ଅନେକ ପରିମାଣରେ ପ୍ରତିହତ କରିପାରିବ । ବର୍ତ୍ତମାନ ନୂଆଜଙ୍ଗଲ ସୃଷ୍ଟିର ଆବଶ୍ୟକତା ରହିଛି । ଜଙ୍ଗଲ କଟା ଉପରେ ସରକାର କଟକଣା ଜାରିକରି ସାମାଜିକ ବନ୍ୟପ୍ରକଳ୍ପ ଯୋଜନାକୁ ତ୍ୱରାନ୍ୱିତ କଲେ ଏହି ସମସ୍ୟା କିଛି ପରିମାଣରେ ସମାଧାନ ହୋଇପାରିବ ।

ମହାବାତ୍ୟା ଓଡ଼ିଶାର ଆର୍ଥିକ ମେରୁଦଣ୍ଡ ଦୋହଲାଇ ଦେଇଛି । ଏଥିପାଇଁ ଆମେ ବିଭିନ୍ନ ରାଜ୍ୟ, ଅନୁଷ୍ଠାନ, କେନ୍ଦ୍ର ସରକାର ତଥା ବିଶ୍ୱର ବିଭିନ୍ନ ସ୍ଥାନରୁ ବହୁ ସାହାଯ୍ୟ ପାଇଛୁ । ମାତ୍ର ଦୁଃଖର ବିଷୟ ତା'ର ଉପଯୁକ୍ତ ବିନିଯୋଗ କରିପାରୁ ନାହୁଁ । ସରକାରୀ ଅଫିସରଙ୍କ ଠାରୁ ଆରମ୍ଭ କରି ବିଭିନ୍ନ ସ୍ତରର ନେତା ରିଲିଫ ହଡ଼ପ କରିବାର ଅଭିଯୋଗ ହୋଇଛି । ପଲିଥିନ ଦୁର୍ନୀତି, ଦାମିକା କମ୍ବଳ ହେରଫେର, ସରୁ ଚାଉଳର ଚୋରାକାରବାର, ଘରଭଙ୍ଗା ଟଙ୍କା ବଣ୍ଟନରେ ଦୁର୍ନୀତି ଏପରି ବହୁ ଅଭିଯୋଗ ଆସିଛି ଏବଂ କେତେକ କ୍ଷେତ୍ରରେ ଏହା ସତ୍ୟ ବୋଲି ପ୍ରମାଣିତ ହୋଇଛି । ବାହାରୁ ଆସିଥିବା ରିଲିଫକୁ ଠିକ୍ ଭାବରେ ରକ୍ଷଣାବେକ୍ଷଣ କରାଯାଇପାରି ନାହିଁ । ଓଡ଼ିଶାର ଏପରି ବିପତ୍ତି ସମୟରେ ସରକାର, ଅଫିସର, କର୍ମଚାରୀ ଓ ଜନସାଧାରଣ ନିଃସ୍ୱାର୍ଥପର ଭାବରେ କାର୍ଯ୍ୟ ନ କଲେ ଓଡ଼ିଶାର ସାମଗ୍ରିକ ବିକାଶ କଦାପି ସାଧିତ ହୋଇପାରିବ ନାହିଁ ।



## କାର୍ଗୀଲ ଯୁଦ୍ଧ

**(ଉପକ୍ରମ, ଇତିହାସ, ପାକିସ୍ଥାନର ଗେମ୍ ପ୍ଲାନ, ଗୁଇନ୍ଦା ବିଭାଗର ବିଫଳତା, ଯୁଦ୍ଧ ଓ ରାଜନୀତିକ ଛକାପଞ୍ଝା, ଆନ୍ତର୍ଜାତିକ ପ୍ରତିକ୍ରିୟା, ଭାରତୀୟ ସେନାଙ୍କ କୃତିତ୍ୱ, ପାକିସ୍ଥାନର ପରାଜୟ, ଉପସଂହାର)**

ବିଂଶ ଶତକ ଶେଷ ହେବାକୁ ମାତ୍ର ଗୋଟିଏ ବର୍ଷ ବାକି । ୧୯୯୯ ମସିହା ମେ ମାସରେ ପ୍ରଚାରିତ ହେଲା ଯେ, କେତେକ ସନ୍ତ୍ରାସବାଦୀ ପାକିସ୍ଥାନୀ ସୈନ୍ୟଙ୍କ ସହ ମିଶି କାର୍ଗୀଲର କେତେକ ସ୍ଥାନ ଦଖଲ କରିନେଇଛନ୍ତି । ବିଳମ୍ବ ହେଲେ ମଧ୍ୟ ଏହି ସମ୍ବାଦ ପ୍ରଚାରିତ ହେବା ସଙ୍ଗେ ସଙ୍ଗେ ଭାରତୀୟ ସୈନିକ ନିଜ ଜୀବନକୁ ବିପନ୍ନ କରି କାର୍ଗୀଲର ବରଫାବୃତ ଅଞ୍ଚଳରେ ଯୁଦ୍ଧ କରି ନିଜ ମାତୃଭୂମିର ସମ୍ମାନ ରକ୍ଷା ସହିତ ନିଜର ଅସୀମ ସାହସିକତାର ପରିଚୟ ପ୍ରଦାନ କଲେ । ପ୍ରାୟ ପନ୍ଦରହଜାର ଫୁଟ ଉଚ୍ଚ ପର୍ବତର ହିମଶୀତଳ ପରିବେଶରେ ପ୍ରକୃତି ଓ ପାକିସ୍ଥାନୀ ଭଡ଼ାଟିଆ ତଥା ସୈନ୍ୟମାନଙ୍କ ବିରୋଧରେ ସଂଗ୍ରାମ କରି ଯେଉଁ ବୀରତ୍ୱର ପରିଚୟ ଦେଲେ, ତାହା ସ୍ୱର୍ଣ୍ଣାକ୍ଷରରେ ଚିରଦିନ ଲିପିବଦ୍ଧ ରହିବ ।

୧୯୯୯ ମେ' ମାସରେ ପାକିସ୍ଥାନୀ ଭଡ଼ାଟିଆ ଉଗ୍ରବାଦୀ ତଥା ସୈନ୍ୟମାନଙ୍କ ସହିତ ପ୍ରତିକୂଳ ପରିବେଶରେ କାର୍ଗୀଲରେ ଯେଉଁ ଯୁଦ୍ଧ ହେଲା, ତା'ର ଇତିହାସ ଭାରତର ସ୍ୱାଧୀନତା ସହିତ ଓତପ୍ରୋତ ଜଡ଼ିତ । ସ୍ୱାଧୀନତାର ଗୋଟିଏ ଦିନ ପୂର୍ବରୁ ଅର୍ଥାତ୍ ୧୯୪୭ ମସିହା ଅଗଷ୍ଟ ୧୪ ତାରିଖରେ ଇଂରେଜମାନଙ୍କ ଚକ୍ରାନ୍ତରେ ଜନ୍ମ ନେଲା ପାକିସ୍ଥାନ । ସେତେବେଳେ ଜାମ୍ମୁକାଶ୍ମୀର ସ୍ୱାଧୀନ ରାଜ୍ୟ ଏବଂ ଏହାର ଶାସକ ମହାରାଜା ହରିସିଂ । ଜାମ୍ମୁ କାଶ୍ମୀରକୁ ନିଜ ଅଧୀନକୁ ନେବାପାଇଁ ତତ୍କାଳୀନ ପାକିସ୍ଥାନୀ ଶାସକଗଣ ଯେଉଁ ଯୁଦ୍ଧ ବାଦ୍ୟ ବଜାଇଥିଲେ, ଏଯାବତ୍ ତା'ର ଅବସାନ ହୋଇ ନାହିଁ । କାର୍ଗୀଲ ଯୁଦ୍ଧ ସେହି ଅସଫଳତାର ଏକ ପ୍ରତିକ୍ରିୟା । ଅଗଷ୍ଟ ୧୪, ୧୯୪୭ ରେ ପ୍ରଥମେ ପାକିସ୍ଥାନର ଶାସକ ଜାମ୍ମୁକାଶ୍ମୀରର ପୋଷ୍ଟଅଫିସ ଉପରେ ପାକିସ୍ଥାନୀ ପତାକା ଉଡ଼ାଇ କାଶ୍ମୀର ରାଜ୍ୟ ପାକିସ୍ଥାନ ଅନ୍ତର୍ଭୁକ୍ତ ହୋଇଛି ବୋଲି ପ୍ରଚାର କରିଦେଲେ । ଜିନ୍ନାଲିୟାକତ ରାଜା ହରିସିଂହଙ୍କ ଉପରେ ଚାପ ପ୍ରୟୋଗ କରିଥିଲେ ପାକିସ୍ଥାନ ସହିତ ମିଶିଯିବାକୁ । ଆର୍ଥନୀତିକ ଅବରୋଧ, ବହିଃଆକ୍ରମଣ ଏବଂ କାଶ୍ମୀରରେ ବସବାସ କରୁଥିବା ମୁସଲମାନ ଚାପ ମାଧମରେ ସେ କାଶ୍ମୀରକୁ ନିଜ ଅଧୀନକୁ ନେବାକୁ ଚେଷ୍ଟା କରିଥିଲେ । ଅକ୍ଟୋବର ୨୧ ତାରିଖରେ ଆବ୍‌ଟାବାଦରୁ କାଶ୍ମୀର ଉପରେ ଆକ୍ରମଣ ହେଲା । ରାଜା ହରିସିଂହଙ୍କ ଅନୁରୋଧ କ୍ରମେ ୧୯୪୭ ଅକ୍ଟୋବର ୨୭ ତାରିଖରେ ଭାରତୀୟ ସେନା ଅପରେସନ ଆରମ୍ଭ କଲେ । ଯୁଦ୍ଧର ଗତି ବଦଳିଗଲା । ପାକିସ୍ଥାନ ହେଲା ପରାଜିତ । କାଶ୍ମୀରକୁ ନିଜ ଆୟତ୍ତକୁ ନେବା ପାଇଁ ପାକିସ୍ଥାନ ଭାରତକୁ ବାରମ୍ବାର ଆକ୍ରମଣ କରିଛି । ୧୯୪୭, ୧୯୬୫, ୧୯୭୧ ଓ ୧୯୯୯ – ପ୍ରତ୍ୟେକ ଥର ଯୁଦ୍ଧରେ ପାକିସ୍ଥାନ ହୋଇଛି ପରାଜିତ । ଜିନ୍ନାଙ୍କ ଠାରୁ ଆରମ୍ଭ କରି ନଓ୍ୱାଜ ସରିଫ ଓ ମୁସାରଫ ପରଭେଜଙ୍କ ପର୍ଯ୍ୟନ୍ତ କାଶ୍ମୀର ହୋଇଛି ପାକିସ୍ଥାନ ଦେଶଭାଗର ଅସମାପ୍ତ ଏଜେଣ୍ଡା । କାର୍ଗିଲ ଆକ୍ରମଣରେ ପାକିସ୍ଥାନର ଶାସକ ଏହି ଆକ୍ରମଣକାରୀକୁ ମୁକ୍ତି ସଂଗ୍ରାମ ଆଖ୍ୟା ବୋଲି ନିଜ ମୁଣ୍ଡ ଉପରୁ ଦୋଷ ଖଲାସ କରିବାକୁ ଚେଷ୍ଟା କରିଛି ।

୧୯୮୮-୮୯ ମସିହାରୁ କାଶ୍ମୀର ଅଧିକାର ପାଇଁ ଅପରେସନ ଟୋପାକ୍ ନାମରେ ପାକିସ୍ଥାନ ଏକ ବ୍ଲୁପ୍ରିଣ୍ଟ ତିଆରି କରିଥିଲା । ଏହାର ମୁଖ୍ୟ ଥିଲେ ଜେନେରାଲ ଜିଆ-ଉଲ-ହକ୍ । ସିଆଚୀନ୍, କାର୍ଗୀଲ ଓ ରାଜୌରି-ପୁଞ୍ଚ ଏହି ତିନୋଟି ଅଞ୍ଚଳରେ ଗୁପ୍ତରେ ଭଡ଼ାଟିଆ ସୈନ୍ୟ ଓ ପାକ୍‌ସେନାଙ୍କୁ ପ୍ରବେଶ କରାଇ ଅତର୍କିତ ଆକ୍ରମଣ ଦ୍ୱାରା ଭାରତୀୟ ସୈନ୍ୟଙ୍କୁ କାଶ୍ମୀରର ମୂଳ ଉପତ୍ୟକା ଠାରୁ ବିଚ୍ଛିନ୍ନ କରାଇ ନେବା ଓ ପରେ ପରେ କାଶ୍ମୀରକୁ ନିଜ ଦଖଲକୁ ନେବା ଥିଲା ଏହାର ଉଦ୍ଦେଶ୍ୟ । ୧୯୯୯ ଆକ୍ରମଣର ଲକ୍ଷ୍ୟ ମଧ ତାହା ଥିଲା । ଗୁପ୍ତରେ କିଛି ସୈନ୍ୟ ଓ ସନ୍ତ୍ରାସବାଦୀଙ୍କୁ ପ୍ରବେଶ କରାଇ ନିୟନ୍ତ୍ରଣ ରେଖାଟିକୁ ପରିବର୍ତ୍ତନ କରିବାକୁ ଚେଷ୍ଟା କରିବା ସମୟରେ ଯଦି ଭାରତୀୟ ସୈନ୍ୟ ପ୍ରତିରୋଧ ଉଦ୍ଦେଶ୍ୟରେ ଏହି ନିୟନ୍ତ୍ରଣ ରେଖା ଅତିକ୍ରମ କରନ୍ତି, ତେବେ ଘଟଣାଟିକୁ ଆନ୍ତର୍ଜାତିକୀକରଣ କରିବା ସୁବିଧା ହେବ ବୋଲି ସେମାନଙ୍କର ଧାରଣା । ପାକିସ୍ଥାନ ଗେମ୍ ପ୍ଲାନର ମୁଖ୍ୟ ଲକ୍ଷ୍ୟ ହେଉଛି

କାଶ୍ମୀର ଘଟଣାକୁ ଆନ୍ତର୍ଜାତୀୟ ସ୍ତରକୁ ନେଇ ତୃତୀୟ ପକ୍ଷର ମଧ୍ୟସ୍ଥତା କରିବା; ଶ୍ରୀ-ନଗର ଲେହ ରାଜପଥକୁ ବିଚ୍ଛିନ୍ନ କରିବା, ସିମଳା ଚୁକ୍ତିନାମାର ନିୟନ୍ତ୍ରଣ ରେଖା ପରିବର୍ତ୍ତନ କରିବା ଏବଂ ଅନୁପ୍ରବେଶକାରୀଙ୍କ ପାଇଁ ଏକ ନୂତନ ପଥ ନିର୍ମାଣ କରି କାଶ୍ମୀର ଦଖଲ କରିବା ।

୧୯୯୯ ମସିହା ଫେବୃଆରୀ ମାସରେ ପ୍ରଥମେ କେତେକ ମେଷପାଳକମାନଙ୍କ ଦ୍ୱାରା କାର୍ଗୀଲ କ୍ଷେତ୍ରରେ ଅନୁପ୍ରବେଶକାରୀଙ୍କ ସମ୍ପର୍କରେ ସୂଚନା ମିଳିଥିଲା । ସାମରିକ ଗୋଇନ୍ଦା ବିଭାଗ ନିକଟରେ ଏହି ଖବର ପହଞ୍ଚାଇବା ମାତ୍ରେ ଗୁଇନ୍ଦା ଏଜେଣ୍ଟ ପୁଣି ସେମାନଙ୍କୁ ଠିକ୍ ଖବର ବୁଝିଆସିବା ନିମିତ୍ତ ପଠାଇଲେ । ସପ୍ତାହକ ପରେ ସେମାନେ ଯେଉଁ ଖବର ଦେଲେ ସେଥିରୁ ଜଣାଗଲା ପ୍ରାୟ ଦୁଇଶହରୁ ଅଧିକ ଅନୁପ୍ରବେଶକାରୀ ନିୟନ୍ତ୍ରଣ ରେଖା ଅତିକ୍ରମ କରି ଭାରତ ସୀମାରେ ପହଞ୍ଚିଛନ୍ତି । ମାର୍ଚ୍ଚ ମାସ ପ୍ରଥମ ସପ୍ତାହରେ ଗୋଇନ୍ଦା ଏଜେଣ୍ଟ କାର୍ଗିଲ ବ୍ରିଗେଡ କମାଣ୍ଡରଙ୍କ ନିକଟକୁ ଖବର ଦେଲେ ହେଁ, ଏହା ଉପରେ ସେ ବିଶେଷ ଗୁରୁତ୍ୱ ଦେଲେ ନାହିଁ । ଇତିମଧ୍ୟରେ ଦେଢ଼ମାସ ଅତିକ୍ରମ କରିଗଲା । ଅନୁପ୍ରବେଶକାରୀ ମାସ୍‌କୋ ଉପତ୍ୟକା ଠାରୁ ବାଦ୍‌ଲିକ୍ ପର୍ଯ୍ୟନ୍ତ ନିୟନ୍ତ୍ରଣ ରେଖା ଅତିକ୍ରମ କରି ନିଜକୁ ସୁବିଧାଜନକ ସ୍ଥିତିରେ ରଖି ସାରିଥିଲେ । ଘଟଣାର ଅନୁସନ୍ଧାନ ନିମିତ୍ତ ମେ' ମାସ ପ୍ରଥମ ସପ୍ତାହରେ ୨୦ ଜଣ ବିଶିଷ୍ଟ ଏକ ଦଳକୁ କାକସାର ପଠାଗଲା ଆଠ ଶିଖ ରେଜିମେଣ୍ଟର ଜଣେ ଲେଫଟ୍‌ନାଣ୍ଟଙ୍କ ଅଧୀନରେ । ମାତ୍ର ଲେଫ୍‌ଟନାଣ୍ଟଙ୍କ ସହିତ ସାତଜଣ ନିଖୋଜ ହେଲେ । ପରେ ପୁଣି ଚାରିଜାଠ ରେଜିମେଣ୍ଟର ଗୋଟିଏ ଦଳ ଯାଇଥିଲେ । ସେଥିରେ ମଧ୍ୟ ଅଫିସରଙ୍କ ସମେତ ସାତଜଣ ନିଖୋଜ ହୋଇଥିଲେ । ଏହାପରେ ବିପଦ ସଙ୍କେତ ସାମରିକ ବାହିନୀକୁ ବିଚଳିତ କଲା । ମେ' ୧୪ ତାରିଖରେ ଅନୁପ୍ରବେଶକାରୀଙ୍କୁ ତଡ଼ିବାକୁ ଭାରତୀୟ ସୈନ୍ୟ ବିଜୟ ଆରମ୍ଭ କଲେ । ୨୬ ମେ'ରୁ ଆରମ୍ଭ ହେଲା ବିମାନ ଆକ୍ରମଣ । ପ୍ରାୟ ୬୦୦ ଅନୁପ୍ରବେଶକାରୀ ପ୍ରବେଶ କରି ଭାରତୀୟ ଭୂଖଣ୍ଡର ୫/୬ କି.ମି. ଭିତରକୁ ପଶି ଆସିଥିଲେ । ଛୋଟ ଛୋଟ ଦଳରେ ଏମାନେ ଗୁଦେଚ୍, ଟାଇଗର୍ ହିଲ୍, ମସ୍କୋ ଉପତ୍ୟକା, ଦ୍ରାସ୍ ବାଦ୍‌ଲିକ୍ ଅଞ୍ଚଳର ପ୍ରାୟ ୨୦୦ କି.ମି. ସ୍ଥାନର ଘାଟି ମାଡ଼ି ବସିଥିଲେ । ମନରେ ପ୍ରଶ୍ନ ଉଠେ ଆଇ.ବି. ବା 'ର' ଅଥବା ସାମରିକ ଇଣ୍ଟେଲିଜେନ୍‌ସି ବିଭାଗ କରୁଥିଲେ କ'ଣ ? ସେମାନେ କ'ଣ ସେମାନଙ୍କର ଦାୟିତ୍ୱ ଠିକ୍ ତୁଲାଇଛନ୍ତି । ଏପରି ଦୁର୍ଘଟଣାରେ ସେମାନେ କ'ଣ କିଛି ପରିମାଣରେ ଦାୟୀ ନୁହନ୍ତି ?

୧୯୯୯ କାର୍ଗୀଲ ଯୁଦ୍ଧ ପାଇଁ ଆମର ରାଜନୀତିକ ନେତାଗଣ ମଧ୍ୟ କେତେକାଂଶରେ ଦାୟୀ । ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ମତାମତକୁ ଯଥାସମୟରେ ଗ୍ରହଣ ନ କରି ପଣ୍ଡିତ ନେହେରୁ ଯେଉଁ ତ୍ରୁଟିପୂର୍ଣ୍ଣ ସିଦ୍ଧାନ୍ତ ନେଇଥିଲେ, ତା'ର ପ୍ରତିଫଳ ଭବିଷ୍ୟତ ଭାରତବର୍ଷ ଭୋଗକଲା । ୧୯୭୧ ମସିହା ଯୁଦ୍ଧ ପରେ ପାକିସ୍ଥାନକୁ ନିୟନ୍ତ୍ରଣ ରେଖା ସେପଟକୁ ଘୁଞ୍ଚିଯିବାକୁ ବନ୍ଦୀ ମୁକ୍ତି ସର୍ତ୍ତରେ ବାଧ୍ୟ ନ କରି ଇନ୍ଦିରାଗାନ୍ଧି ମଧ୍ୟ ଠିକ୍ ସେହି ତ୍ରୁଟି କରିଥିଲେ । ୧୯୯୯

ମସିହାରେ ଭାରତରେ ଯେଉଁ ରାଜନୀତିକ ସଙ୍କଟ ଦେଖା ଦେଇଥିଲା, ତା'ର ସୁଯୋଗ ନେଇଥିଲେ ଏହି ଅନୁପ୍ରବେଶକାରୀ । ନିଜର ସ୍ୱାର୍ଥ ସାଧନ ପାଇଁ ଦଳର ଛକାପଞ୍ଝା ନୀତି, ଏକ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତ ନେବାରେ ଅସମର୍ଥତା ଓ ସର୍ବୋପରି ଆସନ ପାଇଁ ରାଜନୀତିକ ବିଭିନ୍ନ ଦଳ ମଧ୍ୟରେ ଟଣାଓଟରା କାର୍ଗୀଲ ସମସ୍ୟାଟିକୁ ଅଧିକ ଜଟିଳ କରିଦେଲା । ବିଳମ୍ବଜନିତ ପଦକ୍ଷେପ ଯୋଗୁଁ ଆମେ ଆମର ବହୁ ମୂଲ୍ୟବାନ ସୈନିକମାନଙ୍କୁ ହରାଇଲୁ ଏବଂ ପ୍ରଚୁର ଅର୍ଥ ମଧ୍ୟ ବ୍ୟୟ କଲୁ ।

ପାକିସ୍ଥାନର ଏହି ଅନଧିକାର ପ୍ରବେଶ ଓ ଅତର୍କିତ ଆକ୍ରମଣ ଆନ୍ତର୍ଜାତିକ ସ୍ତରରେ ଗଭୀର ପ୍ରତିକ୍ରିୟା ସୃଷ୍ଟି କରିଛି । ଏପରିକି ପାକିସ୍ଥାନର ଆରବ ବନ୍ଧୁରାଷ୍ଟ୍ର, ଆମେରିକା ଏବଂ ଚୀନ ମଧ୍ୟ ତାଙ୍କୁ ସମର୍ଥନ କରି ନାହିଁ । ପରନ୍ତୁ ନିୟନ୍ତ୍ରଣ ରେଖା ମଧ୍ୟରେ ରହି ଭାରତୀୟ ସୈନ୍ୟ ଯୁଦ୍ଧ କରିଥିବାରୁ ଆମେରିକା, ରୁଷ, ଇଂଲଣ୍ଡ, ଫ୍ରାନ୍ସ, ଜର୍ମାନ, ଅଷ୍ଟ୍ରେଲିଆ ଆଦି ଦେଶ ଭାରତକୁ ପ୍ରଶଂସା କରିଛନ୍ତି । ଏ କ୍ଷେତ୍ରରେ ପାକିସ୍ଥାନ ସମ୍ପୂର୍ଣ୍ଣ ଏକଘରକିଆ ହୋଇଯାଇଛି କହିଲେ ଭୁଲ ହେବ ନାହିଁ । ଆମେରିକା ରାଷ୍ଟ୍ରପତି ବିଲ କ୍ଲିଣ୍ଟନ ଭାରତ ଗସ୍ତ ବେଳେ ପାକିସ୍ଥାନକୁ ସନ୍ତ୍ରାସବାଦୀ କାର୍ଯ୍ୟକଳାପ ବନ୍ଦ କରିବାକୁ ତାଗିଦ୍ କରିବା ଭାରତର ଅନ୍ୟ ଏକ କୂଟନୈତିକ ସଫଳତା । ଏପରିକି ଏହି କାରଣ ପାଇଁ ପାକିସ୍ଥାନ କେତେକ କ୍ଷେତ୍ରରେ ଆନ୍ତର୍ଜାତିକ ସ୍ତରରେ ଆର୍ଥନୀତିକ କଟକଣାର ସମ୍ମୁଖୀନ ହୋଇଛି । କାଶ୍ମୀରର ଯେଉଁ କେତେକ ସୁଫି ମୁସଲମାନମାନଙ୍କ ଅନ୍ତରରେ ପାକିସ୍ଥାନ ପ୍ରତି ସମ୍ବେଦନଶୀଳତା ଥିଲା, ଏହି ଯୁଦ୍ଧ ଯୋଗୁଁ ସେମାନେ ତାଙ୍କୁ ତୀବ୍ର ଘୃଣା କରିଛନ୍ତି । ଆନ୍ତର୍ଜାତିକ ସ୍ତରରେ ଏହି କାର୍ଗୀଲ ଯୁଦ୍ଧ ଯୋଗୁଁ ସଂଯମତା ପାଇଁ ଭାରତର ସମ୍ମାନ ଯେପରି ବଢ଼ିଛି, ପାକିସ୍ଥାନର ନିଜର ଅସଂଯମତା ଓ ବିଶୃଙ୍ଖଳିତ ଆଚରଣ ଯୋଗୁଁ ସେହିପରି ନିନ୍ଦିତ ଓ ସମାଲୋଚିତ ହୋଇଛି ।

କାର୍ଗୀଲ ଯୁଦ୍ଧରେ ଭାରତୀୟ ସୈନ୍ୟମାନେ ଯେଉଁ ବୀରତ୍ୱର ପରିଚୟ ଦେଇଛନ୍ତି, ତାହା ଅଭୂତପୂର୍ବ । ସମସ୍ତ ପ୍ରତିକୂଳ ପରିବେଶ ଓ ପୂର୍ବ ପ୍ରସ୍ତୁତି ବିନା ମଧ୍ୟ ସେମାନେ ଏହି ଯୁଦ୍ଧରେ ଜୟଲାଭ କରିଛନ୍ତି । ପାକିସ୍ଥାନୀ ସୈନ୍ୟ ଏବଂ ଭଡ଼ାଟିଆ ଉଗ୍ରବାଦୀ ପ୍ରଥମରୁ ନିରାପଦ ସ୍ଥାନରେ ସୁରକ୍ଷିତ ଅବସ୍ଥାରେ ରହି ପାରିଥିଲେ । ମାତ୍ର ଭାରତୀୟ ସୈନ୍ୟ ଯେପରି କଷ୍ଟସ୍ୱୀକାର କରି ହିମଶୀତଳ ପର୍ବତ ଉପରକୁ ଉଠି ସେମାନଙ୍କୁ ଉଚିତ ଶାସ୍ତି ପ୍ରଦାନ କଲେ, ତାହା ଅନନ୍ୟ ସାଧାରଣ । ଦେଶମାତୃକାର ସେବାପାଇଁ ଯେଉଁମାନେ ଶହୀଦ ହେଲେ, ସେମାନ ଏହି ଜାତି ନିକଟରେ ଚିର ନମସ୍ୟ ହୋଇରହିବେ । ବାସ୍ତବରେ ଯଦି ଏହି ଯୁଦ୍ଧରେ କାହାର ପ୍ରକୃତ ଗୌରବ ଦାବି କରିବାର ଅଧିକାର ଥାଏ, ତାହା ହେଉଛି କେବଳ ଭାରତୀୟ ସୈନ୍ୟବାହିନୀର ।

ସମସ୍ତ ଅନୁକୂଳ ଅବସ୍ଥାରେ ଥାଇ ମଧ୍ୟ ପାକିସ୍ଥାନୀ ସୈନ୍ୟ ଏବଂ ଭଡ଼ାଟିଆ ଉଗ୍ରବାଦୀ ଭାରତୀୟ ସୈନ୍ୟମାନଙ୍କର ସମ୍ମୁଖୀନ ହୋଇପାରି ନାହାନ୍ତି । ଏହି ଆକ୍ରମଣକାରୀ ଲାଞ୍ଛିତ ଓ ନିନ୍ଦିତ ହୋଇ ଭାରତୀୟ ନିୟନ୍ତ୍ରଣ ରେଖା ଅପରପାର୍ଶ୍ୱକୁ ଫେରିଯାଇଛନ୍ତି । ଏହି ଉଗ୍ରପନ୍ଥୀ, ସନ୍ତ୍ରାସବାଦୀ ଓ ମୌଳବାଦୀମାନଙ୍କୁ ପାକିସ୍ଥାନ ମୁକ୍ତି ସଂଗ୍ରାମୀ ଆଖ୍ୟା ଦେଇ ଆନ୍ତର୍ଜାତୀୟ

ସ୍ତରରେ ସେମାନଙ୍କର ଭାବମୂର୍ତ୍ତି ବୃଦ୍ଧି କରିବାକୁ ଚେଷ୍ଟା କରି ଅସଫଳ ହୋଇଛି । ଯୁଦ୍ଧର ଗତି ବଦଳିଯିବା ସଙ୍ଗେ ସଙ୍ଗେ ପରାଜୟ ନିଶ୍ଚିତ ଜାଣି ସେମାନେ ପଛଘୁଞ୍ଚା ଦେଇଛନ୍ତି । ତିନି ତିନିଥର ଯୁଦ୍ଧରେ ପରାଜୟ ଲାଭ କରି ମଧ୍ୟ ପାକିସ୍ତାନର ସଦ୍‌ବୁଦ୍ଧି ହୋଇନାହିଁ । ତଥାପି କାର୍ଗିଲ୍ ଯୁଦ୍ଧ ପ୍ରତ୍ୟେକ ଭାରତୀୟଙ୍କ ପାଇଁ ଯେ ଏକ ଚେତାବନୀ, ଅସ୍ୱୀକାର କରାଯାଇନପାରେ ।

ଆନ୍ତର୍ଜାତିକ ସ୍ତରରେ ନିବିଡ଼ ଏବଂ ଭାରତୀୟ ସୈନ୍ୟଙ୍କ ଦ୍ୱାରା ଲାଞ୍ଛିତ ହୋଇ ମଧ୍ୟ ପାକିସ୍ତାନର ସଦ୍‌ବୁଦ୍ଧି ହୋଇନାହିଁ । କାଶ୍ମୀର ସମସ୍ୟାକୁ ଆନ୍ତର୍ଜାତିକୀକରଣ କରିବାକୁ ଚେଷ୍ଟା କରି ବିଫଳ ହୋଇଛି; ମାତ୍ର କାଶ୍ମୀର ଏବେ ମଧ୍ୟ ସେମାନଙ୍କ ଅସମାପ୍ତ କାର୍ଯ୍ୟସୂଚୀ ମଧ୍ୟରେ ରହିଛି । ଏହି କାରଣରୁ ଭାରତୀୟ ସୈନ୍ୟବାହିନୀକୁ ସର୍ବଦା ସତର୍କ ରହିବାର ଆବଶ୍ୟକତା ରହିଛି । ଏତଦ୍‌ବ୍ୟତୀତ କେତେକ ସନ୍ତ୍ରାସବାଦୀ କାଶ୍ମୀରବାସୀଙ୍କ ମନରେ ଆତଙ୍କ ସୃଷ୍ଟି କରି ସେମାନଙ୍କୁ ପାକିସ୍ତାନ ସପକ୍ଷରେ ଯୋଗ ଦେବାକୁ ଉତ୍ସାହିତ କରୁଛନ୍ତି । ତେଣୁ କାଶ୍ମୀରବାସୀଙ୍କ ମନରେ ଭାରତୀୟ ଭାବଧାରା ସୃଷ୍ଟିକରିବା ଏବଂ ଭାରତୀୟ ଜାତୀୟ ସ୍ରୋତରେ ସାମିଲ କରିବା ବର୍ତ୍ତମାନ ଅତ୍ୟନ୍ତ ଜରୁରୀ ହୋଇପଡ଼ିଛି । ଏତଦ୍ ବ୍ୟତୀତ ଆଧୁନିକ ମାରଣାସ୍ତ୍ର ଦ୍ୱାରା ଭାରତୀୟ ସୈନ୍ୟବାହିନୀକୁ ସୁସଜ୍ଜିତ କରିବା, ଅନ୍ତର୍ଜାତୀୟ ସ୍ତରରେ ନିଜର କୂଟନୀତିକୁ ଠିକ୍ ରୂପେ ଜାହିର କରିବା ଏବଂ କାଶ୍ମୀରବାସୀଙ୍କ ମନରେ ପାକିସ୍ଥାନ ପ୍ରତି ପ୍ରତିକୂଳ ମନୋଭାବ ସୃଷ୍ଟିକରିବା ଦ୍ୱାରା ଏହି ସମସ୍ୟାଟି କିଛି ପରିମାଣରେ ସମାଧାନ ହୋଇପାରିବ ବୋଲି ହୃଦ୍‌ବୋଧ ହୁଏ ।

●

## ଷୋଡ଼ଶ ଲୋକସଭା ନିର୍ବାଚନ-୨୦୧୪

**(ଉପକ୍ରମ, ନିର୍ବାଚନ କାହିଁକି ?, ନିର୍ବାଚନରେ ରାଜନୀତିକ ଦଳ, ବିଭିନ୍ନ ମେଣ୍ଟଙ୍କ ସ୍ଥିତି, ଜାତୀୟ ମୁଖ୍ୟ କାର୍ଯ୍ୟସୂଚୀ, ନିର୍ବାଚନର ବିଭିନ୍ନ ଦିଗ, ଦେଶର ଭବିଷ୍ୟତ, ଉପସଂହାର)**

ଭାରତ ହେଉଛି ପୃଥିବୀର ସର୍ବବୃହତ୍ ଗଣତାନ୍ତ୍ରିକ ରାଷ୍ଟ୍ର । ପ୍ରତ୍ୟେକ ସାବାଳକ ବ୍ୟକ୍ତିଙ୍କୁ ନିର୍ବାଚନରେ ଭୋଟାଧିକାରର କ୍ଷମତା ପ୍ରଦାନ କରାଯାଇଛି । ସେମାନେ ନିଜ ଇଚ୍ଛାନୁଯାୟୀ ପ୍ରାର୍ଥୀ ନିର୍ବାଚନ କରିପାରିବେ । ଚଳିତବର୍ଷ ୨୦୧୪ ଏପ୍ରିଲ ଓ ମେ ମାସରେ ବିଭିନ୍ନ ପର୍ଯ୍ୟାୟରେ ଲୋକସଭା ତଥା କେତୋଟି ରାଜ୍ୟର ବିଧାନସଭା ପାଇଁ ନିର୍ବାଚନ ଅନୁଷ୍ଠିତ ହୋଇଯାଇଛି । ଏହି ନିର୍ବାଚନ ପୂର୍ବରୁ କଂଗ୍ରେସ ନେତୃତ୍ୱରେ ଗଠିତ ସଂଯୁକ୍ତ ପ୍ରଗତିଶୀଳ ମେଣ୍ଟ (ୟୁପିଏ) ବିଗତ ଦଶବର୍ଷ ଧରି ଶାସନ କ୍ଷମତାରେ ରହି ଆସିଥିଲା ଓ ବିଶିଷ୍ଟ ଅର୍ଥନୀତିଜ୍ଞ ଡକ୍ଟର ମନମୋହନ ସିଂହ ପ୍ରଧାନମନ୍ତ୍ରୀ ଭାବରେ ଦାୟିତ୍ୱ ନିର୍ବାହ କରିଥିଲେ । ସୁଖର ବିଷୟ ଦୀର୍ଘଦିନ ପରେ ଭାରତର ଜନସାଧାରଣ ବିଜେପି ଦଳକୁ

ସଂଖ୍ୟାଗରିଷ୍ଠ ଦଳ ଭାବରେ ନିର୍ବାଚିତ କରିଛନ୍ତି । ଏହାସତ୍ତ୍ୱେ ବିଜେପି ତା'ର ଏନ୍‌ଡିଏ ମେଣ୍ଟକୁ ନେଇ ସରକାର ଗଠନ କରି ମେଣ୍ଟ ମର୍ଯ୍ୟାଦାକୁ ସମ୍ମାନ ପ୍ରଦର୍ଶନ କରିଛନ୍ତି ।

ଭାରତୀୟ ସମ୍ବିଧାନ ଅନୁଯାୟୀ ପ୍ରତି ପାଞ୍ଚବର୍ଷରେ ଲୋକସଭା ପାଇଁ ନିର୍ବାଚନ ହେବାର ବ୍ୟବସ୍ଥା ରହିଛି । ଯଦି ଏହି ସମୟସୀମା ମଧ୍ୟରେ ସରକାରରେ ସାମିଲ ହୋଇଥିବା ମେଣ୍ଟମାନଙ୍କରେ ଅସୁବିଧା ସୃଷ୍ଟି ନହୁଏ, ତେବେ ଗୋଟିଏ ଦଳ ପାଞ୍ଚବର୍ଷ ପାଇଁ କ୍ଷମତାରେ ରହିପାରିବ । ବିଗତ ଦୁଇଦୁଇଟି ନିର୍ବାଚନରେ କୌଣସି ଦଳ ସଂଖ୍ୟାଗରିଷ୍ଠତା ଲାଭ କରିନଥିଲେ ହେଁ ୟୁପିଏ ମେଣ୍ଟ (କଂଗ୍ରେସ ଓ ତା'ର ସହଯୋଗୀ ଦଳ) ସରକାର ଗଠନ କରିଥିଲା । ୟୁପିଏ ମେଣ୍ଟର ଆଦର୍ଶଗତ ବିରୋଧାଭାସ ତଥା ସଂଯୁକ୍ତ ମେଣ୍ଟରେ ଯୋଗ ଦେଇଥିବା ବିଭିନ୍ନ ଦଳକୁ ଖୁସି କରିବାକୁ ଯାଇ କଂଗ୍ରେସ ଦଳ ଭାରତୀୟ ଜନସାଧାରଣଙ୍କୁ ଉପଯୁକ୍ତ ନ୍ୟାୟ ଦେବାକୁ ସମର୍ଥ ହେଲାନାହିଁ । ପୁଣି ଡକ୍ଟର ମନମୋହନ ସିଂହ ଜଣେ ବିଶିଷ୍ଟ ଅର୍ଥନୀତିଜ୍ଞ ହୋଇଥିଲେହେଁ, ପ୍ରଧାନମନ୍ତ୍ରୀ ଭାବରେ ସେ ସ୍ୱାଧୀନ ଭାବରେ କୌଣସି ନିଷ୍ପତ୍ତି ନେବାକୁ ଅସମର୍ଥ ଥିଲେ । ଏହି ସମୟରେ ଦୁର୍ନୀତି, କଳାବଜାରୀ ତଥା ପ୍ରିୟାପ୍ରୀତି ତୋଷଣ ଚରମସୀମାରେ ପହଞ୍ଚିଥିଲା । ଆନ୍ତର୍ଜାତିକ ସ୍ତରରେ ଭାରତ ଏକ ଦୁର୍ନୀତିପୂର୍ଣ୍ଣ ଦେଶ ଭାବରେ ଅପଖ୍ୟାତି ଅର୍ଜନ କରିଥିଲା । ଦରଦାମ୍ ନିୟନ୍ତ୍ରଣ କରିବାରେ ସରକାରଙ୍କ ଅସମର୍ଥତା ଜନସାଧାରଣଙ୍କୁ ଏହି ଦଳପ୍ରତି ବିମୁଖ କରିଥିଲା । ଏତଦ୍‌ବ୍ୟତୀତ ମେଣ୍ଟଭୁକ୍ତ ଦଳ ମଧ୍ୟରେ ଅନ୍ତର୍ଦ୍ୱନ୍ଦ୍ୱ ତଥା ନେତୃତ୍ୱର ଦିଶାହୀନତା, ଦଶବର୍ଷ କ୍ଷମତାର ଅହଂକାର ତଥା ଆତ୍ମବଡ଼ିମା ଯୋଗୁଁ ଏହି ଦଳ ଦେଶବାସୀଙ୍କ ସହଯୋଗ ଲାଭ କରିପାରିଲା ନାହିଁ । ଅପର ପକ୍ଷରେ ବିଜେପି ଓ ଏନ୍‌ଡିଏ ମେଣ୍ଟ ନରେନ୍ଦ୍ର ଦାମୋଦର ଭାଇ ମୋଦିଙ୍କୁ ପ୍ରଥମରୁ ପ୍ରଧାନମନ୍ତ୍ରୀ ପ୍ରାର୍ଥୀ ଭାବରେ ଉପସ୍ଥାପନ କରି ନିର୍ବାଚନ ରଣାଙ୍ଗନକୁ ଲମ୍ଫ ଦେଇଥିଲା । ନରେନ୍ଦ୍ର ମୋଦି ଯୁଦ୍ଧକାଳୀନ ଭିତ୍ତିରେ ନୂଆ ଢଙ୍ଗରେ ବିକାଶର କଥା କହି ପ୍ରଚାର କାର୍ଯ୍ୟ ଜାରି ରଖିଥିଲେ । ମୋଦିଙ୍କ କଥାରେ ବିଶ୍ୱାସ କରି ଭାରତର ଜନସାଧାରଣ ବିଜେପି ଓ ଏନ୍‌ଡିଏ ଦଳକୁ ବହୁ ପରିମାଣରେ ଭୋଟ ଦେଇ ନିର୍ବାଚିତ କଲେ । ଫଳସ୍ୱରୂପ ୨୦୧୪ ମସିହା ମେ ୨୬ ତାରିଖ ଦିନ ନରେନ୍ଦ୍ର ମୋଦି ପଞ୍ଚଦଶତମ ପ୍ରଧାନମନ୍ତ୍ରୀ ଭାବରେ ଶପଥ ନେଲେ । ଲୋକସଭାକୁ କ୍ରମାନ୍ୱୟରେ ଆଠଥର ସାଂସଦ ଭାବରେ ନିର୍ବାଚିତ ହୋଇ ଆସିଥିବା ବରିଷ୍ଠ ସାଂସଦ ସୁମିତ୍ରା ମହାଜନ ବାଚସ୍ପତି ରୂପେ ମଧ୍ୟ ଶପଥ ଗ୍ରହଣ କରିଛନ୍ତି । ୧୯୮୪ ମସିହାପରେ ଭାରତୀୟ ଜନସାଧାରଣ ଏହି ନିର୍ବାଚନରେ ନିର୍ଦ୍ଦିଷ୍ଟ ଦଳକୁ ପୂର୍ଣ୍ଣ ବହୁମତରେ ଭୋଟ୍ ଦେଇ ଏକ ଦୃଢ଼ ସରକାର ଗଢ଼ିବାକୁ ମତପ୍ରଦାନ କରିଛନ୍ତି ।

ଷୋଡ଼ଶ ଲୋକସଭା ନିର୍ବାଚନରେ ୧୬୮୭ଟି ପଞ୍ଜୀକୃତ ରାଜନୈତିକ ଦଳର ୮୨୫୧ ଜଣ ପ୍ରାର୍ଥୀ ପ୍ରତିଦ୍ୱନ୍ଦ୍ୱିତା କରିଥିବା ସମୟରେ ୫୦୦୭ ପ୍ରାର୍ଥୀ ବିଭିନ୍ନ ଦଳର ତଥା ଅବଶିଷ୍ଟ ହେଉଛନ୍ତି ସ୍ୱାଧୀନ ପ୍ରାର୍ଥୀ । ଆଶ୍ଚର୍ଯ୍ୟର ବିଷୟ ଯେ ୧୬୫୨ଟି ରାଜନୈତିକ ଦଳର ପତ୍ତା ନିଶ୍ଚିହ୍ନ ହୋଇଯାଇଛି । ପୁଣି ଏମାନଙ୍କ ମଧ୍ୟରେ ଅଛନ୍ତି ମାୟାବତୀଙ୍କ ବିଏସ୍‌ପି, ଚୌଧୁରୀ ଅଜିତ୍ ସିଂହଙ୍କ ଆରଏଲ୍‌ଡି, ପ୍ରମୁଖ ବାମଦଳ ସିପିଆଇ, ତାମିଲନାଡୁର

ଏମ୍.କରୁଣାନିଧିଙ୍କ ଡିଏମ୍‌କେ, ଜାମ୍ମୁକାଶ୍ମୀରର ନେସ୍‌ନାଲ କନ୍‌ଫରେନ୍‌ସ, ମହାରାଷ୍ଟ୍ରର ଏମ୍‌ଏନ୍‌ଏସ୍ ପରି ପ୍ରମୁଖ ଦଳ । ନିର୍ବାଚନରେ ଦୁଇଟି ମେଣ୍ଟଦଳ ଯଥା ୟୁପିଏ ଓ ଏନ୍‌ଡିଏ ଭାଗ ନେଇଥିବା ସମୟରେ ତୃତୀୟ ମେଣ୍ଟ ପାଇଁ ପ୍ରୟାସ ଜାରି ରହିଥିବା ବେଳେ ଶେଷ ପର୍ଯ୍ୟନ୍ତ ତାହା ସଫଳ ହୋଇପାରିନଥିଲା । ଜନସାଧାରଣ ବିଗତ ଦଳମାନଙ୍କର କାର୍ଯ୍ୟକଳାପକୁ ସତର୍କତାର ସହିତ ଲକ୍ଷ୍ୟକରି ଆସୁଥିଲେ ଏବଂ ଗୋଟିଏ ନିର୍ଦ୍ଦିଷ୍ଟ ଦଳକୁ ପୂର୍ଣ୍ଣ ବହୁମତ ପ୍ରଦାନ ପୂର୍ବକ ନିର୍ବାଚିତ କରି ଏକ ସ୍ଥିର ସରକାର ଗଠନ ନିମିତ୍ତ ମତ ସାବ୍ୟସ୍ତ କରିଛନ୍ତି । ଚଳିତ ଥର ଏନ୍‌ଡିଏ ମଧ୍ୟରେ ବିଜେପି, ଟିଡିପି, ଶିବସେନା, ଶିରୋମଣି, ଏଆଇଏନ୍‌ଆର୍‌ସି, ଆପନାଦଳ, ଏଲଜେପି, ଏନ୍‌ପିଏଫ୍, ଏନ୍‌ପିପି, ପିଏମ୍‌କେ, ଆରଏଲ୍‌ଏସ୍‌ପି ଆଦି ଅନ୍ତର୍ଭୁକ୍ତ ଥିବାବେଳେ ୟୁପିଏ ମେଣ୍ଟରେ କଂଗ୍ରେସ, ଏନ୍‌ସିପି, ଆରଜେଡି, ଆଇୟୁଏମ୍‌ଏଲ୍, ଜେଏମ୍‌ଏମ୍, ଆର୍‌ଏସ୍‌ପି, କେସି(ଏମ୍) ଆଦି ଅନ୍ତର୍ଭୁକ୍ତ ଥିଲେ । ଏତଦ୍‌ବ୍ୟତୀତ ଆପ୍, ଏଆଇଏଡିଏମ୍‌କେ, ତୃଣମୂଳ କଂଗ୍ରେସ, ବିଜେଡି, ଏସ୍‌ପି, ବିଏସ୍‌ପି, ଡିଏମ୍‌କେ, ଏଜିପି, ଏଆଇୟୁଡିଏଫ୍, ସିପିଆଇ, ସିପିଏମ୍, ଆଇଏନ୍‌ଏଲ୍‌ଡି, ଆଇଏନ୍‌ଡି, ଜେଡିଏସ୍, ଜେଡିୟୁ, ପିଡିପି, ଏସ୍‌ଡିଏଫ୍, ଟିଆରଏସ୍, ୱାଇଆରଏସ୍ କଂଗ୍ରେସ ଆଦି ଦଳ ସହିତ ଅନେକ ସ୍ୱାଧୀନ ସଦସ୍ୟ ଅଂଶ ଗ୍ରହଣ କରିଥିଲେ ।

ଷୋଡ଼ଶ ଲୋକସଭା ନିର୍ବାଚନରେ ଦୁଇ ପ୍ରମୁଖ ଦଳ ଯଥା ବିଜେପି ଓ କଂଗ୍ରେସ ଅନ୍ୟାନ୍ୟ ଦଳ ସହିତ ମେଣ୍ଟ କରି ନିର୍ବାଚନ ଲଢ଼ିଥିଲେହେଁ ଜନସାଧାରଣ କଂଗ୍ରେସ ଓ ୟୁପିଏ ମେଣ୍ଟକୁ ସଂପୂର୍ଣ୍ଣ ବରଖାସ୍ତ କରି ବିଜେପି ମେଣ୍ଟକୁ ଓ ବିଶେଷକରି ବିଜେପି ଦଳକୁ ପୂର୍ଣ୍ଣ ବହୁମତ ପ୍ରଦାନ ପୂର୍ବକ ଗୋଟିଏ ସ୍ଥିର ଏବଂ ଦୃଢ଼ ସରକାର ଗଠନ ନିମିତ୍ତ ମତଦାନ କରିଛନ୍ତି । ୧୯୮୪ ମସିହାପରେ ପ୍ରଥମକରି ଗୋଟିଏ ଦଳକୁ ପୂର୍ଣ୍ଣ ବହୁମତ ମିଳିଛି । ୧୨୮ ବର୍ଷର ପୁରୁଣାଦଳ କଂଗ୍ରେସର ନୈରାଶ୍ୟଜନକ ପରାଜୟ ସମସ୍ତଙ୍କୁ ଚକିତ କରିଛି । ଭାରତୀୟ ଗଣତନ୍ତ୍ର ସମୂହ ଜନସାଧାରଣଙ୍କର କୌଣସି ଦଳର ବ୍ୟକ୍ତିଗତ ସଂପତ୍ତି ନୁହେଁ ତାହା ପ୍ରମାଣିତ ହୋଇଯାଇଛି । 'ଅବ୍ କୀ ବାର, ମୋଦି ସରକାର'– ଏହି ସ୍ଲୋଗାନ୍ ସଫଳ ହୋଇଛି । ୨୦୦୯ ନିର୍ବାଚନରେ ୨୦୬ଟି ଆସନ ପାଇଥିବା କଂଗ୍ରେସ ଦଳ ଚଳିତ ଥର ମାତ୍ର ୪୩ଟି ଆସନ ପାଇଛି । ୭ଟି ରାଜ୍ୟରେ କଂଗ୍ରେସ ମୂଳପୋଛ ହୋଇଯାଇଛି । ଅଥଚ ୫୪୩ଟି ଲୋକସଭା ଆସନରୁ ବିଜେପି ଏକାକୀ ୨୮୩ଟି ଆସନ ସହିତ ଏନ୍‌ଡିଏ ମେଣ୍ଟ ୩୩୭ଟି ଆସନ ଲାଭ କରିଛି । କଂଗ୍ରେସ ଓ ତା'ର ମିତ୍ର ଦଳ ୫୮ଟି ଏବଂ ଅନ୍ୟାନ୍ୟ ଦଳ ୧୪୮ଟି ଆସନ ଲାଭ କରିଛନ୍ତି । ସବୁଠାରୁ ଦୁଃଖର ବିଷୟ କଂଗ୍ରେସ ଦଳ ବିରୋଧୀ ଦଳ ଆସନରେ ବସିବାକୁ ମଧ୍ୟ ସମର୍ଥ ହୋଇପାରିନାହିଁ । ଉଭୟ ବରୋଦା ଓ ବାରାଣସୀରେ ମୋଦି ରେକର୍ଡ଼ ବିଜୟ ହାସଲ କରିଛନ୍ତି । ଏଥର ମଧ୍ୟ ମତଦାନ ହାର ରେକର୍ଡ଼ ସଂଖ୍ୟକ ୬୬.୪ ପ୍ରତିଶତ ରହିବା ସହିତ ଗତ ନିର୍ବାଚନ ଅପେକ୍ଷା ୧୨କୋଟି ଅଧିକ ମତଦାତା ମତଦାନ କରିଛନ୍ତି । ନିର୍ବାଚନ ଆୟୋଗଙ୍କ ସୂଚନା ଅନୁଯାୟୀ ବିଜେପି ପାଖାପାଖି ୧୭.୧୬ କୋଟି ଭୋଟ୍ (୩୧%) ପାଇଥିବା ସମୟରେ କଂଗ୍ରେସ ୧୦.୭ କୋଟି ଭୋଟ

(୧୯.୩%) ପାଇଛି । ଜନସାଧାରଣଙ୍କ ବିଗତ ଦଶବର୍ଷର ଅସନ୍ତୋଷ ଚଳିତ ଥର ନିର୍ବାଚନରେ ପ୍ରକାଶ ପାଇଛି ଏବଂ ସତର୍କ କରାଇ ଦେଇଛି ଯେ ଜନସାଧାରଣଙ୍କୁ ଅସୁଖୀ ଓ ଅସନ୍ତୋଷ ରଖି କୌଣସି ଦଳ ଶାସନ କ୍ଷମତାରେ ରହିନପାରେ ।

ପ୍ରଧାନମନ୍ତ୍ରୀ ରୂପେ ନରେନ୍ଦ୍ର ମୋଦି ଶପଥ ନେବାପୂର୍ବରୁ ଦଳର ବିପର୍ଯ୍ୟୟ ଦେଖି ପୂର୍ବତନ ପ୍ରଧାନମନ୍ତ୍ରୀ ଡ. ମନମୋହନ୍ ସିଂହ ଲୋକସଭାକୁ ଭଙ୍ଗ କରିବାପାଇଁ ରାଷ୍ଟ୍ରପତି ପ୍ରଣବ ମୁଖାର୍ଜୀଙ୍କୁ ସୁପାରିଶ୍ କରିଥିଲେ । ଷୋଡ଼ଶ ଲୋକସଭା ଗଠନ ପ୍ରକ୍ରିୟା ଆରମ୍ଭ କରିବା ପାଇଁ ରାଷ୍ଟ୍ରପତି କ୍ୟାବିନେଟ୍‌ର ସୁପାରିସକୁ ଗ୍ରହଣ କରି ସମ୍ବିଧାନର ଧାରା ୮୫ର ଅନୁଚ୍ଛେଦ (୨) ଉପଅନୁଚ୍ଛେଦ (ବି) ଅନୁଯାୟୀ ଲୋକସଭା ଭଙ୍ଗ ନିମିତ୍ତ ନିର୍ଦ୍ଦେଶନାମା ଉପରେ ସ୍ୱାକ୍ଷର କରିବା ପରେ ନରେନ୍ଦ୍ର ମୋଦି ପଞ୍ଚଦଶତମ ପ୍ରଧାନମନ୍ତ୍ରୀ ରୂପେ ଶପଥ ଗ୍ରହଣ କରିଛନ୍ତି । ପ୍ରଥମରୁ ସେ ଗୋଟିଏ ଛୋଟ ମନ୍ତ୍ରିମଣ୍ଡଳ ଗଠନ କରିଛନ୍ତି । ଶପଥ ନେବାପରେ ଦେଶବାସୀଙ୍କ ଉଦ୍ଦେଶ୍ୟରେ କହିଛନ୍ତି "ଭଲଦିନ ଆସିବ" ଏବଂ ନିର୍ବାଚନ ପୂର୍ବରୁ ସେ ଦେଶବାସୀଙ୍କୁ ଯେଉଁ ପ୍ରତିଶ୍ରୁତି ଦେଇଛନ୍ତି, ତାହା ରକ୍ଷା କରିବେ । କଳାଧନ, ଦୁର୍ନୀତି, ନିଯୁକ୍ତି, ଆର୍ଥିକ ସୁଧାର, ଯୁବକମାନଙ୍କ ହାତକୁ କାମ, ଦେଶର ସୁରକ୍ଷା, ନାରୀର ଆତ୍ମ ସମ୍ମାନ ଆଦିକୁ ଅଗ୍ରାଧିକାର ଦେବେ । ବିଦେଶରେ ଥିବା କଳାଧନକୁ ଆଣିବାକୁ ଚେଷ୍ଟା କରିବେ ଓ ଦୁର୍ନୀତିମୁକ୍ତ ଭାରତ ଗଠନ ତଥା ଭାରତର ସ୍ୱାଭିମାନ ପାଇଁ କାର୍ଯ୍ୟ କରିବେ । ନିର୍ବାଚନ ଘୋଷଣା ପତ୍ରରେ ରାମମନ୍ଦିର ନିର୍ମାଣ, ଧାରା ୩୭୦, ସମାନ ନାଗରିକ ସଂହିତା ଭଳି ପ୍ରସଙ୍ଗକୁ ତାଙ୍କ ଦଳ ସାମିଲ୍ କରିଥିଲେହେଁ, କୌଣସି ସଭାରେ ସେ ଏ ସଂପର୍କରେ ଚର୍ଚ୍ଚା କରିନାହାନ୍ତି । ଦରଦାମ୍ ନିୟନ୍ତ୍ରଣ, ସାଧାରଣ ଜନତାଙ୍କର ଆର୍ଥିକ ବିକାଶ ଆଦି ଉପରେ ଦଳ ଗୁରୁତ୍ୱ ଦେବ ବୋଲି ପ୍ରକାଶ ପାଇଛି । ତେବେ ଆଗାମୀ ଦିନରେ ବିଜେପି ଓ ଏନ୍‌ଡିଏ ଦଳର ପ୍ରତିଶ୍ରୁତି କେତେଦୂର ଫଳପ୍ରସୂ ହେବ, ତାହା ଭବିଷ୍ୟତ ହିଁ କହିବ ।

ଚଳିତ ଥର ନିର୍ବାଚନ ବିଭିନ୍ନ ଦୃଷ୍ଟିକୋଣରୁ ସ୍ୱତନ୍ତ୍ର ରହିଥିଲା । ଏହା ପୂର୍ବରୁ ଗୋଟିଏ ଝୁଲା ସରକାର ରହିଥିଲା । କୌଣସି ନିର୍ଦ୍ଦିଷ୍ଟ ନିଷ୍ପତ୍ତି ନେବାରେ ସମର୍ଥ ନଥିଲା । ସବୁଠାରୁ ବଡ଼ କଥା ହେଉଛି ଯେତେବେଳେ ନରେନ୍ଦ୍ର ମୋଦି ବିକାଶର କଥା କହି ଭୋଟ୍ ଭିକ୍ଷା କରୁଥିଲେ, ସେତେବେଳେ କଂଗ୍ରେସ ବା ଉପାମେଣ୍ଟ ତଥା ଅନ୍ୟାନ୍ୟ ରାଜନୈତିକ ଦଳ ନରେନ୍ଦ୍ରଙ୍କ ବ୍ୟକ୍ତିଗତ ଚରିତ୍ର ସଂହାର ସହିତ ବିଜେପି ଦଳକୁ ସମାଲୋଚନା କେବଳ କରୁଥିଲେ । ନିଜର ଅପାରଗ ଶାସନର ଦୁର୍ବଳତାକୁ ଲୁଚାଇବାକୁ ସେମାନେ ଯେଉଁ ସଂକୀର୍ଣ୍ଣ ମନୋବୃତ୍ତିର ପରିଚୟ ଦେଲେ, ତାହା ଭୋଟରଙ୍କୁ ଅସନ୍ତୁଷ୍ଟ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ପାଇଁ କାଳ ହେଲା । ଏନ୍‌ଡିଏ ଦଳ ଦେଶର ଭବିଷ୍ୟତ, ବର୍ତ୍ତମାନର ସାଂପ୍ରତିକ ଅବସ୍ଥା ଓ ଦେଶର ବିକାଶ ଉପରେ ତର୍କ କରୁଥିବା ସମୟରେ ତାଙ୍କ ବିରୋଧୀମାନେ କୁତ୍ସାରଟନା ଭିତରେ ନିଜକୁ ବାନ୍ଧି ରଖିଥିଲେ । ଦଳ ମଧ୍ୟରେ ରହିଥିବା ଅନ୍ତର୍ଦ୍ୱନ୍ଦ୍ୱକୁ ସମାଧାନ କରିବାରେ ଅସମର୍ଥ ଥିଲେ । ବିଜେପି ନରେନ୍ଦ୍ର ମୋଦିଙ୍କୁ ପ୍ରଧାନମନ୍ତ୍ରୀ ପ୍ରାର୍ଥୀରୂପେ ଉପସ୍ଥାପନା କରିଥିବା ସମୟରେ କଂଗ୍ରେସ୍ ଦଳ ନିଜ ମଧ୍ୟରୁ କାହାରିକୁ ପ୍ରଧାନମନ୍ତ୍ରୀ ରୂପେ

ଉପସ୍ଥାପନ କରି ନପାରିବାରୁ ଜନସାଧାରଣ ଦଳ ଭିତରେ ରହିଥିବା ସଙ୍କୋଚ, ବିଶ୍ୱାସ ଉପରେ ସନ୍ଦିହାନ ହୋଇଥିଲେ । ପୁଣି ଉପାସରକାରଙ୍କ ଦୁର୍ନୀତି, ପ୍ରିୟାପ୍ରୀତି ତୋଷଣ, ସି.ବି.ଆଇର ଦୁରୁପଯୋଗ, ବ୍ୟକ୍ତିଗତ ସ୍ୱାର୍ଥ ପାଇଁ ରାଷ୍ଟ୍ର ସ୍ୱାର୍ଥକୁ ବଳିଦାନ, ପାରିବାରିକ ଶାସନ, ବିପୁଳ କଳାଟଙ୍କା, ଦରଦାମ୍ ବୃଦ୍ଧି ଆଦି ଜନସାଧାରଣଙ୍କୁ ଅଥୟ କରିଥିଲା । ଟଙ୍କାର ଅବମୂଲ୍ୟାୟନ ଯୋଗୁଁ ଆନ୍ତର୍ଜାତିକ ସ୍ତରରେ ଭାରତୀୟ ମୁଦ୍ରାର ମହତ୍ତ୍ୱ ହାନି ଘଟିଥିଲା । ତେଣୁ ଜନସାଧାରଣ ଏକ ପରିବର୍ତ୍ତନ ଚାହୁଁଥିଲେ, ଯାହା ମୋଦିଙ୍କ ପ୍ରଚାର ଓ ଭାଷଣ ଖୋରାକ୍ ଯୋଗାଇ ଦେଇଥିଲା ।

ବର୍ତ୍ତମାନ ଭାରତର ଭବିଷ୍ୟତକୁ ନେଇ ଅନେକ ପ୍ରଶ୍ନବାଚୀ । ଏନ୍‌ଡିଏ ସମୟରେ ଆର୍ଥିକ ଅଭିବୃଦ୍ଧି ୯ ପ୍ରତିଶତ ପାଖାପାଖି ଥିବାବେଳେ ଉପା ସରକାରରେ ତାହା ୪.୫ ପ୍ରତିଶତକୁ ଖସିଆସିଛି । ଦରଦାମ ଆକାଶଛୁଆଁ ହୋଇଥିବାରୁ ସାଧାରଣ ମଣିଷର ଜୀବନଶୈଳୀ ବିପର୍ଯ୍ୟସ୍ତ ହୋଇ ପଡ଼ିଛି । ଆର୍ଥିକ ଅଭିବୃଦ୍ଧି ଦୁର୍ବଳ ଥିବାବେଳେ ଟିକସ ରାଜସ୍ୱ କମିଛି । ବର୍ତ୍ତମାନ ଟିକସ ଜିଡିପି ୧୦ ପ୍ରତିଶତକୁ ଖସି ଆସିଛି । ତେବେ ଆଶ୍ୱାସନାର ବିଷୟ ମୋଦିଙ୍କ ବିଜୟ ଯୋଗୁଁ ଭାରତୀୟ ପୁଞ୍ଜି ବଜାରରେ ଉତ୍ସାହ ଦେଖା ଦେଇଛି । ସେନ୍‌ସେକ୍‌ସ ସର୍ବକାଳୀନ ରେକର୍ଡ଼କୁ ସ୍ପର୍ଶ କରିଛି । ଡଲାର ତୁଳନାରେ ଭାରତୀୟ ମୁଦ୍ରାର ଯେଉଁ ଅବମୂଲ୍ୟାୟନ ଦେଖାଦେଇଥିଲା, ତାହା କ୍ରମଶଃ ସବଳ ହେବାରେ ଲାଗିଛି । ଭାରତୀୟ ମୁଦ୍ରାର ମୂଲ୍ୟ ଆନ୍ତର୍ଜାତିକ ସ୍ତରରେ ବୃଦ୍ଧି ପାଇଛି । ବିଦେଶୀମାନେ ପୁଞ୍ଜିଲଗାଇବାକୁ ଆଗ୍ରହ ପ୍ରକାଶ କରିଛନ୍ତି । ଭାରତପ୍ରତି ଥିବା ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଦେଖାଦେଇଛି । ଏକ ସ୍ଥିର ଓ ଦୃଢ଼ ସରକାର ଗଠିତ ହୋଇଥିବାରୁ କୌଣସି ନିର୍ଦ୍ଦିଷ୍ଟ ନିଷ୍ପତ୍ତି ନେବାରେ ବାଧବାଧକତା ନାହିଁ । ଆଶାକରାଯାଏ, ଆଗାମୀ ଦିନରେ ଭାରତ ଏକ ସୁସ୍ଥସବଳ ଦେଶ ଭାବରେ ବିଶ୍ୱରେ ନିଜକୁ ପ୍ରତିଷ୍ଠିତ କରିପାରିବ ।

ଯେତେବେଳେ ରାଜନୀତି ସ୍ୱଚ୍ଛ, ଦୁର୍ନୀତିମୁକ୍ତ ଓ ଦେଶସେବକଙ୍କ ଦ୍ୱାରା ପରିଚାଳିତ ହୁଏ, ସେତେବେଳେ ତା'ର ବିକାଶ ତ୍ୱରାନ୍ୱିତ ହୋଇଥାଏ । ଚଳିତ ଥର ନିର୍ବାଚନରେ ବିଜୟଲାଭ କରିଥିବା ସାଂସଦମାନଙ୍କ ମଧ୍ୟରୁ ଏକ ତୃତୀୟାଂଶ ସାଂସଦ ଅପରାଧୀ । ଅନେକଙ୍କ ବିରୋଧରେ ଫୌଜଦାରୀ, ଜଘନ୍ୟ ଅପରାଧ ରହିଛି । ଅଥଚ ସେହିମାନେ ଶାସନ କ୍ଷେତ୍ରକୁ ଆସିଛନ୍ତି ଦେଶସେବୀ ଭାବରେ । ବର୍ତ୍ତମାନର ସରକାର ସେମାନଙ୍କଠାରୁ ଯେତେ ନିରାପଦ ଦୂରତ୍ୱରେ ରହିପାରିବ, ସେତେ ଭଲ । ରାଜନୀତି ହେଉଛି ଆଦର୍ଶନୀତି । ଯେଉଁ ସରକାର ଯେତେ ପରିମାଣରେ ଆଦର୍ଶବାଦୀ, ସ୍ୱଚ୍ଛ, ନିଷ୍କଳଙ୍କ, ଦୁର୍ନୀତିମୁକ୍ତ ହୋଇପାରିବ, ତାଙ୍କ ହାତରେ ଦେଶ ସେତିକି ପରିମାଣରେ ଅଗ୍ରଗତି କରିପାରିବ । ଅବଶ୍ୟ ଏ କ୍ଷେତ୍ରରେ ଜନସାଧାରଣଙ୍କର ମଧ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଜନସାଧାରଣ ସଚେତନ ହୋଇପାରିଲେ, ଦେଶର ବିକାଶ ଓ ବ୍ୟକ୍ତିର ବିକାଶ ତ୍ୱରାନ୍ୱିତ ହୋଇପାରିବ । ମୋଟାମୋଟି କହିଲେ ଗୋଟିଏ ଦେଶର ସର୍ବାଙ୍ଗୀଣ ଉନ୍ନତି ପାଇଁ ସେ ଦେଶର ଜନସାଧାରଣ ଓ ସରକାରଙ୍କର ମିଳିତ ଭାବରେ ପ୍ରମୁଖ ଭୂମିକା ରହିଛି ।

●

# ଆଗ୍ରା ଶିଖର ବୈଠକ-୨୦୦୧

(ଉପକ୍ରମ – ପୃଷ୍ଠଭୂମି – ଶିଖର ବୈଠକର ବିଷୟବସ୍ତୁ – ଭାରତୀୟ ଦୃଷ୍ଟିଭଙ୍ଗୀ– ବିରୋଧୀମତ – ଆତିଥ୍ୟର ଅମର୍ଯ୍ୟାଦା – ଫଳାଫଳ – ଭବିଷ୍ୟତ ପାଇଁ ସମ୍ଭାବନା – ଉପସଂହାର ।)

ଜୁଲାଇ ମାସ ୧୫ ଓ ୧୬ ତାରିଖ ୨୦୦୧ ମସିହାରେ ଐତିହାସିକ ପୀଠ ଓ ଶୁଦ୍ଧ ପ୍ରେମର ସ୍ମାରକୀ ଆଗ୍ରାଠାରେ ବହୁ ପ୍ରତୀକ୍ଷିତ ଶିଖର ବୈଠକ, ଭାରତର ପ୍ରଧାନମନ୍ତ୍ରୀ ଅଟଳ ବିହାରୀ ବାଜପେୟୀ ଏବଂ ଜେନେରାଲରୁ ପାକିସ୍ଥାନର କାର୍ଯ୍ୟକାରୀ ମୁଖ୍ୟ ଓ ଶେଷରେ ରାଷ୍ଟ୍ରପତି ମୁକୁଟ ପିନ୍ଧିଥିବା ପରଭେଜ ମୁଶାରଫ୍‌ଙ୍କ ମଧ୍ୟରେ ଦୁଇଦିନ ଧରି ଭାରତ ଓ ପାକିସ୍ଥାନର ବିଭିନ୍ନ ସମସ୍ୟା ସମ୍ପର୍କରେ ଆଲୋଚନା ହୋଇଥିଲା । ୧୬ ଜଣିଆ ପ୍ରତିନିଧି ଦଳ ସହ ଆସିଥିବା ପାକିସ୍ଥାନର ରାଷ୍ଟ୍ରପତିଙ୍କ ସହିତ ଭାରତର ପ୍ରଧାନମନ୍ତ୍ରୀଙ୍କ ପ୍ରଥମ ଦୁଇପର୍ଯ୍ୟାୟ ଆଲୋଚନା ଆଶାପ୍ରଦ ହୋଇଥିବା ସମୟରେ ତୃତୀୟ ପର୍ଯ୍ୟାୟ ଆଲୋଚନା ସମ୍ପୂର୍ଣ୍ଣ ବିଫଳ ହେବା ଯୋଗୁଁ ଶିଖର ବୈଠକରେ ଫଳାଫଳ ବହ୍ୱାଡ଼ମ୍ବରେ ଲଘୁକ୍ରିୟା ସଦୃଶ ହେଲା । ଏହି ଐତିହାସିକ ଶିଖର ବୈଠକରୁ ଅନେକ କିଛି ଆଶା କରାଯାଉଥିଲେ ମଧ୍ୟ ଶେଷରେ ପାକିସ୍ଥାନ ରାଷ୍ଟ୍ରପତିଙ୍କ ଜିଦ୍‌ଖୋର ମନୋବୃତ୍ତି ଯୋଗୁଁ ଉଭୟ ଦେଶର କୋଟି କୋଟି ଜନସାଧାରଣଙ୍କୁ ନିରାଶ ହେବାକୁ ପଡ଼ିଲା ।

୨୦୦୧ ମସିହା ଶିଖର ବୈଠକ ପୂର୍ବରୁ ଭାରତ ଓ ପାକିସ୍ଥାନ ମଧ୍ୟରେ ତିନୋଟି ରାଜିନାମା ସ୍ୱାକ୍ଷରିତ ହୋଇଯାଇଛି । ୧୯୪୯ କରାଚି ରାଜିନାମାରେ ଏନ୍.ଜେ–୯୮୪୨ ପଏଣ୍ଟ ପରବର୍ତ୍ତୀ ଅଞ୍ଚଳକୁ ଗ୍ଲାସିଅରର ଉତ୍ତରଦିଗକୁ ବୋଲି ବର୍ଣ୍ଣନା କରାଯାଇଥିଲା । ବଙ୍ଗଳାଦେଶ ମୁକ୍ତି ସଂଗ୍ରାମ ପରେ ୧୯୭୨ ମସିହାରେ ସିମଳା ରାଜିନାମାରେ ଭାରତ ଓ ପାକିସ୍ଥାନର ନିୟନ୍ତ୍ରଣରେଖା ନିର୍ଦ୍ଧାରଣ କରାଯାଇଥିଲା । ଏଥିରେ ଏନ୍. ଜେ–୯୮୪୨ ଦେଇ ନିୟନ୍ତ୍ରଣ ରେଖା ଟଣାଯାଇଥିବା ବେଳେ ସାଲତୋରୋ ପର୍ବତର ୭୦ କି.ମି. ବ୍ୟାପି ଅଞ୍ଚଳ ନକ୍ସାରେ ସ୍ଥାନ ପାଇନଥିଲା । ଏଥିଯୋଗୁଁ ପାକିସ୍ଥାନର ମାନଚିତ୍ରରେ ଏନ୍.ଜେ–୯୮୪୨ ପଏଣ୍ଟର ପୂର୍ବଦିଗକୁ କାରାକୋରମ୍ ପାସ୍ ପର୍ଯ୍ୟନ୍ତ ଅଞ୍ଚଳ ଚିହ୍ନିତ ହୋଇଥିବା ଜାଣି ଭାରତୀୟ ବାୟୁସେନା ସିଆଚେନ୍ ଗ୍ଲାସିଅରର ପଶ୍ଚିମକୁ ଆକ୍ରମଣ କରି ସାଲ୍‌ତୋରୋ ଅଞ୍ଚଳକୁ ଅଧିକାର କରିନେଇଥିଲେ । ଅବଶ୍ୟ ସିମଳା ରାଜିନାମାରେ ତତ୍କାଳୀନ ପାକିସ୍ଥାନର ପ୍ରଧାନମନ୍ତ୍ରୀ ଜୁଲ୍‌ଫିକର ଅଲ୍ଲିଭୁଟୋ ଏବଂ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ମଧ୍ୟରେ ଦୁଇଦେଶ ମଧ୍ୟରେ ସୁସମ୍ପର୍କ ପ୍ରତିଷ୍ଠା ପାଇଁ ବହୁ ଅଲିଖିତ ରାଜିନାମା ହୋଇଥିଲା । ପ୍ରଧାନମନ୍ତ୍ରୀ ଅଟଳ ବିହାରୀ ବାଜପେୟୀ ୧୯୯୯ରେ ଲାହୋର ବସ୍‌ଯାତ୍ରା କରି ତତ୍କାଳୀନ ପାକିସ୍ଥାନର ପ୍ରଧାନମନ୍ତ୍ରୀ ନୱାଜ ସରିଫଙ୍କ ସହିତ ଲାହୋର ଘୋଷଣାନାମାରେ ସ୍ୱାକ୍ଷର କରିଥିଲେ । ପ୍ରତ୍ୟେକ ରାଜିନାମାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଉଭୟଦେଶର ଜନସାଧାରଣଙ୍କ ଶାନ୍ତିପୂର୍ଣ୍ଣ ସହାବସ୍ଥାନ । ଏବେ ସିଆଚେନ୍ ଗ୍ଲାସିଅର ଓ

ସାଲ୍‌ତୋରୋ ପାର୍ବତ୍ୟ ଅଞ୍ଚଳକୁ ନେଇ ନୂତନ ବିବାଦ ସୃଷ୍ଟି ହୋଇଛି, ଯଦିଓ ୧୯୮୯ ମସିହାରୁ ଏହି ବିବାଦ ସମ୍ପର୍କରେ ଏକ ରାଜିନାମା ପ୍ରସ୍ତାବ ଆକାରରେ ରହିଛି । ଏତଦ୍‌ବ୍ୟତୀତ ଜାମ୍ମୁ ଓ କାଶ୍ମୀର ଏବଂ ସୀମାସେପାର ଆତଙ୍କବାଦ ମଧ୍ୟ ପାକିସ୍ଥାନ ତଥା ଭାରତ ମଧ୍ୟରେ ତିକ୍ତ ବାତାବରଣ ସୃଷ୍ଟି କରିଛି । ଏହି ସମସ୍ତ ସମସ୍ୟାର ଶାନ୍ତିପୂର୍ଣ୍ଣ ସମାଧାନ ପାଇଁ ଆଗ୍ରାଶିଖର ବୈଠକର ଆୟୋଜନ କରାଯାଇଥିଲା ।

ଆଗ୍ରା ଶିଖର ବୈଠକରେ ଯେଉଁ ସମସ୍ୟା ସମ୍ପର୍କରେ ଆଲୋଚନା ହେବାର ନିଷ୍ପତ୍ତି ଗ୍ରହଣ କରାଯାଇଥିଲା, ତା'ର ଏକ ଯୋଜନା ବହୁପୂର୍ବରୁ ପ୍ରସ୍ତାବ ସ୍ତରରେ ରହିଥିଲା । ୧୯୯୮ ମସିହା ସେପ୍ଟେମ୍ବର ୨୩ ତାରିଖରେ ତତ୍କାଳୀନ ଭାରତୀୟ ବୈଦେଶିକ ସଚିବ କେ. ରଘୁନାଥ ଏବଂ ପାକିସ୍ତାନର ବୈଦେଶିକ ସଚିବ ଶମଶାଦ ଅହମ୍ମଦଙ୍କ ମଧ୍ୟରେ ନ୍ୟୁୟର୍କରେ ଏକ ବୈଠକ ଅନୁଷ୍ଠିତ ହୋଇଥିଲା । ଏହି ସଂଯୁକ୍ତ ବୟାନରେ ୮ଟି ପ୍ରସଙ୍ଗ ଘୋଷଣା କରାଯାଇଥିଲେ ହେଁ ମୁଖ୍ୟ ଦୁଇଟି ପ୍ରସଙ୍ଗ ଥିଲା—୧-ବିଶ୍ୱାସ ସୃଷ୍ଟିର ଉପାୟ ଓ ଶାନ୍ତି ତଥା ସୁରକ୍ଷା, ୨—ଜାମ୍ମୁକାଶ୍ମୀର ଅନ୍ୟ ୬ଟି ପ୍ରସଙ୍ଗ ମଧ୍ୟରେ ଅନ୍ତର୍ଭୁକ୍ତ ରହିଥିଲା, ସିଆଚୀନ୍, ତୁଲବୁଲ ନୌବାହିନୀ ପରିଯୋଜନା, ଆତଙ୍କବାଦ, ସରକ୍ରୀକ୍ ଓ ନିଶାକାରବାରର ଚୋରାଧନ୍ଦା, ବିଭିନ୍ନ କ୍ଷେତ୍ରରେ ବନ୍ଧୁତ୍ୱପୂର୍ଣ୍ଣ ଆଦାନପ୍ରଦାନ ଏବଂ ଆର୍ଥିକ ଓ ବାଣିଜ୍ୟ ସହଯୋଗ । ସିଆଚେନ୍‌କୁ କେନ୍ଦ୍ର କରି ଦୁଇଦେଶ ମଧ୍ୟରେ ସାତଥର ଓ ପ୍ରତିରକ୍ଷା ସଚିବ ସ୍ତରରେ ଦୁଇଟି ବୈଠକ ହୋଇସାରିଥିଲେହେଁ ଏଯାବତ୍ କୌଣସି ସୁଫଳ ମିଳି ନାହିଁ । ୧୯୮୯ ମସିହାରେ ରାଜୀବ ଗାନ୍ଧୀ ଏବଂ ବେନଜିର ଭୁଟ୍ଟୋ ଏହି ଅଞ୍ଚଳ ପାଇଁ ଏକ ରାଜିନାମାରେ ପହଞ୍ଚିଥିଲେ ହେଁ ଏ ପର୍ଯ୍ୟନ୍ତ ତାହା କାର୍ଯ୍ୟକାରୀ ହୋଇପାରିନାହିଁ । ଆଗ୍ରା ମିଶର ବୈଠକରେ ଏଥିରୁ କୌଣସି ସୁଫଳ ମିଳିବାର ଆଶା କରାଯାଉଥିଲା । ମାତ୍ର ତାହା ମଧ୍ୟ ବିଫଳ ହୋଇଛି । ୧୫ ତାରିଖରେ ଅନୁଷ୍ଠିତ ଦୁଇଟି ପର୍ଯ୍ୟାୟ କଥାବାର୍ତ୍ତା ସୌହାର୍ଦ୍ଦ୍ୟପୂର୍ଣ୍ଣ ହୋଇଥିଲା । ଏହି ଆଲୋଚନା ପ୍ରାୟ ଅଢ଼େଇ ଘଣ୍ଟା ଧରି ଚାଲିଥିଲା । ମୁଶାରଫ୍‌ଙ୍କ ପାକିସ୍ଥାନ ଗସ୍ତ ଆମନ୍ତ୍ରଣକୁ ବାଜପେୟୀ ଗ୍ରହଣ କରିଥିଲେ । ଏକକଭାବେ ଆଲୋଚନାରେ ମୁଶାରଫ୍ ଓ ବାଜପେୟୀ ସହମତି ପ୍ରକାଶ କରିଥିବା ୫ ପଂକ୍ତି ବିଶିଷ୍ଟ ବିବୃତି ପ୍ରେସ୍‌କୁ ପ୍ରଦାନ କରାଯାଇଛି । ଏଥିରେ ମୁଖ୍ୟତଃ ସୀମାପାରି ଆତଙ୍କବାଦ, ଆଣବିକ ଆତଙ୍କ ହ୍ରାସ, ଯୁଦ୍ଧବନ୍ଦୀ ମୁକ୍ତି ପ୍ରସଙ୍ଗ ଓ ବାଣିଜ୍ୟିକ ସମ୍ପର୍କ ପ୍ରତିଷ୍ଠା ବିଷୟରେ ଆଲୋଚନା ହୋଇଥିଲା । କାଶ୍ମୀର ସମସ୍ୟା ଓ ସୀମାପାରି ଆତଙ୍କବାଦ ମୁଖ୍ୟ ପ୍ରସଙ୍ଗ ଥିବା ସମୟରେ ଏହାକୁ ନେଇ ମତଦ୍ୱୈଧ ଘଟିଲା । ତୃତୀୟ ପର୍ଯ୍ୟାୟ ଆଲୋଚନାବେଳେ ମତଭେଦ ଘଟିବାରୁ ଆଗ୍ରା ଶିଖର ବୈଠକ ଫଳପ୍ରସୂ ହୋଇପାରିଲା ନାହିଁ । ତାସକେଣ୍ଟ ରାଜିନାମା, ସିମଳା ରାଜିନାମା, ଲାହୋର ଘୋଷଣାନାମାରେ ଦୁଇ ଦେଶର ସ୍ୱାର୍ଥ ସମ୍ପର୍କୀୟ ବହୁ ପ୍ରସ୍ତାବ ଥିଲେ ହେଁ ତା' ଉପରେ ମଧ୍ୟ ଗୁରୁତ୍ୱ ପ୍ରଦାନ କରାଗଲା ନାହିଁ ।

ଶିଖର ବୈଠକ ଅନ୍ତରାଳେ ପ୍ରଧାନମନ୍ତ୍ରୀ ଅଟଳବିହାରି ବାଜପେୟୀଙ୍କ କେତେକ ଦୂରଦୃଷ୍ଟି-ସମ୍ପନ୍ନ ଚିନ୍ତାଧାରା ପ୍ରତିଫଳିତ ହୋଇଥିବାର ଲକ୍ଷ୍ୟ କରାଯାଇପାରେ । ଭାରତର ପ୍ରଗତି

କ୍ଷେତ୍ରରେ କାଶ୍ମୀର ସମସ୍ୟା ସବୁଠାରୁ ବଡ଼ ଅନ୍ତରାୟ ବୋଲି ସେ ଜାଣିଥିଲେ । ଏହାକୁ ସେ ସଫଳତାର ସହ ସମାଧାନ କରିପାରିଲେ ଭାରତର ପ୍ରଗତି ହେବା ସଙ୍ଗେ ସଙ୍ଗେ ଜାତିସଂଘର ନିରାପତ୍ତା ପରିଷଦର ସ୍ଥାୟୀ ସଦସ୍ୟ ପଦ ହାସଲ କରିବାର ପଥ ପରିଷ୍କାର ହୋଇଯିବ । ପୁନରାୟ ପ୍ରସ୍ତାବିତ ଭାରତ-ଇରାନ୍ ପାଇପ୍ ଲାଇନ୍ ପ୍ରତିଷ୍ଠା ପ୍ରକଳ୍ପଟି ପାକିସ୍ଥାନ ସହିତ ସୁସମ୍ପର୍କ ଉପରେ ବହୁପରିମାଣରେ ନିର୍ଭର କରେ । କେନ୍ଦ୍ର ଏସିଆରୁ ସହଜ ଓ ଶସ୍ତାରେ ପ୍ରାକୃତିକ ବାଷ୍ପ ସଂଗ୍ରହ କରି ଭାରତ ତାହାର ବଜାର ବ୍ୟବସ୍ଥାକୁ ସୁସଂଯୋଜିତ କରିବାର ଯେଉଁ ଉଦ୍ଦେଶ୍ୟ ରଖିଛି, ସେଥିପାଇଁ ଏହି ବୈଠକର ସଫଳତା ନିତାନ୍ତ ଜରୁରୀ ଥିଲା । ଏତଦ୍‌ବ୍ୟତୀତ ହିନ୍ଦୁ ଅଧୁଷିତ ଜାମ୍ମୁବାସୀ ଶାନ୍ତିରେ ସହାବସ୍ଥାନ କରିବା ସଙ୍ଗେ ସଙ୍ଗେ କାଶ୍ମୀରର ଆତଙ୍କବାଦ ପାଇଁ ପ୍ରତିବର୍ଷ ଭାରତ ଯେଉଁ କୋଟି କୋଟି ଟଙ୍କା ଖର୍ଚ୍ଚ କରୁଛି, ତାହାକୁ ଦେଶର ପ୍ରଗତିମାର୍ଗରେ ଖର୍ଚ୍ଚ କରାଯାଇ ଭାରତୀୟ ଅର୍ଥନୀତିକୁ କେତେକ ପରିମାଣରେ ସୁଦୃଢ଼ କରାଯାଇପାରିବ । ଏତଦ୍‌ବ୍ୟତୀତ ଏହି ବୈଠକ ସଫଳ ହୋଇଥିଲେ ଆନ୍ତର୍ଜାତୀୟ ସ୍ତରରେ ଭାରତର ସମ୍ମାନ ମଧ୍ୟ ବୃଦ୍ଧି ପାଇଥାନ୍ତା ।

ସୋମବାର ଚିଠା ମିଳିତ ବିବୃତି ପ୍ରସ୍ତୁତି ବେଳେ 'କାଶ୍ମୀର ପ୍ରସଙ୍ଗର ସମାଧାନ' ବାକ୍ୟ ନେଇ ଭାରତ ଆପତ୍ତି କରିବା ସମୟରେ 'ନିଶାକାରବାର ଓ ସନ୍ତ୍ରାସବାଦ'କୁ କେନ୍ଦ୍ରକରି ପାକିସ୍ଥାନ ପ୍ରତିବାଦ କରିଥିଲା । ସୀମାପାର ଆତଙ୍କବାଦକୁ ପାକିସ୍ଥାନର ପ୍ରୋତ୍ସାହନ ବିଷୟକୁ ପ୍ରଧାନମନ୍ତ୍ରୀ ଶିଖର ବୈଠକର ଆଲୋଚନା ପରିସରକୁ ଆଣିବାଦ୍ୱାରା ଦୁଇନେତାଙ୍କ ମଧ୍ୟରେ ମତପାର୍ଥକ୍ୟ ସୃଷ୍ଟି ହୋଇଥିଲା ଏବଂ ମୁଶାରଫ୍ ଶେଷ ପର୍ଯ୍ୟନ୍ତ ଏହାକୁ ଗ୍ରହଣ କରିନଥିଲେ । କାଶ୍ମୀର ବାସୀଙ୍କ ବିକାଶ ପ୍ରକ୍ରିୟାରେ ପାକିସ୍ଥାନ କିପରି ସାହାଯ୍ୟ କରିପାରିବ, ତାର ଆଲୋଚନା ପାଇଁ ଭାରତ ପ୍ରସ୍ତାବ ଦେଇଥିଲେ ହେଁ ପ୍ରତିପକ୍ଷଙ୍କ ଦ୍ୱାରା ଏହା ଗ୍ରହଣୀୟ ହୋଇନଥିଲା । ତିନୋଟି ପର୍ଯ୍ୟାୟ ଆଲୋଚନା କାଶ୍ମୀର ନିକଟରେ ଅଟକିଗଲା । ମୁଶାରଫ କହିଥିଲେ କାଶ୍ମୀର ହେଉଛି ବିବାଦର କେନ୍ଦ୍ରବିନ୍ଦୁ । ଏହାକୁ ବିବାଦୀୟ ଅଞ୍ଚଳଭାବେ ଭାରତ ଗ୍ରହଣ କରିନେବା ସଙ୍ଗେ ସଙ୍ଗେ କାଶ୍ମୀରବାସୀଙ୍କ ନିଜ ଇଚ୍ଛାନୁଯାୟୀ ସମସ୍ୟାର ସମାଧାନ ଉପରେ ମୁଶାରଫ୍ ଗୁରୁତ୍ୱ ଦେଇଥିଲେ । ଉଗ୍ରପନ୍ଥୀ କାର୍ଯ୍ୟକଳାପକୁ ସେ ମୁକ୍ତିସଂଗ୍ରାମୀଙ୍କ ଧର୍ମଯୁଦ୍ଧ ଓ ଜାତୀୟବାଦୀ କାର୍ଯ୍ୟକଳାପ ବୋଲି ଦୃଢ଼ୋକ୍ତି କରିଥିଲେ । ପାକ୍‌ପ୍ରଶିକ୍ଷିତ ଉଗ୍ରପନ୍ଥୀ ଜାମ୍ମୁକାଶ୍ମୀରରେ ସନ୍ତ୍ରାସବାଦୀ କାର୍ଯ୍ୟକଳାପ ଜାରି ରଖିଥିବାର ବହୁ ପ୍ରମାଣ ଲାଲକୃଷ୍ଣ ଆଡ଼ୱାଣୀ ଓ ପ୍ରତିରକ୍ଷାମନ୍ତ୍ରୀ ଶ୍ରୀ ଯଶୋବନ୍ତ ସିଂହ ମୁଶାରଫ୍‌ଙ୍କୁ ପ୍ରଦାନ କରିଥିଲେ । ଭାରତୀୟ ବିମାନକୁ କାଠମାଣ୍ଡୁରୁ କାନ୍ଦାହାର ଅପହରଣ କରିନେଇଥିବା ବ୍ୟକ୍ତିବିଶେଷ ଏବେ ପାକିସ୍ଥାନରେ ଅଛନ୍ତି ଏବଂ ସେମାନଙ୍କୁ ଭାରତହସ୍ତରେ ଅର୍ପଣ କରାଯିବା ପ୍ରସଙ୍ଗକୁ ମଧ୍ୟ ପ୍ରତିପକ୍ଷ ଚତୁରତାର ସହିତ ଆଡ଼େଇ ଯାଇଥିଲେ । ଶିଖର ବୈଠକରେ ଯୋଗ ଦେବା ପୂର୍ବରୁ ମୁଶାରଫ୍ ଘୋଷଣା କରିଥିଲେ କାଶ୍ମୀରକୁ ଏକ ସ୍ୱାଧୀନ ରାଷ୍ଟ୍ର କରାଯିବା ପ୍ରସ୍ତାବର ସେ ସମର୍ଥକ ନୁହନ୍ତି । ପାକିସ୍ଥାନ ସହିତ କାଶ୍ମୀରର ମିଶ୍ରଣ ସେ ଚାହାନ୍ତି । ଏହିପରି ବିରୋଧ ମତବାଦ ଓ ପ୍ରାକ୍‌ଯୋଜନା ଯୋଗୁଁ ଶିଖର ବୈଠକ ବିଫଳ ହୋଇଥିଲା ।

ଜେନେରାଲରୁ ପାକିସ୍ଥାନର ରାଷ୍ଟ୍ରପତି ଆସନ ଅଳଙ୍କୃତ କରିଥିବା ମୁଶାରଫ୍ ଆଲୋଚନା ପୂର୍ବରୁ ସାଧାରଣ ସୌଜନ୍ୟ ବିସ୍ମୃତ ହୋଇଥିବା ମନେହୁଏ । ଭାରତ ତାଙ୍କୁ ଯେଉଁ ରାଷ୍ଟ୍ରୀୟ ମର୍ଯ୍ୟାଦା ପ୍ରଦାନ କରିଛି, ତାର ତୁଳନା ନାହିଁ । ମୁଶାରଫ୍ ଓ ତାଙ୍କ ପତ୍ନୀ ବେଗମ୍ ମୁଶାରଫ୍ ଆଗ୍ରାର ଯେଉଁ 'ଅମରବିଳାସ' ହୋଟେଲ୍‌ର କୋହିନୁର ସୁ୍ୟଟରେ ରହୁଥିଲେ ତାର ଗୋଟିଏ ରାତିର ଭଡ଼ା ୧୫୦୦ ଆମେରିକୀୟ ଡଲାର ବା ଭାରତୀୟ ମୁଦ୍ରାରେ ପ୍ରାୟ ୭୦ ହଜାର ଟଙ୍କା । ଏହି ବିଳାସପୂର୍ଣ୍ଣ କକ୍ଷରୁ ସେମାନେ ତାଜମହଲ୍‌ର ସୌନ୍ଦର୍ଯ୍ୟ ଦେଖିପାରୁଥିଲେ । ସେମାନେ ଯେପରି ଅତ୍ୟନ୍ତ ବିଳାସପୂର୍ଣ୍ଣ ଭାବରେ ଭାରତରେ ତିନିଦିନ ଅତିବାହିତ କରିପାରିବେ, ସେଥିପ୍ରତି ଭାରତ ସରକାର ସମ୍ପୂର୍ଣ୍ଣ ତୀକ୍ଷ୍ଣ ଦୃଷ୍ଟି ରଖିଥିଲେ । ମାତ୍ର ମୁଶାରଫ୍ ଭାରତର ଏହି ଆତିଥେୟତା ପ୍ରତି ଉପଯୁକ୍ତ ମର୍ଯ୍ୟାଦା ପ୍ରଦାନ କରିଛନ୍ତି ବୋଲି ମନେହୁଏ ନାହିଁ । ଭାରତର ବିରୋଧ ସତ୍ତ୍ୱେ ମୁଶାରଫ୍ ୧୪ ତାରିଖରେ ହୁରିଆତ କନ୍‌ଫରେନ୍‌ସ ନେତାଙ୍କ ସହିତ ୨୦ ମିନିଟ କଥାବାର୍ତ୍ତା କରି କାଶ୍ମୀରବାସୀଙ୍କୁ ନିଜର ଭବିଷ୍ୟତ ସମ୍ପର୍କରେ ଆତ୍ମନିର୍ଦ୍ଧାରଣ ଅଧିକାର ଦେବାପାଇଁ ଇସ୍‌ଲାମବାଦର ନୈତିକ ଓ ରାଜନୀତିକ ସମର୍ଥନ ରହିବ ବୋଲି ଦୃଢ଼ ପ୍ରତିଶ୍ରୁତି ଦେଇଛନ୍ତି । ତଥାପି ଏ କ୍ଷେତ୍ରରେ ଭାରତ ନୀରବ ରହିଛି । ତାଙ୍କୁ ପ୍ରୋଟୋକଲ୍ ଦେବାରେ ଭାରତ ଆଦୌ ତ୍ରୁଟି କରିନାହିଁ । କାଶ୍ମୀର ପ୍ରସଙ୍ଗ ସହିତ ଅନ୍ୟ ପ୍ରସଙ୍ଗ ଆଲୋଚନା କରିବାକୁ ମୁଶାରଫ୍ ଯେଉଁ ସର୍ତ୍ତ ରଖିଥିଲେ ଭାରତ ତାକୁ ମାନିନେଇଛି । ସରକାରୀ ଭାବେ ବୈଠକରେ କୌଣସି ଏଜେଣ୍ଡା ପ୍ରସ୍ତୁତ ନ ହେବାକୁ ସେ ଯେଉଁ ଦାବୀ କରିଥିଲେ, ତାହା ମଧ ଭାରତ ଦ୍ୱାରା ଗୃହୀତ ହୋଇଛି । ୧୬ ତାରିଖ ପ୍ରାତଃଭୋଜନ ସମୟରେ ସମ୍ପାଦକମାନଙ୍କ ସହିତ ମୁଶାରଫ୍ ଯେଉଁ ଆଲୋଚନା କରିଥିଲେ, ଭାରତର ବିନା ପରାମର୍ଶରେ ପାକିସ୍ଥାନ ଦୂରଦର୍ଶନ ତାହା ସିଧା ପ୍ରସାରଣ କରିଛନ୍ତି, ଯାହା ସମ୍ପୂର୍ଣ୍ଣ ଭାବରେ ଅନୈତିକ । କାଶ୍ମୀରକୁ ବିବାଦୀୟ ଅଞ୍ଚଳ ରୂପେ ସ୍ୱୀକୃତି ଦେବାପାଇଁ ଭାରତ ଉପରେ ମୁଶାରଫ୍ ଚାପ ପକାଇବା ସହିତ କାର୍ଗିଲ ସଂଘର୍ଷ ପ୍ରସଙ୍ଗରେ ୧୯୭୧ ବାଂଲାଦେଶ ଯୁଦ୍ଧବେଳେ ଭାରତର ଭୂମିକା ସମ୍ପର୍କରେ ଉଲ୍ଲେଖ କରି ଭାରତବାସୀଙ୍କ ଭାବପ୍ରବଣତାକୁ ଆଘାତ ଦେଇଛନ୍ତି । ପୁନରାୟ 'ମିଳିତ ଘୋଷଣାନାମା ପ୍ରକାଶ ନକରି ମଧରାତ୍ରରେ ନିଜ ଦେଶକୁ ଫେରିଯିବା ଆଦି କାର୍ଯ୍ୟକଳାପ ଦ୍ୱାରା ଆତିଥ୍ୟର ଯେ ଅବମାନନା କରିଛନ୍ତି, କହିବା ଭୁଲ୍‌ହେବ ନାହିଁ ।

ଉଭୟନେତା ହୃଦ୍‌ବୋଧ କରିଥିଲେ କାଶ୍ମୀର ପ୍ରସଙ୍ଗ ଓ ସୀମାନ୍ତ ସେପାରି ସନ୍ତ୍ରାସବାଦୀ କାର୍ଯ୍ୟକଳାପ ପ୍ରସଙ୍ଗରେ ମତଭେଦ ସୃଷ୍ଟି ହେବ । ଯଦି ଭାରତ କାଶ୍ମୀରକୁ ପାକିସ୍ଥାନକୁ ଅର୍ପଣ କରେ, ତେବେ ଲାଦାଖ ଅଞ୍ଚଳକୁ ଚୀନ୍ ନେଇଯିବ । ଭାରତରେ ବସବାସ କରୁଥିବା ୨୫ କୋଟି ମୁସଲମାନଙ୍କ ଜୀବନ ବିପଦସଙ୍କୁଳ ହୋଇଉଠିବ । ମୁଶାରଫ୍ ନିଶ୍ଚିତ ଥିଲେ ଯେ, ଯଦି ଶିଖର ବୈଠକରେ ସେ କାଶ୍ମୀର ପ୍ରସଙ୍ଗ ଉତ୍‌ଥାପନ ନ କରନ୍ତି, ତେବେ ଜେହାଦୀମାନେ ତାଙ୍କୁ ଶାନ୍ତିରେ ରଖାଇଦେବେ ନାହିଁ । ବୋଧହୁଏ ସେହି କାରଣରୁ ସାମ୍ବାଦିକ ସମ୍ମିଳନୀରେ କହିଥିଲେ, ସେ

ଯଦି କାଶ୍ମୀର ପ୍ରସଙ୍ଗ ନ ଉଠାଇବେ, ତେବେ ଦିଲ୍ଲୀରେ ଥିବା ତାଙ୍କର ପୁରାତନ ଘରଟିକୁ କ୍ରୟକରି ରହିଯିବେ । ଏହି ଉଭୟ ପ୍ରସଙ୍ଗକୁ ନେଇ ଆଗ୍ରା ଶିଖର ବୈଠକର ଫଳାଫଳ ଅନିଶ୍ଚିତ ରହିଗଲା । କାଶ୍ମୀରକୁ ଶକ୍ତିଦ୍ୱାରା ଦଖଲ କରିବାର କୁ-ଅଭିପ୍ରାୟ ଜାଣି, ଭାରତର ପ୍ରଧାନମନ୍ତ୍ରୀ ଅଟଳ ବିହାରୀ ବାଜପେୟୀ ପାକିସ୍ଥାନ ଫେରିଯିବାକୁ ଉଦ୍ୟମରତ ମୁଶାରଫଙ୍କୁ ଚେତେଇ ଦେଇ କହିଥିଲେ, କାଶ୍ମୀରରେ ସନ୍ତ୍ରାସବାଦୀ କାର୍ଯ୍ୟକଳାପକୁ ଦମନ କରିବା ପାଇଁ ଭାରତ ନିକଟରେ ଯଥେଷ୍ଟ ଶକ୍ତି ରହିଛି ।

ଆଗ୍ରା ଶିଖର ବୈଠକର ବିଫଳତା ପାଇଁ ପାକିସ୍ଥାନର ଉଗ୍ରପନ୍ଥୀ ସଙ୍ଗଠନଗୁଡ଼ିକ ଭାରତକୁ ଦାୟୀ କରିବା ସଙ୍ଗେ ସଙ୍ଗେ ଭବିଷ୍ୟତରେ ହିଂସା ଓ ରକ୍ତପାତ ବୃଦ୍ଧି ପାଇବ ବୋଲି ଧମକ ଦେଇଛନ୍ତି । ଉଗ୍ରବାଦୀ ସଙ୍ଗଠନ ହରକତ୍ ଉଲ ମୁଜାହିଦିନର ମୁଖପାତ୍ର ଅମୀରୁଦ୍ଦିନ ମୁଗଲ ଭାରତକୁ ବିଫଳତା ପାଇଁ ଦାୟୀ କରିବା ବେଳେ ହରକତ୍-ଇ-ଜେହାଦି-ଇସ୍‌ଲାମୀ ଗୋଷ୍ଠୀର ମୁଖ୍ୟ ସଇଦ ଆଓ୍ୱାନ୍ ସମାଧାନ ପାଇଁ ଜେହାଦ ହିଁ ଏକମାତ୍ର ପନ୍ଥା ବୋଲି କହିଛନ୍ତି । ପାକିସ୍ଥାନର ପୂର୍ବତନ ପ୍ରଧାନମନ୍ତ୍ରୀ ବେନ୍‌ଜିର ଭୁଟ୍ଟୋ 'ଦି ନେସନ' ଖବରକାଗଜରେ ଏକ ଲେଖା ପ୍ରକାଶ କରି କହିଛନ୍ତି, ମୁଶାରଫ୍ ନିର୍ବାଚିତ ରାଷ୍ଟ୍ରମୁଖ୍ୟ ନହୋଇଥିବାରୁ ଆଗ୍ରା ବୈଠକ ମୂଲ୍ୟହୀନ । ଆଗ୍ରା ଶିଖର ବୈଠକର ବିଫଳତା ପରେ ପ୍ରଧାନମନ୍ତ୍ରୀଙ୍କ ଦ୍ୱାରା ଆହୂତ ସର୍ବଦଳୀୟ ବୈଠକରେ ପାକିସ୍ଥାନ ସହିତ କାଶ୍ମୀର ପ୍ରସଙ୍ଗ ଉପରେ ଭବିଷ୍ୟତରେ ଯେକୌଣସି ଆଲୋଚନା ହେବା ପୂର୍ବରୁ ନିର୍ଦ୍ଧାରିତ ପ୍ରାକ୍ ସର୍ତ୍ତ ରହିବ ବୋଲି ସର୍ବସମ୍ମତିକ୍ରମେ ପ୍ରସ୍ତାବ ଗୃହୀତ ହୋଇଛି । ଇତି ମଧ୍ୟରେ ମୁଶାରଫ୍ ଭାରତର ପ୍ରଧାନମନ୍ତ୍ରୀ ଓ ବୈଦେଶିକ ମନ୍ତ୍ରୀଙ୍କୁ ବିଧିବଦ୍ଧ ଭାବରେ ପାକିସ୍ଥାନରେ ଏ ସମ୍ପର୍କରେ ଆଲୋଚନା ପାଇଁ ନିମନ୍ତ୍ରଣ ଜଣାଇଛନ୍ତି । ଆଲୋଚନାର ତାରିଖ ନିର୍ଦ୍ଧାରଣ ଭାରତ ନିରୂପଣ କରିବ ବୋଲି ଏଥିରେ କୁହାଯାଇଛି । ଭବିଷ୍ୟତ ଆଲୋଚନା ପାଇଁ ଏହା ଏକ ସମ୍ଭାବନା ସୃଷ୍ଟି କରିଛି । ଆଶା କରାଯାଏ ଦୁଇପକ୍ଷ ଏହିପରି ବାରମ୍ବାର ମିଳିତ ହେବାଦ୍ୱାରା କୌଣସି ସମାଧାନର ସୂତ୍ର ଆବିଷ୍କାର ହୋଇପାରେ ।

ଆଶାକୁ ନେଇ ବଞ୍ଚିବା ମଣିଷର ଲକ୍ଷ୍ୟ । ବୈରଭାବ ଦ୍ୱାରା କୌଣସି ସମାଧାନ ସମ୍ଭବ ନୁହେଁ । ଗୋଟିଏ ଦେଶ ଉପନିବେଶବାଦୀଙ୍କ ଚକ୍ରାନ୍ତରେ ଦୁଇଟି ରାଷ୍ଟ୍ରରେ ପରିଣତ ହୋଇ ପରସ୍ପର ପ୍ରତି ଯେଉଁ ଶତ୍ରୁମନୋଭାବ ପ୍ରକାଶ କରି ଚାଲିଛନ୍ତି, ତାହା ଇତିହାସର ବିଡ଼ମ୍ବନା ମାତ୍ର । ଏ କ୍ଷେତ୍ରରେ ଭାରତ ବହୁ ସମୟ ଧରି ଧୈର୍ଯ୍ୟ ଧରି ଆସିଛି । ଏକ ଆକ୍ରମଣକାରୀ ଦେଶ ଭାବରେ ପାକିସ୍ଥାନ ବର୍ତ୍ତମାନ ବିଶ୍ୱଦରବାରରେ ଧୀରେ ଧୀରେ ଏକଘରିଆ ହୋଇଯିବାକୁ ଆରମ୍ଭ କରିଛି; ମାତ୍ର ଭାରତର ମର୍ଯ୍ୟାଦା ଆନ୍ତର୍ଜାତୀୟ ସ୍ତରରେ ବୃଦ୍ଧି ପାଇଛି । ଆଶା କରାଯାଏ, ପାକିସ୍ଥାନ ଶାସକମାନଙ୍କ ମନରେ ବିଶ୍ୱର ଏହି ପ୍ରତିକୂଳ ମନୋଭାବ ସଦ୍‌ବୁଦ୍ଧି ଉଦୟ କରିବ ଏବଂ ଭବିଷ୍ୟତରେ ଭାରତ ଏବଂ ପାକିସ୍ଥାନ ମଧ୍ୟରେ ରହିଥିବା ମନାନ୍ତର ଓ ମତାନ୍ତର ଦୂର ହୋଇପାରିବ ।

●

# ଗୁଜୁରାଟ ଭୂମିକମ୍ପ

(ଉପକ୍ରମ–ଭାରତ ଓ ବିଶ୍ୱର କେତେକ ବୃହଦ୍ ଭୂମିକମ୍ପ–କ୍ଷୟକ୍ଷତି–ସରକାରୀ ପଦକ୍ଷେପ–ଜାତୀୟ ଓ ଆନ୍ତର୍ଜାତୀୟ ସହାୟତା–ଭୂମିକମ୍ପର କାରଣ–ନିରାକରଣ ଉପାୟ–ଉପସଂହାର)

୨୦୦୧ ମସିହା ଜାନୁଆରୀ ୨୬ ତାରିଖ । ସମଗ୍ର ଭାରତବର୍ଷ ଯେତେବେଳେ ୫୧ତମ ସାଧାରଣତନ୍ତ୍ର ଦିବସ ପାଳନରେ ଉତ୍ସବ ମୁଖରିତ; ଆଲଜେରିଆର ରାଷ୍ଟ୍ରପତି ଭାରତୀୟ ଗଣତନ୍ତ୍ରର ରାଷ୍ଟ୍ରୀୟ ଅତିଥି ରୂପେ ଅଭିବାଦନ ଗ୍ରହଣରେ ଅଭିଭୂତ, ଠିକ୍ ସେହି ସମୟରେ ଗୁଜୁରାଟରେ ଯେଉଁ ପ୍ରାକୃତିକ ବିପର୍ଯ୍ୟୟର ସୂତ୍ରପାତ ହେଲା, ତାହା ଯେପରି ଅଭୂତପୂର୍ବ ସେହିପରି ବେଦନାଦାୟକ । ମାତ୍ର ଅଳ୍ପ କେତୋଟି ମୁହୂର୍ତ୍ତରେ ଏକ ସମୃଦ୍ଧଶାଳୀ ସହର ଧ୍ୱସ୍ତବିଧ୍ୱସ୍ତ ହୋଇପଡ଼ିଲା । ସବୁଠାରୁ ବେଶି କ୍ଷତିଗ୍ରସ୍ତ ହୋଇଛି ଗୁଜୁରାଟର ଭୁଜ ସହର । ଏହି ଭୂମିକମ୍ପ ସ୍ମରଣ କରାଇଦିଏ ୧୯୦୬ ମସିହାର ଫ୍ରାନ୍‌ସିସ୍କୋରେ ସଂଘଟିତ ଅନ୍ୟ ଏକ ବେଦନାଦାୟକ ଭୂମିକମ୍ପକୁ । ଭୁଜ ସହରର ଯେଉଁଦିଗକୁ ଆଖିଯିବ, ଗଳିତ ଶବର ଲମ୍ୱାଧାଡ଼ି ଓ କୁଢ଼ କୁଢ଼ ଶବର ସ୍ତୂପ । ନୂତନ ଶତାବ୍ଦୀର ଏହି ଧ୍ୱଂସକାରୀ ରୂପ ମାନବସମାଜକୁ ଯେଉଁ ଚେତାବନୀ ଦେଲା, ସେ ସମ୍ପର୍କରେ ସାମ୍ପ୍ରତିକ ସମୟର ସଚେତନ ମଣିଷ ଆତ୍ମନିରୀକ୍ଷା କରିବା ଆବଶ୍ୟକ । ନୂତନ ଶତାବ୍ଦୀର ଆଉ ଗୋଟିଏ ଦୁଃଖଦାୟକ ଘଟଣା ଘଟିଥିଲା ସାନସାଲ୍‌ଭେଡରରେ ଫେବୃଆରୀ ୧୩ ତାରିଖରେ । ସେହି ଭୂମିକମ୍ପରେ ପ୍ରାୟ ୨୩୭ ଜଣ ମୃତ୍ୟୁମୁଖରେ ପଡ଼ିଥିବା ସମୟରେ ୧୬୦୦ ଜଣ ଆହତ ହୋଇଥିଲେ । ଠିକ୍ ଏକମାସ ପୂର୍ବରୁ ଅନ୍ୟ ଏକ ଭୂମିକମ୍ପରେ ସାଲଭେଡରରେ ପ୍ରାୟ ୮୦୦ ଲୋକ ମୃତ୍ୟୁବରଣ କରିଥିଲେ । ଏହି ସମୟରେ ମଧ ଗ୍ରୀସ ଓ ଇଣ୍ଡୋନେସିଆରେ ଭୂମିକମ୍ପ ହୋଇଛି । କିନ୍ତୁ ସମସ୍ତ ଦୁର୍ବିପାକକୁ ଗୁଜୁରାଟର ଭୂମିକମ୍ପ ମଳିନ କରିଦେଇଛି । ମାନବ ଜାତିର ଇତିହାସରେ ଏପରି ଅଶ୍ରୁଳ ଓ ଦୁଃଖଦ ଘଟଣା ଅକଳ୍ପନୀୟ ନିଶ୍ଚୟ ।

ବିଶ୍ୱରେ ଶତାଧିକ ଭୂମିକମ୍ପ ହୋଇଥିଲେ ହେଁ ସମସ୍ତ ଭୂମିକମ୍ପ ମାନବ ଜାତିର କ୍ଷତି ଘଟାଇ ନାହିଁ । ଭାରତ ଓ ବିଶ୍ୱର ଅନ୍ୟସ୍ଥାନରେ ସଂଘଟିତ ଯେଉଁ କେତୋଟି ଭୂମିକମ୍ପ ମଣିଷ ସମାଜର ଆର୍ଥିକ ଓ ମାନସିକ କ୍ଷତି ଘଟାଇଛି ସେଗୁଡ଼ିକ ହେଲା ୧୯୩୪ ମସିହା ବିହାର (ମୃତ୍ୟୁ ସଂଖ୍ୟା–୧୦,୭୦୦), ୧୯୩୫ରେ କ୍ୱେଟା (୬୦ ହଜାର ମୃତ), ୧୯୫୦ରେ ଆସାମ (୧୫୩୮ ମୃତ), ୧୯୮୮ରେ ବିହାର (୧୦୦୦ରୁ ଅଧିକ ମୃତ), ୧୯୯୧ରେ ଉତ୍ତରକାଶୀ (୧୫୦୦୦ ମୃତ), ୧୯୯୩ରେ ମହାରାଷ୍ଟ୍ରର ଲାଟୁର (୧୦,୦୦୦ ମୃତ), ୧୯୯୭ରେ ମଧ୍ୟପ୍ରଦେଶର ଜବଲପୁର (ଶତାଧିକ ମୃତ), ୧୯୯୯ରେ ଉତ୍ତରାଞ୍ଚଳ (ଶତାଧିକ ମୃତ) । ସେହିପରି ବିଶ୍ୱର କେତୋଟି ବୃହତ ଭୂମିକମ୍ପ ମଧ୍ୟରୁ ୧୫୫୬ ସାନ୍‌ସି (ଚୀନ୍) ଭୂମିକମ୍ପରେ ପ୍ରାୟ ୮ଲକ୍ଷ ୩୦ ହଜାର ମୃତ; ଟାଙ୍ଗସାନ୍ (ଚୀନ୍)ରେ ୧୯୭୬ରେ ହୋଇଥିବା ଭୂମିକମ୍ପରେ

୨ଲକ୍ଷ ୪୨ ହଜାର ମୃତ, ୧୧୩୮ ମସିହାରେ ଆଲିପୋ (ସିରିଆ)ରେ ୨ଲକ୍ଷ ୩୦ ହଜାର ମୃତ, ୮୫୬ ମସିହାରେ ଡାମଗହାନ୍ (ଇରାନ୍)ରେ ୨ଲକ୍ଷ ମୃତ, ୧୯୨୩ ରେ ଜାପାନରେ ୧ଲକ୍ଷ ମୃତ, ୧୯୦୮ରେ ମେସିନ୍ (ଇଟାଲୀ)ରେ ୧ଲକ୍ଷ ୬୦ ହଜାର ମୃତ, ୧୯୨୩ରେ କାଓ୍ୱାଣ୍ଟୋରେ ୧ଲକ୍ଷ ୪୪ ହଜାର ମୃତ୍ୟୁବରଣ କରିଥିଲେ ।

ସମ୍ପ୍ରତି ୨୦୦୧ ମସିହା ଜାନୁଆରୀ ୨୬ ତାରିଖରେ ଗୁଜୁରାଟରେ ହୋଇଥିବା ଭୂମିକମ୍ପରେ ବେସରକାରୀ ହିସାବରେ ୧ ଲକ୍ଷରୁ ଊର୍ଦ୍ଧ୍ୱଲୋକ ମୃତ ଓ ସରକାରୀ ହିସାବରେ ୩ କୋଟି ୫୦ ଲକ୍ଷ ଲୋକ ବିପନ୍ନ ହୋଇଛନ୍ତି । ସରକାରୀ ବିବରଣୀ ଅନୁଯାୟୀ କଛ, ଭୁଜ, ଅହମ୍ମଦାବାଦ, ଜମନଂଗର ଓ ରାଜକୋଟ ଅଞ୍ଚଳର ୪୯ଟି ତାଲୁକ ଅନ୍ତର୍ଗତ ୯୪୯ ଟି ଗ୍ରାମ ସମ୍ପୂର୍ଣ୍ଣ ଧ୍ୱଂସ ହୋଇଯାଇଛି । ଭୁଜରେ ୪୦୦ ଜଣ ଶିଶୁ ଓ ୫୦ ଜଣ ଶିକ୍ଷକ ସାଧାରଣତନ୍ତ୍ର ଦିବସର ଶୋଭାଯାତ୍ରାରେ ଅଞ୍ଜାର ସହରର ଏକ ସଂକୀର୍ଣ୍ଣ ଗଳିରେ ଯାଉଥିବା ସମୟରେ ଭୂକମ୍ପ ଯୋଗୁଁ ଉଭୟପଟ ଗୃହଗୁଡ଼ିକ ଭୁଷୁଡ଼ି ପଡ଼ିବାରୁ ସେମାନେ ସମସ୍ତେ ମୃତ୍ୟୁବରଣ କରିଛନ୍ତି । ଭୁଜ ସହରର ଏକ ହାସପାତାଳ ଭୁଷୁଡ଼ି ୧୫୦ ଜଣ ରୋଗୀ ଓ ୧୫ ଜଣ କର୍ମଚାରୀ ନିହତ ହୋଇଛନ୍ତି । ଭୁଜର ୧୧୩ ବର୍ଷର ସଂଗ୍ରହାଳୟ ଧ୍ୱଂସ ପାଇ ବହୁ ପ୍ରାଚୀନ ଓ ମୂଲ୍ୟବାନ ପଦାର୍ଥ ନଷ୍ଟ ହୋଇଯାଇଛି । କ୍ଷତିଗ୍ରସ୍ତ କଚ୍ଛ ଜିଲ୍ଲାର ପଣ୍ୟ ପରିବହନ ଅବସ୍ଥା ଅଚଳ ହୋଇପଡ଼ିଛି । ଲବଣ ଉତ୍ପାଦନ କେନ୍ଦ୍ର ଓ କାଠଶିଳ୍ପ ସମ୍ପୂର୍ଣ୍ଣ ବିପର୍ଯ୍ୟସ୍ତ ହୋଇଛି । କାଣ୍ଡଲା ବନ୍ଦରର ୫ଟି ଜେଟିର ଭୂତଳ ପାଇଲସରେ ଫାଟ ସୃଷ୍ଟି ହୋଇଛି । ପବିତ୍ର ଦ୍ୱାରକାଧାମ ଏବଂ ସେଠାରୁ ୩୦ କି.ମି. ଦୂରରେ ଥିବା ବେଟଦ୍ୱିତ ଶ୍ରୀକୃଷ୍ଣଙ୍କ ନିବାସସ୍ଥଳୀ ବିଶେଷଭାବରେ କ୍ଷତିଗ୍ରସ୍ତ ହୋଇଛି । କୃଷ୍ଣଙ୍କ ଛଅରାଣୀଙ୍କ ଛଅଟି ନିବାସ ସମ୍ପୂର୍ଣ୍ଣ ଧ୍ୱସ୍ତବିଧ୍ୱସ୍ତ ହୋଇଛି । ଭୂମିକମ୍ପ ପରବର୍ତ୍ତୀ ସମୟରେ ସଂକ୍ରାମକ ରୋଗ ବ୍ୟାପିବାରୁ ବହୁ ଲୋକ ମଧ୍ୟ ମୃତ୍ୟୁବରଣ କରିଛନ୍ତି । ଏହି ଭୂମିକମ୍ପରେ ୨୦ ହଜାର ୮ ଶହ ୭୫ କୋଟି ଟଙ୍କାର ସମ୍ପତ୍ତି ନଷ୍ଟ ହୋଇଛି ବୋଲି କେନ୍ଦ୍ର ସରକାର ଅଟକଳ କରିଛନ୍ତି । ରାଜ୍ୟର ଶିଳ୍ପ ଓ ବାଣିଜ୍ୟିକ ଅନୁଷ୍ଠାନଗୁଡ଼ିକର ୮ ହଜାର କୋଟି ଟଙ୍କା; ସାଧାରଣ ଲୋକଙ୍କ ବାସଗୃହ ଓ ଅନ୍ୟାନ୍ୟ ସାମଗ୍ରୀ ୧୧ ହଜାର କୋଟି ଟଙ୍କା ଏବଂ ସରକାରୀ ଦପ୍ତରଗୁଡ଼ିକର କ୍ଷୟକ୍ଷତିର ପରିମାଣ ୧୮୭୫ କୋଟି ଟଙ୍କା ବୋଲି ହିସାବ କରାଯାଇଛି । ଏହି ବିପୁଳ ପରିମାଣର କ୍ଷତି ଜାତୀୟ ଅର୍ଥନୀତିକୁ ବହୁପରିମାଣରେ ପ୍ରଭାବିତ କରିଛି ।

ଗୁଜୁରାଟରେ ସଂଘଟିତ ଭୂମିକମ୍ପର କ୍ଷୟକ୍ଷତିର ଭରଣା ନିମିତ୍ତ କେନ୍ଦ୍ର ସରକାର ଅତିରିକ୍ତ ଦୁଇ ପ୍ରତିଶତ ଆୟକର ସରଚାର୍ଜ ଲାଗୁ କରିଛନ୍ତି । ଏହା ଉଭୟ ବ୍ୟକ୍ତିଗତ ଓ କମ୍ପାନୀ ଆୟ ଉପରେ ଲାଗୁ ହେବ । ପୁନଃନିର୍ମାଣ ଓ ଥଇଥାନ କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ ଭାବେ ଆଗେଇ ନେବାପାଇଁ ତଥା ରିଲିଫ୍ କାର୍ଡ଼ ବ୍ୟବସ୍ଥା ପ୍ରଚଳନ ନିମିତ୍ତ ଭୂକମ୍ପପ୍ରାଧୀକରଣ ଗଠନ ନିଷ୍ପତ୍ତି ହୋଇଛି । ଏହି ପୁନଃନିର୍ମାଣ କାର୍ଯ୍ୟକ୍ରମ ପାଇଁ କେନ୍ଦ୍ର ସରକାର ବିଶ୍ୱବ୍ୟାଙ୍କ୍ରୁ ୧୦୦ କୋଟି ଡଲାର ଏବଂ ଏସୀୟ ଉନ୍ନୟନ ବ୍ୟାଙ୍କ୍ରୁ ୫୦ କୋଟି ଡଲାର ଋଣ ଆଣିବାର ବ୍ୟବସ୍ଥା କରିଛନ୍ତି ।

ଯୁଦ୍ଧକାଳୀନ ଭିତ୍ତିରେ ଏହି କାର୍ଯ୍ୟକ୍ରମଗୁଡ଼ିକ କିପରି ସୁଚାରୁ ରୂପେ ସମ୍ପାଦନ ହୋଇପାରିବ, ସେ ସମ୍ପର୍କରେ ସରକାର ତୀକ୍ଷ୍ଣ ନଜର ଦେଇଛନ୍ତି ।

ଗୁଜୁରାଟ ଭୂମିକମ୍ପର ଏହି ଦାରୁଣ ବିପର୍ଯ୍ୟୟ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ଗଭୀର ପ୍ରତିକ୍ରିୟା ସୃଷ୍ଟି କରିଛି । ବହୁ ସ୍ଥାନରୁ ସମ୍ବେଦନଶୀଳତାର ହାତ ଲମ୍ବି ଆସିଛି ଗୁଜୁରାଟବାସୀଙ୍କ ସହାୟତା ନିମିତ୍ତ । ୨୬ ତାରିଖ ଭୂମିକମ୍ପ ପରେ ୩୧ ତାରିଖ ଦିନ ଭୁଜରେ ପୁଣି ୭ଥର ମୃଦୁ ଭୂମିକମ୍ପ ହୋଇଛି, ଯାହାର ବେଗ ରେକ୍ଟର ସ୍କେଲରେ ୩.୭ରୁ ୪.୫ ଥିଲା । ଏହା ମଧ୍ୟରେ ୩ରୁ ଅଧିକ ବେଗରେ ୧୧୦ ଥର ଭୂକମ୍ପନ ହୋଇଛି । ୩ରୁ କମ୍ ବେଗରେ ପ୍ରାୟ ୩ ଶହରୁ ଅଧିକଥର ଭୂକମ୍ପନ ଅନୁଭୂତ ହୋଇଛି । ଫେବୃଆରୀ ୩ ତାରିଖରେ ଗୁଜୁରାଟର ଅହମ୍ମଦାବାଦ, କଛ ଏବଂ ଚାବାଉରେ ଯେଉଁ ଭୂମିକମ୍ପ ହୋଇଛି, ରେକ୍ଟର ସ୍କେଲରେ ତାର ବେଗ ଥିଲା ପାଞ୍ଚ । ଏହି ବାରମ୍ବାର ଭୂକମ୍ପନ ଗୁଜୁରାଟ ବାସୀଙ୍କ ଆର୍ଥିକ ଓ ମାନସିକ ଅବସ୍ଥାକୁ ବେଶ୍ ଆଘାତ ଦେଇଛି । ଏପରି ଏକ ଦୁର୍ବିପାକରୁ ସେମାନଙ୍କୁ ସାହାଯ୍ୟ ପାଇଁ ଭାରତର ବିଭିନ୍ନ ପ୍ରଦେଶ ଓ ଭାରତ ବାହାରୁ ଅନେକ ଦେଶ ଉଭୟ ଅର୍ଥ ଓ ମାନବ ସମ୍ବଳ ପଠାଇ ମାନବିକତାର ପରିଚୟ ଦେଇଛନ୍ତି । ଓଡ଼ିଶା, ଆନ୍ଧ୍ରପ୍ରଦେଶ, ଝାଡ଼ଖଣ୍ଡ, କେରଳ, କର୍ଣ୍ଣାଟକ, ଆଓ୍ୱାର ସଂଗଠନ ବିଶ୍ୱ ହିନ୍ଦୁ ପରିଷଦ, ଆଇ.ଡି.ବି.ଆଇ. ବ୍ୟାଙ୍କ, ବିହାର, ପାକିସ୍ଥାନ, ବଙ୍ଗଳାଦେଶ, ଇଂଲଣ୍ଡ, ଆମେରିକା, ଇଟାଲୀ, ୟୁରୋପୀୟ ସମୁଦାୟ, ଚୀନ୍, ଫ୍ରାନ୍ସ, କାନାଡ଼ା, ଜାପାନ ପ୍ରଭୃତି ପ୍ରଚୁର ପରିମାଣର ଆର୍ଥିକ ସାହାଯ୍ୟ, ଔଷଧ ତଥା ଖାଦ୍ୟପଦାର୍ଥ ପଠାଇଛନ୍ତି ।

ଗୁଜୁରାଟରେ ହୋଇଥିବା ଭୂମିକମ୍ପର ଉତ୍ପତ୍ତିସ୍ଥଳ ଲୋଦାଇ ବୋଲି ଜଣାପଡ଼ିଛି । ଏକ ପ୍ରଚଣ୍ଡ ଶବ୍ଦରେ ଏଠାରେ ପ୍ରଥମେ ଭୂମିକମ୍ପ ହୋଇଥିଲା । ଏହାଦ୍ୱାରା ଭୁଜର କେତେକ ମଧ୍ୟଯୁଗୀୟ ସ୍ମାରକୀ ନଷ୍ଟ ହୋଇଯାଇଛି । ଭୂତତ୍ତ୍ୱବିତ୍‌ଙ୍କ ମତରେ ପୃଥିବୀ ଅଭ୍ୟନ୍ତରରେ ସୃଷ୍ଟି ହେଉଥିବା ବିଶେଷ ଚାପ ଏବଂ ତାପର ପରିବର୍ତ୍ତିତ କ୍ରିୟା ଭୂଗର୍ଭ ଶିଳାଖଣ୍ଡ ଉପରେ ସମୟେ ସମୟେ ଏକ ଅସ୍ୱାଭାବିକ ଅସ୍ଥିରତା ସୃଷ୍ଟି କରିବାରୁ ସେଥିରୁ ଏକ ଶିହରଣର ତରଙ୍ଗ ଉତ୍ପନ୍ନ ହୋଇ ଭୂପୃଷ୍ଠକୁ ଗତିକଲେ ଭୂମିକମ୍ପ ସୃଷ୍ଟି ହୋଇଥାଏ । ଅନ୍ୟ କେହି କେହି କୁହନ୍ତି, ଭୂପୃଷ୍ଠରେ ରହିଥିବା କେତେକ ଥାନମାନ ସ୍ୱୟଂଚାଳିତ ପାତଗୁଡ଼ିକର କେତେକ ନିର୍ଦ୍ଦିଷ୍ଟ କଟିବନ୍ଧରେ ପରସ୍ପର ଦ୍ୱାରା ଧକ୍କା ଲାଗିବା ଫଳରେ ଭୂଗର୍ଭରେ ସୃଷ୍ଟ ତରଙ୍ଗମାଳା ଯୋଗୁଁ ଭୂମିକମ୍ପ ସୃଷ୍ଟି ହୋଇଥାଏ । ଏତଦ୍‌ବ୍ୟତୀତ ଆଗ୍ନେୟଗିରିର ଉଦ୍‌ଗୀରଣ କିମ୍ବା ଉଲ୍‌କାପାତ କାରଣରୁ ମଧ୍ୟ ଭୂମିକମ୍ପ ସୃଷ୍ଟି ହୋଇଥାଏ । ଭାରତୀୟ ମେଟ୍ରୋଲଜିକାଲ ବିଭାଗର ସିସ୍‌ମୋଲୋଜି ଡିଭିଜନ ମୁଖ୍ୟ ଏ. କେ. ଶୁକ୍ଳା କହିଛନ୍ତି ଗୁଜୁରାଟରେ ଯେଉଁ ଭୂମିକମ୍ପ ହୋଇଛି, ତା'ର ବେଗ ଥିଲା ରିଚର ସ୍କେଲରେ ୯ । ପାଞ୍ଚ ମେଗାଟନ ଉଦ୍‌ଜାନ ବୋମାକୁ ଏକ ସମୟରେ ବିସ୍ଫୋରଣ କରାଯାଇଥିଲେ ଯେତିକି କମ୍ପନ ସୃଷ୍ଟି ହୋଇଥାନ୍ତା, ଭୁଜ ଭୂମିକମ୍ପରେ ସେତିକି କମ୍ପନ ସୃଷ୍ଟି ହୋଇଛି । ବିଶେଷଜ୍ଞଙ୍କ ମତରେ ଭୁଜରେ ହୋଇଥିବା ଭୂମିକମ୍ପ ଆଗ୍ନେୟଗିରି ଯୋଗୁଁ ହୋଇନାହିଁ । ଟେକ୍ଟୋନିକ୍ ପ୍ଲେଟ୍‌ର ଗତିଯୋଗୁଁ ହୋଇଛି ।

ଗୁଜୁରାଟର କଚ୍ଛ, ଭୁଜ, ରାପଡ୍, ଭାଚୁ, ଅଞ୍ଜାର, ଅହମ୍ମଦାବାଦ, ସୁରଟ, ରାଜକୋଟ ଆଦି ବିଶେଷ ଭୂମିକମ୍ପ ଅଞ୍ଚଳ ବୋଲି ଚିହ୍ନିତ କରାଯାଇଛି । ବଡ଼ ଆଶ୍ଚର୍ଯ୍ୟର କଥା ଖେଙ୍ଗରପୁର ପରି ଅନୁର୍ବର ଭୂମି ଭୂମିକମ୍ପନପରେ ଉର୍ବର କ୍ଷେତ୍ରରେ ପରିଣତ ହୋଇଛି ।

ବାସ୍ତବରେ କହିବାକୁ ଗଲେ ଭୂମିକମ୍ପର ନିରାକରଣ ସମ୍ପର୍କରେ କୌଣସି ନିର୍ଦ୍ଦିଷ୍ଟ ପଦକ୍ଷେପ ଗ୍ରହଣ କରିବା ଅସମ୍ଭବ । ଅବଶ୍ୟ କେତେକ ସତର୍କମୂଳକ ପଦକ୍ଷେପ ଗ୍ରହଣ କରାଯାଇପାରେ । କେତେକ ବୈଜ୍ଞାନିକଙ୍କ ମତରେ ମାଟିର ଏକ ପାତ୍ର ମାଧ୍ୟମରେ ଗୋଟିଏ ଦିନ ପୂର୍ବରୁ ଭୂମିକମ୍ପର ପୂର୍ବାନୁମାନ ସମ୍ଭବ । ସେମାନଙ୍କ ମତରେ ପୃଥିବୀରେ କମ୍ପନ କ୍ରିୟା ଆରମ୍ଭ ହେବାମାତ୍ରେ ନିଉଟ୍ରନ୍ ବିକିରଣ ହୋଇଥାଏ । ଏହି ବିକିରଣ ମାଧ୍ୟମରେ କେଉଁଠି କେତେବେଳେ ଭୂକମ୍ପ ହେବ, ତାହା ଜଣାଯାଇଥାଏ । ଋଷିଆର ଗବେଷକଙ୍କ ମତରେ ବଡ଼-ଧରଣର ଭୂମିକମ୍ପ ପୂର୍ଣ୍ଣିମା ସମୟରେ ହୋଇଥାଏ । ଏହି ସମୟରେ ନିଉଟ୍ରନ୍ ବିକିରଣ ପ୍ରବଳ ଭାବରେ ବୃଦ୍ଧି ପାଇଥାଏ । ଆଉ କେତେକ ଗବେଷକ କୁହନ୍ତି ପଶୁପକ୍ଷୀମାନେ ଭୂମିକମ୍ପର ପୂର୍ବାନୁମାନ କରିପାରନ୍ତି । ସେମାନଙ୍କ ବ୍ୟବହାରରେ ଏହି ସମୟରେ ପରିବର୍ତ୍ତନ ଲକ୍ଷ୍ୟ କରାଯାଇଥାଏ । ସେମାନଙ୍କ ବ୍ୟବହାରକୁ ଲକ୍ଷ୍ୟ କରି ସତର୍କମୂଳକ ବ୍ୟବସ୍ଥା ମଧ୍ୟ କରାଯାଇପାରେ । ଏତଦ୍‌ବ୍ୟତୀତ ଭୂକମ୍ପ ପ୍ରତିରୋଧକ ଗୃହ ନିର୍ମାଣ ଦ୍ୱାରା ଏଥିରୁ କିଛି ପରିମାଣରେ ସୁଫଳ ମିଳିପାରେ । ବର୍ତ୍ତମାନ ସମୟରେ ବିଲଡ଼ରମାନେ ଯେଉଁ ଗୃହ ନିର୍ମାଣ କରୁଛନ୍ତି ଓ ବହୁତଳ ପ୍ରାସାଦ ଭୂକମ୍ପ ନିମିତ୍ତ ଅଧିକ ମାରାତ୍ମକ । କାରଣ ବିଲଡ଼ରମାନେ କୌଣସି ନୀତିନିୟମକୁ ଆଖି ଆଗରେ ନରଖି ନିଜର ବ୍ୟାବସାୟିକ ଫାଇଦା ପାଇଁ ଏପରି ଗୃହ ନିର୍ମାଣ କରୁଛନ୍ତି । ଏଇଥିପାଇଁ ଗୁଜୁରାଟରେ ୨୨ଜଣ ବିଲଡ଼ରଙ୍କୁ ଗିରଫ କରାଯାଇ, ସେମାନଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇଛି ।

ବିଗତ ୧୬ ବର୍ଷ ହେବ ଭାରତ ଓ ନେପାଳ ଉପରେ ଗବେଷଣା କରୁଥିବା ଆମେରିକାର ଭୂତତ୍ତ୍ୱବିତ୍ ବିଲହାମ୍ ଗୁଜୁରାଟ ଭୂମିକମ୍ପ ଉପରେ ମନ୍ତବ୍ୟ ଦେଇ କହିଛନ୍ତି, ଏହାଠାରୁ ଅଧିକ ପ୍ରଚଣ୍ଡ ଭୂମିକମ୍ପ ହିମାଳୟ ଅଞ୍ଚଳରେ ହେବ । ତାଙ୍କ ମତରେ ଭାରତୀୟ ଟେକନୋଟିକ ପ୍ଲେଟ୍ ନିରବଚ୍ଛିନ୍ନ ଭାବେ ଏବଂ ଖୁବ୍ ବେଗରେ ଏସିଆ ମହାଦେଶକୁ ଚାପ ଦେଉଥିବାରୁ ଏପରି ସମ୍ଭାବନା ଅଧିକ । ଭାରତୀୟ ଉପଦ୍ୱୀପଗୁଡ଼ିକ ଭୂକମ୍ପରୁ ଆଦୌ ମୁକ୍ତ ନୁହନ୍ତି ବୋଲି ବହୁ ବିଶେଷଜ୍ଞ ମତ ଦେଇଥାନ୍ତି । ସାମ୍ପ୍ରତିକ ପରିସ୍ଥିତିରେ ଭୂକମ୍ପ ନିରୋଧକ ଗୃହ ନିର୍ମାଣ ଯୋଜନାକୁ ଗୁରୁତ୍ୱ ଦେବା ସଙ୍ଗେ ସଙ୍ଗେ, ଏହା ସମ୍ପର୍କରେ ଗବେଷଣାକୁ ତ୍ୱରାନ୍ୱିତ କରିବାର ଆବଶ୍ୟକତା ରହିଛି । ଏ କ୍ଷେତ୍ରରେ ଭୂତତ୍ତ୍ୱବିତ୍ ଓ ବୈଜ୍ଞାନିକଗଣଙ୍କର ଭୂମିକା ସର୍ବାଦୌ ଗୁରୁତ୍ୱପୂର୍ଣ୍ଣ । ସରକାର ମଧ୍ୟ ସଚେତନ ଭାବରେ ଏହି କାର୍ଯ୍ୟକୁ ପ୍ରୋତ୍ସାହନ ପ୍ରଦାନ କରି ଭବିଷ୍ୟତ ପାଇଁ ସୁଦୂର କାର୍ଯ୍ୟକ୍ରମ ପ୍ରସ୍ତୁତ କରିବା ନିତାନ୍ତ ଆବଶ୍ୟକ ।

●

# ରକ୍ତସ୍ନାତ ରାଜପ୍ରାସାଦ ବା ସାମ୍ପ୍ରତିକ ପରିପ୍ରେକ୍ଷୀରେ ନେପାଳ ଗଣତନ୍ତ୍ରର ଭବିଷ୍ୟତ

(ଉପକ୍ରମ–ନେପାଳ ରାଜବଂଶର ଇତିହାସ–ହତ୍ୟାକାଣ୍ଡର କାରଣ–ଅଶୁଭରାତ୍ରି–ଅନ୍ଧବିଶ୍ୱାସ ଓ ରାଜବଂଶଧର–ତଦନ୍ତ କମିଶନ–ନେପାଳ ଗଣତନ୍ତ୍ରର ଭବିଷ୍ୟତ–ଉପସଂହାର)

ଭାରତର ପଡ଼ୋଶୀ ରାଷ୍ଟ୍ର ନେପାଳରେ ଜୁନ୍ ୧ ତାରିଖ ୨୦୦୧ ମସିହାରେ ଯେଉଁ ନୃଶଂସ ହତ୍ୟାକାଣ୍ଡ ସଂଘଟିତ ହେଲା, ପୃଥିବୀ ଇତିହାସରେ ତାହା ବିରଳ । ୧୯୧୮ ମସିହାରେ ବଲ୍‌ସେଭିକ୍ ବିଦ୍ରୋହୀମାନଙ୍କ ଦ୍ୱାରା ଋଷିଆରେ ଜାର ନିହତ ହେବାପରେ ଏହା ହେଉଛି ଦ୍ୱିତୀୟ ବୀଭତ୍ସ ପ୍ରାସାଦ ହତ୍ୟାକାଣ୍ଡ । ସମଗ୍ର ପୃଥିବୀରେ ନେପାଳକୁ ଏକମାତ୍ର ହିନ୍ଦୁ ରାଷ୍ଟ୍ର ବୋଲି ଦାବି କରାଯାଇଥାଏ । ରାଜପ୍ରାସାଦର ଏହି ହତ୍ୟାକାଣ୍ଡ ସମଗ୍ର ବିଶ୍ୱକୁ ସ୍ତବ୍ଧ ଚକିତ କରିଦେଇଛି । ହତ୍ୟାକାଣ୍ଡ ପଛରେ ଅନେକ ରହସ୍ୟ ଲୁକ୍‌କାୟିତ ବୋଲି ନେପାଳବାସୀ ବିଶ୍ୱାସ କରୁଛନ୍ତି । ପ୍ରକୃତରେ ଏହା ଏକ ପ୍ରେମଜନିତ ହତ୍ୟାକାଣ୍ଡ କିମ୍ବା ରାଜତନ୍ତ୍ର ଲାଳସୀ କୌଣସି ବ୍ୟକ୍ତିବିଶେଷଙ୍କ ଚକ୍ରାନ୍ତ ଅଥବା ଦୈବ-ଅଭିଶାପ, ତାହା ଏପର୍ଯ୍ୟନ୍ତ ସ୍ପଷ୍ଟ ହୋଇପାରି ନାହିଁ । ତଦନ୍ତ କମିଶନ୍‌ଙ୍କ ରିପୋର୍ଟକୁ ବହୁ ନେପାଳବାସୀ ବିଶ୍ୱାସ କରିବାକୁ ନାରାଜ । ଏହା ସତ୍ତ୍ୱେ ଏହି ରକ୍ତାକ୍ତ ହତ୍ୟାକାଣ୍ଡ ବିଶ୍ୱ ଇତିହାସରେ ଯେ ଏକ ଦୁଃଖଦ ଘଟଣା; ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ସମସ୍ତେ ସ୍ୱୀକାର କରିଛନ୍ତି ।

ରାଜା ପୃଥିବୀ ନାରାୟଣ ଶାହା ୧୭୬୯ ମସିହାରେ ନେପାଳ ରାଜ୍ୟ ପ୍ରତିଷ୍ଠା କରନ୍ତି । ସେ ୧୮୩୧ ପର୍ଯ୍ୟନ୍ତ ନେପାଳର ଶାସକ ଥିଲେ । ପରବର୍ତ୍ତୀ ସମୟରେ ବହୁ ରାଜା ନେପାଳର ଶାସନାଧିପତି ଭାବରେ କାର୍ଯ୍ୟ କରିଛନ୍ତି । ଏମାନଙ୍କ ମଧ୍ୟରେ ଅଛନ୍ତି ରାଜା ରାଜେନ୍ଦ୍ର ବିକ୍ରମ ଶାହା, ପ୍ରତାପସିଂହ ଶାହା, ରାଣା ବାହାଦୁର ଶାହା, ଶିରୀବଳ ଯୁଦ୍ଧ ବିକ୍ରମ ଶାହା, ସୁରେନ୍ଦ୍ର ବିକ୍ରମ ଶାହା, ପୃଥିବୀ ବୀର ବିକ୍ରମ ଶାହା, ତ୍ରିଭୁବନ ବୀର, ରାଜା ମହେନ୍ଦ୍ର ଇତ୍ୟାଦି । କିନ୍ତୁ କୌଣସି ରାଜା, ରାଜ ପରିବାରର କୌଣସି ବ୍ୟକ୍ତି, ରାଜା ବୀରେନ୍ଦ୍ର ବାହାଦୁର ଶାହାଙ୍କ ପରି ଜଘନ୍ୟ ହତ୍ୟାକାଣ୍ଡର ଶିକାର ହୋଇ ନାହାନ୍ତି ।

ହତ୍ୟାକାଣ୍ଡର କାରଣ ସମ୍ପର୍କରେ ବିଭିନ୍ନ କଥା ଶୁଣାଯାଉଥିଲେ ହେଁ, ପ୍ରେମ ଏହାର ମୁଖ୍ୟ କାରଣ ବୋଲି ଜଣାଯାଏ । ଗୋଓ୍ୱାଲିଅର ରାଜାମାତା ବିଜୟରାଜେ ସିନ୍ଧିଆଙ୍କ କନ୍ୟା ଉଷାରାଜେ ସିନ୍ଧିଆ ଓ ପଶୁପତି ରାଣାଙ୍କ କନ୍ୟା ଦେବଯାନୀଙ୍କୁ ଯୁବରାଜ ପ୍ରେମ କରୁଥିଲେ । ପଶୁପତି ରାଣା ମଧ୍ୟ ପୂର୍ବରୁ ନେପାଳର ଏକ ମନ୍ତ୍ରୀ ରୂପେ ଦାୟିତ୍ୱ ନିର୍ବାହ କରିଥିଲେ । ଯୁବରାଜ ଦୀପେନ୍ଦ୍ର ତାଙ୍କ ପ୍ରେମିକା ୨୨ ବର୍ଷ ବୟସ୍କା ଦେବଯାନୀଙ୍କୁ ସମସ୍ତଙ୍କ ବିରୋଧ ସତ୍ତ୍ୱେ ବିବାହ

କରିବାକୁ ଚାହୁଁଥିଲେ । ରାଣୀ ଐଶ୍ୱର୍ଯ୍ୟା ଧମକ ଦେଇ କହିଥିଲେ ଯେ, ଯଦି ଯୁବରାଜ ଦେବଯାନୀଙ୍କୁ ବିବାହ କରନ୍ତି, ତେବେ ତାଙ୍କ ବଦଳରେ ସାନଭାଇ ନିରଞ୍ଜନଙ୍କୁ କ୍ରାଉନ୍‌ପ୍ରିନ୍ସ ଘୋଷଣା କରାଯିବ । ରାଣୀଙ୍କ ନିଜ ପରିବାର ସହିତ ପଶୁପତି ରାଣା ପରିବାର ମଧ୍ୟରେ ଥିବା ବିଭେଦ ଓ ବିଦ୍ୱେଷ ଦୀପେନ୍ଦ୍ର-ଦେବଯାନୀଙ୍କ ପ୍ରେମରେ ବାଧା ସୃଷ୍ଟି କରିଥିଲା । ରାଣା ବଂଶର ଦୁଇ ପରସ୍ପର ବିରୋଧୀ ଚନ୍ଦ୍ର ସମଶେର ଓ ଯୁଦ୍ଧା ସମଶେର ପରିବାର ମଧ୍ୟରୁ ରାଣୀ ଐଶ୍ୱର୍ଯ୍ୟା ଗୋଟିକର ସଦସ୍ୟା ହୋଇଥିବାରୁ ପ୍ରତିପକ୍ଷର କନ୍ୟା ସହିତ ନିଜ ଜ୍ୟେଷ୍ଠ ପୁତ୍ରର ବିବାହ ଦେବାକୁ ମାନସିକ ସ୍ତରରେ ସେ ପ୍ରସ୍ତୁତ ନଥିଲେ । ରାଜା ବୀରେନ୍ଦ୍ରଙ୍କୁ ମଧ ରାଣୀ ନିଜ ନିଷ୍ପତ୍ତି ସପକ୍ଷରେ ପ୍ରଭାବିତ କରିପାରିଥିଲେ । ସେଦିନ ଖାଇବା ଟେବୁଲରେ ଦୀପେନ୍ଦ୍ର ନିଜ ଭାବୀପତ୍ନୀ ଦେବଯାନୀଙ୍କ ପ୍ରସ୍ତାବ ଦେବାବେଳେ ରାଣୀ ଐଶ୍ୱର୍ଯ୍ୟା ବିରୋଧ କରିବାରୁ ସେ ଉତ୍‌କ୍ଷିପ୍ତ ହୋଇ ଏହି ଅମାନୁଷିକ ହତ୍ୟାକାଣ୍ଡ ଘଟାଇଥିଲେ । କିନ୍ତୁ ନେପାଳବାସୀ ସମ୍ପୂର୍ଣ୍ଣ ଭାବରେ ଏହାକୁ ବିଶ୍ୱାସ କରିବାକୁ ନାରାଜ । ସେମାନଙ୍କ ମତରେ ଏହି ହତ୍ୟାକାଣ୍ଡ ପଛରେ ଗୂଢ଼ ରହସ୍ୟ ଲୁଚି ରହିଛି । ଏହା ପଛରେ ପ୍ରଧାନମନ୍ତ୍ରୀ ଗିରିଜାପ୍ରସାଦ କୋଇରାଲା ସରକାରଙ୍କ ହାତ ଥିବାର କେତେକ କ୍ଷେତ୍ରରେ ଅଭିଯୋଗ ହୋଇଛି । ଏହି କାରଣରୁ ବାଗମତୀ ନଦୀକୂଳରେ ରାଜା-ରାଣୀ ଏବଂ ପରିବାରର ଅନ୍ୟ ସଦସ୍ୟମାନଙ୍କ ଅନ୍ତ୍ୟେଷ୍ଟିକ୍ରିୟା ସମୟରେ କେତେକ ଉତ୍‌କ୍ଷିପ୍ତ ବ୍ୟକ୍ତି ପ୍ରଧାନମନ୍ତ୍ରୀ କୋଇରାଲାଙ୍କ ଗାଡ଼ି ଉପରେ ଆକ୍ରମଣ କରିଛନ୍ତି । ନେପାଳ ସରକାରଙ୍କ ବିରୋଧରେ ସଶସ୍ତ୍ର ସଂଗ୍ରାମ ଚଳାଇଥିବା ଆତ୍ମଗୋପନକାରୀ ମାଓପନ୍ଥୀ କମ୍ୟୁନିଷ୍ଟ ଶୁକ୍ରବାର ରାଜପ୍ରାସାଦ ଗଣହତ୍ୟା ପଛରେ ରାଜନୈତିକ ଷଡ଼ଯନ୍ତ୍ର ରହିଛି ବୋଲି ଅଭିଯୋଗ କରିଛନ୍ତି । ରାଜ ପରିବାର ମଧ୍ୟରେ ଥିବା ଅନ୍ତର୍ଦ୍ୱନ୍ଦ୍ୱ ଓ ବିଭେଦରୁ ଏହା ଘଟିଥାଇପାରେ ବୋଲି ସେମାନେ ଅନୁମାନ କରନ୍ତି । ରାଜଭକ୍ତ ନେପାଳବାସୀ ହତ୍ୟାକାଣ୍ଡ ପରେ ପରେ ଉତ୍‌କ୍ଷିପ୍ତ ହୋଇ ପ୍ରବଳ ହିଂସାକାଣ୍ଡ ଘଟାଇଛନ୍ତି । ବିକ୍ଷୋଭ ଜନତାଙ୍କୁ ହଟାଇବା ପାଇଁ ପୋଲିସ୍ ଗୁଳି ଚାଳନା କରିବାରୁ ସରକାରୀଭାବରେ ପ୍ରାୟ ୧୨ ଜଣ ଲୋକ ମୃତ୍ୟୁବରଣ କରିଛନ୍ତି ବୋଲି କଳନା କରାଯାଇଛି । କାଠମାଣ୍ଡୁ, ଲଳିତପୁର, ବାରାଗଞ୍ଜ, ବିରାଟନଗର, ଭୈରବ ଆଦି ଅଞ୍ଚଳରେ ତୀବ୍ର ଉତ୍ତେଜନା ପ୍ରକାଶ ପାଇବାରୁ ସାନ୍ଧ୍ୟଆଇନ୍ ଜାରି କରାଯାଇଛି । ନେପାଳରେ ପାଞ୍ଚଦିନ ଧରି ରାଷ୍ଟ୍ରୀୟ ଶୋକ ପାଳନ କରାଯାଇଛ । ରାଜା ଜ୍ଞାନେନ୍ଦ୍ରଙ୍କ ପରିବାରର କୌଣସି କ୍ଷତି ହୋଇନଥିବାରୁ ଏବଂ ରାଜକୁମାର ଦୀପେନ୍ଦ୍ରଙ୍କ ପଛପଟେ ଓ କାନ ପାଖରେ ଗୁଳି ବାଜିଥିବାରୁ ହତ୍ୟାକାଣ୍ଡ ଏବେ ମଧ ରହସ୍ୟର ଘେରରେ ରହିଯାଇଛି । ବନ୍ଧୁକ ଗୁଳିରେ କେବଳ ରାଜପରିବାରର ସଦସ୍ୟମାନେ ପ୍ରାଣ ହରାଇଛନ୍ତି । ସନ୍ଦେହ ହୁଏ, ସେଠାରେ କ'ଣ ଚାକର ପୂଜାରୀ ବା ନିରାପତ୍ତାରକ୍ଷୀ ନଥିଲେ ? ଏହିପରି ବିଭିନ୍ନ କାରଣ ଯୋଗୁଁ ରାଜା ରୂପେ ଅଭିଷିକ୍ତ ହୋଇଥିବା ଜ୍ଞାନେନ୍ଦ୍ରଙ୍କୁ ନେପାଳର ଅଧିବାସୀଗଣ ହୃଦୟର ସହିତ ରାଜା ରୂପେ ଗ୍ରହଣ କରିପାରୁ ନାହାନ୍ତି ।

୨୦୦୧ ମସିହା ଜୁନ୍ ୧ ତାରିଖ ଶୁକ୍ରବାର ଥିଲା ରାଜପ୍ରାସାଦ ଓ ରାଜପରିବାର ପାଇଁ ଏକ ଅଶୁଭ ରାତ୍ରି । ନାରାୟଣହିଟି ରାଜପ୍ରାସାଦରେ ପ୍ରତି ଶୁକ୍ରବାର ପରି ସେଦିନ ମଧ ରାଜ ପରିବାରର ସମସ୍ତ ସଦସ୍ୟ ଏକତ୍ରିତ ହୋଇଥିଲେ ରାତ୍ରି ଭୋଜନ ପାଇଁ । ୨୯ ବର୍ଷ ବୟସ୍କ

ନେପାଳର ଭାବୀରାଜା ତଥା ଯୁବରାଜ ଦୀପେନ୍ଦ୍ର କୁଆଡ଼େ ଭୋଜନ ଟେବୁଲ ଉପରେ ଭାବୀପତ୍ନୀ ଦେବଯାନୀଙ୍କ ବିବାହ ପ୍ରସ୍ତାବ ଆଗତ କରିଥିଲେ । ରାଣୀ ଐଶ୍ୱର୍ଯ୍ୟା ଏହି ପ୍ରସ୍ତାବର ବିରୋଧ କରିବାରୁ ଦୀପେନ୍ଦ୍ର ମିଲିଟାରୀ ପୋଷାକ ପରିହିତ ହୋଇ ସ୍ୱୟଂଚାଳିତ ଅସ୍ତ୍ର ସାହାଯ୍ୟରେ ନେପାଳର ରାଜା ବୀରେନ୍ଦ୍ର ବାହାଦୁର ଶାହା (୫୫ ବର୍ଷ), ରାଣୀ ଐଶ୍ୱର୍ଯ୍ୟା ରାଜଲକ୍ଷ୍ମୀ ଦେବୀ ଶାହା (୫୧ ବର୍ଷ)ଙ୍କ ସହିତ ରାଜକୁମାର ନିରଞ୍ଜନ ବୀରବିକ୍ରମ ଶାହାଦେବ (୨୨ ବର୍ଷ), ରାଜକୁମାରୀ ସ୍ମୃତି ଓ ରାଜକୁମାରୀ ଜୟନ୍ତୀ (୨୪ ବର୍ଷ), ରାଜକୁମାରୀ ସାରଦା ଶାହା (ବୀରେନ୍ଦ୍ରଙ୍କ ଭଉଣୀ), ରାଜକୁମାରୀ ଶାନ୍ତି ସିଂହ (ବୀରେନ୍ଦ୍ରଙ୍କ ଭଉଣୀ), କୁମାର ଖଡ୍‌ଗ ବିକ୍ରମ ଶାହା, ରାଜକୁମାରୀ ଜୟନ୍ତୀ ଶାହା ଏବଂ ଜ୍ଞାନେନ୍ଦ୍ରଙ୍କ ପତ୍ନୀକୁ ଗୁଳିକରି ହତ୍ୟା କରିବା ପରେ ନିଜକୁ ଗୁଳି କରିଥିଲେ । ହତ୍ୟାକାଣ୍ଡ ସମୟରେ ଯୁବରାଜ ଜ୍ଞାନେନ୍ଦ୍ର କାଠମାଣ୍ଡୁ ବାହାରେ ରହିଥିଲେ । ୧୯୫୨ ମସିହାରେ ତତ୍କାଳୀନ ରାଜା ମହେନ୍ଦ୍ର, ରାଣୀ ରତ୍ନା ଏବଂ ପୁତ୍ର ବୀରେନ୍ଦ୍ର ବିଦ୍ରୋହ ଯୋଗୁଁ ଭାରତ ଚାଲିଆସିଥିବା ସମୟରେ ଜ୍ଞାନେନ୍ଦ୍ର କିଛିଦିନ ପାଇଁ ନେପାଳ ରାଜା ହୋଇଥିଲେ । ସେ ଜଣେ ବଦ୍‌ରାଗୀ ଓ ଖାମ୍‌ଖିଆଲୀ ବ୍ୟକ୍ତି । ଯେତେବେଳେ ରାଜା ବୀରେନ୍ଦ୍ର ଗଣତନ୍ତ୍ର ପ୍ରଚଳନ ପାଇଁ ନିଷ୍ପତ୍ତି ଗ୍ରହଣ କଲେ, ସେତେବେଳେ ଜ୍ଞାନେନ୍ଦ୍ର ରାଜତନ୍ତ୍ର ଫେରାଇ ଆଣିବା ପାଇଁ ଯୁକ୍ତି କରିଥିଲେ ଓ ଏଥିପାଇଁ ମତଭେଦ ଘଟିଥିଲା । ମାତ୍ର ରାଜକୁମାରଙ୍କ ଖିଆଲୀ ସ୍ୱଭାବଯୋଗୁଁ ଶୁକ୍ରବାର ଦିନ ରାତି ରାଜପ୍ରାସାଦ ଉପରେ ସବୁଦିନପାଇଁ ଏକ କଳାପରଦା ଢାଙ୍କି ଦେଲା । ଜଣେ ଲୋକପ୍ରିୟ ରାଜା ଓ ରାଜପରିବାରର (ମାତ୍ର ଦୁଇଜଣଙ୍କୁ ବାଦ୍ ଦେଇ) ସମସ୍ତ ସଦସ୍ୟ ଅକାଳରେ ପରଲୋକ ଗମନ କଲେ ।

ବିଜ୍ଞାନର ଦ୍ରୁତ ବିକାଶ ସତ୍ତ୍ୱେ ଏବେ ମଧ୍ୟ ଜନସାଧାରଣଙ୍କ ମନରୁ ଅନ୍ଧବିଶ୍ୱାସ ଦୂର ହୋଇନାହିଁ । ଏପରିକି ଉଚ୍ଚଶିକ୍ଷିତ ରାଜବଂଶ ମଧ୍ୟ ଏଥିରୁ ମୁକ୍ତ ନୁହେଁ । ନେପାଳ ରାଜ ପରିବାରରେ ଦୁଇଟି ଅନ୍ଧବିଶ୍ୱାସ ସଦସ୍ୟମାନଙ୍କୁ ସର୍ବଦା ଆତଙ୍କିତ କରି ରଖିଥିଲା । ପ୍ରଥମଟି ହେଉଛି ନେପାଳର କୌଣସି ରାଜା ୫୫ ବର୍ଷରୁ ଅଧିକ ବୟସ ଜୀବିତ ରହିବେ ନାହିଁ; ଏହା ଜ୍ୟୋତିଷଶାସ୍ତ୍ର ଅନୁଯାୟୀ ଏକ ଭବିଷ୍ୟତ ବାଣୀ । ବୋଧହୁଏ ଏହି କାରଣରୁ ଗତ ଡିସେମ୍ବର ୨୮ ତାରିଖ ୨୦୦୦ ମସିହାରେ ରାଜା ବୀରେନ୍ଦ୍ରଙ୍କ ୫୫ତମ ଜନ୍ମଦିବସ ପାଳନ କଲାବେଳେ ରାଜ ପରିବାର ମଧ୍ୟରେ ଆନନ୍ଦ ଖେଳି ଯାଇଥିଲା । ଅତୀତରେ ରାଜା ପୃଥିବୀ ନାରାୟଣ ଶାହା ୫୨ ବର୍ଷରେ, ପ୍ରତାପ ସିଂହ ଶାହା ୨୬ ବର୍ଷରେ, ରାଣୀ ବାହାଦୁର ଶାହା ୩୧ ବର୍ଷରେ, ଶିରୀବଳ ଯୁଦ୍ଧ ବିକ୍ରମ ଶାହା ୧୯ ବର୍ଷରେ, ସୁରେନ୍ଦ୍ର ବିକ୍ରମ ଶାହା ୫୨ ବର୍ଷରେ, କ୍ରାଉନ୍ ପ୍ରିୟ ତ୍ରୈଲୋକ୍ୟ ବିକ୍ରମ ଶାହା ୩୦ ବର୍ଷରେ, ପୃଥିବୀ ବୀର ବିକ୍ରମ ଶାହା ୩୨ ବର୍ଷରେ ପ୍ରାଣତ୍ୟାଗ କରିଥିଲେ । କେବଳ ଯୁଦ୍ଧ ବିକ୍ରମ ଶାହା ଏହାର ବ୍ୟତିକ୍ରମ ରୂପେ ୬୮ ବର୍ଷ ପର୍ଯ୍ୟନ୍ତ ଶାସନ କ୍ଷମତାରେ ରହିଥିଲେ । ରାଜା ବୀରେନ୍ଦ୍ର ମଧ୍ୟ ଠିକ୍ ୫୫ ବର୍ଷ ପୂରଣର ଅଳ୍ପ କେତେମାସ ପରେ ଏବଂ ତାଙ୍କ ଜେଜେ ତ୍ରିଭୁବନ ବୀର ୪୮ ବର୍ଷ ଓ ପିତା ରାଜା ମହେନ୍ଦ୍ର ୫୨ ବର୍ଷ ବୟସରେ ପରଲୋକ ପ୍ରାପ୍ତ ହୋଇଥିଲେ । ଦ୍ୱିତୀୟ ଅନ୍ଧବିଶ୍ୱାସ ହେଉଛି ୩୫ ବର୍ଷ ପୂର୍ବରୁ ଦୀପେନ୍ଦ୍ର ବିବାହ କଲେ ରାଜା ବୀରେନ୍ଦ୍ରଙ୍କର

ମୃତ୍ୟୁ ହେବ—ଜ୍ୟୋତିଷଙ୍କ ଏହି ଭବିଷ୍ୟତ ବାଣୀକୁ ବିଶ୍ୱାସ କରି ରାଣୀ ଐଶ୍ୱର୍ଯ୍ୟ ପୁତ୍ର ଦୀପେନ୍ଦ୍ରଙ୍କୁ ଆଉ ୬ ବର୍ଷ ଅପେକ୍ଷା କରିବାକୁ କହିଥିଲେ । ମାତ୍ର ଯୁବରାଜଙ୍କ କ୍ଷେତ୍ରରେ ଏହି ପ୍ରସ୍ତାବ ଗ୍ରହଣୀୟ ହୋଇନଥିବାରୁ, ସେ ଏପରି ଏକ ରକ୍ତସଂହାର କାର୍ଯ୍ୟରେ ହାତ ଦେଲେ ବୋଲି ଶୁଣାଯାଏ ।

ଏହି ଅମାନୁଷିକ ହତ୍ୟାକାଣ୍ଡ ପରେ ରାଜଭକ୍ତ ନେପାଳବାସୀ ଗଭୀର ପ୍ରତିକ୍ରିୟାଶୀଳ ହେବା ସଙ୍ଗେ ସଙ୍ଗେ ଏହାର ନିରପେକ୍ଷ ତଦନ୍ତ ପାଇଁ ଦାବୀ କରିଥିଲେ । ଆନୁଷ୍ଠାନିକ ଭାବେ ଜୁନ୍ ୪ ତାରିଖରେ ଜ୍ଞାନେନ୍ଦ୍ରଙ୍କୁ ରାଜାରୂପେ ଅଭିଷିକ୍ତ କରାଯିବା ପରେ ହତ୍ୟା ରହସ୍ୟ ଉନ୍ମୋଚନ ନିମିତ୍ତ ସେ ତିନିଜଣିଆ ଏକ ତଦନ୍ତ କମିଶନ ଗଠନ କରିଥିଲେ । ଏହି କମିଟିରେ ସୁପ୍ରିମକୋର୍ଟର ପ୍ରଧାନ ବିଚାରପତି କେଶବ ପ୍ରସାଦ ଉପାଧ୍ୟାୟ ଅଧ୍ୟକ୍ଷ ଥିବା ସମୟରେ ନେପାଳ ବିଧାନସଭା ବାଚସ୍ପତି ତାରାନାଥ ରାଣା ଭଟ୍ଟ ଓ ବିରୋଧୀ ଦଳ ନେତା ମାଧବ କୁମାର ସଦସ୍ୟ ଥିଲେ । ମାତ୍ର କମିଟିର ବିଶ୍ୱାସନୀୟତା ପ୍ରତି ବିଶ୍ୱାସ ନଥିବାରୁ ମାଧବ କୁମାର ଏଥିରୁ ଓହରି ଆସିଥିଲେ । ବର୍ତ୍ତମାନ ନେପାଳ ବିରୋଧୀଦଳ ରାଷ୍ଟ୍ରୀୟ ପ୍ରଜାତନ୍ତ୍ର ପାର୍ଟିର ସାଧାରଣ ସମ୍ପାଦକ ତଥା ପାର୍ଲିଆମେଣ୍ଟ ସଦସ୍ୟ ପଶୁପତି ସମରେ ରାଣାଙ୍କ କନ୍ୟା ଦେବଯାନୀଙ୍କ ପ୍ରେମ ପାଇଁ ଦୀପେନ୍ଦ୍ର ଏହି ହତ୍ୟାକାଣ୍ଡ ସଂଘଟିତ କରିଥିବାରୁ ଦୁଇଜଣିଆ କମିଶନ ଗଣମାଧ୍ୟମର ବିବରଣୀକୁ ଭିତ୍ତିକରି କମିଶନ ସମ୍ମୁଖରେ ହାଜର ହେବା ନିମିତ୍ତ ଦେବଯାନୀଙ୍କୁ ସମନ ଜାରି କରିଥିଲେ । ମାତ୍ର ତାଙ୍କ ଜୀବନପ୍ରତି ବିପଦର ଆଶଙ୍କା କରି ସେ କମିଶନଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ନଥିଲେ । ସଣ୍ଡେ ଟାଇମ୍ସର ବିବରଣୀ ଅନୁଯାୟୀ ଦୀପେନ୍ଦ୍ର ହତ୍ୟା କରିବା ସମୟରେ ମଦ୍ୟପାନ କରିବା ସହିତ କୋକେନ ସେବନ କରିଥିଲେ । ଡାକ୍ତରଖାନାରେ ତାଙ୍କ ରକ୍ତକଣିକାରେ କୋକେନ୍ ଥିବା ଜଣାପଡ଼ିଥିଲା । ନେପାଳ ରାଜପ୍ରାସାଦର ନରସଂହାର ସମ୍ପର୍କରେ ପ୍ରେସ୍‌କୁ ପ୍ରତ୍ୟକ୍ଷଦର୍ଶୀ ବିବରଣୀ ଦେଇଥିବା ବୀରେନ୍ଦ୍ରଙ୍କ ସାନଭାଇ ଧୀରେନ୍ଦ୍ରଙ୍କ ଜାମାତା ସାମରିକ ବାହିନୀର ଡାକ୍ତର କ୍ୟାପ୍‌ଟେନ୍ ରାଜୀବ ସାହି କେଉଁଆଡ଼େ ଉଭାନ ହୋଇଯାଇଥିବାରୁ ତଦନ୍ତ ସମ୍ପର୍କରେ ସନ୍ଦେହ ସୃଷ୍ଟି ହୋଇଛି । ଦେବଯାନୀଙ୍କର ମଧ୍ୟ ସଠିକ୍ ଠିକଣା ମିଳି ନାହିଁ । ଦେବଯାନୀଙ୍କ ଦୁଇଭଉଣୀଙ୍କ ମଧ୍ୟରୁ ଜଣେ ଲଣ୍ଡନରେ ଓ ଅନ୍ୟଜଣେ ଋଷିଆରେ ଥିବାରୁ, ସେ ସେଠାରେ ଥାଇପାରନ୍ତି ବୋଲି ବିଶ୍ୱାସ କରାଯାଉଛି । ତଦନ୍ତ କମିଶନଙ୍କ ଅନୁଯାୟୀ ରାଜକୁମାର ଦୀପେନ୍ଦ୍ର ହତ୍ୟାକାଣ୍ଡର ନାୟକ । ବିବରଣୀରୁ ଜଣାଯାଏ ଯୁବରାଜ ଦୀପେନ୍ଦ୍ର ସେଦିନ ରାତିରେ ଦେବଯାନୀଙ୍କ ସହିତ ଟେଲିଫୋନ୍‌ରେ ତିନିଥର କଥାବାର୍ତ୍ତା କରିଛନ୍ତି । ସେ ନିଜର ପ୍ରିୟ ଗ୍ରାଉଜ୍ ହ୍ୱିସ୍କି ବହୁପରିମାଣରେ ପିଇଥିଲେ ଏବଂ ଡାଇନିଂ ହଲ୍‌ରେ କିଛି ସମୟ ବିଲିଆର୍ଡ଼ସ ଖେଳିବାପରେ ଭାଇ ନିରଞ୍ଜନ, ପାରସ ଓ ଅଙ୍ଗରକ୍ଷୀଙ୍କ ସହାୟତାରେ ପ୍ରକୋଷ୍ଠକୁ ଯିବାବେଳେ ମାରିଜୁଆନା ମିଶା ସିଗାରେଟ୍ ମଗାଇଥିଲେ । ଦେବଯାନୀ ଦୀପେନ୍ଦ୍ରଙ୍କ ଏଡ଼ିସି ଗଜେନ୍ଦ୍ର ଭୋରାଙ୍କୁ ଫୋନ୍ କରି ଯୁବରାଜଙ୍କ କଣ୍ଠସ୍ୱର ଅସ୍ୱାଭାବିକ ଲାଗୁଥିବା ତଥା ତାଙ୍କ ପ୍ରକୋଷ୍ଠକୁ ଯାଇ ଅସୁସ୍ଥ ଅଛନ୍ତି କି ନାହିଁ ଦେଖି ଆସିବାକୁ ଅନୁରୋଧ କରିଥିଲେ । ଏଡ଼ିସି ମଧ୍ୟ ଦୁଇଜଣ ପରିଚାରକଙ୍କୁ ପଠାଇଥିଲେ ଓ ସେମାନେ ଯୁବରାଜଙ୍କୁ ଶୌଚାଳୟକୁ ନେଇଥିଲେ । ପରେ ଯୁବରାଜଙ୍କ ନିର୍ଦ୍ଦେଶରେ ସେମାନେ ତାଙ୍କୁ ଏକୁଟିଆ ଛାଡ଼ି

ଆସିଥିଲେ । ସେଦିନ ରାତିରେ ଦେବଯାନୀଙ୍କୁ ବିବାହ କଲେ ତାଙ୍କଠାରୁ କ୍ରାଉନ୍ ପ୍ରିନ୍ସମର୍ଯ୍ୟାଦା ପ୍ରତ୍ୟାହାର କରିନିଆଯିବାର ଧମକ ଦିଆଯାଇଥିବାରୁ ସେ ଭୀଷଣ ପ୍ରତିକ୍ରିୟାଶୀଳ ହୋଇଥିଲେ । ନିଜ ଆୟତ୍ତରେ ନଥିବା ଯୁବରାଜ ସେନାପୋଷାକ ପିନ୍ଧି ତଳକୁ ଆସି ୫.୫୬ କେଲିବର୍‌କୋଲ୍ଟ ଏମ୍ ୧୬ ଏ-୨ ରାଇଫଲରୁ ନିଜ ପିତା ବୀରେନ୍ଦ୍ରଙ୍କୁ ଗୁଳି କରିଥିଲେ । ଦୀପେନ୍ଦ୍ର ପ୍ରକୋଷ୍ଠରୁ ବାହାରି ବଗିଚାକୁ ଯିବାବେଳେ ରାଣୀ ଐଶ୍ୱର୍ଯ୍ୟା ଓ ସାନଭାଇ ନିରଞ୍ଜନ୍ ତାଙ୍କ ପଛେ ପଛେ ଯାଇ ବୁଝାଇବାକୁ ଚେଷ୍ଟା କରିଥିଲେ । ସେଠାରେ ସେ ଦୁଇଜଣଙ୍କୁ ହତ୍ୟା କରିଥିଲେ । ଏହାପରେ ଦାଦା ଧୀରେନ୍ଦ୍ର ତାଙ୍କ ଆଡ଼କୁ ମାଡ଼ିଯିବାରୁ ସେ ତାଙ୍କୁ ଗୁଳି କରିଥିଲେ ଏବଂ ପରେ ପରେ ଅନ୍ୟମାନଙ୍କୁ ହତ୍ୟା କରି ନିଜ ଉପରକୁ ଗୁଳି ଚାଳନା କରିଥିଲେ । ତଦନ୍ତ କମିଶନଙ୍କ ବିବରଣୀ ୧୪ ତାରିଖରେ ପ୍ରକାଶ ପାଇବା ପରେ ନେପାଳରେ ମିଶ୍ରିତ ପ୍ରତିକ୍ରିୟା ଦେଖାଦେଇଛି ।

ନେପାଳର ଗଣତନ୍ତ୍ର ପାଇଁ ରାଜା ବୀରେନ୍ଦ୍ରଙ୍କର ରହିଥିଲା ମୁଖ୍ୟ ଭୂମିକା । ସେ ୧୯୭୨ ମସିହାରେ ରାଜଗାଦୀ ଆରୋହଣ କରିଥିଲେ ଏବଂ ୧୯୯୦ ମସିହାରେ ନେପାଳ ସଂସଦକୁ କ୍ଷମତା ଅର୍ପଣ କରି ସାମ୍ବିଧାନିକ ମୁଖ୍ୟ ଭାବରେ କାର୍ଯ୍ୟ କରୁଥିଲେ । ତାଙ୍କର ଏହି କାର୍ଯ୍ୟ ପାଇଁ ବିଶ୍ୱର ବହୁଦେଶ ତାଙ୍କୁ ଅଭିନନ୍ଦନ ଜଣାଇଥିଲା । ସେ ଜଣେ ଜନପ୍ରିୟ ରାଜା ଥିଲେ । ମାତ୍ର ଏହି ଗଣତନ୍ତ୍ର ପଦ୍ଧତିକୁ ରାଜପରିବାରର କେତେକ ସହଜରେ ଗ୍ରହଣ କରିପାରି ନଥିଲେ । ସେମାନେ ଥିଲେ ରାଜତନ୍ତ୍ରର ପକ୍ଷପାତୀ । ବର୍ତ୍ତମାନର ରାଜା ଜ୍ଞାନେନ୍ଦ୍ର ତନ୍ମଧ୍ୟରୁ ଜଣେ । ପୁଣି ମାଓପନ୍ଥୀ କମ୍ୟୁନିଷ୍ଟଗଣ ସରକାରଙ୍କ ବିରୋଧରେ ସଶସ୍ତ୍ର ସଂଗ୍ରାମ ଜାରି ରଖିଛନ୍ତି । ଚୀନ୍‌ର ଆଧିପତ୍ୟ ଅନେକ ସମୟରେ ନେପାଳର ଗଣତନ୍ତ୍ର ପାଇଁ ପ୍ରଶ୍ନବାଚୀ ସୃଷ୍ଟି କରିଛି । ପାକିସ୍ଥାନ ମଧ୍ୟ ନିଜର ସନ୍ତ୍ରାସବାଦୀ କାର୍ଯ୍ୟକଳାପ ସେଠାରେ ଜାରି ରଖିଛି । ରାଜା ଜ୍ଞାନେନ୍ଦ୍ର ଜଣେ ବଦରାଗୀ ସ୍ୱଭାବର ବ୍ୟକ୍ତି ହୋଇଥିବାରୁ ସରକାର ଓ ଜନସାଧାରଣଙ୍କ ଉପରେ କେତେ ପରିମାଣରେ ନିୟନ୍ତ୍ରଣ ରକ୍ଷା କରିପାରିବେ, ତାହା ବର୍ତ୍ତମାନ ସନ୍ଦେହର କୁହେଳିରେ ରହିଛି । ନେପାଳ ଏକ ଗରିବ ଦେଶ ହୋଇଥିବାରୁ ତା'ର ପଡ଼ୋଶୀ ତଥା ଅନ୍ୟାନ୍ୟ ରାଷ୍ଟ୍ରଗୁଡ଼ିକ ବହୁପରିମାଣରେ ଲୋଲୁପ ଦୃଷ୍ଟିରେ ଚାହିଁ ରହିଛନ୍ତି । ଅପରାଧମୂଳକ କାର୍ଯ୍ୟକଳାପ ଦିନକୁ ଦିନ ବୃଦ୍ଧି ପାଉଛି । ନେପାଳର ଆର୍ଥିକ ମେରୁଦଣ୍ଡ ବହୁପରିମାଣରେ ନିର୍ଭର କରେ ପର୍ଯ୍ୟଟକଙ୍କ ଉପରେ । ବର୍ତ୍ତମାନ ପରିସ୍ଥିତିରେ ନେପାଳରେ ଶାନ୍ତି ଫେରାଇ ଆଣିବା, ସନ୍ତ୍ରାସବାଦୀ କାର୍ଯ୍ୟକଳାପକୁ ନିୟନ୍ତ୍ରଣ କରିବା, ବିଚ୍ଛିନ୍ନତାବାଦୀଙ୍କୁ କଠୋର ହସ୍ତରେ ଦମନ କରିବା ସର୍ବୋପରି ଜନସାଧାରଣଙ୍କୁ ଏକତା ସୂତ୍ରରେ ଆବଦ୍ଧ କରାଇବା ସରକାର ତଥା ରାଜା ଜ୍ଞାନେନ୍ଦ୍ରଙ୍କ ପ୍ରଥମ କର୍ତ୍ତବ୍ୟ । ନଚେତ୍ ଯେ କୌଣସି ମୁହୂର୍ତ୍ତରେ ନେପାଳର ଗଣତନ୍ତ୍ର ବିପର୍ଯ୍ୟସ୍ତ ହୋଇପଡ଼ିବାର ସମ୍ଭାବନା ରହିଛି ।

ଓଡ଼ିଶାର ପୁରୀମନ୍ଦିର ଓ ମୟୂରଭଞ୍ଜ ରାଜପରିବାର ସହିତ ରାଜା ବୀରେନ୍ଦ୍ରଙ୍କ ଘନିଷ୍ଠ ସମ୍ପର୍କ ରହିଥିଲା । ପୁରୀ ମନ୍ଦିରରେ ତାଙ୍କର ମର୍ଯ୍ୟାଦା ପୁରୀ ଗଜପତି ରାଜାଙ୍କଠାରୁ ମଧ୍ୟ ଊର୍ଦ୍ଧ୍ୱରେ । ତାଙ୍କର ଅକାଳମୃତ୍ୟୁ ଓଡ଼ିଶା ପାଇଁ ଯେପରି ଦୁଃଖର କାରଣ, ଭାରତ ଜଣେ ସମ୍ବେଦନଶୀଳ ବନ୍ଧୁ ହରାଇଥିବାରୁ ମଧ୍ୟ ସେହିପରି ଦୁଃଖିତ । ଆନ୍ତର୍ଜାତିକ କ୍ଷେତ୍ରରେ ତାଙ୍କର ଢେର ସୁନାମ

ଥିଲା । ନେପାଳବାସୀ ଓ ସରକାରଙ୍କ ଉପରେ ତାଙ୍କର କର୍ତ୍ତୃତ୍ୱ ରହିଥିବାରୁ ନେପାଳର ଗଣତାନ୍ତ୍ରିକ ପଦ୍ଧତି ସୁରୁଖୁରୁରେ ଚାଲିଥିଲା । ସାମ୍ପ୍ରତିକ ପରିସ୍ଥିତିକୁ ଧୈର୍ଯ୍ୟର ସହିତ ମୁକାବିଲା ନକଲେ ନେପାଳର ଅବସ୍ଥା ଯେ ଶୋଚନୀୟ ହୋଇଉଠିବ, ଏଥିରେ ସନ୍ଦେହ ନାହିଁ ।

●

## ଜଗତୀକରଣ

(ଉପକ୍ରମ–ଜଗତୀକରଣର ଅର୍ଥ–ଏହାର ଉଦ୍ଦେଶ୍ୟ–ଭାରତରେ ଜଗତୀକରଣର ସ୍ଥିତି–ଜଗତୀକରଣର ଆର୍ଥନୀତିକ ଦିଗ–ବିକାଶଶୀଳ ରାଷ୍ଟ୍ରରେ ଜଗତୀକରଣର ଅପକାରୀ ଦିଗ–ଉପସଂହାର)

ସମ୍ପ୍ରତି ବିଶ୍ୱରେ ଜଗତୀକରଣ ସମ୍ପର୍କରେ ବିଶେଷ ଚର୍ଚ୍ଚା ଚାଲିଛି । ବିକଶିତ ରାଷ୍ଟ୍ରଗଣ ଏହା ଉପରେ ଗୁରୁତ୍ୱ ଦେଇ ନିଜର ଫାଇଦା ଉଠାଇ ଚାଲିଛନ୍ତି । ବିକାଶଶୀଳ ରାଷ୍ଟ୍ରଗୁଡ଼ିକ ଏହି ସର୍ବଗ୍ରାସୀ ଜଗତୀକରଣ ପ୍ରକ୍ରିୟା କବଳରୁ ମୁକ୍ତ ହୋଇପାରି ନାହାନ୍ତି । ଅଥଚ ଏହାଦ୍ୱାରା ସେମାନେ କ୍ଷତିଗ୍ରସ୍ତ ହେବାରେ ଲାଗିଛନ୍ତି । ପୁଞ୍ଜିପତି ରାଷ୍ଟ୍ରଗୁଡ଼ିକ ନିଜର ସୁବିଧା ନିମିତ୍ତ ବିକାଶଶୀଳ ରାଷ୍ଟ୍ରମାନଙ୍କ ଉପରେ ଏହାକୁ ଗ୍ରହଣ କରିବାକୁ ବାଧ କରୁଛନ୍ତି । ତେଣୁ ସାମ୍ପ୍ରତିକ ପରିପ୍ରେକ୍ଷୀରେ ଗରିବ ଦେଶମାନଙ୍କ କ୍ଷେତ୍ରରେ ଜଗତୀକରଣ ମୁଣ୍ଡବ୍ୟଥାର କାରଣ ହୋଇପଡ଼ିଛି ।

ବିଂଶ ଶତକରେ ଜଗତୀକରଣର (Globalisation) ଯେଉଁ ଯୋଜନା ପ୍ରସ୍ତୁତ ହେଲା, ତାହା ମୁଖ୍ୟତଃ ପୁଞ୍ଜିପତି ରାଷ୍ଟ୍ରମାନଙ୍କର ସ୍ୱାର୍ଥର ସୁରକ୍ଷା ନିମିତ୍ତ ଉଦ୍ଦିଷ୍ଟ ଥିଲା । ବହୁରାଷ୍ଟ୍ରୀୟ କମ୍ପାନୀ ନିଜର ଫାଇଦା ନିମିତ୍ତ ଜଗତୀକରଣ ପ୍ରକ୍ରିୟାକୁ ବିଶ୍ୱହିତ ନିମିତ୍ତ ଉଦ୍ଦିଷ୍ଟ ବୋଲି ପ୍ରଚାର କଲେ ମଧ୍ୟ ଯଥାର୍ଥରେ ଏହା କେବଳ ପୁଞ୍ଜିପତି ରାଷ୍ଟ୍ରଗୁଡ଼ିକର ଏକ ଯୋଜନାବଦ୍ଧ ଚକ୍ରାନ୍ତ କହିଲେ ଭୁଲ ହେବ ନାହିଁ । ଜଗତୀକରଣର ଅର୍ଥ, ବିନା ବାଧା ଓ ପ୍ରତିବନ୍ଧକରେ ବିଶ୍ୱର ସମସ୍ତ ରାଷ୍ଟ୍ର ବାଣିଜ୍ୟ କାରବାର କରିପାରିବେ; ନିଜର ଉତ୍ପାଦିତ ସାମଗ୍ରୀକୁ ଅବାଧରେ ଅନ୍ୟ ଦେଶମାନଙ୍କୁ ପଠାଇ ପାରିବେ ଏବଂ ଆମଦାନୀ ଓ ରପ୍ତାନିରେ କୌଣସି କଟକଣା ରହିବ ନାହିଁ । 'ବସୁଧୈବ କୁଟୁମ୍ବକମ୍' ନୀତି ଉପରେ ଏହି ଭାବଧାରା ପ୍ରତିଷ୍ଠିତ ବୋଲି ଜି-୮ ଗୋଷ୍ଠୀ ଦାବୀ କରନ୍ତି । ବିଜ୍ଞାନର ଅଭୂତପୂର୍ବ ବିକାଶ ଦ୍ୱାରା ସମଗ୍ର ବିଶ୍ୱ ଧୀରେ ଧୀରେ ସଙ୍କୁଚିତ ହୋଇଯାଉଛି । ତେଣୁ ଏହି ପରିପ୍ରେକ୍ଷୀରେ କୌଣସି ରାଷ୍ଟ୍ର ନିଜର ସୀମିତ ଭୂଗୋଳଖଣ୍ଡ ମଧ୍ୟରେ ଆବଦ୍ଧ ନ ରହି ଏକ ପରିବ୍ୟାପ୍ତ ଦୃଷ୍ଟିରେ ସମଗ୍ର ବିଶ୍ୱ ସହିତ ସମ୍ମିଳିତ ହେବା ଜଗତୀକରଣ ପ୍ରକ୍ରିୟାର୍ ମୂଳ ଉଦ୍ଦେଶ୍ୟ ବୋଲି ବିକଶିତ ରାଷ୍ଟ୍ରଗୁଡ଼ିକ ମତ ଦେଇଥାନ୍ତି । ଜଗତୀକରଣ ମାଧ୍ୟମରେ ବିତ୍ତଶାଳୀ ରାଷ୍ଟ୍ରଗୁଡ଼ିକ ସମସ୍ତ ପ୍ରକାର ଆର୍ଥନୀତିକ କାର୍ଯ୍ୟକଳାପକୁ ନିଜର ନିୟନ୍ତ୍ରଣାଧୀନ କରି ରଖିବାକୁ ଜଘନ୍ୟ ପ୍ରଚେଷ୍ଟା ଚଳାଇଛନ୍ତି । ସେହି କାରଣରୁ ଜଗତୀକରଣର ସଂଜ୍ଞା କେତୋଟି ନିର୍ଦ୍ଦିଷ୍ଟ ରାଷ୍ଟ୍ରର ସ୍ୱାର୍ଥରକ୍ଷାର ଚାବିକାଠି ବୋଲି ପ୍ରଚାରିତ ହେଉଛି ।

ଜଗତୀକରଣ ଉଦାରୀକରଣ ପ୍ରକ୍ରିୟାର ଏକ ସ୍ତର । ଉଦାରୀକରଣ ପ୍ରକ୍ରିୟା ଦ୍ୱାରା ଭାରତ ତଥା ଅନ୍ୟାନ୍ୟ ବିକାଶଶୀଳ ରାଷ୍ଟ୍ରମାନଙ୍କରେ ବହୁରାଷ୍ଟ୍ରୀୟ କମ୍ପାନୀଗଣ ପ୍ରବେଶ କରିବାର ଅବାଧ ସୁଯୋଗ ଲାଭ କଲେ । ଏହାଦ୍ୱାରା ବିକଶଶୀଳ ରାଷ୍ଟ୍ରମାନଙ୍କର ଆର୍ଥନୀତିକ ସାର୍ବଭୌମତ୍ୱ ଖର୍ବ ହେଲା ଏବଂ ବିଦେଶୀ ବହୁଜାତିକ ସଂସ୍ଥାମାନେ ସେମାନଙ୍କର ବ୍ୟବସାୟ ପ୍ରତିଷ୍ଠା କରିବାକୁ ସମର୍ଥ ହେଲେ । ଜି-୮—ରାଷ୍ଟ୍ର-ସମୂହ—ଯଥା—ଆମେରିକା, ବ୍ରିଟେନ୍, କାନାଡ଼ା, ଫ୍ରାନ୍ସ, ଜର୍ମାନୀ, ଇଟାଲୀ, ଜାପାନ ଓ ରୁଷ ନିଜର ସ୍ୱାର୍ଥକୁ ଅଗ୍ରାଧିକାର ଦେଇ ସମଗ୍ର ବିଶ୍ୱର ଅର୍ଥନୀତିକ କରାୟତ୍ତ କରିବାକୁ ଯେଉଁ ଯୋଜନା ପ୍ରସ୍ତୁତ କରିଥିଲେ, ଉଦାରୀକରଣ ଓ ଜଗତୀକରଣ ପ୍ରକ୍ରିୟା ଦ୍ୱାରା ତାହା ସାକାର ରୂପ ଗ୍ରହଣ କଲା । ସେମାନଙ୍କର ପୁଞ୍ଜି ବୃଦ୍ଧି ପାଇଚାଲିଲା ଓ ବିକାଶଶୀଳ ରାଷ୍ଟ୍ରଗୁଡ଼ିକ ଧୀରେ ଧୀରେ ଆର୍ଥିକ ସଙ୍କଟର ସମ୍ମୁଖୀନ ହେବାକୁ ଲାଗିଲେ । ବିକଶିତ ରାଷ୍ଟ୍ରଗୁଡ଼ିକ ସହିତ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ଏମାନେ ସମର୍ଥ ହୋଇପାରିଲେ ନାହିଁ । ଆମେରିକାର ନବ ଉପନିବେଶବାଦର ଚକ୍ରାନ୍ତ ମଧ୍ୟରେ ଜଗତୀକରଣ ନାମରେ ବିକାଶଶୀଳ ରାଷ୍ଟ୍ର ଗୁଡ଼ିକ ବାନ୍ଧି ହୋଇପଡ଼ିଲେ ଏବଂ ସେମାନଙ୍କର ଉଦ୍ଦେଶ୍ୟ ମଧ୍ୟ ଚରିତାର୍ଥ ହେଲା । ଜଗତୀକରଣ ପ୍ରକ୍ରିୟାରେ ବହୁରାଷ୍ଟ୍ରୀୟ କମ୍ପାନୀଗଣ ଏକ ପ୍ରତିଦ୍ୱନ୍ଦ୍ୱିତା ବଜାର ସୃଷ୍ଟି କରିଥାନ୍ତି ଏବଂ ଏଥିରେ ଦେଶୀୟ ଶିଳ୍ପ ଓ କମ୍ପାନୀଗୁଡ଼ିକ ପ୍ରତିଯୋଗିତା କରି ନ ପାରି ନିଜର ସ୍ଥିତି ହରାଇଥାନ୍ତି । ବହୁରାଷ୍ଟ୍ରୀୟ କମ୍ପାନୀଗଣ ନିଜର ଉତ୍ପାଦନ ସାମଗ୍ରୀକୁ ବଜାରକୁ ଛାଡ଼ି ଅଳ୍ପ ଦାମ୍‌ରେ ବିକ୍ରି କରୁଥିବାରୁ ଦେଶୀୟ ଶିଳ୍ପ ରୁଗ୍‌ଣ ହୋଇପଡୁଛନ୍ତି ଓ ପରବର୍ତ୍ତୀ କାଳରେ ସେମାନେ ଏହି ସାମଗ୍ରୀରୁ ପ୍ରଚୁର ପୁଞ୍ଜି ହାସଲ କରୁଛନ୍ତି । ସମଗ୍ର ବିଶ୍ୱବଜାରକୁ ମୁଷ୍ଟିମେୟ କେତୋଟି ପୁଞ୍ଜିପତି ରାଷ୍ଟ୍ର ନିଜର ନିୟନ୍ତ୍ରଣରେ ରଖିବା ନିମିତ୍ତ ଜଗତୀକରଣ ପ୍ରକ୍ରିୟାର ଯୋଜନା ପ୍ରସ୍ତୁତ ହୋଇଛି ଏବଂ ଅସମ୍ଭବ ଭାବରେ ସେମାନଙ୍କର ଉଦ୍ଦେଶ୍ୟ ମଧ୍ୟ ଫଳବତୀ ହେବାରେ ଲାଗିଛି ।

ଭାରତ ଏକ ବିକାଶଶୀଳ ରାଷ୍ଟ୍ର । ଜଗତୀକରଣର ମାୟାଜାଲରେ ଛନ୍ଦି ହୋଇ ଭାରତର ଅର୍ଥନୀତି ଆଜି ଦିଗହରା । ୯୦ ଦଶକରେ ଯେତେବେଳେ ଉଦାରୀକରଣ ପ୍ରକ୍ରିୟା ଆରମ୍ଭ ହେଲା, ସେତେବେଳେ ପ୍ରଚାର କରାଯାଇଥିଲା, ଏହାଦ୍ୱାରା ଦେଶର ଆର୍ଥିକ ପ୍ରଗତି ହେବ, ବେକାରୀ ସମସ୍ୟା ସମାଧାନ ହେବ ଓ ଦାରିଦ୍ର୍ୟ ହ୍ରାସ ପାଇବ । ମାତ୍ର ଏହାଦ୍ୱାରା ଭାରତର ଲାଭ କ'ଣ ହେଲା ? ଏବେ ମଧ୍ୟ ଭାରତରେ ୪୩ କୋଟି ଲୋକ ଦାରିଦ୍ର୍ୟ ସୀମାରେଖା ତଳେ ପଡ଼ି ରହିଛନ୍ତି । ବେକାରୀ ସମସ୍ୟା ଦ୍ରୁତଗତିରେ ବୃଦ୍ଧି ପାଇଛି । ଦେଶୀୟ କମ୍ପାନୀଗଣ ଧୀରେ ଧୀରେ ନିଜର ସତ୍ତା ହରାଇ ବସିଛନ୍ତି । ଭାରତ ନିଜର ଆର୍ଥିକ ସ୍ଥିତିକୁ ସୁଧାରିବାକୁ ଏହି ପ୍ରକ୍ରିୟା ମାଧ୍ୟମରେ ଯେଉଁ ଯୋଜନା ପ୍ରସ୍ତୁତ କରିଥିଲା, ସେଥିରେ ସେ ସମ୍ପୂର୍ଣ୍ଣ ବିଫଳ ହୋଇଛି । ଯେଉଁ ଦେଶରେ ସମଗ୍ର ଉତ୍ପାଦନର ୨.୩୫% ଶିକ୍ଷା ପାଇଁ ଓ ୧.୧୧% ସ୍ୱାସ୍ଥ୍ୟ ପାଇଁ ଖର୍ଚ୍ଚ ହୁଏ, ସେଠାରେ ଏହି ଜଗତୀକରଣ ଦେଶ ପାଇଁ କଦାପି ମଙ୍ଗଳକାରକ ହୋଇପାରିବ ନାହିଁ । ପୁଣି ଭାରତ ପରି ଏକ ଗଣତନ୍ତ୍ର ରାଷ୍ଟ୍ର; ଯେଉଁଠାରେ ପ୍ରଶାସନିକ ଶୃଙ୍ଖଳା ଓ କଠୋର କାର୍ଯ୍ୟପନ୍ଥା ଗ୍ରହଣ କରିବାର ଅଭାବ ପରିଲକ୍ଷିତ ହୋଇଥାଏ, ସେଠାରେ କଦାପି ଜଗତୀକରଣ ପ୍ରକ୍ରିୟା ଦ୍ୱାରା ଭାରତ ଲାଭବାନ୍

ହୋଇପାରିବ ନାହିଁ । ଏହି ଦୃଷ୍ଟିରୁ ଭାରତରେ ଜଗତୀକରଣ ପ୍ରକ୍ରିୟା ତା'ର ଆର୍ଥିକ ମେରୁଦଣ୍ଡକୁ ସମ୍ପୂର୍ଣ୍ଣ ଭାଙ୍ଗି ଦେବ କହିଲେ ଭୁଲ୍ ହେବ ନାହିଁ ।

ଜଗତୀକରଣ ଦ୍ୱାରା ବିକାଶଶୀଳ ରାଷ୍ଟ୍ରଗୁଡ଼ିକର ଆର୍ଥନୀତିକ ଦିଗ ସମ୍ପୂର୍ଣ୍ଣ ବିପର୍ଯ୍ୟସ୍ତ ହୋଇପଡ଼ିବାର ସମ୍ଭାବନା ରହିଛି । ବର୍ତ୍ତମାନର ବସ୍ତୁବାଦୀ ଦୁନିଆରେ ଜଗତୀକରଣ ଅର୍ଥନୀତିର ଦ୍ୱାର ଅବରୋଧ କରିବା ଅସମ୍ଭବ । ବହୁ ବିକାଶଶୀଳ ରାଷ୍ଟ୍ର ଦାୟରେ ପଡ଼ି ଏହାକୁ ଆପଣେଇ ନେବାକୁ ବାଧ ହୋଇଛନ୍ତି । ଏହି ପ୍ରକ୍ରିୟାରେ ଧନୀ-ଦରିଦ୍ର ମଧ୍ୟରେ ବେଶ୍ ତାରତମ୍ୟ ରହିଥିଲେ ହେଁ ବାହାରକୁ ତାହା ହଠାତ୍ ଜଣାଯାଇ ନଥାଏ । ମୁଣ୍ଡ ପିଛା ଆୟର ହିସାବ ସମୟରେ ଦେଶର ସମଗ୍ର ଆୟକୁ ଜନସାଧାରଣର ସଂଖ୍ୟା ମଧ୍ୟରେ ଭାଗ କରାଯାଇଥାଏ । କିନ୍ତୁ ତାହା ଯଥାର୍ଥ ହିସାବ ନୁହେଁ; କାରଣ ଅଧିକାଂଶ ଆୟ ମୁଖ୍ୟତଃ ଶିଳ୍ପପତି ଓ ଧନୀକ ଶ୍ରେଣୀଙ୍କ ନିକଟକୁ ଚାଲିଯାଇଥାଏ ଓ ଯାହାଦ୍ୱାରା ମୁଣ୍ଡପିଛା ଆୟର ହିସାବ ଯାହା ଆସିଥାଏ, ତାହା ସମ୍ପୂର୍ଣ୍ଣ ତ୍ରୁଟିପୂର୍ଣ୍ଣ ହୋଇଥାଏ । ଜଗତୀକରଣ ଦ୍ୱାରା ବହୁରାଷ୍ଟ୍ରୀୟ କମ୍ପାନୀ ସହିତ ଦେଶୀୟ ଶିଳ୍ପଗୁଡ଼ିକ ପ୍ରତିଦ୍ୱନ୍ଦ୍ୱିତା କରିବାରେ ସମର୍ଥ ହେଉନଥିବାରୁ ଦେଶର ଆୟ ବା ଅର୍ଥ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ହାତକୁ ଚାଲିଯାଏ ଏବଂ ଦେଶୀୟ ଶିଳ୍ପ ଅବକ୍ଷୟମୁଖୀ ହୋଇପଡ଼େ । ଏହାଦ୍ୱାରା ବିକାଶଶୀଳ ରାଷ୍ଟ୍ରରେ ଧନୀ ଅଧିକ ଧନୀ ଓ ଗରିବ ଅଧିକ ଗରିବ ହୋଇଥାଏ । ଦେଶର ଶିଳ୍ପ ବିପର୍ଯ୍ୟସ୍ତ ହୋଇପଡ଼େ । ଏଥିରେ କାର୍ଯ୍ୟରତ ହଜାର ହଜାର ଶିଳ୍ପଶ୍ରମିକ ବେକାର ହୋଇପଡ଼ନ୍ତି । ତେଣୁ ଜଗତୀକରଣ ପ୍ରକ୍ରିୟାକୁ ଗ୍ରହଣ କରିବା ପୂର୍ବରୁ ଏହାର ଆର୍ଥନୀତିକ ଦିଗ ସମ୍ପର୍କରେ ସମ୍ପୂର୍ଣ୍ଣ ସଚେତନ ହେବାର ଆବଶ୍ୟକତା ରହିଛି । ନଚେତ୍ ଦେଶ ସମ୍ପୂର୍ଣ୍ଣ ଭାବରେ ଋଣଜନ୍ତାରେ ପଡ଼ିଯିବାର ସମ୍ଭାବନା ରହିଛି ।

ବିକାଶଶୀଳ ରାଷ୍ଟ୍ରଗୁଡ଼ିକ ଆର୍ଥନୀତିକ ଦିଗ ଦୃଷ୍ଟିରୁ ବିଶେଷ ସମୃଦ୍ଧଶାଳୀ ନୁହନ୍ତି । ଭାରତପରି ଦେଶରେ ଲୋକବଳ ପ୍ରଚୁର ପରିମାଣରେ ଗଚ୍ଛିତ ଥିଲେ ହେଁ, ସେମାନଙ୍କୁ ଯଥାଯଥ ଭାବରେ ଉପଯୋଗ କରାଯାଇ ପାରୁନଥିବା ବେଳେ ଜଗତୀକରଣ ପ୍ରକ୍ରିୟା ଅଧିକ ବେକାର ସମସ୍ୟା ସୃଷ୍ଟି କରିବାର ସମ୍ଭାବନା ରହିଛି । ବହୁରାଷ୍ଟ୍ରୀୟ କମ୍ପାନୀଗୁଡ଼ିକର ଅନୁପ୍ରବେଶ ଫଳରେ ତାଲାବନ୍ଦ, ଛଟେଇ, ସ୍ୱେଚ୍ଛାକୃତ ଅବସର ଆଦି ଶିଳ୍ପର ବିକାଶ ନାମରେ ଆରମ୍ଭ ହୋଇଗଲାଣି । ମୁଣ୍ଡପିଛା ଆୟର ହିସାବ କାଗଜପତ୍ରରେ କେବଳ କୁହେଳି ସୃଷ୍ଟି କରିଛି । ଜଗତୀକରଣ ଯୋଗୁଁ ବିକାଶଶୀଳ ରାଷ୍ଟ୍ରଗୁଡ଼ିକରେ ବହୁରାଷ୍ଟ୍ରୀୟ କମ୍ପାନୀ ଓ ବଡ଼ ବଡ଼ ଶିଳ୍ପପତିମାନଙ୍କର ପୁଞ୍ଜି ବୃଦ୍ଧି ପାଇ ଚାଲିଛି । ଅଥଚ ଗରିବମାନଙ୍କର ଆର୍ଥିକ ବିକାଶ ଆଦୌ ହୋଇପାରୁ ନାହିଁ । ନୂତନ ନିଯୁକ୍ତିର ଅଭାବଯୋଗୁଁ ବେକାର ସଂଖ୍ୟା ବଢ଼ିଚାଲିଛି ଓ ଯୁବସମାଜ ମଧ୍ୟରେ ଦିନକୁ ଦିନ ଅସନ୍ତୋଷର ବାତାବରଣ ଉତ୍କଟ ରୂପ ଧାରଣ କରୁଛି । ଜଗତୀକରଣ ଯୋଗୁଁ ବିଶ୍ୱରେ ଗରିବ ଲୋକ ଉପେକ୍ଷିତ ହେବାର ଲକ୍ଷ୍ୟ କରାଯାଉଛି । ନିକଟରେ ଇଟାଲୀର ବନ୍ଦର ସହର ଜେନୋଆଠାରେ ଅନୁଷ୍ଠିତ ଜଗତୀକରଣ ସମ୍ମିଳନୀ ଜି-୮କୁ ସଚେତନ ସ୍ଥାନୀୟ ଜନତା ବିରୋଧ କରି ବିକ୍ଷୋଭ ପ୍ରଦର୍ଶନ କରିଥିଲେ । କଠୋରପନ୍ଥୀଙ୍କ ଏହି ପ୍ରତିବାଦ ଶୋଭାଯାତ୍ରା ଉପରେ ପୁଲିସ ଗୁଳିଚାଳନା କରିବାରୁ ଇଟାଲୀର ଜଣେ ଯୁବକ ପ୍ରାଣତ୍ୟାଗ କରିଛି । ବିଶ୍ୱର ଅଧିକାଂଶ ସଚେତନ ନାଗରିକ

ଜଗତୀକରଣର ପରିପନ୍ଥୀ । ସମଗ୍ର ବିଶ୍ୱରେ ଶାନ୍ତିର ବାତାବରଣ ଫେରାଇ ଆଣିବାକୁ ହେଲେ ଜଗତୀକରଣ ଉପରେ କେତେକ ଅଙ୍କୁଶ ଲଗାଇବାର ଆବଶ୍ୟକତା ରହିଛି । ବିଶେଷକରି ବିକାଶଶୀଳ ରାଷ୍ଟ୍ରମାନଙ୍କ କ୍ଷେତ୍ରରେ ଜଗତୀକରଣ ସେମାନଙ୍କର ଆର୍ଥିକ ବିକାଶ ଓ ଜନଶକ୍ତି ଉପଯୋଗରେ ଅନ୍ତରାୟ ସୃଷ୍ଟି କରୁଛି । ଯେଉଁମାନେ ଏହି ପ୍ରକ୍ରିୟା ମୂଳରେ 'ବସୁଧୈବ କୁଟୁମ୍ବକମ୍' ନୀତିର ଆଭାସ ରହିଛି ବୋଲି ଚିତ୍କାର କରୁଛନ୍ତି, ତାହା ଯଥାର୍ଥରେ ଠିକ୍ ନୁହେଁ । ଏହାଦ୍ୱାରା ସମଗ୍ର ବିଶ୍ୱର ପୁଞ୍ଜି ଅଳ୍ପ କେତୋଟି ବିକଶିତ ରାଷ୍ଟ୍ର ନିକଟରେ ଠୁଳୀଭୂତ ହେବ ଏବଂ ବିକାଶଶୀଳ ରାଷ୍ଟ୍ରର ବିକାଶ ବାଧାପ୍ରାପ୍ତ ହେବ ।

ସମ୍ପ୍ରତି ଜଗତୀକରଣର ଯେଉଁ ସ୍ରୋତ ପ୍ରବାହିତ ହେଉଛି, ଭାରତ ପରି ଏକ ବିକାଶଶୀଳ ରାଷ୍ଟ୍ର ଅତ୍ୟନ୍ତ ସଚେତନ ସହିତ ତା'ର ପରୀକ୍ଷା ନିରୀକ୍ଷା କରି ରାଷ୍ଟ୍ରୀୟ ଶିଳ୍ପ ବିକାଶ ଓ ଭାରତୀୟ ଚିନ୍ତାଧାରାକୁ ଆଖିରେ ରଖି ଜଗତୀକରଣ ଭାବଧାରାକୁ ଏକ ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ ଆବଦ୍ଧ କରି ରଖିବାର ଆବଶ୍ୟକତା ରହିଛି । ଏଥିପ୍ରତି ରାଷ୍ଟ୍ରନାୟକଗଣ ଦୃଷ୍ଟିଦେବା ଉଚିତ୍ । ଆର୍ଥିକ ବିକାଶ ଦେଶର ପ୍ରଗତିକୁ ତ୍ୱରାନ୍ୱିତ କରିବା ସଙ୍ଗେ ସଙ୍ଗେ ରାଷ୍ଟ୍ରୀୟ ମର୍ଯ୍ୟାଦା ବୃଦ୍ଧି କରିଥାଏ । ତେଣୁ ଜଗତୀକରଣ ଦ୍ୱାରା ଭାରତୀୟ ଅର୍ଥନୀତି ଯେପରି ବିପର୍ଯ୍ୟସ୍ତ ହୋଇ ନପଡ଼େ, ସେଥିପ୍ରତି ଦୃଷ୍ଟି ରଖିବା ସାମ୍ପ୍ରତିକ ପରିପ୍ରେକ୍ଷୀରେ ଅତ୍ୟନ୍ତ ଅପରିହାର୍ଯ୍ୟ । ଜଗତୀକରଣ ଦ୍ୱାରା ଯେପରି ସାମ୍ରାଜ୍ୟବାଦର ପୁନରୁତ୍‌ଥାନ ନ ଘଟେ ଏବଂ ଭାରତୀୟ ସଂସ୍କୃତି ପ୍ରତି କୌଣସି ପ୍ରଶ୍ନବାଚୀ ସୃଷ୍ଟି ନକରେ ତାହାକୁ ଆଖି ଆଗରେ ରଖି ଆଇନ୍ ପ୍ରଣୟନ କରିବା ଆବଶ୍ୟକ । ଦେଶର ସ୍ୱାର୍ଥ, ସଂସ୍କୃତି ଓ ସମ୍ମାନବୋଧକୁ ଅକ୍ଷୂର୍ଣ୍ଣ ରଖି ଜଗତୀକରଣ ପ୍ରସଙ୍ଗର ପୁନଃ ମୂଲ୍ୟାୟନ କରିବା ଉଚିତ୍ । ନଚେତ୍ ପୁଣି ଏକ ନୂତନ ଉପନିବେଶବାଦ ସମଗ୍ର ବିଶ୍ୱକୁ କବଳିତ କରିବା ଅସମ୍ଭବ ନୁହେଁ ।

●

## ନାରୀ ସଶକ୍ତୀକରଣ

(ଉପକ୍ରମ—ନାରୀ ସଶକ୍ତୀକରଣର ଅର୍ଥ—ସାମାଜିକ ଦୃଷ୍ଟିଭଙ୍ଗୀ—ରଢ଼ିବାଦୀ ଚିନ୍ତାଧାରା—ମାନସିକ ଅପ୍ରସ୍ତୁତି—ସଶକ୍ତୀକରଣର ଆବଶ୍ୟକତା—ସପକ୍ଷରେ କେତୋଟି ପ୍ରସ୍ତାବ—ଉପସଂହାର)

ଯୁକ୍ତରାଷ୍ଟ୍ର ଆମେରିକାରେ ୧୯୦୩ ମସିହା ମାର୍ଚ୍ଚ ୮ ତାରିଖରେ ଏକ ନାରୀଜାଗରଣର ସୂତ୍ରପାତ ହୋଇଥିଲା । ଇତି ମଧ୍ୟରେ ଏହା ତା'ର ଏକଶତ ବର୍ଷ ପୂର୍ତ୍ତି ପାଳନ କରିସାରିଛି ୨୦୦୩ ମସିହା ମାର୍ଚ୍ଚ ୮ ତାରିଖରେ । ସମ୍ପ୍ରତି ସମଗ୍ର ବିଶ୍ୱରେ ମାର୍ଚ୍ଚ ୮ ତାରିଖକୁ ମହିଳାଦିବସ ବା ନାରୀ ସଶକ୍ତୀକରଣ ଦିବସ ରୂପେ ପାଳନ କରାଯାଉଛି । ନାରୀଜାଗରଣର ପ୍ରାରମ୍ଭିକ ପର୍ଯ୍ୟାୟରେ ମହିଳାମାନେ ବହୁ ପ୍ରତିକୂଳ ପରିବେଶର ସମ୍ମୁଖୀନ ହୋଇଥିଲେହେଁ, ବର୍ତ୍ତମାନ ଏହା ଏକ ସାମାଜିକ ଜାଗରଣର ରୂପ ନେଇଛି ଓ ଏହି ଜାଗରଣ

ମାଧ୍ୟମରେ ବିଶ୍ୱର ନାରୀଜାତି ନିଜର କ୍ଷମତା ଏବଂ ଅଧିକାର ସାବ୍ୟସ୍ତ କରିବାର ସୁଯୋଗ ଲାଭ କରିଛନ୍ତି ।

ନାରୀ ସଶକ୍ତୀକରଣର ଅର୍ଥ ହେଉଛି, ନାରୀର ପ୍ରତିଭାର ଉପଯୋଗ କରି ସାମାଜିକ ପ୍ରଗତିକୁ ତ୍ୱରାନ୍ୱିତ କରାଇବା । ବହୁ ପ୍ରତିଭାର ଅଧିକାରିଣୀ ନାରୀ ହୋଇଥିଲେ ହେଁ, ପୁରୁଷପ୍ରଧାନ ସମାଜରେ ସେମାନେ ତାଙ୍କର ସେହି ପ୍ରତିଭାର ଉପଯୋଗ କରିବାର ସୁଯୋଗ ପାଉନାହାନ୍ତି । ନାରୀର ଶକ୍ତି ଓ ସାମର୍ଥ୍ୟ ପ୍ରତି ସମ୍ମାନ ପ୍ରଦର୍ଶନ କରିବା, ସେମାନଙ୍କୁ ସଙ୍ଗଠିତ କରି ସେମାନଙ୍କ ମଧ୍ୟରେ ଏକ ଜାଗରଣ ସୃଷ୍ଟି କରିବା ନାରୀ ସଶକ୍ତୀକରଣର ମୁଖ୍ୟ ଉଦ୍ଦେଶ୍ୟ । ନାରୀ ସୃଷ୍ଟିର ମୂଳାଧାର । ମନୁ କହିଥିଲେ—'ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତା'—ଅର୍ଥ ଯେଉଁଠାରେ ନାରୀମାନେ ପୂଜା ପାଉଥାନ୍ତି, ସେଠାରେ ଦେବତାମାନଙ୍କର ଆବିର୍ଭାବ ଘଟିଥାଏ । ପରିବାର ପରିଚାଳନାରେ ନାରୀର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଜନନୀ, ଜାୟା ଓ ଭଗିନୀ—ବିଭିନ୍ନ ରୂପରେ ନାରୀ ତା'ର ବହୁମୁଖୀ ଭୂମିକା ନିର୍ବାହ କରିଥାଏ । ସେଇଥିପାଇଁ କୁହାଯାଇଛି—

''କାର୍ଯ୍ୟେଷୁ ମନ୍ତ୍ରୀ, କର୍ମେଷୁ ଦାସୀ
ଧର୍ମେଷୁ ପତ୍ନୀ, କ୍ଷମୟା ଧରିତ୍ରୀ
ସ୍ନେହେଷୁ ମାତା, ଶୟନେଷୁ ରମ୍ଭା
ସଙ୍ଗେଷୁ ସଖା...

ଏହା ସତ୍ତ୍ୱେ ଏଯାବତ୍ ସମାଜରେ ନାରୀ ସେମାନଙ୍କର ପ୍ରକୃତ ଅଧିକାର ପାଇପାରି ନାହାନ୍ତି । ଆମର ନେତା ଓ ବୁଦ୍ଧିଜୀବୀଗଣ ଭାଷଣରେ ନାରୀଙ୍କର ଦାବୀ, ଅଧିକାର, ସମାନତା ଓ କ୍ଷମତା ସମ୍ପର୍କରେ ବଡ଼ ବଡ଼ ଭାଷଣ ଦେଉଥିଲେ ହେଁ କାର୍ଯ୍ୟକ୍ଷେତ୍ରରେ ଠିକ୍ ବିପରୀତ ଆଚରଣ କରୁଛନ୍ତି । ବୋଧହୁଏ ପୁରୁଷ ସମାଜ ନିଜ ସହିତ ନାରୀକୁ ଗୋଟିଏ ଆସନରେ ବସିବାର ମାନସିକତା ଏ ପର୍ଯ୍ୟନ୍ତ ଅର୍ଜନ କରିନାହାନ୍ତି । ସେହି କାରଣରୁ ନାରୀ ସଶକ୍ତୀକରଣ ନିମିତ୍ତ ଆନ୍ତର୍ଜାତୀୟ ସ୍ତରରେ ଆଜି ଉଦ୍ୟମ ଚାଲିଛି ।

ନାରୀ ସମାଜ ପ୍ରତି ଏବେବି ଆମର ସାମାଜିକ ଦୃଷ୍ଟିଭଙ୍ଗୀରେ ବିଶେଷ କିଛି ପରିବର୍ତ୍ତନ ହୋଇଛି ବୋଲି ମନେହୁଏ ନାହିଁ । ଏବେବି ସେମାନେ ପୁରୁଷଙ୍କ ତୁଳନାରେ ଅବହେଳିତା । ଅଧିକାଂଶ କ୍ଷେତ୍ରରେ ନାରୀମାନଙ୍କ ଠାରୁ ପୁରୁଷମାନଙ୍କୁ ଅଧିକ ପ୍ରାଧାନ୍ୟ ଦିଆଯାଉଛି । ସେମାନେ ସମାଜର ଅବିଚ୍ଛେଦ୍ୟ ଅଙ୍ଗ ହୋଇଥିଲେ ହେଁ ପୁରୁଷ ହିଁ ଅଧିକ ସୁଯୋଗ ଲାଭ କରିଥାନ୍ତି । ଶିକ୍ଷା, ଆତ୍ମନିର୍ଭରଶୀଳତା, ସ୍ୱାଧୀନତା—ସବୁ କ୍ଷେତ୍ରରେ ସମାଜର ରଢ଼ିବାଦୀ ଦୃଷ୍ଟିଭଙ୍ଗୀ ନାରୀ ପ୍ରଗତିର ପ୍ରଧାନ ଅନ୍ତରାୟ ହୋଇ ଠିଆହୋଇଛି । ମହିଳାମାନଙ୍କ ଅଧିକାର ପ୍ରସଙ୍ଗ ଉଠିଲେ, ସମାଜ ବିଭିନ୍ନ ପ୍ରକାର ଆଳ ଦେଖାଇବା ଆରମ୍ଭ କରେ । ନିକଟରେ ଜାମ୍ମୁକାଶ୍ମୀରରେ ଯେଉଁ ବିବାଦୀୟ ମହିଳା ବିଲ୍ ଆଗତ ହେଲା, ସେଥିରୁ

ମୁସଲମାନ ସମାଜରେ ନାରୀମାନଙ୍କ ପ୍ରତି ଥିବା ଦୃଷ୍ଟିଭଙ୍ଗୀ ପ୍ରମାଣିତ ହୋଇଗଲା । ଏହି ବିଲ୍‌ରେ ସ୍ପଷ୍ଟ ଉଲ୍ଲେଖ କରାଯାଇଥିଲା, ଯଦି ରାଜ୍ୟର କୌଣସି ମହିଳା ଅଣକାଶ୍ମୀରଙ୍କୁ ବିବାହ କରେ, ତେବେ ସେ ଆପଣା ରାଜ୍ୟର ସ୍ଥାୟୀବାସିନ୍ଦା ଅଧିକାର ହରାଇ ବସିବା ସଙ୍ଗେ ସଙ୍ଗେ ପୈତୃକ ସମ୍ପତ୍ତିଗତ ଅଧିକାର, ଚାକିରି ବା ଅନ୍ୟ କୌଣସି ଆନୁଷଙ୍ଗିକ ସୁବିଧା ସୁଯୋଗରୁ ମଧ୍ୟ ବଞ୍ଚିତ ହେବ । ମହିଳାମାନଙ୍କ ପ୍ରତି କେବଳ ମୁସଲମାନ ସମାଜର ନୁହେଁ, ଆମ ହିନ୍ଦୁ ସମାଜରେ ଅନେକ ବହୁତେ ସେହିପରି ମନୋବୃତ୍ତି ରହିଛି । ନାରୀମାନଙ୍କର ବଞ୍ଚିବା ପାଇଁ ସଂଗ୍ରାମକୁ ସମାଜ ଭିନ୍ନ ଦୃଷ୍ଟିକୋଣରୁ ଦେଖିଥାଏ । ଯୌତୁକ ସମସ୍ୟା ଏହି ମହିଳାମାନଙ୍କ ପ୍ରତି ସମାଜର ହେୟ ଦୃଷ୍ଟିକୁ ପ୍ରତିପାଦିତ କରିଥାଏ । ଅଥଚ ଆମେ ଭୁଲିଯାଇଥାଉ, ପୁରୁଷର ସୃଷ୍ଟି କର୍ତ୍ତ୍ରୀ ନାରୀ । ନାରୀ ନ ଥିଲେ ସମାଜରେ ପୁରୁଷର ଜନ୍ମ ଅସମ୍ଭବ ହୋଇପଡ଼ିଥାନ୍ତା । ଉଭୟ ପୁରୁଷ ଓ ନାରୀର ସୁସ୍ଥ ସମବାୟରେ ସମାଜର ବିକାଶ ଓ ପ୍ରଗତି ସମ୍ଭବ ହୋଇଥାଏ । ଏହା ଆମେ ଅନୁଭବ କରୁଥିଲେ ହେଁ, ମାନସିକ ସ୍ତରରେ ପୁରୁଷ ପରି ନାରୀକୁ ସମ ମର୍ଯ୍ୟାଦା ଦେବାର ପକ୍ଷପାତୀ ନୋହୁଁ ।

ପୁରୁଷସମାଜର ରଢ଼ିବାଦୀ ଚିନ୍ତାଧାରା ନାରୀ ଅସହାୟତାର ଅନ୍ୟତମ କାରଣ । ଆଜି ନାରୀଟିଏ ଗର୍ଭଧାରଣ କରିବାମାତ୍ରେ, ଗର୍ଭସ୍ଥ ସନ୍ତାନ ପୁତ୍ର କିମ୍ବା କନ୍ୟା ସେ ସମ୍ପର୍କରେ ପରିବାର ଲୋକେ ତତ୍ପର ହୋଇଉଠନ୍ତି । ସନ୍ତାନଟି କନ୍ୟା ଭ୍ରୂଣ ହୋଇଥିଲେ, ତା'ର ନଷ୍ଟ ପାଇଁ ଚେଷ୍ଟା କରାଯାଇଥାଏ । ପୁତ୍ର ସନ୍ତାନଟି ଜନ୍ମ ହେଲେ ଗୃହରେ ଯେପରି ଆନନ୍ଦ-ଉଲ୍ଲାସ ଖେଳିଯାଏ, କନ୍ୟା ଜନ୍ମ କ୍ଷେତ୍ରରେ ତାହା ହୁଏ ନାହିଁ । ବିଶେଷଭାବରେ ନିମ୍ନ ମଧ୍ୟବିତ୍ତ ବା ମଧ୍ୟବିତ୍ତ ପରିବାର ଯୌତୁକ ବ୍ୟାଧିଯୋଗୁଁ କନ୍ୟା ଜନ୍ମର ପକ୍ଷପାତୀ ନୁହନ୍ତି । ଶିକ୍ଷା କ୍ଷେତ୍ରରେ ମଧ୍ୟ ଆମ ସମାଜରେ ନାରୀଙ୍କୁ ବିଶେଷ ଉତ୍ସାହିତ କରାଯାଏ ନାହିଁ । ଅଧିକ ପଢ଼ିଲେ, ଉପଯୁକ୍ତ ଯୋଗ୍ୟପାତ୍ର ପାଇଁ ଯୌତୁକ ଯୋଗାଡ଼ କରିବା କଷ୍ଟକର ବୋଲି ଅନୁଭବ କରି, ପ୍ରତିଭା ଓ ଜ୍ଞାନ ସତ୍ତ୍ୱେ ଅନେକ ଝିଅଙ୍କୁ ମଝିରୁ ପାଠ ଛାଡ଼ିବାକୁ ପଡ଼ିଥାଏ । ଝିଅର ବୟସ ଟିକେ ଅଧିକ ହୋଇଗଲେ, ତା'ର ବିବାହ ନିମିତ୍ତ ବିଭିନ୍ନ ସମସ୍ୟା ଦେଖାଦେଇଥାଏ । ଏହି ରଢ଼ିବାଦୀ ଦୃଷ୍ଟିଭଙ୍ଗୀ ଯୋଗୁଁ ମହିଳାଙ୍କ ଶିକ୍ଷାହାର ସନ୍ତୋଷଜନକ ହୋଇପାରୁ ନାହିଁ । ୨୦୦୧ ଜନଗଣନା ଅନୁଯାୟୀ ଆମ ଓଡ଼ିଶାରେ ମହିଳାଙ୍କ ଶିକ୍ଷାହାର ୩୪.୬୮% ଯାହା ପୁରୁଷଙ୍କ ତୁଳନାରେ ୨୮.୩୧% କମ୍ । ଆଦିବାସୀ ମହିଳାଙ୍କ କ୍ଷେତ୍ରରେ ଏହା ଅତ୍ୟନ୍ତ ପରିତାପର ବିଷୟ । ଓଡ଼ିଶାରେ ମହିଳା ସାକ୍ଷରତା ମାତ୍ର ୧୦.୨୧% । କୌଣସି କାରଣରୁ ଯଥାସମୟରେ ଝିଅଟି ଅବିବାହିତା ରହିଗଲେ, ସମାଜରେ ତାକୁ କମ୍ ଗଞ୍ଜଣା ସହିବାକୁ ପଡ଼େ ନାହିଁ । ବାପା ମାଆମାନେ ଅଧିକାଂଶ କ୍ଷେତ୍ରରେ ଝିଅମାନଙ୍କୁ ନିଜର ବୋଝ ବୋଲି ମନେକରୁଥିବାରୁ ସେମାନେ ମାନସିକ ଶାନ୍ତି ପାଇପାରନ୍ତି ନାହିଁ । ବିବାହିତା ତରୁଣୀମାନେ ମଧ୍ୟ ଯୌତୁକ ଅଭାବରେ ଶାରୀରିକ ଓ ମାନସିକ ନିର୍ଯ୍ୟାତନା ସହ୍ୟ କରି ନପାରି ଆତ୍ମହତ୍ୟା କରିଥାନ୍ତି । ଗୋଟିଏ ଘରେ ଉଭୟ ପୁତ୍ର ଓ କନ୍ୟା ସନ୍ତାନ ଥିଲେହେଁ ପିତାମାତା ପୁତ୍ର

ସନ୍ତାନଟିର ଯେପରି ଯତ୍ନ ନେଇଥାନ୍ତି, କନ୍ୟାଟିର ସେପରି ଯତ୍ନ ନେଇନଥାନ୍ତି । ଅଧିକାଂଶ ପିତାମାତାଙ୍କ ଧାରଣା ବୃଦ୍ଧ ସମୟରେ ପୁତ୍ର ସନ୍ତାନଟି ଏକମାତ୍ର ଭରସା, କନ୍ୟା ତ ପରଘରକୁ ଚାଲିଯିବ । ଏକବିଂଶ ଶତାବ୍ଦୀରେ ମଧ୍ୟ ନାରୀମାନଙ୍କ ପ୍ରତି ଏହିପରି ଗଢ଼ିବାଦୀ ଧାରଣା ଯୋଗୁଁ ନାରୀ ପ୍ରଗତି ଧୀରେ ଧୀରେ ସ୍ୱପ୍ନ ହୋଇପଡୁଛି ।

ଆମ ସମାଜ ଏ ପର୍ଯ୍ୟନ୍ତ ମାନସିକ ସ୍ତରରେ ପ୍ରସ୍ତୁତ ହୋଇନାହିଁ ନାରୀମାନଙ୍କୁ ତାଙ୍କର ଅଧିକାର ଓ ସମ୍ମାନ ଦେବାପାଇଁ । ଏଯାବତ୍ ଅନେକ ନାରୀ ଜନ୍ମକୁ ଏକ ଅଭିଶାପ ବୋଲି ଗ୍ରହଣ କରିଥାନ୍ତି । ସହ ଶିକ୍ଷା ଓ ବିଭିନ୍ନ କ୍ଷେତ୍ରରେ ନାରୀମାନଙ୍କର ଉତ୍‌ଥାନକୁ ସେମାନେ ସହ୍ୟ କରିପାରନ୍ତି ନାହିଁ । ସ୍ୱାଧୀନ ଭାବରେ କୌଣସି କାର୍ଯ୍ୟ କଲେ ସେମାନେ ନିର୍ଯ୍ୟାତନା ବା ବାସନ୍ଦର ସମ୍ମୁଖୀନ ହୋଇଥାନ୍ତି । ଅର୍ଦ୍ଧାଙ୍ଗ, ସହଧର୍ମିଣୀ, ସହକର୍ମିଣୀ ସବୁ ଯେପରି ଆଭିଧାନିକ ଶବ୍ଦରେ ପରିଣତ ହୋଇଛି । ପୁରୁଷ ପରି ନାରୀଙ୍କୁ ମଧ୍ୟ ସମ ଦୃଷ୍ଟିରେ ଦେଖିବା ଆବଶ୍ୟକ । ଆଜିର ପ୍ରତିଯୋଗିତା ଦୁନିଆରେ ନାରୀ ଓ ପୁରୁଷ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ପୁରୁଷ ପରି ନାରୀ ମଧ୍ୟ ସବୁ କାର୍ଯ୍ୟରେ ଦକ୍ଷ, ପୁରୁଷ ସମାଜ ମାନସିକ ସ୍ତରରେ ଏଥିପାଇଁ ପ୍ରସ୍ତୁତ ହେବା ଆବଶ୍ୟକ ।

ଆମ ସମାଜର ଉପରୋକ୍ତ ଦୃଷ୍ଟିଭଙ୍ଗୀ ଅନୁଯାୟୀ ନାରୀ ସଶକ୍ତୀକରଣର ଆବଶ୍ୟକତା ରହିଛି । ନାରୀମାନେ କୌଣସି ଗୁଣରେ ପୁରୁଷଙ୍କଠାରୁ ନ୍ୟୂନ ନୁହନ୍ତି, ଏହିପରି ଚିନ୍ତାଧାରା ସେମାନଙ୍କ ମଧ୍ୟରେ ଉଦ୍ରେକ ହେବା ପ୍ରୟୋଜନ । ସେମାନେ ନିଜର ଶକ୍ତି ଓ ସାମର୍ଥ୍ୟ ପ୍ରତି ଆଶାବାଦୀ ହେବା ଦରକାର । କେବଳ ଘର କାର୍ଯ୍ୟ ଓ ସନ୍ତାନ ପ୍ରଜନନ କ୍ଷେତ୍ରରେ ସୀମିତ ନୁହନ୍ତି, ସମାଜର ସାମଗ୍ରିକ ବିକାଶରେ ସେମାନଙ୍କର ମଧ୍ୟ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି, ଏଥିପ୍ରତି ବିଶ୍ୱସ୍ତ ରହିବା ଆବଶ୍ୟକ । ନିଜ ମଧ୍ୟରେ କୌଣସି ଦୁର୍ବଳତାକୁ ସ୍ଥାନ ନଦେଇ ପ୍ରତ୍ୟେକ କ୍ଷେତ୍ରରେ ପୁରୁଷର ସମକକ୍ଷ ତଥା ନିଜର ଅଧିକାର ସାବ୍ୟସ୍ତ ପାଇଁ ସେମାନେ ମାନସିକ ସ୍ତରରେ ପ୍ରସ୍ତୁତ ହେଲେ ନାରୀ ସଶକ୍ତୀକରଣ ସମ୍ଭବ ହୋଇପାରିବ ।

ସାମ୍ପ୍ରତିକ ପରିପ୍ରେକ୍ଷୀରେ ଆମର ସାମାଜିକ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନର ଆବଶ୍ୟକତା ରହିଛି । ପୁତ୍ର ସନ୍ତାନ ପରି କନ୍ୟା ସନ୍ତାନଙ୍କୁ ମଧ୍ୟ ସମାନ ଦୃଷ୍ଟିରେ ଦେଖିବା ଆବଶ୍ୟକ । ଶିକ୍ଷା କ୍ଷେତ୍ରରେ ଉଭୟଙ୍କୁ ସମାନ ସୁଯୋଗ ପ୍ରଦାନ କରିବା, ସମାଜର ବିକାଶରେ ନାରୀର ସାମର୍ଥ୍ୟ ପ୍ରତି ବିଶ୍ୱାସ ରଖିବା, ବିଭିନ୍ନ ପ୍ରତିଯୋଗିତାରେ ଉଭୟଙ୍କୁ ସମସୁଯୋଗ ଦେବା, ସେମାନେ ଅସହାୟା ନୁହନ୍ତି ଏପରି ଏକ ଆତ୍ମବିଶ୍ୱାସ ସେମାନଙ୍କ ମନରେ ସୃଷ୍ଟି କରିବା, କୌଣସି କ୍ଷେତ୍ରରେ ସେମାନଙ୍କୁ ହୀନ ଦୃଷ୍ଟିରେ ନ ଦେଖିବା, ପୁରୁଷ ପରି ନାରୀ ମଧ୍ୟ ଯେ ସମସ୍ତ ଅଧିକାର ପାଇବାକୁ ଯୋଗ୍ୟ—ଏପରି ଚିନ୍ତାଧାରାର ଉଦ୍ରେକ ହେବା ଅତ୍ୟନ୍ତ ଜରୁରୀ । ନଚେତ୍ ଆମର ସାମାଜିକ ଜୀବନ ସ୍ଥାଣୁ ହୋଇପଡ଼ିବ । ବର୍ତ୍ତମାନ ଦେଖାଯାଉଛି ଯୋଗ୍ୟତା, ଶିକ୍ଷା, ମାନସିକତା, ପ୍ରତିଭା, ଜ୍ଞାନ ଓ ଦୂରଦୃଷ୍ଟି—ପ୍ରତ୍ୟେକ କ୍ଷେତ୍ରରେ ନାରୀ ପୁରୁଷ ସହିତ ସମକକ୍ଷ, ଏପରିକି କେତେକ କ୍ଷେତ୍ରରେ ଅଧିକ ସମର୍ଥା ।

କେବଳ ଆମର ସାମାଜିକ ଦୃଷ୍ଟିରେ ପରିବର୍ତ୍ତନ ଆସିଲେ ଓ ସେମାନଙ୍କ ପ୍ରତି ସମ୍ବେଦନଶୀଳ ହୋଇପାରିଲେ ନାରୀ ସଶକ୍ତୀକରଣ ଧ୍ୱନି ସାର୍ଥକ ହୋଇପାରିବ ।

ପୁରୁଷ ଓ ନାରୀ—ଗୋଟିଏ ମୁଦ୍ରାର ଦୁଇ ପାର୍ଶ୍ୱ । ଗୋଟିକର ଅଭାବରେ ଆମର ସାମାଜିକ ଜୀବନ ଓ ପାରିବାରିକ ଜୀବନ ପଙ୍ଗୁ ହୋଇପଡ଼ିବ । ନାରୀ ମଧ୍ୟରେ ରହିଥିବା ଅମିତ ଶକ୍ତିକୁ ସ୍ୱୀକାର କରିବାକୁ ପଡ଼ିବ ଏବଂ ପୁରୁଷ ନାରୀକୁ ନିଜ ସହିତ ସମକକ୍ଷ ବୋଲି ବିଚାର କରିବା ଆବଶ୍ୟକ । ନାରୀ ଆଜି ପ୍ରତ୍ୟେକ କ୍ଷେତ୍ରରେ ପ୍ରଗତି କରିଚାଲିଛି, ପୁରୁଷକୁ ସହାୟତା କରୁଛି । ଆଜି ଜଳ, ସ୍ଥଳ, ଆକାଶ—କୌଣସି କ୍ଷେତ୍ର ନାରୀ ପାଇଁ ଅଗମ୍ୟ ନୁହେଁ । ପୁରୁଷ ପରି ନାରୀ ମଧ୍ୟ ସ୍ୱାଧୀନ ଓ ସେମାନଙ୍କର ସ୍ୱତନ୍ତ୍ରତା ରହିଛି—ଏହି ଧାରଣା ସମସ୍ତଙ୍କ ମଧ୍ୟରେ ସୃଷ୍ଟି ହେବା ଆବଶ୍ୟକ । ପୁରୁଷ ଏବଂ ନାରୀର ସହଯୋଗରେ କେବଳ ପାରିବାରିକ ଜୀବନ ନୁହେଁ, ସମଗ୍ର ବିଶ୍ୱ ସୁନ୍ଦର, ଶୁଭ୍ର ଏବଂ ସତେଜ ହେବା ସଙ୍ଗେସଙ୍ଗେ ପ୍ରଗତି ପଥରେ ଅଗ୍ରସର ହୋଇପାରିବ ।



# ଫିଲ୍ ଗୁଡ୍ ବା ସୁଖଦ ଅନୁଭବ

**(ଉପକ୍ରମ – ଫିଲ୍ ଗୁଡ୍‌ର ଅର୍ଥ – ଏହି ଅନୁଭବର ତାତ୍ପର୍ଯ୍ୟ – ଏହା ଏକ ରାଜନୀତିକ ଇସ୍ତାହାର – ଫିଲ୍ ଗୁଡ୍ ସପକ୍ଷ ଯୁକ୍ତି – ବିପକ୍ଷ ଯୁକ୍ତି – କେତୋଟି ପ୍ରସ୍ତାବ – ଉପସଂହାର )**

ସମ୍ପ୍ରତି ବିଭିନ୍ନ ଗଣମାଧ୍ୟମ ଓ ରାଜନୀତିକ ଭାଷଣରେ ଫିଲ୍ ଗୁଡ୍ ବା ସୁଖଦ ଅନୁଭବ ସମ୍ପର୍କରେ ବିସ୍ତୃତ ଭାବରେ ପ୍ରଚାର ହୋଇଛି । କ୍ଷମତାରେ ଥିବା ସରକାର ଏହା ସପକ୍ଷରେ ବିଭିନ୍ନ ଯୁକ୍ତି ଉପସ୍ଥାପନ କରୁଥିବା ସମୟରେ ବିରୋଧୀ ଦଳ ବିପକ୍ଷରେ ପ୍ରଚାର କରିଛନ୍ତି । ସାଧାରଣ ବ୍ୟକ୍ତିବିଶେଷଙ୍କ ନିକଟରେ ଏହା ପ୍ରହେଳିକା ସୃଷ୍ଟି କରିଛି । ଏହି ପ୍ରଚାରରେ କେତେ ପରିମାଣରେ ସତ୍ୟତା, ଆନ୍ତରିକତା ଅଛି, ତାହା ଯେତେ ବଡ଼କଥା ନୁହେଁ, ଉଭୟ ଶାସକ ଓ ବିରୋଧୀ ଦଳ ଏହି ଶବ୍ଦଟିକୁ ଯେପରି ପ୍ରୟୋଗ କରିଛନ୍ତି, ତାହାହିଁ ଚିନ୍ତାର ବିଷୟ ।

ଫିଲ୍ ଗୁଡ୍‌ର ଅର୍ଥ ଉତ୍ତମ ବା ସୁଖକର ଅନୁଭୂତି । ଏହି ଅନୁଭୂତି ସେତେବେଳେ ଆସେ, ଯେତେବେଳେ ସାଧାରଣ ମଣିଷଟି ତା'ର ସମସ୍ତ ଅଭାବ ପୂରଣର ସାମର୍ଥ୍ୟ ରଖେ । ଏହି ସାମର୍ଥ୍ୟ ମୁଖ୍ୟତଃ ନିର୍ଭର କରେ ମଣିଷର ସାମାଜିକ, ଆର୍ଥିକ ଓ ମାନସିକ ସ୍ଥିତିକୁ ନେଇ । ବର୍ତ୍ତମାନ ସମୟରେ ଭାରତବର୍ଷରେ ପ୍ରକୃତରେ କ'ଣ ସାଧାରଣ ମଣିଷମାନଙ୍କ ମଧ୍ୟରେ ଏହି ଅନୁଭବ ଆସିଛି ? ପୁରୁଷ ଓ ନାରୀ ନିର୍ବିଶେଷରେ ସମସ୍ତେ କ'ଣ ନିଜ ମଧ୍ୟରେ ଏହି ଅନୁଭବଟିକୁ ଉପଲବ୍ଧି କରିପାରୁଛନ୍ତି ? ମଣିଷର ସ୍ୱାଧୀନତା ସହିତ ଏହାର କୌଣସି ସମ୍ପର୍କ ନ ଥାଏ, ସମ୍ପର୍କ ଥାଏ ଅନୁଭବରେ, ଜୀବନର ଦୈନନ୍ଦିନ ବାସ୍ତବ ଅଭିଜ୍ଞତାରେ । ଏହି କାରଣରୁ ଫିଲ୍ ଗୁଡ୍ ଶବ୍ଦଟି ବର୍ତ୍ତମାନ ବହୁ ବୁଦ୍ଧିଜୀବୀ ଓ ସାଧାରଣ ମଣିଷଙ୍କ ନିକଟରେ ଏକ ପ୍ରଶ୍ନବାଚୀ ହୋଇ ଠିଆହୋଇଛି ।

ଫିଲ୍ ଗୁଡ୍ ଅନୁଭବର ତାତ୍ପର୍ଯ୍ୟ ହେଉଛି ଜାତି, ବର୍ଣ୍ଣ, ଧର୍ମ ଓ କ୍ଷମତା ନିର୍ବିଶେଷରେ ପ୍ରତ୍ୟେକ ନାଗରିକ ନିଜ ମଧ୍ୟରେ ଆତ୍ମସନ୍ତୋଷର ଉପଲବ୍ଧି କରିବା । ଏ ଉପଲବ୍ଧି ପ୍ରଚାରସର୍ବସ୍ୱ ନହୋଇ ଅନୁଭବସର୍ବସ୍ୱ ହେବା ଆବଶ୍ୟକ । ମଣିଷଟି ନିଜ ଇଚ୍ଛାରେ କାମ୍ୟ ବସ୍ତୁଟି ପାଇ ନ ପାରିଲେ ଏପରି ଶବ୍ଦର କୌଣସି ଯଥାର୍ଥତା ରହେନାହିଁ । ଉଭୟ ନାରୀ ଓ ପୁରୁଷ ଆନ୍ତରିକତାର ସହିତ ଏହାକୁ ଉପଲବ୍ଧି କରିବାର ଆବଶ୍ୟକତା ରହିଛି । ଶିକ୍ଷା, ଖାଦ୍ୟ, ପୋଷାକ, ବାସଗୃହ ଓ ସାମାଜିକ ବ୍ୟବସ୍ଥାରେ ମଣିଷ ଯଦି ନିଜର ସମସ୍ତ ପ୍ରୟୋଜନୀୟ ପଦାର୍ଥଟିକୁ ପାଇପାରେ, ତେବେ ଫିଲ୍ ଗୁଡ୍‌ର ତାତ୍ପର୍ଯ୍ୟ ରହିଛି ବୋଲି ସ୍ଲୋଗାନଟି ସତ୍ୟ ବୋଲି ପ୍ରମାଣିତ ହୋଇପାରିବ ।

ସୁଖଦ ଅନୁଭବ (ଫିଲ୍ ଗୁଡ୍) ଏବଂ ଭାରତ ଉଦୟ (ଇଣ୍ଡିଆସାଇନିଂ)ର ପ୍ରଚାର ଏକ ରାଜନୀତିକ ଚତୁରତା ବୋଲି ଅନେକ ଅନୁଭବ କରିଛନ୍ତି । ସରକାର ତାଙ୍କର ପାଞ୍ଚବର୍ଷର ସାଫଲ୍ୟକୁ ପ୍ରାୟ ୪୫୦ଟି ସମ୍ବାଦପତ୍ରରେ ୩୯୨ ପ୍ରକାର ବିଜ୍ଞାପନ ଏବଂ ବୈଦ୍ୟୁତିକ ଗଣ ମାଧ୍ୟମର ଶହେଟି ଚାନେଲରେ ୯୪୭୨ଟି ବିଜ୍ଞାପନରେ ପ୍ରଦର୍ଶନ କରିଛନ୍ତି । ଏହାଦ୍ୱାରା ଜନସାଧାରଣଙ୍କ ମଧ୍ୟରେ ଏକ ଧାରଣା ସୃଷ୍ଟି ହୋଇଛି ଯେ, ଭାରତର ବିକାଶ ବିଭିନ୍ନ କ୍ଷେତ୍ରରେ ତ୍ୱରାନ୍ୱିତ ହେଉଛି । ବିଶ୍ୱର ବିକଶିତ ରାଷ୍ଟ୍ରମାନଙ୍କ ମଧ୍ୟରେ ଭାରତର ମହତ୍ତ୍ୱ ବୃଦ୍ଧି ପାଇଛି । ଏହି ସାଫଲ୍ୟର ପ୍ରଚାର ମାଧ୍ୟମରେ ସଂସଦ କାର୍ଯ୍ୟକାଳ ପୂର୍ଣ୍ଣ ହେବା ପୂର୍ବରୁ ସରକାର ପୁଣି ନିର୍ବାଚନ ଘୋଷଣା କରିଛନ୍ତି । ତେବେ ମନରେ ପ୍ରଶ୍ନ ଉଠେ, ଭାରତ କ'ଣ ପ୍ରତି କ୍ଷେତ୍ରରେ ସ୍ୱାବଲମ୍ବନଶୀଳ ହୋଇପାରିଛି ? ଅବଶ୍ୟ ଏକଥା ସତ୍ୟ ଯେ, ବିଶ୍ୱ ଦରବାରରେ ଭାରତର ମର୍ଯ୍ୟାଦା ଯେପରି କେତେକ କ୍ଷେତ୍ରରେ ବୃଦ୍ଧି ପାଇଛି, ସେହିପରି କେତେକ କ୍ଷେତ୍ରରେ ମର୍ଯ୍ୟାଦାହାନି ମଧ୍ୟ ଘଟିଛି । ସରକାରଙ୍କର ଏହି ବିଜ୍ଞାପନ ପଛରେ ଏକ ନିର୍ଦ୍ଦିଷ୍ଟ ରାଜନୀତିକ ଉଦ୍ଦେଶ୍ୟ ରହିଛି ବୋଲି ଅନେକଙ୍କର ଧାରଣା ।

ସୁଖଦ ଅନୁଭବ ବିଜ୍ଞାପନ ପଛରେ ନିଶ୍ଚିତ ଭାବରେ କେତେକ ଯୁକ୍ତି ରହିଛି । ଭାରତରେ ଅଛନ୍ତି ବିଶ୍ୱର ସବୁଠାରୁ ଧନୀ ବ୍ୟକ୍ତି । ୨୦୦୩ ମସିହା ଡିସେମ୍ବର ଶେଷରେ ଭାରତରେ ୧୦୦ ବିଲିୟନ ଡଲାର ଗଚ୍ଛିତ ରହିଛି ବୋଲି ରିଜର୍ଭବ୍ୟାଙ୍କ ବୈଦେଶିକ ମୁଦ୍ରା ବିନିମୟ ପରିସଂଖ୍ୟାନରେ ପ୍ରକାଶ କରିଛନ୍ତି । ଠିକ୍ ଦଶବର୍ଷ ପୂର୍ବରୁ ଏହି ମୁଦ୍ରାର ସଞ୍ଚିତ ପରିମାଣ ଥିଲା ମାତ୍ର ୧.୨ ବିଲିୟନ ଡଲାର । ବର୍ତ୍ତମାନ ଟଙ୍କାର ମୂଲ୍ୟ ବୃଦ୍ଧି ପାଇଛି । ଏହି କାରଣରୁ ବିଦେଶୀ କମ୍ପାନୀମାନେ ଭାରତରେ ବ୍ୟବସାୟ କରିବାର ଆଗ୍ରହ ପ୍ରକାଶ କରୁଛନ୍ତି । ଟେଲିଯୋଗାଯୋଗର ବ୍ୟାପକ ବ୍ୟବସ୍ଥା ତଥା ଭାରତର ଇଣ୍ଟରନେଟ୍ କଳାକୌଶଳ ବହୁ ରାଷ୍ଟ୍ରୀୟ କମ୍ପାନୀକୁ ପ୍ରଲୁବ୍ଧ କରିଛି । ସୂଚନା ଓ ପ୍ରଯୁକ୍ତି ବିଦ୍ୟାକ୍ଷେତ୍ରରେ ବିଶ୍ୱରେ ବର୍ତ୍ତମାନ ଭାରତ ଶ୍ରେଷ୍ଠ ସ୍ଥାନ ଅଧିକାର କରିଛି । କ୍ରମବର୍ଦ୍ଧିଷ୍ଣୁ ଆର୍ଥିକ ବ୍ୟବସ୍ଥା, ନିମ୍ନ ସ୍ଫୀତିହାର, ଷ୍ଟକ୍‌ମାର୍କେଟ୍ ବୃଦ୍ଧି ଆଦି ଆନ୍ତର୍ଜାତୀୟ ସ୍ତରରେ ଭାରତର ଭାବମୂର୍ତ୍ତିକୁ ବୃଦ୍ଧି କରିଛି । ଏତଦ୍‌ବ୍ୟତୀତ ସରକାରଙ୍କ ବିଭିନ୍ନ ଯୋଜନା ଲୋକମାନଙ୍କ ମନରେ ଆଶାର ସଞ୍ଚାର କରିପାରିଛି । ଭାରତ ସରକାରଙ୍କ ବୈଦେଶିକ ନୀତି, ସ୍ୱର୍ଣ୍ଣ ଚତୁର୍ଭୁଜ ଯୋଜନା, ଅନ୍ତ୍ୟୋଦୟ ଓ ଅନ୍ନପୂର୍ଣ୍ଣା କାର୍ଯ୍ୟକ୍ରମ, ପାକିସ୍ଥାନ ସହିତ ସମ୍ପର୍କର ଉନ୍ନତି, ଗ୍ରାମୀଣ

ସଡ଼କ ଯୋଜନା, ରପ୍ତାନି ଦ୍ରବ୍ୟ ଉପରୁ କର ହ୍ରାସ, ଜାମ୍ମୁ ଓ କାଶ୍ମୀର ନୀତି, ତୈଳ ବିଶୋଧନାଗାର, କିଷାନ୍ କ୍ରେଡ଼ିଟ୍ କାର୍ଡ଼ ପ୍ରଦାନ, କୃଷକମାନଙ୍କ ପାଇଁ କମ୍ ସୁଧ ହାରରେ ବ୍ୟାଙ୍କ୍ ଋଣ ବ୍ୟବସ୍ଥା, ସରକାରୀ କର୍ମଚାରୀଙ୍କ ପାଇଁ ମହଙ୍ଗାଭତ୍ତାକୁ ମୂଳ ବେତନ ସହିତ ସମ୍ମିଶ୍ରଣ, ଗ୍ରାମୀଣ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ୨ କୋଟି ପରିବାରକୁ ଅନ୍ତ୍ୟୋଦୟ ଅନ୍ନ ଯୋଜନା ଅନ୍ତର୍ଭୁକ୍ତ କରିବା, ସ୍ୱାସ୍ଥ୍ୟରକ୍ଷା ଯୋଜନାରେ ଛତିଶଗଡ଼, ମଧ୍ୟପ୍ରଦେଶ, ରାଜସ୍ଥାନ, ଉତ୍ତରାଞ୍ଚଳ, ବିହାର ଓ ଓଡ଼ିଶା ପରି ପଛୁଆ ରାଜ୍ୟରେ ଅଖିଳ ଭାରତୀୟ ଆୟୁର୍ବିଜ୍ଞାନ ସଂସ୍ଥାନ ଢାଞ୍ଚାରେ ୬ଟି ମେଡ଼ିକାଲ୍ ପ୍ରତିଷ୍ଠା ଯୋଜନା, ୨୦୦୪,-୦୫ ଆର୍ଥିକ ବର୍ଷରେ ଘରୋଇ ଉତ୍ପାଦନ ୭.୫% ରୁ ୮ କରିବାର ଯୋଜନା ନିଶ୍ଚିତ ଭାବରେ ଦେଶବାସୀଙ୍କ ମନରେ ପ୍ରତ୍ୟୟ ସୃଷ୍ଟି କରିଛି । ଏହି ଦୃଷ୍ଟିରୁ ସରକାରଙ୍କ ପଦକ୍ଷେପ ଓ କାର୍ଯ୍ୟ କରିବାର ପ୍ରଣାଳୀ ନିଶ୍ଚିତଭାବେ ସ୍ୱାଗତଯୋଗ୍ୟ ।

ଏହା ସତ୍ତ୍ୱେ ସରକାରଙ୍କ ବିଫଳତା ମଧ୍ୟ ବିଚାର୍ଯ୍ୟ । ସରକାରଙ୍କ ଫିଲ୍ ଗୁଡ୍‌ରେ ଦେଶର ମାତ୍ର ୨୦ ଭାଗ ଲୋକ ଉପକୃତ ଓ ୮୦ ଭାଗ ଲୋକ ଏଥିରୁ ବଞ୍ଚିତ । ବିଗତ ବର୍ଷମାନଙ୍କରେ କୃଷି ଓ ପଶୁପାଳନ କ୍ଷେତ୍ରରେ ଆୟ ୨୮% ବଢ଼ିଥିବା ସମୟରେ ଅସଙ୍ଗଠିତ ଶିଳ୍ପକ୍ଷେତ୍ରରେ ଉତ୍ପାଦନ ୧୬%, ଖଣି ଉତ୍ପାଦନ କ୍ଷେତ୍ରରେ ୧୬% କମିଛି । ଆଉ ଏକ ବିପଜ୍ଜନକ ଘଟଣା ମଧ୍ୟ ଇତି ମଧ୍ୟରେ ଘଟିଛି । ବିଗତ ୫ ବର୍ଷରେ ପ୍ରାୟ ୧୪୦୦ କୃଷକ ଆତ୍ମହତ୍ୟା କରିଛନ୍ତି । ଧନୀ ଓ ଶିଳ୍ପପତିଙ୍କ ଉପରେ ୨୦୦୨ ମସିହା ସୁଦ୍ଧା ୮୬,୩୪୨ କୋଟି ଟଙ୍କା ବାକି ରହିଛି । ଭୋକିଲା ଲୋକଙ୍କ ସଂଖ୍ୟା ୨୧ କୋଟି ୪୫ ଲକ୍ଷକୁ ବୃଦ୍ଧି ପାଇଛି । ୧୯୯୮-୯୯ରେ ଦେଶରେ ଚାଉଳ ଉତ୍ପାଦନ ୮୬.୦୮ ନିୟୁତ ଟନ୍ ଥିବାବେଳେ ୨୦୦୨-୦୩ ବେଳକୁ ତାହା ୭୬.୭୨ ନିୟୁତ ଟନ୍‌କୁ ହ୍ରାସ ପାଇଛି । ସେହିପରି ଗହମ ଉତ୍ପାଦନ ଏହି ସମୟରେ ୭୧.୨୯ ନିୟୁତ ଟନ୍‌ରୁ ୬୮.୮୯ ନିୟୁତ ଟନ୍, ଖାଦ୍ୟ ଶସ୍ୟ ଉତ୍ପାଦନ ୨୧ କୋଟି ୨୦ ଲକ୍ଷ ଟନ୍‌ରୁ ୧୮ କୋଟି ୨୫ ଲକ୍ଷ ଟନ୍‌କୁ ହ୍ରାସ ପାଇଛି । ଦଶବର୍ଷ ମଧ୍ୟରେ ମୁଣ୍ଡପିଛା ଖାଦ୍ୟ ଯୋଗାଣ ୧୭୪ କେ.ଜିରୁ ୧୫୪ କେ.ଜିକୁ ଖସିଆସିଛି । ୟୁନିସେଫ୍‌ର ଏକ ପରିସଂଖ୍ୟାନରୁ ଜଣାପଡ଼େ ଭାରତର ୫୦ ଭାଗ ମହିଳା ରକ୍ତହୀନତାରୋଗ ପୀଡ଼ିତ । ପ୍ରତି ଲକ୍ଷରେ ୫୪୦ ମହିଳା ସନ୍ତାନ ପ୍ରସବ ବେଳେ ମୃତ୍ୟୁବରଣ କରିଥାନ୍ତି । ବିଶ୍ୱରେ ୧୬% ଶିଶୁ ସ୍ୱାଭାବିକ ଓଜନଠାରୁ ଜନ୍ମ ବେଳେ କମ୍ ଥିବା ସମୟରେ ଭାରତରେ ଏହାର ସଂଖ୍ୟା ୩୦% । ଶିକ୍ଷା ସମ୍ପର୍କୀୟ ରିପୋର୍ଟରୁ ଜଣାଯାଏ, ପୃଥିବୀର ସମୁଦାୟ ଲୋକସଂଖ୍ୟାର ୧୭% ଭାରତରେ ବାସ କରିଥାନ୍ତି । ପୃଥିବୀରେ ୧୫ ବର୍ଷରୁ ବେଶି ନିରକ୍ଷର ସଂଖ୍ୟା ୮୬କୋଟି ଥିବା ବେଳେ, ଭାରତରେ କେବଳ ଅଛନ୍ତି ୨୯ କୋଟି । ମିଳିତ ଜାତିସଂଘର ମାନବ ଉନ୍ନୟନ ରିପୋର୍ଟ ଅନୁଯାୟୀ, ଭାରତର ୩୫% ଲୋକଙ୍କ ଦୈନିକ ଆୟ ଗୋଟିଏ ଡଲାରରୁ କମ୍ ଓ ୨୪ କୋଟି ଲୋକ ପୁଷ୍ଟିହୀନତାର ଶିକାର । ବେକାର ସଂଖ୍ୟା ଇତି ମଧ୍ୟରେ ବହୁପରିମାଣରେ ବୃଦ୍ଧି ପାଇଛି । ୧୯୯୧ ମସିହାରେ ମଜୁରିଆ ବର୍ଷକୁ ୧୦୦ ଦିନ କାର୍ଯ୍ୟ ପାଉଥିବା ବେଳେ ଏହା ବର୍ତ୍ତମାନ

(୨୦୦୩) ୭୨ ଦିନକୁ ହ୍ରାସ ପାଇଛି । ଆର୍ଥିକ ଦୁର୍ନୀତି କ୍ଷେତ୍ରରେ ୧୦୨ଟି ଦେଶ ମଧ୍ୟରୁ ଭାରତର ସ୍ଥାନ ୭୧ (ଏକସ୍ତରୀ)ରେ । ୧୯୯୮-୯୯ରେ ଭାରତର ବୈଦେଶିକ ଋଣ ୯୮୨୩ କୋଟି ଡଲାର ଥିବାବେଳେ ୨୦୦୩ ଜୁନ୍‌ରେ ଏହାର ପରିମାଣ ୧୦୯୬୦ କୋଟି ଡଲାରକୁ ବୃଦ୍ଧି ପାଇଛି । ଅର୍ଥାତ୍ ପ୍ରତି ଭାରତୀୟଙ୍କ ମୁଣ୍ଡପିଛା ଋଣ ୪୯୬୦ ଟଙ୍କା । ଭାରତରେ ପ୍ରତି ୫୪ ମିନିଟ୍‌ରେ ଜଣେ ମହିଳା ଧର୍ଷିତା ହୋଇଥାନ୍ତି । ତେଣୁ ଏପରି ପରିସ୍ଥିତିରେ ଭାରତ ଉଦୟ ଓ ଫିଲ୍ ଗୁଡ୍ ଧ୍ୱନି କେତେ ପରିମାଣରେ ଯଥାର୍ଥ, ତାହା ବିଚାର୍ଯ୍ୟ ।

ସମ୍ପ୍ରତି ଜନସେବା ନାମରେ ବ୍ୟକ୍ତିସେବା ହିଁ ମୁଖ୍ୟ ହୋଇଉଠିଛି । ସ୍ୱପ୍ନରେ ଧ୍ୱନି ନଦେଇ ବର୍ତ୍ତମାନ ରାଜନୀତିକ ବ୍ୟକ୍ତିବିଶେଷଙ୍କୁ ବାସ୍ତବବାଦୀ ହେବାକୁ ପଡ଼ିବ । ଧନୀମାନେ ଦିନକୁ ଦିନ ଅଧିକ ଧନୀ ହେଉଥିବା ସମୟରେ ଗରିବମାନେ ଅଧିକ ଗରିବ ହେଉଛନ୍ତି । ଏ କ୍ଷେତ୍ରରେ ଏକ ସମାନ ପଦ୍ଧତି ଆବିଷ୍କାର କରିବାକୁ ହେବ । କଳାଧନର ସ୍ରୋତ ଓ ଦୁର୍ନୀତିକୁ ଅଟକାଇବାକୁ ପଡ଼ିବ । ଯୋଜନାର ରୂପରେଖ ପ୍ରସ୍ତୁତି ନୁହେଁ, ତାକୁ ଉପଯୁକ୍ତ ଭାବେ କାର୍ଯ୍ୟକାରୀ କରିବାକୁ ହେବ । ବିଭିନ୍ନ ଯୋଜନାରେ ଅଟକଳ ହେଉଥିବା ଅର୍ଥ ଉଚିତ ଉଦ୍ଦେଶ୍ୟରେ ବ୍ୟୟ ହେଉଛି କି ନାହିଁ ସେଥିପ୍ରତି ସଜାଗ ରହିବାକୁ ପଡ଼ିବ । ଯେଉଁମାନେ ଦୁର୍ନୀତି ମାର୍ଗରେ ଅର୍ଥ ଠୁଳ କରିଛନ୍ତି, ସେମାନଙ୍କ ଠାରୁ ତାହା ଆଣି ରାଷ୍ଟ୍ରୀୟ ସ୍ୱାର୍ଥ ଉଦ୍ଦେଶ୍ୟରେ ବିନିଯୋଗ କରିବାକୁ ହେବ । ଯୋଜନା ପ୍ରସ୍ତୁତ ସମୟରେ ଏହାର ବାସ୍ତବ ଓ ଲୋକହିତକର ଦିଗ ପ୍ରତି ଧ୍ୟାନ ଦେବାକୁ ପଡ଼ିବ । ବଣ୍ଟନ ପ୍ରକ୍ରିୟାକୁ ମଧ୍ୟ ତୀକ୍ଷ୍ଣ ନଜର ଦେବାକୁ ପଡ଼ିବ । ଆତ୍ମନିଯୁକ୍ତି ପ୍ରକ୍ରିୟାକୁ ଉତ୍ସାହିତ କଲେ ବେକାରୀ ସଂଖ୍ୟା ହ୍ରାସ ହେବାର ବହୁ ସମ୍ଭାବନା ରହିଛି । ତେଣୁ ସେଥିପ୍ରତି ତୀକ୍ଷ୍ଣ ନଜର ଦେବାକୁ ପଡ଼ିବ । କୃଷି ଓ ଶିଳ୍ପର ଉନ୍ନତି ପାଇଁ ସରକାର କଞ୍ଚାମାଲ୍‌ର ଉପଯୁକ୍ତ ବିନିଯୋଗ କଲେ ଓ କୃଷକମାନଙ୍କୁ ସବ୍‌ସିଡ୍ ଆକାରରେ ସାର, ବିହନ, ଔଷଧ ଯୋଗାଇବା ସଙ୍ଗେ ସଙ୍ଗେ ସେମାନଙ୍କର ଉତ୍ପାଦିତ ଶସ୍ୟର ଯଥାର୍ଥ ମୂଲ୍ୟାଙ୍କନ କଲେ କୃଷି ଏବଂ ଶିଳ୍ପକ୍ଷେତ୍ରରେ ଭାରତ ନିଶ୍ଚୟ ସମୃଦ୍ଧ ହୋଇପାରିବ । ସ୍ୱାସ୍ଥ୍ୟ ଓ ପରିବାର ନିୟନ୍ତ୍ରଣ ଯୋଜନାକୁ ମଧ୍ୟ ସଙ୍ଗଠିତ ଉପାୟରେ ପରିଚାଳନା କରିବାକୁ ପଡ଼ିବ ।

ଭାରତବର୍ଷରେ ଶ୍ରମବଳ ଏବଂ କଞ୍ଚାମାଲ୍‌ର ଅଭାବ ନାହିଁ; ଅଭାବ ରହିଛି ଆମ ଦୃଷ୍ଟିଭଙ୍ଗୀ ଓ ତ୍ରୁଟିପୂର୍ଣ୍ଣ ଯୋଜନା ନୀତିରେ । ଏତଦ୍‌ବ୍ୟତୀତ ସାଧାରଣ ବ୍ୟକ୍ତିବିଶେଷଙ୍କର ଆର୍ଥିକ ଓ ସାମାଜିକ ଉନ୍ନତି ନ ହୋଇପାରିଲେ ଫିଲ୍ ଗୁଡ୍ ବା ଭାରତ ଉଦୟ ସ୍ଲୋଗାନ୍‌ର କୌଣସି ମୂଲ୍ୟ ନାହିଁ । ତେଣୁ ସରକାର, ବିଭିନ୍ନ ସଙ୍ଗଠନ ଓ ଭାରତୀୟ ସାଧାରଣ ଜନତା ଯଦି ଏକତ୍ର ହୋଇ ଦେଶର ଅଭିବୃଦ୍ଧି ତଥା ବିକାଶରେ କାର୍ଯ୍ୟ କରିପାରିବେ, ତେବେ 'ଭାରତ ଉଦୟ' ଏବଂ 'ଫିଲ୍ ଗୁଡ୍' ଧ୍ୱନି ନିଶ୍ଚିତ ଭାବରେ ସଫଳ ହୋଇପାରିବ, ଏଥିରେ ସନ୍ଦେହ ନାହିଁ ।



## ଏକବିଂଶ ଶତାବ୍ଦୀର ଗାନ୍ଧିଚିନ୍ତନର ପ୍ରାସଙ୍ଗିକତା

(ଉପକ୍ରମ-ନିଶାନିବାରଣ-ନାରୀଶିକ୍ଷା ଓ ନାରୀ ଜାଗରଣ-ସତ୍ୟ ଓ ଅହିଂସା-ପ୍ରକୃତି ଓ ପରିବେଶ ସୁରକ୍ଷା-ସ୍ୱରାଜ ଧାରଣା-ଅସ୍ପୃଶ୍ୟତା ନିବାରଣ-କ୍ଷୁଦ୍ରଶିଳ୍ପ/କୁଟୀରଶିଳ୍ପ-ଖଦି ଓ ସ୍ୱଦେଶୀଭାବନା-ମହତ୍ମାଙ୍କ ପ୍ରଭାବ-ଗାନ୍ଧି ସ୍ମାରକୀ-ଗାନ୍ଧି ମନ୍ଦିର-ଉପସଂହାର)

୨୦୧୯ ମସିହା ଅକ୍ଟୋବର ୨ ତାରିଖରେ ସମଗ୍ର ଭାରତରେ ମହାତ୍ମା ଗାନ୍ଧିଙ୍କ ୧୫୦ତମ ଜୟନ୍ତୀ ପାଳିତ ହୋଇଯାଇଛି । ଇତିମଧ୍ୟରେ ସ୍ୱାଧୀନତାର ବାସ୍ତରି ବର୍ଷ ଏବଂ ମହାତ୍ମାଙ୍କ ତିରୋଧାନର ଏକସ୍ତରିବର୍ଷ ଅତୀତ ହୋଇଯାଇଛି; କିନ୍ତୁ ସେ ଯେଉଁ ନୀତି, ଆଦର୍ଶ ଓ କାର୍ଯ୍ୟଧାରାକୁ ଶେଷ ପର୍ଯ୍ୟନ୍ତ ପାଳନ କରି ଆସିଥିଲେ, ତାହା କେବଳ ତାଙ୍କ ସମୟପାଇଁ ନ ଥିଲା, ଏକବିଂଶ ଶତାବ୍ଦୀରେ ମଧ୍ୟ ତା'ର ଯଥେଷ୍ଟ ପ୍ରାସଙ୍ଗିକତା ରହିଛି । ଆଜି ତାଙ୍କର ୧୫୦ତମ ଜୟନ୍ତୀ ପାଳନ ଅବକାଶରେ ମାନବବିଦ୍ୱେଷୀ ଯୁଦ୍ଧଖୋର ମଣିଷମାନଙ୍କ କ୍ଷେତ୍ରରେ ଗାନ୍ଧି ଚିନ୍ତନର କି ପ୍ରକାର ଉପାଦେୟତା ରହିଛି, ତାହା ଏଠାରେ ବିଚାର୍ଯ୍ୟ ।

ଗାନ୍ଧିଜୀ ନିଶାନିବାରଣ ବିରୋଧରେ ସ୍ୱରଉତ୍ତୋଳନ କରିଥିଲେ । ବର୍ତ୍ତମାନ ନିଶା କେବଳ ଆମର ପାରିବାରିକ ଜୀବନକୁ ନୁହେଁ, ସାମାଜିକ ଓ ରାଷ୍ଟ୍ରୀୟ ଜୀବନକୁ ମଧ୍ୟ କ୍ଷତିଗ୍ରସ୍ତ କରିଛି । ନିଶା କବଳିତ ମଣିଷ ଜ୍ଞାନଶୂନ୍ୟ ହୋଇ ନିଜର ପତ୍ନୀ, ସନ୍ତାନମାନଙ୍କୁ ନିର୍ଦ୍ଦୟ ଭାବରେ ହତ୍ୟା କରୁଥିବାର ବହୁ ଘଟଣା ଗଣମାଧ୍ୟମରେ ପ୍ରକାଶ ପାଉଛି । ନିଶାଡ଼ିମାନେ ବ୍ୟଭିଚାର, ଲୁଣ୍ଠନକାର୍ଯ୍ୟ ଅବାରିତ କରି ଚାଲିଛନ୍ତି, ଯାହା ଦେଶ ପ୍ରଗତିର ପରିପନ୍ଥୀ । ଏମାନଙ୍କ ଆଚରଣପାଇଁ ଝିଅ-ବୋହୂ ରାସ୍ତାରେ ନିରାପଦରେ ଚାଲବୁଲ କରିପାରୁ ନାହାନ୍ତି । ମହାତ୍ମାଗାନ୍ଧି ନିଶାର କୁପରିଣତି ସଂପର୍କରେ ପ୍ରଥମରୁ ସଚେତନ ଥିଲେ । ସେଥିପାଇଁ ନିଶାସେବନ ବିରୋଧରେ ଜନମାନସକୁ ସଚେତନ କରାଇବାକୁ ପ୍ରୟାସ ଜାରି ରଖିଥିଲେ । ତାଙ୍କଦ୍ୱାରା ସଂପାଦିତ 'ୟଙ୍ଗ୍ ଇଣ୍ଡିଆ'ର ୪.୨.୧୯୨୬ ସଂସ୍କରଣରେ ଲେଖିଥିଲେ, "ଜାତିର ନୈତିକ ଅଧଃପତନ ଆର୍ଥିକ କ୍ଷତିଠାରୁ ଅଧିକ ମାରାତ୍ମକ ।

ମଦ୍ୟ ଓ ଅନ୍ୟାନ୍ୟ ନିଶାସକ୍ତମାନେ କେବଳ ନୁହଁନ୍ତି, ଯେଉଁମାନେ ଏହାର ବ୍ୟବହାରରେ ସଂପୃକ୍ତ ସେମାନଙ୍କର ମଧ୍ୟ ଅଧଃପତନ ହୋଇଥାଏ ।" ଆମ ସମ୍ବିଧାନର ୪୭ ଧାରାରେ ସମ୍ପୂର୍ଣ୍ଣ ନିଶା ନିବାରଣ ସଂପର୍କରେ ଉଲ୍ଲେଖ ରହିଥିଲେ ହେଁ, ତାହା ଏଯାବତ୍ ସାକାର ହୋଇପାରି ନାହିଁ । ଜାତିକୁ ନୈତିକ ଅଧଃପତନରୁ ରକ୍ଷା କରିବାକୁ ହେଲେ ଗାନ୍ଧିଜୀଙ୍କ ନିଶାନିବାରଣ କାର୍ଯ୍ୟକ୍ରମର ପ୍ରାସଙ୍ଗିକତା ଏବେ ମଧ୍ୟ ରହିଛି, କହିବା ଅନାବଶ୍ୟକ ମାତ୍ର ।

ଗାନ୍ଧିଜୀ ନାରୀଜାଗରଣ ଓ ନାରୀଶିକ୍ଷା ଉପରେ ବିଶେଷ ଗୁରୁତ୍ୱ ଦେଉଥିଲେ । ତାଙ୍କର ବିଶ୍ୱାସ ଥିଲା, ନାରୀଶିକ୍ଷା ଓ ଜାଗରଣଦ୍ୱାରା କେବଳ ପାରିବାରିକ ଜୀବନ ନୁହେଁ; ସାମାଜିକ ଜୀବନ ସୁସ୍ଥ-ସୁନ୍ଦର ହୋଇପାରିବ । ଗୃହରେ ଶିଶୁର ପ୍ରାଥମିକ ଶିକ୍ଷା ଦାୟିତ୍ୱ ନ୍ୟସ୍ତଥାଏ ନାରୀ ଉପରେ । ନୈତିକ ଓ ସାମାଜିକ ଶିକ୍ଷା ମାଧ୍ୟମରେ ସେମାନେ ଶିଶୁ ମନରେ ଉତ୍ତମ ନାଗରିକ ଗଠନର ମୂଳଭିତ୍ତି ସ୍ଥାପନ କରିଥା'ନ୍ତି ଏବଂ ପରିବାରରେ ଶୃଙ୍ଖଳା ବଜାୟ ରଖି ଶାନ୍ତିର ବାତାବରଣ ସୃଷ୍ଟି କରିଥା'ନ୍ତି । ସେଥିପାଇଁ ଗାନ୍ଧିଜୀ କହିଥିଲେ, "ଭାରତବର୍ଷରେ ସେହିଦିନ ସ୍ୱରାଜ ଆସିବ, ଯେଉଁଦିନ ନାରୀଟିଏ ନିର୍ଭୟରେ ନିଶାର୍ଦ୍ଧରେ ଏକାକୀ ବିଚରଣ କରିପାରିବ ।" ବର୍ତ୍ତମାନ ସମାଜରେ ସମ୍ପୂର୍ଣ୍ଣ ଦିବାଲୋକରେ ମଧ୍ୟ ନାରୀ ନିଜକୁ ଅସୁରକ୍ଷିତ ମନେ କରୁଛନ୍ତି । ତେଣୁ ନାରୀମାନଙ୍କୁ ଶିକ୍ଷିତ କରିବା ସହିତ ସେମାନଙ୍କ ମନରେ ଜାଗରଣ ସୃଷ୍ଟି କରିପାରିଲେ ଆମ ସାମାଜିକ ଓ ରାଷ୍ଟ୍ରୀୟ ବିକାଶ ତ୍ୱରାନ୍ୱିତ ହୋଇପାରିବ ।" ତେଣୁ ଗାନ୍ଧିଜୀ ଅତୀତରେ ନାରୀ ଶିକ୍ଷା ଓ ନାରୀ ଜାଗରଣ ଉପରେ ଯେଉଁ ଗୁରୁତ୍ୱ ପ୍ରଦାନ କରିଥିଲେ, ବର୍ତ୍ତମାନ ମଧ୍ୟ ତା'ର ଯଥେଷ୍ଟ ପ୍ରାସଙ୍ଗିକତା ରହିଛି ।

ଗାନ୍ଧିଜୀ ଥିଲେ ସତ୍ୟ ଓ ଅହିଂସାର ପୂଜାରୀ । ତାଙ୍କ ମତରେ ଜୀବନରେ ପରିପୂର୍ଣ୍ଣତା ଲାଭ ପାଇ ସତ୍ୟାଗ୍ରହ ହେଉଛି ଏକ ନିରନ୍ତର ଯାତ୍ରା । ଯେଉଁଠି ସତ୍ୟାଗ୍ରହ ଅସ୍ତ୍ରରେ ଯୁଦ୍ଧ ହୋଇଥାଏ, ସେଠାରେ କାହାର ବିଜୟ ବା ପରାଜୟ ହୋଇ ନ ଥାଏ । ଏହି ଅସ୍ତ୍ରର ପ୍ରୟୋଗକର୍ତ୍ତା ଓ ଯାହା ଉପରେ ଏହାର ପ୍ରୟୋଗ ହୋଇଥାଏ, ଉଭୟର ମଙ୍ଗଳ ସାଧନ ହୁଏ । ନୂଆଖାଲି, ଚମ୍ପାବରଣ, ଦାଣ୍ଡି ଅଭିଯାନ, ଅସହଯୋଗ ଆନ୍ଦୋଳନ, ଭାରତଛାଡ଼ ଆନ୍ଦୋଳନ ଆଦି କ୍ଷେତ୍ରରେ

ଗାନ୍ଧିଜୀ ଏହି ଅସ୍ତ୍ରର ପ୍ରୟୋଗ କରି ସଫଳ ହୋଇଥିଲେ । ହିଂସା, ଅତ୍ୟାଚାର ଓ ରକ୍ତପାତ ଦ୍ୱାରା ମାନବ ସମାଜର ମଙ୍ଗଳ ହୋଇ ନ ଥାଏ । ସେଥିପାଇଁ ସେ କହୁଥିଲେ ଅହିଂସାର ଜୟ ହିଁ ପ୍ରକୃତ ଜୟ । ଗୋଲଟେବୁଲ ବୈଠକକୁ ଯାଇଥିବା ସମୟରେ ମୁସୋଲିନ୍‌ଙ୍କ ଆମନ୍ତ୍ରଣ କ୍ରମେ ଇଟାଲିକୁ ଯାଇଥିବା ସମୟରେ ମୁସୋଲିନ୍ ତାଙ୍କୁ ତାଙ୍କ ଶାସନ ବ୍ୟବସ୍ଥା କିପରି ଦେଖୁଛନ୍ତି ବୋଲି ପ୍ରଶ୍ନ କରିପାରୁ ଗାନ୍ଧିଜୀ ନମ୍ର ଭାବରେ ଉତ୍ତର ଦେଇ କହିଥିଲେ- "ଯେଉଁ ବ୍ୟବସ୍ଥାର ଜନ୍ମ ହିଂସାରୁ, ତା'ର ପରିସମାପ୍ତି ବା ମୃତ୍ୟୁ ମଧ୍ୟ ସେହି ହିଂସାରେ ହୋଇଥାଏ ।" ତାଙ୍କର ବିଶ୍ୱାସ ଥିଲା ସତ୍ୟ ନିକଟରେ ପହଞ୍ଚିବାର ଏକମାତ୍ର ଉପାୟ ହେଉଛି ଅହିଂସା । ଆଜିର ଏକବିଂଶ ଶତକରେ ବିଶ୍ୱ ଯେତେବେଳେ ହିଂସା, ଯୁଦ୍ଧ ଏବଂ ମୃତ୍ୟୁ ଆଶଙ୍କାରେ ଜଡ଼ସଡ଼, ସେତେବେଳେ ବାପୁଙ୍କର ସତ୍ୟ ଓ ଅହିଂସାମାର୍ଗ ଯେ ଏହି ଭୟକୁ ଦୂରୀଭୂତ କରିପାରିବ, ଏଥିରେ ସନ୍ଦେହ ନାହିଁ ।

ଗାନ୍ଧିଜୀଙ୍କର ସ୍ୱରାଜ ଧାରଣାର ମୂଳଭିତ୍ତି ଥିଲା ଅତ୍ୟନ୍ତ ଦୃଢ଼ । ଏ କ୍ଷେତ୍ରରେ ତାଙ୍କର ପ୍ରସାରିତ ଦୃଷ୍ଟିଭଙ୍ଗୀ ନିଶ୍ଚିତ ଭାବରେ ପ୍ରଶଂସନୀୟ । ସେ ଗୋଟିଏ ମୂଲ୍ୟବୋଧ ଭିତ୍ତିକ ରାଜନୀତି ଉପରେ ଗୁରୁତ୍ୱ ଦେଉଥିଲେ । ତାଙ୍କ ସ୍ୱରାଜ ଭାବନାର ଚାରୋଟି ଦିଗଥିଲା ଯଥାକ୍ରମେ, ରାଜନୀତିକ ସ୍ୱାଧୀନତା, ଆର୍ଥନୀତିକ ସ୍ୱାଧୀନତା, ନୈତିକତା ଓ ସାମାଜିକତା । ସେ ଗ୍ରାମ୍ୟ ସ୍ୱଭାବ ଉପରେ ଗୁରୁତ୍ୱ ଦେବା ସହିତ ଗଣତାନ୍ତ୍ରିକ ରାଷ୍ଟ୍ରର ଆଭିମୁଖ୍ୟ ତାଙ୍କ ଦୃଷ୍ଟିରେ ଥିଲା, ଦେଶର ସବୁଠାରୁ ଦରିଦ୍ର ଲୋକଟିଏ ବିନା କୌଣସି କଷ୍ଟ ଓ ମୂଲ୍ୟରେ ସେ ତା'ର ଉଚିତ ନ୍ୟାୟ ପାଇପାରୁଥିବ । ସେଥିପାଇଁ ତାଙ୍କ ରାମରାଜ୍ୟ ପରିକଳ୍ପନା ପଶ୍ଚାତ୍‌ରେ ରହିଥିଲା ଗ୍ରାମ ସ୍ୱରାଜ ଭାବନା । ଏକବିଂଶ ଶତକରେ ବର୍ତ୍ତମାନ ଯେତେବେଳେ ଗ୍ରାମର ବିକାଶ ଉପରେ ଗୁରୁତ୍ୱ ଦିଆଯାଉଛି, ସେତେବେଳେ ଗାନ୍ଧିଜୀଙ୍କ ଚିନ୍ତାଧାରାର ପ୍ରାସଙ୍ଗିକତାକୁ ବେଶ୍ ଉପଲବ୍ଧି କରିହେଉଛି ।

ଅସ୍ପୃଶ୍ୟତାକୁ ଗାନ୍ଧିଜୀ ସାମାଜିକ ବ୍ୟାଧିବୋଲି କହୁଥିଲେ । ଏହି ବ୍ୟାଧିକି ସାମାଜିକ ଜୀବନର ସମସ୍ତ ଅଙ୍ଗକୁ କବଳିତ କରି ତାକୁ ସ୍ଥାଣୁ କରି ଦେଉଥିଲା । ତା' ତାଙ୍କର ହରିଜନ ପତ୍ରିକାରେ ସେ ସମ୍ବନ୍ଧରେ ଅନେକ ଥର ଆଲୋଚନା କରିଛନ୍ତି । ତାଙ୍କର ଯୁକ୍ତି ଥିଲା ପ୍ରତ୍ୟେକ ମଣିଷ ପରଂବ୍ରହ୍ମଙ୍କର ଅଂଶବିଶେଷ । ତେଣୁ କେହି

ଉଚ୍ଚ ବା ନୀଚ ନୁହନ୍ତି । ସେଥିପାଇଁ ସେ ଅସ୍ପୃଶ୍ୟତାରୂପକ ମାନସିକତାକୁ ଘୋର ପାପ ବୋଲି ବିଚାର କରୁଥିଲେ । ଶାରୀରିକ ସ୍ୱଚ୍ଛତା ସହିତ ମାନସିକ ସ୍ୱଷ୍ଟତାକୁ ସେ ଗୁରୁତ୍ୱ ଦେଉଥିଲେ । ଅସ୍ପୃଶ୍ୟତା ନିରାକରଣ ଥିଲା ସେହି ଚିନ୍ତାଧାରାର ଏକ ସାକାର ରୂପ । ଏବେ ମଧ୍ୟ ଗାନ୍ଧିଜୀଙ୍କ ଚିନ୍ତାଧାରାର ସେହି ଉଦାରପଣିଆର ମହତ୍ୱକୁ ଉପଲବ୍ଧି କରି ହୋଇଥାଏ ।

ଗ୍ରାମୀଣ ଭାରତବର୍ଷର ଉନ୍ନତି ବୃହତ୍‌ଶିଳ୍ପ ନୁହେଁ, କ୍ଷୁଦ୍ରଶିଳ୍ପର ବିକାଶଦ୍ୱାରା ତ୍ୱରାନ୍ୱିତ ହୋଇପାରିବ ବୋଲି ସେ ନିଜ ଅନୁଭବରୁ ବୁଝିଥିଲେ । ସେଥିପାଇଁ ସେ କୁଟୀର ଶିଳ୍ପକୁ ସର୍ବଦା ପ୍ରମୁଖତା ଦେଉଥିଲେ । ଗାଁ' ଗହଳିରେ ବାସ କରୁଥିବା ନିର୍ଦ୍ଧନ ବ୍ୟକ୍ତିମାନଙ୍କର ବିକାଶ ଏବଂ ଗ୍ରାମ୍ୟ ଅର୍ଥନୀତିକୁ ସୁଦୃଢ଼ କରିବାପାଇଁ କ୍ଷୁଦ୍ରଶିଳ୍ପ ଓ କୁଟୀରଶିଳ୍ପ ମହନୀୟତା ସଂପର୍କରେ ଜନସାଧାରଣଙ୍କୁ ଅବଗତ କରାଉଥିଲେ । ସ୍ୱଳ୍ପ ବ୍ୟୟରେ ଆର୍ଥିକ ଅନଗ୍ରସର ବ୍ୟକ୍ତିମାନେ ଏହାଦ୍ୱାରା ନିଜର ଦୈନନ୍ଦିନ ଅଭାବକୁ ମେଣ୍ଟାଇ ପାରିବେ ବୋଲି ତାଙ୍କର ଧାରଣା ରହିଥିଲା । ବୃହତ୍‌ଶିଳ୍ପଦ୍ୱାରା ଧନୀକ ବ୍ୟକ୍ତି ଫାଇଦା ଉଠାଇବା ସଙ୍ଗେ ସଙ୍ଗେ ଧନୀ ଅଧିକ ଧନୀ ଓ ଗରିବ ଅଧିକ ଗରିବ ହୋଇଥିଲେ । ପୁଣି କଳକାରଖାନାର ବର୍ଜ୍ୟବସ୍ତୁ ଜଳ, ବାୟୁ, ପବନକୁ ବିଷାକ୍ତ କରିଥାଏ । ପ୍ରାକୃତିକ ସନ୍ତୁଳନ ବିନଷ୍ଟ ହୋଇଥାଏ; ମାତ୍ର କ୍ଷୁଦ୍ରଶିଳ୍ପରେ ପ୍ରଦୂଷଣ ହେବାର ସମ୍ଭାବନା ନ ଥାଏ । ବର୍ତ୍ତମାନ ପ୍ରେକ୍ଷାପଟ୍ଟରେ ଗାନ୍ଧିଜୀଙ୍କର ସେହି କୁଟୀର ଶିଳ୍ପର ମହତ୍ତ୍ୱକୁ ବିଶେଷ ଭାବେ ଉପଲବ୍ଧି କରି ହୋଇଥାଏ ।

ଗାନ୍ଧିଜୀଙ୍କ ଜାତୀୟଭାବନାର ଦୁଇଟି ଦିଗ ଥିଲା ଖଦି ଓ ସ୍ୱଦେଶୀ ଚିନ୍ତାଧାରା । ଗାନ୍ଧିଜୀଙ୍କ ଦ୍ୱାରା ଖଦି ଏକ ଆନ୍ଦୋଳନରେ ପରିଣତ ହୋଇଥିଲା ଏବଂ ଭାରତରେ ଅରଟ ଥିଲା ଏହି ଆନ୍ଦୋଳନର ସୂତ୍ରଧାର । ଗାନ୍ଧିଦର୍ଶନର ଏକ ପ୍ରମୁଖ ଦିଗ ହେଉଛି ହାତକଟା ସୂତା ଓ ହାତବୁଣା ଖଦି । ୧୯୨୧ ମସିହା ମାର୍ଚ୍ଚ ୩୧ ତାରିଖରେ ବିଶାଖାପାଟଣାରେ ଅନୁଷ୍ଠିତ ନିଖିଳ ଭାରତ କଂଗ୍ରେସ କମିଟି ଅଧିବେଶନରେ ଘରେ ଘରେ ଚରଖା ବସିବାପାଇଁ ସ୍ଥିର ହୋଇଥିଲା । ୧୯୨୩ ମସିହାରେ 'ଗାନ୍ଧୀ ସେବା ସଂଘ' ସଂଗଠନ ମାଧ୍ୟମରେ ଗାନ୍ଧୀଙ୍କ ଆଦର୍ଶ ଓ ନୀତିକୁ ପ୍ରସାର କରିବା ନିମିତ୍ତ ନିଷ୍ପତ୍ତି ଗ୍ରହଣ କରାଯାଇଥିଲା । ଗାନ୍ଧୀଙ୍କ ଦୃଷ୍ଟିରେ 'ଖଦି' ହେଉଛି ସ୍ୱାବଲମ୍ବନଶୀଳ

ତା'ର ପ୍ରତୀକ । ୧୯୨୪ ମସିହା ବେଳକୁ ଏହା ଏକ ଆନ୍ଦୋଳନରେ ପରିଣତ ହୋଇଯାଇଥିଲା । ଗ୍ରାମସେବା ତାଲିମ କେନ୍ଦ୍ର ମାଧ୍ୟମରେ ଏହାକୁ ତ୍ୱରାନ୍ୱିତ କରାଯାଇଥିଲା । ଗାନ୍ଧିଜୀଙ୍କ 'ପୂର୍ଣ୍ଣ ସ୍ୱରାଜ'ର ସଂଜ୍ଞା ଥିଲା ରଚନାତ୍ମକ କାର୍ଯ୍ୟ । ଏହା ଆର୍ଥନୀତିକ ସ୍ୱାଧୀନତା ଆନୟନରେ ସହାୟକ ହେବ ବୋଲି ତାଙ୍କର ଦୃଢ଼ ଧାରଣା ଥିଲା । ସେଥିପାଇଁ ସ୍ୱଦେଶୀ କାର୍ଯ୍ୟକ୍ରମର ଏକ ଅଂଶରୂପେ ଚରଖାକୁ ଗ୍ରହଣ କରାଯିବା ସହିତ ଏହାକୁ ସେ ଏକ ଜୀବନଧାରା ବୋଲି ଅଭିହିତ କରିଥିଲେ । ସ୍ୱଦେଶୀ ଭାବନାକୁ ଗୋଟିଏ ସାମାଜିକ ମୂଲ୍ୟବୋଧରେ ପରିଣତ କରିବାପାଇଁ ଖଦି ଓ କୁଟୀର ଶିଳ୍ପକୁ ସେ ଯେପରି ରକ୍ଷାକବଚ ରୂପେ ଗ୍ରହଣ କରିଥିଲେ, ତା'ର ଗୁରୁତ୍ୱ ଏବେ ମଧ୍ୟ ଉପଲବ୍ଧି କରି ହୋଇଥାଏ ।

ଗାନ୍ଧିଜୀ ଏପରି ଏକ ବ୍ୟକ୍ତି ଥିଲେ, ଯାହାଦ୍ୱାରା ବିଶ୍ୱର ବହୁ ବିଶିଷ୍ଟ ବ୍ୟକ୍ତି ତାଙ୍କ ବ୍ୟକ୍ତିତ୍ୱ ଓ କାର୍ଯ୍ୟଧାରା ଦ୍ୱାରା ପ୍ରଭାବିତ ହୋଇଥିଲେ । ତେଣୁ ଗାନ୍ଧିଜୀ କେବଳ ଭାରତର ନୁହନ୍ତି, ସମଗ୍ର ବିଶ୍ୱପାଇଁ ସେ ଆଜି ମଧ୍ୟ ଜଣେ ଅପ୍ରତିଦ୍ୱନ୍ଦ୍ୱୀ ଗ୍ରହଣୀୟ ନେତା ହୋଇ ରହିଛନ୍ତି । ଏକଦା ବିଂଶଶତକର ମହାନ୍ ବୈଜ୍ଞାନିକ ଆଲବର୍ଟ ଆଇନ୍ ଷ୍ଟାଇନ୍ କହିଥିଲେ– "ହୁଏତ ଆମର ଆଗାମୀ ପିଢ଼ି କେବେ ଦିନେ ବିଶ୍ୱାସ କରିପାରିବ ନାହିଁ ଯେ, ହାଡ଼ମାଂସଧାରୀ ଗାନ୍ଧିଜୀଙ୍କ ପରି ଜଣେ ବ୍ୟକ୍ତି ଏହି ପୃଥିବୀର ଜନ୍ମ ନେଇଥିଲେ ।" ଗାନ୍ଧିଜୀଙ୍କ ମହାନ୍ତା ପ୍ରମାଣପାଇଁ ଏହା ବୋଧହୁଏ ସର୍ବଶ୍ରେଷ୍ଠ ଉଦ୍ଧାରଣ । ଦକ୍ଷିଣ ଆଫ୍ରିକାର ଆଧୁନିକ ରୂପକାର ନେଲ୍‌ସନ ମାଣ୍ଡେଲା ଗାନ୍ଧିଜୀଙ୍କ ଆଦର୍ଶକୁ ନିଜର ନୀତି ଭାବରେ ଗ୍ରହଣ କରିନେଇଥିଲେ । ସେଇଥିପାଇଁ ଆଫ୍ରିକାର ରାଜଦୂତ କହିଥିଲେ, ଯଦି ନେଲସନ୍ ମଣ୍ଡେଲା ଆମର ପିତା ହୁଅନ୍ତି, ତେବେ ମହାତ୍ମାଗାନ୍ଧୀ ହେଉଛନ୍ତି ଆମର ଜେଜେବାପା । ଆମେରିକାର ପୂର୍ବତନ ପ୍ରଭାବଶାଳୀ ରାଷ୍ଟ୍ରପତି ବାରାକ୍ ଓବାମାଙ୍କୁ ଥରେ ଜଣେ ଛାତ୍ର ପଚାରିଥିଲେ, ମୃତ ବା ଜୀବିତ କେଉଁ ପ୍ରଭାବଶାଳୀ ବ୍ୟକ୍ତିଙ୍କ ସହିତ ରାତ୍ରି ଭୋଜନ କରିବାକୁ ଇଚ୍ଛା କରିବେ ? ଉତ୍ତରରେ ସେ କହିଥିଲେ– ମହାତ୍ମାଗାନ୍ଧୀ । ଓବାମା ଗାନ୍ଧୀଙ୍କ ଫଟୋ ସଂସଦର ନିଜ କୋଠରିରେ ରଖିଥିଲେ । ମାର୍ଟିନ୍ ଲୁଥର କିଙ୍ଗ୍, ଆପଲ କମ୍ପାନୀର ପ୍ରତିଷ୍ଠାତା ଷ୍ଟିଭ୍ ଜବ୍‌ସ, ବ୍ରିଟିଶ୍ ସଂଗୀତଜ୍ଞ ଜନ୍ ଲେନନ୍, ଧର୍ମଗୁରୁ ଦଲାଇଲାମା, ମିଆଁମାରର ନେତ୍ରୀ ନୋବେଲ ଶାନ୍ତି ପୁରସ୍କାର ବିଜୟିନୀ ଆଙ୍ଗ୍ ସାଙ୍ଗ୍ ସୁ.ଚୀ ଆଦି ବିଶ୍ୱର ବହୁ

ବିଶିଷ୍ଟ ବ୍ୟକ୍ତି ଗାନ୍ଧୀଙ୍କ ନୀତି, ଆଦର୍ଶ ଓ କାର୍ଯ୍ୟଧାରା ଦ୍ୱାରା ଗଭୀର ଭାବରେ ପ୍ରଭାବିତ ହୋଇଥିଲେ ।

ଗାନ୍ଧିଜୀଙ୍କୁ ବିଶ୍ୱଜନତା କିପରି ସମ୍ମାନ ଓ ଶ୍ରଦ୍ଧା କରୁଥିଲେ, ତା'ର ପ୍ରମାଣ ବିଶ୍ୱର ରାଷ୍ଟ୍ରରେ ଗାନ୍ଧିଜୀଙ୍କ ପ୍ରତିମୂର୍ତ୍ତି ଓ ସ୍ମାରକୀରୁ ଜଣାଯାଇଥାଏ । ବିଶ୍ୱର ସବୁଠାରୁ ଶକ୍ତିଶାଳୀ ଦେଶ ଆମେରିକାରେ ଭାରତ ପରେ ସବୁଠୁ ଅଧିକ ପ୍ରତିମୂର୍ତ୍ତି ଓ ସ୍ମାରକୀ ରହିଛି । ଗାନ୍ଧିଜୀ ତାଙ୍କ ଜୀବନକାଳ ମଧ୍ୟରେ କେବେ ଆମେରିକା ଯାଇ ନ ଥିଲେ ମଧ୍ୟ ତାଙ୍କର ବ୍ୟକ୍ତିତ୍ୱ ଓ ଆଦର୍ଶ ଆମେରିକାର ରାଜନେତା ଏବଂ ଲୋକମାନଙ୍କୁ ଗଭୀର ଭାବରେ ପ୍ରଭାବିତ କରିଛି । ସେଠାରେ ତାଙ୍କର ପ୍ରାୟ ୩୦ଟି ପ୍ରତିମୂର୍ତ୍ତି ଓ ୧୫ଟି ସ୍ମାରକୀ, ସାମାଜିକ ସଂଗଠନ ରହିଛି । ୱାଶିଂଟନ୍ ଡିସି, ନ୍ୟୁୟର୍କ ସ୍କୋୟାର, ଆଟଲାଣ୍ଟା, କଲରାଡୋ, ଫ୍ଲୋରିଡା, କାଲିଫର୍ଣ୍ଣିଆ ଆଦି ସ୍ଥାନରେ ଗାନ୍ଧିଜୀଙ୍କର ମୂର୍ତ୍ତି ଓ ସ୍ମାରକୀମାନ ରହିଛି । ଆମେରିକା ବ୍ୟତୀତ ଲଣ୍ଡନର ଟାଭିଷ୍ଟିକ୍ ସ୍କୋୟାର, ଡେନମାର୍କର କୋପେନ୍ ହେଗ୍‌ଡ଼େ, ଆର୍ଜେଣ୍ଟିନା ପ୍ଲାଜା ସିସିଲିଆ, ଉଗାଣ୍ଡାର ମେମୋରିଆଲ ଗାର୍ଡେନ୍, ଅଷ୍ଟ୍ରେଲିଆର ଗେଲେବେ ପାର୍କ, ଦକ୍ଷିଣ ଆଫ୍ରିକାର ଚର୍ଚ୍ଚ ଷ୍ଟ୍ରିଟ୍, ଅଷ୍ଟ୍ରିଆର ଗାର୍ଡେନ୍ ଅଫ୍ ପିସ୍, ସ୍ୱିଜରଲ୍ୟାଣ୍ଡ ଆରିଆନା ଆଦି ସ୍ଥାନରେ ଗାନ୍ଧିଜୀଙ୍କର ସୁଦୃଶ୍ୟ ପ୍ରତିମୂର୍ତ୍ତିମାନ ଦେଖିବାକୁ ମିଳେ । ଅପରପକ୍ଷରେ ପଡୋଶୀ ଦେଶ ପାକିସ୍ଥାନର ବିଭିନ୍ନ ସ୍ଥାନରେ ଗାନ୍ଧିଜୀଙ୍କ ଅନେକ ମୂର୍ତ୍ତି ପୂର୍ବରୁ ରହିଥିଲେ ହେଁ ସଂକୀର୍ଣ୍ଣ ଚିନ୍ତାଧାରାର ବଶବର୍ତ୍ତୀ ଏହି ଦେଶ ବହୁ ପ୍ରତିମୂର୍ତ୍ତି ଭାଙ୍ଗି ଦେଇଛି ଓ ବର୍ତ୍ତମାନ ଅବଶିଷ୍ଟ ଥିବା କେତେକ ପ୍ରତିମୂର୍ତ୍ତିର ରକ୍ଷଣାବେକ୍ଷଣ ପ୍ରତି ଆଦୌ ଦୃଷ୍ଟି ଦେଉନାହିଁ । ତେବେ ବିଶ୍ୱରେ ଗାନ୍ଧିଜୀଙ୍କର ଏହି ପ୍ରତିମୂର୍ତ୍ତି ଓ ସ୍ମାରକୀ ଦେଖିଲେ ଏବେ ବି ବିଶ୍ୱପାଇଁ ମହାତ୍ମା ଗାନ୍ଧି କେତେ ପ୍ରାସଙ୍ଗିକ, ତାହା ବୁଝି ହୋଇଥାଏ ।

ଭାରତବାସୀଙ୍କ ପାଇଁ ଗାନ୍ଧିଜୀ କେବଳ ସାଧାରଣ ମଣିଷଟିଏ ମାତ୍ର ନୁହଁନ୍ତି, ଜଣେ ଅସାଧାରଣ ଦେବତା । ୧୯୪୮ ମସିହାରେ ଗାନ୍ଧିଜୀଙ୍କର ନିଧନ ପରେ ୧୯୪୯ ମସିହାରୁ ଭାରତରେ ତାଙ୍କ ମନ୍ଦିର ନିର୍ମାଣ ନିମିତ୍ତ ପ୍ରବଣତା ସୃଷ୍ଟି ହୋଇଥିଲା । ସମଗ୍ର ଦେଶରେ ୭୭ରୁ ଅଧିକ ଗାନ୍ଧି ମନ୍ଦିର ନିର୍ମାଣ ହୋଇଛି । ଓଡ଼ିଶାର ସମ୍ବଲପୁରର ଗୁଲୁଣ୍ଡା ଓ ଉତରା; କାମାକ୍ଷାନଗରରେ ଗାନ୍ଧି ମନ୍ଦିର ଥିବା ବେଳେ, ହିମାଚଳ ପ୍ରଦେଶର ସିରମୌର ଜିଲ୍ଲାର ଅମ୍ଭୋୟା; କର୍ଣ୍ଣାଟକର ମାଙ୍ଗାଲୁର;

ତେଲେଙ୍ଗାନାର ନାଲଗୋଣ୍ଡା; ନୈନିତାଲାର ତାକୁଲା ଆଦି ବହୁ ସ୍ଥାନରେ ଗାନ୍ଧି ମନ୍ଦିରରେ ଗାନ୍ଧିଜୀଙ୍କୁ ଦେବତା ରୂପେ ପୂଜାର୍ଚ୍ଚନା କରାଯାଇଥାଏ । କେବଳ ଭାରତ କାହିଁକି ସମଗ୍ର ବିଶ୍ୱରେ ଯଦି କେହି ସର୍ବମାନ୍ୟ ନେତାର ଗୌରବ ଦାବି କରନ୍ତି, ସେ ହେଲେ ଆମର ପୂଜ୍ୟ ମହାତ୍ମାଗାନ୍ଧି ।

ମହାତ୍ମାଗାନ୍ଧି ବାକ୍ୟର ମଣିଷ ନ ଥିଲେ, ଥିଲେ କର୍ମର ମଣିଷ । ତାଙ୍କର ଆଚରଣ ଓ ଉଚ୍ଚାରଣ ମଧ୍ୟରେ କୌଣସି ପାର୍ଥକ୍ୟ ନ ଥିଲା । ତେଣୁ ସେ କହୁଥିଲେ, "ତୁମେ ଯେଉଁ ପ୍ରକାର ପରିବର୍ତ୍ତନ ଚାହୁଁଛ ପ୍ରଥମେ ନିଜେ ନିଜେ ଭିତରେ ସେହି ପରିବର୍ତ୍ତନ ଆଣ । ମଣିଷ ଏକମାତ୍ର ପ୍ରାଣୀ ଯିଏ ନିଜ ବିଚାର ଅନୁସାରେ ନିଜକୁ ଗଢ଼ିପାରେ । ସେଥିପାଇଁ ସେ କୁହନ୍ତି 'ମଣିଷ ହେଉଛି ବିଚାର ନିର୍ମିତ ପ୍ରାଣୀ ।' ନିଜକୁ ସେ ଯେମିତି ଦେଖେ ବା ଯେମିତି ହେବାକୁ ଚାହେଁ; ସେମିତି ହୋଇଯାଇଥାଏ । ହୁଏତ ସେ ଆଜି ଆମ ନିକଟରେ ସ୍ୱଶରୀରରେ ଉପସ୍ଥିତ ନାହାନ୍ତି; କିନ୍ତୁ ତାଙ୍କର ବିଚାରଧାରା, କାର୍ଯ୍ୟାବଳୀ, ସାମାଜିକ ଦର୍ଶନ, ସୂକ୍ଷ୍ମ ବୋଧଜ୍ଞାନର ପ୍ରାସଙ୍ଗିକତା ଏବେ ମଧ୍ୟ ରହିଛି । ସେଇଥିପାଇଁ ଗାନ୍ଧିଜୀ ଏବେ ମଧ୍ୟ ଜଣେ ସାର୍ବଜନିକ ଓ ସାର୍ବଜନୀନ ମହାମାନବ ରୂପେ ବିଶ୍ୱବାସୀଙ୍କ ନିକଟରେ ସମ୍ମାନିତ ଏବଂ ଗ୍ରହଣୀୟ ହୋଇ ରହିପାରିଛନ୍ତି ।



## ଭିନ୍ନ ଏକ ଜାମ୍ମୁ-କାଶ୍ମୀର ଅନ୍ୟ ଏକ ଲଦାଖ

**(ଉପକ୍ରମ-ଜାମ୍ମୁ ଓ କାଶ୍ମୀରର ଅତୀତ ଇତିହାସ-୩୭୦ ଓ ୩୫(କ) ଧାରା କ'ଣ ?- ସାଂପ୍ରତିକ ସ୍ଥିତି-ଜାମ୍ମୁ କାଶ୍ମୀର ପାଇଁ ସରକାରୀ ଯୋଜନା-ଉପସଂହାର)**

ଅଗଷ୍ଟ ୬ ତାରିଖ ମଙ୍ଗଳବାର ୨୦୧୯ ଭାରତୀୟ ରାଜନୀତିକ ଇତିହାସରେ ସବୁଦିନପାଇଁ ଏକ ସ୍ମରଣୀୟ ଦିନ ହୋଇ ରହିଯିବ । ଏହି ଦିନ ଲୋକସଭାରେ ଜାମ୍ମୁ-କାଶ୍ମୀରରୁ ଭାରତୀୟ ସମ୍ବିଧାନରେ ଅସ୍ଥାୟୀ ରୂପେ ଯୋଡ଼ା ଯାଇଥିବା

ସମ୍ବିଧାନର ଅନୁଚ୍ଛେଦ ୩୭୦ (ଖଣ୍ଡ ୧ ବ୍ୟତୀତ) ଧାରା ଉଚ୍ଛେଦ ସଂକଳ୍ପ ପତ୍ର ଓ ଜାମ୍ମୁ-କାଶ୍ମୀର ପୁନର୍ଗଠନ ବିଲ୍ ଗୃହୀତ ହେଲା । ୩୭୦ ଧାରା ଉଚ୍ଛେଦ ନେଇ ସଂକଳ୍ପ ପ୍ରସ୍ତାବ ଏବଂ ଜାମ୍ମୁ-କାଶ୍ମୀର ପୁନର୍ଗଠନ ବିଧେୟକ ରାଜ୍ୟସଭାରେ ପାରିତ ହେବାର ୨୪ ଘଣ୍ଟା ମଧ୍ୟରେ ଲୋକସଭାରେ ବହୁମତରେ ଗୃହୀତ ହୋଇଛି । ଏହି ପ୍ରସ୍ତାବ ସପକ୍ଷରେ ୩୭୦ ଏବଂ ବିରୋଧରେ ମାତ୍ର ୭୦ଟି ମତ ପଡ଼ିଥିଲା । ଭାରତର ଅନ୍ୟାନ୍ୟ ରାଜ୍ୟ ଭଳି ବର୍ତ୍ତମାନ ଜାମ୍ମୁ-କାଶ୍ମୀରରେ ଭାରତର ସମସ୍ତ ଆଇନକାନୁନ୍, ବିଧିବ୍ୟବସ୍ଥା, ଯୋଜନା ଓ ନୀତି କାର୍ଯ୍ୟକାରୀ ହେବ । ଉପରୋକ୍ତ ଧାରା ଉଚ୍ଛେଦ ପରେ ଜାମ୍ମୁ-କାଶ୍ମୀର ଏବଂ ଲଦାଖ ଦୁଇଟି କେନ୍ଦ୍ରଶାସିତ ଅଞ୍ଚଳରେ ପରିଣତ ହେବାରୁ ବର୍ତ୍ତମାନ ଭାରତର ରାଜ୍ୟ ସଂଖ୍ୟା ୨୮ ଓ କେନ୍ଦ୍ରଶାସିତ ଅଞ୍ଚଳ ସଂଖ୍ୟା ୯ରେ ପହଞ୍ଚିଛି । ୩୭୦ ଧାରା ଓ ୩୫(କ)ର ଉଚ୍ଛେଦ ଭାରତର ସାର୍ବଭୌମତ୍ୱକୁ ଗୌରବାନ୍ୱିତ କରିଛି । ତେବେ ଏହି ଧାରା ପଛରେ ରହିଥିବା କେତେକ କାରଣକୁ ଏଠାରେ ସୂଚାଇ ଦିଆଯାଇପାରେ ।

ଭାରତ ସ୍ୱାଧୀନତା ଲାଭ ସମୟରେ ଏକାଧିକ ଦେଶୀୟ ରାଜ୍ୟ ସ୍ୱତନ୍ତ୍ର ରହିଥିଲେ ଏବଂ ପରବର୍ତ୍ତୀ ସମୟରେ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ମାଧ୍ୟମରେ ଅଧିମିଳନ ଅଭିଲେଖରେ ସ୍ୱାକ୍ଷର କରି ଭାରତ ସହିତ ମିଶିଥିଲେ । ସେତେବେଳେ କାଶ୍ମୀର ମହାରାଜା ହରିସିଂହ କାଶ୍ମୀରକୁ ଭାରତ ଓ ପାକିସ୍ତାନଠାରୁ ସ୍ୱତନ୍ତ୍ର ରଖିବାକୁ ଚାହିଁଥିଲେ । ୧୯୪୭ ଅକ୍ଟୋବର ୨୨ ତାରିଖରେ କାଶ୍ମୀର ଦଖଲପାଇଁ ପାକିସ୍ତାନ ବହୁ ସୈନ୍ୟ ସହିତ ଉତ୍ତର ଦିଗରୁ ଆକ୍ରମଣ କରି ମୁଜାଫରବାଦ ଓ ମୀରପୁର କବ୍ଜା କରିନେଲା । କାଶ୍ମୀରର ଲୁଟ୍‌ପାଟ୍ ଓ ହତ୍ୟାର ବିଭୀଷିକା ଖେଳାଇବାରୁ ମହାରାଜା ଭାରତ ସରକାରଙ୍କ ସହାୟତା ଆବଶ୍ୟକ କରି କାଶ୍ମୀରକୁ ଭାରତରେ ମିଶାଇବାକୁ ୧୯୪୭ ମସିହା ଅକ୍ଟୋବର ୨୬ ତାରିଖରେ ଅଧିମିଳନ ଅଭିଲେଖରେ ସ୍ୱାକ୍ଷର କଲେ । ପରବର୍ତ୍ତୀ ସମୟରେ ମହାରାଜାଙ୍କ ପରେ ତତ୍‌କାଳୀନ ଜାମ୍ମୁ-କାଶ୍ମୀରର ପ୍ରଧାନମନ୍ତ୍ରୀ (ସେତେବେଳେ ସରକାରଙ୍କ ମୁଖ୍ୟ ପ୍ରଧାନମନ୍ତ୍ରୀ ରୂପେ ପରିଚିତ ହେଉଥିଲେ) ଶେଖ୍ ଅବଦୁଲ୍ଲା ସଂଖ୍ୟା ଗରିଷ୍ଠ ମୁସଲମାନମାନଙ୍କ ସମର୍ଥନରେ ଜାମ୍ମୁ-କାଶ୍ମୀରକୁ ସ୍ୱତନ୍ତ୍ର ରଖିବାକୁ ଜିଦ୍ କରିଥିଲେ । ପଣ୍ଡିତ ଜବାହରଲାଲ୍ ନେହେରୁଙ୍କର ତାଙ୍କପ୍ରତି ଦୁର୍ବଳତା ରହିଥିବା ଯୋଗୁଁ ସ୍ୱରାଷ୍ଟ୍ରମନ୍ତ୍ରୀ ସର୍ଦ୍ଦାର ପଟେଲ

ଓ ସମ୍ବିଧାନ ପ୍ରଣେତା ଡକ୍ଟର ଆମ୍ବେଦକରଙ୍କ ବିରୋଧ ସତ୍ତ୍ୱେ ୧୯୫୧ ମସିହାରେ ଜାମ୍ମୁ-କାଶ୍ମୀର ପାଇଁ ନୂତନ ସମ୍ବିଧାନ ସଭା ଗଠିତ ହୋଇ ଏହାର ଅଲଗା ସମ୍ବିଧାନ, ଅଲଗା ପତାକା ଓ ଅଲଗା ପ୍ରଧାନମନ୍ତ୍ରୀର ବ୍ୟବସ୍ଥା ହେଲା ଏବଂ ୩୭୦ ଧାରାର ଅସ୍ଥାୟୀ ପ୍ରଚଳନ ହେଲା । ୧୯୫୨ ମସିହାରେ ଶେଖ୍ଅବଦୁଲା ଓ ଭାରତର ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁଙ୍କ ମଧ୍ୟରେ ଗୋଟିଏ ଚୁକ୍ତି ସ୍ୱାକ୍ଷର ହୋଇଥିଲା, ଯାହା 'ଦିଲ୍ଲୀ ରାଜିନାମା' ରୂପେ ପରିଚିତ । ପ୍ରଧାନମନ୍ତ୍ରୀ ନେହେରୁ ଅବଦୁଲାଙ୍କୁ ପ୍ରଭାବିତ କରି କାଶ୍ମୀରକୁ ଭାରତର ଅବିଚ୍ଛେଦ୍ୟ ଅଙ୍ଗରେ ପରିଣତ କରାଇବା ପାଇଁ ୩୫(କ) ଧାରାକୁ ୧୯୫୪ ମସିହାରେ ରାଷ୍ଟ୍ରପତିଙ୍କ ଆଦେଶ ବଳରେ କାର୍ଯ୍ୟକାରୀ କରାଇଥିଲେ । ୧୯୫୪ ମସିହାରୁ ସମ୍ବିଧାନରେ ଏହି ଅସ୍ଥାୟୀ ଅନୁଚ୍ଛେଦ ୩୭୦ ଧାରା ସହିତ ଯୋଡ଼ି ହୋଇ ରହିଆସିଥିଲା । ଏଠାରେ ସ୍ମରଣଯୋଗ୍ୟ ଯେ, ଉପନିବେଶବାଦୀ ବ୍ରିଟିଶ ଶାସନ ଅଖଣ୍ଡ ଭାରତୁ ବିଖଣ୍ଡିତ କରିବାକୁ ଚାଲ୍‌ଟିଏ ଖେଳିଥିଲେ । ଗାନ୍ଧିଜୀ ବିଭାଜନକୁ ବିରୋଧ କରୁଥିଲେ ହେଁ ଜିନ୍ନାଙ୍କ ଧ୍ୱନି "ଲଡ଼୍‌କେ ଲେଙ୍ଗେ ପାକିସ୍ଥାନ" ପ୍ରତୀକ୍ଷିତ ସ୍ୱାଧୀନତାକୁ ଅନିଶ୍ଚିତ କରୁଥିବାରୁ, ନେହେରୁ, ସର୍ଦ୍ଦାରଭାଇ ପଟେଲ ଆଦି ବ୍ରିଟିଶ ସରକାରଙ୍କ ସର୍ତ୍ତକୁ ମାନିନେବାକୁ ବାଧ ହୋଇଥିଲେ । ମୁସଲମାନ ସଂଖ୍ୟା ବହୁଳତାର ସୁଯୋଗରେ ବିଭାଜିତ ପାକିସ୍ଥାନ ଧର୍ମନାମରେ ଗୋଟିଚାଳନା କଲା । କାଶ୍ମୀର ଦଖଲପାଇଁ ସୈନ୍ୟ ପ୍ରେରଣ କରିବା ସଙ୍ଗେ ସଙ୍ଗେ ଏହାର ଗୋଟିଏ ଅଂଶକୁ ଏବେ ମଧ୍ୟ ଦଖଲ କରି ରହିଛି, ଯାହା ଭାରତର ଭୌଗୋଳିକ ମାନଚିତ୍ରରେ 'ପାକ୍ ଅଧିକୃତ କାଶ୍ମୀର' ନାମରେ ପରିଚିତ । 'ଜାମ୍ମୁ-କାଶ୍ମୀରକୁ ଭାରତର ଅବିଚ୍ଛେଦ୍ୟ ଅଙ୍ଗରୂପେ ସୁରକ୍ଷିତ ରଖିବାକୁ ବାଧ-ବାଧକତାରେ ସୃଷ୍ଟି ହୋଇଥିଲା ୩୭୦ ଓ ୩୫(କ) ଧାରା । ତେବେ କ'ଣ ଏହି ୩୭୦ ଓ ୩୫(କ) ଧାରା ?

ଜାମ୍ମୁ-କାଶ୍ମୀରକୁ କେତେକ ସ୍ୱତନ୍ତ୍ର କ୍ଷମତା ଏବଂ ସୁବିଧା ଦେବା ଉଦ୍ଦେଶ୍ୟରେ ୩୭୦ ଧାରାକୁ ଭାରତୀୟ ସମ୍ବିଧାନରେ ଯୋଡ଼ି ଦିଆଯାଇଛି । ଏହି ଧାରା ଅନୁଯାୟୀ ବୈଦେଶିକ, ପ୍ରତିରକ୍ଷା ଇତ୍ୟାଦି ବ୍ୟତୀତ ଭାରତ ସରକାର ସେମାନଙ୍କ ଶାସନ ବ୍ୟବସ୍ଥାରେ ହସ୍ତକ୍ଷେପ କରିପାରିବେ ନାହିଁ । ଯଦି ଭାରତ ସରକାର ଏହି ଧାରାକୁ ଉଚ୍ଛେଦ କରିବାକୁ ଚାହିଁବେ, ଏଥିପାଇଁ ଜାମ୍ମୁ-କାଶ୍ମୀର

ବିଧାନସଭାର ଦୁଇତୃତୀୟାଂଶ ସଭ୍ୟଙ୍କ ସ୍ୱୀକୃତି ରହିବା ଆବଶ୍ୟକ । ଏହିଧାରା ଦ୍ୱାରା ଜାମ୍ମୁ-କାଶ୍ମୀର (ପାକ୍ ଅଧିକୃତ କାଶ୍ମୀର ମଧ୍ୟ) ଭାରତର ଅବିଚ୍ଛେଦ୍ୟ ଅଙ୍ଗ । ଏହାର ପ୍ରତିରକ୍ଷାର ସଂପୂର୍ଣ୍ଣ ଦାୟିତ୍ୱ ଭାରତ ସରକାରଙ୍କର । ୩୭୦ ଧାରା ଅନୁଯାୟୀ ଏଠାରେ ଭାରତୀୟ ସମ୍ବିଧାନର ଧାରା ୩୫୬ (ଜାତୀୟ ଜରୁରୀକାଳୀନ ପରିସ୍ଥିତି), ଧାରା ୩୬୦ (ଆର୍ଥନୀତିକ ଜରୁରୀକାଳୀନ ପରିସ୍ଥିତି) ପ୍ରଯୁଜ୍ୟ ହୋଇପାରିବ ନାହିଁ । ସୂଚନା ଅଧିକାର ଆଇନ କାର୍ଯ୍ୟକାରୀ ହେବା ସମ୍ଭବ ନୁହେଁ । ରାଜ୍ୟର ଥିଲା ସ୍ୱତନ୍ତ୍ର ପତାକା । ଭାରତୀୟ ଜାତୀୟ ପତାକା ଏଠାରେ ଗୁରୁତ୍ୱହୀନ । ଜାମ୍ମୁ ଓ କାଶ୍ମୀରର ରହିଲା ଏକ ସ୍ୱତନ୍ତ୍ର ସମ୍ବିଧାନ । ଭାରତୀୟ ସମ୍ବିଧାନର କୌଣସି ଧାରା କାଶ୍ମୀର ସମ୍ବିଧାନର ବିନା ସ୍ୱୀକୃତିରେ ଲାଗୁ ହୋଇପାରିବ ନାହିଁ କିମ୍ବା ସଂସଦର ଆଇନ୍ କାର୍ଯ୍ୟକାରୀ ହେବନାହିଁ । ଭାରତର ରାଷ୍ଟ୍ରପତି କାଶ୍ମୀର ସରକାରଙ୍କ ଆଦେଶ ବିନା ୩୭୦ ଧାରା ବାତିଲ କରିପାରିବେ ନାହିଁ । ଘରଦ୍ୱାର, ଚାକିରି, ସଂପତ୍ତି ଆଦି କ୍ଷେତ୍ରରେ ସେଠାକାର ସ୍ଥାୟୀ ବାସିନ୍ଦାଙ୍କର ଏକଚାଟିଆ ଅଧିକାର ରହିବ । ଶରଣାର୍ଥୀମାନଙ୍କୁ ଅନୁପ୍ରବେଶକାରୀ ଶ୍ରେଣୀଭୁକ୍ତ କରାଯାଇ ଶିକ୍ଷା, ବ୍ୟବସାୟ, ଚାକିରି ଏପରିକି ବିଧାନସଭା ଭୋଟଦାନ ଅଧିକାରରୁ ବଞ୍ଚିତ କରାଯାଉଛି । ସର୍ବୋଚ୍ଚ ନ୍ୟାୟାଳୟ ମଧ୍ୟ ଏମାନଙ୍କୁ ନ୍ୟାୟ ଦେଇପାରୁ ନ ଥିଲେ । ଧାରା ୩୭୦ର ଏକ ଅଂଶ ହେଉଛି ୩୫(କ) । ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ୍ ନେହେରୁ ୧୯୫୪ ମସିହା ମେ ୧୪ ତାରିଖରେ ଭାରତର ତତ୍କାଳୀନ ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦଙ୍କ ସ୍ୱୀକୃତି କ୍ରମେ ସମ୍ବିଧାନରେ ଏହାକୁ ସାମିଲ୍ କରିଥିଲେ । ଏହା ଜାମ୍ମୁ-କାଶ୍ମୀର ବିଧାନସଭାକୁ ରାଜ୍ୟର ସ୍ଥାୟୀ ନାଗରିକ କିଏ ହୋଇପାରିବେ, ତା'ର ସଂଜ୍ଞା ନିର୍ଣ୍ଣୟ କରିବାର ଅଧିକାର ନେଇଥାଏ । ଏତଦ୍‌ବ୍ୟତୀତ ଏହା ଅନୁଯାୟୀ ଜାମ୍ମୁ-କାଶ୍ମୀର ସ୍ଥାୟୀ ବାସିନ୍ଦା ବ୍ୟତିରେକେ ଅନ୍ୟ କୌଣସି ରାଜ୍ୟର ବାସିନ୍ଦା ସେଠାରେ ଜାଗା କ୍ରୟକରିପାରିବେ ନାହିଁ; ମାତ୍ର ସେଠାକାର ଅଧିବାସୀ ଭାରତର ଯେକୌଣସି ରାଜ୍ୟରେ ଜାଗା କ୍ରୟ କରିପାରିବେ । ସେଠାରେ ଦ୍ୱୈତ ନାଗରିକତା (ଉଭୟ ଭାରତ ଓ କାଶ୍ମୀର) ବ୍ୟବସ୍ଥା ପ୍ରଚଳିତ । ସେଠାକାର କୌଣସି ଯୁବତୀ ଅନ୍ୟ ରାଜ୍ୟର ଯୁବକଙ୍କୁ ବିବାହ କଲେ ସେ ରାଜ୍ୟର ନାଗରିକତା ଓ ସଂପତ୍ତିଗତ ଅଧିକାର ହରାଇଥା'ନ୍ତି । ଭାରତ ଆର୍ଥିକ ଦୁର୍ବଳତାର

ଶିକାର ହୋଇଥିଲେ ହେଁ ଜାମ୍ମୁ-କାଶ୍ମୀରବାସୀ କୌଣସି ସୁବିଧା ସୁଯୋଗରୁ ବଞ୍ଚିତ ହୋଇପାରିବେ ନାହିଁ । ଅନ୍ୟ ରାଜ୍ୟବାସୀ ଜାମ୍ମୁ-କାଶ୍ମୀରର ଖଣି ବା ଅନ୍ୟ କୌଣସି ନିଲାମରେ ଭାଗ ନେଇପାରିବେ ନାହିଁ, ଅଥଚ କାଶ୍ମୀରବାସୀ ଭାରତର ଯେକୌଣସି ସ୍ଥାନର ନିଲାମରେ ଭାଗୀଦାର ହୋଇପାରିବେ ଇତ୍ୟାଦି ।

ସଂପ୍ରତି ୩୭୦ ଧାରା ଉଚ୍ଛେଦ ଯୋଗୁଁ ଜାମ୍ମୁ-କାଶ୍ମୀର ଭାରତର ମୁଖ୍ୟ ସ୍ରୋତରେ ସାମିଲ ହୋଇପାରିଛି । ସମଗ୍ର ଭାରତରେ କାଶ୍ମୀରଠାରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ଗୋଟିଏ ଆଇନ୍ ମଧ୍ୟରେ ସମସ୍ତେ ପରିଚାଳିତ ହେବେ । ଦୀର୍ଘ ୭୨ ବର୍ଷ ଧରି ଜାମ୍ମୁ-କାଶ୍ମୀରରେ ପ୍ରଚଳିତ ଦ୍ୱୈତ ନାଗରିକତା ଅଚଳ ହୋଇଯାଇଛି । ୩୭୦ ଧାରା ଦ୍ୱାରା କାଶ୍ମୀରବାସୀଙ୍କୁ ମିଳୁଥିବା ସ୍ୱତନ୍ତ୍ର ସୁବିଧା ସୁଯୋଗର ଫାଇଦା ଉଠାଇ ପାକିସ୍ଥାନ ଯେଉଁ ଆତଙ୍କବାଦୀ କାର୍ଯ୍ୟକଳାପ ଜାରି ରଖିଥିଲା, ତା'ର ବିଲୋପ ଘଟିବ । ପାକିସ୍ଥାନ ଯୁବକ କାଶ୍ମୀର କନ୍ୟାକୁ ବିବାହ ପରେ ତାଙ୍କୁ ଯେଉଁ ନାଗରିକତା ପ୍ରଦାନ କରାଯାଉଥିଲା, ତାହା ମଧ୍ୟ ସମ୍ଭବ ହେବନାହିଁ । ବର୍ତ୍ତମାନ ଏହାର ଆଇନ୍ ଶୃଙ୍ଖଳା ପରିସ୍ଥିତି ଭାରତ ସରକାରଙ୍କ ପ୍ରତ୍ୟକ୍ଷ ଅଧୀନରେ ପରିଚାଳିତ ହେବା ସହିତ ଭାରତୀୟ ଦଣ୍ଡବିଧି ଆଇନ୍ କାର୍ଯ୍ୟକାରୀ ହେବ । ଆତଙ୍କବାଦୀ କାର୍ଯ୍ୟକଳାପର ନିୟନ୍ତ୍ରଣପାଇଁ ଭାରତୀୟ ସେନାଙ୍କୁ ପ୍ରତ୍ୟକ୍ଷ ଭାବରେ ନିୟୋଜିତ କରାଯିବ । ସଂପ୍ରତି ପାକିସ୍ତାନ 'ଗୁଇନ୍ଦା' ଓ ସୈନ୍ୟବିଭାଗ ପାଇଁ ଏହା ମୁଣ୍ଡବ୍ୟଥାର କାରଣ ହୋଇଥିବାରୁ ସେମାନେ ପ୍ରତିକ୍ରିୟାଶୀଳ ହୋଇଉଠିଛନ୍ତି । ଜାତିସଂଘ, ଆମେରିକା, ଚୀନ ତଥା ଅନ୍ୟାନ୍ୟ ଆଇନ ଦେଶରେ ପାକିସ୍ତାନ ଭାରତର ୩୭୦ ଧାରା ଉଚ୍ଛେଦ ବିଷୟ ଉଠାଇ ସହାୟତା ମାଗିଥିଲେ ହେଁ କେଉଁଠାରୁ ସାହାଯ୍ୟ ପାଇ ନ ଥିବାରୁ ହତାଶ ହୋଇ ଆତଙ୍କବାଦୀ କାର୍ଯ୍ୟକଳାପ ଭାରତରେ ବୃଦ୍ଧି କରିବା ପାଇଁ ଯୋଜନା ପ୍ରସ୍ତୁତ କରୁଛି । ତେଣୁ ଭାରତ ଏଥିପ୍ରତି ସତର୍କ ରହିବାର ଆବଶ୍ୟକତା ରହିଛି ।

୩୭୦ ଧାରା ଉଚ୍ଛେଦ ପରେ ଜାମ୍ମୁ-କାଶ୍ମୀରର ସର୍ବାଙ୍ଗୀଣ ବିକାଶପାଇଁ ଭାରତ ସରକାର ଯୋଜନାମାନ ପ୍ରସ୍ତୁତ କରିଛନ୍ତି । ଏହାର ଆର୍ଥନୀତିକ ଉନ୍ନତିପାଇଁ ପଦକ୍ଷେପ ଗ୍ରହଣ କରାଯାଇଛି । ଭିତ୍ତିଭୂମିର ବିକାଶ ଉପରେ ଗୁରୁତ୍ୱ ଦିଆଯାଇଛି । କେନ୍ଦ୍ରୀୟ ଯୋଜନାର କାର୍ଯ୍ୟକାରିତା ଉପରେ ଦୃଷ୍ଟିପ୍ରଦାନ କରାଯାଇଛି । ସାଧାରଣ ଜନତା

କିପରି ଉପକୃତ ହୋଇପାରିବେ, ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ଦିଆଯାଇଛି । ପ୍ରଥମେ ରାଜପଥ, ଫୁଡ଼ପାର୍କ, ରେଳବାଇ, ପର୍ଯ୍ୟଟନ ଭିତ୍ତିଭୂମିର ବିକାଶ ନିମିତ୍ତ ଯୋଜନା ପ୍ରସ୍ତୁତ ହୋଇଛି । ଶ୍ରୀନଗରରେ ବୃହତ୍ ଶିଳ୍ପପତିଙ୍କ ବୈଠକ ଆହ୍ୱାନ କରାଯାଇଛି । କାର୍ଯ୍ୟ ଚାଲିଥିବା ୧୭ଟି ପ୍ରମୁଖ ସଡ଼କ ପ୍ରକଳ୍ପ ଶୀଘ୍ର ଶେଷ କରିବାକୁ ନିର୍ଦ୍ଦେଶ ଦିଆଯାଇଛି । କାଶ୍ମୀରରେ ପୁଞ୍ଜିନିବେଶ ପାଇଁ ପ୍ରମୁଖ କମ୍ପାନୀ ଆଗ୍ରହ ପ୍ରକାଶ କରିବାକୁ ଆରମ୍ଭ କଲେଣି । ଜାମ୍ମୁ-କାଶ୍ମୀରରେ ବିଧାନସଭା ଓ ଉପରାଜ୍ୟପାଳ ଏବଂ ଲଦାଖରେ କେବଳ ଉପରାଜ୍ୟପାଳ ମୁଖ୍ୟ ହୋଇରହିବେ । କାଶ୍ମୀରରେ ଆତଙ୍କବାଦୀର ମୂଳୋତ୍ପାଟନ ହୋଇ ସ୍ୱାଭାବିକ ଅବସ୍ଥା ଫେରି ଆସିଲେ ଜାମ୍ମୁ-କାଶ୍ମୀରକୁ ପୁଣି ପୂର୍ଣ୍ଣ ରାଜ୍ୟର ମାନ୍ୟତା ପ୍ରଦାନ କରାଯିବ ।

ବର୍ତ୍ତମାନ ସମଗ୍ର ଦେଶରେ ଗୋଟିଏ ସମ୍ବିଧାନ, ଏକକ ନାଗରିକତ୍ୱ ଓ ଗୋଟିଏ ପତାକା ପ୍ରଚଳିତ ହେବା ପଡୋଶୀ ଦେଶ ପାକିସ୍ତାନ ଯେପରି ରକ୍ତମୁଖା ସାଜିଛି, ତା'ର ଆଚରଣକୁ ତୀକ୍ଷ୍ଣ ଦୃଷ୍ଟିପ୍ରଦାନ କରିବା ସହିତ ସମଗ୍ର ଭାରତରେ ଭ୍ରାତୃପ୍ରେମ ଓ ଦେଶପ୍ରେମର ଜାଗରଣପାଇଁ ସକାରାତ୍ମକ ପଦକ୍ଷେପ ଗ୍ରହଣ କରିବାର ଆବଶ୍ୟକତା ରହିଛି । ଦୀର୍ଘଦିନ ଧରି ଯେଉଁ ଅଖଣ୍ଡ ଭାରତବର୍ଷର ପରିକଳ୍ପନା କରି ଆସୁଥିଲୁ, ତାହା ଏବେ ସାକାର ହେବାର ସମୟ ଆସିଛି । ତେଣୁ ସମସ୍ତ ଭାରତୀୟ ପରସ୍ପର ମଧ୍ୟରେ ରହିଥିବା ମତଭେଦ ଓ ମନଭେଦ ଭୁଲି ଗୋଟିଏ ମହାଭାରତୀୟ ଚେତନାରେ ଉଦ୍‌ବୁଦ୍ଧ ହୋଇ ପାରିଲେ, ଭାରତ ବିଶ୍ୱରେ ନିଜର ପରାକାଷ୍ଠା ପ୍ରତିପାଦନ କରିପାରିବ, ଏଥିରେ ସନ୍ଦେହ ନାହିଁ ।



# ସୁନାମି

(ଉପକ୍ରମ–ସୁନାମି କ'ଣ ? –ସୁନାମି କାହିଁକି ? –ସୁନାମିର ଇତିହାସ–ସୁନାମିର ପ୍ରଭାବ–ସୁନାମିର ପାରିବେଶିକ ପ୍ରତିକ୍ରିୟା–ସୁନାମି ସୂଚନା–ସୁନାମି ପାଇଁ ସତର୍କତା–ଉପସଂହାର)

୨୦୦୪ ମସିହା ଡିସେମ୍ବର ୨୫ ତାରିଖର ଉତ୍ସବ ମୁଖରିତ ପୃଥିବୀ ଫିକା ପଡ଼ିଯାଇଥିଲା ୨୬ ତାରିଖର ଉଷାକାଳରେ । ବଡ଼ଦିନର ଆନନ୍ଦ ମୁଖରିତ ବିଶ୍ୱ ପରଦିନ କାରୁଣ୍ୟର ଏକ ବିପର୍ଯ୍ୟୟକୁ ସତେ ଯେପରି ଅପେକ୍ଷା କରିଥିଲା । ସେଇଥିପାଇଁ ୨୦୦୫ ଜାନୁଆରୀ ମାସ ୧ ତାରିଖର ସୂର୍ଯ୍ୟୋଦୟକୁ ସୁନାମିର ସୂର୍ଯ୍ୟୋଦୟ ନାମରେ ବିଶ୍ୱ ନାମିତ କରିଛି । ୨୦୦୪ ମସିହା ଡିସେମ୍ବର ୨୬ ତାରିଖ ପ୍ରାତଃ ୬ଟା ୫ ମିନିଟରେ ଭାରତ ମହାସାଗରର ସୁମାତ୍ରାଠାରେ ସୃଷ୍ଟି ହୋଇଥିବା ସୁନାମି ମାତ୍ର କେତୋଟି ମୁହୂର୍ତ୍ତରେ ଗ୍ରାସ କରିଯାଇଥିଲା ଦକ୍ଷିଣ ଏସିଆର ଏକ ବିରାଟ ଅଞ୍ଚଳ ତଥା ପୂର୍ବଭାରତର ଅନେକ ଉପକୂଳବର୍ତ୍ତୀ ଅଞ୍ଚଳକୁ । ଦକ୍ଷିଣ ଏସିଆର ଇଣ୍ଡୋନେସିଆ, ବାଂଲାଦେଶ, ଥାଇଲାଣ୍ଡ, ମିଆଁମାର, ଶ୍ରୀଲଙ୍କା ଏପରିକି ଆଫ୍ରିକୀୟ ରାଷ୍ଟ୍ର, ସୋମାଲିଆ ତଥା ଆଣ୍ଡାମାନ ନିକୋବର, ଜାଭା, ସୁମାତ୍ରା, ବୋର୍ଣ୍ଣିଓ, ଆନ୍ଧ୍ରପ୍ରଦେଶ, ତାମିଲନାଡୁ, କେରଳ ଆଦି ବହୁ ଅଞ୍ଚଳର ଦେଢ଼ଲକ୍ଷରୁ ଊର୍ଦ୍ଧ୍ୱଲୋକ ପ୍ରାଣ ହରାଇବା ସଙ୍ଗେ ସଙ୍ଗେ ଅପର୍ଯ୍ୟାପ୍ତ ଧନ ଜନର କ୍ଷତି ଘଟାଇଥିଲା ଏହି ସୁନାମି । ପ୍ରକୃତିର ଏହି ଧ୍ୱଂସକାରୀ ରୂପ ଦେଖି ସମଗ୍ର ବିଶ୍ୱ ସ୍ତବ୍ଧ ଓ ଚକିତ ହୋଇଉଠିଥିଲା । ବଡ଼ଦିନର ଆନନ୍ଦମୟ ମୁହୂର୍ତ୍ତଗୁଡ଼ିକୁ ଉପଭୋଗ କରିବା ନିମିତ୍ତ ପୃଥିବୀର ବିଭିନ୍ନ ଅଞ୍ଚଳର ପର୍ଯ୍ୟଟକମାନଙ୍କ ସହିତ ବହୁ ସ୍ଥାନୀୟ ଅଧିବାସୀ ମାଳଦ୍ୱୀପ, ସୁମାତ୍ରା, ଇଣ୍ଡୋନେସିଆ, ଆଣ୍ଡାମାନ ନିକୋବର ଦ୍ୱୀପପୁଞ୍ଜ, ଶ୍ରୀଲଙ୍କା ଏବଂ ଭାରତର ଉପକୂଳବର୍ତ୍ତୀ ରାଜ୍ୟ କେରଳ, ତାମିଲନାଡୁ, ପଣ୍ଡିଚେରୀ, ଆନ୍ଧ୍ରପ୍ରଦେଶ ଆଦି ସ୍ଥାନରେ ସମବେତ ହୋଇଥିଲେ । କିନ୍ତୁ ଡିସେମ୍ବର ୨୬ ତାରିଖର ସୂର୍ଯ୍ୟୋଦୟ ଦେଖିବା ପୂର୍ବରୁ ଅନେକ ନିଜ ଜୀବନର ସୂର୍ଯ୍ୟାସ୍ତକୁ ହିଁ ଦେଖିଥିଲେ । ଏହି ସୁନାମି କ'ଣ ଓ କାହିଁକି ଏହା ସଂଘଟିତ ହୋଇଥାଏ, ସେ ସମ୍ପର୍କରେ ଏଠାରେ ସଂକ୍ଷେପରେ ଆଲୋଚନା କରାଯାଇପାରେ ।

ସୁନାମି (Tsunami) ଏକ ଜାପାନୀ ଶବ୍ଦ, ଯାହାର ଅର୍ଥ ହେଉଛି 'ଅସୁରକାୟ ସାମୁଦ୍ରିକ କୁଆର ।' ଅନ୍ୟ କେତେକ 'ସୁ' (TSU) ଅର୍ଥ ପୋତାଶ୍ରୟ ଏବଂ 'ନାମି' (nami) ଅର୍ଥ ତରଙ୍ଗ ବୋଲି କହିଥାନ୍ତି । ଏହି ଦୃଷ୍ଟିରୁ ଏହାର ଅର୍ଥ ହୋଇପାରେ ପ୍ରଖର ଶକ୍ତିଶାଳୀ ଗତିଶୀଳ ତରଙ୍ଗ । ସମୁଦ୍ର ମଧ୍ୟରେ ଭୂକମ୍ପ ସୃଷ୍ଟି ହେଲେ ଯେଉଁ ସାମୁଦ୍ରିକ କୁଆର ସୃଷ୍ଟି ହୋଇ ଅସଂଖ୍ୟ ଧନଜୀବନ ନଷ୍ଟ କରିଥାଏ, ତାହାକୁ ସୁନାମି କୁହାଯାଏ । ଡିସେମ୍ବର ୨୬ ତାରିଖ, ୨୦୦୪ ମସିହା ସକାଳେ ଏହି ଭୂକମ୍ପଜନିତ ସୁନାମିର କେନ୍ଦ୍ରବିନ୍ଦୁ ଥିଲା ସୁମାତ୍ରା । ଅଥଚ ସେଠାରୁ ୨୧୦୦ ମାଇଲ ଦୂରରେ ଅବସ୍ଥିତ ଭାରତୀୟ ଉପକୂଳ ମଧ୍ୟ ସେଥିରୁ ରକ୍ଷା ପାଇପାରିଲା ନାହିଁ । ସୁମାତ୍ରା ଦ୍ୱୀପର ପଶ୍ଚିମ

ଉପକୂଳରେ ସଂଘଟିତ ଭୂମିକମ୍ପ ବା ସୁନାମି ସମଗ୍ର ବିଶ୍ୱ ପ୍ରାକୃତିକ ବିପର୍ଯ୍ୟୟ ଇତିହାସରେ ବିରଳ ବୋଲି ମତ ପ୍ରକାଶ ପାଇଛି ।

ସାଧାରଣତଃ ପ୍ରଶାନ୍ତ ମହାସାଗରର ଉତ୍ତରଖଣ୍ଡ ସୁନାମିର ମୁକ୍ତାଞ୍ଚଳ ରୂପେ ପରିଚିତ । ଭାରତ ମହାସାଗରରେ ଏପରି ଦୃଷ୍ଟାନ୍ତ ଖୁବ୍ ନଗଣ୍ୟ । ପ୍ରଶାନ୍ତ ମହାସାଗରର ସାମୁଦ୍ରିକ ଶଯ୍ୟାରେ ଏପରି ସାମୁଦ୍ରିକ ଭୂମିକମ୍ପ ବା ସୁନାମି ବହୁବାର ସଂଘଟିତ ହୋଇଛି । ସ୍ଥଳଭାଗରେ ଅନେକଥର ଭୂକମ୍ପ ହେବାର ଅନୁଭବ ଅଧିକାଂଶ ବ୍ୟକ୍ତିଙ୍କର ରହିଛି । ପୃଥିବୀର ବହିରାଂଶରେ ତ୍ରୁଟିବିଚ୍ୟୁତି ଯୋଗୁଁ ପୃଥିବୀ ଗଠିତ ହୋଇଥିବା ବିଭିନ୍ନ ପ୍ଲେଟ୍ ଗୁଡ଼ିକ ସଞ୍ଚାଳିତ ହେଲେ ବା ହଠାତ୍ ଖସିଗଲେ, ଭୂମିକମ୍ପ ସୃଷ୍ଟି ହୋଇଥାଏ । ସମୟେ ସମୟେ ଏପରି ତ୍ରୁଟି ପ୍ଲେଟ୍ ଗୁଡ଼ିକରେ ସୃଷ୍ଟି ହେଉଥିବା ଅଧିକ ଚାପଯୋଗୁଁ ମଧ ହୋଇଥାଏ । ପୁଣି ବେଳେବେଳେ ପ୍ଲେଟ୍ ଗୁଡ଼ିକର ସଞ୍ଚାଳନ ଓ ସଂଘର୍ଷ ଦ୍ୱାରା ବି ଭୂମିକମ୍ପ ସୃଷ୍ଟି ହୁଏ । ସ୍ଥଳଭାଗ ସଦୃଶ ଜଳଭାଗରେ ମଧ ବେଳେବେଳେ ଭୂକମ୍ପ ସୃଷ୍ଟି ହୋଇଥାଏ । ସମୁଦ୍ର ମଧ୍ୟସ୍ଥ ଭୂଖଣ୍ଡ କୌଣସି କାରଣରୁ ପରସ୍ପର ସହିତ ଘର୍ଷଣ ହେଲେ, ତାହା ଜଳଭାଗରେ ଚାପ ସୃଷ୍ଟି କରେ, ଜଳରେ ବିରାଟ ତରଙ୍ଗ ସୃଷ୍ଟି କରେ । ସମୟେ ସମୟେ ସମୁଦ୍ର ମଧରେ ଜ୍ୱାଳାମୁଖୀ ସୃଷ୍ଟି ହେଲେ କିମ୍ବା ଆକାଶରୁ ଉଲ୍କାପିଣ୍ଡ ପଡ଼ି ଭୟଙ୍କର ତରଙ୍ଗର ସୃଷ୍ଟିହୋଇ ପ୍ଲାବନ ସୃଷ୍ଟି କଲେ ତାହାକୁ ସୁନାମି କୁହାଯାଏ । ସମୁଦ୍ର ଗର୍ଭରେ ସୃଷ୍ଟି ହୋଇଥିବା ଭୂକମ୍ପର ତୀବ୍ରତା ଯଦି ୭ (ସାତ) ରିକ୍ଟରରୁ ଅଧିକ ହୁଏ, ତେବେ ତାହାକୁ ସୁନାମି କୁହାଯାଇଥାଏ । ଏହାଦ୍ୱାରା ସମୁଦ୍ରର ଆଭ୍ୟନ୍ତରୀଣ ଶଯ୍ୟା ବିଚଳିତ ହୋଇଯାଏ । ସମୁଦ୍ର ଗର୍ଭରେ ଉତ୍ତାଳ ସାମୁଦ୍ରିକ ତରଙ୍ଗ ସୃଷ୍ଟି ହୋଇଥାଏ, ଯାହାର ଘଣ୍ଟାପ୍ରତି ବେଗ ହେଉଛି ୭୦୦ରୁ ୮୦୦ କି.ମି. (ସୁପରସୋନିକ ଜେଟ୍ ବିମାନର ଗତି ସହିତ ତୁଳନୀୟ) । ଯେଉଁଠାରେ ଜଳର ଗଭୀରତା କମ୍, ସେଠାରେ ତା'ର ପ୍ରଭାବ ମଧ କମ୍; ମାତ୍ର ଯେଉଁଠାରେ ଜଳର ଗଭୀରତା ଅଧିକ, ସେଠାରେ ସୁନାମିର ପ୍ରଭାବ ଅଧିକ । ମଜାର କଥା ହେଉଛି ଗଭୀର ସମୁଦ୍ରରେ ସୁନାମି ସୃଷ୍ଟି ହେଲେ ହେଁ, ଏହାର ଉପର ଭାଗରେ ଏହାର କୌଣସି ପ୍ରଭାବ ଅନୁଭୂତ ହୋଇନଥାଏ । ସୁନାମି ବେଳେ ସମୟେ ସମୟେ ଏହାର ତରଙ୍ଗର ଦୈର୍ଘ୍ୟ ବା ପ୍ରସ୍ଥ ୧୦୦ରୁ ୨୦୦ କି.ମି. ପର୍ଯ୍ୟନ୍ତ ହୋଇଥାଏ ।

ପ୍ରଶାନ୍ତ ମହାସାଗର ସୁନାମିର ମୁକ୍ତାଙ୍ଗନ । ଏଠାରେ ସୁନାମି ଅନେକବାର ଦେଖାଯାଇଛି । ବିଶ୍ୱରେ ବହୁପୂର୍ବରୁ ସୁନାମିର ସନ୍ଧାନ ମିଳିଥିବା ବିଷୟରେ ବୈଜ୍ଞାନିକମାନେ ସୂଚନା ଦେଇଛନ୍ତି । ସେମାନେ ବିଶ୍ୱାସ କରନ୍ତି, ଶ୍ରୀକୃଷ୍ଣଙ୍କ ଦ୍ୱାରକାନଗରୀ ଏହି ସୁନାମି ଦ୍ୱାରା ଲୀନ ହୋଇଯାଇଥିଲା । ୧୫୬୨ ମସିହା ଅକ୍ଟୋବର ୨୮ ତାରିଖରେ ଚିଲିରେ ସୃଷ୍ଟି ହୋଇଥିବା ସୁନାମିର ଉଚ୍ଚତା ଥିଲା ୧୬ ମିଟର । ୧୭୩୭ ମସିହାରେ କଲିକତା (କୋଲକାତା)ରେ ଯେଉଁ ପ୍ରବଳ ଭୂମିକମ୍ପ ହୋଇଥିଲା, ବୈଜ୍ଞାନିକଗଣ ବିଶ୍ୱାସ କରନ୍ତି ଯେ ଏହି ପ୍ରବଳ ବାତ୍ୟା ଗଙ୍ଗାରୁ ହିଁ ମାଡ଼ିଆସିଥିଲା । ଏହା ସୁନାମି ପ୍ରଭାବର ଫଳ ବୋଲି ସନ୍ଦେହ କରାଯାଏ । ୧୮୯୬ ମସିହା ଜାପାନରେ ସଂଘଟିତ ସୁନାମିର ଉଚ୍ଚତା ଥିଲା ୩୮ ମିଟର । ୧୯୪୬ ଏପ୍ରିଲ ୯ ତାରିଖରେ ଏହି ସୁନାମି ଏଲ୍ୟୁସିଆନ ଦ୍ୱୀପର ପ୍ରବଳ କ୍ଷତି କରିଥିଲା । ଏହି ସୁନାମିର ଉଚ୍ଚତା ଥିଲା ୩୫

ମିଟର । ୧୯୬୪ ମସିହା ମାର୍ଚ୍ଚ ୨୮ ତାରିଖରେ ଆଲାସ୍କାରେ ୭୦ ମିଟର ଉଚ୍ଚର ସୁନାମି ସୃଷ୍ଟି ହୋଇଥିବା ସମୟରେ ୧୯୯୪ ମସିହା ଜୁନ ମାସ ୩ ତାରିଖରେ ଜାଭାରେ ସଂଘଟିତ ସୁନାମିର ଉଚ୍ଚତା ରହିଥିଲା ୬୦ ମିଟର । ହାୱାଇ ଦ୍ୱୀପ ପୁଞ୍ଜରେ ସର୍ବାଧିକ ଚାଳିଶିରୁ ଉର୍ଦ୍ଧ୍ୱ ସୁନାମିର ଆକ୍ରମଣ ହୋଇଛି ୧୮୧୯ ମସିହା ପରଠାରୁ । ପ୍ରଶାନ୍ତ ମହାସାଗରର ଉତ୍ତର ଖଣ୍ଡରେ ଥିବା ଭାଙ୍କୋଭର ଦ୍ୱୀପ, କୁଇନ୍‌ସ ଲ୍ୟାଣ୍ଡ, ସଲ୍‌ଟ ଦ୍ୱୀପ, ଆଲେକ୍‌ଜାଣ୍ଡର ଦ୍ୱୀପ ପୁଞ୍ଜ, କୋଡ଼ିଆକ ଦ୍ୱୀପ, ଆଲିଭସିଆଣ୍ଡ ଦ୍ୱୀପ ପୁଞ୍ଜ ଆଦି ବହୁବାର କ୍ଷତିଗ୍ରସ୍ତ ହୋଇଛି ସୁନାମି ଯୋଗୁଁ । ବିଶେଷକରି ଆଲିଭସିଆନ ଦ୍ୱୀପପୁଞ୍ଜ ଓ ହାୱାଇ ଦ୍ୱୀପପୁଞ୍ଜ ବିଖ୍ୟାତ ହୋଇଯାଇଛି ଏହି ସୁନାମି ପାଇଁ । ମାତ୍ର ୨୦୦୪ ମସିହା ଡିସେମ୍ବର ୨୬ ତାରିଖ ରବିବାର ସକାଳେ ଭାରତ ମହାସାଗରର ସୁମାତ୍ରା ଦ୍ୱୀପରେ ସୃଷ୍ଟି ହୋଇଥିବା ସୁନାମି ଥିଲା ଭିନ୍ନ ସ୍ୱାଦର ଓ ଅଭୂତପୂର୍ବ ।

୨୦୦୪ ମସିହା ଡିସେମ୍ବର ୨୬ ତାରିଖରେ ଭାରତ ମହାସାଗରରେ ସଂଘଟିତ ସୁନାମି ଏସିଆର ବହୁରାଷ୍ଟ୍ରକୁ କ୍ଷତିଗ୍ରସ୍ତ କରିଛି । ଏହି ସୁନାମିର ତୀବ୍ରତା ଥିଲା ରିକ୍ଟର ସ୍କେଲରେ ୮ ଦଶମିକ ୯ । ଏହି ଭୂକମ୍ପ ଓ ସାମୁଦ୍ରିକ ଜୁଆର ଦ୍ୱାରା ଇଣ୍ଡୋନେସିଆ, ଥାଇଲାଣ୍ଡ, ଶ୍ରୀଲଙ୍କା ଏବଂ ଭାରତର କେତେକ ଅଞ୍ଚଳରେ ଖଣ୍ଡପ୍ରଳୟ ସୃଷ୍ଟି ହୋଇଥିଲା । ହଜାର ହଜାର ଧୀବର ସମୁଦ୍ରରେ ସବୁଦିନ ପାଇଁ ନିଖୋଜ ହୋଇଗଲେ । ଉପକୂଳବର୍ତ୍ତୀ ଅସଂଖ୍ୟ ଗ୍ରାମ ତାର ସତ୍ତା ହରାଇ ବସିଲା । ଏହି ସୁନାମିର ପ୍ରକୋପ ଏତେ ତୀବ୍ର ଥିଲା ଯେ, ସମୁଦ୍ର ଜଳ ୪୦ ମିଟର ଉଚ୍ଚ ଏବଂ ୮୦୦ କି.ମି. ବେଗରେ ପ୍ରତି ଘଣ୍ଟାରେ ଗତି କରିଥିଲା । ସୁମାତ୍ରାରେ ସୃଷ୍ଟ ସୁନାମି ମାତ୍ର ୨୦ ମିନିଟ୍‌ରେ ଶ୍ରୀଲଙ୍କା ଉପକୂଳରେ ପହଞ୍ଚି ଯାଇଥିଲା । ବହୁ ଦୂରରେ ରହିଥିବା ସୋମାଲିଆ ତଟ ପର୍ଯ୍ୟନ୍ତ ଏହାର ପ୍ରଭାବ ଅନୁଭୂତ ହୋଇଥିଲା । ହଜାର ହଜାର କୋଟି ଟଙ୍କାର ସମ୍ପତ୍ତି ନଷ୍ଟ ହୋଇଗଲା । ଲକ୍ଷ ଲକ୍ଷ ଲୋକ ମୃତ୍ୟୁବରଣ କଲେ ଓ ହଜାର ହଜାର ସଂଖ୍ୟାରେ ନିଖୋଜ ହୋଇଗଲେ । ସୁମାତ୍ରାରେ ସୃଷ୍ଟି ହୋଇଥିବା ଭୂମିକମ୍ପର ତିନିଘଣ୍ଟା ପରେ ମଧ ଛୋଟା ନିକୋବର ଓ ବାର ନିକୋବରଠାରେ ୯।୪୫ ମିନିଟ୍‌ରେ ପୁଣି ଭୂମିକମ୍ପ ହୋଇଥିଲା । ଏହାର ତୀବ୍ରତା ଯଥାକ୍ରମେ ଥିଲା ୭.୩ ଏବଂ ୬ ପଏଣ୍ଟ । ବୈଜ୍ଞାନିକ ମାନଙ୍କ ମତରେ ଏହି ଭୂମିକମ୍ପ ଯୋଗୁଁ ୧୨୦୦ କି.ମି.ର ଏକ ଫାଙ୍କ ସୃଷ୍ଟି ହୋଇଥିଲା । ସେସ୍‌ମୋଗ୍ରାମ ଷ୍ଟେସନ ମାନଙ୍କରୁ ଏହା ରେକର୍ଡ଼ କରାଯାଇଛି । ଭୂମିକମ୍ପ ପରେ ପ୍ରାୟ ତିନି ସପ୍ତାହ ଧରି ପଶ୍ଚାତ୍ ଭୂମିକମ୍ପ ଅନୁଭୂତ ହୋଇଥିଲା । ଏହି ସୁନାମିର ଶିକାର ହୋଇଥିବା ଦେଶଗୁଡ଼ିକ ମଧ୍ୟରେ ରହିଛି ମାଲେସିଆ, ଇଣ୍ଡୋନେସିଆ, ଥାଇଲାଣ୍ଡ, ମିଆଁମାର, ବଙ୍ଗଳାଦେଶ, ଶ୍ରୀଲଙ୍କା, ଭାରତ ଓ ମାଳଦ୍ୱୀପ । ଆଫ୍ରିକୀୟ ଦେଶମାନଙ୍କ ମଧ୍ୟରେ ରହିଛି ସୋମାଲିଆ, ତାଞ୍ଜାନିଆ ଓ କେନିଆ । ଇଣ୍ଡୋନେସିଆରେ ମୃତ୍ୟୁସଂଖ୍ୟା ସର୍ବାଧିକ । ଅନୁମାନ କରାଯାଏ ଅଶୀ ହଜାରରୁ ଉର୍ଦ୍ଧ୍ୱ । ଶ୍ରୀଲଙ୍କାରେ ପ୍ରାୟ ୩୧୦୦୦ । ଭାରତରେ ୧୩ ହଜାରରୁ ଅଧିକ । ସେହିପରି ଥାଇଲାଣ୍ଡ, ମାଳଦ୍ୱୀପ, ମାଲେସିଆ, ମିଆଁମାର ଆଦି ଦେଶର ହଜାର ହଜାର ଲୋକ ମୃତ୍ୟୁବରଣ କରିଛନ୍ତି । କୋଟିକୋଟି ଟଙ୍କାର ସମ୍ପତ୍ତି ନଷ୍ଟ ହୋଇଯାଇଛି ।

ଏହାର ପ୍ରତିକୂଳ ପ୍ରଭାବ କେବଳ ମାନବ ସମାଜ ଉପରେ ନୁହେଁ, ପରିବେଶ ଉପରେ ମଧ୍ୟ ପଡ଼ିଛି ।

ସୁନାମି ପରେ ଏହାର ପ୍ରତିକ୍ରିୟା ବିଭିନ୍ନ ସ୍ତରରେ ଉପଲବ୍ଧି ହୋଇଛି । ସୁନାମି ପ୍ରଭାବିତ ଅଞ୍ଚଳରେ ଟାଇଫଏଡ଼, କଲେରା, ହେପାଟାଇଟ୍ସ, ଡାଇରିଆ, ଡେଙ୍ଗୁ, ମେଲେରିଆ ପରି ଭୟଙ୍କର ରୋଗମାନ ପରିଲକ୍ଷିତ ହୋଇଛି । ଜଳବାୟୁ ଦୂଷିତ ହୋଇପଡ଼ିଛି । ହଜାର ହଜାର ମୃତ ଦେହ ପଚିଯିବାରୁ ପରିବେଶ ଅନେକ ପରିମାଣରେ ଅସ୍ୱାସ୍ଥ୍ୟକର ହୋଇପଡ଼ିଛି । ହଜାର ହଜାର ବର୍ଷର ସୁରକ୍ଷିତ ସାମୁଦ୍ରିକ ପରିବେଶ ନଷ୍ଟ ହୋଇଯାଇଛି । ଏହାଦ୍ୱାରା ସମୁଦ୍ର ଖାଦ୍ୟ ବିଶୃଙ୍ଖଳିତ ହୋଇପଡ଼ିଛି । ଭାରତ ମହାସାଗରର ପରିବେଶ ଦୂଷିତ ହୋଇଥିବାରୁ ସାମୁଦ୍ରିକ ପ୍ରାଣୀ ବ୍ୟାପକ କ୍ଷତିର ସମ୍ମୁଖୀନ ହୋଇଛନ୍ତି । ସାମୁଦ୍ରିକ ମାଛ ଉତ୍ପାଦନରେ ହ୍ରାସ ଘଟିଛି । ଅନେକ ସାମୁଦ୍ରିକ ଜୀବ ବିନାଶ ହୋଇଯିବାର ଆଶଙ୍କା ଉପୁଜିଛି । ସାଧାରଣତଃ ସମୁଦ୍ର ସମୀପବର୍ତ୍ତୀ ସ୍ଥଳ ଓ ଜଳଭାଗରେ ଯେଉଁ ତିନିପ୍ରକାର ଇକୋସିଷ୍ଟମ ରହିଥାଏ, ଯଥା—ଜୁଆରିଆ ଅଞ୍ଚଳରେ ଲୁଣା ଜଙ୍ଗଲ, ଜଳଭାଗରେ ପ୍ରବାଳ ଗଦା ଏବଂ ଶୈବାଳ ରାଶି, ସୁନାମି ଦ୍ୱାରା ଏହା ନଷ୍ଟଭ୍ରଷ୍ଟ ହୋଇଯିବାରୁ ସମୁଦ୍ରର ଖାଦ୍ୟ ଶୃଙ୍ଖଳା ବିପର୍ଯ୍ୟସ୍ତ ହୋଇପଡ଼ିଛି । ସୁନାମି ଯୋଗୁ ପଙ୍କ ଓ କାଦୁଅ ମାଡ଼ିଯିବାରୁ ବହୁ କୋରାଲ ଲିଫ୍ ଓ ସାମୁଦ୍ରିକ ଘାସ ନଷ୍ଟ ହୋଇଯାଇଛି । ଉପକୂଳବର୍ତ୍ତୀ ଅଞ୍ଚଳର ଜଳରେ ଲୁଣି ଅଂଶ ବୃଦ୍ଧି ପାଇବା ଯୋଗୁଁ ପାନୀୟ ଜଳ ସମସ୍ୟା ସୃଷ୍ଟି ହୋଇଛି । ଉପକୂଳବର୍ତ୍ତୀ ଅଞ୍ଚଳରେ ଅନେକ ପର୍ଯ୍ୟଟନସ୍ଥଳୀ ନଷ୍ଟ ହୋଇଯାଇଥିବାରୁ ପର୍ଯ୍ୟଟକମାନଙ୍କର ସଂଖ୍ୟା ହ୍ରାସ ପାଇଛି । ଏହାଦ୍ୱାରା ଏହି ଅଞ୍ଚଳର ଆର୍ଥିକ ବିକାଶ ସ୍ଥାଣୁ ହୋଇପଡ଼ିଛି । ଆଣ୍ଡାମାନ ଏବଂ ନିକୋବର ଦ୍ୱୀପପୁଞ୍ଜର ରାଜଧାନୀ ପୋର୍ଟବ୍ଲେଆର ଠାରୁ ୧୩୫ କି.ମି. ପୂର୍ବ ଆଣ୍ଡାମାନ ସାଗରରେ ରହିଥିବା ଜୀବନ୍ତ ଆଗ୍ନେୟଗିରି ସୁନାମି ପ୍ରଭାବରେ ସକ୍ରିୟ ହୋଇଉଠିଛି । ଏଠାରୁ ଲାର୍ଭା ଉଦ୍‌ଗୀରଣ ହେଉଥିବାରୁ ବିପଦର ସମ୍ଭାବନା ଦେଖାଦେଇଛି । ସୁନାମି ପରେ ବରତଙ୍ଗ ଦ୍ୱୀପସ୍ଥିତ କାଦୁଅ ଆଗ୍ନେୟଗିରି ମଧ୍ୟ ଉଦ୍‌ଗୀରଣ ହୋଇଛି । ଆଣ୍ଡାମାନରେ ବହୁ ଆଗ୍ନେୟଗିରି ସୁପ୍ତ ଅବସ୍ଥାରେ ରହିଛି । ସୁନାମି ପରେ ଏଥିରୁ କେତେକ ସକ୍ରିୟ ହୋଇପଡ଼ିଛି । ଆଣ୍ଡାମାନର କେତେଗୁଡ଼ିଏ ଦ୍ୱୀପ ବୁଡି ଯାଇଥିବାର ଜଣାଯାଇଛି । ପର୍ଯ୍ୟଟକଙ୍କ ଆକର୍ଷଣର କେନ୍ଦ୍ର କଚତାଲ ଦ୍ୱୀପ ମଧ୍ୟ ବୁଡ଼ିଯାଇଛି । ଆଣ୍ଡାମାନ ନିକୋବରର ଭୌଗୋଳିକ ସ୍ଥିତିରେ ମଧ୍ୟ ପରିବର୍ତ୍ତନ ଆସିଛି । ତେଣୁ ସୁନାମି ଦ୍ୱାରା ଭାରତର ପରିବେଶ ଓ ଜନସମାଜ ବହୁ ପରିମାଣରେ କ୍ଷତିଗ୍ରସ୍ତ ହୋଇଛି ।

ବିଜ୍ଞାନର ଅଗ୍ରଗତି ସଙ୍ଗେ ସଙ୍ଗେ ମଣିଷ ଆଜି ବହୁ ନୂତନ ତଥ୍ୟ ଆବିଷ୍କାର କରିବାକୁ ସମର୍ଥ ହୋଇପାରିଛି । ତଥାପି ସବୁ କ୍ଷେତ୍ରରେ ପ୍ରକୃତିର ରହସ୍ୟ ଉନ୍ମୋଚନ୍ କରିପାରି ନାହିଁ । ଏହାସତ୍ତ୍ୱେ ତାର ପ୍ରୟାସ ଜାରି ରହିଛି । ୧୯୬୪ ମସିହାରେ ଆଲାସ୍କାରେ ସୁନାମିର ତାଣ୍ଡବଲୀଳା ଦେଖି ଅଷ୍ଟ୍ରେଲିଆ, ଦକ୍ଷିଣ ଆମେରିକା, ଉତ୍ତର ଆମେରିକା ସମେତ ଅନେକ ଦେଶ ଚକିତ ହୋଇପଡ଼ିଥିଲେ । ୧୯୬୫ ମସିହାରେ ୨୬ ଗୋଟି ଦେଶର ସହଯୋଗରେ ପ୍ରତିଷ୍ଠିତ ହେଲା "ସୁନାମି ଲହରୀ ମନିଟରିଂ ଏବଂ ଇନ୍‌ଫରମେସନ୍ ପ୍ରଣାଳୀ" । ସମୁଦ୍ର ମଧ୍ୟରେ କମ୍ପନ ସୃଷ୍ଟି

ହେବା ପୂର୍ବରୁ ଏହାର ସୂଚନା ବୈଜ୍ଞାନିକ ମାନଙ୍କୁ ମିଳିପାରିବ ଓ ତାହାକୁ ସେମାନେ କୃତ୍ରିମ ଉପଗ୍ରହ ମାଧ୍ୟମରେ ଟେଲିଭିଜନ ଦ୍ୱାରା ଉପକୂଳବର୍ତ୍ତୀ ଅଞ୍ଚଳକୁ ଜଣାଇ ଲୋକମାନଙ୍କୁ ସତର୍କ କରିଦେଇ ପାରିବେ । ଏହାଦ୍ୱାରା ଅନେକ ଧନଜନ ରକ୍ଷା କରାଯାଇ ପାରିବ । ଆମେରିକା, ଇଂଲଣ୍ଡ, ଫ୍ରାନ୍ସ, ନିଉଜିଲ୍ୟାଣ୍ଡ, ଅଷ୍ଟ୍ରେଲିଆ ସମେତ ୟୁରୋପର ଅନ୍ୟ କେତୋଟି ଦେଶ ତଥା ଏସିଆର ଜାପାନ, କୋରିଆ, ଚୀନ ଆଦି ଏହି ''ପାସିଫିକ୍ ସୁନାମି ଓ୍ୱାର୍ଣ୍ଣିଂ ସେଣ୍ଟର''ର ସଦସ୍ୟ । ଭାରତ ଓ ଶ୍ରୀଲଙ୍କା ଏହାର ସଦସ୍ୟ ନୁହନ୍ତି । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଇଣ୍ଡୋନେସିଆ ଏହାର ସଦସ୍ୟଭୁକ୍ତ ରାଷ୍ଟ୍ର ହୋଇଥିଲେହେଁ ସୁନାମି ସମ୍ପର୍କରେ ସେ ଆଗୁଆ ସୂଚନା ପାଇପାରି ନଥିଲା । ବିଶେଷଜ୍ଞମାନେ କହିଥାନ୍ତି ଯେ ସମୁଦ୍ରତଟରେ ସୁନାମି ବିଚ୍ଛୁରିତ ହୋଇପଡ଼ିବାର କେତେଘଣ୍ଟା ପୂର୍ବରୁ ସେଠାକୁ ବିପଦ ସଙ୍କେତ ପଠାଇଦେବା ସମ୍ଭବ । ବର୍ତ୍ତମାନ ସୁନାମି ସମ୍ପର୍କରେ ସତର୍କ ସୂଚନା ତିନିଗୋଟି ପଦ୍ଧତିରେ କାର୍ଯ୍ୟକାରୀ ହେଉଛି । ହାୱାଇ ଦ୍ୱୀପର ହନୋଲୁଲୁଠାରେ ପ୍ରଶାନ୍ତ ମହାସାଗରର ସୁନାମି ସତର୍କ କେନ୍ଦ୍ର ପ୍ରତିଷ୍ଠିତ ହୋଇଛି; ଯେଉଁଠୁ ଏହି ମହାସାଗରର ଦୂରବର୍ତ୍ତୀ ସ୍ଥାନକୁ ସୁନାମି ସମ୍ପର୍କରେ ସୂଚନା ଦିଆଯାଇପାରୁଛି । ଦ୍ୱିତୀୟ ପଦ୍ଧତିରେ ପାଞ୍ଚୋଟି ଆଞ୍ଚଳିକ ସତର୍କ ପଦ୍ଧତି ରହିଛି । ତନ୍ମଧ୍ୟରୁ ଦୁଇଟି ଯୁକ୍ତରାଷ୍ଟ୍ର ଆମେରିକାରେ ଏବଂ ଜାପାନ, ରୁଷିଆ, ଫ୍ରାନ୍ସ, ପଲିନେସିଆରେ ଗୋଟିଏ ଲେଖାଏଁ ପ୍ରତିଷ୍ଠିତ । ତୃତୀୟ ପଦ୍ଧତିରେ ଚିଲି ଓ ଜାପାନଠାରେ ସ୍ଥାନୀୟ ସତର୍କ ପ୍ରହରୀ ରୂପେ ଅବସ୍ଥିତ । ସମସ୍ତ ପ୍ରକାର ସତର୍କତା ସତ୍ତ୍ୱେ ଏପରି ଏକ ବିରାଟ ବିପର୍ଯ୍ୟୟ ସଂଘଟିତ ହୋଇଗଲା । ଏଥିପାଇଁ ଆହୁରି ସତର୍କ ହେବାକୁ ପଡ଼ିବ । ବିଶେଷକରି ସାମ୍ପ୍ରତିକ ପରିସ୍ଥିତିରେ ଭାରତ 'ସୁନାମି ଓ୍ୱାର୍ଣ୍ଣିଂ ସେଣ୍ଟର'ର ସଦସ୍ୟ ହେବାର ଆବଶ୍ୟକତା ଦେଖାଦେଇଛି । ଆମେରିକାରେ ଭୂକମ୍ପ ଓ ପ୍ରାକୃତିକ ବିପର୍ଯ୍ୟୟକୁ ନେଇ ଚର୍ଚ୍ଚା କରୁଥିବା ''ଇଉନାଇଟେଡ୍ ଷ୍ଟେଟସ୍ ଜିଓଲଜିକାଲ ସର୍ଭେ' (United States Geological Survey) ପରି ଅନୁଷ୍ଠାନ ଭାରତରେ ମଧ୍ୟ ପ୍ରତିଷ୍ଠା ହେବା ଜରୁରୀ ।

ଭାରତ ଅତୀତରେ ସୁନାମିର ସମ୍ମୁଖୀନ ହୋଇନଥିବାରୁ ସୁନାମି ସମ୍ପର୍କୀୟ କୌଣସି ତଥ୍ୟ ତା' ନିକଟରେ ନଥିଲା । ଏ ସମ୍ପର୍କରେ ବିଧିବଦ୍ଧ ବୈଜ୍ଞାନିକ ଅନୁଶୀଳନ ମଧ୍ୟ ଭାରତରେ ହୋଇନାହିଁ । ଭାରତର ଜନସାଧାରଣ ମଧ୍ୟ ଏଥିପ୍ରତି ସତର୍କ ନୁହନ୍ତି । ଖବରକାଗଜରେ ବାହାରିଛି ଯେ, ସୁନାମି ସମ୍ବାଦ ଶୁଣି ଆଲାସ୍କା ଓ ହାୱାଇ ଉପକୂଳର ଜନସାଧାରଣ ଦୂରକୁ ନିରାପଦ ସ୍ଥାନକୁ ଧାଇଁ ପଳାଉଥିବା ସମୟରେ ଏହାର ନାମ ନ ଶୁଣିଥିବା ସରଳ ଭାରତୀୟ କେତେ ବଡ଼ ଢେଉ ଆସୁଛି ବୋଲି ଦେଖିବାକୁ ସମୁଦ୍ର କୂଳକୁ ଚାଲିଯାଇଥିଲେ । ସେଠାରେ କୌଣସି ସୁନାମି ସୂଚନା କେନ୍ଦ୍ର ନଥିବାରୁ ଅକାଳରେ ସମୁଦ୍ର ଗର୍ଭରେ ସେମାନେ ଲୀନ ହୋଇଗଲେ । ତେଣୁ ବର୍ତ୍ତମାନଠାରୁ ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳରେ ସୁନାମି ସମ୍ପର୍କରେ ଜାଣିବା ନିମିତ୍ତ ସୂଚନା କେନ୍ଦ୍ର ପ୍ରତିଷ୍ଠା କରିବାର ଜରୁରୀ ଆବଶ୍ୟକତା ରହିଛି । ବର୍ତ୍ତମାନ କେତେକ ବୈଜ୍ଞାନିକ ମତପୋଷଣ କରନ୍ତି ଯେ, ପଶୁପକ୍ଷୀମାନେ ପାଣିପାଗ ସମ୍ପର୍କରେ ଆଗୁଆ ସୂଚନା ପାଇଥାନ୍ତି । ଶ୍ରୀଲଙ୍କାରେ ସୁନାମି ଯୋଗୁଁ ହଜାର ହଜାର ମଣିଷଙ୍କ ଶବ ମିଳୁଥିବା ବେଳେ ଗୋଟିଏ ହେଲେ ପଶୁ ପକ୍ଷୀଙ୍କର

ଶବ ମିଳୁ ନାହିଁ । ଭାରତରେ ମଧ୍ୟ ଠିକ୍ ସେହିକଥା । ଏହି ପରିପ୍ରେକ୍ଷୀରେ ପ୍ରାକୃତିକ ବିପର୍ଯ୍ୟୟର ମୁକାବିଲା ପାଇଁ ପଶୁପକ୍ଷୀମାନଙ୍କର ମନସ୍ତତ୍ତ୍ୱ ପରୀକ୍ଷା କରି ତାକୁ ଗବେଷଣା କାର୍ଯ୍ୟରେ ଉପଯୋଗ କରିବା ଅତ୍ୟନ୍ତ ଜରୁରୀ । ଭୂମିକମ୍ପ ପୂର୍ବରୁ ପକ୍ଷୀମାନେ ଆକାଶରେ ଉଡ଼ିବା, କୁକୁରମାନେ ଏକସଙ୍ଗରେ ଭୁକିବା, ମୂଷା ଓ ସାପମାନେ ଗାତରୁ ବାହାରି ଆସିବା, ମାଛମାନେ ପାଣି ଉପରକୁ ଡେଇଁବା ଆଦି କାର୍ଯ୍ୟ କରିଥାନ୍ତି । ତେଣୁ ବର୍ତ୍ତମାନ ପଶୁପକ୍ଷୀଙ୍କ ଉପରେ ଗବେଷଣା କରି ପ୍ରାକୃତିକ ବିପର୍ଯ୍ୟୟର ପୂର୍ବାନୁମାନ କରିବାକୁ ପଡ଼ିବ । ଧୀରେ ଧୀରେ ସମୁଦ୍ରକୂଳର ହେନ୍ତାଳ ବଣ ଗୁଡ଼ିକ ଯତ୍ନ ଅଭାବରୁ ଓ ମଣିଷର ଅପରିଣାମଦର୍ଶିତା ଯୋଗୁ ନଷ୍ଟ ହୋଇଯାଉଛି । ଅଧିକ ହେନ୍ତାଳ ବଣ ସୃଷ୍ଟି କରାଗଲେ ଅନେକ ପ୍ରାକୃତିକ ବିପର୍ଯ୍ୟୟର ମୁକାବିଲା କରାଯାଇପାରିବ । ସ୍ୱାଧୀନତା ପୂର୍ବରୁ କେବଳ ଓଡ଼ିଶାରେ ୧୦୦୦ ବର୍ଗ କି.ମି. ହେନ୍ତାଳବଣ ରହିଥିବା ସମୟରେ ବର୍ତ୍ତମାନ ଏହା ହ୍ରାସ ପାଇ ୨୦୦ ବର୍ଗ କି.ମି.ରେ ପହଞ୍ଚିଲାଣି । ପରିବେଶବିତ୍‌ମାନେ କୁହନ୍ତି ସାମୁଦ୍ରିକ ତୋଫାନ ବା ସୁନାମି ଢେଉକୁ ପ୍ରତିରୋଧ କରିବାର ଅନ୍ୟତମ ପ୍ରାକୃତିକ ସୁରକ୍ଷାକେନ୍ଦ୍ର ହେଉଛି ବାଲୁକାସ୍ତୂପ । ଗୋଟିଏ ଗୋଟିଏ ବାଲୁକାସ୍ତୂପ ୮୦ରୁ ୯୦ ଫୁଟ୍ ପର୍ଯ୍ୟନ୍ତ ଉଚ୍ଚତା ବିଶିଷ୍ଟ ହୋଇଥାଏ । ସୁନାମି ଢେଉକୁ ଅନେକ ପରିମାଣରେ ଏହା ପ୍ରତିହତ କରିପାରିଥାଏ; ମାତ୍ର ୧୯୮୦ ପରେ ସ୍ୱିଡ଼େନ ପରିବେଶବିତ୍‌ମାନଙ୍କ ପରାମର୍ଶରେ ସବୁଜବଳୟ ସୃଷ୍ଟି ପାଇଁ ଏହି ବାଲୁକାସ୍ତୂପଗୁଡ଼ିକୁ ଧ୍ୱଂସ କରାଗଲା । ଝାଉଁବଣ ତିଆରି କରାଗଲା । ଅଷ୍ଟ୍ରେଲିଆ ପରିବେଶବିତ୍‌ମାନ ମତ ଦେଇ କହିଥାନ୍ତି ସମୁଦ୍ର କୁଆର ଆସୁଥିବା ଅଞ୍ଚଳଠାରୁ ଅତି କମ୍‌ରେ ୧୦୦ ମିଟର ପରେ ସବୁଜ ବଳୟ ସୃଷ୍ଟି କରିବା ଉଚିତ । ଏଣୁ ବର୍ତ୍ତମାନ ଆଉ ବାଲୁକାସ୍ତୂପ ନଷ୍ଟ ନକରି ସେଗୁଡ଼ିକୁ ସୁରକ୍ଷା କରିବା ଆବଶ୍ୟକ । ଏଥିପାଇଁ ଉଭୟ ସରକାର ଓ ଜନସାଧାରଣ ସତର୍କ ହେବା ଉଚିତ ।

ସୁନାମିର ଧ୍ୱଂସକାରୀ ରୂପ ଆଜି ସମସ୍ତଙ୍କୁ ସ୍ତବ୍ଧ କରିଦେଇଛି । ବିଜ୍ଞାନ ବଳରେ ବଳିୟାନ୍ ମଣିଷ ଅସହାୟ ହୋଇପଡ଼ିଛି ପ୍ରକୃତିର ପ୍ରତିକ୍ରିୟା ନିକଟରେ । ଏଥିପାଇଁ ଆମେମାନେ ଯେ ଅନେକ ପରିମାଣରେ ଦାୟୀ, ଅସ୍ୱୀକାର କରାଯାଇ ନପାରେ । ପ୍ରକୃତି ନିଜର ସୁରକ୍ଷାପାଇଁ ବହୁ ଜିନିଷ ସୃଷ୍ଟି କରିଛି । ମାତ୍ର ସ୍ୱାର୍ଥାନ୍ୱେଷୀ ମନୁଷ୍ୟ ସେଗୁଡ଼ିକୁ ନଷ୍ଟଭ୍ରଷ୍ଟ କରି ଆଜି ନିଜ ପାଇଁ ବିପଦକୁ ଟାଣି ଆଣିଛି । ବର୍ତ୍ତମାନ ସମୟ ଆସିଛି ଅବଶିଷ୍ଟ ରହିଯାଇଥିବା ପ୍ରାକୃତିକ ସମ୍ପଦ ଗୁଡ଼ିକର ଉଚିତ ସୁରକ୍ଷା କରିବାର । ବିଭିନ୍ନ ସୂଚନା କେନ୍ଦ୍ର ପ୍ରତିଷ୍ଠା ସହିତ ହେନ୍ତାଳ ବଣ, ବାଲୁକାସ୍ତୂପ ସୃଷ୍ଟି ତଥା ପଶୁପକ୍ଷୀମାନଙ୍କର ଚରିତ୍ରକୁ ଅନୁଶୀଳନ କରି ସେଗୁଡ଼ିକୁ ଉଚିତ୍ ମାର୍ଗରେ ବିନିଯୋଗ କରିପାରିଲେ, ପ୍ରାକୃତିକ ବିପର୍ଯ୍ୟୟକୁ କିଛି ପରିମାଣରେ ପ୍ରତିହତ କରାଯାଇପାରିବ । ଏଥିପାଇଁ ସରକାରୀ, ବେସରକାରୀ ଓ ସାଧାରଣ ଜନତା—ସମସ୍ତେ ସଚେତନ ରହିବା ଉଚିତ ।



# ବାର୍ଡ଼ ଫ୍ଲୁ

(ଉପକ୍ରମ – ବାର୍ଡ଼ ଫ୍ଲୁ କ'ଣ ? –ବିଶ୍ୱରେ ବାର୍ଡ଼ ଫ୍ଲୁର ଇତିହାସ–ବାର୍ଡ଼ ଫ୍ଲୁ କାହିଁକି ଓ କିପରି ସଂକ୍ରମଣ ହୁଏ ? –ସଂକ୍ରମଣ ସମୟ ଓ ଲକ୍ଷଣ–ପ୍ରତିଷେଧକ ଓ ଚିହ୍ନଟ ବ୍ୟବସ୍ଥା–ଉପସଂହାର)

ଫେବୃଆରୀ ୧୮ ତାରିଖ, ୨୦୦୬ ମସିହାରେ ଏବଂ ୨୦୦୮ ମସିହାର ପ୍ରଥମ ଭାଗରେ ବିଭିନ୍ନ ସମ୍ବାଦପତ୍ର ଓ ଗଣମାଧ୍ୟମରେ ବାର୍ଡ଼ ଫ୍ଲୁ ସମ୍ପର୍କରେ ଖବର ପ୍ରଚାରିତ ହେବାପରେ ସବୁଆଡ଼େ କୋକୁଆ ଭୟ ଖେଳିଯାଇଛି । ମହାରାଷ୍ଟ୍ରର ନନ୍ଦୁରବାର ଜିଲ୍ଲାର ନଭପୁର ଓ ଧୂଲିଆରେ ଗୋଟିଏ ସପ୍ତାହ ମଧ୍ୟରେ ଏକ ଲକ୍ଷରୁ ଅଧିକ କୁକୁଡ଼ା ମରିବାଦ୍ୱାରା ଏହି ରୋଗ ବ୍ୟାପିଛି ବୋଲି ଜଣାପଡ଼ିଲା । ସେହିପରି ପଶ୍ଚିମବଙ୍ଗରେ ୨୦୦୭ରେ ହଜାର ହଜାର କୁକୁଡ଼ା ମରିଛନ୍ତି । ୨୦୦୬ରେ ଏହା ମହାରାଷ୍ଟ୍ରର ସୀମାନ୍ତବର୍ତ୍ତୀ ଗୁଜୁରାଟକୁ ମଧ୍ୟ ବ୍ୟାପିଯାଇଥିଲା । ଗୁଜୁରାଟର ସୁରଟର ଏକ କୁକୁଡ଼ା ଫାର୍ମର ମାଲିକଙ୍କ ମୃତ୍ୟୁ ପରେ ସମଗ୍ର ଭାରତରେ ବାର୍ଡ଼ ଫ୍ଲୁ ପାଇଁ ଉଦ୍‌ବେଗ ପ୍ରକାଶ ପାଇଥିଲା । ରୋଗ ସଂକ୍ରମଣ ଭୟରେ ମହାରାଷ୍ଟ୍ର ଓ ଗୁଜୁରାଟରେ ୧୦ ଲକ୍ଷରୁ ଅଧିକ କୁକୁଡ଼ାଙ୍କୁ ମାରିଦିଆଯାଇଥିଲା । କୁକୁଡ଼ା ଚାଷୀଙ୍କୁ ମଧ୍ୟ ଉପଯୁକ୍ତ ପରିମାଣରେ କ୍ଷତିପୂରଣ ଦିଆଯାଇଛି । ପଞ୍ଚାନବେ ଜଣଙ୍କର ରକ୍ତର ନମୁନା ପରୀକ୍ଷାପାଇଁ ପଠାଯାଇଥିଲା । ନଭପୁରର ତିନି କିଲୋମିଟର ବ୍ୟାସାର୍ଦ୍ଧ ମଧ୍ୟରେ ବସବାସ କରୁଥିବା ସମସ୍ତ ଗ୍ରାମର ଅଧିବାସୀମାନଙ୍କର ସ୍ୱାସ୍ଥ୍ୟ-ପରୀକ୍ଷା କରାଯାଇଛି । ସମ୍ପ୍ରତି ଏସିଆର ଅନେକ ଦେଶରେ, ଏପରିକି ଆଫ୍ରିକାର ମିଶର ତଥା ୟୁରୋପର ଭିଏନାରେ ବାର୍ଡ଼ ଫ୍ଲୁ ସଂକ୍ରମିତ ହୋଇଥିବା ଖବର ମିଳିଛି । ୨୦୦୮ରେ ପଶ୍ଚିମବଙ୍ଗରେ ବ୍ୟାପୀଥିବା ବାର୍ଡ଼ ଫ୍ଲୁ ଯୋଗୁଁ ଲକ୍ଷ ଲକ୍ଷ କୁକୁଡ଼ାଙ୍କୁ ମାରିଦିଆଗଲା । ତେବେ ବାର୍ଡ଼ ଫ୍ଲୁ କ'ଣ ? ଏହା କାହିଁକି ହୁଏ ? ଏହାର ପ୍ରତିଷେଧକ ବ୍ୟବସ୍ଥା କ'ଣ ? ସେ ସମ୍ପର୍କରେ ଏଠାରେ ସାମାନ୍ୟ ସୂଚନା ପ୍ରଦାନ କରାଗଲା ।

ବାର୍ଡ଼ ଫ୍ଲୁ ଏକ ଭୂତାଣୁଜନିତ ରୋଗ । ଯେଉଁ ଭୂତାଣୁ ଦ୍ୱାରା ଏହି ରୋଗ ହୋଇଥାଏ, ତାହାକୁ ଏଚ୍ ୫ ଏନ୍ ୧ ବୋଲି କୁହାଯାଇଥାଏ । ଭୂତାଣୁ ବିଜ୍ଞାନୀମାନେ ଆଶଙ୍କା ପ୍ରକାଶ କରନ୍ତି, ଯଦି ଉପଯୁକ୍ତ ସମୟରେ ଏହାର ନିରାକରଣ କରାଯାଇ ନପାରେ, ତେବେ ଏହା ମହାଦେଶୀୟ ରୂପ ନେଇପାରେ । ଯଦି ଏପରି ହୁଏ ତେବେ ବିଶ୍ୱର ୧୪ କୋଟି ୨ ଲକ୍ଷ ଲୋକ ମୃତ୍ୟୁବରଣ କରିବେ । ଭାରତ ଓ ଚୀନ ଏହାଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହେବ । କୁକୁଡ଼ା ଓ ଅନ୍ୟାନ୍ୟ ପକ୍ଷୀମାନଙ୍କୁ ଏହି ରୋଗ ମୁଖ୍ୟତଃ ହେଉଥିଲେହେଁ, ସେମାନଙ୍କଠାରୁ ମନୁଷ୍ୟ ଦେହକୁ ସଂକ୍ରମିତ ହୋଇଥାଏ । ବାର୍ଡ଼ ଫ୍ଲୁ ଭୂତାଣୁ ଖୁବ୍ ବେଗରେ କ୍ରୋମୋଜମ୍ ସଂଯୋଜନା କରୁଥିବାରୁ ଏହାକୁ ସଠିକ୍ ନିର୍ଦ୍ଧାରଣରେ ସମସ୍ୟା ସୃଷ୍ଟି କରୁଛି । ଆଭିଆନ୍ ଇନ୍‌ଫ୍ଲୁଏଞ୍ଜା (ବାର୍ଡ଼ ଫ୍ଲୁ) ଏକ ସାଂଘାତିକ ଭୂତାଣୁ ଜନିତ ରୋଗ । ବତକ, ଟର୍କି, କୁକୁଡ଼ା, ପାଣିକୁଆ, ଗିନି କୁକୁଡ଼ା ଏହି ଭୂତାଣୁଦ୍ୱାରା

ବିଶେଷ ଭାବରେ ଆକ୍ରାନ୍ତ ହୋଇଥାନ୍ତି । କେହି କେହି ଏହି ରୋଗକୁ ଫାଉଲ ପ୍ଲେଗ୍ ରୋଗ ମଧ କହିଥାନ୍ତି । ଏଚ୍ ୫ ଏନ୍ ୧ ଭୂତାଣୁ ଅର୍ଥୋମିକ୍ସୋ ପରିବାର ଅନ୍ତର୍ଭୁକ୍ତ । ଏହି ଇନ୍‌ଫ୍ଲୁଏଞ୍ଜା ଭୂତାଣୁ 'ଏ' ଶ୍ରେଣୀ ଅନ୍ତର୍ଭୁକ୍ତ । ବିଖଣ୍ଡିତ ରୂପଯୋଗୁଁ ଏହି ଭୂତାଣୁଟି ସହଜରେ ତାର ରୂପ ଓ ଆକୃତି ପରିବର୍ତ୍ତନ କରିପାରେ, ଯେଉଁଥିପାଇଁ ବୈଜ୍ଞାନିକ ମାନଙ୍କ ଦ୍ୱାରା ସେମାନଙ୍କର ଚିହ୍ନଟ କଷ୍ଟସାଧ ହୋଇଥାଏ । ଶୀତଳ ବା ଥଣ୍ଡା ପରିବେଶରେ ଏହି ଭୂତାଣୁ ମାଟି ତଳେ ଦୀର୍ଘଦିନ ଧରି ବଞ୍ଚି ରହିପାରେ । ଜୀବ ବିଜ୍ଞାନୀଙ୍କ ମତରେ ଏହା ୩୨ ଡିଗ୍ରୀ ଫାରେନ୍ ହାଇଟ୍ ତାପମାତ୍ରାରେ ଏକ ମାସରୁ ଅଧିକ ଏବଂ ୭୨ ଡିଗ୍ରୀ ଫାରେନ୍ ହାଇଟ୍ ତାପମାତ୍ରାରେ ଚାରିଦିନ ପର୍ଯ୍ୟନ୍ତ ବଞ୍ଚି ରହିପାରେ ।

ସମଗ୍ର ବିଶ୍ୱରେ ପ୍ରଥମେ ଦକ୍ଷିଣପୂର୍ବ ଏସିଆରେ ଏହି ସାଂଘାତିକ ରୋଗର ଆବିର୍ଭାବ ହୋଇଥିଲା । ପରେ ପରେ ବିଶ୍ୱର ବିଭିନ୍ନ ଦେଶକୁ ଏହା ସଂକ୍ରମିତ ହୋଇଥିଲା । ଏହି ରୋଗଦ୍ୱାରା ଆକ୍ରାନ୍ତ ହୋଇ ଋଷିଆ, ଜାପାନ, ତୁର୍କୀ, କାନାଡ଼ା, ରୋମାନିଆ, ଚୀନ୍, ଇଣ୍ଡୋନେସିଆ, ଥାଇଲାଣ୍ଡ, ଫ୍ରାନ୍ସ, ଭିଏତ୍‌ନାମ ଆଦି ଦେଶରେ ବହୁ ବ୍ୟକ୍ତି ପ୍ରାଣ ହରାଇଛନ୍ତି । ୧୯୧୮ ମସିହାରେ ପ୍ରଥମେ ଏହାର ପ୍ରାରମ୍ଭିକ ରୂପ ଦେଖାଦେଇଥିଲା । ସେତେବେଳେ ଏହି ଭୂତାଣୁକୁ ଏଚ୍ ୧ ଏନ୍ ୧ ବୋଲି କୁହାଯାଉଥିଲା । ଏହି ରୋଗ ସେ ସମୟରେ ସ୍ପେନୀୟ ଫ୍ଲୁ ନାମରେ ବିଖ୍ୟାତ ଲାଭ କରିଥିଲା । ଏହାଦ୍ୱାରା ସାରା ବିଶ୍ୱରେ ୪ରୁ ୫ କୋଟି ପର୍ଯ୍ୟନ୍ତ ଲୋକ ମୃତ୍ୟୁବରଣ କରିଥିଲେ । ୧୯୫୨ ମସିହାର ଏହି ଭୂତାଣୁ ଏଚ ୨ ଏନ ୨ ନାମରେ ନାମିତ ହୋଇଥିଲା ତାର ପରିବର୍ତ୍ତିତ ରୂପ ଯୋଗୁଁ । ଏସିଆନ୍ ଫ୍ଲୁ ନାମରେ ବିଖ୍ୟାତ ଏହି ରୋଗରେ ପ୍ରାୟ ୪୦ ଲକ୍ଷ ଲୋକ ପ୍ରାଣ ବିସର୍ଜନ ଦେଇଥିଲେ । ୧୯୬୨ ମସିହାରେ ଏହି ଭୂତାଣୁର ଅନ୍ୟ ଏକ ପରିବର୍ତ୍ତିତ ରୂପ ଏଚ୍ ୩ ଏନ୍ ୨ ଦେଖା ଦେଇଥିଲା । ଏହାଦ୍ୱାରା ହଂକଂରେ ସାତଲକ୍ଷ ଲୋକଙ୍କର ଜୀବନ ହାନି ଘଟିଥିଲା । ବିଶ୍ୱର ବିଭିନ୍ନ ସ୍ଥାନରେ ଏହି ଭୂତାଣୁର ବିଭିନ୍ନ ରୂପ ଏହା ମଧ୍ୟରେ ପରିଲକ୍ଷିତ ହୋଇଛି । ୧୯୯୭ ମସିହାରେ ଏଚ୍ ୫ ଏନ୍ ୧ ଭୂତାଣୁଦ୍ୱାରା ସୃଷ୍ଟି ହୋଇଥିବା ଫ୍ଲୁରେ ହଂକଂରେ ସାତଜଣ ମୃତ୍ୟୁଲାଭ କରିଥିଲେ । ୨୦୦୩ ବାର୍ଡ଼ ଫ୍ଲୁ ରୋଗରେ ଜଣେ ମରିଥିବାର ପ୍ରମାଣ ମିଳିଛି । ୨୦୦୪ ଜାନୁଆରୀ ମାସରେ ଜାପାନ୍‌ରେ ଏହି ରୋଗର ସଂକ୍ରମଣ ଘଟିଥିଲା । ଏହି ବର୍ଷ ଭିଏତ୍‌ନାମ ଏବଂ ଥାଇଲାଣ୍ଡରେ ୮ ଜଣ ବ୍ୟକ୍ତି ମରିଥିବାର ପ୍ରମାଣ ରହିଛି । ୨୦୦୪ ମାର୍ଚ୍ଚରେ ଏସିଆରେ ୩୪ ଜଣ ଆକ୍ରାନ୍ତ ହୋଇଥିଲେ, ୨୩ ଜଣ ମୃତ୍ୟୁବରଣ କରିଥିଲେ । ଏହି ବର୍ଷ ଅଗଷ୍ଟ ମାସରେ ଭିଏତ୍ ନାମରେ ୩ ଜଣ ମରିଥିଲେ ଓ ଦଶକୋଟି କୁକୁଡ଼ାଙ୍କୁ ମାରି ଦିଆଯାଇଥିଲା । କାମ୍ବୋଡ଼ିଆରୁ ସଂକ୍ରମିତ ହୋଇଥିବା ବାର୍ଡ଼ ଫ୍ଲୁ ଯୋଗୁଁ ୨୦୦୫ ମସିହାରେ ଭିଏତ୍‌ନାମ୍‌ରେ ୧୨ଜଣ ବ୍ୟକ୍ତିଙ୍କର ଜୀବନହାନି ଘଟିଥିଲା । ୨୦୦୫ ମାର୍ଚ୍ଚରେ ଦକ୍ଷିଣ ଏସିଆରେ ୧୦ଟି ଦେଶକୁ ଏହା ସଂକ୍ରମିତ ହୋଇଥିବାରୁ ୫ କୋଟି କୁକୁଡ଼ାଙ୍କୁ ମାରିଦିଆଯାଇଥିଲା । ଏହି ବର୍ଷ ଅଗଷ୍ଟରେ ୩ଜଣ ଆକ୍ରାନ୍ତ ଓ ୨ ଜଣଙ୍କର ମୃତ୍ୟୁ; ନଭେମ୍ବର ମାସରେ ଇଣ୍ଡୋନେସିଆରେ ସାତଜଣ, ଚୀନ୍‌ରେ ତିନିଜଣଙ୍କର ମୃତ୍ୟୁ ଏବଂ ଡିସେମ୍ବର ମାସରେ ଚୀନର ଜଣେ,

ଇଣ୍ଡୋନେସିଆରେ ୨ ଜଣ ସମେତ ସମୁଦାୟ ୧୧ ଜଣଙ୍କର ମୃତ୍ୟୁ ହୋଇଥିଲା । ୨୦୦୬ ମସିହା ଫେବୃଆରୀ ମାସରେ ଏହା ଭାରତରେ ସଂକ୍ରମିତ ହେବା ଯୋଗୁଁ ଜଣଙ୍କର ମୃତ୍ୟୁ ଓ କିଛି ବ୍ୟକ୍ତି ଆକ୍ରାନ୍ତ ହୋଇଥିବାର ଜଣାଯାଏ । ଏହି ବାର୍ଡ଼ ଫ୍ଲୁ ଯୋଗୁଁ ଏହାର ଆରମ୍ଭ ଦିନଠାରୁ ବର୍ତ୍ତମାନ ପର୍ଯ୍ୟନ୍ତ ୨୦ କୋଟିରୁ ଅଧିକ କୁକୁଡ଼ାଙ୍କୁ ମାରି ଦିଆଯାଇଛି । ସମ୍ପ୍ରତି ଗବେଷଣାରୁ ଜଣାଯାଇଛି ଏହି ଭୂତାଣୁର ଚାରୋଟି ଭିନ୍ନଭିନ୍ନ ଜିନୀୟ ପରିବାର ରହିଛି । ବାର୍ଡ଼ ଫ୍ଲୁପରି ମାନବ ଫ୍ଲୁରେ ମଧ ଜିନୀୟ ସଂରଚନାରେ ପରିବର୍ତ୍ତନ ଘଟି ଗୋଟିଏ ମଣିଷ ଠାରୁ ଅନ୍ୟ ମଣିଷକୁ ଏହା ସଂକ୍ରମିତ ହୋଇଥାଏ ।

ପୂର୍ବରୁ କୁହାଯାଇଛି ବାର୍ଡ଼ ଫ୍ଲୁ ଏକ ଭୂତାଣୁଜନିତ ରୋଗ । ଏହି ରୋଗର ଭୂତାଣୁ ଆକ୍ରାନ୍ତ କୁକୁଡ଼ା ବା ରୋଗାକ୍ରାନ୍ତ ହୋଇଥିବା ଆଗନ୍ତୁକ ପକ୍ଷୀ ମାଧ୍ୟମରେ ଘୋଡ଼ା, ଘୁଷୁରୀ, ମନୁଷ୍ୟ ଆଦି ପ୍ରାଣୀମାନଙ୍କ ଠାରେ ଇନ୍‌ଫ୍ଲୁଏଞ୍ଜା ରୋଗ ସୃଷ୍ଟି କରିଥାଏ । ଏସିଆ ଓ ୟୁରୋପ ମହାଦେଶର ବହୁ ପକ୍ଷୀ ଯେଉଁମାନେ ବାର୍ଡ଼ ଫ୍ଲୁ ଦ୍ୱାରା ଆକ୍ରାନ୍ତ ହୋଇଥାନ୍ତି, ସେମାନେ ଖାଦ୍ୟାନ୍ୱେଷଣରେ ଆସିବା ଦ୍ୱାରା ଏହି ରୋଗ ସଂକ୍ରମିତ ହୋଇଥାଏ । ଏମାନଙ୍କ ପାଟିରୁ ନିର୍ଗତ ହେଉଥିବା ଲାଳ, ମଳ ଏବଂ ପର ମାଟି, ପାଣି ପବନରେ ମିଶିଥାଏ । ତାହା ସଂସ୍ପର୍ଶରେ ଆସିବାଦ୍ୱାରା ଅନ୍ୟ ଜୀବଜନ୍ତୁମାନେ ଆକ୍ରାନ୍ତ ହୋଇଥାନ୍ତି । ଏପରିକି ପରିବହନ ନିମିତ୍ତ ବ୍ୟବହୃତ ହେଉଥିବା ଯାନବାହନ ମାଧ୍ୟମରେ ମଧ ଏହି ରୋଗ ବ୍ୟାପି ପାରେ । ଏହି ବାର୍ଡ଼ ଫ୍ଲୁ ସାଧାରଣତଃ ପନ୍ଦର ପ୍ରକାର ହୋଇଥିଲେ ହେଁ ଏଚ୍ ୫ ଓ ଏଚ୍ ୭ ବିଶେଷ ଭାବରେ ଭୟଙ୍କର ତଥା ମାରାତ୍ମକ । ଅନେକ ସମୟରେ ଏହି ରୋଗ ଦ୍ୱାରା ଆକ୍ରାନ୍ତ ପକ୍ଷୀର ମଳ ଶୁଖିଯାଇ ମାଟିରେ ମିଶିଯାଇଥାଏ । ଏଥିରେ ଥିବା ଜୀବାଣୁ ମାଟିରେ ମିଶି ରହିଥାଏ । ମଣିଷର ଶ୍ୱାସକ୍ରିୟା ମାଧ୍ୟମରେ ଶରୀର ମଧକୁ ପ୍ରବେଶ କରେ, ସୁସ୍ଥ ମଣିଷ ଏଥିରେ ଆକ୍ରାନ୍ତ ହୋଇଥାନ୍ତି । କୁକୁଡ଼ା, ବତକ ଆଦି ପକ୍ଷୀମାନଙ୍କର ଅନ୍ତନଳୀରେ ଆଭିଏନ୍ ଇନ୍‌ଫ୍ଲୁଏଞ୍ଜା (ଏଚ୍ ୫ ଏନ୍ ୧) ନାମକ ଭୂତାଣୁର ଆବିର୍ଭାବ ଦ୍ୱାରା ମୁଖ୍ୟତଃ ଏହି ରୋଗ ହୋଇଥାଏ ।

ଏଚ୍ ୫ ଓ ଏନ୍ ୧ ଭୂତାଣୁ କୁକୁଡ଼ା ବା ଅନ୍ୟ ପକ୍ଷୀ ଅଥବା ଜୀବମାନଙ୍କ ଠାରେ ପ୍ରବେଶ କରିବା ପରେ ୩ରୁ ୭ ଦିନ ମଧରେ ଏହାର ଲକ୍ଷଣମାନ ପ୍ରକାଶିତ ହୋଇଥାଏ । କୁକୁଡ଼ା ଦେହରେ ଏହି ଭୂତାଣୁ ପ୍ରବେଶ କଲେ ସେ ଦୁର୍ବଳ ହୋଇଯାଏ । ପତଳା ପାଣିଆ ଝାଡ଼ା ହୁଏ । ଚୂଳ, ମୁକୁଟ ଓ ଆଖି ଫୁଲିଯାଏ ଏବଂ କଳା ପଡ଼ିଯାଏ । ସେ ଖାଦ୍ୟ ଖାଇବା ବନ୍ଦ କରି ସବୁବେଳେ ଘୁମେଇବା ଅବସ୍ଥାରେ ରହିଥାଏ । ଚାଲିବା ସମୟରେ ଘୂରି ଘୂରି ପାଦ ପକାଇଥାଏ । ଆକ୍ରାନ୍ତ କୁକୁଡ଼ା ଟାଣ ଖୋଳପା ନଥାଇ ଲତଲତିଆ ଅଣ୍ଡା ଦେଇଥାଏ କିମ୍ବା ଅଣ୍ଡା ଦେବା ବନ୍ଦ କରିଥାଏ । ପକ୍ଷୀମାନଙ୍କ ମାଧ୍ୟମରେ ମଣିଷ ଏହି ରୋଗରେ ଆକ୍ରାନ୍ତ ହୋଇଥାଏ । ମଣିଷକୁ ଏହି ରୋଗ ହେଲେ କାଶ, ତଣ୍ଟିଦରଜ, ଘୋଳାବିନ୍ଧା, ଜ୍ୱର ଆଦି ହୋଇଥାଏ । ମଣିଷର ଆଖିକୁ ଏହା ସଂକ୍ରମିତ ହେବା ସଙ୍ଗେ ସଙ୍ଗେ ନିମୋନିଆ ଲକ୍ଷଣ ପ୍ରକାଶ ପାଇଥାଏ । ଶ୍ୱାସନଳୀ ଫୁଲିଯାଇ ଯନ୍ତଣା ଦେଇଥାଏ ।

ଆଜି ମଣିଷ ଏକବିଂଶ ଶତାବ୍ଦୀରେ ପହଞ୍ଚି ଗଲାଣି । ବିଜ୍ଞାନ ବହୁକ୍ଷେତ୍ରରେ ଅଗ୍ରଗତି କରିଛି । ତଥାପି ବାର୍ଡ୍ ଫ୍ଲୁ ନିମିତ୍ତ ପ୍ରକୃଷ୍ଟ ପ୍ରତିଷେଧକ ଏଯାବତ୍ ଆବିଷ୍କାର ହୋଇପାରି ନାହିଁ । ଏହା ସତ୍ତ୍ୱେ ମଣିଷ କେତେକ ପ୍ରତିଷେଧକ ବ୍ୟବସ୍ଥା ଗ୍ରହଣ କଲେ ଏହି ରୋଗକୁ କିଛି ପରିମାଣରେ ପ୍ରତିହତ କରିପାରିବ । ଆମାଣ୍ଟାଡ଼ିନ୍-ହାଇଡ୍ରୋକ୍ଲୋରାଇଡ୍ ନାମକ ଔଷଧ ଏଥିପାଇଁ ବ୍ୟବହାର କରାଯାଇପାରେ । ଏତଦ୍‌ବ୍ୟତୀତ ରୋଗର ମାରାତ୍ମକତାରୁ ରକ୍ଷା ପାଇଁ ଟାମିଫ୍ଲୁ ଓ ରେଲେଞ୍ଜା ନାମକ ଦୁଇଟି ଔଷଧ ସେବନର ବ୍ୟବସ୍ଥା କଲେ ଏହାକୁ କିଛି ପରିମାଣରେ ପ୍ରତିରୋଧ କରାଯାଇପାରିବ । ଆଟେନ୍ୟୁ ଏଟେଡ଼ ଟିକା ଦ୍ୱାରା କିଛି ପରିମାଣରେ ଏହାକୁ ପ୍ରତିହତ କରାଯାଇପାରେ । ବର୍ତ୍ତମାନ ଉଦ୍‌ବେଗର ବିଷୟ ହେଉଛି ବାର୍ଡ୍ ଫ୍ଲୁ ରୋଗର ଭୂତାଣୁର ଜିନ୍‌ଗତ ଆକୃତି ପରିବର୍ତ୍ତନ ବାରମ୍ବାର ଘଟୁଥିବାରୁ ଆଣ୍ଟିବଡ଼ି ଦ୍ୱାରା ତାର ଚିହ୍ନଟ ସମ୍ଭବ ହେଉନାହିଁ । ଏଣୁ ଆଜି ବାର୍ଡ୍ ଫ୍ଲୁ ପାଇଁ ଯେଉଁ ପ୍ରତିଷେଧକ ପ୍ରସ୍ତୁତ ହେଉଛି ଆସନ୍ତା କାଲି ତାହା ଅକାମୀ ହୋଇଯାଉଛି । ଔଷଧ ଅପେକ୍ଷା ଅନ୍ୟ ପ୍ରକାର ପ୍ରତିଷେଧକ ବରଂ ଅଧିକ ଫଳପ୍ରଦ । ଏହି ରୋଗଦ୍ୱାରା ଆକ୍ରାନ୍ତ ବିଦେଶାଗତ ପକ୍ଷୀଙ୍କୁ ବାରଣ କରାଯିବା ସଙ୍ଗେ ସଙ୍ଗେ ସେମାନେ ରହୁଥିବା ହ୍ରଦ, ଜଳାଶୟ ଆଦିର ଜଳକୁ ବ୍ୟବହାର କରାନଯିବା ଉଚିତ । ଆମଦାନୀ କୁକୁଡ଼ା ଉପରେ କଟକଣା ଜାରି ହେବା ସଙ୍ଗେ ସଙ୍ଗେ, ତା'ର ଉପଯୁକ୍ତ ପରୀକ୍ଷା ହେବାର ଜରୁରୀ ଆବଶ୍ୟକତା ରହିଛି । କୁକୁଡ଼ା ଚାଷୀ କୁକୁଡ଼ା ମାନଙ୍କୁ ପରିଷ୍କାର ଘରେ ରଖି ସର୍ବଦା ଟଟକା ଓ ସୁଷମ ଖାଦ୍ୟ ଦେବା ସହିତ ବାହାର ପକ୍ଷୀ, ମନୁଷ୍ୟ, ଯାନବାହନ ଆଦିର ଫାର୍ମ ମଧ୍ୟକୁ ଅବାଧ ପ୍ରବେଶ ପ୍ରତି କଟକଣା ଜାରି କରିବା ଉଚିତ । ଯଥାସମୟରେ ପ୍ରତିଷେଧକ ଟିକା, ପରିଷ୍କାର ଓ ନିର୍ମଳ ପାନୀୟ ଜଳ ଯୋଗାଣ, ଆକ୍ରାନ୍ତ ପକ୍ଷୀକୁ ପୋଡ଼ିଦେବା ଅଥବା ଗଭୀର ଗର୍ତ୍ତ ମଧ୍ୟରେ ପୋତିଦେବାର ବ୍ୟବସ୍ଥା କଲେ ଏହି ରୋଗ ବିଶେଷ ଭାବରେ ସଂକ୍ରମିତ ହେବାର ସୁଯୋଗ ପାଏ ନାହିଁ । ଏହି ରୋଗର ଭୂତାଣୁ ୭୦° ସେଣ୍ଟିଗ୍ରେଡ୍ ଉତ୍ତାପରେ ୩୦ ମିନିଟ୍ ଗରମ କଲେ ମରିଯାଇଥାନ୍ତି । ତେଣୁ ଖାଦ୍ୟକୁ ଏହି ଉତ୍ତାପରେ ଗରମ କରି ଖାଇବା ଉଚିତ । ଯେଉଁଠାରେ ବାର୍ଡ୍ ଫ୍ଲୁ ରୋଗ ହୋଇଛି ବୋଲି ସନ୍ଦେହ ହେବ, ସଙ୍ଗେ ସଙ୍ଗେ ପଶୁ ଚିକିତ୍ସକଙ୍କ ସହିତ ପରାମର୍ଶ କରିବା ବିଧେୟ । ଏହି ରୋଗର ଚିହ୍ନଟ ପାଇଁ ମଧ୍ୟପ୍ରଦେଶର ଭୋପାଳ, ଇଜ୍ଜତନଗର, କୋଲକତା, ମୁକ୍ତେଶ୍ୱର ସ୍ଥିତ ଭାରତୀୟ ପଶୁ ଗବେଷଣା କେନ୍ଦ୍ରରେ ବ୍ୟବସ୍ଥା ରହିଛି । କୁକୁଡ଼ାର କଲିଜା, ଫୁସ୍‌ଫୁସ୍, ବୃକ୍କ, ହୃତ୍‌ପିଣ୍ଡ ଇତ୍ୟାଦିରେ ରହିଥିବା ରକ୍ତଚିହ୍ନ ବା ହେମୋରେଜେସ୍ ଇତ୍ୟାଦି ପରୀକ୍ଷା ଦ୍ୱାରା ଏହି ରୋଗ ଜଣାଯାଇଥାଏ । ଏଚ୍,ଏ, ଏଚ୍‌ଆଇ, ସିଏପିଟି, ଏଲିଶା ଇତ୍ୟାଦିର ପରୀକ୍ଷା ନିମିତ୍ତ କୁକୁଡ଼ା ରକ୍ତ ସଂଗ୍ରହ କରିବାକୁ ପଡ଼ିଥାଏ । ଯଥା ସମୟରେ ରୋଗ ଚିହ୍ନଟ ହୋଇପାରିଲେ ସଂକ୍ରମିତ ହେବାର ସମ୍ଭାବନା କମ୍ । ଯେଉଁମାନେ କୁକୁଡ଼ା ଫାର୍ମରେ କାମ କରୁଛନ୍ତି ସେମାନେ ସର୍ବଦା ଜୋତା, ଗ୍ଲୋବ୍‌ସ ଓ ମୁଖା ବ୍ୟବହାର କରିବା ସହିତ ସାବୁନ ଓ ଡିଟରଜେଣ୍ଟରେ ହାତ ସଫା କରିବା ଉଚିତ । ଏହାଦ୍ୱାରା ପକ୍ଷୀଠାରୁ ରୋଗ ସଂକ୍ରମିତ ହେବାର କମ୍ ସମ୍ଭାବନା ରହିଛି ।

ଭାରତରେ କୁକୁଡ଼ା ଚାଷ ଏକ ଶିଳ୍ପର ମାନ୍ୟତା ପାଇଛି । ଆନ୍ଧ୍ରପ୍ରଦେଶ, କର୍ଣ୍ଣାଟକ, ତାମିଲ୍‌ନାଡୁ ଓ କେରଳରେ ପ୍ରଚୁର ପରିମାଣରେ କୁକୁଡ଼ା ଚାଷ ଏବଂ ଅଣ୍ଡା ଉତ୍ପାଦନ କରାଯାଇଥାଏ । ଭାରତରେ ଏହି ଶିଳ୍ପରୁ ବାର୍ଷିକ ପ୍ରାୟ ୩୦,୦୦୦ କୋଟି ଟଙ୍କାରୁ ଅଧିକ ମିଳିଥାଏ ଓ ଏଥିପାଇଁ ୨୦ ଲକ୍ଷରୁ ଅଧିକ ବ୍ୟକ୍ତି ନିୟୋଜିତ ହୋଇଥାନ୍ତି । ୪,୫୨୦ କୋଟି ଅଣ୍ଡା ପ୍ରତିବର୍ଷ ଭାରତ ଉତ୍ପାଦନ କରିଥାଏ । ତେଣୁ ବହୁ ଲୋକଙ୍କ ଜୀବନ ଓ ଜୀବିକା ସହିତ ଏହି ଶିଳ୍ପ ଗଭୀର ଭାବରେ ସମ୍ପୃକ୍ତ । ଭାରତରେ ବାର୍ଡ଼ ଫ୍ଲୁ ବ୍ୟାପିବାରୁ କୋଟି କୋଟି ଟଙ୍କା କ୍ଷତି ହେବା ସହିତ ଲକ୍ଷ ଲକ୍ଷ ଲୋକ ଜୀବିକା ହରାଇବାକୁ ଯାଉଛନ୍ତି । ତେଣୁ ଏପରି ପରିସ୍ଥିତିକୁ କିପରି ମୁକାବିଲା କରାଯାଇପାରିବ, ଏ ସମ୍ପର୍କରେ ଗବେଷକ ଓ ବୈଜ୍ଞାନିକମାନେ ଗଭୀର ଭାବରେ ଚିନ୍ତା କରିବା ଆବଶ୍ୟକ । ସବୁ ସ୍ତରରେ ସଚେତନତା ସୃଷ୍ଟି ହୋଇପାରିଲେ ତଥା ଉପଯୁକ୍ତ ପ୍ରତିଷେଧକ ବ୍ୟବସ୍ଥା ଗ୍ରହଣ କରାଯାଇପାରିଲେ ଏହି ରୋଗ ସଂକ୍ରମିତ ହେବାର ସମ୍ଭାବନା କମ୍ । ଏ କ୍ଷେତ୍ରରେ ସରକାର ତଥା ସାଧାରଣ ଜନତା, ସର୍ବୋପରି ବୈଜ୍ଞାନିକ ଓ ଗବେଷକମାନେ ଗଭୀର ଧ୍ୟାନ ଦେଇ ପରିସ୍ଥିତି ପ୍ରତି ସଜାଗ ରହିପାରିଲେ ଏହାର ଉଚିତ ମୁକାବିଲା କରାଯାଇ ପାରିବ ବୋଲି ବିଶ୍ୱାସ ।

●

# ସୂଚନା ଅଧିକାର

(ଉପକ୍ରମ–ସୂଚନା ଅଧିକାର କ'ଣ ? –ସୂଚନା ଅଧିକାରର ପ୍ରମୁଖ ଦିଗ– ସୂଚନା ପାଇଁ କ'ଣ କରିବାକୁ ହେବ–କେଉଁ ବିଷୟରେ ସୂଚନା ଦିଆଯିବ ନାହିଁ–କୋର୍ଟ ଓ ମାନବିକ ଅଧିକାର–ତୃତୀୟ ପକ୍ଷ ସୂଚନାବିଧି–ଦଣ୍ଡବିଧାନ–ଉପସଂହାର)

୨୦୦୫ ମସିହାରେ ଭାରତୀୟ ନାଗରିକମାନଙ୍କ ପାଇଁ ସୂଚନା ଅଧିକାର ଆଇନ୍ ପ୍ରଣୟନ କରାଯାଇଛି । ୨୦୦୨ ମସିହାରେ ସଂସଦ ଦ୍ୱାରା ପ୍ରଣୟନ କରାଯାଇଥିବା ସ୍ୱାଧୀନତା ସୂଚନା ଆଇନ୍‌କୁ ଅଧିକ ଅର୍ଥପୂର୍ଣ୍ଣ, ଲୋକାଭିମୁଖୀ ଓ ବିକଶିତ କରିବା ଉଦ୍ଦେଶ୍ୟରେ ସରକାର ଏହା ଉପରେ ଗୁରୁତ୍ୱ ପ୍ରଦାନ କରିଛନ୍ତି । ନାଗରିକ ମାନଙ୍କର ମୌଳିକ ଅଧିକାର ୧୨(୧) (କ) ଧାରା ଭାରତୀୟ ସମ୍ବିଧାନ ଅନ୍ତର୍ଭୁକ୍ତ । ନାଗରିକମାନଙ୍କର ମୌଳିକ ଅଧିକାର ମଧ୍ୟରେ ବାକ୍ ସ୍ୱାଧୀନତା ଅଧିକାର ଅନ୍ତର୍ଭୁକ୍ତ । ଏହା ସହିତ ସୂଚନା ପାଇବାର ଅଧିକାରଟି ସମ୍ପର୍କ ରକ୍ଷା କରିଥାଏ । ସମ୍ବିଧାନର ୨୧ ଧାରାକୁ ବିଶ୍ଳେଷଣ କଲେ, ସେଥିରେ ରହିଥିବା ଜାଣିବାର ଅଧିକାର (right to know)ଟିର ବିକଶିତ ରୂପ ବର୍ତ୍ତମାନର ସୂଚନା ଅଧିକାର ଆଇନ୍, କହିବା ବାହୁଲ୍ୟ ମାତ୍ର । ଗୋଟିଏ ସ୍ୱାଧୀନ ଗଣତନ୍ତ୍ର ରାଷ୍ଟ୍ରରେ ସରକାରଙ୍କ ଦ୍ୱାରା ବିଭିନ୍ନ ସମୟରେ ଗୃହୀତ ଓ କାର୍ଯ୍ୟକାରୀ କରାଯାଉଥିବା କାର୍ଯ୍ୟକ୍ରମ ସମ୍ପର୍କରେ ଜାଣିବାର ଅଧିକାର ସର୍ବସାଧାରଣଙ୍କର

ରହିଛି । ସେହି ଅଧିକାରକୁ ସର୍ବସାଧାରଣରେ ପ୍ରକାଶ କରିବା ନିମିତ୍ତ ସୂଚନା ଅଧିକାର ଆଇନ୍ ସମ୍ପ୍ରତି ପ୍ରଣୟନ କରାଯାଇଛି । ଭାରତ ସରକାର ଏହି ଆଇନ୍ ପ୍ରଣୟନ କରିବା ପରେ ଓଡ଼ିଶା ସରକାର ତାଙ୍କ ବିଜ୍ଞପ୍ତି–ଏସ୍.ଆର୍. ଓ ନମ୍ବର ୪୭୭/୨୦୦୫ରେ ଏହି ଆଇନ୍ ସମ୍ପର୍କରେ ବିଧିବଦ୍ଧ ନିୟମାବଳୀ ପ୍ରକାଶ କରିଛନ୍ତି । ଏହା ଓଡ଼ିଶା ସୂଚନା ଅଧିକାର ନିୟମାବଳୀ–୨୦୦୫ (ଅକ୍ଟୋବର ୧ ତାରିଖ ୨୦୦୫ ମସିହା) ରୂପେ ବର୍ତ୍ତମାନ ପରିଚିତ ।

ଗୋଟିଏ ସ୍ୱାଧୀନ ଗଣତାନ୍ତ୍ରିକ ଦେଶର ବିଭିନ୍ନ କ୍ଷେତ୍ରରେ କାର୍ଯ୍ୟରତ ଅଧିକାରୀଙ୍କ କାର୍ଯ୍ୟ କରିବାର ପ୍ରଣାଳୀ, କାର୍ଯ୍ୟ କରିବାର ସ୍ୱଚ୍ଛତା ତଥା ସେମାନଙ୍କ ଉତ୍ତର ଦାୟିତ୍ୱର ଉନ୍ନତି ବିଧାନ ନିମିତ୍ତ ତଥା ସେମାନଙ୍କ ନିକଟରେ ନିଜ ବିଭାଗ ସମ୍ବନ୍ଧରେ ରହିଥିବା ସୂଚନାକୁ ଦେଶର ନାଗରିକମାନଙ୍କୁ ପ୍ରଦାନ କରିବା ଏବଂ ବିଶେଷକରି ନାଗରିକମାନଙ୍କର ଜାଣିବାର ଅଧିକାରକୁ ନିଶ୍ଚିତ କରିପାରୁଥିବା ଗୋଟିଏ ସାଙ୍ଗଠନିକ ବ୍ୟବସ୍ଥାକୁ ଉଚିତ ରୂପରେଖ ପ୍ରଦାନ ନିମିତ୍ତ ଏକ କେନ୍ଦ୍ରୀୟ ସୂଚନା କମିଶନ ଓ ରାଜ୍ୟମାନଙ୍କରେ ସୂଚନା କମିଶନ ଗଠନ କରିବା ସହିତ ଏହି ସମ୍ପର୍କୀୟ ବିଭିନ୍ନ ବିଷୟର ଆବଶ୍ୟକତା ପୂରଣ ନିମିତ୍ତ ସୂଚନା ଅଧିକାର ଆଇନ୍-୨୦୦୫ ପ୍ରଣୟନ କରାଯାଇଛି । ଭାରତୀୟ ସମ୍ବିଧାନର ୧୯୫୦ର ୧୯ ଧାରାରେ ଅନୁମୋଦିତ ସୂଚନା ଅଧିକାରକୁ ଅଧିକ କ୍ରିୟାଶୀଳ, ସଂସ୍କାରମୁଖୀ ଓ ବାସ୍ତବ କରିବାପାଇଁ ବର୍ତ୍ତମାନର ପ୍ରସ୍ତାବିତ ବିଧାନ ନିଶ୍ଚିତ ଭାବରେ ଏକ ଫଳପ୍ରଦ ଆଧାର ରୂପେ କାର୍ଯ୍ୟ କରିବ । ଏହି ଆଇନ୍ ଧାରା ୪ର ଉପଧାରା (୧), ଧାରା ୫ର ଉପଧାରା (୧) ଓ (୨), ଧାରା ୧୨, ୧୩, ୧୫, ୧୬, ୨୪, ୨୭ ଏବଂ ୨୮ର ବ୍ୟବସ୍ଥା ସହିତ କାର୍ଯ୍ୟକାରୀ ହେବ ବୋଲି ବିଜ୍ଞପ୍ତି ପ୍ରକାଶ ପାଇଛି । ଏତଦ୍‌ବ୍ୟତୀତ ଆଇନ୍‌ର ଅବଶିଷ୍ଟ ଦିଗ ସମୂହ ଆଇନ୍ କାର୍ଯ୍ୟକାରୀ ହେବାର ୧୨୦ ଦିନ ମଧ୍ୟରେ (ଚାରିମାସ) ବଳବତ୍ତର ହେବ । ପ୍ରତ୍ୟେକ କର୍ତ୍ତୃପକ୍ଷ ବା ଅଧିକାରୀ ଆଇନ୍ ଲାଗୁ ହେବାର ୧୦୦ ଦିନ ମଧ୍ୟରେ ଦେଶର ପ୍ରତି ସବ୍‌ଡିଭିଜନ କିମ୍ବା ଉପଜିଲ୍ଲା ସ୍ତରରେ ଆବଶ୍ୟକତା ଅନୁଯାୟୀ ଜଣେ ଜଣେ କେନ୍ଦ୍ରୀୟ ଜନ ସୂଚନା ଅଧିକାରୀ କିମ୍ବା ରାଜ୍ୟସ୍ତରୀୟ ଜନସୂଚନା ଅଧିକାରୀଙ୍କୁ ନାମିତ ବା ଠିକଣା କରିବେ । ସେହି ଅଧିକାରୀଗଣ ସୂଚନା ଜାଣିବାକୁ ଆଗ୍ରହୀ ବ୍ୟକ୍ତିମାନଙ୍କଠାରୁ ଦରଖାସ୍ତ ଗ୍ରହଣ କରି କେନ୍ଦ୍ରୀୟ ଜନସୂଚନା ଅଧିକାରୀ ଅଥବା ରାଜ୍ୟ ଜନସୂଚନା ଅଧିକାରୀ କିମ୍ବା କେନ୍ଦ୍ରୀୟ ବା ରାଜ୍ୟ ସୂଚନା କମିଶନ୍‌ଙ୍କ ନିକଟକୁ କାର୍ଯ୍ୟାନୁଷ୍ଠାନ ନିମିତ୍ତ ପ୍ରେରଣ କରିବେ ଏବଂ ସେମାନେ ତୁରନ୍ତ ଆବଶ୍ୟକୀୟ କାର୍ଯ୍ୟପନ୍ଥା ଗ୍ରହଣ କରିବେ ।

ସୂଚନା ଅଧିକାର ଆଇନ୍ ପ୍ରଣୟନ ଦ୍ୱାରା ସରକାରଙ୍କ ବିଭିନ୍ନ ବିଭାଗର କର୍ତ୍ତୃପକ୍ଷ ଜନସାଧାରଣଙ୍କୁ ବାସ୍ତବ ଘଟଣା ପ୍ରକାଶ କରିବାକୁ ବାଧ୍ୟ ହେବେ । ରାଷ୍ଟ୍ରପତିଙ୍କ ଅନୁମୋଦନ ଲାଭ କରିବା ପରେ ଏହି ଆଇନ୍ ୨୦୦୩ ମସିହା ଜାନୁଆରୀ ୭ ତାରିଖରେ ସରକାରୀ ଗେଜେଟ୍‌ରେ ପ୍ରକାଶ ପାଇଛି । ୧୯୯୭ ମସିହାରେ ଦିଲ୍ଲୀରେ ଅନୁଷ୍ଠିତ ମୁଖ୍ୟମନ୍ତ୍ରୀଙ୍କ

ସମ୍ମିଳନୀରେ ନାଗରିକମାନଙ୍କର ସୂଚନା ଅଧିକାର ଆଇନ୍ ପ୍ରଣୟନ ପାଇଁ ସର୍ବସମ୍ମତିକ୍ରମେ ସ୍ଥିର କରାଯାଇଥିଲା । ପ୍ରଶାସନକୁ ଉତ୍ତରଦାୟୀ, ସ୍ୱଚ୍ଛ ଓ ମୁକ୍ତ କରିବା କ୍ଷେତ୍ରରେ ଏହାର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ସୂଚନା ଅଧିକାର ଆଇନ୍ ମୁଖ୍ୟତଃ ଭାରତୀୟ ସମ୍ବିଧାନର ୧୯ ଧାରା ଏବଂ ବିଶ୍ୱମାନବିକ ୧୯ ଧାରାର ଆଧାରରେ ପ୍ରସ୍ତୁତ କରାଯାଇଛି । ପ୍ରତି ରାଜ୍ୟ ଓ କେନ୍ଦ୍ରଶାସିତ ଅଞ୍ଚଳରେ ସରକାର ଏହାକୁ କାର୍ଯ୍ୟକାରୀ କରିବେ ବୋଲି ନିର୍ଦ୍ଦେଶ ପ୍ରଦାନ କରାଯାଉଛି । ଏହି ଆଇନ୍‌ର ସଫଳ ରୂପାୟନ ନିମିତ୍ତ ରାଜ୍ୟସଭା ଅଧକ୍ଷ, ଲୋକସଭା ବାଚସ୍ପତି, ରାଜ୍ୟ ବିଧାନସଭା ବା ପରିଷଦର ଅଧକ୍ଷ, ସୁପ୍ରିମକୋର୍ଟ ଓ ହାଇକୋର୍ଟର ପ୍ରଧାନ ବିଚାରପତିଗଣ ଦୃଷ୍ଟିପ୍ରଦାନ କରିବେ । ଭାରତୀୟ ସମ୍ବିଧାନର ୨୩୯ ଧାରା ଅନୁଯାୟୀ ସରକାରଙ୍କ ବିଭିନ୍ନ କାର୍ଯ୍ୟାବଳୀ ସମ୍ପର୍କରେ ସୂଚନା ଜଣାଇବା ନିମିତ୍ତ ସ୍ୱତନ୍ତ୍ର ଅଫିସର ନିଯୁକ୍ତି ଦେବାର ବ୍ୟବସ୍ଥା କରାଯାଇଛି । ଯଦି ଜଣେ ନାଗରିକ ଚାହିଁବେ, ତେବେ କର୍ତ୍ତୃପକ୍ଷ କୌଣସି ସମ୍ବାଦର ଫାଇଲ ଫଟୋ ଏବଂ ସାର୍ଟିଫାଏଡ୍ ନକଲ ସମ୍ପୃକ୍ତ ଅଫିସର ଦେଇପାରିବେ । ସମ୍ପ୍ରତି ଜାମ୍ମୁ ଓ କାଶ୍ମୀରରେ ସନ୍ତ୍ରାସବାଦୀ କାର୍ଯ୍ୟକଳାପ ଓ ଗଣ୍ଡଗୋଳିଆ ପରିସ୍ଥିତି ଲାଗିରହିଥିବାରୁ, ସେଠାରେ ଏହି ଆଇନ୍ କାର୍ଯ୍ୟକାରୀ ନ କରିବାପାଇଁ ବ୍ୟବସ୍ଥା ହୋଇଛି । ସରକାରଙ୍କ ବିଭିନ୍ନ ବିବରଣୀକୁ କ୍ରମାଙ୍କିତ ଓ ସୂଚନାଙ୍କିତ କରି କର୍ତ୍ତୃପକ୍ଷ ସଜାଡ଼ି ରଖିବେ । ଏହାଦ୍ୱାରା ଜଣେ ନାଗରିକ ଚାହୁଁଥିବା ସୂଚନାକୁ ଅଧିକାରୀ ଅକ୍ଳେଶରେ ଦେବାକୁ ସମର୍ଥ ହୋଇପାରିବେ । ଏହି ଆଇନ୍‌ର ଉପଧାରା (୧) ଅନୁଯାୟୀ ସରକାରଙ୍କ ବିଭିନ୍ନ କାର୍ଯ୍ୟ ବା ସୂଚନାବଳୀକୁ ଏପରି ଭାବରେ ପ୍ରସାରିତ କରିବେ, ଯଦ୍ୱାରା ତାହା ଅକ୍ଳେଶରେ ଜନସାଧାରଣଙ୍କ ନିକଟରେ ଉପଲବ୍ଧ ହୋଇପାରିବ । ସୂଚନା ପ୍ରସାରଣ ବେଳେ ଏହା ଯେପରି ସ୍ଥାନୀୟ ଭାଷା, ଉପଲବ୍ଧ ମାଧମ ଓ ସର୍ବନିମ୍ନ ଖର୍ଚ୍ଚରେ ଜନସାଧାରଣଙ୍କୁ ମିଳିପାରିବ, ସେଥିପ୍ରତି କର୍ତ୍ତୃପକ୍ଷ ଦୃଷ୍ଟିଦେବେ । ଜଣେ ନାଗରିକ ଚାହିଁଲେ ଯେକୌଣସି ପ୍ରକାର ସାମଗ୍ରୀ, ଯଥା—ନଥିପତ୍ର, ମେମୋ, ଇ-ମେଲ, ରେକର୍ଡ଼, ମତାମତ, ପ୍ରେସବିବୃତ୍ତି, ସର୍କୁଲାର, ଲଗ୍‌ବୁକ୍, ନମୁନା, ଚୁକ୍ତିନାମା, ମଡ଼େଲ ଆଦି ମାଧମରେ ଉପଲବ୍ଧ ତଥ୍ୟ ବା କୌଣସି ସଂସ୍ଥା ସମ୍ପର୍କୀୟ ସୂଚନା ପାଇପାରିବେ । ଅବଶ୍ୟ ଏଥିପାଇଁ ନିର୍ଦ୍ଧାରିତ ଖର୍ଚ୍ଚ ତାଙ୍କୁ ଦେବାକୁ ପଡ଼ିବ ।

ଜଣେ ନାଗରିକ କୌଣସି ବିଷୟରେ ସୂଚନା ପାଇବାକୁ ଚାହୁଁଥିଲେ ଆଗ୍ରହୀ ବ୍ୟକ୍ତି ଇଂରାଜୀ, ହିନ୍ଦୀ ଅଥବା ସେହି ଅଞ୍ଚଳର ସରକାରୀ ଭାଷାରେ ଲିଖିତ ଅଥବା ଇଲେକ୍‌ଟ୍ରୋନିକ୍ ମାଧମ୍‌ରେ ନିର୍ଦ୍ଧାରିତ ଫିସ୍ ସହିତ ସମ୍ପୃକ୍ତ ଅଧିକାରୀଙ୍କ ଅଧୀନରେ ଥିବା କେନ୍ଦ୍ରୀୟ ଜନସୂଚନା ଅଧିକାରୀ / କେନ୍ଦ୍ରୀୟ ସହକାରୀ ଜନସୂଚନା ଅଧିକାରୀ / ରାଜ୍ୟ ଜନସୂଚନା ଅଧିକାରୀ / ରାଜ୍ୟସ୍ତରୀୟ ଜନସୂଚନା ଅଧିକାରୀଙ୍କୁ ଆବେଦନ କରିବେ । ଏହି ଆବେଦନ ମଧ ମୌଖିକ ହୋଇପାରେ । ବିଶେଷକରି ଶାରୀରିକ ଅକ୍ଷମଙ୍କ କ୍ଷେତ୍ରରେ ଅଧିକାରୀ ତାଙ୍କ ମୌଖିକ ଆବେଦନକୁ ଲିଖିତ ରୂପଦେବାକୁ ଯଥାଶକ୍ତି ସାହାଯ୍ୟ କରିବାକୁ ନିର୍ଦ୍ଦେଶ ରହିଛି । ବି.ପି.ଏଲ୍ କାର୍ଡ଼ଧାରୀଙ୍କ

କ୍ଷେତ୍ରରେ ସୂଚନା ପାଇବା ପାଇଁ କୌଣସି ଦରଖାସ୍ତ ଦେୟ ଦେବାକୁ ପଡ଼ିବ ନାହିଁ । ଉଲ୍ଲେଖଯୋଗ୍ୟ ବିଷୟ ହେଉଛି ଜଣେ ନାଗରିକ ୨୫ ବର୍ଷ ମଧ୍ୟରେ ସଂଘଟିତ ଯେକୌଣସି ସମ୍ବାଦ ଓ ସୂଚନା ପାଇବାକୁ କେବଳ ହକ୍‌ଦାର । ଯଦି ୨୫ ବର୍ଷ ପୂର୍ବର କୌଣସି ସମ୍ବାଦ ଜାଣିବାକୁ ଚାହାନ୍ତି, ସେ ସମ୍ବାଦ ବା ସୂଚନା ଦେବା ନ ଦେବା ବିଷୟ କେବଳ କେନ୍ଦ୍ର ବା ରାଜ୍ୟ ସରକାର ନିଷ୍ପତ୍ତି କରିପାରିବେ । ଯେକୌଣସି ନାଗରିକ ସାଧାରଣ କ୍ଷେତ୍ରରେ କୌଣସି ସୂଚନା ପାଇବାକୁ ଚାହୁଁଥିଲେ, ଆବେଦନ କରିବାର ତାରିଖଠାରୁ ୩୦ ଦିନ ମଧ୍ୟରେ ଅଧିକାରୀ ବା କର୍ତ୍ତୃପକ୍ଷ ତାଙ୍କୁ ସୂଚନା ପ୍ରଦାନ କରିବେ । ମାତ୍ର ଯଦି ସେହି ସୂଚନାଟି ନାଗରିକଙ୍କ ନିରାପତ୍ତା, ସ୍ୱାଧୀନତା ଅଥବା ଜୀବନ ସହିତ ସମ୍ପର୍କିତ ଥିବ, ତେବେ ଆବେଦନ କରିବାର ୪୮ ଘଣ୍ଟା ମଧ୍ୟରେ ସେହି ସୂଚନା ସେ ପାଇପାରିବେ । ଉପଧାରା (୧) ଅନୁଯାୟୀ ଯେଉଁ କ୍ଷେତ୍ରରେ କୌଣସି ଆବେଦନକୁ ଖାରଜ କରାଯିବ, ସେ କ୍ଷେତ୍ରରେ କେନ୍ଦ୍ରୀୟ ବା ରାଜ୍ୟ ଜନ ସୂଚନା ଅଧିକାରୀ ଆବେଦନକାରୀଙ୍କୁ ଖାରଜର କାରଣ, ଖାରଜ ବିରୋଧରେ ପୁନଃ ଅପିଲ କରିବାର ସମୟସୀମା, ଅପିଲ କର୍ତ୍ତୃପକ୍ଷଙ୍କ ସମ୍ବନ୍ଧରେ ସବିଶେଷ ବିବରଣୀ ଯୋଗାଇବାକୁ ବାଧ୍ୟ ହେବେ ।

ସୂଚନା ଅଧିକାର ନିୟମରେ କେତୋଟି ବିଷୟରେ ନାଗରିକଙ୍କୁ ସୂଚନା ନ ଦେବାର ନିର୍ଦ୍ଦେଶ ରହିଛି । ଯଦି କୌଣସି ସୂଚନା ଦ୍ୱାରା ଦେଶର ଅଖଣ୍ଡତା, ନିରାପତ୍ତା ଓ ସାର୍ବଭୌମତ୍ୱ ବିପନ୍ନ ହେବାର ସମ୍ଭାବନା ଥାଏ, ତେବେ ସେ କ୍ଷେତ୍ରରେ କର୍ତ୍ତୃପକ୍ଷ ଜନସାଧାରଣଙ୍କୁ ସୂଚନା ଦେଇ ପାରିବେ ନାହିଁ । କୌଣସି ସୂଚନାରେ ବାଣିଜ୍ୟିକ ଗୋପନୀୟତା, ବ୍ୟବସାୟିକ ତଥ୍ୟ, ବୌଦ୍ଧିକ ସମ୍ପତ୍ତିର ଅସୁରକ୍ଷା, ତୃତୀୟପକ୍ଷର ପ୍ରତିଯୋଗିତା ମୂଳକ ସ୍ଥିତିରେ କ୍ଷତିଗ୍ରସ୍ତ ହେବାର ସମ୍ଭାବନା ରହିଛି ବୋଲି ଅଧିକାରୀ ଅନୁଭବ କରନ୍ତି, ତେବେ ସେପରି ସୂଚନା ସେ ଦେଇପାରିବେ ନାହିଁ । ମାତ୍ର ଯଦି କର୍ତ୍ତୃପକ୍ଷଙ୍କ ଧାରଣା ହୁଏ, ଏହି ସୂଚନା ଦ୍ୱାରା ବୃହତ୍ତର ସ୍ୱାର୍ଥ ଉପକୃତ ହୋଇପାରିବ, ସେ କ୍ଷେତ୍ରରେ ଏହି ନିୟମର ବ୍ୟତିକ୍ରମ କରାଯାଇପାରେ । ଏତଦ୍‌ବ୍ୟତୀତ ବିଦେଶ ସରକାରଙ୍କଠାରୁ ପ୍ରାପ୍ତ କୌଣସି ଗୁପ୍ତ ସୂଚନା, ଅପରାଧୀମାନଙ୍କର ଗୁପ୍ତ ତଦନ୍ତ, ଗିରଫ ଆଦି କୌଣସି ସୂଚନାରେ ଯଦି ବ୍ୟକ୍ତିର ଜୀବନ ବିପନ୍ନ ହେବାର ସମ୍ଭାବନା ଥାଏ, ଅଥବା ମନ୍ତ୍ରୀ ପରିଷଦ, ସଚିବ ବା ଅଫିସରମାନଙ୍କର ବିଚାରବିମର୍ଶ ସମ୍ପର୍କୀୟ ଦସ୍ତାବିଜ ବିଷୟରେ ସୂଚନା ଦିଆଯାଇ ପାରିବ ନାହିଁ । କୌଣସି ବିଷୟ ଆଲୋଚନା ପର୍ଯ୍ୟାୟରେ ରହିଥିଲେ, ବିଭିନ୍ନ ଆଇନ୍‌ଗତ ପରାମର୍ଶ ଆଦିକୁ ଗୁପ୍ତ ରଖିବାର ନିର୍ଦ୍ଦେଶ ରହିଛି । ଲୋକସଭା ବା ବିଧାନସଭାର ସ୍ୱାଧିକାର ପଞ୍ଜିକୃତ କରିବାର ବ୍ୟବସ୍ଥା ଏହି ଆଇନ୍‌ରେ କରାଯାଇ ନାହିଁ । ନିରାପତ୍ତା ଓ ଗୁଇନ୍ଦା ବିଭାଗର ସମ୍ବାଦ ଗୁପ୍ତ ରହିବାର ବ୍ୟବସ୍ଥା ରହିଛି । କର୍ତ୍ତୃପକ୍ଷ ଅନୁଭବ କଲେ କୌଣସି ବିଷୟରେ ସମ୍ପୂର୍ଣ୍ଣ ବା ଆଂଶିକ ସୂଚନା ଦେଇପାରନ୍ତି । ଏହା ବ୍ୟତୀତ ଦେଶର ବୈଜ୍ଞାନିକ, ଅର୍ଥନୈତିକ ସ୍ୱାର୍ଥ ଜଡ଼ିତ ବିଷୟ, କୌଣସି ବ୍ୟକ୍ତିର ରଚନା ସ୍ୱତ୍ୱ ଉଲଂଘିତ ହେଉଥିଲେ, କିମ୍ବା କୌଣସି

ଆପତ୍ତିଜନକ ସୂଚନା ସମ୍ପର୍କରେ ସମ୍ବାଦ ଦିଆଯାଇପାରିବ ନାହିଁ । ଏପରି କ୍ଷେତ୍ରରେ ସମ୍ପୃକ୍ତ ଅଧିକାରୀ ଆବେଦନକାରୀଙ୍କୁ ଲିଖିତ ବା ମୌଖିକ ଆକାରରେ ନିଜର ଅସମର୍ଥତା ଜଣାଇବାକୁ ପଡ଼ିବ ।

ସୂଚନା ଅଧିକାର ସମ୍ପର୍କରେ ବିଚାରାଳୟର କ୍ଷମତାକୁ ସଙ୍କୁଚିତ କରାଯାଇଛି । ନିୟମାନୁଯାୟୀ ପ୍ରଦତ୍ତ ଆଦେଶ ସମ୍ବନ୍ଧିତ କୌଣସି ମୋକଦ୍ଦମା, କାର୍ଯ୍ୟାନୁଷ୍ଠାନ ଗ୍ରହଣ, ଆବେଦନ ବା ଅନ୍ୟ କାର୍ଯ୍ୟବିଧି କୋର୍ଟରେ ଚାଲେଞ୍ଜ କରାଯାଇ ପାରିବ ନାହିଁ କିମ୍ବା କୋର୍ଟରେ ଅପିଲ ଦ୍ୱାରା ସେହି ଆଦେଶକୁ ପ୍ରଶ୍ନ କରାଯାଇ ପାରିବ ନାହିଁ । ସୂଚନା ଆଇନ୍ ସମ୍ବନ୍ଧରେ କୌଣସି ମୋକଦ୍ଦମା କୋର୍ଟରେ କରାଯାଇ ପାରିବ ନାହିଁ । ମାନବାଧିକାର ଉଲଂଘନ କ୍ଷେତ୍ରରେ ଯଦି କୌଣସି ନାଗରିକ ସୂଚନା ପାଇବାପାଇଁ ଆବେଦନ କରିଥାନ୍ତି, ତେବେ କେବଳ କେନ୍ଦ୍ରୀୟ ସୂଚନା କମିଶନଙ୍କ ଅନୁମୋଦନକ୍ରମେ ସେହି ସୂଚନାକୁ ପ୍ରକାଶ କରାଯାଇପାରେ । ଆବେଦନର ୪୫ ଦିନ ମଧ୍ୟରେ ସେହି ସୂଚନା ତାଙ୍କୁ ଦିଆଯିବାର ବ୍ୟବସ୍ଥା ରହିଛି ।

ଯେଉଁଠାରେ କେନ୍ଦ୍ରୀୟ ସୂଚନା ଅଧିକାରୀ ବା ରାଜ୍ୟ ଜନସୂଚନା ଅଧିକାରୀ ଆବେଦନ କରାଯାଇଥିବା କୌଣସି ସୂଚନା ବା ରେକର୍ଡ଼ ବା ତାହାର ଖଣ୍ଡିତାଂଶ ପ୍ରକାଶ କରିବାକୁ ଇଚ୍ଛା କରନ୍ତି, ଯାହା ତୃତୀୟ ପକ୍ଷ ସହିତ ସମ୍ପର୍କିତ ଏବଂ ତୃତୀୟ ପକ୍ଷ ଦ୍ୱାରା ଯାହା ଗୋପନୀୟ, ସେପରି କ୍ଷେତ୍ରରେ ଉଭୟ କେନ୍ଦ୍ରୀୟ ଓ ରାଜ୍ୟ ସୂଚନା ଅଧିକାରୀ ଆବେଦନର ପାଞ୍ଚଦିନ ମଧ୍ୟରେ ଲିଖିତ ବିବରଣୀ ବା ବିଜ୍ଞପ୍ତି ତୃତୀୟ ପକ୍ଷକୁ ଦେବା ସଙ୍ଗେ ସଙ୍ଗେ ଯଦି କେନ୍ଦ୍ରୀୟ ବା ରାଜ୍ୟ ଜନସୂଚନା ଅଧିକାରୀ ସେହି ସୂଚନା ବା ରେକର୍ଡ଼ ପ୍ରକାଶ କରିବାକୁ ଚାହୁଁଥାନ୍ତି, ତେବେ ତାହା ପ୍ରକାଶ କରିବା ଉଚିତ କି ନୁହେଁ ସେ ସମ୍ପର୍କରେ ଲିଖିତ ବା ମୌଖିକ ଭାବେ ନିଜର ବକ୍ତବ୍ୟ ଦେବାପାଇଁ ତୃତୀୟ ପକ୍ଷଙ୍କୁ ଆହ୍ୱାନ କରିବେ । ଆଇନ୍ ଦ୍ୱାରା ସୁରକ୍ଷିତ ବ୍ୟବସାୟ-ବାଣିଜ୍ୟ ସମ୍ପର୍କୀୟ ଗୁପ୍ତତଥ୍ୟ ବ୍ୟତୀତ ଅନ୍ୟ ସୂଚନା ଯାହାର ପ୍ରକାଶ ଦ୍ୱାରା ଜନସାଧାରଣଙ୍କ ସ୍ୱାର୍ଥର ଗୁରୁତ୍ୱ ତୃତୀୟ ପକ୍ଷର କ୍ଷତିଠାରୁ ଅଧିକ ଅନୁଭୂତ ହୁଏ, ତାହା ପ୍ରକାଶ କରାଯାଇ ପାରିବ । ଯେଉଁଠାରେ ତୃତୀୟ ପକ୍ଷ ସମ୍ପୃକ୍ତି ସମ୍ବନ୍ଧୀୟ ସୂଚନା, ରେକର୍ଡ଼ ବା ତା'ର କିଛି ଅଂଶ ସମ୍ପର୍କରେ କେନ୍ଦ୍ରୀୟ ଅଥବା ରାଜ୍ୟ ଜନସୂଚନା ଅଧିକାରୀ କୌଣସି ବିଜ୍ଞପ୍ତି ଦିଅନ୍ତି, ଏହି ବିଜ୍ଞପ୍ତି ପ୍ରକାଶର ୧୦ ଦିନ ମଧ୍ୟରେ ତା' ବିରୋଧରେ ଆବେଦନ ପାଇଁ ତୃତୀୟ ପକ୍ଷଙ୍କୁ ସୁଯୋଗ ପ୍ରଦାନ କରାଯିବାର ବ୍ୟବସ୍ଥା ରହିଛି ।

କୌଣସି ଅଭିଯୋଗ ଫଏସଲା ଅବସରରେ ଯଦି କେନ୍ଦ୍ରୀୟ ବା ରାଜ୍ୟ ସୂଚନା କମିଶନଙ୍କର ହୃଦ୍‌ବୋଧ ହୁଏ ଯେ ଯଥାର୍ଥ କାରଣ ନ ଥାଇ କେନ୍ଦ୍ରୀୟ ବା ଜନସୂଚନା ଅଧିକାରୀ ଦରଖାସ୍ତଟିକୁ ଗ୍ରହଣ କରିବାକୁ ଅସ୍ୱୀକୃତ ହୋଇଛନ୍ତି ଅଥବା ଧାରା ୭ର ଉପଧାରା (୧) ଅନୁଯାୟୀ ଉପଯୁକ୍ତ ସମୟସୀମା ମଧ୍ୟରେ ନାଗରିକଙ୍କୁ କୌଣସି ସୂଚନା ପ୍ରଦାନ କରିନାହାନ୍ତି

ଅଥବା ଉଦ୍ଦେଶ୍ୟମୂଳକ ଭାବରେ ଭିନ୍ନ କୌଣସି କାରଣରୁ ଦରଖାସ୍ତଟିକୁ ପ୍ରତ୍ୟାଖ୍ୟାନ, ବିଭ୍ରାନ୍ତିକର, ଅସମ୍ପୂର୍ଣ୍ଣ ବୋଲି ସୂଚନା ଦେଇଛନ୍ତି କିମ୍ବା ଆବେଦିତ ସୂଚନାକୁ ନଷ୍ଟ କରିଛନ୍ତି, ଅଥବା କୌଣସି ସ୍ତରରେ ବାଧା ପ୍ରଦାନ କରିଛନ୍ତି, ସେ କ୍ଷେତ୍ରରେ ସେହି ଆବେଦନ ପୁନଃଗ୍ରହଣ ହେବା ପର୍ଯ୍ୟନ୍ତ ବା ଆବେଦନ କରାଯାଇଥିବା ସୂଚନା ପ୍ରଦାନ ପର୍ଯ୍ୟନ୍ତ ସମ୍ପୃକ୍ତ କର୍ତ୍ତୃପକ୍ଷଙ୍କୁ ପ୍ରତିଦିନ ପାଇଁ ୨୫୦ ଟଙ୍କାର ଜୋରିମାନା ସୂଚନା କମିଶନ ଲାଗୁ କରିପାରିବେ । ମାତ୍ର ଜୋରିମାନାର ପରିମାଣ ୨୫ ହଜାର ଟଙ୍କାରୁ ଅଧିକ ହୋଇପାରିବ ନାହିଁ । ଅବଶ୍ୟ ଏ କ୍ଷେତ୍ରରେ ଦଣ୍ଡବିଧାନ ପୂର୍ବରୁ ସମ୍ପୃକ୍ତ ଅଧିକାରୀଙ୍କୁ ଏହାର କାରଣ ନିର୍ଦ୍ଦେଶ ପାଇଁ ଅଥବା ତାଙ୍କର ବକ୍ତବ୍ୟ ଉପସ୍ଥାପନ ନିମିତ୍ତ ଯଥୋଚିତ ସୁଯୋଗ ପ୍ରଦାନ କରାଯିବ ।

ସୂଚନା ଅଧିକାର ଆଇନ୍ ଜନସାଧାରଣଙ୍କ ମନରେ ଆଶାର ଉଦ୍ରେକ କରିଥିଲେହେଁ, ଏହାର ବାସ୍ତବ ଦିଗ ବର୍ତ୍ତମାନ ମଧ୍ୟ ସଂଶୟାଚ୍ଛନ୍ନ । ଏହା କେତେଦୂର ସଫଳ ହୋଇପାରିବ ସେ ସମ୍ପର୍କରେ ସାଧାରଣ ମଣିଷ ସନ୍ଦିହାନ । ଅନେକ ସମୟରେ ବଡ଼ବଡ଼ ଅଫିସର, ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ବିଭିନ୍ନ କାର୍ଯ୍ୟରେ ଲିପ୍ତ ରହିଥିବାର ବା ସେମାନଙ୍କ ବିଭାଗରେ ବହୁ ଅନୀତି ଓ ଦୁର୍ନୀତି କାର୍ଯ୍ୟ ଚାଲୁଥିବାର ସମ୍ବାଦ ପ୍ରକାଶିତ ହେଉଛି । ଏ ସମ୍ପର୍କରେ ସାଧାରଣ ନାଗରିକଟିଏ ଜାଣିବାକୁ ଚାହିଁଲେ, ସେହି ଦାୟିତ୍ୱରେ ଥିବା ପଦାଧିକାରୀ ତାଙ୍କୁ ସଠିକ୍ ସମ୍ବାଦ ଦେଇ ନ ପାରନ୍ତି ବା ଅସ୍ୱୀକାର କରିପାରନ୍ତି । ସୂଚନା ଅଧିକାରୀ ସରକାରଙ୍କ ଅଧୀନରେ କାର୍ଯ୍ୟରତ ଥିବାରୁ ସରକାରଙ୍କ କୌଣସି ଅପାରଗତାକୁ ପ୍ରକାଶ କରିବାକୁ ଆଗ୍ରହୀ ନ ହେବା ମଧ୍ୟ ସ୍ୱାଭାବିକ । ପୁଣି ଏହି ସୂଚନା ଅଧିକାରକୁ କୋର୍ଟରେ ଚାଲେଞ୍ଜ୍ କରିବାର ବ୍ୟବସ୍ଥା ନଥିବାରୁ, ଏହାର କାର୍ଯ୍ୟକାରୀ ଦିଗଟି ପ୍ରତି ସନ୍ଦେହ ପ୍ରକାଶ ପାଇବା ଅମୂଳକ ନୁହେଁ । ଯଦି ସବୁ କ୍ଷେତ୍ରରେ ଆନ୍ତରିକତା ଓ ସ୍ୱଚ୍ଛତାର ବାତାବରଣ ସୃଷ୍ଟି ହୋଇପାରିବ, ତେବେ ସୂଚନା ଅଧିକାର ଆଇନ୍‌ର ପ୍ରାସଙ୍ଗିକତା ଜନସାଧାରଣ ଉପଲବ୍ଧି କରିପାରିବେ । ନଚେତ୍ ଅନେକ ଆଇନ୍ ପରି ଏହା କେବଳ ଫାଇଲ୍‌ର କାଗଜପତ୍ର ମଧ୍ୟରେ ସୀମିତ ହୋଇ ରହିଯିବ ।



# ଅଲିମ୍ପିକ୍ କ୍ରୀଡ଼ା ଓ ତ୍ରିଂଶତମ ଲଣ୍ଡନ ଅଲିମ୍ପିକ୍ସ-୨୦୧୨

(ଉପକ୍ରମ - ଅଲିମ୍ପିକ୍ସର ନାମକରଣ - ଅଲିମ୍ପିକ୍ସର ପୌରାଣିକ ଦିଗ - ଅଲିମ୍ପିକ୍ସ କ୍ରୀଡ଼ାର ଇତିହାସ - ଆୟୋଜନ - ବିଭିନ୍ନ ପ୍ରକାର ଅଲିମ୍ପିକ୍ସ - ଅଲିମ୍ପିକ୍ସରେ ନାରୀ ପ୍ରତିଯୋଗୀ - ଲଣ୍ଡନ୍ ଅଲିମ୍ପିକ୍ସର ବିବିଧ ଦିଗ - ଉପସଂହାର)

ବିଶ୍ୱର ସର୍ବୋଚ୍ଚ କ୍ରୀଡ଼ାମଞ୍ଚ ହେଉଛି ଅଲିମ୍ପିକ୍ସ । ଦେଶଦେଶ ମଧ୍ୟରେ ସୌହାର୍ଦ୍ଦ୍ୟ ସୃଷ୍ଟି ତଥା ବିଶ୍ୱର ସମସ୍ତ ମଣିଷଙ୍କ ମଧ୍ୟରେ ଏକ ଭାବଗତ ସଂପର୍କ ଓ ଭ୍ରାତୃତ୍ୱଭାବର ଜାଗରଣ ହେଉଛି ଏହି କ୍ରୀଡ଼ାର ମୁଖ୍ୟ ଲକ୍ଷ୍ୟ । ଏହି କ୍ରୀଡ଼ାରେ ବିଶ୍ୱର ପ୍ରାୟ ସମସ୍ତ ରାଷ୍ଟ୍ର ଭାଗ ନେଇଥାନ୍ତି । ଯେଉଁ ଆଥ୍‌ଲେଟ୍ ବା କ୍ରୀଡ଼ାବିତ୍ ଏହି ମଞ୍ଚରୁ ପଦକ ପ୍ରାପ୍ତ ହୋଇଥାନ୍ତି, ଆନ୍ତର୍ଜାତୀୟ ସ୍ତରରେ ସେମାନେ ଏକ ଭିନ୍ନ ପରିଚୟ ପ୍ରାପ୍ତ ହୋଇଥାନ୍ତି । ସେଥିପାଇଁ ଅଲିମ୍ପିକ୍ସରୁ ଗୋଟିଏ ପଦକ ପାଇବା ପାଇଁ କେବଳ ପ୍ରତିଯୋଗୀ ନୁହନ୍ତି, ପ୍ରତ୍ୟେକ ଦେଶ ବେଶ୍ ଆଗ୍ରହ ପ୍ରକାଶ କରିଥାନ୍ତି । ୨୦୧୨ ମସିହାରେ ଲଣ୍ଡନଠାରେ ଅନୁଷ୍ଠିତ ତ୍ରିଂଶତମ ଅଲିମ୍ପିକ୍ କ୍ରୀଡ଼ା ପରିଚାଳନା ତଥା ବ୍ୟୟ ଦୃଷ୍ଟିରୁ ଏଯାବତ୍ ଅନୁଷ୍ଠିତ ସମସ୍ତ ଅଲିମ୍ପିକ୍ କ୍ରୀଡ଼ାକୁ ଅତିକ୍ରମ କରିଯାଇଛି ବୋଲି ଗଣମାଧ୍ୟମ ତଥା ଆୟୋଜକ ଦାବି କରିଥାନ୍ତି ।

ପ୍ରଥମେ ଏହି ପ୍ରତିଯୋଗିତା ଗ୍ରୀସ୍ ଦେଶର ଅଲିମ୍ପିଆ ନାମକ ସ୍ଥାନରେ ଅନୁଷ୍ଠିତ ହୋଇଥିଲା । ଅତୀତରେ ଏହା ପ୍ରାଚୀନ ଗ୍ରୀକ୍‌ମାନଙ୍କର ପ୍ରଧାନ ଜାତୀୟ ଉତ୍ସବ ଭାବରେ ପରିଗଣିତ ହେଉଥିଲା । ଗ୍ରୀସ୍‌ର ଦୁଇଟି ମୁଖ୍ୟ ସହର ଏଲିସ୍ ଓ ପିସା ନିକଟବର୍ତ୍ତୀ ଅଲମ୍ପିଆ ସହର ଥିଲା ଏହାର ପ୍ରଥମ ଆୟୋଜନ କ୍ଷେତ୍ର । କେହି କେହି ଅଲିମ୍ପିଆଡ୍ (Olympiad) ଶବ୍ଦରୁ ଅଲିମ୍ପିକ୍ ଶବ୍ଦ ସୃଷ୍ଟି ହୋଇଛି ବୋଲି ମତ ପ୍ରଦାନ କରିଥାନ୍ତି । ଅଲିମ୍ପିଆଡ୍‌ର ଓଡ଼ିଆ ପାରିଭାଷିକ ଶବ୍ଦାର୍ଥ ହେଉଛି ଚାରିବର୍ଷର ପରିମାଣ । ପ୍ରତି ଚାରିବର୍ଷରେ ଥରେ ଏହି କ୍ରୀଡ଼ା ଅନୁଷ୍ଠିତ ହେଉଥିବାରୁ ଏହାର ନାମ ଅଲିମ୍ପିକ୍ସ ହୋଇଥାଇପାରେ ବୋଲି କେହି କେହି ବିଶ୍ୱାସ କରନ୍ତି ।

କୁହାଯାଏ ଗ୍ରୀସ୍‌ବାସୀ ସେମାନଙ୍କର ଦେବତା ଜିଅସ୍‌ଙ୍କ (Zeus) ସମ୍ମାନାର୍ଥେ ଏହି କ୍ରୀଡ଼ା ଉତ୍ସବ ପାଳନ କରୁଥିଲେ । ଗ୍ରାମବାସୀଙ୍କ ଧର୍ମବିଶ୍ୱାସ ଏପରି ଏକ ଲୋକପ୍ରିୟ କ୍ରୀଡ଼ାକୁ ଜନ୍ମ ଦେଇଥିବାର ଲୋକ ବିଶ୍ୱାସ ରହିଛି । ପ୍ରଥମେ ଏହା ଏକ

ପାଦଚଲା ପ୍ରତିଯୋଗିତା ଭାବରେ ଆରମ୍ଭ ହୋଇଥିଲା । ଦେବୀ "ହେରା"ଙ୍କ ପୂଜନର ଅଧିକାରୀହେବା ନିମିତ୍ତ ଏଥିରେ କେବଳ ରମଣୀମାନେ ଅଂଶଗ୍ରହଣ କରୁଥିଲେ । ପରେ ପରେ ଦ୍ୱିତୀୟ ଦ୍ରୁତ ଚାଲି ପ୍ରତିଯୋଗିତା ହେଉଥିଲା, ଯେଉଁଥିରେ ଉଭୟ ନାରୀ ଓ ପୁରୁଷ ଅଂଶଗ୍ରହଣ କରିପାରୁଥିଲେ । ଏହି ପ୍ରତିଯୋଗିତାରେ ଯେଉଁମାନେ ବିଜୟୀ ହେଉଥିଲେ, ସେମାନେ ମନ୍ଦିରର ବିଭିନ୍ନ ଧର୍ମାନୁଷ୍ଠାନ-ମାନଙ୍କରେ ସକ୍ରିୟ ଯୋଗଦାନ କରୁଥିଲେ । ପରବର୍ତ୍ତୀ କାଳରେ ଏହି ପରମ୍ପରାରେ ପରିବର୍ତ୍ତନ ଆସିଲା ଓ ଏଥିରେ ପ୍ରକୃତ କ୍ରୀଡ଼ା କ୍ଷେତ୍ରରେ ସଫଳତା ଅର୍ଜନ କରିଥିବା ବ୍ୟକ୍ତିବିଶେଷ ହିଁ ଅଂଶ ଗ୍ରହଣ କଲେ ।

ଇତିହାସ ଦୃଷ୍ଟିରୁ ଖ୍ରୀ:ପୂ: ୭୭୬ରେ ଗ୍ରୀକ୍‌ର ଅଲିମ୍ପିଆ ନଗରରେ ପ୍ରଥମେ ଏହା ଆରମ୍ଭ ହୋଇଥିଲା । ଗ୍ରୀକ୍ ରୋମ୍ ସାମ୍ରାଜ୍ୟ ଅନ୍ତର୍ଭୁକ୍ତ ହେବାପର୍ଯ୍ୟନ୍ତ ଏହି କ୍ରୀଡ଼ା ନିରବଚ୍ଛିନ୍ନ ଭାବରେ ଗ୍ରୀକ୍‌ରେ ଚାଲି ଆସୁଥିଲା । ସେତେବେଳେ ଗ୍ରୀକ୍ ବହୁ ନଗର ରାଜ୍ୟମାନଙ୍କରେ ବିଭକ୍ତ ହୋଇ ରହିଥିଲା । ଗ୍ରୀକ୍‌ର ନାଗରିକମାନଙ୍କ ମଧ୍ୟରେ ଯୋଗସୂତ୍ର, ସଂପର୍କ ଓ ଶାନ୍ତି ଏବଂ ଏକତା ପ୍ରତିଷ୍ଠା ପାଇଁ ଏହି କ୍ରୀଡ଼ାକୁ ମାଧ୍ୟମ ଭାବରେ ଗ୍ରହଣ କରାଯାଇଥିଲା । ରୋମ୍ ସମ୍ରାଟ ଥିଓଡିସସ୍-୧, କ୍ଷମତା ଦଖଲ ପରେ ୩୯୪ ଖ୍ରୀ:ରେ ଏହାକୁ ପରବର୍ତ୍ତୀ ଉତ୍ତରାଧିକାରୀ ଥିଓଡିସସ୍-୨ ଗ୍ରୀକ୍‌ର ସମସ୍ତ ମନ୍ଦିର ଧ୍ୱଂସ କରିବାକୁ ଆଦେଶ ଦେବାରୁ ଅଲିମ୍ପିକ୍‌ସ କ୍ରୀଡ଼ାରେ ଶିଥିଳତା ପରିଲକ୍ଷିତ ହୋଇଥିଲା । ଅଲିମ୍ପିକ୍ କ୍ରୀଡ଼ାର ପ୍ରଥମ ପର୍ଯ୍ୟାୟରେ ଗ୍ରୀକ୍‌ର କରମୁକ୍ତ ଗ୍ରୀକ୍ ଭାଷୀ ବ୍ୟକ୍ତିହିଁ ଏଥିରେ ଅଂଶଗ୍ରହଣ କରିବାର ସର୍ତ୍ତ ରହିଥିଲା । ଯୁବକମାନେହିଁ ଏଥିରେ ଯୋଗଦେବାର ବ୍ୟବସ୍ଥା ଥିଲା । ପ୍ରଥମେ ଗ୍ରୀକ୍ ନଗର-ରାଜ୍ୟଗୁଡ଼ିକର ଖେଳାଳିମାନେ ଏଥିରେ ଅଂଶଗ୍ରହଣ କରୁଥିଲେ; ପରେପରେ ଭୂମଧ୍ୟସାଗର ନିକଟବର୍ତ୍ତୀ ଅଞ୍ଚଳ ଏବଂ ସିସିଲି, ଏସିଆ, ଇଟାଲୀ, ଆଫ୍ରିକାଦି କେତେଗୁଡ଼ିଏ ରାଜ୍ୟର ଖେଳାଳିମାନେ ଏଥିରେ ଅଂଶଗ୍ରହଣ କରିବାରୁ ଧୀରେଧୀରେ ଏହା ବିଶ୍ୱମୁଖୀ ହେବାକୁ ଲାଗିଲା । ପ୍ରାଥମିକ ଅବସ୍ଥାରେ ଏହି କ୍ରୀଡ଼ା ଉତ୍ସବ ପାଳନ ସମୟରେ ଗୋଟିଏ ଅଲିମ୍ପିକ୍ ଶ୍ୱେତ ପତାକା ପ୍ରଦର୍ଶନ କରାଯାଉଥିଲା । ବିଜୟୀ ଖେଳାଳିମାନଙ୍କୁ ଲରେଲ୍ ପତ୍ରର ମାଳାଟିଏ ପିନ୍ଧାଇ ଦିଆଯାଉଥିଲା । ପ୍ରତିଯୋଗିତାରେ ଯୋଗ୍ୟ ବିବେଚିତ ହେବା ପୂର୍ବରୁ ପ୍ରତ୍ୟେକ ପ୍ରତିଯୋଗୀଙ୍କୁ ଜେସ୍‌ସ୍‌ଙ୍କ ପ୍ରତିମୂର୍ତ୍ତି ସମ୍ମୁଖରେ ଶପଥ ନେବାକୁ ପଡୁଥିଲା । ପରବର୍ତ୍ତୀ କାଳରେ ଏହା କେବଳ ଖେଳ ମଧ୍ୟରେ ସୀମିତ ନ ରହି ସାହିତ୍ୟ, କଳା, ସଂସ୍କୃତି ଜଗତକୁ ମଧ୍ୟ ପରିବ୍ୟାପ୍ତ ହୋଇଯାଇଥିଲା ।

ପ୍ରାଚୀନ ଅଲିମ୍ପିକ୍ ଅଳ୍ପ କେତୋଟି କ୍ରୀଡ଼ା ମଧ୍ୟରେ ସୀମିତ ଥିଲା । ଆରମ୍ଭ ସମୟରେ ଗୋଟିଏ ମାତ୍ର କ୍ରୀଡ଼ା ପ୍ରତିଯୋଗିତା ହେଉଥିଲା, ଯାହାକୁ Stadion race କୁହାଯାଉଥିଲା । ଏଥିରେ ପ୍ରତିଯୋଗୀଗଣ ୧୮୦ରୁ ୨୪୦ ମିଟର ପର୍ଯ୍ୟନ୍ତ ବ୍ୟବଧାନ ଦ୍ରୁତ ଗତିରେ ଅତିକ୍ରମ କରୁଥିଲେ । ପରେ ପରେ ମୁଷ୍ଟିଯୁଦ୍ଧ, ମଲ୍ଲଯୁଦ୍ଧ ଆଦି ବିଭିନ୍ନ କ୍ରୀଡ଼ା ଏହାର ଅନ୍ତର୍ଭୁକ୍ତ ହେଲା । ଆଧୁନିକ ଅଲିମ୍ପିକ୍ କ୍ରୀଡ଼ାର ଭିତ୍ତିଭୂମି ପଡ଼ିଥିଲା ୧୮୯୪ ମସିହାରେ । ବାରନ୍‌ପିରେ ଡି କୁବୋଟିନ୍ (Baronpierre de coubertin) ଆନ୍ତର୍ଜାତିକ ଅଲମ୍ପିକ୍ କମିଟି (International Olympic Committee) ଗଠନ ପରେ ଏହି କ୍ରୀଡ଼ାର ଗୁରୁତ୍ୱ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ବିଶ୍ୱର ସର୍ବଶ୍ରେଷ୍ଠ କ୍ରୀଡ଼ା ପ୍ରତିଯୋଗିତା ଭାବରେ ସ୍ୱୀକୃତି ପାଇଲା । ୧୮୯୬ ମସିହାରେ ଗ୍ରୀସ୍ ରାଜଧାନୀ ଏଥେନ୍‌ସର ପାନାଥେନା ଏକ ଷ୍ଟାଡିୟମ୍‌ରେ ଅନୁଷ୍ଠିତ ଅଲିମ୍ପିକ୍ କ୍ରୀଡ଼ାକୁ ବିଶ୍ୱର ପ୍ରଥମ ଆଧୁନିକ ଅଲିମ୍ପିକ୍‌ସ କ୍ରୀଡ଼ାର ମର୍ଯ୍ୟାଦା ପ୍ରଦାନ କରାଯାଇଥାଏ । ଏହି ଅଲିମ୍ପିକ୍‌ସରେ ୧୪ଟି ଦେଶର ୨୪୧ଜଣ ପ୍ରତିଯୋଗୀ ୪୩ଟି ବିଭାଗ ବା ଇଭେଣ୍ଟରେ ଭାଗ ନେଇଥିଲେ । ଏହି ଅଲିମ୍ପିକ୍‌ସ ବେଶ୍ ସଫଳ ହୋଇଥିଲେ ହେଁ ୧୯୦୦ ମସିହାରେ ପ୍ୟାରିସ୍ ଠାରେ ଏବଂ ୧୯୦୪ ମସିହାରେ ସେଣ୍ଟଲୁଇସ୍‌ଠାରେ ଅନୁଷ୍ଠିତ ଅଲିମ୍ପିକ୍‌ସ ବିଫଳ ହୋଇଥିଲା । ତେବେ ପ୍ୟାରିସ୍ ଅଲିମ୍ପିକ୍‌ସର ବିଶେଷତ୍ୱ ହେଉଛି, ଏଥିରେ ପ୍ରଥମଥର ପାଇଁ ନାରୀମାନେ ଅଂଶଗ୍ରହଣ କରିଥିଲେ । ଦୁଇଦୁଇଟି ବିଶ୍ୱଯୁଦ୍ଧ ଯୋଗୁଁ ୧୯୧୬, ୧୯୪୦ ଏବଂ ୧୯୪୪ର ଅଲିମ୍ପିକ୍ କ୍ରୀଡ଼ାକୁ ବାତିଲ କରିଦିଆଯାଇଥିଲା । ପୁନରାୟ ଶୀତଳ ଯୁଦ୍ଧ ଯୋଗୁଁ ୧୯୮୦ ମସ୍କୋ ଅଲିମ୍ପିକ୍‌ସ ଓ ୧୯୮୪ ଲସ୍ ଏଞ୍ଜେଲ୍‌ସ ଅଲିମ୍ପିକ୍ କ୍ରୀଡ଼ାରୁ ବହୁ ପ୍ରତିଯୋଗୀ ଦେଶ ଓହରିଯାଇଥିଲେ । ପରବର୍ତ୍ତୀ କାଳରେ ଅଲିମ୍ପିକ୍‌ସ ପ୍ରତି ପୁଣି ଅନୁକୂଳ ପାଣିପାଗ ସୃଷ୍ଟିହେବାରୁ ସଂପ୍ରତି ଏହା ବିଶ୍ୱର ସର୍ବଶ୍ରେଷ୍ଠ କ୍ରୀଡ଼ା ମର୍ଯ୍ୟାଦା ପ୍ରାପ୍ତ ହୋଇଛି ।

ଅଲିମ୍ପିକ୍ କ୍ରୀଡ଼ାର ଆୟୋଜନ ନିମିତ୍ତ ସ୍ୱତନ୍ତ୍ର ସଂଗଠନମାନ ସୃଷ୍ଟି କରାଯାଇଛି । ଆନ୍ତର୍ଜାତୀୟ ଅଲିମ୍ପିକ୍ କମିଟି ଦ୍ୱାରା କ୍ରୀଡ଼ା ସ୍ଥାନ ନିରୂପଣ, ଯୋଜନା ପ୍ରସ୍ତୁତି, ସମର୍ଥକ ନିର୍ବାଚନ ସହିତ ଏହାର ପ୍ରଚାର ଅଧିକାର କାହାକୁ ଦିଆଯିବ, ତାହା ନିଷ୍ପତ୍ତି ନେଇଥାଏ । ପ୍ରାୟ ୭/୮ ବର୍ଷ ପୂର୍ବରୁ ପରବର୍ତ୍ତୀ କ୍ରୀଡ଼ା କେଉଁଠାରେ ଅନୁଷ୍ଠିତ ହେବ ସେ ସଂପର୍କରେ ଆଲୋଚନା କରାଯାଇ ସଠିକ୍ ପଦକ୍ଷେପ ଗ୍ରହଣ କରାଯାଇଥାଏ । ଏହି ଅଲିମ୍ପିକ୍ ଆନ୍ଦୋଳନର ଆଉ କେତୋଟି ଗୁରୁତ୍ୱପୂର୍ଣ୍ଣ ସଂଗଠନ

ରହିଛି । ଆନ୍ତର୍ଜାତୀୟ ସଂଘ (International Federations) ପରିଚାଳନା ସମିତି ଭାବରେ ଆନ୍ତର୍ଜାତୀୟ ସ୍ତରରେ କିପରି ଭାବରେ ଗୋଟିଏ କ୍ରୀଡ଼ା ଅନୁଷ୍ଠିତ ହେବ, ତା'ର ତଦାରଖ କରିଥାଏ । ଜାତୀୟ ଅଲିମ୍ପିକ୍ କମିଟି (National Olympic Committees) ନିର୍ଦ୍ଦିଷ୍ଟ ଦେଶରେ ଅନୁଷ୍ଠିତ ଅଲିମ୍ପିକ୍ କ୍ରୀଡ଼ା କିପରି ସୁଚାରୁଭାବେ ସଂସାଧିତ ହୋଇପାରିବ, ସେଥିପ୍ରତି ଦୃଷ୍ଟିଦେଇଥାଏ । ଅଲିମ୍ପିକ୍ କ୍ରୀଡ଼ା ନିମିତ୍ତ ଗଠନ କରାଯାଇଥିବା ଆୟୋଜକ କମିଟି (Organizing committees for the Olympic Games) ଏକ ଅସ୍ଥାୟୀ କମିଟି । ନିର୍ଦ୍ଦିଷ୍ଟ କ୍ରୀଡ଼ା ସମୟ ପରେ ଏହି କମିଟି ଭଙ୍ଗ କରିଦିଆଯାଏ । ସଂପ୍ରତି ଆନ୍ତର୍ଜାତିକ ଅଲିମ୍ପିକ୍ କମିଟି ୩୫ଟି ଆନ୍ତର୍ଜାତୀୟ ସଂଘ ଓ ୨୦୫ଟି ଜାତୀୟ ଅଲିମ୍ପିକ୍ କମିଟିକୁ ସ୍ୱୀକୃତି ପ୍ରଦାନ କରିଛି । ଫରାସୀ ଏବଂ ଇଂରାଜୀକୁ ଅଲିମ୍ପିକ୍ କମିଟି କାର୍ଯ୍ୟାଳୟର ଭାଷା (Official language) ଭାବରେ ଗ୍ରହଣ କରିଛି । ଆୟୋଜକ ଦେଶ ତା'ର ଭାଷାକୁ ମଧ୍ୟ ଏହି ସମୟରେ ବ୍ୟବହାର କରିପାରିବାର ବ୍ୟବସ୍ଥା ରହିଛି । ଯେଉଁଠାରେ ଅଲିମ୍ପିକ୍ କ୍ରୀଡ଼ା ଆୟୋଜନ କରାଯାଇଥାଏ, ସେହି ଆୟୋଜକ ଦେଶ ଅଲିମ୍ପିକ୍ ସନନ୍ଦ ବା ସମ୍ବିଧାନ ଅନୁଯାୟୀ ଏହି କ୍ରୀଡ଼ାର ଆୟୋଜନ କରିଥାନ୍ତି । କେଉଁ କେଉଁ କ୍ରୀଡ଼ା ପ୍ରତିଯୋଗିତାରେ ଅନୁଷ୍ଠିତ ହେବ, ତାହା ଆନ୍ତର୍ଜାତୀୟ ଅଲିମ୍ପିକ୍ କମିଟି ଦ୍ୱାରା ସ୍ଥିର ହୋଇଥାଏ । ପ୍ରାୟ ୧୩,୦୦୦ କ୍ରୀଡ଼ାବିତ୍ ୩୫ଟି କ୍ରୀଡ଼ାର ୩୦ଟି ଶୃଙ୍ଖଳାର ୪୦୦ ପ୍ରତିଯୋଗିତା (ଗ୍ରୀଷ୍ମକାଳୀନ ଓ ଶୀତକାଳୀନ ଅଲିମ୍ପିକ୍ସ)ରେ ଭାଗ ନେଇଥାନ୍ତି । ପ୍ରତିଯୋଗିତାରେ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ସ୍ଥାନ ଅଧିକାର କରିଥିବା ପ୍ରତିଯୋଗୀ ଯଥାକ୍ରମେ ସ୍ୱର୍ଣ୍ଣ, ରୌପ୍ୟ ଓ ବ୍ରୋଞ୍ଜ୍ ପଦକ ଲାଭ କରିଥାନ୍ତି ।

ଅଲିମ୍ପିକ୍ସର ଆରମ୍ଭରେ ଗୋଟିଏ ସମୟରେ ଏହା ଅନୁଷ୍ଠିତ ହୋଇଥିବାବେଳେ ସଂପ୍ରତି ଏହାର ପରିସର ଓ ସମୟରେ ମଧ୍ୟ ପରିବର୍ତ୍ତନ ଆସିଛି । ୧୯୨୧ ମସିହାରେ ଲିଉସାନେରେ ଅନୁଷ୍ଠିତ ଅଲିମ୍ପିକ୍ କଂଗ୍ରେସ ଶୀତକାଳୀନ ଅଲିମ୍ପିକ୍ କ୍ରୀଡ଼ା ଆୟୋଜନ ନିମିତ୍ତ ନିଷ୍ପତ୍ତି ନେଇଥିଲା । ୧୯୨୪ ମସିହାରେ ଫ୍ରାନ୍ସର ଚାମୋନିକ୍ସ ଠାରେ ୧୧ ଦିନ ଧରି (ଯଦିଓ ଏହାକୁ ସାପ୍ତାହିକୀ କ୍ରୀଡ଼ା କୁହାଯାଉଥିଲା) ଶୀତକାଳୀନ ଅଲିମ୍ପିକ୍ କ୍ରୀଡ଼ା ଅନୁଷ୍ଠିତ ହେଲା । ତତ୍ପରେ ଏହାକୁ ପ୍ରତି ଚାରିବର୍ଷରେ ଥରେ ଆୟୋଜନ କରିବାପାଇଁ ଆନ୍ତର୍ଜାତିକ ଅଲିମ୍ପିକ୍ କମିଟି ନିଷ୍ପତ୍ତି ନେଲା । ପ୍ରତି ଗ୍ରୀଷ୍ମକାଳୀନ ଅଲିମ୍ପିକ୍ସର ଦୁଇବର୍ଷ ପରେ ଏହା ଦୀର୍ଘଦିନ ଧରି ଅନୁଷ୍ଠିତ ହୋଇଆସୁଛି । ବିଂଶ ଓ ଏକବିଂଶ ଶତାବ୍ଦୀରେ ଅଲିମ୍ପିକ୍ସ କ୍ରୀଡ଼ାରେ ବହୁ

ପରିବର୍ତ୍ତନ ହୋଇଛି । ଶୀତକାଳୀନ ଅଲିମ୍ପିକ୍ କ୍ରୀଡ଼ା ପରି ଶାରୀରିକ ଅକ୍ଷମମାନଙ୍କ ପାଇଁ ପାରା-ଅଲିମ୍ପିକ୍ ଏବଂ ୧୪ରୁ ୧୮ବର୍ଷ ବୟସ୍କ ପିଲାମାନଙ୍କ ପାଇଁ ୟୁଥ୍ ବା ଯୁବ ଅଲିମ୍ପିକ୍ କ୍ରୀଡ଼ା ଆୟୋଜନ କରାଯାଉଛି । ବର୍ତ୍ତମାନ ବହୁ ବଡ଼ ବଡ଼ କମ୍ପାନୀ ଏହାର ପୃଷ୍ଠପୋଷକତା କରୁଥିବାରୁ ଅଲିମ୍ପିକ୍ କ୍ରୀଡ଼ାର ବ୍ୟାପାରୀକରଣ ହୋଇଯାଇଛି ବୋଲି ମନେ ହୋଇଥାଏ । ଏ କ୍ଷେତ୍ରରେ ଗଣମାଧ୍ୟମର ବିଶେଷ ଭୂମିକା ରହିଥିବାର ଲକ୍ଷ୍ୟ କରାଯାଏ । ୧୯୨୮ ମସିହାଠାରୁ ଭାରତ ଏହି କ୍ରୀଡ଼ାରେ ନିୟମିତ ଅଂଶଗ୍ରହଣ କରିଆସୁଛି ।

ଅଲିମ୍ପିକ୍ସରେ ନାରୀମାନଙ୍କର ଭୂମିକାକୁ ନେଇ ଅନେକ ପ୍ରଶ୍ନବାଚୀ ସୃଷ୍ଟି ହୋଇଥିଲା । ତେବେ ପ୍ରଥମେ ୧୯୦୦ ମସିହାରେ ପ୍ୟାରିସ୍‌ଠାରେ ଅନୁଷ୍ଠିତ ହୋଇଥିବା ଗ୍ରୀଷ୍ମକାଳୀନ ଅଲିମ୍ପିକ୍ସରେ ପ୍ରଥମେ ନାରୀମାନଙ୍କୁ ଅଂଶଗ୍ରହଣ କରିବାକୁ ଅନୁମତି ପ୍ରଦାନ କରାଯାଇଥିଲା । ୧୯୯୨ରେ ଅନୁଷ୍ଠିତ ଗ୍ରୀଷ୍ମକାଳୀନ ଅଲିମ୍ପିକ୍ସରେ ୩୫ଟି ଦେଶ ତଥାପି କୌଣସି ନାରୀ ପ୍ରତିନିଧିଙ୍କୁ କ୍ରୀଡ଼ା ନିମିତ୍ତ ପଠାଇନଥିଲେ । ୧୯୯୬ରେ ଇରାକ୍ ସୁଟିଂ ପାଇଁ ଜଣେ ନାରୀଙ୍କୁ, ୨୦୦୦ରେ ବାହାରିନ୍ ଦୁଇଜଣ ନାରୀଙ୍କୁ, ୨୦୦୪ରେ ଆଫଗାନିସ୍ଥାନ ଦୁଇଜଣ ନାରୀଙ୍କୁ, ୨୦୦୮ରେ ସଂଯୁକ୍ତ ଆରବ ରାଷ୍ଟ୍ର ତା'ର ନାରୀମାନଙ୍କୁ ଅଲିମ୍ପିକ୍ କ୍ରୀଡ଼ାରେ ଭାଗନେବାପାଇଁ ପଠାଇଛନ୍ତି । ୨୦୧୦ ସୁଦ୍ଧା ବ୍ରୁନେଇ, ସାଉଦି ଆରବ ଓ କାତାର ସେମାନଙ୍କର କୌଣସି ନାରୀ ପ୍ରତିଯୋଗୀଙ୍କୁ ପଠାଇ ପାରିନାହିଁ । ୨୦୧୦ରେ ଆନ୍ତର୍ଜାତିକ ଅଲିମ୍ପିକ୍ କମିଟି ଏହି ଦେଶମାନଙ୍କ ଉପରେ ଚାପ ପକାଇବା ଫଳରେ ୨୦୧୨ ଗ୍ରୀଷ୍ମକାଳୀନ ଅଲିମ୍ପିକ୍ସରେ କାତାର ଓ ଅନ୍ୟମାନେ ସେମାନଙ୍କ ପ୍ରତିନିଧିଙ୍କୁ ପ୍ରେରଣ କରିଥିଲେ ।

୨୦୧୨ ମସିହାରେ ଲଣ୍ଡନ ଠାରେ ଜୁଲାଇ ମାସ ୨୭ ତାରିଖ ଠାରୁ ଅଗଷ୍ଟ ମାସ ୧୨ ତାରିଖ ପର୍ଯ୍ୟନ୍ତ ୩୦ତମ ଗ୍ରୀଷ୍ମକାଳୀନ ଅଲିମ୍ପିକ୍ କ୍ରୀଡ଼ା ଅନୁଷ୍ଠିତ ହୋଇଯାଇଛି । ଏହାପୂର୍ବରୁ ୧୯୦୮ ଏବଂ ୧୯୪୮ ମସିହାରେ ଲଣ୍ଡନ ଦୁଇଥର ଅଲିମ୍ପିକ୍ସ ଆୟୋଜନ କରି ସାରିଥିଲା । ୧୯୦୮ର ଅଲିମ୍ପିକ୍ସ ଇଟାଲୀ ରାଜଧାନୀ ରୋମ୍‌ରେ ଅନୁଷ୍ଠିତ ହୋଇଥାନ୍ତା । ମାତ୍ର ହେଲା ଆଗ୍ନେୟଗିରି ମାଉଣ୍ଟ ଭେସୁଭିଅସ୍‌ର ଉଦ୍‌ଗୀରଣ ଯୋଗୁଁ ଏହାକୁ ଲଣ୍ଡନକୁ ସ୍ଥାନାନ୍ତରିତ କରାଯାଇଥିଲା । ଅନୁରୂପ ଭାବେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଯୋଗୁଁ ୧୯୪୪ ଅଲିମ୍ପିକ୍ସ ବାତିଲ ହେବା ଯୋଗୁଁ ୧୯୪୮ ଅଲିମ୍ପିକ୍ସ ଲଣ୍ଡନରେ ଆୟୋଜିତ ହୋଇଥିଲା । ଆନ୍ତର୍ଜାତିକ ଅଲିମ୍ପିକ୍ କମିଟିର

ନିୟମାନୁଯାୟୀ କୌଣସି ଅଲିମ୍ପିକ୍‌ସରେ ସର୍ବାଧିକ ୨୮ଟି କ୍ରୀଡ଼ା ଓ ୩୦୧ଟି ଇଭେଣ୍ଟ ରହିବ । ଏହି ଇଭେଣ୍ଟଗୁଡ଼ିକରେ ସର୍ବାଧିକ ୧୦,୫୦୦ କ୍ରୀଡ଼ାବିତ୍ ଅଂଶଗ୍ରହଣ କରିପାରିବେ । ୨୦୦୮ ବେଜିଂ ଅଲିମ୍ପିକ୍‌ସରେ ୨୮ଟି କ୍ରୀଡ଼ାରେ ପ୍ରତିଯୋଗିତା ହୋଇଥିଲା । ମାତ୍ର ୨୦୧୨ ଲଣ୍ଡନ ଅଲିମ୍ପିକ୍‌ସରେ ବେସ୍‌ବଲ୍ ଏବଂ ସଫ୍‌ଟ ବଲକୁ ବାଦ୍ ଦିଆଯାଇଥିବାରୁ ୨୬ଟି କ୍ରୀଡ଼ାରେ ପ୍ରତିଯୋଗିତା ହୋଇଥିଲା । ତେବେ ୨୦୧୬ ଏବଂ ୨୦୨୦ ଅଲିମ୍ପିକ୍‌ସରେ ରଗ୍‌ବୀ ଓ ଗଲ୍‌ଫ ସାମିଲ ହେବାକୁ ଥିବାରୁ ଏହି ସଂଖ୍ୟା ପୁନରାୟ ୨୮ ହୋଇଯିବାର ସମ୍ଭାବନା ରହିଛି । ୨୦୧୨ ଲଣ୍ଡନ୍ ଅଲିମ୍ପିକ୍‌ସରେ ମହିଳା ବକ୍ସିଂକୁ ସାମିଲ କରାଯାଇଥିବାରୁ ପ୍ରଥମ ଥର ନିମିତ୍ତ ସମସ୍ତ କ୍ରୀଡ଼ାରେ ପୁରୁଷ ଓ ମହିଳା କ୍ରୀଡ଼ାବିତ୍ ଅଂଶ ଗ୍ରହଣ କରିପାରିଛନ୍ତି । ଲଣ୍ଡନ ଅଲିମ୍ପିକ୍‌ସରେ ୨୦୪ଟି ଦେଶର ପ୍ରାୟ ୧୦,୫୦୦ ପ୍ରତିଯୋଗୀ ବିଭିନ୍ନ ଇଭେଣ୍ଟରେ ୩୦୨ଟି ସ୍ୱର୍ଣ୍ଣପଦକ ପାଇଁ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ । ଅଲିମ୍ପିକ୍ ଷ୍ଟାଡିୟମ୍‌ରେ ଏହି ଉଦ୍‌ଘାଟନୀ ଉତ୍ସବ କରାଯାଇଥିଲା । ମହାରାଣୀ ଏଲିଜାବେଥ ୨ୟ ଅଲିମ୍ପିକ୍‌ସ କ୍ରୀଡ଼ାକୁ ଉଦ୍‌ଘାଟନ କରିଥିଲେ । ବହୁ ରଙ୍ଗାରଙ୍ଗ କାର୍ଯ୍ୟକ୍ରମ ଓ ଆତସବାଜି ମଧ୍ୟରେ ୨୭ ନିୟୁତ ପାଉଣ୍ଡ ବ୍ୟୟ ବରାଦରେ ମହାସମାରୋହରେ ଉଦ୍‌ଘାଟନୀ ଉତ୍ସବ ଆରମ୍ଭ ହୋଇଥିଲା । ବିଶ୍ୱବାସୀ ଟେଲିଭିଜନ୍‌ରେ ଏହି କାର୍ଯ୍ୟକ୍ରମକୁ ଦେଖି ଅବାକ୍ ହୋଇଯାଇଥିଲେ । ଅସ୍କାର ପୁରସ୍କାର ବିଜେତା ଡାନି ବୋଏଲ୍ ଏହି ଉତ୍ସବର ପରିଚାଳନା ଦାୟିତ୍ୱ ନିର୍ବାହ କରିଥିଲେ । ଆତଙ୍କବାଦୀ ସଂଗଠନର ଧମକକୁ ଆଖିରେ ରଖି ତ୍ରିସ୍ତରୀୟ ନିରାପତ୍ତା ବ୍ୟବସ୍ଥା କରାଯାଇଥିଲା । ଏହି ଦାୟିତ୍ୱକୁ ବ୍ରିଟିଶ୍ ସେନା ଯବାନ, ଲଣ୍ଡନ ମେଟ୍ରୋପଲିଟାନ୍ ପୁଲିସ୍, ସ୍କର୍ଟଲାର୍ଡ୍‌ୟାର୍ଡ ଓ ଖ୍ୟାତନାମା ଘରୋଇ ସିକ୍ୟୁରିଟୀ ସଂସ୍ଥା ଗ୍ରୁପ୍-ଫୋର ଯବାନଗଣ ସୁଚାରୁରୂପେ ନିର୍ବାହ କରିଥିଲେ । ଏହି ନିରାପତ୍ତା ବ୍ୟବସ୍ଥାକୁ ଆନ୍ତର୍ଜାତିକ ଅଲିମ୍ପିକ୍ କମିଟିର ଅଧ୍ୟକ୍ଷ ଜ୍ୟାକ୍ ରୋଗେ ବେଶ୍ ପ୍ରଶଂସା କରିଥିଲେ । ଦୀର୍ଘ ସାତବର୍ଷଧରି ଲଣ୍ଡନ ଏହି କ୍ରୀଡ଼ାର ଆୟୋଜନ ଲାଗି ପ୍ରସ୍ତୁତି ଜାରିରଖି ଆସିଥିଲା । ଏଥିରେ ପ୍ରାୟ ୯୩୦୦ ନିୟୁତ ପାଉଣ୍ଡ ବା ୮୧୦୦୦ କୋଟି ଟଙ୍କା ଖର୍ଚ୍ଚ ହୋଇଥିବାର ଆକଳନ କରାଯାଇଛି । ଜୁଲାଇ ୨୭ ତାରିଖରେ ଲଣ୍ଡନରେ ୩୦ତମ ଅଲିମ୍ପିକ୍ କ୍ରୀଡ଼ା ଅନୁଷ୍ଠିତ ହେବାପୂର୍ବରୁ ସକାଳୁ ୩ ମିନିଟ୍ ଧରି ବିଗ୍‌ବେନ୍ ଘଣ୍ଟା ବାଜିଥିଲା । ଦୀର୍ଘ ୬୦ ବର୍ଷ ପରେ ଏହି ବିଶ୍ୱପ୍ରସିଦ୍ଧ ଘଣ୍ଟା ତା'ର ନିର୍ଦ୍ଧାରିତ ସମୟଠାରୁ ଅନ୍ୟ ସମୟରେ ବାଜିଥିଲା । ୧୯୫୨ ମସିହାରେ ରାଜା ଜର୍ଜ

୬ଷ୍ଠଙ୍କ ମୃତ୍ୟୁଖବର ଲଣ୍ଡନବାସୀଙ୍କୁ ଜଣାଇବା ପାଇଁ ବିଗ୍‌ବେନ୍ ଘଣ୍ଟା ବାଜିଥିଲା । ଅଲମ୍ପିକ୍ କ୍ରୀଡ଼ା ଆରମ୍ଭ ପୂର୍ବରୁ ଏହି ଘଣ୍ଟାକୁ ତା'ର ନିୟମିତ ବାହାରେ ବଜାଇବା ନିମିତ୍ତ ଆୟୋଜନ କମିଟିର ଅନୁରୋଧକୁ ବ୍ରିଟିଶ୍ ପାର୍ଲିଆମେଣ୍ଟ ଗ୍ରହଣ କରିଥିଲା । ସକାଳ ୮ଟା ୧୨ରୁ ୮ଟା ୧୫ ମିନିଟ୍ ପର୍ଯ୍ୟନ୍ତ ୩ ମିନିଟ୍ ମଧ୍ୟରେ ଏହି ବିଶାଳ ଘଣ୍ଟି ୪୨ ଥର ବାଜିଥିଲା ।

ବେଜିଂ ଅଲିମ୍ପିକ୍ ୨୦୦୮ରେ ତାଲିକାର ଶୀର୍ଷରେ ଚୀନ୍ ରହିଥିଲେହେଁ, ୨୦୧୨ ଲଣ୍ଡନ ଅଲିମ୍ପିକ୍‌ରେ ଆମେରିକା ତା'ର ଆଧିପତ୍ୟ ପୁନରାୟ ଫେରିପାଇଥିଲା । ଏହି କ୍ରୀଡ଼ାରେ ଆମେରିକା ୪୬ଟି ସ୍ୱର୍ଣ୍ଣ, ୨୯ଟି ରୌପ୍ୟ ଓ ୨୯ଟି ବ୍ରୋଞ୍ଜ୍ ପଦକ– ଏହିପରି ୧୦୪ଟି ପଦକ ହାସଲ କରି ଶୀର୍ଷସ୍ଥାନରେ ରହିଥିବା ସମୟରେ ଚୀନ୍ ୩୮ଟି ସ୍ୱର୍ଣ୍ଣ, ୨୭ଟି ରୌପ୍ୟ ଓ ୨୩ଟି ବ୍ରୋଞ୍ଜ୍ ପଦକ– ଏହିପରି ୮୮ଟି ପଦକ ଲାଭକରି ଦ୍ୱିତୀୟ ସ୍ଥାନରେ ଏବଂ ଗ୍ରେଟ୍ ବ୍ରିଟେନ୍ ୨୯ଟି ସ୍ୱର୍ଣ୍ଣ, ୧୭ଟି ରୌପ୍ୟ ତଥା ୧୯ଟି ବ୍ରୋଞ୍ଜ୍ – ସମୁଦାୟ ୬୫ଟି ପଦକ ହାସଲ କରି ତୃତୀୟ ସ୍ଥାନରେ ତଥା ଋଷିଆ ୨୪ଟି ସ୍ୱର୍ଣ୍ଣ, ୨୬ଟି ରୌପ୍ୟ ଓ ୩୨ଟି ବ୍ରୋଞ୍ଜ– ସମୁଦାୟ ୮୨ଟି ପଦକ ପାଇ ଚତୁର୍ଥ ସ୍ଥାନରେ ରହିଥିଲା । ଏଥର ମଧ୍ୟ ଭାରତର ପ୍ରଦର୍ଶନ ନୈରାଶ୍ୟଜନକ ଥିଲା । ଭାରତ ଗୋଟିଏ ହେଲେ ସ୍ୱର୍ଣ୍ଣ ପଦକ ପାଇପାରି ନଥିଲା । ଭାରତର ବିଜୟ କୁମାର ସୁଟିଂର ୨୫ ମିଟର ର୍‌ୟାପିଡ୍ ଫାୟାର ପିସ୍ତଲ ଇଭେଣ୍ଟରେ ଫାଇନାଲରେ ଦ୍ୱିତୀୟ ସ୍ଥାନରେ ରହି ରୌପ୍ୟ ପଦକ ଲାଭ କରିଥିବା ସମୟରେ, ସୁଟିଂରେ ୧୦ ମିଟର ଏୟାର ରାଇଫଲ୍ ଇଭେଣ୍ଟରେ ଗଗନ ନାରଙ୍ଗ ତୃତୀୟ ସ୍ଥାନରେ ରହି ବ୍ରୋଞ୍ଜ ପଦକ ଏବଂ ବକ୍ସର ମ୍ୟାରୀକମ୍ ଓ ମଲ୍ଲଯୋଦ୍ଧା ଯୋଗେଶ୍ୱର ଦତ୍ତ କୁସ୍ତିରେ ତୃତୀୟ ସ୍ଥାନ ଲାଭକରି ବ୍ରୋଞ୍ଜ୍ ପଦକ ଲାଭ କରିଛନ୍ତି । ଭାରତ ସମୁଦାୟ ଗୋଟିଏ ରୌପ୍ୟ ଓ ତିନୋଟି ବ୍ରୋଞ୍ଜ୍ ପଦକ ପାଇ ତାଲିକାର ୫୫ତମ ସ୍ଥାନରେ ରହିଛି । ଅଚ ଇଥୋପିୟା, କେନିଆ, ଲିଥୁନିଆ, ତୁର୍କୀ, ସର୍ବିଆ, ଉଗାଣ୍ଡ, ଭେଞ୍ଜୁଏଲା ଆଦି ବହୁ କ୍ଷୁଦ୍ର ଦେଶ ସ୍ୱର୍ଣ୍ଣପଦକ ହାସଲ କରି ପଦକ ତାଲିକାରେ ଭାରତ ଠାରୁ ଶୀର୍ଷରେ ରହିପାରିଛନ୍ତି । ଉପଯୁକ୍ତ ପ୍ରଶିକ୍ଷଣ, ଶୃଙ୍ଖଳା ଓ ପରିଶ୍ରମ ଅଭାବରୁ ବିଶ୍ୱର ୨ୟ ଜନବହୁଳ ରାଷ୍ଟ୍ର କ୍ରୀଡ଼ା କ୍ଷେତ୍ରରେ ସର୍ବଦା ନୈରାଶ୍ୟ ପ୍ରଦର୍ଶନ କରିଆସିଅଛି । ଅଲିମ୍ପିକ୍‌ସ କେବଳ ମାତ୍ର ସାଧାରଣ କ୍ରୀଡ଼ାଟିଏ ନୁହେଁ, ଏହା ମାଧ୍ୟମରେ ଗୋଟିଏ ଦେଶ ତା'ର ଶକ୍ତି, ବୀରତ୍ୱ, ଶୃଙ୍ଖଳା, କର୍ମନିଷ୍ଠା ଏବଂ ଦାୟିତ୍ୱବୋଧର ପ୍ରମାଣ ଦେଉଥିବାରୁ ଦେଶର ସମ୍ମାନ ବିଶ୍ୱ ସମ୍ମୁଖରେ ପ୍ରଦର୍ଶିତ

କରିଥାଏ । ଆଗାମୀ ଦିନରେ ଭାରତ ଏ କ୍ଷେତ୍ରରେ ନିଜର ମହତ୍ତ୍ୱ ପ୍ରତିପାଦନ କରିପାରିବ ବୋଲି ଆଶା କରାଯାଏ । ତେବେ ଏହି ଅଲିମ୍ପିକ୍ସ ସମୟରେ ଲଣ୍ଡନରେ ଭାରତୀୟ ଉତ୍ସବ ବେଶ୍ ଧୁମ୍‌ଧାମରେ ପାଳିତ ହୋଇଯାଇଛି । ନେହେରୁ କେନ୍ଦ୍ର ଦ୍ୱାରା ଭାରତୀୟ କଳା, ସଂସ୍କୃତି, ଖାଦ୍ୟ ଆଦିର ପ୍ରଦର୍ଶନ କରାଯାଇଛି । ଏହିସବୁ କାର୍ଯ୍ୟକ୍ରମ ନିମିତ୍ତ ଲଣ୍ଡନ ସ୍ଥିତ ନେହେରୁ ସେଣ୍ଟର, ରୟାଲ ଫେଷ୍ଟିଭାଲ ହଲ୍ ଏବଂ ରେଡ୍ ବ୍ରିଜ ଟାଉନ୍ ହଲ୍‌ରେ ବ୍ୟବସ୍ଥା କରାଯାଇଥିଲା । ଭାରତର କଳା, ସଂସ୍କୃତି ଓ ଖାଦ୍ୟ ବହୁ ବିଦେଶୀଙ୍କୁ ମୁଗ୍ଧ କରିଥିଲା । ତେବେ ଭାରତ ପାଇଁ ୩୦ତମ ଗ୍ରୀଷ୍ମକାଳୀନ ଲଣ୍ଡନ ଅଲିମ୍ପିକ୍ସ ତିକ୍ତମଧୁରର ଫେଣ୍ଟାଫେଣ୍ଟି ଅନୁଭବ ପ୍ରଦାନ କରିପାରିଛି ।

ଅଲିମ୍ପିକ୍ସ ବିଶ୍ୱପାଇଁ ଶାନ୍ତି, ଭ୍ରାତୃତ୍ୱ ଓ ବନ୍ଧୁତ୍ୱର ବାର୍ତ୍ତା ପ୍ରେରଣ କରିଥାଏ । ଦେଶ ଦେଶ ମଧ୍ୟରେ ଏକତା ତଥା ସହାନୁଭୂତି ସୃଷ୍ଟି କରିବାରେ ଏହାର ଭୂମିକା ନିଶ୍ଚିତ ଭାବରେ ଗୁରୁତ୍ୱପୂର୍ଣ୍ଣ । ତେବେ ସଂପ୍ରତି କ୍ରୀଡ଼ାର ବ୍ୟବସାୟୀକରଣ ଯୋଗୁଁ ଏହା ତା'ର ପ୍ରକୃତ ମହତ୍ତ୍ୱ ଧୀରେ ଧୀରେ ହରାଇ ବସୁଛି । ଏହାସତ୍ତ୍ୱେ ବିଶ୍ୱଶାନ୍ତି ଓ ସଦ୍‌ଭାବ ପାଇଁ ଏହାର ଯେ ଏକ ଚମତ୍କାର ବାର୍ତ୍ତା ରହିଛି ଅସ୍ୱୀକାର କରାଯାଇ ନପାରେ । ଅଲିମ୍ପିକ୍ ପତାକାରେ ସଂଗ୍ରଥିତ ପାଞ୍ଚୋଟି ଚକ୍ର ପୃଥିବୀର ପାଞ୍ଚୋଟି ମହାଦେଶ, ଯଥା– ଆଫ୍ରିକା, ଆମେରିକା, ଏସିଆ, ଅଷ୍ଟ୍ରେଲିଆ ଓ ଇରୋପର ପ୍ରତୀକ । ଏହା ପୃଥିବୀର ସମସ୍ତ ଦେଶକୁ ସମଭାବ ପ୍ରଦର୍ଶନ କରେ ବୋଲି ସାଙ୍କେତିକ ଅର୍ଥ ପ୍ରକାଶ କରିଥାଏ । ୨୦୧୬ ମସିହାରେ ରିଓ ଡି ଜେନିରୋ (Rio de Janeiro)ଠାରେ ଅନୁଷ୍ଠିତ ହେବ । ଦକ୍ଷିଣ ଆମେରିକା ଦେଶରେ ଏହା ପ୍ରଥମ ଥର ପାଇଁ ଅନୁଷ୍ଠିତ ହେବାକୁ ଥିବାରୁ ସମଗ୍ର ବିଶ୍ୱ ୨୦୧୬ ଅଲିମ୍ପିକ୍ସ ପାଇଁ ଉତ୍ସୁକତାର ସହିତ ଚାହିଁ ବସିଛନ୍ତି ।

